

# କଥିତ ଓଡ଼ିଆ ଶବ୍ଦକୋଷ




**ଓଡ଼ିଆ ଭାଷା ପ୍ରତିଷ୍ଠାନ**

(ଓଡ଼ିଆ ଭାଷା, ସାହିତ୍ୟ ଏବଂ ସଂସ୍କୃତି ବିଭାଗ, ଓଡ଼ିଶା ସରକାର)

ସଂସ୍କୃତି ଭବନ, ଭୁବନେଶ୍ୱର, ଓଡ଼ିଶା

# କଥିତ ଓଡ଼ିଆ ଶବ୍ଦକୋଷ

ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର ପକ୍ଷରୁ

ନିର୍ଦ୍ଦେଶକ **ଡକ୍ଟର** ତମସାରାଣୀ ଦାସମହାପାତ୍ରଙ୍କ ଦ୍ୱାରା ପ୍ରକାଶିତ ।

ପ୍ରଥମ ପ୍ରକାଶ : ୨୦୧୮, ଫେବୃଆରୀ

ମୁଦ୍ରଣ : ସରକାରୀ ଛାପାଖାନା, କଟକ

ମୂଲ୍ୟ : ୫୦୦/-

**KATHITA ODIA SABDAKOSA**

*Published by*
**Dr. Tamasarani Dasmohapatra**, Director
on behalf of **Odia Bhasa Pratisthan**, Bhubaneswar

**First Publication :** February, 2018

**Printed at :** Govt. Press, Cuttack

**Price :** 500/-

# ସମ୍ପାଦକ ମଣ୍ଡଳୀ

ଡକ୍ଟର ରତ୍ନାକର ଚଇନି

ଡକ୍ଟର କୈଳାସ ଚନ୍ଦ୍ର ଟିକାୟତରାୟ

ଡକ୍ଟର ଗିରୀଶ ଚନ୍ଦ୍ର ମିଶ୍ର

ଡକ୍ଟର ରମାକାନ୍ତ ରାଉତ

ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀ

ଡକ୍ଟର ଅଶୋକ କୁମାର ଦାଶ

**ସମୀକ୍ଷକ**

**ପ୍ରଫେସର (ଡ.) ଅରବିନ୍ଦ ପଟ୍ଟନାୟକ**

# ଶବ୍ଦ ସଂଗ୍ରାହକଙ୍କ ନାମ

| କ୍ର.ସଂ. | ସଂଗ୍ରାହକଙ୍କ ନାମ | ଜିଲ୍ଲାର ନାମ |
|---|---|---|
| ୧ | ଡ. ଇନ୍ଦିରା ଦାଶ | ଅନୁଗୋଳ |
| ୨ | ଡ.ପ୍ରଦୀପ୍ତ କୁମାର ପଣ୍ଡା | କଟକ |
| ୩ | ଡ. ଦାଶରଥି ଆଚାର୍ଯ୍ୟ | କଳାହାଣ୍ଡି |
| ୪ | ଡ.ଜ୍ୟୋତ୍ସ୍ନାମୟୀ ପ୍ରଧାନ | କେନ୍ଦୁଝର |
| ୫ | ଶ୍ରୀ ଶୁଭ୍ରାଂଶୁ ଭୂଷଣ ସୂତାର | କେନ୍ଦ୍ରାପଡ଼ା |
| ୬ | ଶ୍ରୀ ପ୍ରେମାନନ୍ଦ ଦାସ | କୋରାପୁଟ |
| ୭ | ଡ. ଅବଦୁଲ ଓ୍ୱସିଦ ଖାଁ | ଖୋର୍ଦ୍ଧା |
| ୮ | ଡ.ସତ୍ୟପ୍ରସାଦ ଦାଶ | ଗଜପତି |
| ୯ | ଶ୍ରୀ ଅନନ୍ତରାମ କର | ଗଞ୍ଜାମ |
| ୧୦ | ଡ.ନିରଞ୍ଜନ ସାହୁ | ଜଗତସିଂହପୁର |
| ୧୧ | ଶ୍ରୀ ଗୌରୀ ଦାସ ପ୍ରଧାନ | ଝାରସୁଗୁଡ଼ା |
| ୧୨ | ଶ୍ରୀ ମନୋରଞ୍ଜନ ନନ୍ଦ | ଢେଙ୍କାନାଳ |
| ୧୩ | ଡ. ସନ୍ତୋଷ କୁମାର ଦେବତା | ଦେବଗଡ଼ |
| ୧୪ | ଡ. ଜଗନ୍ନାଥ ରାଉତ | ନବରଙ୍ଗପୁର |
| ୧୫ | ଡ.କୈଳାସ ବାଣ୍ଡ | ନୟାଗଡ଼ |
| ୧୬ | ଡ. ଲିଙ୍ଗରାଜ ସାହୁ | ନୂଆପଡ଼ା |
| ୧୭ | ଡ.ସିଦ୍ଧେଶ୍ୱର ମହାପାତ୍ର | ପୁରୀ |
| ୧୮ | ଡ. ସୁରେନ୍ଦ୍ର କୁମାର ମହାରଣା | ସାହିତ୍ୟ (ଗଦ୍ୟ) |
| ୧୯ | ଡ.ପ୍ରେମାନନ୍ଦ ମହାପାତ୍ର | କନ୍ଧମାଳ |
| ୨୦ | ଶ୍ରୀ ଧ୍ରୁବଚରଣ ଘିଭେଲା | ବୌଦ୍ଧ |
| ୨୧ | ଡ.ମଣୀନ୍ଦ୍ର ମେହେର | ବରଗଡ଼ |
| ୨୨ | ଶ୍ରୀ ମନୋଜ କୁମାର ପଣ୍ଡା | ବଲାଙ୍ଗିର |
| ୨୩ | ଡ.ମଥୁରାନାଥ ହୋତା | ବାଲେଶ୍ୱର |
| ୨୪ | ଶ୍ରୀ ଅଚ୍ୟୁତାନନ୍ଦ ସାମଲ | ଭଦ୍ରକ |
| ୨୫ | ଡ. ସୁଶାନ୍ତ କୁମାର ବଶା | ମୟୂରଭଞ୍ଜ |
| ୨୬ | ଡ.ଦେବାଶିଷ ପାତ୍ର | ମାଲକାନଗିରି |
| ୨୭ | ଡ.ବିଜୟ କିଶୋର ସାମଲ | ଯାଜପୁର |
| ୨୮ | ଡ.ଇନ୍ଦିରା ଅଧିକାରୀ | ରାୟଗଡ଼ା |
| ୨୯ | ଡ. ମୀନକେତନ ଛୁରିଆ | ସମ୍ବଲପୁର, ସୁବର୍ଣ୍ଣପୁର |
| ୩୦ | ଡ.ଅମିତାଭ ବେହେରା | ସଞ୍ଚାର |
| ୩୧ | ଡ.ନିବେଦିତା ରାଉତ | ସାହିତ୍ୟ (ପଦ୍ୟ) |
| ୩୨ | ଶ୍ରୀ ରୋହିତ କୁମାର ପଟେଲ | ସୁନ୍ଦରଗଡ଼ |

# ଅଞ୍ଚଳ ସଙ୍କେତ

| କ୍ର.ସଂ. | ଜିଲ୍ଲା | ସଙ୍କେତ |
|---|---|---|
| ୧ | ଅନୁଗୋଳ | ଅ: |
| ୨ | କଟକ | କ: |
| ୩ | କନ୍ଧମାଳ | କନ୍ଧ: |
| ୪ | କଳାହାଣ୍ଡି | କଳା: |
| ୫ | କେନ୍ଦ୍ରାପଡ଼ା | କେ: |
| ୬ | କେନ୍ଦୁଝର | କେନ୍ଦୁ: |
| ୭ | କୋରାପୁଟ | କୋ: |
| ୮ | ଖୋର୍ଦ୍ଧା | ଖୋ: |
| ୯ | ଗଜପତି | ଗଜ: |
| ୧୦ | ଗଞ୍ଜାମ | ଗ: |
| ୧୧ | ଗଦ୍ୟ ସାହିତ୍ୟ | ଗଦ୍ୟ: |
| ୧୨ | ଜଗତସିଂହପୁର | ଜ: |
| ୧୩ | ଝାରସୁଗୁଡ଼ା | ଝା: |
| ୧୪ | ଢେଙ୍କାନାଳ | ଢେ: |
| ୧୫ | ଦେବଗଡ଼ | ଦେ: |
| ୧୬ | ନବରଙ୍ଗପୁର | ନବ: |
| ୧୭ | ନୟାଗଡ଼ | ନ: |
| ୧୮ | ନୂଆପଡ଼ା | ନୂ: |
| ୧୯ | ପଦ୍ୟ ସାହିତ୍ୟ | ପଦ୍ୟ: |
| ୨୦ | ପୁରୀ | ପୁ: |
| ୨୧ | ବରଗଡ଼ | ବର: |
| ୨୨ | ବଲାଙ୍ଗିର | ବ: |
| ୨୩ | ବାଲେଶ୍ୱର | ବା: |
| ୨୪ | ବୌଦ୍ଧ | ବୌ: |
| ୨୫ | ଭଦ୍ରକ | ଭ: |
| ୨୬ | ମୟୂରଭଂଜ | ମ: |
| ୨୭ | ମାଲକାନଗିରି | ମା: |
| ୨୮ | ଯାଜପୁର | ଯା: |
| ୨୯ | ରାୟଗଡ଼ା | ରା: |
| ୩୦ | ସଂଚାର ଓ ଗଣମାଧ୍ୟମ | ସଂ: |
| ୩୧ | ସମ୍ବଲପୁର | ସ: |
| ୩୨ | ସୁନ୍ଦରଗଡ଼ | ସୁ: |
| ୩୩ | ସୁବର୍ଣ୍ଣପୁର | ସୁବ: |
| ୩୪ | ୫ରୁ ଅଧିକ ଅଞ୍ଚଳ (ଅନେକାଞ୍ଚଳ) | ଅନେ: |

# ଶବ୍ଦରୂପ ସଙ୍କେତ

| | | |
|---|---|---|
| ଅ. | : | ଅବ୍ୟୟ |
| କ୍ରି. | : | କ୍ରିୟା |
| କ୍ରି.ବିଂ. | : | କ୍ରିୟା ବିଶେଷଣ |
| ବି. | : | ବିଶେଷ୍ୟ |
| ବିଂ. | : | ବିଶେଷଣ |
| ସ. | : | ସର୍ବନାମ |

# ମୁଖବନ୍ଧ

ଚଳନ୍ତି ଶବ୍ଦଚୟନ ପ୍ରକଳ୍ପ ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ୨୦୦୬-୦୭ ବର୍ଷରେ ଆରମ୍ଭ କରାଯାଇଥିଲେ ମଧ୍ୟ ବିଭିନ୍ନ କାରଣରୁ ଏହା ସମ୍ପୂର୍ଣ୍ଣ ହୋଇପାରି ନଥିଲା। ପ୍ରଥମ ପର୍ଯ୍ୟାୟରେ ଓଡ଼ିଶାର ତିରିଶଟି ଜିଲ୍ଲା, ସଞ୍ଚାରମାଧ୍ୟମ, ଗଦ୍ୟ ଓ ପଦ୍ୟରୁ ଶବ୍ଦ ସଂଗ୍ରହ ନିମିତ୍ତ ତେତିଶଜଣଙ୍କୁ ଦାୟିତ୍ୱ ପ୍ରଦାନ କରାଯାଇଥିଲା। ସଂଗୃହୀତ ଶବ୍ଦକୁ ଡିଟିପି କରାଯାଇ ମୂଳପାଣ୍ଡୁଲିପି ପ୍ରସ୍ତୁତ କରିବାକୁ ରେଭେନ୍ସା ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଦାୟିତ୍ୱ ଗ୍ରହଣ କରି ଯଥାସମୟରେ ପ୍ରତିଷ୍ଠାନକୁ ପ୍ରଦତ୍ତ କଲେ। ଏହାର ଦୀର୍ଘଦିନ ପରେ ପ୍ରତିଷ୍ଠାନ ଏହି ପ୍ରକଳ୍ପ ସମ୍ପୂର୍ଣ୍ଣ କରିବାକୁ ପଦକ୍ଷେପ ନେଇ ପୁନଃ ବୈଠକ ଆହ୍ୱାନ କଲେ। ଦୀର୍ଘ ପ୍ରାୟ ଦଶବର୍ଷ ପରେ ଏହି ପ୍ରକଳ୍ପର ପୁନରୁଦ୍ଧାର ବେଳକୁ କେତେକ ସଦସ୍ୟ ଏଥିସହ ସମ୍ପୃକ୍ତ ହେବା ସମ୍ଭବ ହେଲାନାହିଁ। ତଥାପି ଜିଲ୍ଲାସ୍ତରରୁ ପୂର୍ବସମ୍ପୃକ୍ତ ସଦସ୍ୟଙ୍କ ସହ କେତେଜଣ ନୂଆ ସଦସ୍ୟଙ୍କୁ ନେଇ ସମସ୍ତ କାର୍ଯ୍ୟ ପୂର୍ଣ୍ଣାଙ୍ଗ କରିବାର ପ୍ରୟାସ କରାଗଲା।

ସଂଗ୍ରାହକ ସଦସ୍ୟମାନଙ୍କ ସଂଗୃହୀତ ଶବ୍ଦ, ଶବ୍ଦରୂପ, ଉତ୍ସ ଓ ଅର୍ଥର ପୁନଃ ନିରୀକ୍ଷଣ ପାଇଁ ବୈଠକ କରାଯାଇ ଦାୟିତ୍ୱ ପ୍ରଦାନ କରାଗଲା। ଜିଲ୍ଲା ଓ ଅନ୍ୟ ଉତ୍ସରୁ ସଂଗୃହୀତ ଶବ୍ଦ ସେମାନଙ୍କ ଦ୍ୱାରା ନିରୀକ୍ଷଣ ଓ ଅନୁମୋଦନ ପରେ ସମସ୍ତ ଶବ୍ଦକୁ ଏକତ୍ରିତ କରି ଅକ୍ଷରକ୍ରମରେ ସଜାଇବାବେଳେ ଭିନ୍ନଭିନ୍ନ ଉତ୍ସରୁ ସଂଗୃହୀତ ସମାନ ସମାନ ଶବ୍ଦ ପାଖାପାଖି ରହିବା ଫଳରେ ସେସବୁ ମଧ୍ୟରୁ ଗୋଟିଏ ଗୋଟିଏ ଶବ୍ଦ ଓ ତା'ର ଭିନ୍ନ ଭିନ୍ନ ବା ସମାନ ଅର୍ଥକୁ ଆବଶ୍ୟକତା ଅନୁସାରେ ସମ୍ପାଦନ କରାଗଲା। ସଂଗ୍ରହରୁ ସମ୍ପାଦନା କାର୍ଯ୍ୟଯାଏ ସମ୍ପନ୍ନ କଲାବେଳେ ଏହି ପ୍ରକଳ୍ପର ଗୁରୁତ୍ୱ ଆପଣାଛାଏଁ ଅନୁଭବ କରିହେଉଥିଲା। ଶବ୍ଦମାନଙ୍କର ବୈଚିତ୍ର୍ୟ ଓ ଅର୍ଥବୈଶିଷ୍ଟ୍ୟ ଓଡ଼ିଆ ଭାଷାରେ ସମୃଦ୍ଧ ଶବ୍ଦପ୍ରାଚୁର୍ଯ୍ୟର ପ୍ରମାଣ ବହନ କରେ। ଏସବୁକୁ ଗୋଟିଏ ଗ୍ରନ୍ଥରେ ଏକତ୍ର କରି ପ୍ରକାଶ କରାଗଲେ ଏହା ବିଭିନ୍ନ କ୍ଷେତ୍ରରେ ସାହିତ୍ୟ, ବିଜ୍ଞାନ, ବାଣିଜ୍ୟ, ଜ୍ଞାନକୌଶଳ ବୃଦ୍ଧି ପାଇଁ ଆମ ଭାଷା ନିମନ୍ତେ ଯେତିକି ସହାୟକ ହେବ; ଏଥିସହ ଆଞ୍ଚଳିକ ସଂହତି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ।

ଜିଲ୍ଲାଭିତ୍ତିରେ ରାଜ୍ୟକୁ ଭାଗ କରାଯାଇଥିଲେ ମଧ୍ୟ ପ୍ରଶାସନିକ ସୀମାରେଖା ଭାଷାକ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ। କେବଳ ଅଧିକରୁ ଅଧିକ ଶବ୍ଦ ସଂଗ୍ରହ ନିମିତ୍ତ ଏପରି

କରାଯାଇଥିଲା। ଅଭିଧାନରେ ସ୍ଥାନିତ ଶବ୍ଦଗୁଡ଼ିକର ଉତ୍ସ ସୂଚନାବେଳେ ପ୍ରାୟ ପାଞ୍ଚ ବା ତଦୁର୍ଦ୍ଧ୍ୱ ଜିଲ୍ଲାରୁ ଆସିଥିବା ସମାନ ଶବ୍ଦକୁ ଅନେକାଞ୍ଚଳରେ ବ୍ୟବହୃତ ବୋଲି ଗ୍ରହଣ କରି ନିର୍ଦ୍ଦିଷ୍ଟ ଅଞ୍ଚଳ ସୂଚନା ପ୍ରଦାନ କରାଯାଇନାହିଁ। କିନ୍ତୁ ଅଳ୍ପ କେତୋଟି ଜିଲ୍ଲାରେ ପ୍ରଚଳିତ ଶବ୍ଦ ସହ ଅଞ୍ଚଳ ବା ଜିଲ୍ଲା ସୂଚନା ଦିଆଯାଇଛି। ତଥାପି ଏହି ସୂଚନା ସେହି ଶବ୍ଦ ବ୍ୟବହାରର ଭୌଗୋଳିକ ସୀମା ନୁହେଁ। ସୂଚିତ ଅଞ୍ଚଳ ବାହାରେ ମଧ୍ୟ ସେ ଶବ୍ଦ ଥାଇପାରେ, ଯାହା ହୁଏତ ସେହି ଅଞ୍ଚଳକୁ ପ୍ରତିନିଧିତ୍ୱ କରୁଥିବା ସଦସ୍ୟ ପ୍ରଦାନ କରିନାହାନ୍ତି। କେତେକ ସ୍ଥଳରେ ପ୍ରତିନିଧିଙ୍କ ତାଲିକାରେ ତତ୍‌ସମ ବା ବୈଦେଶିକ ଶବ୍ଦ ମଧ୍ୟ ରହିଛି। ସେସବୁକୁ ଯେତେ ସମ୍ଭବ କମ୍ କରିବାକୁ ପ୍ରୟାସ କରାଯାଇଛି। ଅଧିକ ଭାବେ ଲୋକବ୍ୟବହୃତ ସାଧାରଣ ଶବ୍ଦ ସ୍ଥାନିତ କରି ଏକ ସାଧାରଣ ଅଭିଧାନଠାରୁ ଏ ଗ୍ରନ୍ଥଟିକୁ ସ୍ୱତନ୍ତ୍ର କରିବାର ପ୍ରୟାସ କରାଯାଇଛି ।

ଶବ୍ଦ ସଂଗ୍ରହବେଳେ ଅନେକ ଗୁରୁତ୍ୱପୂର୍ଣ୍ଣ ଆଞ୍ଚଳିକ ବୈଶିଷ୍ଟ୍ୟସଂପନ୍ନ ଶବ୍ଦ ହୁଏତ ସ୍ଥାନିତ ହୋଇ ନଥାଇପାରେ । ଅଭିଧାନ ଏକ ଜୀବନ୍ତ ଧାରାବାହିକ ପ୍ରକ୍ରିୟା ହୋଇଥିବାରୁ ବିଜ୍ଞବ୍ୟକ୍ତିମାନେ ଭବିଷ୍ୟତରେ ପରାମର୍ଶ ଓ ସୂଚନା ଦେଲେ ତାହା ଏହି ଗ୍ରନ୍ଥରେ ସ୍ଥାନିତ ହୋଇପାରିବ । ସଂପ୍ରତି ବିଜ୍ଞାନ କୌଶଳର ବିକାଶ ଫଳରେ ନୂତନ ଶବ୍ଦ ସ୍ଥାନିତ ହେବା ସଙ୍ଗେସଙ୍ଗେ ଗ୍ରନ୍ଥରେ ଥିବା ଯେ କୌଣସି ତ୍ରୁଟିକୁ ମଧ୍ୟ ସହଜରେ ସଂଶୋଧନ କରାଯାଇପାରିବ । ଏଣୁ ଭାଷାପ୍ରେମୀ ଓ ଭାଷାବିଦ୍‌ମାନଙ୍କୁ ସହୃଦୟତାର ସହ ପରାମର୍ଶ ପ୍ରଦାନ ନିମିତ୍ତ ବିନମ୍ର ଅନୁରୋଧ କରୁଛୁ।

ଉପସ୍ଥାପନବେଳେ ଗୋଟିଏ ଶବ୍ଦର ଭିନ୍ନ ଅଞ୍ଚଳରେ ଥିବା ଭିନ୍ନ ଅର୍ଥ ମଧ୍ୟ ପ୍ରଦାନ କରାଯାଇଛି। ଶବ୍ଦର ପ୍ରୟୋଗ ଅନୁସାରେ ପ୍ରାସଙ୍ଗିକ ଅର୍ଥବୋଧ ହୋଇଥାଏ । ତେଣୁ ପ୍ରଦତ୍ତ ଭିନ୍ନଭିନ୍ନ ଅର୍ଥରୁ ଆବଶ୍ୟକ ଅନୁସାରେ ବାକ୍ୟ ବା ପ୍ରସଙ୍ଗ ଆଧାରରେ ଅର୍ଥ ଗ୍ରହଣ କରିବାକୁ ହେବ। ଉଦାହରଣସ୍ୱରୂପ "ଅତା ଆତଫଳ, ମାଇଁ, ପିଉସୀ, ପୁଡ଼ା, ପୁଳା" ଦିଆଯାଇଛି। ପ୍ରସଙ୍ଗକ୍ରମେ "ଅତା ଖାଉଛି" ବାକ୍ୟରେ ଆତଫଳ; "ଅତା ଆସିଲେ" ବାକ୍ୟରେ ମାଇଁ ବା ପିଉସୀ; "ଅତାଏ ଚାଉଳ" ପ୍ରସଙ୍ଗରେ ପୁଡ଼ାଏ ବା ପୁଳାଏ ବୁଝାଯାଇପାରେ । ଏତକ କଷ୍ଟ ସ୍ୱୀକାର କରିବାକୁ ବିଜ୍ଞପାଠକଙ୍କୁ ଅନୁରୋଧ ।

**ସମ୍ପାଦକ ମଣ୍ଡଳୀ**

# ନିର୍ଦ୍ଦେଶକଙ୍କ କଲମରୁ...

ଗୋଟିଏ ଉନ୍ନତ ରାଷ୍ଟ୍ରର ପରିଚୟ ଦିଏ ତା'ର ଭାଷା, ଶବ୍ଦଭଣ୍ଡାର ଓ ଭାଷାର ବ୍ୟବହାର। ଭାଷାର ସମୃଦ୍ଧି ସେହି ଭାଷାର ଶବ୍ଦଭଣ୍ଡାରର ପ୍ରାଚୁର୍ଯ୍ୟ ଉପରେ ନିର୍ଭର କରେ। ପ୍ରତିଟି ଭାଷାର ଶବ୍ଦଭଣ୍ଡାରରେ ନିରନ୍ତର ପରିବର୍ତ୍ତନ ଓ ପରିବର୍ଦ୍ଧନ ସ୍ୱାଭାବିକ ଭାବେ ଚାଲିଥାଏ। କେତେକ ଶବ୍ଦ କାଳକ୍ରମେ ଲୋପ ପାଇଯାଉଥିବାବେଳେ କେତେକ ପରିବର୍ଦ୍ଧିତ ରୂପ ଧାରଣ କରୁଥାଏ। ଆଉ କେତେକ ଶବ୍ଦ ପ୍ରାସଙ୍ଗିକ ଭାବେ ଭିନ୍ନ ଭିନ୍ନ ଉତ୍ସରୁ ସୃଷ୍ଟି କିମ୍ବା ଉଦ୍ଧୃତ ହୋଇ ନୂତନ ଭାବେ ବ୍ୟବହୃତ ହୋଇଥାଏ। ପୁଣି ଭାଷା ବ୍ୟବହାରକାରୀ ଆଞ୍ଚଳିକ ଭେଦରେ ନିଜନିଜ ଶୈଳୀରେ ଭାଷା ଉଚ୍ଚାରଣ କରୁଥିବାବେଳେ ଗୋଟିଏ ଶବ୍ଦ ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅର୍ଥରେ ପ୍ରକାଶିତ ହୋଇଥାଏ। ଓଡ଼ିଆ ଏକ ବିକାଶଶୀଳ ଭାଷା। ପ୍ରାୟ ୪କୋଟି ଭାଷାସଦସ୍ୟ ଦୈନନ୍ଦିନ ୧,୫୫,୭୦୭ ବର୍ଗ କି.ମି. ବ୍ୟାପି ଭୂଖଣ୍ଡରେ ଏହି ଭାଷାକୁ ସଞ୍ଚାର ଉଦ୍ଦେଶ୍ୟରେ ବ୍ୟବହାର କରୁଛନ୍ତି। ଏହାର ପ୍ରାକୃତିକ ଭୂରୂପ ଓ ଜଳବାୟୁ ମଧ୍ୟ ଅସମାନ। ଗ୍ରାମୀଣ ଜୀବନ ଓ ତା'ର ବ୍ୟବହାର୍ଯ୍ୟ ସାମଗ୍ରୀ ସହରୀ ଜୀବନଠାରୁ ଅଲଗା। ବୃତ୍ତି ଓ ବେଉସା, ପର୍ବପର୍ବାଣି, ସଂସ୍କୃତି, ପରମ୍ପରା ମଧ୍ୟ ଅଞ୍ଚଳ ଭେଦରେ ଭିନ୍ନ ଭିନ୍ନ। କ୍ରମେ ମଣିଷର ଜୀବନଧାରା, ସଞ୍ଚାର ଓ ଗଣମାଧ୍ୟମର ପ୍ରଭାବରେ ପରିବର୍ତ୍ତିତ ହୋଇଆସୁଛି। ପାରମ୍ପରିକ ଜୀବନ, କ୍ରମେ ବିଶ୍ୱତୋମୁଖ ଜଗତୀକରଣ ଆଡ଼କୁ ମୁହାଁଉଛି।

ଏହି କ୍ରମରେ ଓଡ଼ିଆଭାଷାର ବ୍ୟବହାର, କଥାବାର୍ତ୍ତା, ଶିକ୍ଷାସଞ୍ଚାର ଆଦିରେ ପରିବର୍ତ୍ତନ ଓ ନୂତନତାର ସ୍ପର୍ଶ ଅନୁଭୂତ ହେଲାଣି। ଏହି ଭାଷାର ଔପଭାଷିକ ସ୍ୱରୂପ ସମ୍ଭବ ହେଲାଣି। ପୁଣି ବ୍ୟବହାର ଅନୁସାରେ ଆଞ୍ଚଳିକ ଭିନ୍ନତାର ସ୍ୱର ରହିବା ସ୍ୱାଭାବିକ। ଯେପରିକି ଓଡ଼ିଶାର ଗ୍ରାମାଞ୍ଚଳରେ ରହୁଥିବା ଲୋକମାନଙ୍କର କଥିତଶୈଳୀ ଅଞ୍ଚଳ ଭେଦରେ ଭିନ୍ନ ଭିନ୍ନ ପ୍ରକାର ପରିଲକ୍ଷିତ ହୁଏ। କେତେକ ଅଞ୍ଚଳରେ ହ୍ରସ୍ୱ 'ଉ' ଏବଂ ଦୀର୍ଘ 'ଊ' ମଧ୍ୟରେ ଫରକ୍ ପ୍ରାୟତଃ ନଥିବାବେଳେ ଦୀର୍ଘ 'ଈ'କାର ଶବ୍ଦ ହ୍ରସ୍ୱ 'ଇ' ଭାବରେ ଉଚ୍ଚାରିତ ହୁଏ। ସେହିପରି ଓଡ଼ିଆ ବର୍ଣ୍ଣମାଳାର ତିନୋଟି ଶ, ଷ, ସ ମଧ୍ୟରୁ କେବଳ 'ସ' ଟି ଉଚ୍ଚାରିତ ହୋଇଥାଏ। ବର୍ତ୍ତମାନ ଭିନ୍ନତା ମଧ୍ୟରେ ବୁଝାମଣା ଏବଂ ଆଦାନପ୍ରଦାନ ସମଗ୍ର ଅଞ୍ଚଳର ଭାଷାକୁ ସମୃଦ୍ଧ କରିବା ସହିତ ଆଞ୍ଚଳିକ ବୈଷମ୍ୟତାକୁ ଦୂର କରିବା ସହ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର କଥିତ ଶବ୍ଦ ସମଗ୍ର ଜନତାଙ୍କ ପାଇଁ ଏହି ଅଭିଧାନ ମାଧ୍ୟମରେ ସହଜରେ ଉପଲବ୍ଧ ହୋଇପାରିବ।

ଓଡ଼ିଆ ଭାଷାର ଅଭିଧାନମାନଙ୍କରେ ପ୍ରାମାଣିକ ବା ମାନକ ଭାଷାର ପ୍ରାଧାନ୍ୟ ଦିଆଯାଇଛି, ଶିକ୍ଷାକ୍ଷେତ୍ରରେ ଏହା ସହାୟକ ହେବ, ମାତ୍ର ଆଞ୍ଚଳିକ ଭେଦରେ କାନ ଓ ପାଟି

ମଧ୍ୟରେ ସୀମିତ ଅସଂଖ୍ୟ ଶବ୍ଦ ଯାହା କାଳକ୍ରମେ ବିଲୁପ୍ତ ହେବାକୁ ବସିଛି, ସେଗୁଡ଼ିକର ପରିମାଣାତ୍ମକ ଓ ତଥ୍ୟାତ୍ମକ ଭାବରେ ସଂଗୃହୀତ ଉପାଦାନ ଆମ ପାଖରେ ନାହିଁ । ଏଥିପାଇଁ ଅଧିକ ପ୍ରୟାସର ଆବଶ୍ୟକତା ରହିଛି।

ଏହିଭଳି ଏକ ନୂତନ କାର୍ଯ୍ୟ କରିବା ନିମନ୍ତେ ଓଡ଼ିଆ ଭାଷା ପ୍ରତିଷ୍ଠାନ ପ୍ରାଥମିକ ପଦକ୍ଷେପ ଗ୍ରହଣ କରିଥିଲା ୨୦୦୬ ମସିହାରେ। ସମଗ୍ର ଓଡ଼ିଶାକୁ ଭାଷାକ୍ଷେତ୍ର ଭାବେ ଗ୍ରହଣ କରାଯାଇ ଏହି ପ୍ରକଳ୍ପରେ ୩୦ଗୋଟି ଜିଲ୍ଲାର ବିଦ୍ୱାନ ଶବ୍ଦସଂଗ୍ରାହକଙ୍କଠାରୁ ଶବ୍ଦ ଏବଂ ସମ୍ବାଦପତ୍ର, ସଞ୍ଚାର, ପତ୍ରପତ୍ରିକା ସାହିତ୍ୟ ଆଦିରୁ ପ୍ରଚଳିତ ଆଞ୍ଚଳିକ ଲୌକିକ ଅର୍ଥ/ଶବ୍ଦ ସଂଗ୍ରହ କରାଯାଇ ସେଗୁଡ଼ିକୁ ଆଲୋଚନା ଓ ପର୍ଯ୍ୟାଲୋଚନା ସହ ତାହାର ଅର୍ଥ, ବ୍ୟୁତ୍ପତ୍ତି ଓ ପ୍ରୟୋଗ ସମ୍ବନ୍ଧରେ ସିଦ୍ଧାନ୍ତ କରାଯାଇ ଓଡ଼ିଆ ଶବ୍ଦଭଣ୍ଡାରରେ ଏହାର ପ୍ରବେଶ ନିମନ୍ତେ ପଥ ସୁଗମ କରାଯିବା ପାଇଁ ଏହି ପଦକ୍ଷେପ ଗ୍ରହଣ କରାଯାଇଛି। ଏହାଦ୍ୱାରା ଓଡ଼ିଆ ଭାଷାର ସମୃଦ୍ଧି, ସାହିତ୍ୟ ତଥା ଅନ୍ୟାନ୍ୟ ଜ୍ଞାନବିଜ୍ଞାନର ପୁସ୍ତକ ରଚନାରେ ନୂତନ ଶବ୍ଦର ବ୍ୟବହାର ପାଇଁ ଏହା ବିଶେଷ ସହାୟକ ହେବ।

ଯେହେତୁ ଭାଷା ଏକ ପରିବର୍ତ୍ତନଶୀଳ ଉପାଦାନ, ଲୋକମୁଖରେ ସ୍ଥାନଭେଦରେ ଏହା ନିରନ୍ତର ପରିବର୍ତ୍ତିତ ହୋଇଚାଲିଛି। ତେଣୁ ଅଭିଧାନ ମଧ୍ୟ ପରିମାର୍ଜିତ ଓ ପରିବର୍ଦ୍ଧିତ ହେବାର ଆବଶ୍ୟକତା ରହିଛି। ପ୍ରସ୍ତୁତ ଶବ୍ଦକୋଷରେ ବିଭିନ୍ନ କାରଣରୁ ବିଦ୍ୱାନଗଣ କୌଣସି ତ୍ରୁଟି କିମ୍ବା ଦୁର୍ବଳତା ଅନୁଭବ କରି ପ୍ରତିଷ୍ଠାନକୁ ସହୃଦୟତାର ସହ ଅବଗତ କଲେ ସେସବୁ ବିଚାରକୁ ନେଇ ପରବର୍ତ୍ତୀ ସଂସ୍କରଣରେ ସୁଧାରିବାର ପ୍ରୟାସ କରାଯିବ। ତେଣୁ ଏ ସମ୍ବନ୍ଧରେ ସଶ୍ରଦ୍ଧ ପରାମର୍ଶ ପାଇଁ ଅନୁରୋଧ କରୁଛି, ଯାହା ଆମ ଭାଷାକୁ ସମୃଦ୍ଧ କରିବାରେ ନିଶ୍ଚୟ ସହାୟକ ହେବ।

ଏପରି ଏକ ଆୟାସସାଧ୍ୟ କାର୍ଯ୍ୟ ପାଇଁ ଯେଉଁ ସଦସ୍ୟବୃନ୍ଦ ଏବଂ ବିଶେଷଜ୍ଞଗଣ ସମୟ ଦେଇ ଏହାକୁ ସଫଳ କରିଛନ୍ତି, ସମସ୍ତଙ୍କୁ ସାଧୁବାଦ ଜଣାଉଛି। ରାଜ୍ୟ ସରକାରଙ୍କ ଓଡ଼ିଆ ଭାଷା, ସାହିତ୍ୟ ଏବଂ ସଂସ୍କୃତି ବିଭାଗର ଆର୍ଥିକ ସହଯୋଗ ଏବଂ କର୍ତ୍ତୃପକ୍ଷଙ୍କ ପ୍ରୋତ୍ସାହନ ପାଇଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି। ପରିଶେଷରେ ଓଡ଼ିଆ ଭାଷା ପ୍ରତିଷ୍ଠାନର କର୍ମଚାରୀବୃନ୍ଦ ଯେଉଁମାନଙ୍କ ନିଷ୍ଠା ଓ ପରିଶ୍ରମ ଯୋଗୁଁ ଉକ୍ତ ପ୍ରକଳ୍ପ ଫଳବତୀ ହୋଇପାରିଛି, ସେମାନଙ୍କୁ ଧନ୍ୟବାଦ ଜଣାଉଛି।

**ଡକ୍ଟର ତମସାରାଣୀ ଦାସମହାପାତ୍ର**
ନିର୍ଦ୍ଦେଶକ
ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର

# ଅ

**ଅ** - *ସୁ.ସୁବ.* (ଅ.) : ଅନିଚ୍ଛା, ଅରାଜି ଓ ବିରକ୍ତସୂଚକ, ନାସ୍ତିବାଚକ

**ଅଅ** - *ଅନେ.* (ବି.) : ବାନ୍ତି କରିବା ବେଳର ଶବ୍ଦ, ଅଇ

**ଅଅଡ଼ି** - *କନ୍ଧ.* (ବି.) : ଭାଲୁ

**ଅଅଁଳା** - *ଦେ.ପଦ୍ୟ.* (ବି.) : ଅଁଳା ଫଳ, ଆମଳକୀ, ଧାତ୍ରୀଫଳ, ମନ୍ଦିରର ଶୀର୍ଷରେ ଅଅଁଳାଫଳ ଆକୃତିର ବଇଠି ବା ବେଢ଼ା

**ଅଅଁଳାଇ** - *ଦେ.ପଦ୍ୟ.* (ବିଂ.ବି.) : ହଳଦିଆ ଫୁଲଗଛ, ସ୍ୱନାମ ପ୍ରସିଦ୍ଧ ହରିଦ୍ରାବର୍ଣ୍ଣ ପୁଷ୍ପ ବୃକ୍ଷବିଶେଷ

**ଅଅଁଶ ବଅଁଶ** - *ଗ.* (ବି.) : ବଂଶଧର

**ଅଇ** - *ଅନେ.* (ଅ.ବି.) : ଆଗୋ (ସମ୍ବୋଧନ), ବାନ୍ତି, ହାକୁଟି

**ଅଇକା** - *ଅ.ପଦ୍ୟ.* (ଅ.ବି.ବିଂ.) : ଏହିକ୍ଷଣି, ବର୍ତ୍ତମାନ, ଆଜି

**ଅଇଖନ୍** - *ପଦ୍ୟ.* (ବିଂ.) : ଏବେ

**ଅଇଖୁଣିଆ** - *କ.* (ବିଂ.) : ଯେ ସବୁକାମକୁ ଘୃଣା କରେ, ଖୁଣ୍ଟିନାଣ୍ଟି

**ଅଇଗିଣିଆ** - *ଗ.* (ବିଂ.) ଅସୁଆଦ ତରକାରୀ

**ଅଇଗୁଣିଆ** - *କ.କେ.* (ବିଂ.) : ଜିଦ୍‌ଖୋର୍, ଅସନ୍ତୁଷ୍ଟ

**ଅଇଘର ପୂର୍ଣ୍ଣିମା** - *ଗଦ୍ୟ.* (ବି.) : ଅଗ୍ନି ଉତ୍ସବ, ଅଗ୍ନିପୂର୍ଣ୍ଣିମା, ଅଗିଜଳା ଉତ୍ସବ

**ଅଇଘରା** - *ପଦ୍ୟ.ଦେ.ବା.* (ବି.) : ଅଗ୍ନ୍ୟୁତ୍ସବ ବିଶେଷ, ଅଇଘିରା, ଅଇଘେରା, ଅଘିରା, ନିଆଁଗଦା-ଏହି ଉତ୍ସବ ମାଘପୂର୍ଣ୍ଣିମା ପୂର୍ବ ରାତ୍ରିରେ ହୁଏ, ଅଗିରା, ନିଆଁହୁଲ, ମାଘପୂର୍ଣ୍ଣମୀ

**ଅଇଚ୍ଛା** - *ଭ.କ.କେ.ପଦ୍ୟ.* (କ୍ରି.ବି.ଅ.ବିଂ.) : ବର୍ତ୍ତମାନ, ଏହିକ୍ଷଣି, ସଙ୍ଗେସଙ୍ଗେ

**ଅଇଛିକା** - *ଗଦ୍ୟ.* (ବିଂ.) : ଏବେ, ଅବିକା, ବର୍ତ୍ତମାନ

**ଅଇଛୁଣିକା** - *କ.* (ଅ.) : ଏକ୍ଷଣି

**ଅଇଜା** - *ପଦ୍ୟ.* (ବିଂ.) : କେତେ

**ଅଇଡା ସାରୁ** - *ବା.* (ବି.) : ମଜା କଥା

**ଅଇଡିମିରି** - *ଭ.* (ବି.) ଏକଜାତୀୟ ଡିମିରିଗଛ

**ଅଇଣ୍ଡା** - *ବା.* (ବି.) : ପାଣିକଖାରୁ

**ଅଇଣ୍ଡାବାଜିବା** - *ଯା.* (ବି.) : ଗର୍ଭିଣୀ ମା'ର ସ୍ତନ୍ୟପାନ କରି ଶିଶୁ ଦୁର୍ବଳହେବା ରୋଗ

**ଅଇଣି** - *ଦେ:ନବ:* (ବିଂ.ବି.) : ଶିଶୁ ଖିରପିଆ ନଛାଡିବା ଅବସ୍ଥାରେ ଗର୍ଭ ଧାରଣ

**ଅଇଣିଆ** - *କୋ:ପୁ:ଦେ:ଜ:* (ବିଂ.ବି.) : ସନ୍ତାନ ସ୍ତନ୍ୟପାନ ଛାଡ଼ିବାପୂର୍ବରୁ ଗର୍ଭବାସ ହେବା, ଏକପ୍ରକାର ଶିଶୁରୋଗ, ଗର୍ଭବତୀ ମାତାର ସ୍ତନ୍ୟପାନଜନିତ ଝାଡ଼ାରୋଗ

**ଅଇତ ପଇତ** - *ଗ:* (ବିଂ.) : ଅପବ୍ୟୟ, ଏପଟସେପଟ

**ଅଇଥା** - *ନ:* (ବି.) : ଅପେକ୍ଷାକରିବା

**ଅଇନ୍** - *ଦେ:* (ବିଂ.) : ଅତି ସୁନ୍ଦର

**ଅଇନଖ** - *ଭ:* (ବି.) : ଚଷମା

**ଅଇନା** - *ପଦ୍ୟ:ଭ:କେନ୍ଦୁ:* (ବି.) : ଆଇନା, ଦର୍ପଣ, ଆରସି

**ଅଇନି** - *ଜ:କେ:ରା:* (ବି.) : ଜିଦ୍, ଯୁକ୍ତି କରିବା, ଜିଦ୍‌ଧରି ଅଳି କରିବା, ଆଇନ

**ଅଇନିଆ** - *ଜ:* (ବିଂ.) : ଜିଦ୍‌ଖୋର୍

**ଅଇରା** - *ଗ:ପଦ୍ୟ:* (ବି.) : ଲମ୍ବା ଚୁଲି, ହାଣ୍ଡିମାଠିଆ ପ୍ରଭୃତି ରଖିବାର ମଳା, ଚିମଳା, ବଇଠକି, ଅହିରା

**ଅଇରାପୋଡ଼ି** - *ଗ:* (ବି.) : ଅଗ୍ନି ଉତ୍ସବ

**ଅଇରାବତ** - *ପଦ୍ୟ:* (ବି.) : ଇନ୍ଦ୍ରଙ୍କ ହସ୍ତୀ, ଐରାବତ

**ଅଇରି** - *ଅନେ:* (ବି.) : ଶତ୍ରୁ, ଅରି, ଗୋପାଳ ଜାତିବିଶେଷ, ଭଗାରି, ବେଙ୍ଗଳାରେ ବ୍ୟବହୃତ ବାଙ୍କୁଆ ବାଡ଼ି, ଉଖୁଣି

**ଅଇଲା** - *ଅନେ:* (ବିଂ.କ୍ରି.) : ଆସିବା, ଆସନ୍ତା, ଆସିଥିବା, ଆସୁଥିବା, ଆସିବାଧାତୁର ଅତୀତକାଳ, ଆସିଲା

**ଅଇଲି** - *ଅନେ:* (କ୍ରି.) : ଆସିଲି

**ଅଇଲେଖ** - *ଗ:* (ବି.) : ଚଷମା

**ଅଇଶାଇପ** - *ଗଦ୍ୟ:* (ବି.) : ଅଭିଶାପ

**ଅଇଶ୍ୱର୍ଯ୍ୟ** - *ପଦ୍ୟ:* (ବି.) : ଧନସମ୍ପତ୍ତି, ସମ୍ପଦ

**ଅଇସ** - *ରା:* (ବି.) : ଆୟୁଷ

**ଅଇ ସୁଲଖୁଣୀ** - *ଅନେ:* (ଅ.) ଅହ୍ୟସୁଲକ୍ଷଣୀ

**ଅଇହ** - *ଅନେ:* (ବିଂ.ବି.) : ସଧବା

**ଅଇଁକା, ଅଇଖା** - *ଜ:* (ବିଂ.) : ଅବିକା, ଏଇଲେ, ବର୍ତ୍ତମାନ, ଏବେକାର

**ଅଇଁଛିକା** - *ଜ:* (ବିଂ.) : ବର୍ତ୍ତମାନ

**ଅଇଁଛୁଣି, ଏହିକ୍ଷଣି** - *ଜ:* (ବିଂ.) : ବର୍ତ୍ତମାନ, ଏବେ, ଏହି ମୁହୂର୍ତ୍ତରେ

**ଅଇଁଟା** - *ମା:* (ବି.) : ଅଇଁଠା (ଦେଶିଆ)

**ଅଇଁଠା** - *ଜ:ଜ:ପଦ୍ୟ:* (ବିଂ.ବି.) : ଖାଦ୍ୟର ଉଚ୍ଛିଷ୍ଟ ଅଂଶ, ଉଚ୍ଛିଷ୍ଟ, ଭୋଜନ ଅବଶେଷ

**ଅଇଁଠା ଅଣ୍ଡଳ** - *ଗ:* (ବି.) : ଉଚ୍ଛିଷ୍ଟ ସମୂହ

**ଅଇଁଠାକଣ୍ଠା** - *ଜ:* (ବି.) ଖାଦ୍ୟର ଅବଶିଷ୍ଟାଂଶ

**ଅଇଁଠା କୁଡ଼** - *ଗ:* (ବି.) : ପାଚିରେ ଘା

**ଅଇଁଠାଚଟା** - *ଭ:ବୌ:* (ବିଂ.) : ଯିଏ ଅନ୍ୟର ଅଇଁଠା ଖାଏ, ଅଇଁଠା ଚାଟିବା ଲୋକ

**ଅଇଁଠା ପତ୍ର ଚାଟିବା** - *ସଂ:* (କ୍ରି.ବିଂ.) : ପରଧନ ଖାଇ ବଞ୍ଚି ରହିବା

**ଅଇଁଠାଯାଦୁ** - *ଗଜ:ଗ:* (ବି.) : ଗାଲରେ ହେବା କାନ୍ଥୁକୁଣ୍ଡିଆ, ଏକ ପ୍ରକାର ଯାଦୁରୋଗ

**ଅଇଁନା** - *ଜ:* (ଅ.) : ଏହିକ୍ଷଣି

**ଅଇଁନି** - *ଜ:* (ବି.) : ଏକ ମିଠା ବିଶେଷ, ଖଜା

**ଅଇଁରା, ଅଏଁରା** - *ସୁ:* (ବି.) : ବଇଠି

**ଅଇଁରି** - *ଜ:* (ବି.) : ଶତ୍ରୁ

**ଅଇଁଶ୍ବର୍ଯ୍ୟ** - *ଜ:* (ବି.) : ଐଶ୍ୱର୍ଯ୍ୟ ବା ସମ୍ପତ୍ତି

**ଅଇଁଷ** - *ଜ:* (ବିଂ.) : ଆମିଷ

**ଅଇଁସ** - *ଜ:କୋ:* (କ୍ରି.ବି.) : ଆରାମକରିବା, ଅଂଶ, ଔରସ

**ଅଉ** - *କୋ:ବା:* (ବି.) : ଅମ୍ଳସ୍ୱାଦଯୁକ୍ତ ଫଳବିଶେଷ, ଓଉ, ଖଟାଫଳ

**ଅଉଏ** - *ଅ:* (ଅ.) : ଅଭୟଦେବା

**ଅଉଖ** - *ଗ:* (ଅ.) : ଅଭ୍ୟାସ

**ଅଉତା** - *ଅ:* (ବି.) : ଓଳି

**ଅଉଲ୍** - *କଳା:ଦେ:* (ବିଂ.) : ସୁନ୍ଦର, ମନୋହର, ଉତ୍ତମ କିସମ ଜମି

**ଅଉଷଧ** - *ପଦ୍ୟ:* (ବି.) : ଔଷଧ

**ଅଉଁ** - *ନୂ:* (କ୍ରି.) : ଅଟୁ

**ଅଉଁଶ** - *ରା:ନବ:ଅ:* (ବି.) : ଅସୁବିଧା, ଅଂଶ

**ଅଏତ୍କା** - *ସ:* (ବିଂ.) : ଅଧିକ

**ଅଏନ୍** - *ଅନେ:* (ବିଂ.) : ସୁନ୍ଦର, ସୁଶୋଭନ, ଉତ୍ତମ, ଭଲ, ସଫା, କଡ଼ ଲେଉଟାଇ, ଅନନ୍ୟ, ଅସଲ

**ଅଏବଏ** - *ସ:* (ବି.) : ଅଯଥା ଖର୍ଚ୍ଚ

**ଅଏରାବତ୍** - *କଳା:* (ବି.) : ଐରାବତ, ହସ୍ତୀ

**ଅଏରି** - *ସୁ:* (ବି.) : ଶତ୍ରୁ, ଅଇରି, ଅରି

**ଅଏର୍ସା ପିଠା** - *ସ:* (ବି.) : ଆରିସାପିଠା, ଚାଉଳଗୁଣ୍ଡ ଓ ଗୁଡ଼ ଦେଇ ଛଣାଯାଏ

**ଅଏଲ୍** - *ଗୌ:* (ବିଂ.) : ଭଲ

**ଅଏଲ୍ତା** - *ସୁ:ସ:* (ବି.) : ଅଳତା

**ଅଏଲି** - *ମା:* (ବି.) : ବିବାହ ସମୟର ଗୀତ

**ଅଏସ୍** - *ପଦ୍ୟ:ଗୌ:ଢେ:* (ବି.ବିଂ.) : ଅୟସ, ସୁଖ, ମଉଜ, ଆରାମ୍, ବିଳାସ

**ଅଏଁଛା** - *ଚ:* (ବି.) : ନବାନ୍ନ ପୂର୍ବରୁ ଗାଁରୁ ରୋଗ ଇତ୍ୟାଦି ଦୂର କରିବାର ଏକ ପ୍ରତୀକାତ୍ମକ ପ୍ରଥା

**ଅଏଁଠା** - *ସ:* (ବି.) : ଅଇଁଠା

**ଅଏଁରା** - *ନୂ:* (ବି.) : ମାଟିପାତ୍ର ରଖିବା ପାଇଁ ପାଳ ବେଣ୍ଟରେ ତିଆରି କରାଯାଇଥିବା ଗୋଲାକାର ଆକୃତିର ପଦାର୍ଥ, ମଳା

**ଅଏଁଲା** - *ସୁ:ସ:କଳା:ନୂ:* (ବି.) : ଅଁଳା

**ଅଏଁଷା** - *ସୁବ:* (ବି.) : ଆମିଷ ଖାଦ୍ୟ

**ଅକ** - *ସୁ:* (ବିଂ.) : ବେଖାପ

**ଅକ୍ତା** - *ଗୌ:ସୁବ:କଳା:* (ବିଂ.ବି.) : ଖାଲି, ଅକ୍ଷତ, ଅରୁଆ ଚାଉଳ, ଆଦିବାସୀ ଦେବତାଙ୍କ ପାଇଁ ଉଦ୍ଦିଷ୍ଟ ଶୁକ୍ଳ ପୂଜା ସାମଗ୍ରୀ

**ଅକ୍ତାପତରି** - *ସୁବ:* (ବି.) : ପୂଜା ସାମଗ୍ରୀ

**ଅକ୍ପକାବା** - *ସୁ:* (କ୍ରି.) : ଚକିତ ହେବା, ବିଚଳିତ ହେବା

**ଅକ୍ଲିଆ** - *ସୁ:ଗୌ:କଳା:* (ବିଂ.) : ଅପରିଚିତ, ଅଚିହ୍ନା, ଅଜଣା, ନୂଆ

**ଅକ୍ସା** - *ସ:ଗୌ:କଳ:* (ବି.) : ଖାଲିପେଟ, ଦାନ୍ତ ଅଘଷା

**ଅକ୍ସି** - *ସୁବ:* (ବିଂ.) : ପ୍ରଥମ ଅମଳ ଧାନ ଠାକୁରଙ୍କ ଭୋଗ

**ଅକଇ** - *ଢେ:* (ବି.) : ତୋଡାଣି, ତୋରାଣି

**ଅକଇଲାଣ** - *ପଦ୍ୟ:* (ବି.ବିଂ.) : ଅମଙ୍ଗଳ, ଅଶୁଭ, ଅଭିଶାପ, ଅକଲ୍ୟାଣ

**ଅକକଥନ** - *ନବ:* (ବି.) : ହୃଦ୍ୟ

**ଅକଚା** - *କୋ:ପଦ୍ୟ:* (ବିଂ.) : ଅପରିଷ୍କାର, ଯେଉଁ ଲୁଗା କଚା ହୋଇନାହିଁ

**ଅକଟ** - *ଗ:ପଦ୍ୟ:* (କ୍ରି.ବି.) : ଆକଟ, ବାଧା ଦେବା, ଗତି ବନ୍ଦହେବା, ଅଟକିଯିବା

**ଅକଟା ଖାଇ** - *ଗ:* (ବିଂ.) : ଲୋଭୀ ମହିଳା

**ଅକଡିଆ** - *ରା:* (ବିଂ.) : କୁଟିଳ ପ୍ରକୃତିର

**ଅକଡ଼** - *କ:ପଦ୍ୟ:* (ବି.) : ଅସୁବିଧା, ଅଖାଙ୍ଗ, ଅକଳ

**ଅକଡ଼ କାଢିବା** - *କ:* (କ୍ରି.) : ରୁଷିବା

**ଅକଡ଼ବାଜି** - *ଭ:* (ବି.) : ଜିଦ୍

**ଅକଡ଼ବାଜିଆ** - *ପୁ:* (ବିଂ.) : ଅବୁଝା

**ଅକଡ଼ା** - *ରା:* (ବି.) : ନିଜେ ବଢ଼ିବା

**ଅକଡ଼ିଆ** - *ଗ:କୋ:* (ଅ.ବି.) : ଅସୁବିଧା

**ଅକଣ୍ଠ** - *ପଦ୍ୟ:* (ବି.) : ଅକଳନ, ଅମାପ

**ଅକଣ୍ଟକ** - *ପଦ୍ୟ:* (ବିଂ.) : ଯହିଁରେ କଣ୍ଟା ନାହିଁ, ଶତ୍ରୁ ଶୂନ୍ୟ, ନିର୍ବିଘ୍ନ

**ଅକଣ୍ଡା** - *ପଦ୍ୟ:ଅ:* (ବିଂ.) : ଢିଙ୍କିରେ ଯେଉଁ ଖାଦ୍ୟ ଚାଉଳ, କୁଟା ହୋଇ ପରିଷ୍କାର ହୋଇନାହିଁ, ପାଛଡ଼ା ନହୋଇଥିବା ଢିଙ୍କିକୁଟା ଖାଦ୍ୟ

**ଅକତ** - *ଗଦ୍ୟ:ନ:* (ବି.) : ରକତ, ରକ୍ତ

**ଅକତ୍** - *କଳା:* (ବି.) : ଆଦିବାସୀ ଦେବତାଙ୍କ ପାଇଁ ଉଦ୍ଦିଷ୍ଟ ଶୁଙ୍କ ପୂଜା

**ଅକତିଆ** - *ପଦ୍ୟ:* (ବି.) : ଅଦୁଆ

**ଅକଥନ** - *ପଦ୍ୟ:* (ବି.) : କୁକଥା, ଅନୁକ୍ତି, ମୂକତା, ଅକଥନୀୟ

**ଅକଥନୀୟ** - *ପଦ୍ୟ:* (ବିଂ.) : ଅକଥ୍ୟ, ଅବକ୍ତବ୍ୟ, ଅନିର୍ବଚନୀୟ

**ଅକଥା** - *ଅନେ:* (ବି.ବିଂ.) କୁଭାଷା, ଅଶ୍ଳୀଳବାକ୍ୟ, ଖରାପକଥା, ମନ୍ଦକଥା

**ଅକଥିତ** - *ପଦ୍ୟ:* (ବିଂ.) : ଅନୁଚ୍ଚାରିତ, ଯାହା କୁହାଯାଇନାହିଁ, ଯାହା ବର୍ଣ୍ଣିତ ହୋଇନାହିଁ

**ଅକଥ୍ୟ** - *ପଦ୍ୟ:ଛ:* (ବିଂ.) କହିବାର ଅଯୋଗ୍ୟ, ଅବର୍ଣ୍ଣନୀୟ, ଅଶ୍ଳୀଳ, କଥାରେ କହି ହେବ ନାହିଁ, ଅକଥନୀୟ

**ଅକନ୍** - *ମ:* (ବି.) : ଅରଖ

**ଅକପଟ** - *ଢେ:ଦେ:* (ବିଂ.) : ସରଳ, କପଟଶୂନ୍ୟ, ନିଷ୍କପଟ, ଅକପଟୀ

**ଅକପଟିଆ** - *ଛ:* (ବିଂ.) : ସରଳ ଲୋକ

**ଅକବନା** - *କ:* (ବି.) : ଦୁଃଖ

**ଅକବି** - *ପଦ୍ୟ:* (ବି.) : କବିତ୍ୱରହିତ, ରସବୋଧହୀନ କବି

**ଅକବୁଲ** - *ଇ:ପଦ୍ୟ:* (ବିଂ.ବି.) : ଅସ୍ୱୀକାର, ଅରାଜି, ଅସମ୍ମତି

**ଅକମୋଛିଆ** - *ଇ:* (ବିଂ.) : ଅବାଗିଆ ସ୍ଥାନ

**ଅକମ୍ପନ** - *ପଦ୍ୟ:* (ବି.) : କମ୍ପନଶୂନ୍ୟ, ରାବଣର ସେନାପତି ବିଶେଷ

**ଅକମ୍ପିତ** - *ପଦ୍ୟ:* (ବିଂ.) : କମ୍ପନଶୂନ୍ୟ, ଧୀର, ସ୍ଥିର

**ଅକର** - *ସୁ:ମ:* (ସ.) : ତାହାର

**ଅକରଣୀୟ** - *ପଦ୍ୟ:* (ବିଂ.) : କରିବାର ଅଯୋଗ୍ୟ, ଅକର୍ତ୍ତବ୍ୟ, ଅନୁଚିତ କାର୍ଯ୍ୟ

**ଅକରତବ** - *ଇ:* (ବିଂ.) : ଉପାୟହୀନ

**ଅକରମ** - *ପଦ୍ୟ:ନବ:* (ବି.) : ମନ୍ଦକର୍ମ, ଗର୍ହିତକର୍ମ, ମନ୍ଦଭାଗ୍ୟ

**ଅକରମା** - *ଅ:ପଦ୍ୟ:ଇ:* (ବିଂ.) : ହତଭାଗ୍ୟ, ଅକର୍ମା, ମନ୍ଦଭାଗ୍ୟ, ନିଷ୍କର୍ମା, ଅଳସୁଆ,

**ଅକରା** - *ଗ୍ରା:* (ବି.) : ନିଷ୍କର ଜମି

**ଅକରାନ୍ତି** - *କେ:* (ବି.) : ବାଇଗଣ ପତ୍ର ପରି କଣ୍ଟାଳିଆ ସାନ ଗଛ

**ଅକରୀ** - *ରା:* (ବି.) : ଅକ୍ଷର

**ଅକରୁଣ** - *ପଦ୍ୟ:* (ବିଂ.) : ନିର୍ଦ୍ଦୟ, ନିଷ୍ଠୁର

**ଅକର୍, ଅକୋର୍** - *ବର:* (ସ.) : ତାହାର

**ଅକର୍ତ୍ତବ୍ୟ** - *ପଦ୍ୟ:* (ବିଂ.) ଅନୁଚିତ, ଅବିଧେୟ, ଅକରଣୀୟ

**ଅକର୍ମ** - *ପଦ୍ୟ:* (ବି.) : ଅପକର୍ମ, ଦୁଷ୍କର୍ମ, ଅନୁଚିତ କାର୍ଯ୍ୟ, ନିନ୍ଦନୀୟ କାର୍ଯ୍ୟ

**ଅକର୍ମକ** - *ପଦ୍ୟ:* (କ୍ରି.ବିଂ.) କର୍ମର ଅନୁପଯୁକ୍ତ, ନିଷ୍କ୍ରିୟ, ନିକମା, କର୍ମହୀନ, ବେକାର, ଯେଉଁ କ୍ରିୟା କର୍ମ ପଦକୁ ଅପେକ୍ଷା କରେ ନାହିଁ

**ଅକର୍ମକର୍ମଦାତା** - *ପଦ୍ୟ:* (ବି.) : ଯେ ନିକମା ଲୋକକୁ କାମଦିଏ, ଯେ ସୌଭାଗ୍ୟ ଦେଇପାରେ

**ଅକର୍ମଣ୍ୟ** - *ପଦ୍ୟ:* (ବି.) : କାର୍ଯ୍ୟର ଅଯୋଗ୍ୟ, ଯେଉଁ ପଦାର୍ଥ କୌଣସି କର୍ମରେ ଲାଗି ନପାରେ

**ଅକର୍ମଶିଳା** - *ପଦ୍ୟ:* (ବି.) : ଏକପ୍ରକାର ଅତି ଟାଣୁଆ ପଥର, ଗେଙ୍ଗୁଟି ପଥର

**ଅକର୍ମା** - *କ:ପଦ୍ୟ:ଦେ:* (ବିଂ.) : ଅଳସୁଆ, ଅକାମିକା, ନିକମା, ନିଷ୍କର୍ମା, ଯେ କୌଣସି କାର୍ଯ୍ୟସାଧନ କରି ନ ପାରେ

**ଅକର୍‌କରା** - *ଦେ:* (ବି.) : ବଚ ଜାତୀୟ ଏକ ଗୁଳ୍ମ

**ଅକର୍‌ତବ** - *ସୁ:ସୁବ:* (ବିଂ.) : ଅଡୁଆ, କରିବା ଶକ୍ତିର ବାହାରେ

**ଅକର୍‌ତବେ** - *ସ:* (ବି.) : ବିପଦର ସମ୍ମୁଖୀନ

**ଅକର୍‌ତିଆ** - *ସ:* (ବି.) : ଅଦିନିଆ

**ଅକର୍‌ମିଆ** - *ଝା:ସୁ:* (ବି.ବିଂ.) : ଅକର୍ମା, କର୍ମକୁଡ଼ି

**ଅକଲ** - *ଅନେ:* (ବି.ବିଂ.) : ବୁଦ୍ଧି ଜ୍ଞାନ, କଥାର ସୂତ୍ର, କୌଶଳ, କାଣ୍ଡଜ୍ଞାନ

**ଅକଲ୍‌ଗୁଡ୍ଡୁମ୍** - *ଦେ:ଜ:ଅ:ଯା:* (ବିଂ.ବି.) : ହତବାକ୍, ହତପ୍ରଭ, ନିରୁପାୟ, ବୁଦ୍ଧିଲୋପ, ହତବୁଦ୍ଧି, ବୁଦ୍ଧି ନଖଟିବା

**ଅକଲନ୍** - *କନ୍ନ:* (ବିଂ.) : ଅକଳଣା, ଅଧିକ, ଅସୁମାରି

**ଅକଲମକଲ** - *ଗ:* (ବି.) : ଏଣ୍ଡୁତେଣ୍ଡୁ କଥା

**ଅକଲସଲାମୀ** - *ଖୋ:ଜ:ସଂ:* (ବି.କ୍ରି.ବିଂ.) : ଅନ୍ୟର ଭୁଲ୍ ପାଇଁ ନିଜେ ଦଣ୍ଡିତ ହେବା, ଜରିମାନା ଦେବା, ବୁଦ୍ଧି ନପାଇବାରୁ ଅସୁବିଧାରେ ପଡ଼ି ଦଣ୍ଡଦେବା

**ଅକଲାଣ** - *ମା:* (ବି.) : ଅଭିଶାପ, ଅକଲ୍ୟାଣ

**ଅକଲି** - *ଯା:* (ବି.ବିଂ.) : ଏକ, ଏକଲା

**ଅକଲିବିଡ଼ା** - *ଯା:* (ବି.) : ଏକଶତ

**ଅକଲ୍ୟାଣ** - *ଦେ:ପଦ୍ୟ:* (ବିଂ.ବି.) : ଅମଙ୍ଗଳ, ଅଶୁଭ, ଅଶୁଭଗ୍ରସ୍ତ

**ଅକଳ** - *ପଦ୍ୟ:ଦେ:କେ:ଜ:* (ବି.ବିଂ.) : ଅସୁବିଧା, ଅଖଞ୍ଜ, ଅସୁବିଧାଜନକ

**ଅକଳଙ୍କ** - *ପଦ୍ୟ:* (ବିଂ.) : ନିଷ୍କଳଙ୍କ, ନିର୍ମଳ, ସୁନ୍ଦର, ଅନିନ୍ଦ୍ୟ, ଦାଗ ନଥିବା

**ଅକଳଣା** - *କେ:ଜ:ଗ:* (ବିଂ.) : ବହୁତ, ଅନେକ, ଅସଂଖ୍ୟ, ଅକଳନ, ଅକଳନ୍ତା, କଳନାହୀନ, ଅପରିମିତ, ପ୍ରଚୁର

**ଅକଳନ** - *ଦେ:ପଦ୍ୟ:* (ବିଂ.) : ଅମାପ, ଅକଳଣା, ଅସଂଖ୍ୟ, ଅସୀମ, ଅତ୍ୟଧିକ

**ଅକଳନ୍ତା** - *ମା:ପଦ୍ୟ:* (ବିଂ) : ଅସଂଖ୍ୟ, ଅକଳିତ, ଯାହାର କଳନା କରାଯାଇନପାରେ

**ଅକଳାଣ** - *ଖୋ:* (ବି.) : ଯାହାକୁ କଳନା କରିହୁଏ ନାହିଁ

**ଅକଳିଆ** - *ଅନେ:* (ବିଂ.ବି.) : ଅସୁବିଧା ପରିସ୍ଥିତି, ଅକଳ, ହଇରାଣ ହେବା

**ଅକଳିହା** - *ପଦ୍ୟ:* (ବିଂ.) : ଯେ କଳହପ୍ରିୟ ନୁହେଁ, ଶାନ୍ତିପ୍ରିୟ

**ଅକଳୁଷ** - *ପଦ୍ୟ:* (ବିଂ.) : ନିଷ୍ପାପ, ନିର୍ଦୋଷ, ବିମଳ

**ଅକଳ୍ପିତ** - *ପଦ୍ୟ:* (ବିଂ.) : ଯାହା କଳ୍ପିତ ନୁହେଁ, ଅକୃତ୍ରିମ, ପ୍ରକୃତ

**ଅକଶ** - *ଗଦ୍ୟ:ଜ:ଅ:ମା:* (ବି.କ୍ରି.ବିଂ.) : ଅଦଉତି, ପ୍ରତିହିଂସା, ଆକ୍ରୋଶ, ଦାଉ ସାଧିବା, ଶତ୍ରୁତା, ଅସହିଷ୍ଣୁ, ସହିନପାରିବା

**ଅକଶା, ଅକଷା** - *ପଦ୍ୟ:* (ବିଂ.) : ଜିନ୍ କଶାଯାଇନଥିବା (ଘୋଡ଼ା), କଷା ହୋଇ ନ ଥିବା (ଅଙ୍କ), ଟାଣକରି ବନ୍ଧାହୋଇ ନଥିବା, କଷା ହୋଇନଥିବା ତାଳପତ୍ର, ତେଲ ବା ଘିଅରେ କଷା ହୋଇନଥିବା ପରିବା, ଠିକ୍ ଭାବେ ପ୍ରସ୍ତୁତ ହୋଇନଥିବା

**ଅକସିମୁହଁ** - *ବୁଦ:* (ବି.) : କାଠି କରି ନଥିବା ମୁହଁ, ଖାଲିଥିବା ପେଟ, ଅଘଷାମୁହଁ

**ଅକସ୍ମାତ** - *ପଦ୍ୟ:* (ଅ.) : ହଠାତ୍, ସହସା, ଅସମ୍ଭାବିତ ରୂପେ, ବିନା କାରଣରେ

**ଅକା** - *ଅ:* (ବିଂ.) : ବୋକା

**ଅକାଭଲିଆ** - *କ:* (ବିଂ.) : ଯେ ନିଜର ଭୁଲ ସ୍ୱୀକାର କରେନାହିଁ

**ଅକାଖରେ ଥୋଇବା** - *କ:* (କ୍ରି.) : ଅଯଥା ପ୍ରଂଶସା କରି କୌଣସି ବ୍ୟକ୍ତିକୁ ଉପରକୁ ଉଠାଇବା

**ଅକାଟ** - *ଦେ:ନବ:* (ବିଂ.) : ଅକାଟ୍ୟ, ଅମୋଘ

**ଅକାଟ୍ ଖିଆ** - *ବୌ:* (ବିଂ.) : ଯାହାକୁ ଗାଳି କାଟେ ନାହିଁ

**ଅକାଟ ବନ୍ଧ** - *ଗ:* (ବି.) : ପାଣି ନିଷ୍କାସନ ହେଉନଥିବା ପୋଖରି

**ଅକାଟିଆ** - *ସୁ:ଖୋ:* (ବିଂ.ବି.) : ଅବାଗିଆ, ଆଘାତ ଲାଗିଲେ ଯିଏ ଅଧିକ ସହିଯାଇପାରେ

**ଅକାଟୁ** - *ପଦ୍ୟ:* (ବିଂ.) : ଅଖଣ୍ଡନୀୟ, ଅମୋଘ, ଯାହା କାଟି ହୁଏନାହିଁ

**ଅକାଟ୍ୟ** - *ପଦ୍ୟ:ଢ:* (ବିଂ.) : ଅଖଣ୍ଡନୀୟ, ଯୁକ୍ତିସିଦ୍ଧ, ଯାହା କଟାଯାଇନପାରେ

**ଅକାଠିଆ** - *ନବ:* (ବିଂ.) : ଦାନ୍ତ ଅଘଷା

**ଅକାଠୁଆ** - *ଯା:* (ବିଂ.) : ପ୍ରଭାବହୀନ

**ଅକାଢ଼ିଆ** - *କେ:* (ବିଂ.) : ଅଢୁଆ, ଜିଦ୍‌ଖୋର

**ଅକାଢ** - *ଖୋ:* (ବି.) : ଲୋଭୀ

**ଅକାଣ୍ଡ** - *ପଦ୍ୟ:* (ବିଂ.) ସ୍କନ୍ଧଶୂନ୍ୟ, ଶାଖାହୀନ, ଅସମୟ, ଅକାଳରେ ହଠାତ୍, ଅକସ୍ମାତ୍

**ଅକାଣ୍ଡିଆ** - *ଅନେ:* (ବିଂ.ବି.) : କୁଣ୍ଡାଲଗା (ଚାଉଳ, ମୁଗ, ଧାନ) ଅପରିଷ୍କୃତ (ଚାଉଳ), କାଣ୍ଡି ହୋଇନଥିବା ଚାଉଳ, ଦରକୁଟା, ଯାହା ଢିଙ୍କିକୁଟା ହୋଇ ପରିଷ୍କାର ହୋଇନାହିଁ

**ଅକାତ** - *ଅନେ:* (ବିଂ.) : ଅତି ଗଭୀର, ଅଗାଧ, ଅମାପ, ଗହୀର, କାତ ପାଉନଥିବା ଗଭୀର ଗଣ୍ଡଜଳ, ଅଥଳ

**ଅକାତକାତ** - *ପଦ୍ୟ:* (ବିଂ.) : ଯେଉଁ ଜଳ କାତ ଦ୍ୱାରା ମପାଯାଇ ନ ପାରେ

**ଅକାତର** - *ଗ:ପଦ୍ୟ:* (ବି.ବିଂ.) : ନିର୍ଭୟା, ନିଃଶଙ୍କ, ନିର୍ଭୀକ, ଅବ୍ୟାକୁଳ, ଅକୁଣ୍ଠ

**ଅକାତରେ** - *ପଦ୍ୟ:* (କ୍ରି.ବିଂ.) : ଧୀରେଧୀରେ, ଅବ୍ୟାକୁଳ ଚିତ୍ତେ, ଅନାୟାସରେ

**ଅକାନ୍‌ବିନ୍ଧି** - *ଦେ:* (ବି.) : ଏକ ବନୌଷଧି ଗୁଳ୍ମ

**ଅକାବକା** - *ନୂ:ସ:* (ବିଂ.) : ଆଶ୍ଚର୍ଯ୍ୟ ହେବା, ବିସ୍ମିତ ହେବା, ଆଶ୍ଚର୍ଯ୍ୟ ହୋଇ ଖାଲି ଚାରିଆଡ଼େ ଦେଖିବା

**ଅକାବୁ** - *ପଦ୍ୟ:* (ବିଂ.) : ଅନାୟତ୍ତ, ନିରାଶ୍ରୟ, ଅକ୍ଷମ, ଶକ୍ତିହୀନ

**ଅକାମାବୋଇ** - *କ:* (ଅ.) : କାର୍ତ୍ତିକପୂର୍ଣ୍ଣିମାରେ ଡଙ୍ଗା ଭସାଇବା ବେଳେ ସ୍ତ୍ରୀଲୋକମାନେ ଉଚ୍ଚାରଣ କରୁଥିବା ଉକ୍ତି ଆ-କା-ମା-ଭୈ

**ଅକାମି** - *ନ:* (ବିଂ.) କାର୍ଯ୍ୟକ୍ଷମ ହୋଇନପାରିବା

**ଅକାମିଆ** - *ଦେ:ନବ:ଗ:* (ବିଂ.) : ଯେ କାମ କରେନାହିଁ, ଅଳସୁଆ, ଅଚଳ

**ଅକାମିକା** - *ପଦ୍ୟ:* (ବିଂ.) ଅକର୍ମଣ୍ୟ, ଅଳସୁଆ, କାର୍ଯ୍ୟର ଅନୁପଯୋଗୀ

**ଅକାମିନି** - *କ:* (ବି.) : ଏକପ୍ରକାର ଗଛ

**ଅକାମୀ** - *ପଦ୍ୟ:* (ବିଂ.) : କାମନାରହିତ

**ଅକାମ୍ୟ** - *ପଦ୍ୟ:* (ବିଂ.) କାମନା କରାଯାଇନଥିବା

**ଅକାୟ** - *ଛେ:* (ବିଂ.) : ଶରୀରହୀନ

**ଅକାର** - *ଛେ:ପଦ୍ୟ:* (ବି.) : ବାନ୍ତି, ବାମନ

**ଅକାରଣ** - *ପଦ୍ୟ:* (କ୍ରି.ବିଂ.) : କାରଣଶୂନ୍ୟ, ଅହେତୁକ, ବୃଥା, ଅନର୍ଥକ, ବିନା କାରଣ, ତୁଚ୍ଛାରେ

**ଅକାର୍ପଣ୍ୟ** - *ପଦ୍ୟ:* (ବି.) : କାର୍ପଣ୍ୟ ରହିତ, କୃପଣତା ରହିତ

**ଅକାର୍ଯ୍ୟ** - *ପଦ୍ୟ:* (ବି.) : କୁତ୍ସିତକାର୍ଯ୍ୟ, ଦୁଷ୍କର୍ମ, ଅବୈଧ କର୍ମ, କାର୍ଯ୍ୟହୀନ

**ଅକାର୍‌ଜ** - *ସୁ:* (ବି.) : ଅକାର୍ଯ୍ୟ

**ଅକାଲ୍** - *ବର:ଜଳା:* (ବି.) : ଅକାଳ, ଦୁର୍ଭିକ୍ଷ, ଅସମୟ, ମରୁଡ଼ି

**ଅକାଲୁ** - *ଦେ:* (ବିଂ.) : ନିର୍ବୋଧ

**ଅକାଲୁଆ** - *ଭ:* (ବିଂ.) : ରକ୍ତ ସଞ୍ଚାଳିତ ହେଉନଥିବା ସ୍ଥାନ

**ଅକାଳ** - *ଅନେ:* (ବିଂ.ବି.) : ଅସମୟ, ମରୁଡ଼ି, ଖରାପବେଳା, ଅଶୁଭ, ଦୁର୍ଭିକ୍ଷ, ଜୀବିତକାଳ ପୂରି ନଥିବା ସମୟ, ଶିଖ୍‌ମାନଙ୍କର ଉପାସ୍ୟଦେବ, କଶ୍ୟପଙ୍କର ସ୍ତ୍ରୀମାନଙ୍କ ମଧ୍ୟରୁ ଏକତମା

**ଅକାଳ କୁଷ୍ମାଣ୍ଡ** - *ଅ:ଦେ:କ:ପଦ୍ୟ:* (ବିଂ.ବି.) : ଅଦିନିଆ ପାଣିକଖାରୁ, କୁଳାଙ୍ଗାର, ଅଯୋଗ୍ୟ ବ୍ୟକ୍ତି

**ଅକାଳ କୁସୁମ** - *ପଦ୍ୟ:* (ବି.) : ଅସମୟଜାତ ଫୁଲ

**ଅକାଳ ଚଡ଼କ** - *ପଦ୍ୟ:* (ବି.) : ଆକସ୍ମିକ ବିପଦ, ଅରତୁରେ ବଜ୍ରପତନ

**ଅକାଳ ପଡ଼ିବା** - *ଖୋ:* (କ୍ରି.ବି.) : ମରୁଡ଼ି ପଡ଼ିବା

**ଅକାଳ ମୃତ୍ୟୁ** - *ପଦ୍ୟ:* (ବି.) : ଅପମୃତ୍ୟୁ, ଆୟୁକାଳ ପୂର୍ଣ୍ଣ ନ ହେଉଣୁ ମରିବା

**ଅକାଳିଆ** - *ଗ:ଖୋ:* (ବିଂ.ବି.) : ଆକସ୍ମିକ, ପୂର୍ବ ସୂଚନା ନଥାଇ, ବେତାଳିଆ

**ଅକାଳେ ସକାଳେ** - *କ:ନ:ଅ:* (ବି.) : ନ ହେବା ଅବସ୍ଥା ହଠାତ୍ ହେବା, ଅସମୟେ, ଅଦିନରେ, ଅକସ୍ମାତ୍, କେବେକେମିତି

**ଅକିଞ୍ଚନ** - *ଦେ:ପଦ୍ୟ:* (ବିଂ.) : ହୀନ, ପାମର, ନିଃସ୍ୱ, ଯାହାର କିଛି ନାହିଁ, ନଗଣ୍ୟ, ସାମାନ୍ୟ, ଅତି ଦରିଦ୍ର

**ଅକିର୍ତ୍ତିଆ** - *ଗ:* (ବିଂ.) : କୁକର୍ମକାରୀ

**ଅକିଲ** - *ସୁ:* (ବି.) : ବୁଦ୍ଧି, ଅକଲ

**ଅକୀର୍ତ୍ତି** - *ପଦ୍ୟ:* (ବିଂ.) ଅପଯଶ, ବଦନାମୀ, ଅଖ୍ୟାତି

**ଅକୁଟା** - *ପଦ୍ୟ:* (ବିଂ.) : ଯାହା ଢିଙ୍କି, ହମାମଦିସ୍ତା ଆଦିରେ କୁଟା ହୋଇନାହିଁ

**ଅକୁଣ୍ଠ** - *ପଦ୍ୟ:* (ବିଂ.) : ଅସଙ୍କୁଚିତ, ଅକ୍ଷୁଣ୍ଣ, ଅବ୍ୟାହତ, କୁଣ୍ଠାରହିତ

**ଅକୁଣ୍ଠିତ** - *ପଦ୍ୟ:* (ବିଂ.) : ପ୍ରଶସ୍ତ, ଅକ୍ଷୁଣ୍ଣ, କୁଣ୍ଠାହୀନ, ଅଶଙ୍କିତ

**ଅକୁଣ୍ଡ** - *ଦେ:* (ବିଂ.) : ନିର୍ମଳ, ପବିତ୍ର

**ଅକୁଳନ** - *ପଦ୍ୟ:* (ବିଂ.) : ଅଭାବ, ନିଅଣ୍ଟ, ଅନଟନ

**ଅକୁଳା** - *କେ:* (କ୍ରି.ବିଂ) : ସବୁଥିରେ ବିଫଳ, କୁଳାଉ ନଥିବା, ନିଅଣ୍ଟିଆ

**ଅକୁଳାଣ** - *ବା:ଖୋ:* (ବି) : ନିଅଣ୍ଟ

**ଅକୁଳାନ** - *ଗଦ୍ୟ:* (ବି.) : ଅଭାବ

**ଅକୁଳି** - *ଢ:* (ବିଂ.) : କୁଳହୀନ, ନୀଚ

**ଅକୁଳିଆ** - *ଗ:* (ବିଂ.) : କୁଳ ଗୋତ୍ରର ପରିଚୟ ନଥିବା

**ଅକୁଳୀନ** - *ଢ:* (ବିଂ.) : କୁଳଗୋତ୍ରହୀନ

**ଅକୂର୍ଚ୍ଚିଆ** - *ଗ:* (ବିଂ.) : କପଟ ସ୍ୱଭାବ

**ଅକୃତକର୍ମା** - *ପଦ୍ୟ:* (ବିଂ.) : ଅକର୍ମଣ୍ୟ, ଅପଟୁ, ଯେ କାର୍ଯ୍ୟକ୍ଷମ ନୁହେଁ

**ଅକୋଡିଆ** - *ଗଦ୍ୟ:* (ବିଂ.) : ଏକୁଟିଆ

**ଅକ୍ତ** - *ମା:* (ବି.) : ଅରୁଆ ଚାଉଳ

**ଅକ୍ତିଆର** - *ଢେ:ଦେ:ଅ:ପଦ୍ୟ:* (ବି.ବିଂ.) : କବଳିତ କରିବା, ଚାରା, କ୍ଷମତା, ଆୟତ୍ତ, ଅଧିକାର, ଆପଣାର ଅଧୀନ

**ଅକ୍ରମଣୀୟ** - *ପଦ୍ୟ:* (କ୍ରି.) : ଅଲଘନୀୟ, ଅଗମ୍ୟ

**ଅକ୍ରାକଥା** - *ବା:* (ବି.) : ମିଛକଥା

**ଅକ୍ରାନ୍ତ** - *ପଦ୍ୟ:* (ବିଂ.) : ଯାହାକୁ କେହି ଅତିକ୍ରମ କରିନାହିଁ, ଅଜିତ, ଯାହାକୁ ପାର ହୋଇଯାଇହୁଏନାହିଁ

**ଅକ୍ରିଆ** - *ଗ:ପଦ୍ୟ:* (ବିଂ.ବି.) କୁକର୍ମ, କାର୍ଯ୍ୟର ଅଭାବ, ଅନୁଚିତ କର୍ମ, ଅବୈଧକ୍ରିୟା, ଶାସ୍ତ୍ରବିରୁଦ୍ଧ କାର୍ଯ୍ୟ

**ଅକ୍ରୀତ** - *ପଦ୍ୟ:* (ବିଂ.) ଯାହା କିଣାଯାଇନାହିଁ

**ଅକ୍ଳାନ୍ତ** - *ଦେ:ପଦ୍ୟ:* (ବିଂ.) କଠିଣ, କ୍ଳାନ୍ତିରହିତ, ଯେ ଶ୍ରମନିବାରଣ ପାଇଁ ବିଶ୍ରାମ ନ ନିଏ, କ୍ଳାନ୍ତିହୀନ

**ଅକ୍ଲେଶ** - *ପଦ୍ୟ:* (ବିଂ.) : କ୍ଳେଶବର୍ଜିତ, ଯାହାର କ୍ଳେଶ ନାହିଁ, ଅନାୟାସ, ବିନା ପରିଶ୍ରମ, ଦୁଃଖ ନଥିବା, ସହଜସାଧ

**ଅକ୍କା ପେଟେ** - *ସ:* (ବି.) : ଖାଲିପେଟରେ

**ଅକ୍ଷ** - *ଦେ:* (ବି.) : ଗତିପଥ

**ଅକ୍ଷତ** - *ଦେ:* (ବିଂ.ବି.) : ଅରୁଆ ଚାଉଳ, ଖଣ୍ଡିଆ ନହୋଇଥିବା

**ଅକ୍ଷବଟ** - *ଅ:* (ବି.) : ଅକ୍ଷୟବଟ

**ଅକ୍ଷମ** - *ବେ:* (ବିଂ.) : ଦୁର୍ବଳ, କ୍ଷମହୀନ, କାର୍ଯ୍ୟସାଧନ ପାଇଁ ଅଯୋଗ୍ୟ

**ଅକ୍ଷୟ** - *ବେ:* (ବିଂ.) : ଅପରିବର୍ତ୍ତିତ, ଯାହା କ୍ଷୟ ବା ନଷ୍ଟ ହୁଏନାହିଁ

**ଅକ୍ଷୟବଟ** - *ବେ:* (ବି.) : ପ୍ରଳୟ ଶେଷରେ ସ୍ଥାୟୀ ବରଗଛ

**ଅକ୍ଷରେ ଅକ୍ଷରେ** - *ଅ:* (ବିଂ.) : ସଂପୂର୍ଣ୍ଣ, ନିରାଟ

**ଅକ୍ଷି** - *ରା:ବେ:* (ବି.) : ଲୁଗାର ଧଡ଼ି, ଆଖି

**ଅକ୍ଷିତୃତୀୟା** - *ଅ:* (ବି.) : ଅକ୍ଷୟତୃତୀୟା ତିଥି

**ଅକ୍ଷିମୁଠି** - *ଗ:* (ବି.) : ଅକ୍ଷୟତୃତୀୟା ଦିନ ବୁଣିବା ବିହନ

**ଅକ୍ଷୋବା** - *ପବ୍ୟ:* (ବି.) : ବୌଦ୍ଧ ଦେବୀ

**ଅଖ** - *ଅନେ:* (ବିଂ.ବି.) : ବଳଦ ଗାଡ଼ିର ଚକଦୁଇଟିକୁ ସଂଯୋଗକାରୀ କାଠଖଣ୍ଡ, ଦୁଇ ଚକକୁ ସଂଯୋଗ କରୁଥିବା ଲୌହ ବା କାଷ୍ଠ ଦଣ୍ଡ, ଦୋଷ, ବାହାନା, ଠକାମି

**ଅଖଇରିଆ** - *ବୌ:* (ବି.) ଖଇର ପଡ଼ିନଥିବା

**ଅଖ କାଢ଼ିବା** - *ଅ:* (କ୍ରି.) : ବାହାନା କରିବା

**ଅଖଞ୍ଜ** - *ଅନେ:* (ବି.ବିଂ.) : ଅସୁବିଧା, ଅସଜ, ଅସୁବିଧାଜନକ, ଅସଜିଆ, ଅବୁଝା

**ଅଖଞ୍ଜଖଞ୍ଜ** - *ଗ:* (ବି.) : ଅବ୍ୟବସ୍ଥା ମଧ୍ୟରେ କିଛି ସୁବିଧା

**ଅଖଞ୍ଜା** - *ପବ୍ୟ:* (ବିଂ.) : ଅନିର୍ଦ୍ଦିଷ୍ଟ, ଯେଉଁ ଗୃହର ଖଞ୍ଜା ବା ଅଗଣା ନାହିଁ, ଯୋଗ ହୋଇ ନଥିବା

**ଅଖଞ୍ଜିଆ** - *ଗ:କ:ପବ୍ୟ:ଢ:* (ବି.ବିଂ.) : ଅବ୍ୟବସ୍ଥା ପରିସ୍ଥିତି, ଅସୁବିଧା, ଅସଜିଆ, ଅସୁବିଧାଜନକ, ଅକଳ

**ଅଖଟ** - *ଗବ୍ୟ:ପବ୍ୟ:ଯା:* (ବି.ବିଂ.) : ନିଅଣ୍ଟ, କଠିନ, ଅଭାବ ଅନଟନ

**ଅଖଟୁ** - *ପବ୍ୟ:* (ବିଂ.) : ପରିଶ୍ରମକାତର, ଅଳସୁଆ, ଅକାରଣ, ଅକାମିକା

**ଅଖଡ଼ ବଖଡ଼** - *ଅ:* (ବି.) : ଅଡୁଆ

**ଅଖଡ଼ ବାଗିଆ** - *ଅ:* (ବିଂ.) : ଏକଜିଦିଆ

**ଅଖଡ଼** - *ଗ:* (ବି.) : ଗୋଳମାଳ

**ଅଖଡ଼ା** - *ରା:* (ବିଂ.) : ଅଯଥା

**ଅଖଣ୍** - *ମ:* (ଅ.) : ଏହିକ୍ଷଣି

**ଅଖଣ୍ଡ** - *ଢ:ପବ୍ୟ:ବେ:* (ବିଂ.ବି.) : ଯାହା ଖୁଣ ନୁହେଁ, ନିଖୁଣ, ଗୋଟା ବା ସମଗ୍ର, ଅକଟା, ପୂର୍ଣ୍ଣ, ଅବିଭକ୍ତ, ଅଖଣ୍ଡିତ, ଯାହା ପରିବର୍ତ୍ତନ ହୋଇ ନ ପାରେ, ଅକାଟ୍ୟ

**ଅଖଣ୍ଡ ଦୀପ** - *ବେ:ଖୋ:* (ବି.) : ଜାଗର ଦୀପ, ଅବିଛିନ୍ନ ଭାବରେ ଜଳୁଥିବା ଦୀପ

**ଅଖଣ୍ଡଧୂନି** - *ବେ:* (ବି.) ମହିମାଧର୍ମ ପ୍ରଥାରେ ଧୂନି

**ଅଖଣ୍ଡଳ** - *ଅ:* (ବି.) : ଅଖଣ୍ଡ ଦୀପ

**ଅଖଣ୍ଡିତ** - *ପଦ୍ୟ:ଗ:* (ବିଂ.ବି.) : ଅବିଭକ୍ତ, ଯାହା ଖଣ୍ଡିଆ ନୁହେଁ, ଧାରାବାହିକ, ଅବିରତ

**ଅଖତ** - *ମ:* (ବିଂ.) : ଅକ୍ଷତ

**ଅଖନ୍** - *କଳା:* (ବି.) : ଉକୁଣି

**ଅଖନିଆ** - *ଭ:* (ବି.) : ହାଉଳିଆ

**ଅଖପଡ଼ିବା** - *ଗ:* (କ୍ରି.) : ଚାଷ ପାଇଁ ଜମିକୁ କାଦୁଅ କରିବା

**ଅଖବା** - *କ:ଗ:* (ବିଂ.ବି.) ଅଭଦ୍ର, ଅଖାଡୁଆ, ଅବୁଝା ମଣିଷ

**ଅଖମ** - *ନବ:ମ:* (ବିଂ.) : ଅକ୍ଷମ, ଅସମର୍ଥ

**ଅଖରକା** - *ଅ:* (ବିଂ.) : ଝାଡୁଦ୍ୱାରା ଝଡା ହୋଇନଥିବା

**ଅଖରଣିଆ** - *କ:* (ବିଂ.) : ଉପାୟ ନଥିବା, ନିରୁପାୟ

**ଅଖଳମଖଳ** - *କୋ:ଗଞ:* (ବିଂ.ଅ.) : ଯଥେଷ୍ଟ, ପ୍ରଶସ୍ତ

**ଅଖଳା** - *ପଦ୍ୟ:* (ବି.) : ସରଳ ହୃଦୟ, ନିର୍ମଳ ହୃଦୟ

**ଅଖଳିଆ** - *କେ:କ:* (ବିଂ.) : ସରଳିଆ, ବୋକାଳିଆ

**ଅଖା** - *ଅନେ:* (ବି.) : ବସ୍ତା, ପାଲ, ଝୋଟ ବା ଛଣପଟରେ ତିଆରି ବସ୍ତା, ଝୋଟନିର୍ମିତ ବଡ଼ମୁଣା, କାଉଁରିଆପଟ ବସ୍ତା, ମୁଣା

**ଅଖାଇ ତେନ୍ତୁଳି** - *ଗ:* (ବିଂ.) : ସ୍ଥିତିହୀନ, ବାସହୀନ ହୋଇ ବୁଲିବା

**ଅଖାଇ** - *ଗ:* (ବି.) : ଖାଦ୍ୟ ନଖାଇବା

**ଅଖାଡ଼ି** - *ସୁ:* (ବିଂ.) : ଆଗେ, ଆଗ

**ଅଖାଡୁଆ** - *ଅନେ:* (ବିଂ.) : ବିବେଚନାଶୂନ୍ୟ, ଅସାଧ, ଅସୁବିଧା, ବଦମାସ, ବିବେକଶୂନ୍ୟ, ବୁଦ୍ଧି ବିଚାର ଶୂନ୍ୟ, ଅସଂଲଗ୍ନ

**ଅଖାତର** - *ଅ:ନବ:* (କ୍ରି.ବିଂ.ବି.) : ଅସମ୍ମାନ, ଖାତିର୍ ନ ରହିବା

**ଅଖାଦ** - *ଅ:* (ବିଂ.) : ବିଶୁଦ୍ଧ

**ଅଖାଦ୍ୟ** - *ଦେ:ପଦ୍ୟ:* (ବି.) ଯାହା ଖାଇବାପାଇଁ ଯୋଗ୍ୟ ନୁହେଁ, ଭୋଜନର ଅନୁପଯୁକ୍ତ, ଅଭକ୍ଷ୍ୟ, ଅସ୍ୱାସ୍ଥ୍ୟକର ଖାଦ୍ୟ

**ଅଖାବାୟା** - *ଗ:ସୁ:* (ବି.) : ପାଗଳ, ଅଖା ପିନ୍ଧୁଥିବା ପାଗଳ

**ଅଖାଳିବା** - *ଗା:* (କ୍ରି.) : ଧୁଆଧୋଇ ହେବା

**ଅଖିଆ** - *ଅ:ଦେ:ନ:ପଦ୍ୟ:* (ବିଂ.ବି.) : କ୍ଷୁଧାର୍ତ୍ତ, ଭୋକିଲା, ଉପାସ, ଖାଇନଥିବା, ଯେ ଖାଇନାହିଁ

**ଅଖିନି** - *କୋ:* (ବି.) : ଦହିରେ ତିଆରି ଏକପ୍ରକାର ବ୍ୟଞ୍ଜନ

**ଅଖିମୁଠି** - *ଅନେ:* (ବି.) : ଅକ୍ଷୟତୃତୀୟାର ପ୍ରଥମ ବିହନ ମୁଠା, ଅକ୍ଷୟତୃତୀୟାରେ ଅନୁକୂଳ କରି ବୁଣାଯିବା ଧାନ

**ଅଖିଳ** - *ଦେ:ପଦ୍ୟ:* (ବିଂ.) : ତମାମ, ସମଗ୍ର, ସମସ୍ତ

**ଅକ୍ଷୁଣ** - *ପଦ୍ୟ:ଅ:* (ବିଂ.) : ଯହିଁରେ ଖୁଣ, କ୍ଷତ ବା ଦାଗ ନାହିଁ, ନିଖୁଣ

**ଅଖେ** - *ଗ୍ରବ:* (ବିଂ.) ଏକ ଅଖା ପରିମାଣବିଶିଷ୍ଟ, ଅଖାଏ

**ଅଖେଅମର** - *ସ:* (ବି.) : ସବୁଦିନେ ବଞ୍ଚିବା, ଅମର ରହିବା

**ଅଖେଇ ନାନୀ** - *ଗ:* (ବି.) ଖାଦ୍ୟ ନଖାଇବାର ଅଭିନୟ ବା ଛଳନା କରୁଥିବା ସ୍ତ୍ରୀଲୋକ

**ଅଖେଡ** - *ଗା:* (ବି.) : ଜଣା ନପଡ଼ିବା ପରି ଘୁଞ୍ଚିବା

**ଅଖୋଜ୍** - *ଗ୍ରବ:* (ବିଂ.) : ଦିଗ ବାରି ନହେବା। ଘଞ୍ଚ ଜଙ୍ଗଲ ଅଞ୍ଚଳର ଗ୍ରାମ ବା ରାସ୍ତା ପ୍ରତି ଏହା ପ୍ରଯୁଜ୍ୟ।

**ଅଖ୍ୟାତନାମା** - *ପଦ୍ୟ:* (ବିଂ.) : ଅପ୍ରସିଦ୍ଧ ନାମବିଶିଷ୍ଟ, ଅଜ୍ଞାତନାମା, ସଂସାରରେ ଯାହା ନାଆଁ ପଦୁ ନାହିଁ

**ଅଖ୍ୟାତି** - *ପଦ୍ୟ:* (ବି.) : ନିନ୍ଦା, ଅପବାଦ, ଅପ୍ରତିଷ୍ଠିତ, ଅପଯଶ

**ଅଗ** - *ଅନେ:* (ବିଂ.ବି.) : ପର୍ବତ, ବୃକ୍ଷ, ସୂର୍ଯ୍ୟ, ସର୍ପ, ଅଗ୍ର, ବସ୍ତୁର ଶେଷଭାଗ, ଶୃଙ୍ଗ, ଶିଖର, ଟିପ, ଅଗ୍ରଭାଗ, ଗଛଡାଳର ଶେଷାଂଶ

**ଅଗଡ଼ବଗଡ଼** - *ଦେ:* (ଅ.) : ଏଣୁତେଣୁ

**ଅଗଣ ପଡ଼ରି** - *ଦ:* (ବି.) : ଆଗରୁ ଦିଆଯାଇଥିବା

**ଅଗବାର୍** - *ସ:* (ଅ.) : କେବଳ

**ଅଗମଥୁ** - *ଦେ:* (ବି.) : ଏକ ବନୌଷଧି ବୃକ୍ଷ

**ଅଗରବତୀ** - *ଦେ:* (ବି.) : ଧୂପକାଠି

**ଅଗରିଆ** - *ଗ୍ରବ:* (ବିଂ.) : ଆଖୁର ଅଗ ଅଂଶ, ଜାତିବିଶେଷ

**ଅଗଲା** - *ସ:ବୌ:ନୂ:* (ବିଂ.ବି.) : ଦୁଷ୍ଟ, ଆଗଚଳା, ବଳକା, ବଳିପଡ଼ିବା

**ଅଗଲାଅଗଲି** - *ବୌ:* (ବିଂ.) : ବଳକା

**ଅଗଲା ଅଁଟଲା** - *ଝ:* (ବିଂ.) : ଜିନିଷର ଆଧିକ୍ୟ ସୂଚାଉଥିବା ଶବ୍ଦ

**ଅଗଲା ଖଡ଼ା** - *ସ:* (ବି.) : ଏକ ପ୍ରକାର ଖଡ଼ାଶାଗ

**ଅଗଲା ଚତୁ** - *ବୌ:* (ବିଂ.) : ଉପରେପଡ଼ି କହିବାଲୋକ

**ଅଗଲି** - *ସ୍:ନୂ:* (ବି.) : ଲାଭ, ଆଗ

**ଅଗଲିବା** - *କଳା:ସ:* (କ୍ରି.) : ବଳକି ପଡ଼ିବା, ଅଧିକା ହେବା, ଜିନିଷ ବହୁତ ହେବା

**ଅଗକଟା** - *କ:* (ବିଂ.) : ଖୁବ୍ ବଢ଼ିଯାଇଥିବା ଧାନକୁ ଅଗରୁ କାଟି ଦିଆଯାଏ

**ଅଗଛା** - *ପଦ୍ୟ:ବା:* (ବି.) ଅସୁନ୍ଦର, ଅନୁପଯୋଗୀ, ଅନାବନା ଗଛ

**ଅଗଛିଆ** - *ପଦ୍ୟ:* (ବି.) : ଅକାମିକା ଗଛ, ଶସ୍ୟ କ୍ଷେତ୍ରରେ ଉଠୁଥିବା ଅକର୍ମଣ୍ୟ ଉଦ୍ଭିଦ

**ଅଗଟିପି** - *ବୌ:* (ବି.) : ଉପର ଅଂଶ, ଶୀର୍ଷ

**ଅଗଠଣ** - *ପଦ୍ୟ:* (ବିଂ.) : ଅସୁନ୍ଦର, ଯାହାର ଗଢଣ ଅସୁନ୍ଦର

**ଅଗଡ଼ବାଜିଆ** - *କ:* (ବିଂ.) : ଅଖାଡୁଆ

**ଅଗଡ଼ମ୍ ବଗଡ଼ମ୍** - *ଗ:* (ବି.) : ଏଣୁ ତେଣୁ

**ଅଗଣତି** - *ପଦ୍ୟ:* (ବିଂ.) : ଅଗଣ୍ୟ, ଅସଂଖ୍ୟ, ଯାହା ସୁମାରି ହୋଇନାହିଁ

**ଅଗଣା** - *ଅନେ:* (ବି.ବିଂ.) : ଖଞ୍ଜାବାଡ଼ି, ଦୁଆର, ପ୍ରାଙ୍ଗଣ, ଘର ମଧ୍ୟବର୍ତ୍ତୀ ଖୋଲା ସ୍ଥାନ, ଦୁଆର ସାମ୍ନା ସ୍ଥାନ

**ଅଗଣିଆ** - *ଗ:* (ବିଂ.) : ଜାତକ ମେଳକ ନଦେଖି ହୋଇଥିବା ବିବାହ

**ଅଗଣିତ** - *ପଦ୍ୟ:* (ବିଂ.) : ଯାହା ଗଣନା କରାଯାଇ ନାହିଁ, ଅସଂଖ୍ୟ

**ଅଗଣ୍ଡ ଭୋଜନ** - *ଅ:* (ବି.) : ପୂର୍ଣ୍ଣଭୋଜନ

**ଅଗଣ୍ଡା** - *ଗ:* (ବି.) : ବିଡ଼ାପିଟା ପରେ ଯେଉଁ ବିଡ଼ା ପତୁଳିକୁ ବା ବେଙ୍ଗଳାକୁ ଯାଏନାଇଁ। ଘର ଛପର ପାଇଁ ଏହି ଅଟଙ୍ଗା ବା ଅଗଣ୍ଡା ବ୍ୟବହୃତ ହୋଇଥାଏ।

**ଅଗଣ୍ୟ** - *ପଦ୍ୟ:* (ବିଂ.) : ଅସଂଖ୍ୟ, ନଗଣ୍ୟ, ତୁଚ୍ଛ, ହେୟ, ଅଗ୍ରାହ୍ୟ

**ଅଗତା** - *ଗ:ଅ:ଭା:* (ବି.ବିଂ.) : ଅସଜଡ଼ା, ଖାଲି ପେଟରେ, ବିନା ଆହ୍ୱାନ, ବିନା ନିମନ୍ତ୍ରଣ

**ଅଗତା ପେଟ** - *ଗ:କୋ:* (ବି.) : ଖାଲି ପେଟ

**ଅଗତି** - *ଢ:ନବ:* (ବି.) : ଗତିହୀନ, ଦୁର୍ଦ୍ଦଶା

**ଅଗତ୍ୟା** - *ପଦ୍ୟ:କେ:* (କ୍ରି.ବିଂ.) : ନିରୁପାୟ ହୋଇ, ହଠାତ୍

**ଅଗନାଅଗନି** - *ଖୋ:ଦେ:* (ବି.ବିଂ.) : ଘଞ୍ଚ, ବିଶାଳ, ଗହନ, ଦୁର୍ଗମ

**ଅଗବଥୁ** - *କେନ୍ଦୁ:* (ବି.) : ଏକ ପ୍ରକାର ଔଷଧୀୟ ଗଛ

**ଅଗଭଙ୍ଗା** - *ପୁ:* (ବିଂ.) : ଯେ କୌଣସି କାର୍ଯ୍ୟ ଆରମ୍ଭରୁ ହତାଶ ଜନକ କଥା କହିବା

**ଅଗମ** - *କେ:* (ବିଂ.) : ଦୁର୍ଗମ, ଅଗମ୍ୟ

**ଅଗମଚା** - *ଦେ:* (ବି.) : ଖାଇବା ପୂର୍ବରୁ ଯାହା ରଖାଯାଏ

**ଅଗମୋଡ଼ିବା** - *କ:* (କ୍ରି.) ଅନୁକୂଳ ବିଗାଡ଼ିବା, ପ୍ରତିବାଦ କରିବା

**ଅଗମୋଡ଼ି ହେବା** - *ଭ:* (କ୍ରି.) : ଅବୁଝା ହେବା

**ଅଗମ୍ୟ** - *ପଦ୍ୟ:* (ବିଂ.) : ଦୁର୍ଗମ, ଦୁର୍ଭେଦ୍ୟ, ଯେଉଁଠାକୁ ଯିବାର ଉପାୟ ନାହିଁ, ଦୁର୍ବୋଧ

**ଅଗୟ** - *ଅ:* (ବି.) : ସାହସ, ଅଭୟ

**ଅଗର** - *ଭା:ପୁ:* (ବି.) ଆଲୋଡନ ସୃଷ୍ଟିକରିବା, ବୁଲେଇବୁଲେଇ ଛିଦ୍ର କରିବାପାଇଁ ବଢ଼େଇ ବ୍ୟବହାର କରୁଥିବା ଏକ ଯନ୍ତ୍ର, ଏକପ୍ରକାର ଭଅଁର

**ଅଗରକାଟି** - *ଭା:* (ବି.) : ଧୂପକାଠି

**ଅଗର ଝାଟିଆ** - *ଅ:* (ବି.) : ଗଛର ନାମ

**ଅଗରଦୁଆରି** - *କେ:* (ବି.) : ସମସ୍ତଙ୍କ ଘରେ

**ଅଗରବଳକା** - *ଭ:* (ବିଂ.) : ଅବାଧ

**ଅଗର ଭଅଁର** - *ନ:* (ବି.) : ଭଅଁର (କାଠବିନ୍ଧ) କଣାକରିବା ଯନ୍ତ୍ର।

**ଅଗରା** - *ଅନେ:* (ବି.) : ଗୁଳ୍ମବିଶେଷ, କଣ୍ଟକ ଗୁଳ୍ମବିଶେଷ, ଡାଳର ଅଗ, ବାଉଁଶ କଣି, ଗାଆଁ ଘଉଡ଼ା ଗୁଳ୍ମ, ଘରହୀନ ଦରିଦ୍ର

**ଅଗରିଆ** - *ଦେ:* (ବି.) : ଜାତି ବିଶେଷ ଅଘରିଆ

**ଅଗଲ** - *କେ:* (କ୍ରି.ବିଂ.) : ଅଲଗା କରିବା

**ଅଗଲ୍‌ବା** - *କନ୍ଧ:* (କ୍ରି.) : ବଳକା ହେବା

**ଅଗଲଟପିଆ** - *କେ:* (ବିଂ.) : ଆଗପଛ ଚିନ୍ତା ନକରି ହଠାତ୍ କହୁଥିବା ଲୋକ, ଆଗତଟପା

**ଅଗଲା** - *କେ:ଭ:ସୁ:* (କ୍ରି.ବିଂ.ବି.) : ଅଲଗା, ଆଗେ, ବଳକା

**ଅଗଲା ଭଗୁଲା** - *ଦୌ:* (ବିଂ.) : ଭରପୂର, ଯଥେଷ୍ଟ

**ଅଗଳ ଟପାଳିଆ** - *କେ:* (ବିଂ.) : ଆଗକୁହା

**ଅଗସ୍ତି** - *ଭ:ଦେ:* (ବି.) : ମୁନି, ବୃକ୍ଷବିଶେଷ, ଫୁଲ ବିଶେଷ,

**ଅଗା** - *ଦୌ:ଦେ:ଭ:ବା:* (ବିଂ.ବି.) : ଓଲୁ, ମୂର୍ଖ, ବୋକା, ବାଉଁଶର ଅଗ୍ରଭାଗ, ପୁରୁଣା

**ଅଗାଡ଼ି** - *ଅନେ:* (ବି.ବିଂ.) : ଯାହାଦ୍ୱାରା କୌଣସି କାମ ହୁଏନାହିଁ, ଯାହା ମୁଣ୍ଡରେ ବୁଦ୍ଧି ନାହିଁ, ସାରହୀନ ଲୋକ, ଅଧମ, ଅପଦାର୍ଥ, ଚାଉଳ ନଥିବା ଧାନ, କଣ୍ଢା, ପୁଲିଧାନ

**ଅଗାଣ୍ଡି** - *ବା:* (ବିଂ.) : ବଇଠା ନଥିବା

**ଅଗାଣ୍ଡିଆ** - *ଅ:ଗ:ଖୋ:* (ବି.ବିଂ.) : ଯାହାର ଦାୟିତ୍ୱବୋଧ ନଥାଏ, ଅବୁଝା ମଣିଷ

**ଅଗାଧ** - *ଗ:ଢ:ଦେ:ପଦ୍ୟ:* (ବି.ବିଂ.) : ଗଭୀର ଜଳ, ଅଥଳଜଳ, ଗଭୀର, ଅତିଗଭୀର, ଅତଳସ୍ପର୍ଶ, ପ୍ରଗାଢ଼, ଅସୀମ

**ଅଗାଧର୍** - *ଦୌ:* (ବିଂ.) : ଅଜବ, ବିଚିତ୍ର

**ଅଗାଧୁ** - *ଦେ:* (ବିଂ.) : ଯେ କେବେ ଗାଧୁଏ ନାହିଁ

**ଅଗାପଘା** - *ଦୌ:କେ:* (ବି.) : ମନ ଭରି, ବାଧାବନ୍ଧନ

**ଅଗାବଗା** - *ବା:ଭ:କ:* (ବିଂ.) : ନିର୍ବୁଦ୍ଧିଆ, ଯିଏ ପାରି ସିଏ

**ଅଗାର** - *କେ:ଦେ:* (ବି.) : ଜଳ ପ୍ରବାହ ଠାରୁ ଦୂର, ଶସ୍ୟ, ଭଣ୍ଡାର, ଭାଡ଼ି

**ଅଗାଳ** - *ବା:* (କ୍ରି.) : ଚିନ୍ତା କରିବା

**ଅଗା ହଉଚି** - *କନ୍ଧ:* (କ୍ରି.) : ଗର୍ବକରୁଛି

**ଅଗି** - *ଅନେ:* (ବି.) : ଅଗ, ଅଗ୍ର, ଶୀର୍ଷ, ଗଛର ଅଗ, କଳି, କକ୍ଷମୁକୁଳ, କଅଁଳ ପତ୍ର, ଅଗ୍ନି ଉତ୍ସବ

**ଅଗିଆବାତ** - *କେ:କ:* (ବି.) : ଚର୍ମ ଫଳିଯାଉଥିବା ରୋଗ, ଆଲର୍ଜି ବେମାରି

**ଅଗିଖାଡ଼ି** - *ଅ:* (ବି.) : ଦିଆସିଲି

**ଅଗିଜଳା** - *ଅ:ଭ:* (ବି.ବିଂ.) : ମାଘପୂର୍ଣ୍ଣିମା ବା ଅଗ୍ନିପୂର୍ଣ୍ଣିମାରେ ଜଳାଯାଉଥିବା ନିଆଁ

**ଅଗିଣ୍ଡିଆ** - *ଅ:* (ବିଂ.) : ଯେଉଁପାତ୍ର ତଳେ ବଇଠା ନଥାଏ

**ଅଗିନି** - *ଅ:* (ବି.) : ନିଆଁ, ଅଗ୍ନି

**ଅଗିବା** - *ଗ:ଗଞ:* (କ୍ରି.) : ମଳତ୍ୟାଗ କରିବା

**ଅଗିର** - *ଢେ:ରା:* (ବି.କ୍ରି.) : ଅଗ୍ନି, ଘାଣ୍ଟିହେବା

**ଅଗିରା** - *କ:ଚୌ:ଖୋ:* (ବି.) : କଣ୍ଟାପତ୍ର, ଫଳଯୁକ୍ତ ଗଛ, ଅଗଡ଼ାଳ, ବାଉଁଶ ଝଟା

**ଅଗିରାପୁନେଇ** - *ଭ:* (ବି.) : ପର୍ବ ବିଶେଷ, ଅଗିଜଳା ପୂର୍ଣ୍ଣିମା

**ଅଗିଲା** - *ଖୋ:ଭ:* (ବିଂ.) ଶୀର୍ଷ, ଶେଷଭାଗ, ବାଉଁଶର ଅଗ୍ରଭାଗ

**ଅଗୁଆଁର** - *ଗଦ୍ୟ:* (ବିଂ.) : ନିର୍ବୋଧ, ଓଲୁ

**ଅଗୁରୁ** - *ଦେ:* (ବି.) : ବାସଯୁକ୍ତ ଚନ୍ଦନ

**ଅଗୁଳି** - *ଦେ:* (ବିଂ.) : ଭଗାରି

**ଅଗୁଳିଆ** - *ଅ:* (ବିଂ.) : ଓସାରିଆ

**ଅଗୁଳିମେଣ୍ଢା** - *କୋ:* (ବିଂ.) : ଅବରଣରେ ପ୍ରତିକଥାରେ ମୁଣ୍ଡପୂରାଇବା

**ଅଗେଇବେହେରା** - *ଭ:* (ବି.) : ମୁଖିଆ

**ଅଗେରା** - *ରା:ଗଞ:ଗ:* (ଅ.) : ଇତ୍ୟାଦି, ଓଗେର

**ଅଗୋଚର** - *ଦେ:* (ବିଂ.) : ଅଜଣା, ଅଜ୍ଞାତ

**ଅଗ୍ନାଗ୍ନି** - *ଗ:* (ବି.) : ଘଞ୍ଚ ଅରଣ୍ୟ

**ଅଗ୍ନିକାରକ** - *ଦେ:* (ବିଂ.) : ଜୀର୍ଣ୍ଣକାରକ

**ଅଗ୍ନିକାଷ୍ଠ** - *ପଦ୍ୟ:* (ବି.) : ଅଗୁରୁକାଠ, ଯେଉଁ କାଠ ଘର୍ଷଣରେ ନିଆଁ ବାହାରେ

**ଅଗ୍ନିକୋଣ** - *ପଦ୍ୟ:* (ବି.) ଦକ୍ଷିଣ ପୂର୍ବକୋଣ

**ଅଗ୍ନିଖମ** - *କେନ୍ଦୁ:* (ବି) : ଧଳା ରଙ୍ଗର ଦୀର୍ଘମିଆଦୀ ଧାନର ନାମ

**ଅଗ୍ନିଜିହ୍ୱ** - *ପଦ୍ୟ:* (ବିଂ.ବି.) : ଅଗ୍ନିପରି ଜିହ୍ୱା ଯାହାର, ବିଷ୍ଣୁ, ଦେବତା, ଅଗ୍ନିଶିଖା

**ଅଗ୍ନିଝାଳ** - *ପଦ୍ୟ:* (ବି.) : ଏକ ପ୍ରକାର ଔଷଧୀୟ ଗୁଳ୍ମ

**ଅଗ୍ନିଦାହ** - *ପଦ୍ୟ:* (ବି.) ନିଆଁରେ ପୋଡ଼ିଯିବା ପଦାର୍ଥ, ଦାହରୋଗ ବିଶେଷ

**ଅଗ୍ନିପରୀକ୍ଷା** - *ପଦ୍ୟ:* (ବି.) : ନିଆଁରେ ପ୍ରବେଶ କରାଇ ଶୁଦ୍ଧାଶୁଦ୍ଧର ପରଖ, କଠିନ ପରୀକ୍ଷା

**ଅଗ୍ନିଶର** - *କେନ୍ଦୁ:* (ବି.) : ଲାଲ ରଙ୍ଗର ସରୁ ଦୀର୍ଘ ମିଆଦି ଧାନର ନାମ

**ଅଗ୍ନିଶାଳିନୀ** - *କେନ୍ଦୁ:* (ବି.) : ଲାଲ ରଙ୍ଗର ମଧ୍ୟମ କିସମର ଧାନର ନାମ

**ଅଗ୍ନିଶିଖା** - *ଦେ:* (ବି.) : ଶତପୁଷ୍ପୀ, ଅନନ୍ତଗୁଳ୍ମ, ପାଞ୍ଚ ଆଙ୍ଗୁଳିଆ ଫୁଲ

**ଅଗ୍ରାଯ୍ୟ** - *କେ:* (ବିଂ.) : ଅଗ୍ରାହ୍ୟ, ଯାହା ଗ୍ରହଣଯୋଗ୍ୟ ନୁହେଁ

**ଅଗ୍ରିମ** - *ଅନେ:* (ବିଂ.) : ଆଗୁଆ, ଆଗତୁରା

**ଅଘ** - *ଦେ:* (ବି.) : ଅସୁର, ପାପ

**ଅଘଟ** - *ଢ:କ:* (ବି.ବିଂ.) : ନିଅଣ୍ଟ, ଅକୁଳାନ

**ଅଘଟଣ** - *ଚୌ:ଢେ:* (ବି.) : ନହେବା କଥା ହୋଇଗଲେ, ଦୁର୍ଘଟଣା

**ଅଘଟିଆ** - *ରା:* (ବିଂ.) : ଅକାର୍ଯ୍ୟକାରୀ, ନିଅଣ୍ଟ

**ଅଘନା** - *ଯା:କେ:* (ବି.ବିଂ.) କିଂଚିତ ନିର୍ବୋଧ, ବୋକା

**ଅଘନୀ** - *କେ:* (ବିଂ.) : ବୋକୀ

**ଅଘରା** - *କ:ଭ:* (ବିଂ.ବି.) : ଯାହାର ଘର ନାହିଁ, ଗୃହଶୂନ୍ୟ

**ଅଘରି** - *ଗ:କୋ:* (ବିଂ.) ଅବିବାହିତ, ଘରଣୀ ନଥିବା ଲୋକ, ଅଘୋରୀ, ବାସହୀନ

**ଅଘରିଆ** - *ସୁ:ଅ:ଚେ:* (ବି.) : ଜାତିବିଶେଷ

**ଅଘରି ପାଇଣ୍ଟୁ** - *ଗ:* (ବି.) ଅମଙ୍ଗଳ ପରାମର୍ଶ

**ଅଘରୁଆ** - *ଖୋ:* (ବି.) : ଆଭୀଜାତ୍ୟ ବିହୀନ

**ଅଘଷାଖିଆ** - *ନ:* (ବିଂ.) : ଦାନ୍ତ ନଘଷି ବା ସଫାନକରି ଖାଇବା (ବ୍ୟକ୍ତି)

**ଅଘା** - *ଦେ:ରା:* (ବି.) : ଓଲୁ, ନିର୍ବୋଧ

**ଅଘାଇ** - *ଭ:* (ବି.) : ଅକଳରେ ପଡ଼ିବା

**ଅଘାଇବା** - *ସୁ:* (କ୍ରି.) : ଖାଇଖାଇ ଅରୁଚି ଧରିବା

**ଅଘାର** - *ଗ:* (ବି.) : ଦେବତାଙ୍କ ଭୋଗ

**ଅଘୁଟ ବଥା** - *କେନ୍ଦୁ:* (ବିଂ.) : ଭୀଷଣ ବ୍ୟଥା

**ଅଘେଇ** - *ସ:ବ:* (କ୍ରି.ବିଂ.) : ନିଆଁ ଜାଳିବା, ଆଧିକ୍ୟ ହେତୁ ସାମୟିକ ବିତୃଷ୍ଣା

**ଅଘେଇ ଯିବା** - *ସ:* (କ୍ରି.) : ଚିଟା ଲାଗିବା, ବେଶୀ ହେବା, ବଳକା ହେବା

**ଅଘେର୍** - *ସ:* (ବିଂ.) : ପ୍ରଚୁର, ବହୁତ

**ଅଘୋଡା** - *ନବ:* (ବିଂ.) : ଅନାବୃତ, ଖୋଲା

**ଅଘୋରୀ** - *ଦେ:କ:ଗଜ:ଜ:* (ବିଂ.ବି.) କୁପଥଗାମୀ, ଶୌଚ ହେଉନଥିବା ସ୍ତ୍ରୀ, ସାମାଜିକ ନିୟମ ମାନୁନଥିବା ସ୍ତ୍ରୀ, ମଶାଣିରେ ରହି ଶବ ଖାଉଥିବା ବ୍ୟକ୍ତି, ଅସଂସାରୀ, ଏକପ୍ରକାର ନିର୍ବିକାର ସନ୍ୟାସୀ

**ଅଙ୍କ** - *ଗ:ଦେ:* (ବି.) : ସଂଖ୍ୟା, ଗଣିତ, ଦେହ

**ଅଙ୍କନୀ** - *ସ:* (ବି.) : ପେନ୍ସିଲ

**ଅଙ୍କପଟା** - *ଗ:* (ବି.) ଯେଉଁ ତାମ୍ର ଫଳକରେ ରାଜାଙ୍କ ଅଙ୍କ ଲେଖାଯାଏ

**ଅଙ୍କବିଷ** - *କେ:* (ବି.) : ପର୍ବ

**ଅଙ୍କରାତି** - *ଦେ:ଭ:ଅ:ଗ:* (ବି.) : ଏକ ଔଷଧ ଗୁଳ୍ମ, ବେଙ୍ଗାରି, କଣ୍ଟକାରୀ, ତୃଣ ବିଶେଷ, ଭେଙ୍ଗି ବାଇଗଣ

**ଅଙ୍କି** - *ଭ:ଗ:ସ:* (ବି.) : ବାଉଁଶରେ ତିଆରି ଛକିବିଶିଷ୍ଟ ଫାଟକ, ବାଡ଼ି ବଗିଚାକୁ ନିରୋଧ କରିବା ଟାଟି, କାଠଗଣ୍ଡିକୁ ଘୋଷାରିବା ପାଇଁ ବ୍ୟବହୃତ ଲୁହା

**ଅଙ୍କିଆ** - *ଗ:* (ବି.) କାଠ ଗଣ୍ଡିକୁ ଘୋଷାରିବା ପାଇଁ ବ୍ୟବହୃତ ଲୁହା

**ଅଙ୍କିତ** - *ପଦ୍ୟ:* (ବିଂ.) : ଚିହ୍ନିତ, ଲାଞ୍ଛିତ, ଚିତ୍ରିତ

**ଅଙ୍କୀ** - *ଦେ:* (ବି.) : କୋଳରେ ଧରିବା ବାଦ୍ୟଯନ୍ତ୍ର, ମୃଦଙ୍ଗ

**ଅଙ୍କୁଡ଼ି** - *ଦେ:* (ବି.) : ଆଙ୍କୁଡ଼ି, ବାଡ଼ି

**ଅଙ୍କୁର** - *ଢେ:ପଦ୍ୟ:ଦେ:* (ବି.) : ବୀଜରୁ ଉତ୍ପନ୍ନ ନୂତନ ଗଜା, କୋରକ, ମକୁଳ, କଢ଼ି

**ଅଙ୍କୁଶ** - *ଅନେ:* (ବି.) : ହାତୀକୁ ଆୟତ୍ତ କରିବା ଦଣ୍ଡ, କଟକଣା, ବାଧା, ନିୟନ୍ତ୍ରଣ, ଲଗାମ୍, ଲୁହାରେ ନିର୍ମିତ କେଞ୍ଚା ଅସ୍ତ୍ର

**ଅଙ୍କେମୋଡ଼ିଆ** - *ଭ:* (ବି.) : ବୁଲାଣିରାସ୍ତା

**ଅଙ୍କୋଲ୍** - *ଦେ:* (ବି.) : ଅଙ୍କୋଠ ବୃକ୍ଷ, ଆଙ୍କୁଲ୍ ଗଛ

**ଅଙ୍ଗ** - *ପଦ୍ୟ:ଦେ:* (ବି.) : ଶରୀରର ଭିନ୍ନ ଭିନ୍ନ ଅଂଶ

**ଅଙ୍ଗ୍‌ସଙ୍ଗ୍** - *ଦେ:* (ବି.) : ସହବାସ, ମୈଥୁନ

**ଅଙ୍ଗଛି** - *ବର:ଦେ:* (ବି.) : ଗାମୁଛା, କରିଆ

**ଅଙ୍ଗଦ** - *ଦେ:* (ବି.) : ବାଜୁବନ୍ଧ ଗାମୁଛା

**ଅଙ୍ଗନ୍** - *ବୌ:* (ବି.) : ଶଗଡ଼ ଚକରେ ବ୍ୟବହୃତ ତେଲ (ଜଡ଼ା ତେଲ ଓ ପୋଡ଼ା ନଡ଼ିଆ କତାର ମିଶ୍ରଣ)

**ଅଙ୍ଗନବାଡ଼ି** - *ସ:* (ବି.) : ଗାଁରେ ଛୋଟ ପିଲାଙ୍କ ପାଠପଢ଼ା ସ୍ଥାନ

**ଅଙ୍ଗନାଇ** - *ଗଦ୍ୟ:* (ବି.) : ନାଚଗୀତ ବିଶେଷ

**ଅଙ୍ଗପଡ଼ିବା** - *ଗ:* (ବି.) : ଶଯ୍ୟାଶାୟୀ ହେବା

**ଅଙ୍ଗମଲୁଖ** - *ସ:* (ବି.) : ଦେହର ମଳି

**ଅଙ୍ଗରକ୍ଷୀ** - *ପଦ୍ୟ:* (ବି.) : ରାଜାଆଦିଙ୍କ ଶରୀରକୁ ଜଗିବା ଭୃତ୍ୟ, ବ୍ୟକ୍ତିଗତ ସୁରକ୍ଷା କର୍ମୀ

**ଅଙ୍ଗରଖା** - *ପଦ୍ୟ:* (ବି.) : ହାତ ନ ଥିବା ଓ ଅଣ୍ଟାପର୍ଯ୍ୟନ୍ତ ଲମ୍ବିଥିବା କୁର୍ତ୍ତା

**ଅଙ୍ଗରା** - *ଅନେ:* (ବି.) : ନିଆଁ ଖଣ୍ଡେ, ଅଙ୍ଗାର, କୋଇଲା

**ଅଙ୍ଗରାନ୍ତି** - *ଭ:* (ବି.) ଲତାବିଶେଷ, ଅଙ୍କରାନ୍ତି

**ଅଙ୍ଗା** - *ଅନେ:* (ବି.) : ଜାମା, ପୁଅ ବା ଝିଅଙ୍କର ପୋଷାକ, ବୋଝର ଏକ ଅଂଶ, ବାହୁଙ୍ଗିରେ ବୁହାଯିବା ଭାରର ଗୋଟିଏ ମୁଣ୍ଡରେ ଝୁଲୁଥିବା ବୋଝ

**ଅଙ୍ଗାକରିବା** - *ସ:* (କ୍ରି.) : କୋଳେଇବା, ଆଲିଙ୍ଗନ କରିବା

**ଅଙ୍ଗାକର୍‌ବାର୍** - *ସୁନ:* (କ୍ରି.) : ଆଲିଙ୍ଗନ କରିବା

**ଅଙ୍ଗା ଖାଇବା** - *ବ:* (କ୍ରି.) : ଭାର ବହନ କଲାବେଳେ ଗୋଟାଏ ପାଖରେ ଓଜନ କମ୍ ହେଲେ

**ଅଙ୍ଗାଙ୍ଗି** - *ଦେ:* (ବି.) : ଆତ୍ମୀୟତା, ନିବିଡ଼

**ଅଙ୍ଗାଟିଆ** - *ଖୋ:* (ବି.) : ବୋକା

**ଅଙ୍ଗାବରଣ** - *ସ:* (ବି.) : କୁର୍ତ୍ତା, ପୋଷାକ

**ଅଙ୍ଗାର** - *ଗ:ଦେ:* (ବି.) : କାଠ କୋଇଲା, ଅଙ୍ଗାରକାମ୍ଳ ବାଷ୍ପ, ପ୍ରବାଳ, କଳା ଦୁଦୁରା

**ଅଙ୍ଗାରକ** - *ଦେ:* (ବି.) : ରାକ୍ଷସ

**ଅଙ୍ଗାସିଆ** - *ଯା:ଖୋ:* (ବିଂ.ବି.) : ହାଲୁକା, ବୋକା

**ଅଙ୍ଗି** - *ଅନେ:* (ବି.) : ଜାମା, ପୋଷାକ, କୁର୍ତ୍ତା, କାମିଜ, ଶରୀରର ଉପର ଭାଗରେ ପିନ୍ଧା ଯାଉଥିବା ବସ୍ତ୍ର

**ଅଙ୍ଗିଆ** - *ଢ:ଗ:* (ବି.) : ଜାମା, ବାତରୋଗ

**ଅଙ୍ଗୁଠି** - *କେନ୍ଦୁ:* (ବି.) : ଗୋଡ଼ର ମୁଦି

**ଅଙ୍ଗୁଳି** - *ଅନେ:* (ବି.) : ଆଙ୍ଗୁଠି

**ଅଙ୍ଗେଇବା** - *କ:* (କ୍ରି.) ଏକପାଖିଆ ହୋଇଯିବା

**ଅଙ୍ଗେନ୍** - *ସ:* (ବି.) : ଶଗଡ଼ ଅଖରେ ଦିଆଯାଉଥିବା କାଣ୍ଟି ତେଲ

**ଅଙ୍ଗେନିଭା** - *କ:* (ବିଂ.) : ନିଜ ଅନୁଭୂତି

**ଅଙ୍ଘି** - *କଝ:* (ବି.) : ସାର୍ଟ, ଜାମା

**ଅଚକଟିଆ** - *କେନ୍ଦୁ:* (ବିଂ.) ଅତ୍ୟନ୍ତ ଅରୁଚିକର

**ଅଚକନ୍** - *ସଂ:* (ବି.) : ଏକ ଚିପା ପୋଷାକ

**ଅଚକରା** - *ଭ:କେ:କେ:* (ବିଂ.) : ଅତିଶୟ, ଖରାପ ଅର୍ଥରେ ପ୍ରଯୁକ୍ତ, ଅତ୍ୟଧିକ

**ଅଚକିବା** - *ପଦ୍ୟ:* (କ୍ରି.) ଦୋହଲିବା, ଝୁଲିବା

**ଅଚଞ୍ଚଳ** - *ପଦ୍ୟ:* (ବି.) : ସ୍ଥିର, ଦୃଢ

**ଅଚଞ୍ଚା** - *ଗ:ପଦ୍ୟ:* (ବିଂ.ବି.) ଯାହା ଚଞ୍ଚାହୋଇ ନଥାଏ, ଅଚଞ୍ଚା, ଅସାଙ୍ଗୁଆ, କଷ୍ଟଦାୟକ, ମନ୍ଦ

**ଅଚମିତ** - *ଅ:* (ଅ.) : ହଠାତ୍, ଆଶ୍ଚର୍ଯ୍ୟ

**ଅଚମ୍ବା** - *ଗଦ୍ୟ:* (ବିଂ.) : ଆଶ୍ଚର୍ଯ୍ୟ ଘଟଣା

**ଅଚଲ୍ଲନୀ** - *ସୁବ:* (ବିଂ.) : ଯାହା ଚଳଣି ଓ ପରଂପରା ନୁହେଁ

**ଅଚଲନ୍** - *ସୁବ:* (ବିଂ.) : ଲକ୍ଷଣହୀନ, ଅଲକ୍ଷଣ

**ଅଚଳ** - *ଅନେ:* (ବି.ବିଂ.) : ବୃକ୍ଷ, ପର୍ବତ, ପଥର, ଖୁଣ୍ଟ, ବ୍ରହ୍ମ, ଆତ୍ମା, ଶିବ, ଗତିରହିତ, ଅକ୍ଷମ, ଅସମର୍ଥ, ଦୃଢ, ସ୍ଥିର, ଅପ୍ରଚଳିତ, ଦୋଷ ବା ତ୍ରୁଟିଯୁକ୍ତ, ମୂଲ୍ୟହୀନ

**ଅଚଳନ** - *ଦେ:* (ବିଂ.) : ଅସଦାଚାର

**ଅଚଳନ୍ତି** - *ଅନେ:* (ବିଂ.) : ଯାହା ଚଳୁନାହିଁ, ସ୍ଥାବର, ବ୍ୟବହାର ପାଇଁ ଅଯୋଗ୍ୟ

**ଅଚଳାଚଳ** - *ଅନେ:* (ବିଂ.) : ଅସରନ୍ତି, ଅଜସ୍ର, ବହୁତ, ପ୍ରଚୁର

**ଅଚା** - *ଗଦ୍ୟ:ଗ:ନ:କ:* (ବି.ବିଂ.) : ସ୍ୱର, ପଥ, ଚାଷ ଜମିର ପରିମାଣ

**ଅଚା ଜଗିବା** - *କ:* (କ୍ରି.) : ନିୟମ ଭିତରେ ରହି କାମ କରିବା

**ଅଚାଞ୍ଚିଆ** - *ନ:* (ବିଂ.) : ଚଞ୍ଚା ହୋଇନଥିବା, ହୁଣ୍ଡା ବା ଅମାନିଆ ଲୋକ, ଅମାନିଆ ବଳଶାଳୀ (ବ୍ୟକ୍ତି)

**ଅଚାଧରିବା** - *କ:* (କ୍ରି.) : ଚାଷରେ କୃଷକ ହଳଲଙ୍ଗଳ ସାହାଯ୍ୟରେ କାଟୁଥିବା ବୃତ୍ତ

**ଅଚାନକ** - *ଅନେ:* (ଅ.ବିଂ.) : ଅକସ୍ମାତ୍, ହଠାତ୍

**ଅଚାବୁଆ** - *ସୁବ:ବା:* (ବିଂ.) : ଭୟ କରିବା, ବିପଦ ଯୋଗୁ ବ୍ୟତିବ୍ୟସ୍ତ ହେବା, ଆଶ୍ଚର୍ଯ୍ୟ

**ଅଡାବୁହା** - *ବ:ସ:ଚୌ:* (ବି.ବିଂ.) : ଭୀତତ୍ରସ୍ତ ହେବା, ଭାବି ନପାରିବା, ଭୟ ବିହ୍ୱଳ

**ଅଡାହିଦା** - *କ:* (ବିଂ.) : ଅଲୋଡ଼ା

**ଅଡି** - *ଦେ:* (ବିଂ.) : ଶୀଘ୍ର

**ଅଡିଢ଼ୀ** - *ସ:* (ବି.) : ଅମାନିଆ ଦୁଷ୍ଟ ସ୍ତ୍ରୀ

**ଅଡିଣା** - *ଭ:* (ବିଂ.) : ଅଚିହ୍ନା

**ଅଡିନ୍‌ହାର୍** - *ସ:* (ବିଂ.) : ଅଚିହ୍ନା, ଅପରିଚିତ

**ଅଡିନା** - *କ:ନବ:କୋ:କଳା:* (ବିଂ.) : ଅପରିଚିତ, ଅପରିଚିତ, ଅଜ୍ଞାତ, ଜାଣିନଥିବା

**ଅଡିନ୍ତା** - *ଅନେ:* (ବିଂ.) : ଚିନ୍ତାଶୂନ୍ୟ

**ଅଚେଇବା** - *ନ:* (କ୍ରି.) : ଲଙ୍ଗଳରେ ସମଗ୍ରଜମିକୁ ସମାନସମାନଖଣ୍ଡରେ ଭାଗକରିବା

**ଅଚେତନ** - *ଅନେ:* (ବିଂ.) : ସଂଜ୍ଞାହୀନ

**ଅଚ୍ଛମର, ଅଚ୍ଛମୋର** - *ଅନେ:* (କ୍ରି.) : ଦୀର୍ଘାୟୁ

**ଅଚ୍ଛ୍ୱା** - *କଖ:* (ବି.) : ଛାଉଣୀ

**ଅଛ** - *ଅନେ:* (କ୍ରି.) : ଥିବା ଅର୍ଥରେ

**ଅଛ୍‌ରା** - *ଅନେ:* (ବି.କ୍ରି.) : ବର୍ଷାର ଏକଥର, ଅସରା, କାଦୁଅ କରି ପଟା ମାରି ଧାନ ବୁଣିବା, ଧାନକୁ ଗଜା କରି କାଦୁଅରେ ବୁଣିବା ପ୍ରଣାଳୀ, ଅସରାଏ, କାଦୁଅରେ ଧାନବୁଣା, ବର୍ଷାଦିନରେ ବେହ୍ନା ବସାଇବାର ପ୍ରକ୍ରିୟାବିଶେଷ, ପହ୍ଲା ପକାଇବା

**ଅଛ୍‌ରେ** - *ବ:ସ:* (ବି.) : ଅସରାଏ, ଛେକାଏ

**ଅଛଇ** - *ଦେ:* (କ୍ରି.) : ଅଟଇ, ଅଛି

**ଅଛଇଚ** - *ଅ:କ:ଦେ:* (ବିଂ.) : ଅଶୌଚ, ମାରା

**ଅଛଚ୍‌ରା** - *ଅ:* (ବି.) : ଗଜାବିହନ, ଥର

**ଅଛଞ୍ଚା** - *ନବ:* (ବିଂ.) : ଶୌଚ ହୋଇନଥିବା, ଅମାର୍ଜିତ

**ଅଛଟକେ** - *ଗ:* (ବି.) : ଆକସ୍ମିକ, ଅଜ୍ଞାତ

**ଅଛଡ଼ା** - *ଦେ:ଗ:* (ବିଂ.ବି.) : ଅକାଣ୍ଡିଆ, ଚୋପା ଛଡ଼ାଯାଇନଥିବା

**ଅଛତି** - *ଦେ:* (କ୍ରି.) : ଅଛନ୍ତି

**ଅଛଦରା** - *ପୁ:* (ବିଂ.) : ଦୁଷ୍ଟ

**ଅଛନ୍** - *ଅନେ:* (କ୍ରି.) : ଅଛନ୍ତି

**ଅଛନଅଚ୍ଛୁ** - *ଗ:* (ବି.) : ଅନିର୍ଦ୍ଦିଷ୍ଟ

**ଅଛନା** - *ସୁ:* (ବି.) : ଅଛଣା

**ଅଛନ୍ଦା** - *ଗ:* (ବି.) : ଛନ୍ଦା ହୋଇନଥିବା

**ଅଛପ** - *ଦେ:* (ବିଂ.) : ଖୋଲା, ଅଲୁଚା

**ଅଛପା** - *ଢ:କ:* (ବିଂ.) ଗୋପନ, ଛପାହୋଇନଥିବା, ଜଣା, ଲୁଚି ନରହିବା

**ଅଛବ** - *ଅନେ:* (ବିଂ.) : ଅଛୁଆଁ

**ଅଛମର** - *ଅନେ:* (ବିଂ.) : ଅମର

**ଅଛରା** - *ସୁବ:* (ବି.) : ବର୍ଷା ଅସରା

**ଅଛାଢ଼** - *ଖୋ:* (ବିଂ.) : ଅସାଢ଼, ଶକ୍ତିହୀନ

**ଅଛାରିବା** - *ପଦ୍ୟ:* (କ୍ରି.) : ପାଛୁଡ଼ିବା

**ଅଛାଁଡ଼** - *ଖ:* (ବି.) : ବଳଦଗାଡ଼ିର ଏକ ଅଂଶ ଯହିଁରେ ଚକ ଲାଗେ

**ଅଛିଆଣି** - *କ:* (ବିଂ.) : ଛପର ହୋଇନଥିବା ଘର

**ଅଛିଣ୍ଡା** - *ଅନେ:* (ବିଂ.) : କଳିଆଲୋକ, ସୀମା ଯେ ଉଲଂଘନ କରିଯାଏ, ଅସମାଧିତ

**ଅଛୁତ** - *ଛ:କ:* (ବିଂ.) : ଅସ୍ପୃଶ୍ୟ, ଅଛୁଆଁ

**ଅଛୁତଗାର** - *ଛ:* (ବିଂ.) : ଅଚ୍ୟୁତାନନ୍ଦଙ୍କଠାର ବାକ୍ୟ

**ଅଛେତ୍** - *କଳା:* (କ୍ରି.) : ଅଛନ୍ତି

**ଅଛେଦରୀ** - *କ:* (ବିଂ.) : ଅସଷଣା (ସ୍ତ୍ରୀ)

**ଅଜ** - *ମା:ଦେ:* (ବି.) : ଅଭ୍ୟାସ

**ଅଜ୍ଗନ୍ଧା** - *ଦେ:* (ବି.) : ବଣତୁଳସୀ

**ଅଜ୍ଗର** - *ଅନେ:* (ବି.) : ସାପ ବିଶେଷ

**ଅଜ୍ନା** - *କଝ:* (ବିଂ.) : ଅଜଣା

**ଅଜ୍ବଜିଆ** - *ଦେ:* (ବିଂ.) : ଚଗଲା

**ଅଜ୍ମେଦ୍** - *କଳା:* (ବିଂ.) : ଅସଫଳ, ବିଫଳ, ଅକୃତକାର୍ଯ୍ୟ

**ଅଜଗବ** - *କ:ଦେ:* (ବିଂ.) ଅଯୋଗ୍ୟ, ଅପଦାର୍ଥ, ବୋଡ଼ାସାପ

**ଅଜଗର ପିତା** - *ବ:* (ବିଂ.) : ଖୁବ୍ ପିତା

**ଅଜଗରିଆ** - *ଗ:* (ବିଂ.) : ଅଳସୁଆ

**ଅଜଟ** - *ଅ:* (ବିଂ.) : ଅଡୁଆ, ଅଝଟ

**ଅଜଟା** - *ଦେ:* (ବି.) : ଭୂଇଁ ଅଁଳା

**ଅଜତରା** - *କ:ଭ:* (ବିଂ.ବି.) : ଅପରିଷ୍କାର, ଅକାମିକା

**ଅଜତରିଆ** - *କେ:* (ବିଂ.) : ଅସନା

**ଅଜପା** - *ଦେ:କେ:ଛ:* (ବିଂ.ବି.) : ଜପି ନହେବା, 'ଅ' କୁ ବ୍ରହ୍ମ ମନେକରି ଜପିବା, ଜପହୀନ ମନ୍ତ୍ର

**ଅଜବ** - *ଅନେ:* (ବିଂ.) : ଆଶ୍ଚର୍ଯ୍ୟଜନକ, ଅଖାଡୁଆ, ଅଦ୍ଭୁତ, ଅସ୍ୱାଭାବିକ, ବିଚିତ୍ର

**ଅଜବଜ** - *ଅ:* (ବିଂ.) : ଗୋଳମାଳିଆ

**ଅଜମ୍ବର କଥା** - *ବ:* (ବି.) : ଆଶ୍ଚର୍ଯ୍ୟର କଥା

**ଅଜରା** - *ଅନେ:* (ବିଂ.ବି.) : ଯେ କେବେବି ସୁଧାର ହୋଇପାରେନା, ସଂସ୍କାରରହିତ, ଅଶୋଧିତ, ନିର୍ଲଜ, ଯିଏ ବାରମ୍ବାର ଚେଷ୍ଟାସତ୍ତ୍ୱେ ବାଟକୁ ଆସେନା, ନିଲଠା, ବାର୍ଦ୍ଧକ୍ୟହୀନ, ଦୁଷ୍ଟ, ଜାରଜ

**ଅଜରାଅମରା** - *ଛ:* (ବିଂ.) : ଯାହାର ମୃତ୍ୟୁ ନାହିଁ (ଯୁଗ୍ମଶବ୍ଦ)

**ଅଜରା ପିଲା** - *ସଂ:* (ବି.) : ନିର୍ଲ୍ଲଜ ପିଲା

**ଅଜା** - *ଦେ:କଳା:କ:* (ବି.) : ବାପାଙ୍କ ବାପା, ମାତାମହ, ପିତାମହ, ମା'ଙ୍କ ବାପା ଓ ବାପାଙ୍କ ଶ୍ୱଶୁର

**ଅଜାଏଜବରଦସ୍ତ** - *କ:* (ବି.) : ଜୋର ଜବରଦସ୍ତ

**ଅଜାଗା** - *ଗ:* (ବି.) : ଗୁପ୍ତାଙ୍ଗ, ଭୁଲସ୍ଥାନ

**ଅଜାଗ୍ରତ, ଅଜାଗର୍ତ** - *କୋ:* (ବିଂ.) ଅସାବଧାନ

**ଅଜାଜି** - *ଦେ:* (ବି.) : ଧଳା ଓ କଳା ଜିରା

**ଅଢାଡ଼ିବା** - *ଅନେ:* (କ୍ରି.) : ଢାଳିଦେବା

**ଅଢାଣୁଆ** - *ଗ:* (ବିଂ.) : କେହି ଜାଣିନଥିବା ଭଳି, ଅଜ୍ଞାତ

**ଅଢାତି** - *ଗଦ୍ୟ:ଜ:ଗ:* (ବି.) : ଭିନ୍ନ ଜାତି, ନୀଚଜାତି, ଅନ୍ୟଜାତି

**ଅଢାତିଆ** - *ଜ:* (ବି.) : ଜାତିରୁ ବାହାର

**ଅଢାନ୍‌ବାର୍** - *ସ:* (ବିଂ.) : ନଜାଣିବା ବ୍ୟକ୍ତି

**ଅଢାନା** - *ମ:ସୁ:* (ବିଂ.କ୍ରି.) ଅଜଣା, ଆଉଜାଇବା

**ଅଢାବାର** - *ସୁବ:* (କ୍ରି.) : ଆଉଜେଇବା

**ଅଢାଶୁର** - *କ:ଚୌ:* (ବି.) : ସ୍ତ୍ରୀ ବା ସ୍ୱାମୀର ଅଜା, ଅଜା ଶଶୁର

**ଅଢିନ୍** - *ଦେ:* (ବି.) : ଚମଡ଼ା

**ଅଢିରା** - *କେ:* (ବିଂ.) : ଅମାର୍ଜିତ

**ଅଢୀନ** - *ଭ:* (ବି.) : ଅଜୀର୍ଣ୍ଣ

**ଅଢୀବା** - *ଭ:* (ବି.) : ଜୀବନ ନଥିବା ଭଳି ଚେହେରା

**ଅଢୀରନ୍** - *କଳା:ଚୌ:* (ବି.ବିଂ.) : ଅଜୀର୍ଣ୍ଣ, ଜୀର୍ଣ୍ଣ ନହେବା

**ଅଢୀର୍ଣ୍ଣ** - *ଅନେ:* (ବି.) : ବଦ ହଜମି

**ଅଢୁ** - *ଗଦ୍ୟ:* (ବିଂ.) : ପବିତ୍ର

**ଅଢେଇ** - *ଝା:* (କ୍ରି.ବିଂ.) : ଆଉଜାଇ ବସିବା

**ଅଢେଇବା** - *ସ:ବ:କଳା:* (କ୍ରି.) : ଗୋଟିଏ କଣରେ ରଖିବା, ଆଉଜାଇବା, ଓଳେଇବା, ଝାଡୁ କରିବା

**ଅଢେଇହେବା** - *ସୁବ:* (କ୍ରି.) : ଅନ୍ୟକୁ ଦେଖା ନ ଦେଇ ଚୁପ୍ କରି ଛିଡା ହେବା

**ଅଜ୍ଞାନ ଘାଣ୍ଟ** - *କେ:* (ବି.) : ସବୁପ୍ରକାର ପରିବା ପଡ଼ି ହେଉଥିବା ଘାଣ୍ଟ ତରକାରୀ

**ଅଜ୍ଞାନ ଚାପୁଡ଼ା** - *ଜ:* (ବି.) : ଶକ୍ତଚାପୁଡ଼ା ଯେଉଁଥିରେ କି ଲୋକର ଜ୍ଞାନ ହଜିଯିବା, ନିର୍ଘାତ ଚାପୁଡ଼ା, ଶକ୍ତ ଚାପୁଡ଼ା

**ଅଝଟ** - *ଅନେ:* (ବି.) : ଅଳି

**ଅଝଟିଆ** - *ଅନେ:* (ବିଂ.) : ଅବୁଝା

**ଅଝାଡ଼** - *ଖୋ:* (ବିଂ.) : ଘଞ୍ଚ

**ଅଝିଟ** - *ଢେ:* (ବିଂ.) : ଏକଜିଦିଆ

**ଅଝୁଁଆ** - *ଭ:* (ବି.) : ଗୋଟାପୁଣି

**ଅଞ୍ଚଳ୍** - *ଦେ:ପ:* (ବି.) : ପଣତ

**ଅଞ୍ଚା** - *ଦେ:* (ବି.) : ହଳଲଙ୍ଗଳରେ ଜମିଚାଷ

**ଅଞ୍ଜଡ଼ୋ** - *ସ:* (ବିଂ.) : ବେଡ଼ୀ, ଯାହାର ବୁଦ୍ଧି ନାହିଁ

**ଅଞ୍ଜନ** - *ଅନେ:* (ବି.) : କଜ୍ଜଳ

**ଅଞ୍ଜନା, ଅନ୍ଦନା** - *ଗ:* (ବି.) : ହରଗଉରା ଫୁଲ

**ଅଞ୍ଜନୀ** - *ଦେ:* (ବି.) : କାଳାଞ୍ଜନୀ ବୃକ୍ଷ, କଟୁକୀ

**ଅଞ୍ଜଳି** - *ଅନେ:* (ବି.) ଦୁଇ ହାତରେ ଯୋଡ଼ପତ୍ର, ଦୁଇ ହାତ ପାପୁଲିର ମିଳିତ ମୁଦ୍ରା

**ଅଣ୍ଡି** - *ଅ:ଗଦ୍ୟ:* (ବିଂ.ବି.) : ଏକ ଆଦିମ ଅଧିବାସୀ ଗୋଷ୍ଠୀ

**ଅଟ୍‌କାଲି** - *ସୁବ:* (ବି.) : ଗୁଡ଼ ପଣାରେ ସିଝା ଯାଉଥିବା ପିଠଉର ବୁନ୍ଦି, ଅଟକାଳି

**ଅଟକ** - *ଦେ:କେ:* (ବି.) : ବାଡ଼ପକେଇବା, ବନ୍ଦ୍, ବାଛନ୍ଦ, ବାଧା

**ଅଟକଳ** - *କ:ଢେ:ଦେ:* (ବି.) : ଅନୁମାନ, ଅନ୍ଦାଜ

**ଅଟକା** - *କେନ୍ଦୁ:* (ବି.) : ଛୋଟ ଧାନ ବିଡ଼ା

**ଅଟକାଳି** - *ଅନେ:* (ବି.ବିଂ.) : ଚାଉଳ ଚୂନା ଗୁଡ଼ ନଡ଼ିଆ ପଡ଼ି ପ୍ରସ୍ତୁତ ଜାଉ, ତରଣ, ଯେକୌଣସି ଚୂନାରେ ପ୍ରସ୍ତୁତ ମଣ୍ଡ ପରି ଖାଦ୍ୟ, ବଡ଼ଓଷାରେ କରାଯାଉଥିବା ଚାଉଳ ଗୁଡ଼ର ଯାଉ, ଚାଉଳ ଗୁଣ୍ଡରେ ତିଆରି ହୋଇଥିବା ଖିରି, ଖାଦ୍ୟ ବିଶେଷ

**ଅଟଙ୍ଗା** - *ବା:କେ:କ:* (ବି.) : ବିଡ଼ାପିଟା ପରେ ଯେଉଁ ବିଡ଼ା ପତୁଳି ବା ବେଙ୍ଗଳାକୁ ଯାଏନାଇଁ, କେରାଏ (ମଝି ଆଙ୍ଗୁଳି ଓ ବୁଢାଆଙ୍ଗୁଠି ଟିପ ପରସ୍ପର ଲାଗିଲେ ଯେତେ), ହାତରେ ଧରିହେବା ଭଳି ଧାନଗଛର ପୁଳା

**ଅଟଙ୍ଗାର୍** - *ଗଦ୍ୟ:* (ବି.) : ପିଲାଚୋର

**ଅଟଙ୍କୁ** - *ଗ:* (ବି.) : ମୂଳଧନ

**ଅଟପା** - *ଇ:* (ବିଂ.) : ଅନୁମାନ

**ଅଟରା** - *ଗ:* (ବି.) : ଖରାପ ମାର୍ଗ

**ଅଟରି** - *ଦେ:* (ବି.) : ଜିଦିଧରି ବସିବା କ୍ରିଆ

**ଅଟରିଆ** - *ଅ:* (ବିଂ.) : ଅବାଟକୁ ଯାଉଥିବା ବ୍ୟକ୍ତି

**ଅଟଳ** - *ଅନେ:* (ବିଂ.) : ଯେ କଥାରୁ ଟଳେ ନାହିଁ

**ଅଟା** - *ଅନେ:* (ବି.) : ଗହମ ଚୂନା, ବରିଆଁ, ପାଳଦଉଡ଼ିରେ ନିଆଁରହିବା, ମୃତ୍ୟୁକାଳୀନ ଶବଦାହ ବେଳେ ବ୍ୟବହୃତ ପାଳବରିହା, ନିଆଁବରିହା

**ଅଟାଲି** - *ସ:ସୁବ:* (ବି.) : ଆଟୁଘର ଉପର ମହଲା, ଅଟ୍ଟାଳିକା, ଅଲରି ବଲରି କ୍ରିଆ

**ଅଟାଳ** - *ନବ:କୋ:* (ବି.) : ନଦୀ ଉପରେ ଥିବା ଜମି

**ଅଟି** - *କେ:* (ବି.) : କୁଟାବିଡ଼ା

**ଅଟୁମୁ** - *ଗ:* (ବି.) : ମୂଳଧନ

**ଅଟେଇ** - *ଖୋ:କ:ଗ:* (ବି.) : ନଡ଼ାରେ ପ୍ରସ୍ତୁତ ହୋଇଥାଏ ଯାହାକୁ ଧୂଆଁକରି ମଶା ଘଉଡ଼ାଯାଏ, ବାଡ଼, ଗାଈଗୋରୁ ଛେଳି ମେଣ୍ଢାଙ୍କୁ ଅଟକାଇବା ପାଇଁ ଘେରା, ଧାନଘର

**ଅଢା** - *ପଦ୍ୟ:* (ବି.) : ପାଳରେ ତିଆରି ହୋଇଥାଏ ଯେଉଁଥରେ ନିଆଁଧରାଇ ରଖିହୁଏ, ବରିଆ, ବନ୍ଦିଆ/ପେଷା ହୋଇଥିବା ଗହମର ଗୁଣ୍ଡ

**ଅଠରଖାଡ଼ିଆ** - *ଗ:* (ବି.) : ଜେଲ

**ଅଠା** - *ଅନେ:* (ବି.) : ଗଛର ରସ, ଦୁଇଟି ପଦାର୍ଥ ଯୋଡ଼ିବାକୁ ବ୍ୟବହୃତ ପଦାର୍ଥ

**ଅଠାକାଠି** - *ଅନେ:* (ବି.) : ଅସୁବିଧା, ଅଠା ଲାଗିଥିବା କାଠି, ପକ୍ଷୀଧରାର କାଣ୍ଡିଆ,

ଚଢେଇ ଧରିବା ପାଇଁ କାଠିରେ ଅଠା, ଚୋପ୍‌କାଣ୍ଡିଆ

**ଅଠାଠିକ୍** - *ଦେ:ଖୋ:* (ବିଂ.କ୍ରି.) : ବରାବର, ସାବାଡ଼

**ଅଠାନ** - *ବୌ:ଦେ:ସ:ନୁ:* (ବି.ବିଂ.) : ଅଜାଗା, ଅଥାନ

**ଅଠାବୋଳା (କଥା)** - *ସଂ:* (ବି.) : ଦୋଷଦେବା (ପ୍ରସଙ୍ଗ)

**ଅଠାଳ** - *ଢେ:* (ବି.) : ମାଂସ

**ଅଠାସୁଆ** - *ଗ:* (ବି.) : ଅନିର୍ଦ୍ଦିଷ୍ଟ ମତ ଦେଉଥିବା ଲୋକ, ଠାସ୍‌କୁ ମାରିବା ବ୍ୟକ୍ତି

**ଅଠିକଣା** - *ଗଦ୍ୟ:* (ବି.) : କ୍ରମହୀନ, ଉଦ୍ଦେଶ୍ୟହୀନ

**ଅଠିପର** - *ନବ:ବୌ:* (ବି.ଅ.) ସବୁ ସମୟରେ, ସବୁବେଳେ

**ଅଠି ପହର** - *ଝା:ଖୋ:* (ବି.) : ଆଠ ପ୍ରହର କାଳ, ଅହରହ ଲାଗିରହିବା

**ଅଠିଲ** - *ପଦ୍ୟ:* (ବିଂ.) : ବିନାପରିଶ୍ରମରେ ବହୁତ ଖାଦ୍ୟ ଖାଇ ହୃଷ୍ଟପୁଷ୍ଟ ହୋଇଥିବା

**ଅଠିଲା** - *ବା:* (ବିଂ.) : ଅଠାଳିଆ

**ଅଠିଁବା** - *ସୁ:* (କ୍ରି.) : ଭିଡ଼ିବା

**ଅଠୁଖୁଣା** - *କେନ୍ଦୁ:* (ଅ.) : ସବୁବେଳେ

**ଅଠୁଁ କନୁ** - *ସ:* (ଅ.) : ସବୁବେଳେ, ଅହରହ

**ଅଢ଼ଙ୍ଗ** - *ଦେ:* (ବି.) : ଖଟା

**ଅଡଭି** - *ଗଞ:* (କ୍ରି.) : ଅଝଟ, ଅଳି

**ଅଡରି** - *ଗ:* (ବିଂ.) : ଅଳି ଅଝଟ

**ଅଡା ଚାଉଳିଆ** - *ଗ:* (ବିଂ.) : ଅଧିକ ଖାଉଥିବା ବ୍ୟକ୍ତି, ପେଟଖିଆ

**ଅଡୁଆ** - *ଅ:କେ:ଦେ:* (ବି.) : ଅସଜଡ଼ା, ଝଂଜାଳ, ଅଲରା, ଛନ୍ଦାଛନ୍ଦି

**ଅଡୁଆପେଜ୍** - *କଳା:* (ବି.) : ଉପରଓଳି ଖାଉଥିବା ଭାତ

**ଅଡ଼** - *ଗ:* (ବି.) : ଅଭିମାନ, ଜିଦ୍

**ଅଡ଼ୁବା** - *ମା:* (କ୍ରି.) : ଘୋଡ଼େଇ ହେବା

**ଅଡ଼ୁରି** - *କୋ:* (ବି.) : ହାଟ, ବଜାର, ସାପ୍ତାହିକ ହାଟ

**ଅଡ଼ଉଲ୍** - *ଦେ:* (ବିଂ.) : ବେଢଙ୍ଗ

**ଅଡ଼କସ ରଖିବା** - *ରା:* (କ୍ରି.) : ରାଗ ରଖିବା

**ଅଡ଼କା** - *ଦେ:* (କ୍ରି.) : ଅଡକରା

**ଅଡ଼ଙ୍ଗା ମଣିଷ** - *ଗ:* (ବି.) : ସ୍ୱଳ୍ପବୁଦ୍ଧିଆ ମଣିଷ

**ଅଡ଼ଙ୍ଗ** - *ଗ:ସ:* (ବି.ବିଂ.) : ଛୋଟ ପିଣ୍ଡା, ବୋକା

**ଅଡ଼ଙ୍ଗା** - *ନବ:ଗଞ:କୋ:ରା:* (ବି.) : ଆଚାର, ଆମ୍ବ, ଲେମ୍ବୁ ଆଦିର ଆଚାର

**ଅଡ଼ଙ୍ଗାବାଜ୍** - *ଦେ:* (ବିଂ.) : କଜିଆଖୋର

**ଅଡ଼ଙ୍ଗା ମାଟୁ** - *ଗଞ:ଗ:* (ବି.) ଆଚାରଝୋଳ, ମସଲା, ଆଚାରର ରସ

**ଅଡ଼ଣା** - *ଗ:* (ବି.) : ଓଢଣା

**ଅଡ଼ତ** - *ପଦ୍ୟ:ବ୍ୟ:* (ବି.) : ପଣ୍ୟଦ୍ରବ୍ୟ କ୍ରୟ ବିକ୍ରୟ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ

**ଅଡ଼ଭୁଷା** - *କ:* (ବିଂ.) : ଅବାଗିଆ କାଣ୍ଡଜ୍ଞାନ ଶୂନ୍ୟ ବ୍ୟକ୍ତି

**ଅଡ଼ଭୁଷିଆ** - *କ:* (ବିଂ.) : ଅଖାଡୁଆ

**ଅଡ଼ସେଇ** - *ଗ:* (ବି.) : ଆକ୍ରୋଶ ରଖିବା

**ଅଡ଼ା** - *ଅନେ:* (ବି.) : କାଠଡିଆରି ମାପ ଏକକ, ଶଗଡ଼ରହିବା ସ୍ଥାନ, ପୋଷାପକ୍ଷୀଙ୍କୁ ରଖିବାପାଇଁ ନିର୍ମିତ ଲୁହା ପିଞ୍ଜରା, କିଳିଣି, ଅର୍ଗଳି, ବାଡ଼, ବାଉଁଶବାନ୍ଧି ସୁରକ୍ଷିତ ରଖିବା ସ୍ଥାନ, ଲୁଗା ଶୁଖାଇବା ବାଡ଼ି, ଶସ୍ୟ ମାପକ ଏକକ, ଶସ୍ୟ ମାପଯନ୍ତ୍ର, ଫସଲ ବା ଖଳାବାଡ଼ି ଚାରିପଟେ ଥିବା ଅସ୍ଥାୟୀ ବାଡ଼

**ଅଡ଼ାଅଡ଼ି** - *ଦେ:* (ବିଂ.) : ରୁଷାରୁଷି, ରଗାରଗି

**ଅଡ଼ାଙ୍ଗା** - *କଝ:* (ବି.) : ଛେଳି

**ଅଡ଼ାଚ** - *କେ:* (ବିଂ.) : ହଜମ ନହେବା, ବଦହଜମ

**ଅଡ଼ାଡ଼ହାଇ** - *ସ:* (ବି.) : ବହୁତ ପରିମାଣ, ଲମ୍ବା ଲାଠିକୁ ମଧ୍ୟ ବୁଝାଏ

**ଅଡ଼ାଦିଆ** - *ବ୍ୟ:* (ବି.) : ଗୃହନିର୍ମାଣ ନିମନ୍ତେ ପ୍ରାରମ୍ଭିକ କାର୍ଯ୍ୟାନୁଷ୍ଠାନ

**ଅଡ଼ାପକା** - *ସୁବ:* (ବିଂ.) : ଅତିଦୁର୍ବଳ ହେବା

**ଅଡ଼ାବସା** - *ବ:* (ବିଂ.) : ବ୍ୟତିବ୍ୟସ୍ତ ହେବା

**ଅଡ଼ାବା** - *ସ:କଳା:* (କ୍ରି.ବିଂ.) : ଅନ୍ୟକୁ ଦୋଷାରୋପ କରିବା, ସୁନ୍ଦର ଦିଶିବା, ସାଜିବା

**ଅଡ଼ାମିଡ଼ା** - *କଝ:* (ବି.) : ଛେଳିପିଲା

**ଅଡ଼ାମେମରି** - *କଝ:* (ବି.) : ବଣ ଚାକୁଣ୍ଡା

**ଅଡ଼ାଳ** - *ବ୍ୟ:* (ବି.) : ପାନଗଦାରେ ଠୂଳୀଭୂତ ପାନ ମଧ୍ୟରୁ ଭଲପାନ ବାଛି ଅଲଗା ଭାବରେ ସଜାଇ ରଖିବା କାର୍ଯ୍ୟ

**ଅଡ଼ି** - *ଢେ:* (କ୍ରି.) : ଜିଦ୍ କରିବା

**ଅଡ଼ି** - *ଅନେ:* (କ୍ରି.) : ଜିଦ୍ ଧରିବା, ଜିଦି, ହାକୁଟି, ହେଉଡ଼ି

**ଅଡ଼ିଆ** - *କୋ:ଗ:* (ବି.) : ଧାନଗଛକୁ ଛଣ କରିବାପାଇଁ କାଟିବାପରେ ସଜେଇ ରଖିବା, ବାଡ଼ଦେବା ପାଇଁ ବ୍ୟବହୃତ ସିଧାବାଉଁଶ

**ଅଡ଼ିଆପିଟା** - *କୋ:* (ବି.) : ଧାନଗଛ କାଟିବାପରେ ଛଣ ପିଟା

**ଅଡ଼ିଆବନ୍ଧା** - *କୋ:* (ବି.) : ଧାନଗଛ କାଟିବାପରେ ଛଣପ୍ରସ୍ତୁତ କରିବାପାଇଁ ବାନ୍ଧିବା

**ଅଡ଼ିଙ୍ଗିରା** - *ବ୍ୟ:* (ବି.) : ଦର ପାଚିଲା ତେନ୍ତୁଳି

**ଅଡ଼ିନଡ଼ି** - *କଳା:* (ବିଂ.) : ସାଧାରଣ, ଅର୍ଦ୍ଧନାରି

**ଅଡ଼ିବସିବା** - *ଅନେ:* (କ୍ରି.) : ବାଧ କରିବା, ଜିଦ୍ କରିବା, ଅବୁଝା ହେବା

**ଅଢ଼ିଣିଙ୍କା** - *ଯା:* (ବି.) ଢେଣ୍ଡାରେ ପାଣିବୋହିବା ବେଳେ ଯନ୍ତ୍ର ଟଙ୍ଗାହେବା ବାଉଁଶ

**ଅଢୁ** - *କଳା:* (ବି.) : ଅପରାହ୍ନ, ଉପରଓଳି

**ଅଢୁ ଆ** - *ଗ:କୋ:ସ:ନୁ:* (ବି.ବିଂ.) : ଅଝଟ, ଗୋଳମାଳିଆ, ବିପଦ, ଜଟିଳ ଅବସ୍ଥା, ଅସୁବିଧା

**ଅଢ଼େଇବା** - *ଗ:* (କ୍ରି.) : ଘଉଡେଇବା, ଗୋରୁ ତଡ଼ିବା, ପଶୁଙ୍କୁ ନିର୍ଦ୍ଦିଷ୍ଟବାଟରେ ଯିବାପାଇଁ ଚଳେଇବା

**ଅଢ଼େକ୍** - *କଳା:* (ବିଂ.) : ଏକ ଅଢ଼ା ପରିମାଣ

**ଅଢ଼େ ବୁଦ୍ଧି** - *ଗ:* (ବି.) : ଅଳ୍ପ ବୁଦ୍ଧି

**ଅଢ଼ୋ ଢବଢ଼ୋ** - *ସ:* (ବି.) : ଏଟାସେଟା

**ଅଢ଼ୋଡାହାଲି** - *ସୁବ:* (ବିଂ.) : ଭାରସାମ୍ୟହୀନ, କିଂକର୍ତ୍ତବ୍ୟବିମୂଢ଼, ଜୁଆଳିରେ ଫନ୍ଦାଯାଇଥିବା ଦୁଇଟିପଶୁର ମୁଣ୍ଡ, ଜଣକର ଆଗକୁ ଓ ଅନ୍ୟଜଣକର ପଛକୁ ରହିଯିବା

**ଅଢ଼ି-** *କନ୍ଧ:* (ବି.) : ମୂଷା

**ଅଢ** - *ଦେ:* (ବି.) : ମୂଢ଼, ମୂର୍ଖ

**ଅଢ଼େଇ** - *ଅନେ:* (ବିଂ.) : ଦୁଇ ଏବଂ ଅଧେ

**ଅଢ଼େୟା** - *ନ:* (ବି.) : ଅଢେଇଓଳି ଗୋରୁଙ୍କ ଜ୍ୱର

**ଅଢଙ୍ଗ** - *ଦେ:* (ବିଂ.) : ଅଢ଼ଉଲ୍, ଅସୁନ୍ଦର, ଅବାଗିଆ

**ଅଢା** - *ଅନେ:* (ବି.) କଣ୍ଢାବାଡ଼, ଅଢେଇସେର ପରିମାଣର ଧାନ, ଚାଉଳ ଆଦି ମାପିବା ପାଇଁ ଏକପାତ୍ର, ନିୟନ୍ତ୍ରଣ, ଧାନଉଁଷାବେଳେ ଗରମଧାନକୁ କାଢ଼ିବାର କାଠପାତ୍ର

**ଅଢାର** - *କୋ:* (ବି.) : ଗଉଡ଼ମାନଙ୍କଦ୍ୱାରା ଅନ୍ୟମାନଙ୍କର ପଶୁମାନଙ୍କୁ ଏକତ୍ରିତ କରି ପାଳନକରିବା ସ୍ଥଳ

**ଅଢାଳିଆ** - *ଗ:* (ବିଂ.) : ଅସୁବିଧା ପରିସ୍ଥିତି

**ଅଢିଅ** - *କେନ୍ଦୁ:ବୌ:କଳା:ସୁବ:* (ବି.) : ଢଙ୍ଗ ଦେଖେଇବା, ଦଣ୍ଡବିଶେଷ, ଖାଦ୍ୟଦାନା, ଆହାର, ଖାଦ୍ୟ, ସଞ୍ଜା, ରାନ୍ଧିବା ପାଇଁ ସଞ୍ଜା ଅଢାରେ ମାପି ପୂର୍ବ କାଳରେ ସଞ୍ଜା ଦିଆଯାଉଥିବାରୁ ଏପରି ବ୍ୟୁତ୍ପତ୍ତି

**ଅଢିଆପାଏନ୍** - *ସ:* (ବି.) : ନିତିଦିନିଆ ଖାଦ୍ୟ

**ଅଢୁଁଆଲ୍** - *ସ:* (ବି.) : ଲୁକ୍କାୟିତ ସ୍ଥାନ

**ଅଢେଇ କିଆରିଆ** - *ଜ:* (ବି.) : ଏକପ୍ରକାର ସାପ

**ଅଢେଇ ପହରିଆ** - *ଜ:* (ବି.) : ଫୁଲ ବିଶେଷ

**ଅଢେଇବୋଢ଼ିଆ** - *ବା:* (ବିଂ.) ଅଢେଇବୋଢ଼ି (୫୦) ବିଶିଷ୍ଟ

**ଅଢୋ ପହର** - *ନୁ:* (ଅ.) : ଅପରାହ୍ନ

**ଅଣ୍ସର୍** - *ଦେ:* (କ୍ରି.) : ଆଷାଢ଼ କୃଷ୍ଣପକ୍ଷରେ ଶ୍ରୀ ଜଗନ୍ନାଥ ମନ୍ଦିରରେ ଗୁପ୍ତସେବା

**ଅଣ** - *ଅନେ:* (ବି.ବିଂ.) : ଝୋଳ, ପିଠୋଉ, ଗଇଁଠା ସହିତ ଥିବା ପାଣି ଅଂଶ

**ଅଣଅଜା** - *କ:* (ବି.) : ଅଜାଙ୍କ ବାପା

**ଅଣଆଖୁ** - *ଗ:* (ବି.) : ବନ୍ୟ ଆଖୁ

**ଅଣଆଖୁଆ** - *ଦେ:* (ବି.) : ତୃଣବିଶେଷ

**ଅଣଉଦିଆ** - *କ:* (ବି.) : ସୂର୍ଯ୍ୟୋଦୟ ପୂର୍ବର ଅବସ୍ଥା

**ଅଣଓସାର** - *ଅନେ:* (ବିଂ.) : ଅଙ୍କଚଉଡ଼ା

**ଅଣକ** - *ଗ:କ:ସ:* (ବି.) ନଡ଼ିଆ ଷଢେଇରେ ତିଆରି ବେଲା, ଡଙ୍କା, ଡ଼ଙ୍କି

**ଅଣକଦଳିଆ** - *କ:* (ବିଂ.) : କଦଳୀଗଛ ଫଳିବାପାଇଁ ଅଯୋଗ୍ୟ ହେବା ଅବସ୍ଥା

**ଅଣକାଢିବା** - *ବ୍:* (କ୍ରି.) : ତୈଳବୀଜକୁ ରାନ୍ଧି ତୈଳ ପ୍ରସ୍ତୁତ କରିବା

**ଅଣକୀଳା** - *ଅନେ:* (ବି.) : ଶଗଡ଼ ଚକର ଦୁଇପଟରେ ଥିବା ଖିଲା

**ଅଣଖ** - *କ:* (ବି.) : ଡାଲି ବା ତରକାରୀ ବାଢିବାପାଇଁ ବ୍ୟବହୃତ ବାଉଁଶଦଣ୍ଡ ଓ ନଡ଼ିଆ ଷଢେଇର ଚାମଚ

**ଅଣଖୁଆ** - *କ:* (ବି.) : ଆଖୁପରି ଦିଶୁଥିବା ଗଛ

**ଅଣଚାଣ ବୋହିବା** - *କ:* (କ୍ରି.) : ମରଣ ଉପସ୍ଥିତ ହେବା କ୍ରିୟା, ଧଇଁସଇଁ ହୋଇ ନିଃଶ୍ୱାସପ୍ରଶ୍ୱାସ ଚାଲିବା

**ଅଣପାଣି** - *ଗ:ପୁ:* (ବି.) : ତରକାରି ଝୋଳ

**ଅଣପିତା** - *ବ୍:* (ବିଂ.) ଗାଳିମାଡ଼ କାଟୁନଥିବା ପିଲାଙ୍କୁ ବାପାମାଆ ଏପରି କହନ୍ତି

**ଅଣପୁରୁଷା** - *ଅନେ:* (ବିଂ.) : ଅପୌରୁଷେୟ, ପୁରୁଷତ୍ୱହୀନ, ଅଯୋଗ୍ୟ ବ୍ୟକ୍ତି, ନପୁଂସକ, ଅପାରଗ

**ଅଣବାଟ** - *ଅନେ:* (ବିଂ.ବି.) : ଅବାଟ

**ଅଣବାବୁଆ** - *ଅନେ:* (ବିଂ.ବି.) : ବାପର ପରିଚୟ ଅଜ୍ଞାତ ଥିବା ସନ୍ତାନ, ଅବୈଧ ସନ୍ତାନ

**ଅଣଶୁଦ୍ଧିଆ** - *ଅନେ:* (ବିଂ.ବି.) : ଶୁଦ୍ଧିକ୍ରିୟା ଶେଷ ହୋଇନଥିବା, ପରିବାରର କୌଣସି ଲୋକ ମରିଯାଇଥିଲେ ଶୌଚ ହୋଇ ନଥିବା

**ଅଣଶ୍ୱାସୀ** - *ଭା:* (ବିଂ.) : ଶ୍ୱାସରୁଦ୍ଧ

**ଅଣସୋରିଷ** - *ଗ:* (ବି.) : ସୋରିଷ ପରି ବୀଜବିଶେଷ

**ଅଣହେଳା** - *କ:କେ:ଭ* (ବି.) : ଅଯତ୍ନ, ଅବହେଳା

**ଅଣା** - *ଅନେ:* (ବି.) : ଛୋଟନାଳ, ସିଆର, ଏକନିର୍ଦ୍ଦିଷ୍ଟ ପରିମାଣକୁ ସୂଚାଏ, ପୂର୍ବପ୍ରଚଳିତ ଟଙ୍କାକର ଷୋଳଭାଗରୁ ଭାଗେ, ଖଣା, ଅବାଟ

**ଅଣାଅଣି କରିବା** - *ଗ:* (କ୍ରି.) : ଅବନତ କରିବା, ଢାଳିବା

**ଅଣାକାର** - *ଅନେ:* (ବି.ବିଂ.) : ନିରାକାର ବ୍ରହ୍ମ, ଶୂନ୍ୟପୁରୁଷ, ଆକାର ବିହୀନ, ନିରାକାର

**ଅଣାକ୍ଷର** - *ଅନେ:* (ବିଂ.) : ଅଣଅକ୍ଷର, ପରମେଶ୍ୱର

**ଅଣାମୁଣ୍ଡା** - *ଗ:* (ବିଂ.) : ହୀନବ୍ୟକ୍ତିତ୍ୱ

**ଅଣି** - *ଅନେ:* (ବି.) : ପୁରୁଣାମୁଦ୍ରା, ଲକ୍ଷଣ, ସାମଞ୍ଜସ୍ୟ, ଏକ୍‌ପାଖିଆହୋଇ ଶୋଇବା, ଖଣ୍ଡା

**ଅଣିଆଡି** - *ଅ:* (ବିଂ.) : ବେଦମ୍, କ୍ଲାନ୍ତ

**ଅଣିକଣି** - *ଗ:* (ବି.) : ସବଂଶ

**ଅଣି ଗାଭଁଚା** - *କୋ:* (ବି.) : ପୂଜାପାର୍ବଣାଦିରେ ବ୍ୟବହୃତ ଅତିଛୋଟ ଶସ୍ତା ଗାମୁଛା

**ଅଣିଚଣା** - *ଗ:କୋ:* (ବି.) : ଡାଲି ଜାତୀୟ ଶସ୍ୟ, ଝୁଡୁଙ୍ଗ ଜାତୀୟ ଶସ୍ୟ ବିଶେଷ

**ଅଣିପୋକ** - *କୋ:* (ବି.) : ଅଗ୍ର ଭାଗକୁ ଆକ୍ରମଣ କରୁଥିବା କୀଟବିଶେଷ

**ଅଣୁଖା** - *ଭ:କେ:* (ବି.) : ମୂର୍ଖ, ଆଖୁ ପରି ତୃଣବିଶେଷ

**ଅଣେଇବା** - *କ:ଗ:* (କ୍ରି.) : ଗୋଟିଏ ପଟକୁ ଢଳେଇବା, ଓଲଟିଯିବା, ଅବନତ କରିବା

**ଅଣ୍ଟ** - *ଦେ:ଗ:* (ବିଂ.) : ପୂରା, ପୂର୍ଣ୍ଣ, ଜିଦ୍

**ଅଣ୍ଟକୁଣ୍ଟ** - *ଗ:* (ବିଂ.) : ନିଅଣ୍ଟ

**ଅଣ୍ଟକୁହା** - *ସୁ:* (ବିଂ.) : ଅସୂୟା ବ୍ୟକ୍ତି

**ଅଣ୍ଟା** - *ଗ:ଦେ:* (ବି.) : କଟି, କଟିଦେଶ

**ଅଣ୍ଟାଅଣ୍ଟି** - *ଗ:* (ବିଂ.) : ଯଥେଷ୍ଟ

**ଅଣ୍ଟାଇବା** - *ଗ:* (କ୍ରି.ବିଂ.) : ଅଣ୍ଟା ସାହାଯ୍ୟରେ ଟେକିବା

**ଅଣ୍ଟାକରାଟ** - *ନ:* (ବି.) : ଟଙ୍କା ରଖିବା ପାଇଁ ବ୍ୟବହୃତ ଏକ ଧାତୁପାତ୍ର

**ଅଣ୍ଟାଖୁଚା** - *ଦୌ:* (ବି.) : ଲାଞ୍ଚ

**ଅଣ୍ଟାଖୁଞ୍ଚା** - *ଗ:* (ବି.) ଅଣ୍ଟାରେ ଖୋସାଯାଉଥିବା କରାଟ, ଟଙ୍କା

**ଅଣ୍ଟାଖୋସା** - *ଦେ:ପଦ୍ୟ:ଗଛ:* (ବି.) ଉତ୍କୋଚ, ଲାଞ୍ଚ

**ଅଣ୍ଟାଗୁଞ୍ଜା** - *ସଂ:ଖୋ:* (ବି.) : ଲାଞ୍ଚ, ଖୋସଣି

**ଅଣ୍ଟା ଜମି** - *କେ:* (ବି.) : ମଝି ଭେଡ଼ାର ଜମି

**ଅଣ୍ଟାଝିଂଜ୍‌କ୍ରି** - *ଚ:* (ବି.) : ନାରୀ ଅଣ୍ଟାର ଅଳଙ୍କାରବିଶେଷ, ଅଣ୍ଟାସୂତା

**ଅଣ୍ଟାଡୋର** - *ନବ:* (ବି.) : ଅଣ୍ଟାସୂତା

**ଅଣ୍ଟାଧରିବା** - *ଦେ:* (ବି.) : କଟିବାତ

**ଅଣ୍ଟାପଇଁଚି** - *ଚ:* (ବି.) : ଅଣ୍ଟାସୂତା

**ଅଣ୍ଟାପାଣି** - *ଗଛ:ଭ:କ:ପୁ:* (ବି.) : ଶୌଚ ହେବାବେଳେ ସଂପୂର୍ଣ୍ଣ ସ୍ନାନ ନକରି ଅଣ୍ଟାଯାଏ ଧୋଇହେବା

**ଅଣ୍ଟାପାଡିଆ** - *କୋ:* (ବି.) : କମରପଟି, ଅଣ୍ଟାକୁ ବେଷ୍ଟନ କରି ପିନ୍ଧିବା ଅଳଙ୍କାରବିଶେଷ, ପଟି, ଅଣ୍ଟାରେ ପିନ୍ଧା ଅଳଙ୍କାର

**ଅଣ୍ଟାବିଛା** - *ଚ୍‌୍*. (ବି.) : ନାରୀ ଅଣ୍ଟାର ଅଳଙ୍କାରବିଶେଷ

**ଅଣ୍ଟାଭିଡ଼ିବା** - *ବେ:ସ:* (କ୍ରି.) କାମ କରିବାକୁ ଆଗେଇଯିବା, ଆଗୁସାର ହେବା

**ଅଣ୍ଟା ସଳଖିବା** - *କ:* (କ୍ରି.) : କୌଣସି ଅସୁବିଧା ପରେ ଆସ୍ତେଆସ୍ତେ ସୁବିଧାଜନକ ପରିସ୍ଥିତିକୁ ଆସି କ୍ରମେ ସବଳହେବା

**ଅଣ୍ଟାସୂତା** - *ଅନେ:* (ବି.) : ଅଣ୍ଟାରେ ପିନ୍ଧିବା ସୂତା, ଅଣ୍ଟାର ଅଳଙ୍କାର ବିଶେଷ, କଉପିନି ମାରିବା ପାଇଁ ଅଣ୍ଟାରେ ସୂତା ବାନ୍ଧିବା, ପିଲା ଓ ସ୍ତ୍ରୀମାନଙ୍କ ଅଣ୍ଟାପିନ୍ଧା ରୂପାଚେନ୍

**ଅଣ୍ଟି** - *ଅନେ:* (ବିଂ.) : ଲୁଗାକୁଞ୍ଚର ମୁଣି, ପିନ୍ଧା ଲୁଗାକୁ ଠୋଲା ପରି କରିବା ସ୍ଥିତି, ସ୍ତ୍ରୀଲୋକମାନେ ଅଣ୍ଟା ପାଖରେ ଥିବା ଲୁଗାକାନିରେ ଥଳିଭଳି କରିଥାନ୍ତି

**ଅଣ୍ଟିଚୁରୀ** - *ଗ:* (ବି.) : ବିଶ୍ୱାସଘାତକ

**ଅଣ୍ଟିବା** - *ଅନେ:* (କ୍ରି.) : ଯଥେଷ୍ଟ ହେବା

**ଅଣ୍ଟିରେ ପୂରାଇବା** - *ସ:* (କ୍ରି.ବିଂ.) : ସ୍ନେହ କରିବା, ସବୁ କଥାକୁ ନିଜଭିତରେ ଚାପିରଖିବା, ଆପଣାର କରିନେବା

**ଅଣ୍ଟେଇ ଦେବା** - *କ:* (କ୍ରି.) : ସାହାଯ୍ୟ କରିବା, ସହଯୋଗ କରିବା

**ଅଣ୍ଟେଇବା** - *ନ:ଖୋ:* (କ୍ରି.) : ଶଗଡ଼ ପଛରେ ଥିବା ବ୍ୟକ୍ତି ଦଣ୍ଡା ଟେକିଥିଲାବେଳେ, କାନ୍ଧରେ ଧରି ଟେକିବା ବା ଠେଲି ଧରିବା, ଭାରିଜିନିଷ ଯେ ଉଠାଇ ପାରୁନଥିବ ତାକୁ ହାତପକାଇ ସାହାଯ୍ୟ କରିବା

**ଅଣ୍ଟେସଣ୍ଟେ** - *ଚ୍‌୍*. (ବି.) : ଆକାପାକା, ଅଣ ନିଃଶ୍ୱାସୀ ହୋଇଯିବା

**ଅଣ୍ଡକୁରା** - *କନ:* (ବି.) : ନିଃସନ୍ତାନ

**ଅଣ୍ଡି** - *ବୌ:* (ବି.) : ଲୁଗାଧଡ଼ି

**ଅଣ୍ଡୁ** - *ବୌ:* (ବି.) : ଜିଦ୍

**ଅଣ୍ଡ** - *ମ:* (ବିଂ.) : ବୋକା

**ଅଣ୍ଡକିରିଆ** - *ଅ:* (ବିଂ.) : ପାକଳିଆ

**ଅଣ୍ଡରା ପଣିଆଁ** - *ଗ:* (ବି.) : ପୁରୁଷପଣିଆଁ

**ଅଣ୍ଡରେଇବା** - *କଳା:* (କ୍ରି.) : ଜବରଦସ୍ତି ରହିଯିବା, ଜବରଦସ୍ତି ଦଖଲ କରିବା

**ଅଣ୍ଡଳା ଅଣ୍ଡଳି** - *ଅ:* (ଅ.) : ଦରଣ୍ଡାଦରଣ୍ଡି, ଦେଖି ନ ପାରି ହାତବୁଲେଇ ଖୋଜିବା

**ଅଣ୍ଡଳା ଆଉଁସା** - *ଗ:* (ବି.) : କୋଳାକୋଳି କରି ଗେଲ

**ଅଣ୍ଡସଣ୍ଡ** - *ଅ:କ:* (ବି.ବିଂ.) : ଅଶ୍ଳୀଳ ଭାଷା, ଅଶ୍ଳୀଳ ଆଚରଣ, ଖରାପ ଆଚରଣ

**ଅଣ୍ଡା** - *କେ:ମା:ଗଦ୍ୟ:ବେ:* (ବି.) ଅପରିପକ୍ୱ, ଅଳ୍ପବୟସ୍କ, ମାଣ୍ଡିଆରୁ ପ୍ରସ୍ତୁତ ହାଲୁଆ, ପିଲା, ଛୁଆ, ଡିମ୍ବ

**ଅଣ୍ଡାପିଚିକା** - *ଯା:କେ:* (ବି.) : ଛୋଟଛୋଟ ଛୁଆ

**ଅଣ୍ଡାବଚା** - *ଖୋ:ଅ:* (ବି.) ଅତି ଛୋଟଛୋଟ ପିଲାଙ୍କୁ କୁହାଯାଏ, ସନ୍ତାନସନ୍ତତି, ପିଲାଛୁଆ

**ଅଣ୍ଡା ଲଢେଇ** - *ସଂ:* (କ୍ରି.ବିଂ.) : ଅଣ୍ଡାକୁ ଅଣ୍ଡାସହ ଭାଂଗିବା, ଚତୁରତାର ପରୀକ୍ଷା

**ଅଣ୍ଡାଳିବା** - *ଅନେ:* (କ୍ରି.) : ଆଉଁସିବା, ଖୋଜିବା, ଦରାଣ୍ଡିବା

**ଅଣ୍ଡାଳୁ** - *ଦେ:* (ବିଂ.) : ଡିମ୍ବ ଧରିଥିବା ମାଛ

**ଅଣ୍ଡିଆ** - *ଅନେ:* (ବିଂ.ବି.) : ଅଣ୍ଡିରା, ଖାସି ହୋଇ ନଥିବା ପଡ଼ିଆ ବାଛୁରୀ, ଏକପ୍ରକାର ଶିଶୁରୋଗ, ଅଣ୍ଡିରା, ଦାମୁଡ଼ି, ଅଣ୍ଡିରା ବାଛୁରୀ, ଖାସୁହେବାବେଳେ ଛୁଟିରହିଯାଇଥିବା ବଳଦ

**ଅଣ୍ଡିକିରି** - *ଭ:* (ବି.) : ସବୁଠାରୁ ଛୋଟ

**ଅଣ୍ଡିପେଚି** - *ଯା:* (ବି.) : ଛୋଟଛୁଆ

**ଅଣ୍ଡିରା** - *କେନ୍ଦୁ:କେ:ଢ:ଢେ:* (ବି.ବିଂ.) : ପୁରୁଷ, ପୁଅ, ପୁଲିଙ୍ଗ

**ଅଣ୍ଡିରାଚଣ୍ଡୀ** - *ସଂ:ଗ:କେ:ଦେ:* (ବିଂ.) : ପୁରୁଷ ଗୁଣ ଥିବା ସ୍ତ୍ରୀ ବା ଝିଅ

**ଅଣ୍ଡିରା ଫୁଲ** - *ଗ:* (ବି.) : ଯେଉଁ ଫୁଲରୁ ଫଳ ହୁଏନାହିଁ, କେବଳ ପୁଂକେଶର ଥିବା ଫୁଲ

**ଅଣ୍ଡିରୀ** - *କ:ବା:ଢେ:* (ବି.ବିଂ.) : ପୁରୁଷପରି ବ୍ୟବହାର କରୁଥିବା ରୁକ୍ଷା ସ୍ତ୍ରୀ, ଉଗ୍ରସ୍ୱଭାବର ନାରୀ

**ଅଣ୍ଡୀ** - *ମ:* (ବିଂ.) : ବୋକୀ

**ଅଣ୍ଟୁ** - *ବା:ଗ:* (କ୍ରି.ବି.) : ଛାଡ଼ିବା, ସିମେଣ୍ଟ ରସ ଯାହା ଚଟାଣ ଆଦିରେ ଦିଆଯାଏ

**ଅଣ୍ଟୁଆ** - *ପଦ୍ମ:* (ବିଂ.) : ଏକବାଗିଆ, ଅଖାଡୁଆ, ଅବୁଝା

**ଅତ୍କାରିବା** - *ବ:* (କ୍ରି.) : ମାତ୍ରାଧିକ ଖାଇ ବାନ୍ତିକରିବା

**ଅତ୍ପର** - *ସ:* (ବି.) : ଅଧିକ, ଏ କୁ ଆରେକ

**ଅତଡ଼ା** - *ଅନେ:* (ବି.) ନଈକୂଳର ଉଚ୍ଚଅଞ୍ଚଳର ମାଟି, କୂଳର ତୀଖମାଟି

**ଅତଡ଼ିଆ** - *ସୁ:* (ବିଂ.) : ଅସୁବିଧା ଜନକ

**ଅତଣ୍ଡି** - *ଦେ:* (ବି.) : ଏକପ୍ରକାର ଲତା ପତ୍ର ଧଳା ପରେ ଶାଗୁଆ

**ଅତଥ୍ୟ** - *ଢେ:* (ବିଂ.) : ମିଥ୍ୟା, ତଥ୍ୟ ନ ଥାଇ

**ଅତର** - *ଅନେ:* (ବି.) : ସୁବାସିତ ତରଳ ପଦାର୍ଥ, ସୁଗନ୍ଧି ତୈଳ

**ଅତରଖାଡ଼ି** - *କେ:* (ବି.) : ଧୂପବତୀ, ଧୂପକାଠି

**ଅତରଛ** - *ଅନେ:* (ବିଂ.) ଛାନିଆ, ଅତିବ୍ୟସ୍ତ, ବ୍ୟଗ୍ର

**ଅତରା** - *ଯା:* (ବି.) : ବଡ଼ ମାଟି ଖଣ୍ଡ, ନଦୀ ବା ପୋଖରୀକଡ଼ ମାଟି, ଅତଡ଼ା

**ଅଚର୍ଛିଆ** - *ଅନେ:* (ଅ.ବିଂ.) : ହଠାତ୍, ନିରୁପାୟ ଗତି, ନିରୁପାୟ, ଭୟରେ ଦୌଡ଼ିବା, ଅତିଭୟ, ଫୁରସତ ନ ପାଇବା

**ଅଚଳ** - *ଦେ:* (ବିଂ.) : ଅଗାଧ, ଗଭୀର

**ଅଚସିରିଆ** - *ରା:* (ବିଂ.) : ଶ୍ରୀହୀନ, ହତଶ୍ରୀ

**ଅଚସୀ** - *ଅନେ:* (ବି.) : ଛୋଟ ଗଛବିଶେଷ, ଏକ ତୈଳବୀଜ

**ଅଚା** - *ଅନେ:* (ବି.ବିଂ.) : ଆତଫଳ, ମାଇଁ, ପିଉସୀ, ପୁଡ଼ା, ପୁଳା

**ଅଚାଇତ୍** - *ଅ:* (ବିଂ.) : ଅଯତ୍ନ ପାଳିତ

**ଅଚାଳୁଆ** - *କେ:* (ବିଂ.) ଠିକ୍‌କାମକୁ ଭୁଲଭାବରେ ଯେ କରେ, ମୂର୍ଖ

**ଅଚାଳିଆ** - *ଗ:* (ବିଂ.) : ହିତାହିତ ଜ୍ଞାନଶୂନ୍ୟ

**ଅଚି** - *ଅନେ:* (ବିଂ.) : ବେଶି, ଖୁବ୍

**ଅଚିଆ** - *ଅ:* (ବି.) : ସଞ୍ଜା

**ଅଚିଗଛ** - *ଦେ:* (ବି.) ଚମ୍ପାଗଛ, ଭୂତଅଇରିଗଛ

**ଅଚିତରା** - *ଦେ:* (ବି.) : ସ୍ଥଳପଦ୍ମ

**ଅଚି ମଙ୍ଗଲ୍ୟ** - *ଗଦ୍ୟ:* (ବି.) : ବେଲ

**ଅଚିରସ** - *ନବ:* (ବି.) : ଉଦ୍‌ବେଗ

**ଅଚିରି** - *ଗ:ଯା:* (ବି.) : ଉଦ୍‌ବେଗ, ନଦୀର ବାଢ

**ଅଚିଶ ଉଦିଆ** - *ଗ:* (ବି.) : ଗଞ୍ଜାମର ଏକ ପ୍ରକାର ଗାଳି

**ଅଚିଶେ** - *ଗଜ:* (ବିଂ) : ଅତିରିକ୍ତ

**ଅଚିସାର** - *ଗ:* (ବି.) : ଝାଡ଼ାରୋଗ, ପେଟବେମାର

**ଅଚୁଠ** - *କ:* (ବିଂ.) : ଯାହା ତୁଠ ନୁହେଁ, ନଦୀ ବା ପୋଖରୀର ଅବ୍ୟବହୃତ କୂଳ

**ଅଚୁଲ** - *କେ:* (ବି.) : ପାଦ ଅଳଙ୍କାର

**ଅଚେବୁଚେ** - *ସ:* (ବି.) : ଟିକିଏ ଅଧେକାମ

**ଅତ୍ୟନ୍ତ** - *ଅନେ:* (ବିଂ.) : ଅତିଶୟ, ବହୁତ, ଅଶେଷ, ଅତ୍ୟଧିକ, ବେଜାୟ, ଅପରିମେୟ

**ଅତ୍ୟାଚାର** - *ଅନେ:* (ବି.) : ସଦାଚାରବିରୁଦ୍ଧ, ଅସଦାଚରଣ, ଅଭଦ୍ରଆଚରଣ, ଦୌରାତ୍ମ୍ୟ, ଯନ୍ତ୍ରଣାଦାୟକ, ଆଚରଣ

**ଅତ୍ର** - *ମ:* (ବି.) : ଅତର, ସୁଗନ୍ଧଯୁକ୍ତ ତରଳପଦାର୍ଥ

**ଅତ୍ରାସିଆ** - *ଭ:* (ବିଂ.) : ଖୁବ୍ ଚଞ୍ଚଳ, ଅତି ବ୍ୟସ୍ତବିବ୍ରତ

**ଅଥଡ଼ା** - *ଗ:* (ବି.) : ନିର୍ଲଜ, ଧାର ନଥିବା ଅସ୍ତ୍ର

**ଅଥୟ** - *ଢେ:ପଦ୍ୟ:ଦେ:* (ବିଂ.) : ଅସ୍ଥିର, ଚଞ୍ଚଳ, ଅନିଶ୍ଚିତ, ଅବ୍ୟବସ୍ଥିତ, ଚପଳ, ଧୈର୍ଯ୍ୟହୀନ, ଉତ୍କଣ୍ଠିତ, ବ୍ୟାକୁଳିତ

**ଅଥରବା** - *କେ:* (ବିଂ.) ଭଲମନ୍ଦ ବିଚାରହୀନ

**ଅଥରା** - *ନ:* (ବି.) : ବଡ଼ମାଟି ହାଣ୍ଡିରେ ଥରକେ ଗୁଡ଼ିଏ ଏଣ୍ଡୁରି ପିଠା ବସାଇ ସିଝାଇବା, ଅଥାର

**ଅଥରୁଆ** - *ଅ:* (ବିଂ.) : ନିର୍ଭୟ

**ଅଥର୍ବା** - *ଦେ:* (ବିଂ.) : ଅପାରଗତା

**ଅଥର୍‌ପା** - *ଅନେ:* (ବି.ବିଂ.) : ଅସ୍ଥିରପାଦ, ଚାଲିବାରେ ଶୃଙ୍ଖଳା ନଥିବା

**ଅଥା** - *ଅନେ:* (ବିଂ.) : କ୍ଲାନ୍ତ, ଥକିଯିବା, ହାଲିଆ

**ଅଥାହୁଆ** - *ଗ:* (ବି.) : ଅସୁବିଧା, ଅବୁଝା ଅସମାନ

**ଅଥାଥାଲି** - *ବ:* (ବିଂ.) : ଅସ୍ଥିର ଅବସ୍ଥା

**ଅଥାନ** - *ଅନେ:* (ବି.) : ଅଜାଗା, ଶରୀରର ଗୁପ୍ତ ଏବଂ ସଂବେଦନଶୀଳ ଜାଗା, ଅସ୍ଥାନ,

**ଅଥାନିଆ** - *ଭ:ଜେ:* (ବି.ବିଂ.) : ଠାଳଜ୍ଞାନ ନଥିବା ଲୋକ, ଜାଗା ଅଜାଗା ନମାନିବା ଲୋକ

**ଅଥାବଥା** - *ପଦ୍ୟ:* (ବି.) : ଅଭାବ ଅନଟନ, ଦୈନ୍ୟ

**ଅଥାବିଥା** - *ଶୌ:ସ:* (କ୍ରି.ବି.) : ଅନୁତାପ, କ୍ଲାନ୍ତ, ଅବସନ୍ନ

**ଅଥାମାଥା** - *ଗ:* (ବି.) : ପାଟିରୁ କଥା ନ ବାହାରିବା, ଖନି ମାରିଯିବା

**ଅଥାର** - *ଅନେ:* (ବି.) : ଏଣ୍ଡୁରିପିଠା ପ୍ରସ୍ତୁତି, ଚୁଲିରେ ପାଣିହାଣ୍ଡି ମୁହଁରେ କନା ବାନ୍ଧି ପିଠୋଉ ଲଦି ପିଠା ସିଝାଇବା ପାଇଁ ବ୍ୟବହୃତ ହାଣ୍ଡି

**ଅଥାରମୁହାଁ** - *ଗ:* (କ୍ରି.) : ଅଭିମାନରେ ମୁହଁକୁ ବିମର୍ଷ କରିବା

**ଅଥାରୁଆ** - *ଗଦ୍ୟ:* (ବି.) : ଭୂତ

**ଅଥିର** - *ଅନେ:* (ବିଂ.) : ଅସ୍ଥିର

**ଅଥେଇ ହେବା** - *ଶୌ:* (କ୍ରି.) : ପସ୍ତେଇବା

**ଅଥୋଥାଲି** - *ସ:* (ବି.) : ଅସ୍ତବ୍ୟସ୍ତ ହେବା

**ଅଦ୍‌କୁଣ** - *ଅ:* (ବି.) : ଅଭିମାନ

**ଅଦ୍‌ବାଟିଆ** - *ଦେ:* (ବିଂ.) : ଅଧବାଟରେ ଛାଡ଼ିଯିବା

**ଅଦ୍‌ରୁଶ୍** - *ଝ:* (ବିଂ.) : ଦେଖା ନଯିବା, ଅଦୃଶ୍ୟ

**ଅଦ୍‌ଲାବଦ୍‌ଲା** - *ନୂ:* (ବିଂ) : ଅଦଳବଦଳ

**ଅଦ୍‌ଲି** - *ସ:* (ବି.) : ବିରିଡିଆରି ବଡ଼ି

**ଅଦ୍‌ଲେଇ** - *ଝ:ସ:* (କ୍ରି.ବିଂ.) : ଆଉଜେଇ, ଭାରାଦେଇ ବସିବା

**ଅଦଇ** - *ଗଦ୍ୟ:* (ବି.) : ଖଟିବା

**ଅଦଉତି** - *ଅ:ପଦ୍ୟ:* (ବି.) : ରାଗ, ଶତ୍ରୁତା, ପ୍ରତିହିଂସା

**ଅଦଉତିଆ** - *କ:* (ବିଂ.) : ଦୁଷ୍ଟ ପ୍ରତିହିଂସା ପରାୟଣ

**ଅଦଛ** - *ଜ:* (ବିଂ.ବି.) : ଅପଯଶ, ଅମଙ୍ଗଳ

**ଅଦଦ୍‌ଧତିଆ** - *କଳା:* (ବିଂ.) : ବେପରୁଆ ଭାବରେ

**ଅଦମ୍ ପତା** - *କଳା:* (ବିଂ.) : ନିଶ୍ଚିହ୍ନ, ପୂର୍ଣ୍ଣଲୋପ, ହଜିଯିବା, ଠିକଣା ଶୂନ୍ୟ ହେବା

**ଅଦନ୍ତ** - *ଢେ:* (ବିଂ.) : ଦୁର୍ବଳ

**ଅଦରଛିଆ** - *ଢେ:* (ବିଂ.) : ଅମଙ୍ଗଳିଆ

**ଅଦରିବା** - *ନବ:କୋ:* (କ୍ରି.) : ପଡ଼ିବା, ପଡ଼ିଯିବା, ଖସିଯିବା

**ଅଦର୍‌ବା** - *ସ:ଦେ:ଖ:ସୁ:* (ବିଂ.) : ଅକ୍ଷମତା, ଅପାରଗ, ଭଗ୍ନପ୍ରାୟ, ଅନୁପଯୁକ୍ତ, ଦୁର୍ବଳିଆ, ବ୍ୟବହାର ପାଇଁ ଅନୁପଯୁକ୍ତ

**ଅଦଳ** - *ଦେ:* (ବି.) : ଥୁଣ୍ଟାଗଛ

**ଅଦଳବଦଳ** - *ପଦ୍ୟ:ଦେ:* (ବି.) : ହେରଫେର, ପରସ୍ପର ପରିବର୍ତ୍ତନ, ବଦଳି, ବିନିମୟ, ବଦଳରେ ଦିଆନିଆ, ଓଲଟପାଲଟ, ଲେଉଟପାଉଟ

**ଅଦା** - *ଅନେ:* (ବି.) : ମସଲା ବା ଔଷଧୀୟ ବସ୍ତୁ, ଗୁଳ୍ମବିଶେଷ, ଏହାର ମୂଳ ଔଷଧ ଏବଂ ମସଲା ରୂପେ ବ୍ୟବହୃତ ହୁଏ

**ଅଦାତା** - *ପଦ୍ୟ:ଢ:* (ବି.ବିଂ.) ଯେ ଧନଦେବା ପାଇଁ କୁଣ୍ଠିତ, କୃପଣ

**ଅଦାନ୍ତିଆ** - *ଗ:ଢ:* (ବି.ବିଂ.) : ଦାନ୍ତ ନଥିବା ପଶୁ, ଛୋଟ ବାଛୁରୀ ଯାହାର ଦୁଧ ଦାନ୍ତ ପଡ଼ି ବଡ଼ଦାନ୍ତ ଉଠିନଥାଏ

**ଅଦାମାରେ (ଛେଚିବା)** - *ପୁ:* (କ୍ରି.ବିଂ.) : ନିର୍ଘୃମ୍, ଅଦାକୁ ଛେଚିବା ପରି (ମାଡ଼)

**ଅଦାୟୀ** - *ଗଦ୍ୟ:* (ବିଂ.) : ଦାୟୀ ନୁହେଁ, ଦାୟିତ୍ୱହୀନ

**ଅଦାଲତ୍** - *ଦେ:* (ବି.) କଚେରି, ବିଚାରାଳୟ

**ଅଦାଳିଦେବା** - *ଅ:* (ବିଂ) : ଉପରେ ପଥର ପକାଇବା, ଉପରେ ଅଜାଡ଼ିଦେବା

**ଅଦିଆ** - *କ:ଗଦ୍ୟ:* (ବିଂ.) : ଯେ ଆଦୌ ଦିଏ ନାହିଁ

**ଅଦିନିଆ** - *ଦେ:ଢ:ଅ:* (ବିଂ.) : ଅସମୟରେ ଘଟିତ, ଭିନ୍ନ ଋତୁରେ ଉତ୍ପାଦନ

**ଅଦୁ** - *ଦେ:* (ବି.) : ହାତୀ ବାନ୍ଧିବା ଶିକୁଳି

**ଅଦୂର** - *ଅନେ:* (ବିଂ.) : ପାଖ, ନିକଟ

**ଅଦୂରଦର୍ଶୀ** - *ଅନେ:* (ବିଂ.) : ଆଗପଛ ବିଚାର ନକରି କାମ କରେ

**ଅଦୃଶ୍ୟ** - *ଅନେ:* (ବିଂ.) ଅଦେଖା, ଅପ୍ରକାଶିତ, ଯାହା ଦେଖାଯାଏ ନାହିଁ

**ଅଦୃଷ୍ଟ** - *ଅନେ:* (ବି.) : ବିଧାତା, ଭାଗ୍ୟ, ଯାହା ଘଟିବ ବୋଲି ଆଗରୁ ହେଜ କରାଯାଇପାରିନାହିଁ

**ଅଦେଇ** - *କେ:* (ବିଂ.) : କୃପଣ

**ଅଦେକ୍** - *କୋ:* (ବିଂ.) : ଅଧା, ଅର୍ଦ୍ଧେକ

**ଅଦେର** - *ମ:* (ବି.) : ସେମାନଙ୍କର

**ଅଦୋଷୀ** - *ଢେ:* (ବିଂ.) : ଦୋଷ ଶୂନ୍ୟ ବ୍ୟକ୍ତି, ନିର୍ଦ୍ଦୋଷ

**ଅଦ୍ୟତନ** - *ପଦ୍ୟ:* (ବିଂ.) : ଆଜିଘଟିବା ବିଷୟ, ଆଜିକାଲି ପ୍ରଚଳିତ, ଆଧୁନିକ

**ଅଦ୍ୟାବଧି** - *ସ:* (ଅ.) : ଆଜି ପର୍ଯ୍ୟନ୍ତ

**ଅଧ** - *ଅନେ:* (ବି.ବିଂ.) : ଏକଭାଗରୁ ଭାଗେ, ଅଧା, ତଳ

**ଅଧ୍ଖୋରୀ** - *କଳା:* (ବିଂ.) : ପୁଷ୍ପବତୀ ହୋଇନଥିବା ଝିଅ

**ଅଧ୍ଜିବ୍ନିଆ** - *ଦେ:* (ବିଂ.) : ମୃତବତ୍

**ଅଧ୍ରେତ** - *ନୂ:* (ବି.) : ଅର୍ଦ୍ଧରାତ୍ର

**ଅଧ୍ଲି** - *ଦୌ:* (ବି.) : ଅଧୁଲି, ଟଙ୍କାକର ଅଧା

**ଅଧକ** - *ଦେ:* (ବିଂ.) : ଅଧେ

**ଅଧକପାଲି** - *ସୁ:* (ବି.) : ଫାଳେ ମୁଣ୍ଡବ୍ୟଥା, ଅଧକପାଳି

**ଅଧକିଆ** - *ଗ:* (ବିଂ.) : ଅର୍ଦ୍ଧ ମୂଲ୍ୟର

**ଅଧଖୁରୀ** - *ସୁ:* (ବିଂ.) : ଅଧକଂସା, ବେଲାପରି ପାତ୍ରର ଅଧା

**ଅଧଗତି** - *ଦୀ:* (ବି.) : ଅଧୋଗତି, ନିମ୍ନଗତି, ତଳକୁ ଖସିବା

**ଅଧଚଉକେ** - *ଦୀ:* (ବିଂ.) : ଚଉକାର ଅଧା, ଅତି ଅଳ୍ପ

**ଅଧଡ୍ଧଡ୍** - *ଦେ:* (ବିଂ.) : ଖେଡ୍ଖେଡ଼ିଆ, ଦୁର୍ବଳିଆ

**ଅଧଡ଼** - *ଖୋ:ପଦ୍ୟ:* (ବିଂ.) ଦୁର୍ବଳ, ରୁଗ୍ଣସ୍ୱାସ୍ଥ୍ୟ, ଅଦଢ, ଦଦରା, ଭଙ୍ଗା ଖଣ୍ଡିତ

**ଅଧଡ଼କ, ନିଧଡ଼କ** - *କ:* (ବିଂ.) : ନିଶ୍ଚିନ୍ତ, ବେଧଡ଼କ

**ଅଧଡ଼ା** - *ଗ:* (ବି.) : ଅଧାବୟସର ମଣିଷ

**ଅଧନିଶାସି** - *ସ:* (ବି.) : ଅଣନିଃଶ୍ୱାସୀ

**ଅଧ ପତରିଆ** - *ଅନେ:* (ବି.) : ଅସମାପ୍ତ କାର୍ଯ୍ୟ

**ଅଧପା** - *ଗ:କେ:* (ବି.ବିଂ.) : ପାଏର ଅଧା, ସେରର ଏକ-ଅଷ୍ଟମାଂଶ, ଆଠ ଭାଗରୁ ଭାଗେ

**ଅଧପ୍ରାଣ** - *ଅନେ:* (କ୍ରି.) : ଯନ୍ତ୍ରଣାରେ ଛଟପଟ ହେବା

**ଅଧବା** - *ଦେ:* (ବିଂ.) : ବିଧବା

**ଅଧବେଲି** - *ଭ:* (ବି.) : ଛୋଟ କଂସା

**ଅଧବେଳ** - *ଅ:* (ବିଂ.) : ଅଧାଭୋଜନ

**ଅଧବେଳେ** - *ଅନେ:* (ବିଂ.) : ଅଧାସମୟରେ

**ଅଧଭୁଷାଳିଆ** - *ଭ:* (ବି.ବିଂ.) : ଗାଳିବିଶେଷ

**ଅଧମ** - *ଅନେ:* (ବିଂ.ବି.) : ନୀଚ, ହୀନ, ଦୁଷ୍ଟ, ପାମର

**ଅଧମ୍ପତା** - *ଦେ:* (ବିଂ.) : ଦୁଷ୍ପ୍ରାପ୍ୟ

**ଅଧମରା** - *ଅନେ:* (ବିଂ.) ଦରମରା, ଅତିକ୍ଲାନ୍ତ

**ଅଧମା** - *କ:କ:* (ବିଂ.) : ହତଭାଗା, ଅଧମ ଅର୍ଥରେ, ମୂଢ

**ଅଧର** - *ଅନେ:* (ବି.) : ତଳଓଠ, ଓଷ୍ଠ

**ଅଧର ଦିନିଆ** - *ଗ:* (ବି.) : ଅଳ୍ପ ଦିନ, ଅଳ୍ପାୟୁଷ, ଅଧାରୁ କାମ ବନ୍ଦ କରିବା

**ଅଧରହନୁ** - *ଦେ:* (ବି.) : ତଳପାଟିର ହାଡ

**ଅଧରିଯିବା** - *ଦୀ:* (କ୍ରି.) : ତଳକୁ ଖସିଆସିବା

**ଅଧର୍ମ** - *ଅନେ:* (ବି.) : ପାପ, ଦୁଷ୍କର୍ମ

**ଅଧର୍ଯିଆ** - *କୌ.ଗ.* (ବିଂ.) ଯାହାଠି ଧୈର୍ଯ୍ୟର ଅଭାବ

**ଅଧର୍ମିଆ** - *ନୂ.ସୁ.* (ବିଂ.) : ନାସ୍ତିକ, ଅଧର୍ମୀ

**ଅଧଲା** - *ଗ.କେ.ଖୋ.* (ବି.) : ପଇସାର ଅର୍ଦ୍ଧ, ପୂର୍ବେ ପ୍ରଚଳିତ ହିସାବ, ପୁରୁଣା ମୁଦ୍ରାର ଏକପଇସାର ଅଧା, ଏକ ଟଙ୍କାର ୧୨୮ ଭାଗରୁ ଭାଗେ

**ଅଧଲାକରଦାମ** - *କ.* (ବି.) : ମୂଲ୍ୟହୀନ

**ଅଧସୋଲେ** - *ନ.* (ବିଂ.) : ସୋଲାର ଅଧା, ଅଳ୍ପ ପରିମାଣବାଚକ

**ଅଧା** - *ଗ.ଦେ.କ.* (ବି.ବିଂ.) : ଗଂଜାମରେ ପ୍ରଚଳିତ ମାପ, ଅଡ଼ାର ଅଧା, ୩୭୫ ଗ୍ରାମ୍, ଦୁଇଭାଗରୁ ଭାଗେ, ଅର୍ଦ୍ଧ

**ଅଧାଅଧି** - *ଅନେ.* (ବିଂ.ବିଂ.) ଅର୍ଦ୍ଧେକ, ଅଧେ

**ଅଧାକାନ୍ଥ, ଅଧାକାନ୍ଥି** - *କ.* (ବି.) : ଅଳ୍ପ ଉଚ କାନ୍ଥ, ରୋଷେଇଘରେ ଥାଏ

**ଅଧାଟି** - *ଦେ.* (ବି.) : ଦୁଇଫାଳିଆ କାଠରେ ନିର୍ମିତ ବାଦ୍ୟବିଶେଷ

**ଅଧାଡ଼ିଆ** - *ଅ.* (ବିଂ.) ଅସଂପୂର୍ଣ୍ଣ, ବେଅକଲି

**ଅଧାହୁଆ** - *କ.* (ବିଂ.) : ଅବାଗିଆ

**ଅଧାଢିଆ** - *ସ.* (ବିଂ.) : ଅସଂପୂର୍ଣ୍ଣ ରଖିବା

**ଅଧାଧୁନ୍** - *ସୁ.* (ବି.) : ଅବିଚାର ମୂଳକ, ଅପରିଣାମଦର୍ଶୀ

**ଅଧାପଡରିଆ** - *ଖୋ.କ.* (ବି.ବିଂ.) : କୌଣସି ଦାୟିତ୍ୱ ସଂପୂର୍ଣ୍ଣ କରି ନପାରିବା, ଅସଂପୂର୍ଣ୍ଣ

**ଅଧାବୟସିଆ** - *କ.* (ବିଂ.) : ଅଳ୍ପାୟୁ

**ଅଧାବିଧା** - *ଦେ.* (ବିଂ.) : ଖଣ୍ଡିଆ ଖାବରା

**ଅଧାମ** - *ସଂଦେ.* (ବି.) : ରାବିଡ଼ି, ଏକ ମିଷ୍ଟାନ୍ନ

**ଅଧାମରା** - *ଅନେ.* (ବିଂ.) ଅଚେତ, ସାମାନ୍ୟ ଜୀବିତ ଅବସ୍ଥା, ପୂର୍ଣ୍ଣଭାବରେ ମରିନଥିବା

**ଅଧାଳିଆ** - *ଖୋ.* (ବିଂ.) : ଅପରିପକ୍ୱ

**ଅଧାସଇ** - *କ.* (ବିଂ.) : ପଡ଼ିଆ ଚାଷଜମିକୁ ପ୍ରଥମେ ହଳକରିବା ଲାଗି ବ୍ୟବହୃତ ଲଙ୍ଗଳ

**ଅଧିଆ** - *ଅନେ.* (ବି.କ୍ରି.ବିଂ.) : ଅଭୀଷ୍ଟ ଲାଭପାଇଁ ଦେବତାଙ୍କ ନିକଟରେ ଉପବାସ କରି ପଡ଼ିରହିବା, ଏକାଗ୍ର ହୋଇ ଦେବତାଙ୍କ ଅନୁସରଣରେ ରହିବା, ଗୁହାରିଆ ପଡ଼ିବା, ଦ୍ୱାରସ୍ଥ ହେବା, ଅନ୍ୟର କୃପାପାଇଁ ଶୋଇରହି କରୁଣା ଭିକ୍ଷା କରିବା

**ଅଧିକ** - *ଅନେ.* (ବିଂ.) : ଅନେକ, ବେଶି

**ଅଧିକାର** - *ଅନେ.* (ବି.) କ୍ଷମତା, ଯୋଗ୍ୟତା, ମାଲିକ ସ୍ୱତ୍ୱ

**ଅଧିନାୟକ** - *ଅନେ.* (ବି.) : ପ୍ରଧାନନେତା, ଅଧ୍ୟକ୍ଷ, ପରିଚାଳକ

**ଅଧିପ** - *ପଦ୍ୟ:* (ବି.) : ରାଜା, ପ୍ରଭୁ, ଅଧିକାରୀ

**ଅଧିବକ୍ତା** - *ପଦ୍ୟ:* (ବି.) : ଯେ ପକ୍ଷ ରଖି କଥା କହେ, ଓକିଲ

**ଅଧିବାସ** - *ପଦ୍ୟ:ଦେ:* (ବି.) : ବାସସ୍ଥାନ, ପୂଜାପାଠରେ ପୂର୍ବ ଦିବସର ସଂସ୍କାର

**ଅଧିବାସୀ** - *ଅନେ:* (ବି.ବିଂ.) : ନିବାସୀ, ବାସିନ୍ଦା, ଅନ୍ୟଦେହରେ ଗନ୍ଧଚନ୍ଦନ ଲେପନକାରୀ

**ଅଧିବିଧି** - *ଅ:* (ବି.) : ଗତିବିଧି

**ଅଧିବେଶନ** - *ଅନେ:* (ବି.) ସଭାର ବୈଠକ, ସଭାସ୍ଥଳରେ ସଭ୍ୟମାନଙ୍କର ମିଳନ, ସଭାର ବୈଠକ

**ଅଧିଷ୍ଠାତା** - *ପଦ୍ୟ:* (ବିଂ.) : ନିୟନ୍ତା, ଅଧ୍ୟକ୍ଷ, ତତ୍ତ୍ୱାବଧାରକ, ଅବସ୍ଥିତିକାରୀ, ଅଧିଷ୍ଠାତ୍ରୀ, ଶାସନକର୍ତ୍ତା, ମୁରବୀ, ଈଶ୍ୱର, ଅଧିପତି

**ଅଧିଷ୍ଠିତ** - *ପଦ୍ୟ:* (ବିଂ.) : ଅବସ୍ଥିତ, ଉପସ୍ଥିତ, ଆବିର୍ଭୂତ, ଆଶ୍ରିତ, ଅଧିକୃତ, ଯହିଁରେ ବାସ କରାଯାଏ, ଆରୂଢ଼, ଚଢ଼ାଯାଇଥିବା, ପ୍ରତିଷ୍ଠିତ, ନିଯୁକ୍ତ, ସ୍ଥାପିତ

**ଅଧୀନ** - *ଅନେ:* (ବିଂ.) ବଶବର୍ତ୍ତୀ, ଅଧିକାରଭୁକ୍ତ, ଅନୁଗତ, ଆଶ୍ରିତ, ବାଧ୍ୟ, ହୀନ ବା ବିନୀତ ଭୃତ୍ୟ, ଅଧୀନସ୍ଥ ବ୍ୟକ୍ତି

**ଅଧୁଆ** - *ଅ:ଇ:ପଦ୍ୟ:କେ:* (ବିଂ.) ଅପରିଷ୍କାର, ଧୁଆହୋଇ ନଥିବା, ଯାହା ଧୁଆହୋଇନାହିଁ, ଆଗାଧୁଆ, ଅପରିଷ୍କୃତ, ଅଧୌତ,

**ଅଧୁଆଡ଼ି** - *ଭ:* (ବି.ବିଂ.) ସ୍ତ୍ରୀମାନଙ୍କ ପ୍ରାରମ୍ଭିକ ଯୌବନାବସ୍ଥା, କିଶୋରୀ ଅବସ୍ଥାର ପରବର୍ତ୍ତୀ

**ଅଧୁରା** - *ଖେ:* (ବିଂ.) : ଅଧା, ଅସଂପୂର୍ଣ୍ଣ

**ଅଧୁରି** - *ଅ:* (ବି.) : ମାଟିବାସନ ବିଶେଷ

**ଅଧୁଲି** - *ଅଧୁଲି* (ବି.) : ଆଠଣା, ଆଠଅଣୀ, ପୂର୍ବପ୍ରଚଳିତ ଟଙ୍କାର ଅର୍ଦ୍ଧ

**ଅଧେ** - *ଅନେ:* (ବି.ବିଂ.) : ପୂର୍ଣ୍ଣ ବସ୍ତୁର ସମାନ ଦୁଇଭାଗରୁ ଏକଭାଗ, ଅର୍ଦ୍ଧପରିମିତ, ପ୍ରାୟ ଅର୍ଦ୍ଧେକ, ଅର୍ଦ୍ଧପରିମାଣ

**ଅଧେର୍** - *ସ:* (ବି.) : ବୟସ ଅଧାହେବା, ପଚାଶରୁ ଟପିବା

**ଅଧ୍ୟାତ୍ମ** - *ପଦ୍ୟ:* (ବିଂ.) : ଆତ୍ମାକୁ ବ୍ୟାପି, ଆତ୍ମାବିଷୟକ, ପରମାତ୍ମା ସମ୍ପର୍କୀୟ, ଚିତ୍ତବିଷୟକ, ପରଂବ୍ରହ୍ମ, ସମ୍ବନ୍ଧୀୟ

**ଅଧ୍ୟାପକ** - *ଅନେ:* (ବି.) : ଶିକ୍ଷକ, ବିଦ୍ୟାଗୁରୁ, ଉପାଧ୍ୟାୟ, ଆଚାର୍ଯ୍ୟ,

**ଅଧ୍ୟାୟ** - *ଅନେ:* (ବି.) : ସର୍ବ, ପର୍ବ, କାଣ୍ଡ, ଅଙ୍କ, ଗ୍ରନ୍ଥର ପରିଚ୍ଛେଦ, ସର୍ଗ, ବର୍ଗ, ସ୍କନ୍ଧ, ଉଲ୍ଲାସ, ଉଚ୍ଛ୍ୱାସ, ସ୍ତବକ, ପଟଳ, ପ୍ରକରଣ ଇତ୍ୟାଦି

**ଅଧୋଢ଼ା** - *ଅ:* (ବିଂ.) : ଦରବୁଢ଼ା

**ଅନ୍‌କା** - *ଦୌ:କନ୍ଧ:ସ:କଳା:* (ବି.) : ଡଙ୍କା, ଲାଉତୁମ୍ବା, ତୁଆ, ଅଣିକା, ଅଣକ, ଡାଲି ପ୍ରଭୃତି ପରଷିବା ପଳା

**ଅନ୍‌କୁଲିଆ** - *ସୁବ:* (ବିଂ.) : ଅଜାତିଆ, କୁଳରୁ ବାହାରିବା

**ଅନ୍‌କୁଲିଏନ୍** - *ସୁବ:* (ବିଂ.) : ଅନକୁଲିଆର ସ୍ତ୍ରୀଲିଙ୍ଗ

**ଅନ୍‌ଛାଇବା** - *ଦୌ:* (କ୍ରି.) : ଅନାଦର କରିବା, ଅଯତ୍ନ କରିବା

**ଅନ୍‌ଛି** - *ସ:ଦୌ:* (ବି.) : ଗାମୁଛା,

**ଅନ୍‌ଜତିଆ** - *ସୁବ:ସ:* (ବିଂ.) : ଅଜାତିଆ, ଅନ୍ୟ ଜାତିରେ ବିବାହ କରି ଜାତି ହରାଇଥିବା, ଅଜାତିଆ

**ଅନ୍‌ଝିବାର୍** - *ସୁବ:* (କ୍ରି.) : ଗଛଡାଳରେ ଫଳ ଝଡ଼େଇବା ପାଇଁ ଫିଙ୍ଗା ଯାଉଥିବା ବାଡ଼ି ଆଦି ଲାଖି ରହିବା

**ଅନ୍‌ତଜିଆ** - *ସ:* (ବି.) : ଅନୁମାନରେ

**ଅନ୍‌ତି, ଅନତି** - *ନବ:* (ବି.) : ଅନ୍ୟାୟ

**ଅନ୍‌ଦାଜିଆ** - *ଦେ:* (ବିଂ.) : ଅନୁମାନିକ

**ଅନ୍‌ଧଡ଼ିଆ** - *ସ:* (ବିଂ.) : ଆନୁମାନିକ

**ଅନ୍‌ଧୁନିଆ** - *ଦେ:* (ବିଂ.) : ଆଖିବୁଜା

**ଅନ୍‌ମାନ୍** - *କଳା:* (ବି.) : ଅନୁମାନ୍

**ଅନ୍‌ସରିବା** - *ସ:* (କ୍ରି.) : ଟାକିବା, ଅପେକ୍ଷା କରିବା

**ଅନ୍‌ସାରେ** - *ନୁ:* (ଅ.) ଅନୁସାରେ, ହିସାବରେ

**ଅନ୍‌ହାନ୍** - *ଝା:* (ବି.) : ଭାତ ରାନ୍ଧିବାପାଇଁ ବ୍ୟବହୃତ ହାଣ୍ଡି

**ଅନଖା** - *କଳା:* (ବି.) : ଡଂକି, ଅଣାକ

**ଅନଖୋଜ୍** - *ସୁବ:* (ବିଂ.) : ବାଟବଣା, ଦିଗ ନ ବାରିପାରିବା

**ଅନଗୁଳି** - *ଅ:* (ବିଂ.) : ଅଲଣା

**ଅନଜାତିଆ** - *କଳା:* (ବିଂ.) : ବାସନ୍ଦ, ଜାତିରୁ ବାହାର

**ଅନଟନ** - *ପଦ୍ମ:* (ବି.) : ଅଭାବ, ନଅଣ୍ଟ ଅବସ୍ଥା, ଅପ୍ରତୁଳ, ନଅଣ୍ଟ

**ଅନଡଗରିଆ** - *ସୁବ:* (ବିଂ.) : ଅଲକ୍ଷଣା, ବେଢଙ୍ଗିଆ ଲୋକ

**ଅନନ୍ତ** - *ବା:ଦେ:ଭ:* (ବି.) : ନାରୀହାତର ଅଳଙ୍କାର ଯାହାବାହୁରେ ବଂଧାଯାଏ, ଗହଣାବିଶେଷ

**ଅନପଗତ** - *ପଦ୍ମ:* (ବିଂ.) ଯାହା ପଳାଇଯାଇନାହିଁ, ଅପସୃତ ହୋଇନଥିବା

**ଅନପଢ** - *ଗଦ୍ୟ:* (ବିଂ.) : ପାଠ ପଢିନଥିବା ଲୋକ, ନିରକ୍ଷର

**ଅନବରତ** - *ଅନେ:* (ବି.ବିଂ.) : ସଦାବେଳେ, ସଦାସର୍ବଦା, କ୍ରମାଗତ, ବିରାମହୀନ

**ଅନଭଲ** - *ସୁବ:ସ:* (ବିଂ.) : ଖରାପ, ମନ୍ଦ, ଯାହା ଭଲ ନୁହେଁ

**ଅନମନୁଷିଆ** - *ସୁବ:ସ:* (ବିଂ.ବି.) : ଅମଣିଷ

**ଅନମ ପୁରୁଷ** - *କେ:* (ବି.) : ବ୍ରାହ୍ମଣ, ଅନମନୀୟ ବ୍ୟକ୍ତି

**ଅନରଯାପ** - *ନବ:* (ବିଂ.) : ଅତ୍ୟଧିକ, ପର୍ଯ୍ୟାପ୍ତରୁ ଅଧିକ

**ଅନରୂପ** - *ଢ:* (ବିଂ.) : (ଅନୁରୂପ) ତୁଲ୍ୟ

**ଅନରୂପେ** - *ଢ:* (ବିଂ.) : ସେହିରୂପେ, ତଦନୁସାରେ, ଏକାପରି

**ଅନର୍ଥ** - *ଅନେ:* (ବି.ବିଂ.) : ବିବାଦ, ମନ୍ଦ ଅର୍ଥ, ଅର୍ଥହୀନ, ଗଣ୍ଡଗୋଳ, ଅନିଷ୍ଟ, କ୍ଷତି

**ଅନସରବାର୍** - *ସୁବ:* (କ୍ରି.) ଅପେକ୍ଷା କରିବା

**ଅନହୁଡ଼ି** - *ପଦ୍ୟ:* (ବିଂ.) : ଅଚାନକ

**ଅନା** - *ଦେ:ସୁବ:ବୌ:କନ୍ଧ:* (କ୍ରି.ବିଂ.) : ଦେଖ, ଚାହଁ, ପାଣିନାଳ, ପାଣି ମଡ଼ା ଖାଲ ଜାଗା, ଛୋଟପାଣି ଧାର

**ଅନାଅନି** - *ଅନେ:* (କ୍ରି.ବି.) : ଚୁହାଁଚୁହିଁ, ପରସ୍ପରକୁ ଚାହାଁଚୁହିଁ, ଦେଖାଦେଖି

**ଅନାଆସ** - *ରା:* (ବି.) : ବିନା କାରଣ, ବିନା ବାଧା, ଅନାୟାସ

**ଅନାଉଣି** - *ଗ:* (ବି.) : ଚାହାଣି

**ଅନାଏତ୍** - *ସୁ:* (ବି.) : ଅଣାୟତ୍ତ

**ଅନାଗିଲା** - *ଭ:* (ବି.) : ଯାହା ପ୍ରଯୁଜ୍ୟ ନୁହେଁ ବା ଗ୍ରହଣୀୟ ନୁହେଁ

**ଅନାଜ୍** - *ଦେ:* (ବି.) : ଶସ୍ୟ, ଦାନା, ଅନାଜ

**ଅନାଡ଼ି** - *ଅନେ:* (ବିଂ.ବି.) : ଅସଭ୍ୟ, ନିର୍ବୋଧ, ବୋକା, ମୂର୍ଖ, ଯାହାର ଦାୟିତ୍ୱବୋଧ ନଥାଏ, ଅଯୋଗ୍ୟ, ଅପଦାର୍ଥ,

**ଅନାଣି** - *ଗଢ:* (ବି.) : ଅନାଇବା, ଚାହିଁବା

**ଅନାଥ** - *ଅନେ:* (ବିଂ.) : ଅସହାୟ, ଛେଉଣ୍ଡ, ନିରାଶ୍ରୟ, ମାଆ ବାପା ନଥିବା ଛୁଆ

**ଅନାଦର** - *ଅନେ:* (ବିଂ.) : ଉପେକ୍ଷା, ହତାଦର

**ଅନାଧୁନିଆ** - *ଭ:ଅ:କ:* (ବି.ବିଂ.) ଆନୁମାନିକ, ନଭାବି ନଚିନ୍ତି ବିଚାର ନକରି, କିଛି ନବୁଝି

**ଅନାପିଲା** - *ଭ:* (ବି.) : ଅଦରକାରୀ

**ଅନାବନା** - *ଅନେ:* (ବିଂ.ବି.) : ଅନାବଶ୍ୟକ, ୟାଡୁସେଆଡୁ, ଅଦରକାରୀ, ମିଶାମିଶି, ନାନାପ୍ରକାର ଅଳିଆ ଆବର୍ଜନା

**ଅନାବାଦି** - *ଅନେ:* (ବିଂ.ବି.) : ପତିତ ଜମି, ଚାଷ ହେଉନଥିବା ଜମି, ମାଲିକାନାସ୍ୱତ୍ୱରେ ଆବଦ୍ଧ ନୁହେଁ

**ଅନାବିଳ** - *ଅନେ:* (ବିଂ.) : ପବିତ୍ର, ସ୍ୱଚ୍ଛ, ସରଳ ହୃଦୟ

**ଅନାମ** - *ଅନେ:* (ବି.) : ଯାହାର ନାମ ନାହିଁ, ନାମହୀନ, ପରିଚୟହୀନ

**ଅନାମିକା** - *ଅନେ:* (ବି.) : ଅଙ୍ଗୁଳି ବିଶେଷ, ବୁଢ଼ା ଅଙ୍ଗୁଳିରୁ ଚତୁର୍ଥ

**ଅନାର** - *ସଂ:* (ବି.) : ଡାଳିମ୍ବ, ବେଦନାଫଳ

**ଅନାର୍ଜିତ** - *ସଂ:* (ବିଂ.) : ଯାହା ଅର୍ଜିତ ନୁହେଁ
**ଅନାର୍ଯ୍ୟ** - *ଅନେ:* (ବିଂ.) : ଅସଭ୍ୟ, ଅଭଦ୍ର, ଆର୍ଯ ନୁହେଁ
**ଅନାଶି ବିନାଶି** - *କ:* (ବି.) : ଖାଦ୍ୟ ଆଶାରେ ଆସି ପହଞ୍ଚିବା ଅନେକ ଦୁଃଖୀ, ଦୁଃଖୀରଙ୍କୀ
**ଅନାସି** - *ଗଞ୍ଜ:ରା:* (ବି.) : ଶିଶୁରୋଗ
**ଅନାସିଆ** - *ରା:* (ବିଂ.) : ଅତି ଦୁର୍ବଳ (ଶିଶୁ)
**ଅନାସ୍ଥା** - *ଅନେ:* (ବିଂ.) : ଭରସାଶୂନ୍ୟ, ଆସ୍ଥା ନଥିବା, ଅବିଶ୍ୱାସ, ଅବହେଳା
**ଅନାହାର** - *ଅନେ:* (ବିଂ.) : ନ ଖାଇବା, ଖାଇବାକୁ ନଥିବା
**ଅନି** - *କ:* (ବି.) : ଖଜା, ଏକ ପ୍ରକାର ମିଷ୍ଟାନ୍ନ
**ଅନିଆଚାରିଆ** - *କେ:* (ବିଂ.) : ଅନାଚାର କରୁଥିବା (ବ୍ୟକ୍ତି)
**ଅନିଏ** - *ସୁ:ନୂ:* (ବି.) : ଅନ୍ୟାୟ
**ଅନିକାର** - *ନବ:* (ବି.) : ଅବଶ୍ୟମ୍ଭାବୀ
**ଅନିକିଳି** - *ଖୋ:* (ବି.) : ଶଗଡ଼ର ଚକ ଅଖରୁ ନବାହାରିବା ପାଇଁ ଦିଆଯାଇଥିବା ଖିଲ
**ଅନିଦିରା** - *କ:* (ବିଂ.) : ଅନିଦ୍ରା
**ଅନିପୁଣ** - *ଢେ:* (ବିଂ.) : ଅକୁଶଳ
**ଅନିଭୋଗ** - *ପଦ୍ୟ:* (ବି.) : ଦେହର କ୍ଷତ, ଆଘାତ
**ଅନିମିତ** - *କ:* (ବିଂ.) : ନିୟମିତ ଯାହା ନୁହେଁ, ନିୟମରହିତ, ଅସଂଯତ
**ଅନିକ୍ଷା** - *ଅନେ:* (ବି.) : ଅପେକ୍ଷା, ଖୋଜିବା, ଅନ୍ୱେଷା, ଦେଖିବା, ନଜର
**ଅନିସ୍ୱତିଆ** - *ଝା:* (ବିଂ.) : ଯେ କାମରେ ଅନାଗ୍ରହ ଅନୁଭବ କରେ ନାହିଁ
**ଅନିହାଲ** - *ଗଦ୍ୟ:* (ବି.) : ଅଭାବ, ଅସୁବିଧା
**ଅନୀତି** - *ଅନେ:* (ବିଂ.) : ଅନ୍ୟାୟ, ନୀତିହୀନ
**ଅନୁଆନ** - *କ:* (ବି.) : ଅନୁମାନ, ଅନ୍ଦାଜ୍, ବୋଧ, କାରଣାନୁଯାୟୀ ନିର୍ଣ୍ଣୟ
**ଅନୁକମ୍ପା** - *ଅନେ:* (ବି.) : କରୁଣା, କୃପା, ଅନୁଗ୍ରହ
**ଅନୁକରଣ** - *ଅନେ:* (ବି.) : ନକଲ କରିବା
**ଅନୁକୂଳ** - *ଅନେ:* (ବିଂ.ବି.) : ଆରମ୍ଭ କରିବା, ସପକ୍ଷ
**ଅନୁକୂଳବାର** - *ଗ:* (ବି.) : ଶୁକ୍ରବାର
**ଅନୁକ୍ରମଣିକା** - *ସଂ:* (ବି.) : ବର୍ଣ୍ଣନାନୁକ୍ରମିକ ସୂଚୀ
**ଅନୁଗୁଳି** - *ଦେ:* (ବି.) ଅଲଗୁଣି, ଲୁଗାରଖିବା ପାଇଁ ବାଡ଼ି, ବାଉଁଶ
**ଅନୁଚ** - *ଢେ:* (ବି.) : ଚାକର, ଅନୁଚର
**ଅନୁଚର** - *ଅନେ:* (ବି.) : ସହଚର, ଚାକର, ଯେ ପଛେ ପଛେ ଯାଏ
**ଅନୁତାପ୍** - *ଅନେ:* (ବି.) : ମନେମନେ ଗୁଣିହେବା, ହେଜିହେବା, ପଛକଥା ଭାବି ଦୁଃଖ ପାଇବା
**ଅନୁନୟ** - *ଅନେ:* (ବି.) : ବିନୟ, ପ୍ରାର୍ଥନା

**ଅନୁପକାର** - *ଅନେ:* (ବି.) : ଅନିଷ୍ଟ, ଉପକାର ବିପରୀତ, କ୍ଷତିସାଧନ

**ଅନୁପାତ** - *ପଦ୍ମ:* (ବି.) : ପଛରେ ପଡ଼ିବା, ଏକ ରାଶି ସହିତ ଅନ୍ୟ ରାଶିର ସମ୍ବନ୍ଧ

**ଅନୁପାଦ** - *ଭେ:* (ବି.) : ଘୋଷାପାଠ

**ଅନୁପାନ** - *ଅନେ:* (ବିଂ.) : ଔଷଧ ଖାଇବାର ମାତ୍ରା, ପରିମାଣ

**ଅନୁପ୍ରାଣିତ** - *ପଦ୍ମ:* (କ୍ରି.ବିଂ.) : ପ୍ରୋତ୍ସାହିତ, ପ୍ରଭାବିତ

**ଅନୁବନ୍ଧ** - *ସଂ:* (ବି.) : ସଂଯୋଗ, ସହବନ୍ଧନ

**ଅନୁବ୍ରତ** - *ଛ:* (ବି.) : ସବୁବେଳେ, ଅନବରତ

**ଅନୁଭୋଗ** - *ପଦ୍ମ:* (ବି.) ଅଙ୍ଗେ ନିଭାଉଥିବା କଥା, ଭୋଗ କରିଥିବା କଥା

**ଅନୁମତି** - *ଅନେ:* (ବି.) : ଆଦେଶ

**ଅନୁମେୟ** - *ପଦ୍ମ:* (ବିଂ.) : ଅନୁମାନଯୋଗ୍ୟ, ଅନୁମାନବୋଧ, ଅନୁମାନ ଦ୍ୱାରା ଯାହା ସାଧିତ ହୁଏ

**ଅନୁଯାୟୀ** - *ଅନେ:* (ଅ.) : ଅନୁସାରେ

**ଅନୁରାଗ** - *ପଦ୍ମ:* (ବି.) : ଆଦରଯୁକ୍ତ, ସ୍ନେହ, ଆସକ୍ତି, ପ୍ରୀତି, ଯତ୍ନ, ସୋହାଗ, ପ୍ରେମ ପର ପ୍ରତିକ୍ରିୟା

**ଅନୁରୂପ** - *ପଦ୍ମ:* (ବି.ବିଂ.) : ସଦୃଶ, ତୁଲ୍ୟ, ଯୋଗ୍ୟ, ଅନୁଯାୟୀ

**ଅନୁରୋଧ** - *ଅନେ:* (ବି.) : ଅଭୀଷ୍ଟସାଧନରେ ଇଚ୍ଛା, ସୁପାରିସ, ଖାତିର, ନିବେଦନ, ପ୍ରାର୍ଥନା

**ଅନୁଷ୍ଠାନ** - *ଅନେ:* (ବି.) : ସଂଘ, ସମିତି, ସଂଗଠନ

**ଅନୁସନ୍ଧାନ** - *ଅନେ:* (ବି.) : ଅନ୍ୱେଷଣ, ଖୋଜିବା

**ଅନୁସର** - *ପଦ୍ମ:* (ବି.) : ଅନୁସରଣ, ରୀତି, ଅନୁଗମନ, ଅନ୍ୱେଷଣ

**ଅନୁସାରେ** - *ଅନେ:* (କ୍ରି.ବିଂ.) : ଅନୁଯାୟୀ, ପୂର୍ବପରି, ସେହିପରି

**ଅନେକ** - *ଅନେ:* (ବିଂ.) : ଅସଂଖ୍ୟ, ଏକରୁ ବହୁ ଅଧିକ ଅର୍ଥରେ

**ଅନେଦ୍** - *ସ:* (ବି.) : ଅଥା ହୋଇଯିବା, କ୍ଳାନ୍ତ ହୋଇପଡ଼ିବା

**ଅନେବନେ** - *ସ:* (ବି.) ଇତସ୍ତତଃ, ଏଣେତେଣେ

**ଅନ୍ତ** - *ଅନେ:* (ବି.ବିଂ.) : ଶେଷ, ପେଟ ଭିତରର ପାକନଳୀ, ପରିସମାପ୍ତି, ମୃତ୍ୟୁ, ନାଡ଼ି, ସୀମା

**ଅନ୍ତ ଅଣ୍ଡ** - *ଖୋ:* (ବି.) : ଅନ୍ତ ନାଡି

**ଅନ୍ତ କପଟିଆ** - *ଗୌ:* (ବି.) : ଅନ୍ତରରେ କପଟ କରିବା

**ଅନ୍ତକୋଣିଆ** - *ଖୋ:* (ବି.) : ଏକପ୍ରକାର ଗାଳି

**ଅନ୍ତଗଣ୍ଠିଆ** - *ତ୍ୱ:* (ବିଂ.) : ଜଟିଳ ପ୍ରକୃତିର ଲୋକ

**ଅନ୍ତତଃ** - *ଅନେ:* (ଅ.) ଶେଷରେ, ସବୁପରେ

**ଅନ୍ତପୁଟା** - *କୋ:* (ବି.) : ପେଟ ଭିତରର ଅନ୍ତ ବା ପେଟ ଭିତରର ଥଳି

**ଅନ୍ତବୁନ୍ଧୁଳା** - *ଅନେ:* (ବି.) : ପାକସ୍ଥଳୀ ଓ ଅନ୍ୟାନ୍ୟ ନାଡ଼ି

**ଅନ୍ତର** - *ଅନେ:* (ବିଂ.ଅ.ବି.) : ଅଲଗା, ବିନା, ମଧ୍ୟର, ଭିତର, ହୃଦୟ, ବ୍ୟବଧାନ, ପାର୍ଥକ୍ୟ, ହୃଦୟ, ବିୟୋଗ

**ଅନ୍ତରଙ୍ଗ** - *ଅନେ:* (ବିଂ.) : ଏକାନ୍ତ ନିଜର

**ଅନ୍ତର ଚିପନି** - *ଅ:* (ବିଂ.) : ଭିତରେ ଭିତରେ ଚିମୁଟି ଦେବା

**ଅନ୍ତରଣ** - *ପଦ୍ୟ:* (ବି.) : ବ୍ୟବଧାନ କରିବା, ବିଚ୍ଛେଦ, ଅନ୍ତର କରିବା, ଦୂରେଇ ଦେବା

**ଅନ୍ତର ପୁଅ** - *ଅନେ:* (ବି.) : ରକ୍ଷିତାର ପୁତ୍ର

**ଅନ୍ତରପୁରୁଷ** - *ପଦ୍ୟ:* (ବି.) : ପରମାତ୍ମା, ଯେ ସମସ୍ତଙ୍କର ଅନ୍ତର୍ଯ୍ୟାମୀ

**ଅନ୍ତରମାଧିଆ** - *ସଂ:* (ବିଂ.) : ଅସମ୍ପୂର୍ଣ୍ଣ ବା ଅଯତ୍ନ ଭାବରେ କରିବା, ଅଯତ୍ନ ଭାବରେ ସମ୍ପାଦିତ

**ଅନ୍ତରା** - *ଦେ:* (ବି.) : ନିଆଁଗଦା

**ଅନ୍ତରା** - *ଖୋ:କୋ:ବୌ:* (ବିଂ.ବି.) : କପଟିଆ, ନିଆଁ ଜଳୁଥିବା ଜାଗା, ଦାଣ୍ଡ, ଛକରେ ଜଳା ଯାଇଥିବା ନିଆଁ

**ଅନ୍ତରାଳରେ** - *ଅନେ:* (ବି.) : ପର୍ଦା ପଛରେ, ଗୋପନରେ

**ଅନ୍ତରିକ୍ଷ ମଣ୍ଡା** - *ସଂ:* (ବି.) : ଏକପ୍ରକାର କ୍ଷୁଦ୍ର ଇଣ୍ଡୁରିପିଠା

**ଅନ୍ତରିଖିଆ** - *ସଂ:* (ଅ.) : ଗାଳିବିଶେଷ

**ଅନ୍ତରୀଛ** - *ପଦ୍ୟ* (ବିଂ.) : ଅନ୍ତରୀକ୍ଷ, ମହାକାଶ

**ଅନ୍ତରୁ ଛାଡ଼ିବା** - *ଗ:* (କ୍ରି.) : ରୋଗମୁକ୍ତ ହେବା

**ଅନ୍ତର୍ଦ୍ଧାନ** - *ଅନେ:* (ବି.) : ତିରୋଧାନ, ବ୍ୟବଧାନ, ଅଦୃଶ୍ୟ ହେବା

**ଅନ୍ତର୍ନିହିତ** - *ପଦ୍ୟ:* (କ୍ରି.ବିଂ.) : ଅନ୍ତଃକରଣ ସ୍ଥାପିତ, ଯାହା କେବଳ ଭିତରେ ଅଛି, କିନ୍ତୁ ବାହାରେ ଅପ୍ରକାଶିତ

**ଅନ୍ତର୍ଯ୍ୟାମୀ** - *ଅନେ:* (ବିଂ.) : ଯେ ଅନ୍ତର କଥା ଜାଣନ୍ତି

**ଅନ୍ତା** - *ଗ:ରା:* (ବି.ବିଂ.) : ଗ୍ରାମର ଶେଷ ଭାଗ, ଶେଷ

**ଅନ୍ତାକ୍ଷରୀ** - *ସଂ:* (ବି.) : ପଦ୍ୟାନ୍ତ ଖେଳ

**ଅନ୍ତାଜିଆ** - *ସୁବ:ସ:* (ବିଂ.ବି.) : ଆନୁମାନିକ, ଅନ୍ଦାଜ

**ଅନ୍ତି** - *କ:ଅ:* (ବି.) : ଫଳ ବା ପନିପରିବା ମଞ୍ଜି, ତାଳ ବାହୁଙ୍ଗାର ମଝିରୁ ବାହାରୁଥିବା ଅଂଶ, କଖାରୁ ମଧ୍ୟରେ ଥିବା ଅଖାଦ୍ୟ ଅଂଶ

**ଅନ୍ତିମ** - *ଅନେ:* (ବିଂ.) : ଶେଷ

**ଅନ୍ତୁଡ଼ି** - *ଅନେ:* (ବି.) : ପ୍ରସୂତିଘରେ ଜଳିବା ନିଆଁ, ପିଲା ଜନ୍ମ ହେବା ଘରେ ଜଳୁଥିବା ଅଗ୍ନି, ଏନ୍ତୁଡ଼ି

**ଅନ୍ତୁଡ଼ିଶାଳ** - *ଅନେ:* (ବି.) : ସୂତିକାଘର, ପିଲା ଜନ୍ମ ଘର

**ଅନ୍ତ୍ୟଜ** - *ପଦ୍ୟ:* (ବି.) : ନୀଚ ଜାତି

**ଅନ୍ଥରା** - *ନ:* (ବିଂ.) : ଦାନ୍ତହୀନ (ଅସ୍ତ୍ରଶସ୍ତ୍ର) ବା ଧାର ନଥିବା ଅସ୍ତ୍ରଶସ୍ତ୍ର, ଦନ୍ଥରା

**ଅନ୍ଦ** - *କେନ୍ଦୁ:* (ବି.) : କୁଆଳିର ଛନ୍ଦଣି

**ଅନ୍ଦନା** - *ଗଜ:* (ବି.) : ହରଗଉରା ଫୁଲ, ଅଂଜନା

**ଅନ୍ଦାଜ** - *ଅନେ:* (ବି.) : ଆନୁମାନିକ, ଅନୁମାନ, ପ୍ରାୟ, ଖିଆଲ

**ଅନ୍ଦାଜିଆ** - *ଅନେ:* (ବିଂ.) : ଅନୁମାନରେ, ଅନୁମାନିକ

**ଅନ୍ଦାଧୁନିଆଁ** - *ଅନେ:* (ଅ.ବିଂ.) : ଅନୁମାନ କରି କହିବା, ଯେଛା-ତେଛା, ବିଚାରହୀନ

**ଅନ୍ଦିସନ୍ଦି** - *ଅନେ:* (ବି.) : ଗଳିକନ୍ଦି, ଟିକିନିଖି

**ଅନ୍ଦୁ** - *ସଂ:* (ବି.) : ହାତୀ-ଶିକୁଳା, ଶିକୁଳି ପରି ସ୍ତ୍ରୀ ପାଦଭୂଷଣ ବିଶେଷ (ଅନ୍ଦୁ)

**ଅନ୍ଧ** - *ପଦ୍ୟ:* (ବି.) : ଚକ୍ଷୁହୀନ, ନିବିଡ଼, ନିର୍ବିଚାର

**ଅନ୍ଧଦେଶ** - *ପଦ୍ୟ* (ବି.) : ମୂର୍ଖରାଜ୍ୟ

**ଅନ୍ଧପୁତୁଳି** - *ପଦ୍ୟ:* (ବି.) : ଆଖିରେ ବନ୍ଧା ପଟି

**ଅନ୍ଧ ବିଶ୍ୱାସ** - *ସଂ:* (ବି.) : କାରଣହୀନ ବିଶ୍ୱାସ, ଯୁକ୍ତିହୀନ ବିଶ୍ୱାସ

**ଅନ୍ଧଳା** - *କନ୍ଧ:* (ବିଂ.) : ଅନ୍ଧକାରମୟ

**ଅନ୍ଧ-ସ୍ତାବକ** - *ପଦ୍ୟ:* (ବିଂ.) : ପ୍ରଶଂସକ

**ଅନ୍ଧା** - *ନବ:ଦେ:* (ବି.) : କଣା, ଅନ୍ଧ ମଣିଷ

**ଅନ୍ଧାନ୍** - *ସ:ବ:* (ବି.କ୍ରି.) : ଭାତପାଇଁ ପାଣି ବସେଇବା, ରୋଷେଇ ଆରମ୍ଭ କରିବା

**ଅନ୍ଧାର ଚକି** - *ନ:* (ବି.) : ଏକ ଧାନର ନାମ

**ଅନ୍ଧାରିଆ** - *ଅନେ:* (ବିଂ.) : ଅଂଧକାରମୟ

**ଅନ୍ଧାରୀ ବଗ** - *ଗଦ୍ୟ:* (ବି.) : ଏକ ପ୍ରକାର ପକ୍ଷୀ

**ଅନ୍ଧାରୀ ଶାସନ** - *ସଂ:* (ବି.) : ମନଇଛା ପ୍ରଜାଙ୍କୁ ଶାସନ କରିବା, ନିୟମହୀନ ଶାସନ

**ଅନ୍ଧାରୁଆ** - *ଭ:* (ବି.ବିଂ.) : ପକ୍ଷୀ ବିଶେଷ, ଅନ୍ଧାରପୂର୍ଣ୍ଣ

**ଅନ୍ଧାର୍‌କଣା** - *ଅନେ:* (ବି.) : ରାତିରେ ଯାହାକୁ ଦେଖାଯାଏ ନାହିଁ

**ଅନ୍ଧାର୍‌ପଖ୍** - *ଦେ:* (ବି.) : କୃଷ୍ଣପକ୍ଷ

**ଅନ୍ଧିଲି** - *ଚା:* (ବି.) : ମାଛଧରା ଯନ୍ତ୍ର, ବାଉଁଶ କାଠିରେ ଏହା ନିର୍ମିତ

**ଅନ୍ଧିସନ୍ଧି** - *ଅନେ:* (ବିଂ.) : ଗୁପ୍ତ ସ୍ଥାନ

**ଅନ୍ଧୁ** - *ଅନେ:* (ବି.) : ଧୂଆଁରେ ହେଉଥିବା କଳା, ଅଳନ୍ଧୁ, କଳାରଙ୍ଗ

**ଅନ୍ଧୁଣି** - *ଯା:ଗ:* (ବି.ବିଂ.) : ମାଛ ଧରାପାଇଁ ନଡ଼ିଆ କଂଚିରେ ତିଆରି ଜିନିଷ

**ଅନ୍ଧୁଲି** - *ଯା:ଭ:କେନ୍ଦୁ:କ:* (ବି.) : ମାଛଧରା ଯନ୍ତ୍ର, ଅନ୍ଧୁଣି

**ଅନ୍ନ** - *ପଦ୍ୟ:ଗଦ୍ୟ:* (ବି.) : ସିଦ୍ଧ ଚାଉଳ, ଭାତ, ଖାଦ୍ୟ

**ଅନ୍ନକଷ୍ଟ** - *ପଦ୍ୟ:* (ବି.) : ଖାଦ୍ୟ ବସ୍ତୁର ଅଭାବ, ଦୁର୍ଭିକ୍ଷ

**ଅନ୍ନଛୁଆଣି** - *ଗ:* (ବି.) : ଶିଶୁର ପ୍ରଥମ ଅନ୍ନଭକ୍ଷଣ ସଂସ୍କାର, ଅନ୍ନପ୍ରାଶନ

**ଅନ୍ନଦାତା** - *ପଦ୍ୟ:* (ବିଂ.) : ପ୍ରତିପାଳକ, ଯେ ଅନ୍ନଦାନ କରେ

**ଅନ୍ନପ୍ରାଶନ** - *ଅନେ:* (ବି.) ଛୁଆଙ୍କ ପହିଲିଭାତଖିଆ ପର୍ବ, କ୍ଷୀରଚଟା

**ଅନ୍ୟାଚାର** - *ଛ:କେ:ଯା* (ବି.) : ଅନାଚାର

**ଅନ୍ୟାସେ** - *ଅ:* (ବିଂ.) : ଅନାୟାସେ

**ଅନୋଖା** - *ଅ:* (ବିଂ.) : ଦୁର୍ମୂଲ୍ୟ, ଅତୁଳନୀୟ

**ଅପ୍‌କା** - *ନୂ:* (ଅ.) : କେବଳ

**ଅପ୍‌ଟେସପ୍‌ଟେ** - *ସ:* (ବି.) : କେତେବେଳେ କେମିତି

**ଅପ୍‌ପାକାବା** - *ସୁ:* (ବି.) : ଘାବରେଇ ଯିବା, ଆବାକାବା

**ଅପ୍‌ରାଜିତା** - *ଭ:ଦେ:ସ:* (ବି.) ଫୁଲ ବିଶେଷ, ଅଶନ୍‌ପଣ୍ଡିଲତା

**ଅପ୍‌ରାଧ୍‌** - *ଅନେ:* (ବି.) : ଦୋଷ, ପାପ

**ଅପ୍‌ରାପାଟି** - *ସ:* (ବି.) : ଅପେରା ପାଟି, ଗଣନାଟ୍ୟ

**ଅପକାର** - *ଅନେ:* (ବିଂ.) : ହାନି, କ୍ଷତି

**ଅପଖା** - *ଅ:* (ବିଂ.) : ଏକମୁହାଁ (ଚୁଲି)

**ଅପଗତି** - *ଛ:* (ବି.) : ଅପମାନ, ଅପବାଦ

**ଅପଘାତ** - *ବା:ଛ:* (ବିଂ.ବି.) : ଆକସ୍ମିକ ମୃତ୍ୟୁ, ଅଭିଶାପ

**ଅପଘିଞ୍ଚା** - *ଗଢ:* (କ୍ରି.) : ପ୍ରତିଶ୍ରୁତି ପ୍ରଦାନ କରିବା

**ଅପଚୟ** - *ଅନେ:* (ବି.) : ଅପବ୍ୟୟ

**ଅପଚାରିଆ** - *ଛ:* (ବିଂ.) : ଆଚରଣହୀନ ବ୍ୟକ୍ତି

**ଅପଚ୍ଛ** - *ଅ:* (ବିଂ.) : ନଗଣ୍ୟ

**ଅପଜା** - *କ:* (ବିଂ.) : ପଜା ହୋଇନଥିବା, ଧାର ହୋଇନଥିବା

**ଅପଟ୍‌** - *ସୁ:* (ବି.) : ଅମେଳ, ଅପଢ଼

**ଅପଢ଼** - *ଅନେ:* (ବି.) ବିବାଦ, ମନୋମାଳିନ୍ୟ, ଅମେଳ, ବିରୋଧ, ପରସ୍ପର ମଧ୍ୟରେ ସମ୍ବନ୍ଧ ନଷ୍ଟ ହେବା

**ଅପତ୍‌** - *ସୁ:* (ବି.) : ଲଜ୍ଜା

**ଅପତ ମଙ୍ଗୁଳିଆ** - *କେ:* (ବିଂ.) : ଅମଙ୍ଗଳର ପ୍ରତୀକ

**ଅପଥ୍ୟ** - *ଅନେ:* (ବି.) : ରୋଗୀର ସ୍ୱାସ୍ଥ୍ୟ ପକ୍ଷେ ହାନିକାରକ ଖାଦ୍ୟ, ଅସ୍ୱାସ୍ଥ୍ୟକର ଖାଦ୍ୟ

**ଅପଦକ** - *ଗଢ:* (ବି.) : ଅପଯଶ, ଦୁର୍ନାମ

**ଅପଦଛ** - *ଅ:* (ବିଂ.) : ଅପଯଶ, ଅପଦସ୍ଥ

**ଅପଦାର୍ଥ** - *ଅନେ:* (ବି.) : ଅଯୋଗ୍ୟ

**ଅପଡରା** - *ଅନେ:* (ବିଂ.) : ଅସ୍ଥାନ, ଅଜାଗା, ଅପରିଚ୍ଛନ୍ନ ସ୍ଥାନ, ଜନହୀନ ସ୍ଥାନ, ଅଗମ୍ୟ ସ୍ଥାନ, ଅଗମ୍ୟ ପଥ

**ଅପଛିଆ** - *ଗ:* (ବିଂ.) : ଜାତିରୁ ବାସନ୍ଦ

**ଅପବର୍ଗ** - *ପଦ୍ୟ:* (ବି.) : ଫଳ ସିଦ୍ଧି, ଶେଷ ନିଷ୍ପତ୍ତି

**ଅପଯଶା** - *ଅନେ:* (ବିଂ.) : ଯାହାର ମୁହଁ ଦେଖିଲେ ଅମଙ୍ଗଳ, ଅମଙ୍ଗୁଳିଆ

**ଅପର** - *ଅନେ:* (ସ.ବି.) : ଅନ୍ୟ
**ଅପରଚ** - *ଅ:* (ବିଂ.) : ପରିଚୟହୀନ
**ଅପରଦିନ** - *ଅନେ:* (ବି.) : ଆସନ୍ତା କାଲିର ପରଦିନ
**ଅପରପକ୍ଷ** - *ଅନେ:* (ବି.) : ପିତୃପକ୍ଷ, ଅଶ୍ୱିନ କୃଷ୍ଣପକ୍ଷ, ଅନ୍ୟତରଫ, ଅସମୟ
**ଅପରସନ** - *ଅନେ:* (ବି.) : ଶଲ୍ୟ ଚିକିତ୍ସା, ଅସ୍ତ୍ରୋପଚାର
**ଅପରାଧ** - *ଅନେ:* (ବି.) : ଦୋଷତ୍ରୁଟି, ଭୁଲ କରିବା, ବେଆଇନ୍ କାମ
**ଅପରାପତି** - *ଚ:* (ବିଂ.) : ଅପ୍ରାପ୍ୟ
**ଅପରାପର** - *ଢ:* (ବିଂ.) : ଅପରିଚିତ
**ଅପରିହାର୍** - *ଚ:* (ବି.) : ତିନିବର୍ଷ ପୂର୍ବରୁ
**ଅପର୍ଛନ** - *ଅନେ:* (ବିଂ.) : ଅପରିଚ୍ଛନ୍ନ, ଅପରିଷ୍କାର, କୁତ୍ସିତ
**ଅପର୍ଛନିଆ** - *ଅନେ:* (ବିଂ.) କୁରୂପ, କଦାକାର, କୁତ୍ସିତ, ଅପରିଷ୍କାର
**ଅପର୍ତିଆ** - *ଖୋ:ଗ:* (ବି.ବିଂ.) : ୨ୟ ସନ୍ତାନ ଯାହାର ଉପର ସନ୍ତାନ ମରିଯାଇଥାଏ (ସ୍ତ୍ରୀ-ଅପର୍ତ), ଯାହାର ଜନ୍ମ ପୂର୍ବେ ଭାଇ ଭଉଣୀ ମରିଥାଏ
**ଅପର୍ତିଆଣୀ** - *କ:* (ବି.) : ଅଯୋଗ୍ୟା (ସ୍ତ୍ରୀ)
**ଅପର୍ଝା** - *ସ:* (ବିଂ.) : ଯେଉଁଠି ଝୁଙ୍କ ପଡ଼ି ନଥାଏ,ଅଝୁଙ୍କା
**ଅପର୍ତେ** - *ସୁ:* (ବି.) : ଅବିଶ୍ୱାସ
**ଅପର୍ବଲ୍** - *କଳା:* (ବିଂ.) : ଅପ୍ରବଳ, ବେଶୀ, ଅତି ଅଧିକ ଅର୍ଥରେ
**ଅପଲଟିଆ** - *ନ:* (ବିଂ.) : ଯିଏ ବାସିଲୁଗା ପିନ୍ଧିଥାଏ, ପରିଷ୍କାର (ଲୁଗା) ପାଲଟି ନଥିବା
**ଅପଶାଇପ** - *ପଦ୍ୟ:* (ବି.) : ଅଭିଶାପ, ଅଭିସଂପାତ
**ଅପସନ୍** - *ସୁ:* (ବିଂ.) : ଅପସନ୍ଦ
**ଅପସନ୍ଦିଆ** - *ଅନେ:* (ବିଂ.) : ଯାହା ପସନ୍ଦ ଯୋଗ୍ୟ ନୁହେଁ, ପସନ୍ଦହୀନ
**ଅପସରିବା** - *ଅନେ:* (କ୍ରି.) : ଘୁଞ୍ଚିଯିବା
**ଅପସର୍** - *ସ:* (ବିଂ.) : ଲାଜରେ ସଂକୁଚିତ ହେବା
**ଅପସାନ୍ତରା** - *ପଦ୍ୟ:* (ବିଂ.) : ଅପସନ୍ଦ
**ଅପହାସ** - *ଖୋ:* (ବିଂ.) : ଥଟ୍ଟା, ଉପହାସ
**ଅପା** - *ଅନେ:* (ବି.) : ବଡ଼ ଭଉଣୀ, ବାପାଙ୍କ ଭଉଣୀ, ପିଉସୀ/ଭଉଣୀ
**ଅପାଇ** - *ଭ:* (ବି.) : ଅସୁବିଧାରେ ଥିବା
**ଅପାକଳ** - *ସୁ:* (ବିଂ.) : ଅପରିପକ୍ୱ
**ଅପାଙ୍ଗୁ** - *ଅ:ସ:* (ବିଂ.ବି.) : କୋଢ଼ିଆ, ଅକ୍ଷମ
**ଅପାଙ୍ଗୁଆ** - *ଗ:* (ବିଂ.) : ବିକଳାଙ୍ଗ
**ଅପାଠ** - *ଅନେ:* (ବିଂ.) : ଯେଉଁ ପାଠ ଉପକାରରେ ଆସେ ନାହିଁ
**ଅପାଠୁଆ** - *ଅନେ:* (ବିଂ.) : ଅଶିକ୍ଷିତ
**ଅପାଣିଆ** - *ଅନେ:* (ବିଂ.) : ଯାହାର ମୂଳରେ ପାଣିଦିଆ ଯାଇନାହିଁ, ଜଳବିହୀନ, ନିର୍ଜଳ, ନିପାଣିଆ, ଅନୁପଯୁକ୍ତ, ପାଣି ନଥିବା,

**ଅପାଣିଆ ଖନ୍ଦ** - *ଗ:* (ବି.) : ଯେଉଁ ଫସଲ କମ ପାଣି ଦରକାର କରେ

**ଅପାଣ୍ଡବ** - *କ:* (ବିଂ.) ଅଯୋଗ୍ୟ, ଅସଂସ୍କାରିତ

**ଅପାଣ୍ଡୁକ** - *ବୌ:ଗ:ଗଜ:ବର:* (ବିଂ.ବି.) : ଅଯୋଗ୍ୟ, ଅପଦାର୍ଥ

**ଅପାତ୍ର** - *ଅନେ:* (ବିଂ.ବି.) : ଅସତ୍ ଲୋକ, ଅଯୋଗ୍ୟ ପାତ୍ର, ଦାନ ବା ଅନୁଗ୍ରହର ଅଯୋଗ୍ୟ ଲୋକ, ନିକୃଷ୍ଟ ପାତ୍ର

**ଅପାପତ** - *କ:* (ବିଂ.) : ଅପ୍ରାପ୍ୟ

**ଅପାମାରଙ୍ଗ** - *ଅନେ:* (ବି.) : ଔଷଧୀୟ ଗୁଳ୍ମ,

**ଅପାର** - *ଅନେ:* (ବିଂ.) : ବହୁତ, ଅସୀମ

**ଅପାରଗ** - *ଅନେ:* (ବିଂ.) : ଅକ୍ଷମ, ନିକିମା

**ଅପାରୁ** - *ସୁ:କଳା:ସ:ସୁବ:* (ବିଂ.ବି.) : ଅପାରଗ, କୌଣସି କାମ ପାଇଁ ଅସମର୍ଥ ଲୋକ, ଶକ୍ତିହୀନ

**ଅପାରୁ ଅପାର** - *ଅ:* (ବିଂ.) : ଅସଂଖ୍ୟ, କଳ୍ପନାତୀତ ଭାବେ ଅଧିକ

**ଅପାରୁକା** - *ଚ:* (ବିଂ.) : ଅପାରଗ

**ଅପାଳ୍କ** - *ଅନେ:* (ବି.) : ମରୁଡ଼ି, ବର୍ଷା ଅଭାବରୁ ଶସ୍ୟ ହାନି, ଦୁର୍ଭିକ୍ଷ, ପ୍ରତିକୂଳ ପାଗ

**ଅପାସ୍ତୁକ** - *କ:* (ବିଂ.) : ଅପମାନିତ

**ଅପିଆ** - *ମା:* (କ୍ରି.) : ରାଜିହେବା

**ଅପିପଡ଼ିବା** - *ଗ:* (କ୍ରି.) : ଜାମିନ ରହିବା

**ଅପିବା** - *ଗ:ଗଜ:ନବ:କୋ:* (କ୍ରି.ବି.) : ସମ୍ମତି ଜଣାଇବା, ରାଜି ହେବା

**ଅପିଲ** - *ଅନେ:* (ବି.ବିଂ.କ୍ରି.) : ବିଚରାଳୟକୁ ପୁନର୍ବିଚାର ପାଇଁ ପ୍ରାର୍ଥନା, ପୁନର୍ବିଚାର ପାଇଁ ପ୍ରାର୍ଥନା

**ଅପୁଆ** - *ଗଦ୍ୟ:* (ବିଂ.) : ପୁଅ ନଥିବା

**ଅପୁଚା** - *ଅ:* (ବି.) : ତେନ୍ତୁଳି ମଞ୍ଜି

**ଅପୁରିଦିନ** - *ନବ:କ:ଅ:* (ବି.ଅ.) : ଚତୁର୍ଥ ଦିନ, ଆସନ୍ତା ଚତୁର୍ଥ ଦିନ

**ଅପୁରୁବ** - *ଅ:କ:* (ବିଂ.) : ଅପୂର୍ବ

**ଅପୁର୍ଗ** - *କୋ:* (ବିଂ.) : ଅପୂର୍ବ

**ଅପୂର୍ବସପୂର୍ବ** - *ଗଦ୍ୟ:* (ବିଂ.) : ଚମତ୍କାର, ଦୁର୍ଲଭ

**ଅପେରା** - *ଅନେ:* (ବି.) : ଯାତ୍ରା ନାଟକ

**ଅପ୍ରସ୍ତୁତ** - *ଗ:* (ବି.) : ବ୍ୟତିବ୍ୟସ୍ତ, ଅପଦସ୍ତ, ପ୍ରସ୍ତୁତ ହୋଇ ନଥିବା

**ଅପ୍ରିୟ** - *ଅନେ:* (ବିଂ.) : ଯାହା ପ୍ରିୟ ନୁହେଁ, ଅପ୍ରୀତିକର, ଅନଭିଷ୍ଟ, ଅସହୃତ୍, ମନ୍ଦ, ନପଡ଼ିବା

**ଅପ୍‌ସର୍** - *ଝା:* (ବି.) : ସଙ୍କୋଚ

**ଅଫରିବା** - *ସୁ:* (କ୍ରି.) : ନଖଦ୍ୱାରା ନଖୋଇବା

**ଅଫଳନ୍ତା** - *କ:* (ବିଂ.) : ଅଫଳନ୍ତିଗଛ, ଯେଉଁ ଗଛରେ ଫଳଧାରଣ କରିନାହିଁ

**ଅଫଳା** - *ଦେ:* (ବି.) : ଭୂଇଁ ଅଁଳା

**ଅଫାମରା** - *କଳା:* (ବି.) : ପୂଜାରେ ବ୍ୟବହୃତ ହେଉଥିବା ଛୋଟିଆ ବୃକ୍ଷ ବିଶେଷ, ଅପାମାରଙ୍ଗ

**ଅଫିମ** - *ଅନେ:* (ବି.) : ଆପୁ, ନିଶାଦ୍ରବ୍ୟ ବିଶେଷ, ଅଫିମ

**ଅଫିମିଆ** - *ଗଦ୍ୟ:* (ବି.ବିଂ.) : ଅଫିମ ଖାଇବାରେ ଅଭ୍ୟସ୍ତ

**ଅପୁଆ** - *ସୁ:ନବ:* (ବିଂ.) : ଆପୁଖୋର, ଅଫିମିଆ

**ଅଫୁଟ** - *ଜ:* (ବି.) : ଫୁଟାଯାଇନଥିବା, ଫୁଟିନଥିବା

**ଅଫୁଟା** - *ପଦ୍ୟ:* (ବିଂ.) : ଫୁଟିନଥିବା, ଯାହା ପ୍ରକାଶିତ ବା ବ୍ୟକ୍ତ ହୋଇନାହିଁ, ବଘରା ବା ଫୁଟା ହୋଇନଥିବା (ତିଅଣ), ଅଛୁଙ୍କା

**ଅଫୁଲା** - *କେ:* (ବିଂ.) : ଫୁଟିନଥିବା

**ଅଫେରିୟା** - *କେ:* (ବିଂ.) : ଅଣଚଉଡ଼ା, ସଂକୀର୍ଣ୍ଣ

**ଅବ୍କା** - *କୋ:ମା:* (ଅ.ବିଂ.) : ଖାଲି, କେବଳ, ତୁଚ୍ଛା

**ଅବ୍ଗା** - *ସୁବ:ସ:ଝା:* (ବିଂ.) ମିଶା ହୋଇନଥିବା, ଖାଣ୍ଟି, କେବଳ ଅର୍ଥରେ

**ଅବ୍ଗି** - *ସ:* (ବି.) : ଖାଣ୍ଟି

**ଅବ୍ଗୁଣିଆ** - *ଅନେ:* (ବିଂ.) : ଖରାପ ଗୁଣ ଥିବା ଲୋକ

**ଅବ୍ଝରା** - *କଳା:* (ବି.) : ଙ୍ଗାଲ, ଉତ୍ପାତ

**ଅବ୍ଡବ୍** - *ଦେ:* (ବିଂ.) : ତାଳମେଳ ନଥିବା କାମ

**ଅବ୍ଡ଼ୋ ଜବ୍ଡ଼ୋ** - *ସ:* (ଅ.) : ଏଟା ସେଟା, ଏଣ୍ଣୁତେଣ୍ଣୁ

**ଅବ୍ତା** - *ଟା:* (ବି.) : ଓଳିଏ, ଦିନର ଅଧା

**ଅବ୍ଦି** - *ଟା:* (ବି.) : ଅବଧି

**ଅବ୍ଧୁରୁନ୍** - *କଳା:* (ବିଂ.) : ଅଳ୍ପଦୂରରୁ

**ଅବ୍ଧୂର୍** - *କଳା:* (ବିଂ.) : ସାମାନ୍ୟ ଦୂର, ଅଳ୍ପଦୂର

**ଅବ୍ରା** - *ଝା:* (କ୍ରି.) : ଆବୁରିବା

**ଅବକୁରା** - *କ:* (ବି.) : ଛୋଟଢ଼ାଳ

**ଅବଗଲ** - *ଅ:* (ବି.) : ଖାମ୍ ଖିଆଲି

**ଅବଗୁନ୍** - *ଝା:* (ବି.) : ଅବଗୁଣ, ଗୁଣର ବିପରୀତ

**ଅବଗେଇ** - *ସ:* (ବି.) : ବାଛି ବାଛି

**ଅବଘରା** - *ଅନେ:* (ବିଂ.) : ଘିଅ ବା ତେଲର ପରଖା ହୋଇ ନଥିବା, ବଘରା ହୋଇନଥିବା ତରକାରୀ, ଡାଲି

**ଅବଚ୍ଛା** - *ଅନେ:* (ବିଂ.) : ବଚ୍ଛା ହୋଇନଥିବା

**ଅବଟା** - *ଅନେ:* (ବି.ବିଂ.) ବଟାହୋଇନଥିବା, ଯାହାବଟା ହୋଇ ନାହିଁ

**ଅବଢା** - *ଅନେ:* (ବି.) : ମହାପ୍ରସାଦ

**ଅବତବ** - *ପଦ୍ୟ:* (ବି.) : ଶେଷ ଅବସ୍ଥା

**ଅବତାର କାଢ଼ିବା** - *ଗ:* (କ୍ରି.) : ମିଥ୍ୟା ଅଭିନୟ କରିବା, ଛଳନା

**ଅବଦ** - *ଢେ:* (ବି.) : ପଦ୍ମ

**ଅବଧାନ** - *ଅନେ:* (ବି.): ମନୋଯୋଗପୂର୍ବକ ଶ୍ରବଣ, ଜାତକ ନିର୍ମାତା, ଗୁରୁ, ମାଟିବଂଶ ଜ୍ୟୋତିଷ, ଚାଟଶାଳୀ ଶିକ୍ଷକ, ଚାହାଳୀ ଶିକ୍ଷକ, ଗ୍ରାମର

ମାନ୍ୟ ପ୍ରାପ୍ତ ବ୍ୟକ୍ତି, ସମ୍ମାନନୀୟ ବ୍ୟକ୍ତିତ୍ୱ

**ଅବଧି** - *ଅନେ:* (ଅ.) : ଏ ପର୍ଯ୍ୟନ୍ତ, କାଳସୀମା, ସମୟସୀମା

**ଅବଧୂତ** - *ଅନେ:* (ବି.) : ବାବାଜୀ, ଅବଧୂତ ସଂପ୍ରଦାୟର ସିଦ୍ଧଯୋଗୀ, ଅବଧୂତ ସନ୍ନ୍ୟାସୀ, ଲେଙ୍ଗୁଟି ପିନ୍ଧାବାବା

**ଅବନା** - *ପଦ୍ୟ:* (ବିଂ.) : ଯହିଁରେ ଇକାରାଦି ବନାନ ନଥାଏ

**ଅବନ୍ଧାଛନ୍ଦା** - *ବୌ:* (ବିଂ.) : ଲଗାମ୍‌ଛଡ଼ା, ଚାରି ଦଉଡ଼ି କଟା

**ଅବମାନନା** - *ଅନେ:* (ବି.) ଅନାଦର, ଅବଜ୍ଞା

**ଅବୟବ** - *ଅନେ:* (ବି.) : ଅଙ୍ଗପ୍ରତ୍ୟଙ୍ଗ

**ଅବରଖ** - *ପଦ୍ୟ:* (ବି.) : ଅଭ୍ର

**ଅବରଗିଆ** - *ଖୋ:ଦେ:* (ବିଂ.) : ବାଗର ନହେବା, ଅବାଗିଆ, ଅଖାଡୁଆ

**ଅବରଣିଆ** - *କ:* (ବିଂ.) : ଅନିମନ୍ତ୍ରିତ

**ଅବର୍ଜିଆ** - *କୋ:ନବ:ଭ:କେ:* (ବିଂ.) : ଅବରଜିଆ, ଅସ୍ୱାଦ, ସ୍ୱାଦହୀନ, ଖରାପ, ଅପରିଚ୍ଛନ୍ନ, ବେଢଙ୍ଗ

**ଅବର୍‌ନି** - *ବୌ:* (ବିଂ.) : ଅନିମନ୍ତ୍ରିତ

**ଅବଲା** - *କଳା:* (ବିଂ.ବି.) : ଅବଳା, ନାରୀ, ଲଳନା

**ଅବଳ** - *ଦେ:* (ବି.ବିଂ.) : ବରୁଣ ବୃକ୍ଷ, ଶକ୍ତିହୀନ, ଅସାମର୍ଥ୍ୟ, ବଳହୀନ

**ଅବଶ** - *ଅନେ:* (ବିଂ.) : ଶିଥିଳ, ନାଚାର, କ୍ଳାନ୍ତ

**ଅବଶ୍ୟ** - *ଅନେ:* (ଅ.) : ନିଶ୍ଚୟ, ନିଶ୍ଚିତ

**ଅବସନ୍ଧି** - *ଗଦ୍ୟ:* (ବି.) : ଅଭିସନ୍ଧି, ସଂଶୟ, ସନ୍ଦେହ

**ଅବସାନ** - *ଅନେ:* (ବି.) : ଶେଷ, ମୃତ୍ୟୁ, ପୂର୍ଣ୍ଣଛେଦ ପଡ଼ିବା

**ଅବସ୍ତା** - *ଗ:ଦେ:* (ବି.) : ଦୁଃଖ, କଷ୍ଟ, ଅବସ୍ଥା

**ଅବହିତ** - *ପଦ୍ୟ:* (ବିଂ.) : ସାବଧାନ, ମନଯୋଗୀ, ନିବିଷ୍ଟ, ବିଦିତ

**ଅବହେଳା** - *କ:ଦେ:* (ବି.) : ଆଳସ୍ୟ, ପକାଇ ରଖିବା, ଅଣହେଳା, ଅନାଦାର

**ଅବା** - *ଅନେ:* (ଅ.) ଅଥବା, କିମ୍ବା, ଅନ୍ୟଥା, ପ୍ରକାରାନ୍ତରେ, ସମ୍ଭବତଃ, କେଜାଣି, ନାନି, ଅପା

**ଅବାଇ** - *କ:* (ବି.) : ଶୂନ୍ୟମଣ୍ଡଳ

**ଅବାଇଜ** - *କ:କ:* (ବିଂ.) : ଜାରଜ ସନ୍ତାନ, ଅବୈଧ ସନ୍ତାନ

**ଅବାକ୍** - *ପଦ୍ୟ:* (କ୍ରି.ବିଂ.) : ବାକ୍‌ଶକ୍ତି ହୀନ, ମୂକ, ବିସ୍ମିତ, ସ୍ତବ୍ଧ, ଅଦ୍ଭୁତ, ଅତ୍ୟାଶ୍ଚର୍ଯ୍ୟ

**ଅବାଗ** - *ଦେ:* (ବିଂ.) : ଅକଳ, ଅସୁବିଧା

**ଅବାଗିଆ** - *ଅନେ:* (ବିଂ.) : ସଣ୍ଢଣା ନଥିବା, ଅବୁଝା, ଠିକ୍ ନଥିବା, ଅଶୃଙ୍ଖଳିତ, ସୁଧାର ହୋଇନଥିବା (ବ୍ୟକ୍ତି), ଅସୁବିଧାଜନକ, ଅସୁନ୍ଦର

**ଅବାଞ୍ଜୁ** - *କନ୍ଧ:* (ସ.) : ସେ

**ଅବାଡୁଆ** - *କନ୍ଧ:* (ବି.) : ଅବିବାହିତ ଯୁବକ

**ଅବାଡ଼** - *କୋ:* (ବି.) : ହଟ, ଭିଡି

**ଅବାଡୁଆ** - *ଛେ:* (ବିଂ.) : ଅଭିଆଡି

**ଅବାଟବା** - *ସ:* (ବି.) : ଅନିଶ୍ଚିତତା ଭିତରେ ରହିବା

**ଅବାଦବା** - *ଗୌ:* (ବିଂ.) : ସଂଶୟ, ସନ୍ଦିହାନ, ଦୋଦୋପାଞ୍ଚ

**ଅବାଧ** - *ପଦ୍ୟ:* (ବିଂ.) ସହଜ, ବିନାବାଧାରେ, ବାଧାଶୂନ୍ୟ, ଅନର୍ଗଳ, ନିର୍ବିବାଦ, ସ୍ୱାଧୀନ, ପୀଡ଼ାଶୂନ୍ୟ, ଅବ୍ୟାହତ, ନିର୍ବିଘ୍ନ, ଅନାୟାସ

**ଅବାଧ** - *ଅନେ:* (ବିଂ.) : ଅମାନିଆଁ, ଟେଡା, ଅବଜ୍ଞାକାରୀ

**ଅବାନ୍ତର** - *ପଦ୍ୟ:* (ବିଂ.) : ସମ୍ପର୍କରହିତ, ଅପ୍ରାସଙ୍ଗିକ, ବାଜେ, ବାଜେ

**ଅବାର** - *ଛ:କେ:* (ବି.ବିଂ.) : ଠିକ୍‌ବାର ନୁହେଁ, ଆମିଷ ଖିଆ ନଯିବା ବାର, ପରିଚିତ

**ଅବାରଣ** - *ଛ:ଦେ:* (ବିଂ.) ଶୁଷ୍କଭୂମି, ବାରଣହୀନ

**ଅବାସି** - *କେନ୍ଦୁ:* (ବିଂ.) : ବାସ ବା ଘରଦ୍ୱାର ନଥିବା

**ଅବାହୁଳା** - *ଗ:* (ବିଂ.) ଅବିବାହିତ, ଅଭିଆଡ଼ା

**ଅବି** - *ଗଦ୍ୟ:* (ଅ.) : ବର୍ତ୍ତମାନ

**ଅବିଆଣି** - *କ:* (ବିଂ.) : ପ୍ରସବ କରିନଥିବା

**ଅବିକଳ** - *ଅନେ:* (ଅ.ବିଂ.ବିଂ.) : ଠିକ୍ ସେହିପରି, ଅନୁରୂପ, ଏକାରକମ

**ଅବିକା** - *କ:ପୁ:* (ଅ.) : ଏହିକ୍ଷଣି, ବର୍ତ୍ତମାନ, ସଙ୍ଗେ ସଙ୍ଗେ

**ଅବିଗୁଣ** - *ଅନେ:* (ବି.) ମନ୍ଦଗୁଣ, ଅଭିମାନ, ମନ୍ଦଗୁଣ

**ଅବିଚାରୀ** - *ଅନେ:* (ବିଂ.) : ଅବିଚାରକଥା, ବିଚାରହୀନ ଲୋକ

**ଅବିଜ୍ଞା** - *କ:ଯା:* (ବିଂ.ବି.) : ଜାରଜ ସନ୍ତାନ, ଅବୈଧ ସନ୍ତାନ

**ଅବିତ୍** - *ସୁ:* (ବି.) : ଶପଥ, ବଂଦ

**ଅବିଦ୍ୟା** - *ଗ:* (ବି.) : ଖରାପ କାର୍ଯ୍ୟ

**ଅବିଦ୍ୟା ସାଧନ** - *ଗ:* (ବି.) ତନ୍ତ୍ର, ଗୁଣିଗାରେଡ଼ି

**ଅବିନ୍ ଅପାକ୍** - *ସ:* (ବି.) : ବଦ୍‌ହଜମି

**ଅବିବେକ** - *ଅନେ:* (ବିଂ.) : ବିବେକହୀନ

**ଅବିଭାଇତ** - *ଛ:* (ବିଂ.) ଅବିବାହିତ, ଅଭିଆଡ଼ା

**ଅବିରଖେଳ** - *ଅନେ:* (ବି.) : ହୋଲିଖେଳ, ଫଗୁଖେଳ

**ଅବିରଙ୍ଗ** - *ଗୀ:* (ବି.) : ଫିକା ରଙ୍ଗ

**ଅବିରତ** - *ପଦ୍ୟ:* (କ୍ରି.ବିଂ.) ସତତ, ଅନବରତ, ଅବିଶ୍ରାନ୍ତ

**ଅବିରାମ** - *ଅନେ:* (ବିଂ.) : ଅନବରତ

**ଅବିଷେକ** - *ଛ:* (ବି.) : ଅଭିଷେକ

**ଅବିସମ୍ପାତ, ଅଭିସମ୍ପାତ** - *କ:* (ବି.) ଅଭିଶାପ

**ଅବିହାଡ଼ା** - *କ:କେ:* (ବିଂ.ବି.) : ଅବିବାହିତ ଯୁବକ, ଅଭିଆଡ଼ା

**ଅବିହାରି** - *ସ:ସୁବ:* (ବି.ବିଂ.) : ଅବିବାହିତା, ଅଭିଆଡ଼ୀ

**ଅବିହୁଡ଼ା** - *କ:* (ବିଂ.) ବେଉଷଣ କରାଯାଇନଥିବା

**ଅବୁଝା** - *ଦେ:ଢେ:ଅ:ବୌ:* (ବିଂ.) : ଅବୋଧ, ଯିଏ ସହଜରେ ବୁଝେ ନାହିଁ, ସହଜରେ ବୁଝି ହେଉନଥିବା, ବୁଝୁନଥିବା, ଜିଦ୍ ଖୋର୍

**ଅବୁଦି** - *ପଦ୍ୟ:* (କ୍ରି.ବିଂ.) : ପ୍ରକୃତରେ

**ଅବୁର୍ଜ୍ୟା** - *ସୁ:* (ବିଂ.) : ଅପରିଷ୍କାର

**ଅବେଇଖବେଇ** - *ନ:* (ବି.) : କ୍ରୋଧ ପ୍ରକାଶ କରିବାକୁ ବ୍ୟସ୍ତ ହେବା, ସହି ନ ପାରିବା

**ଅବେଇଜ** - *ପଦ୍ୟ:* (ବିଂ.) : ଜାରଜ, ଅବୈଧ

**ଅବେଳ** - *ଅନେ:* (ବି.) : ଅସମୟ

**ଅବେଶ୍** - *ନୂ:* (ଅ.) : ଅବଶ୍ୟ

**ଅବୋଥବୋ** - *ସୁ:* (ବି.) : ଅବାଥବା, ଆଶ୍ଚର୍ଯ୍ୟାନ୍ୱିତ, ଆବାକାବା

**ଅବୋଧ** - *ଅନେ:* (ବିଂ.) : ଅବୁଝା, ସରଳ, ଅଜ୍ଞାନ, ମୂର୍ଖ

**ଅବୋଇକରା** - *ଅନେ:* (ବିଂ.) : ଅବାଧ, ଯେ' କଥା ମାନେନାହିଁ

**ଅବ୍ୟାଜ** - *ପଦ୍ୟ:* (ବି.) : ସଚ୍ଚୋଟପଣ, ଅକପଟ

**ଅବ୍ରାହ୍ମଣ** - *ଦେ:* (ବିଂ.) : ହଳୁଆ ବ୍ରାହ୍ମଣ

**ଅଭଡ଼ା** - *ବ୍ୟ:* (ବି.) : ଅବିବାହିତ ପୁରୁଷ, ଅଭିଆଡ଼ା

**ଅଭଙ୍ଗିଆ** - *କ:* (ବିଂ.) : ଅନିଚ୍ଛୁକ

**ଅଭଡା ଭାତ** - *ବ୍ୟ:* (ବି.) : ବିବାହ ପୂର୍ବଦିନ ବର ଓ କନ୍ୟାଙ୍କୁ ଆତ୍ମୀୟସ୍ୱଜନ ଭୁରିଭୋଜନ ପ୍ରଦାନ କରିବା

**ଅଭଡ଼ା** - *ଅନେ:* (ବି.) : ଜଗନ୍ନାଥଙ୍କ ମହାପ୍ରସାଦ

**ଅଭୟ** - *ଅନେ:* (ବି.) : ନିର୍ଭୟ, ସାହାସ, ବେଣାମୂଳ,

**ଅଭର** - *ରା:ଗ:* (ବି.) : ପ୍ଲାଷ୍ଟିକ, ଅଭ୍ର

**ଅଭରତ** - *ଅ:* (ବି.) : ବିବାହିତା ସ୍ତ୍ରୀ

**ଅଭଲେଇ** - *ପଦ୍ୟ:* (ବିଂ.) : ଦୋଷୀ

**ଅଭାଗା** - *ଅନେ:* (ବିଂ.) : ଭାଗ୍ୟହୀନ, ଯାହାର ଭାଗ୍ୟ ଅନୁକୂଳ ନୁହେଁ, ଦୁର୍ଭାଗା

**ଅଭାଦୁଆ** - *ଗ:* (ବିଂ.) : ଅବିବାହିତ ଯୁବକ ଯୁବତୀ

**ଅଭାନ** - *ଭ:* (ବି.) : ଅମଙ୍ଗଳ ବାଣୀ

**ଅଭାବିଆ** - *ଅନେ:* (ବିଂ.) : ଅଭାବୀ, ଅଭାବ ଗ୍ରସ୍ତ

**ଅଭାରି** - *ରା:* (ବି.) : ସବୁବେଳେ

**ଅଭାଷା** - *ଅନେ:* (ବିଂ.) : ଗାଳି, ଅସଭ୍ୟ, କୁଭାଷା

**ଅଭି** - *ବୌ:* (ଅ.) : ଏବେ

**ଅଭିଆଢ଼ା** - *ଅନେ:* (ବିଂ.) : ଅବିବାହିତ

**ଅଭିଆରୀ** - *ଢେ:* (ବିଂ.) : ଅଭିଆଢ଼ି

**ଅଭିକା** - *ଅ:ଜ:* (ଅ.) : ଏଇଲାଗେ, ବର୍ତ୍ତମାନ

**ଅଭିଧାନ** - *ଅନେ:* (ବି.) : ଭାଷାକୋଷ, ଶବ୍ଦାର୍ଥ ଗ୍ରନ୍ଥ

**ଅଭିନବ** - *ଅନେ:* (ବିଂ.) : ନବ, ନବୀନ, ନୂତନ

**ଅଭିନୟ** - *ଅନେ:* (ବି.) : ଅନୁକରଣ, ଅନ୍ୟର ଚରିତ୍ରକୁ ମଞ୍ଚରେ ପ୍ରକାଶ କରିବା, ଖେଳାଲୀଳା

**ଅଭିନେତା** - *ଅନେ:* (ବି.) : ନଟ, ଅନ୍ୟର ଭୂମିକାରେ ନିଜକୁ ଉପସ୍ଥାପନ କରୁଥିବା ପୁରୁଷ

**ଅଭିପ୍ରାୟ** - *ଅନେ:* (ବି.) : ଇଚ୍ଛା, ମନ

**ଅଭିବାଦନ** - *ଅନେ:* (ବି.) ବନ୍ଦନା, ନମସ୍କାର

**ଅଭିଭାବକ** - *ଅନେ:* (ବି.) : ସ୍ୱଜନ, ଆତ୍ମୀୟ

**ଅଭିଭୂତ** - *ଅନେ:* (ବି.) : ଅଜ୍ଞାନ, ବିହ୍ୱଳ

**ଅଭିମାନ** - *ଅନେ:* (ବି.) : ବଡ଼େଇ, ଗାରିମା

**ଅଭିଯାତନା** - *ଢେ:* (ବି.) : ପ୍ରାର୍ଥନା

**ଅଭିରନ୍** - *ସୁ:* (ବିଂ.) : ଅସୁନ୍ଦରିଆ

**ଅଭିରା** - *ଚା:* (ବି.) : ଅଗ୍ନ୍ୟୁତ୍ସବ

**ଅଭିଲା** - *ଭ:ଖୋ:କେ:* (ବିଂ.) : ଅପୂର୍ବ, ଅର୍ଥହୀନ, ମୂଲ୍ୟନଥିବା, ତୁଚ୍ଛ, ବେହିଆ

**ଅଭିଳାଷ** - *ଅନେ:* (ବି.) : ଇଚ୍ଛା, ଆଗ୍ରହ

**ଅଭିଶାପ** - *ଅନେ:* (ବି.) : ଆକ୍ରୋଶ ବାକ୍ୟ, ଶାପ

**ଅଭିଷେକ** - *ଅନେ:* (ବି.) : ସିଂହାସନରେ ବସିବା, ଦେବତାଙ୍କ ସ୍ୱତନ୍ତ୍ର ପୂଜା

**ଅଭିସନ୍ଧି** - *ଅନେ:* (ବି.) : ମନ୍ଦ ଉଦ୍ଦେଶ୍ୟ, ମତ୍‌ଲବ୍

**ଅଭିସାର** - *ଅନେ:* (ବି.) ସମ୍ଭୋଗ ଅଭିପ୍ରାୟରେ ସଙ୍କେତ ସ୍ଥାନକୁ ଗମନ

**ଅଭିହିତ** - *ଅନେ:* (ବିଂ.) : କଥିତ, ଉଦ୍ଦିଷ୍ଟ

**ଅଭୀଷ୍ଟଲାଭ** - *ଜ:* (ବିଂ.) : ଯାହାଇଛା ତାହା ପ୍ରାପ୍ତି, କାମନା, ବାଞ୍ଛା

**ଅଭୁଆ** - *ରା:* (ସ.) : ଅସୁବିଧା

**ଅଭେକ** - *ଢେ:* (ବିଂ.) : ପରିପାଟିଶୂନ୍ୟ

**ଅଭେକା** - *କ:ଅ:ଭ:* (ବିଂ.) ଅସୁନ୍ଦର, ଅସହାୟ, ଭେକନଥିବା, ଦରିଦ୍ର, ଯାହାର ଖାଇବାକୁ ଓ ପିନ୍ଧିବାକୁ କିଛି ନାହିଁ

**ଅଭେଙ୍ଗା** - *ଅ:* (ବିଂ.) : ମଙ୍ଗା ନହୋଇଥିବା ବାସନ

**ଅଭେଦା** - *ଅନେ:* (ବିଂ.) : ଭେଦହୀନ, ଛନ୍ଦହୀନ

**ଅଭ୍ୟାଗତ** - *ଅନେ:* (ବି.) : ଅତିଥି

**ଅଭ୍ର** - *ଅନେ:* (ବି.) : ଧାତୁ ବିଶେଷ

**ଅମ** - *ଢେ:* (ବି.) : ଆଖି

**ଅମ୍‌କା** - *ସ:ବ:କଳା:ସୁ:* (ସ.ଅ.) : ଉପଲକ୍ଷ୍ୟ ଅର୍ଥ, ଅମୁକ, ସମୁକ

**ଅମ୍‌କାଢମ୍‌କା** - *ଚୌ:* (ବି.) : ଅମୁକସମୁକ

**ଅମ୍‌କା-ଢିମ୍‌କା** - *ଝା:* (ସ.) : ଅନିଶ୍ଚିତ ସୂଚନା, ଅମୁକ ସମୁକ

**ଅମ୍ଛି** - *ବୌ:ବର:* (ବି.) : ଗାମୁଛା

**ଅମ୍ଠି** - *ବର:* (ବି.) : ଆଙ୍ଗୁଠି ବା ଆଙ୍ଗୁଳି

**ଅମ୍ନଟିଆ** - *ଯା:* (ବି°.) : ଅଦୁଆ

**ଅମ୍ନିଆଁ** - *କଳା:* (ବି°.) : ଅମାନିଆ, ଦୁଷ୍ଟ, ଅବୋଲକରା

**ଅମ୍ରବା** - *କଳା:* (କ୍ରି.) : ପହଞ୍ଚିବା

**ଅମ୍ରା** - *ସୁନ:* (ବି.) : ଏକ ବନ୍ୟ ଖଟାଫଳ, ଆମ୍ବଡ଼ା

**ଅମ୍ରି** - *ଅନେ:* (ବି.) : ପାଣିରେ ବହୁତ ଦିନ ବଞ୍ଚୁଥିବା ଏକ ଗଛ, ଅମରି ଗଛ, ପହଞ୍ଚି, ଆମ୍ବ, ହାଉଦା, କାଞ୍ଜିହାଉସ୍

**ଅମ୍ରିବା** - *ବର:* (କ୍ରି.) : ପହଞ୍ଚିବା

**ଅମ୍ରି ଯିବା** - *ବୌ:* (କ୍ରି.) : ପହଞ୍ଚିଯିବା

**ଅମ୍ରୁତ୍** - *କଳା:* (ବି.) : ଅମୃତ, ସୁସ୍ୱାଦୁ, ରୁଚିକର

**ଅମ୍ରୁତ୍‌ମଡ଼ା** - *କଳା:* (ବି.) : ଅମୃତ ଭଣ୍ଡା

**ଅମ୍ରେଇବା** - *କଳା:* (କ୍ରି.) : ପହଞ୍ଚେଇବା

**ଅମକ୍, ଅମୁକ** - *ବୌ:* (ବି°.) : ଅନିର୍ଦ୍ଦିଷ୍ଟ

**ଅମଖ** - *ଭ:* (ବି°.) : ଅମଣିଷ

**ଅମଙ୍ଗ** - *ଅନେ:* (ବି°.ବି.) ନାରାଜ, ଅସମ୍ମତ, ରାଜି ନହେବା, ଅନିଚ୍ଛୁକ

**ଅମଙ୍ଗିଆ** - *ଗ:* (ବି°.) : ହଳ ଜାଣି ନଥିବା (ବଳଦ), ଅମଣିଆ

**ଅମଛା** - *କେ:* (ବି°.) : ଅପରିଷ୍କାର

**ଅମଟାଳ** - *ଅ:* (ବି°.) : ଫମ୍ପସା ମାଟି

**ଅମଡ଼ା** - *ଅନେ:* (ବି°.) : ଅବାଟ, ଭୁଲ୍ ପଥ, ଯେଉଁବାଟରେ କେହିଯାଇନାହିଁ, ଅବ୍ୟବହୃତ ବାଟ, ବିହନ ବୁଣା ହୋଇପାରିନଥିବା ଜମି

**ଅମଡ଼ା ମାଡ଼ିବା** - *କ:* (କ୍ରି.) : ଅବାଟରେ ଯିବା

**ଅମଣା** - *ଗ:* (ବି°.) : ଅବୁଝା, ହଳଶିଖି ନଥିବା (ବଳଦ)

**ଅମଣିଆ** - *ପଦ୍ୟ:ଭ:ବା:ଗ:* (ବି°.ବି.) ନୈବେଦ୍ୟ ପାଇଁ ରଖା ହୋଇଥିବା ଭୋଗ ସାମଗ୍ରୀ, ଅନଭ୍ୟସ୍ତ, ଅବାଧ, ଦେବତାଙ୍କ ନିମିତ୍ତ ଉଦ୍ଦିଷ୍ଟ ଖାଦ୍ୟସାମଗ୍ରୀ, ଦାୟିତ୍ୱ ନଥିବା

**ଅମଣିଆଁ** - *କ:* (ବି°.) : ଦେବାଦେବୀଙ୍କ ନିମିତ୍ତ ଉଦ୍ଦିଷ୍ଟ, ଜଗନ୍ନାଥଙ୍କ ସମ୍ପତ୍ତି

**ଅମଣିଷିଆ** - *କେନ୍ଦୁ:* (ବି°.) : ମଣିଷ ପଣିଆ ନଥିବା

**ଅମଣୁଆ** - *ଅ:* (ବି°.) : ଅବାଧ, ବିଶୃଙ୍ଖଳ

**ଅମତ** - *କ:* (ବି°.) : ଅସମ୍ମତ, ମତାନ୍ତର

**ଅମନମନିଆ** - *ଭ:* (ବି°.) : ମନକୁ ଅନାଇ କାମକରିବାଲୋକ

**ଅମର** - *ଅନେ:* (ବି°.) : ଅକ୍ଷୟ, ଅବିନାଶ

**ଅମରକୁସୁମ** - *ଗଦ୍ୟ:* (ବି.) : ଲବଙ୍ଗ

**ଅମରପୋଇ** - *ଅନେ:* (ବି.) : ପଦ୍ମଚଟା, ହେମ କେଦାର, ଔଷଧୀୟ ବୃକ୍ଷ ବିଶେଷ

**ଅମରମତା, ଉମରମତା** - *କ:* (ବିଂ.) : ଦୁର୍ଦ୍ଦାନ୍ତ

**ଅମରମଉ** - *କ.ଗ.* (ବିଂ.ବି.) : ଗର୍ବ, ଉଦ୍ଧତ, ଯୌନ ବିଶୃଙ୍ଖଳା

**ଅମରା** - *କ:* (ବି.) : ଯେ ମରେ ନାହିଁ, ଦେବତା

**ଅମରାବାର୍** - *ସୁବ:* (କ୍ରି.) : ପହଞ୍ଚୁଥିବା, ଜଣକ ପାଖରେ ନିଜେ ପହଞ୍ଚିବା

**ଅମରିବା** - *ସ.କଳା:* (କ୍ରି.) : ପହଞ୍ଚିବା, ଉପସ୍ଥିତ ହେବା

**ଅମରୀ** - *ଦେ:* (ବି.) : ଅମରୀ ଗଛ

**ଅମର୍ତରୁ** - *ଦେ:* (ବି.) : ଦେବଦାରୁ

**ଅମଲ୍** - *କଳା:* (ବି.) : ଅମ୍ଳ, ଅମଳ, ସମୟ

**ଅମଲା** - *ସଂ:* (ବି.) : ଦପ୍ତରୀ, କିରାଣୀ

**ଅମଳ** - *ଅନେ:* (ବି.ବିଂ.) : ଉତ୍ପାଦନ, ନିଶା, ଅଭ୍ୟାସ, ନିର୍ମଳ, ଫସଲ ଉତ୍ପାଦନ କରିବା, ଆମଦାନୀ, ଅଭ୍ୟାସ (ପାନ, ବିଡ଼ି), ଆଦାୟ କରିବା

**ଅମଳାଣ, ଅମ୍ଳାନ** - *କ:* (ବିଂ.) : ଯେ ମଳିନ ନୁହେଁ, ଅବିବର୍ଣ୍ଣ, ଅପସନ୍ନ, ଅବିଷଣ୍ଣ

**ଅମଳି** - *କ:* (ବିଂ.) : ଅଭ୍ୟାସ, ନିଶାଖୋର

**ଅମଳିଆ** - *କ:* (ବିଂ.) : ପୁରୁଣାକାଳିଆ, ଶିବାଜୀ ଅମଳିଆ

**ଅମା** - *ଅ:* (ବିଂ.) : ମୂର୍ଖ

**ଅମାଦ୍** - *ରା:* (କ୍ରି.) : ନିରୀକ୍ଷଣ କରିବା

**ଅମାନ୍ତି** - *ଝା:* (ବିଂ.) : ଅମାନିଆଁ

**ଅମାନତ** - *ସଂ:* (ବି.) : ସର୍ତ୍ତମୂଳକ ଜମା, ମୂଳ ଜମା

**ଅମାନା** - *କଳା:* (ବିଂ.) ଅମାନିଆ, ଅବୋଲକରା, ଯେ ମାନେନାହିଁ

**ଅମାନିଆଁ** - *ଗ:* (ବିଂ.) : ଅବୁଝା, ଯେ କଥା ମାନେନାହିଁ

**ଅମାନୀ** - *ଅ:* (ବି.) : କାଞ୍ଜି

**ଅମାନ୍ତିଆ** - *ଦୈ:* (ବିଂ.) : ଅମାନିଆ

**ଅମାପ** - *କ.ଅ:* (ବିଂ.) : ଅକଳନ, ଯାହା ମାପିହେବ ନାହିଁ

**ଅମାବଇ, ଅମାସିଆ, ଅମେଇସିଆ** - *କ:* (ବି.) : ଅମାବାସ୍ୟା

**ଅମାର** - *ଅନେ:* (ବି.) : ଶସ୍ୟ ରହିବା ସ୍ଥାନ, କାଠ ବାଉଁଶରେ ତିଆରି ଧାନରଖା ଘର, ଧାନକୋଠି, ମରେଇ

**ଅମାରକ୍** - *ସ:* (ବିଂ.) : କ୍ଷତିକାରକ

**ଅମାରଗ** - *ସୁବ:* (ବିଂ.) : ଖରାପ, ଅହିତ

**ଅମାରଗ କରିବା** - *ସ:* (କ୍ରି.) : କ୍ଷତି କରିବା

**ଅମାରି** - *ଗ.ସଂ:* (ବି.) : ହାତୀକୁ ସଜାଇବା, ହାତୀ ଉପରେ ବସିବାର ଆସନ, ପଲ୍ଲାଣ

**ଅମାଲୁ** - *କ.ପୁ:* (ବି.) : ଏକ ପ୍ରକାର ପିଠା

**ଅମାଶୟ** - *ଅନେ:* (ବି.) : ଏକ ପ୍ରକାର ରୋଗ

**ଅମାଂଡି** - *ଗଦ୍ୟ:* (ବିଂ.) : ଦୂରତ୍ୱ, ଛଡ଼ା

**ଅମିତ** - *ଖୋ:* (ବିଂ.) : ପ୍ରବଳ, ପ୍ରଚୁର

**ଅମିନ** - *ଅନେ:* (ବି.ସ.) : ଜମି ମାପ କରୁଥିବା ରାଜସ୍ୱ କର୍ମଚାରୀ

**ଅମିନ ଛାମିନ** - *ଗ:* (କ୍ରି.ବି.) : ମଧ୍ୟସ୍ଥତା କରିବା

**ଅମିଲ୍‌ତା** - *ସ:କଳା:ସୁ:* (ବି.ବିଂ.) : ଅମ୍ଳସୃଷ୍ଟି, ଅମ୍ଳ, ଆମ୍ବିଳିଆ

**ଅମିଳ** - *ଗଦ୍ୟ:* (ବିଂ.) : ଦୁର୍ମୂଲ୍ୟ

**ଅମୀର** - *ସ:* (ବି.) : ଧନୀ

**ଅମୁକ** - *ଅନେ:* (ବିଂ.ବି.) : ଅନିର୍ଦ୍ଦିଷ୍ଟ

**ଅମୁଠିଆ ବେଣୀ** - *କେନ୍ଦୁ:* (ବି.) : ଏକପ୍ରକାର ବେଣୀ, ଏଥିରେ ସମସ୍ତ କେଶକୁ ତିନିଭାଗ କରି ତିନୋଟି ବେଣୀ କରାଯାଇଥାଏ

**ଅମୁଣିହା** - *କ:* (ବି.) : ଭୋଗ ଲାଗିନଥିବା ଖାଦ୍ୟ

**ଅମୁଦା** - *ଢେ:ଅ:* (ବିଂ.) : ଖୋଲା

**ଅମୁନୁ** - *କେ:* (ବି.) : ଅଭିମନ୍ୟୁ

**ଅମୁର୍ଛୁକ** - *କୋ:ଗ:* (ବି.ବିଂ.) : ଗୋଟିଏ କଥା ବାରମ୍ବାର ମନକୁ ଆଣିବା, ଅନୁଶୋଚନା

**ଅମୁର୍ଭକିୟା** - *ରା:* (ବି.) : କଞ୍ଚା ଅମୃତଭଣ୍ଡା

**ଅମୁର୍ଭ କୁଣ୍ଡ** - *କ:* (ବି.) : ପାଚିଲା କଦଳୀ କ୍ଷୀର ଓ ଚିନି ମିଶାଇ ପ୍ରସ୍ତୁତ ଭୋଗ

**ଅମୁର୍ଭମଣି** - *କ:* (ବି.) : ଅମୃତ ମଣୋହୀ, ଜଗନ୍ନାଥଙ୍କ ସମ୍ପତ୍ତି

**ଅମୁଲ ମୁଲ** - *କ:* (ବିଂ.) : ଅତି ମୂଲ୍ୟବାନ୍

**ଅମୁସ୍** - *କୋ:* (ବି.) : ଅମାବାସ୍ୟା

**ଅମୁସ୍ ମାସ୍** - *କୋ:* (ବି.) : ଶ୍ରାବଣ ମାସ

**ଅମୁହାଁ** - *ସୁବ:ଭ:ସୁ:* (ବିଂ.ବି.) : ମିଠାଜିନିଷ ବେଶି ଖାଇଲେ ଆଉ ଖାଇବାକୁ ମନ ନ ଲାଗିବା, ପଇସା ସଞ୍ଚୟ ପାଇଁ ପ୍ରସ୍ତୁତ ମାଟି ବା ପ୍ଲାଷ୍ଟିକ ପାତ୍ର ବିଶେଷ, ଅତ୍ୟଧିକ ଖାଇବା

**ଅମୁହାଁ ପଡ଼ିବା** - *ଗ:* (କ୍ରି.) : ମାଗଣାରେ ମିଳିଲେ ମନଇଚ୍ଛା ଖାଇବା

**ଅମୁହାଁ ବୁଣା** - *ଗ:* (କ୍ରି.) : ଚାଷ ନକରି ବୁଣିବା

**ଅମୁର୍ଛୁକୁ** - *ଗଞ:* (କ୍ରି.) : ରକବକ ହେବା, ହଜିବା ବସ୍ତୁକୁ ସ୍ମରଣ କରିବା

**ଅମୁର୍ତ୍ତ** - *ପଦ୍ୟ:* (ବିଂ.) : ସୂକ୍ଷ୍ମ, ଅରୂପ୍ୟ

**ଅମୂଳ** - *ବ୍:* (ବି.) : ଅମ୍ଳ

**ଅମୃତ ପାଣି(ନି)** - *କଳା:* (ବି.) : ଏକ ଆମ୍ବର ନାମ, ଏହାର ଆକାର ଲମ୍ବା ଓ ଚେପଟା ପାଚିବା ଅବସ୍ଥାରେ ଏହା ସଂପୂର୍ଣ୍ଣ ହଳଦିଆ ଓ ସୁସ୍ୱାଦୁ ହୋଇଥାଏ

**ଅମୃତବେହିଆ** - *ପୁ:* (ବିଂ.) : ଅତ୍ୟନ୍ତ ନିର୍ଲଜ

**ଅମୃତଭଣ୍ଡା** - *ଅନେ:* (ବି.) : ପପେୟା, ଫଳ ବିଶେଷ

**ଅମୃତମଢ଼ା** - *ବର:ସ:* (ବି.) : ଅମୃତଭଣ୍ଡା

**ଅମୃତମଣି** - *କେ:* (ବି.) : ଶ୍ରୀଜଗନ୍ନାଥଙ୍କ ଅମୃତ ମଣୋହି

**ଅମେଣ୍ଡ** - *କ:* (ବି.) : ଆଶା ଅପୂର୍ଣ୍ଣ

**ଅମେଣ୍ଡା** - *ଗଦ୍ୟ:* (ବିଂ.) ପୂରଣ ହେଉନଥିବା

**ଅମେରା** - *ଦେ:* (ବି.) : ଆମ୍ବଡ଼ା

**ଅମେଳ** - *ଅନେ:* (ବି.) ମେଳହୀନ, ସାଦୃଶ୍ୟହୀନ, ପ୍ରଭେଦ, ମିଳନର ଅଭାବ, ବିବାଦ, ଅପଡ଼, ଶତ୍ରୁତା, ବିରୋଧ, ଅଘଟଣପଣ, ଅସମତା, ଅସମାନ, ଅଘଟଣ, ବେଯୋଡ଼

**ଅମୋଘ** - *ଅ:ପଦ୍ୟ:ଢେ:* (ବିଂ.କ୍ରି.) : ସଫଳ, ଅବ୍ୟର୍ଥ, ଅବନ୍ଧ୍ୟ, ସାର୍ଥକ, ନିଶ୍ଚିନ୍ତ, ଅଭ୍ରାନ୍ତ

**ଅମ୍ବଳ** - *ବି:* (ବି.) : ଜୀବନ କାଳ

**ଅମ୍ବ ପେଟୀ** *ଗଦ୍ୟ:* (ବି.) : ପଇଡ଼

**ଅମ୍ଳ** - *ଅ:ଢେ:* (ବି.) : ଖଟା

**ଅମ୍ବ ବାଟୀ** - *ପଦ୍ୟ:* (ବି.) : ସାପର ବିଷ ଦେହରେ ନ ରହିବା ପାଇଁ ଦୁଧରେ ପାଚିଲା ଆମ୍ବ ରସ ମିଶ୍ରିତ ପାଚନ

**ଅମ୍ବୁଡି** - *କନ୍ଧ:* (ବି.) : ଅମୃତଭଣ୍ଡା

**ଅଯଛ** - *ନବ:* (ବି.) : ଅଯଶ

**ଅଯତ୍ନ** - *ଜ:* (ବି.) : ଅବହେଳା

**ଅଯଥା** - *ଅନେ:* (ବିଂ.) ନିରର୍ଥକ, ଅଦରକାରୀ

**ଅଯତରା** - *କେ:ଜ:* (ବି.ବିଂ.) : ଅତି ଚାଲାକ୍, ଦୁଷ୍ଟ, ନିୟମ ମାନୁନଥିବା

**ଅଯତୁରୀ** - *ପଦ୍ୟ:* (ବି.) : ଶ୍ୱାସରୋଧ ହେତୁ ବିବ୍ରତଭାବ

**ଅଯୋଗା** - *ଜ:* (ବିଂ.) : ଅଯୋଗ୍ୟ

**ଅୟଜିନା** - *ଢେ:* (କ୍ରି.) : ଦେଖିବା

**ଅୟସ** - *ଅନେ:* (ବି.) : ବିଳାସ, ଆରାମ

**ଅୟାଁ** - *ନବ:* (ବି.) : ବୁଢା ବେଙ୍ଗ

**ଅୟେନ୍** - *ସୁ:* (ବିଂ.) : ସୁନ୍ଦର

**ଅର** - *ଅନେ:* (ବି.) : ଯେଉଁ କାଠଖଣ୍ଡ ତୁମ୍ବ ଓ ପହିକୁ ସଂଯୁକ୍ତ କରେ, ଶୀଘ୍ର ଗତି କରୁଥିବା ଚକର ପକ୍ଷୀ, ପୁଟି

**ଅରଇସି** - *ରା:* (ବି.) : ଆରିସି, ଦର୍ପଣ

**ଅରକ** - *ଦେ:* (ବି.) : ଅରଖ

**ଅରକଲ୍** - *ସୁ:* (ବି.) : ଅସୁବିଧା

**ଅରଖ** - *ଅନେ:* (ବି.ବିଂ.) : ଅରକ ଗଛ(ଗୁଳ୍ମବିଶେଷ), ସଂପୂର୍ଣ୍ଣ (ନୂଆ)

**ଅରଖି** - *ସୁ:* (ବି.) : ମଦ୍ୟରସ ବିଶେଷ

**ଅରଖିତ** - *ରା:* (ବିଂ.) : ଅନ୍ୟର ଦୟାରେ ବଞ୍ଚିବା (ଲୋକ), ସୁରକ୍ଷା ନଥିବା

**ଅରଗଡ** - *କନ୍ଧ:* (ବି.) : ଅର୍ଗଳି

**ଅରଗଳି** - *ଢେ:ଅ:କୋ:* (ବି.) : କବାଟର କିଳିଣୀ

**ଅରଚି** - *ରା:* (ବି.) : ଅରୁଚି, ଗର୍ଭଧାରଣ କାଳରେ ଖାଦ୍ୟପ୍ରତି ନିସ୍ପୃହା

**ଅରଜନ** - *ଅନେ:* (ବି.) : ରୋଜଗାର, ଉପାର୍ଜନ

**ଅରଜି** - *ଅନେ:* (ବି.କ୍ରି.) : ଆବେଦନପତ୍ର, ଅଭିଯୋଗ ପତ୍ର, ଯାହା କର୍ମଦ୍ୱାରା ଲାଭ ହୁଏ, ଆବଶ୍ୟକ, ରୋଜଗାର କରି

**ଅରଟା** - *ଘ:* (ବି.) : ଆଙ୍କୁଡ଼ି

**ଅରଢ଼** - *ଢ଼:କଣ:* (ବି.) : ଆଦେଶ, ଅର୍ଡର, ଫସଲ ବା ଖଳାବାଡ଼ି ଚାରିପଟେ ଥିବା ଅସ୍ଥାୟୀ ବାଡ଼

**ଅରଣା** - *ଅନେ:* (ବି.ବିଂ.) : ବଣମହିଷ, ବଣୁଆ, ବୋଲ ମାନୁନଥିବା

**ଅରଣା ଯାଗା** - *ପଦ୍ୟ:* (ବି.) : ଘଞ୍ଚଯାଗା

**ଅରତ୍** - *ମା:* (ବି.) : ଅର୍ଥ (କଥାର ଅର୍ଥ)

**ଅରଥ୍** - *କଳା:କଳା:* (ବି.) : ଅର୍ଥ, ଭାବ, ତାତ୍ପର୍ଯ୍ୟ

**ଅରଦଲୀ** - *ସ:* (ବି.) : ଅର୍ଦ୍ଦଳି, ଚପରାସୀ

**ଅରଦା** - *ସୁବ:* (ବିଂ.) : ନିଖୁଣ ଯୌବନ, ଅକ୍ଷତ

**ଅରନ୍ ଘରା** - *ଝା:* (ବି.) : ଅନ୍ନ ଯୋଗାଣର ମୁଖ୍ୟ ଆଧାର

**ଅରନ୍‌ଢାଲ** - *ସୁ:* (ବି.) : ସମସ୍ୟା, ଜଂଜାଳ

**ଅରନ୍ ପାଏନ୍** - *ସୁ:* (ବି.) ଅନ୍ନଜଳ, ଅନ୍ନପାଣି

**ଅରନିଆଁ** - *ସୁ:* (ବିଂ.) : ଅରଣା, ବଣୁଆ, ଅମାନିଆ

**ଅରନ୍ଧା ପର୍ବ** - *ଗଦ୍ୟ:* (ବି.) : ଚୁଲିପୂଜା ସହିତ ପୂର୍ବପୁରୁଷଙ୍କ ପାଇଁ ହାଣ୍ଡିଶାଳାରେ ଦୁଧ, କଦଳୀ ଭୋଗ ଲାଗୁଥିବା ପର୍ବ

**ଅରମା** - *ଅନେ:* (ବି.ବିଂ.) : ମଇଳାଜାଗା, ସଫା ହୋଇନଥିବା ସ୍ଥାନ, ଅସନା ସ୍ଥନ, ଘାସ ଗଛ ଲତାରେ ପୂର୍ଣ୍ଣ, ଜଙ୍ଗଲିଆ

**ଅରଲା** - *ସୁବ:* (ବିଂ.) : ବିକଳ ଅବସ୍ଥା, ରଖେଇଥୋଇ ନଦେବା, ଅଝଟ

**ଅରଷ୍ଟି** - *ଢ଼:ଗ:ସୁବ:* (ବି.) : ଅରିଷ୍ଟ, କଷ୍ଟ, ଦୁର୍ଭାଗ୍ୟ, ଅମଙ୍ଗଳ, କଳହ, ବିପତ୍ତି, ଖରାପ ଲୋକ

**ଅରଷ୍ଟି କରିବା** - *ସ:* (କ୍ରି.) : ଅଳି କରିବା

**ଅରଷ୍ଟିପସରା** - *ସ:* (ବି.) ଯାହାର ଉପସ୍ଥିତିରେ ଘରେ ଅଶାନ୍ତି ହୁଏ

**ଅରସ** - *ରା:* (ବିଂ.) : ଚେପଟା

**ଅରସା** - *ଗଢ଼:ଗ:* (ବି.) : କ୍ରମାନ୍ବୟରେ, ଗାଈଗୋରୁଙ୍କ ମୁଖ ରୋଗ, ମୃଦଙ୍ଗ ବାଦ୍ୟର ତାଳ

**ଅରସା ଉଠେଇବା** - *ଗ:* (ବି.) : ଇଟାରେ କାନ୍ଥ ଗଢିବା

**ଅରସୁ** - *ଗଦ୍ୟ:* (ବି.) : ଅଶ୍ୱତ୍ଥ

**ଅରା** - *ଚ:* (ବି.) : ଅର

**ଅରାଉଛେ** - *ସୁ:* (କ୍ରି.) : ଡହୁଛେ

**ଅରାଉରି** - *ବୌ:* (ବି.) : ଏଡ଼ାଇବା, ଦାୟିତ୍ୱ ଖସାଇବା

**ଅରାନ୍ଧ** - *ବା:* (ବି.) : ଏହାକୁ ପଖାଳ ଖିଆ ପର୍ବ ଭାବରେ ପାଳନ କରାଯାଏ। ଅରନ୍ଧା

**ଅରାନ୍ଧିଆ** - *ଉ:* (ବିଂ.) : ରୋଷେଇ ନହେବା ଦିନ

**ଅରା ସତୁଆ** - *ଗଦ୍ୟ:* (ବି.) : ଛୋଟ କାଠଚଟୁ

**ଅରାସାଲ୍** - *ଗଡ଼ୟ:* (ବି.) : ସଲପ ମଦ

**ଅରିଷ** - *ନବ:* (ଅ.) : କିପରି

**ଅରିଷ୍ଟ** - *ଗ.ଢ:* (ବି.) : ଗୁଡ଼ ମିଶ୍ରିତ ଆୟୁର୍ବେଦୀୟ ଔଷଧ ବିଶେଷ, ପାପ, ଦୋଷ, ଏକୁଡ଼ିଶାଳ, ଅନିଷ୍ଟ

**ଅରିଷ୍ଟି** - *ଅନେ:* (ବି.ବିଂ) : ସମସ୍ୟା, ଖରାପ ଭାଗ୍ୟ, ଖରାପ ସମୟ, ଅମଙ୍ଗଳ, ଅଶୁଭ ସମୟ, ଅମଙ୍ଗଳ କଥା

**ଅରିସରି** - *ସ.ସୁ:* (ବିଂ.) : ଟିକିଏ ସାନ ଓ ବଡ଼, ସମାନ ପରି, ତୁଳନାତ୍ମକ ଭାବେ

**ଅରୁଆ** - *ଅନେ:* (ବିଂ.ବି.) : ଉଆଚାଉଳ, ଅସିଝା ଧାନରୁ ପ୍ରସ୍ତୁତ ଚାଉଳ, ଅରୁଆ ଚାଉଳ,

**ଅରୁଆଳ** - *ପଡ଼ୟ:* (ବିଂ.) : କର୍ମଠ, ଚାଲାକ ଚତୁର

**ଅରୁଗୁଣି** - *ଖୋ:* (ବି.) ଅଲଗୁଣି, ଯେଉଁଥିରେ ଲୁଗା, ଜାମା ଇତ୍ୟାଦି ରଖାଯାଏ

**ଅରୁଚକ** - *ଅନେ:* (ବିଂ.) : ଯାହା ରୁଚିକର ନୁହେଁ

**ଅରୁଚା ପରୁଚା** - *ପଡ଼ୟ:* (ବି.) : ବୃଥା କଳହ, ମାଡ଼ଫଉଦାରି

**ଅରୁଚି** - *ଅନେ:* (ବି.) : ଅନିଛା, ପାଟିକୁ ସ୍ୱାଦ ନଲାଗିବା, ଅଶ୍ରଦ୍ଧା, ଅନାଗ୍ରହ

**ଅରେକ** - *ଢେ:* (ବି.) : ନଡ଼ିଆ ଷଢେଇ, ନଡ଼ିଆର କଠିନ ଆବରଣ

**ଅର୍** - *ସୁବ:* (ଅ.) : ହଳ କଲାବେଳେ ଡାହାଣପଟ ପଶୁକୁ ଚାଲିବା ପାଇଁ ନିର୍ଦ୍ଦେଶବାଚକ ଶବ୍ଦ

**ଅର୍କ** - *ଅନେ:* (ବି.) : ପୁଷ୍ପ ଏବଂ ଔଷଧର ସାରାଂଶ, ସୂର୍ଯ୍ୟ

**ଅର୍କ ନୂଆ** - *ଗଛ:* (ବିଂ.) : ସଂପୂର୍ଣ୍ଣଭାବେ (ନୂଆ)

**ଅର୍କିତୁ** - *ଦେ:* (ବି.) : ଜଙ୍ଗଲୀ ଫୁଲ

**ଅର୍ଖ** - *ଅନେ:* (ବିଂ.) : ସଂପୂର୍ଣ୍ଣ (ନୂଆ) ଅରଖ (ନୂଆ)

**ଅର୍ଗଗଳି** - *ଗ:* (ବି.) : କବାଟର କିଳିଣୀ

**ଅର୍ଗଳି** - *ଭ:* (ବି.) : ବଳି ଦେବା ଫାଶ

**ଅର୍ଘାଟିଆ** - *ଚା:* (ବିଂ.) : ଅତି ଉଦ୍ଧତ, ପ୍ରଚଣ୍ଡ

**ଅର୍ଘାସୁଣି** - *କେ:* (ବିଂ.) : ଖୁବ୍ ଡେଙ୍ଗା

**ଅର୍ଚି** - *କୋ:* (ବି.) : ଅରୁଚି, ଖାଇବାକୁ ଇଛା ନଲାଗିବା

**ଅର୍ଚିଣା** - *ଭ:* (ବି.) : ଉଖୁରିଆ, ଚୁଲି ଭିତରକୁ ଜାଳ ପେଲିବା ଡ଼ାଙ୍ଗ ବା ଛୋଟ ବାଡ଼ିବିଶେଷ, ଅଚିନାବାଡ଼ି

**ଅର୍ଚ୍ଚକ** - *ଗ:* (ବି.) : ପୂଜକ, ଜାତି ବିଶେଷ

**ଅର୍ଚ୍ଚନା** - *ଅନେ:* (ବି.) : ନିମନ୍ତ୍ରଣ, ସ୍ୱାଗତ, ପୂଜା

**ଅର୍ଚ୍ଛି** - *ନବ:ମା:* (ବି.) ପାଟିକୁ ସ୍ୱାଦ ନଲାଗିବା, ସୁସ୍ୱାଦୁ ନହେବା, ଅରୁଚି

**ଅର୍ଚ୍ଛିକା** - *ଗଡ଼ୟ:* (ବି.) : ଏକ ଫୁଲ

**ଅର୍ଚ୍ଛିଦେବା** - *କଳା:* (କ୍ରି.) : ଯତ୍ନ ନ ନେବା, ପରିତ୍ୟାଗ କରିବା

**ଅର୍ଜି** - *ଅନେ:* (ବି.) ଆବେଦନପତ୍ର, ମୋକଦ୍ଦମାର ବିବରଣୀ

**ଅର୍ଜିଖିଆ** - *ଚ୍।:* (ବିଂ.) : ନିଜେ ରୋଜଗାର କରି ଚଳିବା

**ଅର୍ତ୍ତୁ** - *ଭ:* (ବି.) : ଅରୁଚି

**ଅର୍ଥ** - *ଦେ:* (ବି.) : ମାନେ, ମୁଦ୍ରା, ଟଙ୍କା ପଇସା

**ଅର୍ଥକାରୀ** - *ସ:* (ବିଂ.) : ଲାଭଦାୟକ

**ଅର୍ଦଳି** - *ଅନେ:* (ବି.) : ଅନ୍ୟର ଅଳିଅଝଟକୁ ସମ୍ଭାଳିବା, ଚପରାଶି, ଗୁହାରୀ, ଆପତ୍ତି

**ଅର୍ଦ୍ଧାଳିବା** - *ଚ୍।:* (କ୍ରି.) : ବକବାଜି କରିବା, ପାଣି ଗୋଳେଇ ପକାଇବା

**ଅର୍ଦ୍ଦି** - *ପଦ୍ୟ:* (ବି.) : ଏକ ପ୍ରକାର କପଡ଼ା

**ଅର୍ଲାସର୍ଲା** - *ଚ:ସ:* (ବିଂ.) : ମୃତ୍ୟୁକାଳୀନ ଯନ୍ତ୍ରଣା ଭୋଗିବା, ଦୁଃଖ ପାଇବା, ସଂକୋଚ କରିବା

**ଅର୍ଶ** - *ଅନେ:* (ବି.) ଏକପ୍ରକାର ରୋଗବିଶେଷ

**ଅର୍ଷିତିଆ** - *ଅ:* (ବିଂ.) : ଅରକ୍ଷିତ

**ଅର୍** - *କଳା:ସ:ସୁ:* (ଅ.ବି.) : ହଳ କରିବା ବେଳେ ଉଚ୍ଚାରିତ ଶବ୍ଦ, ହୁର୍, ହଳକରୁଥିବା ବେଳେ ଡାହାଣ ପଟ ବଳଦକୁ ଅର୍ କହନ୍ତି, ଡାହାଣପଟେ ବୁଲିବା

**ଅର୍କଲ୍** - *ସୁ:* (ବି.) : କିଂକର୍ତ୍ତବ୍ୟ

**ଅର୍କା** - *ସୁବ:ବୌ:* (ବି.) ଦେହର ଅଙ୍ଗପ୍ରତ୍ୟଙ୍ଗ ମୋଡ଼ି ହୋଇ ଯନ୍ତ୍ରଣା ହେବା, -ରକା, ଧାନବିଡ଼ା

**ଅର୍କାପିଟା** - *ବୌ:* (କ୍ରି.ବିଂ.) : ପିଟି ପିଟି ଧାନ ଥିବା ନଡ଼ାବିଡ଼ାରୁ ଧାନ ଝଡ଼ାଇ ଧାନଗଦା କରିବା

**ଅର୍କିବା** - *ବୌ:* (ବି.) : ରକା ହେବା, ରକା ପଶିବା

**ଅର୍କୁହା** - *ସୁବ:* (ବିଂ.) : କହିବା ଲୋକକୁ ସିଧା ନ କହି ଅନ୍ୟ କାହାକୁ କହିବା ପାଇଁ କହିବା

**ଅର୍ଗଡ଼ା** - *ନୂ:ସୁ:* (ବି.) : କବାଟକୁ କିଳିବା ପାଇଁ ପଛ ପଟରେ ବ୍ୟବହୃତ, ଛିଟକିଣି, ଅର୍ଗଳି

**ଅର୍ଗଳ** - *ଦେ:* (ବି.) : ଧଡ଼ା, ଗୁହାଳ ଦୁଆର ବଳଦ ପାଇଁ ବ୍ୟବହୃତ ଖୋଲା ମେଲା କବାଟ

**ଅର୍ଘା ବଥା** - *ବୌ:* (ବି.) : ପୀଡ଼ା

**ଅର୍ଛିବା** - *ବ:* (କ୍ରି.) : (କୌଣସି କାରଣରୁ) ଅଯତ୍ନ କରିବା, ତ୍ୟାଗ କରିବା

**ଅର୍ତତ** - *ସୁ:ଦେ:* (ଅ.) : ଗୋରୁ ତଡ଼ିବା ଶବ୍ଦ, ବଳଦକୁ ଘଉଡ଼ିବା

**ଅର୍ତନ୍** - *କଳା:* (ବି.) : ଶଗଡ଼ର ଅଖ

**ଅର୍ଦ୍ଦା** - *ନୂ:କଳା:* (ବିଂ) : ଅନଭିଜ୍ଞ, ଶୃଙ୍ଖଳା, ଶୂନ୍ୟ, ଅନାବାଦୀ

**ଅର୍ନି** - *ମା:* (ବି.) : ଗାଈ ପଛରେ ଧାଉଁଥିବା ଷଣ୍ଢ

**ଅର୍ପିବା** - *କଳା:* (କ୍ରି.) : ସମର୍ପଣ କରିବା

**ଅର୍ରା** - *ସୁବ:* (କ୍ରି.) : ପଶୁମାନଙ୍କୁ ଆଡ଼େଇ ଆଣିବା

**ଅର୍ଲା ସର୍ଲା** - *ଝା:* (ବି.) : ଆଧିକ୍ୟ ଅର୍ଥରେ, ବଳକା

**ଅର୍ସା** - *ନୂ:କଳା:* (ବି.) : ଆରିସା, ଆରିସା ପିଠା

**ଅର୍ହତ** - *ପଦ୍ୟ:* (ବି.) : ବୌଦ୍ଧ ସୈନ୍ୟାସୀ

**ଅଲ୍କାମ** - *କୋ:* (ଅ.) : ପ୍ରହସନ

**ଅଲ୍ଗାବ** - *ସୁ:* (କ୍ରି.) : ପୃଥକ୍ କରିବା

**ଅଲ୍ଗେ** - *ଦେ:* (ବିଂ.) : ଭିନ୍ନ, ଅଲଗା

**ଅଲ୍ଗେଇବା** - *କଳା:* (କ୍ରି.) ବାହାର କରିଦେବା, ଅଲଗା କରିବା

**ଅଲ୍ଝିବା** - *କୋ:* (କ୍ରି.) : ଲଟକି ରହିବା

**ଅଲ୍ଝଟ** - *ବ:* (କ୍ରି.) : ନ ଯଯୌ ନ ତସ୍ଥୌ ଅବସ୍ଥାରେ ପଡ଼ିବା

**ଅଲ୍ଝା** - *ସୁ:* (ବି.) : ସୂତା ଫସିଯିବା ଅବସ୍ଥା, ଅଡୁଆ

**ଅଲ୍ଝିବା** - *ଦୌ:ସୁ:* (କ୍ରି.) : ଅଟକିବା, ଲଟକିବା, ଗଛରେ ଲାଖିଯିବା

**ଅଲ୍ଣା** - *ଦେ:* (ବି.) : ଲୁଗା ରଖିବା ପାଇଁ କାଠ ନିର୍ମିତ ଅଳଗୁଣି

**ଅଲ୍ତା** - *କଳା:ସୁ:* (ବି.) : ଅଳତା, ଅଳିତା, ଲାକ୍ଷାରସ

**ଅଲ୍ତି** - *ସୁ:ଦୌ:* (ବି.) : ଶିଶୁରୋଗ, କଣ୍ଠ ଅଳତି (ଶିଶୁରୋଗ)

**ଅଲ୍ଦା ବଲ୍ଦା** - *ନୂ:* (କ୍ରି.) : ଅଦଳବଦଳ

**ଅଲ୍ପ** - *ନୂ:* (ବିଂ.) : ଅଳ୍ପ

**ଅଲ୍ପାଇସିଆ** - *ଅନେ:* (ବି.) : ଅଳ୍ପ ଆୟୁଷ, ଗାଳି ବିଶେଷ

**ଅଲ୍ବତ୍** - *ଅନେ:* (ଅ.) : ନିଶ୍ଚୟ

**ଅଲ୍ରା** - *ଅନେ:* (ବିଂ.) : ଅଡୁଆ, ଝୁନ୍ତୁରି

**ଅଲ୍ରୀ** - *ଦେ:* (ବିଂ.) : ଏଣୁ ତେଣୁ ବକିବା

**ଅଲ୍ସୀ** - *ସୁ:କଳା:* (ବି.) : ଅଳସୀ, ଅତସୀ, ଏକ ତୈଳ ବୀଜ

**ଅଲ୍ହନ୍** - *ବ:* (ବି) : ବିପଦ

**ଅଲକରା** - *ଭ:* (ବିଂ.) : ଅପରିଷ୍କାର ଜିନିଷ

**ଅଲକିତ** - *କେ:* (ବିଂ.) : ଆଶ୍ଚର୍ଯ୍ୟଜନକ, ଅଲୌକିକ

**ଅଲକ୍ଷଣ** - *ଅନେ:* (ବିଂ.) : ଅଶୁଭଲକ୍ଷଣ ବା ଚିହ୍ନ

**ଅଲକ୍ଷଣା** - *ଅନେ:* (ବିଂ.ବି.) : ଯାହାର ସ୍ୱଭାବ ଭଲ ନୁହେଁ, ଲକ୍ଷ୍ମୀଛଡ଼ା

**ଅଲଖମା** - *ଗ:* (ବିଂ.) : ଶ୍ରୀହୀନ, ଲକ୍ଷ୍ମୀଛଡ଼ା, ହତଭାଗ୍ୟ

**ଅଲଖମିଏନ୍** - *ସୁବ:* (ବିଂ.) : ଅଲକ୍ଷଣି, କୁଢଙ୍ଗୀ ସ୍ତ୍ରୀ

**ଅଲଖିଣା** - *କୋ:* (ବିଂ.) : ଅଲକ୍ଷଣା

**ଅଲଖିନି** - *ଦୌ:* (ବିଂ.) : ଅଲକ୍ଷଣୀ

**ଅଲଗା** - *ଅନେ:* (ବି.ବିଂ.) : ଅସ୍ତବ୍ୟସ୍ତ

**ଅଲଗା କଚାଡ଼** - *ବ୍‌:* (ବି.) : କ୍ରୋଧରେ ବ୍ୟସ୍ତ ହୋଇ ଡେଇଁବା

**ଅଲଗୁଣି** - *ଅନେ:* (ବି.) : ଲୁଗା ରଖିବା ସ୍ଥାନ, ଲୁଗାପଟା ରଖିବାଲାଗି କାଠ ବା ବାଉଁଶ ବାଡ଼ିକୁ ଦୁଇ ମୁଣ୍ଡରେ ଦଉଡ଼ି ବାନ୍ଧି ଟଙ୍ଗା ଯାଇଥାଏ, ଆଲଣା

**ଅଲଗେଁ** - *ସୁ:* (ବିଂ.) : ଭିନେ, ଅଲଗା, ପୃଥକ

**ଅଲଚିକି** - *ସଂ:* (ବି.) : ସାନ୍ତାଳୀ ଭାଷାର ଲିପି

**ଅଲଜ୍ଞ** - *ଅନେ:* (ବି.) : ଅଲାଜୁକ

**ଅଲଝଟ୍** - *ସ:* (ବି.) : ବାଧା

**ଅଲଝିବା** - *ସ:* (କ୍ରି.) : ବାଟରେ ରହିଯିବା, ପଛରେ ରହିଯିବା

**ଅଲଡ଼ା** - *ରା:* (ବିଂ.) : ଅନାବଶ୍ୟକ

**ଅଲଡ଼ି** - *ଗ:ମା:ଗଞ୍ଜ:* (ବି.) : ଶିମ୍ବଜାତୀୟ ପରିବା, ଝୁଡୁଙ୍ଗ

**ଅଲଣା** - *ଅନେ:* (ବିଂ.) : ଅସାର, ଲୁଣ ପଡ଼ିନଥିବା ଖାଦ୍ୟ, ମୂଲ୍ୟହୀନ,

**ଅଲବତ୍** - *ଅନେ:* (ଅ.) : ନିଶ୍ଚୟ, ବାଧ୍ୟସୂଚକ

**ଅଲବଲ** - *ଗ:ଗଞ୍ଜ:* (ବି.ବିଂ.) : ଅଠିକଣା କାମ କରିବା

**ଅଲବଲି** - *ଗ:* (ବି.) : ଦାୟିତ୍ୱହୀନ ସ୍ତ୍ରୀ

**ଅଲବଲିଆ** - *ଗ:* (ବିଂ.) ଅଠିକଣା, ବେଢଙ୍ଗିଆ

**ଅଲରା** - *ଅନେ:* (ବିଂ.) : ଅପରିଷ୍କାର, ଏଣେତେଣେ ବିକ୍ଷିପ୍ତ ହୋଇଥିବା, ଅସ୍ତବ୍ୟସ୍ତ, ଇତସ୍ତତଃ, ଅଦୁଆ, ଅସଣା, ଅପରିଷ୍କୃତ

**ଅଲରାପିଲା** - *ସ:* (ବିଂ.) : ଅନାଥ ପିଲା

**ଅଲହନ୍** - *ସ:* (ବି.) : ବିପଦ

**ଅଲା** - *ରା:ଢେ:* (ବି.) : ପତ୍ର

**ଅଲାଏକ୍** - *ସୁ:ସ:* (ବିଂ.) : ଅଯୋଗ୍ୟ

**ଅଲାଗି** - *ଢ:କୋ:* (ବି.) : ଭୋଗକରିନଥିବା, ପୋଷାକ, ଅଶୌଚ, ସ୍ତ୍ରୀମାନଙ୍କ ମାସିକ ଧର୍ମ

**ଅଲା ଚାଣ୍ଡିଆ** - *ଅ:* (ବିଂ.) : ନିର୍ବୁଦ୍ଧିଆ

**ଅଲାଜ୍ଞା** - *ସ:* (ବି.) : ଭୋକରେ ଦୁର୍ବଳ ଅବସ୍ଥା

**ଅଲାଜିଆଁ** - *ଦୌ:* (ବି.) ନାକେଦମ, ହାଲିଆ

**ଅଲାଜୁକ** - *ଅନେ:* (ବିଂ.) : ନିର୍ଲଜ, ଲାଜହୀନ ବ୍ୟକ୍ତି

**ଅଲାଜୁଗିଏନ୍** - *ସ:* (ବି.) : ଗାଳି ଅର୍ଥରେ ଏହା ପ୍ରୟୋଗ କରାଯାଏ (ସ୍ତ୍ରୀଲିଙ୍ଗ)

**ଅଲାଣ୍ଡି** - *ଖୋ:* (ବିଂ.) : ଯାହାକୁ କୌଣସି କାମ ଠିକ୍ ଭାବେ ଆସେନାହିଁ, ବୋକୀ

**ଅଲାଣ୍ଡୁ** - *କୋ:* (ବିଂ.) : ଅପଦାର୍ଥ, ବୋକା, ଅବୁଝା

**ଅଲାତିଆ** - *କୋ:ରା:* (ବିଂ.) : ଅସମାନ, ଅତିବଡ଼, ବର୍ଗ ନଥିବା

**ଅଲାପାନ୍ତିଆ** - *ରା:* (ବିଂ.) : ବିବେକହୀନ

**ଅଲାବଲା** - *ଗଞ୍ଜ:ଗଦ୍ୟ:* (ବିଂ.) : ଅସ୍ତବ୍ୟସ୍ତ, ଏଣ୍ଡୁତେଣ୍ଡୁ, ଟାଣଟାଣ

**ଅଲାମଲା** - *ଭ:* (କ୍ରି.ବିଂ.) : ଗୋଳେଇ ମିଶେଇ

**ଅଲା ଯୁଗିଏନ୍** - *ସ:* (ବି.) : ଯେଉଁ ସ୍ତ୍ରୀ ଅଯୋଗ୍ୟ, ଯାହାକୁ ଆଚାର ବ୍ୟବହାର ଜଣାନାହିଁ

**ଅଲାର** - *ସୁ:ବ:ବ:* (ବିଂ.) : ଅସହାୟା, ସମ୍ବଳହୀନ, ନିଃସ୍ୱ

**ଅଲାରି** - *ଦେ:* (ବିଂ.) : ବୋକୀ

**ଅଲାର୍‌ପିଲା** - *ସ:* (ବିଂ.) : ଅନାଥ ପିଲା

**ଅଲି** - *ଜଷ:କଳା:ଗଦ୍ୟ:* (ବି.) : ଭାଲୁ, ଅଳି, କଟାଳ, ମଦ, ସୁରା

**ଅଲିଅଳ** - *ଅନେ:* (ବିଂ.) : ଗେହ୍ଲା

**ଅଲିକିତ** - *ଭ.କ:* (ବି.ବିଂ.) : ଆଶ୍ଚର୍ଯ୍ୟ, ଅସମ୍ଭବ, ଅଲୌକିକ

**ଅଲିଖିଣିଆ** - *ଗ:* (ବିଂ.) : ଖରାପ ଲକ୍ଷଣଯୁକ୍ତ ପୁରୁଷ

**ଅଲିଖିଣୀ** - *ଅନେ:* (ବି.) ଖରାପ ଲକ୍ଷଣଯୁକ୍ତ ସ୍ତ୍ରୀ

**ଅଲିପା** - *ସୁ:* (ବିଂ.) : ଅପୋଛା, ଲିପା ଯାଇନଥିବା

**ଅଲିହେନ** - *ସୁ:* (ବି.) : ବଳକା, ବେସର

**ଅଲୁଆ** - *ସ.ନୁ.କଳା:* (ବି.) : ଅରୁଆ, ଉଆ

**ଅଲୁଆଝୁରି** - *କଳା:* (ବି.) : ପୋଡ଼ା ନ ଯାଇ ଶୁଖାଯାଇଥିବା ଛୋଟ ଛୋଟ ମାଛ

**ଅଲୁଡ଼ା** - *ରା:* (ବିଂ.) ଅଲୋଡ଼ା, ଅନାବଶ୍ୟକ

**ଅଲେଇ** - *ଦେ:* (ବିଂ.) : ଓଲେଇ, ଫୁଲେଇ

**ଅଲେଇ ବାଇଳୀ** - *କେ:* (ବିଂ.) : ବାଗ ବରଗ ନଥିବା

**ଅଲେଖ** - *ଅନେ:* (ବି.ବିଂ.) : ନିରାକାର

**ଅଲେଖା** - *ଅନେ:* (ବିଂ.) ଲେଖା ହୋଇନଥିବା

**ଅଲେର୍** - *ସ:* (ବିଂ.) : ଅଯୋଗ୍ୟ

**ଅଲୋଅଲୋ** - *ସୁ:* (ବି.) : ହୁଳହୁଳି

**ଅଲୋଭ** - *ଦେ:* (ବି.) : ପତ୍ର

**ଅଲୋଡ଼ା** - *ଅନେ:* (ବିଂ.) : ଅଦରକାରୀ, ଅନାବଶ୍ୟକ

**ଅଲୌକିକ** - *ଅନେ:* (ବିଂ.) : ଅଦୃଷ୍ଟ, ଯାହା ଲୋକ ଦ୍ୱାରା ସମ୍ଭବ ନୁହେଁ

**ଅଲ୍ୟଳ** - *ଯା:* (ବିଂ.) : ଗେହ୍ଲା, ଅଲିଅଳ

**ଅଲୋବଲୋ** - *ସ:* (ଅ.) : ଯେମିତି ସେମିତି

**ଅଳ୍‌ତି** - *ଦେ:* (ବି.) : ପୋଡ଼ା ଘା'ରୋଗ

**ଅଳ୍‌ପିକଥା** - *କୋ:* (ବି.) : ଆଶ୍ଚର୍ଯ୍ୟ କଥା, ସାମାନ୍ୟ କଥା

**ଅଳ୍‌ସୁଆ** - *ଅନେ:* (ବିଂ.) : କାମ ନକରି ବସି ରହିବା ଲୋକ

**ଅଳକ** - *ପଦ୍ୟ:ରା:* (ବି.) : ଚୂର୍ଣ୍ଣକୁନ୍ତଳ, କୁଙ୍କୁମ, ମେଘବିଶେଷ, ଝାମ୍ପଡାବାଳ, ବାୟାକୁକୁର

**ଅଳକା** - *କେ:* (ବି.) : ମୁଣ୍ଡବନ୍ଧା ଅଳଙ୍କାର

**ଅଳଗୁଣ୍ଡି** - *ରା:ଗଞ:* (ବି.) : ଅଲଗୁଣି, ଲୁଗା ରଖିବାପାଇଁ ଓହଳିଥିବା ବାଉଁଶ ବା କାଠ

**ଅଳତା** - *ଅନେ:* (ବିଂ.ବି.) : ନାରୀମାନଙ୍କ ପାଦର ରଙ୍ଗ, ଅଲକ୍ତା, ଏକରଙ୍ଗ

**ଅଳତାପଟି** - *ଭ:* (ବି.) : ମହିଳାମାନେ ଗୋଡ଼ରେ ପିନ୍ଧୁଥିବା ଅଳଙ୍କାର ବିଶେଷ

**ଅଳତାବେଢ଼ା** - *ନ:* (ବିଂ.) : ଅଳତାରଞ୍ଜିତ ଅବସ୍ଥା

**ଅଳତି** - *କେ:* (ବି.) : ଶିଶୁ ରୋଗବିଶେଷ

**ଅଳନ୍ଧୁ** - *ଅନେ:* (ବି.) : ଚାଳ ବା ଛାତରେ ଲାଗିଥିବା ଅଳିଆ, ମଇଳା, ରୋଷେଇ ଘରର କଳା

**ଅଳପଧନ, ବିକଳଜମନ** - *କ:* (ବି.) : ଦରିଦ୍ରର ଦୁଃଖ, ଧନହୀନ

**ଅଳପାଇଣିଆ** - *ଯା:* (ବିଂ.) : ପୁରୁଷ ପ୍ରତି ଗାଳି, ଅଳ୍ପ ଆୟୁଷଯୁକ୍ତ

**ଅଳପାଉଷ** - *ନବ:* (ବିଂ.) : ଅଳ୍ପାୟୁଷ

**ଅଳପାଟିଆ** - *କୋ:* (ବି.) : ଗତ ରାତ୍ରିର ପିନ୍ଧାବସ୍ତ୍ର

**ଅଳପାଉଟା** - *ଗ:* (ବି.) : ପାଲଟା ଲୁଗା ରାତି ପିନ୍ଧା ଲୁଗା

**ଅଳପିକିଆ** - *ଅନେ:* (ବିଂ.) : ଅଳ୍ପସମ୍ବଳ ଥିବା, ନ୍ୟୁନ, ସାମାନ୍ୟ

**ଅଳପେଉଷା, ଅଳପାଇଷିଆ** - *ଅନେ:* (ବିଂ.) : ଅଳ୍ପାୟୁ, ଅଳ୍ପ ଆୟୁଷ ହେବାପାଇଁ ଏକ ପ୍ରକାର ଗାଳି, ଅଳ୍ପ ଆୟୁଷ ଯାହାର

**ଅଳସି** - *ରା:କୋ:* (ବି.) ଆଳସ୍ୟ, ତୈଳବୀଜ ବିଶେଷ

**ଅଳସୁଆ** - *ଅନେ:* (ବିଂ.) : ନିକମା, କାମରେ ଶିଥିଳ

**ଅଳସୁଆ କୁଟା** - *ଗ:* (ବି.) : ବେଙ୍ଗଳା ପଡ଼ିବା ପରେ ବଳକା ରହିଯାଉଥିବା ଛୋଟଛୋଟ ନଡ଼ା

**ଅଳାଚକ୍ର** - *କୋ:* (ବି.) : ବିପଦ

**ଅଳାସିରି** - *ରା:* (ବି.) : ମନ୍ଦିରର ଦଧିନଉତିର ଉପର ଅଂଶ

**ଅଳି** - *ଅନେ:* (ବି.) : ଅନୁରୋଧ, ଝୁଙ୍କ, ଇପ୍ସିତ ପଦାର୍ଥ ପାଇବା ଲାଗି ପ୍ରାର୍ଥନା

**ଅଳିଆ** - *ଅନେ:* (ବି.) : ମଇଳା, ବିବାଦ, ମୀମାଂସା କରିବା

**ଅଳିଆଗଦା** - *କ:* (ବି.) : ଖତଗଦା, ମଇଳା ପଡ଼ିବା ସ୍ଥାନ

**ଅଳିତା** - *ଅ:* (ବି.) : ଅଳତା

**ଅଳିଦଳି** - *ଗ:* (ବି.) : ବିରକ୍ତ ହେବା

**ଅଳେଇ** - *ଢେ:* (ବି.) : ବଳଦ, ବିବାଦ

**ଅଳେଇ (କାଟିବା)** - *ଭ:* (କ୍ରି.) : ଜବରଦସ୍ତ (କାଟିନେବା)

**ଅଳେଇଚ** - *ଭ:* (ବି.) : ଫଳ ବିଶେଷ, ଥଟ୍ଟାମଜା କରିବା

**ଅଳେଇଦେବା** - *ଅ:* (କ୍ରି.) : ସମତୁଲ କରିଦେବା

**ଅଳେଇବାଇଳି** - *ଭ:* (ବିଂ.) : ସାଧାସିଧା

**ଅଢ଼ୋଅଢୋ** - *ଦେ:* (ଦେ.) : ହୁଳହୁଳି

**ଅଳଂଭୁଷ** - *ଭ:* (ବିଂ.) : ଅପଦାର୍ଥ

**ଅଛାଅଛି** - *କୋ:* (ବିଂ.) : ଅତିକମ୍

**ଅଶଉଚ** - *ଜ:* (ବିଂ.ବି.) : ଅଶୁଦ୍ଧ, ଅପବିତ୍ର, ଅଶୁଦ୍ଧ ସମୟ, କୁଟୁମ୍ବରେ କେହି ମରିଥିବା ସମୟ

**ଅଶଉଚିଆ** - *ଜ:* (ବିଂ.) : ଅଶୁଦ୍ଧ, ଶୌଚ ହୋଇନଥିବା

**ଅଶକତ** - *ଅନେ:* (ବି.) : ଅଶକ୍ତ, ଦୁର୍ବଳ

**ଅଶନ୍** - *ଅନେ:* (ବି.) : ଶାହାଜ୍ ଗଛ, ବୃକ୍ଷ ବିଶେଷ

**ଅଶନା** - *ଦେ:* (ବିଂ.) : ମଳିଆ, ଅସ୍ୱକରା

**ଅଶିଣ** - *ଅନେ:* (ବି.) : ଆଶ୍ୱିନ ମାସ

**ଅଶୁଚି** - *ପଦ୍ୟ:* (ବି.ବିଂ.) ଅପବିତ୍ର, ଆଷାଢମାସ ନୁହେଁ, କୃଷ୍ଣବର୍ଣ୍ଣ, ଅଶୁଦ୍ଧ, ମୃତିକିଆ, ମାରା, ଅଛୁଆଁ

**ଅଶୁଦ୍ଧି** - *ପଦ୍ୟ:* (ବି.) : ଶୁଦ୍ଧିର ଅଭାବ, ଦୋଷ, ଅପବିତ୍ରତା, ଶୁଦ୍ଧିହୀନ, ଦୁଷ୍ଟ, ଅଶୁଚି, ଅପବିତ୍ରତା

**ଅଶୁଭ** - *ଅନେ:* (ବିଂ.) : ଅମଙ୍ଗଳ, ଅନିଷ୍ଟ, ପାପ, ଲଜ୍ଜାଜନକ କାର୍ଯ୍ୟ, ଅଶୁଭ ବିଶିଷ୍ଟ, କୁତ୍ସିତ, ଯାହା ଶୁଭ ନୁହେଁ, ଅମଙ୍ଗଳ

**ଅଶେରା** - *ରା:* (ଅ.) : ପ୍ରଭୃତି

**ଅଶେଷ** - *ଅନେ:* (ବିଂ.) : ଅନେକ, ଅନନ୍ତ

**ଅଶୋକ** - *ଅନେ:* (ବି.) : ସୁଖୀ, ଏକ ବୃକ୍ଷର ନାମ, ଫୁଲବିଶେଷ

**ଅଶ୍ୱଗନ୍ଧା** - *ଅନେ:* (ବି.) : ଗୁଳ୍ମ ବିଶେଷ

**ଅଷ** - *ନବ:* (ବି.) : ଔଷଧ

**ଅଷଢା (ହାଣ୍ଡି)** - *ଗ:* (ବିଂ.) : ନୂଆ (ହାଣ୍ଡି)

**ଅଷଢିଆ** - *ସ:* (ବି.) : ଏକ ପ୍ରକାର ଫଳ, ଏହା ମଧ୍ୟ ପରିବା ପରି ଖିଆଯାଏ

**ଅଷାଢ୍** - *କଳା:ଦେ:* (ବି.) : ଆଷାଢ ମାସ

**ଅଷାଢୁଆ** - *ଅନେ:* (ବି.ବିଂ.) : ଏକପ୍ରକାର କଷାଳିଆ ଫଳ, ଆଷାଢ ମାସରେ ଫଳୁଥିବା, ଲତାବିଶେଷ, ବିବାହ ସମୟରେ ବରକନ୍ୟାଙ୍କ ହାତରେ ବନ୍ଧା ଯାଉଥିବା ସୂତ୍ର

**ଅଷାଣ୍ଡୁ** - *ଭ:* (ବିଂ.) : ଦୁଷ୍ଟ

**ଅଷ୍ଟକଙ୍କାଳ** - *ଅ:* (ବିଂ.) : ଦୁର୍ବଳ

**ଅଷ୍ଟକାଳି ବାରମାସି** - *ଗ:* (ବି.) : ବର୍ଷତମାମ

**ଅଷ୍ଟପହରୀ** - *ଅନେ:* (ବି.) : ଅଷ୍ଟପ୍ରହରୀ, ଆଠପହର ବ୍ୟାପୀ ନାମକୀର୍ତ୍ତନ

**ଅଷ୍ଟପାଟଳି** - *ଗ:ଗଜ:* (ବି.) : ଆମବାତ

**ଅଷ୍ଟମହରଗିଆ** - *ପୁ:* (ବିଂ.) : ଅତି ମହରଗରେ ବିକ୍ରି କରୁଥିବା (ବ୍ୟକ୍ତି)

**ଅଷ୍ଟାଙ୍ଗ ଶରୀର** - *ଅନେ:* (ବି.) : ସମଗ୍ର ଶରୀର

**ଅଷ୍ଟି** - *ଢେ:* (ବି.) : ଫଳରେ ଥିବା ଟାକୁଆ ବା ଟାଣ ମଞ୍ଜି

**ଅଷ୍ଟୁଘଡ଼ି** - *ଚ:* (ବି.) : ସର୍ବଦା, ହରଘଡ଼ି

**ଅସ୍ୱକଟ୍** - *ସୁବ:ଦେ:* (ବିଂ.ବି.) : ମଇଳା, ଅପରିଚ୍ଛନ୍ନ, ଅଳିଆ, ଗନ୍ଧିଆ, ଘୃଣ୍ୟ, ଗନ୍ଧେଇବା, ଅପରିଷ୍କାର, ଅସୁନ୍ଦର

**ଅସ୍‌କଟିଆ** - *ଅନେ:* (ବିଂ.) : ଅପରିଚ୍ଛନ୍ନ, ଅପରିଷ୍କୃତ, ଖରାପ, ଅସନା, ମଇଳା ଗନ୍ଧିଆ

**ଅସ୍‌କଟେନ୍** - *କଳା:* (ବିଂ.) : ଅପରିଷ୍କୃତା ନାରୀ

**ଅସ୍‌କ ଭଦ୍‌ରୀ** - *ସୁବ:* (ବିଂ.) : ଅପରିଚ୍ଛନ୍ନ ସ୍ତ୍ରୀ

**ଅସ୍‌କରା** - *ସୁବ:ମା:ଦେ:ମ:* (ବି.ବିଂ.) : ଆବର୍ଜନା, ଘରର ମଇଳା, ଅପରିଷ୍କାର, ଅପରିଛନିଆ

**ଅସ୍‌କୁଟିଆ** - *ଅନେ:* (ବିଂ.) : କଦର୍ଯ୍ୟ

**ଅସ୍‌କୁଣିଆ** - *ନ:* (ବିଂ.) ଅପରିଷ୍କାର, ଅସନା

**ଅସ୍‌ଗୁନି** - *ଚ:* (ବିଂ.) : ଖରାପ ଗୁଣଯୁକ୍ତା (ସ୍ତ୍ରୀ)

**ଅସ୍‌ଗୁନିଆ** - *ଝା:କଳା:ସୁ:* (ବିଂ.) : ଖରାପ ଗୁଣ ଥିବା ବ୍ୟକ୍ତି, ଅଶୁଭଙ୍କର, ଅମଙ୍ଗଳକର, ଅଗୁଣିଆ

**ଅସ୍‌ଥଳ୍** - *ସୁ:* (ବି.) : ଶେଜ ଉପରେ ଦିଆ ଯାଉଥିବା କପଡ଼ା

**ଅସ୍‌ନା** - *ଦେ:* (ବି.) : ଅପରିଷ୍କୃତ

**ଅସ୍‌ରପା** - *ଅନେ:* (ବିଂ.) : ପେର୍‌ପେରା ପୋକ

**ଅସ୍‌ରେନ୍** - *କଳା:* (ବି.) : ଅସୁରୁଣୀ, ରାକ୍ଷସୀ

**ଅସକଟ** - *ବୌ:* (ବିଂ.) : ଘୃଣା ସୂଚକ ଶବ୍ଦ, ଅପରିଷ୍କାର

**ଅସକୁଣିଆ** - *ଅ:* (ବିଂ.) : ଅପରିଷ୍କାର

**ଅସଜ** - *ଅନେ:* (ବିଂ.) : ଅଢୁଆ, ଗର୍ଭବତୀ (ସ୍ତ୍ରୀ), ଅଟାଗା

**ଅସଜିଆ** - *ଅନେ:* (ବିଂ.) : ଅସଜ, ଅଟାଗା, ଅସଜ, ଅଜାଗା, ଅସଜଡ଼ା

**ଅସଠଣ** - *ଗଦ୍ୟ:* (ବିଂ.) : ଅଶିଷ୍ଟ, ଅସୁନ୍ଦର

**ଅସଢ଼** - *ଗଦ୍ୟ:* (ବିଂ.) : ଅଶିଷ୍ଟ, ଅଭଦ୍ର

**ଅସଢ଼ ବିସଢ଼, ଅସଢ଼ ଭସଢ଼** - *କୋ:* (ବି.) : ଲାଜକଥା, ଅବାଗିଆ, ଆଲୁରୀ ବାଲୁରୀ

**ଅସଣ୍ଡବା** - *କ:* (ବିଂ.) : ଅଖାଦୁଆ

**ଅସତିଆ** - *ଅନେ:* (ବିଂ.) : ଯିଏ ମିଥ୍ୟା କଥା କହେ, ଅସତ୍ୟ ବ୍ୟକ୍ତି, ମିଛୁଆ,

**ଅସତିଏନ୍** - *ସ:ସୁ:* (ବିଂ.) : ଯିଏ ମିଥ୍ୟା କହେ (ସ୍ତ୍ରୀ), ଚରିତ୍ରହୀନ ନାରୀ

**ଅସନ** - *ଚେ:ସୁ:* (ବି.) : ବୃକ୍ଷ ବିଶେଷ, ସାହାଜ ଗଛ

**ଅସନଟ** - *ଗ:* (ବି.) : ଅସୁବିଧାଜନକ ପରିସ୍ଥିତି

**ଅସନଟିଆ** - *ଭି:କ:* (ବି.) : ଅଢୁଆ

**ଅସମୟ** - *ଗ:* (ବି.) : ଖରାପ ସମୟ, ଅଢୁଆ ସମୟ

**ଅସମିଆ** - *ସୁ:* (ବି.) : ଅସମୟ

**ଅସମ୍ଭାଳ** - *ଅନେ:* (ବିଂ.) : ସମ୍ଭାଳି ନହେବା, ଅଣାୟତ୍ତ, ଛାନିଆ

**ଅସର** - *ଅ:ଚେ:* (ବି.) : ବିଶ୍ରାମ, ଅବକାଶ, ଅବସର

**ଅସରଣିଆ** - *ଗଦ୍ୟ:* (ବିଂ.) : ଅସହାୟ, ନିରୁପାୟ

**ଅସରା** - *ଅ:କେ:ରା:ଗ:* (ବିଂ.ବି.) : ଅସରନ୍ତି, କ୍ରମାଗତ ବର୍ଷା, ଯାର ଶେଷ ନାହିଁ, ବର୍ଷାଧାରା

**ଅସରାଏ, ଅସଳେ** - *ଭ:* (ବି.) : ବର୍ଷା ପକାଇବା ଧାରା

**ଅସର୍ପି** - *ପଦ୍ୟ:* (ବି.) : ସୁନା ମୋହର, କୁଢି ଅସରପା

**ଅସର୍ଲା** - *କୋ:ନବ:* (ବି.) : ଅସରପା

**ଅସର୍** - *ପଦ୍ୟ:* (ବି.) : ଦାମୁଡ଼ି

**ଅସଲ** - *ଅନେ:* (ବିଂ.ବି.) : ପ୍ରକୃତ, ସଠିକ୍, ଉଚିତ, ଆଦାୟ କରିବା, ଖାଣ୍ଟି, ଠିକ୍, ମୁଖ୍ୟ, ପ୍ରଧାନ

**ଅସଲ୍ ମସଲ୍** - *ସ:* (ବି.) : ମୋଟାମୋଟି

**ଅସଲଟ** - *ଗ:* (ବି.) : ବିରକ୍ତିକର ପ୍ରସଙ୍ଗ, ଜଟିଳ ପ୍ରସଙ୍ଗ

**ଅସଲଟ** - *ଗ:* (ବି.) : ଜଟିଳ, ଅଡୁଆ

**ଅସଲା** - *ରା:ଗ:ଗଜ:* (ବି.) : ଅସରପା, ଅସର୍ପା, ଅସରପା

**ଅସହଣିଆ** - *ନ:* (ବିଂ.) ସହ୍ୟ କରିନପାରିବା, ପରଶ୍ରୀକାତର (ବ୍ୟକ୍ତି)

**ଅସହନ** - *ନୂ:ସ:* (ବି.) : ଅସହ୍ୟ, ଅସହଣ

**ଅସା** - *ଚା:ସ:* (ବି.) : ଅଗାଡ଼ି, ଖାଲିପେଟ

**ଅସାଏଧ** - *ସୁ:* (ବିଂ.) : ଅସାଧ

**ଅସାଢୁଆ** - *ଅନେ:* (ବିଂ.) : ବାହାଘର ସମୟରେ ହାତରେ ଏକ ସୂତା ମନ୍ତ୍ରପଢି ଲଗାଯାଏ

**ଅସାଢ଼** - *ଖୋ:କ:* (ବିଂ.) : ଅବଶ, ନିଶ୍ଚଳ, ଅଚେତ ହୋଇପଡ଼ିଥିବା

**ଅସାର** - *ଅନେ:* (ବି.ବିଂ.) : ଖରାପ, ଯାହା ସାର ନୁହେଁ, ପାପ, ମୂଲ୍ୟହୀନ, ଶଯ୍ୟାଗାର

**ଅସାରି** - *ଅ:* (ବି.) : ତନ୍ତୀ ବ୍ୟବହାର କରୁଥିବା ନଟେଇ

**ଅସାଷ୍ଟମ** - *କ:* (ବି.) : ସଜ୍ଞାହୀନ, ମୂର୍ଚ୍ଛିତ

**ଅସିଆ** - *ଖୋ:* (ବିଂ.) : ଅପରିଚ୍ଛନ୍ନ, ମସିଆ

**ଅସିଝା** - *ଅନେ:* (ବିଂ.) : ସିଝା ହୋଇନଥିବା

**ଅସିଦ୍ଧ** - *ପଦ୍ୟ:* (ବିଂ.) : ଅନିଷ୍ପନ୍ନ, ଅପକ୍ୱ, ଅସିଝା, ଅପ୍ରମାଣିତ, ଅପୂର୍ଣ୍ଣ, ଅକୃତକାର୍ଯ୍ୟ, ସଫଳତାଶୂନ୍ୟ

**ଅସିଦ୍ଧି** - *ପଦ୍ୟ:* (ବି.) : ଅନିଷ୍ପତ୍ତି, ଯୋଗଶାସ୍ତ୍ରୋକ୍ତ ସିଦ୍ଧିର ଅଭାବ, ଅସମ୍ପନ୍ନତା, ନିଷ୍ଫଳତା, ଅପୂର୍ଣ୍ଣତା

**ଅସୁଆଁସ** - *ଖୋ:* (ବିଂ.) : ଅପମାନ ଦେବାଭଳି କଥା କହିବା

**ଅସୁକ ପାଇବା, ଅସୁକ ମାଡ଼ିବା** - *କ:* (କ୍ରି.) : ଘୃଣା କରିବା, ଅସୁଖ ଲାଗିବା

**ଅସୁକୁ** - *ଅନେ:* (ବି.ବିଂ.) ଅସୁଖ, ବିରକ୍ତିକର, ଅସନା, ଘୃଣା, ଅରୁଚିକର

**ଅସୁକୁଟିଆ** - *ଅ:* (ବିଂ.) : ଶୁଖିଲା, ଘୃଣିତ

**ଅସୁତର** - *ଗ:* (ବି.) : ଅଚଳ, ଖରାପ, ଯନ୍ତ୍ର ଅଚଳ ହେବା

**ଅସୁଦିଆ** - *ବା:* (ବିଂ.) : ଅଶୌଚ, ଅଣସୁଦିଆ

**ଅସୁମାର** - *ଗ:କ:* (ବି.ବିଂ.) : ଦୁଷ୍କାମୀ, ଅଗଣିତ

**ଅସୁରେନ୍** - *ନୂ:* (ବିଂ.) : ଅସୁରାଣୀ

**ଅସୁର୍** - *ଅନେ:* (ବି.) : ଅସୁର୍, ରାକ୍ଷସ

**ଅସୁଲି** - *ଅନେ:* (ବିଂ.) : ଆଦାୟ

**ଅସୁସାର** - *ଗଜ:ଗ:* (ବିଂ.) : ଦୁଷ୍ଟ, ମନ୍ଦ

**ଅସେଇବା** - *ମା:* (କ୍ରି.) : ବିଛେଇବା

**ଅସଁକଲା** - *ନୂ:* (ବିଂ.) : ଅସଂଯତ

**ଅସଁଖ୍ଲନ୍** - *ସୁବ:* (ବି.) : ଅଯତ୍ନ, ଯତ୍ନ ନ ନେବା

**ଅସ୍କଟ** - *ଦ:* (ବିଂ.) : ଅପରିଷ୍କାର, ଅସୁନ୍ଦର, ନିଷ୍ଠୁର, ଲଜ୍ଜାଜନକ

**ଅସ୍କନ୍ଦ** - *ଗ:କେ:* (ବି.ବି.) : ଅଶ୍ୱଗନ୍ଧା, ଔଷଧୀୟ ଗୁଳ୍ମ, ଏକପ୍ରକାର ଗଛ

**ଅସ୍କରା** - *ଗ:କୋ:ଭ:ଦେ:* (ବିଂ.ବି.) : ଅପରିଷ୍କାର ବସ୍ତ୍ର, ମଇଳା

**ଅସ୍କୁରା** - *ଅନେ:* (ବି.) : ଅଳିଆ ଆବର୍ଜନା

**ଅସ୍ତଗଛ** - *ବା:* (ବି.) : ଅଶ୍ୱତ୍ଥ ଗଛ

**ଅସ୍ତବେଳ** - *କ:* (ବି.) : ଖରାପ ସମୟ, ସନ୍ଧ୍ୟାବେଳ

**ଅସ୍ତବ୍ୟସ୍ତ** - *ଗ:* (ବି.) : ବ୍ୟତିବ୍ୟସ୍ତ, ଛିନ୍ନଭିନ୍ନ

**ଅସ୍ତରି (କାଗଜ)** - *ସ:* (ବି.) : ଅଦରକାରୀ (କାଗଜ)

**ଅସ୍ତା** - *ଦେ:* (ବି.) : ଏକ ପ୍ରକାର ବୃକ୍ଷ

**ଅସ୍ତ୍ର** - *ଦେ:* (ବି.) : ହାତ ହତିଆର, ଚାପ, ଧନୁ

**ଅସ୍ତ୍ରକନା** - *ଗ:* (ବି.) : ପ୍ୟାଣ୍ଟ କୋର୍ଟ ସିଲାଇରେ ବ୍ୟବହୃତ ମକମଲି କନା

**ଅସ୍ଥିକଳସ** - *ଅନେ:* (ବି.) : ଯେଉଁ କଳସରେ ଶ୍ମଶାନରୁ ଅସ୍ଥିସଂଗ୍ରହ କରାଯାଏ

**ଅସ୍ଥିଶଲ୍ୟ** - *ସଂ:* (ବି.) : ହାଡ଼ ଭଙ୍ଗା ଚିକିତ୍ସା

**ଅସ୍ମିତ** - *ବୌ:* (ବିଂ.) : ସ୍ୱାଭିମାନ

**ଅସ୍ତ୍ରଫଳା** - *ଦେ:* (ବି.) : ଶାଳୁଇ ଗଛ

**ଅସ୍ରା** - *ମ:* (ବିଂ.) : ଅସରା, ଏକାଥରେ ବର୍ଷିବା ବର୍ଷାର ପରିମାଣ

**ଅହକଳା** - *କେ:* (ବିଂ.) : ଅଧୁଆ

**ଅହକ୍ରିଆ** - *ବୌ:* (ବିଂ.) : ଅହଂକାରୀ

**ଅହଣବେଳ** - *ବା:* (ବି.) : ଉପର ଓଳି

**ଅହନ୍ତା** - *ଅନେ:* (ବି.ବିଂ.) : ଶତ୍ରୁତା, ହିଂସା, ଈର୍ଷା, ପ୍ରତିହିଂସା, ବାଦ ଲଗାଇବା, ରାଗ

**ଅହରହ** - *ଅନେ:* (ଅ.) : ସବୁବେଳେ, ସଦାସର୍ବଦା

**ଅହରା ବହରା** - *କଳା:* (ଅ.) : ବାରମ୍ବାର ଯିବା ଆସିବା କରିବା

**ଅହଳ** - *ରା:* (ବି.) : ଓହଳ

**ଅହି** - *ଗଦ୍ୟ:ପଦ୍ୟ* (ବି.) : ସର୍ପ, ସାପ

**ଅହିଅ** - *ଅନେ:* (ବି.ବିଂ.) : ସଧବା ସ୍ତ୍ରୀ, ସ୍ୱାମୀ ଜୀବିତ ଥାଇ ସ୍ତ୍ରୀ'ର ମୃତ୍ୟୁବରଣ କରିବା

**ଅହିଆ** - *କ:କେ:ପୁ:* (ବି.) : ଧାନଉଁଷା ବା ଭୋଜି ଲାଗି ଖୋଳା ବଡ଼ ଚୁଲି, ବଡ଼ ଚୁଲି ପାଇଁ ଗାତ

**ଅହି କଉଡ଼ି** - *ଅ:* (ବିଂ.) : ସଧବା ସ୍ତ୍ରୀ ଶବ ପଛେ ପଛେ ବିଞ୍ଚାଯାଏ

**ଅହିକା** - *ଦେ:* (ବି.) : ଶିମୁଳି ଗଛ

**ଅହିତ** - *ଅନେ:* (ବିଂ.) : ଅମଙ୍ଗଳ

**ଅହିନରକ** - *ଗଦ:ପଦ୍ୟ:* (ବି.) : ପାପର ଫଳ ସ୍ୱରୂପ ଏକ ନର୍କର ନାମ

**ଅହିବଲ୍ଲୀ** - *ଗଦ୍ୟ:* (ବି.) : ପାନ

**ଅହିୟା** - *କେ:* (ବି.) : ଅହିଆ, ଭୋଜିଭାତ ପାଇଁ ଖୋଳାଯାଉଥିବା ବଡ଼ଚୁଲା

**ଅହିରା** - *ଦେ:* (ବି.) : ପୁଆଳ ବେଣ୍ଟିରେ ତିଆରି ମଳା

**ଅହେତୁକ** - *ଢେ:* (ବିଂ.) : କାରଣ ନଥାଇ

**ଅହେଁରା** - *ଝା:ବ:ସ:* (ବି.) : ଅହିରା, ମଳା, ମାଠିଆ ରଖିବା ପାଇଁ ପୁଆଳ ବେଂଟ, ମାଠିଆ ଢଳି ନଯିବା ପାଇଁ ପାଳରେ ତିଆରି ମଳା

**ଅହଁକରିଆ** - *ସୁ:* (ବିଂ.) : ଅହଂକାରିଆ, ଅହଂକାରୀ, ଗର୍ବୀ

**ଅହ୍ନା** - *କଳା:* (ବି.) : ପହ୍ନା, ଗାଈର ଚିର, ସ୍ତନ, ଦୁଗ୍ଧାଧାର

**ଅହ୍ଣିଆ** - *ଢେ:ପୁ:* (ବି.) : ଦେବତାଙ୍କ ଭୋଗପାଇଁ ଥିବା ଖାଦ୍ୟବସ୍ତୁ

**ଅହ୍ୟ** - *ଯା:ଗ:ସ:* (ବି.) : ଅହିଅ, ସଧବା, ସ୍ୱାମୀ ଥାଇ ମୃତ ସ୍ତ୍ରୀ

**ଅହ୍ଲନ** - *ସ:* (ବି.) : ବିପଦ

**ଅଁଇଲା** - *କଝ:* (ବି.) : ଅଁଳା

**ଅଁଉଲ** - *ଢ:* (ବିଂ.) : ଉତ୍କୃଷ୍ଟ, ଖାଣ୍ଟି, ଅସଲି

**ଅଁଏଛା** - *କଳା:ସ:* (ବି.) : ନିମୁଛା, ପ୍ରେତ ନିବାରଣ

**ଅଁଏରା** - *କଳା:* (ବି.) : ମଳା

**ଅଁକ୍ରା** - *ସୁବ:* (ବି.) : କୃଷି ଉପକରଣ, ଖୁରୁପି, ମାଟି ଖୁସା ଓ ଘାସବଛା ଉପକରଣ

**ଅଁକଟ** - *ଢ:* (ବିଂ.) : ନିଆଁ ପାଣି ବନ୍ଦ, ଏକ ଘରକିଆ, ଅଟକ

**ଅଁକଟା** - *ଢ:* (ବିଂ.) : ଯାହା କଟା ଯାଇନି

**ଅଁକଣ୍ଡା, ଅକଣ୍ଡିଆ** - *ଢ:* (ବିଂ.) : ଅକଣ୍ଡା ଚାଉଳ, କାଣ୍ଡିଆ ବା ସଫା ହୋଇନଥିବା

**ଅଁକରାନ୍ତି** - *ଖୋ:* (ବି.) : ଏକପ୍ରକାର ଗୁଳ୍ମ

**ଅଁକା** - *କଳା:* (ବି.) : ପୋଡ଼ା

**ଅଁକାର** - *କଝ:କଳା:* (ବି.) : ଅହଙ୍କାର, ଈର୍ଷା

**ଅଁକାଳ** - *ସୁ:* (ବି.) : ଦୁଇବାହୁ ପ୍ରସାରିତ ସ୍ଥାନ

**ଅଁଗ୍ରା** - *କଳା:ଝା:* (ବି.) : ରଡନିଆଁ, ଅଙ୍ଗାର, ଜଳନ୍ତା ଅଙ୍ଗାର

**ଅଁଗେନ୍** - *ଦ:* (ବି.) : ଶଗଡ଼ ଚକ ସୁବିଧାରେ ବୁଲଇବା ପାଇଁ ଅଖରେ

ଲଗାଯାଉଥିବା ଏକ ତେଲ ଜାତୀୟ ପଦାର୍ଥ

**ଅଁଚ୍ବା** - *ଚନ୍ଦ* (ବି.) : ଖାଇସାରିବା ପରେ ମୁହଁ ଧୋଇବା

**ଅଁଚଲ୍ନି** - *ସ* (ବିଂ.) : ଯେଉଁ ସ୍ତ୍ରୀର ଚାଲିଚଳଣି ଠିକ୍ ନୁହେଁ

**ଅଁଚାଇବା** - *ସୁ* (କ୍ରି.) : ଭୋଜନ ପରେ ହାତ ଧୁଇବା

**ଅଁଟ୍** - *କଳା:ନୁ* (ବି.) : ଅଣ୍ଟି, କୋଳ

**ଅଁଟ୍କୁରୀ** - *ସୁବ:ଚନ୍ଦ* (ବିଂ.) : ସନ୍ତାନ ନଥିବା ସ୍ତ୍ରୀଲୋକ

**ଅଁଟ୍କୁହା** - *ସୁ* (ବିଂ.) : ଅନିର୍ମଳ (ବ୍ୟକ୍ତି), ମନ୍ଦ କୁହା

**ଅଁଟ୍ବା** - *କଳା* (କ୍ରି.) : ସମସ୍ତଙ୍କୁ ହେଇଯିବା, ଯଥେଷ୍ଟ, ଅଣ୍ଟିବା

**ଅଁଟକୁରା** - *ଚନ୍ଦ:ସୁ:ସୁବ* (ବିଂ.ବି.) : ଗାଳି ବିଶେଷ, ଆଣ୍ଠୁକୁଡ଼ା

**ଅଁଟାଡୋର୍** - *କଳା* (ବି.) : ଅଣ୍ଟାସୂତା, କଟୀସୂତ୍ର, ପୁଡା ବାନ୍ଧିବା ବେଳେ ବ୍ୟବହୃତ ଗୋଲାକାର ଦଉଡି

**ଅଁଟାବା** - *ସୁ* (କ୍ରି.) : ବାଷ୍ପୀଭୂତ କରିବା

**ଅଁଟାଭିର୍ବା** - *ସ* (କ୍ରି.) : ଅଣ୍ଟାଭିଡ଼ି ଆସିବା, ପ୍ରସ୍ତୁତ ହେବା

**ଅଁଟି** - *ସୁ* (ବି.) : ଧାନ ଭିଡ଼ିବା ରସି

**ଅଁଟେଇ** - *ଦ* (କ୍ରି.) : ବାଷ୍ପୀ ଭବନ ପ୍ରକ୍ରିୟା ମାଧ୍ୟମରେ କମିଯିବା ତରଳ ପଦାର୍ଥ

**ଅଁଠ୍ବାର** - *ସୁବ* (କ୍ରି.) : ମୋଡ଼ିଦେବା

**ଅଁଠିବା** - *ଦ* (ବି.) : (କାନ) ମୋଡ଼ିବା, (ଅଣ୍ଟାରେ ଶାଢି) ମୋଡ଼ିବା

**ଅଁଠୁଆ** - *ସୁ* (ବି.) : ଆଣ୍ଠୁମାଡିବା

**ଅଁଠୁଖୁନ୍ର** - *ସ* (ବି.) : ସବୁବେଳେ, ବାରମ୍ବାର

**ଅଁଡ୍ବାର** - *ସୁବ* (କ୍ରି.) : ଦୁଇଟି ବଳଦ ମାଡ ହେବା ପୂର୍ବରୁ ବେକ ବଙ୍କା କରି ପରସ୍ପରକୁ ଦେଖିବା, ଶତ୍ରୁତା

**ଅଁଡଲେଇବା** - *ଦ* (କ୍ରି.) : ଅଣ୍ଡାଳି ହେବା

**ଅଁଡେଇ** - *ନୁ* (ବି.) : ମହୁ

**ଅଁଡେଇଗୁଢ଼ା** - *ନୁ* (ବି.) : ମହୁଫେଣା

**ଅଁଡ୍ରା** - *ସୁ* (ବି.) : ଅଣ୍ଡିରା

**ଅଁଣେଇ** - *ନୁ* (ବି.) : ମହୁ

**ଅଁତ୍** - *କଳା* (ବି.) : ଅନ୍ତ, ଅନ୍ତି

**ଅଁତ୍ଗଁତ୍** - *ସ* (ବି.) : ଆଦିଅନ୍ତ, ଠିକ୍‌ଠିକଣା

**ଅଁତ୍ରା** - *ସୁ:ସୁବ:କଳା:ସ* (ବି.) : କାଠଗଣ୍ଡିର ନିଆଁ, ଶୀତରୁ ରକ୍ଷା ପାଇଁ ବହୁସମୟ ଧରି ରହୁଥିବା ନିଆଁର ବ୍ୟବସ୍ଥା ଏନ୍ତୁଡ଼ିଶାଳରେ ମଧ୍ୟ ଜଳୁଥାଏ, ଖଳାରେ ପୋଇଁବା ପାଇଁ ନିଆଁ ଜାଳିବା, ନିଆଁ ଜଳା

**ଅଁତି** - *କଳା* (ବି.) : ଅନ୍ତ,ଅନ୍ତନଳୀ

**ଅଁତିପୁଟା** - *ସ* (ବି.) : ଅନ୍ତବୁଜୁଳା

**ଅଁତ୍ରି** - *ସ* (ବି.) : ଏନ୍ତୁଡ଼ି

**ଅଁଧରିଆ** - *ସୁ* (ବିଂ.) : ଅନ୍ଧାରିଆ

**ଅଁଧୁ** - *ସ:* (ବି.) : ଅଳନ୍ଧୁ

**ଅଁନ୍ ଜାତିଆ** - *ସ:* (ବି.) : ଅନ୍ୟଜାତି

**ଅଁପ୍ରାଚିପ୍ରା** - *ଝା:ସ:* (କ୍ରି.ବିଂ.) : ପିଲାମାନେ ଝଗଡ଼ା କଲାବେଳର ପ୍ରକ୍ରିୟା, ରାମ୍ପୁଡ଼ିବା

**ଅଁରେଇବା** - *କଳା:* (କ୍ରି.) : ସଂଗ୍ରହ କରିବା, ଠୁଳ କରିବା, ମୋଟାଇବା, ସଞ୍ଚୟ କରିବା

**ଅଁର୍ରା** - *ସୁବ:ସ:* (ବି.) : ଅଣ୍ଡିରା

**ଅଁର୍ରାଇବା** - *ନୂ:* (କ୍ରି.) : ଆହ୍ୱାନ ଜମାଇବା

**ଅଁର୍ରାଚଁଡି** - *ସୁବ:ସ:* (ବିଂ.) : ଅଣ୍ଡିରୀ ଚଣ୍ଡୀ

**ଅଁର୍ରା ପିଲା** - *ସ:* (ବି.) : ପୁରୁଷ ଲୋକ

**ଅଁର୍ରାବା** - *ସ:* (କ୍ରି.) : ରାଗରେ କଣେଇ ଚାହିଁବା

**ଅଁଲା** - *କଳା:* (ବି.) : ଅଁଳା, ଆମଳକ, ଧାତ୍ରୀଫଳ

**ଅଁଳାବନ୍ଧା** - *ଜ:* (ବି.) : ଘରନିର୍ମାଣ

**ଅଁସ** - *ମା:* (ବି.) : ହଂସ (ବଣ୍ଡା)

**ଅଁସା** - *ଭ:କଳା:* (ବି.) : ବାଉଁଶ କଣିର କ୍ଷୁଦ୍ର ଅଂଶ ବିଶେଷ, ଆମାଶୟ ଝାଡ଼ା, ଲାଳ ଝାଡ଼ା

**ଅଁସାରି** - *ବର:* (ବି.) : ପଶ୍ଚିମ ଓଡ଼ିଶାର ବୁଣାକାର ସମ୍ପ୍ରଦାୟର ସୂତା ଗୁଡ଼ାଇବାପାଇଁ ବ୍ୟବହାର କରୁଥିବା ଯନ୍ତ୍ର

**ଅଁହେରା** - *ସ:* (ବି.) : ହାଣ୍ଡି ରଖିବା ପାଇଁ ପାଳ ତିଆରମଳା

**ଅଂକ୍ବା** - *କଳା:* (କ୍ରି.) : ବାନ୍ତି କରିବା

**ଅଂଖ୍ରା** - *କଳା:* (ବି.) : ମଡ଼ାଣି ବେଳେ ଧାନକୁ ଉଖାରିବା ପାଇଁ ବ୍ୟବହୃତ ସ୍ୱତନ୍ତ୍ର ବାଉଁଶ

**ଅଂଗ୍ଛି** - *ଅ:କଳା:ସୁ:* (ବି.) : ଗାମୁଛା

**ଅଂଗଠା** - *କଳା:* (ବି.) : ଆଂଗୁଠି, ଅଙ୍ଗୁଳି

**ଅଂଗରା** - *ସୁ:* (ବି.) : ନିଆଁ

**ଅଂଗା** - *ଅନେ:* (ବି.) : ଅଂଗୀ, ସାର୍ଟ, କୁର୍ତ୍ତା

**ଅଂଗୁଟ୍** - *କଳା:* (ବି.) : ଆଗୁଂଠି, ଅଂଗୁଳି

**ଅଂଗେନ** - *ସୁ:କଳା:* (ବି.) ପୋଡ଼ା ମୋଟାତେଲ, ଶଗଡ଼ ଅଖରେ ଦିଆଯାଉଥିବା ତେଲ ମିଶ୍ରିତ କଳା

**ଅଂଘା** - *ବ:* (ବି.) : ଉଭୟ ହାତ ପ୍ରସାରୀ ହେଉଥିବା ପରିମିତ ସ୍ଥାନ

**ଅଂଘେ** - *ସ:* (ବିଂ.) : ଏକ୍ଲା, ଏକୁଟିଆ

**ଅଂଛି** - *ଗୌ:* (ବି.) : ଗାମୁଛା

**ଅଂଜୁଲା** - *ନୂ:* (ବି.) : ଆଞ୍ଜୁଳା

**ଅଂଧନ୍** - *ନୂ:* (ବି.) : ଅତ୍ୟଧିକ ଗରମ ପାଣିର ଶବ୍ଦ (ରାନ୍ଧିବା ଅର୍ଥରେ)

**ଅଂଧୁ** - *ନୂ:* (ବି.) : ଅଳନ୍ଧୁ

**ଅଂଶ** - *ଅନେ:* (ବି.) : ବିଭାଗ, ବଣ୍ଟନ, ଭାଗ, ସ୍ଥାନ, ଖଣ୍ଡ, ଅବତାର ବିଷୟ, ପକ୍ଷ,

ଦଳ, ଦେବତାଙ୍କର କଳା, ଅପତ୍ୟ, ପିତୃତ୍ୱ, ରକ୍ତସମ୍ପର୍କୀୟ

**ଅଂଶା** - *ପଦ୍ୟ:* (ବି.) : ତାଳପ୍ରଭୃତି ଗଛର ବକଳାରେ ବା ଭିତରେ ଥିବା କର୍କଶ ସୂକ୍ଷ୍ମତନ୍ତୁ

**ଅଂଶାଇ** - *ପଦ୍ୟ:* (ବି.) : ପଚାଦ୍ରବ୍ୟ ଓ ଘା'ରେ ଉପୁଜିବା କ୍ଷୁଦ୍ର ଧଳାକୃମି, ପୋକ

**ଅଂଶୀ** - *ପଦ୍ୟ:* (ବି.) : ଅଂଶ ପାଇବାର ହକଦାର, ଅଂଶୀଦାର, ଅଂଶରେ ଜାତ

**ଅଂଶୀଦାର** - *ସଂ.ପଦ୍ୟ:* (ବି.) : ଭାଗୀଦାର, କୌଣସି ପଦାର୍ଥରେ ଯାହାର ଭାଗ ଥାଏ

**ଅଂଶୁ** - *ପଦ୍ୟ:* (ବି.) : କିରଣ, ସୂତ୍ରାଦିର ସୂକ୍ଷ୍ମାଂଶ, ଆଂଶ, ବସ୍ତ୍ର, ଦୀପ୍ତି, ପ୍ରତିଭା, ସୂର୍ଯ୍ୟ ପ୍ରଭା, ବିଚକ୍ଷଣତା

**ଅଂଶୁକ** - *ପଦ୍ୟ:* (ବି.) : କିରଣ, ସରୁଲୁଗା, ଶୁକ୍ଳବସ୍ତ୍ର, ଚାଦର, ତେଜପତ୍ର, ଦୀପ୍ତି, ତେଜ

**ଅଂଶୁପଟ୍ଟ** - *ପଦ୍ୟ:* (ବି.) : ପାଟଲୁଗା, ରେଶମୀ କପଡ଼ା

**ଅଂଶୁମତ୍‌ଫଳା** - *ପଦ୍ୟ:* (ବି.) : କଦଳୀ ଗଛ

**ଅଂଶୁଳ** - *ପଦ୍ୟ:* (ବିଂ.) : ଦୀପ୍ତିଯୁକ୍ତ, ଉଜ୍ଜ୍ୱଳ

**ଅଂଶେଇ, ଅଂସେଇ** - *ଦେ.ଢ଼.କ:* (ବି.ବିଂ.) : ପୋକ, ପୋକପଡ଼ିବା, କ୍ଷତସ୍ଥାନରେ ଅଯତ୍ନ ଯୋଗୁଁ ମାଛି ବସି ପୋକ, କୃମି ବା କୀଟ

# ଆ

**ଆ** - *ଅନେ:* (ଅ.କ୍ରି.) : ନିକଟକୁ ଡାକିବା, ପାଖକୁ ଡାକିବା, ଆସ୍

**ଆଅ** - *ସୁ:* (କ୍ରି.) : ଅଟ

**ଆଅାଁଳା** - *ଢେ:* (ବି.) : ମାଂଉସ

**ଆଇଖାଡ଼ି** - *ଦେ:* (ବି.) : ଖୁଆ ବାଡ଼ି

**ଆଇଗି** - *କଣ:* (ଅ.) : ଆରେ !

**ଆଇଗେ** - *କଣ:* (ଅ.) ଓହୋ ! ସମ୍ବୋଧନକାରକ ଶବ୍ଦ

**ଆଇଗେନା** - *କଣ:* (ଅ.) : ଏହେ ! ଅସମ୍ମାନ ବା ଆତ୍ମୀୟତାପୂର୍ବକ ସମ୍ବୋଧନ

**ଆଇଚକା** - *କଣ:* (କ୍ରି.) : ଆସିଚକି

**ଆଇତ** - *ସୁବ:କୋ:* (ବି.) : ଆୟତ୍ତ

**ଆଇତସାଇତ୍** - *ସୁବ:* (ବି.) : ଶୃଙ୍ଖଳ

**ଆଇତି** - *ଭ:* (ବିଂ.) : ଆୟତରେ ରଖିବା

**ଆଇତୁଡ଼ିଆ** - *କୋ:ଗଜ:* (ବିଂ.ଅ.) : ଇଷତ୍ ପିତା, ପିତା

**ଆଇନ** - *ଅନେ:* (ବି.) : କୌଣସି କଳହରେ ବଡ ପାଟିରେ ଯୁକ୍ତି କରି ଜିଦ୍ ଧରିବା, ନିୟମବିଧି

**ଆଇନା** - *ଢେ:ଜ:* (ବି.) : ଦର୍ପଣ

**ଆଇନି** - *ଟ:* (କ୍ରି.) : ଆସିନାହିଁ

**ଆଇନ୍ଦା** - *ଭ:* (ବିଂ.) : ଆସନ୍ତା

**ଆଇବ** - *ମ:ଗଦ୍ୟ:* (କ୍ରି.) : ଆସିବ

**ଆଇବାସ** - *ଟ:* (ବି.) : ଅଭ୍ୟାସ

**ଆଇବିକି** - *ରା:* (କ୍ରି.) : ଆସିପାରେ କି

**ଆଇବିନି** - *କଣ:* (କ୍ରି.) : ଆସିବିନି

**ଆଇବେ** - *ରା:* (କ୍ରି.) : ନିଶ୍ଚିତ ଅର୍ଥରେ (ଆସିବେ)

**ଆଇଯିବ** - *ରା:* (କ୍ରି.) : ଆସିବ

**ଆଇଲାକ** - *କଣ:* (କ୍ରି.) : ଆସିଲକି

**ଆଇଲା ଥର** - *କୋ:* (ବିଂ.) : ଆର ଥର, ଆଗାମୀ ଥର

**ଆଇଲାନ** - *ବୌ:* (କ୍ରି.) : ଆସିଲାଣି

**ଆଇଲାପାଳି** - *ଗ:* (ବି.) : ଶାଶୁଘରୁ ଝିଅ ପ୍ରଥମଥର ବାପଘରକୁ ଫେରିବା

**ଆଇଲି** - *କଳା:* (କ୍ରି.) : ଆସିଲି

**ଆଇଶାଶୁ** - *କ:* (ବି.) : ଶାଶୁଙ୍କର ମାଆ, ସ୍ତ୍ରୀ ବା ସ୍ୱାମୀର ଆଇ

**ଆଇଷ** - *ମ:ନବ:ଯା:* (ବି) ଆୟୁଷ, ପରମାୟୁ

**ଆଇଁଖ** - *କଣ:* (ବି.) : ଆଖି

**ଆଇଁଗିଣିଆ** - *ଗ:ଜ:* (ବିଂ.) : ତରକାରୀର ଖରାପ ସ୍ୱାଦ, ରାନ୍ଧିବାର ଦୋଷରୁ ଖରାପ ଲାଗିବା

**ଆଇଁଘେନି** - *କୋ:* (ସ.) : ଏଥିପାଇଁ

**ଆଇଁକା** - *ଚେ:* (ସ.) : ନିଜର

**ଆଇଁରେ** - *କୋ:* (ସ.) : ଏଥିରେ

**ଆଇଁଷ** - *ଢ:ଚୌ:ଦେ:* (ବି.) : ଆମିଷ, ମାଛ ମାଂସ ଆଦି ଖାଦ୍ୟ

**ଆଇଁଷକାଡି** - *ଗଦ୍ୟ:* (ବି.) : ଏକ ଫୁଲ ଓ ଗଛ, ମାଛକାଡି

**ଆଇଁଷ ଛୁଆଁ** - *ଚୌ:* (ବି.) : ଏକାଦଶ ଦିନର ଶୁଦ୍ଧି କାମ

**ଆଇଁଷିଆ** - *ନ:* (ବିଂ.) ଆମିଷ ଗନ୍ଧ, ଆମିଷପ୍ରିୟ

**ଆଇଁଷିଣିଆ** - *ଚୌ:କ:* (ବିଂ.) : ଆଇଁଷ ଗନ୍ଧ ଅନୁଭବ କରିବା, ମନ୍ଦ ସ୍ୱଭାବ

**ଆଈ** - *ଚେ:କଳା:ଦେ:* (ବି.) : ମା'ର ମା, ମାତାମହୀ, ପିତାମହୀ, ବାପାଙ୍କ ମା', ଆଇ ମା'

**ଆଈଶାଶ୍** - *କଳା:* (ବି.) ଆଇଶାଶୁ, ଗୋସେଇଁ ଶାଶୁ

**ଆଉ** - *ଅନେ:* (ବି.) ସାନ ଭଉଣୀ, ସାନଭାଇ, ନାତି, ପୁଣି, ଆହୁରି, ଅଧିକା

**ଆଉଟା** - *ଢ:* (ବି.) : ହଳର ଅଂଶ ବା ଗାର

**ଆଉଟାଏ** - *କ:* (ବି.) : ଜମିର ଅଂଶବିଶେଷ, ଅଳ୍ପ ପରିମିତ

**ଆଉଟା ବୁଡ଼ିବା** - *କ:* (ବି.) : ଭୁଲ୍ କରିବା, ଅବାଟରେ ଯିବା

**ଆଉଟା ବୁଡିବା** - *କ:* (ବିଂ.) : ଭୁଲକାମ କରିବା

**ଆଉଚି** - *ରା:* (କ୍ରି.) : ଜଣାଅଛି, ଆସୁଛି

**ଆଉଚୁ** - *ଗଦ୍ୟ:* (କ୍ରି.) : ଆସୁଚୁ

**ଆଉଛନ୍ (ଦ୍)** - *କଳା:* (କ୍ରି.) : ଆସୁଛନ୍ତି

**ଆଉଛେକେ** - *ଢ:କ:* (ବିଂ.କ୍ରି.) : ଆଉଥରେ

**ଆଉଜା** - *ଦେ:* (ବି.) : ଯେ ପର ଘରେ ଆଶ୍ରୟ ନିଏ

**ଆଉଜାଇବା** - *ଚୌ:* (କ୍ରି.) : କବାଟ ଝରକା ବନ୍ଦ କରିବା

**ଅଉଜି ହେବା** - *ଚୌ:* (କ୍ରି.) : ଲଦିହେବା, ଲାଗି ଆସିବା

**ଆଉଜେଇବା** - *ନ:କେ:* (କ୍ରି.) : କବାଟ, ଟାଟି କିଳିଦେବା, ବନ୍ଦକରିଦେବା, ପାଖକୁ ଟାଣି ଆଣିବା

**ଆଉଟ୍ ପୋଷ୍ଟ** - *ସଂ:* (ବି.) : ଫାଣ୍ଡି

**ଆଉଟା** - *କେ:ଦେ:* (ବିଂ.) : ଦୁଗ୍ଧ ସିଝାଇବା, ସିଝା, ପୋଡ଼ା

**ଆଉଟି ଯାଉଟି** - *କ:* (ବି.) : ରୋଜଗାର ଓ ଖର୍ଚ୍ଚ

**ଆଉଟୁପାଉଟୁ** - *କ:ରା:କୋ:* (ବିଂ.ବି.ଅ.) : ଅତ୍ୟଧିକ ବ୍ୟସ୍ତତା, ଉହଳ ବିକଳ, ଗରମ ହେବା, ବିକଳ ହେବା, ବ୍ୟତିବ୍ୟସ୍ତ, କ୍ଷୁଧର୍ତ୍ତ ହେବା

**ଆଉଟେଇବା** - *ନ:* (କ୍ରି.) : ଆଉଟିବା

**ଆଉଡ଼** - *ଟା:ଭ:* (ବି.) : ପାନବରଜ ଭିତରେ ଚାରିହାତ ଲମ୍ବର ଜାଗାକୁ ଏକ 'ଆଉଡ଼' କୁହାଯାଏ, ଆଡୁଆଳ

**ଆଉଡ଼ି** - *ଭ:* (ବି.) : ହାକୁଟି

**ଆଉଣ୍ଡା** - *ଗ:* (ବି.) : ପଙ୍କ, ମାଟି ଗୋଳିଆ ପାଣି

**ଆଉଣ୍ଠିବା** - *ନବ:* (କ୍ରି.) : ଘାଣ୍ଟିବା

**ଆଉଣ୍ଡେଇ ହେବା** - *ଗ:* (କ୍ରି.) : ଅଜୀର୍ଣ୍ଣ ଦୋଷରୁ ବାନ୍ତି ହେବା ଲକ୍ଷଣ

**ଆଉତା** - *ଢେ:* (ବିଂ.) : ଆରପଟ

**ଆଉତି ଯାଉତି** - *ସ:* (କ୍ରି.) : ଆସିବା ଯିବା

**ଆଉଥା** - *ସ:* (କ୍ରି.) : ଆସୁଥା

**ଆଉ ନାଇଁ** - *କଣ:* (କ୍ରି.) : ଆସୁନି

**ଆଉନି** - *ରା:* (କ୍ରି.) : ଆସେ ନାହିଁ

**ଆଉନୁ** - *ଗଦ୍ୟ:* (କ୍ରି.) : ଆସୁନୁ

**ଆଉବାଗିଆ, ଅବାଗିଆ** - *ଚୌ:* (ବିଂ.) : ଆସ୍ୱାଭାବିକ୍ ଢଂଗର

**ଆଉବୋଉ** - *ଖୋ:* (ବି.) : ଅନ୍ୟର ବୋଉ, ଖୁଡ଼ି ବା ବଡ଼ବୋଉ

**ଆଉର, ଆର, ଆଏର** - *ସୁବ:* (ଅ.ବି.) : ଆହୁରି, ଆଉ ଏବଂ ଆଡ଼ି

**ଆଉରି** - *ଖୋ:ଗଞ:ଭ:* (ବିଂ.) : ଆହୁରି

**ଆଉଲଡ଼ାଉଲ** - *ରା:* (ବି.) ଉତ୍ତମ ସାଜସଜା

**ଆଉଲା** - *କେ:* (ବି.) : ଆହୁଲା

**ଆଉଳିପାଉଳି** - *ଭ:* (ବିଂ.) : ଅସ୍ତବ୍ୟସ୍ତ, ବିବ୍ରତ

**ଆଉଳି ପାଉଳି ଯିବା** - *କୋ:* (କ୍ରି.) : ମୂଳରୁ ଯିବା

**ଆଉଳେଇବା** - *ଗଦ୍ୟ:* (କ୍ରି.) : ଘଷିଦେବା, ଲଗେଇଦେବା

**ଆଉସ** - *ରା:* (ବି.) : ଆୟୁ

**ଆଇଁ** - *ଢେ:ସୁ:* (ସ.କ୍ରି.) : ତୁ, ଅଟୁଁ

**ଆଇଁତାଇଁ** - *ଭ:* (ବିଂ.) : ଚଞ୍ଚଳ ଚଞ୍ଚଳ

**ଆଇଁରା ମାରିବା** - *କେନ୍ଦୁ:* (କ୍ରି.) : ଏକ ପ୍ରକାର ରୋଗ; ରୋଗୀ ମୂର୍ଚ୍ଛା ହୁଏ

**ଆଇଁଲା** - *ମା:* (ବି.) : ଅଁଳା

**ଆଇଁଷାଘଷା** - *ଜ:* (ବି.) : ସେବାକରିବା, ଦେହରେ ହାତ ବୁଲାଇବା

**ଆଏ** - *ସୁବ:ଭ:ସୁ:ସ:* (ଅ.ବି.କ୍ରି.) : ଅଟେ, ଯାହା ରୋଜଗାର କରାଯାଏ, ରୋଜଗାର, ଲାଭ

**ଆଏଉପେ** - *ସ:* (ଅ.) : ଉପାୟ କରିବା

**ଆଏଜ୍** - *ଅନେ:* (ବିଂ.ଅ.ବି.) : ଆଜି, ଅଦ୍ୟ

**ଆଏଜ୍କା** - *ସ:* (ବି.) : ଆଜି

**ଆଏତ** - *ସୁ:ସ:* (ବି.) : କବଳରେ, ଆୟତ୍ତ, ଅଧୀନ

**ଆଏତ୍ତରେ** - *ଚୌ:* (ବିଂ.) : ଅଧୀନରେ, ଅକ୍ତିଆରରେ

**ଆଏତା** - *ସୁ:* (ବିଂ.) : ଆସନ୍ତା

**ଆଏତି** - *ସୁ:* (କ୍ରି.) : ଆସନ୍ତି (ମୁଁ)

**ଆଏଟି ଯାଏଟି** - *ସ.* (କ୍ରି.) : ଆସିବା ଯିବା

**ଆଏତୁ** - *ସୁ.* (କ୍ରି.) : ଆସନ୍ତୁ (ତୁ)

**ଆଏନ୍ଦା** - *କ.* (ବିଂ.) : ଆସନ୍ତା ବର୍ଷକୁ, ଆସନ୍ତା

**ଆଏବ** - *କଳା.* (କ୍ରି.) : ଆସିବ

**ଆଏବା** - *କଳା.* (କ୍ରି.) : ଆସିବା, ଆସନ୍ତା

**ଆଏବାର୍** - *ମା.କଳା.ସୁବ.* (କ୍ରି.ବି.) : ଆସିବାର, ଆସିବା, ଆଗାମୀ

**ଆଏର୍** - *ବ.ସ.* (ବି.) : ଆଡ଼ି, ଜମିର ହିଡ଼

**ଆଏଲ୍** - *ବୌ.* (ବିଂ.) : ଭଲ

**ଆଏଲା** - *ସୁ.* (କ୍ରି.) : ଆସିଲା

**ଆଏଷ** - *ସ.* (ବି.) : ଆୟୁଷ

**ଆଏସାରି** - *ସୁବ.* (ବି.) : କନ୍ୟାର ଆଇକୁ ବାହା ବେଳର ଭେଟି ଲୁଗା, ଶାଢି

**ଆଏଁଖ** - *ସୁ.ସୁବ.ସ.* (ବି.) : ଆଖି

**ଆଏଁଖ୍ ପୁତ୍‌ଲା** - *ସ.* (ବି.) : ଆଖି ଡ଼ୋଳା

**ଆଏଁଖ୍ ମୁଜ୍‌ବା** - *ନୁ.* (କ୍ରି.) : ଆଖି ବୁଜିବା

**ଆଏଁଖ ଲଟ୍‌କିବା** - *ସ.* (କ୍ରି.) : ନିଦ ହେବା

**ଆଏଁଖ୍ ଲିମ୍‌ବା** - *ନୁ.* (କ୍ରି.) : ଆଖି ବୁଜିବା

**ଆଏଁସ୍ ବିସର** - *ବର.* (ବି.) : ଆମିଷ

**ଆଓ୍ୱାସ୍** - *ଗଦ୍‌ୟ.* (ବି.) : ଥକ୍କା, କ୍ଲାନ୍ତି

**ଆକ** - *ଅ.* (ବି.) : ଆଖୁ

**ଆକ୍‌ଚା** - *କେ.* (ଅ.) : ଚମକିବା

**ଆକ୍‌ପାକ୍ ହବା** - *ବା.* (କ୍ରି.) : ଅଣନିଃଶ୍ୱାସୀ ହେବା

**ଆକ୍‌ଲା** - *ଭ.* (ବି.) : ଆଶ୍ଚର୍ଯ୍ୟ

**ଆକଉ** - *ଜେ.* (ବି.) : ପାଉଁଶ

**ଆକଚା** - *ଭ.* (ବି.) : ଶ୍ୱାସରୁଦ୍ଧ

**ଆକଚାମାକଚା** - *କ.* (ବିଂ.) : ଅଣନିଶ୍ୱାସୀ

**ଆକଜ** - *ଅ.* (ବି.) : ବିବାଦ

**ଆକଟ** - *ଅନେ.* (ବି.କ୍ରି.) : ବାରଣ ବା ମନା, ଶାସନ, ତାଗିଦ, ପ୍ରୟୋଜନ, ଜଗି ରହିବା, ବାଧା ଦେବା, ଆକଟ ରଖିବା (ନଜର ରଖିବା)

**ଆକଟା** - *କେ.ଗ.ସଂ.ଯା.* (ଅ.ବି.) : ଅଣନିଃଶ୍ୱାସୀ, ହାଲିଆ, ଅକ୍ଷମ, ବୋକା ବନିଯିବା

**ଆକଟାମାକଟା** - *ଗ.* (ଅ.) ବିରକ୍ତି, ନିରୁତ୍ସାହ

**ଆକପକା** - *ସୁବ.* (ବି.) : ହରବର, ଉଚ୍ଛନ୍ନ

**ଆକର** - *ଅ.* (ବି.) : ଖଣି, ଭଣ୍ଡାର

**ଆକରା** - *ଗ.* (ଅ.) : ଆବଶ୍ୟକତା

**ଆକସଦ୍** - *ଭ.* (ବି.) : ଥକ୍କା ମେଣ୍ଟାଇବା, ବିଶ୍ରାମ

**ଆକା** - *ବୌ.ଗଜ.* (କ୍ରି.ଅ.) : ବାହାନା, ନିଶ୍ଚିତାର୍ଥକରେ ବ୍ୟବହୃତ (ଅବ୍ୟୟ)

**ଆକା ଆଖା** - *ଅ.* (ବି.) : ଚୁଲ୍ଲୀ, ଉହ୍ନେଇ

**ଆକାପାକା ହେବା** - *ମ.* (କ୍ରି.) : ଅଣନିଃଶ୍ୱାସୀ ହେବା

**ଆକାବାକା** - *ଗଦ୍‌ୟ.* (ବିଂ.) : ଆଶ୍ଚର୍ଯ୍ୟ, ବିସ୍ମିତ

**ଆକାବୋଧ୍** - *ସ.* (ବି.) : ଆଶ୍ଚର୍ଯ୍ୟହେବା

**ଆକାଭୂତ** - *ସୁ.* (ବି.) : ଆଶ୍ଚର୍ଯ୍ୟ

**ଆକାଭୋତ୍** - *ସୁବ:* (ଅ.) ଅତିଶୟ ଆଶ୍ଚର୍ଯ୍ୟ

**ଆ-କା-ମା-ବୈ** - *ସଂ:* (ବି.) : ଆଷାଢ଼, କାର୍ତ୍ତିକ ମାସରୁ ବୈଶାଖ

**ଆକାୟ** - *ଢେ:* (ବି.) : ଚିତା

**ଆକାୟା** - *ପଦ୍ୟ:* (ବି.) : ନାରୀ ମାନେ ବ୍ୟବହାର କରୁଥିବା ପର୍ଦ୍ଦା

**ଆକାର ଖୁଆ** - *ଅ:* (ବିଂ.) : ମାଡୁଆ, ମାଢୁଆ

**ଆକାର ପ୍ରକାର** - *ଅ:* (ବି.) : ଢଙ୍ଗଢାଙ୍ଗ

**ଆକାଳ** - *ଅ:* (ବି.) : ମହର୍ଗ କାଳ

**ଆକାଶ କୁସୁମ** - *ଅନେ:* (ବି.) : ଅବାସ୍ତବ ଘଟଣା, ମିଛ, ଅସତ୍ୟ

**ଆକାଶଗଙ୍ଗା** - *ସଂ:* (ବି.) : ଏକ ଛାୟାପଥର ନାମ

**ଆକାଶ ଛୁଆଁ** - *ସଂ:* (ବିଂ.) : ଅଧିକ ଦାମ୍, ଆଶାତୀତ ମୂଲ୍ୟ

**ଆକାଶମଲ୍ଲୀ** - *ଦେ:କଳା:ନ:* (ବି.) : ଫୁଲଗଛ, ଲମ୍ବାଡେଂଫ ବିଶିଷ୍ଟ ଧଳା ଫୁଲ ଓ ସେହି ଫୁଲ ଫୁଟୁଥିବା ବଡଗଛ, ଧାନର ନାମ ବିଶେଷ

**ଆକାଶଲତା** - *ପଦ୍ୟ:* (ବି.) : ବିଦ୍ୟୁତ୍, ଘନଲତା

**ଆକାଶିଆ** - *ଦେ:* (ବିଂ.) : ଏକପ୍ରକାର ଗଛ

**ଆକିଦା** - *ଅ:* (ବି.) : ହଲପ

**ଆକୁ** - *ଗଞ:କନ:* (ବି.) : ପତ୍ର

**ଆକୁତାକୁ** - *କ:* (ସ.) : ଯାହାକୁ ଇଚ୍ଛା ତାହାକୁ

**ଆକୁତି** - *ପଦ୍ୟ:* (ବି.) : ଅଭିପ୍ରାୟ, ଉଦ୍ଦେଶ୍ୟ, ମନୋଭାବ

**ଆକୁପାକୁ** - *ଯା:* (ବିଂ.) : ଉଚ୍ଛଳବିକଳ

**ଆକୁଳତା** - *ପଦ୍ୟ:* (ବି.) ଉଦ୍‌ବେଗ, କିଂକର୍ତ୍ତବ୍ୟବିମୂଢତା, ସମୂହ, ଉତ୍କଣ୍ଠା

**ଆକୁଂଶ** - *ନ:* (ବି.) : ଅଂକୁଶ, କଣ୍ଟା

**ଆକୃତି** - *ପଦ୍ୟ:* (ବି.) : ଅବୟବ ସଂସ୍ଥାନ ବିଶେଷ, ରୂପ, ଆକାର, ନମୂନା, ପ୍ରକାର

**ଆକେ** - *କଣ:* (ବି.) : ଜେଜେବାପା

**ଆକେଲ ଗୁଡୁମ୍** - *ଅ:* (ବି.) : ହତବୁଦ୍ଧି

**ଆକେଲା** - *ନବ:* (ବିଂ.) : ଏକେଲା, ଏକୁଟିଆ

**ଆକ୍ତାମାକ୍ତା** - *କୋ:* (ବିଂ) : ଅଣନିଶ୍ୱାସୀ

**ଆକ୍ରମ** - *ପଦ୍ୟ:* (ବି.) : ବଳ, ରୋଗ ଘୋଟିବା, ବଳିବା, ଅତିକ୍ରମଣ, ମରଲୋକପ୍ରାପ୍ତି ସାଧନ କର୍ମ, ନିନ୍ଦା, ବଳଦ୍ୱାରା ଉଲ୍ଲଘଂନ, ଅଭିଭୂତ, ବ୍ୟାପ୍ତ, ଆଗ୍ରହ

**ଆକ୍ରମଣ** - *ଦେ:ପଦ୍ୟ:* (ବି.) : ବଳଦ୍ୱାରା ଅତିକ୍ରମଣ, ଚଢାଉ, ଆରୋହଣ

**ଆକ୍ରା** - *ଅ:* (ବିଂ.) : ମହରଗ

**ଆକ୍ରାନ୍ତ** - *ପଦ୍ୟ:* (ବିଂ.) : ପରାଭୂତ, ଅଧିଷ୍ଠିତ, ଅତିରିକ୍ତ, ଗ୍ରସ୍ତ, ବିସ୍ତୀର୍ଣ୍ଣ, ସୀମାବିଶିଷ୍ଟ

**ଆକ୍ବନ** - *ସଂ:* (ବି.) : ଅଙ୍ଗଚାଳନା, ପଦକ୍ଷେପ

**ଆଖିରି** - *କଳା:* (ବିଂ.) : ଘଡି ସନ୍ଧିବେଳ, ଶେଷ ସମୟ

**ଆଖିଲ** - *କନ୍:* (ବି.) : ଲୁହ

**ଆଖିଳମଖିଳ** - *ଦେ:* (ବିଂ.) ଯାହାକୁ ଯେତେ, ପର୍ଯ୍ୟାପ୍ତ ପରିମାଣ

**ଆଖି** - *ପଦ୍ୟ:* (ବି.) : ଖଣତି

**ଆଖଡି** - *ସୁବ:* (ବି.) : ପୁଟାଣି

**ଆଖଡ଼ା** - *ସୁ:ଅ:ପୁ:ପଦ୍ୟ:* (ବି.ବିଂ.) : ଅଭ୍ୟାସ କରିବା ସ୍ଥାନ, ନାଟକ ଇତ୍ୟାଦିର ଅଭ୍ୟାସ୍, ଗୀତ ଓ ବାଜା ବଜାଇବା ସ୍ଥାନ, ଅଭିନୟ ଘର, ବ୍ୟାୟାମ କରିବା ସ୍ଥାନ, ଗାଁ'ରେ କୁସ୍ତି, ନାଚଗୀତ ଶିକ୍ଷାର ସ୍ଥାନ, ଛୋଟ ଦଳ

**ଆଖଡ଼ା ପିଲା** - *ପଦ୍ୟ:* (ବି.) : ଗୋଟି ପୁଅ

**ଆଖନ** - *ପଦ୍ୟ:* (ବି.) : ଖଣତା, ଖଣତି

**ଆଖପାଖ** - *ଅ:ନ:ପଦ୍ୟ:ଦେ:* (ବିଂ.ବି.) : ନିକଟବର୍ତ୍ତୀ ଅଞ୍ଚଳ, ଏପାଖ ସେପାଖ, ସମୀପ, ନୈକଟ୍ୟ, ସାମୀପ୍ୟ, ଅତି ନିକଟ

**ଆଖର** - *ଅନେ:* (ଅ.) : ତଥାପି, ଅକ୍ଷର, ଶେଷହେବା ସମୟ, ଆଦୌ, ଶେଷ

**ଆଖାଶାଖା** - *କୋ:କଳା:ବୌ:* (ବି.ବିଂ.) : ସହାୟ, ନିଜଲୋକ, ସହାୟକ, ସାହାଭରସା

**ଆଖିଆ** - *କୋ:ଗଞ:ରା:* (ବି.) : ପ୍ରତକ୍ଷୁ, ଚଷମା

**ଆଖିଆ ପଣ** - *ଗଞ:* (ବିଂ.) : ଦୃଷ୍ଟିଆ, ମନ୍ଦଦୃଷ୍ଟି

**ଆଖିଆ ହୋଇଯିବା** - *ସ:* (ବି.) : ଦୃଷ୍ଟିଆ ହୋଇଯିବା

**ଆଖିକରିବା** - *ଢେ:* (କ୍ରି.) : ନଜର କରିବା ବା ଦୃଷ୍ଟି ପକାଇବା

**ଆଖିକଷା ନପଡ଼ିବା** - *ପଦ୍ୟ:* (ବି.) : ଅନିଦ୍ରା

**ଆଖିକି ଆସିବା** - *ଗ:* (ବି.) : ସ୍ମୃତିକୁ ଆସିବା

**ଆଖିଛଟା** - *ଗ:* (ବି.) : ଚାହାଣି

**ଆଖିଛୁଇଁବା** - *କ:* (କ୍ରି.) : ରାଣ ଖାଇବା

**ଆଖି ଢେଇଁବା** - *ସ:* (କ୍ରି.ବିଂ.) : ଆଖି ଫଡ଼କିବା

**ଆଖି ଦୁରୁଷ୍ଟିଆ** - *କ:* (ବିଂ.) : ଯାହାକୁ ଦେଖିବାକୁ ଇଚ୍ଛାହୁଏ, ଦେଖିବାଯୋଗ୍ୟ

**ଆଖିଦେଖାଇବା** - *କ:* (କ୍ରି.) : ଡରାଇବା

**ଆଖି ପକେଇବା** - *ସ:* (କ୍ରି.ବିଂ.) : ଖରାପ ଦୃଷ୍ଟିଦେବା

**ଆଖି ପାକଳ** - *ଗ:* (ବି.) : କଷି ପଣସର ମଞ୍ଜି

**ଆଖିପାଣି** - *ପଦ୍ୟ:* (ବି.) : ଲୋତକ, ଲୁହ

**ଆଖିପିଛଡ଼ା** - *ପଦ୍ୟ:ଗ:* (ବି.) : ଚକ୍ଷୁର ପଲକ, ବିବାହ ହେବା

**ଆଖିପିଛୁଳାକେ** - *ନ:* (କ୍ରି.ବିଂ.) : ପଲକ ପଡ଼ିବାମାତ୍ରେ

**ଆଖିପୁଅ** - *ପଦ୍ୟ:* (ବି.) : ଆଖିଡୋଳାର ମଧ୍ୟରେ ଥିବା ବିନ୍ଦୁ

**ଆଖିଫିଟିବା** - *ପଦ୍ୟ:* (କ୍ରି.ବି.) ଆଖି ଖୋଲିଯିବା, କୌଣସି ବିଷୟରେ ଜ୍ଞାନୋଦୟ ବା ଚୈତନ୍ୟୋଦୟ ହେବା

**ଆଖିଫୁଟା** - *ପଦ୍ୟ:* (ବିଂ.) : ଗାଳିବିଶେଷ, ଅଦୂରଦର୍ଶୀ ମୂର୍ଖ, ଅନ୍ଧ, ଅଜ୍ଞ, ଅବିବେଚକ

**ଆଖି ଫୁଟୁ** - *ଗୌ:* (ବିଂ.) : ରାଣ ଖାଇ ବିଶ୍ୱାସ ଜନ୍ମାଇବା

**ଆଖିବୁଜାଣି** - *ଗ:* (ବି.) : ଲୁଚକାଳି ଖେଳ

**ଆଖିବୁଲାଇବା** - *ପଦ୍ୟ:ଜ:ସଂ:* (କ୍ରି.ବି.ବିଂ.) : କ୍ରୋଧରେ ଆଖିକୁ ବଡ଼ ବଡ଼ କରି ଏଣେତେଣେ ବୁଲାଇବା, ଅନ୍ୱେଷଣ କରିବା, ଭଲ ରୂପେ ଚାରିଆଡ଼େ ଦେଖିବା, ଅନୁସନ୍ଧାନ ଦୃଷ୍ଟି, ତନଖିନେବା, ଖୋଜିବା

**ଆଖିଭରି** - *ଜ:* (ବି.) : ଆଖିପୁରେଇ

**ଆଖି ଭୁରୁହୁ** - *ଗ:* (କ୍ରି.) : ଚାହାଣୀରେ ଧମକଦେବା

**ଆଖି ମାରିବା** - *ସଂ:* (ବି.) : କୁ ଇଙ୍ଗିତ ଦେବା

**ଆଖିରଖିବା** - *ସଂ:* (କ୍ରି.ବିଂ.) : ଲକ୍ଷ୍ୟ ରଖିବା

**ଆଖିରୁଚକ** - *ଜ:* (ବିଂ.) : ଭଲ ଦିଶୁଥିବା, ଆଖିଦୃଶିଆ

**ଆଖିରୁ ପାଣି ମରିବା** - *ଜ:* (କ୍ରି.) : ଅପେକ୍ଷା କରିବା

**ଆଖିରେ ଧୂଳିଦେବା** - *ସଂ:* (ବି.) : ଠକିନେବା

**ଆଖିରେ ନ ଯିବା** - *ପଦ୍ୟ:* (କ୍ରି.ବି.) : ଦୃଷ୍ଟିଦେବା, ସହି ନ ପାରିବା

**ଆଖୁ** - *ଖୋ:ପଦ୍ୟ:ଦେ:* (ବିଂ.ବି.) : ଏକ ପ୍ରକାର ରସାଳ ଗଛ ଯାହାର ରସରେ ଗୁଡ଼ ବା ଚିନି ପ୍ରସ୍ତୁତ କରାଯାଏ, ମଧୁରରସ ବିଶିଷ୍ଟ ତୃଣଜାତୀୟ ଗୁଳ୍ମବିଶେଷ, କୁଶାରିକାଣ୍ଡ

**ଆଖୁକୋଳି** - *ଖୋ:* (ବିଂ.) : ଏକପ୍ରକାର କୋଳି

**ଆଖୁଛେଦା** - *ଖୋ:ଗଞ:* (ବି.) : ପେଡ଼ା ଆଖୁର ଚୋପା, ଗଣ୍ଠିନଥିବା ଆଖୁଖଣ୍ଡ

**ଆଖୁ ଦୋର** - *ଗ:* (ବି.) : ଆଖୁଦଣ୍ଡରୁ ପ୍ରାପ୍ତ ରସ, ଆମ୍ବବିଶେଷ

**ଆଖୁନ୍** - *ଅ:* (ବି.) : ଉର୍ଦ୍ଦୁ ଶିକ୍ଷକ

**ଆଖୁବେଦରା** - *ଗ:* (ବି.) : ଆଖୁରୁ ଗୁଡ଼ ପ୍ରସ୍ତୁତବେଳେ କଡ଼େଇରେ ରହୁଥିବା ବଳକା ଗୁଡ଼

**ଆଖୁଭେଳା** - *ଗ:* (ବି.) : କଟା ଆଖୁର ଛେଦା

**ଆଖୁରସ** - *ଗ:* (ବି.) : ଏକଜାତିର ଆମ୍ବ

**ଆଖେଟକ** - *ପଦ୍ୟ:* (ବି.) : ଶିକାର, ପାରିଧି

**ଆଖେଟୀ** - *ପଦ୍ୟ:* (ବି.) : ବାଣୁଆ, ଶିକାରୀ, ବ୍ୟାଧ

**ଆଖେଡ଼ା** - *କେ:ଜ:* (ବି.) : ଆଖଡ଼ା (ନାଟ୍ୟ ଅଭିନୟ), ନାଚଶିକ୍ଷାସ୍ଥଳ, ଅଭିନୟ ଅଭ୍ୟାସ ସ୍ଥାନ, ଅସ୍ତ୍ର ଶିକ୍ଷା ସ୍ଥାନ

**ଆଖେଡ଼ି** - *ସୁ:* (ବି.) : ଚାରି କୋଣିଆ ବାଡ଼, ବାଉଁଶ ତିଆରି ମାଛଧରା ଯନ୍ତ୍ର

**ଆଖୋଟ** - *ପଦ୍ମ:* (ବି.) : ଶୈଳପୀଲୁବୃକ୍ଷ, ଆଖୁରୋଟ ଗଛ

**ଆଖ୍ୟାନ** - *ପଦ୍ମ:* (ବି.) : କଥନ, ପ୍ରତିବଚନ, ଉପନ୍ୟାସ, ଗଳ୍ପ, ଇତିହାସ, ନମୋଲ୍ଲେଖ

**ଆଖ୍ୟାୟିକା** - *ପଦ୍ମ:* (ବି.) ଗଳ୍ପକଥା, ଉପନ୍ୟାସ, କଥାକାବ୍ୟ

**ଆଗ** - *ଅନେ:* (ବିଂ.ବି.) ସମ୍ମୁଖ ବା ପୁରୋଭାଗ, ପୂର୍ବକାଳ, ସମ୍ମୁଖବର୍ତ୍ତୀ, ଅଗ୍ରସର, ପ୍ରଥମ, ପୁରାତନ, ଭବିଷ୍ୟତ, ପ୍ରଥମକରଣୀୟ, ସର୍ବପ୍ରଥମେ, ସମ୍ମୁଖରେ, ପୂର୍ବେ, ମହୁ

**ଆଗ୍** - *କଳା:* (ବି.) : ବଡ଼ ଧରଣର ମହୁମାଛି ଓ ଫେଣା

**ଆଗ୍‌ତଭାଗ** - *ବା:* (କ୍ରି.) : ଜମିକୁ ଆଗୁଆ ବଖରା ଦେଇ ଟଙ୍କା ଆଣିବା

**ଆଗ୍‌ତୁରା** - *ଢେ:ନୂ:* (ବି.ବିଂ.) : ଅଗ୍ରୀମ, ଆଗରୁ, ଆଗୁଆ

**ଆଗ୍‌ତୁରିଆ** - *ବୌ:* (ଅ.) : ଆଗୁଆ

**ଆଗ୍‌ଭର** - *ଝା:* (ବି.) : ଆଗକୁ ଆସିବାର ପ୍ରକୃତି

**ଆଗ୍‌ଲା** - *ସୁ:ବା:* (ବିଂ.) : ପରବର୍ତ୍ତୀ, ଆଗ, ଆଗୁଆ

**ଆଗ୍‌ଲା ଆଢ଼େ** - *ମ:* (କ୍ରି.) : ଆଗପଟେ

**ଆଗ୍‌ଲୁନ୍** - *କଳା:* (ବି.) : ପୂର୍ବରୁ, ଆଗରୁ

**ଆଗକାଳିଆ** - *ଗଞ୍ଜ:* (ବିଂ) : ପୁରୁଣା

**ଆଗକିରା** - *ନୂ:* (ବି.) : ମହୁମାଛି

**ଆଗଚଲା** - *ଅ:ଖୋ:କ:* (ବି.ବିଂ.) : ଆଗତୁରା କହିବା ବା କରିବା, ଯାହା ପାଖରେ କୌଣସି କଥା ଗୋପନ ରହିପାରେ ନାହିଁ, ଆଗଟପା, ଦ୍ୱିତୀୟ ହେବା ସ୍ତ୍ରୀର ପୂର୍ବ ସ୍ୱାମୀ ଔରସରୁ ଜାତ ପୁତ୍ର

**ଆଗଛମା** - *ଗ:ପଦ୍ମ:* (ବି.ବିଂ.) : ସାମ୍ନାଘର, ଘର ଆଗରେଥିବା ଘର

**ଆଗଡିବି** - *ସୁବ:* (ବି.) : ଏଫିଡେବିଟ୍, ସତ୍ୟପାଠ

**ଆଗଡ଼** - *ବା:ପଦ୍ମ:* (ବି.) : ଫାଟକ, ଅର୍ଗଳ, ତାଟି, ଧଡ଼ା

**ଆଗଡ଼ା** - *ପଦ୍ମ:* (ବି.) : ଧାନ୍ୟାଦିର ଯେଉଁ ଶେଷ ଭାଗ କାର୍ଯ୍ୟରେ ଲାଗେ ନାହିଁ, ଅଗାଡ଼ୀ, ଭୁଷି, ଚଷୁ, ଫମ୍ପା ଧାନ

**ଆଗତ** - *ଢେ:ରା:ପଦ୍ମ:* (ବି.ବିଂ.) ଉପସ୍ଥାପନା, ଆଶ୍ଚର୍ଯ୍ୟ, ଉପସ୍ଥିତ, ଆଗମନ, ପ୍ରାପ୍ତ, ଆୟାତ୍ତ, ଲବ୍ଧ, ଅଧିଗତ, ଫେରିଆସିଥିବା, ଭବିଷ୍ୟତରେ ଆସିବାକୁ ଥିବା

**ଆଗତ କହି** - *ବା:* (ବିଂ.) : ଉପରେ ପଡ଼ି କହୁଥିବା ସ୍ତ୍ରୀ ଲୋକ, ଆଗକୁହା

**ଆଗତନିଗତ** - *ଗ:* (ବି.) : ଭବିଷ୍ୟତବାଣୀ

**ଆଗତପଞ୍ଚା** - *ପଦ୍ୟ:ଅ:* (ବି.) : ଭବିଷ୍ୟତ ସମ୍ବନ୍ଧେ ପୂର୍ବରୁ ଚିନ୍ତା କରିବା ବା ପାଞ୍ଚିବା, ବହୁ ଆଗରୁ ଭବିଷ୍ୟତ ଚିନ୍ତା

**ଆଗତପାଞ୍ଚ** - *ଗ:କ:* (କ୍ରି.ବି.) : ଆଗରୁ ଚିନ୍ତାକରିବା, ଆଗରୁ ବହୁତ କିଛି ଭାବିନେବା

**ଆଗତୁଆ** - *କୋ:* (ବିଂ.) : ଆଗତୁରା

**ଆଗତୁରା** - *ପଦ୍ୟ:କେ:* (ବିଂ.) : ଅଗ୍ରୀମ, ପୂର୍ବରୁ, ସବା ଆଗରେ, ପ୍ରଥମେ

**ଆଗଦୁଆରି** - *ଗଦ୍ୟ:* (ବିଂ.) : ଘର ସାମ୍ନା ପଡ଼ୋଶୀ

**ଆଗଧଡ଼ସ** - *ଗ:* (କ୍ରି.) : ପ୍ରଥମେ ବାଟ କାଟିବା, ପ୍ରଥମେ ଯିବା

**ଆଗନ୍ତୁକ** - *ଢେ:ପଦ୍ୟ:* (ବି.) : ନୂତନ ଭାବେ ଆସିଥିବା ବ୍ୟକ୍ତି, ଯେ ଆସିପହଞ୍ଚିଲା, ଅତିଥି

**ଆଗପଛ** - *ପଦ୍ୟ:ଅ:* (ବି.) : ସର୍ବପ୍ରଥମ ଓ ସର୍ବଶେଷ ବିଷୟ, ଆଗପଖ ଓ ପଛପଛ, ପ୍ରଥମ ଓ ତଦ୍‌ପରବର୍ତ୍ତୀ, ସର୍ବପ୍ରଥମ ଓ ସର୍ବଶେଷ, ସମ୍ମୁଖରେ ଓ ପଶ୍ଚାତ ଭାଗରେ ଥିବା, ପ୍ରଥମେ ଓ ପରେ, କାରଣ ଓ ପରିଣାମ, ପୂର୍ବ ଓ ପର

**ଆଗ ପତୁରିଆ** - *ଅ:* (ବି.) : ପଙ୍ଗତ ବେଳେ ସମ୍ମାନାର୍ଥେ ଯାହାପାଇଁ ପତ୍ରପଡ଼େ

**ଆଗପେଲା** - *ସ:* (ବି.) : ଯେ ଆଗକରି ଠେଲି ପେଲି ପଶିଯାଏ

**ଆଗବଡ** - *କ:* (ଅ.) : ଆଗରୁ, ପୂର୍ବପରି

**ଆଗବାଗ** - *ଗ:* (ବିଂ.) : ଠାଣି, ଆକୃତ

**ଆଗବୋଲା** - *ଅ:* (ବି.) : ମୁଖର

**ଆଗଭର** - *କ:ନ:* (ବିଂ.ବି.) : ଆଗୁଆ, ଅଗ୍ରସର

**ଆଗଭଳିଆ** - *କ:* (ବିଂ.) : ପୂର୍ବଭଳି

**ଆଗମ** - *ପଦ୍ୟ:* (ବି.) : ଆରମ୍ଭ, ଆଗମନ, ତନ୍ତ୍ରଶାସ୍ତ୍ର, ଉପଦେଶ, କର୍ମନିଦର୍ଶନ, ଉପାୟ, ସାକ୍ଷୀପତ୍ର

**ଆଗମନ** - *ଢେ:ପଦ୍ୟ:* (ବି.) : ପହଞ୍ଚିବା, ଆସିବା, ଉପୃତ୍ତି, ଉପସ୍ଥିତ

**ଆଗର** - *ଅ:ଗ:* (ବି.) : ଚୌକିଦାର, କାଠରୁ ରନ୍ଧ୍ର କରିବା ଯନ୍ତ୍ର

**ଆଗରେ** - *ଅ:ନ:* (ବି.) : ସମ୍ମୁଖରେ

**ଆଗରେ ପଡ଼ିବା** - *ଖୋ:* (କ୍ରି.ବି) : ସାମ୍ନାକୁ ଆସିବା

**ଆଗଲ** - *ଗଦ୍ୟ:* (ବି.) : ଭାଇ

**ଆଗଲା** - *ଗ:* (ବିଂ.) : ଆଗୁଆ, ଅଧିକ

**ଆଗଲି, ଆଘଲି** - *ସୁବ:* (ବିଂ.) : ଆଗରେ ଥିବା, ପହିଲେ, ପ୍ରଥମେ

**ଆଗଲିପଛଲି** - *କ:ନବ:କୋ:* (ଅ.) ଆଗପଛ

**ଆଗଲିପିଛିଲା** - *ନ:* (କ୍ରି.ବିଂ.) : ଆଗପଛ ହୋଇ

**ଆଗସୁଁ** - *କ:* (ଅ.) : ପ୍ରଥମରୁ

**ଆଗହୁଁ** - *କ:ପଦ୍ୟ:* (ଅ.କ୍ରି.ବିଂ.) : ପୂର୍ବରୁ, ଆଗଠାରୁ, ପ୍ରଥମରୁ

**ଆଗାଢିଆଁ** - *ଗ୍ରା:* (ବି.) : ଧାନକଟା ପରେ ଏଇ ସବୁ ଖେଳ, କୌଶଳ ଗାଁ ଅଞ୍ଚଳର ଲୋକେ ପ୍ରଦର୍ଶନ କରିଥାଆନ୍ତି

**ଆଗାଡ଼ି** - *କ:* (ବିଂ.) : ଆଗେଆଗେ

**ଆଗାଡ଼ି ପିଛାଡ଼ି** - *କ:* (ବିଂ.) : ଆଗପାଖ ଓ ପଛପାଖ

**ଆଗାଡ଼ି ଫୌଜ** - *ପଦ୍ୟ:* (ବି.) : ଆଗୁଆ ସୈନିକ

**ଆଗାପିଛା** - *କ:* (ବି.) : ଆଗପଛ

**ଆଗାମାରା** - *ଅ:* (ବିଂ.) : ଅଜ୍ଞାନୀ

**ଆଗାମୀ** - *ଢେ:ପଦ୍ୟ:* (ବିଂ.) : ଭବିଷ୍ୟତ, ଆସନ୍ତା, ଭବିଷ୍ୟତକାଳେ ଯାହା ହେବ, ଭବିଷ୍ୟତରେ ପ୍ରାପ୍ତି, ଯାହା ଆସିବାର ଅଛି

**ଆଗାର** - *ଦେ:* (ବି.) : ଆଧାର, ଘର

**ଆଗାଶୂଳ** - *ଗ୍ରା:* (ବି.) : ଧାନକଟା ପରେ ଏଇ ସବୁ ଖେଳ, କୌଶଳ ଗାଁ ଅଞ୍ଚଳର ଲୋକେ ପ୍ରଦର୍ଶନ କରିଥାଆନ୍ତି

**ଆଗି** - *ସୁ:* (ବି.) : ନିଆଁ

**ଆଗିଆଣି** - *କ:* (ବିଂ.) : ଆଗୁଆ

**ଆଗିପେଟି** - *ଗ:* (ବି.) : ଦିଆସିଲି

**ଆଗିବାଗି** - *ଗ:* (ବିଂ.) : ଠାଣି, ଆକୃତି

**ଆଗିଲ୍** - *କଳା:* (ବି.) : ଆଗ, ପ୍ରଥମ

**ଆଗିଲା** - *ପଦ୍ୟ:* (ବିଂ.) ଆଗକୁ ବଢିଯାଇଥିବା, ଆଗୁଆ

**ଆଗୁ** - *ପଦ୍ୟ:* (ବି.) : ଆଗେ, ଆଗରୁ

**ଆଗୁଆ** - *ପଦ୍ୟ:* (ବିଂ.) : ଅଗ୍ରବର୍ତ୍ତୀ, ଅଗ୍ରସରୀ, ଆଗକୁ ବଢିଯାଇଥିବା

**ଆଗୁଆଗୁ ହେବା** - *ସଂ:* (ବି.) : ପାଟିରୁ କଥା ନବାହାରିବା

**ଆଗୁଆଣି** - *ଖୋ:କ:* (ବିଂ.) : ଯେ ଆଗରେ ଚାଲୁଥାଏ, ଅଗ୍ରଗାମୀ

**ଆଗୁତୁରା** - *ନ:* (ବି.) : ଆଗତୁରା(ପୂର୍ବରୁ)

**ଆଗୁନ୍** - *ଅ:କଳା:ମ:* (ବି.) : ନିଆଁ, ପୂର୍ବରୁ, ଆଗରୁ, ନିଆଁ (ବଂଗଳା ପ୍ରଭାବ)

**ଆଗୁପେଟି** - *ମା:* (ବି.) : ଦିଆସିଲି

**ଆଗୁଳ** - *ମ:ଗ:* (ବି.) : କବାଟ

**ଆଗୁଳବନ୍ଧ** - *ଗ:* (ବି.) : ପାଣିକୁ ଅଟକାଇବା ବନ୍ଧ

**ଆଗୁଳିବା** - *ଅନେ:* (କ୍ରି.) : ଅଟକାଇ ରଖିବା, ଜଗିବସିବା, ଆଗପଟୁ ଅଟକେଇବା, ସମ୍ମୁଖରୁ ଗତିରୋଧ,

**ଆଗୁଳେଇବା** - *ଖୋ:* (କ୍ରି.) : ବାଟ ଓଗାଳିବା

**ଆଗୁସାର** - *କ:* (ବିଂ.) : ଆଗୁଆ

**ଆଗୁଁ** - *ମା:ନବ:* (ଅ.) : ପୂର୍ବରୁ, ପ୍ରଥମରୁ

**ଆଗୁଁଠ** - *ସୁ:* (ବି.) : ଆଙ୍ଗୁଠି

**ଆଗେ** - *ପଦ୍ୟ:* (ବି.) : ତୁଳନାରେ, ଆଗରେ, ପୂର୍ବେ, ଅଗ୍ରେ, ପ୍ରଥମେ, ସମ୍ମୁଖକୁ, ପୂର୍ବକାଳେ

**ଆଗେଇବା** - *ଢ଼:ପଦ୍ୟ:ଅ:* (କ୍ରି.) : ଭଲ ଲାଗିବା, ଅଗ୍ରସର ହେବା, ପୂର୍ବକୁ ଯିବା, ଆଗକୁ ଗତି କରିବା, କିଛିଦୂର ଅଗ୍ରସର ହେବା, ଉନ୍ନତ ହେବା, ସମୃଦ୍ଧ ହେବା, ବିକଶିତ ହେବା

**ଆଗୋ** - *ଦେ:ପଦ୍ୟ:* (ସ.ଅ.) : ସମ୍ବୋଧନ, କୋମଳ ସମ୍ବୋଧନବାଚକ ଶବ୍ଦ, ସ୍ତ୍ରୀମାନଙ୍କ ପ୍ରତି ସମ୍ବୋଧନ ଓ ସ୍ନେହଯୁକ୍ତ ସମ୍ବୋଧନ

**ଆଗୋଳା** - *ପଦ୍ୟ:* (ବିଂ.) : ଆଗୁଆ

**ଆଗ୍ୟା** - *ଢ଼:* (ବି.) : ଆଜ୍ଞା, ଆଦେଶ

**ଆଗ୍ରହ** - *ଦେ:ପଦ୍ୟ:ଢେ:* (ବି.) : ଇଚ୍ଛା, ଅବେଶ, ଆସକ୍ତି, ଆଶ୍ରମ, ଝୁଙ୍କ, ଅତିଯତ୍ନ, ବ୍ୟଗ୍ରତା, ଅନୁଗ୍ରହ, ଉତ୍ସାହ

**ଆଗ୍ରିଆଣିଥାଟ** - *ଢ଼:* (ବି.) ଆଗରେ ଚାଲୁଥିବା ଦଳ

**ଆଘ** - *କଳା:ନୂ:କଣ:* (ବି.ବିଂ.) : ପ୍ରଥମ, ଆଗ, ଆଦ୍ୟ, ସାମ୍ନା

**ଆଘ୍ଲି** - *ସ:* (ବିଂ.) : ଆଗ, ପ୍ରଥମେ

**ଆଘନୁ** - *ଝ:* (ବି.) କୌଣସି ପ୍ରସଙ୍ଗ ପୂର୍ବରୁ, ପ୍ରଥମରୁ

**ଆଘରୁ** - *ରା:* (ଅ.) : ଏହାପୂର୍ବରୁ

**ଆଘର୍** - *ସୁ:ଦୌ:କଳା:* (ବିଂ.ଅ.ବି.) ଆଗେକର, ଆଗର, ପୂର୍ବର, ଅତୀତ ଦିନର

**ଆଘର୍ଲେଖା** - *ଦୌ:* (ଅ.) : ଆଗପରି

**ଆଘାତ** - *ଦେ:ଢ଼:ପଦ୍ୟ:* (ବି.) : ଚୋଟ, ପ୍ରହାର, କ୍ଷତ, ମାଡ଼, ଚୋଟ, ତାଡ଼ନ, ପ୍ରହାର

**ଆଘାତ୍‌ଘାତ** - *ରା:* (ବିଂ.) : ଅତ୍ୟନ୍ତ ଗଭୀର

**ଆଙ୍କ** - *ମ:* (ବି.) : ବାଡିରେ ଲାଗିଥିବା ତାଟି କବାଟ

**ଆଙ୍କକୁଳି** - *ବା:* (ବି) : ଏକପ୍ରକାର ବଣୁଆ କୋଳି

**ଆଙ୍କଟିକି** - *ଗ:* (ସ.) : ଏହାଙ୍କୁ

**ଆଙ୍କରି** - *ଦୌ:* (ବି.) : ବଙ୍କା ଲୁହା (ଯାହା ସାହାଯ୍ୟରେ ଗଛରୁ ଫଳ ପକାଯାଏ)

**ଆଙ୍କାବାଙ୍କା** - *ଅ:* (ବିଂ.) : ଅଙ୍କାବଙ୍କା

**ଆଙ୍କି** - *ନବ:* (ବି.) : ଆଖି

**ଆଙ୍କିବା** - *କଳା:ଅ:ପଦ୍ୟ:ଢେ:* (କ୍ରି.) ପୋଡିବା, ଚେଙ୍କଦେବା, ଚିତ୍ର କରିବା, ଅଙ୍କନ କରିବା, ବର୍ଣ୍ଣନା କରିବା

**ଆଙ୍କୁ** - *ଭ:ରା:ପଦ୍ୟ:* (ସ.ବି.) : ଏହାଙ୍କୁ, ଏମାନଙ୍କୁ, ଏକ କଣ୍ଟା ଗଛ

**ଆଙ୍କୁକୋଳି** - *ଅ:* (ବି.) : ସାନ କେରେଲା କୋଳି

**ଆଙ୍କୁଡିବା** - *ଗ:* (କ୍ରି.) ଟାଣିଧରିବା, ଆଙ୍କୁଡ଼ିରେ ତୋଳିବା

**ଆକୁଡ଼ା** - *ନବ:ଗ:କେ:* (ବି.) : ବଙ୍କାଲମ୍ବା ବାଡି, ଗଛରୁ ଫଳ ତୋଳିବା ପାଇଁ ବ୍ୟବହୃତ ବାଉଁଶ, ଲମ୍ବାବାଡ଼ି ଦ୍ୱାରା ପରିବା ପାରିବାର ନଗୀ, ଆଙ୍କୁଡ଼ି

**ଆକୁଢ଼େଇବା** - *ମ:* (କ୍ରି.) : କୁଣ୍ଢେଇବା

**ଆକୁପାଙ୍କୁ** - *ଭ:* (ବି.) : କହିବା ନକହିବା ଅବସ୍ଥା

**ଆକୁରିବା** - *ଅ:* (କ୍ରି.) : ପାଚିଲା ଧାନ କେଣ୍ଡା କରି ରଖିବା

**ଆକୁଲ** - *ଗ:ଦେ:* (ବି.) : ଏକପ୍ରକାର ଗଛ, ଏକ କଣ୍ଟା ଗଛ

**ଆକୁଶ** - *ଦେ:* (ବି.) : ହାତୀକୁ ଆକଟ କରିବା ଲୁହାବାଡ଼ି

**ଆକୁଶ ଲଗାଇବା** - *ଗ:* (କ୍ରି.) : ନିୟନ୍ତ୍ରଣ କରିବା

**ଆକେ** - *କୋ:ନବ:* (ସ.) : ଇଏ, ସେ

**ଆକେମାନେ** - *ରା:* (ସ.) : ଏ ଲୋକମାନେ

**ଆକ୍ରି** - *କନ:* (ବି.) : ଆଙ୍କୁଡ଼ି

**ଆଗ** - *କନ:ସଂ:* (ବି.) : ମାଉସୀ, ବ୍ୟବହାର ଗତ ସ୍ୱାତନ୍ତ୍ର୍ୟ

**ଆଗଛି** - *ଅ:* (ବି.) : ଗାମୁଛା

**ଆଗଟା** - *ଅ:ବା:* (ବି.) : ବଡମୁଦି

**ଆଗଟି** - *ସୁବ:ଅ:* (ବି.) : ଆଙ୍ଗୁଳି, ମୁଦି

**ଆଗଠା** - *ଗ:* (ବି.) : ଶିଶୁଙ୍କ ଉପର ପାଟିରେ ହେଉଥିବା ବ୍ରଣ

**ଆଗଡା** - *ଅ:ଗଦ୍ୟ:* (ବି.) : କୁର୍ତ୍ତା, ସାର୍ଟ

**ଆଙ୍ଗରା** - *ମ:* (ବି.) : ଅଙ୍ଗାର

**ଆଙ୍ଗି** - *ନବ:ରା:* (ବି.) : ସାର୍ଟ

**ଆଙ୍ଗିକ** - *ପଦ୍ୟ:ଢେ:ଦେ:* (ବିଂ.) : ଅଙ୍ଗନିଷ୍ପନ୍ନ ଅଙ୍ଗ ସମ୍ବନ୍ଧୀୟ, ମୃଦଙ୍ଗ ବିଦ୍ୟାର ଶିକ୍ଷୀ, ଯେ ମୃଦଙ୍ଗ ବଜାଇପାରେ, ଅଙ୍ଗଭଙ୍ଗୀ ଦ୍ୱାରା ସୂଚନା, ଅଙ୍ଗ ସମ୍ପର୍କିତ, ଅଙ୍ଗଭଙ୍ଗୀ

**ଆଙ୍ଗିଣିଆ** - *ଗଜ:ଗ:କୋ:* (ବି.ବିଂ.) ଦରସିଝା ବାଇଗଣ, ବାଇଗଣ ତରକାରିର ଖରାପ ସ୍ୱାଦ, କମ୍ ଶିଝିଥିବା ପରିବା

**ଆଙ୍ଗୁ** - *ରା:* (ବି.) : ହାପ୍ ପେଣ୍ଟ

**ଆଙ୍ଗୁପାଙ୍ଗୁ** - *କ:* (ବିଂ.) : କିଛି ସ୍ଥିର କରି ନପାରିବା, ହତବାକ୍ ହେବା

**ଆଙ୍ଗୁଲି** - *କନ:ରା:* (ବି.) : ଆଙ୍ଗୁଠି, ଆଙ୍ଗୁଳି

**ଆଙ୍ଗୁଲେ** - *ଗ:* (ବିଂ.) : ଆଙ୍ଗୁଠି ପରିମାଣର ମାପ

**ଆଙ୍ଗୁଳି ପିଠା** - *କେନ୍ଦୁ:* (ବି.) : ଗଇଁଠାପିଠା

**ଆଚ୍‌କା** - *ମ:ଯା:ଅ:* (ବି.ବିଂ.) : ଆଚମ୍ବିତ, ବୋକା ବନିଯିବା, ହାଲିଆ ହେବା, ଆନୁମାନିକ

**ଆଚଖେଳ** - *କେ:* (ବି.) : କଉଡ଼ିଖେଳ

**ଆଚମନ** - *ଢେ:ପଦ୍ୟ:* (ବି.) : ମୁଖ ପ୍ରକ୍ଷାଳନ କରିବା, ଭୋଜନାଦି ପରେ ମୁଖ ଧୌତକରିବା, ଆଞ୍ଚେଇବା

**ଆଚମ୍ଭିତ** - *ପଦ୍ୟ:ଦେ:* (ବିଂ.) : ଆଶ୍ଚର୍ଯ୍ୟାନ୍ୱିତ, ଚକିତ, ତ୍ରସ୍ତ, ବିସ୍ମିତ, ଅସମ୍ଭବ, ଅସମ୍ଭାବିତ, ଅଭୂତପୂର୍ବ, ଅଶ୍ରୁତପୂର୍ବ, ଆଶ୍ଚର୍ଯ୍ୟ

**ଆଚମ୍ଭା** - *ଗଦ୍ୟ:* (ବି.) : ପାନେ (ବ୍ୟଙ୍ଗାର୍ଥ)

**ଆଚାଭୁଆ** - *ଅ:* (ବିଂ.) : ହତବୁଦ୍ଧି

**ଆଚାର** - *ନ:ଗ:ଦେ:ଇ:* (ବି.) : ବ୍ୟବହାର, ଚଳଣି, ଖଟା(ଆମ୍ବ, କାଞ୍ଜିଆ, ଲେମ୍ବୁ ନିର୍ମିତ), ଆମ୍ବ, ଲେମ୍ବୁ ରୁ ତିଆରିଖଟା, ଆମ୍ବ, ଲେମ୍ବୁ କୁ ଶୁଖାଇ ତେଲ ମସଲା ଦେଇ ଖଟା ତିଆରି, ଆଚରଣ, ଖଟା ବିଶେଷ

**ଆଚାରୀ** - *ଦେ:* (ବି.) : ହିଡ଼ିମିଚା ଲତା

**ଆଚାର୍‌ବିଚାର୍** - *ଦେ:* (ବି.) : ଶିଷ୍ଟାଚାର

**ଆଚାର୍ ବେଭାର୍** - *ସ:* (ବି.) : ଆଚରଣ ବ୍ୟବହାର

**ଆଚୁ** - *ଅନେ:* (ବି.) : ଅଳତା

**ଆଚେ** - *ମା:* (କ୍ରି.) : ଅଛି

**ଆଚେନ୍** - *ସୁ:* (ବି.) : ଖଟପଛପଟରସି

**ଆଚ୍ଛା** - *ପଦ୍ୟ:ଅ:ଦେ:ନ:* (ଅ.ବିଂ.) : ସ୍ୱୀକାର, ହେଉ, ହଁ, ତଥାସ୍ତୁ, ଉତ୍ତମ, ଦେଖାଯାଉ, ଭଲ, ଉତ୍ତମ, ସୁସ୍ଥ, ମଙ୍ଗଳ, ଉତ୍ତମରୂପେ, କୁଶଳ

**ଆଚ୍ଛାକରି** - *ପଦ୍ୟ:* (କ୍ରି.ବିଂ.) : ଉତ୍ତମରୂପେ, ସମ୍ପୂର୍ଣ୍ଣରୂପେ

**ଆଚ୍ଛାଦ** - *ପଦ୍ୟ:* (ବି.) : ବସନ, ଲୁଗା, ଛାତ, ଢାଙ୍କୁଣୀ, ଆବରଣ, ଚାଦର, ଆଡୁଆଳ

**ଆଚ୍ଛାଦନ** - *ପଦ୍ୟ:* (ବି.) ଆବରକ, ଆଚ୍ଛାଦନକାରୀ

**ଆଛଖେଳ** - *ଗ:* (ବି.) : ବିବାହ ଆଦି ମଙ୍ଗଳ କାର୍ଯ୍ୟର ପରଦିନ ଅନୁଷ୍ଠିତ ହେଉଥିବା ରଙ୍ଗଖେଳ, ହୋଲି ଖେଳ

**ଆଛନ୍ଦ** - *ଗ:* (କ୍ରି.) : ଜାଗ୍ରତ କରିବା

**ଆଛମର** - *ପୁ:* (ବିଂ.) : ଯିଏ ସହଜରେ ମରେ ନାହିଁ

**ଆଛା ଆଛା** - *ଚୌ:* (ଅ.) : ହେଉ ହେଉ

**ଆଛେନ୍** - *କଳା:* (ବି.) : ଖଟରେ ଗୁନ୍ଥା ହୋଇଥିବା ଦଉଡ଼ି ଢିଲା ନ ହେବା ପାଇଁ ଭିଡ଼ା ଯାଇଥିବା ମୋଟା ଦଉଡ଼ି

**ଆଜ୍** - *କଳା:* (ଅ.) : ଆଜି, ଅଦ୍ୟ

**ଆଜନଠୁ** - *ଅ:* (ବି.) : ଆଜିଠାରୁ

**ଆଜନ୍ମ** - *ପଦ୍ୟ:* (କ୍ରି.ବି.) : ଜନ୍ମ ପର୍ଯ୍ୟନ୍ତ, ଯାବଜ୍ଜୀବନ

**ଆଜା** - *ଢେ:* (ବି.) : ଅଜା

**ଆଜାଡ୍** - *ଅ:* (ବି.) : ଜଙ୍ଗଲ୍ ଝାଡ଼

**ଆଜାନୁ** - *ଦେ:* (ଅ.) : ଆଣ୍ଠୁ ପର୍ଯ୍ୟନ୍ତ

**ଆଜିକ** - *ନ:ଦେ:* (ଅ.) : ଆଜିଦିନକ, କେବଳ ଦିନକ ପାଇଁ

**ଆଜିକା** - *ଢେ:* (ବି.) : ଦେଢଶାଶୂ

**ଆଜିକାର** - *ଦେ:* (ଅ.) : ଆଜିଦିନର, ଆଜିର

**ଆଜି କି ମାନିଆ** - *ପୁ:* (ବି.) : ଆଜି ଦିନକପାଇଁ ଯଥେଷ୍ଟ ପରିମାଣ

**ଆଜିରି** - *ଅ:* (ବି.) : ଆଜି ଦିନରେ

**ଆଜୁ** - *ଦେ:* (ଅ.) : ଆଜିଠାରୁ

**ଆଜୁବେଷ୍ଟ** - *ଗ.ଅ:* (ବି.) : ଘର ଛାତ ପାଇଁ ବ୍ୟବହୃତ ଆଜବେଷ୍ଟ

**ଆଜୁରୁମାଜୁରୁ** - *ଭ:* (ଅ.) : ଏଣୁତେଣୁ

**ଆଜୁଁ** - *ପଦ୍ୟ:* (ବି.) : ଆଜିଠାରୁ, ଏଣିକି, ଏବେଠାରୁ

**ଆଜେଣ୍ଡା** - *ସ:* (ବି.) : କାର୍ଯ୍ୟସୂଚୀ

**ଆଜେବାଜେ** - *ନ:* (ବିଂ.) : ଏଣୁତେଣୁ

**ଆଜ୍ଞା** - *ମା.ଦେ.ଜ:* (ଅ.ବି.) : ମହାଶୟ, ଆଦେଶ, ହୁକୁମ

**ଆଜ୍ଞାଧୀନ** - *ଦେ:* (ବିଂ.) : ଆଦେଶ ମାନିବା

**ଆଜ୍ଞାପ୍ରତିକା** - *ପଦ୍ୟ:* (ବି.) : ରାଜା ବା ଦେବତାଙ୍କର ଆଦେଶ ଲିପି

**ଆଜ୍ଞାପ୍ରମାଣ** - *ପଦ୍ୟ:* (କ୍ରି.ବିଂ.) : ଆଦେଶାନୁରୂପ, ହୁକୁମମତା

**ଆଜ୍ଞାବକା** - *ଅ:* (ବିଂ.) : ମାଲିକକୁ ହଁ ମାରୁଥିବା ନିର୍ବୋଧଭୃତ୍ୟ

**ଆଜ୍ଞାବହ** - *ଦେ:* (ବିଂ.) : ଦାସ, ସେବକ

**ଆଜ୍ଞାମାଳ** - *ସ:* (ବି.) : ହୁକୁମ ମାଳା, ଆଦେଶନାମା, ଅନୁମତି ଦେବା

**ଆଜ୍ଞାହେବା** - *ରା:* (କ୍ରି.) : ଆଦେଶ ମିଳିବା

**ଆଝର, ଆଏଜ୍** - *ସୁବ:* (ବିଂ.) : ଆଜି

**ଆଝରର** - *ସୁବ:* (ବିଂ.) : ଆଜି ଦିନର

**ଆଝାଳ** - *ଅ:* (ବିଂ.) : ଲଙ୍କା ବିଚ୍ଛିତ ରସ

**ଆଝିରି** - *ସୁବ.ରା:* (ବିଂ.) : ସପ୍ତାହର ଠିକ୍ ଏହି ଦିନ, ଆଜିର

**ଆଝିର୍** - *ନୁ:* (ବିଂ.) : ଆଜି

**ଆଝୁଁ** - *ଅନେ:* (ବି.) : ଆଜୁଁ, ଆଜହୁଁ, ଆଜିଠାରୁ, ଆଦ୍ୟରୁ, ବର୍ତ୍ତମାନଠାରୁ, ଆଜିଠୁ, ଚାଳତଳି ମାଟିଛାତ

**ଆଞ୍ଚ** - *ଅନେ:* (ବି.) : ତାପ, ଝାସ, ନିଆଁ, ଆପତ୍ତି, ଦୋଷ, ଉତ୍ତାପ, ତେଜଶିଖା, ନିଆଁଧାସ, ସାମାନ୍ୟ ବାଧା, ଆଘାତ

**ଆଞ୍ଚଡ଼ା** - *ମା:* (ବି.) : ଦେହରକ୍ଷତି, ଆମ୍ପୁଡ଼ା

**ଆଞ୍ଚଣା** - *ଗ:* (ବି.) : ବାଉଁଶ ନିର୍ମିତ ବାଡ଼ର ଖମ୍ବ

**ଆଞ୍ଚ ଧରାଇବା** - *ଅ:* (କ୍ରି.) : ଚୁଲିରେ ନିଆଁ ଲଗାଇବା

**ଆଞ୍ଚଳ** - *ଦେ:* (ବି.) : ପଣତକାନି

**ଆଞ୍ଚି** - *ଗଜ:* (ବି.) ଘୋଡ଼ାର ଡ଼ାକ, ଗାଡ଼ିଯିବା ଶବ୍ଦ

**ଆଞ୍ଚିବା** - *ଅ.ଦେ:* (କ୍ରି.) : ଅନୁମାନ କରିବା, ଖାଇ ସାରିବା ପରେ ମୁହଁ ଧୋଇବା

**ଆଞ୍ଚୁ** - *ଦେ:* (ବି.) : ଏକ ପ୍ରକାର ଗଛ

**ଆଞ୍ଚୁଆ** - *ଗଦ୍ୟ.ଦେ:* (ବିଂ.କ୍ରି.) : ଚଳେ, ପାଦେ, ଖାଇ ସାରିବା ପରେ ମୁହଁ ଧୋଇବା

**ଆଞ୍ଚୁଆଗାଡ଼** - *ନ:* (ବି.) : ହାତଧୋଇବା, କୁଳୁକୁଞ୍ଚା କରିବାକୁ ଥିବା (ଅଗଣାରେ) ପାତ୍ର, ମାଟି ପାତ୍ରଟି ମାଟିଭିତରେ ଥାଏ, ମଇଳା ପାଣିକୁଣ୍ଡ

**ଆଞ୍ଚୁଡା** - *କେ:ସଂ:* (ବି.) : ଚର୍ମ ଉପରେ ନଖରେ ଟାଣିବା ଦାଗ, ଘୋସରା ଦାଗ,

**ଆଞ୍ଚେଇବା** - *ନବ:କୋ:ଢେ:ଢ:* (କ୍ରି.) : ଧୋଇବା, ଶୌଚହେବା, ଖାଇବାପରେ ପାଟି ଧୋଇବା, ଅଇଁଠା ପାଟି ଧୋଇବା

**ଆଞ୍ଚିକି** - *ନ:* (ବିଂ.) : ଜୋରକରି

**ଆଞ୍ଜୁଳା** - *ବ୍ରା:ଢେ:* (ବି.) : ଅଞ୍ଜଳି ପ୍ରଦାନ, ଦୁଇ ହାତ ପରିମିତ

**ଆଟ** - *ବୌ:ଦେ:ଗ:* (ବିଂ.ବି.) : ଉଚ୍ଚା ଜମି, ଡିପ ଜମି, ଶଗଡ଼ ଗାଡ଼ିର ଅଂଶ ବିଶେଷ

**ଆଟ୍‌ଚାଳ** - *ବ୍ରା:* (ବି.) : ଚାଳର ତଳପଟରେ ଥିବା କାଠର ଢାଞ୍ଚା

**ଆଟ୍‌ଟା** - *ରା:* (ବି.) : ମଲାଟ

**ଆଟଇବା** - *ରା:* (କ୍ରି.) : ମାଟିରେ ତିଆରି କରିବା

**ଆଟକ** - *ଅ:* (ବି.) : ବାଧା

**ଆଟଙ୍କ** - *ଗ:* (ବି.) : ଅଟକ ନିରୋଧ

**ଆଟଙ୍ଗ** - *ନବ:ଗଢ:* (ବି.କ୍ରି.) : ଅଟକାଇବା,

**ଆଟଣା** - *ଗ:* (ବି.) : ବଡ଼ହାଣ୍ଡି, ମାଟିପାତ୍ର

**ଆଟା** - *ଅନେ:* (ବି.) : ମଲାଟ, ବୁଢାମଲାଟ, ଅଟା, ଖେଳ

**ଆଟାଚି** - *ଅ:* (ବି.) : ଚମଡ଼ା ବାକ୍ସ

**ଆଟାଦିନା** - *କଳ:* (ବି.) : ହାଟଦିନ

**ଆଟି** - *ଭ:କ:* (ବି.) : ସେବାକାରୀମାନଙ୍କୁ ଦିଆଯାଉଥିବା ଅମଳଧାନ ଉପହାର, ଶସ୍ୟ ଆକାରରେ ଦାନ

**ଆଟିକା** - *ଅନେ:* (ବି.) : ଛୋଟ ମାଟିହାଣ୍ଡି, ଜଗନ୍ନାଥଙ୍କ ଦର୍ଶନ ପାଇଁ ଯାତ୍ରୀଙ୍କ ଦାନ, ହାଣ୍ଡି, ପୁରୀ ଜଗନ୍ନାଥ ଦର୍ଶନକୁ ଆସିଥିବା ଯାତ୍ରୀମାନେ ଶ୍ରୀ ଜଗନ୍ନାଥଙ୍କ ଠାରେ ଚିରକାଳ ଭୋଗ ଲାଗିବା ଉଦ୍ଦେଶ୍ୟରେ ପଣ୍ଡାମାନଙ୍କ ଜିମାରେ ପ୍ରଦତ୍ତ ଧନରାଶି

**ଆଟିକା କରିବା** - *ନ:* (କ୍ରି.) : ଶୁଦ୍ଧିକ୍ରିୟା କରିବା, ହାଣ୍ଡିକରିବା

**ଆଟିକା ପୋଡ଼ି** - *ଗଦ୍ୟ:ନ:* (ବି.) ଶାଗବିଶେଷ, ଏକ ଶାଗର ନାମ

**ଆଟିକା ଭୋଗ** - *ଗ:* (ବି.) : ମାଟିହାଣ୍ଡିରେ ରୋଷେଇ କରି କରାଯାଉଥିବା ଭୋଗ

**ଆଟୁ** - *ଅନେ:* (ବି.ବିଂ.) : ଭାଡି, ସିଲିଙ୍ଗ୍, ସଙ୍ଗା, ଛାତ ତଳର ହାତ ଭାଡି, ଘର ଭିତର କମ ଉଚ୍ଚତା ବିଶିଷ୍ଟ ଛାତ ଭିତରେ ଜିନିଷ ରଖିବା ସ୍ଥାନ, ମାଟିକୋଠା, ମାଟିଘର ଦୁଇମହଲା ହେଲେ ମଝି ଛାତ, ଚାଳିଘର ଛାତତଳେ ବାଉଁଶ ମାଟିରେ ନିର୍ମିତ ମାଟି ଛାତା, ମାଟିଘର ଛାତତଳେ ଥିବା ଥାନ

**ଆଟୁଙ୍କାଟୁ** - *ରା:ଗ:* (ବି.) : ମିଶ୍ରିତ ମଇଳା, ଅଳିଆ ଆବର୍ଜନା, ଏଣୁତେଣୁ

**ଆଟୁପାଟୁ** - *ଭ.ଛ.* (ବି.ବିଂ.) : ଅସ୍ଥିର, କ୍ଲାନ୍ତ, ବିକଳ, ଅବଶ

**ଆଟେଁ** - *ବର.* (ବି.) : ପଡ଼ିଆ ଜମି, ଡାଲି ଜାତୀୟ ଫସଲ ଉତ୍ପାଦିତ ହେଉଥିବା ଜମି

**ଆଠକୁଳା** - *ମ.* (ବି.) : ଆଣ୍ଠୁକୁଡ଼ା

**ଆଠଖେ** - *ସ.* (ବି.) : ପରିମାପକ ଜିନିଷ

**ଆଠନା** - *ସ.* (ବି.) : ପଚାଶ ପଇସା

**ଆଠଅଙ୍କି** - *ପୁ.* (ବି.) : ଦୁଆର ଚୌକାଠରେ ଆଠ ଭଳି ଦେଖାଯାଉଥିବା ଲୁହାର ହୁକ୍

**ଆଠ କଡ଼କଡ଼ା** - *ଗଦ୍ୟ.* (ବି.) : ଅଲଣା ଅରୁଆଚାଉଳ ଭଜା ସହ ଆଠପ୍ରକାର ମିଶ୍ରିତ ଖାଦ୍ୟ

**ଆଠକଲ୍ ବାରମାସ୍** - *କଳା.* (ବି.) : ବାର ମାସୀ, ସବୁଦିନ, ପ୍ରତ୍ୟହ

**ଆଠଗଡିଆ** - *କ.କେନ୍ଦୁ.* (ବିଂ.ବି.) : ଆଠଗଡ଼ର ଅଧିବାସୀ, ଆଠଗଡ଼ ଅଞ୍ଚଳର ଲୋକ, ଲାଲ ରଙ୍ଗର ସ୍ୱଳ୍ପମିଆଦି ଧାନ

**ଆଠଚେମା** - *ଗଞ.* (ବି.) : କଉଡି ଖେଳର ଶବ୍ଦ

**ଆଠଣି** - *କେନ୍ଦୁ.* (ବି.) : ପଚାଶ ପଇସା ମୂଲ୍ୟର ପୁରୁଣା ମୁଦ୍ରା, ୫୦ ପଇସା ଆକାରର ସୁନା କଣ୍ଠି

**ଆଠପଣିଆ** - *କ.* (ବି.) : ଅଧାଭାଗ ଅଧିକାରୀ, ଅଧା ଅଂଶୀଦାର

**ଆଠପ୍ରହର** - *ପଦ୍ୟ.* (ବି.) : ଦିନ ଚାରିପହର ଓ ରାତି ଚାରିପହର ଏହିପରି ସମସ୍ତ ଦିନରାତି, ଅହର୍ନିଶ

**ଆଠବାଙ୍କି** - *ଗ.* (ବି.) ନାରୀମାନଙ୍କ ଗୋଡ଼ର ରୂପା ଅଳଙ୍କାର

**ଆଠମଙ୍ଗଳା** - *ବା.ନ.ଗ.* (ବି.) : ବିବାହର ଆଠ ଦିନରେ ନବବଧୂର ମଙ୍ଗଳ କାମନା କରିବା, ଅଷ୍ଟମଙ୍ଗଳା, ବିବାହ ପରର ଆଠଦିନ(ଅଷ୍ଟମଦିବସ) ର ବେଦୀକାର୍ଯ୍ୟ, ବରକନ୍ୟାଙ୍କର ଶ୍ୱଶୁରାଳୟକୁ ପ୍ରଥମ ଆମନ୍ତ୍ରଣ

**ଆଠରଙ୍ଗ** - *ଗଜ.* (ବି.) : ଗଂଜପା ସାରରେ ବ୍ୟବହୃତ ଆଠୋଟି ରଙ୍ଗ ହେଲା ଧଳା, କଳା, ଢଉ, ଫୁଲ(ବସନ୍ତ), ନେଳି, ନାଲି, ପଚା (ସବୁଜ) ହଳଦିଆ

**ଆଠାକାଠି** - *ଅ.* (ବି.) : କ୍ଳାନ୍ତ

**ଆଠିଣୀମାଳି** - *କେ.* (ବି.) : ବେକରେ ପିନ୍ଧା ରୂପାର ଅଳଙ୍କାର

**ଆଠୁଆରି ଭାର** - *ଦେ.ଗ.* (ବି.) : ଆଠଦିନକୁ ଆଠଦିନ ପଠାଯିବା ଭାର, ବିବାହର ଅଷ୍ଟମ ଦିନ ଝିଅକୁ ଦିଆଯାଉଥିବା ଭାର

**ଆଠୁଆରୀ** - *କୋ.* (ବି.) : ଶିଶୁ ଜନ୍ମର ଅଷ୍ଟମ ଦିବସ

**ଆଠେଣି** - *ନ.* (ବି.) : ଆଠଣା, ଆଠଅଣା, ଏକ ଟଙ୍କାର ଅଧା

**ଆଡ଼ ଅନ୍ତର** - *ଅ:* (ବି.) : ପାଖଛଡ଼ା

**ଆଡ଼ ଆଖି** - *ଅ:* (ବି.) : ବକ୍ରଦୃଷ୍ଟି

**ଆଡ଼ଉହାଡ଼** - *ଅ:* (ବି.) : ଆଡୁଆଳ

**ଆଡ଼ଖୁର** - *ଅ:* (ବି.) : କାଠର ଚିତ୍ରଥିବା ବଡ଼ ପେଡ଼ି

**ଆଡ଼ ପଟିଆ** - *ଅ:* (ବିଂ.) : ଏକାପଖିଆ

**ଆଡ଼ପାଣିଆ** - *ଅ:* (ବିଂ.) : ଅତି କାଠୁଆ ନୁହେଁ

**ଆଡ଼ବାଗ** - *ଅ:* (ବି.) : ଚୌଡ଼ାବାଗ

**ଆଡ଼ବାଙ୍କ** - *ଅ:* (ବି.) : ଆଂଶିକ ବକ୍ରତା

**ଆଡ଼ବାନି ସୁନା** - *ଅ:* (ବି.) : ଖାଣ୍ଟିସୁନା

**ଆଡ଼ବାୟା** - *ଅ:ଢେ:* (ବି.) : ପାଗଳା

**ଆଡ଼ମୋଡ଼ା** - *ଅ:* (ବି.) : ଅଳସ ଭାଙ୍ଗିବା

**ଆଡ୍‌ଡା** - *ରା:* (ବିଂ.) : ବିଳାସ ସ୍ଥାନ

**ଆଡ୍‌ମୁହିଁ** - *କଳା:* (ବି.) : କ୍ଷେତରେ କାଦୁଅ ବେଳେ ମାଟିକୁ ଅନ୍ୟ ସ୍ଥାନକୁ ନେବା ପାଇଁ ହଳରେ ଯୋଚି ବ୍ୟବହାର କରାଯାଉଥିବା ପଟା

**ଆଡ୍ ହେବା** - *କଳା:* (କ୍ରି.) : ଆଡ଼େଇ ହେବା, ଅନ୍ତରାଳକୁ-ଯିବା

**ଆଡ ଆଖିରେ ଚାହିଁବା** - *ସଂ:* (କ୍ରି.ବିଂ.) : ସାମାନ୍ୟ ଦୃଷ୍ଟିଦେବା

**ଆଡଆଡ** - *ନବ:* (ବିଂ.) : ଦୁରେଇ ରହୁଥିବା, ଏକପାଖିଆ

**ଆଡକଟା** - *କଳା:* (ବି.) : ଗୋଟିଏ ପାର୍ଶ୍ୱରେ ଫୁଟା ବା ବନ୍ଧ ଥିବା ଜଳାଶୟ

**ଆଡଛଡ଼ା** - *କନ୍ଧ:* (ଅ.) : ଦୂରେଇ ରହିବା, ଅନ୍ତରୀଣ

**ଆଡପ** - *ଢେ:* (ବି.) : ଗୁଣ୍ଡିଚା ମଣ୍ଡପ

**ଆଡପଣତ** - *ସଂ:* (ବି.) : ପିନ୍ଧାଲୁଗାର କାନି

**ଆଡପାଗଳା** - *ଭ:* (ବିଂ.) : ଅଳ୍ପ ମୁଣ୍ଡଖରାପ

**ଆଡ ପାଣିଆ** - *ସଂ:* (ବି.) : ଅଳ୍ପ ପାଣିଆଁ

**ଆଡବାଙ୍କ** - *ସଂ:* (ବିଂ.) : ଅଙ୍କବଙ୍କା

**ଆଡମାଲି** - *ସୁନ:* (ବି.) : ଆଲମାରି

**ଆଡରୁ** - *ନବ:* (ବି.) : ଔରସରୁ, ଗର୍ଭରୁ

**ଆଡହେବା** - *ନବ:କଳା:* (କ୍ରି.) : ପାଖେଇ ଯିବା, ଘୁଞ୍ଚିଯିବା, ଆଡେଇ ହେବା, ଆଡୁଆଳକୁ ଯିବା

**ଆଡା** - *ସୁନ:* (ବି.) : ଆଡମ୍ବର

**ଆଡି** - *କଳା:* (ବି.) : ଫୁଡା, ହିଡ, ଆଖୁ କରାଯାଇଥିବା ଜମିର ଏକ ନିର୍ଦ୍ଦିଷ୍ଟ ପାର୍ଶ୍ୱ, ଲାରିଘର, ଧାନ୍ୟାଦି ଶସ୍ୟକୁ ଜଗିବା ପାଇଁ ଖଳାରେ ଥିବା ଛୋଟିଆ ଘର

**ଆଡିକୁ ଗଡିଆ** - *ଭ:* (ବିଂ.) : ସତକୁ ମିଛ

**ଆଡିବନ୍ଧ** - *ସଂ:* (ବି.) : ନଦୀ ବା ନାଳ ଉପରେ ଦିଆଯାଇଥିବା ବନ୍ଧ

**ଆଡିବା** - *ନବ:* (କ୍ରି.) : ଅଟକାଇବା

**ଆଢୁ** - *କୋ:* (ବି.) : ପ୍ରତିବନ୍ଧକ

**ଆଢୁଆ ମାରିବା** - *କୋ:* (କ୍ରି.) : ବାଧିଲାଭଳି କଥା କହିବା

**ଆଢୁଆ ହେବା** - *ନବ:* (କ୍ରି.) : ଲୁଚିବା

**ଆଡୁକା** - *ଗ୍ରା:* (ବି.) : ନଡ଼ାକୁ ମୋଡ଼ିକରି ଲମ୍ବା

**ଆଡୁଖା** - *ମା:* (କ୍ରି.) : ଲୁଚିବା

**ଆଡୁସାଡୁ** - *ନବ:* (ଅ.) : ଇଆଡୁ ସିଆଡୁ, ଏଣୁତେଣୁ

**ଆଢେ** - *ରା:* (କ୍ରି.) : ହେଲା, ହୁଏ, ହେବ

**ଆଢେବଙ୍କା** - *ରା:* (ବି.) : ହାଇ ମାରିବା

**ଆଣ୍ଡା** - *କୋ:* (ବି.) : ବିଳାସ, ସମାଗମ

**ଆଡ଼** - *ଅନେ:* (କ୍ରି.ବି.) : ଅନ୍ୟ, ଅପସରି ଯିବା, ଉଠିଯିବା, ଦୂରେଇ ଯିବା, ପାଖ, ପଟ, ତରଫ, ପାଶ୍ୱ, କଡ଼, ଦିଗ, ଓସାର, ପ୍ରସ୍ଥ, ନୈକଟ୍ୟ, ଯୁକ୍ତିର ପକ୍ଷ, ପଣ, ଅନ୍ତରାଳ, ଆଡୁଆଳ, ବାଧା, ପକ୍ଷସମର୍ଥନ, ଆଡୁଖା, ଘରର ବଡ଼ମାନଙ୍କ ପାଇଁ ସମ୍ମାନବୋଧ(ପ୍ରାଚୀନ), ଓସାର, ପ୍ରସ୍ଥ, କଡ଼

**ଆଡୁଖେମ୍‌ଟା** - *ଦେ:* (ବି.) : ନାଚ

**ଆଡୁଖୋଷା** - *ଦେ:* (ବି.) : ସ୍ତ୍ରୀ ଲୋକଙ୍କ କେଶଜୁଡ଼ା

**ଆଡୁଇ୍** - *ଗଦ୍ୟ:* (ବି.) : ମହୁ

**ଆଡୁଜୁଆଳି** - *ଦେ:* (ବି.) : ଜୁଆଳିର ବାଙ୍କୁଳି

**ଆଡୁଧାନ୍** - *କଳା:* (ବି.) : ବାହିଲି ଧାନ, ଛୋଟ ଧାନ

**ଆଡୁନହସା** - *ଦେ:* (ବିଂ.) : ଏକତରଫା

**ଆଡୁମୁହଁ** - *କଳା:* (ବି.) : ଅପଡ଼ ହେବା, ମୁହଁ ଫୁଲେଇବା

**ଆଡ଼ଆଡ଼** - *କୋ:ପଦ୍ୟ:* (ବି.ବିଂ.) : ଅପମାନ ଯୋଗୁ, ସାମନାରେ କଥା କହିବାକୁ ବା ଠିଆ ହେବାକୁ ସଙ୍କୋଚ ବୋଧ କରୁଥିବା

**ଆଡ଼କ** - *ଗ:* (ବି.) : ଶସ୍ୟ ମାପିବାର ପରିମାଣ ପାତ୍ର

**ଆଡ଼କଣ୍ଡା** - *ଗ:* (ବି.) ଶଗଡ଼ ଚଳାଇବାବେଳେ ପୋଢ ବଳଦକୁ ପୋଡ଼ିବା କଣ୍ଡା

**ଆଡ଼କା** - *ମା:* (ବି.) : ଆଡ଼େଇଯିବା

**ଆଡ଼କାନି** - *କେନ୍ଦୁ:* (ବି.) : କାନର ଏକ ଅଳଙ୍କାର

**ଆଡ଼କି** - *ସୁ:* (ବି.) : ପ୍ରସ୍ଥ

**ଆଡ଼କୁ ଆଡ଼** - *କ:* (ବି.) : ଥରକୁଥର

**ଆଡ଼କେ** - *ସ:* (ବି.) : ଆଡ଼କୁ

**ଆଡ଼କେରିଲିଆ** - *ସୁ:* (ବିଂ.) : ବଙ୍କା, ତେଢା

**ଆଡ଼ଖୁର** - *ଅନେ:* (ବି.) : ଚାରି କୋଣିଆ ବେତ ତିଆରି ପେଡ଼ି, ଲୁଗା ଆଦି ରଖିବା ପାଇଁ ବ୍ୟବହୃତ ପେଡ଼ି, ପେଟରା, ଚାରି ଶାଶୁଘରକୁ ଯିବାବେଳେ ଝିଅନେବା ଭାର

**ଆଡ଼ଖୁରି** - *ଗ:* (ବି.) : ଗାଈଗୋରୁଙ୍କ ଖୁରି ପ୍ରହାର

**ଆଡ଼ଙ୍ଗା** - *ରା:* (ବି.) : ଆଚାର

**ଆଡ଼ଚାହାଣି** - *ପଦ୍ୟ:* (ବି.) : ବାଙ୍କଚାହାଣି, ଈଷତ୍ ବକ୍ରଦୃଷ୍ଟି, ଅପାଙ୍ଗଦୃଷ୍ଟି

**ଆଡ଼ଛଡ଼ା** - *ଗଞ୍ଜ଼ାମ:ଖୋ:* (ବି.କ୍ରି.ବି°) : ଉଦାସୀନ, ଅଲଗା, ଦୂରେଇ ଯିବା

**ଆଡ଼ଣ** - *ଗ:* (କ୍ରି.) : ଢାଲ କିମ୍ବା ଠେଙ୍ଗା ଦ୍ୱାରା ଶତ୍ରୁଙ୍କୁ ଅଟକାଇବା

**ଆଡ଼ତଦାର** - *ଗ:* (ବି.) : ରାଜଆଦେଶ ପ୍ରାପ୍ତ ବିକ୍ରେତା

**ଆଡ଼ତି** - *ସ°:ଗ:ପଦ୍ୟ:* (ବି.) : ଘରପାଇଟି, ଗୃହକର୍ମ

**ଆଡ଼ତିଆ** - *ଗ:* (ବି.) : ଚାର, ଡଗର

**ଆଡ଼ତିପତ୍ର** - *ସ°:* (ବି.) : ଘରର ନାନା ଛୋଟକାମ

**ଆଡ଼ତେଲ** - *ଗ:* (ବି.) : ପିଠା ତିଆରି ପରେ କଡ଼େଇରେ ବଳିଥିବା ଅବଶିଷ୍ଟ ତେଲ

**ଆଡ଼ପଘର** - *ଗ:* (ବି.) : ଗୁଣ୍ଡିଚାଘର

**ଆଡ଼ପ ମଣ୍ଡପ** - *ସ°:* (ବି.) : ଗୁଣ୍ଡିଚାମଣ୍ଡପ, ଯଜ୍ଞବେଦୀ

**ଆଡ଼ବା** - *ବଉ:* (କ୍ରି.) : ବସାଇବା, ଖେଳିବା

**ଆଡ଼ବାଆଁଶ** - *କ:* (ବି.) : ଧାନ ମାପିବା ବାଉଁଶ

**ଆଡ଼ବାଗ** - *ପଦ୍ୟ:* (ବି.) ପ୍ରଷ୍ଠ ବା ଚୌଡ଼ାବାଗ

**ଆଡ଼ବାଗିଆ** - *କ:* (ବି°.) : ପ୍ରଷ୍ଠପଟରେ, ଅବାଗିଆ

**ଆଡ଼ବାଙ୍କ** - *କ:ଦେ:* (ବି°.) : ସାମାନ୍ୟ ବଙ୍କା, ବଙ୍କା ହୋଇ ଉପରକୁ ଉଠିବା

**ଆଡ଼ବୁଝା** - *ସୁ:* (ବି°.) : ଅବୁଝା

**ଆଡ଼ଭାରିଆ** - *କ:ଭ:* (ବି°.) : ବାହାଘର ସାମଗ୍ରୀ ନେଇଯିବା ଲୋକ

**ଆଡ଼ମଇ** - *ସ:* (ବି.) : ଚାଷୋପଯୋଗୀ କାଠର ଜିନିଷ

**ଆଡ଼ମାନ୍ସୁ** - *ଗ:* (ବି.) : ଅଗ୍ରୀମ

**ଆଡ଼ମୁହାଁ** - *ସୁ:* (ବି°.) : ବଙ୍କାମୁହା

**ଆଡ଼ମୋଡା** - *ସ°:* (କ୍ରି.ବି°.) : ଅଳସ ଭାଙ୍ଗିବା

**ଆଡ଼ରୁଷା** - *ପଦ୍ୟ:* (ବି.) : ଅଳ୍ପ କୋପ, ଛଳ, ଅଳ୍ପମାନ, ଅବ୍ୟକ୍ତ ଅଭିମାନ

**ଆଡ଼ସରା** - *ସୁ:* (ବି.) : ଗୁହାଳର ଅରଗଡ଼ା

**ଆଡ଼ହସା** - *ବା:* (ବି.) : ମୁରକିହସ

**ଆଡ଼ହେବା** - *ପଦ୍ୟ:କୋ:* (କ୍ରି.) ଆଡ଼େଇଯିବା, ପାଖେଇଯିବା, ସ୍ଥାନାନ୍ତରକୁ ଯିବା, ଦୂରରେ ରହିବା, ବାଟ ଛାଡ଼ିବା, ଘୁଞ୍ଚିଯିବା

**ଆଡ଼ାକୁ** - *ବା:* (ବି.) : ଦିଗକୁ

**ଆଡ଼ାଚୌଡ଼ା** - *ପୁ:* (ବି.) ଆଡ଼ମ୍ବର, ବାଗବରଗ

**ଆଡ଼ି** - *ଦେ:* (ବି.ବି°.) : ବିଲ, ହିଡ଼, ହୁଡ଼ା, ଅଞ୍ଚଳ, ଶିକାର ପାଇଁ ଲୁଚି ରହିବା ସ୍ଥାନ, ପୋଖରୀ ହୁଡ଼ା, ବନ୍ଧ, ଛେକି ହେବା, ବାଧା ଉପୁଜାଇବା, ଅବଜ୍ଞା କରିବା, ଶିକାରୀ ଯେଉଁଠି ଲୁଚି ରହି ଶିକାର କରିଥାଏ, ବନ୍ଧ, ଶତ୍ରୁତା, ଶିକାର, ଏକ ମଧୁର ମାଛ

**କଥା ମୋଡ଼ିବା** - *ଖୋ:* (କ୍ରି.) : କଥା ବଦଳେଇ ଦେବା

**କଥା ରହିବା** - *ପଦ୍ୟ:* (ବି.) : ଉପଦେଶ ବା ଅନୁରୋଧ ପାଳିତ ହେବା, ଭବିଷ୍ୟତକୁ ସୁନାମ ବା ଦୁର୍ନାମ ରହିବା, ଦୁଇଜଣଙ୍କ ମଧ୍ୟରେ ଜବାବ ସ୍ଥିର ହେବା

**କଥାରେ ଗଣ୍ଠିଦେବା** - *ସ:* (ବି.) : କଥାକୁ ଦୃଢ଼ କରି ଧରିବା

**କଥାରେ ବାଟୁଳି ନବାଜିବା** - *ସ:* (ବି.) : ମଜେଇ ସଜେଇ କଥାକହିବା, ଅନର୍ଗଳ କହିଯିବା

**କଥାରେ ଭାସିଯିବା** - *ସ:* (ବି.) : କଥାକୁ ଅନ୍ଧଭାବେ ସମର୍ଥନ କରିବା

**କଥା ଲିକ୍ ହେବା** - *ସ:* (ବି.) : ଗୁପ୍ତକଥା ପ୍ରକାଶ ପାଇଯିବା

**କଥାଲୁ** - *ଚଉ:* (ବି°.) : ଗପୁଡ଼ି

**କଥାଶୁନା** - *ସ:* (ବି.) : ନିନ୍ଦା ଅପମାନ ହେବା

**କଥିତ** - *ପଦ୍ୟ:* (କ୍ରି.ବି°.) : ବର୍ଣ୍ଣିତ, ଉଚ୍ଚାରିତ

**କଦ୍** - *ଗଦ୍ୟ:* (ବି.) : ଉଚ୍ଚତା

**କଦ୍‌ବା** - *ମ:* (କ୍ରି.) : କେବେକେବେ

**କଦ୍‌ରା** - *ମା:ସୁ:* (ବି.ବି°.) ଖାଇ, ଅଳ୍ପସୁଆମୀ

**କଦ୍‌ରିଆ** - *କଳା:* (ବି°.) : ଅଳ୍ପସୁଆ

**କଦ୍‌ରେନ୍** - *ଅ:* (ବି°.) : ଅଳ୍ପସୁଆ ସ୍ତ୍ରୀ ଲୋକ

**କଦ୍‌ଲ, କଦେଲ୍** - *କଣ:* (ବି.) : କଦଳୀ

**କଦଚିତ୍** - *ପଦ୍ୟ:* (ଅ.) : କେବେ

**କଦବଦ** - *କ:* (ବି.) : ଅତିକଷ୍ଟ ଓ ଯନ୍ତ୍ରଣା ପାଇବ

**କଦମ୍** - *ଅନେ:* (ବି.) : କଦମ୍ବ ଫୁଲ, କଦମ୍ବ ଗଛ, ପାହୁଣ୍ଡ, ପାଦ, ଘୋଡ଼ାର ଏକ ପ୍ରକାର ଚାଲି, ବୃକ୍ଷ ବିଶେଷ

**କଦମଝାଡ଼** - *ଯା:* (ବି.) : ବାଉଁଶରେ ଗଛପରି ବନ୍ଧା ବାଣ

**କଦମା** - *ଢେ:ପଦ୍ୟ:* (ବି.) : ଚୁଡ଼ାରେ ତିଆରି ଖାଦ୍ୟ, ଘଷାଚୁଡ଼ା, ମିଷ୍ଟ ଖାଦ୍ୟଦ୍ରବ୍ୟ ବିଶେଷ, ଦାମୁଡ଼ି, ତରୁଣ

**କଦମ୍ବ** - *କ:ଢେ:ପଦ୍ୟ:ଦେ:* (ବି.) : ଏକ ବୃକ୍ଷର ନାମ, ବର୍ଷାକାଳରେ ଫୁଟିବା ଲେମ୍ବୁ ପରି ଚତୁର୍ଦ୍ଦିଗରେ କେଶର ବିଶିଷ୍ଟ ଗୋଲାକାର ଫୁଲ ଓ ତାହାର ଗଛ, ନୀପ ବୃକ୍ଷ

**କଦର୍** - *ପଦ୍ୟ:ସୁ:* (ବି.ବି°.) : ମର୍ଯ୍ୟାଦା, ସମ୍ମାନ, ଉପାୟ, କୌଶଳ, ସୁଯୋଗ, ଖଞ୍ଜା, ରହସ୍ୟ, ମଇଳା

**କଦର୍ଥ** - *ପଦ୍ୟ:* (ବି.) : ଭଲ ଅର୍ଥକୁ କୁତ୍ସିତ ଅର୍ଥ କରିବା

**କଦର୍ଥନା** - *ଗଦ୍ୟ:ଅ:* (ବି.) : ଯନ୍ତ୍ରଣା

**କଦର୍ଯ୍ୟ** - *ପଦ୍ୟ:* (ବି°.) : କୁତ୍ସିତ, ନୀଚ, ଲୋଭୀ, ଜଘନ୍ୟ

**କଦଳୀକେରା** - *କଳା:* (ବି.) : କଦଳୀକେରା ନାମକ ଲମ୍ବା ଆମ୍ବବିଶେଷ

**କଦଲେଇବା** - *ଗ:* (କ୍ରି.) : ହଲାଇବା

**କଦଳିଆ** - *ଗଦ୍ୟ:* (ବିଂ.) : ସୁଗଠିତ

**କଦଳୀ** - *ଢେ:ପଦ୍ୟ:* (ବି.) : ରମ୍ଭାଫଳ

**କଦଳୀୟା ଚମ୍ପା** - *ନ:* (ବି.) : ଏକ ଧାନର ନାମବିଶେଷ

**କଦାକାର** - *କେ:* (ବିଂ.) : କଦର୍ଯ୍ୟ, କୁରୂପ

**କଦାକାଳେ** - *କ:* (କ୍ରି.ବିଂ.) କୌଣସି ସମୟରେ

**କଦାଚ** - *ପଦ୍ୟ:* (ଅ.) : କଦାଚିତ୍, କେବେ କେତେବେଳେ ହେଲେ, କଦବା

**କଦାପି** - *ପଦ୍ୟ:* (ଅ.) : କେବେହେଁ, କେଭେଁ, କୌଣସି

**କଦାଲ** - *ନବ:* (ବି.) : କୋଡ଼ିକି

**କଦାଲ୍‌** - *ମ:* (ବି.) : କୋଦାଳ

**କଦିଳ** - *ଗଜ:କ:ମ:* (ବି.) : କଦଳୀ

**କଦୀଳ ବାସୁଙ୍ଗା** - *ବ:* (ବି.) : କଦଳୀ ଗଛର ଶୁଖିଲା ଖୋଳପା ବା ପଚ

**କଦୁ** - *ପଦ୍ୟ:* (ବି.) : ଲାଉ, ତୁମ୍ବୀ, ଅଲାବୁ

**କଦେଇବା** - *ସ:* (କ୍ରି.) : ମାଟି ପାଣି ମିଶି ଭଲ କାଦୁଅ ହେବା

**କଦେଲ** - *ସୁବ:ସୁ:ସ:* (ବି.) : କଦଳୀ

**କଦୋ** - *ଝ:* (ବି.) : ଏକ ଶୁଆଁର ନାମ

**କଧରିବା** - *ବ:ଅ:* (କ୍ରି.) : ହେଳା କରିବା, ଅଳସୁଆମି, ସତହେବା

**କନ୍‌** - *ବର:କୋ:କନ୍ଧ:* (ବି.ଅ.) : କୋଣ, କେଉଁଠି, କିଏ

**କନ୍‌କନାବା** - *ସ:* (କ୍ରି.) : ବେଶୀ ଦରଜ ହେବା

**କନ୍‌କନି** - *ସୁ:* (ବିଂ.) : ଥଣ୍ଡା

**କନ୍‌କନିଆ** - *କଳା:* (ବିଂ.) : ଦେହଥରା, ଅପେକ୍ଷାକୃତ ଅଧିକ

**କନ୍‌କନିଆଁ** - *ବ:* (ବିଂ.) : ଶୀତର ପ୍ରାଦୁର୍ଭାବ ବା ପ୍ରକୋପ

**କନ୍‌କା** - *ସୁବ:* (ବି.) : ଆୟୁର୍ବେଦିକ ଔଷଧ, ଏହି ମଞ୍ଜି ଝାଡ଼ା ହେବାପାଇଁ ବ୍ୟବହାର ହୁଏ, ବାଉଁଶର ଶାଖା ବା ଛୋଟ କଣି

**କନ୍‌ଘର** - *କନ୍ଧ:* (ବିଂ.) : ଈଷାଣ ଘର

**କନ୍‌ଛି** - *କଳା:* (ବି.) : ହାଣ୍ଡି, ଭାଣ୍ଡ, ମୃଣ୍ମୟ ପାତ୍ର

**କନ୍‌ଠେକେ ଯିବୁ** - *ମ:* (କ୍ରି.) : କେଉଁଠାକୁ ଯିବୁ

**କନ୍‌ତର୍‌** - *ସୁବ:* (ବି.) : କଳନ୍ତର, ସୁଧ

**କନ୍‌ପାଟିଆ** - *ବ:* (କ୍ରି.) : କାନମୂଳରେ ମାରିବା

**କନ୍‌ସିରି** - *ବର:* (ବି.) : ଶାଢ଼ି ବୁଣିବାବେଳେ ଶାଢ଼ିକୁ ଟାଣି ଧରିବା ପାଇଁ ବ୍ୟବହୃତ ଯନ୍ତ୍ର

**କନକ** - *ଢେ:* (ବି.) : ସୁନା

**କନକ୍‌ବତର୍‌** - *କଳା:* (ବିଂ.) : ଧାନ ପାଚିକରି ଅଧିକ ଶୁଖିଯାଇ ନ ଥିବ ଅବସ୍ଥା

କନକନ - *ଅନେ:* (ବିଂ.ଅ.) : ବ୍ୟାକୁଳ, ଚଞ୍ଚଳ, ଅସ୍ଥିର, ଚକିତ, ତ୍ରସ୍ତ, ପଶୁର ଭୟ ମିଶ୍ରିତ, ଅସ୍ଥିର, ତରକା

କନକନିଆଁ - *ଭ:* (ବିଂ.) : ସୁନ୍ଦର ଚେହେରା ବିଶିଷ୍ଟ

କନଘୁଚିଆ - *ସୁବ:* (ବିଂ.) : କଣ ଠେସା, କଣ ହୋଇ ରହିଥିବା ସ୍ଥାନ

କନମୂଳ - *ଜ:* (ବି.) : କନ୍ଦମୂଳ

କନରା - *ପଦ୍ୟ:* (ବି.) : ବିଲରେ ଧାନସଙ୍ଗେ ଉଠିବା ଶୁଆଁପରି ଏକଜାତୀୟ ଘାସଗଛ

କନହାଁ - *ସୁବ:* (ବି.) : କଣା, ଛିଦ୍ର

କନା - *ଅନେ:* (ବି.) : ଛିଣ୍ଡା ଲୁଗା, କନ୍ଥା, ବସ୍ତ୍ର, ଗଛର କେନା

କନା କତରା - *ଅ:* (ବିଂ.) : ଛିଣ୍ଡା କନା

କନାଚି - *ସୁବ:* (ବି.) : ଏକ ପ୍ରକାର ମାଛ

କନାଡ଼ି - *କୋ:* (ବି.) : ବିଭିନ୍ନ ଦିଗରୁ ପାଣି ଗଡୁଥିବା ଜମି

କନି - *ବା:ସ:ସୁ:ନବ:* (ବି.) : କଲି, କଣି, ମଞ୍ଜିର ଭଙ୍ଗା ଅଂଶ, କୋଣିଆ

କନିଆ - *ବା:ପଦ୍ୟ:ଦେ:* (ବି.) : ବିବାହଯୋଗ୍ୟା ପାତ୍ରୀ, କୁମାରୀ, ମଙ୍ଗଳପାକ ଠାରୁ ବିବାହ ଶେଷ ପର୍ଯ୍ୟନ୍ତ ଝିଅକୁ କନ୍ୟା କହନ୍ତି, ଝିଅ, କୁଆଁରୀ

କନିଆଝିକା - *ମା:* (ବି.) : ବିବାହ ପାଇଁ ଝିଅକୁ ଝିକିନେବା

କନିଆ ପିଲା - *କୋ:* (ବି.) : ନବବଧୂ

କନିଆମାଇପ - *ଗଦ୍ୟ:ବା:* (ବି.) : କନ୍ୟା ବୟସର ପତ୍ନୀ, ଦ୍ୱିତୀୟା ପତ୍ନୀ

କନିଆରି - *କ:* (ବି.) : ହଳଦିଆ ଫୁଲ

କନିଆରୀ - *ବା:ପଦ୍ୟ:* (ବି.) ଯୌବନପ୍ରାପ୍ତିର ପୂର୍ବାବସ୍ଥାରେ ଥିବା ଝିଅ, ବିବାହ ଉପଯୁକ୍ତା ବାଳିକା

କନିଆହାରୀ - *କଳା:* (ବି.) : ବିବାହଯୋଗ୍ୟା କନ୍ୟା

କନିଆଁ - *ଅନେ:* (ବି.) : ସ୍ତ୍ରୀ, ପତ୍ନୀ, ବୋହୂ

କନିଆଁ କରିଯିବା - *କନ୍ଧ:* (ବି.) : ନିର୍ବନ୍ଧ

କନିଆଁ ଦେଖା - *ଗୌ:* (ବି.) : ଝିଅ ଦେଖା

କନିଆଁ ମାଆ - *ବା:* (ବି) : ସାବତ ମାଆ

କନିଆଁ ହାରୀ - *ନୂ:* (ବି.) : ନବବଧୂ

କନିଶିରି - *ଅ:ପଦ୍ୟ:ଛ:* (ବି.) : ଏକଶାଗ, ଅଯତ୍ନୋତ୍ପନ୍ନ ଶାକବିଶେଷ, ଶାଗ ବିଶେଷ, ଘାସଜାତୀୟ

କନୁଆଁ - *ନୂ:* (ବି.) : କୁଣିଆ

କନେଆଁ - *ମ:* (ବି.) : କନିଆଁ

କନେଇଗୁଡ଼ି - *ଗ:* (ବି.) : ଓଲେଇ ଗାଈକୁ ଛନ୍ଦି ଖୀର ଦୋହିଁବା

କନୈଆ - *ଗଦ୍ୟ:ଅ:* (ବି.) : ଏକ ଶାଗ

କଣ୍ଡ - *ଗୋ:କନ୍ଧ:* (ବି.) : ଏକମୁନିଆଁ ଅସ୍ତ୍ର କୁନ୍ତ, କୋଳଥ

**କତର** - *ଦେ୍ୌ:* (ବି.) : ସୁଧକଳନ୍ତର, ସରି

**କତରିଆ** - *କଳା:* (ବି.) : କଳନ୍ତରିଆ, କଳନ୍ତର ପାଇଁ

**କତାର** - *କୋ:* (ବି.ବିଂ.) : ଅଭାବ, କାନ୍ତର ଦୁଷ୍ପ୍ରାପ୍ୟ

**କନ୍ଥା** - *ଅନେ:* (ବି.) : କନ୍ଥା, ଶେଯ ବା ଆଚ୍ଛାଦନ ବିଶେଷ, କନ୍ଥା ପଟିଆପାରି ଶୋଇବା

**କନ୍ଥାକମଙ୍କ** - *କ:* (ବି.) : ବିଛଣା ପତ୍ର, ଆସବାବପତ୍ର

**କନ୍ଥା ସିଆଁ** - *ଦେ୍ୌ:* (ବି.) : ଯେ କନ୍ଥା ସିଲାଇ କରେ

**କନ୍ଦମୂଳ** - *ଅନେ:* (ବି.) : ମାଟି ତଳୁ ଉତ୍ପନ୍ନ ଏକ ମିଠା ଫଳ, ପରିବା ଯୋଗ୍ୟ ମୂଳ ବିଶେଷ, ବଣୁଆ ମିଠାକନ୍ଦା, ମିଷ୍ଟ ଖାଦ୍ୟମୂଳ ବିଶେଷ, ଗୟା ଆଳୁ

**କନ୍ଦର** - *ପଦ୍ୟ:ସୁ:* (ବି.ବିଂ.) : ଗୁହା, ଦରୀ, ଦୁଇ ପର୍ବତର ମଧ୍ୟସ୍ଥିତ ପଥ, କ୍ରନ୍ଦନଶୀଳ

**କନ୍ଦର୍ପ** - *ପଦ୍ୟ:* (ବି.) : କାମଦେବ, ଚିତ୍ତଜ, ମଦନ, ପୁରୁଷର ବୀର୍ଯ୍ୟ

**କନ୍ଦଳିଆ** - *ଅ:* (ବିଂ.) : କଳିହା, ଝଗଡ଼ା ସୃଷ୍ଟିକାରୀ

**କନ୍ଦା** - *ଅନେ:* (ବି.) : ଖଜୁରିକନ୍ଦା, କଥା କହିବାରେ ଯେ ଅସମର୍ଥ, ଶେତା, କନ୍ଦମୂଳ, ତାଳ, ଖଜୁରୀ, ନଡ଼ିଆ ଗଛର କୋମଳାଗ୍ର, ମୂଳ, ମୂକ, ଅଙ୍ଗୁଳି ପ୍ରଭୃତି ସନ୍ଧିସ୍ଥାନ ଜାତ କ୍ଷତରୋଗ ବିଶେଷ, ନଡ଼ିଆ ପ୍ରଭୃତି ବୃକ୍ଷର ଅଗ୍ରସ୍ଥ କୋମଳ ଅଂଶବିଶେଷ, ଖଜୁରି କନ୍ଦା

**କନ୍ଦାକଟା** - *ଅ:* (ବି.) : କାନ୍ଦବୋବାଳି

**କନ୍ଦାଲଇ** - *କନ:* (ବି.) : ଏକ ପ୍ରକାର ଧାନର ନାମ

**କନ୍ଦି** - *ଅନେ:* (ବି.) : ଗଳିସ୍ଥାନ, ସାହିର ଗଳି, ସରୁ ରାସ୍ତା

**କନ୍ଦୁକ** - *ପଦ୍ୟ:* (ବି.) : ପେଣ୍ଡୁଖେଳିବାର ଗୋଲା, ବଲ୍

**କନ୍ଦେଇ** - *କଳା:* (ବି.) : ବଣ ପିଆଜ

**କନ୍ଦେନ୍ ରାନୀ** - *କଳା:* (ବି.) କନ୍ଧ ସଂପ୍ରଦାୟର ଲୋକଦେବୀ ବିଶେଷ

**କନ୍ଦ୍ କନ୍ଦ ନିଆ** - *ସୁ:* (ବି.) : କାନ୍ଦ କାନ୍ଦ, କାନ୍ଦୁଣୁ ମାନ୍ଦୁଣୁ

**କନ୍ଦନା** - *କନ:* (କ୍ରି.) : କାନ୍ଦିବା

**କନ୍ଧ** - *ପଦ୍ୟ:ଢେ:* (ବି.) : କାନ୍ଧ, ଆଦିବାସୀ ଜାତିବିଶେଷ

**କନ୍ଧ୍ୱନି** - *ଦେ୍ୌ:* (ବି.) : କନ୍ଧ ମାଇପି

**କନ୍ଧମାହାଲ୍** - *ସଂ:* (ବି.) : କନ୍ଧମାଳ ଅଞ୍ଚଳ

**କନ୍ଧରା** - *ସଂ:* (ବି.) : ବଣୁଆ ଜାତି

**କନ୍ଧା** - *ଯା:* (ବିଂ.) : ଶାରଦ ଧାନ

**କନ୍ଧାନ** - *କଳା:* (ବି.) : କନ୍ଧ ସଂପ୍ରଦାୟଙ୍କ ଅଞ୍ଚଳ, କନ୍ଧମାଳ

**କନ୍ଧାର୍ ମାଏଟ୍** - *ନୁ:ସ:* (ବି.) : ଏକ ପ୍ରକାର କଳା ମାଟି

**କନ୍ଦେଲ୍** - *କଳା:* (ବି.) : କଦଳୀ

**କନ୍ୟାକ୍** - *ଗଦ୍ୟ:* (ବି.) : ବିଦେଶୀ ପାନୀୟ

**କନ୍ୟାଭ୍ରୁଣ** - *ସଂ:* (ବି.) : ଗର୍ଭରେ ଥିବା ଶିଶୁକନ୍ୟା, ଜନ୍ମି ନଥିବା ଝିଅଛୁଆ

**କପ୍‌ଟା** - *ଅନେ:* (ବି.) : ବସ୍ତ୍ର, କପଡ଼ା, ଶାଢ଼ୀ

**କପ୍‌ଟା ଇତା** - *ସ:* (କ୍ରି.) : ଲୁଗାପଟା

**କପ୍‌ନି** - *କନ୍ଧ:* (ବି.) : କୌପିନ

**କପ୍‌ଲାଇବା** - *ସୁ:* (କ୍ରି.) : ପାକୁଳି କରିବା

**କପ୍‌ସିବା** - *କଳା:* (କ୍ରି.) : ଚୁପପଡିବା, ସଂପୂର୍ଣ୍ଣ ନିରବ ରହିବା

**କପଚ** - *ଛ:* (ବି.) : କବଚ

**କପଟ** - *ସୁ:ପଦ୍ୟ:* (ବିଂ.) : ଛଳନା, ଶଠତା, ବଞ୍ଚନା, ମାୟା, ମିଥ୍ୟାବ୍ୟବହାର

**କପଟିନୀ** - *ପଦ୍ୟ:* (ବି.) : ଗନ୍ଧଦ୍ରବ୍ୟ ବିଶେଷ

**କପଡ଼ା** - *ଅନେ:* (ବି.) : ଲୁଗା, କପଟା, ଶାଢି, କନା, ବସ୍ତ୍ର

**କପତ** - *ଛ:ବା:* (ବି.) : କପୋତପକ୍ଷୀ

**କପନା** - *ପୁ:* (ବି.) : ବାଉଁଶ ତିଆରି ମଞ୍ଚା, ଯାହା ଉପରେ ଠିଆ ହୋଇ ଟେଣ୍ଡାରେ ପାଣି ବୁହାଯାଏ

**କପବୋର୍ଡ** - *ସଂ:* (ବି.) : କାନ୍ଥରେ ଥିବା ଆଲମାରୀ

**କପର** - *ନବ:କଳା:ବ:* (ବି.) : ମଇ, କର୍ଷିତ ଜମିକୁ ସମତଳ କରୁଥିବା ଉପକରଣ

**କପା** - *ଢେ:ପଦ୍ୟ:* (ବି.) : ବୃକ୍ଷ, ତୁଳା, ସମୟ ସମୟରେ ଦେଖାଯିବା ନଖର ଝିପ୍ ଝିପ୍ ଧଳାଚିହ୍ନ

**କପାଇବା** - *ନବ:* (କ୍ରି.) : ଅଭିମାନ କରିବା

**କପାଖାଇ** - *ପଦ୍ୟ:* (ବି.) : ଯେଉଁ ଯନ୍ତ୍ର ଦ୍ୱାରା ମଞ୍ଜିଯୁକ୍ତ କପାଫୁଟରୁ ମଞ୍ଜି ଅଲଗା କରାଯାଏ

**କପାଟ** - *ଛ:ଢେ:କଳା:ନବ:* (ବି.) : କବାଟ

**କପାତୁଳା** - *ପଦ୍ୟ:* (ବି.) : କପାଠାରୁ ବାହାରିବା ତୁଳା

**କପାଫୁଟ** - *ପଦ୍ୟ:* (ବି.) : କପାବକଡ଼ା ମଧ୍ୟରେ ଥିବା ମଞ୍ଜିଯୁକ୍ତ କପା

**କପାଳ** - *ଅ:ଖୋ:ପଦ୍ୟ:ଢେ:* (ବି.) : ଭାଗ୍ୟ, ମସ୍ତକର ଅସ୍ଥି, ଖପୁରୀ, ଲଲାଟ ଦେଶ, କଳସ ଅର୍ଦ୍ଧାଂଶ, ମୁଣ୍ଡ ଓ ଆଖିର ମଧ୍ୟାଞ୍ଚଳ

**କପାଳଫଟା** - *ପଦ୍ୟ:* (ବିଂ.) : ହତଭାଗ୍ୟ, କର୍ମହୀନ

**କପାଳ ରେଖା** - *ଖୋ:* (ବି.) : କପାଳରେ (ମଥାରେ) ଦେଖା ଯାଉଥିବା ଭାଙ୍ଗ ବା ଗାର

**କପାଳିଆ** - *ଖୋ:କ:* (ବିଂ.) : ଭାଗ୍ୟବାନ

**କପାସିଆ** - *ପଦ୍ୟ:* (ବି.) : ଏକପ୍ରକାର ଗୁଳ୍ମଜାତୀୟ ବୃକ୍ଷ

**କପି** - *ଢେ:ଦେ:ପଦ୍ୟ:* (ବି.) : ମାଙ୍କଡ଼, ରକ୍ତଚନ୍ଦନ, ବରାହ, ପିଙ୍ଗଳବର୍ଣ୍ଣ, ନକଲ, ଅନ୍ୟର ଅନୁକରଣ

**କପିକା** - *ଦେ:* (ବି.) : ନୀଳ ବେଗୁନିଆ ଗଛ

**କପୁକୁସା** - *କଣ:* (ବି.) : ବରଡ଼ା ଶାଗ ତରକାରି

**କପୋତ** - *ଦେ:ପଦ୍ୟ:ଛେ:* (ବି.) : ପାରା, କାପତା ଚଢେଇ

**କପୋଳ** - *ପଦ୍ୟ:* (ବି.) : ଗଣ୍ଡସ୍ଥଳ, ଗାଲ

**କପ୍ତାନ** - *ସଂ:* (ବି.) : କ୍ୟାପ୍‌ଟେନ

**କଫ** - *ପଦ୍ୟ:ଦେ:* (ବି.) ଶରୀରସ୍ଥ ଧାତୁବିଶେଷ, ସର୍ଦ୍ଦି, ଶ୍ଳେଷ, ଶ୍ଳେଷ୍ମା

**କଫି** - *ଦେ:* (ବି.) : ପ୍ରଚୁର, କଫି ମଞ୍ଜିରୁ ପ୍ରସ୍ତୁତ ପାନୀୟ

**କବ୍‌କେଇବା** - *କଳା:* (କ୍ରି.) : ବେଙ୍ଗଳାରେ ପଡ଼ିଥିବା ଧାନକୁ ଉଂଖାରିବା, ଝାଡ଼ିବା, ଉଖୁଣେଇବା

**କବ୍‌ଜ** - *ଛେ:* (ବି.) : କଷା ଝାଡ଼ା

**କବ୍‌ଜାରେ ରହିବା** - *ସଂ:* (କ୍ରି.ବି.) : ଅଧୀନରେ ରହିବା

**କବ୍‌ତୀ** - *ଗା:* (ବି.) : କପୋତୀ, କପୋତ

**କବ୍‌ରା** - *ନୂ:ସ:କଣ:* (ବିଂ.ବି.) : ଅନେକ ରଙ୍ଗର ସମାହାର, ଯାହାର ଶରୀରରେ ଧଳା ଛଉ ଥାଏ, ଧଳାଛଉ

**କବ୍‌ରା ଚିତ୍‌ରା** - *ନୂ:* (ବିଂ.) : ବିଭିନ୍ନ ରଙ୍ଗ ବିଶିଷ୍ଟ

**କବଚ** - *ଛେ:* (ବି.) : ସାଂକୁ

**କବଟା** - *ଅନେ:* (ବିଂ.ବି.) : ଛିଣ୍ଡାଲୁଗା, ଚିରା କନା, ଫଟୁଆ, ପିନ୍ଧାଲୁଗା

**କବର** - *ଛେ:ପଦ୍ୟ:* (ବି.ବିଂ.) : ସମାଧି, ମୁର୍ଦାର ପୋତିବାର ଗାତ, ମୃତ ଶରୀରକୁ ଭୂଇଁରେ ପୋତିବା

**କବରଖାନା** - *ପଦ୍ୟ:* (ବି.) : ସମାଧିକ୍ଷେତ୍ର, ଶବ ପୋତିବାର ନିର୍ଦ୍ଦିଷ୍ଟ ସ୍ଥାନ

**କବରୀ** - *ପଦ୍ୟ:ଛେ:* (ବି.) : କେଶବିନ୍ୟାସ, ବେଣୀ, ଜୁଡ଼ା, ଖୋସା

**କବଲା** - *ପଦ୍ୟ:ଛେ:ଭ:* (ବି.) : ଭୂମି ଆଦିର ବିକ୍ରୟ ପତ୍ର, ବେଲ୍‌ପତ୍ର, ଦଲିଲ୍

**କବଳେଇ କରି** - *ମ:* (ବି) : ଧମକେଇ କରି

**କବଳ** - *ପଦ୍ୟ:* (ବି.) : ଗ୍ରାସ, ଗିଳିବା, କୌଶଳରେ ଅଧିକାର ବା ଦଖଲ

**କବାଟ** - *ପଦ୍ୟ:ଛେ:* (ବି.) : ଦୁଆର, କପାଟ, ଦୁଆର ତାଟି

**କବାଟଫାଳିଆ** - *ଗଦ୍ୟ:* (ବିଂ.) : ଚଉଡ଼ା, ଓସାରିଆ

**କବାଡିଆ** - *କ:* (ବି.) ଭଙ୍ଗାଲୁହା, ଅଦରକାରୀ ଜିନିଷକୁ ନେଇ ବ୍ୟବସାୟ କରୁଥିବା ବ୍ୟକ୍ତି

**କବାଡ଼ି** - *ନୂ:କୋ:ଦେ:* (ବି.) : କବାଡ଼ି, ଖେଳ ବିଶେଷ (ଦୁଇ ଦଳ ହୋଇ କିତ୍ କିତ୍ ରାଗ ଧରି ଖେଳାଯାଏ), କାମ କରିବା ଲୋକ, ଖେଳ, ଓଲୁ

**କବାର** - *ଅନେ:* (ବି.) : କାମ, ପାଇଟି, କାର୍ଯ୍ୟ

**କବାରକମ୍** - *ସ:* (ବି.) : କାମଧାମ୍

**କବାର ପାଇଟି** - *ଅ:* (ବି.) : କାମଧନ୍ଦା
**କବାରି** - *ଦେ:* (ବିଂ.) : ହଳିଆ, ମୂଲିଆ
**କବାରିଆ** - *ବୌ:* (ବି.) : କାମିକା
**କବାର୍‌ତୁଣୀ(ନୀ)** - *କଳା:* (ବି.) : ଘରେ କାମକରୁଥିବା ସ୍ତ୍ରୀ ଲୋକ
**କବାର୍‌ବୁତା** - *ସ:* (ବି.) : କାମଧାମ
**କବିଲା** - *ପଦ୍ୟ:ଦେ:* (ବି.) : ପରିବାର, ଭାର୍ଯ୍ୟା
**କବୁତର** - *ଢେ:* (ବି.) : ପାରା
**କଭର** - *ଢେ:ନ:* (ବି.) : ଢାଙ୍କୁଣୀ, ଆବରଣ
**କମ** - *ଚ:* (ବି) : ପରିକା
**କମ୍** - *ବର:ନ:ଦେ:* (ବି.ବିଂ.) : ବାନ୍ଧ, ଅଳ୍ପ ପରିମାଣ
**କମ୍‌ଜିବା** - *କୋ:* (କ୍ରି.) : ଅର୍ଦ୍ଧପକ୍ୱ ଅବସ୍ଥାରେ ଫଳ ଓ ପନିପରିବା ଖରାପ ହୋଇଯିବା
**କମ୍‌କୁରୀ** - *ସୁବ:* (ବିଂ.) : ଦୁର୍ବଳ ହେବା
**କମ୍‌ତମ୍** - *ବୌ:* (ବି.) : ଯାହିତାହି, ନ୍ୟୁନ, ଊଣା
**କମ୍‌ଲା** - *ସ:* (ବି.) : ସାନ୍ତରା
**କମ୍‌ସେକମ୍** - *ନୁ:* (ଅ.) : ଅତିକମ୍‌ରେ
**କମ୍‌ହିଆଁ** - *ବ:* (ବିଂ.) : ପରିଶ୍ରମୀ ବ୍ୟକ୍ତି
**କମକମ** - *ନ:* (ବିଂ.) : କାରୁକାର୍ଯ୍ୟପୂର୍ଣ୍ଣ (କାମ), କମକମିଆ
**କମଡମ** - *ଗ:* (ବି.) : ସୂକ୍ଷ୍ମ କାରୁକାର୍ଯ୍ୟ
**କମଣ** - *ପଦ୍ୟ:* (ବି.) : ଚାଷ ବା ହଳ କରିବା, କୃଷି କର୍ମ
**କମଣି** - *ଜ:* (ବି.) : ଚାଷକାମ
**କମଣ୍ଡଳୁ** - *ପଦ୍ୟ:* (ବି.) ଗଡୁ, ସନ୍ନ୍ୟାସୀମାନଙ୍କର ଜଳପାତ୍ର
**କମତି** - *ପଦ୍ୟ:* (ବି.) : ନ୍ୟୁନତା, ଅଳ୍ପତା
**କମନୀୟ** - *ପଦ୍ୟ:* (ବିଂ.) : ସୁନ୍ଦର, ଚାରୁ, ମଞ୍ଜୁଳ
**କମର** - *ଅନେ:* (ବି.) : ଅଣ୍ଟା, କଟି
**କମରଡା** - *ରା:* (ବି.) : ଅଣ୍ଟାରେ ବାହାରିଥିବା ଘା
**କମରପଟି** - *କେ:* (ବି.) : ବେଲ୍‌ଟ, ଅଣ୍ଟାବନ୍ଧା ପଟି
**କମରପେଟି** - *ଚା:ଭ:* (ବି.) : ଅଣ୍ଟାରେ ବନ୍ଧାଯାଉଥିବା ବେଲ୍‌ଟ
**କମରା ଥାଳି** - *ବୌ:* (ବି.) : ପିତଳ ବଡ଼ ଥାଳି
**କମଲ୍** - *କଳା:ମ:* (ବି.ବିଂ.) : ଗୋରୁଙ୍କ ବେକରେ ଓହଳିଥିବା ଚର୍ମ, କମ୍ବଳ
**କମଲା ଗାଈ ଧାର୍** - *କଳା:* (ବି.) : କଳାହାଣ୍ଡିରେ ପ୍ରବାହିତ ଏକ ନଦୀ
**କମା** - *ଅନେ:* (ବି.) : ତେଲୁଗୁ ବ୍ରାହ୍ମଣ, ରୋଜଗାର, ଅର୍ଜନ, ଦ୍ରାବିଡ଼ ବ୍ରାହ୍ମଣ, ଗାତ, ଖାଲ
**କମାଣ** - *ଢେ:ଦେ:ପଦ୍ୟ:* (ବି.) : ତୋପ, ପୋଡୁ ଚାଷ ପାଇଁ ଜଙ୍ଗଲ ଜମି, ଧନୁ
**କମାଣ କରିବା** - *ପୁ:* (କ୍ରି.ବି) : ପୋଷା ମନେଇବା ଓ ଲଢ଼ିବାପାଇଁ ଶିଖାଇବା

**କମାଣ ଘର** - *କେନ୍ଦୁ:* (ବି.) : ଶୁଦ୍ଧିଘର

**କମାଣି** - *ଅନେ:* (ବି.) : ରୋଜଗାର, ଆୟ, ବେହେଲା ଆଦି ବଜାଇବାର ଧନୁକାକର ଫଳା, ବନ୍ଧୁକ ନଳୀରେ ବସିବାର ଲୁହା ଆଦିର ମୁଦିଆ, କୃଷିକର୍ମ, ନଖଆଦି କାଟି ଅଳତାଦେଇ ହସ୍ତ ପଦାଦିକୁ ଶୋଭାଯୁକ୍ତ କରିବା

**କମାଣିହାର** - *ଗ୍ରା:* (ବିଂ.) : ରୋଜଗାରିଆ

**କମାଧମା** - *କଳା:* (ବି.) : ଆୟ, ଉପାର୍ଜନ

**କମାନ** - *ଗଞ୍ଜ:* (କ୍ରି.) କର୍ମଚାରୀଙ୍କ ସରକାରୀ ଗସ୍ତ

**କମାନି** - *ଅନେ:* (ବି.) : ଆୟ, କମେଇବା, ଚାଷ କରିବା, ବସନ୍ତ ରୋଗ

**କମାନିଆ** - *ଗୌ:* (ବିଂ.) : ରୋଜଗାରିଆ

**କମାର** - *ଅନେ:* (ବି.) : କର୍ମକାର, ଲୁହାର, ଲୁହା କାରିଗର

**କମାଲ** - *ସଂ:* (ବି.) : ବିଚକ୍ଷଣତା, ଚମତ୍କାର ପ୍ରଦର୍ଶନ

**କମାଲି କରଣ** - *ଗଞ୍ଜ:* (ବି.) : ପାରଳା ଓ ବିଶାଖାପାଟଣାର ଏକ କରଣ ଜାତି

**କମି** - *ନବ:ଦେ:ପଦ୍ୟ:* (ବି.) : ମାଛ କୁକୁଡ଼ା, କଲି ଚଉତି ଚିପିବା ପାଇଁ ବ୍ୟବହୃତ ବାଉଁଶ କଣି, ଅଳ୍ପତା, ଅଳ୍ପ, ନ୍ୟୂନ

**କମିଆ** - *କୋ:କଳା:* (ବିଂ.ବି.) : ରୋଜଗାର କ୍ଷମ

**କମିଜ** - *ଢ:କେନ୍ଦୁ:ଢେ:ପଦ୍ୟ:* (ବି.) : କୁର୍ତ୍ତା, ଫତେଇ

**କମିଲା ବିନ୍ଧାଣି** - *ଢ:* (ବି.) : କୁନ୍ଦକାମ ଚଢେଇ

**କମିଳା** - *ମ:* (ବି) : ବଣିଆଁ

**କମିସିନି** - *ଢ:* (ବି.) : ମଧ୍ୟସ୍ଥିର ପ୍ରାପ୍ୟ

**କମିହାଁ** - *ସୁ:ସୁବ:ଖ:ସ:* (ବି.ବିଂ.) : ମୂଲିଆ, କାମିକା, ଅତି ପରିଶ୍ରମୀ, ଯେ କାମକୁ ଆଗଭର ହୁଏ

**କମେଇ** - *ଭ:ଢ:* (ବି.) : ବିଶ୍ରାମ ସମୟ, କାମ ନକରିବା ଦିନ

**କମ୍ପ** - *ଅନେ:* (ବି.) : ଥରିବା, ଲମ୍ବାଳିଆ ବାଉଁଶ ପେଡ଼ି, କମ୍ପିତ ହେବା, ଦୋଳନ

**କମ୍ପଟ** - *ଯା:ଗ୍ରା:* (ବି.) : ମୁଣ୍ଡରେ ବ୍ୟବହାର କରାଯାଉଥିବା ମଫଲର

**କମ୍ପନ** - *ପଦ୍ୟ:* (ବି.) : ଥରିବା, ସଞ୍ଚାଳନ

**କମ୍ପାଉଣ୍ଡ** - *ଦେ:* (ବି.) : ପାଚେରି

**କମ୍ପାଉଣ୍ଡରୀ** - *ପଦ୍ୟ:* (ବି.) : କମ୍ପାଉଣ୍ଡର୍‌ଙ୍କ କାର୍ଯ୍ୟ

**କମ୍ପାନୀ** - *ପଦ୍ୟ:ଦେ:* (ବି.) : ବାଣିଜ୍ୟାର୍ଥ ଘଟିତ ସଂଘ

**କମ୍ପାସ** - *ପଦ୍ୟ:* (ବି.) : ନକ୍‌ସା ମାପ କରିବାର ଦୁଇ ବାହୁବିଶିଷ୍ଟ ତୀକ୍ଷ୍ଣାଗ୍ର ଯନ୍ତ୍ର

**କମ୍ପିତ** - *ପଦ୍ୟ:* (ବିଂ.) : ଚାଳିତ, ଆନ୍ଦୋଳିତ, କମ୍ପଯୁକ୍ତ

**କମ୍ପୋଷ୍ଟ** - *ସଂ:* (ବି.) : ଖତ

**କମ୍ବର** - *ଗ୍ରା:* (ବି.) : ଅଣ୍ଟା

**କମ୍ବଳ** - *ଢେ:ପଦ୍ୟ:* (ବି.) : ପଶୁଲୋମର ବସ୍ତ୍ର, ମେଷାଦି ଲୋମନିର୍ମିତ ଆସନ ବା ଆଚ୍ଛାଦନ

**କମ୍ଭିଆ** - *ନୂ:* (ବିଂ.) : ବହୁ ପରିଶ୍ରମୀ ବ୍ୟକ୍ତି

**କମ୍ଭାରିଆ** - *ଜ:* (ବି.) : ଅଜୀର୍ଣ୍ଣ ରୋଗ

**କମ୍ଭେଇ** - *ଢେ:* (ବି.) : ନିଷେଧ (ହଳ କମ୍ଭେଇ), କାମରୁ ବିରତ

**କୟାଁ** - *ଅନେ:* (ବି.) : କଞ୍ଚା ତିନ୍ତୁଳି

**କରକ** - *ଢେ:* (ବି.) : ଡ଼ାଳିମ୍ବ

**କରକଚା** - *ଗା:ଢେ:ଜ:ଯା:* (ବିଂ.ବି.) : ଅତିଟାଣ ଛୋଟ ଗୋଡ଼ି, ବାଲିଗରଡ଼ା, ପଥରଗୋଡ଼ି, ଗୋଡ଼ିବାଲି ମିଶ୍ରିତ ସ୍ଥାନ

**କରକଞ୍ଚା** - *ରା:* (ବିଂ.) : ଭଲଭାବେ ସିଝି ନଥିବା, ଦରସିଝା

**କରକଟା** - *ରା:* (ବିଂ.) : ଅତି

**କରକଟୀ** - *ଜ:* (ବି.) : ବନ୍ଧ୍ୟା ସ୍ତ୍ରୀ

**କରକାତି** - *ରା:* (ବି.) : କରତ

**କରକିଟିଆ** - *ଟ:* (ବି.) : ନିକୁଛିଆ ଲୋକ, ଅତି ମଇଳା ଲୁଗା ପିନ୍ଧିଥିବା ଲୋକ

**କରଚ୍** - *କଳା:* (ଅ.) : ଚୋବାଇବାର ଶବ୍ଦ ବିଶେଷ

**କରଚା** - *ପଦ୍ୟ:ସୁବ:ସୁ:* (ବି.) : ଖଜଣା, ଜାମାବନ୍ଦିର ତାଲିକା, ଦୈନିକ ଲିପି, କାଠକାଟିଲାବେଳେ ଛୁଞ୍ଚିପରି ବାହାରୁଥିବା କାଠ, ଛୋଟଖୁଣ୍ଟି

**କରଚୁଲି** - *ପଦ୍ୟ:ଭ:ଢେ:ସୁ:* (ବି.) : ଡଙ୍ଗା, ପାଉଁଶ କଢା ଯନ୍ତ୍ର, ଅଣକ, ଧାତୁ ତିଆରି ଡଙ୍କି

**କରଛଡ଼ା** - *ଖୋ:ପଦ୍ୟ:ଜ:* (ବି.ବିଂ.) : ଦୂରେଇ ଯିବା, ପାଖଛଡ଼ା, ଅଲଗା ହୋଇରହିବା

**କରଛୁଲି** - *ଜ:* (ବି.) : ଧାତୁ(ପିତ୍ତଳ)ର ଡଙ୍କି, ହତା

**କରଜ** - *ଢେ:ପଦ୍ୟ:* (ବି.) : ନଖ, ହସ୍ତଜାତ ଦ୍ରବ୍ୟ, କରଞ୍ଜ ବୃକ୍ଷ, ଋଣ, ଧାର

**କରଞ୍ଜ** - *ଢେ:ଦେ:* (ବି.ବିଂ.) : ଏକ ଗଛ

**କରଡା** - *ରା:* (ବି.) : କାଠ, ଯାହା ଉପରେ ଟାଇଲ ରହେ

**କରଡା ବାଡି** - *ଗଞ୍ଜ:* (ବି.) : ଶଗଡିଆ ମାନେ ଧରିଥିବା ବାଡି

**କରଡ଼ି** - *ଅନେ:* (ବି.) : ବାଉଁଶଗଜା, ଉଦର, କରେଲ୍, ବାଉଁଶ ଗଜାରୁ ତିଆରି ପରିବା, ଗଛ ଉଠିବାର ପ୍ରାରମ୍ଭିକ ଅବସ୍ଥା, ମଞ୍ଜ

**କରଣ** - *ଦେ:ପଦ୍ୟ:* (ବି.) : ଜାତି ବିଶେଷ, ବ୍ୟାକରଣୋକ୍ତ କାରକବିଶେଷ, ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟ, ଉପାୟ, କ୍ରିୟା, କାର୍ଯ୍ୟ ସ୍ଥାନ ହେତୁ, ନୃତ୍ୟର ପ୍ରକାର, ଜାତିବିଶେଷ

**କରଣୀ** - *ଢେ:* (ବିଂ.) : ଦାୟୀ

**କରଣି** - *ଢେ:ପଦ୍ୟ:* (ବି.) : ରାଜମିସ୍ତ୍ରୀଙ୍କ ସିମେଣ୍ଟ ଚୂନ ଲଗାଇବା ହତିଆର, ମହିମାଶକ୍ତି, କ୍ଷମତା, ବୃକ୍ଷବିଶେଷ, ଓଡ଼ିଆର ଛଟା ଲେଖା

**କରଣିଆ** - *ଜ:* (ବିଂ.) : କରଣଜାତିର କାମ ବା ଆଚାର

**କରଣୀସୁତା** - *ପଦ୍ୟ:* (ବି.) : ଯେଉଁ କନ୍ୟାକୁ ପୋଷ୍ୟପୁତ୍ରୀ ରୂପେ ଗ୍ରହଣ କରାଯାଏ

**କରଣ୍ଡ** - *ଲ:* (ବି.) : ଜଳଚର ପକ୍ଷୀ

**କରତ** - *କୋ:ପଦ୍ୟ:ଢେ:* (ବି.) : କାଠ ଚିରିବା ଯନ୍ତ୍ର, କାଠ କରତିବା ଦାନ୍ତି ବିଶିଷ୍ଟ ପାତ

**କରତ୍‌ବଘା** - *ସୁ:* (ବି.) : ମଣିଷର ବାଘ ରୂପ

**କରତାଳ** - *ଭ:* (ବି.) : ଏକପ୍ରକାର ଝାଂଜ

**କରତିଆ** - *ସ:ସୁ:* (ବି.ବିଂ.) କାଠକୁ କରତରେ ଯେ ଚିରେ

**କରନ୍** - *କେନ୍ଦୁ:* (କ୍ରି.) : କରନ୍ତୁ, କରନ୍ତି

**କରନଳା** - *ଯା:ଭ:* (ବି.) : କେନାଲ

**କରନି କୁସମା** - *କଳା:* (ବି.) : କୁସୁମା ଧାନ, କଳାରଙ୍ଗର ଶୁଂକଯୁକ୍ତ ଦେଶୀ ସାନ ଧାନ

**କରନ୍ୟାସ** - *ଲ:* (ବି.) : ପୂଜାର ଏକ ନ୍ୟାସ

**କରପ୍** - *କଳା:* (ବି.) : କ୍ଷେତରେ କଟାହୋଇ ପଡ଼ିଥିବା ଧାନ

**କରପତ୍ର ଯୋଡିବା** - *ସଂ:* (କ୍ରି.) : ପ୍ରାର୍ଥନା କରିବା, ହାତ ଯୋଡ଼ିବା

**କରପନ୍** - *ସୁବ:* (ବି.) : ପଥର ସନ୍ଧି

**କରପେଟି** - *ରା:* (ବି.) : ଛୋଟ କାଠ ପେଡ଼ି

**କରବା** - *ଜ:* (ବି.) : ଏକ ପ୍ରକାର ବଣ ଆଳୁ

**କରବାଳ** - *ସ:* (ବି.) : ଖଣ୍ଡା, ହାତନଖ

**କରବୀର** - *ଭ:* (ବି.) : ଫୁଲ ବିଶେଷ

**କରମ** - *ପଦ୍ୟ:କୋ:* (ବି.) : ଆଦିବାସୀ ନୃତ୍ୟ, ଭାଗ୍ୟ, କର୍ମଫଳ, କପାଳ, କାର୍ଯ୍ୟ

**କରମ୍‌କଥା** - *ଦେ:* (ବିଂ.) : କଡ଼ାକଥା

**କରମ୍‌ସାନି** - *ଗୌ:ସୁ:* (ବି.) : କରମା ପୂଜାର ଦେବୀ, ଲୋକ ଦେବତା ବିଶେଷ

**କରମଙ୍ଗା** - *ଦେ:କେ:ଢେ:* (ବି.) : ଏକବୃକ୍ଷ ଓ ଫଳ, ଅମ୍ଳଫଳ ବିଶେଷ, ଏକ ଖଟା ଜାତୀୟ ଫଳ

**କରମଙ୍ଗିଆ** - *ଜ:* (ବିଂ.) : କରମଙ୍ଗାଫଳ ପରି କମଯୁକ୍ତ

**କରମାନୃତ୍ୟ** - *ସ:* (ବି.) କୋହ୍ଲ ସଂପ୍ରଦାୟର ଏକ ପ୍ରସିଦ୍ଧ ନୃତ୍ୟ

**କରମା ପୂଜା** - *କେନ୍ଦୁ:* (ବି.) : ଭାଦ୍ରବ ଏକାଦଶୀରେ କରମା ଗଛର ଡାଳ ଆଣି କୁଆଁରୀ ଝିଅମାନେ କରୁଥିବା ପୂଜା

**କରମୁଙ୍ଗା** - *ଲ:* (ବି.) : କରମଙ୍ଗା

**କରଲା** - *ଲ:* (ବି.) : ଖଜୁରୀ ଗଛର ଭିତର ଅଂଶ

**କରଷଣା** - *ଖୋ:* (କ୍ରି.) : କାଛୁ, କୁଣ୍ଡିଆ ରୋଗରେ ପ୍ରାରମ୍ଭିକ

**କରଶ୍ୱୋଟ** - *ସଂ* (ବି.) ମଲ୍ଲମାନେ ବାହାଦୁରି ମାରିବା, ହସ୍ତ ମୁଦ୍ରା

**କରହି** - *ସୁବ:* (ବି.) : ମାଇମେଣ୍ଢା

**କରହୋଇ** - *ଅ:* (ବିଂ.) : ଛୁଆ ଜନ୍ମ କରିନଥିବା ଛେଳି, ପେଣ୍ଠି

**କରା** - *ଅନେ:* (ବି.) : କୁଆପଥର, କରକା, ମାର୍ବଲ ପଥର, କରକା, କରାପଥର

**କରାଆଖିଆ** - *ନବ:* (ବିଂ.) : କହରା ଆଖି ଯାହାର

**କରାଖୁବ୍** - *ଅ:କଳା:* (ବିଂ.) : ଅତିନିର୍ମଳ, ସ୍ୱଚ୍ଛ

**କରାବ୍** - *ବର:ଝା:* (ବି.) : ମୁଦ୍ରା ରଖି ଅଣ୍ଟାରେ ଖୋସା ଯାଉଥିବା ଏକପ୍ରକାର ପାତ୍ର, ରୂପା ବା ଧାତୁରେ ତିଆରି ଏକ ପ୍ରକାର ଗୋଲ୍ ଡବା

**କରାଟି** - *ଅ:* (ବି.) : ଖଡୁ, ପାହୁଡ଼, କଙ୍କଣ

**କରାଣ୍ଡି** - *ବା:ଢେ:ଭ:ଛ:* (ବି.) : କେରାଣ୍ଡି ମାଛ, ଛୋଟମାଛ

**କରାଦ୍** - *ମ:* (ବି.) : କରତ

**କରା ପଥର** - *କଣ:ନବ:* (ବି.) : କୁଆପଥର

**କରାମତି** - *ଖୋ:* (ବି.) : ସାମର୍ଥ୍ୟ

**କରାମତିଆ** - *ଭ:* (ସ.) : କରିବା ବାଲା

**କରାରୀ ଆସାମୀ** - *ସଂ* (ବି.) : ଅପରାଧ ସ୍ୱୀକାର କରିବା ବ୍ୟକ୍ତି

**କରାରୋବ୍** - *ସଂ* (ବି.) : ମୁଦ୍ରିକା, (ମୁଦି)

**କରାଲନାମା** - *ସୁବ:* (ବିଂ.) : ଏକରାର ନାମା ଚୁକ୍ତିନାମା

**କରାଳ** - *ସଂ:ପଦ୍ୟ:ରା:ଛ:* (ବି.ବିଂ.କ୍ରି.) କଳାତୁଳସୀ, ଝୁଣା, କୁନ୍ଦଫୁଲ, ବୃହତ, ଉଚ୍ଚ, ଭୟଙ୍କର, ଦନ୍ତୁର, ବ୍ୟାପ୍ତ, ରାବଣର ଅନୁଚର, ଝୁଣା, ଚୁଆ, ସର୍ଜରସ, ତୈଳ

**କରାସି** - *ଭ:* (ବି.) : ମାଛଧରା ଜାଲବିଶେଷ

**କରିଆ** - *ଅନେ:* (ବି.) : ଗାମୁଛା, ଜାଲିଆ ଗାମୁଛା, ପିନ୍ଧାଲୁଗା

**କରିଚନ୍** - *କଳା:* (କ୍ରି.) : କରିଛନ୍ତି

**କରିଛନ୍** - *କେନ୍ଦୁ:* (କ୍ରି.) : କରିଛନ୍ତି

**କରିଟୁ** - *ରା:* (ବି.) : ମୁକୁଟ

**କରିଡ଼** - *ଅ:* (ବି.) : ବାଉଁଶ ଗଛ, କରଡ଼ି

**କରିଡ଼ା ଗଛ** - *କେନ୍ଦୁ:* (ବି.) : ଜାଳେଣି କାଠ ଭାବେ ବ୍ୟବହୃତ ଏକ ପ୍ରକାର ଗଛ

**କରିତେ** - *ବା:* (କ୍ରି.) : କରିବାପାଇଁ

**କରିଦଣ୍ଡା** - *ସଂ* (ବି.) : ହାତୀଶୁଣ୍ଢ

**କରିନ୍ଦା** - *ସଂ* (ବି.) : ଗୁମାସ୍ତା

**କରିପ** - *ସଂ* (ବି.) : ମାହୁନ୍ତ, ହସ୍ତୀପାଳକ

**କରିମଙ୍ଗ** - *ସଂ* (ବି.) : ଡ଼ଙ୍ଗାର ପଛମଙ୍ଗ

**କରିମି** - *କେ:* (କ୍ରି.) : କରିବି

**କରୁ** - *କଣ:* (ବି.) : ମଇଁଷି, ପୋଢ

**କରୁଆ** - *ଅ:ବା:* (ବି.) : ବଡ଼ ପାଟିଆ, ଏକପ୍ରକାର ସାମୁଦ୍ରିକ ମାଛ

**କରୁଆଯୁଡ଼** - *ବା:* (ବି.) : ଘନିଷ୍ଠ ବନ୍ଧୁତା

**କରୁଣା** - *ଗଦ୍ୟ:ଛ:* (ବି.) : ବାତାପି ପରି ଫଳ ବିଶେଷ, ପ୍ରଭୁଦୟା

**କରୁନ୍** - *ଗୌ:* (କ୍ରି.) : କରନ୍ତୁ

**କରେଇ** - *ଅନେ:* (ବି.) : ଛୁଆଜନ୍ମ କରି ନଥିବା ମାଈ ପୋଢ ବା ଛେଳି ଛୁଆ, ଲୁହାର ରୋଷେଇ ପାତ୍ର, କଡାଇ, ସୋରିଆ, ଗହୀରିଆ ପାତ୍ର, ଅମାର, ଝଡ଼ା ରାଶି ନଡ଼ା

**କରେଇପୂଜା** - *ବ:* (ବି.) : ଅମାର ପୂଜା

**କରେକା** - *କନ୍ଧ:* (ବି.) : କଲରା

**କରେଲ୍** - *ନୂ:କଳା:* (ବି.) : କରଡ଼ି(ବାଉଁଶ ଗଜା), କରିଡ଼

**କରୋଇ** - *ସୁ:* (କ୍ରି.) : ପିଟେଇ ଯିବା

**କରୋଟୀ** - *ପଦ୍ୟ:* (ବି.) : ମୁଣ୍ଡର ଖପୁରି

**କରଂଗା** - *ସୁ:* (ବି.) : ଅଳ୍ପ ଦିନିଆଁ ଧାନ

**କର୍କଟ** - *ଦେ:* (ବି.) : ଏକ ରାଶି, କ୍ୟାନ୍‌ସର ରୋଗ, କଙ୍କଡ଼ା

**କର୍ଚ୍ଚା** - *ମା:* (ବି.) : ଖର୍ଚ୍ଚ

**କର୍ଣ୍ଣଜପ** - *ସଂ:* (ବି.) : ଗୋଇନ୍ଦା, କାନକୁହା, ଗୁପ୍ତକଥା

**କର୍ଣ୍ଣଫୁଲ** - *ନୂ:ସ:* (ବି.) : କାନର ଅଳଙ୍କାର, କାନଫୁଲ

**କର୍ଣ୍ଣମୂଳିଆ** - *ଜ:* (ବିଂ.) : କାନମୂଳକୁ ଚାପୁଡ଼ା

**କର୍ଣ୍ଣୀସୁତ** - *ସଂ:* (ବିଂ.) : ଚୋର, ଠକ, ବଦମାସ

**କର୍ତ୍ତନ** - *ଢେ:* (ବି.) : ଛେଦନ

**କର୍ତ୍ତବ୍ୟ** - *ପଦ୍ୟ:* (ବିଂ.) : କରିବାର ଉପଯୁକ୍ତ, କରଣୀୟ, ସାମର୍ଥ୍ୟ, ଶକ୍ତି

**କର୍ତ୍ତବ୍ୟଜ୍ଞାନ** - *ପଦ୍ୟ:* (ବି.) : କରଣୀୟ, କାର୍ଯ୍ୟର ବୋଧ, କ'ଣ କରାଯିବା ବା କରିବା ଉଚିତ୍ ତାହା ବୁଝିବା

**କର୍ତ୍ତା** - *ଜ:ଢେ:* (ବି.) : କାର୍ଯ୍ୟଗ୍ରାହୀ

**କର୍ତ୍ତାଳ** - *ଜ:* (ବି.) : କରତାଳ

**କର୍ଦ୍ଦନ** - *ଜ:* (ବିଂ.) : କୁତ୍ସିତ

**କର୍ନଡଗ୍** - *ଗଦ୍ୟ:* (ବି.) : ଏକ ଖାଦ୍ୟ

**କର୍ପଟୀ** - *ଜ:* (ବି.) : ଛୋଟ କୌପିନ

**କର୍ପୂର ମୋତି** - *ଖୋ:* (ବି.) : ଏକପ୍ରକାର ଧାନ

**କର୍ପୂରକେଳି** - *ନ:* (ବି.) : ଏକ ଧାନର ନାମ ବିଶେଷ

**କର୍ଫ୍ୟୁଜାରି** - *ସଂ:* (ବି.) : ଜରୁରୀକାଳୀନ ପରିସ୍ଥିତି

**କର୍ମ** - *ପଦ୍ୟ:* (ବି.) : କାର୍ଯ୍ୟ, ପେଷା, ଚାକିରୀ, ଶାସ୍ତ୍ରୋକ୍ତ ଅନୁଷ୍ଠାନ, ଉତ୍ସବ, ଦକ୍ଷତା, ପାପପୁଣ୍ୟ, ଯାହାର ଫଳ ଜନ୍ମାନ୍ତରେ ବା ଇହଜନ୍ମରେ ଭୋଗ୍ୟ, କାରକବିଶେଷ, ଅଦୃଷ୍ଟ, ଭାଗ୍ୟ, ସାଂସାରିକ କାର୍ଯ୍ୟ, କାରିଗରୀ

**କର୍ମଅବଜ** - *ପଦ୍ୟ:* (ବି.) : ଦୁର୍ଭାଗ୍ୟ

**କର୍ମ ଆଦରିବା** - *ପଦ୍ୟ:* (କ୍ରି.) : ଅଦୃଷ୍ଟ ଉପରେ ନିର୍ଭର କରିବା, ନିଜ ଭାଗ୍ୟରେ ଯାହା ଘଟୁଛି ବା ଘଟିବ ତାହା ହିଁ ଗ୍ରହଣ କରିବା

**କର୍ମକର୍ତ୍ତା** - *ପଦ୍ୟ:* (ବି.) କାର୍ଯ୍ୟର ସମ୍ପାଦନକାରୀ ବ୍ୟକ୍ତି, ଅନୁଷ୍ଠାନ କରିବାର କର୍ତ୍ତା, ବାଚ୍ୟ ବିଶେଷ, ଯେଉଁଠାରେ କର୍ମକାରକ କର୍ତ୍ତୃକାରକ ରୂପେ ବ୍ୟବହୃତ ହୁଏ

**କର୍ମକର୍ମାଣି** - *ପଦ୍ୟ:* (ବି.) ବୈଦିକ ପଦ୍ଧତିରେ ନିତ୍ୟ ନୈମିତ୍ତିକ କର୍ମମାନଙ୍କର ଅନୁଷ୍ଠାନ

**କର୍ମକାଣ୍ଡ** - *ପଦ୍ୟ:* (ବି.) : କର୍ମସମୂହ, ବେଦାଂଶ, ନିତ୍ୟନୈମିତ୍ତିକ କ୍ରିୟାକଳାପ

**କର୍ମକୋଢିଆ** - *ନ:* (ବିଂ.) : ଅଳସୁଆ, କର୍ମବିମୁଖ

**କର୍ମକ୍ଳାନ୍ତ** - *ପଦ୍ୟ:* (ବିଂ.) : କାର୍ଯ୍ୟ କରି ଥକିଯାଇଥିବା, କାମ କରିବାରେ ଅବସାଦପ୍ରାପ୍ତ, କର୍ମକ୍ଳାନ୍ତ

**କର୍ମଠ** - *ପଦ୍ୟ:* (ବିଂ.) : କର୍ମକୁଶଳ, ଚତୁର, ପରିଶ୍ରମୀ, କାର୍ଯ୍ୟଦକ୍ଷ

**କର୍ମାଣିଆ** - *କ:* (ବିଂ.) : ଶୁଦ୍ଧଶ୍ରାଦ୍ଧକର୍ମ କରୁଥିବା ବ୍ରାହ୍ମଣ, କର୍ମକାଣ୍ଡୀ

**କର୍ସନ୍** - *କେନ୍ଦୁ:* (କ୍ରି.) : କରନ୍ତି

**କର୍** - *କଳା:* (କ୍ରି.) : କର, କୌଣସି କାମ କରିବାକୁ କହିବା

**କର୍କଟା ବାନ୍ଧୁ** - *କଳା:* (ବି.) : ପେଟା ଜାତୀୟ ଛୋଟ ଚଢେଇ

**କର୍କରା** - *କେନ୍ଦୁ:କଳା:* (ବିଂ.କ୍ରି.) : ସଂପୂର୍ଣ୍ଣ ପୋଡ଼ିଯାଇଥିବା

**କର୍କରେଇବା** - *ଗ:କେନ୍ଦୁ:କଳା:* (କ୍ରି.) : କୁକୁଡ଼ା ଅଣ୍ଡା ଦେବା ପୂର୍ବରୁ କରୁଥିବା କର୍‌କର୍ ଧ୍ୱନି

**କର୍କସ** - *କୋ:* (ବି.) : ରାଗ, ଈର୍ଷା

**କର୍ଖା** - *ସୁବ:* (ବିଂ.) : ଯିଏ ନିଜ ପରିଶ୍ରମରୁ ଚଳେ। ଯିଏ କରି ଖାଏ।

**କର୍ଚା** - *ସ:* (ବି.) : ସରୁ ଟିକି କାଠ

**କର୍ଚାଲି** - *ବ:ସୁବ:* (ବି.) : ଅତିକ୍ଷୁଦ୍ର କାଠ, କାଠକୁ ଚିରାଯାଇ ଅତି ଛୋଟ କରାଯାଇଥିବା ଅଂଶ, ଏଥିରେ ହୋମ କରାଯାଏ

**କର୍ଚେପା** - *ସୁବ:* (ବି.) : ଚାପି ହୋଇ ନଷ୍ଟ ହେବା। ବେଙ୍ଗଳାରେ ଝଡ଼ି ନଥିବା ଧାନ।

**କର୍ଣି** - *ଦେ:* (ବି.) : ଲୁହା ହତିହାର

**କର୍ତି** - *କଳା:* (କ୍ରି.) : କରନ୍ତି

**କର୍ତିଆ** - *କଳା:* (ବି.) : କରତରେ କାଠ କାଟିବା ବ୍ୟକ୍ତି, ଯେ କର୍ତ୍ତନ କରେ

**କର୍ତେଥିଲୁ** - *ମ:* (କ୍ରି.) : କରୁଥିଲି

**କର୍ନା** - *ନୁ:* (ବି.) : କରୁଣା

**କର୍ନୀ** - *ସୁବ:* (ବି.) : ରାଜମିସ୍ତ୍ରୀର ସିମେଣ୍ଟ କାମ ପାଇଁ ଉପକରଣ

**କର୍ପନ୍** - *କଳା:* (ବି.) : ପର୍ବତ ଗହ୍ୱର, ଖୋଲ, କର୍ପଣ

**କର୍‌ପା** - *ସୁ:କଳା:* (ବି.) : କଟା ହୋଇଥିବା ଧାନଗୁଚ୍ଛ

**କର୍‌ବଙ୍ଗା** - *ମ:* (ବି.) : କରମଙ୍ଗା

**କର୍‌ବରାଦାର** - *ସୁବ:* (କ୍ରି.) : କେହି ନ ଶୁଣିଲେ ମଧ୍ୟ ଅଯଥା ପାଟିତୁଣ୍ଡ କରିବା

**କର୍‌ବରାବା** - *ସ:* (କ୍ରି.) : ବିରକ୍ତି ଭାବରେ କହିବା

**କର୍‌ବା** - *ଅନେ:* (କ୍ରି.ବି.) : ପାଟିତୁଣ୍ଡ କରିବା, ଖମ୍ବ ଆଳୁ ଭଳି ଦେଖାଯାଉଥିବା ଏକପ୍ରକାର ବଣ୍ୟ କନ୍ଦା, କରିବା

**କର୍‌ମ** - *ସୁ:* (ବି.) : ଭାଗ୍ୟ

**କର୍ ମାର୍ ବାରଟା** - *ନୁ:* (କ୍ରି.) କଡ଼ ଲେଉଟାଇବା

**କର୍‌ମେଇଁ** - *କେନ୍ଦୁ:* (କ୍ରି.) : କରିବେ

**କର୍‌ର** - *ଟି:* (ବି) : ହାତୀ ଶୁଣ୍ଢ

**କର୍‌ରା କର୍‌ରା ମେଛା** - *ସ:* (ବି.) : ମୋଟାମୋଟା ନିଶ

**କର୍‌ରୀ** - *ସୁବ:କଳା:* (ବି.) : ଛୋଟ କଟୁରୀ, ଧାରୁଆ ଉପକରଣ, କାତି, ଛୁରୀ

**କର୍‌ରେଇ** - *ନୁ:* (ବି.) : ମାଈ ମେଣ୍ଢା

**କର୍‌ଲା** - *ଅନେ:* (ବି.) : କଲରା, ପିତାଫଳ, ଜଙ୍ଗଲ ଜାତୀୟ ଏକ ବୃକ୍ଷ ବିଶେଷ

**କର୍‌ଲି** - *କୋ:ନବ:* (ବି.) : ଶସ୍ୟ ରଖିବାପାଇଁ ବାଉଁଶ ନିର୍ମିତ ବଡ଼ ଆଧାର (ଦେଶିଆ), ବାଉଁଶ ନିର୍ମିତ ଡାଲା

**କର୍‌ଲିଆ** - *କଳା:* (ବିଂ.) : କଅଁଳିଆ, ନରମ

**କର୍‌ସନ୍** - *କଳା:* (କ୍ରି.) : କରନ୍ତି, କରୁଛନ୍ତି

**କର୍‌ସି** - *ସୁ:* (କ୍ରି.) : କରେ

**କର୍‌ସେ** - *ଗଦ୍ୟ:* (ବି.) : ବାଇଡଙ୍କ

**କର୍‌ହା** - *ଅନେ:* (ବି.) : ବଡ଼ ଲୁହା କଡ଼େଇ

**କଲ** - *ସୁବ:* (ବି.) : ଭିତର ପାଟିର ଦୁଇ କଡ଼, ଏଠାରେ ପାନ ରଖି ଖିଆଯାଏ

**କଲ୍‌କଟର୍** - *ସ:* (ବି.) : କଲେକ୍ଟର

**କଲ୍‌କଲ୍** - *ଦେ:ସୁବ:କଳା:* (ବିଂ.) : ପାଟି କରିବା, ବକିବା, ଅନ୍ୟର ଏକାଗ୍ରତାରେ ବାଧା ପହୁଁଞ୍ଚାଉଥିବା ଅନେକ ଲୋକଙ୍କ କଥାବାର୍ତ୍ତା, ଝଗଡ଼ାହେବା, ଅଧିକ କହୁଥିବା, ବକ୍‌ବକ୍, ପାଟିତୁଣ୍ଡ କରିବା, ଜଂଜାଳରେ ପଡ଼ିବା

**କଲ୍‌କଲେନ୍** - *କଳା:* (ବିଂ.) : ଝମେଲିଆ, ଝଗଡ଼ିଆ, ସର୍ବଦା ବକବକ ହେଉଥିବା ସ୍ତ୍ରୀ ଲୋକ

**କଲ୍‌କା** - *କନ୍ଧ:* (ବି.) : ଶସ୍ୟର ଦାନା

**କଲ୍‌କି** - *ଟି:* (ବି.) : ଧୂମପାନ ସାମଗ୍ରୀ

**କଲ୍ ଖଲିବା** - *କନ୍ଧ:* (କ୍ରି.) : ଖୁସିରେ ଉତ୍‌ଫୁଲ୍ଲିତ ହେବା

**କଲ୍‌ଗାନା** - *ଦେୌ:* (ବି.) : ଯନ୍ତ୍ର ସଂଗୀତ

**କଲ୍‌ଚୁଆଁ** - *ସ:* (ବି.) : ନଳକୂଅ

**କଲ୍‌ଜା** - *ଝା:କଳା:* (ବି.) : କଲିଜା, ସାହାସ ଅର୍ଥବିଶେଷ, ହୃତପିଣ୍ଡ

**କଲ୍‌ଦାଁତ** - *ସୁବ:* (ବି.) : ଉଭୟ ତଳପାଟି ପାର୍ଶ୍ୱ ପାଖର ଦାନ୍ତ

**କଲ୍ଲା** - *ସୁବ:ବା:* (ବି.) : କଲରା

**କଲ୍ସୀ** - *ମା:* (ବି.) : କଳସ

**କଲକଟ୍ର ମାଉଡ଼ି** - *କୋ:* (ବି.) : ବିଶେଷ ଧରଣର ଲମ୍ବାଳିଆ ବଡ଼ ଆମ୍ବ

**କଲକତରା** - *ଅ:* (ବି.) : ପୋକ ବିଶେଷ

**କଲକଲି** - *ରା:* (ବିଂ.) : ଷ୍ଟାଇଲ୍‌ବାଲୀ ଝିଅ

**କଲକଲିଆ** - *କଳା:* (ବିଂ.) : ଝମେଲିଆ, ଝଗଡିଆ, କିଳିକଟୁରା, ସର୍ବଦା ବକବକ ହେଉଥିବା ଲୋକ

**କଲଖଲ** - *କ:* (ବି.) : କଥା କହିବା ପାଇଁ ବ୍ୟସ୍ତ

**କଲଥ୍** - *ନବ:* (ବି.) : କୋଳଥ

**କଲମ୍** - *କଳା:ଦେ:* (ବି.ବିଂ.) : କଲମ, କଲମି, ଘରର ସ୍ତମ୍ଭ

**କଲମତରାସ** - *ପଦ୍ୟ:* (ବି.) : ଛୋଟ ଛୁରୀ

**କଲମା** - *ଖୋ:* (ବି.) : ଏକପ୍ରକାର ଧାନ

**କଲମୀ** - *ପଦ୍ୟ:* (ବିଂ.) : ଗଛରୁ କଲମ କରିବା ପ୍ରଣାଳୀ ଦ୍ୱାରା ସମ୍ପାଦିତ, କଲମ ଆକୃତି ବିଶିଷ୍ଟ

**କଲମ୍ ଆମ୍** - *କଳା:* (ବି.) : କଲମା ଆମ୍ବ

**କଲର** - *ଢେ:* (ବି.) : ରଂଗ, କାମିଜର ବେକ ଅଂଶ

**କଲରା** - *ପଦ୍ୟ:ଖୋ:ଦେ:* (ବି.) : କୃଷିଜାତ ଲତା ଓ ତହିଁର ତିକ୍ତ ଖାଦ୍ୟଫଳ, ହଇଜା, ବିସୂଚିକା

**କଲରାଫୁଲ** - *ତ:* (ବି.) : କର୍ଣ୍ଣ ଅଳଙ୍କାର ବିଶେଷ

**କଲସେଲବା** - *ସ:* (କ୍ରି.) : ସହିନେବା

**କଲା** - *କଳା:ସୁ:* (ବି.ବିଂ.) : କୋଇଲା, ଅଂଗାର, କଳା, କଳାରଂଗ

**କଲାକୃଷ୍ଣ** - *କଳା:* (ବି.) : ଆଂଶିକ କଳାରଂଗର ସରୁବାସ୍ନା ଧାନ

**କଲାପଟା** - *ସ:* (ବି.) : କଳାପଟା

**କଲାର୍** - *କୋ:* (ବି.) : ହୋହଲ୍ଲା, ପାଟିତୁଣ୍ଡ (ଦେଶିଆ)

**କଲାସି** - *ଗଞ:* (ବି.) : ଶ୍ରମିକ, କୁଲି, ଖଲାସି

**କଲାସୁ** - *ନୂ:* (ବି.) : ଏକ ପ୍ରକାର ଧାନ

**କଲି** - *କଳା:ଢେ:ଦେ:ପୁ:* (ବି.) : କଳି, ଗଣ୍ଡଗୋଳ, ଭାଉଜ, କେଶସଜ୍ଜା, ଚୂନ, ଗଂଜେଇ କଳି, ଦେବଦେବୀଙ୍କ ଘିଅବୋଳା ସିନ୍ଦୁରକୁ ଲମ୍ବ ବାଗରେ ମଥାରେ ଲଗାଯିବା

**କଲିଆ** - *ଅନେ:* (ବିଂ.ବି.) : କଳା, ବିଲୁଆ

**କଲିଆ ଟୁରଟୁରା** - *କଳା:* (ବିଂ.) : ତ୍ରିପଣ୍ଡ କଳା, ଅତ୍ୟନ୍ତ କଳା

**କଲିଆଡୁସା** - *ସୁବ:ବୌ:* (ବିଂ.) : ଅତିଶୟ କଳା ଲୋକ

**କଲିଆରି** - *କୋ:* (ବି.) : କଣ୍ଡିବାଡ଼ି, ପାଳ ଓଲଟାଇବା ଯନ୍ତ୍ର ବିଶେଷ

**କଲିକତରା** - *କୋ:ଦେ:ଯା:* (ବି.) : କୀଟ ବିଶେଷ, ଏକ ପ୍ରକାର ପୋକ

**କଲିକାଡ଼ାଲି** - *କଞ:* (ବି.) : ଏକ ପ୍ରକାର ଝୁଡ଼ଙ୍ଗ ଜାତୀୟ ଡାଲି

**କଲିଗୋଲ୍** - *କଳା:* (ବି.) : କଲି, ଝଗଡା, ଗଣ୍ଡଗୋଳ, କଳହ

**କଲିଙ୍ଗି** - *ପୁ:* (ବି.) : ବାହୁ ମୂଳକୁ ରକ୍ଷାକରିବା ନିମନ୍ତେ ଏରାପକ୍ଷୀର ଏକ ଆବରଣ

**କଲିଦନ୍ଦି** - *କଳା:* (ବି.) : କଳି ଓ ଦ୍ୱନ୍ଦ, ମାଡଗୋଳ, ଝଗଡ଼ା

**କଲିପତ୍ର** - *କେ:* (ବି.) : ହଳଦୀପତ୍ର

**କଲିଶା** - *ଗଦ୍ୟ:* (ବି.) : ମଶା-ଲାର୍ଭାଭକ୍ଷକ ମାଛ

**କଲେଇ** - *ସୁ:ଗଦ୍ୟ:କେନ୍ଦୁ:ମ:* (ବି.) : ପୋକ ଜାତୀୟ, ଡେଣା ଲଗା ଉଇ, ବର୍ଷାହେଲେ ହୁଙ୍କାରୁ ବାହାରୁଥିବା ଝରିପୋକ, ଝଡ଼ିପୋକ, କଲେଇବାସନ

**କଲେଇ ବଲେଇ** - *ଅ:* (ବି.) : କଲ୍ ବଲ୍ ହେବା

**କଲେକଲ୍** - *ନୂ:* (ବିଂ.) : ଆସ୍ତେ ଆସ୍ତେ

**କଲେ କଲେ** - *ଅନେ:* (ବିଂ.ବି.) : ଅଳ୍ପ ପାଟିରେ କହିବା, ଆସ୍ତେ ଆସ୍ତେ, କଳ କଣ୍ଠରେ, ପାଖାପାଖି

**କଲେଡ୍** - *ନୂ:* (ବି.) : ଏକ ପ୍ରକାର ବିଷାକ୍ତ ସର୍ପ

**କଲେର୍** - *କଳା:* (ବି.) କଳାରଂଗର ସରୁସାପ

**କଲୋକଲି** - *ସ:* (ବି.) : ଯିଏ ସବୁବେଳେ କଥା କହେ

**କଲଂଗୀ** - *ଗଦ୍ୟ:* (ବି.) : ବନ୍ଧୁକ

**କଲ୍ୟାଣ** - *ପଦ୍ୟ:* (ବି.) : ବିବାହ ଆଶୀର୍ବାଦ

**କଲ୍ଲା** - *ଗଦ୍ୟ:* (ବି.) : କଲରା

**କଳ** - *ଛ:ଢେ:ଗଦ୍ୟ:ଦେ:* (ବି.) : କୌଶଳ, ଯନ୍ତ୍ର, ପାଚି, ଆକଳନ

**କଳ୍ଜଳ** - *ଗ:* (ବି.) : ନଳକୂଅର ପାଣି

**କଳ୍ଠେଇବା** - *ଗୈ:* (କ୍ରି.) : କଷ୍ଟ ସମ୍ଭାଳି ନେବା, ସହିବା

**କଳ୍ମିଶାଗ** - *ଗ:* (ବି.) : କଳମଶାଗ

**କଳ୍ସା** - *ମ:* (ବି) : ମାଠିଆ, କଳସୀ

**କଳକ** - *ପଦ୍ୟ:* (ବି.) : ଡାଳିମ୍ବ

**କଳଗାଭଣା** - *ପଦ୍ୟ:ଭ:ଖୋ:* (ବି.) ଗ୍ରାମଫୋନ

**କଳଙ୍କ** - *ଛ:ଢେ:ପଦ୍ୟ:* (ବି.) : ଦୋଷ, ପାପ, ଦୁର୍ଗୁଣ, ଦାଗ, ଅଖ୍ୟାତି ଦୋଷ, ଧାତୁ ଦ୍ରବ୍ୟାଦିର ମଳିନତା, କଳଙ୍କି

**କଳଙ୍କି** - *ଛ:* (ବି.) : କଳଙ୍କ, ଲୁହାର କ୍ଷୟଅଂଶ

**କଳଛି** - *ପଦ୍ୟ:* (ବି.) : କଳି କରୁଥିବା ସ୍ତ୍ରୀଲୋକ

**କଳଣା** - *ଛ:* (ବି.) : ଅନୁମାନ

**କଳତାଇବା** - *ଗ:* (କ୍ରି.) : ନଳକୂଅର ପାଣି ବାହାର କରିବା କାର୍ଯ୍ୟ

**କଳତର** - *କୋ:* (ବି.) : ସୁଧ

**କଳପଣା** - *କ:* (ବି.) : କଳ୍ପନା

**କଳପାତିଆ** - *ଗ:* (ବି.) : ବ୍ଲେଡ୍

**କଳପି** - *ଢ଼:* (କ୍ରି.) : ଭାବିଭାବି

**କଳବୃଷଭ** - *ପୁ:* (ବି.ବି°) : ପୃଥୁଳ ବ୍ୟକ୍ତି

**କଳସୀ** - *କେନ୍ଦୁ:* (ବି.) : ମାଟିରେ ତିଆରି ମାଠିଆ

**କଳହ** - *ଢ଼:* (ବି.) : ଗଣ୍ଡଗୋଳ, କଳି

**କଳା** - *ଦେ:ମ:* (ବି.) : ରଙ୍ଗ, ନୃତ୍ୟ, ନାଟ୍ୟକଳା, ପୁଅ, ଗୁଣ

**କଳାଇ** - *ଦେ:* (ବି.) : ଧାନବିଡ଼ା, କଳେଇ

**କଳାଉସ** - *କୋ:* (ବି.) : ଅଫିମ

**କଳାକଟକୀ** - *ଭ:* (ବି.) : ଗଛ ବିଶେଷ

**କଳାକାଇଁଚ** - *ଖୋ:* (ବି.) : ଏକପ୍ରକାର ଧାନର ନାମ

**କଳାକାଞ୍ଚନ** - *କଣ:* (ବି.) : କଜଳପାତି

**କଳାକାଠ** - *କ:ଅ:ପଦ୍ୟ:* (ବି°.) : ରୋଗ ବା ଦୁଃଖରୁ ଶୁଖିଯିବା, ବିବର୍ଣ୍ଣ, ଭୟଭୀତ, ଶୀର୍ଣ୍ଣ, ଅତି କୃଷ୍ଣବର୍ଣ୍ଣ,

**କଳାକାଣ୍ଡ** - *ଭ:* (ବି.) : ଘର ତିଆରିବେଳେ ମଥାନରୁ ପଡ଼ିଥିବା ଭାରବହନକାରୀ ଦଣ୍ଡ

**କଳାକାର** - *ଦେ:ପଦ୍ୟ:* (ବି.) : ଅଭିନେତା, ଅଭିନେତ୍ରୀ, ଗନ୍ଧର୍ବ ବିଦ୍ୟାରେ ନିପୁଣ ବ୍ୟକ୍ତି

**କଳାକାହ୍ନୁ ଧାନ** - *କେନ୍ଦୁ:* (ବି.) : କଳା ରଙ୍ଗର ଶୁଙ୍କ ନଥିବା ମଧ୍ୟମ କିସମର ଧାନ

**କଳାଚାନ୍ଦି** - *ଖୋ:* (ବି.) : ଏକ ପ୍ରକାର ମାଛ

**କଳାଜଳ** - *ପଦ୍ୟ:* (ବି.) ସୁଧ, ଦଣ୍ଡବିଧିଜନକ ସୁଧ ଆଦାୟ

**କଳାଜାଇ** - *ଖୋ:କୋ:* (ବି.) : ଶରୀରର ବାହ୍ୟଚର୍ମ ଉପରେ ଦେଖାଯାଉଥିବା କଳାକଳା ବିନ୍ଦୁ, ତିଳଚିହ୍ନ

**କଳାଜିରା** - *ଅନେ:* (ବି.) : ଧାନର ନାଁ, ଏକପ୍ରକାର ଜିରା(ମସଲା), ଔଷଧି

**କଳାପଖିଆ** - *କ:* (ବି.) : ଏକ ପ୍ରକାର ଧାନ

**କଳାପଟା** - *ଦେ:* (ବି.) : ଶ୍ରେଣୀଗୃହରେ ଶିକ୍ଷକ ବ୍ୟବହାର କରୁଥିବା ଲିଖନପଟା

**କଳାପାଣି** - *ଦେ:ସଂ:* (ବି.) : ମଝି ଦରିଆ, ଆଣ୍ଡାମାନ ନିକୋବରର ଏକ ସ୍ଥାନ, ଦ୍ୱୀପାନ୍ତର ଦଣ୍ଡ

**କଳାପାତି** - *କ:ବା:* (ବି.) : କଳାରଖିବାର ପାତ୍ର, କୃଷ୍ଣପତ୍ରୀ

**କଳାପିଠିଆ** - *ଦେ:* (ବି.) : ରଥ ଟାଣିବା ଲୋକଙ୍କୁ ସମ୍ବୋଧନ

**କଳାବଇଁଶୀ** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**କଳାବାଡ଼ି** - *ବା:* (ବି.) : ଡିହ

**କଳାବାସ୍ତୁ** - *ବା:* (ବି.) : ଗୃହ ଉପଯୋଗୀ ସ୍ଥାନ

**କଳାବିଟ୍‌ବିଟ୍** - *ଦେ:* (ବି°.) : ତ୍ରିପଣ୍ଡ କଳା

**କଳାମଇ** - *କ:* (ବି.) : ଧାନ ବେଉଷଣପରେ ଚେର ଲାଗି ଗଛ କଳା ଦିଶିଲେ ଯେଉଁ ମଇ ଦିଆଯାଏ

**କଳାମଉପାଳ** - *ଖୋ:* (ବି.) : ଏକପ୍ରକାର ଧାନ

**କଳାମାଣିକ** - *ଗଞ୍ଜ* (ବି.) : ଏକ ପ୍ରକାରଗୁଳ୍ମ
**କଳାମିରିଚ** - *କଣ* (ବି.) : ଗୋଲମରିଚ
**କଳାମୁଗ** - *ଛ.ଦେ.* (ବି.) : ମୁଗ, ଡାଲି ଜାତୀୟ ଫସଲ
**କଳି** - *ଛ.ଦେ.* (ବି.) : କଳିଯୁଗ, ଝଗଡ଼ା, କଢ଼ି
**କଳିଆ** - *ଅ.* (ବିଂ.) : କଳହପ୍ରିୟ
**କଳି କଳିଆ** - *ଅ.* (ବି.) : ଝଗଡ଼ା
**କଳିକା** - *ଦେ.* (ବି.) : କଢ, ବୀଣାର ମୂଳଭାଗ
**କଳିକାଳିଆ** - *ଦେ.* (ବି.) : ଆଧୁନିକ
**କଳିଙ୍ଗି** - *ଗଦ୍ୟ.* (ବି.) : ଏକ ମାଛ
**କଳିନ୍ଦ ବିଲ** - *ବ୍ରା.* (ବି.) : ଉର୍ବର ଜମି
**କଳିମ** - *କେନ୍ଦୁ.* (ବି.) : ଏକ ପ୍ରକାର ଗଛ
**କଳିର ମଞ୍ଜି** - *ସଂ.* (ବି.) : ଦୁଷ୍ଟ
**କଳିହୁଡା** - *ସଂ.* (ବିଂ.) : କଳିଆଖୋର (ଲୋକ)
**କଳେ** - *ନ.ସୁ.* (ବିଂ.) : ମେଞ୍ଚାଏ, ପାଖୁଡ଼େ, ଏକ କଳ ପରିମିତ
**କଳେଇଙ୍ଗ** - *ଢେ.* (ବି.) : ମୂଷା
**କଳେଇଛଡ଼ା** - *ଖୋ.* (ବିଂ.) : କଳେଇ ଛାଡ଼ିଯାଇଥିବା
**କଳେକଳେ** - *ସୁ.* (କ୍ରି.ବିଂ.) : ଚୁପ୍‌ଚାପ୍, ଚୁପ୍‌ଚାପ
**କଳେବଳେ** - *ଅ.* (କ୍ରି.ବିଂ.) : ଯେକୌଣସି ଉପାୟରେ
**କଣ୍ଡମଣ୍ଡ** - *ଦେ.* (ବିଂ.) : ଦେହ ହାତଗୋଡ଼ ବିନ୍ଧା

**କଷ** - *ସୁ.ଦେ.* (ବି.) : ଦାଗ, ଭୁଣ ଫଳ, ରଙ୍ଗ
**କଷ୍ଣା** - *ଦେ.କଳା.* (ବି.) : ଲଙ୍ଗଳ ଲୁହା
**କଷଟି, କଷଟିଆ** - *କ.* (ବିଂ.) : କୃପଣ
**କଷଟି ପଥର** - *ସଂ.* (ବି.) : ପରଶମଣି
**କଷଣୀ** - *ଅ.* (ବି.) : ଗୋଡ଼ମୁଦି
**କଷା** - *ଭା.ଦେ.* (ବିଂ.ବି.) : ଏକପ୍ରକାର କଟୁସ୍ୱାଦ
**କଷାକଷି** - *ଅ.* (ବି.) : ପରୀକ୍ଷା
**କଷାକୀଡ଼ା** - *ମା.* (ବି.) : ଟସରପୋକ
**କଷା ଖାଇବା** - *ଗଦ୍ୟ.* (ବି.) : ତିକ୍ତ ଖାଇବା, ମୃତ୍ୟୁର ଦ୍ୱିତୀୟ ଦିନରେ ପାଳିତ ବିଧି, ଅଣଶୁଦ୍ଧିଆ ଦିନ ମାନଙ୍କରେ ରନ୍ଧା ହେଉଥିବା ଅଣହଳଦିଆ ଅଫୁଟା ଖାଦ୍ୟ
**କଷାଫଳ** - *ମ.* (ବି.) : ହରିଡ଼ା
**କଷାବସ୍ତ୍ର** - *କ.* (ବିଂ.) : ଗେରୁଆ, ରଙ୍ଗୀନ କପଡ଼ା
**କଷି** - *ସଂ.ଛ.ଦେ.ସୁ.* (ବିଂ.ବି.) : ଅପରିପକ୍ୱ; ସାନ, ଫୁଲରୁ ଫଳ ଧରିବା ଆରମ୍ଭ ହେବା, ଫଳର ଆରମ୍ଭ ଅବସ୍ଥା
**କଷିକରି** - *ଅ.* (ଅ.) : ଆଣ୍ଠକରି
**କଷିବା** - *ନ.* (କ୍ରି.) : ପନିପରିବା କିମ୍ବା ମାଂସକୁ ତେଲ ମସଲାରେ ଶିଝାଇ ସେଥିରୁ ଜଳୀୟଅଂଶକୁ ଶୁଖିଲା କରି ପ୍ରସ୍ତୁତ କରିବା, ଅଙ୍କ କଷିବା, ବାଡିରେ ପିଟିବା, ପରଖିବା, ମାପିବା

**କଷୁଣି** - *କ:ଢ:* (ବି.) : ଆଙ୍ଗୁଳିରେ ଲଗାଇବା ମୁଦି, କର୍ମଠଲୋକ

**କଷୋଟି** - *କ:* (ବି.) : ସୁନାର ଭଲ ଭେଲ ପରୀକ୍ଷା କରାଯିବା ପଥର

**କଷ୍ଟି** - *ଢ:* (ବିଂ.) : ଦୁଃଖସହୁଥିବା ଲୋକ

**କଷ୍ଟେମଷ୍ଟେ** - *ଅ:ପଦ୍ୟ:ଦେ:* (କ୍ରି.ବିଂ.) : ଅତିକଷ୍ଟରେ

**କସ** - *ପୁ:ରା:* (ବି.) : ଛଟକ, ଢଙ୍ଗ, ଛଇ, ସ୍ତନ

**କସ୍‌କସାବା** - *ସ:* (କ୍ରି.) : ଦେହ ବଥା ହେବା

**କସ୍‌କା** - *କନ:* (ବି.) : କୁକୁଡ଼ା

**କସ୍‌କୁଟିଆ** - *ଝା:* (ବିଂ.) : ଏକ ପ୍ରକାର ମଲିଚିଆ ରଙ୍ଗ

**କସ୍‌ତାଲ୍** - *ସ:* (ବି.) : କରତାଳ

**କସ୍‌ନା** - *ନୁ:* (ବି.) : ଲଙ୍ଗଳରେ ଲାଗୁଥିବା ଲୁହା ଫାଳ

**କସ୍‌ମସିଆ** - *ଦେ:* (ବିଂ.) : ଶୁଖିଲା ଭଜା

**କସ୍‌ରିଆ** - *ସୁ:* (ବିଂ.) : ଲାଲ ଓ ମାଟିଆ ମିଶାରଙ୍ଗ

**କସ୍‌ଲା** - *କୋ:* (ବି.) : କୋଶଳା ଶାଗ

**କସମ୍** - *ଦେ:* (ବି.) : କିରିଆ, ରାଣ

**କସମି** - *ରା:* (ବି.) : କୁସୁମ ଗଛ

**କସର** - *କୋ:* (ବି.) : କିଣିସାରିବା ପରେ ଲାଭ ଦେବା

**କସରା** - *କ:ଢ:* (ବିଂ.) : କସର ରଂଗପରି ରଙ୍ଗ, ଫିକା ନାଲିଆ, ଗେରୁଆ

**କସଲା** - *ଗଜ:* (ବି.) : ଢାଳ

**କସା** - *ସ:ମା:* (ବିଂ.ବି.) : ଅପ୍ରୀତିକର ସ୍ୱାମୀ, ଅଧାସିଝା; ମସଲାଦିଆ ଅଧିସିଝା (ତରକାରୀ), ଖୋଷା

**କସାରୁ ମାଗିବା** - *ଗଜ:* (କ୍ରି.) : ଅଧିକା ଗୋଟିଏ ମାଗିବା

**କସିପାଙ୍ଗି** - *ଗଦ୍ୟ:* (ବି.) : ଏକ ପ୍ରକାର ଖେଳ୍

**କସିବକଳ ଧାନ** - *କେନ୍ଦୁ:* (ବି.) : ଏକ ପ୍ରକାର ଧାନ, ଦୀର୍ଘମିଆଦି, ଜମିରେ ହୁଏ, ଧାନମୋଟ

**କସୁର କନ୍ଦା** - *କେନ୍ଦୁ:କଳା:* (ବି.) : ଏକ ପ୍ରକାର ଜଳଜାତ ତୃଣର କନ୍ଦା

**କସ୍ତା** - *ଅନେ:* (ବି.) : ରଙ୍ଗିନ ସୂତାର ଲୁଗା, ଶାଢ଼ୀ, ଅଖା, ତନ୍ତବୁଣା ଲୁଗା

**କସ୍ତାଲ** - *ପଦ୍ୟ:ସୁବ:* (ବି.) : ଏକ ପ୍ରକାର ବାଦ୍ୟ, ଝାଂଜ, କଂସାଳ

**କସ୍ତୁରା** - *ଗଦ୍ୟ:* (ବି.) : ଏକ ଜଙ୍ଗଲୀ ପ୍ରାଣୀ

**କସ୍ତୁରୀ** - *ଦେ:ନ:* (ବି.) : ସୁଗନ୍ଧଯୁକ୍ତ ପଦାର୍ଥ, ଏକ ଧାନର ନାମ

**କସ୍ତୁରୀ ଫୁଲ** - *ଚା:* (ବି.) : ଅଗସ୍ତି ଫୁଲ

**କହ୍ନି** - *କନ:* (ବି.) : କହୁଣି

**କହକା** - *ସ:ନୁ:ସୁ:* (ବିଂ.) : ଯିଏ ବେଶୀ ଜୋର୍‌ରେ କଥା କୁହେ

**କହଣ୍ଡା** - *ଗଦ୍ୟ:* (ବି.) : କଖାରୁ

**କହତିକେ** - *ସ:* (ବି.) : କହିବା ଅନୁସାରେ

**କହନି** - *ସ:* (ବି.) : କହୁଣୀ

**କହନିଆ** - *କଳା:* (ବି.) : କଥକ, ଯେ ଗଳ୍ପାଦି କହେ

**କହରା** - *ଡେ.ଭ.ପଦ୍ୟ.* (ବି.ବିଂ.) : କୁଆପଥର, ଧୂସର, ପିଙ୍ଗଳ ବର୍ଣ୍ଣ ବିଶିଷ୍ଟ, କପିଳ

**କହରି** - *ଭ.* (ବି.) : ଧାନ ରଖିବା ପାତ୍ର

**କହଲ** - *ପୁ.* (ବି.) : ଥଣ୍ଡା, କୋହଲା

**କହିଆଁ** - *ଦେୌ.* (ବି.) : ଅବାଗିଆ

**କହିଛ(ଚ)ନ୍** - *କଳା.* (କ୍ରି.) : କହିଛନ୍ତି

**କହୁଣି** - *ଦେୌ.ଦେ.* (ବି.) : ହାତ ଖୁଆର ଯୋଡ଼ଣୀ ଯାଗା, ବାହୁ ଓ ହାତ ମଝିର ଗଣ୍ଠି

**କହୁଣିଆ** - *ଭ.କେ.ଢ.ପୁ.* (ବିଂ.ବି.) : ମାଡୁଆ, କାଠ ଠେସ, ଗାଉଁଲି ଗାଳି, ଭାଡ଼ିର ପଟା ଥୁଆ ହେବାପାଇଁ ବ୍ୟବହୃତ କାଠର କୀଳା

**କହୁନ୍** - *ସୁ.* (କ୍ରି.) : କୁହନ୍ତୁ

**କହୁନ୍ ସାଏର୍** - *ସ.* (ବି.) : କହିବାକ୍ଷଣି

**କହେନି** - *କଳା.* (ବି.) : କାହାଣୀ, କଥାଣୀ, କଥା

**କହେସନ୍** - *ନୂ.* (କ୍ରି.) : କହିଥାନ୍ତି

**କହଁର** - *ବ.ସ.* (ବି.) : ବାସ୍ନା

**କହଁରିଆ** - *କଳା.* (ବିଂ.) : କାଉଁରିଆ, ଝୋଟ

**କହଁରିବା** - *ସୁ.କଳା.* (କ୍ରି.) : ସୁବାସିତ ହେବା

**କହଁରୁ** - *ନୂ.* (ବି.) : ଝୋଟ ପରି ଏକ ଗଛ

**କହଁଲା ପତ୍ର** - *କନ୍ଧ.* (ବିଂ.) : କଅଁଳିଆ ପତ୍ର

**କହ୍ଲାର ଗଛ** - *ସୁ.* (ବି.) : କନିଅର ଗଛ

**କହ୍ଲାନି** - *ଦେୌ.* (ବିଂ.) : କଳିହୁଡ଼ୀ

**କାଆଙ୍ଗା କୁସା** - *କନ୍ଧ.* (ବି.) : କାନ୍ଦୁଲ ଡାଲି

**କାଆଡ଼** - *ଚ.* (ଅ.) : କେଉଁଆଡ଼କୁ

**କାଆନ୍ଧା** - *ଖୋ.* (ବି.) : ଏକ ପ୍ରଜାତିର ମାଗୁର ମାଛ

**କାଆମ** - *କନ୍ଧ.* (ବି.) : କାମ

**କାଆଳ** - *କେ.* (ବି.) : ପାଣ୍ଡୁ ରୋଗ, କାମଳ

**କାଆଳି** - *କନ୍ଧ.* (ବି.) : ଶାଳ ପତ୍ରରେ ତିଆରି ପିକା

**କାଆଁଳା** - *ଅ.* (ବି.) : କାମଳ ରୋଗ

**କାଇ** - *ଅନେ.* (ବି.) : ଆମ୍ବ ଗଛରେ ରହୁଥିବା ଧଳାନାଲି ମିଶ୍ରିତ ଜନ୍ଦା

**କାଇକି** - *କନ୍ଧ.* (ଅ.) : କ'ଣ ପାଇଁ

**କାଇଘର** - *ସଂ.* (ବି.) : ଚାଳଘର

**କାଇଚେ** - *ସୁ.* (ସ.) : କାହିଁ

**କାଇଡାଙ୍କ** - *ଗା.* (ବି.) : କାନ୍ଦୁଲା, ଡୁବା

**କାଇଦା କଟକଣା** - *ପଦ୍ୟ.* (ବି.) : ଦୃଢ ନିୟମ, ବିଶେଷ ଚଳଣି ଓ ବାରଣ

**କାଇବସ୍ତ୍ର** - *ସଂ.* (ବି.) : ଗେରୁଆବସ୍ତ୍ର

**କାଇମାଟି** - *କ.ପଦ୍ୟ.ସଂ.* (ବି.) : ଲାଲମାଟି, ନାଲିମାଟି, ସାଜିମାଟି, ପାଣ୍ଡୁର ବର୍ଣ୍ଣର ମାଟି

**କାଇରା** - *ଗଦ୍ୟ.କନ୍ଧ.* (ବି.ଅ.) : କଦଳୀ, କ'ଣ

**କାଇଲ୍ ଦେବା** - *ସଂ.* (ବି.) : ଦୋଷ ଦେବା

**କାଇଲାଗି** - *କନ୍ଧ.* (ଅ.) : କ'ଣ ପାଇଁ

**କାଉଛା ପଡ଼ିବା** - *କୋ:* (କ୍ରି.) : ରୋଗରେ ପଡ଼ିବା

**କାଉଲି ମାକୁଲ** - *କ:* (ବି.) : ଦୋଷ ସ୍ୱୀକାର କରିବା

**କାଉଁ** - *କଅ:ଦେ:* (ବି.) : କାଇ, ଗଛରେ ଥିବା ନାଲି ଝଦା

**କାଉଁକାଉଁ** - *ରା:* (ସ.) : କେତେ ବଡ଼

**କାଉଁଖୁଣିଆ** - *କ:* (ବି.) : ଘାସ

**କାଉଁଘେନି** - *କୋ:* (ଅ.) : କେଉଁଥିପାଇଁ

**କାଉଁଚ** - *ଖୋ:* (ବି.) : ଏକପ୍ରକାର ଫଳର ରଙ୍ଗ ବେରଙ୍ଗର ମଞ୍ଜି

**କାଉଁଚପେଡ଼ି, ଡାଲା** - *କ:* (ବି.) : କାଇଁଚରେ ତିଆରି ଡାଲା

**କାଉଁଚଫୁଲ** - *ଖୋ:ନ:* (ବି.) : ଏକପ୍ରକାର ପୁରୁଣା ଧାନ

**କାଉଁଟା** - *ସୁ:ବୌ:ସୁବ:* (ସ.ଅ.) : କ'ଣ

**କାଉଁପେ** - *ଚ:* (ଅ.) : କାହିଁକି

**କାଉଁରା** - *ଗଦ୍ୟ:* (ବି.) : ଖଟା ପାଳଙ୍ଗ

**କାଲିଁରେ** - *କୋ:* (ଅ.) : କୋଉଥିରେ

**କାଉଁଶ** - *ଭ:* (ବି.) : ତୃଣବିଶେଷ

**କାଉଁସେ** - *ସୁ:* (ସ.) : ବୋଧହୁଏ

**କାଉ** - *ଗଜ:* (ବି.) : ଏକପ୍ରକାର ପିମ୍ପୁଡ଼ି

**କାଉ** - *ଗଦ୍ୟ:ସ:ଦେ:* (ବି.ବିଂ.) : କାକ, କୁଆ, ଲୋଭୀ (ଆଳଙ୍କାରିକ ପ୍ରୟୋଗ)

**କାଉଗୋଡ଼ିଆ** - *କ:ସ:* (ବି.ବିଂ.) : ଏକ ପ୍ରକାର ଡେଙ୍ଗା ଘାସ, କୁଆର ଗୋଡ ପରି ସରୁ ଡେଙ୍ଗା ଗୋଡ଼, ଯାହାର ଗୋଡ଼ ସରୁ ଓ କ୍ଷୀଣ, ସନ୍ତସନ୍ତିଆ ଭୂମିରେ ହେବା ଘାସ

**କାଉଚିଆ** - *କ:* (ବି.) : ବିଷହୀନ ଏକପ୍ରକାର ଛୋଟ ସାପ

**କାଉଠିଆ** - *ଛ:* (ବି.) : କୋଠିଆ

**କାଉଡି ବାଲା** - *ସ:* (ବି.) : ବୋଲ୍‌ବମ୍ ଯାତ୍ରୀ, ବାହୁଙ୍ଗୀ ବାଲା

**କାଉଡ଼ି** - *ମା:କଅ:ନବ:* (ବି.) : ଭାର, ବାହୁଙ୍ଗି

**କାଉତି** - *କ:* (ବି.) : ମନ୍ଦଆମ୍ବ

**କାଉତୁଣ୍ଡି** - *ବୌ:* (ବି.) : ଥଣ୍ଟିଆ ଜାତୀୟ ମାଛ

**କାଉନ୍ଦା** - *ଛ:* (ବିଂ.) : କୁନ୍ଦୁରା ମୁଖ, ବିମର୍ଷ ମୁଖ, ମଳିନ

**କାଉପାଟି** - *କୋ:* (ବିଂ.) : କୌଣସି ଗୁପ୍ତ କଥା ଅନ୍ୟକୁ କହି ଦେବା (ବ୍ୟକ୍ତି)

**କାଉ ପୁଟଲ୍** - *ବୌ:* (ବି.) : ଦେଶୀ ପୋଟଳ

**କାଉର** - *ନବ:* (ବି.) : ଲଫାପା

**କାଉଲି** - *ରା:* (ବି.) : ଭାର

**କାଉଳି** - *ଅନେ:* (ବି.ବିଂ.) ଅସ୍ୱସ୍ତି ବୋଧକରିବା, ବ୍ୟସ୍ତହେବା, ଶାଳ ପତ୍ରରେ ତିଆରି ପିକା, ଆତୁର

**କାଉଳିଆ** - *ନ:* (ବିଂ.) : ଅତି ତରବରିଆ

**କାଉଁକାଉଁ ହେବା** - *ସ:ଅ:* (କ୍ରି.) : ବିରକ୍ତ ହେବା, ବିରକ୍ତିକର ଧ୍ୱନି କରିବା

**କାଉଁଡ଼ି** - *କ:* (ବି.) : ଡାବଲ ପୁଆ ଖେଳର ବାଡ଼ି

**କାଉଁର** - *ସ:* (ବି.) : ଶିଉଳି

**କାଉଁରିଆ** - *ଅନେ:* (ବି.) : ନଳିତା ଗଛର ଚୋପାହୀନ ଧଳା କାଠି, ନଳିତା, ଭଙ୍ଗପ୍ରବଣ କାଣ୍ଡ, ଧଣିଚା

**କାଉଁରି ବିଦ୍ୟା** - *ଢ:* (ବି.) : ଗାରୁଡ଼ି ବିଦ୍ୟା

**କାଉଁରୀ କାଠି** - *ସଂ:* (ବି.) : ଯାଦୁକର ହାତରେ ଧରିଥିବା କାଠି

**କାଉଁଳିଆ** - *କ:ସଂ:କେ:ଯା:* (ବିଂ.) : ଖରା-ଛାଇ ଅବସ୍ଥା, କୋହଲା; ଅଳ୍ପମେଘ ଢଙ୍କା, ମେଘୁଆ ପାଗ

**କାଏ** - *ରା:ଅ:ଦେ:ଢେ:* (ଅ.ବି.) କଣ, କାହିଁକି, ଆମ୍ବ

**କାଏଟା** - *ମା:* (ଅ.) : କେଉଁଟା

**କାଏଦ୍** - *କଳା:ସ:ସୁ:* (ବି.) : କାଢି, କାଠ ବା ବାଉଁଶକୁ ହଳ ଦ୍ୱାରା ଘୋଷାରି ଆଣିବା ରୀତି

**କାଏମ** - *ପଦ୍ୟ:ସଂ:* (ବିଂ.) ସ୍ଥାୟୀ, ଅପରିବର୍ତ୍ତିତ, ନିର୍ଦ୍ଧାରିତ, ବହାଏ ରହିବା

**କାଏଲ୍** - *ସ:କଳା:ସୁ:ନୂ:* (ଅ.ବିଂ.ବି.) : ଗତକାଲି, ଆସନ୍ତାକାଲି

**କାଏଲା** - *ସୁବ:* (ବିଂ.) : ଜ୍ୱର ବା ଭୋକରେ ଅତି ଦୁର୍ବଳ ହେବା

**କାଏଁ** - *ସୁ:ସ:କଳା:* (ସ.ଅ.) : କଣ, କି,

**କାଏଁକରି** - *କଳା:* (ଅ.) : କାହିଁକି

**କାଏଁକୁଇଁଟା** - *କଳା:* (ଅ.) : କିଛିଗୋଟାଏ

**କାଏଁକେ** - *ସୁ:* (ସ.) : କାହିଁକି

**କାଏଁଟ** - *ସ:* (ବି.) : ତେଲ ତଳେ ବସି ଯାଇଥିବା ଖଦଡ଼ ଅଂଶ

**କାଏଁଟା** - *ସୁ:କଳା:* (ସ.ଅ.) : କେଉଁଟା, କ'ଣ

**କାଏଁଥି** - *ସୁ:* (ସ.) : କେଉଁଠାରେ

**କାଏଁଥିର ଲାଗି** - *କଳା:* (ସ.) : କେଉଁଥି ପାଇଁ, କ'ଣ ପାଇଁ

**କାଏଁ ସେ** - *ନୂ:* (ଅ.) : କାହିଁକି

**କାକ୍ଡ଼ି** - *କନ୍ଧ:* (ବି.) : କାକୁଡ଼ି

**କାକ୍ତାଳି** - *ଚା:* (ବି.) : କାଖ

**କାକ୍ରା** - *ଗୌ:* (ବି.) : ବିବର୍ଣ୍ଣ ହୋଇଥିବା ଦେହର ଚମଡ଼ା, ଏକପ୍ରକାର ପିଠା

**କାକଡ଼ା** - *ନବ:* (ବି.) : କଙ୍କଡ଼ା

**କାକତ** - *ଗ:କୋ:* (ବି.) : କାଗଜ

**କାକତୁଆ** - *ଅ:ଢ:* (ବି.) : ଏକ ଶୁଆ ଜାତୀୟ ପକ୍ଷୀ

**କାକପୋଇ** - *ଅ:* (ବି.) : ଛୋଟକୁଆ

**କାକବନ୍ଧ୍ୟା** - *ଢ:* (ବି.ବିଂ.) : ଗୋଟିଏ ସନ୍ତାନ ଜନ୍ମ କରିଥିବା ନାରୀ

**କାକବାଞ୍ଝ** - *ଭ:* (ବି.) : ଯେଉଁ ସ୍ତ୍ରୀ ଏକମାତ୍ର ସନ୍ତାନ ଜନ୍ମକରିଥାଏ

**କାକ ବିଳାସୀ** - *ପୁ:* (ବିଂ.) : ସକାଳେ ଭାଙ୍ଗ ସେବନ କରୁଥିବା ବ୍ୟକ୍ତି

**କାକର** - *ଅନେ:* (ବିଂ.ବି.) : ଛାନିଆ, ଅତି ଭୟଭୀତ, ଶିଶିର, ଥଣ୍ଡା

**କାକରବେଳା** - *ପୁ:* (ବି.) : ସକାଳବେଳା

**କାକର୍ଛାନିଆ** - *ଗଞ୍ଜ:ସୁନ:* (କ୍ରି.) : ଅତ୍ୟନ୍ତ ବିସ୍ମିତ ହେବା, ଅତି ତରବର, ଛାନିଆଁ

**କା କର୍‌ବୁ** - *କନ୍ଧ:* (କ୍ରି.) : କ'ଣ କରିବୁ

**କାକସ୍ନାନ** - *ସଂ:* (ବି.) : ଶୀଘ୍ର ଗାଧୋଇବା

**କାକା** - *ଅନେ:* (ବି.) : କାଉ, ବାପାଙ୍କ ସାନଭାଇ, ଏକପ୍ରକାର ମାଛ

**କାକାତୁମ୍ବେରକା** - *କନ୍ଧ:* (ବି.) : କାଙ୍କଡ଼ ପରିବା

**କାକିନି** - *ମ:* (ବି.) : କାକୁଡ଼ି

**କାକୀ** - *ଅନେ:* (ବି.) : ଖୁଡ଼ୀ

**କାକୁଡ଼ିଆ** - *ଦେ:* (ବିଂ.) : ଦେଶୀଧାନ

**କାକୁଡ଼ିମଞ୍ଜିଆ** - *ଚା:* (ବି.) : ଏକପ୍ରକାର ଧାନର ନାମ

**କାକୁତି** - *ପଦ୍ୟ:* (ବି.) : କାତର ବଚନ ବା ସ୍ୱର, ଅନୁନୟ, ବିନତି, କାତର

**କାକୁତିମିନତି** - *ଜ:* (ବି.) : ବ୍ୟାକୁଳତା ପ୍ରକାଶ କରିବା

**କାକୁର** - *ଭ:* (ବି.) : କାକର

**କାକୁରତି** - *ନବ:* (ବିଂ.) ଅତିବ୍ୟସ୍ତ, ବିନୟପୂର୍ବକ, ବିକଳ ହୋଇ କହିବା

**କାକୁରି** - *ଅ:* (ବି.) : କାକୁଡ଼ି

**କାକୁର୍ତିଆ** - *ଜ:ଗଞ୍ଜ:ଖୋ:* (ବିଂ.ବି.) : ବିକଳ ହେଉଥିବା ବ୍ୟକ୍ତି, ତରତର ହେବା, ଆତୁର ହେବା

**କାକୁସ୍ତି** - *କେ:* (କ୍ରି.ବିଂ.) : ଅନୁରୋଧ କରିବା

**କାକେ** - *ମ:* (ସ.) : କାହାକୁ

**କାକେଇ** - *ଚା:* (ବି.) : କାଠ ପାନିଆଁ

**କାକେରି** - *ପଦ୍ୟ:* (ବି.) ମୃଦଙ୍ଗରେ ଲାଗୁଥିବା ଚମଡ଼ା, ସାନ ସାନ କାକେରା ପିଠା

**କାଖଗୁଲି** - *ଦେ:ଖୋ:* (ବି.) : କାଖ ସନ୍ଧିରେ ଉଠିବା ବାଗି, କାଖ ସନ୍ଧିରେ ହେଉଥିବା ଗୁଲି

**କାଖସନ୍ଧି** - *ନ:* (ବି.) : ଖୁଆତଳ

**କାଖେଇବା** - *ଅ:* (କ୍ରି.) : କାଖରେ ଧରିବା

**କାଖେର୍** - *କଳା:* (ବି.) : ବଡ଼ କାକୁଡ଼ି, କଖାରୁ

**କାଗଜ୍** - *ଦେ:* (ବି.) : ଖବର ପତ୍ର ହିସାବ, ନଥି

**କାଗଜ୍ ଲେଟ୍ରା** - *ଚୌ:* (ବି.) : କାଗଜରେ ଶୌଚକାମ ପ୍ରକ୍ରିୟା

**କାଗଜ କରିବା** - *ଦେ:* (କ୍ରି.) : ଦରଖାସ୍ତ କରିବା, ଚୁକ୍ତିନାମା କରିବା

**କାଗଜ ବାଘ** - *ସଂ:* (ବି.) : ମିଛ ବାଘ, ଛବି ବାଘ, ନକଲି ବାଘ

**କାଗଜି** - *ପଦ୍ୟ:ଜ:* (ବି.) : କାଗଜି ଲେମ୍ବୁ, କାଗଜ ପ୍ରସ୍ତୁତକାରୀ ବ୍ୟକ୍ତି, କାଗଜ ବିକ୍ରେତା

**କାଗଜିଫୁଲ** - *କେନ୍ଦୁ:* (ବି.) : କାଗଜଫୁଲ ଗଛ, ବୁଗନ୍‌ଭିଲା

**କାଗଦ୍** - *ନବ:* (ବି.) : କାଗଜ

**କାଙ୍କ** - *ଅନେ:* (ବି.) : ସାରସ ପକ୍ଷୀ, କାଙ୍କ ଫୁଲ, ମାଟି ଖୋଳିବା ଉପକରଣ, ଉଭୟ ପାର୍ଶ୍ୱରେ ଲମ୍ବିଥିବା ଧାରଯୁକ୍ତ ଯନ୍ତ୍ର

**କାଙ୍କଣ** - *ଗଦ୍ୟ:* (ବି.) : କାଙ୍କଡ଼

**କାଙ୍କର** - *ପଦ୍ୟ:ମା:କଥ:* (ବି.) : ଗୋଡ଼ି, କାଙ୍କଡ଼

**କାଙ୍କରା** - *କୋ:* (ବି.) : ମୁରୁମ୍ ମାଟି, ଛୋଟ ପଥର ଖଣ୍ଡଯୁକ୍ତ ନାଲି ମାଟି

**କାଙ୍କିଣୀ** - *କେ:* (ବିଂ.) : ବେହିଆ

**କାଙ୍କୁଆ** - *ପଦ୍ୟ:* (ବି.) : କାଙ୍କ ଦ୍ୱାରା ମାଟି ହାଣିବା ମୂଲିଆ, କୋକୁଆ, କାଳ୍ପନିକ ଭୟଙ୍କର ଜୀବ

**କାଙ୍କୁଡ଼ି ହେବା** - *କୋ:* (କ୍ରି.) : ମୋଡ଼ି ହୋଇ ରହିବା

**କାଙ୍କ୍ ଗୁଡ଼ିଆ** - *ଦେ:* (ବି.) ଲମ୍ବା ଗୋଡଥିବା ଲୋକ

**କାଙ୍ଗାଲ୍** - *ଦେ:ଖୋ:* (ବି.) : ଦୁଃଖୀ, ରଙ୍କୀ, ଗରିବ।

**କାଙ୍ଗାଳିଆ** - *ଦେ:କ:* (ବିଂ.) ରଙ୍କି, ଭୋକିଲା, କାଙ୍ଗାଳ ପରି

**କାଙ୍ଗୁ** - *ପଦ୍ୟ:କଥ:* (ବି.) : ବଡ଼ ହରଡ଼, କାନ୍ଦୁଲ, ଏକ ବଣଜାତ ଶସ୍ୟ

**କାଙ୍ଗୁ ବରକୋଳି** - *ଗଜ:* (ବି.) : ବଡ଼ବଡ଼ ବରକୋଳି

**କାଙ୍ଗୁଲ ଫାଳିଆ** - *ନ:* (ବି.) : କାଙ୍ଗୁଲ ଶସ୍ୟର ଫାଳ ସଦୃଶମାନ ସ୍ୱର୍ଣ୍ଣ ଅଳଙ୍କାର

**କାଙ୍ଗୁଲା** - *ଢ:ଜ:* (ବି.) : ଘର ନିର୍ମାଣ ଜିନିଷ, ପିତ୍ତଳ ପାତ୍ର ବିଶେଷ

**କାଙ୍ଗୁଣଥାଳି** - *ସ:* (ବି.) : କୋକିଶିଥାଳି

**କାଚ** - *ଅନେ:* (ବି.) : ଚୂଡ଼ି, କାଚ ଓ କାଚତିଆରି ଦ୍ରବ୍ୟ, କାଚମଣି, କୃଷ୍ଣବର୍ଣ୍ଣ ଲୁଣ, ବାଲି ଏବଂ କ୍ଷାରରୁ ଅଗ୍ନି ସଂଯୋଗରେ ଉତ୍ପନ୍ନ ସ୍ୱଚ୍ଛଦ୍ରବ୍ୟ, ବୋତଲ, ଚାଳ ଛପରର ପ୍ରଥମ ସ୍ତର, ଶଙ୍ଖା

**କାଚ୍‌କେନ୍ଦୁ** - *ଦେ:* (ବିଂ.) : ସ୍ୱଚ୍ଛ, ନିର୍ମଳ

**କାଚ୍‌ବା** - *ଦେ:* (କ୍ରି.) : ଲୁଗାସଫା କରିବା

**କାଚକାଚୁଆ** - *ସ:* (ବିଂ.) : କର୍ଦ୍ଦମାକ୍ତ, ଖସଡ଼ା, ସନ୍ତସନ୍ତିଆ

**କାଚକୁମ୍ପି** - *ଖୋ:ଗଜ:କଥ:* (ବି.) : କାଚ ବୋତଲ, ଶିଶି ବୋତଲ

**କାଚକେନ୍ଦୁ** - *କ:ସ:* (ବିଂ.) : ଅତି ପରିଷ୍କାର, ଅତି ସ୍ୱଚ୍ଛ

**କାଚରା** - *ଅନେ:* (ବି.) : କାଦୁଅ, ମଇଳା, ଶଙ୍ଖାରି, ଚୁଡ଼ି ବ୍ୟବସାୟୀ, ଯିଏ ସ୍ତ୍ରୀଲୋକଙ୍କୁ ଚୁଡ଼ି ବିକେ, କାଚ, କଂସାପିତ୍ତଳ ବ୍ୟବସାୟ କରୁଥିବା ଜାତି ବିଶେଷ

**କାଚରା ପୋକ** - *ଖୋ:* (ବି.) : ତେଲୁଣି ପୋକ ପ୍ରଜାତିର କଳା ରଙ୍ଗର ପୋକ

**କାଚି** - *ନୁ:କଳା:ସୁ:* (ବି.) : ମାଠିଆର ଢାଙ୍କୁଣି, କୁଣ୍ଡି, ଛୋଟ ମାଟିପାତ୍ର, ଖେଳଣା, ଛୋଟ ଗିନା

**କାଚିକୁଁଡ଼ି** - *ନୁ:* (ବି.) : ଶିଶୁଙ୍କ ଖେଳ

**କାଚିଣ୍ଡି** - *ମ:ଭ:* (ବି.) : ତେଲୁଣି ପୋକ

**କାଚିଣ୍ଡିଆ** - *ଭ:* (ବି.) : ଗୋ-ରୋଗ ବିଶେଷ

**କାଚିଟମ୍** - *ଗଜ:* (ବି.) : ସଠିକ୍

**କାଚିଦେବା** - *ମ:* (କ୍ରି.) : କଟାଡ଼ି ଦେବା

**କାଚିବା** - *ଅନେ:* (କ୍ରି.) : ଲୁଗା ସଫା କରିବା, ଝିଅଟିଏ ଘରଯୋଗ୍ୟା ହେବା, ପ୍ରଥମ ରଜସ୍ୱଳା ହେବା

**କାଚିବୁଚି** - *ନୁ:* (ବି.) : ଶିଶୁଙ୍କ ମାଟି ପାତ୍ରର ଖେଳଣା

**କାଚୁ** - *ରା:* (ବି.) : ସଲପ ରସ (ମଦ)

**କାଚ୍ୟାର** - *ଚା:* (ବି.) : ଗୋରୁ ଆଦିଙ୍କ ପଘା

**କାଛର** - *ସଂ:* (ବି.) : ଗାଈର ପଘା

**କାଛା** - *ଦେ:* (ବି.) : ଲେଙ୍ଗୁଟି

**କାଛି** - *ଚା:ସଂ:* (ବି.) : ମୋଟା ଦଉଡ଼ି, କରିଆ, ଛୋଟ ଖଦି

**କାଛିଆ** - *ଭ:ଗଜ:ଜ:* (ବି.) : ସୂତାରେ ବୁଣା ଛୋଟ ଲୁଗା, କଛା

**କାଛୁକୁଣ୍ଡିଆ** - *ଦେ:ଖୋ:* (ବି.) : ଖସୁ, ଘା

**କାଛେଟି** - *ଜ:* (ବି.) : ଛୋଟଲୁଗା

**କାଛେଣୀ** - *ସଂ:* (ବି.) : କୌପୁନୀ

**କାଜ୍** - *ମ:ଚା:* (ବି.) : କାର୍ଯ୍ୟ

**କାଜ୍‌ଘର** - *ଚା:* (ବି.) : ଯେଉଁ ପରିବାରରେ ବିବାହ, ବ୍ରତ ବା ଅନ୍ତ୍ୟେଷ୍ଟି କ୍ରିୟା ପାଇଁ ଆୟୋଜନ ହୋଇଥାଏ

**କାଜା** - *ଗଜ:ରା:* (କ୍ରି.ବି.) : କାଜ (ସିଲେଇ), ଖଜା, ମିଠା

**କାଜୁ** - *କନ୍ଧ:ଦେ:* (ବି.) : ହାତ, ଲଙ୍କାଭାଲିଆ

**କାଜୁଆ** - *ଗଦ୍ୟ:* (ବି.) : କେଳାଜାତି

**କାଜେ** - *କଳା:କୋ:* (ଅ.) : ପାଇଁ, କାରଣରୁ, ସକାଶେ

**କାଞ୍ଚ** - *କୋ:ବା:ନବ:* (ବି.) : କାଚ, ଚୁଡ଼ି, ବୋତଲ

**କାଞ୍ଚନ** - *ନ:* (ବି.) : ଏକଫୁଲ ଗଛ

**କାଞ୍ଚି** - *ଦେ:* (ବିଂ.) : ଗିନା, ମାଟିପାତ୍ର

**କାଞ୍ଚିଆ** - *ଗଜ:* (ବିଂ.) : ମନ୍ଦ ପ୍ରକୃତିର ଲୋକ

**କାଞ୍ଚିକୁଣ୍ଡି** - *ଚୌ:* (ବି.) : ପିଲା ଧୂଳି ଖେଳର ଖେଳଣାପାତ୍ର

**କାଞ୍ଚୁଲା** - *ଜ:* (ବି.) : ବାଉଁଶ ପାତର ଛୋଟ ଆଧାର

**କାଞ୍ଚୁଲି** - *ପଦ୍ୟ:* (ବି.) : ତେଲ ରଖିବା ନିମନ୍ତେ ମାଟିର ଛୋଟ ଗିନା

**କାଞ୍ଜି** - *ଅନେ:* (ବି.) : ଖଟା ତୋରାଣିରେ ପ୍ରସ୍ତୁତ ଖାଦ୍ୟ, ବାଉଁଶବୁଦା

**କାଞ୍ଜିଅଁଳା** - *ନ:* (ବି.) : ମାର୍ଗଶୀର କୃଷ୍ଣ ନବମୀରେ ପାଳନ ହେଉଥିବା ପୂଜା

**କାଞ୍ଜିଆବୁଦା** - *ଅ:* (ବି.) : ବୁଲା ଗୋରୁଙ୍କୁ ଆବଦ୍ଧ କରିବା ସ୍ଥାନ, କାଞ୍ଜିଆହୁଦା

**କାଞ୍ଜିଗାତ** - *ପଦ୍ୟ:ନ:* (ବି.) ସ୍ତ୍ରୀ ଲୋକମାନଙ୍କର ଗିଲ ଖେଳ, ଗିଲମଞ୍ଜି, ତେନ୍ତୁଳି ମଞ୍ଜିକୁ କାଠ ଗଡ଼ର ଗାତକୁ ଗାତ ଡିଆଇଁ ଖେଳିବା

**କାଞ୍ଜିତୋଡ଼ାଣି** - *ପଦ୍ୟ:* (ବି.) : ଦୁଇଦିନରୁ ବେଶି ବାସି ତୋରାଣି, ଯହିଁରୁ କାଞ୍ଜି ତିଆରି ହୁଏ

**କାଞ୍ଜିପଟା** - *କୋ:* (ବି.) : ଘରେ ଖେଳାଯିବା ଖେଳ ବିଶେଷ

**କାଟ** - *କନ୍ଧ:ପଦ୍ୟ:ନୂ:* (ବି.) କାଠ, କମାଇବା, ଊଣା କରିବା

**କାଟ୍‌କା** - *କନ୍ଧ:* (ବି.) : ପାଦ

**କାଟ୍‌ଛାଟ୍** - *ପଦ୍ୟ:* (ବି.) : କଟାହେବାର ଢଙ୍ଗ, ରୂପ, ଆକୃତି, ଅନ୍ତିମ ସାଜସଜ୍ଜା, କଟାକଟି

**କାଟ୍‌ତି** - *ପଦ୍ୟ:* (ବି.) : ବଜାରରେ ବିକ୍ରୟ ଚାହିଦା

**କାଟ୍‌ନା** - *ନବ:* (ବି.) : ବାଲଟି

**କାଟ୍ ପତି** - *ଶୌ:* (ବି.) : ତାସ୍‌ର ଏକ ଖେଳ

**କାଟ୍‌ବୁତ** - *ବା:* (କ୍ରି.) : କାଟିବୁତ

**କାଟ୍‌ବୁଥିନ୍** - *ବା:* (କ୍ରି.) : କାଟିଦେବୁଟି

**କାଟ୍‌ମା** - *କେନ୍ଦୁ:* (କ୍ରି.) : କାଟିବା

**କାଟ୍‌ସା** - *ଦେ:* (ବି.) : ପନିକି

**କାଟକମ୍** - *ଗଦ୍ୟ:* (ବି.) : କଙ୍କଡ଼ା

**କାଟଛାଣ୍ଟ** - *ପଦ୍ୟ:* (ବିଂ.) ଯେତିକି ଆବଶ୍ୟକ, ସେତିକି ରଖି ଅନ୍ୟସବୁକୁ ବାଦ୍ ଦେବା

**କାଟଣ** - *ଅ:* (ବି.) : ଗଢ଼ଣ

**କାଟଣ ପାଣି** - *ବା:ବା:* (ବି.) : ମନ୍ତ୍ର ପାଣି, ଭୂତ ଛଡ଼ାଇବା ଲାଗି ଗୁଣିଆର ମନ୍ତୁରା ପାଣି

**କାଟନାମ୍** - *ଗଜ:ଗ:* (ବି.) : ଯୌତୁକ

**କାଟପାଣି** - *ଅନେ:* (ବି.) : ମନ୍ତୁରା ପାଣି, ସମାଧାନର ସୂତ୍ର, କୌଣସିରୋଗ ନିବାରଣାର୍ଥ କିମ୍ବା କାମନା ପୂରଣ ନିମିତ୍ତ ଅଭିମନ୍ତ୍ରିତ ଜଳ

**କାଟବାଛ** - *ଅ:* (ବି.) : କାଟିବା ଓ ବାଛିବା କାମ

**କାଟା** - *ଅନେ:* (ବିଂ.) : ବିଡା, କଟା, ଗୋଛା, ଲୁଗା, ନିକିତି

**କାଟାକୁଲି** - *ମା:* (ବି.) : କଣ୍ଢେଇ କୋଳି

**କାଟି** - *ଦେ:* (ବି.) : ମଇଳା ତେଲ, କାଏବ୍

**କାଟିଆ** - *କନ୍ଧ:* (ବି.) : ବିଛା

**କାଟିଏଁ** - *ମ:* (ବି.) : କାଟି

**କାଟିଣୀ** - *କ:* (ବି.) : ଯେଉଁଥିରେ ଉପରେ ଥିବା ତାଳପତ୍ର କଟାଯାଏ।

**କାଟି ପକାଇବା** - *ଖୋ:* (କ୍ରି.) : କଥା ନକହିବା

**କାଟିବା** - *ପଦ୍ୟ:ଅ:ଗା:* (କ୍ରି.) : ଅସ୍ତ୍ରାଦି ଦ୍ୱାରା ଛେଦନ କରିବା, କର୍ତ୍ତନ କରିବା, ଊଣା କରିବା, କମାଇବା, କାଟୁ କରିବା, ଖାପିବା, ଫଳପ୍ରଦ ହେବା, ପୀଡ଼ାଦାୟକ ହେବା, ଗାଳିଦେବା,

ଯାପନ କରିବା, କପାଆଦିରୁ ସୂତା ପ୍ରସ୍ତୁତ କରିବା, ଆଙ୍କିବା, ଟାଣିବା

**କାଟୁ** - *ଗଞ୍ଜ:ପଦ୍ୟ:ସୁ:* (ବି.) : ଲକ୍ଷ୍ୟଭେଦନ, ଫଳପ୍ରଦାନ, ଶଗଡ଼ର ହାଲ, ଚକ ଚାରିପାଖ ବୁଲିଥିବା ଲୁହା, ଲାଗୁ, ଲୋଭୀ

**କାଟୁ କରିବା** - *ରା:ଅ:ପଦ୍ୟ:* (କ୍ରି.) : ଗୁଣ କରିବା, ଫଳପ୍ରଦ ହେବା, ଲକ୍ଷ୍ୟଭେଦ କରିବା

**କାଟୁକଲା** - *ଗଞ୍ଜ:* (କ୍ରି.) : ଠିକ୍ ହେଲା, କାମ ଦେଲା

**କାଟୁଣୀ** - *ପଦ୍ୟ:* (ବିଂ.) : ଯେ ସୂତାକାଟେ, ସୂତା କାଟିବାର ମଜୁରୀ ବା ପାରିଶ୍ରମିକ

**କାଟୁନ୍ ଫର୍ଦ୍ଦ** - *ସଂ:* (ବି.) : ବ୍ୟଙ୍ଗ ଚିତ୍ର

**କାଟୁବଳା** - *ନ:* (ବି.) : ଶଗଡ଼ ତୁମ୍ବରେ ଲାଗୁଥିବା ଲୌହ ବଳା

**କାଟୁ ବାନ୍ଧିବା** - *ଗଞ୍ଜ:* (କ୍ରି.) : ତାସଖେଳରେ ନିର୍ଦ୍ଦିଷ୍ଟ ବାନ୍ଧିବା ଟଙ୍କା

**କାଟୁରୀ** - *ରା:* (ବି.) : ଛୁରୀ

**କାଟୁଳି** - *କେନ୍ଦୁ:ମ:ବା:* (ବି.) ଅଣ୍ଡା ଦେଉଥିବା ମାଈ କୁକୁଡ଼ା

**କାଟେ** - *କଣ:* (ବି.) : ଖଟ

**କାଟେଣି** - *ଢ:ପଦ୍ୟ:* (ବିଂ.ବି.) : ମାଟିକଟା ଶୈଳୀ, ପାଣିକାଟେଣି, ମାଟିକାଟେଣି, ସୂତା କାଟିବା, ସୂତା କାଟିବାର ଧରଣ, ଲୁଗାରେ ବୁଣା ହୋଇଥିବା ସୂତାର ବେଧ, କାଟୁଣୀ, ଯେ ସୂତାକାଟେ, ପ୍ରସାଧିତ କେଶର ବିନ୍ୟାସ, ଫିରେଇ, ତୋଡ଼

**କାଟ୍ କୁଟ୍** - *ଅ:* (କ୍ରି.ବିଂ.) : ସଂଶୋଧନ କରିବା, କାଟିକୁଟି କମେଇଦେବା

**କାଠ** - *ନ:* (ବିଂ.) : କୃପଣ

**କାଠ** - *ପଦ୍ୟ:ଦେ:ଜ:* (ବି.ବିଂ.) : ପଥର, ପାଷାଣ, ବୃକ୍ଷର କଠିନ ଅଂଶ, ଦାରୁ, ଜାଳେଣି, କାଠ, ଲାଠି, ଘରର ଖୁଣ୍ଟ, କଡ଼ି ଇତ୍ୟାଦି, ଟାଣୁଆ, କଠିନ, ବହଳିଆ, ନୀରବ, ନିଶ୍ଚଳ, ଭୟ, କୃପଣ, ଗଛର ଗଣ୍ଡି, ଆଶ୍ଚର୍ଯ୍ୟ

**କାଠ୍ ଭଲ୍ମି** - *କଳା:କେନ୍ଦୁ:* (ବି.) : କାଠରେ ଲାଗିଥିବା ଉଈ

**କାଠ୍‌ଗୋଲା** - *ଦେ:* (ବି.) : କାଠବିକ୍ରୟ କେନ୍ଦ୍ର, କାଠ ଗୋଦାମ

**କାଠକରମା** - *ସଂ:* (ବି.) : କମଳାଲେମ୍ବୁ

**କାଠକଲମ** - *ନ:ବା:* (ବି.) ବାଡ଼ ବୁଜିବାପାଇଁ ବ୍ୟବହୃତ ଗଛ, ଅମରୀ, କାଠରେ ତିଆରି କଲମ, ଗବ

**କାଠକାଗଜ** - *ସଂ:* (ବି.) : ଶିରିସ୍ କାଗଜ

**କାଠଖପ୍ର** - *ସୁ:* (ବି.) : ଛପର, ଖପରିଲ ଛପର

**କାଠଖୁମ୍ପା** - *ସଂ:* (ବି.) : କାଠହଣା ଚଢେଇ

**କାଠଗଡ଼ା** - *କ.ପଦ୍ୟ.* (ବି.) : ବିଚାରାଳୟର ମିଶାଲ, ବିଚାରପତିଙ୍କୁ ବୟାନ ଦେବା ଗଡ଼ା

**କାଠଗଣ୍ଡିଆ** - *ଦେ.* (ବିଂ.) : ଅଳସୁଆ

**କାଠଚୁଙ୍କୁ** - *ବର.* (ବି.) : କାଠହଣା ଚଢେଇ

**କାଠପଟାଳି** - *ସଂ.* (ବି.) : ଜଳପଥରେ ସ୍ଥାନାନ୍ତରି ସମ୍ବନ୍ଧ ବହୁ କାଠଖଣ୍ଡ

**କାଠ ପଳଖା** - *ସଂ.* (ବିଂ.) : ଅସାର ମଣିଷ, କାଠ ଆସ୍ତରଣ

**କାଠ ପାଇଟାଳ** - *ଗଜ.* (ବି.) : କାଠ ମିସ୍ତ୍ରୀ

**କାଠବେଙ୍ଗଲି** - *କେନ୍ଦୁ.* (ବି.) : ମଞ୍ଜୁଆତି

**କାଠ ମୁହାଁ** - *ଅ.ସଂ.* (ବିଂ.) : ନିର୍ଲଜ, ବେହିୟା

**କାଠମେଣ୍ଢୁ** - *ଗଜ.* (ବି.) : କରତ କଳ

**କାଠରା** - *ସଂ.* (ବି.) : ବଢେଇ, କାଠୁରିଆ

**କାଠଲେମ୍ବୁ** - *ସଂ.* (ବି.) : କାଞ୍ଜିଆଲେମ୍ବୁ, ବଡଲେମ୍ବୁ

**କାଠଶିଆଳି** - *କେନ୍ଦୁ.* (ବି.) : ଏକ ପ୍ରକାର ଜଙ୍ଗଲୀ ଗଛ

**କାଠି** - *ଅନେ.* (ବି.) : ଗଛର ଛୋଟ ଡାଳ, ଚାବିକଞ୍ଚି, ବାଡ଼ି, ଦାନ୍ତକାଠି, ବାଉଁଶ ଖାଡ଼ି ବା କାଠି, ଏକ ଯୁଦ୍ଧ ନୃତ୍ୟ, ଦାସକାଠିଆର କାଠି

**କାଠିଆ** - *କ.ଦେ.ଭ.* (ବି.ବିଂ.) : ଏକ ପ୍ରକାର ସୁମିଷ୍ଟ କଦଳୀ, ପାଟକପୁରା, କୃପଣ

**କାଠିଆ ଜନ୍ଦା** - *ଖୋ.* (ବି.) : ଏକ ପ୍ରଜାତିର ଜନ୍ଦା

**କାଠିଏ** - *କ.* (ବିଂ.) : ଅପରିମିତ

**କାଠି କଣ୍ଢେଇ** - *ସଂ.* (ବି.) : କାଠି ଦ୍ୱାରା ନାଚ କରାଯାଉଥିବା କଣ୍ଢେଇ

**କାଠି କରିବା** - *ନୂ.କନ୍ଧ.* (କ୍ରି.) : ଦାନ୍ତ ଘଷିବା

**କାଠିକେଲ୍** - *କଳା.* (ବି.) : କଣ୍ଢେଇ କୋଳି

**କାଠିଖିଆ** - *ବା.କଳା.* (ବି.ଅ.) ଗାଳିବିଶେଷ, ସ୍ତ୍ରୀ ଲୋକଙ୍କର ଗାଳି

**କାଠି ଛୁଇଁବା** - *କ.* (ବି.) : ସାପ କାମୁଡ଼ିବା। ଏକ ପ୍ରକାର ସାପ

**କାଠିତର** - *ପୁ.* (ବିଂ.) : ଶୁଖିଲା ଫୁଟାଣି

**କାଠିନାଚ** - *ସୁବ.* (ବି.) : ଦାସକାଠିଆ ନାଚ

**କାଠିମରାଭାତ** - *ଦେ.* (ବି.) ଟାଣ, ଦରଫୁଟା

**କାଠିମହୁ** - *କଳା.* (ବି.) : ଛୋଟ ଫରି କରୁଥିବା ମହୁ

**କାଠିଲଗା** - *ଭ.* (ବି.) : ସାପକାମୁଡ଼ା

**କାଠୁଆ** - *ଅନେ.* (ବିଂ.ବି.) : ସହନ ଶକ୍ତି ଯାହାର ଅଧିକ ଥାଏ, ସ୍ୱଚ୍ଛ ଜଳୀୟ, ଟାଣ, ଛୋଟ ଡଙ୍ଗା, କାଠ ତିଆରି ଗିନା, ଲୁଣ କାଠୁଆ, ଅଳସୁଆ, ମଠୁଆ, କାଠରେ ନିର୍ମିତ ପିକଦାନୀ, ମାଛ

**କାଠେଇ ଖିଆ** - *ଗଜ.ପୁ.* (ବିଂ.) : ଗାଳି, ଏକ ଗାଳି (କାଠରେ ପିଟା ଖାଇବା ଅର୍ଥରେ)

**କାଢ୍‌ବା** - *ସ.* (କ୍ରି.) : କାଢିବା

**କାଡା** - *ଗଞ:* (ବି.) : ଘୁଷୁରୀ ଛୁଆ
**କାଡୁ** - *ଢେ:* (ବି.) : ଚୁଡି
**କାଢେଇ** - *ରା:* (ବି.) : କରେଇ
**କାଢ଼** - *ପଦ୍ୟ:* (ବି.) : ପିଟୁଣି ବାଦ୍ୟ
**କାଢୁଡୁ** - *ଗଦ୍ୟ:* (ବି.) : ଚଟୁ
**କାଢ୍ନି** - *ପଦ୍ୟ:* (ବି.) : ବାଘ
**କାଢ଼ନା** - *ନଗ:* (ବି.) : ବାଲ୍‌ଟି
**କାଢ଼ା** - *ନୂ:କଣ:ମା:* (ବିଂ.) : କଷ୍ଟ, କଠିନ, କ'ଣ, ଠେକୁଆ
**କାଢ଼ାଏ** - *ଢେ:* (ବି.) : ବୁଢୀ
**କାଢ଼ାକାଢ଼ା** - *କଣ:* (ବି.) : କ'ଣ କ'ଣ
**କାଢ଼ିଝାଢ଼ି ହେବା** - *ଗ:* (କ୍ରି.) : ରାଗରେ ବକ୍‌ବକ୍ ହେବା
**କାଢ଼ିଦେବା** - *କୋ:* (କ୍ରି.) : ବହିଷ୍କାର କରିବା, ବାହାର କରିବା
**କାଢୁ** - *କଣ:* (ବି.) : ଗୋଡ଼
**କାଢୁଣି** - *କଣ:* (ବି.) : ଛତ୍ରି
**କାଢ** - *ଜ:ଖୋ:* (ବିଂ.ବି.) : ଶକ୍ତି, ଗର୍ବ, ସାମର୍ଥ୍ୟ
**କାଢ଼ଅଦା** - *କ:* (ବି.) : ଅଦା ଗଛ ହୋଇ ଯିବାପରେ ଯେଉଁ ଅଦାକୁ ଲଗାଯାଇଥାଏ
**କାଢ଼ଣ** - *କ:* (ବି.) : ଏକ ପ୍ରକାରର ଘାସ
**କାଢ଼ିଆ** - *କ:* (ବି.) : ଋଣ
**କାଢ, କାଢି** - *କଳା:* (କ୍ରି.) : କାଠ ବା ବାଉଁଶାଦିକୁ ହଳଦ୍ୱାରା ଝିକି ଝିକି ନେବା

**କାଢପଣ** - *ଭ:* (ବିଂ.) : ବାହାଦୂରୀ
**କାଢା** - *ପଦ୍ୟ:* (ବି.) : ସର୍ଦ୍ଦିରୋଗରେ ପ୍ରଯୁଜ୍ୟ ଶୁଣ୍ଠି ପିପ୍ପଳୀ ଆଦିର ଚୂର୍ଣ୍ଣ, ପାଚନ ବିଶେଷ
**କାଢି** - *ଜ:ପଦ୍ୟ:* (ବି.) : ବାହାର କରିବା, ଶାରୀରିକ କ୍ଷମତା, ବଳ, ଶକ୍ତି, ସାମର୍ଥ୍ୟ, ପରାକ୍ରମ
**କାଢିଆ** - *ଭ:ପଦ୍ୟ:ପୁ:ପଦ୍ୟ:* (ବି.ବିଂ.) ଅଗ୍ରୀମ, ଋଣ, ଧାର, କାଳି ସଉଦା
**କାଢିବା** - *ପଦ୍ୟ:* (କ୍ରି.) : ପଦାକୁ ବାହାର କରିବା, ଝିଙ୍କିନେବା, ବଳପୂର୍ବକ ଟାଣିନେବା, ବମନ କରିବା, ଅନ୍ତର କରିବା, ଗାଳିଦେବା, ତଡ଼ିଦେବା, ଦୂର କରିବା, ଉଠାଇବା
**କାଢୁ** - *ପଦ୍ୟ:ବୌ:* (ବି.) : ପରାକ୍ରମଶାଳୀ, କାଢୁଆ
**କାଢୁଆ** - *ଅନେ:* (ବିଂ.) ପରିଶ୍ରମୀ, କର୍ମକୁଶଳ, ବଳୁଆ, ଶକ୍ତିଶାଳୀ, ଜବରଦସ୍ତ, ଯେ କାଢେ, ନିକର୍ମା, କାଢୁଆ, କୁଶଳୀ, ନକାରାତ୍ମକ ବା ବ୍ୟଙ୍ଗାତ୍ମକ, ପାରିବାପଣ ଥିବା, କରିପାରିବା ଶକ୍ତିଥିବା
**କାଢୁଆପଣ** - *କ:* (ବି.) ଶକ୍ତିମନ୍ତା, ଯୋଗ୍ୟପଣିଆ
**କାଢେଇ୍ କାଲୁ** - *କଣ:* (ବି.) : ଭାତମଦ
**କାଢ଼ିଆ** - *କେ:* (ବି.) : ଋଣ

**କାଣମାଛ** - *କେନ୍ଦୁ:* (ବି.) : ମାଟିଆ ରଙ୍ଗର ମୋଟାମୋଟା ନଈ ମାଛ

**କାଣା** - *ଅନେ:* (ବି.) : ସୂତା ଗୁଡ଼ାଇବା ପାଇଁ ବ୍ୟବହୃତ ଏକପ୍ରକାର ବାଉଁଶ ନଳୀ, କଅଣ, ଏକଚକ୍ଷୁ ବିଶିଷ୍ଟ ବ୍ୟକ୍ତି

**କାଣାଁ** - *ସ:* (ଅ.) : କଣ

**କାଣି** - *ସୁ:ପଦ୍ୟ:ସ:କଳା:* (ବିଂ.) : ଅଂଧୁଣୀ, ଏକ ଚକ୍ଷୁ ନଥିବା ନାରୀ, କ୍ଷୁଦ୍ରାବୟବ, କଣାର ସ୍ତ୍ରୀଲିଙ୍ଗ, ଅଳ୍ପ, ସାମାନ୍ୟ ପରିମାଣ, କ୍ଷୁଦ୍ର

**କାଣିଆଙ୍ଗୁଠି** - *କେ:କ:ଖୋ:* (ବି.) : କାନି ଆଙ୍ଗୁଠି, ସବାସାନ ଆଙ୍ଗୁଠି

**କାଣିଆଁ** - *ସୁ:* (ବି.) : ଅଠାକାଠି

**କାଣି କଉଡ଼ି** - *ସଂ:କ:* (ବି.) : ଅର୍ଥହୀନତା, କପର୍ଦ୍ଦକ ହୀନତା, ଅତି ସାମାନ୍ୟ ଅର୍ଥ

**କାଣିଚାଏ** - *ପୁ:ଛ:କେ:* (ବିଂ.) : ଅତିଅଳ୍ପ, ଅତିସାମାନ୍ୟ, ଟିକିଏ, ସାମାନ୍ୟ

**କାଣିଷଣ୍ଢିଆ** - *କ:* (ବିଂ.) : ଠିକ୍ ଭାବରେ ଖାସୁ କରାଯାଇନଥିବା ବଳଦ

**କାଣୀ** - *ନ:କଳା:* (ବିଂ.) : ଅନ୍ଧୁଣୀ

**କାଣ୍ଡୁମୁ** - *କୋ:* (ବି.) : ମକର ସଂକ୍ରାନ୍ତି ପରଦିନର ପର୍ବ

**କାଣ୍ଡା** - *ଅନେ:* (ବି.) : ବଡ଼ ନିକିତି, କଣ୍ଡା, ଘମାଘୋଟ, କଣ୍ଡାକଣ୍ଡି, ଯେତିକି ଦରକାର

**କାଣ୍ଡାକାଣ୍ଡି** - *ଯା:* (ବିଂ.) : ଆବଶ୍ୟକତାକୁ ଚାହିଁ ଯଥେଷ୍ଟ

**କାଣ୍ଡି** - *ଖୋ:ଛ:ଢେ:ସଂ:* (ବି.ବିଂ.) : ବହୁଦିନ ଛଣାଛଣି କରିବା ଫଳରେ ତେଲ କଡ଼ାଇରେ ବସି ଯାଉଥିବା କଳ୍କ, ତେଲର ତଳ ମଇଳା ଅଂଶ, ତେଲ ବା ଘିଅ ପ୍ରଭୃତିର ମଇଳା ଅଂଶ

**କାଣ୍ଡିଆ** - *ଅନେ:* (ବି.ବିଂ.) : ରେଶମ ସୂତାର ଖଦଡ଼ିଆ ଅଂଶରେ ବୁଣା ଚାଦର, ଝୋଟରେ ତିଆରି ଲୋମ, ଲୋମଦିଆ କୁର୍ତ୍ତା, ଏକ ପ୍ରକାର ବଗ, ପଙ୍କୁଆ, ମଠା ଚାଦର

**କାଣ୍ଡି କଡ଼େଇ** - *ସଂ:* (ବି.) : ଲୁହା କଡ଼େଇ

**କାଣ୍ଡିବଗ** - *କ:ଭ:ଖୋ:* (ବି.) : ଛୋଟବଗ, ଏକ ପ୍ରକାର ବଗ

**କାଣ୍ଡିବଗ** - (ବି.) : ଏକ ପ୍ରକାର ବଗ

**କାଣ୍ଡିବା** - *କୋ:* (କ୍ରି.) : ମାପ କରିବା, ମାପିବା

**କାଣ୍ଡୁକୁ** - *ରା:* (ବି.) : ସରକାରୀ ଦୋକାନ

**କାଣ୍ଡାହୁ** - *ଗଦ୍ୟ:* (ବି.) : ପଣସ

**କାଣ୍ଡାଲ୍** - *ମ:* (ବି.) : ପଣସ

**କାଣ୍ଡ** - *ଦେ:ସୁ:କ:* (ବି.) : ଧନୁ, ଶର, ଘର ଚାଳର ଚାରିକୋଣରେ ଲାଗି ଥିବା କାଠଖଣ୍ଡ, ଲିଙ୍ଗ

**କାଣ୍ଡ କାନି** - *ସୁ:* (ବି.) : ଧନୁଶର

**କାଣ୍ଡ କାରଖାନା** - *ଦେ:* (ବି.) : ଗୋଳମାଳ ଭିଆଇବା

**କାଣ୍ଡକିଆ** - *ଚୌ:* (ବିଂ.) : କାଣ୍ଡେ ମାପର

**କାଣ୍ଡଜ୍ଞାନ** - *ଦେ:ଜେ:* (ବିଂ.ବି.) : ସାଧାରଣ ଜ୍ଞାନ, ବୁଦ୍ଧିସୁଦ୍ଧି

**କାଣ୍ଡନଳ** - *ଭ:ଜ:* (ବି.) : ସାପ ବିଶେଷ, କାନନୋଳି

**କାଣ୍ଡ ନାରାଚ** - *ପଦ୍ମ:* (ବି.) : ଏକ ପ୍ରକାର ବିଷାକ୍ତ ସାପ

**କାଣ୍ଡନୋଳି** - *ଜ:* (ବି.) : ବିଷହୀନ ସାପ, କାନ ଫାଶା

**କାଣ୍ଡ ପୋକ** - *ଖୋ:* (ବି.) : ଫସଲର କାଣ୍ଡକୁ ଆକ୍ରମଣ କରନ୍ତି

**କାଣ୍ଡରାଜ୍** - *କଳା:* (ବି.) : ଦ୍ରୁତ ଗତିରେ ଡେଇଁ ଡ଼େଇଁ ଯାଉଥିବା ସରୁ ସର୍ପ

**କାଣ୍ଡାଛରା** - *କଣ:* (କ୍ରି.) : ଚାଉଳ କାଣ୍ଡିବା

**କାଣ୍ଡାମ୍** - *କୋ:* (ବିଂ.) : ନଷ୍ଟ

**କାଣ୍ଡାରୀ** - *ପଦ୍ମ:* (ବି.) : ପଥିକ, ବାଟୋଇ

**କାଣ୍ଡି** - *ଭ:ପଦ୍ମ:ଖୋ:* (ବିଂ.ବି.) : ଧାନ ପୁଞ୍ଜୁଗ୍ ରାଶି, ସ୍ତୂପ, ଗଦା ପଣ୍ୟ ଦ୍ରବ୍ୟର ଭଣ୍ଡାର, ଗୋଦାମ, ବେଦର ମନ୍ତ୍ର ପ୍ରକରଣ, ଲଙ୍କାର ନଗର ବିଶେଷ, ଗ୍ରାମସ୍ଥ ଛୋଟ ଦୋକାନ, ଶୂଦ୍ରଙ୍କ ବଂଶୋପାଧି, ହାତୀଙ୍କ ତଳିପାରେ ହେବା ଏକପ୍ରକାର ରୋଗ, ଢେଙ୍କିମୁଣ୍ଡା, ଅଧିକ ପରିଶ୍ରମ କରେଇବା

**କାଣ୍ଡିଆ** - *ଅନେ:* (ବି.) : ଚଢେଇ ଧରା ଅଠାକାଠି, ପରିଷ୍କାର, ଅଠାକାଣ୍ଡିଆ, ଚାଳଘରର ରୁଅମାନଙ୍କୁ ଶୃଙ୍ଖଳାବଦ୍ଧ ଭାବରେ ରଖିବା ପାଇଁ ଫୋଡ଼ ଭିତରେ ଦିଆଯାଇଥିବା ସରୁ ବାଉଁଶ କାଠି, ଭୂଷାଦିର ପରିଷ୍କୃତ

**କାଣ୍ଡିଆକୁଣ୍ଡା** - *ଜ:ଭ:* (ବି.) ଧାନ ପେଶାପରେ ସଂଗୃହୀତ ସରୁ ଚିକ୍କଣ ଅଂଶ, ଚାଉଳ କୁଟିବା ବେଳେ କଳରୁ ନିର୍ଗତ ସରୁ କୁଣ୍ଡା

**କାଣ୍ଡିଆଳ** - *ଭ:* (ବି.) : ମୂଳଲୋକ

**କାଣ୍ଡିଏ** - *ଗ:* (ବିଂ.) : ବହୁତ, ପ୍ରଚୁର କାଣ୍ଡିଏ ଲୋକ, କାଣ୍ଡିଏ ମାଛ

**କାଣ୍ଡିବା** - *ପଦ୍ମ:* (କ୍ରି.) : ପରିଷ୍କୃତ କରିବା, ପ୍ରହାର କରିବା, ଚାଉଳ ବା ଡାଲିରୁ କୁଣ୍ଡା ଓ ବୋଳ ବାହାର କରିବା ନିମିତ୍ତ କୁଟିବା, ମାର୍ଜିତ ବର୍ଷା କରିବା, ଗଦା କରିବା, ପରାଭବ ଦେବା

**କାଣ୍ଡିମରା ଟଙ୍କା** - *ପଦ୍ମ:* (ବି.) : ଲୁଣମାରି ଅର୍ଜିଥିବା ଟଙ୍କା

**କାଣ୍ଡିହେବା** - *ଯା:* (କ୍ରି.) : ଗଦା ହେବା

**କାଣ୍ଡୁ** - *ଗଞ:କୋ:* (ବି.) : ଗାଳି, ଗଲୁ, କୁଣ୍ଡିଆ

**କାଣ୍ଡୁଆ** - *କେ:ଅ:* (ବିଂ.ବି.) : କଳି କରିବା ଲୋକ, କଳିଆ

**କାତ** - *ଦେ:ଭ:କେ:ପଦ୍ମ:* (ବି.) : ବାଉଁଶ ଦଣ୍ଡ, ଡଙ୍ଗା ବୁହାଇବା ବାଉଁଶ, ହାତଗୋଡ଼, ଖେଳାଦିରେ ହୁଡ଼ କରି ବାନ୍ଧିବା ପଇସାକୁଢ ବା କାଇଁଅକୁଢ

**କାତ୍ଲା** - *ଟ୍:ମ:* (ବି.) : ଭାକୁର ମାଛ

**କାତର** - *ପଦ୍ୟ:* (ବିଂ.) : ବିହ୍ବଳ, ଅଧୀର, ଦୁଃଖିତ, ଭୀତ, ଅସ୍ଥିର, ଭେଳା, ଡଙ୍ଗା, ଭାକୁଡ଼ମାଛ, ବିବଶ, ବ୍ୟାକୁଳ, ଚଞ୍ଚଳ

**କାତରାମାତରା** - *ଇ:* (ବି.) : ଥରଥର ଅବସ୍ଥା

**କାତା** - *ମା:କୋ:ରା:କୋ:* (ବି.) : ଖାତା, କଥା

**କାତାନ୍** - *ମ:ଟ୍:* (ବି.) : କଟୁରି

**କାତାର୍** - *ଟ୍:* (ବି) : ଖୁବ୍ ଉନଗହଳି

**କାତି** - *ଅନେ:* (ବି.) : କଟୁରୀ, ସାପଖୋଳ, ମାଛ ପ୍ରଭୃତିଙ୍କ ଦେହ ଉପରିସ୍ଥ ଆବରଣ, ଚମଡ଼ା, ଖୋଳପା, ସାପ କାତି

**କାତୁଆ** - *ଅନେ:* (ବି.) : କାଠ ଫାଳିଆରେ ନିର୍ମିତ କାତ, ଆହୁଲା, ମାଟି ଥଳେଇବା ପାଇଁ କାଠ ନିର୍ମିତ କୃଷି ଉପକରଣ ଖଣିତି, ଚନ୍ଦା

**କାତୁଆ କଡ଼** - *ଗ:* (ବି.) : ଇଟାର ପ୍ରସ୍ଥ

**କାତୁଲ୍ ଗୁଲା** - *କନ୍ଧ:* (ବି.) : ଆଦିବାସୀ କନ୍ଧ ସଂପ୍ରଦାୟର ମଙ୍ଗଳ କୃତ୍ୟ ଓ ଦିଅଁ ମଙ୍ଗୁଳାବିଧି। ପୁତ୍ରର ବିବାହ ସମୟରେ ଚାଉଳ ଚୂନା ଓ ମାଣ୍ଡିଆ ଚୂନାକୁ ମଦ୍ୟରେ ଗୋଳି ପ୍ରାୟ ତରଳ ଅବସ୍ଥାରେ ଏକ ନୂଆ ହାଣ୍ଡିରେ ରଖାଯାଏ । ପରେ ଏହାକୁ ଜାନି ଦ୍ୱାରା (ଆଦିବାସୀ ପୂଜକ) କର୍ତ୍ତାର ଇଷ୍ଟଦେବୀଙ୍କୁ ପୂଜା କରି ଦେବତାଙ୍କ ଆସ୍ଥାନ ନିକଟରେ ଶିକା ଦ୍ୱାରା ଛାତରୁ ଓହଳେଇ ଦିଆଯାଏ । ଏହାକୁ କାତୁଲ୍ ଗୁଲା କହନ୍ତି । ଏହା ବିବାହ ପରବର୍ତ୍ତୀ ଦିନ ବର ଓ କନ୍ୟାର ମାମୁମାନେ ପାନ କରି ବର ଓ କନ୍ୟାଙ୍କୁ ଆଶୀର୍ବାଦ ଦିଅନ୍ତି।

**କାତେ** - *ଟ୍:* (ଅ.ବିଂ.) : ପ୍ରକାର୍ଯ୍ୟ ବାଚକ ଶବ୍ଦ, କେତେ, ପରିମାଣ ବାଚକ ଶବ୍ଦ

**କାତେରା** - *ରା:* (ବି.) : ବତକ

**କାଥା** - *ମା:* (ବି.) : କଥା, କାହାଣୀ

**କାଦ** - *ଗଞ:ମା:ପଦ୍ୟ:* (ବି.) : କାତ, କାଦୁଅ, କର୍ଦ୍ଦମ, ନୌକାବାହିବା ବାଉଁଶ,

**କାଦ୍ମଳି, କାଦ୍ମଣ୍ଡି** - *କୋ:* (ବି.) : ଗୁଡ଼ରନ୍ଧା ସମୟର ମଇଳା

**କାଦ୍‌ଲିବା** - *କୋ:* (କ୍ରି.) : ମୁକୁଳିବା

**କାଦପାଣି** - *ପଦ୍ୟ:* (ବି.) : କର୍ଦ୍ଦମାକ୍ତ ଜଳ, ପଙ୍କୁଆ ପାଣି, ବିବାହର ପଞ୍ଚମଦିନ

**କାଦରା** - *ସଂ:* (ବି.) : ଚିଠିର ଲଫାପା

**କାଦୁଅ ହାଣ୍ଡି** - *ପଦ୍ୟ:* (ବି.) : ଦେଶୀୟ ସଂପ୍ରଦାୟରେ ବିବାହ ସମୟରେ କନ୍ୟାର ଏକ ପ୍ରକାର ଖେଳପ୍ରଥା

**କାଦୁଆତୁଣ** - *ଗ:* (ବି.) : ସାରୁପରିବା ମିଶିଥିବା ଘାଣ୍ଟ ତରକାରି

**କାଦୁ କରିବା** - *ଦେ:* (କ୍ରି.) : ପଙ୍କା ରୋଇବା

**କାଦୁରୀ** - *ରା:* (ବି.) : ଖଜୁରୀ

**କାଦେଇବା** - *ଦେ:* (କ୍ରି.) : କଦେଇବା

**କାଦେଲି** - *କଥ:* (ବି.) : କଦଳୀ

**କାଦୋ ପିଛଲ** - *ଓ/:* (ବିଂ.) : ବର୍ଷା ଦିନିଆ ପାଣି ଭିଜା ରାସ୍ତାର ଲକ୍ଷଣ

**କାଦୋମଲି** - *ସ:* (ବି.) : ଆଖିରସର ମଇଳା

**କାନ୍** - *ଥୁ:କଳା:ସ:* (ବି.) : କାନ

**କାନ୍‌କଟରା** - *ଥୁ:* (ବି.) : ପୋକ ବିଶେଷ

**କାନ୍‌କା** - *କଥ:* (ବି.) : ଆଖି

**କାନ୍‌କୁଚ୍‌ରୁ** - *ଅ:* (ବି.) : କାନରେ ଗୁପ୍ତକଥା କହୁଥିବା ବ୍ୟକ୍ତି

**କାନ୍‌ଖିଲା** - *ସ:ଥୁ:* (ବି.) : ଶଗଡ଼ର ଚକ ସହିତ ସଂଯୁକ୍ତ ଅଖକୁ ରଖିବା ପାଇଁ କାନ୍‌ଖିଲାର ପ୍ରୟୋଗ କରାଯାଏ, ଅଣକୀନି

**କାନ୍‌ଗୁହା** - *ଥୁ:* (ବି.) : କାନ ଭିତର ମଇଳା

**କାନ୍‌ଘର** - *ଥୁଦ:* (ବି.) : କାଂଜିଆ ହୁଦା

**କାନ୍‌ଝଇକା** - *କଳା:* (ବି.) : ତଳକୁ ଝରାଭଳି ଲମ୍ବିଥିବା କାନର ଅଳଙ୍କାର ବିଶେଷ

**କାନ୍‌ଥା** - *ମ:* (ବି.) : କନ୍ଥା

**କାନ୍‌ଦୁଖା** - *କଥ:* (ବି.) : କାନଟଣା

**କାନ୍‌ପାଟି** - *ମା:* (ବି.) : କାନପାଖ

**କାନ୍‌ପାର୍‌ବା** - *କଳା:* (କ୍ରି.) : ମନଦେଇ ଶୁଣିବା

**କାନ୍‌ଫୁସ୍‌କା** - *କଳା:* (ବିଂ.) : ଫୁସ୍‌ଫୁସ୍ କରି ଅତି ଧୀରେ ଧୀରେ କାନ ପାଖରେ କହିବା

**କାନ୍‌ରା, କାନ୍‌ନରା** - *ଚୌ:* (ବି.) : ଏକ ସରୁଲମ୍ବା ସାପ (ଗଛ କାଣ୍ଡ, ଡାଳ ପତ୍ରରେ ରହୁଥିବା ସାପ

**କାନ୍‌ସିମ୍** - *ଗଦ୍ୟ:* (ବି.) : କୁକୁଡ଼ା

**କାନ ଆଣ୍ଡିବା** - *ଚୌ:* (କ୍ରି.) : କାନ ମୋଡ଼ିବା

**କାନକଟା** - *ଚ:* (ବି.) : ଅପରାଜିତା ଫୁଲ

**କାନକୁରାଡ଼ି** - *କେନ୍ଦୁ:* (ବି.) : କଙ୍କି

**କାନଗଇ** - *ଖୋ:* (ବି.) : କାନ ଭିତରେ ଥିବା ମଇଳା

**କାନଗିରି** - *ଗ:* (ବି.) : କର୍ଣ୍ଣ ପଟଳ

**କାନଗୁର୍‌ଦା** - *କୋ:* (ବି.) : ସମୁଦ୍ର ମାଛ ବିଶେଷ

**କାନଗୋଇ** - *ସଂ:* (ବି.) : କାନୁନ୍‌ଗୋ, ଜମି ମାପଚୁପ୍ କରିବା କର୍ମଚାରୀ

**କାନଝିକା** - *ଗ:ଭ:* (ବି.) : କାନର ଅଳଂକାର

**କାନଟୋପ୍** - *ଥୁଦ:* (ବି.) : କାନରେ ଥଣ୍ଡା ପବନ ନ ପଶିବାପାଇଁ ଘୋଡା ଯାଉଥିବା ବସ୍ତ୍ର, ମଫଲର୍

**କାନ ଢେରିବା** - *କ:ସଂ:* (କ୍ରି.) : ଶୁଣିବା ପାଇଁ ଅପେକ୍ଷା କରିବା, କାନେଇବା, ପରକଥା ଲୁଚି ଶୁଣିବା

**କାନତରାଚି** - *ସଂ:ଗଢ:* (ବି.) : ଠିକାଦାର, କଣ୍ଟ୍ରାକ୍ଟର

**କାନପିଶାଚ** - *ଗ:* (ବି.) : କର୍ଣ୍ଣପିଶାଚ ନାମକ ତନ୍ତ୍ରବିଦ୍ୟା

**କାନଫାଣିଆ, କାନଫାସିଆ** - *ନ.ଭ.* (ବି.) : ପୁରୁଷମାନଙ୍କ କାନର ସ୍ୱର୍ଣ୍ଣଅଳଙ୍କାର

**କାନ ଫୁଙ୍କିବା** - *ଢେ.* (ବି.) : ଶିଷ୍ୟକୁ ମନ୍ତ୍ରଦେବା

**କାନଫୋଡ଼ା** - *କ.ଗ.* (ବିଂ.ବି.) : ଅବ୍ରାହ୍ମଣ ଜାତିର କିଶୋରମାନଙ୍କର କାନଫୋଡ଼ା ସଂସ୍କାର, କର୍ଣ୍ଣବୋଧ ସଂସ୍କାର

**କାନମୁଣ୍ଡ ଆଉଁଷିବା** - *ଢେ.* (କ୍ରି.) : ଅପମାନ ସହିବା

**କାନମୁଦ୍ରା** - *ଭ.ଗଜ.ଗ.* (ବି.) : କାନମୁଣ୍ଡା

**କାନ ମୋଡ଼ିବା** - *ସଂ* (କ୍ରି.) : ଶାସନ କରିବା, ଦଣ୍ଡଦେବା

**କାନରେ ବିଣ୍ଡାମାରିବା** - *ଗ.* (କ୍ରି.ବି.) : ପରକଥା ନ ଶୁଣିବା

**କାନଶିରି** - *କ.* (ବି.) : ଏକପ୍ରକାର ଶାଗ

**କାନଶୁଆ** - *ସୁବ.* (ବି.) : କାନ କଟରା, କାନ ଚାରିପଟେ ଘାରି କଟିବା

**କାନସଜ** - *ଭ.ଗ.* (ବି.) : କାନର ଅଳଂକାର

**କାନାକାନି** - *ଗ.* (କ୍ରି.) : କାନ ଡ଼େରିଶୁଣିବା

**କାନି** - *ଅନେ.* (ବି.) ପଣତ କାନି, ନାରୀମାନଙ୍କ ପିନ୍ଧା ଶାଢୀର ପ୍ରାନ୍ତଭାଗ, ପଣତର ଅଂଶ, ପଟ ବା ପାର୍ଶ୍ୱ

**କାନିଆଙ୍ଗୁଳି** - *ଢେ.* (ବି.) : ହାତର ସାନ ଆଙ୍ଗୁଠି, କାଣିଆଙ୍ଗୁଠି

**କାନିଆଁପିଲା** - *କଳା.* (ବି.) : ବିବାହ ହେଉଥିବା ବା ହେବାକୁ ଥିବା କନ୍ୟା

**କାନିକା** - *ଗ.ଢେ.* (ବି.) : ଖେଚୁଡ଼ି, ମିଠାଭାତ

**କାନିକାଟିବା** - *ଖୋ.* (କ୍ରି.) ଗୁଡ଼ି ଉଡ଼ାଇବାବେଳେ ଗୁଡ଼ିର ଦିଗକୁ ବଦଳାଇବା

**କାନିକିଟି** - *ଗ.* (ବି.) : କଂକ୍ରିଟି, ଛୋଟ ଗୋଡ଼ିଖଣ୍ଡ

**କାନିଗଣ୍ଠିଲା** - *ଚ.* (ବି.) : ଆଦର ଯତ୍ନରେ ରଖିବା

**କାନି ଛାଡ଼ିବା** - *ଗ.* (କ୍ରି.) : ଶାଢୀର କାନିକୁ ପଛକୁ ଛାଡ଼ି ପିନ୍ଧିବା

**କାନିଧରିବା** - *ଗ.* (କ୍ରି.) : ଭିଡ଼ିଧରିବା, ପଶ୍ଚାଦ୍‌ଧାବନ ହେବା

**କାନିପକାଇ ପଳାଇବା** - *ଗ.* (କ୍ରି.) ସର୍ବସ୍ୱାନ୍ତ ହୋଇ ଚାଲିଯିବା

**କାନିପତେଇବା** - *କ.ଢେ.* (କ୍ରି.) : ସାହାଯ୍ୟ ମାଗିବା, ସହାୟତା ଭିକ୍ଷା କରିବା

**କାନି ମଙ୍ଗ** - *ଗ.* (ବି.) : ଲୁଗାର ମଙ୍ଗ, ଆଞ୍ଚଲ୍, ଲୁଗା ମୁହଁ

**କାନିରେ ଗଣ୍ଠି ପକେଇବା** - *ଅ.* (କ୍ରି.) : ଜିଦି କରିବା, ମନେରଖିବା

**କାନୁ** - *ରା.* (ବି.) : କାନ

**କାନୁଆ** - *ଗ.ଖୋ.* (ବିଂ.) : ଖଣ୍ଡିଆ, କାନଶୁଣା

**କାନୁକୁରା** - *କ:* (ବି.) : ମାଟିକାନ୍ଥରେ ତିଆରି ହୋଇଥିବା ଗର୍ତ୍ତ, ସେଥିରେ ସବୁ ଦରକାରୀ ଜିନିଷ ରଖାଯାଏ

**କାନେ** - *ରା:* (ସ.) : କେଉଁଠାରେ

**କାନୋ** - *ଗଦ୍ୟ:* (ବି.) : କାଠ ଖୋଦେଇ ତଙ୍ଗା

**କାନ୍ତ୍ର** - *ଚ:* (ବିଂ.) : ଆନୁମାନିକ

**କାନ୍ତ୍ରୁ** - *ଚ:* (ବି.) : ଅଳ୍ପ ଅର୍ଥରେ

**କାନ୍ତରି** - *ପଦ୍ୟ:* (ବି.) : କଇଁଚି

**କାନ୍ତାନି** - *ଗ:* (ବି.) : ଖଣ୍ଡିଆ ଇଟା

**କାନ୍ତାର** - *ନବ:ଗ:* (ବି.) : ମରୁଡ଼ି, ମହରଗ, ଅଭାବ, ଦୁର୍ଭିକ୍ଷ

**କାନ୍ତାରି** - *ନବ:କୋ:ଢେ:* (ବି.ବିଂ.) : କାଙ୍ଗାଳି, ନିମ୍ନମାନ୍ୟତା ପ୍ରାପ୍ତ ଓ ନୀଚହୀନ, ଏକ ଜାତୀୟ ଆଖୁ

**କାନ୍ତାରୁ** - *ଗ:* (ବିଂ.) : ଅଭାବୀ ଲୋକ

**କାନ୍ତାରେ** - *ରା:* (ବି.) : ଦୁର୍ଭିକ୍ଷ

**କାନ୍ତିପିଠା** - *ଗ:* (ବି.) : ଚନ୍ଦ୍ରକାନ୍ତି ନାମକ ମୁଗ ତିଆରି ପିଠା

**କାନ୍ତୁରୁ** - *ଗଦ୍ୟ:* (ଅ.) : ପର୍ଯ୍ୟନ୍ତ, ଖଣ୍ଡେ

**କାନ୍ତେ** - *ଚ:* (ବିଂ.) : ପରିମାଣ ବାଚକ ଶବ୍ଦ

**କାନ୍ତେଡ଼ା** - *ଗଦ୍ୟ:* (ବି.) : ଜଡ଼ା

**କାନ୍ଥକୁରା** - *ଅନେ:* (ବି.) : କାନ୍ଥଠଣା, ଜିନିଷ ରଖିବାପାଇଁ କାନ୍ଥରେ ଥିବା ଖୋଲ, ମାଟି କାନ୍ଥରେ ଜିନିଷ ରଖିବାପାଇଁ ତିଆରି ହୋଇଥିବା ସ୍ଥାନ ବା ଖୋପ, ଥାକ

**କାନ୍ଥଡ଼ା** - *ପଦ୍ୟ:ଭ:* (ବି.) : ଭଙ୍ଗା କାନ୍ଥ

**କାନ୍ଥମୁହଁ** - *ଗ:* (ବି.) : ଲୁଗାର ଧଡ଼ି ଓ ଆଞ୍ଚଲ୍

**କାନ୍ଥିକିଳା** - *ଗ:* (ବି.) : କାନ୍ଥରେଥିବା କଣ୍ଟା ବା କୀଳକ

**କାନ୍ଥିମାଳିଆ** - *ଗ:* (ବିଂ.) : ପାଖାପାଖି ଗ୍ରାମାଞ୍ଚଳ

**କାନ୍ଥୁଆ ଚିଡି** - *କେନ୍ଦୁ:* (ବି.) : ଏକ ପ୍ରକାର ସାପ, ମାଟି ଘର କାନ୍ଥରେ ରହନ୍ତି

**କାନ୍ଦକ** - *ସଂ:* (ବି.) : ପାନ ବରଜର ଟାଟି

**କାନ୍ଦଣୁମାନ୍ଦଣୁ** - *ଦେ:* (ବିଂ.) : ଠିକ୍ କରିବାର ପୂର୍ବ ଅବସ୍ଥା, କାନ୍ଦକାନ୍ଦ ହେବା

**କାନ୍ଦବ** - *ସଂ:* (ବି.) : ମିଠାଇ

**କାନ୍ଦବିକ** - *ସଂ:* (ବି.) : ଗୁଡ଼ିଆ

**କାନ୍ଦବୋବାଳି** - *ଦେ:ଢ:* (ବିଂ.ବି.) : ବିଳାପ କରିବା, ଦୁଃଖର ଛାୟା, କାନ୍ଦରଡ଼ି

**କାନ୍ଦା** - *ନବ:ମା:କନ୍ଧ:ଢ:* (ବି.କ୍ରି.) : ମୂକ, ପିଆଜ, କନ୍ଦମୂଳ, କାନ୍ଧ, ଲୁହଗଡ଼ାଇ କାନ୍ଦିବା

**କାନ୍ଦିକୁନ୍ଥେଇ** - *ଗ:* (କ୍ରି.ବିଂ.) : ଅନିଚ୍ଛା ସତ୍ତ୍ୱେ, ବାଧ ବାଧକତାରେ

**କାନ୍ଦିରାଭୂତ** - *ସଂ:* (ବିଂ.) : ନୀରବ, ଭୟରେ କିଂକର୍ତ୍ତବ୍ୟ ବିମୂଢ଼

**କାନ୍ଦୁରୀ** - *ଖୋ:* (ବିଂ.) : ଯେଉଁ ସ୍ତ୍ରୀଲୋକ ଟିକିଏ କଥାରେ କାନ୍ଦେ

**କାନ୍ଦୁଲ** - *ପଦ୍ୟ:ଢ଼:ନବ:ସୁବ:* (ବି.) : ଏକପ୍ରକାର ହରଡ଼, ଦେଶୀ ହରଡ଼, ଡାଲି ଜାତୀୟ ଫସଲ ଶସ୍ୟ

**କାନ୍ଦୁଲ୍ ଗୁରିଆ** - *କଣ:* (ବି.) : ବେଶି ଗୋରା ନୁହେଁ, ସାବନା

**କାନ୍ଦୁଲ ଖଜା** - *ଗଜ:* (ବି.) : ଦୋଳପୂର୍ଣ୍ଣିମାରେ ହରଡ଼କୁ ଗୁଡ଼ ପାଗ କରି ପ୍ରସ୍ତୁତ କରାଯାଇଥିବା ଖଜା

**କାନ୍ଦୁଲ ଚେଙ୍ଗା** - *କୋ:ଗ:* (ବି.) : ଚୋପା ସହ ଥିବା କଞ୍ଚା କାନ୍ଦୁଲ, ହରଡ଼ ଫଳର କସି

**କାନ୍ଧ କରିବା** - *ଦେ:ପଦ୍ୟ:* (କ୍ରି.) : କାନ୍ଧରେ ବୋହିବା, କୌଣସି ପଦାର୍ଥ ବା ବ୍ୟକ୍ତିକୁ କାନ୍ଧରେ ବହିବା, କାନ୍ଧେଇବା

**କାନ୍ଧରେ ଯିବା** - *ଗ:* (କ୍ରି.) : ମୃତ୍ୟୁପରେ ପୁଅ କାନ୍ଧରେ ମଶାଣିକୁ ଯିବା

**କାନ୍ଧସରିସା** - *ଗ:* (ବିଂ.) : ସମାସ୍କନ୍ଦ

**କାନ୍ଧି** - *ଦେ:ଗ:* (ବି.) : ଖାନ୍ଦି, ଆମ୍ବ, ନଡ଼ିଆ, କଦଳୀ ଆଦିର ଫଳଗୁଚ୍ଛ

**କାନ୍ଧିଆ** - *ଅନେ:* (ବି.) : ଖଟା ଲେମ୍ବୁ ବିଶେଷ, ସବାରି ବୋହିବାଲୋକ, ଖଟା କମଳା

**କାନ୍ୟକା ପରମେଶ୍ୱରୀ** - *ଗ:* (ବି.) : କୁମୁଟିଜାତିର କୂଳ ଦେବତା

**କାପ** - *ଅନେ:* (ବି.) : କର୍ଣ୍ଣ ଅଳଙ୍କାର ବିଶେଷ, କପ୍

**କାପ୍‌କାପ୍** - *ସୁବ:ସୁ:* (କ୍ରି.ଅ.) : ପାଟି ପାକୁ ପାକୁ କରିବା, ମାଛ ବଉଳିଲେ କାପୁ କାପୁ କରିବା

**କାପ୍‌କାପି** - *ସ:* (ବି.) : ପ୍ରଜାପତି

**କାପ୍‌ଲା** - *କଳା:* (ବିଂ.) ପାକୁଆ, ଦାନ୍ତନଥିବା ପାଟି

**କାପ୍‌ଲି** - *ସୁବ:* (ବି.) : ଗବାଦି ପଶୁଙ୍କର ରୋମନ୍ଥନ କ୍ରିୟା, ପାକୁଳି

**କାପ୍‌ଲୀ** - *କଳା:* (ବିଂ.) : ପାକୁଆ ସ୍ତ୍ରୀ, ଦନ୍ତହୀନା ନାରୀ

**କାପକାପୁ** - *ସୁବ:* (ବି.) : ପ୍ରଜାପତି

**କାପଡ଼** - *ମ:ଭ:* (ବି.) : ଲୁଗା, କପଡ଼ା

**କାପଡ଼ା** - *ଗ:* (ବି.) : ଚାଉଳ ଚୁନାରେ ତିଆରି ପାମ୍ପଡ଼

**କାପଳ୍** - *ମ:* (ବି.) : ଲୁଗା

**କାପା** - *ଦେ:* (ବି.) : ପୁଅମାନଙ୍କ ମଧ୍ୟରେ ପ୍ରେମ

**କାପାଲ୍** - *ମା:* (ବି.) : କପାଳ

**କାପାସ୍** - *ମ:* (ବି.) : କପା

**କାପି** - *ନବ:* (ବି.) : ଚା-କଫି

**କାପୁ** - *ଅନେ:* (ବି.) : କପୁ, ତେଲୁଗୁଭାଷୀ ଜାତି ବିଶେଷ, ପ୍ରାଚୀନ ନୀତି, ପାଟି, ଅଭଦ୍ର, କାଦୁଅ

**କାପୁଚେରେ** - *କଳା:* (ବି.) : ମାଟିଭିତରେ ବସାକରି ରହୁଥିବା ମାଟିଆ ରଂଗର କ୍ଷୁଦ୍ରକାୟ ଚଢେଇ

**କାପୁରାଇ** - *ପଦ୍ୟ:* (ବି.) : କଣ୍ଟା କୁସୁମା ଗଛ

**କାପୁଲ୍** - *କଳା:* (କ୍ରି.) : କବଳ, ପଶୁମାନଙ୍କ ଚର୍ବଣ କରିବା, ଚାକୁଳି ମାରିବା

**କାପ୍ତା** - *କ:* (ବି.) : ଏକ ପ୍ରକାର ପକ୍ଷୀ

**କାଫଦ୍** - *ଦେ:* (ବିଂ.) : ଲୋଭୀ

**କାଫଲ୍** - *ଗଦ୍ୟ:ଅ:* (ବି.) : ଜଙ୍ଗଲୀ ଗଛ, ପାର୍ବତ୍ୟ ଗଛ

**କାଫି** - *ଗ:ଖୋ:ଯା:* (ବି.ବିଂ.) : ଯଥେଷ୍ଟ, ପ୍ରଚୁର

**କାବ୍‌ତା** - *ନବ:କୋ:* (ବି.) : କପୋତ, କାପ୍ତା, ପକ୍ଷୀ ବିଶେଷ

**କାବ୍‌ବା କାଠ** - *ପୂ:* (ବିଂ.) : ବିସ୍ମୟାଭିଭୂତ, ଆଶ୍ଚର୍ଯ୍ୟଚକିତ

**କାବ୍‌ରା** - *କଳା:କେନ୍ଦୁ:ଦେ:* (ବିଂ.ବି.) : ଚିତ୍ରବିଚିତ୍ର, ଛଉ

**କାବ୍‌ରୀ** - *କଳା:ସୁବ:କେନ୍ଦୁ:ସ:* (ବି.ବିଂ.) : ଅନେକ ରଂଗର ବୈଚିତ୍ର୍ୟ, କବରାର ସ୍ତ୍ରୀ ଲିଙ୍ଗ, ଚିତ୍ର ବିଚିତ୍ର (ସ୍ତ୍ରୀ), ଧଳା ଛଉଥିବା ସ୍ତ୍ରୀ

**କାବକାଣ** - *ଗଞ:* (ବିଂ.) : ନିରାଶ୍ରୟ, ଦୃଷ୍ଟିହୀନ

**କାବକାଣିଆ** - *ଗ:* (ବିଂ.) : ହଠାତ୍ ଅଦୃଶ୍ୟ ହୋଇଯିବା

**କାବଡ଼ା** - *ଖୋ:* (ବିଂ.) : ବୋକା

**କାବତା** - *ଭ:ଗ:* (ବି.) : କପୋତ, ପାରା ଜାତୀୟ ଏକ ପକ୍ଷୀ

**କାବରା** - *ଗ:ଅ:* (ବି.ବିଂ.) : କଭର,ଲଫାପା କଭର, ଧଳାଛଉ ହୋଇଥିବା ମଣିଷ

**କାବଲା** - *କ:କୋ:* (ବି.) : ଲୁଣିମାଛ, ସମୁଦ୍ର ମାଛ ବିଶେଷ

**କାବା** - *ଅନେ:* (ବିଂ.ବି.) : ବିସ୍ମିତ, ଆଶ୍ଚର୍ଯ୍ୟାନ୍ୱିତ, କିଂକର୍ତ୍ତବ୍ୟବିମୂଢ଼, ଘାବରା, ଓଲୁ, ନିର୍ବୁଦ୍ଧିଆ, ମକ୍କାରେ ଥିବା ମୁସଲମାନମାନଙ୍କ ଚତୁଷ୍କୋଣ ପୂଜାମନ୍ଦିର ଓ ତୀର୍ଥ, ଏକ ପ୍ରକାର ହାତ ନଥିବା ପରିଧେୟ, ଜାକେଟ୍

**କାବାଡ଼ିବାଲା** - *ଗ:* (ବି.) : ରଦ୍ଦିଜିନିଷ କିଣୁଥିବା ଲୋକ

**କାବାଡ଼ୀ** - *ପଦ୍ୟ:* (ବିଂ.) : ଓଲୁ ସ୍ତ୍ରୀ

**କାବିରିଚିତିରି** - *ନୂ:* (ବିଂ.) : ବିଭିନ୍ନ ରଙ୍ଗର ଚିତ୍ରିତ

**କାବୁ** - *ଗ:ଦେ:ସଂ:ପଦ୍ୟ:* (ବି.ବିଂ.) ବଶୀଭୂତ, କ୍ଷମତାହୀନ, ଅଭିଭୂତ, ଆୟତ୍ତ, ପରାସ୍ତ

**କାବୁଲ୍** - *କଳା:* (କ୍ରି.) : ପାକୁଳେଇବା, କବଳ କରିବା, କାପୁଲ

**କାବୁଲା** - *ପଦ୍ୟ:* (ବି.) : ଏକ ପ୍ରକାର ଗଛ

**କାବୁଲି ଚଣା** - *ଭ:* (ବି.) : ବଡ ଚଣା

**କାବୁଲି ପାର୍ଟି** - *ସଂ:* (ବି.) : ଟଙ୍କା ସୁଧରେ ଲଗାଇ ଚଳୁଥିବା ଲୋକ

**କାମ୍** - *ନୂ:* (ବି.) : କାର୍ଯ୍ୟ

**କାମ୍‌କିଆ** - *ଗୌ:* (ବି.) : କାମିକା

**କାମ୍ଘର୍** - *କଳା:* (କ୍ରି.) : ଶୁଦ୍ଧିକ୍ରିୟା

**କାମ୍ଡ଼ା** - *ଗ:* (ବି.) : ଘର ଛପରବେଳେ ଖଣ୍ଡିଏ ବାଉଁଶରେ କଣା କରି ଅନ୍ୟ ଏକ ବାଉଁଶ ପୂରାଇ ଖିଲଦେଇ ରଖାଯାଏ

**କାମ୍ତୁଣ୍ଡ୍** - *ମ:* (ବି.) : ଚାକରାଣୀ

**କାମ୍ଦାମ୍** - *ଢେ:* (ବି.) : ବୃତ୍ତି, ବ୍ୟବସାୟ

**କାମ** - *ଢେ:ଳ:* (ବି.) : କାର୍ଯ୍ୟ, ମୃତ୍ୟୁ ପର ଶୁଦ୍ଧିକ୍ରିୟା

**କାମଖଇଞ୍ଚା** - *ସଂ:* (ବିଂ.) : କାମ ଦୁର୍ବଳତା

**କାମଙ୍ଗା** - *ଢେ:* (ବି.) : ପଞ୍ଚପାଖୁଡ଼ା ବିଶିଷ୍ଟ ଖଟାଫଳ, କରମଙ୍ଗା

**କାମ ଚଢେଇ** - *ଖୋ:* (ବି.) : ଏକ ପ୍ରକାର ବଣ କୁକୁଡା

**କାମଚଳା** - *କ:* (ବିଂ.) : କାମ ଚଳାଇନେବା ପାଇଁ ଆବଶ୍ୟକ, ଅନ୍ୟୁନ ବ୍ୟବସ୍ଥା

**କାମଚୋର** - *ସଂ:ଅ:* (ବିଂ.) : ଅଳସୁଆ, କାମରେ ଠକ

**କାମଡ଼ା** - *ପଦ୍ୟ:କ:ସଂ:ଭ:* (ବି.ବିଂ.) : ଗୃହର ଅଂଶବିଶେଷ, କାଛ କିମ୍ବା ଚାଳ ବା ବାଡ଼ ଦୁଇପାଖରେ ଥିବା ବତାକୁ ଏକତ୍ର ଦୃଢ଼ ଭାବରେ ବାନ୍ଧିବା ଗଣ୍ଠି, ଦନ୍ତଦ୍ୱାରା କ୍ଷତ କରିବା, ପେଟ ମଧ୍ୟରେ ବ୍ୟଥା, ଚାଳରେ ବା ବାଡ଼ରେ ବ୍ୟବହୃତ ବତାର ବନ୍ଧନୀ-

**କାମତୁଣୀ** - *ମ:ଗ:* (ବି.) : ଚାକରାଣୀ

**କାମନା ଦଣ୍ଡ** - *ଗ:* (ବି.) : ଦଣ୍ଡନୃତ୍ୟ

**କାମନ୍ଦ** - *କୋ:* (ବି.) : ପୁଷ୍ପ ବିଶେଷ

**କାମର ପାଟା** - *ରା:* (ବି.) : ଅଣ୍ଟାରେ ପିନ୍ଧା

**କାମରା** - *ଗଞ:ଗ:* (ବିଂ.ବି.) : ଅତ୍ୟଧିକ ପୋଡିଯିବା, କ୍ୟାମେରା

**କାମରାଜନ୍ଦା** - *ରା:* (ବି.) : ଯେଉଁ ଜନ୍ଦା କାମୁଡ଼ିଲେ ବିସ୍ଫୋଟ ହୁଏ

**କାମଳ ରୋଗୀ** - *ସଂ:* (ବି.) : ହଳଦିଆ କାଆଁଳ ରୋଗ, କାହ୍ଲାଳ ରୋଗୀ

**କାମଳ ସାମ୍ବାଦିକତା** - *ସଂ:* (ବି.) : ମିଥ୍ୟା ସମ୍ବାଦ ପରିବେଷଣ, ପକ୍ଷପାତୀ ସମ୍ବାଦ ପ୍ରକାଶ

**କାମଳା** - *ଖୋ:* (ବି.) : ଏକ ପ୍ରଜାତିର ଲୁଣିମାଛ(ବଡ଼)

**କାମହ୍ଲ** - *ନବ:* (ବିଂ.) : ଲୋଭୀ, କୃପଣ

**କାମା** - *କଳ:* (ବି.) : କାମ

**କାମାର୍** - *ମ:* (ବି.) : କୁମ୍ଭାର

**କାମାଲ୍ଲ** - *ରା:* (ବିଂ.) : ଆକର୍ଷଣୀୟ

**କାମି** - *କଳା:ବର:ଗ:* (ବି.) : ଶଗଡ଼ ଚକର ପରିଧିରେ ଲାଗୁଥିବା ଲୁହାତାର, ଶାଢି ବୁଣାରେ ବ୍ୟବହୃତ ଏକପ୍ରକାର ବାଉଁଶ ବାଡ଼ି

**କାମିକା** - *ଖୋ:ଗ:* (ବିଂ.ବି.) : କର୍ମଠ, କର୍ମକୁଶଳ ବ୍ୟକ୍ତି

**କାମିଜ** - *କ:* (ବି.) : ଜାମା, ସାର୍ଟ

**କାମିନୀ** - *ଭ:* (ବି.) : ଫୁଲ ବିଶେଷ

**କାମି ବନ୍ଧାଇବା** - *ଗ:* (କ୍ରି.) : ଶଗଡ଼ଚକାରେ ଲୁହା ବଳୟଦେବା

**କାମୁଟି** - *ମା:* (ବି.) : ବାଉଁଶବତା

**କାମ୍ପ** - *ଗ:ଗଜ:* (ବି.) : ଚାଷ ବୃତ୍ତିଧାରୀ ଜାତି ବିଶେଷ

**କାମ୍ପନି** - *ନବ:* (ବି.) : ବାଲୁଙ୍ଗା

**କାମ୍ପାଉଣ୍ଡର** - *ଗ:* (ବି.) : ହସ୍ପିଟାଲ୍‌ର ଫର୍ମାସିଷ୍ଟ

**କାମ୍ପାଫୁଲ** - *ଜଗ:* (ବି.) : ଶିମିଳି ଫୁଲ

**କାମ୍ପି** - *ଅନେ:* (ବିଂ.) : କୃପଣ, ଲୋଭୀ, ଅର୍ଥବ୍ୟୟ ପାଇଁ କୁଣ୍ଠିତ ବ୍ୟକ୍ତି, ଏକପ୍ରକାର ତାସ୍ ଖେଳ

**କାମ୍ପୁଣି** - *କୋ:* (ବି.) : ଶୁଙ୍କଯୁକ୍ତ ଧାନ, ଅନାବନା ମଞ୍ଜି

**କାମ୍ବିରୀ** - *ଚୌ:* (ବି.) : ଜାବୁଡ଼ି

**କାମ୍ବୁ ନ୍** *ଗଦ୍ୟ:* (ବି.) : ବାରହା

**କାମ୍ଭେଲା** - *ପଦ୍ୟ:* (ବି.) : କମଳା ଲେମ୍ବୁ

**କାୟତ** - *ଗଜ:* (ବି.) : କାଗଜ

**କାୟରା** - *ମ:* (ବି.) : କଦଳୀ

**କାୟା** - *ଦେ:* (ବି.) : ଶରୀର

**କାୟା ଛାଡ଼ିବା** - *ଗ:* (କ୍ରି.) : ମରିବା

**କାରକାଟୁ** - *ଗ:* (ବି.) : ସଠିକ୍, କଟକଣା କରିବା

**କାରଖାନା ଖୋଲିବା** - *କ:* (କ୍ରି.) : ଅନେକ କିଛି କରିବା, ବ୍ୟବସାୟ ବଢେଇବା

**କାରଣ** - *ଜ:* (ବି.) : ଯୁକ୍ତି

**କାରତିକ ପୁନି** - *ସ:* (ବି.) : କାର୍ତ୍ତିକ ପୂର୍ଣ୍ଣିମା

**କାରନ୍** - *କଳା:* (ଅ.) : କାରଣ

**କାରବାର** - *ରା:* (ବି.) : ବ୍ୟବସାୟ

**କାରବିକାର** - *ଗ:* (କ୍ରି.) : କାରବାର

**କାରଯ୍** - *କଳା:* (ବି.) : କାର୍ଯ୍ୟ, କାମ, କୃତି

**କାରଲା** - *ରା:* (ବି.) : କଲରା

**କାରସାଡି** - *ନ:* (ବି.) : କାରସାଦି, କୌଶଳ

**କାରା** - *ରା:* (ବି.) : ଖରା

**କାରାକା** - *ପଦ୍ୟ:* (ବି.) : ତାଇଫଳ

**କାରାପାକ୍‌ନା** - *ମା:* (ବି.) : କୁଆପଥର

**କାରାମ୍** - *ମ:* (ବି.) : କରମ

**କାରାମ୍ମା** - *ରା:* (ବି.) : କର୍ମ

**କାରାହୀ** - *ଗଦ୍ୟ:* (ବି.) : ମାଟି କରେଇ

**କାରୁ** - *ଗଜ:ଗ:ଦେ:ଚୌ:* (ବି.ବିଂ.) : କୁଣ୍ଡିଆ ରୋଗ, ଶୁଖିଲା କୁଣ୍ଡିଆ

**କାରୁଣ୍ଡ** - *କଳା:* (ବି.) : କଳାହାଣ୍ଡିର ପୁରୁଣା ନାମ, ବ୍ରିଟିଶ୍ ରେକର୍ଡରେ ଥିବା କଳାହାଣ୍ଡିର ନାମ

**କାର୍ଜି** - *ଗଜ:* (ବି.) : ଗ୍ରାମର ମୁଖ୍ୟ

**କାର୍ଜିକରଣ** - *ଗଜ:* (ବି.) : ଲେଖାଲେଖି କରୁଥିବା କରଣ ଜାତି

**କାର୍ଜିଖାନା** - *ପଦ୍ୟ:* (ବି.) : ରେଜିଷ୍ଟର ଅଫିସ

**କାର୍ଡୁ** - *ଗଜ:* (ବି.) : କାର୍ଡ

**କାର୍ତ୍ତିକୀ ସାଅଁର** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦୀ ଧାନ

**କାର୍ବନ ପେପର୍** - *ଦେ:* (ବି.) : ନକଲ ପାଇଁ ବ୍ୟବହୃତ କାଳିଲାଗିଥିବା କାଗଜ

**କାର୍ବୀ** - *ରା:* (କ୍ରି.) : ଗର୍ବ କରିବା

**କାର୍ଯ୍ୟ ନିର୍ଘଣ୍ଟ** - *ସଂ* (ବି.) : କାର୍ଯ୍ୟସୂଚୀ, କାର୍ଯ୍ୟକ୍ରମ ସାରଣୀ

**କାର୍ଠାନେ** - *କଳା:* (ବି.) : କାହାପାଖରେ

**କାର୍ତିକ୍ ଗାଧୁଆ** - *ସ:* (ବି.) : କାର୍ତ୍ତିକ ସ୍ନାନ

**କାର୍ପି** - *ନୂ:* (ବି.) : ଏକ ପ୍ରକାର ମାଛ

**କାର୍ବାର** - *ଦେ:* (ବି.) : ବେପାର, କିଣାବିକା

**କାଲ** - *ଗଡ଼:ଖୋ:* (ବି.) : ଢଡା, ଗବଗଛ, କାଲା, ଥଣ୍ଡା, କାଲି

**କାଲ୍କା** - *ଚୌ:ବା:କଳା:* (ବି.ବିଂ.) : କାଳୀ, କାଲିକାର, କାଳିକା ଦେବୀ

**କାଲ୍କୁଟ୍** - *ନୂ:କଣ୍ଡ:* (ବି.) : ବିଷାକ୍ତ ଝିଟିପିଟି- ଯାହା ଲାଲ ରଙ୍ଗର ଏବଂ ଚକ୍ ଚକ୍ କରୁଥାଏ

**କାଲ୍କେ** - *ମ:ସୁ:* (ବି.ଅ.) : କାଲିକି, ଆସନ୍ତା କାଲି

**କାଲ୍ଚୁଣ୍ଡିଆ** - *ଚୌ:* (ବି.) : ଯା କଥା ସତ ଘଟେ

**କାଲ୍ପଡ଼ିବା** - *ଚୌ:* (କ୍ରି.) : ଶୂନ୍‌ଶାନ୍ ହେବା

**କାଲ୍ରା** - *ମ:ରା:* (ବି.) : କଲରା, ହଇଜା

**କାଲ୍ଲା** - *ବା:* (ବି.) : କଲରା

**କାଲଖନ** - *କଳା:* (ବି.) : ଆସନ୍ତାକାଲି

**କାଲମୁହାଁ** - *ସୁ:* (ବିଂ.) : ଅକର୍ମରେ ମୃତ୍ୟୁକୁ ଡାକୁଥିବା ବ୍ୟକ୍ତି

**କାଲରା** - *ରା:* (ବି.) : ହଇଜା

**କାଲସି** - *ରା:* (ବି.) : ଦେବତା ଲାଗିଥିବା ପୁରୁଷ ବା ନାରୀ

**କାଲା** - *ଅନେ:* (ବିଂ.ବି.) : କାନକୁ ଶୁଣାଯାଏ ନାହିଁ ଯାହାର, ବଧିର, ଶୁଣିପାରୁନଥିବା ବ୍ୟକ୍ତି, କଲା

**କାଲାପଟା** - *ମା:* (ବି.) : କଳାପଟା

**କାଲାଫେଟ୍** - *ବା:* (ବି.) : କାଲାଫେଟ୍(calafate) ଜାହାଜରେ ଫାଟକ ବନ୍ଦ କରିବା ପାଇଁ ପୁଟଦେବା

**କାଲାମିଟି** - *ସଂ* (ବି.) : ଦୁର୍ବିପାକ

**କାଲିଆ** - *ନବ:* (ବି.) : କଳା

**କାଲିକା** - *ସଂ* (ବିଂ.) : ଗଲା କାଲିର

**କାଲିଖୁଜି** - *କଳା:* (ବି.) ଆଂଶିକ କଳାରଂଗର ଦେଶୀଧାନ

**କାଲି ଙ୍କେଦ୍ରି** - *ଝା:* (ବିଂ.) : କଳା ଅସୁନ୍ଦର ଝିଅକୁ ପ୍ରତି ସମ୍ବୋଧନ

**କାଲିପେଠୀ** - *କଳା:କେନ୍ଦୁ:* (ବି.) : ଛୁଆ ଦେଉନଥିବା କଳାରଂଗର ମାଈ ଛେଳି ବା କୁକୁଡ଼ା

**କାଲିର୍** - *କଳା:* (ବି.) : ଆସନ୍ତାକାଲି, ଗତକାଲି

**କାଲି ଶୁଇ** - *ନୂ:* (ବି.) : କଳା ରଙ୍ଗର ଶୁଇ ପକ୍ଷୀ

**କାଲୀ** - *କଳା:କେନ୍ଦୁ:* (ବି.) : କାଳୀ ଠାକୁରାଣୀ

**କାଲୀପୂଜା** - *ସ:* (ବି.) : କାଳୀପୂଜା

**କାଲୁ** - *କନ୍ଧ:* (ବି.) : ମଦ

**କାଲୁଅ** - *କ:* (ବି.) : କୁମ୍ଭର ଏକ ଅଂଶ

**କାଳୁଆ** - *ଅନେ:* (ବିଂ.) : ଥଣ୍ଡା, ହେମାଳ, ଅତିଥଣ୍ଡା ଯୋଗୁଁ ସ୍ପର୍ଶକାତର, ଅବଶ, ଶୀତଳ

**କାଳୁମୁଦି** - *ରା:* (ବି.) : ପାଉଁଜି

**କାଲେଇ** - *ଚ୍ୟ:* (ବି.) : ଝଡ଼ିପୋକ

**କାଲୋଜାମ୍** - *ଗଦ୍ୟ:* (ବି.) : କଳାଜାମୁ

**କାଲ୍ଲା** - *ରା:* (ବିଂ.) : କଳା

**କାଳ** - *ଦେ:ରା:* (ବି.) : ସମୟ, ମୃତ୍ୟୁ

**କାଳ୍‌କାଣ୍ଠିଆ** - *ଚୌ:* (ବି.) : କଜଳପାତି

**କାଳ ଅସରହେବା** - *ଗ:* (କ୍ରି.) : ସମୟ ନସରିବା, ଜୀବନ ଅପୂର୍ଣ୍ଣ ହେବା

**କାଳଏ** - *ଓ଼େ:* (ବି.) : ପାଣିକଖାରୁ

**କାଳକଯାକ** - *ଅ:* (ଅ.) : ଆଜୀବନ, ସବୁସମୟ, ସାରାଜୀବନ

**କାଳକେନ୍ଦୁ** - *କେନ୍ଦୁ:* (ବି.) : ଏକ ପ୍ରକାର ଜାଳେଣି କାଠ ଗଛ

**କାଳଚକ୍ର** - *ଗ:* (ବି.) : ଦୁର୍ଯୋଗ, ଯମଦଣ୍ଡ

**କାଳଚୁଆ** - *ଗ:* (ବି.) : ବନ୍ୟବୃକ୍ଷ ବିଶେଷ

**କାଳ ଡ଼କୁଣା** - *ଗ:* (ବି.) : କାଳଗ୍ରହ, ଅଶୁଭ ଶକୁନ

**କାଳ ଡ଼ାକିବା** - *ଗ:* (ବି.) : ମୃତ୍ୟୁ

**କାଳତୁଣ୍ଡିଆ** - *ଗ:* (ବିଂ.) ଅମଙ୍ଗଳ ପାଞ୍ଚୁଥିବାଲୋକ

**କାଳ ଦୋଷ** - *ଗଞ:ଗ:* (କ୍ରି.) : ବିଳମ୍ବ, ମକଦ୍ଦମାର ନିଷ୍ଠୁର ନିଷ୍ପତ୍ତି, ସମୟର ଖରାପ ବେଳା

**କାଳ ପଡ଼ିବା** - *ଗ:* (କ୍ରି.) : ଦୁର୍ଯ୍ୟୋଗ ସମୟ ପହଁଚିବା, ବିପତ୍ତି ପଡ଼ିବା

**କାଳ ବେଳା** - *ଦେ:* (ବି.) : ଖରାପ ସମୟ

**କାଳଭିଆଣୀ** - *ଗ:* (ବି.) : ପାଞ୍ଚସାତ ବର୍ଷ ଅନ୍ତରରେ ଛୁଆଦେଉଥିବା ଗାଈ

**କାଳ ମହରଗ** - *ଅ:* (ବି.) : ଦୁର୍ଭିକ୍ଷ

**କାଳଶତ୍ରୁ** - *ଗ:* (ବି.) : ଚିରଶତ୍ରୁ

**କାଳସର୍ପ** - *ଗ:* (ବି.) : ଦୁର୍ଯୋଗ, ମୃତ୍ୟୁଦୂତ, ଅଶୁଭ ବ୍ୟକ୍ତି, ଜ୍ୟୋତିଷବିଦ୍ୟାର ଏକ ଯୋଗ

**କାଳା** - *ନଟ:* (ବିଂ.) : ମୂକ

**କାଳାଏ** - *ଓ଼େ:* (ବି.) : କଙ୍କଡ଼ା

**କାଳାନଳ** - *ଢ:* (ବି.) : ଭୟଙ୍କର ଅଗ୍ନି

**କାଳାନ୍ତକ** - *ଢ:* (ବି.) : ଯମ

**କାଳି** - *ଅନେ:* (ବି.) : ସ୍ୟାହି, ଧାର୍, ବାକି, ଉଧାର, କଳଙ୍କ

**କାଳିଅନ୍ତି** - *କ:* (ବି.) : କଳାନାଗ

**କାଳିଅନ୍ଧାର** - *ସଂ:ଅ:* (ବି.) : ମୁହଁ ଅନ୍ଧାର ଥିବା, ପାହାନ୍ତା ସମୟ, ବଡ଼ିଭୋର୍

**କାଳିଆଙ୍ଗୁଠି** - *କ:* (ବି.) : ସାନ ଆଙ୍ଗୁଠି

**କାଳିଆ ଭୁଷୁକା** - *ଗ:* (ବିଂ.) : ପୃଥୁଳ ଶରୀର ବିଶିଷ୍ଟ

**କାଳିଆସିଆ** - *ଗଦ୍ୟ:* (ବିଂ.) କଳା ପଡ଼ିଆସୁଥିବା

**କାଳିଆଁସୁ** - *ଖୋ:* (ବି.) : ଏକପ୍ରକାର ଧାନର ନାମ

**କାଳିକାନାଟ** - *ଗ:* (ବି.) ଗଞ୍ଜାମର ଦଣ୍ଡନୃତ୍ୟର ଏକ ଅଂଶ

**କାଳିକା ଲାଗିବା** - *ଗ:* (କ୍ରି.) : ଦଣ୍ଡନୃତ୍ୟରେ ଭୋକ୍ତା ବା ପାଟଦଣ୍ଡୁଆ ଦେହରେ କାଳି ପ୍ରବେଶ ହେବା, କଳିହୁଡ଼ି ସ୍ତ୍ରୀର କଳି କରିବା ବେଳର ସ୍ୱଭାବ

**କାଳିକୋତରୀ** - *ଗ:* (ବିଂ.) କୃଷ୍ଣବର୍ଣ୍ଣା ଅସୁନ୍ଦରୀ

**କାଳିଖାଇବା** - *ନ:* (କ୍ରି.) ବାକିରେ ଦୋକାନରୁ ସଉଦା ଆଣିବା

**କାଳିଜହ୍ନିଆ** - *କ:* (ବି.) : ଅସ୍ପଷ୍ଟ ଚନ୍ଦ୍ରକିରଣରୁ ସୃଷ୍ଟ ଅନ୍ଧକାର

**କାଳିନଳା** - *ଗ:* (ବି.) ଶଗଡ଼ଚକରେ ଦିଆଯାଉ ଥିବା ତେଲ ରଖିବା ପାତ୍ର

**କାଳି ପାଉଁଶି** - *ବ:* (ବି.) : କଳା ବଇଁଶୀ ମାଛ

**କାଳିପୋଇ** - *ଖୋ:* (ବି.) ଏକ ପ୍ରକାର ଚିଙ୍ଗୁଡ଼ି ମାଛ

**କାଳି ବାଇଁସୀ** - *କେ:* (ବି.) : ଏକ ପ୍ରକାର ମାଛ

**କାଳିମୁଣ୍ଡି** - *ଗଦ୍ୟ:* (ବି.) : ଏକ ଜଙ୍ଗଲୀ ଛତୁ

**କାଳିସୀ** - *କେ:କ:* (ବି.) : ଠାକୁରାଣୀ ଲାଗିବା

**କାଳିଂଜ** - *ଗଜ:* (ବି.) : କଲିଜା

**କାଳିଂଜି** - *ଗଜ:* (ବି.) ଜାତିବିଶେଷ୍ୟ (ଖଣ୍ଡାୟତ)

**କାଳୀକୁଟା** - *ବ:* (ବି.) ଘର ଛପରରୁ ବାହାର କରାଯାଇଥିବା ପୁରୁଣା ନଡ଼ା

**କାଳୀ ହେମ୍ଭଣିବାଁଶ** - *ବ:* (ବି.) : ମୋଟା ବାଉଁଶ, ପାନବରଜ ପାଇଁ ବ୍ୟବହୃତ ବାଉଁଶ

**କାଳୀମାଛ** - *କେନ୍ଦୁ:* (ବି.) : କଳା ରଙ୍ଗର ଏକ ନଈ ମାଛ

**କାଳୀଶିରା** - *ଗଦ୍ୟ:* (ବି.) : ଶାଳଗ୍ରାମ ଶିଳା

**କାଳେଇବା** - *ଖୋ:* (କ୍ରି.) : ଫୁସୁଲେଇବା

**କାଳେସିଂ** - *ଢେ:* (ବି.) : ବାଡ

**କାଶୁଣ୍ଡି** - *କେ:* (ବି.) : ଶାଗବିଶେଷ

**କାଷ୍ଠା** - *କୋ:କ:* (ବି.) : ନିଷ୍ଠା

**କାଷ୍ଠାଉପାସ** - *ଗ:* (ବି.) : ନିର୍ଜଳ ଉପବାସ, ନିଷ୍ଠା

**କାସ** - *ବ:କୋ:* (ବି.କ୍ରି.) : ଶିଆର, ଲଙ୍ଗଳ ବା ଟ୍ରାକ୍ଟର ସାହାଯ୍ୟରେ ଜମି ଚଷିବା

**କାସବା** - *ଅ:* (ବିଂ.) : କାମିକା

**କାସିନ୍ଦ୍ରି** - *ଗଜ:* (ବି.) ବୃକ୍ଷ, କାଂଜିଗାତ ଖେଳରେ ଜିତିବା

**କାସୁ** - *ନବ:ଗଜ:* (ବି.) : ଅଳଙ୍କାର, ଟଙ୍କା ପଇସା

**କାହରା** - *ମା:* (ବିଂ.) : ରଂଗରଂଗିଆ

**କାହାକେ** - *କଳା:ନୁ:ସ:* (ଅ.ସ.) : କାହାକୁ

**କାହାଣ** - *କ:* (ବି.) : ୧୬ ପଣ

**କାହାତକ** - *ଅ:* (ଅ.) : କାହାକୁ

**କାହାଲି** - *କଳା:* (ବି.) : ହାତ ଡିଆରି ବିଡି

**କାହାଲିଆ** - *ଖୋ:* (ବିଂ.) : କ୍ଲାନ୍ତ, ଅବସନ୍ନ, ହାଲିଆ

**କାହାଳ** - *ଦେ:ଅ:ଯା:* (ବି.) ଧାନଗଛର ରୋଗ, ଆକାଶ ଅଳ୍ପ ମେଘୁଆ ହେବା, କାଉଁଳିଆ

**କାହାଳି** - *ଦେ:ଜ:ପୁ:* (ବି.) : ଧୂଆଁପତ୍ରରେ ତିଆରି ଆଦିବାସୀ ମାନଙ୍କ ବିଡ଼ି, ତୁରୀ, ତରଳ ପଦାର୍ଥ ବୋତଲ ବା ଡବାରେ ଭରିବା ପାଇଁ ବ୍ୟବହୃତ ଏକ ସାଧନ

**କାହାଳିଆ** - *ପଦ୍ୟ:ସଂ:ଖୋ:* (ବି.ବିଂ.) : କାହାଳି ବଜାଇବା ବ୍ୟକ୍ତି, ଧାନଗଛର ରୋଗ ବିଶେଷ, ଯେ କାହାଳି ନାମକ ବାଦ୍ୟଯନ୍ତ୍ର ବାଦନ କରେ

**କାହାଳୀ** - *ଅନେ:* (ବି.) : ତୁରୀ, ଧାତୁନିର୍ମିତ ପେଏଁକାଳୀ, ଧୂଆଁପତ୍ରର ବଡ଼ ପିକା, ଏକ ବାଦ୍ୟଯନ୍ତ୍ର, ତୁଙ୍ଗା

**କାହାଳୀପତ୍ର** - *ଗ:* (ବି.) ଦନା ବା ଖଲିପ୍ରସ୍ତୁତକାରୀ ଶାଳପତ୍ର

**କାହାଁକା** - *ଭ:ପଦ୍ୟ:ଖୋ:* (ଅ.ସ.) କେଉଁଠାରେ, କେଉଁସ୍ଥାନ, ଅତି, ଅତ୍ୟନ୍ତ, ଅସାଧାରଣ, ଏକପ୍ରକାର ଗାଳି, କେଉଁଠିକାର

**କାହିନା** - *କଡ:* (କ୍ରି.) : ଖେଳିବା

**କାହିଁରେ** - *ପଦ୍ୟ:* (ଅ.) : କେଉଁଥିରେ, କେଉଁ ବିଷୟ ବା କାର୍ଯ୍ୟରେ, ଯେ କୌଣସି ବିଷୟରେ

**କାହିଁରେ କଅଣ** - *ପଦ୍ୟ:ଗ:* (ଅ.ବିଂ.) : ସୀମାତିତ, ବର୍ଣ୍ଣନାତୀତ, ଅଗଣିତ, ଅସଂଖ୍ୟ, ସୀମାତୀତ, ଅଜସ୍ର, ବର୍ଣ୍ଣନାତୀତ

**କାହିଁର୍** - *କଳା:* (ଅ.) : କେଉଁଥିର

**କାହିଁର୍‌ଲାଗି** - *କଳା:* (ଅ.) କେଉଁଥିପାଇଁ,କେଉଁ କାରଣରୁ

**କାହିଁ ହେଲା** - *ରା:* (କ୍ରି.) : କ'ଣ ହେଲା

**କାହୁଁ** - *ଖୋ:* (ସ.) : କେଉଁଠୁ

**କାହୁଁ କାଲକ** - *ଗଦ୍ୟ:* (ବିଂ.) : କାହିଁରେ କ'ଣ

**କାହ୍ମାର** - *ମ:* (ବି.) : ବଢେଇ

**କାଁ** - *ସୁ:କଳା:* (ସ.) : କଣ

**କାଁଏଁକରି** - *ସୁ:* (ସ.) : କାହିଁକି

**କାଁକଇ** - *ମ:* (ବି.) : ପାନିଆଁ

**କାଁ କଟା** - *ଅ:* (ବିଂ.) : ଥଣ୍ଡାରେ ହାତକୋଲ ମାରିବା, କାଲୁଆ

**କାଁକରି** - *କଳା:ସୁବ:* (ଅ.) : କାହିଁକି, କଣ ପାଇଁ

**କାଁକର୍** - *ସ:* (ବି.) : ଥଣ୍ଡା

**କାଁକଳ** - *ମ:* (ବି.) : କାଙ୍କଡ଼

**କାଁ କାଜେ** - *କଳା:ନୂ:* (ସ.) : କ'ଣ ପାଇଁ, କୋଉ ନିମନ୍ତେ

**କାଁକାଯେ** - *ନୂ:* (ଅ.) : କାହିଁକି

**କାଁକେର, କାଁକରି** - *ସୁବ:* (ବି.) : କାକୁଡି

**କାଁକେରି** - *ସୁ:* (ସ.) : କାକୁଡି

**କାଁକେର୍** - *କଳା:ବର:ସ:* (ବି.) : କାକୁଡି

**କାଁକେର୍ ମୁଲ୍** - *କଳା:* (ବି.) : ଗଣ୍ଡମାନେ ବର ଓ କନ୍ୟାଙ୍କ ହାତରେ ଦୂବ ଓ

ବରକୋଳି ପତ୍ରରେ ନିର୍ମିତ ବାନ୍ଧିବା ମଂଗଳସୂତ୍ର

**କାଁଖେର୍** - *ନୂ:* (ବି.) : କାକୁଡ଼ି

**କାଁଚ୍** - *ନୂ:* (ବି.) : କାଚ

**କାଁଚ୍‌ବା** - *ନୂ:* (କ୍ରି.) : ସଫାକରିବା

**କାଁଚି** - *ସୁବ:ସ:ସୁ:* (ବି.) : ନଡ଼ିଆ ସଢେଇର ଫାଳ, ପିଲାଙ୍କ ଖେଳନା

**କାଁଜେ** - *ସୁ:* (ସ.) : କାହିଁକି

**କାଁଟା** - *କୋ:ଗଞ:* (ବି.) : ନିକିତି, ତରାଜୁ

**କାଁଟି ତେଲ** - *ସୁବ:* (ବି.) : ପୋଡ଼ା ମୋବିଲ

**କାଁଠାଲ** - *ମ:* (ବି.) : ପଣସ

**କାଁଡ଼** - *ସୁବ:* (ବି.) : ଚାଖଣ୍ଡ

**କାଁଡ଼୍ ବିନ୍ଧବା** - *ନୂ:* (କ୍ରି.) : ଶର ସନ୍ଧାନ କରିବେ

**କାଁଡ଼ବା** - *ସୁବ:* (କ୍ରି.) : ଚାଉଳ ଢିଙ୍କି ଦ୍ୱାରା କାଣ୍ଡିବା

**କାଁଥି** - *ଅନେ:* (ବି.) : କାନ୍ଥ, କେଉଁଠିରେ, କାହିଁରେ

**କାଁ ପେଇଦେବା** - *ନୂ:* (କ୍ରି.) : ବିସ୍ମିତ କରିଦେବା

**କାଁ ସିଜା** - *ବା:* (ବିଂ.) : ଦରସିଝା, ଅଧାସିଝା

**କାଂଭଁଶ** - *ସୁ:* (ବି.) : କାଶତଣ୍ଡୀ

**କାଂଗ୍** - *କଳା:* (ବି.) : ଖରିଫ୍ ଋତୁରେ ପାହାଡ଼ିଆ ଅଂଚଳରେ ହେଉଥିବା ଫସଲ

**କାଂଗାଲ୍** - *କଳା:* (ବିଂ.) : ଦରିଦ୍ର

**କାଂଙ୍କ** - *ବୌ:* (ବି.) : ବଗଜାତୀୟ ଏକ ବଡ଼ ପକ୍ଷୀ

**କାଂଚ** - *କନ୍ଧ:* (ବି.) : ବୋତଲ, କାଚ

**କାଂଚିଆ** - *ନବ:* (ବିଂ.) : କଂଜୁସ୍, ଲୋଭୀ

**କାଂଜଳା** - *ଖୋ:* (ବି.) : ଏକ ପ୍ରଜାତିର ଜନ୍ଦା

**କାଂଜି** - *ଅନେ:* (ବି.) : ତୋରାଣିରେ ପ୍ରସ୍ତୁତ ଖାଦ୍ୟ

**କାଂଜି ଅଁଳା** - *ଦେ:* (ବି.) : ମାର୍ଗଶୀର ମାସର ଏକ ପର୍ବ

**କାଂଜିଆ** - *କେ:* (ବିଂ.) : ପଚିଯାଇଥିବା, ନଷ୍ଟ ହୋଇଥିବା

**କାଂଜିଆ ଗୁଡ଼ା** - *ବୌ:* (ବି.) : କାଞ୍ଜିଆହୁଦା

**କାଂପି** - *ଭ:* (ବିଂ.) : କୃପଣ

**କାଂସି** - *କ:* (ବି.) : ଛୋଟ କଂସା

**କା'ର୍** - *କଳା:ବା:* (ଅ.) : କାହାର

**କି** - *ମ:କେନ୍ଦୁ:କନ୍ଧ:* (ଅ.) : କ'ଣ, କିମ୍ବା

**କିଆକନ୍ଦା** - *ଯା:* (ବି.) : କିଆର ଶୀର୍ଷରୁ ବାହାରୁ ଥିବା କଅଁଳ ଅଂଶ

**କିଆକେରଣ୍ଡା** - *ଖୋ:* (ବି.) : ଏକ ପ୍ରକାର ମାଛ

**କିଆ ପଣସ** - *କନ୍ଧ:* (ବି.) : ସପୁରୀପଣସ

**କିଆପଦ୍‌ରି** - *କୋ:* (ବି.) : ଅଳଙ୍କାର ବିଶେଷ

**କିଆଭାଟି** - *ଗ:* (ବି.) : କିଆଫୁଲରୁ ଅତର ପ୍ରସ୍ତୁତ କରିବା ସ୍ଥାନ, ଚୁଲା

**କିଆର** - *ଅ:କେନ୍ଦୁ:ଦେ:ଭ:* (ବି.) : ବିଲ, କିଆରି, କ୍ଷେତ

କିଏ କେଉଁ - *ଗୌ:* (ଅ.) : କିଏ କେମିତି

କିକ୍ରି କଟା - *କଳା:* (ବି.) : ବିଲରେ ଉଠୁଥିବା ଛୋଟଛୋଟ କଣ୍ଟା ଜାତୀୟ ଗଛ

କିଙ୍କର - *ଛ:* (ବି.) : ଦାସ, ଚାକର

କିଙ୍କୁ - *ଗଞ:* (ବିଂ.) : ଅଳ୍ପକେ ରାଗିଯିବା (ବ୍ୟକ୍ତି)

କିଚ୍କାକଡ଼ା - *ନବ:* (ବି.) : ବିଛା

କିଚ୍‌କିଚା - *ମା:କଣ:କଳା:* (କ୍ରି.ବିଂ.) : ଭଲ ନଲାଗିବା, ଅପରିଷ୍କାର, ମଇଳା, ଘୃଣ୍ୟ

କିଚ୍‌ନି - *କଣ:* (ବି.) : କାନଫାଶିଆ

କିଚ୍‌ମିବା - *କଳା:* (କ୍ରି.) : ଚିମୁଟିବା

କିଚମିକା - *ନବ:* (ବି.) : ଛିଣ୍ଡେଇବା

କିଚାଡ଼ି - *କଣ:* (ବି.) : କଂସା ଧାତୁରେ ତିଆରି ହୋଇଥିବା କର୍ଣ୍ଣ ବଳା

କିଚି କିଚି - *ରା:* (କ୍ରି.ବିଂ.) : ସବୁବେଳେ ଦୋଷ ଦେଖାଇ ବିରକ୍ତ ହେବା

କିଚିରିମିଚିରି - *କ:ନୂ:ଯା:* (ବି.କ୍ରି.) : ଚଢେଇଙ୍କ ଶବ୍ଦ, ଅଯଥା କଥା କହି ଲୋକଙ୍କୁ ବିରକ୍ତ କରିବା, ମିଶ୍ରିତ ଶବ୍ଦ, କାକଳି

କିଛିଟି - *ଅ:* (ଅ.) : କୌଣସିଟି

କିଞ୍ଚୁ - *କଳା:ମ:ବା:* (ବିଂ.) : କିଛି, ଅଳ୍ପ ପରିମାଣ, ସ୍ୱଳ୍ପ, କିଞ୍ଚିତ, ସାମାନ୍ୟ

କିଜାତିଆ - *କେ:* (ବିଂ.) : କେଉଁପ୍ରକାରର

କିଞାର୍ - *ଗଦ୍ୟ:* (ବି.) : ସମ୍ବର

କିଟ୍‌କି - *ମା:* (ବି.) : ଝରକା, ଖିଡ଼୍‌କି

କିଟ୍‌କିଟ୍ - *ନୂ:କଳା:ଦେ:ସୁ:* (ବିଂ.) : ଅତିଶୟ, ବେଶୀ, ଗାଢ, ବହଳ

କିଟ୍‌ବିଟା - *ନବ:କଳା:* (ବିଂ.) : ଅତି କଳା

କିଟ୍‌ମିଟିଆ - *ମା:ଦେ:* (ବିଂ.) : ଜଞ୍ଜାଳ, ଜଟିଳ, କଠିନ

କିଟିକିରା - *ଖୋ:* (ବି.) : ଏକପ୍ରକାର ଛାଞ୍ଚ, ଯେଉଁଥିରେ ଧାତୁକୁ ରୂପଦିଆଯାଏ

କିଟିମିଟିଆ - *ଅ:ପଦ୍ୟ:ରା:* (ବିଂ.) : ଜଟିଳ, ଅତିକଠିନ, ଅବୋଧ, କପଟୀ

କିଟୁଆ - *ଯା:* (ବି.) : ପିଉଙ୍କ

କିଟ୍ କିଟିଆ - *ଅ:* (ବିଂ.) : ବହୁତ ପରିମାଣ, ଘନ, ଘୋର

କିଡ଼ା - *ମା:ନବ:କୋ:* (ବି.) : ପୋକ

କିଡ୍ କିଡ୍ ଖେଳ - *ନୂ:* (ବି.) : କବାଡ଼ି ଖେଳ

କିତ୍‌କିତା - *ପଦ୍ୟ:* (ଅ.) : ଟୁକୁରା ଟୁକୁରା, ଟିକିଟିକି, ଖଣ୍ଡଖଣ୍ଡ

କିତା - *ଦେ:ପୁ:ପଦ୍ୟ:* (ବି.) : ଭୂମିଖଣ୍ଡ, ଏକଖଣ୍ଡ କାଗଜ, ଥର, ଖଣ୍ଡ, କିଆରି

କିନ୍‌ହିଁଆ - *ସୁବ:* (ବିଂ.) : ଅଳ୍ପ କଥାରେ ଚିଡୁଥିବା

କିନା - *ମ:ରା:* (ଅ.) : କ'ଣ, ନୁହେଁକି

କିନାଗି - *ମ:* (ସ.) : କାହିଁକି

କିନାର - *ମ:* (ବି.) : ଲୁଗାଧଡ଼ି

କିନିକା - *କଳା:* (କ୍ରି.) : କିଣିବା, କ୍ରୟ କରିବା

କିନିହାଁ - *ସ:* (ବି.) : ରାଗିବା, ଚିଡିଯାଉଥିବା ବ୍ୟକ୍ତି

**କିନ୍ତା** - *ଚା:ଦେ:* (ଅ.) : କେମିତିକା, କେନ୍ତା, କିପରି

**କିନ୍ତି** - *ଦେ:* (ଅ.) : କେମିତି

**କିଚେ** - *ଗଦ୍ୟ:* (ବି.) : କଦଳୀ

**କିନ୍ଦିରିବା** - *ସୁ:କୋ:ଗୌ:ମା:* (କ୍ରି.) : ଘୂରିବା, ବୁଲିବା

**କିପାଇଁ** - *ପଦ୍ୟ:ରା:* (ଅ.) : କି କାରଣରୁ, କେଉଁ ନିମନ୍ତେ, କିଆଁ, କାହିଁକି, କ'ଣ ସକାଶେ

**କିବା** - *ପଦ୍ୟ:* (ଅ.) : କିମ୍ବା, ଅତିସାମାନ୍ୟ, କିଞ୍ଚିତ୍, ନଗଣ୍ୟ

**କିମତ** - *ଗ:କୋ:* (ବିଂ.) : ଶସ୍ତା

**କିମତ୍** - *ଭ:* (ବି.) : ମୂଲ୍ୟ

**କିମିଆଁ** - *ଖୋ:ଦେ:* (କ୍ରି.ବି.) : ମନ୍ତ୍ରକରି ବଶ କରିନେବା, ଗୁଣିଗାରଡ଼ି

**କିମ୍ବର ଗାଡ଼ିଆ** - *ଗ:* (ବି.) : ଜଳପୂର୍ଣ୍ଣ ସ୍ଥାନ

**କିମ୍ବିରିଆ ମଟାଳ** - *ଖୋ:* (ବିଂ.) : ମାଟିର ପ୍ରକାର

**କିମ୍ବୀରି ରୋଗ** - *ଗ:* (ବି.) : ଶୋଥ ରୋଗ

**କିମ୍ଭୂତ କିମାକାର** - *ଯା:* (ବିଂ.) : ଅଦ୍ଭୁତ, ଅବର୍ଣ୍ଣନୀୟ

**କିମ୍ବଦନ୍ତୀ ପୁରୁଷ** - *ସଂ:* (ବି.) : ମହାନ୍ ଲୋକ

**କି ରକମ୍** - *ମ:* (ବି.) : କେଉଁ ପ୍ରକାର

**କିରଙ୍ଗା** - *ସୁବ:* (ବି.) : ପତଙ୍ଗ ଆଦି କୀଟ

**କିରଡ** - *ରା:* (କ୍ରି.) : କୁଢେଇବା

**କିରଣ** - *ପୁ:* (ବି.) : ମର୍ଦ୍ଦଳ, ମୃଦଙ୍ଗ, ଡୁବି ତାବଲା ଆଦିରେ ଆଖିର କଳା ଡୋଳା ଭଳି ଅଂଶ, ରଶ୍ମି

**କିରମି** - *ସୁବ:* (ବି.) : କୃମି

**କିରମୋଡି** - *ଅ:* (ବି.) : ଏକ ପ୍ରକାର କୋଳି

**କିରାଖିଆ** - *ଗ:ଗଛ:* (ବି.) ପକ୍ଷୀ ଖାଇଯାଉଥିବା ଶସ୍ୟ, ବାଦୁଡ଼ି ଖାଇଥିବା ଫଳ

**କିରାଣି ଦୋକାନ** - *ଗ:* (ବି.) : ତେଜରାତି ଦୋକାନ

**କିରାତ** - *ଦେ:* (ବି.) : ଶବର

**କିରାନିଙ୍କୁ** - *କଝ:* (ବି.) : କିରାସିନି

**କିରାପାଇଁ** - *ଦେ:* (ଅ.) : କ'ଣ ପାଇଁ

**କିରାପାଟି** - *ଗ:* (ବି.) : ଅଯଥା କଥା କହିବା

**କିରାପିନି** - *କୋ:ଗ:* (ବି.) : ସୁନ୍ଦା, ମୁଣ୍ଡର ମାଙ୍ଗ

**କିରାସିନ୍** - *କଳା:ବା:* (ବି.) : କିରୋସିନ୍

**କିରାସିନି କଣ୍ଟା** - *କଝ:* (ବି.) : ଲୁହାକଣ୍ଟା

**କିରି** - *ବର:* (ବି.) : ରେଶମ ପୋକର ମୃତଦେହ

**କିରିଅ** - *ରା:ଗ:* (ବି.) : ମହୁ, କ୍ରୟ (ଜମିଘର ଅର୍ଥରେ)

**କିରିଆ** - *ଅନେ:* (କ୍ରି.ବି.ବିଂ.) : ଶପଥ, ରାଣ ନିୟମ, ରାଣ, ଶପଥ, ବିଶେଷତ୍ୱ, ମୃତାହ ଶୁଦ୍ଧିଶ୍ରାଦ୍ଧ, ଶପଥ, ପ୍ରତିଜ୍ଞା, ପ୍ରମାଣ, ରାଣ, ଫିମ୍ପିମାରି ନଷ୍ଟ ହୋଇଯାଇଥିବା

**କିରିକାଛିଆ** - *ନ:* (ବିଂ.) : ଅତି ତରତର

**କିରିକାଠିଆ** - *ନ:* (ବିଂ.) : ଜୋରରେ ଢାବୁଡ଼ି ଧରୁଥିବା

**କିରିତ୍** - *ଗା:* (ବି.) : କୁଡେଇ

**କିରିମିରିଆ ନାଟ** - *ଗ:* (ବି.) : ପ୍ରାଚୀନ ଗଞ୍ଜାମର ଲୋକନୃତ୍ୟ

**କିରିସ୍ତିନିଆ** - *ସୁ:* (ବିଂ.) : ଧର୍ମଛଡ଼ା

**କିରିଂଗିଆ** - *କଳା:* (ବିଂ.) : ସାମାନ୍ୟ କଥାରେ ବିରକ୍ତ ହେଉଥିବା ବ୍ୟକ୍ତି

**କିରେ** - *ପଦ୍ୟ:ଦେ:ଛ:* (ଅ.) ଏକ ପ୍ରଶ୍ନବାଚକ ସମ୍ବୋଧନ

**କିରେଇବା** - *ଅ:* (କ୍ରି.) : ଭୟରେ ଚିତ୍କାର କରିବା

**କିରଂଗା** - *ଝ:* (ବି.) : କୀଟ

**କିର୍ଲାବାର** - *ସୁବ:* (କ୍ରି.) : ବଡ଼ ପାଟି କରିବା

**କିର୍କିଚି** - *ଗୌ:* (ବି.) : ଏକ କଣ୍ଟା ଗଛ

**କିର୍କିଚିଆ** - *ଗ:* (ବି.) : ବିରକ୍ତି କର ଶବ୍ଦ

**କିର୍କିଞ୍ଚି** - *ଦେ:* (ବି.) : ବଣୁଆ କଣ୍ଟାବୁଦା

**କିର୍କିରା** - *ଗ:ମା:ନବ:* (ବି.କ୍ରି.) : ଉଚ୍ଚହାସ୍ୟ, ଜୋର୍‌ରେ ଚିଲେଇବା

**କିର୍କିରାଇବା** - *ଦେ:* (କ୍ରି.) : ଆନନ୍ଦରେ ହସିବା

**କିର୍କିରେଇବା** - *କଳା:ଗୌ:* (କ୍ରି.) : ଚିତ୍କାର କରିବା, ଭୟରେ ଚିତ୍‌କାର କରିବା

**କିର୍ କିର୍‌ଲାନି** - *ମା:* (କ୍ରି.ବିଂ.) : ଅତ୍ୟଧିକ କାନ୍ଦିବା

**କିର୍‌ଚିଞ୍ଚିଆ** - *ଗ:* (ବି.) : ଉଚ୍ଚ ବିକଟାଳ ଶବ୍ଦ, ଦୁଷ୍ଟାମୀ

**କିର୍‌ତନ୍** - *ସ:ନୂ:* (ବି.) : କୀର୍ତ୍ତନ

**କିର୍‌ନି** - *ନୂ:* (ବି.) : ଗୋରୁଙ୍କ ଦେହରେ ହେଉଥିବା ରକ୍ତ ଶୋଷଣକାରୀ ପୋକ, ଟିଙ୍କ

**କିର୍‌ନିହାଁ** - *ସ:* (ବିଂ.) : ରାଗିବା, ଚିଡୁଥିବା ବ୍ୟକ୍ତି

**କିର୍‌ବିରା** - *କଳା:* (ବି.) : ଚିତ୍କାର, ଚିତ୍କାର କରିବାକୁ କହିବା

**କିର୍‌ମି** - *ନୂ:ବା:* (ବି.) : କୃମି

**କିର୍‌ଲାବା** - *ସୁ:ବ:ସ:* (କ୍ରି.) : ଉଚ୍ଚସ୍ୱରରେ ପାଟି କରିବା, ରଡ଼ିବା, ପାଟିକରିବା, ବଡ଼ ଜୋରରେ ପାଟି କରିବା

**କିର୍‌ଲି** - *କଳା:* (ଅ.) : କିଳିକିଳା ନାଦ, ବିକଟାଳ ଧ୍ୱନି

**କିର୍‌ହା** - *କଳା:ସୁ:ସୁବ:* (ବି.) : କୀଟ, କୀଡ଼ା, ପୋକ, ସ୍ତ୍ରୀମାନଙ୍କ ଗାଳି ବାଚକ ଶବ୍ଦ

**କିଲ୍‌ବିଲା** - *କୋ:* (ବି.) : ବିରକ୍ତ, ହଇରାଣ

**କିଲ୍‌ବିଲାବା** - *ସ:* (କ୍ରି.) : କୋଳାହଳ କରିବା

**କିଲଖାନା** - *ଗଦ୍ୟ:* (ବି.) : କଂସେଇଖାନା, ପଶୁହତ୍ୟା ଯାଗା

**କିଲସ୍** - *କଳା:* (ବି.) : ରବି ଫସଲ

**କିଲା** - *କଳା:* (ବି.) : କଣ୍ଟା, ଖୁଣ୍ଟି, କିଳା

**କିଲାଡ଼ି** - *ଗ:* (ବିଂ.) : ଦୁଷ୍ଟ ପ୍ରକୃତିର ବ୍ୟକ୍ତି, ଗଡ଼ିଶ ମାଛ

**କିଳି** - *ଗଞ୍ଜ:* (ବି.) : ପାନଖିଲ

**କିଳିକାଛିଆ** - *ଖୋ:* (ବିଂ.) : ଅତିଚଞ୍ଚଳ

**କିଳି ଖେଳ** - *ନୂ:* (ବି.) : ଛୋଟ କାଠ ଦଣ୍ଡକୁ ନେଇ ଖେଳୁଥିବା ପିଲ ଖେଳ

**କିଳିବିଲି** - *ନୂ:କ:ଗଞ୍ଜ:* (କ୍ରି.ବିଂ.) : ହଇରାଣ, ଖୁବ୍ ବ୍ୟସ୍ତ, କଲବଲ, ବିବ୍ରତ

**କିଳିମିଲ** - *ରା:* (ବିଂ.) : ଫୌଜଦାରୀ

**କିଲୁଙ୍ଗ** - *ଦେ:* (ବି.) : ଲୁଣ

**କିଲେଭ କରିବା** - *ଗ:* (କ୍ରି.) : ଓଜନ କରିବା

**କିଲୋ** - *ଅନେ:* (ଅ.ବିଂ.) : ଲୋ, ଆଲୋ, ଏକ ସମ୍ବୋଧନ, ଓଜନରେ ଦୂରତାର ପରିମାଣ

**କିଲ୍ଲା** - *ଅନେ:* (ବି.) : ଦୁର୍ଗ, ଗଡ଼, ଅଞ୍ଚଳ

**କିଲ୍ଲେଇବା** - *ଦେୌ:* (କ୍ରି.) : ପାଟି କରିବା

**କିଲ୍ଲା** - *ରା:* (ବି.) : ଅଞ୍ଚଳ

**କିଳା** - *ନବ:ରା:ଗ:କୋ:* (ବି.) : ମେଖ, କୀଳକ, ଛୋଟ ବାଉଁଶ ଖମ୍ବ, ସମସ୍ୟା

**କିଳିକିଳା** - *ଖୋ:ଗ:* (ବିଂ.) : ପାଟିଦ୍ୱାରା ଖୁବ୍‌ଯୋରରେ ଏକ ପ୍ରକାର ଧ୍ୱନି ସୃଷ୍ଟିକରିବା, ଉଚ୍ଚ ବିକଟାଳ (ଶବ୍ଦ)

**କିଳିବା** - *ଢ଼:କ:ପଦ୍ୟ:* (କ୍ରି.) : ବନ୍ଦ କରିବା, ଆଉଜେଇବା, ଅବରୋଧ କରିବା, ଦେହ କିଳିବା

**କିଳୁଣୀ** - *ଗଦ୍ୟ:ବା:* (ବି.) : କିଳିଣୀ, ଖିଡ଼ିକି, ବନ୍ଦ କରିବା ପାଇଁ ବ୍ୟବହାର କରାଯାଇଥିବା ଉପାୟ

**କିଶା କିଶା** - *ଗଦ୍ୟ:* (ବିଂ.) : ବଡ଼ ବଡ଼

**କିଷିନ୍ଧ୍ୟାସୁନ୍ଦରୀ** - *ଗ:* (ବି.) : ଅସୁନ୍ଦରୀ ସ୍ତ୍ରୀ

**କିସ** - *ଅନେ:* (ଅ.) : କ'ଣ

**କିସ୍କି** - *କୋ:ଗଞ୍ଜ:ରା:* (ଅ.) : କେଜାଣି, କଣ ପାଇଁକି, କଣକି, କ'ଣ ପାଇଁ

**କିସ୍‌ବାର** - *ସୁବ:* (କ୍ରି.) : ରାଗ ରଖିବା

**କିସ୍‌ମିଏନ୍** - *କଳା:* (ବି.) : ପତର ଶଉରା ଜାତିର ନାଚିବା ସ୍ତ୍ରୀ ଲୋକ

**କିସମ** - *ଅନେ:* (ବି.) : ପ୍ରକାର, ଶ୍ରେଣୀ, ଢଙ୍ଗ

**କିସା** - *ସ:ସୁ:ସୁବ:* (ବି.) : ହାତୀର ଦାନ୍ତ

**କିସା କୁସି** - *ନୂ:* (ବି.) : ଅନ୍ୟର ଉନ୍ନତି ଦେଖି ସହ୍ୟ କରି ନପାରିବା, ଈର୍ଷା

**କିସେଢ଼ି** - *କନ୍ଧ:* (ବି.) : କାନର ତଳ ଭାଗରେ ଲଗାଯାଉଥିବା ଅଳଙ୍କାର

**କିସ୍ତାନି** - *ସୁବ:* (ବି.) : କିରୋସିନି

**କିସ୍ତି** - *ଅନେ:* (ବି.) : ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ପଇଠ

**କିସ୍ ମିସ୍** - *ଅନେ:* (ବି.) : ଅଙ୍ଗୁର ଜାତୀୟ ଏକ ପ୍ରକାର ଫଳକୁ ଶୁଖାଇ ପ୍ରସ୍ତୁତ କରାଯାଇଥାଏ

**କିହାବ** - *ବା:* (କ୍ରି.) : କ'ଣ ହେବ

**କିଁତା** - *ମ:* (ଅ.) : କେମିତି

**କିଂଟା** - *ଅ:ରା:* (ଅ.) : କେଉଁଟା

**କିଂଦିରିବା** - *ଅନେ:* (କ୍ରି.) : ଘୂରିବା

**କିଂହ୍ରିବା** - *ଅନେ:* (କ୍ରି.) : ଘୂରିବା (ନଟୁପରି), ଅଯଥା ବୁଲାବୁଲି କରିବା

**କି'ସତି** - *ରା:* (ଅ:) : କ'ଣ
**କୀଙ୍କୀ** - *ଛେ:* (ବି.) : ଜେଜେ ବାପା
**କୀଡ଼ା** - *ମା:* (ବି.) : ପୋକ
**କୀରା** - *ନ:କଲା:* (ବି.) : ଭଲ ପଢ଼ିପାରୁନଥିବା ଶୁଆ(କ୍ଷୁଦ୍ରକାୟ), କୀଟ, ପୋକ, କିର୍ହା
**କୁଅଁର** - *ସୁ:* (ବି.) : କୁମାର
**କୁଆ** - *ଅନେ:* (ବି.) : କାଉ
**କୁଆଆଖି** - *ଗ:* (ବି.) : ନିର୍ମଳର ପ୍ରତୀକ,ସ୍ୱଚ୍ଛ
**କୁଆକୁଟା** - *ଗ:ଦେ:* (ବିଂ.) : ହିନସ୍ତା, ହଟହଟା
**କୁଆଗାଧୁଆ** - *ଗ:* (ବି.) : କାକସ୍ନାନ,ତରବରରେ ଗାଧୁଆ
**କୁଆଛୁଆ** - *ଅନେ:* (ବିଂ.) : ବ୍ୟତିବ୍ୟସ୍ତ, ଅତି ପ୍ରବଳ
**କୁଆଡ଼କୁ ନହେବା** - *ଅନେ:* (ବିଂ.) : ଅଯୋଗ୍ୟ
**କୁଆତୁଣ୍ଡ** - *ଗ:* (ବି.) ଅଯଥା କହିବା,ବାରମ୍ବାର କହିବା
**କୁଆ ବାଡିଆ** - *ଖୋ:* (ବିଂ.) : ଡାଗର ପୁଆଖେଳ
**କୁଆ ବାଦ୍‌ଲି** - *ଚୌ:* (ବି.) : ଦେଶୀ ପୋଟଳ ଜାତୀୟ ପରିବା
**କୁଆବୁଆ** - *ଗ:ଦେ:* (ବି.) : ହଟହଟା, ବିରକ୍ତି, ଅସ୍ଥିର, ଆକୁଳ
**କୁଆବୁଦ୍ଧି** - *ଗ:* (ବି.) : ହୀନ ବୁଦ୍ଧି, ନିଜକୁ ଅତି ଚାଲାକ ଭାବିବା
**କୁଆମଇଚା** - *ଅନେ:* (ବି.) : ଛଚିନ୍ଦ୍ରା ଜାତୀୟ ଛୋଟ ଫଳ, ପୀତାସ୍ୱାଦଯୁକ୍ତ, ଔଷଧୀୟ ଲତା ଓ ଫଳ
**କୁଆଳିଆ** - *ଗ:* (ବି.) : କୁହାଳିଆ, ଅଧିକ କଥାକହୁଥିବା (ଲୋକ)
**କୁଆଁ** - *ଅନେ:* (ବି.) : ସଦ୍ୟଜାତ ଶିଶୁର କ୍ରନ୍ଦନ ଧ୍ୱନି, ଗଛ ଆଦିରୁ ବାହାରିବା ନୂଆ କୋମଳ ଶାଖା, କୂଅ
**କୁଆଁତାରା** - *ଅନେ:* (ବି.) : ପାହାନ୍ତିଆ ତାରା, ଶୁକ୍ରଗ୍ରହ
**କୁଆଁର** - *ପଦ୍ୟ:ଦେ:* (ବି.) : ଅବିବାହିତ ଯୁବକ, କୁମାର, ଗମ୍ଭାରୀ ଗଛ
**କୁଆଁରୀ** - *ଅନେ:* (ବିଂ.) : ଅବିବାହିତା, କୁମାରୀ, ପାହାଡ଼ର ଯେଉଁ ସ୍ଥାନରେ ପଥର କଟାଯାଏ
**କୁଆଁରୀ ହାଡ଼** - *ଦେ:* (ବି.) : କାଉଁରି ହାଡ଼, ମନ୍ତ୍ରତନ୍ତ୍ରରେ ବ୍ୟବହୃତ ହାଡ଼
**କୁଆଁସିଲା** - *କଣ:* (କ୍ରି.) : ସଢ଼ିବା
**କୁଇ** - *ଅନେ:* (ବି.) : ଏକ ଭାଷା, ସୁନା, ରୂପା ଆଦି ତରଳାଇବା ପାତ୍ର, ମାଟିଘୂମ, ଅନ୍ଧାର
**କୁଇଆ** - *ଦେ:* (ବି.) : ମଞ୍ଚ ମେର୍‌ହାଖୁଣ୍ଟ, ଖମ୍ବ
**କୁଇକରିବା** - *ଗ:* (କ୍ରି.) : ଚୋରିକରିବା
**କୁଇକେ** - *କଣ:* (ଅ.) : କୁଆଡ଼େ
**କୁଇବ୍** - *ନୁ:କଲା:* (ବି.) : କୁଞ୍ଚ, କୁଂଚି, ତାଲା

**କୁଇଚ୍** - *ନୁ:* (ବି.) : ଧାନ ଗଛର ଗୁଣ୍ଡ

**କୁଇନୀ** - *କଳା:* (ବି.) : କାହାଣୀ

**କୁଇରି** - *ଜଅ:* (ବି.) : ଏକ ପ୍ରକାରର ଶସ୍ୟ- ଏଥିରେ ଜାଉ ପ୍ରସ୍ତୁତ କରାଯାଏ।

**କୁଇଲ୍‌ତା** - *ସୁବ:ସ:* (ବି.) : କୃଷକ ଜାତି ବିଶେଷ, କୁଳିତା

**କୁଇଲା** - *ଜଅ:କୋ:ସ:* (ବି.) : କୋଇଲା, ଅଙ୍ଗାର

**କୁଇଲି** - *ଅନେ:* (ବି.) : ଆମ୍ବଟାକୁଆ ଭିତରେ ଥିବା ଧଳା ଜିନିଷ, ଆମ୍ବ କୋଇଲି, କୋଇଲି ପକ୍ଷୀ

**କୁଇଲି ପାଣି** - *କୋ:* (ବି.) : ମଙ୍ଗଳ ଦିନ କନ୍ୟା ସ୍ନାନ କରିବାପାଇଁ ଅଣାଯାଇଥିବା ପବିତ୍ର ଜଳ

**କୁଇଲେଖା** - *କେ:ସୁବ:* (ବି.) : କଣ୍ଟାଳିଆ କ୍ଷୁଦ୍ର ବୁଦା ଜାତୀୟ ବୃକ୍ଷ, କୋଇଲିଖିଆ

**କୁଇସ୍** - *ଜଅ:* (ଅ.) : କାହିଁ

**କୁଇଁ** - *ମ:ନୁ:* (ବି.) : କୂଅ

**କୁଇଁବା** - *କୋ:ନବ:ମା:* (କ୍ରି.) : ପଚିଯିବା, ପଚିବା

**କୁଉଡ଼ି** - *ମା:* (ବି.) : କୁହୁଡ଼ି

**କୁଉଁରିଆ** - *କଳା:* (ବି.) : କାଉଁରିଆ, ଝୋଟର କାଠି

**କୁଉଁଳିବା** - *ରା:* (କ୍ରି.) : ଧୂଆଁବାହାରିବା, କୁହୁଳିବା

**କୁଏଦ୍** - *ସ:କଳା:ନୁ:* (ବି.) : କୋଦାଳ, କୋଡ଼ି, ଫାଉଡ଼ା

**କୁଏର** - *ନୁ:* (ବି.) : କୋଡ଼ିଏ

**କୁଏରି** - *ଜଅ:* (ବି.) : ଏକ ପ୍ରକାର ଶସ୍ୟ

**କୁଏଲ୍** - *ନୁ:* (ବି.) : କୋଡ଼ିଏ

**କୁକ୍‌ଡ଼ାଗାଳି** - *କୋ:ମା:* (ବି.) : କୁକୁଡ଼ା ଲଢେଇ

**କୁକ୍ ବଲୁଆ** - *ସୁ:ଦେ:* (ବି.) : ବଳିଆ କୁକୁର

**କୁକ୍‌ରା** - *ଅନେ:* (ବି.) : କୁକୁଡ଼ା

**କୁକ୍‌ରା ଚୁଲି** - *ନୁ:ସ:* (ବି.) : ଫୁଲ ବିଶେଷ, କୁକୁଡ଼ା ଚୂଳପରି ଫୁଲ

**କୁକ୍‌ରାଡ଼କିଆ** - *କଳା:* (ବି.) : ପାହାନ୍ତିଆ ପ୍ରହର

**କୁକଢ଼େ** - *କୋ:* (ଅ.) : କେଉଁପଟେ

**କୁକନ୍ଦା** - *ନୁ:କଳା:* (ବି.) : ଛୋଟ ଉକୁଣୀ

**କୁକା** - *ଅ:* (ବି.) : କୁକୁର

**କୁକୁଟ** - *ଦେ:* (ବି.) : ଶୁନ୍‌ଶୁନିଆ ଶାଗ

**କୁକୁଡ଼ା ଖାଉଳି** - *ଅ:* (ବି.) : ତାରାମଣ୍ଡଳୀ

**କୁକୁଡ଼ା ଜଟା** - *ଗ:* (ବି.) : ଏକଜାତୀୟ ଫୁଲ, କୁକୁଡ଼ା ଚୂଳପରି ଫୁଲ

**କୁକୁଡ଼ା ମୁଣ୍ଡି** - *ଗଦ୍ୟ:* (ବି.) : ଜଙ୍ଗଲୀ ଛତୁ

**କୁକୁଡ଼ିକୟାଁ** - *ଗ:* (ବି.) : ରିଠା ଫଳଗଛ, ମୁକ୍ତାମଞ୍ଜି ଗଛ

**କୁକୁତା** - *କେନ୍ଦୁ:* (ବି.) : ଧାନ ବୋହିବା ଭାର ଯାହା କୁକୁତା ଗଛର କାଠରେ ତିଆରି ହୋଇଥାଏ, ଏକପ୍ରକାର କାଠ ବାଉଙ୍ଗି

କୁକୁନ୍ଦା - *କଳା:* (ବି.) : ଅତି ଛୋଟ ଉକୁଣି

କୁକୁରଛନିଆ - *କେ:* (ଅ.) : ଅସହ୍ୟ, ସାଂଘାତିକ, ଅସ୍ତବ୍ୟସ୍ତ

କୁକୁରଛା - *କେ:* (ଅ.) : କୁକୁର ପରି ବିକଟାଳ ଶବ୍ଦ କରିବା

କୁକୁର ଦାଁତି - *ନୂ:କଳା:* (ବି.) : ଅପାମାର୍ଗ ଗଛ, ଅପାମାରଙ୍ଗ

କୁକୁର ନିଦ - *ପଦ୍ୟ:* (ବି.) : କୁକୁର ନିଦ ଭଳି ଭାଙ୍ଗିଯାଉଥିବା ପତଳା ନିଦ

କୁକୁର ପିଟା - *କ:* (ବି.) : ପ୍ରବଳ ମାଡ଼, ନିର୍ଦ୍ଦୟ ଭାବେ ପିଟିବା

କୁକୁର ବେଦୀ - *କ:* (ବି.) : ବିବାହ ସମୟରେ ବେଦି ପାଖରେ ତିଆରି ହୋଇଥିବା ଛୋଟବେଦୀ

କୁକୁରମାଛି - *ଅନେ:* (ବି.) : ଡାଆଁଶ, କୁକୁର ଦେହରେ ଲାଗୁଥିବା ମାଛି

କୁକୁରା ଡକା - *ସ:* (ବି.) : ପୁରା ସକାଳ ହୋଇନଥିବା ବେଳ

କୁକୁର୍ଚ୍ଛା - *କ:* (ବିଂ.) : ହୀନସ୍ଥା

କୁକୁଳା - *ମ:* (ବି.) : କୁକୁଡ଼ା

କୁକେଇ - *ରା:ବା:* (ବି.) : କୋକେଇ, ଶବାଧାର

କୁକେଜ୍ - *ନୂ:କଳା:* (ବି.) : ମାଛବିଶେଷ, ନିଶଥିବା ନଦୀ ମାଛ ବିଶେଷ

କୁକୁଡ଼ିବା - *ଅ:* (କ୍ରି.) : ମୋଡ଼ି ହୋଇଯିବା

କୁକୁଡିକାଇଲୁ - *ଗଞ:ରା:* (ବି.) : ମୁକ୍ତାମଞ୍ଜି, ଇଠାଫଳ, ରିଠାଫଳଗଛ

କୁକୁରି କାକୁରି - *କ:* (କ୍ରି.ବିଂ.) : ଢାକିଢୁକି

କୁଚ୍‌କୁଚା, କୁଚ୍‌କୁଚ୍ - *ଅନେ:* (ବିଂ.) : ଲୋଚାକୋଚା, କାଟି କାଟି ବା ଛେଚି ଛେଚି ଏକ୍‌ଦମ୍ ଟିକ୍ ଟିକ୍ କରିବା, ଚୂନ୍‌ଚୂନା କରି ଭାଙ୍ଗିବା

କୁଚ୍‌କୁଚିଆ - *କଳା:ବା:* (ବିଂ.) : କୁଞ୍ଚକୁଞ୍ଚିଆ

କୁଚ୍‌ନି - *ସ:ଗୌ:ସୁ:* (ବି.) : ବିଭିନ୍ନ ସାମଗ୍ରୀ ବଜାରରେ ରେଜାରେ ବିକ୍ରି କରୁଥିବା ସ୍ତ୍ରୀ, ଛୋଟ ଅଳ୍ପସାମଗ୍ରୀ ବିକୁଥିବା ବେପାରୀ

କୁଚ୍‌ଲୋ(ପିଠା) - *ସ:* (ବିଂ.) : (ଅତ୍ୟଧିକ) ପିଠା

କୁଚଟିଆ - *ଅ:କ:କେ:* (ବିଂ.) : କୁଟୀଳ

କୁଚଲା - *ମ:* (ବି.) : କୋଚିଳା

କୁଚାକୁଚି - *ନୂ:ସୁ:* (ବି.) : ଠେଲା ପେଲା, ଅତି ଲଗାଲଗି

କୁଚି - *ମା:* (ବି.) : ତାଲା, କଞ୍ଚି

କୁଚିଆ - *ଅନେ:* (ବି.) : ଖୁଚୁରା ବେପାରି, ଏକପ୍ରକାର ଜଳଜୀବ, ସାପ ଜାତୀୟ ମାଛ ନଛୋଡ଼ବନ୍ଧା, , ଖୁଚୁରା ମହୁଲି ମଦ ଦୋକାନ

କୁଚି, କୁଛି - *ବର:* (ବି.) : କୃପଣ

କୁଚିବା - *ଗୌ:ପଦ୍ୟ:* (କ୍ରି.) : ଗୁଂଜିବା, ପୂରାଇବା, ପ୍ରବେଶ କରାଇବା

କୁଚିଲା - *ରା:* (ବି.) : ତୈଳଯୁକ୍ତ ଫଳ, କୋଚିଲା

**କୁଚିଲାଖାଇ** - *ଅନେ:* (ବି.) ଏକ ପକ୍ଷୀବିଶେଷ

**କୁଚିଁ** - *ଚର:* (ବି.) : ଲୁଗାବୁଣାରେ ସୂତାକୁ ସ୍ୱତନ୍ତ୍ର ଭାବେ ରଖିବା ପାଇଁ ବ୍ୟବହୃତ ଏକପ୍ରକାର ପାନିଆଁ

**କୁଚୁକୁଚିଆ** - *ଗ:* (ବି.) : ଅଦରକାରୀ କାର୍ଯ୍ୟ କରୁଥିବା ବ୍ୟକ୍ତି

**କୁଚୁରୁ** - *ସୁ:* (ବି.) : ଅତ୍ୟଧିକ

**କୁଚେଇବା** - *ଖୋ:ଭ:* (କ୍ରି.) : ଛୋଟଛୋଟ କରିଦେବା, ଚିକିଟିକି କରି କାଟିବା

**କୁଛକୁଛା** - *କନ୍ଧ:* (କ୍ରି.) : ଗୁଣ୍ଡ କରିବା

**କୁଛି** - *ଅନେ:* (ବିଂ.) : କୃପଣ, ଲୋଭୀ

**କୁଜ** - *ଅନେ:* (ବି.) : ଷଣ୍ଢର ବେକରେ ଉଠିଥିବା ମାଂସଳ ଖଣ୍ଡ, ଶରୀରରେ ଯେ କୌଣସି ଅଙ୍ଗରେ ବଢି ଯାଇଥିବା ମାଂସ, ପିଠିରେ ଥିବା ଆବୁ

**କୁଜତ୍ୟା** - *ସୁ:* (ବିଂ.) : ଅସଭ୍ୟ

**କୁଜା** - *ଅନେ:* (ବିଂ.ବି.) : ଅଣ୍ଟା ନଇଁଯିବା, ପିଠିରେ କୁଜ ଥିବା ଲୋକ, ମାଟି ସୋରେଇ, ମାଟି ପାତ୍ର

**କୁଜିଆଳୁ** - *କନ୍ଧ:* (ବି.) : ଛୋଟଆଳୁ

**କୁଜିନେତା** - *ସ:* (ବି.) : ନେତାଙ୍କ ପଛରେ ଗୋଡାଉଥିବା ଛୋଟ ନେତା

**କୁଜିବଗ** - *ଅନେ:* (ବି.) : ବଗର ଏକ ପ୍ରଜାତି

**କୁଜିସାରୁ** - *ଅନେ:* (ବି.) : ଏକଜାତୀୟ ଛୋଟସାରୁ

**କୁଜି ହଁସ୍** - *ନୂ:* (ବିଂ.) : ବେକ ଲମ୍ବା ନଥିବା ହଂସ

**କୁଝା** - *ଗା:* (ବି.) : କୁଜ

**କୁଞ୍ଚ** - *ଅନେ:* (ବି.) : ପିନ୍ଧାଲୁଗାର ଫେର, ପିନ୍ଧାଲୁଗା ବା ଧୋତିର ଏକ କାନିକୁ ଭାଙ୍ଗିଭାଙ୍ଗି କରି ପିନ୍ଧିବା

**କୁଞ୍ଚକୁଞ୍ଚିଆ** - *ଢେ:* (ବିଂ.) କୃଟିଳ, ତରଙ୍ଗାୟିତ

**କୁଞ୍ଚଖାଡ଼ି** - *କନ୍ଧ:* (ବି.) : ଚାବି

**କୁଞ୍ଚା** - *ଅନେ:* (ବି.) : ବାଉଁଶ ନିର୍ମିତ ଛୋଟପାତ୍ର, ଶସ୍ୟ ମାପିବା ପାଇଁ ବେତ ବା ବାଉଁଶର ଛୋଟ ପାତ୍ର, ମାପିବା ଯନ୍ତ୍ର

**କୁଞ୍ଚି** - *ଅନେ:* (ବି.) : ଚାବି, ନଡ଼ିଆ ପତ୍ରର ମଝି ଶିରା, ବାଉଁଶର ଖଡ଼ିକା

**କୁଞ୍ଚିକାଠି** - *ଯା:* (ବି.) : ଚାବି

**କୁଞ୍ଚି ଖାଡ଼ି** - *ଚୌ:* (ବି.) : ଚାବିକାଠି

**କୁଞ୍ଚିଘର** - *ଗ:* (ବି.) : ଗୋଦାମ ଘର

**କୁଞ୍ଚୁଳି** - *କେନ୍ଦୁ:* (ବି.) : ନଡ଼ାରେ ବନ୍ଧା ଯାଇଥିବା ଧାନ ଓଳିଆ

**କୁଞ୍ଜ** - *ଅନେ:* (ବି.) : ଲତାଗହଳ

**କୁଞ୍ଜ ଘର** - *କନ୍ଧ:* (ବି.) : ଯଜ୍ଞଘର ଯେଉଁଠି ନାମ ସଂକୀର୍ତ୍ତନ କରାଯାଏ

**କୁଟ୍‌କଣୀ** - *ଭ:* (ବି.) : ବ୍ୟବସ୍ଥା

**କୁଟ୍‌କୀ** - *କଳା:* (ବି.) : ପାଳର କ୍ଷୁଦ୍ର କ୍ଷୁଦ୍ର ଅଂଶ

**କୁଟ୍‌କୁଟା** - *ଅନେ:* (କ୍ରି.ବିଂ.) : ଖଣ୍ଡଖଣ୍ଡ, ନଷ୍ଟ ହୋଇ କ୍ଷୁଦ୍ରକ୍ଷୁଦ୍ର ଅଂଶରେ ପରିଣତ ହେବା, ଅତି ଛୋଟ ଛୋଟ, ଟିକିଟିକି ହୋଇଯିବା

**କୁଟ୍‌ଚିରିଆ** - *କୋ:* (ବିଂ.) କୁଟିଳ, ପରଶ୍ରୀକାତର

**କୁଟ୍‌ଣା** - *ଦେ:* (ବି.) : ଆପଣା ସ୍ତ୍ରୀକୁ ପର ପୁରୁଷ ନିକଟରେ ଯେ କୁଟାଏ

**କୁଟ୍‌ଣୀ** - *ଦେ:* (ବି.) : ଦୂତୀ

**କୁଟ୍‌ଚି** - *ବ:କଳା:* (ବି.) : ଢେଙ୍କି କୁଟିବା ବ୍ୟକ୍ତି, ଧାନଆଦି କୁଟିବା ବ୍ୟକ୍ତି

**କୁଟ୍‌ତିନି, କୁଦ୍‌ତିନି** - *ବୌ:* (ବି.) : ଯେଉଁ ସ୍ତ୍ରୀଲୋକ ଚୁଡ଼ା କୁଟେ

**କୁଟ୍‌ଚୁଣୀ** - *ଦେ:* (ବି.) : ଧାନକୁଟି ଯେ ଜୀବିକାନିର୍ବାହକରେ

**କୁଟ୍‌ନି** - *ବୌ:ସୁ:ବ:* (ବି.) : ଢିଙ୍କିର ଖୋପ (ଗାତ), ଢିଙ୍କି ଗାତ, ହେମଦସ୍ତାଦି, ପ୍ରେମ ସଂପର୍କ ପାଇଁ ଖବର ନିଆଅଣା କରୁଥିବା ବ୍ୟକ୍ତି

**କୁଟ୍‌ବା** - *ଅନେ:* (କ୍ରି.) : ଛେଚିବା, କୁଟିବା

**କୁଟ୍‌ମ** - *ବୌ:* (ବି.) : କୁଟୁମ୍ବ, ପରିବାର

**କୁଟ୍‌ରା** - *ଅନେ:* (ବି.) : ଏକ ପ୍ରକାର ଛୋଟ ହରିଣ ଜାତୀୟ ବନ୍ୟ ପଶୁ

**କୁଟ୍‌ରୁ** - *ଦେ:* (ବି.) : ତମ୍ବୁ

**କୁଟ୍‌ରେଇବା** - *ବୌ:କ:କେ:* (କ୍ରି.) : ଶୀତରେ ଜାକିଜୁକି ହେବା, ଟିକିଟିକି କରି କାଟିବା

**କୁଟକୁଟି** - *ରା:ସୁ:* (ବିଂ.) : ଅନ୍ୟର ଯେ ଭଲ ଦେଖି ସହିପାରେନି, ଟିକିଟିକି, ଟୁକୁରା

**କୁଟା** - *ଅନେ:* (ବି.) : ଶୁଖିଲା ନଡ଼ା, ପାଳ, ଧାନକୁଟା, ପାଳ, କୁଟିବା, କୁଟିବା କ୍ରିୟାରୁ ଗଠିତ ବିଶେଷଣ

**କୁଟାକାଠି** - *ଦେ:ପଦ୍ୟ:* (ବି.) : ଅଳିଆ, କୁଟା ଓ କ୍ଷୁଦ୍ର ଘାସ ବା ଖଡିକା ଆଦିର ଖଣ୍ଡମାନ, ଅଳିଆ

**କୁଟି** - *କଳା:ସୁ:ନୂ:* (ବି.) : ରବି ଫସଲ ଅମଳ ପରେ ରହି ଯାଇଥିବା ଅବଶେଷ । ଏହାକୁ ଗୋରୁ ଖାଇଥାନ୍ତି , ଛେଦା, ଅଗାଡ଼ି ପଦାର୍ଥର ଅତିକ୍ଷୁଦ୍ର ଅଂଶ (ବୋଡି)

**କୁଟିଆ** - *କଳା:କୋ:ମା:* (ବି.) : ଜଂଗଲ ଓ ପାହାଡ଼ ଉପରେ ରହୁଥିବା କନ୍ଧ ସଂପ୍ରଦାୟ, ଆଦିବାସୀ ଜାତି ବିଶେଷ, କପଟ

**କୁଟିଛାଟି** - *ଭ:* (କ୍ରି.ବିଂ.) : ବ୍ୟସ୍ତ ବିବ୍ରତ

**କୁଟିଳ୍ଲା** - *ଅ:* (ବିଂ.) : ମାୟାବୀ, କୁଟୁଳିଆ

**କୁଟି ଠେସି ହୋଇ** - *ବୌ:* (କ୍ରି.ବିଂ.) : କଚାଡି ହୋଇ, ଠେଲିପେଲି ହୋଇ

**କୁଟିଦେବା** - *ସଂବା:* (କ୍ରି.) : ଖୁବ୍ ପିଟିବା, ଢିଙ୍କିରେ ଧାନରୁ ଚାଉଳ ବାହାର କରିବା

**କୁଟିବା** - *ପଦ୍ୟ:କଳା:ନୂ:* (କ୍ରି.) : ଛେଚିବା, ପ୍ରହାର କରିବା, ଖଣ୍ଡଖଣ୍ଡ ବା ଚୂନା

କରିବା, ଚିତାକୁଟିବା, ଖୁବ୍ ବର୍ଷିବା, ଗୁଣ୍ଡକରିବା, ଧାନରୁ ଚାଉଳ କରିବା

**କୁଟିଳ** - *ଅନେ:* (ବିଂ.) : ଖଳ, ବଙ୍କା

**କୁଟୁକୁଟା** - *କ:ଦେ:* (ବି.ବିଂ.) : ଅତି ଛୋଟଛୋଟ କରି ଚିରିବା, ଟିକିଟିକି

**କୁଟୁକୁଟିଆ** - *ଗ:ଖୋ:ବା:* (ବିଂ.) : କପଟ ସ୍ୱଭାବ, କପଟିଆ

**କୁଟୁକୁଟୁ (କରିବା)** - *ଖୋ:* (କ୍ରି.ବିଂ.) : ଛୋଟଛୋଟ କରିବା

**କୁଟୁଣି** - *ରା:ବା:* (ବି.) : ହାତରେ କୁଟିବାପାଇଁ ବ୍ୟବହୃତ ଉପକରଣ, ଖଳ ପ୍ରକୃଥିର ସ୍ତ୍ରୀ

**କୁଟୁମ୍** - *ଅନେ:* (ବି.) : କୁଟୁମ୍ବ, ପରିବାର

**କୁଟୁମ୍ ବାଟୁମ୍** - *ସ:ଦେ:* (ବି.) : ପରିବାରବର୍ଗ

**କୁଟୁମାରିଆ** - *ଭ:* (ବି.) : ବେଶୀ ସଂଖ୍ୟା ବିଶିଷ୍ଟ ପରିବାର

**କୁଟୁମୁଟିଆ** - *ଦେ:ବା:* (ବିଂ.) : ଶଠ, କପଟୀ

**କୁଟୁମୁଟୁ ହେବା** - *ସ:* (କ୍ରି.) : ଜାକିଜୁକି ହେବା

**କୁଟୁମ୍ବ** - *ଅନେ:* (ବି.) : ପରିବାର

**କୁଟୁରା** - *ଅନେ:* (ବି.) କୁଟ୍‌ରା, ପଶୁବିଶେଷ, ମୃଗଜାତୀୟ ପ୍ରାଣୀ

**କୁଟୁଳିଆ** - *ଢ:* (ବିଂ.) : କପଟୀ

**କୁଟୁଷରଆ** - *ଗ:* (ବିଂ.) : କପଟିଆ ବ୍ୟକ୍ତି

**କୁଟେ** - *ବ:* (ବିଂ.) : ଆଠ ଡାମ୍ଫି ପରିମାଣ (ଶସ୍ୟ), ଆଠ ଅଡ଼ା

**କୁଟେଇତୁଣୀ** - *ଗ:* (ବି.) : ଧାନ କୁଟୁଥିବା ସ୍ତ୍ରୀ

**କୁଟେନ୍** - *କଳା:ବ:ନୂ:କଳା:* (ବି.) : କୁଟୁଣି ଗାତ, କୁଟିଆ କନ୍ଧ ସ୍ତ୍ରୀଲୋକ, ଧାନ କୁଟିବା ପାହାର, ଢେଙ୍କି, କୁଟୁଣୀ ଗାତ, କୁଟିଆ କନ୍ଧ ଜାତୀୟ ସ୍ତ୍ରୀ ଲୋକ

**କୁଚ୍ଛି** - *ରା:* (ବି.) : ଚୌକି

**କୁଠ** - *ରା:କୋ:* (ବିଂ.) : କୋଠ, ସମ୍ମିଳିତ, ସାମୂହିକ

**କୁଠଲି** - *ସୁବ:* (ବି.) : ଠେକି

**କୁଠା** - *ଅ:ଗଜ:ବା:ନୂ:* (ବି.) : କୋଠା, ଛାତଘର, ଅତି ଅଳସୁଆ

**କୁଠା ମେଲାଣି** - *ଗ:* (ବି.) : ବିବାହ ପରେ ପ୍ରଥମଥର ପାଇଁ ଜ୍ୱାଇଁ ପୁଅର ଶ୍ୱଶୁର ଘର ଆଗମନ

**କୁଠାସଜ** - *ଗ:* (ବି.) : ଜ୍ୱାଇଁପୁଅର ମେଲାଣି ଭାର

**କୁଠି** - *ଅନେ:* (ବି.) : ଧାନ ଅମାର, କୋଠି, ପୂଜା ଆଦି କରିବାର ଛୋଟଘର, କୋଠରୀ,

**କୁଠିଆ** - *ଅନେ:* (ବିଂ.ବି.) କୋଢି, ଅଳସୁଆ, ଘରଖିଆ ଚାକର, ଗାଈଗୋରୁ ହେପାଜତ କରୁଥିବା ଚାକର, କିଛିଦିନ ପାଇଁ ନିଯୁକ୍ତ ଚାକର

**କୁଠୁଲ୍** - *ସ:କଳା:* (ବି.) : ଛୋଟ ମାଠିଆ, ଛୋଟ ମାଟି ହାଣ୍ଡି

**କୁ ଠେ** - *ରା:* (ଅ.) : କେଉଁଠାରେ

**କୁଡ଼ମେଇ** - *ଅ:* (ବି.) : ଛୋଟ ଡୋଲି

କୁଢ଼ି କଚାଡ଼ି ହେବା - *ଅ:* (କ୍ରି.) : ଶୋକ ଗ୍ରସ୍ତ ହୋଇ ଛାତି ପିଟି ହେବା

କୁଢ଼କି ବସିବା - *ଗ୍ରା:* (ବି.) : ଛୁଆ ଫୁଟାଇବା ପାଇଁ ମାଈ କୁକୁଡ଼ା ଅଣ୍ଡା ଉପରେ ବସିବା

କୁଢ଼ଡା - *ସୁବ:* (ବି.) : ପଶୁମାନଙ୍କୁ ପିଟାଯାଇଥିବା କୋରଡ଼ା

କୁଢୁକୀ - *ପଦ୍ୟ:* (ବି.) : ମାଟିର ଭୋଜନ ପାତ୍ର ବା ତାଟିଆ, ଛୋଟହାଣ୍ଡି, ରନ୍ଧନପାତ୍ର

କୁଢୁଚି - *ଗ୍ରା:* (ବି.) : କୁଟାଧାନର ଖୁଦ

କୁଢୁ - *ବ:* (ବି.) : ଜମିକୁ ସମତଳ କରିବା ମଇ

କୁଢ଼ - *ଗ୍ରା:କୋ:ମା:କଳା:* (ବି) : କୋଳ, କାଛ

କୁଢ଼୍କା - *ସୁ:* (ବି.) : ଖୋଳିବା, କୂଅ ଖୋଳିବା ଲୋକ

କୁଢ଼୍କୁଡ଼ିବା - *କଳା:* (କ୍ରି.) : ଖୋଳି ଖୋଳି ଆଣିବା

କୁଢ଼୍ପେଣ୍ଡୁ - *କନ୍ଧ:* (ବି.) : କୁମ୍ଭାଟୁଆ

କୁଢ଼କା - *ନବ:* (ବି.) : କଂସା

କୁଢ଼ପୁଛା - *ରା:* (ବିଂ.) : ଶେଷ ସନ୍ତାନ, କୋଳପୋଛା

କୁଢ଼ା - *ଅନେ:* (ବି.) : ବିଲରେ ବଛା ଯାଇଥିବା ଘାସଗଦା, ଜାତିବିଶେଷ, କୋରଡ଼ା, ମାଟିଖୋଳା, ଆଦିବାସୀ ଜାତି ବିଶେଷ

କୁଢ଼ିଆ - *ମା:ଦେ:* (ବି.) : ଝାଟିମାଟି ଘର, ଛୋଟ ଅସ୍ଥାୟୀ ଘର

କୁଢ଼ିକା - *ଗ:* (ବି.) : କୋଡ଼ିଏ ହିସାବର ପରିମାଣ

କୁଢ଼ିଙ୍ଗା - *କନ୍ଧ:* (ବି.) : ଧାନ

କୁଢୁ - *କନ୍ଧ:କେନ୍ଦୁ:ଗଦ୍ୟ:* (ବି.) : କାଛ, ହଂସ, ଜାଉ

କୁଢୁଆ - *ଢ:ଗ:* (ବି.) : ମାଟିପାତ୍ର, କ୍ଷୁଦ୍ରମାଟି ହାଣ୍ଡି

କୁଢୁମା - *ଗ:* (ବି.) : ଦୋଭଜା

କୁଢୁମାଲି - *ପଦ୍ୟ:* (ବି.) କୁଢୁମୀ ସଂପ୍ରଦାୟର ଭାଷା

କୁଢୁରି - *କ:* (ବିଂ.) : ପାଣି ନଥିବା ନଡ଼ିଆ, ଖୁରୁଡ଼ି

କୁଢ଼େ - *କନ୍ଧ:* (ବି.) : କଟୁରି

କୁଢ - *ଅନେ:* (ବି.) : ମାଟି ତିଆରି ବଡ ଘୁମ (ଧାନ ଚାଉଳ ରଖାଯାଏ ଯହିଁରେ), ବନୌଷଧି, କୁଷ୍ଠ ରୋଗ, ପଥର କାଛ, କ୍ଷୁପବିଶେଷ, ଗଦା

କୁଢ଼ାର୍ - *ମ:* (ବି.) : କୁରାଢ଼ି

କୁଢା - *କଳା:ମା:ପଦ୍ୟ:* (ବି.) : ବିଲରେ ବଛାଯାଇଥିବା ଘାସ ଗଦା, କୁଢ଼ା, ଗଦା

କୁଢିଆ - *ଅନେ:* (ବିଂ.ବି.) : କୃପଣ, କୁଡିଆ, ଅଳସୁଆ, କୋଷ୍ଠରୋଗୀ

କୁଢି କାଁଚି - *ସ:* (ବି.) : ମାଟି ତିଆରି ପାତ୍ର

**କୁଢେର୍** - *କଳା:ସ:* (ବି.) : ଟାଙ୍ଗିଆ, କୁଠାର, କୁରାଢି, କାଠ କାଟିବା ଜିନିଷ

**କୁଣ** - *ରା:* (ବି.) : ଦେଖା ନଯିବା ସ୍ଥାନ

**କୁଣକୁଆ** - *ଗ:* (ବି.) : କାନ୍ଥରେ ତିଆରି ଗର୍ତ୍ତ

**କୁଣନଖ** - *ଅ:* (ବି.) : କଣନଖା

**କୁଣପଇଠା** - *ଗ:* (କ୍ରି.) : ଘରକୋଣରେ ସାଇତିବା

**କୁଣରେଖା** - *ନୂ:* (ବି.) : ଝିଟିପିଟି

**କୁଣା** - *ନୂ:* (ବି.) : ଧାନର ଚୋପା, କୁଣ୍ଡା

**କୁଣାବରୀ** - *କଳା:* (ବି.) କେତେକ ସଂପ୍ରଦାୟରେ ପ୍ରଚଳିତ ଝିଅମାନଙ୍କ ପ୍ରାକ୍ ବିବାହ କାଳୀନ ସାମାଜିକ କର୍ମ ବିଶେଷ

**କୁଣାଁ** - *କଳା:* (ବି.) : କୁଣ୍ଡା

**କୁଣି** - *କଳା:* (ବି.) : ମାଟି ନିର୍ମିତ ଛୋଟପାତ୍ର

**କୁଣିଆ** - *ମା:ଯା:ଢ:* (ବି.) : ଅତିଥି

**କୁଣିଆଖୁଡ଼** - *ଗ:* (ବି.) : ଅତିଥିଙ୍କ ଅସନ୍ତୋଷ

**କୁଣ୍ଡକୁଣ୍ଡିଆ** - *ବ:* (ବିଂ.) : ସନ୍ଦେହୀ, ଜଟିଳ ଓ ଅସ୍ୱଚ୍ଛ ପ୍ରକୃତି

**କୁଣ୍ଡା** - *ଦେ:ଢ:* (ବି.) : ସଙ୍କୋଚ, ଅସମ୍ମତି

**କୁଣ୍ଡ** - *କୋ:ଢ:କ:* (ବି.) : ବୃହଦ୍ ପାଣିପାତ୍ର, ମାଟିପାତ୍ର, ପାଣିରଖା ପାତ୍ର, କୁଣ୍ଡ

**କୁଣ୍ଡଲ** - *ରା:* (ବି.) : ପୁରୁଷର କର୍ଣ୍ଣ ଅଳଙ୍କାର

**କୁଣ୍ଡଳୀ** - *ଦେ:ସଂ:* (ବି.) : ଜନ୍ମକୁଣ୍ଡଳୀ, ଘେରିବନ୍ଦି, ବୃତ୍ତାକାର, ଜାତକ

**କୁଣ୍ଡା** - *ଦେ:ବୌ:କୋ:* (ବି.) : ଚଷ୍ଟୁ, ଟଷ୍ଟୁ, ଗୋ ଖାଦ୍ୟ, ଧାନ ଚୋପାର ଗୁଣ୍ଡ

**କୁଣ୍ଡାଇହେବା** - *ଦେ:* (କ୍ରି.) : ଗଲୁ ହେବା

**କୁଣ୍ଡାଖଇ** - *ଦେ:* (ବି.) : ଖଇ, ରାଶି ଓ ଚାଉଳ ଭଜାକୁ ଗୁଣ୍ଡ କରାଯାଇଥିବା ଖାଦ୍ୟ

**କୁଣ୍ଡା ଝାଡିବା** - *ସଂ:* (କ୍ରି.) : ଫୁରୁ ଫୁରୁ ବର୍ଷା ହେବା, ସମ୍ୟକ୍ ସାହାଯ୍ୟ କରିବା

**କୁଣ୍ଡା ପଥର** - *ପଦ୍ୟ:* (ବି.) : ମାଙ୍କଡ଼ା ପଥର

**କୁଣ୍ଡାପାଣି** - *ଗ:* (ବି.) : ଗୃହପାଳିତପଶୁଙ୍କ ନିତିଦିନିଆ ଖାଦ୍ୟ

**କୁଣ୍ଡାପିଠା** - *ଦେ:* (ବି.) : ପାଟକୁଣ୍ଡା, ଛେନା ଓ ଗୁଡ଼ରେ ତିଆରି ପିଠା

**କୁଣ୍ଡାହାଣ୍ଡି** - *ବ:ଗ:ବ:* (ବି.) : ଗୋରୁହାଣ୍ଡି, ପେଜ, ତୋରାଣି, କୁଣ୍ଡା ଆଦି ମିଶାଇ ପ୍ରସ୍ତୁତ ଗୋଖାଦ୍ୟ

**କୁଣ୍ଡି** - *କଃ:ରା:ପଦ୍ୟ:* (ବି.) : ଛୋଟ ମାଠିଆ, ଫୁଲ ଗଛର ମାଟି ପାତ୍ର, ପ୍ରସ୍ତର ନିର୍ମିତ କ୍ଷୁଦ୍ର ପାତ୍ର, କବାଟର ଶିକୁଳି

**କୁଣ୍ଡିଆ** - *ଦେ:ଗ:* (ବି.) : କାଛୁକୁଣ୍ଡିଆ ରୋଗ, କଣ୍ଡୁରୋଗ

**କୁଣ୍ଡିବୁଚି** - *କଳା:* (ବି.) : ଶିଶୁଖେଳ ଉପଯୋଗୀ ମାଟିରେ ନିର୍ମିତ ଅତି କ୍ଷୁଦ୍ରକାର ପାତ୍ର

**କୁଣ୍ଢ** - *କୋ:କ:ଗ:ଦେ:* (ବି.) : ଦୁଇହାତକୁ ଏକାଠି ନେଇ ଗୋଲାକୃତି କଲେ ଯେତିକି ମାପହେବ, ଦୁଇ ବାହୁର ବେଷ୍ଟନୀ, ବାହୁବେଷ୍ଟନୀ

**କୁଣ୍ଢ କରିବା** - *ଗ.* (କ୍ରି.) : ଧାନ କାଟିବାପରେ ବିଲରେ ଛୋଟ ଛୋଟ ଗଦାକରିବା
**କୁଣ୍ଢି** - *କୋ.ଗଞ୍ଜ.ରା.ଖୋ.* (ବି.) : ଛୋଟ କଳସ, ଧାତୁ ମୁଦ୍ରା ସଂଚୟ କରିବା ପାଇଁ ଉପରେ ଛୋଟିଆ ଛିଦ୍ର ଥିବା ମାଟି ବା ଧାତୁ ନିର୍ମିତ ଆଧାର, ବାଉଁଶ ନିର୍ମିତ ଟୋକେଇ, ବଡ଼ ବାଉଁଶିଆ
**କୁଣ୍ଢିଆକୁଣ୍ଢି** - *କ.* (ବି.) : ଦୃଢ ଆଲିଙ୍ଗନ, ପରସ୍ପରକୁ ଜାବୁଡ଼ି ଧରିବା
**କୁତ** - *କ.କେ.କ.* (ବି.) : ହୁଣ୍ଡାମୁଲ, ଆନୁମାନିକ ମୂଲ୍ୟ ବା ପରିମାଣ, ଏକ ଆନୁମାନିକ ମୂଲ୍ୟରେ ବର୍ଷକ ଲାଗି ଜମି, ଗଛ ଦେବା
**କୁତ୍କା** - *କନ୍ଧ.* (ବି.) : ଛତୁ
**କୁତ୍ରା** - *କୋ.* (ବିଂ.) : କୁତୁରା, ବ୍ୟବହାର ଉପଯୋଗୀ ନହେବା
**କୁତି** - *କେନ୍ଦୁ.* (ବି.) : କଡ଼,ତଟ,ପାର୍ଶ୍ୱ
**କୁତିଆ** - *କଳା.* (ବି.) : ଚାଷ କାର୍ଯ୍ୟରେ ଦିଆଯାଇଥିବା ଠିକା
**କୁତିଆରି** - *ଖୋ.* (କ୍ରି.) : ରାଗିକରି ଚୁପ୍‌ଚାପ୍ ବସି ରହିବା
**କୁତି କୁକୁର** - *ବ୍ରା.* (ବିଂ.) : ଆଜ୍ଞାବନ୍ଧ କୁକୁର
**କୁତିବା** - *ବ୍ରା.* (ବି.) : ଗୌଣୀ ବା କଠାରେ ଥିବା ଶସ୍ୟକୁ ସେର ବା କିଲୋ ଓଜନରେ ମାପିବା
**କୁତୁକୁତୁ** - *ରା.ଖୋ.କେ.ଗଦ୍ୟ.* (ବି.କ୍ରି.ଅ.) : ଦେହରେ ଅଙ୍ଗୁଳି ସାହାଯ୍ୟରେ ହସାଇବା, ଖରକରିବା, ସଲ ସଲ, ସନ୍ତୁଷ୍ଟ
**କୁତୁରୀ** - *ମା.ନବ.* (ବି.) : ମାଈ କୁକୁର
**କୁତୁରୁକାଳିଆ** - *ଗ.* (କ୍ରି.) : କୁତ୍‌କୁତ୍ କରିବା
**କୁତୁରୁପିଆ** - *ଭ.କେ.କ.ବା.* (ବିଂ.) : କୁଟିଳ, ଚୁଗୁଲିଆ, କପଟୀ, ଷଡ଼ଯନ୍ତ୍ରକାରୀ, ଦୁଷ୍ଟ, ସଂକୀର୍ଣ୍ଣମନା
**କୁତୁରେଇବା** - *ଗ.* (କ୍ରି.) : ଅନ୍ୟକୁ ବିଚଳିତ କରିବା
**କୁତୁହଳ** - *କ.ଦେ.* (ବି.) : ଜାଣିବାପାଇଁ ବିଶେଷ ଆଗ୍ରହ, କୌତୁହଳ, କୌତୁକ
**କୁତେଇ ପିନ୍ଧିବା** - *ଗ.* (କ୍ରି.) : ଗୋଟିଏ ଲୁଗାକୁ ଦୀର୍ଘଦିନ ପିନ୍ଧିବା
**କୁତେଇବା** - *ନ.* (ବି.) : ଚିକିଟିକି କରିବା, ବାରମ୍ବାର କହି ବ୍ୟତିବ୍ୟସ୍ତ କରିବା
**କୁତ୍ତା** - *ବୌ.* (ବି.) : କୁକୁର
**କୁଥଲ୍** - *ଦେ.* (ବିଂ.) : ବସିଖିଆ
**କୁଥଳୀ** - *ଅ.* (ବି.) : କୋଥଳି
**କୁଥି** - *ଗଦ୍ୟ.ସ.* (ଅ.ବି.) : କେଉଁଠି
**କୁଦ୍‌ବା** - *ସ.କଳା.କେନ୍ଦୁ.* (କ୍ରି.) : କୁଦିବା, ଦୌଡ଼ିବା, ନାଚିବା, ଡେଇଁବା, ମାଡ଼ିବା, ପାଦପକାଇବା
**କୁଦ** - *ଅନେ.* (ବି.) : ଢିପ, ଉଚ୍ଚ ସ୍ଥାନ, ଦୁଇପଟ ନଈଧାର ଥାଇ ମଝିରେ ଥିବା ଉଚ୍ଚ ସ୍ଥଳଭାଗ, ଏକ ପ୍ରକାର ଘାସ

**କୁଦା** - *ମା:କଳା:କୋ:ପଦ୍ୟ:* (ବି.) : ଡେଇଁବା, ଡ଼ିଆଁ, ଲମ୍ଫ, ଏକକାଳୀନ ଉଠିଥିବା ଗଛ, ବାଲି ସ୍ତୁପ

**କୁଦାକୁଦା** - *ଅ:* (ଅ.) : ଦଳଦଳ ହୋଇ

**କୁଦାଙ୍ଗୀ** - *କନ୍ଧ:* (ବି.) : କନ୍ଦା

**କୁଦାଦଳା** - *ଗ:* (କ୍ରି.) : ଗୋଡ଼ରେ ଚକଟିବା ବା ଦଳିବା

**କୁଦାରି** - *ସୁ:* (ବି.) : ମାଟି ହାଲକା କରିବା ଲୁହା

**କୁଦାଇ୍ପାଟ୍** - *କୋ:* (ବିଂ.) : ଦେବାଳିଆ

**କୁଦିବା** - *ଖୋ:ମ:ନ:* (କ୍ରି.) : ଡିଆଁମାରିବା, ଦଉଡ଼ିବା, ପାଦରେ ଶରୀରକୁ ମାଡ଼ିଦେବା

**କୁଦୁମ** - *ଚ୍ୟ:* (ବି.) : କଦମ୍ବ

**କୁଦୁମ୍ଝାଡ଼** - *ଚ୍ୟ:* (ବି.) : ଏକପ୍ରକାର 'ବାଣ' ର ନାମ

**କୁଦୁରୀ** - *ରୀ:* (ବି.) : ଘରର ଛୋଟ ସ୍ଥାନ

**କୁଦୁଂକୁସା** - *କନ୍ଧ:* (ବି.) : ଚାଉଳ ପଡ଼ି ଶାଗ ଖରଡ଼ା

**କୁଦେଲ୍** - *କଳା:ସ:କନ୍ଧ:* (ବି.ବିଂ.) : କୋଦାଳ, କୋଡି, କୁଏଡ୍, କୋଦାଳ

**କୁଧା** - *ସୁ:* (ବି.) : ଖାଦ୍ୟ ଉପଯୋଗୀ ଶସ୍ୟ, କୋଦୁଅ

**କୁନ୍** - *ନୁ:ମା:କଳା:ଝା:* (ବିଂ.ଅ.ବି.) : କୋଣ, କେଉଁ, କିଏ, ଘର କୋଣ

**କୁନ୍କନା ଅନ୍ଧାର** - *କନ୍ଧ:* (ବିଂ.) : କିଟିକିଟି ଅନ୍ଧାର

**କୁନ୍କା** - *ଭ:* (ବି.) : ତାଳ ପତ୍ରରେ ତିଆରି ମସଲା ରଖିବା ପାତ୍ର

**କୁନ୍ଡୁ** - *କଳା:* (ବି.) : ଖଂଜାହାଡ଼

**କୁନ୍ବା** - *କଳା:* (କ୍ରି.) : ଖୁଣିବା, ବାହୁନିବା

**କୁନ୍ମୁନ୍** - *ସୁ:* (ବିଂ.) : ନିଃସଙ୍ଗ

**କୁନ୍ଲୀ** - *ସୁବ:* (ବି.) : ବାଉଁଶ ଖଡ଼ିକାରେ ତିଆରି ଭୋଗେଇ

**କୁନା** - *ଅନେ:* (ବିଂ.ବି.) : ସାନ, କୋଣ, ଘରର କୋଣ, ଛିଣ୍ଡାକପଡ଼ା

**କୁନିଆଁ** - *କନ୍ଧ:* (ବି.) : କୁଣିଆ

**କୁନୁଗୁରା** - *କୋ:* (ବି.) : ଶଠ, ମିଛୁଆ

**କୁନୁମୁନିଆ** - *କ:ଦେ:* (ବିଂ.) : ଛୋଟ ଅଥଚ ଖୁବ୍ ସୁନ୍ଦର ବସ୍ତୁ ବା ପିଲା, କୌତୁକିଆ

**କୁନୁହାଁ** - *ଝ୍ୟ:* (ବି.) : କୁଣିଆଁ, ଅତିଥି

**କୁନ୍ତ** - *ପଦ୍ୟ:* (ବି.) : ଏକ ପ୍ରକାର ଅସ୍ତ୍ର

**କୁନ୍ତୁକୁନ୍ତୁ** - *ଚ୍ୟ:* (ବି.) : କୁଣ୍ଠିତଭାବ, ଅନିଚ୍ଛା ପ୍ରକାଶ

**କୁନ୍ଥହଗା** - *ଅ:* (ବି.) : ନାଳରକ୍ତ ଝାଡ଼ା

**କୁନ୍ଥା** - *ପଦ୍ୟ:ଯା:ଚା:ଭ:* (ବି.ବିଂ.) : କୁନ୍ଥନ, ଦଛରା, କୃପଣ, ସବୁକାମକୁ କଷ୍ଟ ବିଚାରୁଥିବା, ଦୀର୍ଘସୂତ୍ରୀ, ଅଳସୁଆ, ଧାର ନଥିବା ଯନ୍ତ୍ର, ଧାରହୀନ

**କୁନ୍ଥକୁନ୍ଥ** - *ଅନେ:* (ବିଂ.) : ନାରାଜ, ଅନିଚ୍ଛାଭାବ, ଦେବା ପାଇଁ ଯେ ସର୍ବଦା ଅମଙ୍ଗ, ନାରାଜ, କୁଣ୍ଠିତ

କୁନ୍ଦ - *ରା:ଗ:ଛ:* (ବି.) : ଯୁଳକାଠର ଉପରେ କାରୁକାର୍ଯ୍ୟ, ବଢ଼େଇଙ୍କ କୁନ୍ଦିବା ଯନ୍ତ୍ର

କୁନ୍ଦରୁ - *କଳା:ନୂ:* (ବି.) : କୁନ୍ଦୁରୁ, ତୋରଡ଼ା

କୁନ୍ଦଲି - *କୋ:* (ବି.) : ଅପସ୍ମାର ରୋଗ

କୁନ୍ଦା - *କଳା:ସ:ସୁ:* (ବିଂ.) : ମୂକ

କୁନ୍ଦାକୁନ୍ଦି - *ସ:* (ବି.) ମାଡ଼ଦେବା, ଠେଲାପେଲା

କୁନ୍ଦାଦେଓ - *କଳା:* (ବି.) : ଗଣ୍ଡମାନଙ୍କର ଉପାସିତ ଦେବତା

କୁନ୍ଦାରୀ - *କଳା:* (ବି.) : କାଠ କୁନ୍ଦିବା ଶିଳ୍ପୀ

କୁନ୍ଦି - *ନୂ:ଅ:* (ବିଂ.ବି.) ମୁକ (ସ୍ତ୍ରୀ), ମାଟିଘରେ ଛୋଟ ଥାକ

କୁନ୍ଦିଲା - *ଭ:କ:* (ବିଂ.) : ପୂରିଲା, ସୁଗଠିତ, ଡଉଲଡାଉଲ

କୁନ୍ଦୀ - *କଳା:* (ବିଂ.) : ମୂକ ସ୍ତ୍ରୀ ଲୋକ

କୁନ୍ଦୁରଖାଇ - *ଚ:* (ବି.) : ଠଣା

କୁନ୍ଦୁରା - *କନ୍ଧ:ରା:ସ:* (ବି.ବିଂ.) : ଦ୍ୱାରଦେଶରେ ବ୍ୟବହୃତ ଡାଟିର ବାଉଁଶଟି ଯେଉଁ ଗହ୍ୱରରେ ଘୂରେ, କେନ୍ଦେରା, ଦୁଷ୍ଟ, ନିଲଠା ଲୋକ

କୁନ୍ଦୁରୀ - *ନ:କ:* (ବି.) : ଝୁଲଣ, ଏକ ଲତା ଜାତୀୟ ଫଳ, କଣ୍ଠର ଅଳଙ୍କାର ବିଶେଷ

କୁନ୍ଦୁଲି ଛାଟିବା - *ଗ:* (ବି.) : ଅପସ୍ମାର ରୋଗର ଉପକ୍ରମ

କୁନ୍ଦ୍ରିବା - *କେନ୍ଦୁ:* (କ୍ରି.) : ବୁଲିବା, ଘୂରିବା

କୁପ୍ - *ଅ:* (ବି.) : ସଂରକ୍ଷିତ ଜଙ୍ଗଲ

କୁପ୍ଲି - *କୋ:ନବ:* (ବି.) : ଛୋଟ ପାହାଡ଼

କୁପଲୁକ - *ଗଞ:* (ବିଂ.) : ରାଗିଲୋକ

କୁପା - *କଳା:ଅ:କନ୍ଧ:ନବ:* (ବିଂ.ବି.) : ଗଦା, ଠୁଳ, ଠୁଣ୍ଡ, କୁମ୍ପା, ଛୋଟ ମାଟିପାତ୍ର ବିଶେଷ, ମଦ ରଖିବା ପାତ୍ର, ଧାନଗଦା

କୁପାକେଲି - *ଗଞ:* (ବି.) : ଖେଳବିଶେଷ

କୁପାନ୍ - *ସ:* (ବି.) : ଚିଠା, କୁପନ, ଚିରିକୁଟ

କୁପି - *ସୁ:କୋ:* (ବି.) : ମାଟି ପତ୍ରରେ ବାରୁଦ ରଖା ଫୁଲଝରି ପାତ୍ର, ଛୋଟଦୀପ

କୁପିତ - *ଛ:* (ବିଂ.) : କ୍ରୋଧାନ୍ୱିତ

କୁପେ - *କୋ:ନବ:* (ବିଂ.) : ଅତିବେଶୀ, ବେଶୀ

କୁବ୍ଜା - *ନୂ:କୋ:* (ବିଂ.ବି.) : କୁବୁଜା, କୁଜୀ, ବିକଳାଙ୍ଗୀ, ପାଣି ରଖିବା ମାଟିପାତ୍ର ବିଶେଷ

କୁବ୍ଜି - *କଳା:ଦେ:* (ବି.) : ଛୋଟଗିନି, ଗିନି, ଝାଞ୍ଜ

କୁବରି ମହାରାଜୀ - *ନୂ:* (ବି.) : ଏକ ପ୍ରକାର ଧାନ

କୁବି - *ଅନେ:* (ବି.) : କୋବି

କୁବି ସାଗ୍ - *ସ:* (ବି.) : ବନ୍ଧାକୋବି

କୁବୁ - *ରା:* (ବି.) : ନାରୀଙ୍କ ଖୋସା

କୁବୁଜ - *ପଦ୍ୟ:* (ବି.) : କୁଜ

କୁବୁରକୁଳି - *କେନ୍ଦୁ:* (ବି.) : ଏକ ପ୍ରକାର ଜଙ୍ଗଲୀ କୋଳି

**କୁଭେଇ ମାରିବା** - *ବା:* (କ୍ରି.) : ଖୁବ୍ ମାଡ଼ ଦେବା

**କୁମ୍‌ଚ** - *କଣ:* (ବି.) : କୁମ୍ଭାଟୁଆ

**କୁମ୍‌ଚି** - *କଳା:ବର:* (ବି.) : ଏକ ଜାତି, ବଙ୍କା, କୁମ୍ଭାଟୁଆ

**କୁମ୍‌ଚିଚରେଇ** - *ବୌ:* (ବି.) : କୁମ୍ଭାଟୁଆ

**କୁମ୍‌ଡା** - *ଅନେ:* (ବି.) ବୋଇତାଳୁ, ବୋଇତ କଖାରୁ

**କୁମ୍‌ଢା, କୁମଡ଼ା** - *ନୂ:* (ବି.) : ଲାଉ ଜାତୀୟ ଏକ ଫଳ

**କୁମ୍‌ନା** - *ସୁବ:* (ବି.) : ଦୁଇ ତିନି ହାତର ବାଉଁଶ ବା ବେଣା ଖଡିକାର ମାଛଧରା ଉପକରଣ, ମୁଗୁରା

**କୁମ୍‌ପଟର୍** - *କଳା:* (ବି.) : କଂପାଉଣ୍ଡର

**କୁମ୍‌ପଟିଆ** - *ସୁବ:* (ବି.) ମହିମା ଧର୍ମାବଲମ୍ବୀ ସନ୍ୟାସୀ

**କୁମ୍‌ରା** - *କଳା:* (ବି.) : ଗଣ୍ଡ ସଂପ୍ରଦାୟର କୌଳିକ ଉପନାମ ବିଶେଷ

**କୁମଗଛ** - *ସୁବ:କଳା:* (ବି.) : କୁମ୍ଭୀ ଗଛ

**କୁମଢ଼ା** - *ନବ:ସ:* (ବି.) : ବୋଇତାଳୁ, ମାଖନ

**କୁମଦ** - *ପଦ୍ୟ:* (ବି.) : ସୁଗନ୍ଧ, ମଧୁରଗନ୍ଧ

**କୁମା** - *ପଦ୍ୟ:ଦେ:ଗଦ୍ୟ:* (ବି.) : ଛୋଟ ଅସ୍ଥାୟୀ କୁଡ଼ିଆ ଘର, କୁଡ଼ିଆ

**କୁମାର** - *ମା:* (ବି.) : କୁମ୍ଭାର

**କୁମୁଚି** - *ଅନେ:* (ବି.) : ଗଞ୍ଜାମର ବୈଶ୍ୟ ଜାତି

**କୁମୁଚି କାଉ** - *ଖୋ:* (ବି.) : କୁମ୍ଭାଟୁଆ ପକ୍ଷୀ

**କୁମେଇ କୁଠେଇ** - *ନୂ:* (କ୍ରି.) : ପରିଶ୍ରମ କରି, କମେଇ

**କୁମ୍ନା** - *ସ:* (ବି.) : ମୁଗୁରା

**କୁମ୍ଭା** - *ଦେ:* (ବି.) : ତେଲରଖିବା ବଡ଼ ପାତ୍ର

**କୁମ୍ଭି** - *ଦେ:ଖୋ:ଗଞ:ପୁ:* (ବି.) : ସରୁମୁହାଁ ପାତ୍ର, ଏକ ଗୋଲାକାର ମାଟିପାତ୍ର ଯେଉଁଥିରେ ପଇସା ରଖାଯାଏ, ସରାଗାତ, ଘଡ଼ିବାଣ

**କୁମ୍ଭିଳ** - *ଦେ:* (ବିଂ.) : ଯେ ଅନ୍ୟର ଲେଖା ଚୋରିକରେ

**କୁମ୍ଭ** - *ଦେ:* (ବି.) : କଳସ, ଲୁଗା ଧଡ଼ିର ଚିତ୍ର

**କୁମ୍ଭାଟୁଆ** - *କେ:ଖୋ:* (ବି.) : ଢାଉ ରଂଗର ଏକପକ୍ଷୀ, ଏକ ପ୍ରକାର ପକ୍ଷୀ ଯିଏକି ଜଳାଶୟ ନିକଟବର୍ତ୍ତୀ ଅଞ୍ଚଳରେ ରହିବାକୁ ଭଲପାଏ

**କୁମ୍ଭାର** - *ସ:ଦେ:କ:* (ବି.) : କୁମ୍ଭକାର, ଯେ ହାଣ୍ଡି ମାଠିଆ ଗଢେ

**କୁମ୍ଭି** - *କ:କେନ୍ଦୁ:ଅ:* (ବି.) : ଚାରିଗୋଡ଼ ଥିବା ପାଣିବୁହା ଯନ୍ତ୍ର, ଏକ ପ୍ରକାର ଗଛ, କ୍ଷେତରେ ପାଣିଉଠା ଟେଣ୍ଡା

**କୁମ୍ଭୀପାକ** - *ଦେ:ଢ:* (ବି.ବିଂ.) : ଏକ ନର୍କ

**କୁମ୍ଭୀର** - *ଦେ:* (ବି.) : ମଗର

**କୁମ୍ଭୀର କାନ୍ଦଣା** - *ସଂଦେ:* (ବିଂ.ବି.) : ଛଳନା ଅଶ୍ରୁ କାନ୍ଦିବାର ଅଭିନୟ, ଛଳନା

**କୁମ୍ଭେଇବା** - *ଗ:* (କ୍ରି.) : ଗଛଲତା ଝଙ୍କାଳିଆ ହେବା

**କୁମ୍ଭେଚ୍** - *ନୂ:* (ବି.) : କୁମ୍ଭାଟୁଆ

**କୁର** - *କୋ:* (ବି.) : ନଡ଼ିଆ ବା ଅନ୍ୟ ପରିବାର କ୍ଷୁଦ୍ର କ୍ଷୁଦ୍ର ଅଂଶ, କୋରୁଅ

**କୁରକି** - *ଗୌ:* (ବି.) : ଋଣ ଅନାଦାୟେ ସଂପତ୍ତି ଅଟକ ପାଇଁ କୋରଖ

**କୁରକୁଚା** - *ସୁବ:* (ବି.) : କୁଳି, ପାଟିରେ ପାଣି ରଖି ଏପଟ ସେପଟ କରିବା

**କୁରକୁଡ଼ି ହେବା** - *ଗୌ:* (କ୍ରି.) : ଧନ ବିକଳ ହେବା

**କୁରକୁରେଇଯିବା** - *ସ:* (କ୍ରି.) : ଥରିଯିବା

**କୁରଖ୍** - *କନ:* (ବି.) : କ୍ରୋକ୍

**କୁରଚୁଣ୍ଡିଆ** - *ମା:ନବ:ଗ:* (ବିଂ.) : ଚୁଲ୍‌ବୁଲିଆ, ଦୁଷ୍ଟ, ଅପରିଣାମଦର୍ଶୀ

**କୁରଟ** - *ଅ:ଦେ:* (ବି.) : ତାଳ ବାହୁଙ୍ଗାରୁ ପ୍ରସ୍ତୁତ ଦଉଡ଼ି, ମୋଚି, ଚର୍ମକାର

**କୁରଳ** - *କେନ୍ଦୁ:* (ବି.) : ଖାଲ ଜାଗାରୁ ମାଟି ନେବାପାଇଁ କାଠପଟା

**କୁରସି** - *ମ:* (ବି.) : ଚେୟାର

**କୁରହେ ଫୁଲ** - *ସୁବ:* (ବି.) : ଇନ୍ଦ୍ରଯବ, କୋରୁହାଁ ଫୁଲ

**କୁରା କର୍‌ବା** - *ନୂ:* (କ୍ରି.) : କାଖେଇବା

**କୁରାଢିଆ** - *ଗ:* (ବିଂ.) : କୁରାଢିରେ କାଠ ହାଣିବା ଲୋକ

**କୁରାଣ୍ଡି** - *ଗ:* (ବି.) : ଖୁରାଣ୍ଡି, ମୃଗ ବିଶେଷ

**କୁରାଳ** - *ଯା:ବା:* (ବି.) : କୁମ୍ଭାର, ବଡ଼ପାଟିରେ ଡକା ପକାଇବା

**କୁରି** - *ସୁ:* (ବି.) : ଶିକାରୀ ଛକି ରହିବା ସ୍ଥାନ

**କୁରିଆ** - *ଅନେ:* (ବି.) : କୁଡ଼ିଆ, କୋରିବା, ରାମ୍ପିବା

**କୁରିହେବା** - *କଳା:ସ:* (କ୍ରି.) : କୁଣ୍ଡେଇ ହେବା, କୁଣ୍ଡେଇବା

**କୁରୁଆଁ** - *ନବ:* (ବି.) : ପେଚା

**କୁରୁକୁଟିଆ** - *କେନ୍ଦୁ:* (ବିଂ.) : ବହୁତଖଟା ଆସିଲା

**କୁରୁଚି** - *ଭ:ମା:ପଦ୍ୟ:ଗଞ:* (ବି.) : କୁଣ୍ଡା ତୋରାଣି ମିଶାଇ ରନ୍ଧାଯିବା ଗୋଖାଦ୍ୟ, ଚେୟାର, ଏକ ପ୍ରକାର ଫୁଲ, ଚୌକି

**କୁରୁଡା** - *ବା:* (ବି.) : ପାଞ୍ଚଣ

**କୁରୁଡ଼** - *କୋ:ବା:ସୁବ:* (ବି.) : କୋଟର, କୋରଡ଼, ଗଛ ଗଣ୍ଡିରେ ଥିବା ଗର୍ତ୍ତ, କୋରଡ଼, ମାଟି ସମତୁଲ କରିବା ଉପକରଣ। ହଳ ସହିତ ଏହା ଯୋଚାଯାଏ

**କୁରୁଣି ଘର** - *କନ:* (ବି.) : କାଠ ପଟାରେ ତିଆରି ହୋଇଥିବା ଘର

**କୁରୁଣ୍ଡ** - *ନବ:ବା:କୋ:ନ:* (ବି.) : ବର୍ଦ୍ଧିତ ଅଣ୍ଡକୋଷ

**କୁରୁଣ୍ଡିଆ** - *ଅ:* (ବିଂ.) : ରୋଗିଣା

**କୁରୁବକ** - *ଗଦ୍ୟ:* (ବି.) : ଏକ ଚଢେଇ

**କୁରୁମ** - *ଗ:ଖୋ:* (ବି.) : ଜାତି ବିଶେଷ, କୁଡୁମ, ଗେଡ଼ାଲୋକ, ବାଙ୍ଗରା, କଇଁଛ, ଗଛବିଶେଷ

**କୁରୁମ୍ ପିଟିଆ** - *କଥ:* (ବିଂ.) : କପଟିଆ

**କୁରୁମା** - *ଅ:ସୁ:ବ:ଦେ:* (ବି.) : ଦହିହାଣ୍ଡି, କୁର୍ମା, ଖେତରେ ଜଗିବା ଜାଗା, ତାଳପତ୍ରରେ ନିର୍ମିତ ଅସ୍ଥାୟୀ ଚାଷ ଜଗିବା ପାଇଁ ବ୍ୟବହୃତ ଛୋଟ କୁଡ଼ିଆ

**କୁରୁମୁପିଠିଆ** - *ନ:* (ବିଂ.) : ନିର୍ଲଜ ବ୍ୟକ୍ତି, ଯେତେ ଗାଳିମନ୍ଦର ଶରବ୍ୟ ହେଲେ ବି ଚମଡ଼ାକୁ ଯା'ର ବାଧେ ନାହିଁ

**କୁରୁଲୁ** - *ସୁ:* (ବି.) : ଫଳ ବିଶେଷ

**କୁରୁଳିବା** - *ଅନେ:* (କ୍ରି.) : ବିଲର ଉଚା ଜାଗାରୁ ଖାଲ ଜାଗାକୁ କୁରଳ ସାହାଯ୍ୟରେ ମାଟି ନେବା ପ୍ରକ୍ରିୟା, ଖୁସିହେବା, ଅତ୍ୟଧିକ ଆନନ୍ଦିତ ହେବା, ଜମି ସମତଳ କରିବା, ଉଚ୍ଚସ୍ୱରରେ ହସିବା

**କୁରେନ୍** - *କଳା:* (ବି.) : କୋରଣି, କୁରନି, କୋରିବା ଉପକରଣ, ଘୋରି ଘୋରି ମଝିରେ କଣା କରାଯାଇଥିବା ଶାମୁକା

**କୁର୍କାଂଚି ଆମ୍ନିଜା** - *ଜ:* (ବିଂ.) : ଅତିରିକ୍ତ ଖଟା

**କୁର୍ତା** - *ବର:ଅ:ସ:ଖୋ:* (ବି.) : ସାର୍ଟ, କାମିଜ

**କୁର୍ଲି** - *କଳା:* (ବି.) : ଛୋଟ ଟାଂଗୁଡ଼ି, କୁଲେଇ

**କୁର୍ଲୁ** - *କଳା:* (ବି.) : ଚାଷ ହୋଇଥିବା ଶୁଖିଲା ମାଟିକୁ ସମତଳ କରିବା ପାଇଁ ବ୍ୟବହୃତ କାଠ ଉପକରଣ

**କୁର୍ଲୁକଡା** - *କଳା:* (ବି.) : କୁର୍ଲୁଯନ୍ତ୍ରରେ ବ୍ୟବହୃତ ଲୁହା ଆଂକୁଡା

**କୁର୍ଷା** - *ରା:* (ବି.) : ବର୍ଚ୍ଛା

**କୁର୍** - *ସ:* (କ୍ରି.) : ଖଣ୍ଡ ଖଣ୍ଡ କରିବା

**କୁର୍‌ଇ** - *ଗଦ୍ୟ:* (ବି.) : ହାଣ୍ଡି

**କୁର୍‌କୁଟି** - *ଅନେ:* (ବିଂ.ବି.) : ଟିକିଟିକି, କୁଞ୍ଚକୁଞ୍ଚିଆ, ଅତି ଛୋଟ ଛୋଟ କରି କାଟିବା (ଟିକ୍ ଟିକ୍ କରିବା), ଛିନ୍ନ ଭିନ୍ନ ହୋଇଯିବା, ଅନ୍ତଘଳ, କାଇବସାର ଡିମ୍ବ

**କୁର୍‌କୁଡିହେବା** - *ସ:* (କ୍ରି.) : ଖୋଜିବା

**କୁର୍‌କୁରେଇବା** - *ସ:* (କ୍ରି.) : ଶୀତରେ ଥରିଯିବା

**କୁର୍‌ଡା** - *ଦେ:କଳା:* (ବି.) : ବେତ, ଛାଟ, କୋରଡା, କୋରୋଡ଼ା

**କୁର୍‌ବୁରା** - *ଝା:* (କ୍ରି.) : ମନେମନେ ଉଚ୍ଚାରଣ

**କୁର୍‌ମା** - *ଦେ:ସ:* (ବି.) : ଛୋଟ କୁଡ଼ିଆଘର, ପାଳରେ ତିଆରି ଛୋଟିଆ ଘର

**କୁର୍‌ରା** - *ନୂ:ସୁବ:* (ବି.) : ମୃଗଣୀ, କୁତ୍ରା

**କୁର୍‌ରୀ** - *ସୁବ:* (ବି.) : ପକ୍ଷୀବିଶେଷ। ଏହା ଯୁଦ୍ଧପ୍ରିୟ। ଯୁଦ୍ଧ କରି ମଲାବେଳେ ମଧୁର ସ୍ୱର କରେ

**କୁର୍‌ହା** - *ନୂ:* (ବି°.) : କଥା କଥାରେ ବିରକ୍ତି ଭାବ ପ୍ରକାଶ କରୁଥିବା ବ୍ୟକ୍ତି

**କୁଲ୍‌କୁଲା** - *ୁ:ସ:ଦେ:* (ବି.) : କଳା ରଙ୍ଗର ପାଣିପୋକ, ସମ୍ପୂର୍ଣ୍ଣ ଭାବରେ, କାମୁଡ଼ିବା

**କୁଲ୍‌କୁଲିଆ** - *ଦେ:* (ବି°.) : ଡଉଲଡାଉଳ

**କୁଲ୍‌ଡା** - *କଳା:କୋ:ବ:* (ବି.) : କଟାଧାନ ବୋହି ନେଇ ସାରିବା ପରେ ବିଲରେ ଛାଡ଼ି ହୋଇଯାଇଥିବା ଧାନ କେଣ୍ଡା, ଜମିରୁ ଅମଳ ପାଇଁ ଧାନ ଉଠାଇ ନିଆ ଯିବାପରେ ଇତଃସ୍ତତଃ ପଡ଼ଇଥିବା ଧାନକେଣ୍ଡାର ଅଂଶ ବିଶେଷ

**କୁଲ୍‌ଥ** - *ବୌ:କଳା:* (ବି.) : ଏକ ଡାଲି ଜାତୀୟ ଫସଲ (ଗାଈ ଖାଦ୍ୟ ରୂପେ ମଧ୍ୟ ବ୍ୟବହୃତ)

**କୁଲ୍‌ଥିଆ** - *କଳା:* (ବି.) : କୋଳଥିଆ ଜାତି, ଗୁଳ୍ମବିଶେଷ

**କୁଲ୍‌ବର** - *ବା:* (ବି.) : ମାର୍କୁଣ୍ଡି

**କୁଲ୍‌ମୋଟ** - *ଦେ:* (ବି.) : ଗାଏମୋଟ

**କୁଲଭଟ** - *ରା:* (ବି.) : ପାଣି ଯିବାର ସିମେଣ୍ଟ ରାସ୍ତା, କଲଭର୍ଟ

**କୁଲା** - *ଅନେ:* (ବି.) : ଯେଉଁଥିରେ ଧାନ ଚାଉଳ ଆଦି ପାଛୁଡ଼ା ଯାଏ, ବାଉଁଶ ପାତିଆରେ ନିର୍ମିତ ପାଛୁଡିବା ଉପକରଣ, କୁଲା, ସୂର୍ପ, କୋଲା (Piece)

**କୁଲାଇ** - *ଗଦ୍ୟ:* (ବି.) : ଠେକୁଆ

**କୁଲାରୁ** - *ରା:* (ବି.) : ଧାନ ପାଛୋଡ଼ିବା ବାଉଁଶ ପାତିଆ

**କୁଲିଆ (କୁଲିଆ)** - *କୋ:କଳା:ନବ:* (ବି.) : ବିଲୁଆ, ଶୃଗାଳ

**କୁଲିଖିଆ** - *କେ:* (ବି.) : କଣ୍ଟାଗଛ (ବିଲରେ ଉଠିଥାଏ)

**କୁଲୀ** - *ସ°:* (ବି.) : ମୂଲିଆ

**କୁଲୁକୁଲୁ** - *ରା:* (ବି.) : ଚଙ୍ଗ ଚଙ୍ଗ ହେବା

**କୁଲୁକ୍ସୁ** - *ଛେ:* (ବି.) : ମୁରୁଜ

**କୁଲୁପ** - *ବା:ମ:* (ବି.) : ତାଲା

**କୁଲୁରି** - *ଭ:* (ବି.) : ଛଣ ଗଦା ଉପରେ ଦିଆଯିବା ଛପର

**କୁଲେ** - *କଳା:* (ବି.ବି°.) : କୋଲରେ, କୁଲାଏ ପରିମାଣ

**କୁଲେଇ ଭୁଗେଇ** - *ଗ:* (ବି.) : ପିଲାଙ୍କ ଖେଳନା କୁଲା ଏବଂ ଚାଙ୍ଗୁଡ଼ା

**କୁଲେର୍** - *ସୁବ:ନୂ:* (ବି.) : କଞ୍ଚନ ଗଛ। ଏହାର କଢିକୁ ତରକାରୀ କରି ଖିଆଯାଏ

**କୁଳ** - *କୋ:ଜ:ରା:* (ବି.) : ଷଣ୍ଢା, ଭିତରର ଭାଗ, କୋଳା, ଜାତି, ପିଆଜ ରସୁଣର ଫୁଲ

**କୁଳହି** - *ମ:* (ବି.) : କୁହୁଡ଼ି

**କୁଳଖେଡ଼ିଆ** - *ଗ:* (ବି.) : ଜାତିରୁ ବାସନ୍ଦ ହେବା

**କୁଳଦୀପ** - *ଗ:* (ବି.) : ଜାତିଆଣ ସଭାରେ ଜଳୁଥିବା ଧର୍ମଦୀପ

**କୁଳମାଳ** - *ଗ:* (ବି.) : ଗାଁ ଗଣ୍ଡା

**କୁଳାଇବା** - *ପଦ୍ୟ:ଖୋ:* (କ୍ରି.) : ପର୍ଯ୍ୟାପ୍ତହେବା, ଅଣ୍ଟିବା, ପୋଷେଇବା

**କୁଳିନ** - *ଢ:* (ବିଂ.) : ସମ୍ଭ୍ରାନ୍ତ

**କୁଳୁକୁଳା** - *ଗ:* (ବିଂ.) ଆମ୍ବ ପଣସ ଅତ୍ୟଧିକ ପାଚିଯିବା

**କୁଳୁଚି** - *କେନ୍ଦୁ:ନ:ପଦ୍ୟ:* (ବି.) : ଗାଈର ଖାଦ୍ୟ, କୁଣ୍ଡା, ପିଡ଼ିଆକୁ ପାଣିରେ ସିଝାଇ କୁଳୁଚି ରନ୍ଧାଯାଏ, ଗୋରୁ ଖାଇବାପାଇଁ ଚଣା, ଅଣିଚଣା, ଧାନ ଦରକୁଟା କରି ଏକତ୍ର ସିଝା ଦ୍ରବ୍ୟ

**କୁଳୁମୁହୁଳି** - *ଅ:* (ବିଂ.) : ଅତି ଉଛନ୍ନ

**କୁଶ** - *ଦେ:ରା:କୋ:ପଦ୍ୟ:* (ବି.) ଘାସ ଜାତୀୟ ପବିତ୍ର ଗଛ, ଧର୍ମକାର୍ଯ୍ୟରେ ବ୍ୟବହୃତ, ପୂଜାଦିରେ ବ୍ୟବହୃତ ତୃଣ ବିଶେଷ, କୋଶ ଦୂରତ୍ୱ ସୂଚକ

**କୁଶ୍‌ନା** - *ଦେ:ଝା:* (ବି.) : ହାଣ୍ଡିଆ ମଦ

**କୁଶ୍‌ବଟୁ** - *ଦେ:ଗ:* (ବି.) : କୁଶଘାସ ବାନ୍ଧିବା, ଅଙ୍କ ପରି, କୁଶରେ ତିଆରି ଛନ୍ଦ ମୁଦ୍ରିକା

**କୁଶ୍‌ଲା** - *କଳା:* (ବି.) ପାହାଡ଼ିଆ ଅଂଚଳରେ ଖରିଫ ଋତୁରେ ଚାଷ ହେଉଥିବା ଏକ ପ୍ରକାର ଶସ୍ୟ ମାଣ୍ଡିଆ ରଂଗ ବିଶିଷ୍ଟ ଏହାର ଦାନା ଛୋଟଛୋଟ ହୋଇଥାଏ

**କୁଶ୍‌ଲୀ ଭାଷା** - *ସୁବ:* (ବି.) ପଶ୍ଚିମ ଓଡ଼ିଶାର ଭାଷା

**କୁଶପାତ୍ରୀ** - *ଗ:* (ବି.) ପୁରୋହିତଙ୍କ ବ୍ୟବହାର୍ଯ୍ୟ କୁଶ ପାତ୍ରୀ

**କୁଶବିଟାଳି** - *ଗ:* (ବି.) : ବାଲ୍ୟବିଧବା

**କୁଶମରା** - *ରା:* (ବିଂ.) : ଭଲ ଜିନିଷକୁ ଯେ ବାଦ ଦିଏ

**କୁଶାନବା** - *ଢ:* (ବି.) : ପିଲାପିଲି

**କୁଶାରି** - *କନ୍ଧ:ଦେ:ବର:* (ବି.) : ଆଖୁ

**କୁଶାଳୀ** - *ଗଦ୍ୟ:* (ବି.) : ଜହ୍ନି

**କୁଶେ** - *ସ:ଅ:* (ବି.) : ଏକ କୋଶ

**କୁଷା** - *କନ୍ଧ:ବା:ବୌ:* (ବି.) : ପଣସ ଖୋସା, କୋଷ, ପାଖୁଡ଼ା ପଣସକୁଷ, ରସୁଣ କୁଷ, ଅଣ୍ଡକୋଷ

**କୁଷ୍ଟା** - *ବର:ସୁବ:* (ବି.) : ଏକ ବୁଣାକାର ଜାତି, ରେଶମ କାମର ତନ୍ତୀ

**କୁଷ୍ଟିଆ** - *ଗ:* (ବି.) : କୁଷ୍ଠରୋଗୀ

**କୁସ୍‌କୁଟା** - *ନବ:କୋ:* (ବିଂ.) : ଅତିଲୋଭୀ, କଞ୍ଜୁସ୍, କୌଣସି ଜିନିଷ ଦାନ କରିବାରେ କୁଣ୍ଠିତ ହେବା

**କୁସ୍‌ମା** - *କଳା:ନୁ:ବୌ:* (ବି.) : ଶୁଂକଥିବା କଳା ରଂଗର ଦେଶୀଧାନ, ଏକ ପ୍ରକାର ଧାନ

**କୁସମି** - *ସ:* (ବି.) : ଶକ୍ତ କାଠ ଖମ୍ବ

**କୁସା** - *ବର:ରା:* (ବି.) : କୋଷା, ରେଶମ ପୋକର ବସା, କେଶ ବନ୍ଧନ

**କୁସି** - *ଭା:* (ବି.) : ଖୁସି, ଆନନ୍ଦ

**କୁସିପାଙ୍କା** - *କନ୍ଧ:* (ବି.) : ଚାବି

**କୁସୁଣ୍ଡା** - *ଯା:* (ବିଂ.) : ଦୁଃଖରେ ମଳିନ (ମୁହଁ)

**କୁସୁନା** - *ଅ:ସୁ:* (ବି.) : ହାଣ୍ଡିଆ ମଦ, ଚାଉଳୀ ମଦ

**କୁସୁମ୍** - *କଳା:ମା:ଦେ:* (ବି.) ପାଚିଲେ ହଳଦିଆ ଦେଖାଯାଉଥିବା ବରଫଳ ଆକୃତିର ଏକ ତୈଳବୀଜ ଜାତୀୟ ଫଳ ଏହାର ଅଗ୍ରଭାଗ ଗୋଜିଆ ଓ ଏହାକୁ ଖିଆଯାଏ ଏହାର ଗଛ ଅପେକ୍ଷାକୃତ ବଡ଼ ହୁଏ, ଏକ ପ୍ରକାର ଖଟା ଫଳ

**କୁସୁମ କୁଣ୍ଡା** - *ଖୋ:* (ବି.) : ଏକପ୍ରକାର ଧାନର ନାମ

**କୁସୁମା** - *ଗ:ଖୋ:ଦେ:* (ବି.) ଗଞ୍ଜେଇ ଭାଙ୍ଗର ପଣା, ଏକପ୍ରକାର ଧାନ, ଛୋଟଧାନ

**କୁସୁମାଧାନ** - *କେନ୍ଦୁ:* (ବି.) : ସ୍ୱଳ୍ପ ମିଆଦି ଶୁଙ୍କଯୁକ୍ତ ଧାନ

**କୁସୁରୁକନ୍ଦା** - *ଅନେ:* (ବି.) ଏକପ୍ରକାର ମଧୁର ମୂଳ

**କୁସୁଲି** - *ସୁ:* (ବି.) : ବଡ଼ ଡ଼ଙ୍ଗା

**କୁସେମି** - *ଦ:* (ବି) : ମାଟିଘର କାନ୍ଥ ଉପରେ ଲାଗୁଥିବା ମୋଟା କାଠପଟା

**କୁସେର୍** - *ଅନେ:* (ବି.) : ଆଖୁ

**କୁସ୍କୁଟିଆ** - *ସ:* (ବି.) : ଖଟାଳିଆ କଷା ସ୍ୱାଦ

**କୁହାକୁହି, କୁହାକୋହି** - *ଅନେ:* (ବି.) କଥାବାର୍ତ୍ତା, କଥାଭାଷା, ପରସ୍ପରକୁ କହିବା

**କୁହାଟ** - *ଅନେ:* (ବି.) : ହୁରି, ବଡ଼ପାଟି କରି ଡ଼ାକିବା, ଚିତ୍କାର, ବୀରତ୍ୱଭାବ ପ୍ରଦର୍ଶନ

**କୁହାପଚା** - *ସୁବ:* (ବିଂ.) : ପେଟରେ କଥା ଲୁଚାଇବା (ବ୍ୟକ୍ତି)

**କୁହାବୁଲା** - *ପଦ୍ମ:ସ:ଦେ:* (ବି.) ନାନାପ୍ରକାର କହିବା, ଅନୁନୟ, ବିନୟ, ସୁପାରିସ, କହିବୋଲି, ସୁପାରିଶ୍

**କୁହାମୁଣ୍ଡାକପିଳା** - *କ:* (ବିଂ.) : ଅନାବଶ୍ୟକ ଭାବେ ବେଶୀ କହିବା ଲୋକ

**କୁହାର** - *ପଦ୍ମ:* (ବି.) : ଗାଈ ରଖିବା ସ୍ଥାନ, ଗୁହାଳ, ଗୋଠ

**କୁହାଳିଆ** - *ଦେ:ପଦ୍ମ:କ:* (ବିଂ.ବି.) ବଡ଼କୁହା, ଯେ ବେଶି କଥା କହିପାରେ, କହିବା ଲୋକ, ବେଶି ଗପୁଥିବା ଲୋକ

**କୁହାଁ** - *ଦେ:* (ବିଂ.) : ପଚାସଢ଼ା

**କୁହାଁପେଟିଆ** - *ବୌ:* (ବି.) : ଦୁର୍ଗନ୍ଧ ବାୟୁ ଛାଡୁଥିବା ଲୋକ

**କୁହାଁର** - *ଗ:* (ବି.) : ଗାଈଗୋଠ

**କୁହି** - *କନ୍ଧ:* (ବି.) : ଚାବି

**କୁହିବା** - *ସୁ:କଳା:* (କ୍ରି.) : ସଢ଼ିବା, ପଚିଯିବା

**କୁହିବାର** - *ସ.ସୁବ.ନୁ.* (କ୍ରି.) : ସଢିଯିବା

**କୁହୁକ** - *ଅନେ.* (ବି.) : ଇନ୍ଦ୍ରଜାଲ, ମାୟା, ଛଳ, ଇନ୍ଦ୍ରଜାଲ, ଭୋଜବିଦ୍ୟା, ଭେଳିକି

**କୁହୁଚିଆ** - *ସୁ.* (ବି.) : କଜ୍ଜଳପାତି

**କୁହୁଡ଼ିଆ** - *ଅନେ.* (ବିଂ.) : କୁହୁଡ଼ି ଢଙ୍କା, କୁହୁଡ଼ିରେ ଆଚ୍ଛାଦିତ

**କୁହୁଣ୍ଡା** - *ଅ.କ.ଗ.* (ବି.) : ଦୁଆରବନ୍ଧରେ ଲାଗିଥିବା କଣ୍ଡା, କବାଟରେ ଲାଗିବାଲୁହା

**କୁହୁରବାର** - *ସୁବ.* (କ୍ରି.) : ଦେହର ଅସୁସ୍ଥତା ଲକ୍ଷଣ ପ୍ରକାଶିତ ହେବା

**କୁହୁରିବା** - *ବ.ଦେ.* (କ୍ରି.) : କଷ୍ଟ ଯୋଗୁଁ କୁନ୍ଥେଇ ହେବା, ବେଦନାସୂଚକ କୁନ୍ଥନ ଧ୍ୱନି କରିବା, ପଣସ ଗଛର ଫଳ ବାହାରିବା, ଜ୍ୱରରେ କମ୍ପିବା

**କୁହୁଲା** - *ଅନେ.* (ବି.) : କାଠ ଆଦି ଜାଳେଣି ଜଳିବା ସମୟରେ ବାହାରୁଥିବା ଧୂଆଁ

**କୁହୁଳାବଡ଼** - *ଗ.* (ବି.) : ନିଆଁଧରିବା ପାଇଁ ବ୍ୟବହୃତ ପାଳ ତିଆରି ବିଡ଼ା

**କୁହୁଁରିବା** - *କଳା.* (କ୍ରି.) : କୁନ୍ଥେଇବା, ଯନ୍ତ୍ରଣା ଜନିତ ହୁଁ ହୁଁ ଶବ୍ଦ କରିବା

**କୁହ୍ଲାଟି** - *କଳା.* (ବି.) : କୁମ୍ଭାଟୁଆ

**କୁହ୍ନିଆ** - *ଦେ.ବୌ.* (ବି.) : ବିଲୁଆ

**କୁହ୍ନିଆ କନ୍ଦା** - *କଳା.* (ବି.) : କନ୍ଦମୂଳ ଭଳି ଏକ ପ୍ରକାର କନ୍ଦା, ଏହାକୁ ମହୁଲ ରସରେ ପାଗି ବିକ୍ରୟ କରାଯାଏ

**କୁହ୍ନିଆ ଧାନ୍** - *ନୁ.* (ବି.) : ଏକ ପ୍ରକାର ଧାନ

**କୁଁବ୍‌ବାର** - *ସୁବ.* (କ୍ରି.) : ଖୋଞ୍ଚିବା, ଗାତରେ ସେହି ମାପକୁ ଚାହିଁ ଅନ୍ୟ ଜିନିଷ ପୂରେଇ ବନ୍ଦ କରିବା

**କୁଁଚପତ୍ର** - *ବା.* (ବି.) : ସାରୁପତ୍ର

**କୁଁଚି** - *ସୁ.ସୁବ.ସ.* (ବି.) : ଚାବି, ମହୁଲ ଗଛର କଢ ଗୁଚ୍ଛ

**କୁଁଡ଼ାବାଲ** - *ସୁବ.* (ବି.) : ଦେହର ଛୋଟ ସରୁ ସରୁ ଲୋମ

**କୁଁଢି** - *ସୁବ.* (ବି.) : ଖେଳନା, ରାନ୍ଧିବା ପାତ୍ର

**କୁଁଣାଭୁରି** - *ସ.* (ବି.) : ଭୁରି ଭୁରି ବର୍ଷା, କୁଣ୍ଡାଝଡ଼ା ବର୍ଷା

**କୁଁପି** - *ଅନେ.* (ବି.) : ଫୁଲଝରି ବାଣର ପାତ୍ର, ପଇସା ସଞ୍ଚୟ ପାଇଁ ମାଟିର ପାତ୍ର

**କୁଂକୁରିବା** - *ଖୋ.* (କ୍ରି.) : ଥରିବା, ଶୀତ ହେତୁ ଜାକିଜୁକି ହେବା

**କୁଂଚି ଦେବା** - *ବ.* (କ୍ରି.) : ଖୋଞ୍ଚିଦେବା

**କୁଂଢିବା** - *ବୌ.* (କ୍ରି.) : ଫସଲ କଟିଯାଇଥିବା ଧାନକ୍ଷେତରୁ ଖସି ପଡ଼ିଥିବା ଧାନ ଗୋଟାଇବା

**କୁଂଦା** - *ନୁ.* (ବିଂ.) : ମୂକ (ପୁରୁଷ)

**କୁଂପଟିଆ** - *କ.* (ବି.) : ଅଲେଖ ମହିମା ଧର୍ମାବଲମ୍ବୀ

**କୁଂପା** - *ରା.ରା.* (ବି.) : ପିଲାଙ୍କ ପଇସା ରଖା ମାଟି ପାତ୍ର, ବେଣି

**କୁଂପାନୀ** - *କଳା.* (ବି.) : କଂପାନୀ

**କୁଂପି** - *ଭ:ଗ:* (ବି.) : ଛୋଟ ଭାଣ୍ଡ, ବାଣବିଶେଷ

**କୁ'କାନି** - *କୋ:* (ଅ.) : କେଉଁପଟେ

**କୁଅଫନ୍ଦ** *କ:କେ:ଯା:* (ବି.) କୂଅର ଶୀର୍ଷଭାଗ

**କୂଅବିଲେଇ** - *ଦେ:ଗ:* (ବି.) : ଲୁହାରେ ତିଆରି କଣ୍ଟା, ଯନ୍ତ୍ର, କୂଅକଣ୍ଟା

**କୁଆକୁଚା** - *ଦେ:* (ବି.) : କଲବଲ

**କୁଚ** - *ପଦ୍ୟ:* (ବି.) : ସ୍ତନ

**କୁଜନ** - *ପଦ୍ୟ:* (ବି.) : କାକଳି

**କୁଟ୍କପଟ୍** - *ଅନେ:* (ବି.) : ଛଳନାପୂର୍ଣ୍ଣ

**କୁଟପାଞ୍ଚିବା** - *ଅନେ:* (କ୍ରି.) : ଷଡ଼ଯନ୍ତ୍ର କରିବା

**କୂଳଘାଇ** - *ଗ:* (ବି.) : ନଦୀବନ୍ଧ

**କୂଳମୂଳ** - *ଗ:* (ବି.) : ସବଂଶ

**କୃତାନ୍ତ** - *ସଂ:* (ବି.) : ଯମ

**କୃଥାନି** - *କନ୍ଧ:* (ବି.) : କାହାଣୀ

**କୃପଣ** - *ଅନେ:* (ବିଂ.) : ଲୋଭୀ

**କୃଷ୍ଣଚୂଡ଼ା** - *ଅନେ:* (ବି.) : ବୃକ୍ଷବିଶେଷ

**କୃଷ୍ଣପକ୍ଷ** - *ଅନେ:* (ବି.) : ଅନ୍ଧାର ପକ୍ଷ, ପୂର୍ଣ୍ଣମୀ ପରଠାରୁ ଅମାବାସ୍ୟାଯାଏ

**କୃଷ୍ଣବାସ** - *ଗଦ୍ୟ:* (ବି.) : ଅଶ୍ୱତଥ୍

**କେ** - *ଦେ:ମା:କଳା:ନୂ:* (ସ.ଅ.) : କିଏ, କୁ

**କେଇଟା** - *କେ:* (ବିଂ.) : କେତେ ଗୁଡ଼ିଏ, କେତୋଟି

**କେଇଟିଆ** - *ଚା:* (ବିଂ.) : କେତୋଟି

**କେଇଁ** - *କଳା:* (ସ.) : କାହିଁ, କେଉଁଆଡେ

**କେଉଟ** - *ଅନେ:* (ବି.) : ଯିଏ ଡଙ୍ଗାବାହେ, ମାଛ ଧରେ, ଜାତିବିଶେଷ

**କେଉଁଟିତରା** - *ସୁନ:* (ବି.) : ଶୁକ୍ର ଗ୍ରହ, ସନ୍ଧ୍ୟାତାରା

**କେଏଲି** - *କୋ:* (ବି.) : ମଉଜିଆ ବାର୍ତ୍ତାଳାପ

**କେଏଁ** - *କେନ୍ଦୁ:* (ଅ.) : କେଉଁ, କି

**କେଏଁଟା** - *କଳା:* (ଅ.) : କ'ଣ

**କେକ** - *କନ୍ଧ:* (ବି.) : କୋଇଲି

**କେକ୍ରା** - *କଳା:* (ବି.) : ଶାଖା

**କେଙ୍ଗଚା (ସୁତା)** - *ଚା:* (ବିଂ.) : ଅଦୁଆ (ସୂତା)

**କେଙ୍ଗଟା** - *ସୁ:* (ବିଂ.) : ବଙ୍କା

**କେଚ୍‌କେଚା** - *ବର:ସ:କଳା:କନ୍ଧ:* (ବି.ବିଂ.) : ମଇଳା, ଏପଟସେପଟ କରି ରଖିବା, ଅପରିଷ୍କାର, ଆବର୍ଜନା, ଚିକ୍କଣ

**କେଚ୍‌ରା** - *କଳା:ସୁ:* (ବି.) : ମଇଳା, ଗାଈ ବା ମଇଁଷି ଛୁଆ ଦେବାପରେ ପକାଉଥିବା ଫୁଲ

**କେଚରି** - *କନ୍ଧ:* (ବିଂ.) : ଅସୁନ୍ଦରୀ

**କେଚର୍‌ଲି** - *ସୁ:* (ବିଂ.) : ନିର୍ବୋଧ ସ୍ତ୍ରୀ

**କେଚେର କେଚେର୍** - *ସ:* (କ୍ରି.) : ବେଶୀ କଥା କହିବା, ପାଟିତୁଣ୍ଡ କରିବା

**କେଛୋ** - *କଳା:* (ବି.) : କଚ୍ଛପ, କଇଁଛ

**କେଛୋଗାଡ଼ି** - *କଳା:* (ବି.) : ଚାରିଚକିଆ କାର୍

**କେଜ୍ଞାନେ** - *କଳା:* (ଅ.) : କେଜାଣି

**କେଜି ତରାଜୁ** - *ସୁ:* (ବି.) : ଓଜନ ସାମଗ୍ରୀ

**କେଞ୍ଚ** - *ଗ:* (ବି.) : ପେଞ୍ଚ, ଅତିକଷ୍ଟ

**କେଞ୍ଚନା** - *ଭ:* (ବି.) : ଖୁଣ୍ଟା, ଖୋଞ୍ଚଣା

**କେଞ୍ଚରଖିବା** - *ଚ:* (କ୍ରି.) : ଜଟିଳତା ପୂର୍ବକ କାର୍ଯ୍ୟ କରିବା, ଜଟିଳତା ସୃଷ୍ଟି କରିବା

**କେଞ୍ଚା** - *ଗ:ପଦ୍ୟ:ରା:ଦେ:* (ବି.ବିଂ.) : କେଞ୍ଚିବାଦଣ୍ଡ, ତେଣ୍ଟା, ବରଛା, ମୁନିଆ, ଅସ୍ତ୍ର ଦ୍ୱାରା କେଞ୍ଚିବାର ଆଘାତ, ପୀଡ଼ା, ଦାଉ, ବିପଦ୍‌ପାତ୍, ଛୋଟା, ବର୍ଛା, ତେଣ୍ଡା

**କେଞ୍ଚୁଡ଼ି** - *ଅନେ:* (ବି.ବିଂ.) : କଷି, ଅପକ୍ୱ, ଅପରିଣତ, ଅକାଳପକ୍ୱ, ଅପ୍ରାପ୍ତ ବୟସ୍କ, କଞ୍ଚା

**କେଟ୍‌ଲି** - *ଅନେ:* (ବି.) 'ଚା' ରଖା ଯାଉଥିବା ସିଲ୍‌ଭର ପାତ୍ର

**କେଟା** - *ଗ:* (ବି.) : କାଟା, ଟଙ୍କା ବିଡ଼ା

**କେଟିଆ** - *ଚ:* (ବି.) : ଟୋକେଇ, ପାଛିଆ

**କେଠି** - *ଚ:* (ସ.) : କେଉଁଠି

**କେଡେ** - *ଅନେ:* (ସ.) କେତେ, ଆକାରବାଚକ ପ୍ରଶ୍ନବାଚୀ

**କେଡ଼ା** - *ସୁବ:କଳା:ସ:* (ବିଂ.ବି.) : ମାନସିକ ଅନଗ୍ରସର, ନିର୍ବୁଦ୍ଧିଆ, ଛୋଟପିଲା,ପୁଅ, ବୋକା

**କେଡ଼ି** - *ସୁବ:କଳା:ସ:* (ବିଂ.) : କେଡ଼ାର ସ୍ତ୍ରୀଲିଙ୍ଗ, ମୂର୍ଖ ସ୍ତ୍ରୀ

**କେଡ଼ିଆ** - *ଚ:* (ବି.) : ପୋକରା ଚାଉଳ

**କେଢ଼ୀ** - *କଳା:ରା:* (ବି.) : ଛୋଟ ଝିଅ, ଗୁଣ୍ଡା

**କେଢୁ ଲାକା** - *କନ୍ଧ:* (ବି.) : କେଢୁ ପର୍ବ

**କେଢାଏଁ** - *ଖୋ:* (ବିଂ.) : କେଡ଼େ, କେଡ଼େବଡ଼ ଆନୁମାନିକ ମାପ

**କେଣିକି** - *ଭ:* (ସ.) : କେଉଁଠିକି

**କେଣ୍ଡରି** - *ମ:* (ବି.) : ତେଲୁଣି ପୋକ

**କେଣ୍ଡା** - *ଅନେ:* (ବି.) : ପେଣ୍ଡା, ଧାନକେଣ୍ଡା, ଧାନ ଶୀଷା

**କେତ୍‌ନେଇ** - *ନୂ:* (ବିଂ.) : ବହୁତ

**କେତ୍‌ରା** - *ସୁବ:* (ବି.) : ପାଣି କାଦୁଅ ଯୋଗୁଁ ଗୋଡ଼ ଆଙ୍ଗୁଳି ସନ୍ଧିରେ ସଂକ୍ରମଣ ହେବା, କୋତରା, ଚିରୁଡ଼ା ଚିରୁଡ଼ା ହୋଇଥିବା ଅବସ୍ଥା

**କେତକୀ ଚଂପା** - *ଦେ:* (ବି.) : ମୁଚୁକୁନ୍ଦ ଫୁଲ

**କେତଲା** - *ମ:* (ବି.) : ଶାମୁକା

**କେତା ମାରୁ** - *ନୂ:* (ବିଂ.) : ଅତି ବୋକା

**କେତିକି** - *ରା:* (ସ.) : କେତେ ପରିମାଣ

**କେତୁଟା** - *ଅନେ:* (ସ.) : କେତେ ସଂଖ୍ୟକ

**କେତେଇବା** - *ଗ:* (କ୍ରି.) : ଓଟାରିବା ଭିଣିବା, ଚୁଟି ଘୋଷାରିବା

**କେତେ ପାଣି** - *ଚ:* (ସ.) : କେତେବର୍ଷ ବା ବୟସର ଗୋରୁ

**କେତେଲେ** - *କନ୍ଧ:* (ଅ.) : କେତେବେଳେ

**କେତ୍ରା** - *ସ:* (ବି.) : ପାଣିକନ୍ଦା

**କେଥିନି** - *ଦେ:* (ବିଂ.) : ବହୁତ

**କେନ** - *ଅନେ:* (ସ.ବି.) : କେଉଁ, କେଉଁଠାରେ

**କେନ୍‌କେ** *କଳା:ସ:କନ୍ଧ:କୋ:* (ସ.) କେଉଁଠାକୁ, କୁଆଡ଼େ, କୁଆଡ଼କୁ

**କେନ୍‌କେନ୍** *କଳା:ସ:* (ସ.) କିଏ କିଏ, କେଉଁକେଉଁ

**କେନ୍‌ଚେ** - *କଳା:* (ସ.) କାହିଁ, କେଉଁଠି

**କେନ୍ଙ୍କା** - *ସୁବ:* (ବି.) ଫୁଲ ଫଳର ଗୁଚ୍ଛ

**କେନ୍‌ଠାଙ୍ଗ୍** - *ମ:* (ସ.) କେଉଁଠିକୁ

**କେନ୍‌ଠାନୁ** - *କଳା:* (ସ.) କେଉଁଠାରୁ

**କେନ୍‌ଠେ** - *ମ:* (ସ.) କେଉଁଠି

**କେନ୍‌ତା** - *ସ:କଳା:* (ସ.) କେମିତି, କିପରି

**କେନ୍‌ଥିର ଲାଗି** - *କୌ:* (ସ.) କେଉଁଥିପାଇଁ କି

**କେନ୍‌ପତେ** - *କଳା:* (ସ.) କେଉଁ ପର୍ଯ୍ୟନ୍ତ

**କେନ୍‌ଫାଲ୍** - *କଳା:ନୂ:* (ସ.) କେଉଁଆଡ଼େ ଓ ଯେକୌଣସି ଆଡ଼କୁ, କେଣେ, କୁଆଡ଼େ

**କେନ୍‌ମନ୍‌କେ** - *ନୂ:* (ସ.) କେଉଁମାନଙ୍କୁ

**କେନ୍ ଲକେ** - *ନୂ:* (ସ.) କେଉଁଠାରେ

**କେନ୍‌ସି** - *କଳା:କନ୍ଧ:ସ:ନୂ:* (ସ.) କୌଣସି

**କେନ କେନ୍ତା** - *ସ:* (ସ.) କେଉଁଠି କେମିତି

**କେନଠାନେ** - *ସୁବ:ସୁ:* (ସ.) କେଉଁଠାରେ, କେଉଁ ଜାଗାରେ, କେଉଁଠି

**କେନତି** - *ସୁବ:* (ସ.) କେମିତି, କିପରି

**କେନ ଥିଁ** *ସୁବ:* (ସ.) କେଉଁଠି, କେଉଁଟାରେ

**କେନଥେଇ** - *ସୁବ:* (ସ.) କିପରି

**କେନନିକେ** - *କଳା:* (ସ.) କେଉଁଠାକୁ

**କେନନେ** *କଳା:* (ସ.) କେଉଁଠାରେ, କେଉଁଠି

**କେନର** - *ସୁବ:* (ସ.) କେଉଁ ସ୍ଥାନର

**କେନର୍ଟା** - *ସୁ:* (ସ.) କେଉଁଠିକାର

**କେନଲକେ** *କଳା:* (ସ.) କେଉଁଠାରେ, କେଉଁଠି, କେଉଁ ସ୍ଥାନରେ

**କେନା** *ଅନେ:* (ବି.) ଡାଳର ଦୋସନ୍ଧି, ଗଛ ଏବଂ କାଠଖମ୍ବର ଶାଖା, ଏକ ଶାଗ

**କେନାଲ୍** - *ଅନେ:* (ବି.) ଜଳ ପ୍ରବାହ ପାଇଁ ଖୋଳାଯାଇଥିବା ନାଳ

**କେନୁ** - *କନ୍ଧ:* (ସ.) କେଉଁଠୁ

**କେନେ** *ଅନେ:* (ସ.) କାହିଁକି କେଉଁଠାରେ, କେଉଁଆଡ଼େ, କୋଉଠି

**କେନେଡ଼େ** - *କନ୍ଧ:* (ସ.) କେଉଁଆଡ଼େ

**କେନେନିକେନେ** *କଳା:* (ସ.) କୁଆଡ଼େ ନାଇଁ କୁଆଡ଼େ

**କେନ୍ତରା** - *ଭ:* (ବି.) ଚିରାଚିରା

**କେନ୍ତା** *କନ୍ଧ:ସୁ:କୌ:ମା:* (ସ.) କେମିତି, କିପରି

**କେନ୍ତାକେନ୍ତା** - *ସ:* (ସ.) କେମିତି କେମିତି

**କେନ୍ତାରି** - *ଭ:* (କ୍ରି.) ଛିନ୍‌ଭିନ୍ କରି

**କେନ୍ତୁ, କେନ୍‌ଠାନୁ** - *ସୁ:* (ସ.) କେଉଁଠୁ

**କେଣ୍ଟେରେଇ ହେବା** *ଅ:* (କ୍ରି.) ଅସ୍ପଷ୍ଟ ଭାବରେ ଅସନ୍ତୋଷ ପ୍ରକାଶ କରିବା

**କେଣ୍ଟେହି** - *ସ:* (ସ.) : କେମିତି

**କେନ୍ଦରା** - *ନ:କେ:ଦେ:* (ବି.) : ଯୋଗୀମାନଙ୍କର ଏକ ବାଦ୍ୟ ଯନ୍ତ୍ର, ନାଥପନ୍ଥୀମାନେ ଏହାକୁ ବଜାଇ ଭିକ୍ଷା ମାଗନ୍ତି, ଗୋପୀ ପୁଅଙ୍କ ବୀଣା

**କେନ୍ଦରେଇବା** - *ଅ:* (କ୍ରି.) : ଖେଳରେ ଜିତିବା ପାଇଁ ଗୋଳେଇବା

**କେନ୍ଦାଳିବା** - *ଭ:କ:* (କ୍ରି.) : ଅନିଷ୍ଟ କରିବା, କ୍ଷତି କରିବା, ଘାଣ୍ଟି ପକାଇବା

**କେନ୍ଦୁ** - *ଗ:ମା:ଦେ:ନ:* (ବି.) : ମଧୁର ଫଳ ଯୁକ୍ତ ଜଙ୍ଗଲି ବୃକ୍ଷ, ବିଡ଼ି ତିଆରି ପାଇଁ ଏହାର ପତ୍ର ବ୍ୟବହାର ହୁଏ

**କେନ୍ଦୁଆ** - *ବା:ପଦ୍ୟ:ଗ:କେନ୍ଦୁ:* (ବି.) : ଚିତାବାଘ, ହେଟାବାଘ,

**କେନ୍ଦୁବାଡ଼ି** - *ଗ:* (ବି.) ପ୍ରେତ ବା ପିତୃଲୋକଙ୍କୁ ବିଦାୟ ଦେବାବେଳର ସହାୟକ ବାଡ଼ି

**କେନ୍ଦେରା** - *ଅନେ:* (ବି.) : ଯୋଗୀର ବାଦ୍ୟଯନ୍ତ୍ର

**କେପ୍‌ଚୋ** - *ଝ:* (ବିଂ.) : ଏକ ପ୍ରକାର ମୋଡ଼ି ହୋଇଥିବା

**କେପା** - *ନୂ:* (ବିଂ.) : ଗୋଡ଼ ବା ହାତ ବଙ୍କାଥିବା ବ୍ୟକ୍ତି, କେମ୍ପା

**କେବ୍‌କୁ** - *କୋ:ଗ:* (ସ.) : କେତେବେଳକୁ

**କେବ୍‌କେ** - *କନ୍ଧ:* (ସ.) : କେବେ, କେଉଁ ସମୟରେ କେବକୁ, କୋଉଦିନ, କେତେବେଳେ

**କେବ୍‌ଡ଼ି** - *ସ:* (ବି.) : ବୋକାଝିଅ

**କେବ୍‌ବା** - *ସ:* (ବି.) : ଚିମୁଟିବା

**କେବର** - *ରା:* (ଅ.) : କେଉଁ ସମୟର

**କେବଲା** - *ଯା:ଭ:* (ବିଂ.) ବାଉଳା, ଅସଜଡ଼ା, ବାରମ୍ବାର ପାଟିକରିବା ଲୋକ

**କେବା** - *ପଦ୍ୟ:* (ଅ.) : କିଏଅବା, କେଉଁ ବସ୍ତୁଅବା, କିବା

**କେବୁରୁ** - *କଝ:* (ସ.) : କେବେଠାରୁ

**କେବେ** - *ଅନେ:* (ସ.) : କେତେବେଳେ, କୌଣସି ସମୟରେ, କୌଣସି ସମୟରେ, ବହୁକାଳ ପରେ ବା ପୂର୍ବେ, ଅନିର୍ଦ୍ଦିଷ୍ଟ ସମୟରେ

**କେମନ୍ତ** - *ଅନେ:* (ଅ.) : କିପ୍ରକାର

**କେମ୍ପା** - *ଅନେ:* (ବିଂ.) : ବଙ୍କାହାତ, ହାତଗୋଡ଼ ବଙ୍କାଥିବା ବ୍ୟକ୍ତି

**କେମ୍ପୁ** - *ଗ:* (ବି.) : ଅସ୍ଥାୟୀ ବାସସ୍ଥାନ (କ୍ୟାମ୍ପ)

**କେମ୍ବରା** - *ଗ:* (ବି.) : କ୍ୟାମେରା, ଫଟୋ ଉଠାଇବା ଯନ୍ତ୍ର

**କେର୍‌କଟି** - *ନୂ:* (ବିଂ.) : ଅତି କମ ଉଚ୍ଚତା ବିଶିଷ୍ଟ ନାରୀ, ଖେଡୀ, ବାଙ୍ଗୁରୀ, ଅତି ଲୋଭୀ ସ୍ତ୍ରୀ

**କେର୍‌କମ୍** - *ବା:ମ:* (ଅ.) : କେମିତି, କିପରି, କେଉଁଭଳି

**କେର୍‌କାବର** - *ସୁବ:* (କ୍ରି.) : ପାଟିତୁଣ୍ଡ କରିବା

**କେର୍‌କେଟା** - *ଗ:* (ବି.) : ବାସନ କୁସନରେ ଶୃଙ୍ଖଳା ଅଇଁଠାର ଚିହ୍ନ

**କେର୍‌କେଡ଼ିନେବା** - *ବୌ:* (କ୍ରି.) : ଚାଣ୍ଠି ହୋଇଯିବା

**କେର୍‌ଖାଇବା** - *ବେ:* (କ୍ରି.) : ଜଙ୍ଘ ସନ୍ଧିରେ ଘା'ହେବା

**କେର୍‌ଚା** - *ସୁ:* (ବି.) : ଏକ ପ୍ରକାର କୀଳା

**କେର୍‌ଚି** - *ସ:* (ବିଂ.) : ସିଧା ନଚାଲି ପାଦ ଏପଟ ସେପଟରେ ପଡ଼ିବା

**କେର୍‌ପା** - *ବେ:ନୂ:* (ବିଂ.ବି.) : ଛେପ୍‌ଲା, ଗୋଡ଼ ଠିକ୍ ଭାବରେ ପଡୁନଥବା ବ୍ୟକ୍ତି

**କେରକେଟି** - *ସ:* (ବିଂ.) : ଅତିଲୋଭୀ(ସ୍ତ୍ରୀ)

**କେରକେଣ୍ଡା** - *ଅ:ବେ:* (ବି.) : ଏଣ୍ଡୁଅ

**କେରକେରା** - *ରା:* (ବିଂ.) : ଅତିଜୋର୍ (ମାଡ଼ ଦେବା)

**କେର ଖାଏବାର** - *ସୁବ:* (ବି.) : ପାଟିରେ ଜିଭ ଘା ବା ଓଠ କଡରେ ଘା ହେବା

**କେରଗେଲା** - *ବ:* (ବି.) : ବଳଦଗାଡ଼ିରେ ଉଭୟ ଚକ ମଝିରେ ଲାଗୁଥିବା ଏକ ଲଂବ ବାଡ଼ି

**କେରଙ୍ଗ** - *ଗଞ:ରା:* (ବି.) : ମଠା, ଘୋଡଣି, ଚାଦର

**କେରଙ୍ଗେଲା** - *ସୁବ:* (ବି.) : ଶଗଡ଼ର ଉପର ଦଣ୍ଡାରେ ଖଞ୍ଜା ଯାଇଥିବା ସରୁ କାଠ

**କେରଚେ** - *ସ:* (ବିଂ.) ଅଙ୍କାବଙ୍କା ହୋଇଥିବା ଶରୀର

**କେରଟ** - *କ:* (ବି.) : ତାଳ ବାହୁଙ୍ଗାର ତଳପଟ ଚୋପା, କୋରଟ

**କେରପାଲ** - *ଅନେ:* (ବି.) : ପତଳା ଅଖା, ଝୋଟରେ ତିଆରି ଛୋଟ ପାଲ

**କେରପିଗୁଡ଼ି** - *ସ:* (ବିଂ.) : ଯାହାର ଗୋଡ଼ ସିଧାସିଧା ପଡ଼େନାହିଁ

**କେରଫୁଲା** - *ଭ:* (ବିଂ.) : ଆପେ ଆପେ ବଡେଇ ଦେଖାଇବା ଲୋକ

**କେର ଫେଲିଆ** - *ବର:* (ବିଂ.) : ବଙ୍କେଇ ହୋଇ ଯାଉଥିବା

**କେରା** - *ବେ:ଖୋ:ସଂ:ସୁ:* (ବି.ବିଂ.) : ଘାସ ଓ ପତ୍ର ବନ୍ଧା ଗୁଚ୍ଛା, ସୂତା କେରା (ମୋଡାକ ଦଶ କେରା), ବେକାଏ; ଓଡ଼ିଆ ମିଶା ବଙ୍ଗଭାଷୀ (କେରା ବଙ୍ଗାଳୀ), ଗୁଚ୍ଛ

**କେରାଏ** - *ଢେ:ଖୋ:* (ବି.ବିଂ.) : କାକୁଡ଼ି, ଗୋଛେ, ଏକ ଆନୁମାନିକ ମାପ ହାତମୁଠାରେ ଯେତିକିହେବ

**କେରାକେରା** - *କଳା:ଗ:ସ:* (ବି.) ପେଛାପେଛା, ସୂତାର କେରା, ଖିଅ, ଗୋଛା ଗୋଛା

**କେରାଘିଁଡି** - *ବର:* (ବି.) : କେରାଣ୍ଡି ମାଛ ଧରିବାର ଉପକରଣ

**କେରାଣ୍ଡି** - *ଅନେ:* (ବି.) : କ୍ଷୁଦ୍ରମାଛ, ଏକ ପ୍ରକାର ମାଛ, ସଫରି ମାଛ

**କେରାପା** - *ନୂ:* (ବିଂ.) : ଛୋଟୀ

**କେରି** - *ଦେ:ସୁ:ପା:କଳା:* (ବି.) : ପତ୍ରକେରି, ଗୁଚ୍ଛ, ଘରର ଶେଣିକୁ ଖୁଣ୍ଟ ଉପରେ ରଖିବା ପାଇଁ କାଠ ତିଆରି ଠେସ

**କେରୁ** - *ଅ:* (ସ.) : କେବେଠାରୁ

**କେରୁଆ** - *ପଦ୍ମ:* (ବି.) : ସମୁଦ୍ର ମୁହାଣ ଅଞ୍ଚଳରେ ଉଠୁଥିବା ଗଛ

**କେରୁଆ ତୁଣ୍ଡା** - *ସୁବ:* (ବିଂ.) : କଳଘାଆ ତୁଣ୍ଡିଆ

**କେରୁଆଳ** - *ଅନେ:* (ବି.) : ଆହୁଲା

**କେରୁହାଁ** - *ନ:* (ବି.) : ଏକ ବୃକ୍ଷର ନାମ

**କେରେଇ ହେବା** - *ବୌ:* (କ୍ରି.) : କଡ଼େଇଯିବା, ଆଡ଼େଇ ହୋଇଯିବା

**କେରେ କେରେ** - *ବ:* (ବିଂ.) : ବିଡ଼ାଏ

**କେରେଣ୍ଟ ଖମ୍ବ** - *ଗ:* (ବି.) : ବିଜୁଳି ଖମ୍ବ, କରେଣ୍ଟ ବା ଇଲେକ୍ଟ୍ରି ଖୁଣ୍ଟ

**କେରେମ୍ବା** - *ରା:* (କ୍ରି.) : ଘେରିବା

**କେରୋକାଟୋ** - *କଳା:* (ବି.) : କୋଳାହଳ, ହୋଲୋହାଲ

**କେଲ୍ଠେଇ ଯିବା** - *ସ:* (କ୍ରି.) : ଶୀତରେ ଅଙ୍କା ବଙ୍କା ହୋଇଯିବା

**କେଲ୍ଲୋ** - *ବଲ:* (ବି.ବିଂ.) : ବୋକୀ

**କେଲ୍ହା** - *ସୁ:ସୁବ:* (ବିଂ.) : ଅକ୍ଷମ, ଭକୁଆ, ବୁଦ୍ଧିହୀନ

**କେଲା** - *ସୁବ:ମ:ନୁ:ଗ:* (ବି.) : କଦଳୀ, କାଲା ବଧିର

**କେଲାବାର** - *ସୁବ:* (କ୍ରି.) : ଲିଆ ବା ଖଇରୁ ଚଷ୍ଟ, ଧାନ ଖୋଳପା ସଫା କରିବା, ମାଂସ କାଟିବା

**କେଲି** - *ଅନେ:* (ବି.) : ପୁଆବାଡ଼ି କାଠି, କେଳି, କ୍ରୀଡ଼ା, ଦଳ, ସମୁହ, ଗୁଡ଼ ମୁଣ୍ଡା, ହାସ୍ୟ, ପିଲାବାଡି ଖେଳ, ଉପହାର

**କେଲିମାରିବା** - *ଗ:* (କ୍ରି.) : ଦଉଡ଼ି ପଳାଇବା

**କେଲୁଆ** - *ଗ:* (ବି.) : ଆଖୁ ପେଡ଼ିବା ଯନ୍ତ୍ର

**କେଲେଇ** - *କନ୍ଧ:* (ବି.) : ଦାଆ

**କେଲେଇବା** - *କଳା:କେନ୍ଦୁ:ଭ:* (କ୍ରି.) : କୁଲା ସାହାଯ୍ୟରେ ଏକ ବିଶେଷ ପାଛୋଡ଼ିବା ପ୍ରଣାଳୀ, ଖୋଲାକରି ଦେଖାଇବା

**କେଲେଙ୍କାରୀ** - *ସଂ:* (ବି.) : ନିନ୍ଦନୀୟ କାର୍ଯ୍ୟ ବିବାଦ, ଗୋଳମାଳ

**କେଳ** - *ରା:* (ବି.) : ନାଚ

**କେଳା** - *ଅନେ:* (ବି.) : ଏକ ଜାତିବିଶେଷ

**କେଳାବିଦ୍ୟା** - *ଗ:* (ବି.) : କେଳାମାନଙ୍କ ନାଚ

**କେଳି** - *ଇ:ଦେ:ଗ:* (ବି.) : କୌତୁକ, ରତି, ପରିହାସ, ଧାନ ବିହନରେ ମିଶିଥିବା ଅନ୍ୟ ବିହନ

**କେଳିଆ** - *ଗ:* (ବି.) : ଅନ୍ୟତ୍ର ତଡ଼ାଖାଇ ଆସିଥିବା ମାଙ୍କଡ଼, ପଶୁ ଇତ୍ୟାଦି

**କେଳେଇବା** - *ଅନେ:* (କ୍ରି.) : ସଫା କରିବା, ମାଛକାଟିବା, ବାଛିବା ଇତ୍ୟାଦି କାର୍ଯ୍ୟ,

ଛେଲିବା, କାଟି ଛୋଟଛୋଟ କରିବା, ମାଛର କାତି ସଫା କରିବା, ଶତ୍ରୁକୁ ତଡ଼ିବା, ବିରକ୍ତ କରିବା, ଭୂତାଣୁ ଡେଇଁବା

**କେଶଦରା** - *ଗଞ୍ଜ:ଗ:* (ବି.) : ଏକ ପ୍ରକାର ଗଛ, କେଶଦୁଦୁରା

**କେଶର** - *ମ:ଚୌ:* (ବି.) : ସାକରକନ୍ଦା, ମଂଜିର ମଝି ଅଂଶ (କଞ୍ଚା କେନ୍ଦୁ କେଶରକୁ ଭାତ ଭଳି ରନ୍ଧାଯାଏ, ଅଣ୍ଡାର ହଳଦିଆ ଭାଗ

**କେଶୁଆ** - *ସୁବ:* (ବିଂ.) ମାମଲାବାଜ ଲୋକ, କେଶ୍ ବା ମକଦ୍ଦମା ବାଜ୍

**କେସନ୍, କୈସନ** - *ମ:* (ସ.) : କିପରି ଭାବରେ

**କେସୁ** - *ଗ:କୋ:କନ୍ଧ:* (ବି.) : ମକଦ୍ଦମା, ଚଦର, ପାଛୁଡ଼ା, ଶରୀରକୁ ଢାଙ୍କି ରଖିବା ବସ୍ତ୍ର, କେସ୍(case)

**କେସୁର** - *ଦ୍ୱ:* (ବି.) : ଚିନିଆଳୁ

**କେହିଁ କେହିଁ ଧୁର୍** - *ନୁ:* (ବିଂ.) : ବହୁତ ଦୂର

**କେହେନ୍‌ସି** - *ସ:* (ସ.) : କୌଣସି

**କେହେନି** - *କଳା:* (ସ.) : କୌଣସି,କୋଉ

**କେହେନୀ** - *ନୁ:* (ବି.) : କାହାଣୀ

**କେଁ** - *କଳା:ନୁ:* (ସ.) : କି, ପ୍ରଶ୍ନସୂଚକ ଅବ୍ୟୟ, କାମରେ ବିଘ୍ନ ସୃଷ୍ଟି

**କେଁକ୍‌ଡ଼ା** - *ମ:* (ବି.) : କଙ୍କଡ଼ା

**କେଁକ୍‌ରା** - *ନୁ:* (ବି.) : କଙ୍କଡ଼ା

**କେଁକଟ** - *ମ:* (ବି.) : ଏଣ୍ଡୁଅ

**କେଁଚ** - *ସ:* (ବି.) : ଅଙ୍ଗୁଳିସନ୍ଧି

**କେଁଚ୍‌ବା** - *ସ:ଝା:* (କ୍ରି.) ଛେଚିବା, ଖୋଳିବା, ବଳ ପ୍ରୟୋଗ କରିବା, କେଞ୍ଚିବା, ଉଲଗୁଣା କଥା (ଆଳଙ୍କାରିକ ଅର୍ଥ)

**କେଁଚ୍‌ରା** - *ନୁ:* (ବିଂ) : ମଇଳା

**କେଁଚବାର** - *ସୁବ:* (କ୍ରି.) : ମାଟି ହାଣିବା, କଡା କଥା ଶୁଣାଇବା

**କେଁଚୁଆ** - *ଅନେ:* (ବି.) : ମାଟିରେ ରହୁଥିବା ଲମ୍ବ କୃମି କିଆ

**କେଁଛୋ** - *ସ:ସୁବ:* (ବି.) : କଇଁଛ

**କେଁଟୁଆ** - *ନବ:* (ବି.) : କିଆଁ

**କେଁଠକ୍** - *ଦ୍ୱ:* (ସ.) : କୁଆଡ଼େ

**କେଁନୁ** - *ସୁବ:* (ସ.) : କେଉଁ ସ୍ଥାନରୁ କେଉଁଠୁ

**କେଁର୍‌ରାବାର** - *ସୁବ:* (କ୍ରି.) : ବାଇଗଣ ଆଦି ପରିବା ଭଲ ଭାବରେ ଚୂଲିରେ ନ ପୋଡିବା, କଇଁଥା ହେବା, ଭୀଷଣ ଶୀତରୁ ହାତ ପାଦ ଜଡ଼ ହେବା

**କେଂପୁଦ୍ଧୁ** - *ଚୌ:* (ବି.) : କେମ୍ପା

**କେ'ଡି** - *ଗଞ୍ଜ:* (ବିଂ.) : ଗୁଣ୍ଡା, ଦୁଷ୍ଟଲୋକ

**କୈକରନା** - *ସଂ:* (ବି.) : ବାନ୍ତି

**କୈଦୀ** - *ଅନେ:* (ବି.) : ବନ୍ଦୀ

**କୈବଲ୍ୟ କ୍ଷୁର** - *ଗ:* (ବି.) : ମେଳା ଯାତ୍ରାରେ ଅନ୍ନପ୍ରସାଦ ବଣ୍ଟନ

**କୈରୀ** - *ଗ:* (ବିଂ.) : ଗୋରୀ

**କୋଇ** - *ଗଦ୍ୟ:ଭ:* (ବି.ବିଂ.) : ପିତଳ ତରକାଇବା ଚୁଲା, ହାକୁଟି

**କୋଇଲି** - *ଦେ:ପୁ:କଣ୍ଠ:ଖୋ:* (ବି.) : କୋକିଳ, ଟାକୁଆ ଭିତର ମଞ୍ଜି, ଟାକୁଆ, ଏକ ପ୍ରକାର ପକ୍ଷୀ

**କୋଉ** - *ଅନେ:* (ସ.ବି.) : କି, କେଉଁ, କଉ ମାଛ

**କୋଏଲ୍** - *ଯୁ:* (ବି.) : ମନ୍ଦିର, କୋଇଲି

**କୋକ୍‌ଢେନ୍** - *କଳା:* (ବି.) କନ୍ଧ ସଂପ୍ରଦାୟର ଲୋକ ଦେବୀ ବିଶେଷ

**କୋକ୍‌ଲି** - *ପୁ:ଛ:ଗ:* (ବି.) : ଏକ ପ୍ରକାର ଛୋଟ ମାଛ, ସମୁଦ୍ରର ମାଛବିଶେଷ

**କୋକଲିଆ ପାଗ** - *ଗ:ପୁ:* (ବି.) : ମେଘୁଆ ପାଗ

**କୋକା** - *କଳା:* (ବି.) : କକେଇ, ପିତୃବ୍ୟ

**କୋକୀ** - *ଅ:* (ବି.) : କୋକି ଶିଆଳ

**କୋଚ** - *ଯା:* (ବି.) : ନିରୁପାୟ, ଅସହାୟ, ସଂକୁଚିତ

**କୋଚ୍‌କିବା** - *କେନ୍ଦୁ:* (କ୍ରି.) : ଗେଂଜିଦେବା

**କୋଚଟ** - *କ:ଗ:ଭ:* (ବିଂ.) : କୃପଣ, ଅଧିକ ମଇଳା

**କୋଚଟ** - *ଅ:* (ବିଂ) : କୃପଣ, ମଇଳା

**କୋଚଟିଆ** - *ଗ:* (ବିଂ.) ମଇଳା, ତେଲଚିକିଟା

**କୋଚା** - *କେ:ପଦ୍ୟ:* (କ୍ରି.ବି.) : ଢାକିହେବା, ରେଙ୍ଗା ବା ଖୁଚୁରା ବିକ୍ରି

**କୋଚିଆ** - *ଅନେ:* (ବି.) : ପଙ୍କରେ ରହୁଥିବ ଲାଲୁଆ ସାପ, ଏକ ପ୍ରକାର ବିଷହୀନ ସାପଜାତୀୟ ମାଛ

**କୋଚିକନ୍ଦା** - *କଳା:* (ବି.) : କୁଜିସାରୁ

**କୋଚିଲା** - *ଅନେ:* (ବି.) : ପିତା ଫଳର ବୃକ୍ଷବିଶେଷ

**କୋଟ** - *ଗଞ:* (ବି.) : ଦୁର୍ଗ

**କୋର୍ଟ** - *କଳା:* (ବି.) ନ୍ୟାୟାଳୟ ବିଚାରାଳୟ, ଉର୍ଦ୍ଧ୍ୱ ପୋଷାକ ବିଶେଷ

**କୋଟଲ** - *ନ:* (ବି.) : ଲତା ବିଶେଷ ଲମ୍ବା ଫଳ (ଲତା ବିଶେଷ)

**କୋଟା** - *ଦେ:ଢେ:ବା:* (ବି.) : ଭାଗ, ଜାଗା

**କୋଟିଆ** - *ଗଞ:* (ବି.) : ଶୁଦ୍ରଜାତି ବିଶେଷ

**କୋଟିବା** - *କଳା:* (କ୍ରି.) : ହାଣିବା

**କୋଠ** - *ଛ:ସଂ:ଦେ:* (ବି.) : ଏକତ୍ରିତ, ଏକାଠି, ସର୍ବସାଧାରଣ, ସଂପତ୍ତି, ଇଜମାଲି ଧନ

**କୋଠକୋଠିଆ** - *ନ:* (ବି.) : ଗ୍ରାମର ସମୂହ ଲୋକଙ୍କର କିମ୍ବା ପରିବାରର ସମସ୍ତଙ୍କର ଅଧିକ

**କୋଠଣେ** - *ଗ:* (ସ.) : କେଉଁଠାର, କେଉଁ ସ୍ଥାନର

**କୋଠପିଲା** - *ଗ:* (ବି.) : ଜାରଜ ସନ୍ତାନ

**କୋଠପୁଅ** - *ନ:* (ବି.) : ଗେଲବସରିଆ ପୁଅ, ଯାହାର କେହି ଭୁଲ ଦେଖନ୍ତି ନାହିଁ।

**କୋଠ ଭୋଗ** - *ଛ:ପୁ:* (ବି.) : ମହାପ୍ରସାଦ ଶୁଖିଲା ଭୋଗ

**କୋଠରି** - *ଅନେ:* (ବି.) : ବଖରା, ଘରର ଗୋଟିଏ ବଖରା

**କୋଠସମ୍ପତ୍ତି** - *ନ:* (ବି.) : ଗାଁ ଦିଅଁଙ୍କର ନାମରେ ଥିବା ଏବଂ ବହୁଲୋକଙ୍କ ସ୍ୱତ୍ୱ

**କୋଠି** - *ଦେ:ନ:* (ସ.ବି.) କେଉଁଠି, ମଦଭାଟି, ଥିବା ଏକ ପୂଜାସ୍ଥଳୀ, ଉଆସଘର, ବେଶ୍ୟାଳୟ, ଅମାର

**କୋଠିଆ** - *ଜ:ଜ:ଭ:* (ବିଂ.ବି.) : ଚାକର, ମୂଲିଆ, ବର୍ଷ ସାରା ଚାଷକାମ ଲାଗି ଚୁକ୍ତିଭୁକ୍ତ ମୂଲିଆ

**କୋଠିକାଟିବା** - *ଗ:* (କ୍ରି.) : ପୁରୋହିତ, ଗୁଣିଆ ଆଦିଙ୍କ ମଣ୍ଡଳ ସ୍ଥାପନ

**କୋଠେ** - *ଗ:* (ଅ.) : କେଉଁଠାରେ

**କୋଡ଼ ମାରିବା** - *ଅ:* (କ୍ରି.) : ମାଟି ହାଣିବା

**କୋଡା** - *କଳା:* (ବି.କ୍ରି.) : କୋରଡା, ଛାଟ, ଫସଲ କୋଡିବା, ଖୁସେଇବା

**କୋଡ଼** - *ଜ:* (ବି.) : କୋଡ଼ରେ, କୋଳ

**କୋଡ଼୍‌ଚୋ** - *କଳା:* (ଅ.) : କୌଣସି ଜିନିଷ ଭାଂଗିଯିବାର ଶବ୍ଦ

**କୋଡ଼କି** - *ମା:* (ବି.) : କୋଦାଳ

**କୋଡ଼ପୁଛା** - *ଗ:ଜ:ସଂ:ଦେ:* (ବିଂ.ବି..) : ଶେଷ ସନ୍ତାନ

**କୋଡ଼ବର** - *ଜ:* (ବି.) : ବର ସହିତ ଯାଉଥିବା ପିଲା, ମାର୍କୁଣ୍ଡି

**କୋଡ଼ମାଡ** - *ନ:ଯା:ଖୋ:* (ବି.କ୍ରି.) : ମାଟିଖୁସେଇବା, ହାଣି ହାଲ୍‌କା କରିବା, ତାଗିଦ୍, ମାନସିକ ଚାପ ପାଇଁ ଧମକ, ଗାଳିଗୁଲଜ କରିବା

**କୋଡ଼ମେଇଁ** - *ଗ:* (ବି.) : ବାଉଁଶ ଡୋଲି

**କୋଡ଼ା** - *କଳା:* (ବି.) : କୋରଡ଼ା

**କୋଡ଼ାଖୁସା** - *ଜ:* (ବି.) : ମାଟିକୁ ଗୁଣ୍ଡ କରିବା

**କୋଡ଼ି** - *ଅନେ:* (ବି.) : କୋଦାଳ, କୁଦାଳି, ମାଟିହଣା ଯନ୍ତ୍ର, ଲୌହଫଳାରେ କାଠ ବାଡ଼ି ଲାଗିଥାଏ, କୋଡ଼ିଏ ସଂଖ୍ୟା, ଲୁହାର କୋଡ଼ି

**କୋଡ଼ିଫଶା** - *ଦେ:* (ବି.) କୋଡ଼ିରେ ଠେସିବା

**କୋଡ଼ିବା** - *କଳା:ନ:କେ:* (କ୍ରି.) : ଫସଲ ଖୁସିବା, ମାଡ଼ଦେବା, ମାଟିକୁ କୋଡ଼ିରେ ହାଣିବା, ମାଟି ଖୋସେଇବା

**କୋଡ଼ିହେବା** - *ଅନେ:* (କ୍ରି.) ମୁଣ୍ଡବାଡ଼େଇବା, ବିକଳହେବା

**କୋଡ଼ୋ, ବେଡ଼ି** - *ସ:* (ବିଂ.) : ବୋକି

**କୋଢିଆ** - *ଅନେ:* (ବିଂ.) ଅଳସୁଆ, କର୍ମକରିବାକୁ ଯେ ପଛାଏ, ଅଳସୁଆ, କର୍ମକୁଣ୍ଠ, ପଙ୍ଗୁ, ଅଳସୁଆ

**କୋଢି ହାଣିବା** - *ସଂ:* (ବି.) : ଅନ୍ୟର କାର୍ଯ୍ୟ କରିବା, କୃଷି କାର୍ଯ୍ୟ କରିବା

**କୋଣିଆଁ** - *ଦେ:* (ବିଂ.) : କୋଣଯୁକ୍ତ

**କୋଣେଇଁ ଚାହିଁବା** - *ଦେ:* (କ୍ରି.) ବାଙ୍କଚାହାଣୀ

**କୋଣ୍ଡା** - *ମା:* (ବି.) : ପର୍ବତ

**କୋତ** - *କେ.ଇ.ଗ.* (ବି.) : ବଡ଼ ମାଠିଆ, ଚୁକ୍ତି ଅନୁଯାୟୀ କାର୍ଯ୍ୟ, ଶସ୍ୟ ରଖିବା ବଡ଼ମାଟିହାଣ୍ଡି

**କୋତରା** - *ଅନେ:* (ବିଂ.) : ମଳିଆ, ଅତି ମଇଳା (ବ୍ୟକ୍ତି), ଝାଳୁଆ, ଜୀର୍ଣ୍ଣବସ୍ତ୍ର, ବୟସାଧିକ ଦୁର୍ବଳତା

**କୋତି** - *ଗଞ:* (ବି.) : ମାଙ୍କଡ଼

**କୋଥଲ୍** - *ଦେ:* (ବିଂ.) : ଖାଣ୍ଟି ଅଳସୁଆ

**କୋଥଳି** - *ଅନେ:* (ବି.) : ପୂଜା ସାମଗ୍ରୀ ରଖିବା ମୁଣି, ପୂଜା ପେଡ଼ି, ବିଧା, କପଡ଼ା ତିଆରି ମୁଣି ବିଶେଷ

**କୋଦ** - *ଦେ:* (ବି.) : କୋଦୁଅ, ଘାସଜାତୀୟ ଶସ୍ୟ

**କୋଦମା** - *ସଂ:ଯା:* (ବି.ବିଂ.) ଘାଣ୍ଟ ତରକାରୀ, ସ୍ଥୂଳକାୟ, ମୋଟାସୋଟା

**କୋଦାଲ୍, କୋଦାଳ** - *ମା:କ:ଖୋ:* (ବି.) : କୋଦାଳ, ମାଟି ହାଣିବା ଯନ୍ତ୍ର, ଫାଉଡ଼ା, ମାଟିହଣା ଯନ୍ତ୍ର

**କୋଦାଳିବା** - *ନ:* (କ୍ରି.) : ପିଠିରେ ମାଡ଼ ମାରିବା

**କୋଦୁଅ** - *ଗଦ୍ୟ:ଅ:ଭ:କ:* (ବି.) : ବର୍ଷା ଦିନିଆ ଫସଲ, ଘାସ ବିଶେଷ,

**କୋନା** - *କେନ୍ଦୁ:ସୁ:* (ବି.) : ଡୋଳା, କୋଣ

**କୋନି** - *କଳ:* (ସ.) : କେଉଁ

**କୋପ୍** - *ସୁ:* (ବି.) : ଜଙ୍ଗଲ ଭିତରେ ସୂଚିତ ଏକଏକ ଅଞ୍ଚଳ

**କୋବଲାଇବା** - *ଅ:* (କ୍ରି.) : କୌଶଳରେ କଥା ଆଦାୟ କରିବା, ମୃଦୁ ଧମକ ସହ ପ୍ରଶ୍ନ

**କୋବଲାତି** - *କେ:* (ବି.) : ଆଦେଶ

**କୋବା** - *ଗଦ୍ୟ:ଗ:ପୁ:* (ବି.) : ପୋତା କାଠର ମୁନିଆଁ ଦଣ୍ଡ, ପ୍ରହାର, କୋବିବା, ବାଉଁଶ ଠେଙ୍ଗା, ଖୁଣ୍ଟି, କଡ଼ି ବରଗା ଛାତ ମଜବୁତ କରିବା ପାଇଁ କାଠର ଏକ ପିଟଣା

**କୋବାଳି** - *କ:* (ବି.) : ଚିତ୍କାର କରି ବାଳିବା

**କୋବେର** - *ସଂ:କ:* (ବି.) : ତେଲି, କୁବେର, ଧନପତି

**କୋମ୍ଚା** - *କଳା:* (ବିଂ.) : ବକ୍ର, ବଂକା

**କୋମା** - *ସଂ:* (ବିଂ.) : ଅଚେତ

**କୋମ୍ପାନୀ ବା କୁମ୍ପାନୀ** - *ଚ୍:* (ବି.) : ବ୍ରିଟିଶ୍ ସର୍କାର

**କୋୟା** - *ସଂ:* (ବି.) : କୋରାପୁଟ୍‌ରେ ରହୁଥିବା ଆଦିବାସୀ ସଂପ୍ରଦାୟ

**କୋରକ୍** - *ଦେ:* (ବି.) : ନିଲାମ୍ ପାଇଁ ବ୍ୟାଙ୍କ୍ୟାପ୍ତ ସମ୍ପତ୍ତି

**କୋରଙ୍ଗ** - *ଗଞ:* (ବି.) : ଘୋଡଣୀ

**କୋରଚ** - *ସଂ:* (ବି.) : ତାଳ, ନଡ଼ିଆ ବାହୁଙ୍ଗାର ପାଟିଆ

**କୋରଟିଆ** - *ସଂ:* (ବିଂ.ବି.) : ଚେମଡ଼ା, ଟାଣୁଆ, କୁଳା, କୋରଟ ସଜାଡୁଥିବା ଲୋକ

**କୋରଡ଼ିଆ** - *ଗ୍ରା:* (ବିଂ.) : ଗହୀର

**କୋରଣା** - *ଖୋ:କ:* (ବି.) : ନଡ଼ିଆକୁ ଗୁଣ୍ଡ ଗୁଣ୍ଡ କରିବା ଯନ୍ତ୍ର, କୋରି ବାହାର କରିବା ଯନ୍ତ୍ର, ନଡ଼ିଆ, ପାଣି କଖାରୁ ଆଦି କୋରିବା ଯନ୍ତ୍ର

**କୋରଧି ହେବା** - *ଖୋ:* (କ୍ରି.) : ଜୋରରେ କାନ୍ଦିବା

**କୋରମ୍** - *ଅନେ:* (ବି.) : ନିର୍ଦ୍ଦିଷ୍ଟ ସଂଖ୍ୟକ ଉପସ୍ଥିତି

**କୋରମେଇଁ** - *ପଦ୍ୟ:* (ବି.) : ଡୋଲି, ବାଉଁଶ ପାତରେ ନିର୍ମିତ ପାତ୍ର

**କୋରଲପଟା** - *ନ:* (ବି.) ମାଟି ବୋହିପାରୁଥିବା ଏକ ବଡ଼ ପଟା

**କୋରସ୍** - *ଅନେ:* (ବି.) : ସମବେତ ଗୀତ

**କୋରା** - *ଦେ:ପଦ୍ୟ:କ:* (ବି.) : କୋରା ହୋଇଥିବା ପଦାର୍ଥ, ନଡ଼ିଆ ଓ ଚିନିରେ ପ୍ରସ୍ତୁତ ଲଡୁ

**କୋରିବା** - *ନ:* (କ୍ରି.) : କୋରଣାରେ ନଡ଼ିଆ, ଲାଉ, ପାଣିକଖାରୁ ଛୋଟଖଣ୍ଡ କରିବା, ମାଡ଼ ମାରିବା

**କୋରୁଆ** - *ଅ:* (ବି.) : ନଡ଼ିଆ ରସ ଓ ଘିଅ ଇତ୍ୟାଦି ପ୍ରସ୍ତୁତବେଳେ ବାହାରିଥିବା ଖଦଡ଼ ଅଂଶ

**କୋରୋଡ଼ପତି** - *ସଂ:* (ବି.) : କୋଟିପତି

**କୋର୍କଟି** - *କ:* (ବି.) : ପାକସ୍ଥଳୀ

**କୋର୍ଟ ମାର୍ଶାଲ** - *ସଂ:* (ବି.) : ସାମରିକ ଅଦାଲତ

**କୋର୍ଟୁ** - *ଗଜ:* (ବି.) : ବିଚାରାଳୟ

**କୋର୍ଡା** - *ଦେ:* (ବି.) : ଚାବୁକ, ଛାଟ

**କୋର୍ଡ଼** - *ଦେ:* (ବି.) : ଗଛର ପୋଲା ଅଣ୍ଟି

**କୋର୍ଲି** - *ସଂ:* (ବି.) : ଚୋକେଇ

**କୋଲ୍ହ** - *ଦେ:* (ବି.) : ଆଦିବାସୀ ଜାତି ବିଶେଷ

**କୋଲପ** - *ଢେ:* (ବି.) : ତାଲା

**କୋଲବଲୀ** - *ଅ:* (ବି.) : ଯାଯାବର ଶ୍ରେଣୀର ସ୍ତ୍ରୀ

**କୋଲ ମାରିବା** - *ଅ:* (କ୍ରି.) : ଶୀତରେ ହାତପାଦ ଥଣ୍ଡା ହେବା

**କୋଲା** - *ମା:ଖୋ:ସଂ:* (ବିଂ.ବି.) : ଅତିଥଣ୍ଡା, ପାଖୁଡ଼ା, ଏକ ଏକ ଖଣ୍ଡ ବା ଫଳର ଅଂଶ

**କୋଲି** - *ଖୋ:ପଦ୍ୟ:* (ବି.) : ଛୋଟ ପିଆଜ, ଏକ ସଂପ୍ରଦାୟ

**କୋଲୁ** - *ଯା:* (ବି.) : ବଢେଇର କାଠରେ ନାଳ ଖୋଳାଯନ୍ତ

**କୋଳ** - *ଖୋ:ଦେ:* (ବି.) : ଅଙ୍କ, ପେଟ ଓ ଦୁଇ ଜଙ୍ଘର ମଝି

**କୋଳ ଖାଇଯିବା** - *ଅ:* (କ୍ରି.) : ଝିମ୍ ଝିମ୍ ହୋଇଯିବା

**କୋଳଥିଆ** - *ଅନେ:* (ବିଂ.ବି.) : ଏକପ୍ରକାର ବିଷାକ୍ତ ସାପ, ଡରକୁଳା, ଛେରୁଆ,

ଏକ ପ୍ରକାର ଲତା, ଏକ ଜାତି ଚଷା ବିଶେଷ, ମୋଟା ବୁଦ୍ଧିଆ

**କୋଳପୁଛା** - *ଗ.* (ବି.) : ମା'ର ଶେଷ ସନ୍ତାନ

**କୋଳାହଳ** - *କେ.* (ଅ.) : ବହୁଲୋକ ସମାବେଶର ଶବ୍ଦ

**କୋଳିଆମିଳି** - *ସଂ.* (ବିଂ.) : ଅଳ୍ପଖଟା

**କୋଳି(ଜାତି)** - *ଗ.* (ବି.) : ଗଞ୍ଜାମରେ ବାସ କରୁଥିବା ଏକ ଅନୁସୂଚିତ ଜାତି

**କୋଳିମଇ** - *ନ.* (ବି.) : ଏକ ବୃକ୍ଷର ନାମ

**କୋଳେଇ କାଖେଇ** - *ଦେ.* (ବି.) : ସ୍ନେହ ଆଦରକରି

**କୋଶ** - *ଢ.* (ବି.) ପ୍ରାୟ ୨କି.ମି.ର ପରିମାଣ ଦୂରତା ମାପକ

**କୋଶଳା** - *ଦେ.* (ବି.) : ଏକପ୍ରକାର ଶାଗ

**କୋଷ** - *ଦେ.ଖୋ.* (ବି.) : ଜରାୟୁ, ଭଣ୍ଡାର, ଧନ

**କୋଷପାନ** - *ସଂ.* (ବି.) : ପ୍ରାଚୀନ କାଳରେ ଅଭିଯୁକ୍ତ ବ୍ୟକ୍ତିର ପରୀକ୍ଷା ବିଧିବିଶେଷ

**କୋଷବିକାର** - *ଗ.* (ବି.) ଅଣ୍ଡକୋଷ ରୋଗ

**କୋଷା ପୋକ** - *ଦେ.* (ବି.) : ଟସର, ଏଣ୍ଡିପୋକ

**କୋଷ୍ଠି** - *ଖୋ.* (ବି.) : ଜାତକ

**କୋସ** - *ଝା.* (ବି.) : ଦୂରତା ମାପ ପାଇଁ ବ୍ୟବହାର ହେଉଥିବା ଏକକ, କ୍ରୋଶ

**କୋହ** - *ଦେ.ଢ.* (ବି.) : ବିକଳ, କାନ୍ଦଣା, ଦୁଃଖପୂର୍ଣ୍ଣ ବ୍ୟାକୁଳ ହୃଦୟର ବେଦନା

**କୋହଲା** - *ନ.ଯା.ଭ.* (ବିଂ.) : ମେଘୁଆ, ଥଣ୍ଡା ଓ ମେଘୁଆ ପାଗ

**କୋହଳ** - *ଅନେ.* (ବିଂ.) : ନରମ, ହାଲୁକା, ହୁଗୁଳା

**କୋହୁଣିଆ** - *ଭ.* (ବିଂ.) : ମାଢୁଆ

**କୋହୋଂଗୋ** - *କଳା.* (ବିଂ.) : ବକ୍ର, ନଇଁ ନଇଁ

**କୋହ୍ଳ** - *କ.* (ବି.) : ଆଦିବାସୀ ଜାତିବିଶେଷ

**କୋହ୍ଳମାରିବା** - *ଭ.* (କ୍ରି.) : ଥର ଉଠେଇବା

**କୋହ୍ଳା** - *ଭ.* (ବି.) : ଜଙ୍ଘସନ୍ଧି

**କୋଂପାନୀ, କୁଂପାନୀ** - *ଦେ.ପୁ.* (ବି.) : ବଣିକଶ୍ରେଣୀ, ଶ୍ରଦ୍ଧା ସମ୍ବୋଧନ (ପୁରୀ ସହର)

**କୋ'ଢି** - *ଗଢ.* (ବି.) : ମାଙ୍କଡ

**କୌତୁକ ସୂତ୍ର** - *ଯା.* (ବି.) ବିବାହ ସମୟରେ ହାତରେ ବନ୍ଧା ହୁଏ

**କୌପୁନୀ** - *ଅନେ.* (ବି.) : କାଛଟା

**କୌଳିକ** - *ଅନେ.* (ବି.) : ବଂଶାନୁଗତ

**କଁଏରା ଆଏଖ୍** - *ସ.* (ବିଂ.) : କହରା ଆଖି

**କଁକଡୋ** - *ବର.ସ.* (ବି.) : କାଙ୍କଡ଼

**କଁକରା ବେଛୁ** - *ସ.* (ବି.) : କଙ୍କଡ଼ା ବିଛା

**କଁକରୋ** - *ସୁବ.* (ବି.) : କାଙ୍କଡ, ଏକ ବନ୍ୟ ପରିବା, ଚାଷ ମଧ୍ୟ ହୁଏ

**କଁଖରୀ** - *ନୁ.* (ବି.) : କାକୁଡ଼ି

**କଁ ଚା ଗାଏ କାଢ଼ିବା** - *ସ:* (କ୍ରି.) : ଅଶ୍ଳୀଳ ଭାଷା କହିବା

**କଁ ଟ** - *ସ:ସୁବ:* (ବି.) : ମାପ, ମାପିବା, କଣ୍ଟିବା, ସମୟସୀମା, ସର୍ତ୍ତ

**କଁଟା** - *ସ:ଗ୍ରା:ଦେ:* (ବି.) : ପୋଖରୀ, ଏକ ପାର୍ଶ୍ୱରେ ବନ୍ଧଥିବା ଏକ ଜଳାଶୟ, ପାଣି ବୋହୁଥିବା ପୋଖରୀ

**କଁଟା ଭାଜି** - *ନୂ:* (ବି.) : କଣ୍ଟାଥିବା ଏକ ଶାଗ

**କଁଟି** - *ସୁ:ସୁବ:* (ବି.) : କଟା ଧାନ ବାନ୍ଧିବା ପାଲ ରଶି, ଲଙ୍ଗଳକୁ ହାତରେ ଧରିବା ପାଇଁ ଥିବା ବଙ୍କା ମୁଠି

**କଁଟିଆ** - *ସୁ:ସ:ସୁବ:* (ବି.) : ଟେଙ୍ଗଣି ମାଛ, ଗଣ୍ଡାଥିବା ମାଛ, କଙ୍କଡା ବିଛା

**କଁଟିବା** - *ନୂ:* (କ୍ରି.) : ମାପ କରିବା, ମାପିବା

**କଁଟିହେବା** - *ସ:* (କ୍ରି.) : ସମକକ୍ଷ ହେବା

**କଁଟେ ମାପେ** - *ସ:* (ବି.) : ଠିକ୍ ମାପ ଅନୁସାରେ

**କଁଠକେ** - *ମ:* (ସ.) : କେଉଁଠାକୁ

**କଁଠା** - *ଚ:ସୁବ:* (ବି.) : ଧାନର ଅଗରେ ଦାଗ, ବେକ

**କଁଠି** - *ଚଉ:* (ବି.) : ହାରର ଗୋଟିଏ ଦାନା

**କଁଠୋ କୁଇଲି** - *ସ:* (ବି.) : କଣ୍ଢେଇ କୋଳି ଫଳ

**କଁଥିଲି** - *ନୂ:* (ବି.) : ଛୋଟ କନ୍ଥା, ଛିଣ୍ଡା କନାରେ ତିଆରି ଶେଯ

**କଁପ୍** - *ଚ:* (ବି.) : ଗଡିଆରେ ଶୃଙ୍ଖଳା ଖଂଡଖଂଡ କାଦୁଅ ପଙ୍କ

**କଁପ୍ସି** - *ସ:* (କ୍ରି.) : ନୀରବ ରହିବା

**କଁପର** - *ସୁବ:* (ବି.) : କାଦୁଅ ବା ଶୁଖି ଟାଣ ହେଉଥିବା ଜମିରେ ବ୍ୟବହାର ହେଉଥିବା ମଇ

**କଁପର୍ ମାର୍‌ବା** - *ସ:* (କ୍ରି.) : ଜମିକୁ ସମାନ କରିବା

**କଁ ପୁ** - *ସ:ସୁ:କଳା:* (ବି.) : ଶିଉଳି, କାଦୁଅ, ପଙ୍କ, ପଂକ, ଦାଦୁଅ

**କଁବାଟେ** - *ମ:* (ସ.) : କେଉଁବାଟେ

**କଁବେଡ଼ି ଶାଗ** - *ସ:* (ବି.) : ଏକ ପ୍ରକାର ଶାଗ

**କଁଶି** - *ମା:* (ବି.) : ଘଷି

**କଁଷି ଧାଙ୍ଗରୀ** - *ସୁବ:* (ବିଂ.) : ଅଳ୍ପ ବୟସର ଯୁବତୀ

**କଁସା** - *ନୂ:ଚଉ:ମା:* (ବି.) : କଂସା, କଂସାରେ ତିଆରି ଏକପ୍ରକାର ପାତ୍ର

**କଁସି** - *ଗ୍ରା:* (ବିଂ.) : ଫଳର କଞ୍ଚା ଅବସ୍ଥା

**କଁହଲ୍(ଳ)** - *କଳା:* (ବିଂ.) : କୋମଳ, ନରମ

**କଂକଡ** - *ଢେ:* (ବି.) : ପାନିଆ

**କଂକରା** - *ରା:* (ବି.) : ଗୋଡ଼ି ଓ ବାଲିମିଶା ମାଟି

**କଂଗଣ** - *ଢେ:* (ବି.) : ଖଡୁ

**କଂଚାଖାଇ** - *ଅ:* (ବି.) : ଡାହାଣୀ ବିଶେଷ, ଫଳ କଞ୍ଚାହେଲେ ବି ସ୍ୱାଦିଷ୍ଟ

**କଂଚିକାଠି** - *କୋ:* (ବି.) : ନଡ଼ିଆ ପତ୍ରକାଠି, ଚାବିକାଠି

**କଂଢି** - *ନୂ:* (ବି.) : ଛୋଟ ହାଣ୍ଡି

**କଂଢ୍ରିବା** - *ନବ:* (କ୍ରି.) : ବୁଲିବା

**କଂତର** - *ସୁ:* (ବି.) : କଳନ୍ତର

**କଂସାଇ** - *ଦେ:ଢେ:ପଦ୍ୟ:* (ବି.) : ମାଂସ ବିକ୍ରୟ କାରୀ, ଜୀବହତ୍ୟାକାରି, ଯେ ପଶୁ ହତ୍ୟାକରି ମାଂସ ବିକ୍ରି କରେ

**କଂସାରି** - *ଜ:* (ବି.) : କଂସା ତିଆରି କରୁଥିବା ଜାତି

**କଂସାଳ** - *ଜ:* (ବି.) : କାଂସ୍ୟବାଦ୍ୟ

**କଂସେଇଲଇ** - *ଝୋ:* (ବି.) : ଏକପ୍ରକାର ଲଟା

**କ୍ୟାଢ଼େ** - *ଗ୍ୱ:* (ବି.) : କୁଆଡ଼କୁ, କୁଆଡ଼େ

**କ୍ରୟବିକ୍ରୟ** - *ଅନେ:* (ବି.) : କିଣାବିକା

**କ୍ରାଣ୍ଡି** - *କଣ:* (ବି.) : ବାଘ

**କ୍ରାପ୍‌କା** - *କଣ:* (କ୍ରି.) : କାଟିବା

**କ୍ରିଭ** - *କଣ:* (ବି.) : କାନ

**କ୍ରିୟାଧରିବା** - *ଗ:* (କ୍ରି.) : ମୃତବ୍ୟକ୍ତି ନିମନ୍ତେ ପ୍ରେତ କର୍ମ କରିବା

**କ୍ରୁସ୍ତୁ** - *କଣ:* (ବି.) : କୋଟ୍ରା

**କ୍ରୋଟ** - *ଢେ:* (ବି.) : କୋରଡ, ଖାଲ

**କ୍ୱଟଟ** - *ଅ:* (ବି.) : ଅଳି ଅଝଟ

**କ୍ୱାଡ଼ିକା** - *ଗ:* (ଅ.) : କେଉଁଆଡ଼ର

**କ'ଗଛ** - *କନ୍ଧ:* (ବି.) : ଖ'ଗଛ, ଅର୍ଜ୍ଜୁନ ଗଛ

# କ୍ଷ

**କ୍ଷଇରିବା** - *ଗ.* (କ୍ରି.) : ଖିଅର ହେବା

**କ୍ଷିରିକୋଳି** - *ନ.ଜ.* (ବି.) : ଏକ ବୃକ୍ଷର ଫଳ, କୋଳିବିଶେଷ

**କ୍ଷିରିସା** - *ଗ.* (ବି.) : ଖିର ଏବଂ ପରିବା ମିଶ୍ରିତ ମିଠାତରକାରି

**କ୍ଷୀର କାକୁଲା** - *ପଦ୍ମ.* (ବି.) : ଏକ ଔଷଧୀୟ ବୃକ୍ଷ

**କ୍ଷୀର ଝୁଣିବା** - *ସଂ.* (କ୍ରି.) : ଛୁଆ ମା'ଠାରୁ କ୍ଷୀର ଟାଣି ପିଇବା

**କ୍ଷୀରଦାନ୍ତ** - *ନ.* (ବି) : କ୍ଷୀର ଖାଉଥିବା ପିଲାର କଅଁଳିଆ ଦାନ୍ତ, ପ୍ରାଥମିକ ଦାନ୍ତ

**କ୍ଷୀରଦୋର ପାଟ** - *ଗ.* (ବି.) : ଧଳାରଙ୍ଗର ବ୍ରହ୍ମପୁରୀ ପାଟ

**କ୍ଷୁଦକୁଣ୍ଡା** - *ଗ.* (ବି.) : କୁଣ୍ଡା ଯୁକ୍ତ କ୍ଷୁଦ

**କ୍ଷେଟପାପଡ଼** - *ଗ.* (ବି.) : ଔଷଧୀୟ ଗୁଳ୍ମ

**କ୍ଷେଡା** - *ରା.* (ବି.) : ଓଲା

**କ୍ଷେଡିରୀଖଣ୍ଡା** - *ଗ.* (ବି.) : କଳିହୁଡ଼ି ସ୍ତ୍ରୀ

**କ୍ଷେଡିରୀ ଖୁମା** - *ଗ.* (ବି.) : ବିଜୟ ମନୋଭାବ ନେଇ ଚୁପ୍ ହୋଇବସିବା

**କ୍ଷେତୁ** - *ଯା.* (ବି.) : ଖଣ୍ଡାୟତ, କ୍ଷତ୍ରିୟ

**କ୍ଷେତ୍ର** - *ଜ.* (ବି.) : ଶ୍ରୀକ୍ଷେତ୍ର, ପୁରୀ, ନିତ୍ୟନୀଳାଚଳ ଧାମ, ତୀର୍ଥ ସ୍ଥାନ

**କ୍ଷେତ୍ରୀ** - *ଜ.* (ବି.) : ଖଣ୍ଡାୟତ

**କ୍ଷେପିଆ** - *ଗ.* (ବି.) : ଫିଙ୍ଗାଳିଆ

**କ୍ଷେପୀ** - *ବ.* (ବିଂ.) : ରାଗୀ, କ୍ରୋଧୀ

**କ୍ଷୌର ମୁଠି** - *ସଂ.* (ବି.) : ଭଣ୍ଡାରୀଙ୍କ କ୍ଷୁର ରଖିବାର ଚମଡା ମୁଣି

# ଖ

**ଖ** - *ସୁବ:* (କ୍ରି.ବି.) : ଖାଇବା ପାଇଁ କହିବା ଖାଅ

**ଖଅର** - *ରା:* (ବି°.) : ବଦରାଗୀ

**ଖଇ** - *ଅନେ:* (ବି.) : ଲିଆସାଥିରେ ଥିବା ଧାନର ଚୋପା, ଧାନରୁ ତିଆରି ଧଳା ରଙ୍ଗର ଭୁଜା, ଧାନ ଭାଜିଲେ ଖଇ ହୁଏ, ଗୁଲୁଜି, ଗଙ୍ଗେଇ ମକା ଭାଜିଲେ ଖଇ ହୁଏ, ଭଜା ଧାନର ଲିଆ

**ଖଇ ଏଭଡ଼ି** - *ଗ:* (ବି.) : ଅଜୀର୍ଣ୍ଣ

**ଖଇଖନା** - *ସୁ:ଚୌ:* (ବି°.ବି.) କୁତ୍ସିତ, ଇତଃସ୍ତତ ହୋଇଯିବା

**ଖଇଙ୍ଗା** - *ଖୋ:ଗ:ପଦ୍ୟ:* (ବି.) : ଖଙ୍ଗାମାଛ, ସମୁଦ୍ର ମାଛ, ଏକଜାତୀୟ ସାମୁଦ୍ରିକ ବଡ଼ଜାତି ମାଛ

**ଖଇଚଢ଼ା** - *ଅ:ନବ:ପଦ୍ୟ:* (ବି.) : ଦରଫୁଟା ଖଇ, ମୁଢ଼କା ଖଇ

**ଖଇଚଲା** - *ଅ:ପଦ୍ୟ:ଭ:ଦେ:* (ବି.) : ଭଜା ହୋଇଥିବା ଧାନରୁ ତଳେ ଧାନଚୋପା ଗଳିପଡ଼ିବାପାଇଁ ଖଡ଼ିକା ବା ବାଉଁଶ କାଠିରେ ବୁଣା ହୋଇଥିବା ଚାଲୁଣି, ଟଙ୍ଗା, ଖଇରୁ ଧାନକାଢିବା ଉପକରଣ ଲିଆକେଳା, ଲିଆ ଛଡ଼ା ବାଉଁଶ ତିଆରି ଚଲା

**ଖଇଚା** - *ଅନେ:* (ବି°.ବି.କ୍ରି.ବି°.) : ଏକ ପ୍ରକାର କାମକୁ ବାରମ୍ବାର କରିବାରେ ଖଇଚା ଲାଗେ, ବିରକ୍ତିକର, ଦୋଷ, କାର୍ଯ୍ୟରେ ଅବହେଳା, ଦୋଷରହିତ, ଭୁଲଭ୍ରାନ୍ତି ରହିତ, ଗୋଳମାଳ, ଖରାପ, ତ୍ରୁଟି

**ଖଇଞ୍ଚା** - *ଯା:* (ବି.) : ବାଉଁଶପାତିଆରେ ଖଇଞ୍ଚି ଭଳି ତିଆରି ହୋଇ ଜାଲରେ ଲଗାଯାଏ

**ଖଇଞ୍ଚି** - *ରା:ଦେ:ନ:* (ବି.) : ଖନିତି, ବାଉଁଶ କାଠିରେ ବୁଣା ହୋଇଥିବା ଚାଲୁଣି, ଟଙ୍ଗା, ଲିଆଛଡ଼ାଇବା ବାଉଁଶ ପାତ୍ର

**ଖଇତ୍** - *ସୁ:* (ବି°.) : ନୁକ୍‌ସାନ, କ୍ଷତି

**ଖଇଦେବା** - *ନ:* (କ୍ରି.) : ଖଇହାକୁଟି ହେବା

**ଖଇନି** - *ଅନେ:* (ବି.) : ଚୂନ ସଙ୍ଗେ ଦଳା ଯାଇଥିବା ଧୂଆଁପତ୍ର, ଦୋକତା, ଧୂଆଁପତ୍ରରୁ ତିଆରି ମାଦକ ଦ୍ରବ୍ୟ ବିଶେଷ,

**ଖଇର** - *ଅନେ:* (ବି.) : ଶୁଖିଯାଇଥିବା ଏକ ଗଛର ଅଠା ଯାହାକୁ ପାନ

ମସଲାରୂପେ ପାନରେ ଖିଆଯା, ପାନରେ ପଡୁଥିବା ଜିନିଷ, ଏକ ବୃକ୍ଷର ନାମ, ଖଦିର (ପାନରେ ଖିଆଯାଏ)

**ଖଇରଖୁଣ୍ଟି** - *ଗ.* (ବି.) : ମଜଭୁତ

**ଖଇରା** - *ଗ.ସୁ.ପଦ୍ୟ.* (ବି.ବିଂ.) : ଖଇର ଭଳି ରଙ୍ଗ, ଏକ ନୀଚ ଜାତିର ନାମ, ଧଳା ଓ କଳା ମିଶି, ପାଣ୍ଡୁର

**ଖଇରାତ** - *ଅନେ.* (ବି.ବିଂ.) : ପୁଣ୍ୟ ସକାଶେ ଚିରସ୍ଥାୟୀ ଦାନ, ନଷ୍ଟ, ଅକାତରେ ଖର୍ଚ୍ଚ, ଦାନ, ଏକକାଳୀନ ଓ ଚିରସ୍ଥାୟୀ ଦାନ, ପୁଣ୍ୟ କର୍ମ, ଖର୍ଚ୍ଚକରି ଦେବା

**ଖଇରି** - *ଦେ.ପଦ୍ୟ.* (ବି.) ସଫେଦ୍, ଗୋରୀ, ଚିଲ୍‌ରି, ବାଘ, ବର୍ଷାୟୁ ଶାକବିଶେଷ

**ଖଇରିଆ** - *ଦେ.ଗ୍ରା.ନ.* (ବିଂ.) : ନୁଖୁରା, କହରା, କଷରା, ପାନ, ଇଷତ କୁଙ୍କୁମ ବର୍ଣ୍ଣ

**ଖଇଁଚ** - *ଗ.* (ବି.) : ଖଇ ଚଲାଇବାର ଚାଲୁଣି

**ଖଇଁଚା** - *ଅ.* (ବି.) : ଅଧାପନ୍ତରିଆ

**ଖଇଁଛି** - *ଅ.ଭ.* (ବି.) : ଚାଲୁଣୀ, ବାଉଁଶ ପାତିଆରେ ତିଆରି ମାଛ ଧରା ଯନ୍ତ୍ର

**ଖଉ** - *ଗ୍ରା.* (ବି.) : ପଙ୍କ ଖାଉଥିବା ଜିନିଷ

**ଖଉରୁଣୀ** - *ନ.* (ବି.) : ଭଣ୍ଡାରୀ କ୍ଷୁର ମୁଠାରେ ଥିବା ନଖକଟା ଲୁହାପାତିଆ

**ଖଉଁ** - *କଳା.* (କ୍ରି.) : ଖାଉ, ଖାଇଥାଉ

**ଖଏଖେନା** - *ସୁବ.ସ.* (ବିଂ.ବି.) : ତେଲ ଆଦି ନ ମାଖି ନୁଖୁରା ଦେହ ହୋଇଥିବା, ଶୁଖିଲା ଦେଖାଯିବା

**ଖଏଢ଼କା** - *ସ.* (ବି.) : ବାଉଁଶର କାଠି, ଖଡ଼ିକା

**ଖଏଢେଁକାର୍** - *ସୁବ.* (ବି.) : ଆମ୍ବିଳା ହାକୁଟି

**ଖଏଣ୍** - *ନୂ.ଘା.* (ବି.) : କୂଳ, ନଦୀ ଆଦିର ତଟ, ଖଣ୍ଡି

**ଖଏତ୍** - *ନୂ.ସ.କଳା.* (ବିଂ.ବି.) : ବେକାର, ନଷ୍ଟହେବା, କ୍ଷତି

**ଖଏରାଆଁଖି** - *କଳା.* (ବିଂ.) : ଚିଲାଆାଖି

**ଖଏଁଡ୍** - *କଳା.* (ବି.) : ଖଣ୍ଡି, କୂଳ, ନଦୀତଟ

**ଖକ୍‌ଲେଇବା** - *କଳା.* (କ୍ରି.) : ଆସ୍ତେଆସ୍ତେ ପାକୁଳେଇବା

**ଖକ୍‌ଶା** - *ଦେ.* (ବି.) : ଗେର୍‌ଗେଣ୍ଠିଆ, ଗଣ୍ଠିଯୁକ୍ତ, ଅଚଷା

**ଖକ୍‌ସୋ** - *ସୁ.* (ବିଂ.) : ଫମ୍ପାଳିଆ

**ଖକଡ଼ା** - *ନ.* (ବି.) : ଏକ ବୃକ୍ଷର ନାମ, ଯା'ର ଫଳରେ ମାଛ ମରାଯାଏ

**ଖକର** - *ମ.* (ବି.ବିଂ.) : ପଚା

**ଖକରା** - *ଗ୍ରା.* (ବି.) : ବଳହୀନ ବ୍ୟକ୍ତି

**ଖକୁଆ** - *ନବ.* (ବିଂ.) : ଦୁଷ୍ଟ

**ଖଖରୋ** - *ସୁ.* (ବି.) : ଅତି ଅଦରକାରୀ

**ଖଖର୍‌ଲୋ** - *ସୁ.* (ବି.) : ଅତି ପାକଳ

**ଖଗ୍‌ଲା** - *ସ.କଳା.ସୁ.* (ବି.) : ବେକର ଚନ୍ଦ୍ରାକୃତି ଏକ ଅଳଙ୍କାର, ନାରୀ କଣ୍ଠର ଗୋଲାକାର ଅଳଙ୍କାର ବିଶେଷ

**ଖଗ୍‌ଲା ହାଡ଼** - *ବୌ:* (ବି.) : କାନ୍ଧ ହାଡ଼

**ଖଗ୍‌ସି (ଖପ୍‌ସି)** - *କଳା:ବ:* (ବି.) : ଗଡ଼ିଶା ମାଛ

**ଖଗ** - *ଗଦ୍ୟ:ଭା:ଗ:* (ବି.) : ପକ୍ଷୀ, ଗରୁଡ଼, ମୁଣ୍ଡ, ବଳିଆ, ଶାର୍ଦ୍ଦୁଳ ଜାତୀୟ ପ୍ରାଣୀ

**ଖଗତ୍** - *କଳା:* (ବି.) : ଅର୍ଜୁନ ଗଛ

**ଖଗଡ** - *ଦେ:* (ବି.) ଛଣ, କାଉଁଶି, କାଣ୍ଡଶରରେ ଘର କଲେ ସହଜରେ କୁଟୁରେ ନାହିଁ।

**ଖଗଚୁରା** - *ଭ:* (ବି.) : ଆଗୁଆ

**ଖଗରା** - *ଦେ:* (ବି.) : ଲକଛ ଗଛ, ଜେଉଠ

**ଖଗା** - *ଅନେ:* (ବିଂ.) : ବାମହାତି, ନିର୍ବୁଦ୍ଧିଆ, ବାଉଁଆ, ବାମ ହାତରେ ସବୁ କାର୍ଯ୍ୟ କରୁଥିବା, ବୋକା, ବ୍ୟକ୍ତିତ୍ୱହୀନ, ଯେଉଁ ଛାତ୍ର ଭଲଭାବେ ପଢାପଢି କରେ ନାହିଁ, ବୋକା, ମୂକ

**ଖଗାବଗା** - *ଅନେ:* (ବିଂ.) : ନୀଚ, ମନ୍ଦ, ନିକୃଷ୍ଟ, ଘୃଣିତ, ମୂର୍ଖ

**ଖଗିଲି** - *ଗ:* (ବି.) : ବାମହାତିଆ

**ଖଙ୍କା** - *ଦେ:* (ବିଂ.) : ଭୋକିଲା

**ଖଙ୍କାର** - *ଅନେ:* (ବି.) : କଫ, ଛେପ, କାଶରେ ପଡୁଥିବା କଫ

**ଖଙ୍କାଳିବା** - *ଭ:* (କ୍ରି.) : ଚାପି ହେବା

**ଖଙ୍ଗ** - *ଦେ:* (ବି.) : ଅଭିମାନ, ଭଲ କଥାକୁ ମନ୍ଦ ଅର୍ଥରେ ବୁଝିବା, କମିବା

**ଖଙ୍ଗବା** - *ବଉ:* (କ୍ରି.) : କମିବା

**ଖଙ୍ଗସ** - *ଗ:* (ବି.) : ସଂକୋଚବୋଧ

**ଖଙ୍ଗସିଆ** - *ଗଦ୍ୟ:* (ବିଂ.) : ଏକଶିଙ୍ଗା, ଟିଙ୍ଗା

**ଖଙ୍ଗାର** - *ନବ:କୋ:ମା:* (ବି.ବିଂ.) : ଚୋର, ତସ୍କର, ରାହାଜାନି, ଗୁଣ୍ଡାଗର୍ଦ୍ଦି, ଡ଼କାଏତ

**ଖଙ୍ଗେବଙ୍ଗେ** - *ସୁ:* (ବିଂ.) : କମ୍‌ବେଶି

**ଖଚ** - *ଅନେ:* (ବି.) : ମିଛ, ଚୁଗୁଲି କରିବା, ମିଛକୁ ସତ ପରି କହିବା, ପର ଛିଦ୍ର ବା ତ୍ରୁଟିକୁ ଉପରିକଙ୍କ ଆଗରେ କହିବା, (ବଣିଆ ବେପାରୀ)-କାମ,

**ଖଚ୍‌ଖଚିବା** - *କଳା:* (ବିଂ.) ପ୍ରଚୁର ପରିମାଣ, ବହୁତ, ଅଧିକ

**ଖଚଖଚିଆ** - *ଗ:* (ଅ.) : ବିଭ୍ରାଟ କରିବା

**ଖଚଡ଼** - *ଅନେ:* (ବିଂ.ବି.) : ବେଧୁଆ, ଦୁଷ୍ଟ, ଘୋଡ଼ା ଓ ଗଧ ସଂଗମରେ ଉତ୍ପନ୍ନ ଜୀବ, ଅଶ୍ୱତର, ଦୋମିଶା, ବଗୁଲିଆ, ଅତିଦୁଷ୍ଟ, ଛୋକାରିଆ, ଚଗଲାମି କରୁଥିବା ପିଲା, ବଗୁଲିଆ, ଛୋକାରିଆ

**ଖଚଲୋପାଏନ୍** - *ସ:* (ବି.) : ବେଶୀ ପାଣିଆ କରିବା

**ଖଚଲୋ** - *ସୁବ:* (ବିଂ.) : ଅତିଶୟ ବାଚକ, ଖଚ୍‌ଲୋ ବୁଢା

**ଖଚା** - *ନଚ:ସୁବ:* (ବି.) : କଚ୍ଛା, ଧୋତିର କଛା ଖୋଷଣି

**ଖଚୁ** - *କୋ:* (ବି.) : ଛୋଟ ଘା'

**ଖଚୁଆ** - *ଅନେ:* (ବି.ବିଂ.) : ଯେ ପ୍ରଭୁ ଆଗରେ ଭୃତ୍ୟର ନିନ୍ଦା କରେ, ମିଛୁଆ, ମିଛକହି କଳି ଲଗାଇବା (ବ୍ୟକ୍ତି), ଛିଦ୍ରକୁହା ଲୋକ

**ଖଚୁଆତାରା** - *ଅ:* (ବି.) : ପାହାନ୍ତିଆ ତାରା

**ଖଢ଼୍ଢ଼ୋ** - *ସ:* (ବି.) : ପାଣିଚିଆ

**ଖଜ୍ନି** - *ନୁ:* (ବି.) : ଖଞ୍ଜଣି

**ଖଜଣା** - *ପଦ୍ୟ:ସ:ଦେ:ଛ:* (ବି.) : ଭୂମି ରାଜସ୍ୱ, ରାଜକୀୟ ଶୁଳ୍କ, ଜମିର ଟିକସ, ମାଲଗୁଜାରୀ, ଭୂ.ରାଜସ୍ୱ, ଜମିକର

**ଖଜବଜ୍** - *ଦେ:* (ବି.) : ଅସ୍ଥିର

**ଖଜବଜିଆ** - *ପଦ୍ୟ:ନ:* (ବିଂ.) : ଅସ୍ଥିରମନା, ଅତି ଅସ୍ଥିର

**ଖଜରାମାଛ** - *କେନ୍ଦୁ:* (ବି.) : ଧଳା ରଙ୍ଗର ବଡ଼ ନଈ ମାଛ

**ଖଜରିଆ** - *ଦେ:ସୁବ:* (ବି.) : ତେନ୍ତୁଳିଆ ବିଛା, ଖଜୁରି ଗଛରୁ ଯେ ତାଡ଼ି ବାହାର କରେ, ଖଜୁରୀ ତାଡି ସଂଗ୍ରହ କରୁଥିବା ଜାତି ଓ ଲୋକ

**ଖଜା** - *ଅନେ:* (ବି.) : ମିଠେଇ, ଲଡୁ, ମୁଆଁ, ଡଙ୍କା, ଦର୍ବୀ, ଚଟୁ, ଅଣକ, ମିଷ୍ଟାନ୍ନ ବିଶେଷ, ଏକପ୍ରକାର ଖାଦ୍ୟ, ଗୁଡ଼ ତିଆରି ଛୋଟ ଛୋଟ ମିଷ୍ଟ ପଦାର୍ଥ, ପିଠାପଣା ଅନେକ ଦ୍ରବ୍ୟ

**ଖଜାକ** - *ପଦ୍ୟ:ଦେ:* (ବି.) : ପକ୍ଷୀ, ଚାମୁଚା

**ଖଜାଖିଆ** - *ପଦ୍ୟ:ଦେ:* (ବି.) : ଖଜା ବା ମିଠାଇ ଖାଇବା ନିମନ୍ତେ ଦିଆଯିବା ବକସିସ୍, ଯାତ୍ରା ଖରଚ, ବନ୍ଧୁ, ଚାକର, ମୂଲିଆ, ଛୋଟଛୁଆ ମାନଙ୍କ ଯାତ୍ରା, ପୁନିଅଁ ପର୍ବରେ ଦିଆଯାଏ ପଇସା।

**ଖଜାଚଣା** - *ଦେ:* (ବି.) : ଫଗୁଯାତ୍ରା ଦିନ ଖଜାଚଣା ଭୋଗ ହୁଏ ଠାକୁରଙ୍କ ପାଖରେ।

**ଖଜାମାଳ** - *କେନ୍ଦୁ:* (ବି.) : ଲାଲ ସୂତାରେ ବାହୁରେ ପିନ୍ଧିବା ରୂପାର ଅଳଙ୍କାର

**ଖଜୁରିଆ** - *ପୁ:ନ:ସୁ:* (ବି.) ଇଟାକୁ ସ୍ୱାଭାବିକ ଯେଉଁଭଳି ବସାଯାଏ ତାହା ନକରି ଠିଆ ବାଗରେ, ଇଟାକୁ ଆଡ଼ ପଟରେ ରଖି କାନ୍ଥ ଦେବା, ତାଡ଼ି, ତେନ୍ତୁଳିଆ ବିଛା

**ଖଜୁରୀ ତାଡି** - *ସଂ:* (ବି.) : ଖଜୁରୀ ମଦ

**ଖଜୁରେଇବା** - *ପଦ୍ୟ:* (କ୍ରି.) : ଖୁରୀ ଖାଇବା

**ଖଞ୍ଚ** - *ଚୌ:* (ବିଂ.) : ଅନ୍ୟର ଭୁଲ କହି ଚୁଗୁଲି କରିବା

**ଖଞ୍ଜ** - *ଅନେ:* (ବି.ବିଂ.କ୍ରି) : ବାଗ, କୌଶଳ, ଯୋଡ଼ିବା, ଯୋଗାଡକରିବା, ଲକ୍ଷ୍ୟକରି, ଛୋଟା, କପଟ, ବିକଳାଙ୍ଗ, ପଙ୍ଗୁ ଘରର ସୁବିଧା-ଅସୁବିଧା ବୁଝିବା,

ଖଞ୍ଜିବା, ପଙ୍ଗୁ, ଛୋଟା, ଲେଙ୍ଗଡ଼ା, ଉପାୟ, ଅବସର, ସୁବିଧା, ସୂତ୍ର, କୌଶଳ, ଗୋପନୀୟ ଉପାୟ, ଓର, ସଜିଲ, ଢଙ୍ଗ, ପ୍ରକାର, ଷଡଯନ୍ତ୍ର

**ଖଞ୍ଜଣି** - *ଦେ:ପଦ୍ୟ:ଖୋ:* (ବି.) : ଛୋଟ ଚାଙ୍ଗୁ ବାଦ୍ୟ, ଏକମୁହାଁ ଗୋଧିଚମରେ ଛୁଆଣି ମାଟି ବା କାଠର ବାଦ୍ୟଯନ୍ତ୍ର ସଜ୍ଜା, ଅଳଙ୍କରଣ, ଏକପ୍ରକାର ବାଦ୍ୟ ଯନ୍ତ୍ର

**ଖଞ୍ଜପଡ଼ିବା** - *ଗ୍ରା:* (ବି.) : ସୁବିଧା, ସୁଯୋଗ, ଯୋଗ

**ଖଞ୍ଜା** - *ଅନେ:* (ବି.) : ଅଗଣା, ନିଯୁକ୍ତ, ଯୋଡା ହୋଇଥିବା, ବର୍ଣ୍ଣାର୍ଦ୍ଧ ସମବୃତ୍ତ ମଧ୍ୟରୁ ଏକତମ ବୃତ, ଚତୁର୍ଦ୍ଦିଗ ଗୃହ ବା ପ୍ରାଚୀର ବେଷ୍ଟିତ ସ୍ଥାନ, ନିୟମିତ ବନ୍ଦୋବସ୍ତ, ଉତ୍ସର୍ଗ, ଯୋଡ଼ା, ସଂଯୋଗ, ଦୁଇ ବସ୍ତୁର ଏକତ୍ର ସଂଲଗ୍ନ ହୋଇଥିବା ସ୍ଥାନ, ଯୋଡ଼ମୁଣ୍ଡ, ସଜ୍ଜିତ ହୋଇଥିବା, ଯୋଡ଼ା ହୋଇଥିବା, ନିୟମିତ ରୂପେ, ଘର ଚାରିପାଖରେ ଥିବା ସ୍ଥାନ, ଅଣ୍ଟା ପାଖ ହାଡ଼ର ସନ୍ଧି, ସବୁ ଦିନିଆ ବ୍ୟବସ୍ଥା, ଆବଶ୍ୟକୀୟ ଦ୍ରବ୍ୟ, ଚାଳ କୁଡ଼ିଆର ନିବାସ ଗୃହ, ରାଜା ତଥା ସରକାରଙ୍କ ଠାରୁ ପ୍ରାପ୍ତ ଦୈନିକ ପାଉଣା, ବୃତ୍ତିଭୋଗ, ଗୁହାଳ, ନଡ଼ା ଚାଳତଳ, ଚାଳକୁ ଚାଳ ଯୋଡ଼ିବା ସ୍ଥାନ, ମାଗଣା ବିଲ ଚାଷକରି ଠାକୁରଙ୍କୁ ବିଭିନ୍ନ ପର୍ବରେ ଜିନିଷ ଯୋଗାଇବା

**ଖଞ୍ଜାକାଟ** - *ଗ୍ରା:* (ବି.) : ଦେବତା ସେବାପୂଜା ଏବଂ ପାରିଷଦ ବର୍ଗଙ୍କ ନିମନ୍ତେ ଦୈନିକ ଆର୍ଥିକ ବ୍ୟବସ୍ଥା

**ଖଞ୍ଜା ଖପା** - *ଦେ୍ୖ:* (ବି.) : ଥଇଥାନ, ଯୋଡ଼ାଯୋଡ଼ି, ଠିକ୍‌ଠାକ୍

**ଖଞ୍ଜାପାଡ଼** - *ଗ୍ରା:* (କ୍ରି.) : ବ୍ୟବସ୍ଥା କରିବା

**ଖଞ୍ଜାବାଡି** - *ଦେ:* (ବି.) : ଜମିବାଡ଼ି, ବୃତ୍ତି

**ଖଞ୍ଜା ବୁଞ୍ଜା** - *ସ:* (ବି.) : ପ୍ରସ୍ତୁତ ହେବା

**ଖଟ** - *ଦେ:ଖୋ:ଜ:ନ:* (ବି.) : ଶୋଇବା ପାଇଁ କାଠ ଓ ଦଉଡ଼ିରେ ଗୁନ୍ଥା ଶଯ୍ୟା, ଖଟିବା, ଦଉଡ଼ିଆଖଟ, ତକ୍ତପୋଷ, ଦଉଡ଼ିରେ, ବାଉଁଶପାତରେ, କେବଳ ପଟାରେ ତିଆରି ଖଟିଆ

**ଖଟ୍‌ଖଟା** - *ସୁ:* (ବି.) : ଲୁଗାବୁଣା ଯନ୍ତ୍ର

**ଖଟ୍‌ଖଟିଆ** - *କଳା:* (ବି.) : ଏକ ପ୍ରକାର ଲତା ଓ ଏହାର ଫଳ

**ଖଟ୍‌ବା** - *ସ:ସୁ:* (କ୍ରି.ବି.) : ଖଟିବା, ବିବାହିତ ଜୀବନ ବିତାଇବା

**ଖଟ୍‌ମଲ୍** - *ନୂ:ଦେ:* (ବି.) ଓଡ଼ଶ, ଛାରପୋକ

**ଖଟକା** - *ଖୋ:* (ବି.) : ଭୁଲ୍, ସନ୍ଦେହ, ବିବାହ

**ଖଟଣି** - *ଦେ:ଖୋ:ପଦ୍ୟ:* (ବି.) : ଖଟିବା, ସେବା କରିବା, ପରିଶ୍ରମ, ଦେବତା ବା

ରାଜାଙ୍କ ଦୈନନ୍ଦିନ ସେବା ବା ନୀତି, ରାଜା ବା ଦେବତାଙ୍କ ପିନ୍ଧିବା ଲୁଗା, ଗହଣ, ରାଜା ବା ଦେବତାଙ୍କ ସେବାରେ ନିୟୋଜିତ ଭୃତ୍ୟଦଳ, କର୍ମ, ରୋଷେଇର ପାଗ

**ଖଟପଲଙ୍କ** - *କ:* (ବି.) : ଶଯ୍ୟା ବିଶେଷ

**ଖଟପୁଆ** - *ଅ:* (ବି.) : ଖଟଗୋଡ଼

**ଖଟବାର** - *ସୁବ:* (ବି.) : ଝିଅର ବୈବାହିକ ଜୀବନ ସନ୍ତାନ ସନ୍ତତିରେ ପରିପୂର୍ଣ୍ଣ ହେବା

**ଖଟା** - *କ:ନ:ଦେ:ପଦ୍ୟ:* (ବିଂ.ବି.) : ଆମ୍ବିଳା, ଆମ୍ବ, ଲେମ୍ବୁ, କାନ୍ଧିଆ, ଅଁଳାରେ ନିର୍ମିତ ପାଚକ, ବିରସ, ଅମ୍ଳରସର ବ୍ୟଞ୍ଜନ, ପରିଶ୍ରମ, ଖଟଣି, ଖଟିବା, ସେବାକରିବା

**ଖଟାକି** - *ଗଦ୍ୟ:* (ବି.) : ଏକ ପ୍ରକାର ଫଳ

**ଖଟାଙ୍ଗ ପୁରାଣ** - *ଦେ:* (ବି.) : କୁବାକ୍ୟ, ଅଶ୍ଳୀଳ ଭାଷାରେ ଗାଳି, ତିରସ୍କାର କରିବା

**ଖଟାଳ** - *ପଦ୍ୟ:* (ବିଂ.) : ଖଞ୍ଜାଯାଇଥିବା

**ଖଟି** - *ପଦ୍ୟ:ଦେ:ନ:* (ବି.) ମାଦକ ସେବୀମାଙ୍କର ମିଳନର ସ୍ଥାନ, ମାଦକ ବିକ୍ରୟ ଓ ସେବନ ସ୍ଥଳ, ଯେଉଁ ସ୍ଥାନରେ ମାଛ ଶୁଖୁଆ ଆଦିର କାରବାର ହୁଏ, ଖଡ଼ି, ମଦୁଆ ମାତାଲମାନଙ୍କ ବସିବା ଓ ଆଡା ଜମାଇବା ସ୍ଥାନ, ଘାଆର ବନ୍ଧନ୍ଲା ବା ଶୁଖିଲା ଅଂଶ, ଏକାଠି ବସି ଆଡ୍ଡା ଜମେଇବା, ଗୁଲିଗପ କରିବା, ମଦଭାଟିରେ ବସିବା

**ଖଟିଆ** - *ଅନେ:* (ବି.) : କାଠରେ ତିଆରି ଏକ ଜିନିଷ, ଯାହା ଶୋଇବା ପାଇଁ ବ୍ୟବହାର କରାଯାଏ, ଦଉଡ଼ିଆ ଖଟ, ରୋଗୀକୁ ବୋହିନେବା ପାଇଁ ଖଟିଆ, ଦୋଳି, କନା, ଦଉଡ଼ିରେ ବୁଣା ଖଟ

**ଖଟିଆ ନାଗି** - *ଅ:ସୁ:* (ବିଂ.ବି.) : ଶଯ୍ୟାଶାୟୀ

**ଖଟିଖିଆ** - *ଦେ:ସଂ:କ:ସ:* (ବି.ବିଂ.) : ଦିନ ମଜୁରିଆ, ମୂଲିଆ

**ଖଟିଯିବା** - *ସ:* (କ୍ରି.) : ଶାଶୁଘରକୁ ଯାଇ ସନ୍ତାନ ଆଦି ଜନ୍ମ କରି ଚିରସ୍ଥାୟୀ ରହିବା

**ଖଟୁଲି** - *ଢ:ନ:ଦେ:* (ବି.) : ବ୍ୟାସାସନ, ଠାକୁର ଆସ୍ଥାନ, କାଠ ସିଂହାସନ (ଠାକୁରଙ୍କପାଇଁ), ଖଟୁଲି, କାଠରେ ତିଆରି ଆସନ, ବିମାନ, ଦେବତା ପ୍ରତିମାଙ୍କୁ ରଖିବା ସ୍ଥାନ, ଛୋଟ-ଆସନ

**ଖଟେଇ** - *ବା:ଭ:* (ବି.) : ଆମ୍ବିଳ ତରକାରୀ

**ଖଟ୍ ପଟ୍** - *ଅ:* (କ୍ରି.) : କଳହ

**ଖଢ଼େ ଖଢ଼େ** - *ଅ:* (କ୍ରି.ବିଂ.) : ଢଗିକରି, ଠିଆଠିଆ

**ଖଢ୍** - *କଳା:* (ବି.) ଛପର ନିମନ୍ତେ ବ୍ୟବହୃତ ଏକ ପ୍ରକାର ଜଙ୍ଗଲୀ ତୃଣ

**ଖଡ୍‌ବଡ୍‌ାତେ** - *ବୌ:* (ବି.) : ଛାନିଆଁ ହୋଇ

**ଖଡଖଡି** - *ଦେ:* (ବି.) : ପାଲିଙ୍କି, ସବାରୀ

**ଖଡମ** - *ଢେ:* (ବି.) : କଠଉ

**ଖଡି** - *ଦେ:* (ବି.) : ଅଁଳାକୋଳିଆ ପଥର ଧବଳ ଓ ନରମ, ଦୁଧଖଡି, ଚକଖଡି

**ଖଡୁ** - *ଦେ:ଭା:* (ବି.) : ହାତରେ ପିନ୍ଧିବା ଅଳଙ୍କାର, ପୁରୁଷ ଓ ବିଧବାଙ୍କ ଅଳଙ୍କାର

**ଖଡୁରା** - *ଭା:* (ବି.) : ବାସନ ତିଆରି କରୁଥିବା ସମ୍ପ୍ରଦାୟ

**ଖଡ୍ଙ୍ଗା** - *ସ:* (ବି.) : ତାଳ ଗଛର ବାହୁଙ୍ଗା

**ଖଡ଼ଗୁଣ୍ଡୁରି** - *ଗ:* (ବି.) : କ୍ଷୁଦ୍ରଜାତୀୟ ଗୁଣ୍ଡୁରି ପକ୍ଷୀ

**ଖଡ଼ବଡ଼** - *ନ:ଗ:* (ବି.ଅ.) : କଳି, ଗଣ୍ଡଗୋଳ, ବିରକ୍ତ, ଅସୁବିଧା

**ଖଡ଼ମ** - *ନ:ମ:ସଂ:* (ବି.) : କାଠ କଠଉ, ପାଦୁକା

**ଖଡ଼ରିବା** - *ଚ:* (କ୍ରି.) : ଭାଙ୍ଗିବା

**ଖଡ଼ାକଟା** - *ଜ:* (ବି.) : କାର୍ତ୍ତିକ ଆରମ୍ଭ ବା ଗର୍ଭଣା ସଂକ୍ରାନ୍ତିରେ କଟାଯିବା ଡାଳ

**ଖଡ଼ାବଏଁରୀ** - *ସ:* (ବି.) : ଏକ ପ୍ରକାର ମାଛ

**ଖଡ଼ି** - *ଗ:ବା:କୋ:ଭା:* (ବି.) : ନରମା ପଥର, ପାନଚାଷ ପାଇଁ ଦରକାର ହେଉଥିବା ଗଛ, ସୁଧା, ଚକ୍, ପଟାରେ ଲେଖିବା ପାଇଁ ଉଦ୍ଦିଷ୍ଟ ସରୁ ଖଣ୍ଡ, ଜ୍ୟୋତିଷ

**ଖଡ଼ିଆ** - *ସୁ:* (ବି.) : ଠେକୁଆ

**ଖଡ଼ିଆଳ** - *ଜ:* (ବି.) : ଜମିବାଡ଼ି ବିବରଣୀ ଥିବା ରେଜିଷ୍ଟର

**ଖଡ଼ିଗିନା** - *ଗ:* (ବି.) : ପଥୁରୀ ଖଡ଼ି ପଥରପାତ୍ର

**ଖଡ଼ି ଛୁଇଁବା** - *ନ:ସଂ:* (କ୍ରି.ବି.) : ପାଠପଢା ଆରମ୍ଭ କରିବା, ପାଠ ଅନୁକୂଳ, ଚିତା ଲେଖିବା

**ଖଡ଼ି ପକାଇବା** - *ଗ:* (କ୍ରି.) : ଜ୍ୟୋତିଷକୁ ଆଗତ ଭବିଷ୍ୟତ ବୁଝିବା

**ଖଡ଼ିରତ୍ନ** - *ଗ:* (ବି.) : ଜ୍ୟୋତିଷଙ୍କ ଉପାଧି

**ଖଡୁ** - *ଅନେ:* (ବି.) : ପୁରୁଣା କାଳର ଗହଣା ବିଶେଷ, ହାତରେ ବଳୟ ଅଳଙ୍କାର, ସୁନାଚୁଡ଼ି

**ଖଡୁଆ** - *ମ:* (ବି.) : ପାହୁଡ଼

**ଖଡୁ ମୁଣ୍ଡା କରିବା** - *ଗ:* (କ୍ରି.) : ବିଧବା କରିବା

**ଖଡୁ ମୁଦି କରିବା** - *ଗ:* (କ୍ରି.) : ବିବାହ କରିବା

**ଖଡୁରା** - *ନ:କୋ:* (ବି.) : କଂସା, ପିତଳ ଧାତୁରେ ଜିନିଷ ତିଆରି କରୁଥିବା ଜାତି, ରଙ୍ଗ ବା ଆଲୁମିନିୟମ ଜିନିଷ ବିକ୍ରି କରୁଥିବା ଜାତି ବିଶେଷ

**ଖଡ଼େ ଖଡ଼େ** - *ପଦ୍ୟ:* (କ୍ରି.ବିଂ.) : ଠିଆ ଠିଆ, ସଙ୍ଗେ ସଙ୍ଗେ

**ଖଣ** - *ଜ:* (ବି.) : ୨୦ ଗଣ୍ଡା

**ଖଣ୍ଡ୍** - *କଳା:* (ବି.) : ଖଣ୍ଡ, ଟୁକୁରା

**ଖଣତି** - *ଅନେ:* (ବି.) : ମାଟିଖେଳିବାର କାଙ୍କ କୋଦାଳ, ବାଉଁଶରେ ଲଗା କୃଷି ଯନ୍ତ୍ରପାତି, ଖୋସାଣି, ବାଉଁଶ ଠେଙ୍ଗାର ମୁଣ୍ଡରେ ଲୁହାଖଣ୍ଡ ବସିଥିବା ବାଡ଼ି, ପଥର ହଣା ଯନ୍ତ୍ର

**ଖଣା** - *ଅନେ:* (ବି.) : ଗର୍ତ୍ତ, ଖଣ୍ଡା, ତରବାରୀ, ଛୋଟ ଜଳାଶୟ

**ଖଣି** - *ଦେ:ଭ:କେ:ଢ:* (ବି.) : ଖାଦାନ, ଗାତ, ମାଟି ତଳେ ଧାନ ରଖିବା ଆସ୍ଥାନ, ଖରାଦିନେ ଧାନ ରଖିବାର ଗଭୀର ଗାତ, ଧାନଖଣି ପକାଇ ରଖନ୍ତି, ମାଟିତଳେ ଥିବା ଦ୍ରବ୍ୟ

**ଖଣି ପକାଇବା** - *ଭା:* (କ୍ରି.) : ଧାନ ପୋତିବା

**ଖଣିପଚା** - *ଗ:* (ବି.) : ଖଣିରେ ରହି ପାଗ ହୋଇଥିବା ଧାନ

**ଖଣେକ୍** - *କଳା:ନୂ:* (ବି.ବିଂ.) : ଖଣ୍ଡିଏ, ଏକଖଣ୍ଡ ମାତ୍ର, ଅଳ୍ପ ପରିମାଣ

**ଖଣେଖଣେ** - *କଳା:* (ବିଂ.) : ଖଣ୍ଡିଏ ଖଣ୍ଡିଏ, ଅଳ୍ପ ଅଳ୍ପ

**ଖଣ୍ଟ** - *ଦେ:ଖୋ:ଭ:* (ବି.) : ଚୋର, ଡକାୟତ୍, ଯେଉଁମାନେ ମଣିଷମାରନ୍ତି

**ଖଣ୍ଟ କାଢ଼ିବା** - *କୋ:* (କ୍ରି.) : ଅଭିନୟ କରିବା, ଛଳନା କରିବା

**ଖଣ୍ଡ** - *ଦେ:* (ବି.) : ଟୁକୁରା, ଏକ ଭାଗ -ଗୁଡ଼, ମିଶ୍ରି, ଗୁଆ

**ଖଣ୍ଡ ଅରସା** - *ପଦ୍ୟ:* (ବି.) : ଏକ ପ୍ରକାର ନୃତ୍ୟ

**ଖଣ୍ଡକିଆ** - *ଗୈ:* (ବିଂ.) ଗୋଟିକିଆ(Single), ଏକ ଖଣ୍ଡିକିଆ

**ଖଣ୍ଡଗଣିଆ** - *କୋ:ଗଢ଼:ଗ:* (ବିଂ.) : ଅବୁଝା, ପ୍ରତିକଥାରେ ବିରୋଧ କରୁଥିବା ବ୍ୟକ୍ତି, ପ୍ରତି କଥାରେ ଯେଉଁ ବ୍ୟକ୍ତି ବାନ୍ଧୁଥାଏ

**ଖଣ୍ଡଚିନି** - *ଗଢ଼:* (ବି.) : ଛୋଟ ପାଚିଲା କଦଳୀ

**ଖଣ୍ଡତିଆ** - *ଗ:* (ବି.) : ବ୍ରାହ୍ମଣ ଶାସନ ବ୍ୟତିରେକ ଅନ୍ୟତ୍ର ବାସ କରୁଥିବା ବ୍ରାହ୍ମଣ

**ଖଣ୍ଡପାଳକ** - *ଗ:* (ବି.) : ବୃଷ୍ଟିଛାୟା

**ଖଣ୍ଡପୀଠ (ବେଞ୍ଚ)** - *ସଂ:* (ବି.) : କେତେଜଣ ବିଚାରପତିଙ୍କୁ ନେଇ ଗଠିତ କୋର୍ଟ

**ଖଣ୍ଡପ୍ରଳୟ** - *ଭ:ଦେ:ଢ:ଗ:* (ବିଂ.ବି.) : ଅନିଷ୍ଟ, କଳହ, ମାରପିଟ, ହଣାକଟା, ଦଳା-ଚକଟା, ହାଙ୍ଗମା, ପ୍ରଳୟ

**ଖଣ୍ଡ ବର୍ଏଁରା** - *ଗୈ:* (ବି.) : ମାଛ ବିଶେଷ

**ଖଣ୍ଡବା** - *ଗ:* (ବି.) : ରାନ୍ଧୁଣିଆ

**ଖଣ୍ଡମଣ୍ଡଳ** - *ଦେ:କ:* (ବି.) : ସାରା ମୁଲକ, ଅଞ୍ଚଳସାରା

**ଖଣ୍ଡର ଖସା** - *ଗ:* (ବି.) : ଦାୟିତ୍ୱ ହୀନତା

**ଖଣ୍ଡାକ୍** - *ମା:* (ବିଂ.) : ଅଳ୍ପ

**ଖଣ୍ଡାଖାଇ** - *ଗଦ୍ୟ:ଅ:ଖୋ:* (ବିଂ.) : ଦୁର୍ଜନ ନାରୀ, ଦୁଷ୍ଟା ସ୍ତ୍ରୀ, ଏକପ୍ରକାର ଗାଳି(ଝିଅଙ୍କୁ)

**ଖଣ୍ଡାତି ହୁଡ଼ି** - *କେ:* (ବି.) : ଔଷଧୀୟ ଲତା

**ଖଣ୍ଡାଧାରୀ** - *ଗଦ୍ୟ:* (ବି.) : ଏକ ଶାଗ

**ଖଣ୍ଡାବାଳିଆ** - *ଖୋ:* (ବି.) : ଏକ ପ୍ରଜାତିର ବାଳିଆ ମାଛ

**ଖଣ୍ଡି** - *ଅନେ:* (ବିଂ.ବି.) : କୋଡ଼ିଏ ମାଣ, ଯାହାର ଯେକୌଣସି ଗୋଟିଏ ହାତ ନଥାଏ ବା କଟିଯାଇ ଥାଏ, ମୂଲ୍ୟବାନ ପଥର, ତଟ, କୂଳ, ଖଣ୍ଡିଆ, ଅକର୍ମଣ

**ଖଣ୍ଡିଆ** - *ଦେ:ଗଦ୍ୟ:ଖୋ:* (ବିଂ.) : ଅଧା, ଭଗ୍ନ,କ୍ଷତଯୁକ୍ତ, ଗାଳି ସୂଚକ ଶବ୍ଦ, କଳିଆଲୋକ

**ଖଣ୍ଡିଆ ଅଙ୍ଗି** - *ଲୀ:* (ବି.) : ଫତେଇ

**ଖଣ୍ଡିଆ ଚାନ୍ଦ** - *ବା:* (ବି.) : ନାରୀ ମସ୍ତକର ଅଳଙ୍କାର ବିଶେଷ

**ଖଣ୍ଡିଆ ନଣ୍ଡିଆ** - *ଗ:* (ବିଂ.) : ଭିନ୍ନକ୍ଷମ, ଗ୍ରହଣ ଖଣ୍ଡିଆ

**ଖଣ୍ଡିଆଭୂତ** - *ଜ:ଭ:ଦେ:* (ବି.) : ଘୂର୍ଣ୍ଣିବାତ, ଚକ୍ର ପବନ

**ଖଣ୍ଡିଉଡ଼ା** - *କ:* (କ୍ରି.) : ଉଡ଼ିବା ଅଭ୍ୟାସ କରିବା, ଅଳ୍ପ ଅଳ୍ପ ଉଡୁଥିବା

**ଖଣ୍ଡିଏ** - *କେନ୍ଦୁ:ଦେ:* (ବିଂ.) : ୨୦ ପାଇ, ୨୦ଟାଯି, ପରିମାଣ

**ଖଣ୍ଡିକଭଡ଼ିଆ** - *କ:* (ବିଂ.) : ଧୋବା କିମ୍ବା ବାରିକ ମୁଣ୍ଡାପିଛା, ଖଣ୍ଡପିଛା ମୂଲ ନେବା

**ଖଣ୍ଡିକିଆ** - *ବୌ:* (ଅ.) : ୨୦ ମାପ ବିଶିଷ୍ଟ

**ଖଣ୍ଡିଗିଣିଆ** - *ଖୋ:* (ବିଂ.) : ଯାହାର କାହାରି ସହ ପଡ଼େନାହିଁ

**ଖଣ୍ଡିତୋଡ଼ି** - *କ:* (ବି.) : ପଙ୍କରେ ରହୁଥିବା ଏକ ପ୍ରକାର ଲାଳଯୁକ୍ତ ମାଛ

**ଖଣ୍ଡି ପଞ୍ଜର** - *ନ:ଦେ:* (ବି.) : ଗାଈର ଏକପ୍ରକାର ରୋଗ, ଦୁଇ ପାଖର ପଞ୍ଜରା ବା ହାଡ ଯାହାର ସମାନ ନଥାଏ

**ଖଣ୍ଡିବା** - *କେନ୍ଦୁ:ନ:ନବ:* (କ୍ରି.) : ଛିଣ୍ଡେଇବା, ଦୁଃଖ ହରିବା, ହାଣିବା

**ଖଣ୍ଡିବାଳିଆ** - *କ:* (ବି.) : ଏକ ପ୍ରକାର ଶୁଖୁଆ

**ଖଣ୍ଡୁ** - *ଖୋ:* (ବି.) : ବିରିରେ ରନ୍ଧାଯାଇଥିବା ଏକ ଖାଦ୍ୟ

**ଖଣ୍ଡୁଆ** - *ସଂ:ଖୋ:ଢ:ଦେ:* (ବି.ବିଂ.) ତନ୍ତୁବୁଣା ପାଟ ଲୁଗା, ଏକପ୍ରକାର ବସ୍ତ୍ର, ଉତ୍ତରୀ, ପାଟଶାଢ଼ୀ

**ଖଣ୍ଡେଛଡ଼ା** - *ଅ:* (ଅ.) : ଅଳ୍ପ ଦୂରରେ

**ଖଦ୍‌ରା** - *ବୌ:* (ବି.) : ନଷ୍ଟବିନଷ୍ଟ

**ଖତ** - *ଅନେ:* (ବି.) : ଗୋବର, ପଚାସଢ଼ା ଜିନିଷ, ଜୈବିକ ସାର

**ଖତକଷ** - *ଯୁ:* (ବି.) : କାଠରେ ଗାର ଟାଣିବା ପାଇଁ ବଢେଇ ବ୍ୟବହାର କରୁଥିବା ଏକ ସାଧନ, ଏହା ଏକ କାଠର ଯନ୍ତ୍ର, ଯାହାର ମୁଣ୍ଡରେ ଏକ କଣ୍ଟା ଲାଗିଥାଏ

**ଖତକୁର** - *ଚୌ:* (ବି.) : ଖାର, ଅଙ୍ଗାର ଫିଙ୍ଗା ଯାଉଥିବା ସ୍ଥାନ

**ଖତଖଣା** - *ବ୍ରା:ବ୍ରା:* (ବି.) : ଖତଗଦା

**ଖତମ୍** - *ଅନେ:* (ବି.ବିଂ.) : ଶେଷ, ସରିଯିବା, ଶେଷ ହେବା, ହତ୍ୟା କରିବା, ନଷ୍ଟ କରିବା, ଶେଷ, ହତ, ମୃତ

**ଖତରନାଥ** - *ଗ:* (ବିଂ.) : ନଷ୍ଟ ପ୍ରକୃତିର ଲୋକ

**ଖତରା** - *ଅନେ:* (ବି.ବିଂ.) : ବିପଦ, ନଷ୍ଟ, ଅତ୍ୟଧିକ ପୁରୁଣା ଜିନିଷ ଯାହା କାର୍ଯ୍ୟକ୍ଷମ ନୁହେଁ ସେତେଟା, ନଷ୍ଟ ଚରିତ୍ର, ଖୁକ୍‌ରା, କୁଦ୍‌ରା, ସ୍ୱାଦହୀନ ଖାଦ୍ୟ, ପାମ୍ପରା, ବ୍ୟବହାର ଅନୁପଯୋଗୀ

**ଖତାଡ଼ି** - *ଗ:* (ବି.) : ଗାଁ ପାଖର ଉର୍ବର ଜମି

**ଖତିଆନ ବହି** - *ସ:* (ବି.) : ଜମିଜମା ରେକର୍ଡ

**ଖତେଇହବା** - *କୋ:ନ:କେ:ଖୋ:* (କ୍ରି.) : ମୁଖ ବିକୃତ କରି ଅନ୍ୟକୁ ଚିଡେଇବା, ରାଗି ଜିଭ ଦେଖାଇବା, ବିଦ୍ରୁପ କରିବା

**ଖଦ୍‌ଖଦଡ଼ିଆ** - *ନ:* (ବିଂ.) : ଅଚିକ୍କଣ, ମସୃଣହୀନ

**ଖଦ୍‌ଖଦାବାର୍** - *ସ:* (ବି.) : ଭାତ ଫୁଟିବା

**ଖଦ୍‌ରି** - *ଜଣ:* (ବି.) : ଖଜୁରି

**ଖଦଡ** - *ଦେ:ଢ:ଗ:* (ବି.) : ଖଣ୍ଡଖଣ୍ଡିଆ ଖଦି, ହାତବୁଣାଲୁଗା

**ଖଦା** - *ଅନେ:* (କ୍ରି.ବିଂ.ବି.) ଖାଇ ଖାଲିକରିଦେବା, ଶିକାର କରିବା; ଖରିଆ, ମିରିଗ, ବାର୍‌ହା ମାରିବା, ଅନ୍ତଃସାର ଶୂନ୍ୟ ପଦାର୍ଥ, ଭଲକରି ମିଶି ନଥିବା ଜିନିଷ, ଫସଲ ଖାଉଥିବା ଗାଈଗୋରୁଙ୍କୁ ନେଇ ଜିମା, ପାଣି ଟଟ, ଘାଟରେ ଛପି ଜଙ୍ଗଲରେ ପାଣି ପିଉଥିବା ଜନ୍ତୁମାନଙ୍କୁ ବାଣୁଆମାନେ ଜଗି ଶିକାର କରିବା, ମଇଳା, ସିଠା

**ଖଦାନ** - *ଯୁ:ସ:* (ବି.) : ଖଣି

**ଖଦାଲ୍** - *ଚୌ:* (ବି.) : ଖଦାଳ-ଜାତି ବିଶେଷ

**ଖଦାଳ** - *ଅନେ:* (ବି.) : ତନ୍ତୀ ଓ ବାଉରୀ ଜାତି, ଗଞ୍ଜାମର ଏକ ଅନୁସୂଚିତ ଜାତି, ସବାରୀ ବାହକ ଜାତି, ବିବାହ ଉତ୍ସବରେ ବାଦ୍ୟ ବଜାଇବା ଜାତି, କେଉଟ

**ଖଦି** - *ଅନେ:* (ବି.) : ନରମ ଶେଯ ତୁଳା ତିଆରି ହୋଇଥାଏ, ମୋଟା ହାତବୁଣା ସୂତା ଲୁଗା

**ଖଦିଆ** - *କଳା:* (ବି.) : କଚ୍ଛା, ଧୋତି

**ଖନ୍‌ଦିବା** - *ନବ:* (କ୍ରି.) : ଖଞ୍ଜିବା

**ଖନଗୁରା** - *ସ:* (ବି.) : କାନ୍ଧରେ ବସାଇବା

**ଖନା** - *ଗ଼.ସୁ.ନ.ଦେ.* (ବି.ବିଂ.) : ଅସ୍ପଷ୍ଟ କଥା, ପାଟିର ଅସ୍ପଷ୍ଟ କଥା, ଠିକ୍ କହି ପାରୁନଥିବା ବ୍ୟକ୍ତି, ଜଡ଼ା, ମୂକ, ଥଙ୍ଗେଇ କହିବା ଲୋକ, ପାଟି ଲାଗିବା ବ୍ୟକ୍ତି, ଥତ, ଗାଁ ମୁଣ୍ଡର ଅଳିଆ ଗଦା ଜାଗା

**ଖନାରସ** - *ଜ.* (ବି.) : ସପୁରିପଣସ

**ଖନି ବାଜିବା** - *ନ.* (କ୍ରି.) : ଡରରେ କଥା ଏପଟ ସେପଟ ହୋଇଯିବା, ଅତି ଥଣ୍ଡାରେ ପାଟି ଲାଗି ଥରି ଉଠିବା

**ଖନ୍ତେଇ** - *ଗ.* (କ୍ରି.) : ମୁହଁ ବିକୃତ କରି ଅନ୍ୟକୁ ପରିହାସ କରିବା

**ଖନ୍ଦ** - *ଅନେ.* (ବି.) ଫସଲ, କୃଷିଜାତ ଦ୍ରବ୍ୟ, ପନିପରିବା ଚାଷ, କାନ୍ଧ

**ଖନ୍ଦ୍‌ଲା** - *କଳା.* (ବି.) : ଗୋରୁ ମଣ କରିବା ପାଇଁ ତା' କାନ୍ଧରେ କିଛି ଦିନ ପାଇଁ ଓହଳା ଯାଉଥିବା କାଠ

**ଖନ୍ଦକ** - *ସଂ.* (ବି.) : ଖୋଳାଯାଇଥିବା ଗାତ

**ଖନ୍ଦପୋଡ଼ି** - *ଗ.* (କ୍ରି.) : ବର୍ଷା ଭାବରୁ ଫସଲ ନଷ୍ଟ ହେବା

**ଖନ୍ଦା** - *ଅନେ.* (ବି.) : ଭୋଜିରେ ରାନ୍ଧିବା ପାଇଁ ନିର୍ମିତ ଲମ୍ବା ଚୂଲି, ଝାଂଜିମଡ଼ା ପର୍ବରେ ଅଗ୍ନି ସ୍ଥାପିତ ହୋଇଥିବା ସ୍ଥାନ, ଲମ୍ବାଚୁଲି, ବେଶି ଲୋକଙ୍କ ପାଇଁ ରନ୍ଧା ହେଉଥିବା ଚୁଲିଶାଳ, ଯେଉଁଠି ସମୂହତାର ଖାଦ୍ୟ ରନ୍ଧାଯାଏ

**ଖନ୍ଦାମଡ଼ା** - *କଳା.* (କ୍ରି.) : ଝାଂଜିମଡ଼ା, ଅଗ୍ନିରେ ଚାଲିବା

**ଖନ୍ଦା ମିଶିବା** - *ଗ.* (ବି.) : ଦୁଇ ଗୋଷ୍ଠୀ ମଧ୍ୟରେ ନୀତିଗତ ମିଶ୍ରଣ, ଦୁଇ ଗୋଷ୍ଠୀର ଏକତ୍ର ପଂକ୍ତି ଭୋଜନ

**ଖନ୍ଦାଶାଳ** - *ଅନେ.* (ବି.) : ଭୋଜିରେ ଯେଉଁଠି ରନ୍ଧାଯାଏ, ପଂକ୍ତିଭୋଜନ ପାଇଁ ବଡ଼ ରୋଷେଇଘର, ବଡ଼ ରୋଷେଇ ଘର, ବିବାହ, ବ୍ରତର ରୋଷେଇ ପାଇଁ ବ୍ୟବହୃତ

**ଖପ୍** - *କଳା.* (ଅ.) : ଠିକ୍ ଭାବରେ

**ଖପ୍‌ଖପ୍** - *ବା.ଦେ.ବ.* (ବିଂ.ବି.) : ଶୀଘ୍ରଶୀଘ୍ର ପାଦ ପକାଇ ଚାଲିବା, ଶୀଘ୍ର ଡେଇଁ ପଡ଼ିବା, ଧରିବା, ହଠାତ୍ ଧରି ପକାଇବା, ହଠାତ୍ ଡେଇଁ ପଡ଼ିବା

**ଖପ୍‌ପା** - *ନ.* (ବି.) : ରାଗ, କ୍ରୋଧ

**ଖପ୍‌ବା** - *ସ.ବର.* (କ୍ରି.ବି.) : କମିଯିବା, ମରିଯିବା, ଧ୍ୱଂସ ହେବା

**ଖପ୍‌ରାଣୁନୀ** - *କଳା.* (ବି.) : ମୁଣ୍ଡରେ ଖପରାରେ ନିଆଁ ଧରିଥିବା ଲୋକ ଦେବୀ ବିଶେଷ

**ଖପ୍‌ରି** - *ସ.ମ.ନୂ.ସୁ.* (ବି.) : ଖପରଖଣ୍ଡ, ଟେଲାଣି, ଭଙ୍ଗା ଛପର ଖଣ୍ଡ

**ଖପ୍‌ଲା** - *ଝ.* (କ୍ରି.) : ନିଆଁ ଲିଭିଲା, ଧାନ ବେଶି ପାଚିଲା

**ଖପ୍‌ଲୋ** - *ସୁବ.* (ବିଂ.) : ଦନ୍ତହୀନ, ପାକୁଆ

**ଖପ୍‌ସା** - *ସୁବ:ଝା:* (ବି.) : ଜିଆ ଓ ଖପସା, ଏକ ପ୍ରଜାତିର ଛୋଟ ମାଛ ଏମାନଙ୍କ କାତି ନଥାଏ, ଏକ ପ୍ରକାର ମାଛ, ଗଡ଼ିଶ

**ଖପ୍‌ସି** - *ସ:* (ବି.) : ମାଛ ବିଶେଷ

**ଖପଚା** - *ସୁ:* (କ୍ରି.) : ଲୁଚାଇବା

**ଖପର** - *ଅନେ:* (ବି.) : ମୁଣ୍ଡର ଖୋଳପା, ନଡ଼ିଆର ସଢେଇ, ଘର ଛପର କରିବା ପାଇଁ ମାଟି ତିଆରି ପଦାର୍ଥ, ପୋଡ଼ା ମାଟିର ଦେଶୀ ଟାଇଲ ଛପର, ମାଟିରେ ତିଆରି ଟାଇଲ, ଖପର, ଟାଇଲ ଛପର

**ଖପର ଖାଇ** - *ଗଦ୍ୟ:* (ବି.) : ଏକ ପ୍ରକାର ପକ୍ଷୀ

**ଖପର ପିଠା** - *କେନ୍ଦୁ:* (ବି) : ଚିତଉ ପିଠା

**ଖପର ଲି** - *ଗ:* (ବି.) : ମାଟିର ଟାଇଲ୍

**ଖପରା** - *ଅନେ:* (ବି.) : ମାଟି ହାଣ୍ଡି, ମାଠିଆ ଭାଙ୍ଗିଥିବା ଅଂଶ, ହାଣ୍ଡି ମାଠିଆ ଭାଙ୍ଗି ଗଲେ ଖପରା, ଭଙ୍ଗା ହାଣ୍ଡି, ଘର ଛପର ଟାଇଲ

**ଖପରାକାଡି ଜାଲ** - *ଗ:* (ବି.) : ଦଉଡ଼ିରେ ଖପରାଗୁଡ଼ିକୁ ବାନ୍ଧି ଦୁଇଜଣ ଟାଣନ୍ତି ଓ ପଛରେ ଥିବା ଲୋକ ପାଣି ଉପରକୁ ଉଠୁଥିବା ଫୋଟକା ଦେଖି ଏକ ସ୍ୱତନ୍ତ୍ର ଜାଲରେ ମାଛ ଧରେ

**ଖପରାଖିଆ** - *ସ:* (ବିଂ.) : ଅତିଗରିବ ଲୋକ

**ଖପରାଡିଆଁ** - *ସ:* (ବି.) : ଖପରା ଖେଳିବା ଖେଳ

**ଖପା** - *ଅନେ:* (ବି.କ୍ରି.) କ୍ରୋଧାନ୍ୱିତ, ରାଗିବା, ବିରକ୍ତ ହେବା, ଢଙ୍କା

**ଖପାଡ଼ିବା** - *ଭ:* (କ୍ରି.) : ଫୋପାଡ଼ିବା

**ଖପି** - *ଝା:* (କ୍ରି.) : ନିଆଁ ଲିଭିଯିବା, ଆସ୍ତେ ଆସ୍ତେ ନିସ୍ତବ୍ଧ ହେବା

**ଖପିଯିବା** - *କଳା:ସ:* (କ୍ରି.) : ଶସ୍ୟ ପାଚିକରି ଅତିଶୟ ଶୁଖିଯିବା ଓ ଝଡ଼ିବା ଆରମ୍ଭ କରିବା, ନାଶ ହୋଇଯିବା

**ଖପିସ୍** - *କ:ଭ:* (ବି.) : ମୃତ ଲୋକ ରୂପରେ ଆସିଥିବା ଅଦୃଶ୍ୟମାନ ବ୍ୟକ୍ତି, ଅଦୃଶ୍ୟ ଭୂତ

**ଖପୁରି** - *ଦେ:ଖୋ:* (ବି.) : ମୁଣ୍ଡର ଖୋଳପା, ମସ୍ତିଷ୍କ ଉପରର ହାଡ଼

**ଖପେ** - *ବର:* (ବିଂ.) : ବୋକା

**ଖପ୍ରି** - *କଳା:* (ବି.) : ଭଙ୍ଗା ହାଣ୍ଡି ମାଠିଆ ଆଦିର କ୍ଷୁଦ୍ରକ୍ଷୁଦ୍ର ଅଂଶ

**ଖବ୍‌ଡ଼ାବାର** - *ସୁବ:* (କ୍ରି.) : ବାଡ଼ି ଫିଙ୍ଗିବା

**ଖବ୍‌ରିଆ** - *ନୂ:କଳା:* (ବି.) : ଦୂତ, ବାର୍ତ୍ତାବହ, ଡ଼ଗର, ଖବର ବାହକ

**ଖବଡ଼ା** - *ନବ:ଭ:* (ବି.) : ଛୋଟ କାଠ ଘେର, ଜିନିଷ ମାରି ଝାଡ଼ିବାପାଇଁ, ତୃଣ ବିଶେଷ

**ଖବର** - *କ:ଦେ:* (ବି.) : ସମ୍ବାଦ, ବାର୍ତ୍ତା

**ଖବରଦାର୍** - *ଦେ:ସ:* (ବି.ବିଂ.) : ସାବଧାନ, ସତର୍କ ହୁଅ, ସତର୍କ

**ଖବାଡବା** - *ଦେ:* (ବି.) : ଯାହିଁ, ତାହିଁ, ନିମ୍ନ ମାନର

**ଖବିରା** - *ଅ:* (ବିଂ.) : ଛୋଟା

**ଖବିସା** - *ସଂ:* (ବିଂ.) : ଦୁଷ୍ଟ; ଚଗଲା

**ଖବେର୍** - *କଳା:* (ବି.) : ଖବର, ବାର୍ତ୍ତା, ସମ୍ବାଦ

**ଖମ୍** - *ସୁବ:ନୂ:ରା:* (ବି.ବିଂ.) : ଖମ୍ବ, ଅଳ୍ପ, କମ୍

**ଖମ୍‌ଖମ୍** - *ନ:* (ବି.) : କାମାସକ୍ତ ନାରୀର ଉନ୍ମତ୍ତ ଭାବ

**ଖମ୍ ଖମାଲି** - *ସ:* (ବି.) : ଏକ ପ୍ରକାର ଖେଳ

**ଖମଖମା** - *ରା:* (ବି.) : କାରୁକାର୍ଯ୍ୟ

**ଖମଣ** - *ଦେ:ନବ:କୋ:କଳା:* (ବି.) : ପର୍ବତ ତଳିଆ ଜଙ୍ଗଲ, ପବିତ ଜଙ୍ଗଲ

**ଖମଲା** - *କଳା:* (ବି.) : ବଡ଼ କଡ଼େଇ

**ଖମା** - *ଅନେ:* (ବି.) : ଖାଲ, ପାଣି ନାଳ, ଜମିର ପାଣିନାଳ, ଖଣା, ଖୁଣ୍ଟା, ଖମ୍ବ, ସ୍ତମ୍ଭ, ଗାତ

**ଖମାର** - *ଅନେ:* (ବି.) : ଭାଡି, ବଳସ, କୋଠି, ଶସ୍ୟାଗାର, ଧାନ ରଖିବା ଘର, ଭଣ୍ଡାର, ରାଜା ଏବଂ ଜମିଦାରଙ୍କ ଚାଷ ଜମି,

**ଖମାରୀ** - *ସ:ସୁ:ସୁବ:* (ବି.) : ପ୍ରଜା ମାନଙ୍କର ଚାଷକୁ ଯିଏ ଦେଖାଶୁଣା କରେ, ମୁଖ୍ୟ ହଳିଆ, ଚାଷବାସ ଖମାର ଦାୟିତ୍ୱରେ ଥିବା ଲୋକ

**ଖମାଲୁ** - *ବା:ବା:* (ବି.) : ଖମ୍ବଆଳୁ, ମାଟିଆଳୁ

**ଖମେଶ୍ୱରୀ** - *ସୁବ:* (ବି.) : ଏକ ଦେବୀଙ୍କ ନାମ, ରୋହିଣୀ କାଷ୍ଠସ୍ତମ୍ଭ ଭାବରେ ସେ ପୂଜା ପାଆନ୍ତି

**ଖମୋସ** - *ଛେ:* (ବିଂ.) : ଚୁପ୍

**ଖମ୍ବାରି** - *ଗଞ:ଗ:* (ବି.) : ଚାକର, ହଳିଆ

**ଖମ୍ବ** - *କୋ:ଗ:କେ:* (ବି.) : ସ୍ତମ୍ଭ, ଖୁଣ୍ଟ, ଖମ୍ବ

**ଖମ୍ବୋଜ** - *ପଦ୍ୟ:* (ବି.) : ସଙ୍ଗୀତର ରାଗ

**ଖର୍** - *କଳା:* (ବି.) : ଛଣ, ଖଡ଼, ଏକପ୍ରକାର ଘାସ ନଡ଼ା, ଅଧିକ ଅର୍ଥରେ

**ଖର୍‌ଖଟିଆ** - *ନୂ:* (ବି.) : ଲତା ଜାତୀୟ, ଯାହାକୁ ରଜ୍ଜୁ ମଧ୍ୟ ତିଆରି କରାଯାଇପାରେ

**ଖର୍‌ଖରି** - *କଳା:ସ:କଞ:ବ:* (ବି.ବିଂ.) : ଧାନପତ୍ର, କ୍ଷଣକୋପିନୀ, ଗଙ୍ଗଶିଉଳି, ଆତ୍ମବଡିମା ପ୍ରଚାର କରୁଥିବା ବ୍ୟକ୍ତି, ଚୈତ୍ର ମଙ୍ଗଳବାରର ଓଷା

**ଖର୍‌ଖରେଇ ଯିବା** - *ସ:* (କ୍ରି.) : ଲଙ୍କା ପୋଡ଼ିଯିବାରୁ କାଶ ହେବା

**ଖର୍‌ଖସା** - *ଅନେ:* (ବିଂ.ବି.) : ଅମସୃଣ, ଚମଡ଼ା ଛାପ ଛାପିକିଆ, କର୍କଶ, ଅସମତଳ, ପରିଷ୍କାର, ଖଦଡିଆ, ଅସୁନ୍ଦରିଆ, ବନ୍ଧୁରିତ, ଖଦଡିଆ, ଅସୁନ୍ଦରିଆ, ବନ୍ଧୁରିତ

**ଖର୍ଚି** - *ସୁବ:* (ବିଂ.) : ଆୟଠାରୁ ବେଶୀ ବ୍ୟୟ କରୁଥିବା ଲୋକ

**ଖର୍ଡ଼ିଆ** - *କଳା:ନୂ:* (ବି.) : ବାଇଚଟିଆ, ବାଇଚଢେଇ

**ଖର୍ପୁଡ଼ା** - *ସୁବ:* (ବିଂ.) ବେଶୀ ପୋଡ଼ିଯାଇଥିବା ଆଳୁ, ବାଇଗଣ

**ଖର୍ପୋଷ** - *କଳା:* (ବି.) ଖୋରାକ ପୋଷାକ

**ଖର୍ ବର୍ଏଁରୀ** - *ନୂ:* (ବି.) : ଏକ ପ୍ରକାର ମାଛ

**ଖର୍ରା** - *ସ:କଳା:ସୁବ:* (ବି.) ଜାତି ବିଶେଷ, ଖଦୁରା, ବାସନ ବ୍ୟବସାୟ ଯାହାର କୌଳିକ ବୃତ୍ତି, ଜାତି ବିଶେଷ, କଂସା ପିତ୍ତଳ କାରିଗର ଜାତି ବିଶେଷ, ଖଡୁରା

**ଖର୍ଲ** - *କୋ:* (ବିଂ.) : ଖସଡ଼ା, ଶିଉଳି ହୋଇଥିବା

**ଖର୍ଲାବା** - *ସୁ:* (କ୍ରି.) : ଅଇଁଠା ବାସନ କ୍ଷାର କରିବା

**ଖର୍ଲି** - *ବ:* (କ୍ରି.) : ଆକସ୍ମିକ ଭାବେ ଖସି ପଡ଼ିବା

**ଖର୍ଲିବା** - *କଳା:* (କ୍ରି.) : ଉପରଠାଉରିଆ ଚାଞ୍ଛିବା

**ଖର୍ଲେନ** - *ଝା:* (ବିଂ.) : ଖର୍ଲେନ ଧାରେ ତାକି ତର୍କି ପାହା ପକାବ

**ଖର୍ସି** - *ଅନେ:* (ବି.) : ଗୋବର, ଗୋରୁଂକ ମଳ

**ଖର୍ସେଲ୍** - *କଳା:* (ବି.) : ଗଂଗଶିଉଳି ଗଛ

**ଖର୍ସୋଲୋ** - *ସୁ:* (ବି.) : ବିନା ତେଲର ଦିହ

**ଖର୍ହା** - *ସୁବ:ସ:* (ବି.) : ଠେକୁଆ

**ଖର** - *ଅନେ:* (ବି.ବିଂ.କ୍ରି.) : ଘର ଛପର ହେଉଥିବା ନଡ଼ା, ଚଞ୍ଚଳ ସ୍ୱଭାବ, ପାଗ କଡ଼ା ହେଇଯିବା, ସଲସଲ ଅବସ୍ଥା, କ୍ଷିପ୍ର, କୁଦ୍‌କୁଦ୍, ଗରମ, ତୀବ୍ର, ସୂର୍ଯ୍ୟଙ୍କ ତାପ, ସ୍ପର୍ଶକାତରତା, ତୀବ୍ର, ଚଳଚଞ୍ଚଳ, ଅଳସୁଆ ବା ବାନ୍ଧାନୁହେଁ, କ୍ରୁର ପ୍ରକୃତି, ରାଗୀ, କଡ଼ା, ଟାଣ, ଛଣ, ଶୀଘ୍ର

**ଖରକଣା** - *ଗ:* (ବି.) ଘରଝଡ଼ାରୁ ବାହାରିଥିବା ମଇଳା

**ଖରକିବା** - *ଦେ:ଢେ:ସଂ:କେ:* (କ୍ରି.) ଖରକେଇବା, ଛାଡୁ କରିବା, ଝାଡୁ କରିବା, ପହଁରା ମାରିବା, ଝାଡୁ ମାରି ସଫା କରିବା

**ଖରଖର** - *ଅ:ନ:* (କ୍ରି.ବିଂ.ବି.) : କ୍ରୋଧରେ ଜରଜର, ଖର୍‌ଖର୍, କଳହୀ ପ୍ରିୟା

**ଖରଘାସ** - *ଗଦ୍ୟ:* (ବି.) : ଏକ ବଡ଼ ଘାସ

**ଖରଚା** - *ଦେ:* (ବି.) ବ୍ରାହ୍ମଣ, ବୈଷ୍ଣବମାନଙ୍କୁ ରନ୍ଧାଜିନିଷ ଖାଇବାକୁ ନ ଦେଇ, ସେ ବାବଦର ଖର୍ଚ୍ଚ

**ଖରଚାପାନି** - *ସୁ:* (ବି.) : ଖାଦ୍ୟ ସାମଗ୍ରୀ ବାବଦ ପଇସା

**ଖରଡ଼ିଆ** - *ଅ:* (ବି.) : ବଡ଼ ଧାନ ଡୋଲି

**ଖରଡ଼ିବା** - *ଅ:ସ:ଗ:* (କ୍ରି.) : ପାଣି ନ ଦେଇ ଭାଜିବା, ଶାଗ ଭାଜିବା

**ଖରଡ଼ା ପଣି** - *ପଦ୍ୟ:ସଂ:* (ବି.) : ଅନାବଶ୍ୟକକର, ବାଜେକର

**ଖରଢ଼ି** - *ସୁ:ନ:ଚୌ:* (ବିଂ.ବି.) : ଶୃଙ୍ଖଳା ପାଗରେ ବୁଣା, ମାସିକ ଋତୁଚକ୍ର ଗଡ଼ିଯିବା (ଗାଈ ମଇଁଷି), ସନ୍ତାନପ୍ରାପ୍ତି ଆଶା ନଥିବା, ଶୁଖା ମାଟିରେ ବିହନ ବୁଣିବା

**ଖରଧାର** - *ସଂ:* (ବିଂ.) : ଦାରୁଆ

**ଖରନ୍** - *ଝା:* (ବି.) : ମୃଦଂଗ ଆଦିରେ ଦିଆଯାଉଥିବା କଳା ଲେପ

**ଖରପୁଡ଼ା** - *ଚୌ:* (ବି.) ଅଧିକ ପୋଡ଼ିଯାଇଥିବା ଜିନିଷ

**ଖରଳ** - *ସଂ:* (ବି.) : ଘୋରଣା, ଖଲି

**ଖରସଣ** - *ଗଞ:* (ବି.) : ଡିମିରି ଗଛ

**ଖରସଦା** - *ଗ:ଗଞ:* (ବି.) ରାଜ କର୍ମଚାରୀଙ୍କ ଉପାଧି ବିଶେଷ, ନାୟକ ଜାତିର ମୁଖିଆ ଲୋକ

**ଖରସା** - *ରା:* (ବି.) : କାକୁଡ଼ି ବା ତରଭୁଜ ପରି ଫଳ

**ଖରସୀ ପୁକ** - *ଚୌ:* (ବି.) : ଗୋବର ପୋକ

**ଖରହୁରା** - *ରା:* (ବି.) : ଖଜୁରୀ

**ଖରା** - *ଅନେ:* (ବି.) : ଠେକୁଆ, ସୂର୍ଯ୍ୟକିରଣ, ଖଡା (ଶାଗ), ଠେକୁଆ

**ଖରାପୁ** - *ରା:* (ବିଂ.) : ମନ୍ଦ

**ଖରାବା** - *ବଉ:ସ:* (କ୍ରି.) : ପାଚିବା, ରଙ୍ଗ କରିବା, ରନ୍ଧା ହେବା ପୂର୍ବରୁ ବାଲି ଓ ମାଟି ରନ୍ଧା ଡେକ୍ଚି ବାହାର ଲେପ ଲଗାଇବା

**ଖରିଆ** - *ନ:କଳା:ଗ:କୋ:* (ବି.କ୍ରି.ବିଂ.) : ଠେକୁଆ, ଶଶା, ଉତ୍ତମ ରୂପେ ଭାଜିବା, କଡ଼ା ଭଜା, ଅତିଭାଜି ହୋଇଥିବା

**ଖରିଦ୍** - *ନ:* (ବି.) : କ୍ରୟ, କିଣା

**ଖରିଫ୍** - *କଳା:* (ବି.) : ଗ୍ରୀଷ୍ମରୁ ହେମନ୍ତ ଋତୁ ଯାଏଁ ସମୟ ମଧ୍ୟରେ ଅମଳ ହେଉଥିବା ଶସ୍ୟ

**ଖରିହା** - *ସୁ:* (ବିଂ.) : ଧୂସର ବର୍ଣ୍ଣିଆ

**ଖରୁ** - *ଗଦ୍ୟ:ଅ:* (ବି.) : ଏକ ଗଛ

**ଖରେଇବା** - *କଳା:* (କ୍ରି.) ରାନ୍ଧିବା ଉପକରଣ ବାହାର ପଟେ କଳା ନ ରଚିବା ପାଇଁ ଓଦା ପାଉଁଶ ବା ମାଟିକୁ ତାର ଚାରିପଟେ ବୋଳିବା

**ଖରୋକାଁଡୋ** - *ସୁବ:* (କ୍ରି.) : ହରବର ହେବା

**ଖର୍ଦାର** - *ଯା:* (ବି.) : ଯିଏ ଖର୍ଦ୍ଦିକରେ, ଗରାକ

**ଖର୍ଦ୍ଦା** - *ଯା:* (ବିଂ.) : ଜମିର ସତ୍ତ୍ୱବିଶେଷ

**ଖଲ** - *ଅନେ:* (ବି.ବିଂ.) : ଛୋଟ ପଥର ଶିଳ, ଔଷଧ ଘୋରିବା ପାତ୍ର, ଖଳ, ମନ୍ଦ, କଳହପ୍ରିୟ

**ଖଲ୍ଖଲି** - *ବା:* (ବି.) : ନାରୀ ପାଦର ଅଳଂକାର ବିଶେଷ

**ଖଲ୍ଖଲିଆ** - *ଦେ:* (ବିଂ.) : କଥା ନ ଲୁଚେଇ କହୁଥିବା ବ୍ୟକ୍ତି

**ଖଲ୍‌ପୋ** - *ସୁ:* (ବିଂ.) : ଫମ୍ପା

**ଖଲ୍ ବଲ୍** - *ବୌ:* (ଅ.) : କଲ୍‌ବଲ୍

**ଖଲ୍‌ବଲାଇବା** - *ନୂ:* (କ୍ରି.) : ପାଣିରେ ଖେଳିବା ବେଳେ ସୃଷ୍ଟି ହେଉଥିବା ହୁଲା

**ଖଲଖଲାବାର** - *ସୁବ:* (କ୍ରି.) : ଧୋଇବା

**ଖଲପୁଆ** - *ଖୋ:* (ବି.) : ପଥରରେ ଗଢା ଛୋଟ ଶିଳ ଯାହାର ମଧ୍ୟଭାଗ ଖାଲୁଆ ହୋଇଥାଏ, ଏଥିରେ ମସଲା ଚଟଣି ଇତ୍ୟାଦି ପ୍ରସ୍ତୁତ କରାଯାଏ

**ଖଲ ମାରିବା** - *ଗ:* (କ୍ରି.) : ଅଙ୍ଗ ଶିଥିଳ ହେବା

**ଖଲାସ୍** - *ନ:* (ବି.) : ସନ୍ତାନ ପ୍ରସବ କରିବା, ଜେଲ୍‌ରୁ ବାହାରିବା

**ଖଲାସୀ** - *ଗ:ସଂ:ଗଜ:* (ବି.ବିଂ.) : କଳ ପ୍ରଭୃତିର କର୍ମଚାରୀ, ଯେଉଁମାନେ ଟ୍ରେନ୍‌ର ଜିନିଷ ପତ୍ର ବାହାର କରନ୍ତି, ଶ୍ରମିକ

**ଖଲି** - *ଅନେ:* (ବି.) : ପତ୍ରରେ ତିଆରି ଖାଇବା ଥାଳି, ଛଳନା କରିବା, ଅଭିନୟ କରିବା, ଶାଳ, ଶିଆରି ପତ୍ରକୁ ସିଇଁ ଖାଇବାପାଇଁ ପତ୍ରପାତ୍ର

**ଖଲିଆ** - *ଅନେ:* (ବିଂ.ବି.) : ଅଳ୍ପଛୋଟା, ଛୋଟୋଉଥିବା ବଳଦ ବା ଗାଈ, ଚାଷ ପାଇଁ ଅନୁପଯୁକ୍ତ ଚିକିଟା ମାଟି, ଗୋରୁଙ୍କ ଖୁରାରୋଗ, ଛୋଟେଇ ଚାଲିବା, ଯେ ଖଲେଇ ଚାଲେ, ଠିକ୍ ଭାବେ ଚାଲିପାରୁ ନଥିବା

**ଖଲିକରିବା** - *ଯା:* (କ୍ରି.) : ଥଟାକରିବା

**ଖଲିବା** - *ନ:* (କ୍ରି.) : ପଥରରେ ଔଷଧକୁ ପାଣି ସହିତ ମିଶାଇବା

**ଖଲି ଲାଗିବା** - *ନ:* (କ୍ରି.) : ପଛଗୋଡ଼ ରୋଗାକ୍ରାନ୍ତ ହୋଇ ଧିମେଇଯିବା, କିଛି ସମୟ ଅଟକିଅଟକି ଚାଲିବା

**ଖଲିହା** - *ସୁ:ସୁବ:* (ବି.) : ଚିକିଟା ମାଟି, ମଟାଳ ମାଟି

**ଖଲୁ** - *ଜେ:* (ବିଂ.) : ଭଲ

**ଖଲୁଆ** - *ଅ:* (ବିଂ.) : ଦୁଷ୍ଟ

**ଖଲେଇ** - *ନବ:କଳା:* (ବି.) : ମାଛ ରଖିବା ପାଇଁ ପାଉଁଶ ପାତିରେ ନିର୍ମିତ ସାମଗ୍ରୀ, ଖଲେଇ

**ଖଳକୀ** - *ପୁ:* (ବି.) : ଦୁଷ୍ଟ, ଖଳ ପ୍ରକୃତିର ନାରୀ, ଏକ ଭର୍ତ୍ସନାମୂଳକ ଶବ୍ଦ

**ଖଳବଳ** - *ନ:ଦେ:* (ବିଂ.ବି.) : ପ୍ରଚୁର, ପ୍ରବଳ, ବହୁତ, ଛନ୍ଦ, କୂଟ, କପଟ

**ଖଳବା** - *ଗଜ:ନବ:କୋ:ଗ:* (ବିଂ.) : ଖଳ ପ୍ରକୃତିର ଲୋକ, ଦୁଷ୍ଟ, କଳିହୁଡ଼ା, ଦୁଷ୍ଟ ପ୍ରକୃତିର ବାଳକ

**ଖଳସ** - *ଖୋ:କେନ୍ଦୁ:* (ବି.) : ସାପକାତି

**ଖଳା** - *ଅନେ:* (ବି.) : ଧାନ ରଖିବା ଓ ବେଙ୍ଗଳା କରିବା ସ୍ଥାନ, ଫସଲ ଅମଳ ସ୍ଥାନ, ଯେଉଁଠାରେ ଧାନ ଆଦାୟ କରାଯାଏ, ଧାନ ମଡ଼ାଇବା ଜାଗା

**ଖଳାଭଠା** - *କେନ୍ଦୁ:* (ବି.) : ଧାନ ଅମଳ ପରେ,ଖ୍ୱରି ଖେଚୁଡ଼ି ହୋଇ ଖଳାଉଠା କରାଯାଏ

**ଖଳାବଢ଼ା** - *କ:ଚ୍:* (ବି.କ୍ରି.) ଅମଳ ଶେଷରେ ଖଳା କାମ ଶେଷହେବା, ଧାନ ଅମଳ ସରିବା ପରେ ଅନୁଷ୍ଠିତ ଖଳା ପୂଜା

**ଖଳି** - *ଅନେ:* (ବି.) : ମଣ୍ଡାକାକରା ପିଠାର ଉପର ଅଂଶ, ଯନ୍ତନି, ପିଠାପାଇଁ ଚୂନାରୁ ପ୍ରସ୍ତୁତ, ମଣ୍ଡାପିଠାରେ ଲାଗିଥିବା ଚୁନା, ମାଟି, ମଣ୍ଡ, ପିଠା, ଚିକିଟା, ଚାଉଳ ଚୂନାର ମଣ୍ଡ, ଚୁନା ସିଝାଇ ତହିଁରେ ପିଠା କରିବା ଦ୍ରବ୍ୟ

**ଖଳିକା ଦେଖିବା** - *କେନ୍ଦୁ:* (କ୍ରି.) : ଝୁଣକାଠିରେ ଗୁଣିଆ ଆଙ୍ଗୁଠିରେ ମାପିବା

**ଖସ୍** - *ଚ୍:* (ବି.) : ବେଣା ଚେରରୁ ତିଆରି ପଟି, ଯାହା ଖରାଦିନରେ ଘରକୁ ଥଣ୍ଡା ରଖେ, ସେଥିରେ ପାଣି ସିଞ୍ଚାଯାଏ

**ଖସ୍‌କିଦେବା** - *କଳା:* (କ୍ରି.) : କେହି ନ ଜାଣିଲାପରି ପଳାଇବା

**ଖସ୍‌ରଦ୍** - *ଚ୍:* (ବି.) : ଅଭ୍ୟାସ

**ଖସ୍‌ରିବା** - *କଳା:ସ:* (କ୍ରି.) : ଘୁଞ୍ଚିବା, କାମ ନକରି ଅନ୍ୟ ଆଡ଼େ ଖସିଯିବା, ଅଲଗି ଯିବା, ଅଲଗା ହୋଇଯିବା, ଖସିବା, ଘୁଂଚିବା, କାଦୁଅ ମାଟିରେ ଗୋଡ ଖସିବା

**ଖସଡା** - *ଢେ:ଦେ:* (ବି.ବିଂ.) : ସଉପ, ପିଚ୍ଛିଳ, ପାଠ୍ୟକ୍ରମ, ପାଣ୍ଡୁଲିପି, ସାଧାରଣ ଜଙ୍ଗଲ

**ଖସରାପାଳିଆ** - *କ:* (ବିଂ.) : ସତର୍କ ହେବା ଲୋକ, କାମ ଏଡ଼େଇ ଯାଉଥିବା ଲୋକ

**ଖସା** - *ଅନେ:* (ବି.) : ଖୁସା, ରାଶି, ଡିଳ ଉପରେ ଥିବା କଳାଚୋପା, କ୍ଷୁପବିଶେଷ, ଶସ୍ୟ ବଶେଷ

**ଖସାନି** - *ଚୌ:* (ବି.) : ଗଡ଼ାଣି

**ଖସି** - *ନ:* (ବି.) : ମୁଷ୍କ ଛେଦିତ ପୁରୁଷ ଛେଳି

**ଖସିଆ** - *ଯା:ଢେ:* (ବି.) : କଉ ଜାତୀୟ ମାଛ

**ଖସୁ କୁକ୍‌ରି** - *ସ:* (ବି.) : କାଛୁ କୁଣ୍ଡିଆ

**ଖାଆଟା** - *ଢେ:* (ବି.) : ଲୁଗା

**ଖାଆସେ** - *ପୁ:* (କ୍ରି.ବିଂ.) : ଖାସ୍, ନିରନ୍ତର ବାରମ୍ବାର

**ଖାଇ** - *ଦେ:ନ:ସଂ:ନ:* (ବି.) : ଗଡ଼ଖାଇ, ଆଖୁଖାଇ, କପାଖାଇ, ପାଣି ଯାଇ ମୁହାଁଣ କରିବା, ଖାଲ ହୋଇଯିବା, କପାରୁ ମଞ୍ଜି କାଢିବାର କାଷ୍ଠ ନିର୍ମିତ ଯନ୍ତ୍ର

**ଖାଇ ଗୋଡ଼ାଇବା** - *ଭ:* (କ୍ରି.) ଫାଙ୍କାଲାଗିବା

**ଖାଇତି** - *କଳା:* (ବି.) : ଖାଉତି, ଖାଇବା ପଦାର୍ଥ

**ଖାଇତୁ** - *କଳା:* (କ୍ରି.) : ଖାଆନ୍ତୁ

**ଖାଇତେ** - *ଭ:* (କ୍ରି.) : ଖାଇବାକୁ

**ଖାଇ ପାଳୁ** - *ପୁ:* (ବି.) : କାମ ନକରି ଯାହାର କେବଳ ଭୋଜନରେ ଦୃଷ୍ଟି ଥାଏ

**ଖାଇପେଟୁ** - *ଖୋ:* (ବିଂ.) : ଅଧିକ ଭୋଜନ କରୁଥିବା ବ୍ୟକ୍ତି

**ଖାଇବା ପତ୍ର** - *ନ:* (ବି.) : ଖଲିପତ୍ର, ଶାଳପତ୍ର

**ଖାଇବି** - *ପୁ:* (ବି.) : ଡାହାଣ (ବିପରୀତ-ଡେବିରି)

**ଖାଇବୁଢ଼ୁକା** - *ଅ:* (ବି.) : ଟକରା

**ଖାଇମିନା** - *କେ:* (କ୍ରି.) : ଖାଇବି ନାହିଁ

**ଖାଇସନ୍** - *ଚୌ:* (କ୍ରି.) : ଖାଆନ୍ତି

**ଖାଉଚନ୍‌ନି** - *ଚ:* (କ୍ରି.) ଖାଉନାହିଁ (ପ୍ରଶ୍ନବାଚକ ସ୍ୱର)

**ଖାଉଡ଼** - *ଅ:* (ବିଂ.) : ପଲ

**ଖାଉତି ପିଉତି** - *ଗ:* (ବି.) : ବର୍ଷକର ଖାଦ୍ୟ ବ୍ୟବସ୍ଥା

**ଖାଉନ୍ଦ** - *ସଂ:ଯା:* (ବି.) : ମାଲିକ, ମୁନିବ, ପ୍ରଭୁ

**ଖାଉରା** - *ମା:ଚୌ:କୋ:* (ବି.ବିଂ.) : ଠକିଖିଆ ଲୋକ, ଲୋଭୀ, ଖାଦ୍ୟ ଲୋଭୀ, ଅଧିକ ଖାଦ୍ୟପ୍ରିୟ, ବେଶୀ ଖାଉଥିବା ବ୍ୟକ୍ତି

**ଖାଉରିଆ** - *ନ:* (ବିଂ.) : ନୁଖୁରା

**ଖାଉଁରେସ୍** - *କଳା:* (କ୍ରି.) : ଖାଉଥାଅ

**ଖାଏଦ୍** - *କଳା:* (ବି.) : ଖାଦ୍ୟ

**ଖାଏମା** - *କଳା:* (କ୍ରି.) : ଖାଇବା, ଭୋଜନ କରିବା

**ଖାଏସଲ** - *ସୁ:* (ବିଂ.) : କେବଳ ଖାଉଥିବା ବ୍ୟକ୍ତି

**ଖାକ** - *ସୁବ:କଳା:ସ:* (ବି.) : କାଖ

**ଖାକାର** - *ଭ:* (ବି.) : ମିଠା ଜିନିଷ

**ଖାକି** - *ଭ:ଦେ:ନ:* (ବି.ବିଂ.) ମାଟିଆ ରଂଗର, ପୋଷାକ, ମାଟିଆ (ପୋଷାକ)

**ଖାଖି** - *ସୁ:* (ବିଂ.) : ଶୂନ୍ୟ

**ଖାଙ୍କରିବା** - *ନବ:* (କ୍ରି.) : ଚିଡ଼ିବା

**ଖାଙ୍କଳିବା** - *ଚ:* (କ୍ରି.) : ପେଟକୁ ସଂକୁଚିତ କରି ଖାଦ୍ୟ ନଥିବାର ସୂଚନା ଦେବା

**ଖାଙ୍କିବା** - *ମ:ଚ:* (ବି.) : କୁଣ୍ଢେଇବା, ମୁଣ୍ଡ କୁଣ୍ଡାଇବା

**ଖାଙ୍କିମାଙ୍କି ହେବା** - *ଯା:* (କ୍ରି.) : ବିରକ୍ତି ଭାବ ପ୍ରକାଶ କରିବା

**ଖାଙ୍ଗଡା** - *ଯା:* (ବି.) : ତାଳବାହୁଙ୍ଗାର ମୂଳଅଂଶ

**ଖାଙ୍ଗାର୍** - *ମା:* (ବି.) : ଲୁଚିଖିଆ

**ଖାଚ୍‌କିବା** - *କଳା:* (କ୍ରି.) : କଚାଡିଦେବା, ଆଦରିଦେବା

**ଖାଚା** - *ବର:* (ବି.) : ମାଛ ରଖିବା ପାଇଁ ବାଉଁଶ କାଠି ନିର୍ମିତ ସାମଗ୍ରୀ

**ଖାଚେନ ଜାଗା** - *ମ:ସ:* (ବି.) : ଖାଲଢ଼ିପ ଜାଗା

**ଖାଜା** - *ଗଦ୍ୟ:* (ବି.) : ସ୍ତ୍ରୀ

**ଖାଞ୍ଚମାରିବା** - *ଚ୍‌:* (କ୍ରି.) : ସୁଯୋଗନବା, ଛାଟିଆଣିବା

**ଖାଞ୍ଚା** - *ଅ:* (ବି.) : ପକ୍ଷୀ ରଖିବା ପଞ୍ଜୁରୀ

**ଖାଞ୍ଚି** - *ମ:ନ:ଯା:* (ବି.) : ଝୁଡ଼ି, ପାଛିଆ, ହଇରାଣ, ପାନେ ଦେବା, ଗୋଟି ଖେଳର ଗାତ

**ଖାଞ୍ଚିଦେବା** - *ନ:* (କ୍ରି.) କଚିଦେବା, ହଇରାଣ କରିଦେବା

**ଖାଞ୍ଚିଯିବା** - *ଚ୍‌:* (କ୍ରି.) : ଜଳ କମିଯିବା

**ଖାଟାଉ** - *ରା:* (ବି.) : କଠଉ

**ଖାଟି** - *କେନ୍ଦୁ:* (ବି.) : ଖଟ

**ଖାଟିବା** - *ଅ:* (କ୍ରି.) : ପରିଶ୍ରମ କରିବା

**ଖାଡ଼ା** - *ଅ:* (ବି°.) : ସମ୍ପୂର୍ଣ୍ଣ (ଉପାସ)

**ଖାଡ଼ିପତ୍ର** - *ଅ:* (ବି.) : ଧୂଆଁପତ୍ର

**ଖାଢ଼େ** - *ଅ:* (ଅ.) : ଥରେ

**ଖାଡା** - *କଳା:କନ୍ଧ:ଦେ:* (ବି.) ଠିଆ, ଦଣ୍ଡାୟମାନ, ଉଭାହେବା, ଉପବାସ

**ଖାଡି** - *କଳା:ଦେ:* (ବି.) : ଚାବିକାଠି, କୁଂଚି କାଠି, ସ୍ଲେଟରେ ଲେଖିବା ଖଡି, ଦିଆସିଲି କାଠି, ଡାଙ୍ଗ

**ଖାଡିଆ** - *ଗଜ:ଦେ:* (ବି°.) : ଦୁର୍ବଳ, ପତଳା, ଛାତି

**ଖାଡିମାରା ସଂକ୍ରାନ୍ତି** - *ଚ୍‌:* (ବି.) : ଗର୍ଭଣା ସଂକ୍ରାନ୍ତି, ଏହିଦିନ ବିଲରେ ଅଧିକ ଫସଲ ପାଇବା ଆଶାରେ ଅଣଖା ପୋତାଯାଏ

**ଖାଡେଇ** - *ରା:* (ବି.) : କରେଇ

**ଖାଡ଼** - *ଗଦ୍ୟ:ଚ୍‌:* (ବି.) : ଗଧ, ପତ୍ର ନଥିବା ପାନଲଟା

**ଖାଡ଼ି** - *ଅନେ:* (ବି.) : ଦିଆସିଲି, ଢାଲର ନାଁ, ଝୋଟ ବାହାର ପରେ ନଳିତାର ମଝି ଅଂଶ, କାଠି, ବନିଶି ବାଡ଼ି (ମାଛ ଧରିବା), ଖଡ଼ି, ଶୁଖିଲା ସରୁକାଠି, ନଡ଼ିଆର ଶୁଖିଲା ମଂଜ, ଚକ୍‌ଖଡ଼ି

**ଖାଡ଼ିମରା** - *ପଦ୍ୟ:* (ବି°.) : ପରିପକ୍ୱ, ପେଇ ଗଲା ନଯିବା

**ଖାଡ଼ିଯୋଡ** - *ଯା:* (ବି.) ଯୁଆଳିର ଶଇଳରେ ଲାଗିଥିବା ଛୋଟ ଦଉଡ଼ି ଏହାଦ୍ୱାରା ବଳଦଙ୍କୁ ବନ୍ଧାଯାଏ

**ଖାଡୁ** - *ନବ:* (ବି.) : କଙ୍କଣ

**ଖାଡୁଆ** - *ଭ:ମ:* (ବି°.ବି.) : ଶାନ୍ତ, ପାହୁଡ଼

**ଖାଣ୍ଡାଖାଣ୍ଡି** - *କ:ଭ:ଯା:* (ବି°.ବି.) : ଠିକ୍ ହିସାବକୁ ହିସାବ, ସଠିକ ମାପଚୁପ୍, ମୁଣ୍ଡାମୁଣ୍ଡି, ଯେତିକି ଦରକାର

**ଖାଣ୍ଡିବୀ** - *ଗ:* (ବି°.) : ନିୟମିତ

**ଖାଣ୍ଡୁ** - *ପୁ:* (ବି.) : ବଡ଼ଆକାରର ନାଭି

**ଖାଣ୍ଡେଇ** - *ଅ:* (ବି°.) : ଦୁଷ୍ଟା ସ୍ତ୍ରୀ

**ଖାତକ** - *ଦେ:ନ:* (ବି.) : ବେଣୀଘର, ଋଣୀ, ଋଣ ଗ୍ରହୀତା

**ଖାତରପାସ୍** - *ସଂ:* (ବି.) : ସମ୍ମାନ, ଆଦର

**ଖାତା କରିବା** - *କୋ:* (କ୍ରି.) : ଦୋକାନରୁ ଖାତାରେ ଲେଖି ଧାର ଆଣିବା

**ଖାତା-ଖତିଆନ** - *ଜ:* (ବି.) : ହିସାବଖାତା, ଜମି ଦଲିଲ

**ଖାତିରି-** *ରା:* (ବି.) : ସମ୍ମାନ

**ଖାତୁ** - *ଦେ:* (ବି.) : ଅଭିମାନ, ଠାଣି, ଢଙ୍ଗ

**ଖାଦ** - *ଅନେ:* (ବି.) ଅପମିଶ୍ରଣ, ଅଳ୍ପମୂଲ୍ୟର ଧାତୁ, ଧାତୁମଳ, ଭେଜାଲ, ଧାତୁର ଅଂଶ, ଭୋଜନ, ଖାଦ୍ୟ, ଅହଂକାର, ଢଙ୍ଗ

**ଖାଦିନ** - *ବର:* (ବି.) : କଇଁଛ, ଶେଉଳ, ମାଗୁର, ସେନା ମାଛ ପ୍ରଭୃତି ଧରିବା ପାଇଁ ବଡ଼ ଆକାରର ଚାରା ବିଶେଷ

**ଖାଦିପିଦି** - *ଗ:ମା:କଳା:କୋ:* (ବି.କ୍ରି.) : ଖାଦ୍ୟପାନୀୟ, ଅନ୍ନ ବସ୍ତ୍ର, ଖାଦ୍ୟ ଖାଇବା ପଦାର୍ଥ, ପୋଷଣ, ଖାଦ୍ୟ ଓ ପାନୀୟ, ଖିଆପିଆ

**ଖାନ୍‌କା** - *ସ:* (ବି.) : ମୁସଲମାନ, ସାଧୁଙ୍କ ମଠ

**ଖାନ୍‌କୀ** - *ଅନେ:* (ବି.ବିଂ.) : ବେଶ୍ୟା, ଚରିତ୍ରହୀନା ସ୍ତ୍ରୀ, ବିଟପୀ ନାରୀ

**ଖାନ୍‌ତଲାସ** - *ନ:* (ବି.) : ପଚରାଉଚୁରା, ଅନୁସନ୍ଧାନ

**ଖାନ୍‌ଦାନ** - *ଦେ:ଯା:* (ବି.ବିଂ.) : ଆଭିଜାତ୍ୟ, ବୁନିଆଦି, କୁଳୀନ, ସମ୍ଭ୍ରାନ୍ତ

**ଖାନ୍‌ସମା** - *ବୌ:* (ବି.) : ରୋଷେୟା, ରାନ୍ଧୁଣିଆ

**ଖାନାପୁରି** - *ଦେ:ଗ:ନ:* (ବି.) : କିତାଓ୍ବାରି ପରେ ନକ୍ସାରେ ପୂରଣ କରିବା, ଜମିବାଡ଼ି ବନ୍ଦୋବସ୍ତ, ଜମିବାଡ଼ିର ନକ୍‌ସା ପ୍ରସ୍ତୁତି ପ୍ରସ୍ତୁତି

**ଖାନି** - *ସୁବ:* (ବି.) : ଶାଖା

**ଖାନ୍ଧି** - *ଗ:କଳା:ସୁ:ରା:* (ବି.) : କଦଳୀ କାନ୍ଧି, ଘରା, ଥାକ, ପେଣ୍ଟା,

**ଖାନ୍ଧଗୁଡ଼ା** - *ବୌ:* (ବି.) : କାନ୍ଧବୁହା

**ଖାପ** - *ଅନେ:* (ବି.) : ଖୋଳ, ଘୋଡ଼ଣି, ଡବାର ଠିପି, ଥୁଇନ୍‌ରେ ଶାଢୀ ଗୁଡ଼ାଇବା, ଫାଳ

**ଖାପ୍ ଖାଏବା** - *ନୂ:* (କ୍ରି.) : ଉପଯୁକ୍ତ ହେବା, ଖାପ ଖାଇବା

**ଖାପ୍‌ଚାରେ** - *ଗଡ:* (ଅ.) : ଅଦୁଆରେ

**ଖାପ୍‌ନା** - *ଗ:* (ବି.) : କୌଶଳ

**ଖାପ୍‌ନି** - *ଅନେ:* (ବି.) : ଢାଙ୍କୁଣୀ, ଠିପି,

**ଖାପ୍‌ବା** - *ବର:* (କ୍ରି.) : ବନ୍ଦ କରିବା

**ଖାପ୍‌ରାପିଠା** - *ମ:* (ବି.) : ଚିତଉପିଠା

**ଖାପମାପ** - *ଖୋ:* (ବିଂ.) : ଆୟତରେ

**ଖାପିଦେବା** - *ସ:ଦେ:ନୂ:* (କ୍ରି.) : ଘୋଡ଼ାଇ ଦେବା, ମାରିନେବା

**ଖାପିହେବା** - *କଳା:* (କ୍ରି.) ଦାୟିତ୍ୱ ମୁଣ୍ଡାଇବା

**ଖାପୁରୁ** - *ରା:* (ବି.) : ମଇ (ଚାଷ ଯନ୍ତ୍ର)

**ଖାପେ** - *ସ:କଳା:* (ବି.) : ଅଂଶବିଶେଷ, ଫାଳେ, ଏକ ଭାଗ, ପାର୍ଶ୍ୱରେ

**ଖାପେକ୍** - *କଳା:* (ବି.) : ଫାଳେ, ଏକଭାଗ

**ଖାପ୍ ଖାପଚା** - *ଅ:* (ବିଂ.) : ଅସମତଳ

**ଖାବ୍‌ଖାବୁଆ** - *ସଂଦେଗ.* (ବିଂ.) : ଉଚ୍ଚନୀଚ, ଖାବ୍‌ଖାବୁଡ଼ା, ନିଚ୍ ଅସମତଳ ରାସ୍ତା

**ଖାବଡ଼ା** - *ନବ.କୋ.ସୁ.* (ବି.) : ଛୋଟ କାଠ ଘେର, ଜିନିଷ ମାରି ଝାଡ଼ିବା ପାଇଁ, କ୍ଷେପଣ ଦଣ୍ଡ, ଗଛ ଉପରକୁ ଫୋପାଡ଼ିବା ଦଣ୍ଡ

**ଖାବଜ** - *ଦେ.* (ବି.) : କାଠକୁ କାଠ ଉପରେ ରଖିବା ପାଇଁ ଘାଇ କରିବା

**ଖାବା** - *ମ.ଗ.* (ବିଂ.) : ଖାଇବା, ମୂର୍ଖ

**ଖାବୁ** - *ଚ.* (କ୍ରି.) : ଖାଇବୁ କି?

**ଖାବୁଜେ** - *ଚ.ଚ.* (ବି.ବିଂ.) : ମେଞ୍ଚେ, ଖଣ୍ଡିଏ, ସ୍ୱଳ୍ପ ପରିମିତ ସ୍ଥାନ, ପୁଳାଏ

**ଖାମ୍** - *ନ.ବୌ.ଢେ.* (ବି.) ଚିଠିପତ୍ରର ଉପରଖୋଳ, ଲଫାପା

**ଖାମକା** - *କେ.* (ବିଂ.) : ବେକାର

**ଖାମଚ୍** - *ମ.* (ବି.) : ଛୋଟ ବାଡ଼ି, ଲାଠି

**ଖାମଣ** - *ଖୋ.* (ବି.) : ଖଣ୍ଡାଭଳି ଏକ ଧାରୁଆ ଅସ୍ତ୍ର

**ଖାମି** - *ଗ.* (ବି.) : ନିସ୍ପତି, ଜବାବ, କଥା ପକ୍କା ହେବା

**ଖାମୁ** - *ଭା.* (ବି.) : କାଗଜ ମୁଣି

**ଖାମୁଚା** - *ଚ.* (ବି.) : ଖଣ୍ଡଖଣ୍ଡ ଖାମୁଚେ ଛାଡ଼ି ରୁଇନେ ଧାନ ହବନା କିସ ?

**ଖାମୁସ୍ ହେଇଯିବା** - *ନୂ.* (କ୍ରି.) : ପଦିଏ କଥା କହି ନ ପାରିବା

**ଖାମେଖାମେ** - *ଜ.* (କ୍ରି.) : ଖାଲିରେ

**ଖାମ୍ବା** - *ଗ.* (ବିଂ.) : ଓଲା, ମୂର୍ଖ

**ଖାୟକେ** - *ମ.* (ବି.) : ଖାଇବାପାଇଁ

**ଖାୟାଁ** - *ଭା.* (ବି.) : କଞ୍ଚା ତେନ୍ତୁଳି

**ଖାର** - *ଅନେ.* (ବି.) : ପାଉଁଶ, ଏକଦ୍ରବ୍ୟ, ସଂପୃକ୍ତ କାମରେ ବ୍ୟବହାର କରାଯାଏ, ସୋଡ଼ା, ଖାଣ୍ଟି, କଡ଼ା

**ଖାରଜ** - *ଅନେ.* (ବି.) : ରଦ୍ଦ କରିବା, ଲୋପ, ବରଖାସ୍ତି, ବର୍ଜନ, ନାକଚ, ରଦ୍‌କରିବା, ବରଖାସ୍ତ, କେଶ୍ ନାମଞ୍ଜୁର, ଅଗ୍ରାହ୍ୟ

**ଖାରମପୋଷା** - *ଗ.ଗଜ.* (ବି.) : ବାରମଜା, ମିକ୍ସଚର

**ଖାରମୁଡ଼ି** - *ସୁବ.* (ବିଂ.) : ଅଲକ୍ଷଣୀ

**ଖାରମୁହାଁ** - *ସୁ.* (ବିଂ.) : ଅଯୋଗ୍ୟ ବ୍ୟକ୍ତି

**ଖାରା** - *ଅନେ.* (ବିଂ.ବି.) : କଡ଼ା, ରାଗ, ବିସ୍ୱାଦ, ସରଳ, ଖାଣ୍ଟି, ନିରୋଳା, କଡା ମସଲା, ଲୁଣିଆ

**ଖାରାଖାଣ୍ଟି** - *କୋ.* (ବିଂ.) : ନିର୍ଭୟରେ ଠିକ୍‌କଥା କହୁଥିବା ବ୍ୟକ୍ତି

**ଖାରା ଖାରା** - *ଦେ.* (ବିଂ.) : ସଫା ସଫା

**ଖାରାପ୍** - *କଳା.* (ବିଂ.) : ଖରାପ, ଯାହା ଭଲ ନୁହେଁ, ଦୁଷ୍ଟ, ମନ୍ଦ

**ଖାରାପାନ** - *ଗ.* (ବି.) : କଡ଼ା ଗୁଣ୍ଡି ଯୁକ୍ତ ପାନ

**ଖାରାପୁଂସା** - *ଗଜ.* (ବି.) ସେଓ (ବେସନରେ ପ୍ରସ୍ତୁତ)

**ଖାରି** - *କଳା.ନବ.ପଦ୍ୟ.ଭା.* (ବି.ବିଂ.) : ଗାଁ ଗୋହିରି, କଟାଧାନକୁ ଖଳାରେ ଏକ

ବିଶେଷ କୌଶଳରେ ଗଦା କରିବା, ଲୁଣିଆ, କ୍ଷାରଯୁକ୍ତ, ମିଠାର ବିପରୀତ; ଲୁଣି

**ଖାରିଜି** - *ଗଦ୍ୟ:* (ବି.) : ଆଗନ୍ତୁକ

**ଖାରୀପାଏନ୍** - *ସୁବ:* (ବିଂ.) : ଗାଁ ଦାଣ୍ଡର ବର୍ଷାଧୁଆ ପାଣି

**ଖାରୁ** - *ଅ:* (ବିଂ.) : କଟୁ

**ଖାରେଇବା** - *କେନ୍ଦୁ:* (କ୍ରି.) : ଶସ୍ୟକୁ ଗାଈ ମୂତ୍ର ମିଶାଇ ତାକୁ ଖରାରେ ଶୁଖାଇବା

**ଖାର୍‌ଖାସୁ** - *ସୁବ:* (ବି.) : ନୁଖୁରା, ଦେହମୁଣ୍ଡ ସଫା ସୁତୁରା ନ ହୋଇଥିବା ଲୋକ

**ଖାଲ୍‌କି** - *ଗଦ୍ୟ:* (ବି.) : ଦେଶଦ୍ରୋହୀ

**ଖାଲ୍‌ଚୋ** - *ସୁବ:ସ:* (ବି.) : ଖାଲ, ଟୋଲା

**ଖାଲ୍‌ସା** - *ଗ:* (ବି.) : ସ୍ୱତନ୍ତ୍ର ଶାସିତ ଅଞ୍ଚଳ

**ଖାଲଖମା** - *ଗ:* (ବି.) : ନାଳ ଏବଂ ଗର୍ତ୍ତ ପୂର୍ଣ୍ଣ

**ଖାଲିଖାଲି** - *ଦେ:* (ବି.) ତୁଚ୍ଛାରେ, ମାହାଳିଆରେ ଖାଲି ହାତରେ

**ଖାଲିବା** - *କୋ:* (କ୍ରି.) : ଗାଡୁଆ କରିବା

**ଖାଲେଶୁଆ** - *କଳା:* (ବି.) ଗାଳି ବିଶେଷ:ମୃତ୍ୟୁ ହେଲେ କେତେକ ସ୍ଥଳେ ଶବକୁ ଖାଲରେ ପୋତାଯାଏ । ଏହାକୁ ଆଖିରେ ରଖି 'ଖାଲରେ ଶୁଆ' ଗାଳି ଦିଆଯାଏ

**ଖାଳ** - *ପଦ୍ୟ:ବା:ଢେ:ମ:* (ବି.) : ନାଳ, ଖଳା, ଖଳେଇ, ଦଣ୍ଡୁରି, ଶାଖା, ପ୍ରଶାଖା ନଦୀ

**ଖାଳି** - *ଭ:* (ବି.) : ପାଛିଆ

**ଖାଳିଆ** - *ଅ:* (ବି.) : ଖଟାକମଳା

**ଖାଳୋଇ** - *ପଦ୍ୟ:* (ବି.) : ମାଛରଖା ଥଳି

**ଖାସ** - *ଅନେ:* (ବି.ବିଂ.ଅ.) : କାଶ, କାଶ ସହ ଥଣ୍ଡା ରୋଗ, ଉତ୍ତମ, ଠିକ୍, ଘନିଷ୍ଠ, ନିଜର, ମୁଖ୍ୟ

**ଖାସ୍‌ଖାସ୍** - *କୋ:* (ବି.) : ଶୁଖା ଶୁଖା

**ଖାସ୍‌ପା** - *ଗ:* (ବି.) : ରାଜା ସରକାରଙ୍କ ସ୍ୱ ଅଧିକୃତି ଜମି, କେନାଲ୍ ଡିହ

**ଖାସ୍‌ମାହାଲ** - *ଗ:* (ବି.) : ରାଜା ସରକାରଙ୍କ ସ୍ୱ ଅଧିକୃତି ଜମି

**ଖାସା** - *ପୁ:ଦେ:ଢେ:ନ:* (ବିଂ.) : ଠିକଣା, ଉତ୍ତମ, ଉପାଦେୟ, ଆଗୁ, ଭଲ, ବାରିକ, ସ୍ୱତନ୍ତ୍ର, ଖୁବ୍ ଭଲ, ଜାଣିବାର ସୀମାରେ ପହଞ୍ଚିଥିବା

**ଖାସୁମାଳି** - *ଗ:* (ବି.) : ଗଞ୍ଜାମରେ ବହୁଳ ବ୍ୟବହୃତ ମହିଳାଙ୍କ ସୁନାମାଳି

**ଖାସୁରିଆ** - *ନ:* (ବିଂ.) : ଆବଡ଼ାଖାବଡ଼ା, ଅଚିକ୍କଣ

**ଖାସ୍ତା** - *ଅନେ:* (ବି.) : ଟଟକା, ଟାଣ ପାଗଯୁକ୍ତ, ନରମ(ମିଠେଇ ପ୍ରସ୍ତୁତି ବେଳେ), ଅଟା ଏବଂ ବେସନରୁ ନିର୍ମିତ କଠିନ ଖାଦ୍ୟକୁ କୁଡୁମୁଡ଼ିଆ କରିବା ଉପାୟ, ମୁସ୍‌ମୁସିଆ, ମୁଡ୍ରମୁଡିଆ, ମଇଦାଘିଅ ମିଶା ନମନୀୟ

**ଖାଁକ୍** - *ସୁ:* (ବି.) : କାଖ

**ଖାଁକର** - *ନୁ:* (ବି.) : ଛାତର ଚାଲ ରଖିବା ପାଇଁ ବ୍ୟବହୃତ କାଠ ଗଣ୍ଡି

**ଖାଁକିବା** - *ଚା:* (ବି.) : ମୁଣ୍ଡକୁଣ୍ଡାଇବା
**ଖାଁଚ୍** - *ସ:ସୁବ:* (ବି.) : ଗାତ, ଖାଲୁଆ ସ୍ଥାନ
**ଖାଁସ୍‌ଗଛ** - *କଲା:* (ବି.) : ଅପେକ୍ଷାକୃତ ବଡ଼ ଗଛ ଏହାର ଫଳ ପାଚିଲେ କଳା ଦିଶିଥାଏ ଓ ଏହାକୁ ମଣିଷ ଖାଏ
**ଖିଅ ଜାଲ** - *ନ:* (ବି.) : ସୂତା ଜାଲ
**ଖିଅ ଧରିବା** - *ସ:* (କ୍ରି.) : କଥାକୁ ଘାଣ୍ଟି ଦୋଷ ବାହାର କରିବା
**ଖିଅର ବାଆର** - *ଦେ:* (ବି.) : ଚୁଟି, ନଖ କାଟିବା
**ଖିଆ ପକାଇବା** - *କ:* (ବି.) : ଧାନ ବା ଖାଦ୍ୟଶସ୍ୟକୁ ପବନରେ ଉଡ଼େଇଦେବା
**ଖିଆଲ** - *ଅନେ:* (ବି.କ୍ରି.ବିଂ.) : ଅନୁମାନ, କଳ୍ପନା, ଗେଲ, ଟାପରା, ସ୍ମରଣ, ମନ ରଖିବା, ନଖର ରଖିବା, ହୋସ, ସମ୍ବେଦନ ଶୀଳ, ଚିଡ଼ାଇବା ଅର୍ଥରେ, ହାସ ପରିହାସ
**ଖିକ୍** - *କଳା:* (ବି.) : ଘୃଣା, ନାପସନ୍ଦ
**ଖିକ୍‌ରୀ** - *କଳା:* (କ୍ରି.) : ଗେନ୍ଦ୍ରିକରିବା, ଖେଳରେ ନିୟମ ବହିର୍ଭୂତ କାମ କରି ଅସ୍ୱୀକାର କରିବା
**ଖିକାବା** - *ସ:କଳା:* (କ୍ରି.) : ବିକାରଭାବ
**ଖିଙ୍କାରିବା** - *ଅନେ:* (କ୍ରି.) : ଧମକାଇବା, ଡରାଇବା, ରୁକ୍ଷକଥା କହିବା, ବିରକ୍ତହୋଇ କହିବା, ମୁହଁ ଛିଞ୍ଚାଡ଼ି କହିବା, ରାଗରେ କହିବା
**ଖିଙ୍କିସା** - *ଗ:* (ବି.) : ବସ୍ତ୍ରକୀଟ
**ଖିଙ୍ଗିଶୁଳିଆ** - *ଗଦ୍ୟ:* (ବିଂ.) : ଛିଗୁଲିଆ
**ଖିଚ୍‌ଡ଼ିବା** - *ସୁ:* (କ୍ରି.) : ଦେଖାଇବା, ଖତେଇ ହେବା
**ଖିଚ୍‌ପିଚ୍** - *କଣ:* (କ୍ରି.) : ନାପସନ୍ଦ କରିବା
**ଖିଜ୍‌ମତ୍** - *ଚା:* (ବି.) : ହେପାଜତ୍
**ଖିଜ୍‌ରୀ** - *ଝୌ:* (ବି.) : ରାଗୁଥିବା ମାଇପି
**ଖିଜ୍‌ଲାବା** - *କଳା:* (କ୍ରି.) : ଚିଡ଼େଇବା, ଲାଗିହବା
**ଖିଜାବିରଝା** - *ସ:* (ବି.) : ଥଟ୍ଟା ପରିହାସ
**ଖିଜେଇବା** - *କଳା:ସ:* (କ୍ରି.) : ଚିଡ଼େଇବା, ଲାଗିହେବା, ଥଟ୍ଟା କରିବା
**ଖିଟିକି** - *ରା:* (ବି.) : ଝରକା
**ଖିଡ଼ିକି** - *ଅନେ:* (ବି.) : ଝରକା, କବାଟର ଭିତରପଟ ଶିକୁଳି
**ଖିଡିକିରା** - *ରା:* (କ୍ରି.) : ରାଗିଲା
**ଖିଡ଼ଖିଡ଼େଇ ଦେବା** - *ସ:ବ:* (କ୍ରି.) : ହାତ ଧରି ଘରୁ ବାହାର କରିବା
**ଖିଡ଼ିଖିଡ଼ି** - *କୋ:ନ:ଗଛ:* (ବି.) : ଏକପ୍ରକାର ଯୁଆ ଖେଳ, କଳହ, ଖେଳବିଶେଷ
**ଖିଡ଼ିପିନା** - *ନୁ:* (ବି.) : ଲୁହାର କଣ୍ଟା
**ଖିଡ଼ିସିଙ୍ଗିଆ** - *ଗ:* (ବିଂ.) : ଉଦ୍ଧତ ପ୍ରକୃତି, ଗର୍ବୀ
**ଖିଣ୍ଡେଇ** - *ଚା:* (କ୍ରି.) : ଖାଇବା
**ଖିତ୍‌ଖିତାବା** - *ସୁ:* (କ୍ରି.) : ଅସମ୍ଭାଳ ହସିବା
**ଖିତିରି ହଉଛୁ** - *କଣ:* (କ୍ରି.) : ଗର୍ବ କରୁଛୁ

**ଖିନ୍‌ଖିନାବା** - *ବର:* (କ୍ରି.) : ପାଟିତୁଣ୍ଡ କରିବା

**ଖିନ୍ ଭିନ୍** - *ଅନେ:* (ବି.) : ଛିନ୍ନ ବିଛିନ୍ନ, ବିପର୍ଯ୍ୟସ୍ତ, ଟିକିଟିକି କରି

**ଖିନାରୀ** - *ରା:* (ବି.) : ବାଟି

**ଖିନ୍ ଖରାପ** - *ଅ:* (କ୍ରି.ବିଂ.) : ନାରଖାର

**ଖିଦଖିଦାଲି** - *ବ:* (ବିଂ) : ତନ୍ନତନ୍ନ କରି

**ଖିର** - *ଗଞ:ରା:ନ:* (ବି.) : ଦୁଧ ଗୋରସ,

**ଖିରଗଜା** - *ଜ:* (ବି.) : ମିଠା ବିଶେଷ

**ଖିର୍‌କି** - *କେ:* (ବି.) : ଝରକା

**ଖିର୍‌ପିନା** - *କଳା:* (ବି.) : ଗାଡା, କବାଟର ପଛପଟେ ଦିଆଯାଉଥିବା ଅର୍ଗଳ, କବାଟର କିଳିଣୀ

**ଖିର୍‌ପିନି** - *ବୌ:ବର:ବ:* (ବି.) : ବାଳକୁ ଚାପିଧରିବା ଚେପନା, ହେୟାର୍ କ୍ଲିପ୍, ମୁଣ୍ଡରେ ଲଗାଇବା କଣ୍ଟା ବିଶେଷ

**ଖିର୍‌ସା** - *କୋ:ସୁ:ନୂ:* (ବି.) : କ୍ଷୀର ସହ ରନ୍ଧା ଯାଉଥିବା ବ୍ୟଞ୍ଜନ ବିଶେଷ, କ୍ଷୀରରୁ ପ୍ରସ୍ତୁତ ଛେନା, ଲହୁଣୀ

**ଖିଲ** - *ଅନେ:* (ବି.) : ପାନଖିଲ(ମସଲା ଯୁକ୍ତ ପାନ), କାଠି, ଭଙ୍ଗା ପାନ ଖଣ୍ଡ, ପାନଖିଲ, ବାଉଁଶ ଛୋଟଖଣ୍ଡ, କିଳା

**ଖିଲ୍‌କାଟି** - *ମ:ଦେ:* (ବି.) : ଗୁଆକାଟି

**ଖିଲ ଆଣ୍ଟିବା** - *ଭ:* (କ୍ରି.) : ଜବଦ୍ କରିବା

**ଖିଲଣ** - *ନ:ଗ:* (ବି.) : ଖିଲାଣ, ଭାର ସହିବା ସ୍ତମ୍ଭ, ଦୁଆରବନ୍ଧ ଉପର, କାଠର କଳା

**ଖିଲ ପୁରିବା** - *କୋ:* (ବିଂ.) : ପଶୁମାନଙ୍କର ପ୍ରାପ୍ତ ବୟସ୍କ ଅବସ୍ଥା

**ଖିଲମାରିବା** - *ଗ:* (କ୍ରି.) : ହାଣ୍ଡିମାଠିଆର ଛିଦ୍ରରେ ଖିଲ ବସାଇବା

**ଖିଲାଣ** - *ଖୋ:ସଂ:* (ବି.) : ଖିଲ, କିଳା, କୋଠା, ପୋଲର ଅର୍ଦ୍ଧ ଗୋଲାକାର ଗଢଣ

**ଖିଲାପ** - *ଖୋ:* (କ୍ରି.) : ବ୍ୟତିକ୍ରମ

**ଖିଲାପି** - *ଜ:* (ବି.) : ଅନାଦାୟ

**ଖିସାବାର୍** - *ସୁବ:* (କ୍ରି.) : ଅନ୍ୟର ଉନ୍ନତି ଦେଖି ମନ ମାରିବା, ଅସଫଳ ହୋଇ ମନ ମାରିବା

**ଖିଅ** - *ଗଦ୍ୟ:* (ବି.) : ଖୋଇ, ଅଭ୍ୟାସ

**ଖିଆ** - *ଅନେ:* (ବି.) : କାନ୍ଧର ଖଂଜା, ମିଠା ପ୍ରସ୍ତୁତ ପାଇଁ ଉପାଦାନ ବିଶେଷ, ଦହି ମନ୍ଥିବା ଉପାଦାନ, ଦହି ମନ୍ଥିବା ଯନ୍ତ୍ର, ଆଉଟା ଦୁଧ

**ଖିଆଜହ୍ନି** - *ଗ:* (ବି.) : ଦହିଖିଆ ଆକୃତିର ଛୋଟ ଗୋଲ୍ ଜହ୍ନି

**ଖିଆଡ଼** - *ଅନେ:* (ବି.) : ବାଡ଼ ଘେରା ସ୍ଥାନ, ହାତୀଧରା ଗାତ, କାଞ୍ଜିହାଉଦା, ଗୋରୁଙ୍କୁ ଅଟକ ରଖିବାସ୍ଥାନ, ଖଞ୍ଜାଘର, ବିରାଟ ଘର, ଗମ୍ବିରଯୁକ୍ତ ଘର, ମେଲାସ୍ଥଳି, କାଞ୍ଜିଆ

**ଖିଆନି** - *ସୁ:* (ବି.) : ବିବାହ ପୂର୍ବରୁ ଖାଇବା ନିମନ୍ତ୍ରଣ

**ଖିଆପେଡ଼ା** - *ଜ:* (ବି.) : ମିଷ୍ଟାନ୍ନ ବିଶେଷ

**ଖିଆବାଡ଼ି** - *ଗ:ଦେ:* (ବି.) : ଦଧିମନ୍ଥନ ଦଣ୍ଡ

**ଖୁଭଲ** - *ସୁ.ସ.* (ବି.) : ଗାଁ ଦାଣ
**ଖୁଭିଁଚି** - *ରା.* (ବି.) : ଚିମୁଟା
**ଖୁଭିଁକିବା** - *ରା.* (କ୍ରି.) : ଧୂଆଁ ବାହାରିବା
**ଖୁଏଲ୍** - *ନୁ.* (ବି.) : ଗ୍ରାମଦାଣ
**ଖୁକ୍‌ଡି** - *କଳା.* (ବି.) : ପାଚିଥିବା ତାଳ ମଞ୍ଜିର ଗଜା
**ଖୁକ୍‌ଡ଼ା, ଖୁକୁଣ୍ଡା** - *ଦେ.* (ବିଂ.) : ଖୋଲା, ମେଲା
**ଖୁକ୍‌ସା** - *ନୁ.* (ବି.) : ଏକ ପ୍ରକାର ମାଛ
**ଖୁକି** - *ଅନେ.* (ବିଂ.ବି.) : କୃପଣ ଲୋକ, ହୀନିମାନିଆ, ନଗଣ୍ୟ, ହେୟ, ଅପାଂକ୍ତେୟ,
**ଖୁକିଖାକି** - *ସ.* (ବିଂ.) : ନିମ୍ନମାନର ଲୋକ
**ଖୁକୁଣ୍ଡା** - *କଣ.* (ବିଂ.) : ଖୋଲା
**ଖୁଖୁଡ଼** - *ସୁ.ସୁବ.* (ବି.) : ଛତୁ, ତାଳଗଜା
**ଖୁଗ୍‌ଲା** - *ନୁ.* (ବି.) : ବେକର ରୂପା ଅଳଙ୍କାର
**ଖୁଙ୍କୁଡ଼ି** - *ମ.* (ବି.) : ତାଳ ମଞ୍ଜି ଭିତର ଶଶ
**ଖୁଙ୍କୁରିବା** - *ମା.* (କ୍ରି.) : ଖିଙ୍କାରିବା
**ଖୁଙ୍ଗା** - *ଗ.* (ବି.) : ବାଉଁଶ, ବେତର ପେଟିକା
**ଖୁଙ୍ଗାଖୁଙ୍ଗି** - *ଗ.* (କ୍ରି.) ପରସ୍ପରକୁ କେଞ୍ଚାକେଞ୍ଚି ହେବା
**ଖୁଚ୍‌ବା** - *ନୁ.* (କ୍ରି.) : ଖୋସିବା
**ଖୁଚ୍‌ରା** - *କଳା.ସୁ.* (ବି.) : ଚିଲର, ରେଜା, ଚିଲ୍ଲର
**ଖୁଚା** - *ସୁ.ବ.* (ବି.ବିଂ.) : ଚାଷ ମଝିରେ ମରିଥିବା ସ୍ଥାନରେ ଗଛ ଲଗାଇବା କାର୍ଯ୍ୟ, ନୂଆ ପଲ୍‌ହା ରୋପଣ
**ଖୁଚା ଲାଗିବା** - *ଦେ.* (କ୍ରି.) : ବାଡ଼ ଲାଗି ଲୁଗା ଚିରିବା
**ଖୁଚାଁ** - *ବର.* (ବି.) : କହୁଣିରେ ମାରିବା
**ଖୁଚିବା** - *ଦେ.ଗ.କଳା.* (କ୍ରି.) : ଖୋସିବା, ଗୁଞ୍ଜିବା, ରୋଇବା
**ଖୁଜ୍‌ଖବର୍** - *ଦେ.* (ବି.) : ପତ୍ତା, ଠିକଣା
**ଖୁଜ୍‌ଖୁଜିଆ** - *କଳା.* (ବିଂ.) : ଅତିଚଂଚଳିଆ, ସବୁକାର୍ଯ୍ୟରେ ହାତଦେବା ଲୋକ
**ଖୁଜ୍‌ମା** - *ସୁ.* (କ୍ରି.) : ଖୋଜିବା
**ଖୁଜ୍‌ରା** - *ସୁ.କଣ.* (ବିଂ.ବି.) : ରାଗୁଆ, ବିଛା
**ଖୁଜ୍‌ରି** - *ଦେ.ଦେ.କଳା.ସୁବ.* (ବି.) କାଛୁକୁଣ୍ଡିଆ, ମାକରି ଖସୁ
**ଖୁଜାଲୁଡ଼ା କରି ଆଣିବା** - *କୋ.* (କ୍ରି.) : ଏଣୁତେଣୁ ଯୋଗାଡ଼ କରିବା
**ଖୁଜୁବୁଜିଆ** - *ଖୋ.ଗ.ନ.ସ.* (ବିଂ.) : ଚଗଲା, ଚଞ୍ଚଳ, ସବୁଥିରେ ଲାଗୁଥିବା
**ଖୁଜେନ** - *ସୁବ.କଳା.* (ବି.) : ବାଇଡ଼ଙ୍କ, ବିଛୁଆତି, କୁଣ୍ଡିଆ
**ଖୁଞ୍ଚାଣିଆ** - *ସ.* (ବିଂ.) କାନକୁହା, ଚୁଗୁଲିଆ
**ଖୁଞ୍ଚେଇବା** - *ନ.* (କ୍ରି.) : ମାଟିକୋଡ଼ି ଫସଲକୁ ହେପାଜତ୍ କରିବା
**ଖୁଟ୍** - *କଳା.* (ବି.) : ଖୁଣ୍ଟ, କଟାଯାଇଥିବା ଗଛର ଖମ୍ବ ବା ଅବଶିଷ୍ଟାଂଶ
**ଖୁଟ୍‌ଖାଟ୍** - *କ.ଭ.* (ବି.ବିଂ.) : ଅସନ୍ତୋଷ ସୂଚକ କଥାବାର୍ତ୍ତା, ସାମାନ୍ୟ ଗଣ୍ଡଗୋଳ

**ଖୁଟ୍‌ଲି** - *କଳା:* (ବି.) : କାଠର ଛୋଟ ଖୁଣ୍ଟ ବା ଖଣ୍ଡ

**ଖୁଟି** - *କଳା:ସୁ:ଚୌ:* (ବି.) : ଖୁଣ୍ଟି, କାଠି, ନଷ୍ଟ ଗଛର ମାଟି ଉପରକୁ ଥିବା ଅଂଶ

**ଖୁଟିଆ** - *କଳା:* (ବି.) କୌଣସି ଉପଦେବତା ବ୍ୟକ୍ତି ଉପରେ ଆଶ୍ରିତ ହୋଇ ରୋଗ ଭୋଗ କରାଇବା ବିଶ୍ୱାସ

**ଖୁଟିବା** - *ନବ:ସୁ:* (କ୍ରି.) : ଆଙ୍ଗୁଠି ଅଗରେ ଛିଣ୍ଡେଇବା

**ଖୁଟୁଖୁଟିଆ** - *ରା:* (ବିଂ.) : ଅଶାନ୍ତ

**ଖୁଟ୍ ବିର୍‌ହି** - *ନୂ:* (ବି.) : ଏକ ପ୍ରକାର ବିରି

**ଖୁଡ୍‌ଡା** - *ବର:* (ବି.) : ପତ୍ରରେ ତିଆରି ପାତ୍ର

**ଖୁଡ୍‌ତାନି** - *ଚୌ:* (ବି.) : ଖୁଡୀଶାଶୁ

**ଖୁଡା** - *ଗଜ:* (ବିଂ.) : ନିଆଁହୁଳା

**ଖୁଡୁତା** - *ଦେ:* (ବି.) : କକା, କାକା, କକେଇ, ଦାଦି

**ଖୁଙ୍ଗା** - *ବ:* (ବି.) : ପତ୍ରରେ ତିଆରି ବଡ଼ ଦନା ବା ଠୋଲା

**ଖୁଞ୍ଝ** - *ବର:* (ବି.) : ଶୁଖା ନଡ଼ିଆ

**ଖୁଡ଼** - *ଗ:* (ବିଂ.) : ଅଶାନ୍ତ, ଗଣ୍ଡଗୋଳ, ଗୋଳମାଳିଆ

**ଖୁଡ୍‌ଇଆ** - *କନ୍ଧ:* (ବି.) : ସାବତ ମା'

**ଖୁଡ୍‌ଖୁଡ଼ା** - *କୋ:* (ବି.) : କଡ଼ା ଭଜା ହୋଇଥିବା ବ୍ୟଞ୍ଜନ

**ଖୁଡ଼ୁବୁଡ଼ିଆ** - *କଳା:* (ବିଂ.) : ଅନିମନ୍ତ୍ରିତ ଭାବରେ ଆସି ଅଯଥା କଥା କହିବା ଓ ମୂଳ ଆଲୋଚନାକୁ ବିଗାଡ଼ି ଦେବା ବ୍ୟକ୍ତି

**ଖୁଡ଼ୁଦୁଂଗିଆ** - *କଳା:* (ବିଂ.) : ଏକକାନିଆ, ଏକ ବସ୍ତ୍ରରେ, ଉତ୍ତରୀୟ ଧାରଣ ନକରି

**ଖୁଡ଼ାନି** - *ଚୌ:* (ବି.) : ଅଳସେଇ

**ଖୁଡ଼ିଆ** - *କନ୍ଧ:ଗ:* (ବି.) : ଅଳସୁଆ, ଦୁଷ୍ଟ

**ଖୁଡୁ ତାଶୁର** - *କ:ସୁ:* (ବି.) : ସ୍ତ୍ରୀ ବା ସ୍ୱାମୀର ଦାଦା, ଶଶୁରଙ୍କ ସାନଭାଇ, କକାଶ୍ୱଶୁର

**ଖୁଡୁ ରି** - *ଭ:* (ବି.) : ଶୁଷ୍କ

**ଖୁଣ** - *ଅନେ:* (ବି.) : ଦୋଷ ଦେଖିବା, ବାହୁନିବା, ଉଘେଇବା, ଦୋଷ, କଳଙ୍କିତ କରିବା, ବଦନାମ କରିବା, ଗ୍ରହଣ ଅଯୋଗ୍ୟ; ଖଣ୍ଡିଆ ହେବା, ଖଣ୍ଡିଆ ଖାବରା ଦୁର୍ଗୁଣ

**ଖୁଣ୍ଟା** - *ଅନେ:* (ବି.କ୍ରି.ବିଂ.) : କାଠଗଡ଼, ଗଣ୍ଡି, ଖୁମ୍ବ, କିଳା ଗଛ କଟା ସରିବା ପରେ ଦେଖାଯାଉଥିବା ଅବଶିଷ୍ଟ ମୂଳ, ଉଲୁଗୁଣା, ଦୋଷ ଦେଇ କହିବା, ଗାଳିଦେବା, ଅପମାନଦେବା, ଦରପୋଡ଼ା କାଠ

**ଖୁଣ୍ଟାଇବା** - *ଗ:* (କ୍ରି.) : ଦେହରେ ଝୋଟି ଖୁଣ୍ଟାଇବା, ପଥର ଏବଂ ଧାତୁ ଦେହରେ ଅକ୍ଷର ଲେଖିବା

**ଖୁଣ୍ଟା ମାରିବା** - *ମ:ବା:* (କ୍ରି.) : ଗଞ୍ଜଣା ଦେବା, ଶାଶୁ ବୋହୂ ନାଁରେ ଖୁଣ୍ଟା ମାରୁଚି

**ଖୁଣ୍ଟି** - *ଖୋ:ମ:ଢ:ବୌ:* (ବି.) : ସ୍ତ୍ରୀଲୋକଙ୍କୁ ଏକପ୍ରକାର ଗାଳି, ଖୁଣ୍ଟ, ସୀମା ନିର୍ଦ୍ଧାରଣ କିଳା

**ଖୁଣ୍ଟିଆ** - *ଗ:ଢ:* (ବି.) : ରାଜ ସେବକ, ଠାକୁରଙ୍କ ସେବକ, ଗଛ ବିଶେଷ

**ଖୁଣ୍ଟିକଟା** - *ନ:* (ବି.) : ଖୁଣ୍ଟିକଟା(ଧାନବିଡ଼ା) ନଡ଼ାପାଇଁ କଟା ସରିବା ପରେ ଅବଶିଷ୍ଟ

**ଖୁଣ୍ଟିଖାପ** - *ସୁବ:* (ବିଂ.) : ସମସ୍ତ ଜମି ପରିମାଣ

**ଖୁଣ୍ଟିଖୁଡ଼ିଆ** - *ଗ:* (ବିଂ.) : ଆରମ୍ଭରୁ ବିଭ୍ରାଟ ସୃଷ୍ଟି କରିବା

**ଖୁଣ୍ଟିଗୁଣ** - *ଗ:* (ବି.) : ଘର ପରଂପରା, ବ଼ଂଶ ପରଂପରା

**ଖୁଣ୍ଟି ପୋତିବା** - *ଗ:* (କ୍ରି.) : ମଙ୍ଗଳ କାର୍ଯ୍ୟ ପ୍ରାରମ୍ଭରେ ଶୁଭ ଖୁଣ୍ଟି ପୋତିବା

**ଖୁଣ୍ଟିବା** - *କେ:ବୌ:ଯା:* (କ୍ରି.) : ସାଉଁଟିବା, ଆଙ୍ଗୁଠି ଟିପରେ ତୋଳିବା, ଦୋଷ ଦେଖାଇବା

**ଖୁଣ୍ଟି ଶିତଳେଇବା** - *ଗ:* (କ୍ରି.) : ଯାହା ପରବର୍ତ୍ତୀ ସମୟରେ ଶୁଭ ଖୁଣ୍ଟି ପୂଜା କରି ଉଠାଇବା

**ଖୁଣ୍ଟୁଣା** - *କେ:* (ବି.) : ଗାଳି, ନିନ୍ଦା, ଗଞ୍ଜଣା

**ଖୁଣ୍ଡେଇ** - *ପୁ:* (ବି.) : ଗାର କାଟି ଘର କରି ତହିଁରେ ଖପରା ପକାଇ ଏକ ଗୋଡ଼ିକିଆ ଖେଳା ଯାଉଥିବା ଖେଳ, ଅନ୍ୟନାମ ଚଟା ଖେଳ

**ଖୁତା** - *ବୌ:* (ବି.) : ଆଉଜା

**ଖୁତାବାର** - *ସୁବ:* (କ୍ରି.) : ଗୋଟିଏ ଦଣ୍ଡ ଆଉଜାଇ କବାଟ ଆଜି ବନ୍ଦ କରିବା, ବାଡ଼ିରେ ଭରାଦେବା

**ଖୁତିବାଡ଼ି** - *ସୁବ:* (ବିଂ.) : ଗୋଟିଏ ବାଡ଼ିରେ ଲୁହାର ଗୋଜିଆ ଗୋବ ଦିଆଯାଇଥାଏ। ଏହାଦ୍ୱାରା ବଳଦର ଫାଡ଼ିଆରେ ଗୁଞ୍ଜାଯାଇ ଚାଲିବାକୁ ବାଧ କରାଯାଏ।

**ଖୁତେନ୍ ଦେବା** - *ସ:* (କ୍ରି.) : ଭାର ଦେବା

**ଖୁତେନ୍‌ବାଡ଼ି** - *ସୁବ:* (ବିଂ.) : ଯେଉଁ ବାଡ଼ି ସାହାଯ୍ୟରେ କବାଟ ବନ୍ଦ କରାଯାଏ

**ଖୁଦ** - *ଅନେ:* (ବି.) : ଛୋଟ ଛୋଟ ଚାଉଳ ଖଣ୍ଡ

**ଖୁଦ୍ ଜାଉ** - *ମା:* (ବି.) : କ୍ଷୀରି ଜାତୀୟ ଖାଦ୍ୟ, ଖୁଦଜାଉ

**ଖୁଦ୍‌ରି** - *କୋ:* (ବି.) : ଖୁଚୁରା ପଇସା

**ଖୁଦା** - *କେନ୍ଦୁ:* (ବି.) : ଦେହରେ ଚିତା କୁଟାଇବା

**ଖୁଦା କେଣ୍ଟିବା** - *କେନ୍ଦୁ:* (କ୍ରି.) : ଚିତା କୁଟିବା

**ଖୁଦା ଶାଗ** - *କେନ୍ଦୁ:* (ବି.) : ଏକ ପ୍ରକାର ଶାଗ, ଯାହାର ଡେମ୍ଫ ଦୁଇପଟେ ସରୁ ସରୁ ପତ୍ର ଥାଏ

**ଖୁଦି** - *କୋ:ଢ:* (ବି.) : କଥାର ରହସ୍ୟ, କୌଣସି ଲୋକର କାର୍ଯ୍ୟକଳାପର ଦୁର୍ବଳତା, ଚାଉଳଖୁଦ ତରକାରୀ

**ଖୁଦୁମୁଦୁ** - *ନବ:* (ବି.) : ବ୍ୟସ୍ତ ଲାଗିବା

**ଖୁଦ୍ରୁକୁଣୀ** - *ନ:* (ବି.) ଭାଦ୍ରବମାସ ରବିବାରରେ ଅନୁଷ୍ଠିତ ହେଉଥିବା ମଙ୍ଗଳାଙ୍କ ପାଇଁ ଓଷା

**ଖୁଦ୍ର** - *ଗଢ:* (ବି.) : ଠେକୁଆ

**ଖୁନ୍** - *କଳା:ଢ:ସଂ* (ବି.) : ଖୁଣ, ବିଲକ୍ଷଣ, ହତ୍ୟା

**ଖୁନ୍‌ଚି** - *ସୁବ:* (ବି.) : ମାଟି ଖୋଳିବା କାମର ଗଭୀରତା ମାପ ପାଇଁ ଛଡ଼ା ହୋଇଥିବା ସାକ୍ଷୀ

**ଖୁନ୍‌ସି** - *କଳା:* (କ୍ରି.) : ଖୁଣେ, ବାହୁନେ

**ଖୁନ୍‌ହାଁ** - *ସୁବ:* (ବିଂ.) : ରୋଗ ବ୍ୟାଧିଗ୍ରସ୍ତ ବଡ଼ ରୋଗ

**ଖୁନାବା** - *ବର:* (କ୍ରି.) : ଘୃଣା କରିବା

**ଖୁନ୍ତୀ** - *ଭ:* (ବି.) : ବଡ଼ ଖଡ଼ିକା

**ଖୁନ୍ଦ୍‌ବା** - *ବର:* (କ୍ରି.) : ମାଡ଼ିବା, ପାଦ ପକାଇବା

**ଖୁନ୍ଦହେବା** - *ରା:* (କ୍ରି.) : ବେଶୀ କମ୍ ସ୍ଥାନରେ ରହିବା

**ଖୁନ୍ଦା** - *ଅନେ:* (ବି.କ୍ରି.) : ମୁଥମାରିବା, ହାତ ମୁଠା କରି ମାଡ଼ ଦେବା,

**ଖୁନ୍ଦାଖୁନ୍ଦି** - *ଦେ:ଗ:କଳା:ନ:* (ବିଂ.ବି.) : ଗେଞ୍ଜାଗେଞ୍ଜି, ଅଧିକ ଘଞ୍ଚ ଭାବରେ, ଲଗାଲଗି

**ଖୁନ୍ଦିବା** - *ବୌ:ନ:* (କ୍ରି.) : ଖୁନ୍ଦାଦେବା, ଧରିବା, ଖମ୍ବ ପୋତିଲାବେଳେ ବାଲି ଭର୍ତ୍ତିକରି ପାଣି ସହିତ ଶାବଳରେ ଖେଞ୍ଚିବା

**ଖୁପ୍‌ଲି** - *ବର:ସୁବ:* (ବି.) : ଖୋଲପା, ଖପୁରୀ

**ଖୁପା** - *ବର:ବୌ:ନୂ:ସୁବ:* (ବି.) : ଖୋଷା ବା ଜୁଡା, ଗୋଲାକାର ଖୋଷା, ସ୍ତ୍ରୀମାନଙ୍କ କେଶ ପ୍ରସାଧନର ଶୈଳୀ

**ଖୁପିଆ** - *ସୁ:* (ବି.) : ବେନାମୀ, ଗୁପ୍ତ

**ଖୁପି କାଢିବା** - *ଗ:* (ବି.) : ଅନୁ ସଂଧାନ କରିବା

**ଖୁପିବା** - *କଳା:ସୁ:* (କ୍ରି.) : ଭିତରକୁ ଭେଦ କରିବା, ଆଘାତ କରିବା, ଖୁମ୍ପିବା

**ଖୁପୁରେଇବା** - *ଗ:* (କ୍ରି.) : ଅନ୍ୟକୁ ଚିଡ଼ାଇବା

**ଖୁବ୍** - *ଦେ:ଗ:* (ବିଂ.ବି.) : ଅତି, ଖୁବ୍, ବହୁତ, ଅଧିକ ପରିମାଣ

**ଖୁବି** - *ଗଢ:ବ:* (ବିଂ.ବି.) : ଗୁପ୍ତ ଖବର, ମାଛ ଧରିବା ପାଇଁ ବ୍ୟବହୃତ ଚାପା ଜାଲ

**ଖୁବେର୍ ପାତି** - *ନୂ:* (ବି.) : ଖବର ଅନ୍ତର

**ଖୁମ୍** - *ଝ:* (ବି.) : ଖମ୍ବ

**ଖୁମାଣି** - *ପୁ:ନ:* (ବି.) : ଜିଦ୍‌ରେ ନୀରବ ରହିବା, ଅଭିମାନ, କଥା ନ ଶୁଣିବା ଦମ୍ଭ

**ଖୁମୁଳା** - *ଗ:* (ବି.) : ଅଲଗା, ପୃଥକ

**ଖୁମ୍ବା** - *ରା:* (ବିଂ.) : ମୋଟା

**ଖୁମ୍ପିବା** - *କୋ:* (କ୍ରି.) : କାଠ ବାଉଁଶ ମୁନରେ ଆଘାତ କରିବା, ଖୁପିବା

**ଖୁର** - *ଅନେ:* (ବି.ବିଂ.) : କ୍ଷୁର, ଚଳାଅ, ଦାଢ଼ିକଟା ଯନ୍ତ୍ର, ଅତି ଚତୁର, ଚଞ୍ଚଳ, ଧୂର୍ତ୍ତ, ବିଚକ୍ଷଣ, ଖୁରା

**ଖୁରକା** - *ଖୋ:* (କ୍ରି.) : ସଫା କରିବା

**ଖୁରଡା** - *ଦେ:* (ବି.) : ବଡ଼ ଦନା, ପଲଙ୍ଗା

**ଖୁରପୁଣି** - *ମ:* (ବି.) : ଖଡ଼ିକା

**ଖୁରମୁଠି** - *ଗ:* (ବି.) : ଖିଅର ହେବା ଯନ୍ତ୍ର ବିଶେଷ

**ଖୁରହାବାର** - *ସୁବ:* (କ୍ରି.) : ଗୋଡ଼ ଘୋଷାଡ଼ି ଘୋଷାଡ଼ି ଯିବା

**ଖୁରା** - *ଅନେ:* (ବି.) : ପଶୁଙ୍କ ଗୋଡରେ ଥିବା ଅଂଶ ବିଶେଷ, କ୍ଷୁର, ଖିଅର କରିବା ଛୁରୀ, ଚକୁକାତି, ଗୋରୁ ଛେଳି ଆଦି ପଶୁମାନଙ୍କର ପାଦ

**ଖୁରାକି** - *କୋ:ଦେ:* (ବି.) : ଆହାର, ଖାଦ୍ୟ, ଛାତ୍ରୀର ଭରଣ ପୋଷଣ ଦେୟ

**ଖୁରା ଗୁତୁରା** - *ଗ:* (ବି.) : ବନ୍ୟଜନ୍ତୁଙ୍କ ପାଦଚିହ୍ନ

**ଖୁରାଟାଙ୍କୁ** - *ଗ:* (ବି.) : ଗୋରୁ ଖୁରାର ଦୁଇ ଫାଳିଆ ଅଂଶ

**ଖୁରାଣ୍ଡି** - *ନ:ଖୋ:ଗ:ଗଦ୍ୟ:* (ବି.) : ଏକ ପ୍ରକାର ମାଛ, ମୃଗ ଜାତୀୟ କ୍ଷୁଦ୍ର ପ୍ରାଣୀ

**ଖୁରା ମାରିବା** - *ଗ:* (ବି.) : ଗୋବସନ୍ତା

**ଖୁରି** - *ଅନେ:* (ବି.) : କଂସାଧାତୁରେ ନିର୍ମିତ ବାଦ୍ୟଯନ୍ତ୍ର, ଘଣ୍ଟା, ଛୋଟ କଂସାବାସନ, କଂସା, ଛୋଟ ମାଟି ପାତ୍ର, ଖୁରା, ଘଣ୍ଟା, ଘଣ୍ଟ, ବଇଠିଲଗା ଗିନା, ମାଟିପାତ୍ର, ପଖାଳଖିଆ ପାତ୍ର

**ଖୁରିଗିନା** - *କଣ:କଳା:ନୂ:* (ବି.) ବାସନକୁସନ

**ଖୁରିବା** - *ବ:* (କ୍ରି.) : ଉଖାରିବା

**ଖୁରିୟେ** - *ଗଦ୍ୟ:* (ବି.) : ଭଣଜା

**ଖୁରୁକ୍ ମୁରୁକ୍** - *କଣ:କଳା:* (ବିଂ.କ୍ରି.) : ଅଶ୍ରଦ୍ଧା, ଅନ୍ୟ ପ୍ରତି ଈର୍ଷାରେ ଅଶାନ୍ତି ହେବା

**ଖୁରୁକା** - *ଗଜ:* (ବି.) : ଘୋଡାର ବାଳ ସଫା କରିବା ପାଇଁ ବ୍ୟବହୃତ ଲୁହା ପାନିଆଁ

**ଖୁରୁକୀ** - *ଖୋ:* (ବି.) : ସଫା କରିବା ଯନ୍ତ୍ର

**ଖୁରୁକ୍ ମୁରୁକ୍** - *କଳା:* (କ୍ରି.ବିଂ.) : ଅନ୍ୟପ୍ରତି ଈର୍ଷାରେ ଅଶାନ୍ତ ହେବା

**ଖୁରୁଣ୍ଡି** - *ରା:* (ବି.) : ଶୁଖା ନଡ଼ିଆ

**ଖୁରୁପି** - *ରା:ଅ:ସୁ:ଭ:* (ବି.) ବଡ଼ ପିଡିପାତିଆ ବା ପିଠା ଖଡ଼ିକା, ଛୋଟ ମାଟି ପାତ୍ର, ଛୋଟ ଘାସ ଚାଞ୍ଛିବା ଉପକରଣ, ପାତିଆ, ଘାସ ଛେଲା ଯନ୍ତ୍ର

**ଖୁରୁମା** - *ନ:ଖୋ:ଗ:* (ବି.) : ଅଟା, ମଇଦାରେ ପୂରଦେଇ ଘିଅ, ତେଲରେ ଛାଣି ଚିନି ଶିରାରେ ପଡ଼ିଥିବା ପିଠା,

ଏକପ୍ରକାର ଖାଦ୍ୟ, ବ୍ୟଞ୍ଜନ, ବିଶେଷ, ମିଠାଇ

**ଖୁରୁସା** - *କଳା:* (ବି.) : ବାଇ ଖୁଜିଆଣି, ବାଇଡ଼ଂକ

**ଖୁରୁସି** - *ଯା:* (ବି.) : ସିଂହାସନ, ମଞ୍ଚ, କୁର୍ସି

**ଖୁରେଇବା** - *ବ:* (କ୍ରି.) ଗୋଡ଼ରେ ଆଡେଇବା

**ଖୁରେଇହେବା** - *ରା:ନୂ:* (କ୍ରି.) : ଛଟପଟ ହେବା, ଦାଢ଼ି କାଟିବା, ଖୁଅର ହେବା

**ଖୁରେକ୍** - *କଳା:* (ବିଂ.) : କଂସାଏ, ବେଲାଏ, ପିଆଏ

**ଖୁର୍ଚ୍ଚୁଣ୍ଡିଆ** - *କୋ:* (ବିଂ.) : ଦୁଷ୍ଟ ସ୍ୱଭାବର (ବାଳକ)

**ଖୁର୍ଲି** - *କଳା:* (ବି.) : କାନ୍ଥୁକୁଣ୍ଡିଆ

**ଖୁର୍‌ହି** - *କୋ:* (ବି.) : କାନ୍ଥୁ

**ଖୁର୍‌ଲି** - *କୋ:* (ବି.) : କଳହ

**ଖୁର୍‌ସେଲ୍** - *କଳା:* (ବି.) : ଜବରଦସ୍ତି ଭରାଯାଉଥିବା କାଠ ବା ବାଉଁଶ

**ଖୁଲ** - *ବ:ରା:ଅ:* (ବି.) : ଦୁଇ କାନ୍ଥର ମିଳନ ସ୍ଥଳରେ ଆଚ୍ଛାଦିତ ଅଂଶ, ଚେରମୂଳରୁ ଔଷଧ ପ୍ରସ୍ତୁତକାରୀ ପଥର, ଗୁମ୍ପା

**ଖୁଲ୍‌ପା** - *ସ:* (ବି.) : ଖୋଳପା

**ଖୁଲଢ଼ି** - *ଗ:* (ବି.) : ଗ୍ରାମ ଅର୍ଥରେ ପ୍ରଯୁକ୍ତ

**ଖୁଲମ୍ ଖୁଲ୍‌ଶା** - *ବୌ:* (ବିଂ.) : ଖୋଲା ଖୋଲି

**ଖୁଲାସି** - *ଅ:ଗଜ:* (ବି.ବିଂ.) : ଖୋସା, ମୁକ୍ତ ଭାବେ

**ଖୁଲି** - *ନବ:କଳା:ଗ:ବ:* (ବି.) : ଛୋଟଗଳି, ଗାଁଦାଣ୍ଡ, ଗ୍ରାମ ଅର୍ଥରେ ପ୍ରଯୁକ୍ତ

**ଖୁଲିଖାଇ** - *କଳା:* (ବିଂ.) : ଦାଣ୍ଡରେ ଖାଉଥିବା ସ୍ତ୍ରୀଲୋକ

**ଖୁଲେଇ ହେବା** - *ଅ:* (କ୍ରି.) : ଦେଖେଇ ହେବା, ରାମ୍ପିବିଦାରି ହେବା

**ଖୁଳ** - *ସୁ:କୋ:ରା:* (ବି.) : ମୃଦଙ୍ଗ, ଚମଡ଼ା ଲାଗିନଥିବା ବାଦ୍ୟ ଯନ୍ତ୍ର

**ଖୁଳ୍‌ସା, ଖୁଲୁସା** - *କୋ:* (ବି.) : ମାଟି କାନ୍ଥ ତିଆରି ପାଇଁ ବ୍ୟବହୃତ କାଠ

**ଖୁଳାଖୁଳି** - *ଅ:ରା:* (ବି.) : ଜକାଜକି, କୋଳାକୋଳି, ଗଣ୍ଡଗୋଳ ପାଇଁ ପ୍ରସ୍ତୁତି

**ଖୁଳି** - *ଅ:କେନ୍ଦୁ:* (ବି.) : ରାସ୍ତା, ନାଳ

**ଖୁଳେ** - *ବ:* (ବିଂ.) : ଥରେ

**ଖୁସ୍‌କରି** - *କଳା:* (ବିଂ.) : ଅତି ସନ୍ତର୍ପଣରେ, ଧୀରେଧୀରେ

**ଖୁସ୍‌ବାସ** - *କ:* (ବି.) : ରାଜପୁତ ଜାତିର ଲୋକ

**ଖୁସ୍‌ବୁଇ** - *ବ:* (ବି.) : ସୁନ୍ଦର ବାସ୍ନା

**ଖୁସ୍‌ମୁସ୍** - *ବୌ:* (କ୍ରି.ବି) : ଏପଟ ସେପଟ

**ଖୁସ୍‌ଲା** - *କନ୍ଧ:* (ବି.) : କାତି

**ଖୁସ୍‌ଲିବା** - *କୋ:* (କ୍ରି.) : ଫିଟିଯିବା

**ଖୁସା** - *ଅନେ:* (ବି.) : ଜୁଡ଼ା ପରି କେଶ ସଜ୍ଜା ବିଶେଷ, ମୁଷ୍ଟି ଦ୍ୱାରା ଆଘାତ, ପଣସର ଖୋଷା, ଖୋଷା ବା ଜୁଡ଼ୋ, ଏକ

ନିର୍ଦ୍ଦିଷ୍ଟ ଢଂଗରେ ନାରୀଙ୍କ କେଶସଜ୍ଜା, ଖୋସାପଣସ, ସ୍ତ୍ରୀଲୋକଙ୍କ ମୁଣ୍ଡ ବାଳବନ୍ଧନ, କେଶ ବନ୍ଧନ ବିଶେଷ

**ଖୁସାମତିଆ** - *ଅ:ନ:ବର:* (ବିଂ.ବି.) : ଖୋସାମତିଆ, ତେଲମରା କଥା କହି କାର୍ଯ୍ୟ ହାସଲ କରିବା ବ୍ୟକ୍ତି, ଚାଟୁକାର

**ଖୁସିଖଜ୍ଜା** - *ନ:* (ବି.) : ସମ୍ପୂର୍ଣ୍ଣ ଛୋଟଛୋଟ ଖଜା (ଗୁଡ଼ କିମ୍ବା ଚିନିଦିଆ)

**ଖୁସୁଡ଼ା** - *ଗ୍ୟା:* (ବି.) : ଖଡ଼ାଶାଗ

**ଖୁସେଇବା** - *ନ:* (କ୍ରି.) : ମାଟି ହାଲକା କରି ଖୋଳିବା

**ଖୁଁଖଡ଼ିଆ** - *ସୁବ:* (ବିଂ.) : ଫୁଙ୍ଗୁଳା, କିଛି ଉପରେ ଘୋଡ଼େଇ ହୋଇ ନଥିବା

**ଖୁଁଖୁର ବାର** - *ସୁବ:* (କ୍ରି.) ନଖ ସାହାଯ୍ୟରେ ଆମ୍ପୁଡ଼ିବା

**ଖୁଁଚା** - *ସୁ:ସୁବ:* (କ୍ରି.ବି.) : ହାତରେ ସାମାନ୍ୟ ଆଘାତ, ଗୁଞ୍ଜା, ମୁଠା ହୋଇଥିବା ହାତର ବୁଢ଼ା ଅଙ୍ଗୁଠିରେ ଗାଲରେ ଆଘାତ ଦେବା

**ଖୁଁଚି** - *ସୁବ:* (ବି.) : ଗୋଡ଼ିଆ କାଠ

**ଖୁଁଟ୍‌ଲା** - *ସୁବ:ସ:* (ବି.) : ମୁଗୁର, ବଟାଳି, ଶୁଖିଲା କାଠ ଗଣ୍ଡି

**ଖୁଁଟି** - *ଝା:ସ:* (ବି.) : ମାଟିରେ ପୋତା ଯାଇଥିବା ଖୁଁଣ୍ଟି, ଘା'ର ଖୋଳପା

**ଖୁଁଣଖୁଁଡ଼ା** - *ସ:* (ବି.) : କିଛି ନପିନ୍ଧି, କିଛି ଘୋଡ଼ି ନହୋଇ ରହିବା

**ଖୁଁତାବା** - *ସୁ:* (କ୍ରି.) : କୁଞ୍ଚେଇବା

**ଖୁଁଦା** - *ନବ:* (ବି.) : କହୁଣୀ ମାଡ଼

**ଖୁଂଚାକୁଆ** - *କ:* (ବିଂ.) : ତୋଷାମଦିଆ, ଚୁଗୁଲିଆ

**ଖେଇ** - *ଗ:ନୁ:* (ବି.କ୍ରି.) : ପୂଜକର ପ୍ରାପ୍ୟ ଭୋଗ ସାମଗ୍ରୀ, ଖାଇ

**ଖେଉଦା** - *ଅ:* (କ୍ରି.) : ଘଉଡ଼ିବା

**ଖେଏନା** - *କଳା:* (ବି.) : ଖାଦ୍ୟ, ଖାଇବା ପଦାର୍ଥ

**ଖେଓ୍ୱାଟ** - *ଯା:* (ବି.) : ଜମି ବିଷୟରେ କମ୍ ବିବରଣୀ ଥିବା କାଗଜ

**ଖେକ୍‌ନି** - *ସୁବ:* (ବି.) : ନିଜ ଭୁଲ ସ୍ୱୀକାର ନ କରି ଅଯଥା ଯୁକ୍ତି ଲଗେଇବା ଖେଳରେ ଅନ୍ୟାୟ ଉପାୟ କରିବା

**ଖେକର୍‌ଲି** - *କଳା:* (ବି.) : କୋକିଶିଆଳି, ବାଘର ମହୁରୀ

**ଖେକାର୍** - *କଳା:ସୁବ:* (ବି.) : ଖଂକାର

**ଖେକେର୍ଲି** - *ସ:* (ବିଂ.) : ବୟସ୍କା ସ୍ତ୍ରୀ

**ଖେଖନି** - *ସୁ:* (ବି.) : ଅସତ୍ୟ ଆଶ୍ରିତ

**ଖେଙ୍କାର** - *ବୌ:* (ବି.) : କଫ ମିଶ୍ରିତ ଛେପ, ଖଙ୍କାର

**ଖେଚ୍‌ଡିଆ** - *ବର:* (କ୍ରି.) : ଥଟ୍ଟା କରୁଥିବା ବ୍ୟକ୍ତି

**ଖେଚରା** - *ଗ୍ୟା:* (ବିଂ.) : କ୍ରୋଧୀ

**ଖେଚା** - *ସୁ:* (ବି.) : ସ୍ତରସ୍ତର

**ଖେଚୁଡ଼ି** - *କ:ନ:* (ବି.ବିଂ.) : ଚାଉଳ, ଡାଲି, ପରିବା ମିଶା ଖାଦ୍ୟ ବ୍ୟଞ୍ଜନ, ଖେଚୁଡ଼ି

**ଖେଜା** - *ଅ:ଦେ:* (ବି.) : କୁଟୁମ୍ବ, ଭାଗ ବସାଇବା

**ଖେଜୁର** - *ସୁ:* (ବି.) : ଖଜୁରୀ

**ଖେଜେ ବୁଜେ** - *ସ:* (ବି.) : ଟିକେ ଅଧେ

**ଖେଞ୍ଚଣା** - *ଗ:ସଂ:* (ବି.) : ମୁର୍ଦାରକୁ ଖେଞ୍ଚିବା ବାଡ଼ି ବାଉଁଶ

**ଖେଞ୍ଚମାରିବା** - *ଚା:* (କ୍ରି.) : ଅନ୍ୟର ଦୋଷ ଦେଖାଇ ସମାଲୋଚନା କରିବା ବା ଚୁଗୁଲି କରିବା

**ଖେଟା** - *ଗ:* (ବି.) : ପୃଥକ, ଅଲଗା

**ଖେଟିବା** - *କଳା:ଗଞ୍ଜ:ରା:ନବ:* (ବି.କ୍ରି.) : ପହଂଚିବା

**ଖେଡୁ, ଖେଡ଼ୁଖେଡ଼ିଆ** - *ଢେ:* (ବି.) : ପତଳା, ଧଡ଼ିଆ

**ଖେଡ଼** - *ନବ:କୋ:ଝା:ଛ:* (ବି.) : ଧାନକେଣ୍ଡା, ଧାନ ଗଛର ଫଳିଥିବା ଅଂଶ, ଫସଲ ଅର୍ଥରେ ମଧ ବ୍ୟବହୃତ ହୁଏ, ଧାନକେଣ୍ଡା, ଖେଳ

**ଖେଡୁକନା** - *କଳା:* (ବି.) : ଶସ୍ୟ ବିଶେଷ

**ଖେଡ଼ଖଡ଼ା** - *ନବ:* (ବିଂ.) : ଭୋକିଲା

**ଖେଡ଼ଘର** - *ସଂ:* (ବି.) : ଖେଳଘର

**ଖେଡ଼ା** - *ନୂ:କଳା:* (ବି.) : ଖଡ଼ା(ପରିବା ବିଶେଷ, ପତ୍ର କାଣ୍ଡ ଉଭୟକୁ ଖିଆଯାଏ)

**ଖେଡ଼ିଆ** - *ବା:ଗ:* (ବି.) ଠେକୁଆ, ଦଳତ୍ୟାଗୀ, ଏକୁଟିଆ ହୋଇରହିବା

**ଖେଡ଼ିମେଡ଼ି** - *ଗ:* (ଅ.) : ଶାନ୍ତ ପରିସ୍ଥିତି ଅଶାନ୍ତ ହେବା

**ଖେଡ଼େଇବା** - *ଗ:* (କ୍ରି.) : ଦଳରୁ ବାସନ୍ଦ କରିବା

**ଖେଣା** - *ଅ:* (ବିଂ.) : ବୁଢ଼ା

**ଖେଣ୍ଡେଇବା** - *ରା:ଖୋ:ବା:କୋ:* (କ୍ରି.) : ଉସ୍କେଇବା, ଦୋଷ ଧରାଇବା, ବାରମ୍ବାର ଚିଟିକାରୀ କରିବା, କୌଣସି କଥା ଅନ୍ୟ ଜଣକୁ କହିଦେବା

**ଖେଣ୍ଟେ** - *ଢେ:* (ଅ.) : ଗୋଟେ

**ଖେତଚରୁ** - *କନ୍ଧ:* (ବି.) : ଏକପ୍ରକାର କୃଷିଭିତ୍ତିକ ପର୍ବ, କ୍ଷେତରେ ରନ୍ଧା ଅନ୍ନ

**ଖେତବନ୍ଧା** - *ଚା:* (କ୍ରି.) : ବିଲରୁ ଶେଷ ଧାନ କଟା ହେଲାବେଳେ ଅନୁଷ୍ଠିତ ପୂଜା କର୍ମ

**ଖେଡା** - *ଅନେ:* (ବି.ବିଂ.) : ବୋକା, କମ୍ ବୁଦ୍ଧି ସଂପନ୍ନ ବ୍ୟକ୍ତି,

**ଖେଡିବା** - *କନ୍ଧ:* (କ୍ରି.) : ପହଞ୍ଚିବା

**ଖେଦ୍‌ବା** - *ସ:ସୁ:ବର:ଝା:* (କ୍ରି.) : ତଡ଼ିଦେବା, ଘଉଡ଼ାଇବା

**ଖେଦର** - *ଗ:* (ବିଂ.) : ଖେଦ, ଗ୍ଲାନି

**ଖେଦା** - *ଅନେ:* (ବି.) : ପୁସ୍ତକର ବିଡ଼ା, ତାଳପତ୍ର ଖେଦା, ଚାଙ୍ଗୁଡିଏ ପରିମାଣର ଜିନିଷ, ବନ୍ୟ ପଶୁକୁ ଚାରି ଦିଗରୁ ଘଉଡ଼ାଇ ଆଣି ଶିକାର କରିବା, ପାରିଧି, ମୃଗୟା, ହାତୀଧରିବା ଖୁଆଡ଼

**ଖେଦା ମାରିବା** - *ବୌ:* (ବି.) : ତଡ଼ା ଖାଇବା

**ଖେଦାଯିବା** - *ନବ:କୋ:* (ବି.କ୍ରି.) : ଗାଈ ଗୋରୁଙ୍କ ଯୌନକ୍ରିୟା, ପଶୁମାନଙ୍କର ସଙ୍ଗମ ଇଚ୍ଛା ହେବା ଅବସ୍ଥା

**ଖେଦେ** - *ସୁ:ଅ:* (ବି.ବିଂ.) : ଦଳେ

**ଖେନା** - *କଳା:ସୁ:* (ବି.ବିଂ.) : ଶାଖା, ନାକ କୁହା

**ଖେନି** - *ବ:* (ବି.) : ପ୍ରଶାଖା, ଡାଳ

**ଖେନ୍ତେଇବା** - *ବା:ଅ:* (କ୍ରି.) : ଖଟେଇହେବା

**ଖେନ୍ଦା** - *କୋ:* (ବି.) : ଶାଖା, ଶାଖା ପ୍ରଶାଖା

**ଖେନ୍ନା** - *ସୁ:* (ବିଂ.) : ଅସତ୍ୟ ବ୍ୟକ୍ତି

**ଖେପ** - *ଅନେ:* (ବି.) : ନିକ୍ଷେପ, ଥର, ଥରେ ଜାଲ ପକାଇ ମାଛ ମାରିବା,

**ଖେପ୍‌ଚାବା** - *ସୁ:ସ:* (କ୍ରି.) : ଲୁଚେଇବା

**ଖେପଖେପକି** - *ନ:* (କ୍ରି.ବିଂ.) : ଥରଥର କରି, ଥରୁଟିଏ ଲେଖାଏଁ କରି

**ଖେପା** - *ଅନେ:* (ବି.) : ପାଗଳା, ଥର, ଏକ ପ୍ରକାର ଜାଲ, ପଇସା ମାରୁଥିବା ଲୋକ

**ଖେପିଯିବା** - *କେ:କ:କଳା:* (କ୍ରି.) : ବ୍ୟାପିଯିବା, ଆଗେଇଯିବା, ମାଡ଼ିଯିବା, ଆକ୍ରମଣ କରିବା, ପହଁଚିଯିବା

**ଖେବ୍‌ଡ଼ିବା** - *ବୌ:* (କ୍ରି.) : ଝୁଣ୍ଟେଇ ହେବା, ଝୁଣ୍ଟି ପଡ଼ିବା

**ଖେବ୍‌ଡ଼େଇବା** - *ବୌ:* (କ୍ରି.) : ଝୁଣ୍ଟି ହେବା

**ଖେବା** - *ଅ:* (କ୍ରି.) : ଖାଇବା

**ଖେମ୍‌ତା** - *ବୌ:* (ବି.) : କ୍ଷମତା

**ଖେମଟା** - *ଢେ:ଗ:* (ବି.) : ଏକ ନୃତ୍ୟ ସଙ୍ଗୀତର ତାଳ, ଗ୍ରାମ୍ୟବାଦ୍ୟ ବିଶେଷ

**ଖେମତାବାଲା** - *କ:* (ବି.) : ବଳୁଆ, ଶକ୍ତିଶାଳୀ

**ଖେମାକ୍** - *ଗଦ୍ୟ:* (ବି.) : ଦମ୍ଭ

**ଖେମୁ, ଖେମୁନା** - *କଳା:* (କ୍ରି.) : ଖାଇବୁ

**ଖେର** - *କୋ:ରା:* (ବି.) : କ୍ଷିଅର

**ଖେର୍‌ଖେରି** - *କଳା:* (ବି.) : କୋକିଶିଆଳି

**ଖେର୍‌ଖେସା** - *ସୁ:ସ:ସୁବ:* (ବିଂ.ବି.) : ପାଉଁଶିଆ, ଯାହାର ଚର୍ମ ଚିକ୍କଣ ନୁହେଁ(ସ୍ତ୍ରୀ), ଖାରଖାସୁର ସ୍ତ୍ରୀ ଲିଙ୍ଗ

**ଖେର୍‌ପାଗୁଡ଼ିଆ** - *ବୌ:* (ବି.) : ବଙ୍କା ଗୋଡ଼ଥିବା ଲୋକ

**ଖେଲ** - *ବା:* (ବି.) : ସାହି

**ଖେଲେ** - *କଳା:* (କ୍ରି.) : ଖାଇଲେ

**ଖେଳିଆ** - *ମ:* (ବି.) : ଠେକୁଆ

**ଖେଳିଦେବା** - *ଗ:* (କ୍ରି.) : ତାସ କଉଡ଼ି ଆଦି ଜୁଆ ଖେଳି ଟଙ୍କା ହାରି ଦେବା

**ଖେଳୁଆ** - *କ:* (ବି.) : ବିହୁଡ଼ା ସମୟରେ ଧାନଗଛକୁ ପରସ୍ପରଠାରୁ ଅଲଗା କରିବା

**ଖେଳୁଆପଡ଼ିବା** - *ଅ:* (କ୍ରି.) : ଗାଈ ଋତୁମତୀ ହେବା

**ଖେଳେଇ** - *କେ:ବୌ:ବା:ଗ:* (ଅ.ବି.) : ବିଛୁଡ଼ି ହୋଇପଡ଼ିବା, ଯହିଁରେ ମାଛ ପୂରାଇ

କେଉଟ ଘରକୁ ଫେରେ, କାଇଁଚରେ ତିଆରି ହୋଇଥିବା ମାଛରଖା ପାତ୍ର

**ଖେଳେଇଭାତ** - *ଗଞ୍ଜ:* (ବି.) : ପିଲାଙ୍କ ଭୋଜି

**ଖେଣ** - *ଗଦ୍ୟ:* (ବି.) : ମରୁଭୂମିରେ ଉତ୍ପାଦିତ ଏକ ପ୍ରକାର ପରିବା

**ଖେସ୍‌କୁଟୁମ** - *ଗ୍ୱ:* (ବି.) : ରକ୍ତ ସଂପର୍କୀୟ ଲୋକ

**ଖେସା** - *କେ:* (ଅ.) : ଥଟ୍ଟା କରିବା

**ଖେସାରି** - *ଭ:ନ:* (ବି.) : ଶସ୍ୟ ବିଶେଷ, ଏକ ପ୍ରକାର ଡାଲି, ଖିସାରି

**ଖେଁଖେର୍‌ଲି** - *ସୁବ:* (ବି.) : ବିଲୁଆ ପରି ଜୀବ

**ଖେଁଡ଼ସି** - *ଝ୍ୱ:* (ବିଂ.) : କୌଣସି ଜିନିଷ ଖଣ୍ଡ

**ଖେଁଷ୍ଟିତେଲ** - *ଚଉ:* (କ୍ରି.) : ବହୁତ ମାଡ ଦେବା ଅର୍ଥରେ

**ଖେଂଚ୍ ପେଂଚ୍** - *ଗୌ:* (ବି.) : ହଇରାଣ

**ଖେଂଙ୍କା** - *କଳା:* (ବିଂ.) : ପେଛା

**ଖୋ** - *ନୂ:* (ଅ.) : ନାସ୍ତି ସୂଚକ ଶବ୍ଦ, ଅରାଜି, ଆଶ୍ଚର୍ଯ୍ୟ ସୂଚକ

**ଖୋଇ** - *ଅନେ:* (ବି.) : ଅଭ୍ୟାସ, ମନ୍ଦ ଅଭ୍ୟାସ

**ଖୋକୋ** - *ନୂ:* (ବି.) : ଖେଳ ବିଶେଷ

**ଖୋଚିବା** - *କଳା:* (କ୍ରି.) : ଖୋଷିବା

**ଖୋଜ** - *ଅନେ:* (ବି.) : ପାଦ ଚିହ୍ନ, ପାହୁଣ୍ଡ, ମୃଦଙ୍ଗ, ପାଦ, ପାଦଚିହ୍ନ (ବିଶେଷ କରି ପଶୁଙ୍କ ଅର୍ଥରେ ବ୍ୟବହୃତ ହୁଏ)

**ଖୋଜାଇ** - *କୋ:* (ବି.) : କୁଣ୍ଡିଆ

**ଖୋଜା ଲୋଡ଼ା** - *ଅ:* (ବି.) : ଅନୁସନ୍ଧାନ

**ଖୋଜି** - *ଗଦ୍ୟ:* (ବି.) : ସହାୟକ

**ଖୋଟା** - *ଅ:* (ବିଂ.) : ଦୂଷିତ

**ଖୋଡ଼ା** - *ଗ:* (ବି.) : ନିଆଁହୁଳା

**ଖୋଡ଼ିଆ** - *କନ୍ଧ:* (ବିଂ.) : ଅଳସୁଆ

**ଖୋଦ୍** - *ନ:* (ଅ.) : ନିଜେ

**ଖୋପ** - *ଅନେ:* (ବି.) : କଣ ମୋଞ୍ଜା, କାଛରେ ତିଆରି କରିଥିବା ସ୍ଥାନ, କୋଟର, ଗହ୍ବର, କାଛରେ ଖୋଳା ଠଣା, ଡ୍ରେସିଂ ଟେବୁଲରେ ଥିବା ଖୋପ, ଗାତ

**ଖୋପା** - *ଢ:* (ବି.) : ଗର୍ଭ

**ଖୋବ** - *ନ:* (ବି.) : ମୁଥ

**ଖୋବ୍** - *ଚଉ:କଳା:ସୁ:* (ବି.ବିଂ.) : ଖୁବ୍, ବହୁତ

**ଖୋବ୍ ଦୁଣେ** - *ନୂ:* (ବିଂ.) : ବହୁତ

**ଖୋରପୋଷ** - *ଗ୍ୱ:* (ବି.) : ଖୋରାକ ପୋଷାକ

**ଖୋରଲୋ ଖାରଲୋ** - *କଳା:* (କ୍ରି.ବିଂ.) : ଯାହିଁ ତାହିଁ ଭାବରେ, ଅଯତ୍ନ ଭାବରେ

**ଖୋରାକି** - *ସୁ:ସଂ:* (ବି.) : ଖାଦ୍ୟ ପାଇଁ ଦିଆଯାଇଥିବା ଅର୍ଥ, ଖାଇବା ପାଉଣା, ଭାତିଆ, ଦେୟ

**ଖୋରି** - *କଳା:* (ବି.) : ଖାଇବାପାତ୍ର, କଂସା, ପଖାଳ ଖାଇବା ପାତ୍ର

**ଖୋରେ** - *ନୂ:* (ଅ.) : ନାସ୍ତି ସୂଚକ, ଅରାଜି,

**ଖୋଲ୍‌କି** - *କୋ:* (ବି.) : ଗୁମ୍ଫା, ଗୁହା

**ଖୋଳ** - *ନ:ପଦ୍ୟ:ଦେ:* (ବି.) ବାଦ୍ୟ, ସଂକୀର୍ତ୍ତନ ଓ ପାଲାରେ ବ୍ୟବହୃତ ବାଦ୍ୟଯନ୍ତ୍ର, ମାଲ୍ ରଖିବା ଯାଗା, ଡାଙ୍କୁଣି

**ଖୋଷାନି** - *କଳା:* (ବି.) : ଖୋଷିବା ପ୍ରକ୍ରିୟା

**ଖୋଷା, ପତ୍ରଖୋଷା** - *ଖୋ:* (ବି.) : ଜୁଡା, ପତ୍ରରେ ବସା

**ଖୋସଣି ଗୁଞ୍ଜା** - *ସଂ:* (ବିଂ.) : ଲାଞ୍ଚ

**ଖୋସଣୀ** - *ଜ:* (ବି.) : ପିନ୍ଧାଗଣ୍ଠି

**ଖୌଁଙ୍ଗିଯିବା** - *ସ:* (କ୍ରି.) : ଭଣା ହୋଇଯିବା

**ଖୌଁଙ୍ଗେବଢେ** - *ସ:* (ବି.) : ଭଣା ଅଧିକ

**ଖୌଁଡ଼** - *ସୁ:* (ବି.) : କନ୍ଦ

**ଖୌଁଡ଼ ମଧୁର** - *ସ:* (ବି.) : ଅତି ମଧୁର (ମିଠା)

**ଖୌଁଡ଼ି** - *ଅନେ:* (ବି) : କୂଳ ବା ତଟ, ମାପ ଅର୍ଥରେ କୋଡ଼ିଏ ତାମ୍ବି, ନଦୀକୂଳ, କୋଡ଼ିଏ ତାମ୍ବି ମାପ କିମ୍ବା କୋଡ଼ିଏ ଅଡ଼ା

**ଖୌଁଡ଼ିଝୁରି** - *ସ:* (ବି.) : ଖଣ୍ଡମାଛ, ମାଛ ଖଣ୍ଡ

**ଖୌଁଣ୍ ଖୁରସା** - *ସ:* (ବି.) : ଖଣ୍ଡ ଶାକର

**ଖୌଁଦା** - *ନତ:* (ବି.) : ପଣିକିଆ

**ଖଂଗ୍ରେଇବା** - *କଳା:* (କ୍ରି.) : ଦେଖିବା, ଅନୁମାନ କରିବା

**ଖଂଗାର** - *କଳା:* (ବିଂ.) : ଫୁସା, ପିଲାମାନଙ୍କୁ ଚୋରିକରି ନେଇଯାଉଥିବା ଲୋକ

**ଖଂଜ** - *ଚୌ:* (ବି.) : ସୁବିଧା, ସୁବିଧା କରି(କ୍ରି.), ବାହାନା (plea)

**ଖଂଜା** - *ରା:ସଂ:ଝା:* (ବି.) : କୋଠରୀ, ଚାରିପଟ ପାଚେରୀ ବେଢା ଘର; ତଳ, ମଝି ଓ ଉପର ସ୍ତର ହୋଇ ଲାଗି ରହିଥିବା ଘରମାନ, ଯୋଗାଡ଼

**ଖଂଜା ବୁର୍‌ବୁଡା** - *ଚୌ:* (ବି.) : ଟଙ୍କା ଯୋଗାଡ଼

**ଖା'ଡ଼ିଆ, ଖରଡିଆ** - *ନ:* (ବି.) : ବାଉଁଶରେ ବୁଣା ବଡ଼ ପାତ୍ର (ପ୍ରାୟ ୩, ୪ ଭରଣ ଚାଉଳ, ଧାନ ରହିବା)

# ଗ

**ଗଅକୁ** - *କଡ଼:* (ବି.) : ଭାଲିଆ

**ଗଅଣ କଂସେ** - *ଭ:* (ବି.) : ଅଧାରୁ ବେଶୀ କଂସାଯାଏ ପରିପୂର୍ଣ୍ଣ

**ଗଅଦ୍** - *ନବ:* (ବି.) : ଗତକର୍ମ

**ଗଅରେନ୍** - *କଳା:* (ବି.) : ଗଉଡୁଣୀ

**ଗଅଁଟିଆ** - *କଳା:* (ବି.) : ରାଜତନ୍ତ୍ର କାଳୀନ ଗ୍ରାମମୁଖ୍ୟ, ଗଉନ୍ତିଆ

**ଗଅଁଠେ** - *ଖୋ:* (ବିଂ.) : ତିନି ପା'(ମାପର ଏକ ପରିଭାଷା) ମାନକ

**ଗଅଁଠେଇବା** - *ଖୋ:* (କ୍ରି.) : ଗଣ୍ଠି ପକାଇବା

**ଗଅଁଲିଆ** - *ସ:କଳା:* (ବିଂ.) : ଗାଉଁଲି ଲୋକ, ଗାଉଁଲିଆ, ଗାଁରେ ରହୁଥିବା ବ୍ୟକ୍ତି, ସ୍ମାର୍ଟ ହୋଇ ନଥିବା ଲୋକ

**ଗଅଞ୍ଜୁ** - *ଗ:* (ବି.) : ନିମ୍ନଭୂମି, ଜଳପ୍ଲାବିତ ଭୂମି

**ଗଇ** - *ଅନେ:* (ବି.) : କାନ ଭିତର ମଇଳା ବସ୍ତୁ, ଝିଅସାଙ୍ଗ, କାନଗୁହା, ଆବୁ, ପୁରୁଣା ଦରଜ

**ଗଇଆଁ** - *କେନ୍ଦୁ:ଖୋ:* (ବିଂ.) : କାମ କରିବାକୁ କୁଣ୍ଠା ପ୍ରକାଶ କରୁଥିବା

**ଗଇନ୍ତି** - *ଭ:* (ବି.) : ମାଟି ହାଣିବା ଯନ୍ତ୍ର

**ଗଇରତ୍** - *ଅ:* (ବି.) : ଲଜ୍ୟା

**ଗଇଣ** - *ଗ:* (ବି.) : ଧଳା ରଙ୍ଗର କ୍ଷୁଦ୍ର ଗୁଳ୍ମପୁଷ୍ପ

**ଗଇଁ** - *ଅନେ:* (ବି.) : ବଡ଼ ଭଉଣୀର ସ୍ୱାମୀ, ବ୍ରାହ୍ମଣ ଲୋକେ ଭିଣୋଇକୁ 'ଗଇଁ' ଡାକନ୍ତି, ଭିଣୋଇଁ, ମାଡ଼ ଫଳରେ ହେବା ଯନ୍ତ୍ରଣା

**ଗଇଁଆ** - *ଅ:* (ବିଂ.) : ପ୍ରଚୁର ମାଡ଼ଖାଇ ମଧ୍ୟ ନ ବଦଳିବା

**ଗଇଁକାଢିବା** - *ଦେ:* (କ୍ରି.) ପରଛିଦ୍ର ଖୋଜିବା

**ଗଇଁଠା** - *ଅନେ:* (ବି.) : ଚାଉଳ ଚୂନାରେ ତିଆରି ଛୋଟଛୋଟ ସିଝା ପିଠା, କ୍ଷୀର, ଚାଉଳ, ଚିନିରେ ପ୍ରସ୍ତୁତ ଖିରି ବିଶେଷ, ଚାଉଳଚୂନା ଏବଂ ଗୁଡ଼ ତିଆରି ପିଠା, ଛିଣ୍ଡା ଲୁଗାର ଗଣ୍ଠି

**ଗଇଁଠାଳ** - *ଦେ:ଗ:ବା:ନ:* (ବି.) : ଗଣ୍ଠି, ବିବାହ ବେଦୀରେ ବରକନ୍ୟାଙ୍କ ଲୁଗାରେ ଗଣ୍ଠି ପକାଇବା, ବର କନ୍ୟାଙ୍କ ସଂଯୋଗକାରୀ ଲୁଗା

**ଗଇଁଠି** - *ଦେ:* (ବି.) : ଛନ୍ଦାଛନ୍ଦି ହୋଇ ବସିବା

**ଗଇଁତି** - *ଦେ:ଗ:ଖୋ:* (ବି.) : ମାଟି ଖୋଳିବା କାଙ୍କ

**ଗଇଁମାରୁ** - *ଚ୍ଚ:* (ବିଂ.) : ଚୁପ୍‌ଶଇତାନ୍

**ଗଉଦ୍‌ଗୋଖା** - *ଦେ:* (ବି.) : ଗଜମୂର୍ଖ, ଅଖାଡୁଆ

**ଗଉଡ଼** - *ଗ:ନ:ଦେ:* (ବି.) : ଗୋପାଳ ଜାତି ବିଶେଷ

**ଗଉଡ୍ଡ ଚିଲା** - *ଚୌ:* (ବି.) : ଥଣ୍ଟିଆ ଜାତୀୟ ମାଛ

**ଗଉଡ଼ବାଉଡ଼** - *ଗ:* (ବି.) : ଗଉଡ଼ ଆଦି ଜାତିବିଶେଷ

**ଗଉଡ଼ ବେଢ** - *ଗ:* (ବି.) : ଗୋପାଳ ଜାତି

**ଗଉଡ଼ିଆ** - *ଦେ:କଳା:ଖୋ:* (ବି.ବିଂ.) : ଏକବାଗିଆ ବୁଦ୍ଧି, ଗାଇଆଳ, ଗାଇ ରଖୁଆଳ, ପାଉଣା ନେଇ ସମସ୍ତଙ୍କର ଗୋରୁ ଚରାଉଥିବା ବ୍ୟକ୍ତି, ମୂର୍ଖ, ହୁଣ୍ଡା, ମୋଟା ବୁଦ୍ଧିଆ

**ଗଉଡ଼ିଆଛତା** - *ଢ:* (ବି.) : ତାଳପତ୍ରରଛତା

**ଗଉଡ଼ିଆ ପାଞ୍ଚଣ** - *ଖୋ:* (ବିଂ.) : ବଡ଼ମୋଟା ଏବଂ ମଜଭୁତ୍ ବାଡ଼ି

**ଗଉଡୁଣୀପୋକ** - *ନ:* (ବି.) : ଏକ ପ୍ରକାର କଳାକଳା ବିଛା ଜାତୀୟ ଜୀବ

**ଗଉଣି** - *ନ:ଦେ:କ:* (ବି.) : ନଉତି (ବେତ ନିର୍ମିତ ଶସ୍ୟମପା ପାତ୍ର) ୩ତୁମ୍ବ = ୧ନଉତି (ଛଅ ଡିବା, ବାଇଅଡା ପରିମାଣ), ଧାନବୁଣିବା ପାତ୍ର, ବେତରେ ତିଆରି ଧାନ, ଶସ୍ୟ ମାପିବା ଯନ୍ତ୍ର

**ଗଉତିଆ** - *ଗଦ୍ୟ:* (ବି.) : କେଳାଜାତି

**ଗଉଦ** - *ଗ:* (ବି.) : ଗରମ ଗୁଳଗୁଳି, ଝାଳ ବୋହିବା ଗରମ

**ଗଉରା** - *ଗ:* (ବି.) : ଗୋରାବର୍ଣ୍ଣ

**ଗଉରେନ** - *ଝା:ସୁ:* (ବି.) : ଗଉଡୁଣୀ

**ଗଉର୍ ଚୁଲା** - *ସ:* (ବି.) : ଏକ ପ୍ରକାର ମାଛ

**ଗଉଁଆ** - *ଅ:ସ:ଗ:* (ବିଂ.ବି.) : ଗର୍ବୀ, ଦିମାକିଆ, ଗୁମ୍‌ମାରି ବସିବା

**ଗଏଁଟ୍** - *ନୂ:* (ବି.) : ଗଣ୍ଠି

**ଗଏଁଠ୍** - *କଳା:* (ବି.) : ଗଣ୍ଠି, ଗ୍ରନ୍ଥି

**ଗଏଁରା** - *କଳା:* (ବି.) : ଚିଂକ

**ଗଖା** - *ଅନେ:* (ବିଂ.ବି.) : ବଡ,

**ଗଗ୍ରି** - *ମ:* (ବି.) : ଗରା

**ଗଗଛ** - *ଦେ:* (ବି.) : ଗେଲ କରିବା, ଖେଳାଇବା

**ଗଗପାଞ୍ଚି** - *ଗ:ଗଞ:* (ବି.) : ମା'ର କୋଳରେ ପିଲାଙ୍କ ଏକ ପ୍ରକାର ଖେଳ

**ଗଗାବା** - *ସ:* (କ୍ରି.) : ପାଟି କରିବା, ଜୋର୍‌ରେ ପାଟି କରିବା

**ଗଗେଇଣ** - *ଗଞ:* (ବି.) : ଗୟସ ଫୁଲ

**ଗଙ୍ଗାକୁଳିଆ** - *କ:* (ବି.) : ଏକପ୍ରକାର ଲେମ୍ବୁ ଗଛ

**ଗଙ୍ଗାଳଜିଆ** - *ଚ୍ଚ:* (ବିଂ.) : ମହାମିଛୁଆ, ମାଲଭାଇ

**ଗଙ୍ଗାଝୁଲି** - *ସ:* (ବି.) : ବାସ୍ନାଧାନ ବିଶେଷ

**ଗଙ୍ଗାଫଡିଙ୍ଗ** - *ଚ:* (ବି.) : ଏକପ୍ରକାର ପତଙ୍ଗ, ଯାହାକୁ ନେଇ ପିଲାମାନେ ଖେଳନ୍ତି

**ଗଙ୍ଗେଇ** - *ଖୋ:ଦେ:ପଦ୍ୟ:* (ବି.) : ପାଣିରେ ବୁଡ଼ି ମାଛ ଖାଉଥିବା ଏକ ପ୍ରକାର ପକ୍ଷୀ, ଘାସ ଜାତୀୟ ଫସଲ, ରକ୍‌ସି, ମାଛରଙ୍କା

**ଗଙ୍ଗେଇତୋଡ଼ି** - *ଯା:* (ବି.) : ଏକପ୍ରକାର ତୋଡ଼ିମାଛ

**ଗଘା** - *ଗ:* (ବି.) : ଗେଣ୍ଡା

**ଗଚ୍** - *କଳା:ନୂ:* (ବି.) : ଗଛ, ବୃକ୍ଷ

**ଗଚ୍ଛିବା** - *ଗ:* (କ୍ରି.) : ଦେହକୁ ସୁହାଇବା

**ଗଚ୍ ଠୁକୁ** - *ନୂ:* (ବି.) : କାଠହଣା ଚଢେଇ

**ଗଛ ଇଞ୍ଜେସନ୍** - *ନ:* (ବି.) : ସାଲାଇନ୍

**ଗଛଜଙ୍ଗା** - *ଗଦ୍ୟ:* (ବି.) : ଏକ ଗାଳି

**ଗଛପତ୍ର କାନ୍ଦିବା** - *ସଂ:* (କ୍ରି.) : ସମସ୍ତଙ୍କ ଆଖିରେ ଲୁହ ଆସିବା

**ଗଛି** - *ମ:* (ବି.) : ସଂବାଲୁଆ

**ଗଛିଗାଛି** - *ଦେ:* (ବି.) : ଏକା କରିବା

**ଗଛେଇବା** - *ଦେ:* (କ୍ରି.) : ଗଦାକରିବା

**ଗଜ** - *ଅନେ:* (ବି.ବିଂ.) : ମିସ୍ତ୍ରୀଘର ପଲସ୍ତରା କଲାବେଳେ ବ୍ୟବହାର କରୁଥିବା ଏକ ପ୍ରକାର କାଠର ବାଡ଼ି, ମୁର୍ଖ, ବାଉଁଶ ନିର୍ମିତ ଏକ ଯନ୍ତ୍ର, ଯାହାର ଦୁଇପାଖ ଗୋଜିଆ ଓ ମଝିରେ ଛିଦ୍ର ଥାଏ। ଏହି ଛିଦ୍ରରେ ବୋଝେଇ ଦଉଡ଼ି ପୂରାଇ ଚାଳରେ ଗଣ୍ଠି ପକାଯାଏ, ଦୁଇହାତ ପରିମାଣ ମାପ, ହାତୀ, ଏକଗଜ ପରିମିତ

**ଗଜ୍‌କଣା** - *ଦେ:* (ବି.) : ପଚା କଦଳୀ

**ଗଜ୍‌ଗଜ୍** - *ଦେ:* (ବି.) : ଜନସମାବେଶ

**ଗଜ୍‌ଗଜାବା** - *ସ:* (କ୍ରି.) : ବାଜା, ନାଚ, ଗୀତରେ ଗାଁଟା ସାରା କୋଳାହଳ କରିବା

**ଗଜ୍‌ଢ଼ିବା** - *ମା:* (କ୍ରି.) : ଦାନ୍ତ ଦେଖେଇ ହସିବା

**ଗଜ୍‌ବାଡି** - *କଳା:* (ବି.) : କାନ୍ଥ ପଲସ୍ତରାକୁ ସମାନ ଓ ଚିକ୍କଣ କରିବା ପାଇଁ ମିସ୍ତ୍ରୀମାନେ ବ୍ୟବହାର କରୁଥିବା ଲମ୍ବା ଦଣ୍ଡ

**ଗଜ୍‌ବାହାଲ୍** - *କଳା:* (ବି.) : ଗହୀର ଜମି

**ଗଜ୍‌ରା** - *ଦେ:* (ବି.) : ଫୁଲ, ଫୁଲମାଳ

**ଗଜ୍‌ରି** - *କଳା:* (ବି.) : ଗଜା, ଅଙ୍କୁରୋଦଗମ୍

**ଗଜକଢ଼ମା** - *ଚ:* (ବି.) : ମୁହଁ ଗୋଜିଆ ଥିବା ସାମୁଦ୍ରିକ ମାଛ

**ଗଜକନା** - *ଗଜ:* (ବି.) : ବେଣ୍ଡେଜ କନା

**ଗଜକାଠି** - *ଦେ:* (ବି.) : ଦୁଇହାତ ପରିମିତ ମାପକାଠି

**ଗଜଗମନୀ** - *ଖୋ:* (ବିଂ.) : ହାତୀ ପରି ଜମେଇ ଜମେଇ ଧୀରେ ଧୀରେ ଚାଲିବା ସ୍ତ୍ରୀ ଲୋକ

**ଗଜଘଣ୍ଟ** - *ଅ:* (ବି.) : ଉଷୁନା ଚାଉଳ, ଡାଲି, ଖମ୍ବଆଳୁ, କଖାରୁ, ବାଇଗଣ ଘିଅ ଦେଇ ସିଦ୍ଧ ହୁଏ

**ଗଜପୁଟ** - *ଗ:* (ବି.) : ଆୟୁର୍ବେଦ ତୈଳ ପ୍ରସ୍ତୁତି ପରେ ମାଟିରେ ପୋତି ରଖିବା

**ଗଜବଳି** - *ଗଜ:ଗ:* (କ୍ରି.) : ଠାକୁରାଣୀଙ୍କ ଆଗରେ ସାତ ପୋଢ ବା ମଇଁଷୀକୁ ବଳି ଦେବା, ମଇଁଷି ବଳି

**ଗଜବଂଧ ମାଳି** - *ବ:* (ବି.) : ଏକ ପ୍ରକାର ଗଳାରେ ପିନ୍ଧୁଥିବା ମାଳି

**ଗଜମାରିବା** - *ବ୍ରା:* (ବି.) : ଚୋର ଧରିବା ପାଇଁ ଗୁଣିଆ ବା ତାନ୍ତ୍ରିକକୁ ନେଇ ଶ୍ମଶାନରେ ଅଭିଚାର ପ୍ରକ୍ରିୟା ମାଧ୍ୟମରେ ଗୋଳିଆ ବାଉଁଶ ଖଣ୍ଡିଏ ପୋତିବା

**ଗଜମୁଆଁ** - *ନ:* (ବି.) ପର୍ବତ ଆକାର ଶୃଙ୍ଗଥିବା ଭଳି ଲିଆ, ଗୁଡ଼ର ମୁଆଁ

**ଗଜମୁହାଁ** - *ଦେ:* (ବି.) : ଶିଖି ନଥିବା ଖଇ

**ଗଜମୂର୍ଖ** - *ଦେ:ଅ:* (ବିଂ.) : ନିର୍ବୁଦ୍ଧିଆ

**ଗଜରଗଜର ହେବା** - *ନ:* (କ୍ରି.) : ଲଗାତାର କଳି କରିବା, ପାଟି କରିବା

**ଗଜରା ମାଳି** - *ଖୋ:* (ବି.) : ବେକହାର ଯାହା ମାଳି ଦ୍ୱାରା ନିର୍ମିତ

**ଗଜ ଶାହାଣୀ** - *ଗ:* (ବି.) : ରାଜାଙ୍କ ହସ୍ତୀ ରକ୍ଷକ

**ଗଜା** - *ଅନେ:* (ବିଂ.ବି.) ଅଙ୍କୁର, ଖାଦ୍ୟବିଶେଷ, ଅଙ୍କୁରିବା, ଏକପ୍ରକାର ମିଠାଇ, ଅଙ୍କୁର ଅବସ୍ଥା, ମିଠାଇ ବିଶେଷ, ଗଛର ପୂର୍ବ ଅବସ୍ଥା

**ଗଜାଇବା** - *ଅ:* (କ୍ରି.) : ଗଜୁରିବା, କଅଁଳିବା

**ଗଜାଟୋକା** - *ସ:* (ବିଂ.) : କମ୍ ବୟସର ଯୁବକ, ସୁନ୍ଦର ଯୁବକ

**ଗଜା ବଉସିଆ** - *ଦେ:* (ବି.) : ଗାଳିବିଶେଷ, କମ ବୟସ୍କ ଯୁବକ

**ଗଜା ବୟସ** - *ଅ:* (ବି.) : ଯୁବକ ଅବସ୍ଥା

**ଗଜାଭେଣିଆ** - *କଳା:* (ବିଂ.) : ତରୁଣ ଅବସ୍ଥା, ପୁରୁଷର ଯୌବନାବସ୍ଥା

**ଗଜାମରୁଡ଼ି** - *ଦେ:ସ:* (ବି.) : ଧାନବୁଣା ପରେ ଗଛନହୋଇ ମରିଯିବା, ବିହନ ଗଜାବେଳେ ବର୍ଷା ନହେବା, ବିହନ ଗଜାବେଳୁ ମରିଯିବା

**ଗଜାମୁଆଁ** - *ଗ:* (ବି.) : ମୁଆଁର ଉପରଅଂଶ ଦେଉଳ ପରି ଉଚ୍ଚା ହୋଇଥିବା, ପିରାମିଡ଼ ଆକୃତିର ମୁଆଁ

**ଗଜାମୁଗ** - *ଦେ:ଖୋ:ସୁ:* (ବିଂ.ବି.) : ମୁଗକୁ ପାଣିରେ ଭିଜାଇବା ପରେ ତାର ଅଙ୍କୁରିତ ଅବସ୍ଥା, ଗଜାମୁଗ ମଇତ୍ର ବସିବା, ବନ୍ଧୁତା ବା ସଂପର୍କରଏକ ପ୍ରଚଳିତ ନାମ, ଦୁଟି ଅଙ୍କ ମଧ୍ୟରେ (ପ୍ରକୃତ ଅର୍ଥରେ ଗଜା ହୋଇଥିବା ମୁଗ)

**ଗଜି** - *ଅନେ:* (ବି.ବିଂ.) : କେଶର କୀଟ ବିଶେଷ, ପଦ୍ମ ନାଡ଼, ନିଖ, ଉକୁଣି ଡିମ୍ବ

**ଗଜିକରିଆ** - *ସ:* (ବି.) : ପତଳା ରୁମାଲ୍ ପରି ଗାମୁଛା

**ଗଜିଗାଣ୍ଡି** - *ଦେ:* (ବି.) : କେଚ୍‌କେଚ୍ ହେବା

**ଗଜିଘା** - *ଗ:* (ବି.) : ଛୁଆଙ୍କ ମୁଣ୍ଡର ଘା

**ଗଜିରି** - *ଗ:ଗଜ:* (ବି.) : ଛଅ ଶିଶୁଙ୍କ ଏକ ପ୍ରକାର ବାତ ରୋଗ, ଶିଶୁରୋଗ

**ଗଜୁରିବା** - *ସଂନ:* (କ୍ରି.) : କଅଁଳିବା, ଦ୍ୱି'ପତ୍ର ହେବା, ଗଜାଫିଟି ବାହାରିବା

**ଗଞ୍ଜ** - *ପୁ:ଗ:ନ:* (ବି.ବିଂ.) : ଖଣ୍ଡ, ଅଂଶ, ଧନାଗାର, ବ୍ୟବସାୟ, ଶାସନ କେନ୍ଦ୍ର, ନିମ୍ନ ଜଳପ୍ଲାବିତ ଅଞ୍ଚଳ, ପିତଳ ନିର୍ମିତ ପାତ୍ର, ଖଣ୍ଡଖଣ୍ଡ କରିବା

**ଗଞ୍ଜଣା** - *ଗ:ଜ:ନ:କେ:* (ବି.) : ତିରସ୍କାର, କଟୁମନ୍ତବ୍ୟ, ବାରମ୍ବାର ମୃଦୁଗାଳି, କଷଣ, ଗାଳି, ଅତ୍ୟାଚାର, କଷ୍ଟ

**ଗଞ୍ଜପା** - *ଗ:* (ବି.) : ଗଞ୍ଜାମର ଦିଗପହଣ୍ଡି, ଚିକିଟି ପ୍ରଭୃତି ଅଞ୍ଚଳରେ ପ୍ରଚଳିତ ଗୋଲାକୃତି ତାସଖେଳ

**ଗଞ୍ଜା** - *ନବ:ନ:କ:* (ବି.) : ଅଣ୍ଡିରା କୁକୁଡ଼ା

**ଗଞ୍ଜି** - *ନ:* (ବି.) : ପିତଳ ପାତ୍ର, ରସ ପାତ୍ର, ସାର୍ଟ ତଳେ ପିନ୍ଧୁଥିବା ପତଳା ବସ୍ତ୍ର

**ଗଞ୍ଜେଇ** - *ନ:* (ବି.) : ଏକ ନିଶାଗଛ ଯାହାର"ପତ୍ର" ଓ "କଲି"କୁ(ଜଟା) ଚିଲମରେ ଟାଣନ୍ତି (ନିଆଁଦେଇ) ପତ୍ରକୁ କଞ୍ଚାବାଟି ପଣାରେ ମଧ୍ୟ ପିଆଯାଏ।

**ଗଞ୍ଜୋଡ଼** - *ନ:* (ବିଂ.) : ଗଞ୍ଜେଇ ଅଭ୍ୟାସ ଥିବା (ବ୍ୟକ୍ତି)

**ଗଟରା** - *ଗ:* (ବିଂ.) : ଠକିବା, ଭଣ୍ଡିବା ଲୋକ

**ଗଟାସି** - *କନ:* (ବି.) : ଗୋଇଠି

**ଗଠିଆ** - *ସୁ:* (ବି.) : କର୍ଣ୍ଣ ଭୂଷଣ

**ଗଡ଼ଜାତିଆ** - *ଅ:* (ବି.) : ଗଡ଼ଜାତବାସୀ

**ଗଡ଼ବଡ଼** - *ଅ:* (କ୍ରି.ବିଂ.) : ଗୋଳମାଳ

**ଗଡ଼ ମଠୁଆ** - *ଅ:* (ବି.) : ଅତି ଅଳସୁଆ

**ଗଡ଼ିଆ** - *ଅ:* (ବି.) : କ୍ଷୁଦ୍ରପୁଷ୍କରଣୀ, ଛୋଟ ପୋଖରୀ, ଗଡ଼ର ଅଧିବାସୀ

**ଗଡ଼େଇ** - *ମ:* (ବି.) : ଗଡ଼ିଶା(ମାଛ)

**ଗଡ୍‌ଡାର** - *ରା:* (ବି.) : ଦୁଇ ପାହାଡର ମଧ୍ୟବର୍ତ୍ତୀ ଅଂଶ

**ଗଡ୍‌ପଡ୍** - *ଦେ:* (ବି.) : ଜାଗ୍ରତ ଅବସ୍ଥାରେ ଖଟରେ ଗଡ଼ିବା

**ଗଡତିଆ** - *ସୁବ:* (ବି.) : ଗ୍ରାମଧିପତି, ଗଉଁତିଆ ସାଙ୍ଗିଆ

**ଗଡୁ** - *ଅନେ:* (ବି.) : ନଳ ଲାଗିବା ନୋଟା, ଢାଳ

**ଗଡୁମ୍ ଘଟି** - *ବା:* (ବି.) : କୁମ୍ଭ

**ଗଡେ ସୁମାରି** - *ଭ:* (ବି.) : ମୋଟାମୋଟି ଗଣନା ହିସାବ

**ଗଡ଼** - *ଅନେ:* (ବି.) : ଗଡ଼, ରଜାଙ୍କ ଉଆସ, କାଠଖଣ୍ଡ, ଦୁର୍ଗ, ରାଜଧାନୀ, ରାଜପ୍ରାସାଦ, ଗୋଡ଼

**ଗଡ୍କୁଗଡ୍କୁ** - *କଳା:ଦେ:* (ବି.) : ଗରଗଡ଼, ଧାନଭିତରେ ହେଉଥିବା ଘାସ ବିଶେଷ, ଅଯଥା କଥା କହିବା

**ଗଡ୍ଗୁଡ଼ି** - *ସୁବ:* (ବି.) : ଜୋରରେ ପବନ ବହିବା, ଝଡ଼

**ଗଡ୍ରା** - *କଳା:* (ବି.) : ଅଣ୍ଡିରା ମେଣ୍ଢା

**ଗଡ୍ସମେର** - *କଳା:* (ବି.) ମାଝୀ ବୋଲାଉଥିବା ଗଣ୍ଡ ସଂପ୍ରଦାୟର ବଂଶ ବିଶେଷ

**ଗଡ୍ସେ** - *କଳା:* (ବିଂ.) : ଗୁଣ୍ଡାଏ, ମୁଠାଏ

**ଗଡ଼ଗଡ଼ା** - *ଗ:ଗଞ:* (ବିଂ.ବି.) : ଦେବାଳିଆ, ଦରିଦ୍ର, ଲୋଭୀ, କୃପଣ

**ଗଡ଼ଗଡ଼ି** - *କ:ଭ:* (ବି.) : ତୃଣ ବିଶେଷ

**ଗଡ଼ଗଡ଼ିଆ** - *ସୁବ:ସୁ:* (ବିଂ.) : ତୀଖ ଗଡାଣୀ, ଗଡ଼ାଣିଆ

**ଗଡ଼ଗଡ଼େଇବା** - *ଗଞ:* (ବି.) : ଗାଈର ଗର୍ଭପାତ

**ଗଡ଼ଘାଲି** - *କ:* (ବି.) : ଗାଲେଇକି ଶୋଇବା

**ଗଡ଼ଜାତ** - *ଦେ:* (ବି.) : କରଦରାଜ୍ୟ

**ଗଡ଼ତଳ** - *ଗ:* (ବି.) : ରାଜାଙ୍କ ରାଜଧାନୀର ନିକଟବର୍ତ୍ତୀ ଅଞ୍ଚଳ

**ଗଡ଼ପଡ଼** - *ଅନେ:* (ବି.କ୍ରି.) : ସାମାନ୍ୟ ବିଶ୍ରାମ, ଚେଇଁ ଶୋଇବା

**ଗଡ଼ମାଜିଆ** - *ଗ:* (ବିଂ.) : ଗଡ଼ଜାତରେ ବାସ କରୁଥିବା ଜାତି

**ଗଡ଼ମୁଠା** - *ଗ:* (ବି.) : ଗଡ଼ ନିକଟ ଗ୍ରାମସମୂହ

**ଗଡ଼ରିଆ** - *ସଂ:* (ବିଂ.) : ମେଣ୍ଢାପାଳକ

**ଗଡ଼ା** - *ଅନେ:* (ବି.) : ନାଳ, କାଠଗଡ଼ା, ଗଡ଼ାଣିଆ ରାସ୍ତା, ପୋଖରି, ଜଳାଶୟ, ଖାଲଜମି

**ଗଡ଼ାଉଠା** - *ଗ:* (ବି.) : କ୍ରମନିମ୍ନ, ଗଡ଼ାଣିଆ

**ଗଡ଼ାଣି** - *ଖୋ:* (ବି.) : ଗରା

**ଗଡ଼ାଣ୍ଡିଆ** - *ଚୌ:* (ବିଂ.) : ଗଡ଼ାଣିଆ, ଗଡ଼ାଣି

**ଗଡ଼ାରୁ** - *ମ:* (ବି.) : ମୂଳରୁ

**ଗଡ଼ାରୋଗ** - *ଗଞ:* (ବି.) : ଶିଶୁରୋଗ

**ଗଡ଼ାଲି** - *ରା:* (ବି.) : କୁରାଢି

**ଗଡ଼ି** - *ଗ:ଭ:ପୁ:କନ୍ଧ:* (ବି.) ଖଣ୍ଡ, ସମବୟସ୍କ, ବାଉଁଶ, ତାଳ ବା ନଡ଼ିଆ ଗଛର ଗଣ୍ଡିରେ ତିଆରି ପାଦଚଲା ପୋଲ, ଖୁସୁଣି ଯନ୍ତ୍ର

**ଗଡ଼ିଆ ଗୁଳାଣ** - *ଚ:* (ବି.) : ଦଳେ ଲୋକ ଜାଲ ଧରି ଏକ ସମୟରେ ମାଛ ଧରିବା ଓ ମାଲିକକୁ ଅଧାମାଛ ଦେବା

**ଗଡ଼ିଏ** - *ଦେ:* (ବିଂ.) : ଖଣ୍ଡେ

**ଗଡ଼ିବିଡ଼ି** - *ଗ:* (ବି.) : ବ୍ୟତିବ୍ୟସ୍ତ

**ଗଡ଼ିମାରିବା** - *ଗ:ଦେ:* (କ୍ରି.) : ଚାଉଳ ପ୍ରସ୍ତୁତ ବେଳେ ଅଧିକ ଖୁଦ ହେବା, ନଖାଇ ନପିଇ ମରିବା

**ଗଡ଼ିଶ** - *ଗଞ:* (ବି.) : ମାଛ

**ଗଡ଼ିଶା** - *ଅନେ:* (ବି.ବିଂ.) : ଏକପ୍ରକାର ମାଛ, ୩୦ ପୁଟିର ସମଷ୍ଟିକୁ ଗଡ଼ିଶା କୁହାଯାଏ, ଧାନ୍ୟ ଆଦିଶସ୍ୟର ମାପ

ପରିମାଣ, ଏକ ପ୍ରଜାତିର ପଙ୍କୁଆ ମାଛ, ତିରିଶି ପୌଟି ବା ସାତଭରଣ ଅଧେ ଶସ୍ୟାଦିର ପରିମାଣ

**ଗଡୁ** - *ଅନେ:* (ବି.) : ଲୋଟା, କଂସା ବା ପିତଳର ଛୋଟ ପାଣିପାତ୍ର, ନଳଯୁକ୍ତ ପାଣିପାତ୍ର, ପିତ୍ତଳ ନିର୍ମିତ ପାତ୍ର, ନଳଯୁକ୍ତ ଲୋଟା

**ଗଡୁଆ** - *ଗ:ଗଦ୍ୟ:ଢ଼:* (ବି.କ୍ରି.ବିଂ.) : ଚାଷ ବେଳେ ତଳେ ଲୋଟୁଥିବା ବଳଦ, ପ୍ରଦର୍ଶନ, ବିଳମ୍ବ କରିବା ଲୋକ, ମଠୁଆ

**ଗଡୁଆ ମଙ୍ଗରାଜ** - *ଜ:* (ବିଂ.) : ଅଳସୁଆ

**ଗଡ଼େଇ** - *କେ:ନ:* (ବି.) : ଏକ ପ୍ରକାର ମାଛ, ପୁରୁଣା ମୂଳ

**ଗଡ଼େଇବା** - *କେନ୍ଦୁ:* (କ୍ରି.) : ଖାଇବା ସମୟରେ ଦ୍ୱିତୀୟ ଥର ଦେବା

**ଗଢଣ** - *ଖୋ:* (ବିଂ.) : ରୂପ, ଶରୀର, ଗଠନ

**ଗଢାବାଙ୍କିଆ** - *ଗ:* (ବି.) : ତିଆରି ବା ନିର୍ମାଣ ଜନିତ ତ୍ରୁଟି

**ଗଢେନ୍ ମୁଲ୍** - *ସ:* (ବି.) : ତିଆରି କରିବା ମୂଲ୍ୟ, ଦାମ୍

**ଗଣ୍** - *ସ:* (ବି.) : ଗଣ୍ଡ ସଂପ୍ରଦାୟ

**ଗଣକ** - *ସଂ:* (ବି.) : ଜ୍ୟୋତିଷ

**ଗଣଗଣା** - *ନ:* (ବି.) : ବିଷ୍ଠାରେ ବସୁଥିବା ମାଛି, ପୋକ ଜନ୍ମ ଦେଉଥିବା ମାଛି

**ଗଣଗଣିଆ ମାଛି** - *ଖୋ:* (ବି.) : ବଡ଼ମାଛି, ଅଂଶେଇ

**ଗଣତା** - *ପଦ୍ୟ:* (ବି.) : ସମୂହର ଭାବ, ଗଣିତଶାସ୍ତ୍ର, ପକ୍ଷପାତ, ମେଳି, ଦଳ, ଗୋଷ୍ଠୀ

**ଗଣତି** - *ନ:ପଦ୍ୟ:ଖୋ:* (ବି.କ୍ରି.) : ଖାତିର ନକରିବା, ଗୁରୁତ୍ୱ ନଦେବା, ଗଣିବା, ସଂଖ୍ୟା, ସଂଖ୍ୟାକରିବା, ସୁମାରି, ଗଣନା,

**ଗଣ ଦୌଡ଼** - *ସଂ:* (ବି.) : ଏକାଠି ଦୌଡ଼ିବା

**ଗଣ ଧର୍ଷଣ** - *ସଂ:* (ବି.) : ଏକାଧିକ ବ୍ୟକ୍ତିଙ୍କ ଦ୍ୱାରା ଧର୍ଷଣ

**ଗଣର ଗଣର** - *ଗଦ୍ୟ:* (ବି.) : ଗରଗର

**ଗଣା** - *କଳା:ନ:* (ବି.) : ରାଜତନ୍ତ୍ର ଅମଳରେ ଥିବା ହରିଜନ ସଂପ୍ରଦାୟର ଚୌକିଦାର, ହିସାବ କରିବା, ଗଣିବା

**ଗଣିଆ** - *ନ:ଖୋ:* (ବି.) : ଏକ କ୍ଷୁଦ୍ର ମାଛର ନାମ, ନୟାଗଡ଼ ଜିଲ୍ଲାର ଏକ ବ୍ଲକର ନାମ, ଏକ ପ୍ରକାର ମାଛ

**ଗଣିତା** - *ଢ଼:* (ବି.ବିଂ.) : ଗଣା ହୋଇଥାଏ

**ଗଣେନ୍** - *ସୁ:* (ବି.) : ତନ୍ତିଆଣୀ

**ଗଣ୍ଠି** - *ଗଦ୍ୟ:* (ବି.) : ଏକ ଶାଗ

**ଗଣ୍ଠାଇବା** - *ପଦ୍ୟ:* (କ୍ରି.) : ଦୁଇଟି ସୂତା ବା ଲୁଗାକନାକୁ ପରସ୍ପର ସଂଯୁକ୍ତ କରିବା ପାଇଁ ଗଣ୍ଠି ପକାଇବା

**ଗଣ୍ଠି** - *ଅନେ:* (ବି.) : ଅଡୁଆ ଖିଅ, କୃପଣ, ଦୁଷ୍ଟ, କାଠ ବା ବାଉଁଶର ଦୁଇ ପବର ମଝି, ଏକ ପ୍ରଜାତିର ଚିଙ୍ଗୁଡ଼ି, ବନ୍ଧନ, ଭିଡ଼ିବାନ୍ଧିବା ପ୍ରଣାଳୀ, ପୋଟଳା, ଯଷ୍ଟ ଆଦିର ଗୋଲାକାର ମୁଣ୍ଡା, ଆଖୁ ବାଉଁଶ ଆଦିର ଦୁଇଟି ପବ ମଧ୍ୟସ୍ଥ ସନ୍ଧି, ଶରୀରର ଅସ୍ଥିର ଯୋଡ଼ାସ୍ଥଳ, ସନ୍ଧି, ତର୍କଣୀୟ ବିଷୟ, ମର୍ମକଥା, ସାରକଥା, ଜଟିଳ ସମସ୍ୟା ଓ ପ୍ରଶ୍ନ, ଜଟିଳତା, ଆମବାତ, ବାତରୋଗବିଶେଷ, ବାଳ ବନ୍ଧାଇବାର ଛୋଟବନ୍ଧ, ବକ୍ରତା

**ଗଣ୍ଠିଆ** - *ପୁ:* (ବି.ବିଂ.) : ଫସଲ ରକ୍ଷା ପାଇଁ ରାତିରେ ଚଢେଇ ହୁରୁଡ଼େଇବା ଯନ୍ତ୍ର, ଗଣ୍ଠିଥିବା କାଠରେ ତିଆରି, ଏଥିରେ ବାରୁଦ ଖୁନ୍ଦା ହୋଇଥାଏ, ବଦଖର୍ଚ୍ଚ କରୁନଥିବା (ଲୋକ), ସବୁ କଥାକୁ ଟାଣ କରି ଧରୁଥିବା, ଜଟିଳ ପ୍ରକୃତି, ଜିଦ୍‌ଖୋର ପ୍ରକୃତି, ବିଣ୍ଡି, କର୍ଣ୍ଣ ଅଳଙ୍କାର ବିଶେଷ, ଗଣ୍ଠିଯୁକ୍ତ, କୃପଣ, କୁଟିଳ, ଜଟିଳ, ଚତୁର, ହାତତିଆରି ଛୋଟ ବନ୍ଧୁକ, କାନର ନୋଳି ବିଶେଷ, ସ୍ତ୍ରୀ ଲୋକମାନଙ୍କର କର୍ଣ୍ଣାଲଂକାର ବିଶେଷ

**ଗଣ୍ଠିଆନା** - *ପଦ୍ୟ:* (ବି.) : ଗୁଗୁଳ

**ଗଣ୍ଠିକୁବି** - *କୋ:* (ବି.) : ଫଳ କୋବି

**ଗଣ୍ଠିକେଶର** - *ଗ:* (ବି.) : ଏକ ଜାତିର ଶିମ୍ବ

**ଗଣ୍ଠିକୋବି** - *ମା:* (ବି.) : ସାଲ୍‌ଗମ୍

**ଗଣ୍ଠିଚିଙ୍ଗୁଡ଼ି** - *ଖୋ:* (ବି.) : ଏକ ପ୍ରଜାତିର ଚିଙ୍ଗୁଡ଼ି

**ଗଣ୍ଠିଛାଡ଼ିବା** - *ଗ:* (କ୍ରି.ବିଂ.) : ଶିଶୁ କିଶୋର ଅବସ୍ଥାରେ ପହଂଚିବା

**ଗଣ୍ଠି ତରକାରୀ** - *ଯା:* (ବି.) : ମାଂସ ତରକାରି

**ଗଣ୍ଠିବନ୍ଧା** - *ନବ:ଗଜ:ଗ:* (ବି.) : ନିବନ୍ଧି, ବିବାହ ନିର୍ବନ୍ଧ

**ଗଣ୍ଠିବଳା** - *ଗ:* (ବି.) : ଗୋଡ଼ର ଅଳଙ୍କାର

**ଗଣ୍ଠି ରତନ** - *କ:* (ବିଂ.) : ଏକାନ୍ତ ନିଜର

**ଗଣ୍ଠିରା, ଗଣ୍ଡିରା** - *ନ:* (ବି.) : ଲୁଗାରେ ଗଣ୍ଠି ପକାଇ ବାନ୍ଧିଧରିବା, ପର୍ବ-ପର୍ବାଣୀରେ ବନ୍ଧୁ ଘରକୁ ଜିନିଷ ବାନ୍ଧି ନେବା

**ଗଣ୍ଠିରି** - *ନ:ଦେ:* (ବି.) : ଗଣ୍ଠିଲି, ବୁକ୍‌ଚା

**ଗଣ୍ଡ** - *ଅନେ:* (ବି.ବିଂ.) : ପାଣିପଙ୍କ ପୂର୍ଣ୍ଣ ସ୍ଥାନ, ଗାଲ, ଜାତି, ବଡ଼ ପୋଖରୀ ବା ନଈର ଅଥଳ ପାଣି ଥିବା ଗଭୀର ସ୍ଥାନ, ନିପଟ ମୂର୍ଖ, ଖାଲ, ଏକ ଜାତି

**ଗଣ୍ଡଗୁଳିଆ** - *କୌ:* (ବିଂ.) : ଗୁଳ୍‌ମାଳିଆ

**ଗଣ୍ଡପୂଜ** - *ଦେ:* (ବି.) : ରକ୍ତମିଶା ପୂଜ

**ଗଣ୍ଡମୂର୍ଖ** - *ଦେ:ଖୋ:ସଂ:* (ବି.ବିଂ.) ନିର୍ବୋଧ, ଅକ୍ଷର ଜ୍ଞାନଶୂନ୍ୟ

**ଗଣ୍ଡରା** - *କେ:* (ବି.) : ଲୁଗା ଗଣ୍ଠିଲି

**ଗଣ୍ଡା** - *ଅନେ:* (ବି.ବିଂ.) : ପ୍ରାଣୀ ବିଶେଷ, ଚାରି ସଂଖ୍ୟକ, ଏକ ଆଦିବାସୀ ସଂପ୍ରଦାୟ, ବନ୍ୟଜନ୍ତୁ ବିଶେଷ, ଚାରିକଡ଼ା, ତିନି ଓ ପାଞ୍ଚର ମଝିସଂଖ୍ୟା (୪), ରାଜୁଡ଼ା ଅମଳରେ ପ୍ରତି ଗ୍ରାମରେ ଥିବା ଚୌକିଦାର

**ଗଣ୍ଡାନୀ** - *ଦୌ:* (ବି.) : ଗଣ୍ଡାର ସ୍ତ୍ରୀ, ଗଣ୍ଡା ଜାତୀୟା ସ୍ତ୍ରୀ

**ଗଣ୍ଡି** - *ଅନେ:* (ବି.) : ବୃକ୍ଷର ମୂଳଠାରୁ ଶାଖାପର୍ଯ୍ୟନ୍ତ ଭାଗ, ମସ୍ତକ ବିହୀନ ଶରୀର, ଗଡ଼, ଗଳଗଣ୍ଡ, ଗଣ୍ଡଜାତିର ଭାଷା, ଦେହ, ଶରୀର ଦେହର ମଧ୍ୟଭାଗ, ସ୍ଥୂଳଶରୀର, ଧୋବାମାନଙ୍କ ଲୁଗାକଚା ପଥର ବା କାଠ ଗଣ୍ଡି, ଟଙ୍କା, ରାଜକୋଷରୁ ଦେବତା ଆଦିଙ୍କ ପୂଜା ନିମନ୍ତେ ନିୟମିତ ରୂପେ ମାସିକ ମିଳୁଥିବା ଧନ, ପଶାଆଦି ଖେଳରେ ଏକ ପକ, କାଠଗଡ଼, ଗଛର ଅଦ୍ୟଭାଗ

**ଗଣ୍ଡିଆ** - *ଅନେ:* (ବି.ବିଂ.) : ନଂପୁସକ, ଦେଶିଆଲୋକ, ପୁରୁଷତ୍ୱହୀନ, ଅଣପୁରୁଷ, ମୋଟା, ହୃଷ୍ଟପୁଷ୍ଟ,

**ଗଣ୍ଡିକନ୍ଦା** - *କନ:* (ବି.) : ଖମ୍ବଆଳୁ

**ଗଣ୍ଡିମୁଣ୍ଡ କରିବା** - *ଗ:* (କ୍ରି.) : ବେକ ପାଖରୁ ହାଣି ଦେବା

**ଗଣ୍ଡିରା** - *ଗା:ସ:* (ବି.) : ପିଠିରେ ବୋହୁଥିବା ବୋଝ, ଗଣ୍ଡିଲି; ବୋକ୍ଚା

**ଗଣ୍ଡୁରି** - *ଦେ:ଯା:* (ବି.) : ପକ୍ଷି, କେଉଟ ମାଛ ରଖିବା ବାଉଁଶ ତିଆରି ପାତ୍ର

**ଗଣ୍ଡୁଷେ ଜଳ** - *ସଂ:* (ବି.) : ପୋଷେ ଜଳ

**ଗଡ୍** - *ପଦ୍ୟ:* (ବି.) : ଘଡ୍, ଗୀତ ନଥାଇ ରାଗରଗତି, ସ୍ୱରର ଗତି ମାତ୍ର, ସଙ୍ଗୀତ ବୋଲା ହେବା ପୂର୍ବରୁ ତହିଁରୁ ନିର୍ଦ୍ଦିଷ୍ଟ ରାଗିଣୀର ପ୍ରଣାଳୀ ବା ସ୍ୱର ଢଙ୍ଗ, ବଦ୍ଧ ନିୟମ, ଅଭ୍ୟାସ

**ଗଡ୍‌ଗଡ୍** - *ଦେ:* (ବିଂ.) : ତଣ୍ଟି ଗଲୁ କରିବା

**ଗଡର** - *ପଦ୍ୟ:ବା:* (ବି.) : ଦେହ, ଶରୀର, ବଳ, ଶକ୍ତି, ଦେହରେ ଥିବା ଶକ୍ତି

**ଗଡର କୁଢ଼ି** - *କ:ବା:* (ବିଂ) : ଅତି ଅଳସୁଆ

**ଗଡର ଖଟିବା** - *ଅ:* (କ୍ରି.) : ସର୍ବଦା ପାଇଟି କରିବା

**ଗଡରଖିଆ** - *ଖୋ:* (ବିଂ.) : ଏକ ପ୍ରକାର ଗାଳି

**ଗଡର୍** - *କଳା:* (ବି.) : ଗୋଡ

**ଗଡାଗଡ** - *ଦେ:* (ବି.) : ଯା'ଆସ

**ଗଡାଗୋଡ୍** - *ନୂ:* (କ୍ରି.) : ଯିବା ଆସିବା, ଯାତାୟତ, ଗତାଗତ

**ଗଡାନିପଡାନି** - *ଯା:* (ବି.) : ପୁରୁଷାନୁ କ୍ରମେ

**ଗଡି** - *ଦେ:ଜ:* (ବି.) : ଯାତ୍ରା, ଗମନ, ମୁକ୍ତି, ଉପାୟ

**ଗଡିଆ** - *ମା:* (ବି.) : ହଳିଆ, ଗୋତି ଖଟୁଥିବା ଲୋକ

**ଗଡ଼ିରୀତି** - *ଦେ:* (ବିଂ.) : କୁପ୍ରକୃତି

ଗଦ - *ଅନେ:* (ବି.) : ସାପଗଦ, ଚେରମୂଳି ଔଷଧ, ବିଷନାଶକ ଔଷଧ, ବିଷ ଚିକିତ୍ସାର ଜଡ଼ିବୁଟୀ, ଶାରଗୁଣା

ଗଦ୍‌ଗଦ - *କେ:ସୁ:ଦେ:* (ଅ.ବିଂ.) : ଅତ୍ୟଧିକ ବିଭୋର, ଅତି ପ୍ରଫୁଲ୍ଲିତ, କୁରୁଳି ଉଠିବା, ଅତିଶୟ ଖୁସିରେ କହିନପାରିବା

ଗଦ୍‌ବଦ୍ - *ନୂ:* (ବିଂ.) : ଫେରାର, ନିରୁଦ୍ଦିଷ୍ଟ

ଗଦ୍‌ବଦ୍ - *କଳା:* (କ୍ରି.) ଧାଇଁଧାଇଁ ପଳେଇବା

ଗଦ୍‌ରା - *ସୁ:କଳା:* (ବିଂ.ବି.) : ବଡ଼ମାଠିଆ, ବଡ ଆକାରର ଧାତବ ମାଠିଆ, ଗରିଆ ହାଣ୍ଡି

ଗଦଦ୍‌ଘମ୍ - *କଳା:* (ବିଂ.) : ସ୍ଥିର ଭାବରେ ରହିଥିବା

ଗଦବଦିଦବା - *କୋ:* (କ୍ରି.) : ଦୌଡ଼ିପଳାଇବା, ଅତିବେଗରେ ଧାଇଁବା

ଗଦବା - *ସଂ:* (ବି.) : କୋରାପୁଟରେ ରହୁଥିବା ଆଦିବାସୀ ସଂପ୍ରଦାୟ

ଗଦରା - *ଅ:* (ବି.) : ଗୁଡ଼ମାଠିଆ

ଗଦା - *ଦେ:କେ:ଗ:* (ବି.କ୍ରି.) : ଜମାଇବା, ଠୁଳ କରିବା, ରୁଣ୍ଡହେବା

ଗଦାଆମ୍ବ - *ବ୍ୟ:* (ବି.) : କାଜୁବାଦାମ

ଗଦାଗଦା - *ସ:ଅ:* (ବି.ବିଂ.) : ବହୁତ ବେଶୀ, ଅସଂଖ୍ୟ

ଗଦାଗଦି - *ଦେ:* (ବି.) : ଏକାଠି କରିବା

ଗଦାଡ଼ି - *ବ୍ୟ:* (ବି.) ଗଦାକରି ରଖାଯାଇଥିବା ନଡ଼ା

ଗଦାଡ଼ି କୁସା - *ଜଶ:* (ବି.) : ଏକ ପ୍ରକାର ଶାଗ ତରକାରି

ଗଦାପଡ଼ିବା - *ରା:* (କ୍ରି.) : ଗୋପନ କଥା ପ୍ରକାଶ ପାଇବା

ଗଦାବା - *ସ:* (କ୍ରି.) : ଗୋଟିଏ ସ୍ଥାନରେ ଜମା କରିବା

ଗଦାମ - *ବ୍ୟ:* (ବି.) : କାଜୁବାଦାମ

ଗଦି - *ଦେ:* (ବି.) : କୋମଳ ଶେଯ

ଗଦିଆଁ - *ଦୌ:* (ବି.) : ବାଉଁଶ ପାଟିଆ ଜାଲି

ଗଦିଲ - *ସୁ:* (ବି.) : ଅପାକ

ଗଦୀ - *ଭ:* (ବି.) : ଲୁଗା ବିକ୍ରୟ ପେଣ୍ଠସ୍ଥାନ

ଗଦୋ - *ସୁ:* (ବିଂ.) : ବହୁତ

ଗଧ - *ଦେ:* (ବି.) : ମୂର୍ଖ, ଏକଜାତୀୟ ପଶୁ

ଗଧିରାବା - *ସ:* (କ୍ରି.) : ଦରପାଚିଲା, ଅର୍ଦ୍ଧ ପାକଳ ହେବା

ଗଧଟୋପି - *ଦେ:* (ବି.) : ରଙ୍ଗଖେଳରେ ବ୍ୟବହୃତ ଟୋପି, ଅପମାନ ସୂଚକ ଟୋପି

ଗଧଢ଼ - *ଅ:ନବ:* (ବିଂ.) : ଗଧ ପରି ନିର୍ବୁଦ୍ଧିଆ, ଅଳସୁଆ, ମଠୁଆ (ବ୍ୟକ୍ତି)

ଗଧିଆ - *ନ:ଦେ:* (ବି.) : ଏକ ହିଂସ୍ର ବନ୍ୟଜୀବ, ହେଟାବାଘ

ଗଧେଇବା - *କେନ୍ଦୁ:* (କ୍ରି.) : ଗାଈ ଛୁଆ ଜନ୍ମ କରିବା

**ଗଧେରା** - *ଗଦ୍ୟ:ଅ:* (ବି.) : ଝରଣା
**ଗନ୍‌ଚା** - *କଳା:* (ବି.) : ଗୁଣ୍ଡିଚା, ଶ୍ରୀଗୁଣ୍ଡିଚା, ରଥଯାତ୍ରା
**ଗନ୍‌ଚାମାସ୍** - *କଳା:* (ବି.) : ଆଷାଢ, ଗୁଣ୍ଡିଚା ମାସ
**ଗନ୍‌ବା** - *ସୁ:* (କ୍ରି.) : ଗଣିବା
**ଗନି** - *କଳା:ବା:କଳା:* (କ୍ରି.) : ଗଲି, ଗଣି, ହିସାବ କରି
**ଗନୁଆ** - *ଗ:* (ବିଂ.) : ପୁରୁଣା
**ଗନେ** - *ଢେ:* (ବି.) : ଦାନ୍ତ
**ଗନେଇନି** - *କେନ୍ଦୁ:* (କ୍ରି.) : ଗଲେଣି
**ଗନ୍ତା** - *ପୁ:ପଦ୍ୟ:ଗ:* (ବି.) : କୁର୍ତ୍ତା, କନ୍ଥା (ବସ୍ତ୍ର, ପ୍ରାବରଣ), ଦୁଇକଡ଼ରେ ଡୋରିଲାଗିଥିବା କୁର୍ତ୍ତା, ମୋଟାଲୁଗା
**ଗନ୍ତାଘର** - *ନ:ଗ:ଦେ:* (ବି.) : ସରଘର, ଭଣ୍ଡାରଘର
**ଗନ୍ତାୟତ, ଗନ୍ତାଇତ** - *ଗ:* (ବି.) : ଭଣ୍ଡାର ଘରର ରକ୍ଷକ
**ଗନ୍ଥା** - *ଅନେ:* (ବି.) : ବସ୍ତ୍ରନିର୍ମିତ ଶେଜ, କନ୍ଥା, ଛିଣ୍ଡା ଲୁଗା ସମୂହ ଏକତ୍ର ସିଲେଇ, ପୁରୁଣା ଲୁଗାରେ ତିଆରି ଶେଯ, ବସ୍ତ୍ର ନିର୍ମିତ ଶଯ୍ୟା
**ଗନ୍ଦା** - *ଦେ:* (ବିଂ.) ଅପରିଚ୍ଛନିଆ, ଅପରିଷ୍କାର
**ଗନ୍ଦିବା** - *ନବ:* (କ୍ରି.) : ହାଣିବା, କାଟିବା
**ଗନ୍ଧୁଆ** - *କଳା:* (ବି.) : ଖଟ ଗୁନ୍ଥା ହେଉଥିବା ସରୁ ଦଉଡ଼ି
**ଗନ୍ଧ** - *ଦେ:* (ବି.) : ବାସ, କହ୍ନର
**ଗନ୍‌ଧ୍ସି** - *କଳା:* (କ୍ରି.) : ଗନ୍ଧାଏ
**ଗନ୍ଧକ** - *ଖୋ:* (ବି.) : ଏକଦ୍ରବ୍ୟ, ସଂପୃକ୍ତ କାମରେ ବ୍ୟବହାର କରାଯାଏ
**ଗନ୍ଧଣା** - *ଗଞ୍ଜ:* (ବି.) : ଶାଗ, ଔଷଧୀୟ ବୃକ୍ଷ
**ଗନ୍ଧତେଲ** - *ଗ:* (ବି.) : କିରୋସିନି
**ଗନ୍ଧବା** - *ସ:* (କ୍ରି.) : ଦୁର୍ଗନ୍ଧ
**ଗନ୍ଧମାରା** - *ରା:* (ବି.) : ଚନ୍ଦନକାଠ
**ଗନ୍ଧମୁଖୀ** - *ସଂ:* (ବି.) : ଚୁଚୁନ୍ଦ୍ରା
**ଗନ୍ଧରା** - *ନ:ଦେ:ସୁ:ନବ:* (ବିଂ.) ଅପରିଷ୍କାର, ଖଳବ୍ୟକ୍ତି
**ଗନ୍ଧରି ଚନା** - *ସୁବ:* (ବି.) : ଏକ ମୁଗ ଭଳି ଛୋଟ ଚଣା, ପିଠା ହୁଏ। ପଶୁମାନଙ୍କୁ ଦିଆଯାଏ
**ଗନ୍ଧଶୁଣ୍ଡା** - *ଗ:* (ବିଂ.) : କୃପଣ
**ଗନ୍ଧଶୁଣ୍ଡୀ** - *କେ:* (ବି.) : ସୁଗନ୍ଧିତ ଧୂପ
**ଗନ୍ଧଷଣ** - *ଗ:* (ବି.) : ବିବାହ ପୂର୍ବଦିନର କର୍ମ
**ଗନ୍ଧାଳି** - *ବା:* (ବି.) : ପ୍ରସାରୁଣୀ
**ଗନ୍ଧିଆ** - *ଅନେ:* (ବି.ବିଂ.) : ଦୁର୍ଗନ୍ଧମୟ, ବାସିକୁ ରହିଯିବାରୁ ଷଢିଯାଇ ଦୁର୍ଗନ୍ଧ ହେଉଥିବା, ଦେହସାରା ଅସନା, ମଇଳା ଦୁର୍ଗନ୍ଧଯୁକ୍ତ, ବାସୀଦ୍ରବ୍ୟ
**ଗନ୍ଧିଆ କଥା** - *ଖୋ:* (ବିଂ.) : ବାଜେ କଥା
**ଗନ୍ଧି ମାରିବା** - *ଖୋ:* (କ୍ରି.) : ଫିମ୍ପି ମାରିବା

**ଗଣ୍ଡେଇ ହେବା** - *ଖୋ:* (କ୍ରି.) : ବଳେ ପଶିବା

**ଗଣ୍ଡେପୁଷ୍ଟେ** - *ଚୌ:* (ବି.) : ଊଣା ଅଧିକେ, ଅଳ୍ପେ ବହୁତେ, ଫଳେପୁଷ୍ଟେ

**ଗନ୍ଧାଇ** - *ଗଦ୍ୟ:* (ବି.) : କନ୍ଦା

**ଗପନ୍ଥୁ** - *ସୁ:* (ବି.) : ବେଶି କଥାକୁହା

**ଗପାଗପ୍ ଗିଳିବା** - *ଖୋ:* (ବିଂ.) : ଚଟାପଟ୍ ଖାଇପକାଇବା

**ଗପାମାରିବା** - *ଅ:* (କ୍ରି.) : ଚଞ୍ଚଳ ଚଞ୍ଚଳ ଖାଇବା

**ଗପୁ** - *ବର:* (ବି.) : କଥକ

**ଗପୁଆ** - *ପଦ୍ୟ:* (ବିଂ.) : ଗପଡ଼ି, ଯେ ବେଶୀ ଗଳ୍ପ କରେ, ବକୁଆ

**ଗପ୍ଲଇତି** - *କଳା:* (ବି.) : ଛଳନା, କପଟତା

**ଗପ୍ଲଇତିଆ** - *ସ:* (ବିଂ.) : ମିଛ କହୁଥିବା ବ୍ୟକ୍ତି

**ଗଫେ** - *ସ:* (ଅ.) : ଥରକେ ଖାଇବା

**ଗବ** - *ନ:ସୁ:ସଂ:ଦେ:* (ବି.ବିଂ.) : ଏକ ପ୍ରକାର ଗଛ, ମୂର୍ଖ, ଜଡ଼ାଗଛ, ଜଡ଼ା

**ଗବ୍ଗଛିଆ** - *ଦେ:* (ବିଂ.) : ପ୍ରଶଂସାରେ ଫଟେଇଦେବା

**ଗବ୍ଗବାନୁ** - *ବ:* (କ୍ରି.ବି.) : ଗବଗବ ଫୁଟିବା

**ଗବ୍ଗାଣ୍ଡୁ** - *ଦେ:* (ବି.) : ମୂର୍ଖ, ଗଜମୂର୍ଖ

**ଗବ୍ଡବ୍** - *ଦେ:* (ବିଂ.) : ଆଲ୍ତୁଫାଲ୍ତୁ

**ଗବ୍ଡ଼ା** - *କଳା:* (ବି.) : ଖତଗଦା, ଅସ୍କରା ଗଦା

**ଗବ୍ଦେନ୍** - *କଳା:* (ବି.) : ଆଦିବାସୀ ଦେବୀ ବିଶେଷ

**ଗବକଚିଆ** - *ଗ:* (ବିଂ.) : ନଟକୁଟିଆ

**ଗବଗରଢ଼ିଆ** - *ଅ:* (ଅ.) : ଏଣୁତେଣୁ

**ଗବଜଡ଼ା** - *ମ:* (ବି.) : ବାଇଗବା

**ଗବଢ଼େଇବା** - *ଗ:କୋ:* (ବି.କ୍ରି.) : ଗର୍ଭପାତ, ପଶୁମାନଙ୍କର ଗର୍ଭ ନଷ୍ଟ ହେବା

**ଗବଦଲ୍ଖାସୁ** - *ଚୌ:ଅ:* (ବି.ବିଂ.) : ନିକମା, ମୋଟା ଓ ଠାପୁଆ

**ଗବର୍ଣ୍ଣର** - *ସୁ:* (ବି.) : ଗଭର୍ଣ୍ଣର, ରାଜ୍ୟପାଳ

**ଗବର୍ଲି** - *ସୁ:* (ବି.) : ଗୋବର ପୋକ

**ଗବା** - *ଅନେ:* (ବିଂ.ବି.) : ଓଲୁ, ମୂର୍ଖ, ବୋକା, ବାୟା

**ଗବାଁର** - *ଅ:* (ବିଂ.) : ମଫସଲିଆ, ମୂର୍ଖ

**ଗବୋ ଗବୋ** - *ସ:* (ଅ.) : ଶୀଘ୍ର ଶୀଘ୍ର

**ଗଭ୍ମେଣ୍ଟ** - *ଅନେ:* (ବି.) : ସରକାର

**ଗଭରେଇ ପକାଇବା** - *ଭ:* (ବିଂ.କ୍ରି.) : ଗର୍ଭ ପାତ ହେବା

**ଗଭା** - *ଅନେ:* (ବି.) : ଧାନ ଗଛର ଅଂଶ, ଖୋସା, ଫୁଲପେନ୍ଥା, ଯୁଡ଼ା, ଏକ ସ୍ଥାନରେ ଜମା ହୋଇଥିବା ନଳିତା ବିଡ଼ା,

**ଗଭାର** - *କୋ:* (ବି.) : ଉର୍ବର ଚାଷ ଜମି

**ଗମ** - *ଗ:* (ବିଂ.) : ପାଚିବା ସଢିବା ଅବସ୍ଥା

**ଗମ୍କି** - *ଝ:* (କ୍ରି.) : ଗରମରୁ ଅଶ୍ୱସ୍ତି ଲାଗିବା

**ଗମ୍‌ଗମ୍** - *ଅନେ:* (ବିଂ.) : ଗହଦିବା, ବହୁତ ଝାଳ ବହିବା

**ଗମ୍‌ଗମିଆ** - *ଢେ:* (ବିଂ.) : ବହୁପରିମାଣରେ ଝାଳ ବହିବା

**ଗମ୍‌ଲା** - *ସୁ:ବୌ:* (ବି.) : ଫୁଲକୁଣ୍ଡ, ଯେଉଁ ମାଟି କୁଣ୍ଡରେ ଗଛ ଲଗାଯାଏ, ପାତ୍ର

**ଗମ୍‌ହେର୍** - *ସ:* (ବି.) : ଗମ୍ଭାରୀ ବୃକ୍ଷ

**ଗମା** - *ସୁବ:କଳା:ଢେ:* (ବିଂ.ବି.) : ପାଣି ଖାଇ ଶସ୍ୟ ଗମରା ହେବା, ଜଳ ସଂସ୍ପର୍ଶରେ ଆସି ଧାନ ଖରାପ ହେବା, ପଚା, ଛତିଆ ମାରିବା

**ଗମାଙ୍ଗ** - *ରା:* (ବି.) : ଗାଁ ମୁଖିଆ

**ଗମାଛି** - *ମ:* (ବି.) : ଘମିର, ଘିମିରି

**ଗମାତ** - *ଅନେ:* (ବି.ବିଂ.) : ହାସ୍ୟସୃଷ୍ଟି କରିବା, ଥଟ୍ଟା, ମଜାମଉଜ

**ଗମାତିଆ** - *ବୌ:ନ:* (ବି.ବିଂ.) : ଯେ ଗମାତ କରେ, ମଜାଳିଆ

**ଗମା ପୁନିଅ** - *ଗଛ:* (ବି.) : ଗହ୍ମା ପୂର୍ଣ୍ଣମୀ

**ଗମାର** - *ଗ:* (ବିଂ.) : ବେହିା, ଦୁଷ୍ଟ ପ୍ରକୃତି

**ଗମାରୁ** - *ଭ:* (ବିଂ.) : ନିର୍ବୋଧ

**ଗମାଂ** - *ଗଦ୍ୟ:* (ବି.) : ଗାଁ ମୁଖିଆ

**ଗମିପୁକ୍** - *କନ୍ଧ:* (ବି.) : ତେଲୁଣି ପୋକ

**ଗମିବା** - *କଳା:ଢେ:* (କ୍ରି.) : ଜାଣି ପାରିବା, ଜଳ ସଂସ୍ପର୍ଶରେ ଆସି ଧାନ ଖରାପ ହେବା, ବୁଝିବା, ପଚିବା

**ଗମିରୀ** - *ଗଛ:* (ବି.) : ଗମ୍ଭିରୀ

**ଗମେଇବା** - *କ:ଭ:* (କ୍ରି.) : ଜାରିକରିବା, ଲିପାପୋଛା କରି ପ୍ରସ୍ତୁତ କରି ରଖିବା

**ଗମେଇଁ** - *ଗଦ୍ୟ:* (ବି.) : ହାରିବା, ହରାଇବା

**ଗମ୍ପିବା** - *ଗ:* (କ୍ରି.) : ଗିଳିବା, ତରବର ହୋଇ ଖାଇବା

**ଗମ୍ଭାରି** - *ଢେ:ନ:ଗ:* (ବି.) : ଗଛ, ବନ୍ୟବୃକ୍ଷ ବିଶେଷ

**ଗମ୍ଭୀର** - *ଢେ:* (ବିଂ.) : ଧୀରସ୍ଥିର

**ଗମ୍ଭୀରା** - *ଅନେ:* (ବି.ବିଂ.) : ଭିତିରି ଘର, ଅଣ ଓସାରିଆ ଅନ୍ଧାରୀ ଘର

**ଗମ୍ବୁଜ** - *ସଂ:* (ବି.) : ମନ୍ଦିର ଆଦିର ଶୀର୍ଷଦେଶ

**ଗୟଳ** - *ଢେ:ନ:* (ବି.) : ଅରଣା ମଇଁଷି

**ଗୟାଭୋଗ** - *ଛ:କ:* (ବି.) : ଏକ ପ୍ରକାର ବାସ୍ନାଧାନ କିସମ

**ଗର୍‌ଗର୍** - *ନବ:ଢେ:* (ବିଂ.) : ରାଗ ଜର୍ଜରିତ, ରାଗିବା

**ଗର୍‌ଧନ୍** - *କଳା:* (ବି.) : ବେକ

**ଗର୍‌ଲା** - *ବର:* (କ୍ରି.) : ଜାଲ କି ବେଦାର ଫଟାଚୁଟା ଭଙ୍ଗାରୁଜାକୁ ଠିକ୍‌ଠାକ୍ କରିବା

**ଗର୍‌ରା** - *ସୁବ:ବ:* (ବି.) : ମେଣ୍ଢା, ଖାସୁକରା ମେଣ୍ଢା

**ଗର୍‌ସା** - *ସ:ଝା:ସୁ:* (ବି.) : ଭାତଗୁଣ୍ଡା, ଗ୍ରାସଗୁଣ୍ଡା

**ଗର୍‌ସେକ୍** - *କଳା:* (ବିଂ.) : ଗୁଣ୍ଡାଏ, ମୁଠାଏ, ଗରସେ

**ଗର୍‌ହନ୍** - *କଳା:ନୂ:* (ବି.) : ଗ୍ରହଣ, ଆକୃତି

**ଗର୍‌ହେଇ** - *କଢ:ଗୌ:* (ବି.) ଗୋରୁ ବାନ୍ଧିବା ଦଉଡ଼ି

**ଗର** - *ଦେ:ଯା:ଜ:* (ବି.) : ଖଣ୍ଡି, ଗଣ୍ଡି, ନଅ ସଂଖ୍ୟା

**ଗରଗଡ** - *ସୁବ:* (ବି.) ଧାନ ସହିତ ବଢୁଥିବା ଏକ ଘାସ

**ଗରଗଡ଼ା** - *ସୁବ:* (ବି.) : ଗୋଲାକାର ରିଙ୍ଗ୍ ବା ଟାୟାର-ଯାହାକୁ ଖେଳନାଭାବେ ଗଡ଼ାଯାଏ

**ଗରଗର** - *ଅନେ:* (ବି.କ୍ରି.ବିଂ.ଅ.) : ରାଗରାଗ, ଏଣୁତେଣୁ ଗପିବା, କ୍ରୋଧ କରିବା, ବିରକ୍ତ ରାଗିବାଭାବ

**ଗରଜ** - *ଅନେ:* (ବି.) : ଦରକାର, ଇଚ୍ଛା, ଅସୁବିଧା, ବିପଦ, ପ୍ରୟୋଜନ, ଅଭାବ ସମୟ (ଆବଶ୍ୟକ)

**ଗରଜାଇବା** - *ଗ:* (କ୍ରି.) : ଦୁଧକୁ ସାମାନ୍ୟ ଗରମ କରିବା

**ଗରଡ଼** - *କ:* (ବି.) : ମେଣ୍ଢା ବୋଦା

**ଗରଣ** - *ଭା:* (ବି.) : ଗ୍ରହଣ

**ଗରତ ଗୋଡ଼ିଆ** - *ଅ:* (ବି.) : ଗାଇ ଜଗୁଆଳ

**ଗରଦଗୁମାନି** - *ସୁ:* (ବିଂ.) : ଅଭିମାନୀ, ଗାଲୁଆ, ଲୋଭୀ

**ଗରଦ ଜମି** - *ଗ:* (ବି.) : ଉର୍ବର ଜମି

**ଗରନ୍‌ଦୋଷ** - *ମା:* (ବି.) : ଗ୍ରହଣ ଦୋଷ

**ଗରଭ** - *ପଦ୍ୟ:* (ବି.) : ଗର୍ଭ, ଭ୍ରୁଣ, ଗର୍ଭାବସ୍ଥା, ପେଟ, ଅନ୍ତଃସ୍ଥଳ, ଗର୍ଭବତୀ, ଗର୍ଭିଣୀ

**ଗରଭଣା, ଗର୍ଭଣା** - *ନ:* (ବି.) : ତୁଳା ସଂକ୍ରାନ୍ତି

**ଗରମ୍ ବଜାର** - *ଖୋ:* (ବିଂ.) : ଗହଳି ବଜାର

**ଗରମ୍‌ମସ୍‌ଲା** - *ଦେ:* (ବି.) : ଡାଲଚିନି, ତେଜପତ୍ର, ଧନିଆଁ ଲବଙ୍ଗ ଓ ଅଳେଇଚ ଗୁଣ୍ଡର ସମାହାର

**ଗରମ ପ୍ରକୃତି** - *ପଦ୍ୟ:* (ବି.) : ଉଗ୍ରପ୍ରକୃତି

**ଗରମ ମିଜାସ** - *ସ:* (ବିଂ.) : କଠିନ ହୃଦୟ

**ଗରମ ହେବା** - *ସ:ପଦ୍ୟ:* (କ୍ରି.) (ଗାଇଗୋରୁ) ସଙ୍ଗମକାମୀ ହେବା, ରାଗିବା, ଉତ୍ତେଜିତ ହେବା, ମତ୍ତହେବା, ଉତ୍ତପ୍ତ ହେବା, ଅଜୀର୍ଣ୍ଣ ହେବା, ଭାଉ ବଢ଼ିବା, ଦେହର ଉତ୍ତାପ ବୃଦ୍ଧି ହେବା, ଗ୍ରୀଷ୍ମାନୁଭୂତି

**ଗରମାଗରମ୍** - *ଖୋ:* (ବିଂ.) : ସଜ, ସଦ୍ୟ

**ଗରମି** - *ପଦ୍ୟ:* (ବି.) : ଉଷ୍ଣତା, କାପ, ଗ୍ରୀଷ୍ମକାଳ, ଶରୀରର ତାପ, ଗର୍ବ ଔଦ୍ଧତ୍ୟ, ଗରମି, ଉଷ୍ଣ, ତାପଉତ୍ପାଦକ, ଗ୍ରୀଷ୍ମଋତୁଜନିତ, ଗ୍ରୀଷ୍ମସମ୍ବନ୍ଧୀୟ

**ଗରସ** - *ନବ:ମା:ନୂ:* (ବି.) : ଖିର, ଗୋରସ

**ଗରସେ** - *ସ:କଳା:* (ବିଂ.) : ଗୁଣ୍ଡାଏ, ଗୋଟିଏ ପାକୁଳି, ମୁଠାଏ

**ଗରହାଜିର୍** - *କ:* (ବି.) : ଅନୁପସ୍ଥିତ
**ଗରହିତ** - *ଯା:* (ବିଂ.) : ଅହିତକର
**ଗରା** - *ଅନେ:* (ବି.ବିଂ.) : ପିତ୍ତଳ ମାଠିଆ, ମହୁଲ ମଞ୍ଜି, ଗଗରା, ଅଣ୍ଡା, ଫାଶ, କଣ୍ଟା, ପକ୍ଷୀର ଅଣ୍ଡା
**ଗରାଖ** - *ବୌ:ଖୋ:ସ:* (ବି.) : ଗ୍ରାହକ, କନ୍‌ଜ୍ୟୁମର୍
**ଗରାଖିଆ** - *ଗା:* (ବିଂ.) : ରସରସିଆ
**ଗରା ତେଲ** - *ଅ:କଣ:ଦେ:ସୁ:* (ବି.) : ମହୁଲ ତେଲ, ମହୁଲ ଫଳତେଲ, ଟୁଲ୍‌ତେଲ
**ଗରାବାର** - *ସୁବ:* (କ୍ରି.) : ଶସ୍ୟ ଫଳ ଆଦି ତଳେ ବିଛାଇବା
**ଗରା ମୁଣ୍ଡି** - *ଗା:* (ବି.) : ହାଣ୍ଡିର ମୁହଁ
**ଗରି** - *ଦେ:ସୁବ:ବର:କଳା:* (ବିଂ.ବି.) : ଅଳସୁଆ, କାଠଗଡ, ବଂଶୀ କଣ୍ଟା, ବନ୍‌ସି
**ଗରିଆ** - *ଅନେ:* (ବି.) : ଗରା, ହାଣ୍ଡି, ମାଠିଆ, ସ୍ନେହର ପାତ୍ର
**ଗରିକଟା** - *କଳା:* (ବି.) ବନ୍‌ସିରେ ବ୍ୟବହୃତ ହେଉଥିବା ସରୁ ଲୁହା କଣ୍ଟା
**ଗରି, ଗଣ୍ଡା** - *ବୌ:* (ବି.) : ଅଣ୍ଡିରା ମଇଁଷି
**ଗରିବ ମାଇପ** - *କ:* (ବି.) : ହେୟ, ଗରିବର ସ୍ତ୍ରୀ, ଧନହୀନ ସ୍ତ୍ରୀଲୋକ
**ଗରିମା** - *ପଦ୍ୟ:ଦେ:* (ବି.) : ଗୁରୁତା, ଗୌରବ, ମହିମା, ଦର୍ପ, ମାହାତ୍ମ୍ୟ, ବଡେଇ, ଗୁରୁତ୍ୱ, ଭାର, ଗର୍ବ, ଅହଙ୍କାର, ଅଣିମାଦି ଅଷ୍ଟସିଦ୍ଧି ମଧ୍ୟରୁ ଏକତମ
**ଗରିମି** - *ନ:* (ବି.) : ଅଧିକ ଉତ୍ତପ୍ତ ହେବା, ଯୌନ ରୋଗାକ୍ରାନ୍ତ ହେବା (ଓଡ଼ଗାଁ ଅଞ୍ଚଳ), ଗାଈର ରକ୍ତସ୍ରାବ
**ଗରିମିଟି** - *ଯା:* (କ୍ରି.) : ନିଠେଇ ଧରିବା
**ଗରିଲା** - *ସ:* (ବି.) : ମଣିଷ ସହ ସାଦୃଶ୍ୟ ଥିବା ଏକ ବଡ଼ ମାଙ୍କଡ଼
**ଗରିଲାଏଟ** - *ବର:* (ବି.) : ବଂଶୀ କଣ୍ଟା ସହ ବାଉଁଶ ଲାଠି (ଯେଉଁ ଲାଠିର ଅଗ ଭାଗ ଆଡ଼କୁ ସରୁ ହୋଇଥିବ ଓ ଲହସା ହୋଇଥିବ)
**ଗରିଲାଠି** - *ସୁବ:* (ବି.) : ବନଶୀ ଖଡା
**ଗରୁ** - *ଦେ:ଭ:ଢ:ବା:* (ବିଂ.ବି.) : ବଡ଼, ଭାରି, ଓଜନିଆ, ଯିଏ ଡ଼େରିରେ କାମ କରେ, ତାରଣ, ଓଜନିଆ, ଗୋରୁ, ଏକପ୍ରକାର ଗୃହପାଳିତ ପଶୁ
**ଗରୁଗାଡ଼ି** - *ବା:* (ବି.) : ଶଗଡ଼, ଗୋରୁଗାଡ଼ି
**ଗରୁଡ଼ ଖମ୍ବ** - *ଗଞ:ଖୋ:* (ବି.) : ପୋଖରୀ ମଝିରେ ଦୀପଦାଣ୍ଡି
**ଗରୁଡ଼ିଆ** - *ଗଞ:* (ବି.) : କ୍ଷୁଦ୍ର ପାଟକ
**ଗରୁଧାନ** - *କ:* (ବି.) : ବିଳମ୍ବରେ ଅମଳ ହେଉଥିବା ଧାନ
**ଗରେଇ** - *କଳା:ନ:କଣ:ଝା:* (ବି.) ଶସ୍ୟାଦିକୁ ତଳେ ବିଛେଇ ଦେବା, ଛୋଟ ଦଉଡ଼ି, ଯାହା ସାହାଯ୍ୟରେ

ଗଉଡ଼ ବାଛୁରୀକୁ ଏବଂ ଗାଈ ଗୋଡ଼କୁ ଛନ୍ଦିଥାଏ, ତା'ପରେ ଗାଈ ଦୁହେଁ

**ଗରେଲ୍ ଧୁକା** - *ସୁ:* (ବି.) : ଗରଜିଲା ପବନ

**ଗର୍ଦ୍ଦନ୍** - *ଦେ:* (ବି.) : ବେକ

**ଗର୍ଦ୍ଧାରି** - *ଭ:* (ବିଂ.) : ଗଣ୍ଡଗୋଳ ବା ଲୁଟତରାଜ କାରୀ, ଗୁଣ୍ଡାମି

**ଗର୍ଦ୍ଦନୀ** - *ଭ:* (ବି.) : ବେକଷଣ୍ଢା

**ଗର୍ବିତାନି** - *ବୌ:* (ବି.) : ଉଦ୍ଧତ ମାଇପି

**ଗର୍ବିଣିଆ** - *କେନ୍ଦୁ:* (ବିଂ.) : ଗର୍ବୀ, ଉଦ୍ଧତ

**ଗର୍ଭଣାକାଠି** - *ଦେ:* (ବି.) : ଭାଲିଆ ଡାଳ

**ଗର୍ଭପାତ** - *ଦେ:* (ବି.) : ଶିଶୁଭ୍ରୂଣ ହତ୍ୟା, ଭ୍ରୂଣ ନଷ୍ଟ

**ଗଲ୍‌ତି** - *ବୌ:ସୁବ:ଦେ:ଭ:* (ବିଂ.ବି.) : ଭୁଲ୍, ଦୋଷ

**ଗଲ୍‌ଫି** - *ସ:* (ବି.) : ଏକ ପ୍ରକାର ମାଛ

**ଗଲଗଲ** - *କେ:ନ:ଯା:* (ଅ.ବି.କ୍ରି.) : କୁଣ୍ଠାଇ ହେବା, ଅଶାଳୀନ କଣ୍ଠୁ, ଗାଳିଦେବା

**ଗଲଗଲି** - *ଭ:* (ବିଂ.) : କଳିହୁଡ଼ୀ ସ୍ତ୍ରୀ

**ଗଲତି** - *କ:ଅ:ନ:* (ବିଂ.ବି.) : ଭୁଲ୍

**ଗଲରଗଲର** - *ନ:* (ଅ.) : ଛୋଟ କଅଁଳ ଶିଶୁର ଅସ୍ପଷ୍ଟ ଶବ୍ଦ ଉଚ୍ଚାରଣ

**ଗଲାଉତାରୁ** - *ଗ:* (ଅ.) : ଯିବାପରେ, ଏହାପରେ, ଏଥି ଉତ୍ତାରୁ

**ଗଲାନା** - *କଳା:* (କ୍ରି.) : ଗଲାଣି

**ଗଲାସନ** - *ବ:* (ବି.) : ଗତବର୍ଷ

**ଗଲାହେରି, ଗଲାଭାରି** - *ନ:* (କ୍ରି.) ପଳାଇଲା

**ଗଲି** - *ଦେ:କଳା:* (ବିଂ.ବି.କ୍ରି.) : ଯିବା, ଗଳି, ସଂକ୍ରୀର୍ଣ୍ଣ ପଥ, ଯାଉଛି ବୋଲି କହିବା

**ଗଲିଆ** - *ମା:* (ବି.) : କଳକପାତି

**ଗଲୁ** - *ଅନେ:* (ବି.ଅ.କ୍ରି.) : କଣ୍ଠୁ, କୁଣ୍ଠାଇ ହେବା

**ଗଲୁମାରିବା** - *ଖୋ:ନ:* (କ୍ରି.) : ଅଶ୍ଳୀଳ ଇଙ୍ଗିତରେ ଗାଳି

**ଗଲେଇ** - *ଢେ:* (ବି.) : ଜଂଗଲ

**ଗଳଗଣ୍ଡ** - *ଦେ:ସ:* (ବି.) : ବେକର ବର୍ଦ୍ଧିତ ମାଂସ, ଆବୁ, ଏହା ଏକ ରୋଗ, ଆୟୋଡିନ୍ ଅଭାବରୁ ହୁଏ

**ଗଳ ଗଳ ହୋଇପଡ଼ିବା** - *ଜ:* (କ୍ରି.) : ଜୋରରେ ଅଡ଼ାଡ଼ି ହେବା

**ଗଳଗାଜି** - *ଭ:* (ବିଂ.) ପାଟିକରି କଂପେଇବା

**ଗଳଗ୍ରହ** - *ଦେ:* (ବି.) : କଣ୍ଟା, ଶତ୍ରୁ

**ଗଳଥା** - *ଯା:* (କ୍ରି.) : ତଣ୍ଟିଆ ଦେବା, ଗଳାକୁ ଧକା ଦେବା

**ଗଳା** - *ଖୋ:ନ:* (ବି.) : କଣ୍ଠସ୍ୱର, ବେକ

**ଗଳାଆଚ୍ଛାଦନୀ** - *ସ:* (ବି.) : ମଫ୍‌ଲର

**ଗଳାଗଳି** - *ଅ:* (ବି.) : ପରସ୍ପର ମଧ୍ୟରେ ଘନିଷ୍ଠ ପ୍ରୀତି

**ଗଳାସ** - *କେ:* (ବି.) : ଗ୍ଲାସ୍, ଗିଲାସ

**ଗଳାସି** - *ଗ:* (ବି.) : ଗୋରୁ ମାନଙ୍କ ଗଳାରେ ବାନ୍ଧିବା ରଜ୍ଜୁ

**ଗଳିଆ** - *ନ:ଭା:କୋ:ନବ:* (ବି.) : ଅଦୃଶ୍ୟ, ଛିଦ୍ର, ଗଳିହା, ହିଡ଼ ଦେଇ ପାଣିର କ୍ଷୁଦ୍ର ପଥ, କଣା

**ଗଳିକୁଞ୍ଚି** - *ଅ:* (ବି.) : ଅନ୍ଧିସନ୍ଧି

**ଗଳିତ** - *ବେ:* (ବିଂ.) : ତରଳ ଧାତୁ, ପଚା, ପତିତ

**ଗଳିପଣ୍ଡା** - *ନ:* (ବିଂ.) : ଚତୁରରେ ସବୁଠି ପଶି କାର୍ଯ୍ୟ ହାସଲକାରୀ

**ଗର୍ଷାଁର** - *ସଂ:* (ବି.) : ବୋକା

**ଗସନ** - *ତ୍ୟ:* (ବି.) : ଗଲାବର୍ଷ, ଗତସନ

**ଗସିଆଁ** - *ସୁ:* (ବି.) : ମାଲିକ, ପାଳନ କର୍ତ୍ତା

**ଗସ୍ତାନି** - *ସଂ:* (ବି.) : କୁଳଟା, ଅଭିସାରିକା

**ଗହକ** - *ଅନେ:* (ବି.) : ଭିତିରିଆ କଥା, ଗରାଖ, ପଣ୍ୟଦ୍ରବ୍ୟର କ୍ରେତା, ଆଦର, ଉଲ୍ଲାସ, ଖୁସି

**ଗହଗହ** - *ଅନେ:* (ଅ.ବିଂ.ବି.) : ଉଚ୍ଚଶବ୍ଦ, ନିବିଡ଼ ରୂପେ ପ୍ରକାଶ, ଭିଡ଼, ବହୁଲୋକ ସମାଗମଜନିତ କୋଳାହଳ, ମହକ, ହାଉଯାଉ, ଉଲ୍ଲସିତ

**ଗହଡ଼ିବା** - *କଳା:* (କ୍ରି.) : ଘଉଡ଼େଇ ଦେବା

**ଗହଣ** - *ପଦ୍ୟ:ବେ:କେ:* (ବି.ଅ.) : ବନ, ରାଜାଦିଙ୍କ ସଙ୍ଗେ ଯିବା ବହୁ ଅନୁଚର, ସମୂହ, ଗଣ, ଦଳ, ପୋଷାକ, ମିଶିକରି

**ଗହଣ ଦଳ** - *ଗ:* (ବି.) : ମାଳିକା ପ୍ରବଚନ କାରୀ

**ଗହଣ ବିଜେ** - *ଗ:* (ବି.) : ଅନୁଚର ପାରିଷଦ ବର୍ଗଙ୍କ ସହ ରାଜାଙ୍କ ଭ୍ରମଣ

**ଗହଣା** - *ଅନେ:* (ବି.) : ଚାରାଗଛକୁ ସୁରକ୍ଷିତ ରଖିବା ଲାଗି ବାଉଁଶ କଣ୍ଟା ନିର୍ମିତ ପାଚେରି, ସୁନା ଅଳଙ୍କାର, ପଙ୍କରେ ତୋଡ଼ିଧରିବା ଯନ୍ତ୍ର

**ଗହଣା ଗାଣ୍ଠି** - *ଅନେ:* (ବି.) : ଅଳଙ୍କାର ସମୂହ

**ଗହଣା ହାଣ୍ଡି** - *ଗ:* (ବି.) : ମୁଗ କାନ୍ଦୁଲ ଆଦି ଡାଲି ଜାତୀୟ ଜିନିଷ ଭାଜିବା ହାଣ୍ଡି

**ଗହଣିଆ** - *ଗ:* (ବି.) : ରାଜାଙ୍କ ଚାକର, ଅନୁଚର ବର୍ଗ

**ଗହଣିଆ ଯୌତୁକ** - *ଗ:* (ବି.) : ରାଜଝିଅମା ଶାଶୁଘରକୁ ଯିବା ବେଳେ ସାଥିରେ ଦାସୀ, ପୋଇଲିଙ୍କୁ ମଧ୍ୟ ଯୌତୁକ ରୂପେ ନେବା

**ଗହଦି** - *ପଦ୍ୟ:ଅ:* (ବି.) : ଗରମ, ଗମଗମୁଆ ବା ଝାଳବୁହା ଗରମ

**ଗହଦିବାର** - *ସୁବ:* (କ୍ରି.) : ଦେହକୁ ଗରମ ଅନୁଭୂତ ହୋଇ ଝାଳ ବାହାରିବା

**ଗହନ** - *ପଦ୍ୟ:ସ:ବେ:* (ବି.ବିଂ.) : ଜଙ୍ଗଲ, ବନ, ଗହ୍ୱର, ଯତନା, ଗହ୍ୱର,

ଗଭୀରତା, ଗଭୀର, ଗର୍ତ୍ତ, ଗହଳ, ଦୁରୂହ, ଗଭୀର, ଦୁର୍ବୋଧ, ଗହନା

**ଗହନ୍ନ** - *ସ.* (ବି.) : ଗ୍ରହଣ

**ଗହନ କଥା** - *କ.* (ବି.) : ଭିତିରି କଥା

**ଗହନା** - *ଅନେ.* (ବି.କ୍ରି.) : ଗହଣା, ବଂଧକ,

**ଗହବା** - *ସଂ.ଅ.* (ବିଂ.) : ଗହଳ, ଘଞ୍ଚ; ନିବିଡ଼

**ଗହମ** - *ସଂ.ଦେ.ସୁ.* (ବି.) : ନିଘୋଡ଼ (ନିଦ); ଗଭୀର, ଶସ୍ୟ ବିଶେଷ

**ଗହମ ଖଜା** - *ଗ.* (ବି.) : ଗଜା ନାମକ ଏକ ପ୍ରକାର ମିଠେଇ

**ଗହମ ଚୂନା** - *ଗ.* (ବି.) : ଅଟା

**ଗହମହ** - *ସୁ.* (ବି.) : ମୁଖରିତ

**ଗହଲ୍** - *କଳା.* (ବିଂ.) : ଗହଳ, ଗହଳିଆ, ବେଶୀ

**ଗହଲଚହଲ** - *ସ.* (ବି.) : କୋଳାହଳ

**ଗହଲାବା** - *ସ.* (କ୍ରି.) : କାଳକ୍ଷେପଣ କରିବା

**ଗହଳ** - *ନ.ଢ.ପଦ୍ୟ.ଦେ.* (ବି.) : ଆବଶ୍ୟକଠାରୁ ଅଧିକ ଥିବା, ପାଟିତୁଣ୍ଡ, ଘୋ ଘା, ଗହଳଚହଳ, ଭିଡ଼, ଗୋଳମାଳ, ବହୁଲୋକ ସମାଗମ ଜନିତ ଗଣ୍ଡଗୋଳ, ପ୍ରାଚୁର୍ଯ୍ୟ, ସଙ୍ଗ, ଘନ, ନିବିଡ଼, ଘଞ୍ଚ

**ଗହଳିଚହଳି** - *କ.କେ.* (ବିଂ.ଅ.) : ଭିଡ଼, ଲୋକାରଣ୍ୟ, ଲୋକ ବଇଡ଼

**ଗହିଡ଼** - *ଅ.* (ବିଂ.) : ଗଭୀର

**ଗହୀରିଆ** - *ସୁବ.* (ବିଂ.) : ଗଭୀରତା ସମ୍ପନ୍ନ

**ଗହୁରୁ** - *ଗ.* (ବି.) : ଓଜନିଆ

**ଗହ୍ମା** - *ନ.ଗ.* (ବି.) : ଶ୍ରାବଣ ପୂର୍ଣ୍ଣିମା, ଶ୍ରାବଣ ପୂର୍ଣ୍ଣିମାର ଗହ୍ମାଡ଼ିଆଁ

**ଗହ୍ମାମୁଣ୍ଡିଆ** - *ବୌ.* (ବି.) : ବଡ଼ମୁଣ୍ଡିଆ

**ଗାଆଣ** - *କେ.* (ବି.) : ଗାଇବା

**ଗାଆଣୀ** - *ନ.* (ବି.) : ମଙ୍ଗଳା ଓଷା କୋଠିରେ 'ଢଣ କୋଇଲା' ଗୀତ ଗାଉଥିବା ଲୋକ।

**ଗାଆର୍ଡ଼** - *ଭ.* (ବି.) ପହରାଦାର (GUARD)

**ଗାଆଁ ଗହଳ** - *ଢ.* (ବି.) : ଗ୍ରାମ୍ୟ ପରିବେଶ

**ଗାଇଗାଣ୍ଡ** - *ଗ.* (ବି.) : ଗାଇଗୋଠ

**ଗାଇତେ** - *ମ.* (କ୍ରି.) : ଗାଇବା ପାଇଁ

**ଗାଇଁଗୁଇଁ** - *ଅ.* (କ୍ରି.ବିଂ.) : କାମ କରିବାକୁ ଅନିଚ୍ଛା ପ୍ରକାଶ

**ଗାଇଁଶ ଚୁଇଁଶ** - *ଅ.* (ବି.) : ଅନିଚ୍ଛା ପ୍ରକାଶ, କୁନ୍ଥୁକୁନ୍ଥୁ

**ଗାଈଆଳ** - *ନ.ଖୋ.ଦେ.* (ବି.) : ଗାଈ ଜଗାଳି, ଗାଈଗୋଠ ଜଗୁଥିବା ବ୍ୟକ୍ତି, ଗାଈଜଗୁଆଳି

**ଗାଈଏ (ଗୁଆ)** - *ଭ.* (ବି.) : ୧୦ଟି ଗୁଆ

**ଗାଈଖୋଜ** - *ସଂ.* (ବି.) : ଗାଈର ପାଦଚିହ୍ନ

**ଗାଈ ଗରମ୍‌ହେବା** - *ଖୋ.* (କ୍ରି.) : ଗର୍ଭ ଧାରଣ କ୍ଷମ ଓ ମିଳନ ପାଇଁ ଯୋଗ୍ୟ ହେବା

**ଗାଈକୁଳ** - *କୋ.* (ବି.) : ଗାଈ ଗୋଡ଼ରେ ବାନ୍ଧିବା ଦଉଡ଼ି, ଗାଈ ଛନ୍ଦ

**ଗାଈ ବତରଯିବା** - *ଖୋ:* (କ୍ରି.) : ଗର୍ଭ ଧାରଣ କ୍ଷମ ଓ ମିଳନ ପାଇଁ ଯୋଗ୍ୟ ହେବା

**ଗାଈରାମା ପୂଜା** - *ଗଜ:* (ବି.) : କୁମାର ପୂର୍ଣ୍ଣିମା ଦିନ ଶିବ ପାର୍ବତୀଙ୍କ ପୂଜା କରାଯାଏ

**ଗାଉଆ ଘିଅ** - *ଖୋ:* (ବି.) : ଗାଈର ଘିଅ, ଗୁଆ ଘିଅ

**ଗାଉଣା** - *ପଦ୍ୟ:* (ବି.) : ଗାନ, ଗୀତଗାଇବା, ଗୀତ

**ଗାଉଦିଆ** - *କୋ:* (ବି.) : ମାନ୍ଦାପଣ, ଆଳସ୍ୟ

**ଗାଉନୁ** - *ଗ:କୋ:* (ବି.) : ଝିଅ ପିଲାଙ୍କ ଘାଗରା, ଝିଅ ପିଲାଙ୍କ ପରିଧେୟ ବିଶେଷ, ଗାଉନ୍

**ଗାଉନ୍ଦା** - *ପୁ:* (ବି.) : ପେଟ ଗୋଳମାଳ

**ଗାଉଁଗାଉଁ** - *ପଦ୍ୟ:ଦେ:* (ଅ.ବିଂ.) : ଅସନ୍ତୋଷ ବା ରାଗସୂଚକ ମୁହୁର୍ମୁହୁ ଉଚ୍ଚାରିତ ଶବ୍ଦ, ବିରକ୍ତ

**ଗାଉଁଚା** - *କନ୍ଧ:ଗ:ରା:କୋ:* (ବି.) : ଗାମୁଛା, ସ୍ତ୍ରୀଲୋକଙ୍କ ପିନ୍ଧାଖଦି, ଗାମୁଛା, ଉତ୍ତରୀୟ

**ଗାଉଁଦିଆ** - *ଅ:କନ୍ଧ:* (ବିଂ.ବି.) : ମାନ୍ଦାଳିଆ, ଗାଁ ବାଲା

**ଗାଉଁଲା** - *ବା:* (ବି.) : ପିତ୍ତଳର ବଡ଼ପାତ୍ର

**ଗାଉଁଲି** - *ଖୋ:* (ବିଂ.) : ମଫସଲି

**ଗାଏ** - *ଅ:କୋ:ସୁ:କଳା:* (ବିଂ.ବି.) ସର୍ବମୋଟ, ୧୦ (ସଂଖ୍ୟା), ଗାଈ, ଗାଇବା

**ଗାଏଗଙ୍ଗା** - *ସ:* (ବିଂ.) : ଅତ୍ୟନ୍ତ ଶାନ୍ତ ସୁଧୀର ଭାବ

**ଗାଏଣୀ** - *ଗ:* (ବି.) : ଗାନ, ଗାଇବା ଲୋକ

**ଗାଏବ** - *ସୁ:କ:ସଂ:ଦେ:* (ବି.ବିଂ.) : ଅଦୃଶ୍ୟ, ନିଖୋଜ, ହଜିଯିବା, ନିରୁଦ୍ଦିଷ୍ଟ, ଉଭାନ

**ଗାଏମୋଟ** - *ଅନେ:* (ବି.) : ସର୍ବମୋଟ, ସମୁଦାୟ,

**ଗାଏଲ୍ ଝଗର୍** - *ସ:* (ବି.) : କଳିଗୋଳ

**ଗାଏସନ୍** - *କଳା:* (କ୍ରି.) : ଗାଆନ୍ତି, ଗାୟନ କରନ୍ତି

**ଗାଏଁଡ୍** - *ସୁବ:* (ବି.) : ପିଚା, ଗୁହ୍ୟଦ୍ୱାର

**ଗାଗ୍ରି** - *କୋ:* (ବି.) : ମାଠିଆ

**ଗାଗ୍ରିକି ଚାହିଁବା** - *କୋ:* (କ୍ରି.) : ରାଗିକରି ଅନାଇବା

**ଗାଗ୍ଲି** - *କନ୍ଧ:* (ବି.) : ପାଦର ଅଳଙ୍କାର

**ଗାଗଡ୍** - *ମା:ପଦ୍ୟ:* (ବିଂ.ବି.) : ମୋଟା, ଦେହ, ଚେହେରା, ଶରୀର

**ଗାଗର** - *ନବ:ଯା:ଜ:* (ବି.) : ଦେହ, ବଡ଼ କଣ୍ଢିଆମାଛ

**ଗାଗରା** - *ମ:* (ବି.) : ଗରା

**ଗାଗର୍** - *କଙ୍କା:* (ବି.) : ଶରୀର, ଦେହ

**ଗାଗଲସ** - *ନବ:* (ବି.) : କଳା ଚଷମା

**ଗାଗୀ** - *ଦେ:* (ବି.) : ଲୁଗା

**ଗାଗୁର୍ଜିଆ** - *ପୁ:* (ବିଂ.) : ବିକୃତ, ମର୍କଟଭଳି ବିକୃତ

**ଗାଗେରା** - *ଗଦ୍ୟ:* (ବି.) : ତୁଳସୀ

**ଗାଙ୍ଗତୁଡ଼ା** - *ଗ:* (ବି.) : ଏକପ୍ରକାର ଥଣ୍ଟିଆ ତୋଡ଼ିମାଛ

**ଗାଙ୍ଗଲା** - *ଖୋ:କେନ୍ଦୁ:* (ବି.) : ତସଲା, ଧାତୁରେ ନିର୍ମିତ ପାତ୍ର

**ଗାଙ୍ଗୀ** - *ଗ:* (ବିଂ.) : ଜିଦ୍‌ଖୋର ପ୍ରକୃତିର ସ୍ତ୍ରୀ ଲୋକ

**ଗାଚୁ** - *କୋ:ବା:* (ବି.) : ସିମେଣ୍ଟ ବା ଚୂନ ଚଟାଣ, ପଲସ୍ତରା

**ଗାଛ୍** - *ମ:* (ବି.) : ଗଛ

**ଗାଜର** - *ଦେ:ଖୋ:ଜ:* (ବି.) : ମୂଳାଜାତୀୟ ପରିବା, ମାଟିତଳ ପରିବା

**ଗାଜି** - *କୋ:ଗ:ଗଜ:ଦେ:* (ବି.) : କାଛୁ କୁଣ୍ଡିଆ, କୁଣ୍ଡିଆ ରୋଗ, ଅସମ୍ମାନ, ରାଗିବା, କେଟ୍‌କେଟ୍ କରିବା, ଗାଳି କରିବା

**ଗାଜିଆନାଟ** - *ଗ:* (ବି.) ବ୍ରହ୍ମପୁର ଠାକୁରାଣୀ ଯାତ୍ରାର ଏକ ବେଶ

**ଗାଜିଦେବା** - *ଯା:* (କ୍ରି.) : ଖୁବ୍ ଢାଳିବା

**ଗାଜିଶୁଜେଇ** - *ଗ:* (କ୍ରି.) : ଗାଳିଦେବା, ବିରକ୍ତ ହେବା

**ଗାଜୁଗାଜୁ** - *ଜ:* (କ୍ରି.) : ବକ୍‌ବକ୍

**ଗାଜୁରି କାଙ୍ଗା** - *କଝ:* (ବି.) : ଖଜୁରିକୋଳି

**ଗାଜୁଲ୍** - *ମା:* (ବି.) : ଚୁଡ଼ି

**ଗାଞ୍ଜା** - *ବା:* (ବି.) : ଅଣ୍ଡିରା କୁକୁଡ଼ା

**ଗାଞ୍ଜିଆ** - *ଅନେ:* (ବି.) : ଟଙ୍କା ରଖିବା ଛୋଟଥଳୀ, ଖୁଚୁରା ପଇସା ରଖିବା ପାଇଁ ପ୍ରସ୍ତୁତ ଛୋଟ ମୁଣା, ପୁଟୁଳା

**ଗାଟ** - *ଗ:ଦେ:* (ବି.) : ଗାର, ଗାବ୍‌ଚୁକ୍ତି

**ଗାଟବାନ୍ଧିବା** - *ଗ:* (କ୍ରି.) : ପାଣି ସୁଅରେ ଆଡ଼ ପକାଇବା

**ଗାଟି** - *ଅନେ:* (ବିଂ.) : କୃପଣ, ଟାଣ, ଲୋଭୀ

**ଗାଟୁ** - *ବା:କୋ:ନବ:ଗଜ:* (ବି.) : ହିଡ଼, ହୁଡ଼ା, ଜମିର ସୀମା ସୂଚକ ଅଣ ଓସାରିଆ ନାତୁ୍ୟଚ ମାଟିବନ୍ଧ

**ଗାଟୁଆଲ୍** - *ମା:* (ବି.) : ମାଝୀ, ଡଙ୍ଗାଚାଳକ, ଘାଟିଆ

**ଗାଟ୍ରା** - *ଗଦ୍ୟ:* (ବି.) : ଦାଆ

**ଗାଡ୍** - *ମା:ଦେ:* (ବି.) : ନଦୀ, ଗାତ, ଖଣା

**ଗାଡ୍‌ତଳିଆ** - *ଚୈ:* (ବି.) : ବେକମୂଳ

**ଗାଡ୍‌ବା** - *ଦେ:* (କ୍ରି.) : ପୋତିବା

**ଗାଡ୍‌ରା** - *କଳା:ଦେ:* (ବି.) : ଗାରରା, ମେଣ୍ଢା, ଅଣ୍ଡିରା ମେଣ୍ଢା

**ଗାଡ୍‌ଶୁଆ** - *କଳା:* (ବିଂ.) : ସାଧାରଣତଃ ସ୍ତ୍ରୀଲୋକମାନେ ବ୍ୟବହାର କରୁଥିବା ଏକ ଗାଳି ବିଶେଷ, ତାତ୍ପର୍ଯ୍ୟ- କେତେକ ସ୍ଥାନରେ ମୃତବ୍ୟକ୍ତିର ଅଗ୍ନି ସଂସ୍କାର କରାନଯାଇ ଗାତ ଖୋଳି ପୋତା ମୃତ ବ୍ୟକ୍ତି

**ଗାଡ୍‌ହା** - *କଝ:* (ବି.) : ଗାତ

**ଗାଡମ୍ଭ** - *ରା:* (ବି.) : ଅହଂକାର

**ଗାଡୁଁ** - *ଦେ:* (ବି.) : ବଳଦଗାଡ଼ି

**ଗାଡ଼** - *ଅନେ:* (ବି.) : ତନ୍ତୀ ଜାତିର ଲୋକ, ଖାଲ, ଗାତ, ନଦୀ, ଗଭୀର ଜଳ ଧରୁଥିବା ଗାତ, ଗଭୀର

**ଗାଡ୍ଡା** - *କୋ:ସ:* (ବି.କ୍ରି.) : ଶଗଡ଼, ପୋତିବା

**ଗାଡ୍ଡରା** - *ମା:କେନ୍ଦୁ:* (ବି.) : ବୋଦା, ଅଣ୍ଡିରା ମେଣ୍ଢା

**ଗାଡ଼(ଢ)** - *କଳା:* (ବି.) : ଖାଲ, ଗାତ

**ଗାଡ଼ା** - *ଅନେ:* (ବି.) : ପିତ୍ତଳ ଗରା, ଗାତ, ଶଗଡ଼, ମାଠିଆ, ପୋଖରୀ

**ଗାଡ଼ିଆ** - *ଗ:ନ:* (ବି.) : ଜଳାଶୟ, ଅଧିକ ଖାଉଥିବା ଲୋକ, ଗଡ଼ିଆ, ଛୋଟ ପୋଖରୀ

**ଗାଡ଼ିଏ** - *କ:* (ବିଂ.) : ଯଥେଷ୍ଟ ପରିମାଣରେ, ଗାଡ଼ି ଭର୍ତ୍ତି

**ଗାଡୁରୁ** - *ଗଜ:* (ବିଂ.) ବେଖାତିର ମନୋଭାବ

**ଗାଡୁଶୁ** - *ଗଜ:* (ବିଂ.) ବେଖାତିର ମନୋଭାବ

**ଗାଢ** - *ଅନେ:* (ବିଂ.) : ଗଭୀର, ଗାଢନିଦ୍ରା, ବହଳିଆ, ଘଞ୍ଚ, ନିବିଡ଼, ଗହଳ, ବହଳ, ଗାଢତ୍ୱ, ଖାଇ,

**ଗାଢ଼ର** - *ଚୌ:* (ବି.) : ମେଣ୍ଢା

**ଗାଢ଼ୁଆ** - *ଖୋ:* (ବିଂ.) : ଖାଲୁଆ

**ଗାଣ୍ଡିଆ** - *ପଦ୍ୟ:ମା:* (ବି.) : ମାଣ୍ଡିଆ ସଦୃଶ ଏକ ପ୍ରକାର ଶସ୍ୟ, ବେସନ ପ୍ରସ୍ତୁତ ଖାଦ୍ୟ, ଭଜୁଆ

**ଗାଣ୍ଡୁ** - *ରା:* (ବି.) : ପ୍ରତିବନ୍ଧକ

**ଗାଣ୍ଠି** - *ନ:ଚୌ:କେ:* (ବି.) : ବଡ଼ଲୁଗା ବନ୍ଧା ଗଣ୍ଠିଲି, ଲୁଗାବନ୍ଧା ଗଣ୍ଠିଲି, ବଡ ବିଡା

**ଗାଣ୍ଠିଲି** - *ମା:* (ବି.) : ପୋଟଳା

**ଗାଣ୍ଡି** - *ନବ:ଦେ:କେ:* (ବି.) : ପିଚା, ନିତମ୍ବ

**ଗାଣ୍ଡିଆ** - *ଗ:ନବ:ଖୋ:* (ବିଂ.) : ନିର୍ଲଜ୍ଜ ସ୍ୱଭାବ, ସ୍ୱାଭିମାନ ନଥିବା ବ୍ୟକ୍ତିତ୍ୱ, ଅନୁସରଣକାରୀ, ମାଇଚିଆ, ସ୍ତ୍ରୈଣ, ଭୀରୁ

**ଗାଣ୍ଡୁଆ** - *ଅନେ:* (ବି.) : ବାଉଁଶ ତିଆରି ମାଟି ବୁହାବୋଝ, ବାଉଁଶବୁଣା ଟୋକେଇ, ବାଉଁଶ ନିର୍ମିତ ଝୁଡ଼ି, ବାଉଁଶ ପାତିଆରେ ପ୍ରସ୍ତୁତ ମାଟି ଉଠେଇବା ଟୋକେଇ, ଗୋବର ଗୋଟାଇବା ଟୋକେଇ, ଝୁଡ଼ି, ବାଉଁଶରେ ବୁଣାହୋଇଥିବା ଚଟକା ଟୋକାଇ

**ଗାଣ୍ଡେଇବା** - *ଦେ:* (କ୍ରି.) : ଆଦେଶ ଅମାନ୍ୟ

**ଗାତ** - *ରା:ଦେ:* (ବି.) : ଖଣା, ଖାଲ

**ଗାତପଶା** - *ଖୋ:ଭ:ଗଦ୍ୟ:* (ବିଂ.ବି.) : ଗାତରେ ଯେ ପଶେ(ଯୁଇରେ), ଗାଳି ବିଶେଷ, ଗାଉଁଲୀ ଗାଳି

**ଗାତୁଆ** - *ଅ:ନ:କଳା:* (ବି.ବିଂ.) : ମୂଷା, ଗାତରେ ଥିବା, ଗାତରେ ଯିଏ ରହେ, ଗାତକୁ କେନ୍ଦ୍ରକରି ଖେଳାଯାଉଥିବା ବାଟିଖେଳ

**ଗାତ୍ରା** - *ଗଜ:* (ବିଂ) : ପରିଷ୍କାର

**ଗାଦ** - *କନ୍ଧ:* (ବି.) : ତେଲକାଣ୍ଟି

**ଗାଦ୍‌ଲା** - *ମା:* (ବି.) : ବାଦୁଡ଼ି

**ଗାଦ୍‌ଡ଼ା** - *କନ୍ଧ:* (ବି.) : ମୁଣ୍ଡର ପଛପାଖ, ମୋଟା

**ଗାଦବା** - *କୋ:* (ବି.) : ଆଦିବାସୀ ଜାତି ବିଶେଷ

**ଗାଦା** - *ଗଦ୍ୟ:* (ବି.) : ଏକ ନଳିଆ ବନ୍ଧୁକ

**ଗାଦି** - *ଅନେ:* (ବି.) : ବେଶି ସଂଖ୍ୟାରେ ମହକୁଦ, ଗାଧୋଇ, ଆସନ, ସିଂହାସନ, ପଦବୀ, ଅଭିଷେକ ସମୟରେ ମହାରାଜା ଉପବେଶନ କରୁଥିବା ଦିବ୍ୟ ଆସନ, ସିଂହାସନ, ଗାଧୋଇବା, ରାଜଗାଦି

**ଗାଦିଆ** - *ଗ:କୋ:କଳା:* (ବି.) : ଧାନ ରଖିବା ଘର, ଧାନମ ରୋଇ, ଅମାର

**ଗାଦିବୁଡ଼ା** - *ନୁ:* (ବି.) : ସାରସ ପକ୍ଷୀ

**ଗାଦୁଲୁ ଗୁମା** - *ଗ:* (ବିଂ.) : ମୋଟା, ପୃଥୁଳ

**ଗାଧିକ୍‌ଯିବା** - *ମ:* (କ୍ରି.) : ଗାଧୋଇବାକୁ ଯିବା

**ଗାଧୁଆପାଧୁଆ** - *ଦେ:* (ବି.) : ଗାଧୋଇବା

**ଗାଧେଇାଯାତ୍** - *କନ୍ଧ:* (ବି.) : ଗାଧୋଇବା ତୁଠ

**ଗାନିମୁଣା** - *ସଂ:* (ବି.) : ଅଖା

**ଗାନ୍ଧିକା** - *ଗଜ:ଗ:କୋ:* (ବି.ଅ.) : ଜଂଜାଳ, କାର୍ଯ୍ୟବ୍ୟସ୍ତ, ଗହଳ, କାର୍ଯ୍ୟବ୍ୟସ୍ତତା, ଝିଂଝଟ

**ଗାବ** - *ଗ:* (ବି.) : ମର୍ଦ୍ଦଳର ପୁଡ଼ା

**ଗାବ୍‌ବେହୁ** - *ଅ:* (ବିଂ.) : ଭଲ ମଣିଷ

**ଗାବ୍‌ରେଇବା** - *କନ୍ଧ:* (କ୍ରି.) : ଗାରେଇବା

**ଗାବା** - *କଳା:* (ବି.) : କୁଟିଆ କନ୍ଧମାନଂକର ସ୍ୱତନ୍ତ୍ର ପୂଜାର୍ଚ୍ଚନା

**ଗାବାଲ୍‌ଗାବାଲ୍** - *ଗ:* (ଅ.) : ଶୀଘ୍ର ଶୀଘ୍ର

**ଗାବିଦେବା** - *ଗ:* (କ୍ରି.) : ଦବାଇ ଦେବା

**ଗାବିବା** - *କଳା:* (କ୍ରି.) : ଗର୍ଭହେବା (ପଶୁମାନଂକ କ୍ଷେତ୍ରରେ) ୨.ମିଶେଇବା

**ଗାବୁକିନା** - *ଦେଶୀ:* (କ୍ରି.) : ହଠାତ୍

**ଗାବୁକୁଚୁ** - *ଗ:* (ବିଂ.) : ବିରକ୍ତିକର, ଅଯଥା

**ଗାବୁଗନ୍ଧ** - *ଗଜ:* (ବି.) : ପଚିଯିବା ଦୁର୍ଗନ୍ଧ

**ଗାବୁଜିଆ** - *ଗ:* (ବିଂ.) : ଅପରିଷ୍କାର ଲେଖା, ଅସ୍ପଷ୍ଟ ଲେଖା

**ଗାଭିଆ** - *ଯା:* (ବି.) : ବଢେଇଙ୍କ ମୂର୍ତ୍ତି ତିଆରି ଯନ୍ତ୍ର

**ଗାଭିନୀ** - *ଯା:ବା:ବା:* (ବିଂ.) : ଗର୍ଭସଂଚାର ହେବା, ଗର୍ଭିଣୀ, ଗର୍ଭିଣୀ ହୋଇଥିବା ଗାଈ, ଛେଳି, ମେଣ୍ଢା ଆଦିଙ୍କୁ କୁହାଯାଏ

**ଗାଭିଲୀ** - *ଜ:* (ବି.) : ଗର୍ଭବତୀ ପଶୁ

**ଗାମଦ** - *ଟୀ:* (ବି.) : ଜାହାଜ ତଳ କଣା ହୋଇ ପାଣି ପଶିବା

**ଗାମଛା** - *ରା:* (ବି.) : ପାଚିଆ

**ଗାମା** - *କଳା:ରା:ଯା:* (ବିଂ.ବି.) : ମୋଟା, ଧୂମା, ମରିଚର ରାବା, ମେଘ

**ଗାମୁ** - *ଚୌ:* (ବିଂ.) : ଖୁବ୍ କମ୍ କଥା କହିବା ଲୋକ

**ଗାମୁଚା** - *ଗ:* (ବି.) : ଗାମୁଛା

**ଗାମୁ ଛିଆ** *ଗଦ୍ୟ:* (ବି.) : ଲାର୍ଭାଭକ୍ଷକ ମାଛ

**ଗାୟ୍** - *ନବ:* (ବି.) : ଗାଈ

**ଗାୟକ** - *ପଦ୍ୟ:* (କ୍ରି.ବିଂ.) : ଗାନକର୍ତ୍ତା, ଠିଆପାଲାର ମୁଖ୍ୟ ବ୍ୟକ୍ତି

**ଗାୟଣି** - *ପଦ୍ୟ:* (ବି.) : ଗାନ, ଗୀତ, ଗାୟିକା, ଗୀତବିଶାରଦ, ରାଜାନ୍ତଃପୁରର ଗାନବିଶାରଦ ଦାସୀ

**ଗାର** - *ଦେ:କ:କେ:ନବ:* (ବି.) : ହଳମାପ, ରେଖା (କେତେଗାର ହଳ କଲ), ଶେଷ ହେବା, ଅଣ୍ଡା

**ଗାରଡ଼** - *ଗ:ସଂ:ପଦ୍ୟ:* (ବି.) : ଫରେଷ୍ଟ ଗାର୍ଡ଼, ଅଣ୍ଡିରା ମେଣ୍ଢା, ଜଗୁଆଳି

**ଗାରଦ** - *ପଦ୍ୟ:* (ବି.) : କବାଟ, ନିବୁଜ କୋଠରୀ

**ଗାରଦେବା** - *ଯା:* (କ୍ରି.) : ପ୍ରଥମ ହଳ ଗାର କାର୍ଯ୍ୟ, ତା ପର ହଳ ଜାଆଁଳ

**ଗାରରା** - *କଳା:* (ବି.) : ମେଣ୍ଢା

**ଗାରା** - *ଚର:ଗ:କଝ:* (ବି.) : ଅଣ୍ଡା, ଶିକାର ସମୟରେ ମଞ୍ଚା ନିକଟରେ ବନ୍ଧା ଯାଇଥିବା ଛେଳି, ଗରା

**ଗାରାଗାଛିଣି** - *ଟୀ:* (ବିଂ.) : କଞ୍ଚାଇଟାରେ ଘରର କାନ୍ଥ ତିଆରି କରିବାକୁ କୁହାଯାଏ

**ଗାରାଷ୍ଟି** - *ଟୀ:* (ବି) : ବଡ଼ ପରିବାର

**ଗାରି** - *ମା:ଗଞ୍ଜ:ରା:କଝ:* (ବି.) : ବରା (ଖାଦ୍ୟବିଶେଷ), ବିରିର ଭଜାପିଠା

**ଗାରିଆ** - *ପଦ୍ୟ:ନବ:ନବ:* (ବି.) : ଗରା, ଗୋରାହାଣ୍ଡି, ଗରିଆ

**ଗାରିମା** - *ଦେ:ଜ:* (ବି.) ବଡିମା, ଗୁଣଗାରିମା, ମହିମା

**ଗାରୁ** - *ଗଞ୍ଜ:* (ବି.) ସମ୍ମାନସୂଚକ ସମ୍ବୋଧନ

**ଗାରୁଗାରୁ** - *ଅନେ:* (କ୍ରି.ବିଂ.ଅ.) : ଅସନ୍ତୁଷ୍ଟ ହେବା, ବିରକ୍ତି ସୂଚକ ଶବ୍ଦ, ରାଗରେ ଟମ୍‌ଟମ୍ ହେବା, ଢଗ, ଅସନ୍ତୁଷ୍ଟ ଭାବ, ରାଗିହେବା

**ଗାରୁଡ଼ି ମନ୍ତ୍ର** - *ନ:* (ବି.) : ବିଷ ହରଣ ମନ୍ତ୍ର

**ଗାରେଇବା** - *ନ:କେ:* (କ୍ରି.) : ଗାର ଟାଣିବା, ଅସୁନ୍ଦର ଲେଖିବା

**ଗାରେଡ଼ି** - *ଜ:ନ:* (ବି.) : ଗୁଣିଗାରେଡ଼ି, ତନ୍ତ୍ର, ଗୁଣିବିଦ୍ୟା

**ଗାର୍ଜ୍ଜନ** - *ମା:ଟୀ:* (ବି.) ଗାର୍ଡ଼ିଆନ୍, ଅଭିଭାବକ, ପଇତା ପକାଇବା ବେଳର ଗୀତ, ପାଟୁଆ ଯାତ୍ରାର ଗୀତ

**ଗାର୍ଡ** - *ଦେ:* (ବି.) : ଜଗୁଆଳି
**ଗାର୍‌ଗାରିଆ** - *ଦେ:* (ବିଂ.) : ଗାରଟଣା
**ଗାଲ୍‌ଚା** - *ଦେ:* (ବି.) : ଚାଦର
**ଗାଲ୍‌ପାଟିଆ** - *ଗ୍ରା:* (ବି.) : ଚଟକଣି
**ଗାଲ୍‌ବା** - *ସ:* (କ୍ରି.) : ଗାଳିବା, ଭାତରୁ ତୋରାଣିକୁ ଅଲଗା କରିବା
**ଗାଲ୍‌ସି** - *ଦେ:* (ବି.) : ମାଛର କଳପାଟି
**ଗାଲ ଭୁରୁଡ଼** - *ଅ:* (କ୍ରି.ବିଂ.) : ମିଛ ଆସ୍ଫାଳନ
**ଗାଲା** - *କୋ:* (କ୍ରି.) : ଛୋଟ ପାତ୍ର
**ଗାଲି** - *ଅନେ:* (ବି.) : ଗାଳି, କୁକୁଡ଼ା ଯୁଦ୍ଧ, ମାଛର ନିଶ୍ୱାସ ନେବା ଅଂଶ, କଳି ବାହାରିବା, ମୁକୁଳ ଫିଟିବା, ଲୁଣ ମାରିବା ସ୍ଥାନ, କୁକୁଡ଼ା ଯୁଦ୍ଧ
**ଗାଲିଚା** - *ଖୋ:* (ବି.) : ଘାସ ରୋପଣ କରାଯାଇଥିବା ପ୍ରାନ୍ତର
**ଗାଲିପାଗଡ଼ା** - *ଭା:କୋ:ଗ:ଗଞ:* (ବି.) : ଗୁଡ଼ି, ଉଡ଼ାଇବା ପାଇଁ ଲମ୍ବା ସୁତା ଲାଗିଥିବା କାଗଜ ଚକି, ଗୁଡ଼ିପତାକା
**ଗାଲିସି** - *ନ:ଭା:ଗ:* (ବି.) : ଗାଲ ପର୍ଯ୍ୟନ୍ତ ଲମ୍ବା ଦାଢ଼ି ସଜେଇ ରଖିବା, ମାଛ ଗାଲିସି, ମାଛର ଗାଲ ଅଂଶ, ମାଛର ଗାଲ
**ଗାଲୁ** - *ଅନେ:* (ଅ.ବି.ବିଂ.) : ମିଛକୁ ସତ, ସତକୁ ମିଛ କହିବା, କଞ୍ଚାମିଛୁଆ, ହେଣ୍ଡିବା, ଗାଲୁମାରିବା
**ଗାଲୁଆ** - *ଅନେ:* (ବି.ବିଂ.) : କର୍ଣ୍ଣମୂଳରେ ଶୋଥ (ରୋଗବିଶେଷ), କୁହାଳିଆ, ମିଥ୍ୟାବାଦୀ, ଏକ ପ୍ରକାର ଗାଲଫୁଲା ରୋଗ, ଯେ କଥା ଗାଲାଏ, ଯେ ଜାଣି ନଜାଣିଲା ପରି ରହେ, ମିଛ କଥା କହି ଯୁକ୍ତି କରୁଥିବା ଲୋକ, ମିଛୁଆ
**ଗାଲୁଜିବିଆ** - *କନ୍ଧ:* (ବିଂ.) : ଅବହେଳା କରୁଥିବା ବ୍ୟକ୍ତି ଓ ବଚନ ରକ୍ଷା କରୁନଥିବା ବ୍ୟକ୍ତି
**ଗାଲୁ ଭୁରୁଡୁ** - *ଗ:* (ବିଂ.) : ମିଛକୁ ସତ ବୋଲି କହିବା
**ଗାଲୁସ୍‌ନି** - *ମା:* (ବି.) : ରହୁଛି, ଯାଉଛି
**ଗାଲେ** - *କ:ଗା:* (ବିଂ.ଅ.) : ପାଟିଏ, ନିମିତ୍ତ
**ଗାଲେଇବା** - *ଅ:* (କ୍ରି.) : ନଜାଣିବା ଭଳି ରହିବା
**ଗାଳିବା** - *ଅ:ନ:କ:ନବ:* (କ୍ରି.) : ଭାତରୁ ପେଜ ବାହାର କରିବା
**ଗାସ୍** - *କଣ୍ଢ:* (ବି.) : ଘାସ
**ଗାହଣ** - *ଭା:* (ବି.) : ଗୀତ ବୋଲୁଥିବା ବ୍ୟକ୍ତି
**ଗାହଲକ** - *ଭା:* (ବି.) : ଗୀତର ସ୍ୱର
**ଗାହାକ** - *କଳା:ବର:ସୁ:ସ:* (ବି.) : ଗାୟକ, ଗାୟନକାରୀ, ଗାହାଣ, ମୁଖ୍ୟ ଗାୟକ
**ଗାହାଣ** - *କେ:ଭ:ଗ:* (ବି.) : ପାଲା ଗାୟକ, ଗାୟକ, ଗଂଜାମର ଏକ ଲୋକ ନୃତ୍ୟ
**ଗାହାଣବଜାଣ** - *ଭ:* (ବିଂ.) : ବାଦ୍ୟଯନ୍ତ୍ର ସାହାଯ୍ୟରେ ଗୀତ ଗାଇବା
**ଗାହାଣିଆ** - *ଭା:* (ବି.) : ଦେବୀପ୍ରସନ୍ନ ବ୍ୟକ୍ତି
**ଗାହାଁ** - *ନୂ:କଳା:* (ବି.) : ଗ୍ରାମ, ଗାଁ, ଗ୍ରାମ, ପଲ୍ଲୀ, ଅଞ୍ଚଳ

**ଗାଁଆଣୀ** - *ରା:* (ବି.) : ସମୂହଗାନ

**ଗାଁଉନୁ** - *ରା:* (ବି.) : ଫ୍ରକ୍

**ଗାଁଠ** - *ସଂ:* (ବି.) : ଆବୁ

**ଗାଁଣ୍** - *କଳା:* (ବି.) : ଗାଣ୍ଠି, ଗିଜ୍

**ଗାଁଣ୍‌ମାରୁ** - *କଳା:* (ବିଂ.) : ଠକ

**ଗାଁଥାଇ** - *ବର:* (ବି.) : ଗୋଟେ ପ୍ରକାର ଲଟାକୁ କେଁଚୁଆର ମୁହଁରେ ଭରିକରି ଲାଞ୍ଜ ଆଡ଼କୁ ଭର୍ତ୍ତି କରାଯାଏ ଏବଂ ଏହାକୁ ଆଉ ଏକପ୍ରକାର କାଣି ଲଟାଗୁଛରେ ବାନ୍ଧି ପ୍ରସ୍ତୁତ କରାଯାଉଥିବା ମାଛ ଖାଦ୍ୟବିଶେଷ

**ଗାଁଦିଆ** - *ମା:* (ବି.) : ଗୋଳମାଳ

**ଗାଂଛିଆ** - *କୋ:ଗଜ:କଳା:* (ବି.) : ଟଙ୍କା ପଇସା ରଖିବା ପାଇଁ ସୁତା ବା କପଡ଼ା ନିର୍ମିତ ଲମ୍ବାଳିଆ ଛୋଟ ଥଳୀ, ଭିତର ପକେଟ୍, ପଇସା ରଖିବା ଛୋଟ ମୁଣି

**ଗାଂଛିଲ୍** - *ବୌ:* (ବି.) : ବାଚାଳ

**ଗାଂପା** - *ଅ:* (ବି.) : କୁଣ୍ଡି

**ଗିଅଣା** - *ଗ:* (ବି.) : ଗାଳି, ଗିହଣା

**ଗିଆନ** - *ନୂ:କଳା:* (ବି.) : ଜ୍ଞାନ, ଚେତନା

**ଗିଆପ** - *କୋ:* (ଅ.) : ଏକ ପ୍ରକାର ଗାଳି

**ଗିଆସ ସୋଡ଼ା** - *ଗ:* (ବି.) : ଗଞ୍ଜାମରେ ଲବ୍ଧ ଏକ ପାନୀୟ

**ଗିଚିବା** - *ଗ:* (କ୍ରି.) : ଗୋରୁ ମଇଁଷି ପୋଢଙ୍କ ଘୁଞ୍ଚିବା

**ଗିଜ** - *ଅନେ:* (ବି.) ମଳଦ୍ୱାର, ପିଠାଜାତୀୟ, ପଦାର୍ଥ, ଗାଣ୍ଠି, ପଶୁଙ୍କ ଶୁକ୍ର

**ଗିଜ୍‌ରି** - *ଝା:* (କ୍ରି.) ଧାରୁଆ ହୋଇ ବାହାରକୁ ବାହାରୁଥିବା ଧାତୁ, ପଥର

**ଗିଟି** - *ସୁ:ରା:* (ବି.) : ଗେଟି ପଥର, ପଥରକୁ ଭାଙ୍ଗି କରୁଥିବା ମାଟିଗିଲ

**ଗିଟିବ** - *ମା:* (କ୍ରି.) : ସୁହାଇବ

**ଗିଡିସା** - *ରା:* (ବି.) : ଖର୍ଡାଭଳି ଅସ୍ତ୍ର

**ଗିଣ୍ଡା** - *ରା:* (ବିଂ.) : ବାମନ

**ଗିଡ଼ିମିଡ଼ି** - *ଗ:ଗଜ:* (ବି.) : ଅନିଚ୍ଛା ପ୍ରକାଶ କରିବା, ପ୍ରତିବାଦ କରିବା, ଅମଙ୍ଗ ହେବା

**ଗିଡ଼ିସା** - *ରା:* (ବି.) : ଯେଉଁ ଅସ୍ତ୍ର ଫୋପାଡ଼ି ଆଘାତ କରାଯାଏ

**ଗିଣିଗିଣା** - *କୋ:ନବ:ରା:* (ବିଂ.ବି.) ଅପରିଷ୍କାର, ଅସନା

**ଗିତ୍ କୁଡ଼ିଆ** - *କୋ:* (ବି.) : ଗାଁର ଗାୟକ

**ଗିତିଗିତା** - *ଗଜ:* (କ୍ରି.) : କୁତୁ କୁତୁ କରିବା

**ଗିଥିଲି** - *ସ:* (ବି.) : ବାଦୁଡ଼ି

**ଗିଦ୍‌ଗାଦ୍** - *ସୁ:* (ବି.) : ଗୋଟାକ ପରେ ଗୋଟାଏ

**ଗିଦନ** - *କଳା:* (ବି.) : ଗୃଧ୍ରପକ୍ଷୀ, ଶାଗୁଣା, ଗିଧ

**ଗିଦା** - *କଳା:* (ବି.) : ଗିଧା, ଅଡ଼ାର, ଚାରିଭାଗରୁ ଏକଭାଗ, ଶୋଳାର

ଦୁଇଭାଗରୁ ଏକଭାଗ, ଶସ୍ୟାଦି ମାପର ଏକକ

ଗିଦି - *ସୁ:* (ବି.) : ମସ୍ତିଷ୍କ ମେଦ

ଗିଦିଗିଦି - *ଅ:* (କ୍ରି.ବି°.) ହସରେ ଫାଟିପଡ଼ିବା

ଗିଦିଗିଦିଆ - *ଚ୍:* (ବି°.) : ଖରାଦିନେ ପୁରୁଣା ବାଇଗଣ ଗିଦିଗିଦିଆ ଲାଗେ

ଗିଦ୍ରା - *କଳା:* (ବି.) : ବାଦୁଡ଼ି

ଗିଧ - *ଯା:ନ:* (ବି.) : କୃପଣ, ଶାଗୁଣା

ଗିଧଡ଼ - *ଅ:* (ବି.) : କୋକିଶିଆଳୀ

ଗିଧନ - *କଳା:ନୂ:* (ବି.) : ଗୃଧ୍ରପକ୍ଷୀ, ଶାଗୁଣା, ବାଜପକ୍ଷୀ

ଗିଧା - *ବ:କଳା:ସ:ଗ:* (ବି.ବି°.) : ଅଡ଼ାର ଏକ ଚତୁର୍ଥାଂଶ (୪ ଗିଧା = ୧ ଅଡ଼ା), ଶୋଲାର ଦୁଇ ଭାଗରୁ ଏକ ଭାଗ, ଅଡାର ଚାରି ଭାଗରୁ ଏକ ଭାଗ, ପରିମାପକ ଜିନିଷ, ଶସ୍ୟ ମାପକର କ୍ଷୁଦ୍ର ଏକକ

ଗିଧିଣୀ - *ଚ୍:* (ବି.) : ଶାଗୁଣୀ

ଗିଧିଲି - *ସୁ:* (ବି.) : ବାଦୁଡ଼ି

ଗିଧେକ୍ - *କଳା:* (ବି°.) : ଏକଗିଧା, ଗିଧାଏ ପରିମାଣ

ଗିନତି - *ଅ:* (ବି.) : ଗଣତି

ଗିନା - *ଅନେ:* (ବି.) : ଖାଇବା ପାଇଁ ବ୍ୟବହୃତ ସାମଗ୍ରୀ, ତାଟିଆ, ବାସନ ବିଶେଷ, କ୍ଷୁଦ୍ର ଧାତବ ପାତ୍ର, ଛୋଟ ଗହିରିଆ ପାତ୍ର, ଛୋଟବାଟି

ଗିନାବସା - *ଚ୍:* (ବି.) ଚୁଲିରେ ଗିନାମାଧ୍ୟମରେ ତିଆରି ତରକାରୀ

ଗିନି - *ଅନେ:* (ବି.) : ପିଲାଙ୍କ ଗିନି, କଂସାରେ ତିଆରି କ୍ଷୁଦ୍ର କରତାଳ, ଛୋଟ ଝାଞ୍ଜ (ପିତଳରେ ପ୍ରସ୍ତୁତ ନାମ କୀର୍ତ୍ତନପାଇଁ ଉଦ୍ଦିଷ୍ଟ, କୁବ୍‌ଜି, ଛୋଟ କାଂସ୍ୟତାଳ, ମଂଜିରା

ଗିନିଗିନା - *ନ:* (ବି°.) : ଲୁଗାଟିକୁ ଚିରି ଗିନିଗିନା କରି ଦେଇଛି, ସମ୍ପୂର୍ଣ୍ଣ ଖଣ୍ଡଖଣ୍ଡ

ଗିନିମାଲି - *ନୂ:* (ବି.) : ବେକର ସରୁ ଅଳଙ୍କାର

ଗିନିସୁନା - *ଦେ:* (ବି.) : ଖାଣ୍ଟିସୁନା

ଗିନେଇବା - *ଗ:* (କ୍ରି.) : ପୋଢ ବଳଦଙ୍କୁ ଶଗଡ଼ରେ ବାନ୍ଧିବା

ଗିମୀର - *ମି:* (ବି.) : ଗମ୍ଭୀର

ଗିରନା - *ନବ:* (ବି.) ଝିଟିପିଟି, ଚମ୍ପେଇନେଉଳ

ଗିରଫ୍ - *ଦେ:* (ବି.) : ବନ୍ଦୀ

ଗିରବା, ଗିରିବା - *ଦେ:* (କ୍ରି.) : ମାଛଧରିବା

ଗିରମିଟ - *ସୁ:* (ବି.) : କାଠଫୋଡ଼ା ଲୁହାଯନ୍ତ୍ର

ଗିରସ୍ତ - *ଦେ:ଅ:ବା:* (ବି.) : ସ୍ୱାମୀ, ପତି

ଗିରା - *ଅନେ:* (ବି.) : ଗାର, ରେଖା, ଗାରର ବିକଳ୍ପ ଭାବେ ବ୍ୟବହୃତ

ଗିରାଇବା - *ଅ:* (କ୍ରି.) : ତଳେ ପକାଇଦେବା

ଗିରାଏ - *ଗଦ୍ୟ:* (ବି°.) : ଗାରେ, ଧାଡ଼ିଏ

ଗିରାକି - *ରା:* (ବିଂ.) : ମହଙ୍ଗା

ଗିରାଚାର - *କୋ:* (ବି.) : ଗ୍ରହାଚାର, ପ୍ରମାଦ

ଗିରାଜ - *ଭ:* (ବିଂ.) : ଗ୍ରାହ୍ୟ, ଖାତିର୍

ଗିରାସେ - *କୋ:ଭ:ନବ:* (ବି.ବିଂ.) : ଗ୍ରାସେ, ପେଟଭରି, ଏକ କାଳୀନ ଭୋଜନ, ପେଟପୂରା ଖାଦ୍ୟ

ଗିରି - *ଚ:ନ:ଦେ:* (ବି.) : ପାହାଡ଼, ପର୍ବତ, କାନ ଭିତରର ସୂକ୍ଷ୍ମ ପରଦା, ବଡ଼ପଣିଆ

ଗିରିଗିରିକା - *ରା:* (ବି.) ପବନର ଆଘାତରେ ଘୂରୁଥିବା ଖେଳଣା

ଗିରିଡ଼ି - *ଗ:* (ବି.) : ଔଷଧୀୟ କଣ୍ଟକ ଯୁକ୍ତ ବନ୍ୟ ଲତାର ଫଳ

ଗିରିବା - *ଅ:କଳା:* (କ୍ରି.) : ଛାଣିବା, ଜାଲ ବା କପଡ଼ାରେ ପାଣିରୁ ମାଛ ଛାଣିବା ବା ଧରିବା

ଗିରିମିଟି - *ଯା:* (କ୍ରି.ବିଂ.) : ଯୋରକରି

ଗିରିହା - *ବା:ମ:* (ବି.) : ମୂଲିଆମାନଙ୍କୁ ନେଇ କାମରେ ଲଗାଉଥିବା ମାଲିକ

ଗିରୁଡ଼ି - *ନ:* (ବିଂ.) : କ୍ଷୁଦ୍ର, ଛୋଟଛୋଟ

ଗିରୁପୁ - *ଗଞ:* (ବି.) : ଗର୍ବ

ଗିରୁଲ୍ - *କଳା:* (ବି.) ଚଂପେଇନଳି, ଚଂପେଇ ନେଉଳ

ଗିରେଇବା - *ଦେ:ଯା:* (କ୍ରି.) · ବିପଦରେ ପକାଇବା, ସାମାନ୍ୟ ଦୁର୍ବଳ ହେବା

ଗିର୍କା - *ଗଞ:* (ବି.) : ଚକ୍ରୀ, ଚକ

ଗିର୍ବାଣ - *ଗଞ:* (ବି.) : ଅହଂକାର

ଗିର୍ଲି - *କଳା:* (ବି.) : ଢିଙ୍କିଆ ଖେଳ

ଗିର୍‌ଗିରିଆ - *ଦେ:* (ବି.) : ଝରା, ମାଝୀ, କେଉଁଟ

ଗିର୍‌ଙ୍ଗି - *ବର:* (ବି.) : ଉଷୁନା ହାଣ୍ଡିର ମୁହଁଦ୍ୱାର ପ୍ରସ୍ତୁତ ନିଆଁରେ ମାଛ ଶୁଖାଇବାର ବାଉଁଶ ଜାଲି ବିଶେଷ

ଗିର୍‌ଦା - *ଦେ:* (ବି.) : ହାତୀ ଧରିବାପାଇଁ କରାଯାଇଥିବା ବାଡ଼

ଗିର୍‌ଧ୍ୱନୀ - *ବୌ:* (ବି.) : ଶାଗୁଣା

ଗିର୍‌ବା - *ବୌ:* (କ୍ରି.) : ପାଣିରୁ ଛାଣିବା

ଗିର୍‌ବାର୍ - *ସୁବ:* (କ୍ରି.) : ମାଛ ଧରିବା ଅର୍ଥରେ ବ୍ୟବହୃତ

ଗିର୍‌ମିଟ୍ - *ସ:କଳା:* (ବି.) : କାଠକୁ କଣା କରାଯିବା ଏକ ଲୁହାର ଯନ୍ତ୍ର, ଭଅଁର

ଗିଲ - *ଅନେ:* (ବି.) : ଫଳ ବିଶେଷ, କଣ୍ଟକଲତାର ଔଷଧୀୟ ଫଳ ବିଶେଷ

ଗିଲ୍‌ଗିଲା - *ଦେ:ସ:ନବ:* (ବିଂ.ବି.କ୍ରି.) : ଭାତବେଶୀ, ବେଶୀ ମିଶାମିଶି, ଅପରିଷ୍କାର

ଗିଲ୍‌ଟି - *ଯା:ବୌ:ସ:* (ବି.) : ଅଣ୍ଡକୋଷ, ମିଶାସୁନା, ଜଙ୍ଘ ସନ୍ଧିର ଗ୍ରନ୍ଥି

ଗିଲ୍‌ବା - *ସ:ନୂ:* (କ୍ରି.) : ଗିଳିବା, ଖାଇବା

ଗିଲ ବାଟି - *ଖୋ:* (ବି.) : ଏକ ଲଟା ଗଛର ଫଳ

ଗିଲା - *ଅନେ:* (ବି.ବିଂ.) : ପାନରେ ବ୍ୟବହୃତ ତରଳ ଖଇର, ପୂରା

**ଗିଲାପ** - *ଗ:* (କ୍ରି.) : ଇଟା କାନ୍ଥରେ ସିମେଣ୍ଟ ପଲସ୍ତରା ଦେବା

**ଗିଲାସ** - *କେ:କେନ୍ଦୁ:କଳା:ନବ:* (ବି.) : ଗ୍ଲାସ୍, ପାଣିପିଇବା ପାତ୍ର,

**ଗିଲି** - *କେ:ଖୋ:* (ବି.) : ଏକ କଣ୍ଟା ଗଛ, ଏକ ପ୍ରକାର ମାଛ

**ଗିଲିଗିଲା** - *ଭ:* (ବିଂ.) : ସୁରାକ ପାଇବା

**ଗିଲିଗିଲି** - *ଗଜ:* (ବି.) : ଥଙ୍ଗା

**ଗିଲିଟି** - *ନ:* (ବି.) : ଅଳଙ୍କାର ହେଉଥିବା ନିକୃଷ୍ଟ ଧାତୁ

**ଗିଲିଦାଣ୍ଡି** - *ଗ:* (ବି.) : ଗଞ୍ଜାମରେ ପ୍ରଚଳିତ ପିଲାଙ୍କ ଏକ ପ୍ରକାର ଖେଳ

**ଗିଳା** - *ଭ:ବା:ପଦ୍ୟ:* (ବି.) ବାଉଁଶ ପାତିଆରେ ବା ନଡ଼ିଆ କଞ୍ଚିରେ ତିଆରି ମାଛଧରା ଯନ୍ତ୍ର, ମାଛଧରା ଯନ୍ତ୍ରବିଶେଷ, ଗଳାଧଃକରଣ, ଗିଳିବା, ଗ୍ରାସ କରିବା, ଭୋଜନ, ପେଟୁ, ଉଦରମ୍ଭରି

**ଗିହଣା** - *ଗ:* (ବି.) : ଗାଳି ଭର୍ତ୍ସନା

**ଗିହା** - *କଳା:ସୁ:* (ବି.) : ସମ୍ଭୋଗ, ଶୃଂଗାର, ମୈଥୁନ, ରତି

**ଗିହାପ୍** - *କଳା:ପୁ:* (ଅ.) : ଗାଳିବିଶେଷ

**ଗିହାକ୍ଷପ** - *ସୁ:* (ବିଂ.) : ଗାଳି ସୂଚକ ଶବ୍ଦ, ବେଶ୍ୟାପୁତ୍ର

**ଗିହାଳିଆ** - *ନ:* (ବି.) : ଚତୁର ବ୍ୟକ୍ତି, କାମୁକ ବ୍ୟକ୍ତି

**ଗିହାଳି ପୋ** - *ଖୋ:* (ବିଂ.) : ନଷ୍ଟ ଚରିତ୍ରର ପୁଅ(ଗାଳି)

**ଗିଂଗ୍ରା, ଘିଂଗ୍ରା** - *ବୌ:* (ବି.) : ଜାତି ବିଶେଷ

**ଗୀତ୍କୁଡ଼ିଆ** - *କଳା:ମା:* (ବି.) : ଆଦିବାସୀ ଲୋକଗୀତର ଗାୟକ

**ଗୀର୍ଦ୍ଧା** - *ବା:* (ବି.) : ପିଠିକୁ ଆଉଜି ବସିବା ପାଇଁ ତକିଆ

**ଗୁଆ** - *ପଦ୍ୟ:ଖୋ:* (ବି.) : ସୁପାରି, ଗୁବାକ, ଉତ୍ସବାଦି ଉପଲକ୍ଷେ ବନ୍ଧୁବାନ୍ଧବମାନଙ୍କଠାକୁ ପଠାଯିବା ଗୁଆସହ ନିମନ୍ତ୍ରଣ, ଗାଈଠାରୁ ଉତ୍ପନ୍ନ, କୋଷର ଗୋଲ ଅଂଶ

**ଗୁଆ କଟିଯିବା** - *ସଂ:* (କ୍ରି.) : ପାରିବାରିକ ବନ୍ଧୁତ୍ୱ ହାନିହେବ

**ଗୁଆକାତି** - *ସଂ:ପଦ୍ୟ:ବୌ:ନ:* (ବି.) ଯେଉଁଥିରେ ଗୁଆ କଟାଯାଏ, ଗୁଆକାଟିବାର ଯନ୍ତ୍ର, ଗୁଆକଟା ହତିଆର, ଗୁଆକାତି

**ଗୁଆ ଖୋଳିବା** - *ଗ:* (କ୍ରି.) : ସଂତାନ ପ୍ରାପ୍ତି ଆଶା ନେଇ ଠାକୁରଙ୍କ ଆସ୍ଥାନରେ ଗୁଆ ଖୋଳିବା ବିଧି

**ଗୁଆଘିଅ** - *ପଦ୍ୟ:ଢ:ଗ:* (ବି.) : ଗୋଦୁଗ୍ଧରୁ ଜାତ ଘୃତ, ଗାଈଘିଅ

**ଗୁଆଚାଳିବା** - *ପଦ୍ୟ:* (କ୍ରି.) : ଗୁଆଦେବା, ଗୁବାକ ଅର୍ପଣ ପୂର୍ବକ ବନ୍ଧୁବାନ୍ଧବଙ୍କ ବିବାହାଦି ଅନୁଷ୍ଠାନକୁ ନିମନ୍ତ୍ରଣ କରିବା

**ଗୁଆଚିପି** - *ଜ:* (ବି.) : ଛୋଟ ମାଛ ବିଶେଷ

**ଗୁଆଢେ** - *ନ:* (ବି.) : ଗୋଠ (ଗାଈ ଓ ମଇଁଷି)

**ଗୁଆପାଣି** - *ଗ:* (କ୍ରି.) : ନିମନ୍ତ୍ରଣ କରିବା

**ଗୁଆ ବନ୍ଧୁ** - *ସ:* (ବି.) : ପାରିବାରିକ ବନ୍ଧୁ

**ଗୁଆଭାଙ୍ଗିବା** - *ପଦ୍ୟ:* (କ୍ରି.) : ପାନସଙ୍ଗେ ଚୋବାଇବା ପାଇଁ ଗୁଆକାତିରେ ଗୁଆକୁ ଟିକିଟିକି କରି କାଟିବା

**ଗୁଆର୍ଖି** - *ଗ:* (ବି.) : ପାଣିସାରୁ

**ଗୁଆଳ** - *ଜ:* (ବି.) : ଗଉଡ଼, ଗାଈ ରହିବା ଘର

**ଗୁଆଁ** - *ପଦ୍ୟ:* (ବି°.) : ନିର୍ବୋଧ, ମୂର୍ଖ, ଗମାର, ଏକବାଗିଆ, ଜ୍ଞାନହୀନ, ଗୁଆଁରୀ

**ଗୁଆଁର** - *ସୁ:ଭ:ବୌ:ଗ:* (ବି.) : ମୁଖ୍ୟ, ଦୁଷ୍ଟ ଲୋକ, ଏକ ଲମ୍ବ ଲମ୍ବ ସରୁ ସରୁ ପରିବା ବିଶେଷ, ଏକ ପ୍ରକାର ଛୁଇଁଜାତୀୟ ପରିବା

**ଗୁଇ** - *ଗ:ବା:କୋ:କେ:* (ବି.) : ଗୁମର କଥା, ଗୁପ୍ତକଥା, ଗୋଧି ସାପ

**ଗୁଇ ଖୁଲିବା, ଗୁଇ ଖୋଲିବା** - *ବୌ:* (କ୍ରି.) : ଦୋଷ ବାଛିବା

**ଗୁଇନ୍ତା** - *ସୁ:* (ବି.) : ଗୁଣ୍ଡୁଚିମୂଷା

**ଗୁଇରା** - *କନ୍ଧ:* (ବି.) : ଟିଙ୍କ

**ଗୁଇଁଠା** - *ମ:ବା:* (ବି.) : ଗୋଇଠା, ପଦାଘାତ

**ଗୁଇଁମାରୁ** - *ବା:* (ବି°.) : ମନ ଭିତରେ ଗଣ୍ଠି ରଖିଥିବା ଚୁପ୍‌ଶଇତାନ୍

**ଗୁଉଡ଼ିଆ** - *କଳା:* (ବି.) : ପାଉଣା ନେଇ ସମସ୍ତଙ୍କର ଗୋରୁ ଚରାଉଥିବା ବ୍ୟକ୍ତି

**ଗୁଏ** - *ଅନେ:* (ବି.) : ଗୋଧୀ

**ଗୁଏଲ୍** - *କଳା:* (ବି.) : କଳି, ଗୋଳ

**ଗୁଏଲଝଗର** - *ସ:* (ବି°.) : ଗାଳି, ଝଗଡ଼ା

**ଗୁଏଁଇ** - *ଝା:* (କ୍ରି.) ବ୍ୟର୍ଥ ଅର୍ଥରେ ବିନିଯୋଗ କରିବା, ହଜାଇ ଦେବା

**ଗୁଏଁଇ ଦେବା** - *ନୂ:* (କ୍ରି.) : ଆତ୍ମସାତ କରିବା

**ଗୁଏଁଡି, ଗଏଁଡି** - *ନୂ:* (ବି.) : ଗଉଁଡି

**ଗୁକାଣ୍ଡି** - *ଗଜ:* (ବି.) : ଗୁଡ଼ କଣ୍ଡ, ଗୁଡହାଣ୍ଡି

**ଗୁକିରା** - *ନୂ:* (ବି.) : ଛୋଟ ଛୋଟ ପୋକ ଯିଏକି ବିଷ୍ଠା ସଞ୍ଚୟକରି ଖାଏ

**ଗୁକ୍ଷୁରା** - *କେ:* (ବି.) : କାନ ଫୁଲ

**ଗୁଖା** - *କେ:* (ବି.) : ମାଛ ଧରାଳି ଜାତି

**ଗୁଖୁଣି** - *ବା:* (ବି°.) : ଯେଉଁ ସ୍ତ୍ରୀଲୋକ ବେଶି ଝଗଡ଼ା କରେ

**ଗୁଖୁରିଆ** - *ଜ:* (ବି°.) : ଖଳୁଆ, କ୍ରୁର ସ୍ୱଭାବ, ବଦମାସ

**ଗୁଗାଁ** - *ନବ:* (ବି.) : ଅନିଚ୍ଛା ପ୍ରକାଶ

**ଗୁଗୁଚିଆ** - *ଖୋ:ଗ:ନ:* (ବି.) : ଏକ ପ୍ରଜାତିର ଘାସ ଯାହାର ଫୁଲ ପୋଷାକ ପତ୍ରରେ ଲାଖିଯାଏ, କଣ୍ଟକ ଗୁଳ୍ମ ବିଶେଷ, ଗୁଗୁଛିଆ

**ଗୁଗୁ ନାଦିଆ** - *ନୂ:* (ବି.) : ଷଣ୍ଢକୁ ସାଙ୍ଗରେ ଧରି ମାଗି ଖାଉଥିବା ବ୍ୟକ୍ତି, ବାସୁଆବଳଦ, ନନ୍ଦୀ

**ଗୁଗୁପାଞ୍ଜି** - *କ:ଗ:* (ବି.କ୍ରି.) : ପିଲାଖେଳ ବିଶେଷ, ଗୋଡ଼ ଆଣ୍ଠୁରେ ଛୁଆକୁ ଝୁଲାଇବା ରୀତି

**ଗୁଗୁର** - *ଦ:ଦ:* (ବି.) : ଗୋବର

**ଗୁଗୁରି** - *କଝ:* (ବି.) : କାପ୍ତା

**ଗୁଗୁଲି** - *ଗଜ:* (ବି.) : ପଶୁର ପ୍ରସବଜନିତ ରୋଗ

**ଗୁଗୁଲ** - *ଜ:ଦେ:* (ବିଂ.ବି.) : ସୁଗନ୍ଧ ଧୂପ, ବୃକ୍ଷ, ଅଠା

**ଗୁଗୁଂଚି** - *ରା:* (କ୍ରି.) : ଗୋଡରେ ପିଲାଙ୍କୁ ପହଞ୍ଚି କରିବା

**ଗୁଗେଇ** - *କେ:* (ବି.) : ଘାସ ବିଶେଷ

**ଗୁଙ୍ଗା** - *ଗ:ଦେ:* (ସ.ବି.) : ଏକଜିଦିଆ, ମୂକ, ନିର୍ବାକ

**ଗୁଙ୍ଗି** - *ଗ:* (ବି.) : ପ୍ରେତାତ୍ମାର ପଶୁରୂପ

**ଗୁଚ୍‌କା** - *କଳା:* (ବିଂ.) : ଗୋଜିଆ, ମୁନିଆଁ

**ଗୁଚ୍‌ରା** - *ବର:* (କ୍ରି.) : ବର୍ଷାଦିନରେ ଚାରା ଖେଳିବାର ପ୍ରକ୍ରିୟା ବିଶେଷ

**ଗୁଚ୍‌ରିବା** - *ସ:* (କ୍ରି.) : ସଂପର୍କ ରଖିବା

**ଗୁଚମ୍** - *ନୂ:* (ବି.) : ମଳିଚମ ଛାଡ଼ିଯିବା, ଆଂଚୁଡ଼ି ହୋଇ ଚର୍ମର ଅତି ପତଳା ଅଂଶରେ ଆଘାତପାଇ ରକ୍ତ ନବାହାରିବା

**ଗୁଚର** - *ଝା:ଦା:ବୌ:କଳା:* (ବିଂ.ବି.) : ଯେଉଁ ଜମିରେ ଗୋରୁଚରେ, ଗୋଚର, ଖିଆଲ୍, ଗୋଚର ଜମି

**ଗୁଚେଇବା** - *ମ:* (କ୍ରି.) : ଖୋଲିଦେବା

**ଗୁଚ୍ଛା** - *କଳା:ଅ:ବୌ:ନବ:* (ବି.) : ଗୁଳ୍ମ, କ୍ଷୁଦ୍ର, ବୁଦାଳିଆ ଗଛ, ଗୋଚ୍ଛା, ବିଡ଼ା

**ଗୁଛାବା** - *ସୁ:ସ:* (କ୍ରି.) : ଗୁଚ୍ଛ କରିବା, ପାଳବିଡ଼ା କରିବା

**ଗୁଛା ବାନ୍ଧିବା** - *ରା:* (କ୍ରି.) : ମୁଣ୍ଡରେ ଧରିବା ପାଇଁ ଶସ୍ୟ ବାନ୍ଧିବା

**ଗୁଛେଇବା** - *ଦା:ଦେ:ଗ:* (କ୍ରି.) : ଗୋଟାଏ ପରେ ଗୋଟାଏ କାମ ସାରିବା, ଏକାଠି କରିବା, ସଜାଡ଼ିବା, ଗଛଲତାଙ୍କୁ ଏକତ୍ର କରି ବାନ୍ଧିବା

**ଗୁଜ** - *ଗ:ଦେ:* (ବି.) : ଘର ଚାଳକୁ ଧରି ରଖିବା କାଠ, ଚିତା, କିଳା

**ଗୁଜ୍‌କା** - *କଳା:* (ବିଂ.) : ଗୋଜିଆ, ଗୁଡିଆ, ମୁନିଆଁ

**ଗୁଜ୍‌ଗୁଜିଆ** - *ଦେ:କଳା:* (ବିଂ.) : ମୁନିଆ, ସର୍ବଦା ବକବକ ହେଉଥିବା ବ୍ୟକ୍ତି

**ଗୁଜରାଣ** - *ଦେ:* (ବି.) : ଜୀବିକା

**ଗୁଜରାତି** - *ଦେ:* (ବି.) ଜାତି, ମସଲାବିଶେଷ

**ଗୁଜା** - *କଝ:* (ବି.ବିଂ.) : ଘର ଛପର ପାଇଁ ଗୋଜି, ଗୋଜିଆ, ମୁନିଆଁ, ହାଣ୍ଡନୋଟ୍, ଗୋଜା, ରସିଦ

**ଗୁଜି** - *ପଦ୍ୟ:ରା:* (ବି.) : ଜାହାଜ ବନ୍ଧା ହେଉଥିବା ବଡ଼ ଲୁହା ଖଣ୍ଡ, ଆଘାତ

**ଗୁଜିକାଠି** - *କେ.ଗ.* (ବି.) : ଖୋଷାରେ ମରାଯାଉଥିବା ରୂପା, ସୁନାର ଅଳଙ୍କାର, ସ୍ତ୍ରୀ ଲୋକଙ୍କ କୁଡ଼ାରେ ଖୋସିବା ରୂପା କାଠି

**ଗୁଜିଚଣା** - *କଣ.ଗଞ.* (ବି.) : ବୁଟ

**ଗୁଜିବା** - *କେ.* (କ୍ରି.) : ଖୋସିବା

**ଗୁଜୁ** - *ବ.* (ବିଂ) : ଅଯଥାରେ ମୁହଁ ଫୁଲାଇଥିବା (ବ୍ୟକ୍ତି)

**ଗୁଜୁମୁଁ ପଖନ୍** - *ସ.* (ବି.) : ଗୋଡ଼ିଆ ପଥର

**ଗୁଜୁରାଣ ମେଣ୍ଟାଇବା** - *ସଂ* (କ୍ରି.) : କୌଣସି ମତେ ପରିବାର ପୋଷିବା

**ଗୁଜୁରି** - *ଗ.* (ବି.) : ରାଜାଙ୍କୁ ଦେବା କର

**ଗୁଜୁରି ଖଳା** - *ଗ.* (ବି.) : ସମୂହ ଭାବେ ଗ୍ରାମବାସୀ ଯେଉଁଠି ଧାନ ଅମଳ କରଂତି

**ଗୁଜେର୍** - *ସ.* (ବି.) : ଏକ ପ୍ରକାର ମୁନିଆଁ ଅସ୍ତ୍ର

**ଗୁଞ୍ଚି** - *ସୁବ.* (ବି.) : ରୂପାର କଟି ମେଖଳା, ଅଣ୍ଟାସୂତା

**ଗୁଞ୍ଜ** - *ଦେ.ନବ.* (ବି.) : କାଇଁଚ

**ଗୁଞ୍ଜକୁଲି** - *ନୂ.* (ବି.) : ମଣ୍ଡାପରି ଏକ ପିଠା ବିଶେଷ

**ଗୁଞ୍ଜର** - *ସ.ଦେ.ସୁ.ପଦ୍ୟ.* (ବି.) : କବାଟରେ ଲାଗୁଥିବା ଶିକୁଳି, ହାତୀ, ଗୁଣୁଗୁଣୁ ଶବ୍ଦ, ଚୂର୍ଣ୍ଣ କୁନ୍ତଳ, ହସ୍ତାଳଙ୍କାର ବିଶେଷ, ବଳୟ, ଏକଜାତୀୟ ନେଳି ଟାଣୁଆ ପକ୍ଷଯୁକ୍ତ ପୋକ, ହସ୍ତୀ

**ଗୁଞ୍ଜରେଇବା** - *ଦେ.* (କ୍ରି.) : କଟମଟ କରି ଚାହିଁବା

**ଗୁଞ୍ଜା** - *ପଦ୍ୟ.ଗଦ୍ୟ.ଗ.ଦେ.* (ବି.ବିଂ.) : ଲତାବିଶେଷ, କାଇଞ୍ଚ ଗଛ, ପରିମାଣବିଶେଷ, ପଟହ, ଢକା, କଳଧ୍ୱନି, ଚର୍ଚ୍ଚା, ମଦିରାଗୃହ, ଦୁଇଗ୍ରେନ୍ ପରିମିତ ଓଜନ, ରତି, ଗୁଣୁଗୁଣୁ ଶବ୍ଦ, ନାଗରା, ଧ୍ୟାନ, ବିଷାକ୍ତମୂଳ ଗୁଳ୍ମ ବିଶେଷ, ଠେଲିକରି ଭର୍ତ୍ତି କରାଯାଇଥିବା, ରାଶି, ଫୋଡ଼ିବା, ଚାପ ପ୍ରୟୋଗ କରିବା

**ଗୁଞ୍ଜାରୁଅ** - *ଦେ.ପଦ୍ୟ.* (ବି.) : ପୁରୁଣା ରୁଅ ଭରା ଦେବାପାଇଁ ନୂଆଁ କାଠଖଣ୍ଡ ଭରତି କରିବା, ଯାହା ଅସ୍ୱାଭାବିକ, ମାତ୍ର କୃତ୍ରିମ ଉପାୟରେ ସ୍ୱାଭାବିକ ଆଶ୍ରୟ ପରି ବ୍ୟବହୃତ ହୁଏ

**ଗୁଞ୍ଜି** - *କଣ.* (ବି.) : ପେଚା

**ଗୁଞ୍ଜି କାଢ଼ିବା** - *କୋ.* (କ୍ରି.) : ଉଠ୍‌ବସ୍ ହେବା

**ଗୁଞ୍ଜୋଲି** - *କଣ.* (ବିଂ.) : ଆଠ

**ଗୁଟ୍‌କା** - *କଳା.ମା.ସଂ.* (ବି.) : କନ୍ଦପ୍ରଜାତି ବିଶେଷ, ଏକ ବିଶେଷ ବର୍ଗର କନ୍ଦ, ପାନ ମସଲା, ଖଇନି ପ୍ୟାକେଟ୍, ଠିକା କାଠ ଖଣ୍ଡ

**ଗୁଟ୍‌କିଆ** - *ବୌ:* (ବିଂ.) : ଗୋଟିଏ, ଗୋଟିକିଆ (ଯୋଡ଼ି ନୁହେଁ, ଗୁଟ୍‌କିଆ ଦରକାର)

**ଗୁଟ୍ ଗୁଟ୍** - *ସ:* (ବି.) : ଗୋଟିଏ ଗୋଟିଏ

**ଗୁଟ୍‌ଗୁଟୁଳିଆ** - *ଦେ:* (ବିଂ.) ଗୋଲ, ଗୋଲିଆ

**ଗୁଟ୍‌ଟା** - *ରା:* (ବିଂ.) : ଟାଣ

**ଗୁଟ୍ ମରିଚ୍** - *ସ:* (ବି.) : ଗୋଲମରିଚ

**ଗୁଟ୍‌ମା** - *ବୌ:* (ବିଂ.) : ଗେଡା, ମୋଟା

**ଗୁଟା** - *ନବ:କୋ:ମା:* (ବିଂ.) : ଗୋଟା

**ଗୁଟାକେତେ** - *ବ:* (ବିଂ.) : କିଛି ପରିମାଣ

**ଗୁଟାଗୋଟି କରିବା** - *ଗ:* (କ୍ରି.) : ବଛାବଛି କରି ସଂଗ୍ରହ କରିବା

**ଗୁଟାରଙ୍ଗେ** - *ନୂ:* (କ୍ରି.ବି.) : ସଂପୂର୍ଣ୍ଣ ଭାବରେ

**ଗୁଟି** - *ସ:ସୁ:ଦେ:* (ବି.) : ବଟିକା, ଗୋଳକ, ଗୁଲି, ଟସର ପୋକ

**ଗୁଟିକା** - *ଛ:* (ବି.) : କୋରା

**ଗୁଟିଖଡିକା** - *କେନ୍ଦୁ:ଖୋ:* (ବି.) : ଗଙ୍ଗଶିଉଳି

**ଗୁଟିପୋକ** - *ଗ:* (ବି.) : ରେଶମ କୀଟ

**ଗୁଟୁ** - *ଗଞ୍ଜ:* (ବି.) : ଗୁପ୍ତ ଖବର

**ଗୁଟୁଲୁ** - *ସୁ:* (ବି.) : ଛୋଟଗୁଲି, ବାଟି

**ଗୁଟେ** - *ଅନେ:* (ବିଂ.ଅ.) : ଗୋଟିଏ, ଏକ ଗୋଟା ମାତ୍ର

**ଗୁଟେକ୍** - *ନୂ:* (ବିଂ.) : ଗୋଟିଏ

**ଗୁଟେ କଁଟେ** - *ଝା:* (ବିଂ.) : ଏକ ଲୟରେ

**ଗୁଟେ ନ** - *ସ:* (ବିଂ.) : ଏକ ମାତ୍ର

**ଗୁଟେମାଡ଼** - *କୋ:* (ବିଂ.) : ଗୋଟିଏ ଥର

**ଗୁଟେ ସୁରେ** - *ନୂ:* (କ୍ରି.) : ଅନ୍ୟ ମନସ୍କ ନହୋଇ

**ଗୁଠ** - *ଦେ:ଅ:ରା:* (ବି.) : ଗାଈଗୁଠ, ଗୋଠ, ପଲ

**ଗୁଠାଣି ପୂଜା** - *କେନ୍ଦୁ:* (ବି.) : କାଳୀପୂଜାର ପ୍ରଥମ ଦିନ (ଅଣ୍ଡା ରଖି),ଦେହୁରୀ ଗାଈ,ଗୋରୁ ପୂଜା କରେ।

**ଗୁଠେ** - *ସୁ:* (ବିଂ.) : ବହୁତ, ଗାଈଗୋରୁଙ୍କ ଠୁଳ ସ୍ଥାନ

**ଗୁଡ୍‌ବଳା** - *ବୌ:* (ବି.) : ପଇଁରୀ, ଗୋଡ଼ବଳା (ପାଉଁଜି)

**ଗୁଡ୍‌ଭେଲି** - *କଳା:* (ବି.) : ସୁସ୍ୱାଦୁ ଦେଶୀ ଆମ୍ବ ବିଶେଷ, ଖଣ୍ଡଗୁଡ଼

**ଗୁଡମୁଡିବା** - *ବା:* (କ୍ରି.) : ପାଦ ମଚାଳିବା

**ଗୁଡା** - *ରା:ସୁବ:ଗ:* (ବି.ଅ.) : ଛୋଟ ଗାଁ, ପଦା, ଆଟଜମି, ବହୁ ପରିମାଣର

**ଗୁଡାଖୁ** - *ଦେ:ବୌ:* (ବି.) : ଗୁଡ, ଧୂଆଁପତ୍ରରେ ତିଆରି ଦାନ୍ତଘଷା ମଞ୍ଜନ, ଦାନ୍ତ ଘଷା ଦ୍ରବ୍ୟ

**ଗୁଡି** - *ସୁବ:ଦେ:* (ବି.) : ମନ୍ଦିର, ଚକି, ଦୁଗୁଡି, ପୀଠ, ମନ୍ଦିର

**ଗୁଡିଆ** - *ବୌ:ଦେ:* (ବି.) : ଯିଏ ମିଠା ତିଆରେ, ବିକେ, ଜାତି, ମିଠା

**ଗୁଡିଁଖାଇ** - *ବଇ:* (ବି.) : ଫାଲୁଗନ୍

**ଗୁଡୁଗଛା** - *କେ:* (ବି.) : ଗୋଡର ଗହଣା

**ଗୁଡୁମ୍** - *ଦେ:* (ବିଂ.) : ବୁଦ୍ଧିନାଶ, ଫେଲ୍, ଚିତ୍‌ପଟାଙ୍ଗ

**ଗୁଡୁମ୍‌ଗୁଡୁମ୍** - *ଦେ:* (ଅ.) : ଉଚ୍ଚଶବ୍ଦ, ଘୁମ୍‌ଘୁମ୍ ମାଡ ମାରିବା

**ଗୁଡୁ ମାଠିଆ** - *କେନ୍ଦୁ:* (ବି.) : କଳା ରଙ୍ଗର ସ୍ୱଳ୍ପମିଆଦି ଧାନ

**ଗୁଡୁସୁଗୁ** - *ରା:* (ବି.) : କନାଛତା

**ଗୁଡେ** - *ଦେ:* (ଅ.) : ଅନେକ, ବହୁତ, ବେଶି

**ଗୁଡେଇତୁଡେଇ** - *ଦେ:ରା:* (ବି.ବିଂ.) : ଖୁଣ୍ଟିଖୁଣ୍ଟି ପ୍ରଶ୍ନ କରିବା ଗୋଳେଇ ମିଳେଇ, ବିଭିନ୍ନ ଖିଅ ବାହାର କରି ପ୍ରଶ୍ନ କରିବା

**ଗୁଡ଼** - *ଅନେ:* (ବି.) : ଗୋଡ଼, ଆଖୁରୁ ପ୍ରସ୍ତୁତ ମିଠା ବସ୍ତୁ, ଶରୀରର ଏକ ଅଂଶ, ସାନ ପିଲାଙ୍କ ଲିଙ୍ଗ, ଛୋଟ ମନ୍ଦିର, ଏକଗ୍ରାମ ବିଶେଷ

**ଗୁଡ୍ଖାଇ** - *କଳ:* (ବି.) : ଛୋଟ ମାଛ ବିଶେଷ

**ଗୁଡ୍ଖାଇବା** - *କଳା:* (କ୍ରି.) : କଉଡ଼ି ଖେଳରେ ହାରିଯିବା

**ଗୁଡ୍‌ଡ଼ା** - *ସୁବ:ଗ:* (ବି.) : ପାଳଗଦା, ଗାମୁଛା

**ଗୁଡ୍‌ଦୁ** - *କଳା:* (ବିଂ.) : ଗୁଡ଼ାଏ, ଅନେକ

**ଗୁଡ୍ ପୁଛା** - *ବୌ:* (ବି.) : ପା' ପୋଛ

**ଗୁଡ଼କଣ୍ଡ** - *ଗ:* (ବି.) : ଗୁଡ଼ ରଖିବା ମାଟି ପାତ୍ର

**ଗୁଡ଼କାଡିଆ** - *ବ:* (ବି) : ଗୋଡ଼ ମାରି କିଛି କାମ କରିବା

**ଗୁଡ଼ଡ଼ା** - *ଗ:* (ବି.) : ଗାମୁଛା

**ଗୁଡ଼ତ୍ୱକ, ଗୁଡ଼୍‌ତକ** - *କୋ:* (ବି.) : ଡାଲଚିନି

**ଗୁଡ଼ଦେଖା** - *ଭ:ଯା:* (ବି.) : ବାହାଘର ପରେ ପ୍ରଥମଥର ଭେଟ ପାଇଁ କରାଯିବା ପ୍ରକ୍ରିୟା, ବିଭାଘର ପରେ ଦିଆଯିବା ଭାର

**ଗୁଡ଼ ବଣା** - *ଭ:* (ବି.) : ଗୁଡ଼ରଖା ପାତ୍ର

**ଗୁଡ଼ାଖୁ** - *ଅନେ:* (ବି.) : ଗୁଡ଼ ଏବଂ ଧୂଆଁପତ୍ର ମିଶ୍ରଣର ମାଦକ, ଏକ ନିଶାଦ୍ରବ୍ୟ, ଧୂଆଁପତ୍ର, ଗୁଡ଼, ଚୂନରେ ତିଆରି ଦାନ୍ତଘଷା ପଦାର୍ଥ, ତମାଖୁ

**ଗୁଡ଼ାଦୁ** - *ବୌ:* (ଅ.) : ଗୁଡ଼ାଏ, କିଛି

**ଗୁଡ଼ାନୀ** - *ବୌ:* (ବି.) : ଗୁଡ଼ିଆଣୀ, ଗୁଡ଼ିଆର ସ୍ତ୍ରୀ, ଗୁଡ଼ିଆ ଜାତୀୟା ସ୍ତ୍ରୀ

**ଗୁଡ଼ି** - *ମା:କୋ:* (ବି.) : ଠାକୁରାଣୀ ପୀଠ, ଛୋଟ ମନ୍ଦିର, ପଥର କଂକ୍ରିଟ, ପଥରର କ୍ଷୁଦ୍ର ଖଣ୍ଡ, ପିଲାଙ୍କ ଉଡ଼ାଇବା ଗୁଡ଼ି

**ଗୁଡ଼ିଆ** - *ଅନେ:* (ବି.) : ମିଷ୍ଟାନ୍ନ ପ୍ରସ୍ତୁତ କରିବା ବ୍ୟକ୍ତି, ଗୁଡ଼ିଆ ଜାତି, ଗୋଡ଼ଥିବା ପ୍ରାଣୀ, ମିଠା ଜିନିଷ ତିଆରି କରିବା ବାଲା

**ଗୁଡ଼ି ଗମ୍ଭୀରା** - *ସ:* (ବି.) : ମନ୍ଦିର, ଗର୍ଭଗୃହ

**ଗୁଡ଼ିଘର** - *ଅ:* (ବି.) : ଠାକୁରଘର

**ଗୁଡ଼ିବା** - *କୋ:* (କ୍ରି.) : ତ୍ୟାଗ କରିବା, ପହଞ୍ଚାଇବା

**ଗୁଡ଼ି ବାଢ଼େଇବା** - *ଗ:* (କ୍ରି.) : ଗୁଡ଼ି ପ୍ରସ୍ତୁତ କରିବା

**ଗୁଡ଼ିସେଚି** - *ଗ:* (ବିଂ.) : ଦୁଷ୍ଟଚରିତ୍ରା, ବେଶ୍ୟା, ରାଜନର୍ତ୍ତକୀ

**ଗୁଡୁ** - *ଗ:ବ:କଳା:ସୁ:* (ବି.) : କାଛରେ ତିଆରି ଥାକ, ପୁଅମାନଙ୍କର ଖେଳ, ବସିବା ପାଇଁ ଶଗଡ଼ ଉପରେ ଘରଭଳି ଘୋଡ଼ାଇ ରଖୁଥିବା ଜିନିଷ, କବାଡ଼ି ଖେଳ

**ଗୁଡୁଗୁଡ଼ିଆ ପାଲି** - *ଗ:* (ବି.) : ପଶା ପାଲି ଭଳି ଏକ ପ୍ରକାର ପାଲି ଖେଳ

**ଗୁଡୁଚି**- *କେ:* (ବି.) : ଗୁଳିଚି ଲତା

**ଗୁଡୁ ଶଗଡ଼** - *ଗ:* (ବି.) : ଯାତ୍ରୀବାହି ଶଗଡ଼ ଉପରେ ଦିଆଯାଇଥିବା ଛପର

**ଗୁଡ଼େଇଣ** - *ରା:* (ବି.) : ପଛେ ପଛେ ଧାଇଁବା

**ଗୁଡ଼େଇଡୁଡ଼େଇ** - *ଅନେ:* (କ୍ରି.ବି.ଅ.ବି.) : ଏଣୁତେଣୁ, ବାରମ୍ବାର ଛନ୍ଦାଛନ୍ଦି ହୋଇ, ବୁଲାଇ ବଙ୍କେଇ, ଇଆଡୁ ସିଆଡୁ, ପୁନଃପୁନଃ, ଲଗାତର୍, ବାରମ୍ବାର, ବାରମ୍ବାର

**ଗୁଡ଼େଇବା** - *ଗ:* (କ୍ରି.) : ଦଉଡ଼ାରେ ବାନ୍ଧିବା, ବେଷ୍ଟନ କରିବା

**ଗୁଢ** - *ଢେ:* (ବି.) : ଜ୍ଞାତ, ବନ୍ଧୁ, ସ୍ୱଜନ

**ଗୁଢ଼ି** - *ଅ:* (ବି.) : ଗୋଡ଼ି

**ଗୁଢ଼ରା** - *ଦେ:* (ବି.) : ମଇଁଷି ଛୁଆ

**ଗୁଢି ଗମ୍ଭୀରା** - *ଦେ:* (ବି.) : ଗୁଢି, (ଦେଉଳ) ଭିତିରି ଘର

**ଗୁଢିଘର** - *ଦେ:* (ବି.) : ଗାଁ ଲୋକଙ୍କର ବସାଉଠା ସ୍ଥଳ

**ଗୁଣ** - *ଅନେ:* (ବି.) : ଧନୁର ଦଉଡି, ଧର୍ମ, ଗୁଣନ କରିବା, ଅଭ୍ୟାସ, ଧନୁର ଦଉଡ଼ି, ଗୁଣ୍ଡ, ଚୂର୍ଣ୍ଣ

**ଗୁଣ କରିବା** - *ଗ:* (କ୍ରି.) : ଫଳପ୍ରଦ ହେବା

**ଗୁଣ ଗ୍ରାମ** - *ଗ:ପଦ୍ୟ:* (ବି.) : ପରିଚୟ ସଂଧାନ, ଗୁଣ ସମୂହ, ସଦ୍ ଗୁଣ ସକଳ

**ଗୁଣା** - *ଅନେ:* (ବି.) : ନାକ ଅଳଙ୍କାର, ସୁନା, ପିତ୍ତଳରେ ତିଆରି ଗୁଣା ବା ଫାଶିଆ, ନାରୀଙ୍କ ନାସା ଅଳଙ୍କାର

**ଗୁଣାଲହଂକା** - *କଳା:* (ବି.) ଆଦିବାସୀମାନେ ବରଘରକୁ କନିଆ ନେଇ ଦେବାବେଳେ, ବରଘର ଗ୍ରାମର ଉପକଣ୍ଠରେ କନ୍ୟା ପାଖରେ କରାଯାଉଥିବା ବିଧି

**ଗୁଣି** - *ଅନେ:* (ବି.) : ଗୁଣିଆର ତନ୍ତ୍ରବିଦ୍ୟା

**ଗୁଣିଆ** - *ଅନେ:* (ବି.) : ତାନ୍ତ୍ରିକ, ଭୂତପ୍ରେତକୁ ସାଧିବା ବ୍ୟକ୍ତି, ଗୁଣି ବିଦ୍ୟା ଅଧିକାରୀ

**ଗୁଣିଗାରିଡ଼ି** - *ଢେ:ଅ:ଖୋ:* (ବି.) : ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ତନ୍ତ୍ର ସାଧନା ବିଶେଷ, ଗୁଣି ଗାରେଡ଼ି

**ଗୁଣିସିନ୍ଧି** - *ସ:* (ବି.) : ମିଳିମିଳା

**ଗୁଣୁଗୁଣୁ** - *ଅନେ:* (ବି.ଅ.) : ଧୀରେଧୀରେ ଗୀତ ଗାଇବା, ଭ୍ରମର ଗୁଣୁଗୁଣୁ ହେବାର ଏକ ପ୍ରକାର ଶବ୍ଦ, ଅସ୍ଫୁଟ ଧ୍ୱନି, ଅଳିଗୁଞ୍ଜନ

**ଗୁଣୁତ** - *ଦେ:* (ବି.) : ଅଣ୍ଟାସୂତା

**ଗୁଣେ** - *ଢେ:* (ବି.) : ମାଛି

**ଗୁଣ୍ଡୁଣୀ** - *ସଂ:* (ବିଂ.) : ବାଙ୍ଗରା

**ଗୁଣ୍ଡ** - *ଦେ:* (ବି.) : ୪ ଡେସିମିଲ୍ ଜମି

**ଗୁଣ୍ଡିଆ** - *ଖୋ:* (ବି.) : ଡେରା, ଠେସା, ଶିବିର

**ଗୁଣ୍ଡେ ବିଣ୍ଡେ** - *କ:* (ବିଂ.) : ଅଳ୍ପ ଜମି

**ଗୁଣ୍ଡ** - *ଅନେ:* (ବିଂ.ବି.) : ଚୁନା, ଚୂର୍ଣ୍ଣ କରିବା, ଛେଚିବା, ତରାଜୁର ବଟକରା,

**ଗୁଣ୍ଡରି ଚଢ଼େଇ** - *ଦେ:* (ବି.) : ଏକ ଛୋଟ ପକ୍ଷୀ

**ଗୁଣ୍ଡା** - *ଅନେ:* (ବି.) : ଗୋବର ଜାଳ, ଚୂନା, କଳେଭାତ, ଦୁଷ୍ଟ, ବଦମାସ୍, ଭାତଗୁଣ୍ଡା, ଛତରା, ନିମନ୍ତ୍ରଣ

**ଗୁଣ୍ଡାଗର୍ଦ୍ଧି** - *ସଂ:* (ବି.) ଦାଦାଗିରି, ଭଙ୍ଗାରୁଜା, ଗୁଣ୍ଡାଗିରି

**ଗୁଣ୍ଡି** - *ଅନେ:* (ବି.) : ଟିକିଟିକି ମଶା, ବୋତାମ, ବସନ୍ତରୋଗ, ଧୂଆଁ, ଧନିଆମିଶା ପଦାର୍ଥ, ମହୁଲ ଫୁଲ, ଗୁଣ୍ଡ, ପାନ ମସଲା, ଚାଉଳଚୁନା, ମାଦକ ଦ୍ରବ୍ୟ ବିଶେଷ, ଗଉଡ଼ିଆକୁ ହଳ ଚରେଇବା ପାଇଁ ଦିଆଯାଉଥିବା ପାରିଶ୍ରମିକ, ପାନ ମସଲା ବିଶେଷ

**ଗୁଣ୍ଡିଆ** - *ନ:* (ବି.) : ଛୋଟ ମଶା, ଛାତି, ବକ୍ଷ, ହୃଦୟ, ସାହସ, ତାକତ, ହୃତ୍‌ପିଣ୍ଡ, ଛୋଟ କୀଟ

**ଗୁଣ୍ଡିକୁଟା** - *କ:ଢ:* (ବି.) : ଛୋଟ କୁଟା(ଛଣ), ଧାନ ବିଡ଼ାରୁ ଝଡ଼ିଥିବା କୁଟା

**ଗୁଣ୍ଡି ବସନ୍ତ** - *ନ:* (ବି.) : ହାଡ଼ଫୁଟି

**ଗୁଣ୍ଡୀ** - *ସଂ:* (ବି.) : ଗ୍ରାସ; ଖାଦ୍ୟର ମାତ୍ରା; ଟିକିଟିକି ଖଣ୍ଡ, ଦୁର୍ଜନ, ବଦ୍‌ମାସ

**ଗୁଣ୍ଡୁ** - *ଗଞ୍ଜ:ଗ:ରା:କୋ:* (ବି.) : ବଟକରା (ଓଜନ କରିବା ପାଇଁ ବ୍ୟବହୃତ)

**ଗୁଣ୍ଡୁକଣ୍ଡା** - *ଗ:* (ବି.) : ନିକିତିର ମାପକ କଣ୍ଡା

**ଗୁଣ୍ଡୁରି ଚଢେଇ** - *ଖୋ:* (ବି.) : ଏକ ପ୍ରକାର ଖାଦ୍ୟୋପଯୋଗୀ ଚଢେଇ

**ଗୁତ** - *ଗଞ୍ଜ:* (ବି.) : ଗୋତ୍ର

**ଗୁତ୍‌ରା** - *କଳା:* (ବି.) : ପଦଚିହ୍ନ, ଖୋଜ

**ଗୁତା** - *ଗଞ୍ଜ:ରା:* (ବି.ବିଂ.) : ଭାଗକୁ ନେବା, ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ଦ୍ଦିଷ୍ଟ

**ଗୁତାମ** - *ଢ:ବା:ମ:* (ବି.) : ବୋତାମ

**ଗୁତାମାରିବା** - *ବ:* (କ୍ରି.) : କୌଣସି ଏକ କାର୍ଯ୍ୟ କରିବା ପାଇଁ ବାରମ୍ବାର ବାଧ କରିବା

**ଗୁତି** - *ଅନେ:* (ବି.) : ହଳିଆ, ମୂଲିଆ

**ଗୁତିଦେବା** - *ଗ:* (ବି.) : ଭାଗରେ ଲଗାଇବା

**ଗୁତୁରା** - *ରା:* (ବି.) : ଗୋପନୀୟ କଥା

**ଗୁଦ୍ କୁଟୁମ୍** - *ସୁନ୍:* (ବି.) : ପରିବାରର ସଂପର୍କୀୟ ଲୋକ

**ଗୁଭ** - *ରା:ଗ:* (ବି.) : କଳନ୍ତରହୀନ ବନ୍ଧକ, ବର୍ଷକ ପାଇଁ ନିଲାମ, କୋତ

**ଗୁତ୍ର ମାରୁ** - *ଦେମି:* (ବିଂ.) : ଶତ୍ରୁ ସଙ୍ଗେ ମିଶି ନିଜ ଦଳର ଅନିଷ୍ଟକାରୀ

**ଗୁଦ୍‌ଗୁଦେଇବା** - *କୋ:* (କ୍ରି.) : କୁତୁକୁତୁ କରିବା

**ଗୁଦ୍ଦ ଗୁମା** - *କଣ୍:* (ବିଂ.) : ସ୍ୱାସ୍ଥ୍ୟବାନ୍

**ଗୁଦ୍‌ରା** - *ଦେମି:* (ବି.) : ଗୋଦରା, ଗୋଦର ଗୋଡ଼ିଆ

**ଗୁଦନି** - *ସ:* (ବି.) : ଗୋଡ଼ହାତରେ କଳା ଦେଇ ଖୋଦେଇ ହେବା

**ଗୁଦା** - *ସୁ:* (ବି.) : ଶସ

**ଗୁଦା ଗୁଡ୍‌ମ** - *କଣ୍:* (ବିଂ.) : ନିର୍ଧୂମ୍

**ଗୁଦାଇ୍** - *ସ:* (ବି.) : ଫଳର ଶସ

**ଗୁଦି** - *ବା:କଳା:ବର:* (ବି.) : ଢାହାଙ୍କରଖା ସ୍ଥାନ, ଡକ୍, ମସ୍ତିଷ୍କର ଆଭ୍ୟନ୍ତରୀଣ ଅଂଶ

**ଗୁଦୁକୁଦୁ** - *କଳା:ନୂ:* (ବି.) : ଉଲୁକ, ପେଚା

**ଗୁଦୁଡି** - *କେ:ବା:* (ବି.) : କନ୍ଥା, ପର୍ଦ୍ଦୁ

**ଗୁଦୁଲୁ ଗାଦୁଲୁ** - *ସ:* (ବିଂ.) : ମୋଟାମୋଟି ହେବା

**ଗୁଦେଇ୍‌ବା** - *କଳା:* (କ୍ରି.) : ଶରୀରରେ କଳାରେ ଖୋଦେଇ କରିବା ଓ ଚିତ୍ର ଆଂକିବା

**ଗୁଧଳ** - *କଣ୍:ମ:ବା:* (ବି.) : କନ୍ଥା, ଗୁଧୁଡ଼ି

**ଗୁଧାବା** - *କଳା:* (କ୍ରି.) : ଗାଧେଇଦବା, ସ୍ନାନ କରାଇବା

**ଗୁଧି** - *ସୁ:* (ବି.) : ଗୋଧି (ଜୀବ ବିଶେଷ), ମୁଣ୍ଡର ଦହି (ମସ୍ତିଷ୍କ)

**ଗୁଧୁଡ଼ା** - *ରା:* (ବିଂ.) : ଅର୍ଦ୍ଧ ପାଗଳ

**ଗୁଧେଇବା** - *କଳା:* (କ୍ରି.) : ଗାଧେଇବା, ଗାଧେଇଦବା

**ଗୁନ** - *ଯା:ନୂ:କଳା:* (ବି.) : ଅତି କ୍ଷୁଦ୍ର ଖାଡ଼ିଆ, ଗୁଣ, ଉତ୍ତମ ଚିନ୍ତାଧାରା

**ଗୁନ୍‌ଗୁନିବା** - *କଳା:* (କ୍ରି.) : ଗୁଣୁଗୁଣେଇବା, ଗୁଣୁଗୁଣୁ ହୋଇ କହିବା

**ଗୁନ୍‌ଚି** - *ସୁ:କଳା:ନୂ:* (ବି.) : ଅଣ୍ଟାସୂତା, କଟୀସୂତ୍ର, ଅଣ୍ଟାର ଅଳଂକାର ବିଶେଷ

**ଗୁନ୍‌ଢୁରି** - *କଳା:* (ବି.) : ଧୂଳିରେ କ'ଣା କରି ରହୁଥିବା କ୍ଷୁଦ୍ର କୀଟ

**ଗୁନ୍‌ବା** - *ଦେମି:* (କ୍ରି.) : ଗୁଣିବା, ଗୁଣନ କରିବା

**ଗୁନ୍‌ହା** - *ସୁନ୍:* (ବି.) : ଦୋଷ

**ଗୁନଚି ଲହ** - *ସୁନ୍:* (ବି.) : ଗୁଳୁଚି ଲତା, ଅମୃତା

**ଗୁନା** - *ଅନେ:* (ବି.) : ଗୁଣା, ନୋଥ, ନାକରେ ପିନ୍ଧୁଥିବା ଅଳଂକାର, ଗୋଇଠି, ଶସ୍ୟ ସାଇତିବା ବଡ଼ ମାଟି ପାତ୍ର, ନାକର ଅଳଙ୍କାର ବିଶେଷ

**ଗୁନାଗୁନି** - *ଗ:* (ବି.) : ପରସ୍ପର ଆପୋଷ ମିଳନ

**ଗୁନୀ** - *କଳା:* (ବିଂ.) : ଗୁଣୀ, ଗୁଣବାନ

**ଗୁନେଇବା** - *ଗ:* (କ୍ରି.) : ମନେଇବା

**ଗୁଛାଗୁଛି** - *ଢେ:* (ବି.) : ଲଗାଲଗି

**ଗୁନ୍ଦ୍‌ଲାଗୁପା** - *କଳା:* (ବିଂ.) : ଗୋଳମାଳିଆ, ଅସ୍ପଷ୍ଟ

**ଗୁନ୍ଦ୍‌ଲେଇବା** - *କଳା:* (କ୍ରି.) : ସ୍ପଷ୍ଟ ନ କରିବା, ରହସ୍ୟ ଭିତରେ ରଖିବା, ଜଟିଳ ପରିସ୍ଥିତି ସୃଷ୍ଟି କରେଇବା

**ଗୁନ୍ଦରେଇବା** - *ଗଡ଼:ଅ:* (କ୍ରି.) : ଗୋଳିଆ କରିବା, ଖେଳରେ ଗୋଳାଇବା, କଥାରେ ଏପଟସେପଟ କରିବା

**ଗୁନ୍ଦଲି** - *ବଉ:* (ବି.) : ପିଆଜ

**ଗୁନ୍ଦଲିଆ** - *କଳା:* (ବିଂ.କ୍ରି.) : ଗୋଳମାଳିଆ, ଲନ୍ଦଫାନ୍ଦିଆ, ଅସ୍ଥିର ଭାବେ ବୁଲିବା, ସମୟ କାଟିବା, ବଣାହେବା, ପ୍ରକୃତ କଥା ଜାଣି ନ ପାରିବା

**ଗୁନ୍ଦଲିଚେ** - *କଳା:* (କ୍ରି.) : ମିଶି ଯାଇଛି

**ଗୁନ୍ଦାଲ** - *ସୁବ:କଳା:* (ବିଂ.) : ଗୋଳିଆ, ଅପରିଷ୍କାର

**ଗୁପ୍‌ଚାବା** - *ସୁ:* (କ୍ରି.) : ଛପେଇ ଦେବା

**ଗୁପ୍‌ଚୁପ୍** - *ଅନେ:* (ବି.) : ଜଳଖିଆ ଜାତୀୟ ଜିନିଷ, ମଇଦା ତିଆରି ଖାଦ୍ୟବିଶେଷ, ଚଟ୍‌ପଟ୍ ଖାଦ୍ୟ, ମଉଜ

**ଗୁପ୍‌ତି** - *ଅନେ:* (ବି.) : ଧାରୁଆ ଯଷ୍ଟି, ଗୁପ୍ତରେ ଥିବା ଅସ୍ତ୍ର

**ଗୁପ୍‌ଲିବା** - *ସ:* (କ୍ରି.) : ଗୋଳମାଳିଆ ହେବା, ଗୁପ୍‌ଲିଯିବା

**ଗୁପା** - *ସୁବ:ସୁ:ବଉ:* (ବିଂ.କ୍ରି.ବି.) : ସୂତାର ଅଡୁଆ, ବାଟ ଭୁଲିବା, ଆଦିଅନ୍ତ ଜଣା ନଥିବା, ହଜିବା, ଜଟିଳ

**ଗୁପା ଗୁନ୍ଦଲା** - *ସ:* (ବିଂ.) : ମିଶାଗୋଳା, ଅସ୍ପଷ୍ଟ ଭାବପ୍ରକାଶ

**ଗୁପା-ଗୁନ୍ଦଲିଆ** - *ସୁବ:* (ବିଂ.) : ଅଡୁଆ ତଡୁଆ

**ଗୁପାତୁପା** - *ବୌ:* (ବିଂ.) : ଗୁଡ଼େଇ ତୁଡ଼େଇ

**ଗୁପାନ ପଡ଼ିବା** - *ସ:* (କ୍ରି.) : ଜଟିଳ ପରିସ୍ଥିତିର ସମ୍ମୁଖୀନ ହେବା

**ଗୁପିବା** - *କୋ:* (କ୍ରି.) : ଦ୍ୱନ୍ଦରେ ପଡ଼ିବା

**ଗୁପ୍ତମାରୁ** - *ଗଡ଼ୀ:* (ବି.) : କାପୁରୁଷ

**ଗୁଫା** - *କଳା:* (ବି.) : କ୍ଷେତରେ ତିଆରି ଅସ୍ଥାୟୀ ଛାମୁଣ୍ଡିଆ ଭଳି ଘର

**ଗୁବ୍‌ରବେଟି** - *ବୌ:* (ବି.) : ଗୋବର ଗୋଟେଇ

**ଗୁବର** - *ସ:ସୁ:* (ବି.) : ଗୋବର

**ଗୁବା** - *ଅନେ:* (ବି.ବିଂ.) : ଗୋବା, ମୁଥ, ମୁନିଆ, ମାଡ଼ଦେବା, ଖୁନ୍ଦା, ଗେଣ୍ଡୁ, ଠେଙ୍ଗାର ଅଗ୍ରଭାଗରେ ଖୋଞ୍ଚିବା

**ଗୁବା ଫୁଲ** - *ନୂ:* (ବି.) : ଗେଣ୍ଡୁ ଫୁଲ

**ଗୁବି** - *ନବ:* (ବି.) : କୋବି

**ଗୁବିବା** - *କୋ:ସୁ:* (କ୍ରି.) : ଗୋବିବା, ଆଘାତ କରିବା, ଫୋଡ଼ିବା

**ଗୁବେଇ ଗୁଢେଇ** - *ଗ:* (ବି.) : କଣ୍ଟା ଫୋଡ଼ି ହେବାର ଯନ୍ତ୍ରଣା

**ଗୁବ୍ରି** - *କଳା:* (ବି.) ପଶୁମାନଙ୍କର ପାକସ୍ଥଳୀରେ ଓ ଅନ୍ତ ନଳୀରେ ଥିବା ଅର୍ଦ୍ଧପକ୍ୱ ଖାଦ୍ୟ, ମଳର ପୂର୍ବାବସ୍ଥା

**ଗୁଭା** - *ସୁ:ବୌ:କଳା:* (ବି.ବିଂ.) : ପେଛା, ଭରା, ଭରପୂର (full), ଫଳର ମଧ୍ୟାଂଶ

**ଗୁମ୍** - *ଦେ:କେ:ଭ:* (ବିଂ.ଅ.) : ନୀରବ, ମଉନ, ନିସ୍ତବ୍ଧ, ଚୁପ୍

**ଗୁମ୍କା** - *ବୌ:* (ବି.) : ଚୁପ୍, ତୁନି ରହିବା ଲୋକ

**ଗୁମ୍କିବା** - *ସ:* (କ୍ରି.) : ଗରମ ଲାଗିବା

**ଗୁମ୍ନୀ** - *କଳା:* (ବିଂ.) : ଅଭିମାନିନୀ, ନିରବ ରହୁଥିବା ସ୍ତ୍ରୀ

**ଗୁମ୍ସୁମ୍** - *ଦେ:କଳା:* (ବି.) : ଚୁପ, ତୁନି, ନିର୍ବାକ୍, ନିରବ

**ଗୁମକିଯିବା** - *ସ:* (କ୍ରି.) : ପ୍ରବଳ ଗରମ ଲାଗିବା

**ଗୁମଡ଼ା** - *ମା:* (ବି.) : ବୋଇତାଳୁ, କୁମୁଡ଼ା

**ଗୁମର** - *ଦେ:ନ:ରା:* (ବି.) : ଇଜତ, ମହତ, ଗୁହଛିଦ୍ର, ଗୋପନ କଥା, ଅନ୍ତରର କଥା

**ଗୁମା** - *ସୁ:ବୌ:ରା:ଗ:* (ବି.) ନିଷ୍କ୍ରିୟ, ଯାହାର କୌଣସିଟାରେ ଆଗ୍ରହ ନଥାଏ, ଆଚୁଘରର ମାଟି ତିଆରି ସ୍ତମ୍ଭ, ପାଟିରେ ଖାଦ୍ୟ ପୂର୍ଣ୍ଣଭାବେ ଭର୍ତ୍ତିକରିବା, ଉଚ୍ଚାସ୍ଥାନ, ମାଟିଗଦା

**ଗୁମାଗଣ୍ଡିଆ** - *ଭ:କ:* (ବିଂ.) : ସହଜରେ କିଛି ନକହିବା ଲୋକ, ଜାଣି ମଧ୍ୟ ନୀରବ ରହୁଥିବା

**ଗୁମାଗୁମା** - *ରା:* (ଅ.) : ଭୋକିଲା ଲୋକ ଚଞ୍ଚଳ ଚଞ୍ଚଳ ଖାଇବା, ଗିଳିପକେଇବା

**ଗୁମାନ** - *ଅନେ:* (ବି.) : ଅଭିମାନ, ରାଗ ଓ ଅଭିମାନ, ଚୁପ୍‌ଚାପ୍ ରହିବା, କାହାକୁ କିଛି ନକହିବ, ଗର୍ବ, ଟେକ, ଅଭିମାନ

**ଗୁମାଳ** - *ରା:* (ବି.) : ଘନ କୁହୁଡି

**ଗୁମାସ୍ତା** - *ଦେ:ଗଞ:* (ବି.) : ପ୍ରତିନିଧି, ଓକିଲ, ମୁକ୍ତାର, ମୋହରିର, କିରାଣି

**ଗୁମିବା** - *ଦେ:* (କ୍ରି.) : ଉତ୍ତାପ ପାଇ ଫଳ ପାଚିବା ଗରମରେ ପଚିଯିବା, ଗମିବା

**ଗୁମୁଟ** - *ଗ:ସ:* (ବି.) : ଅନ୍ଧାରୁଆ କୋଠରି, ରାଜନବରର ଶତ୍ରୁ ନିରୀକ୍ଷଣ ଘର, ଛୋଟ ନୂଆଣିଆ ଘର, ଗୁମ୍ଫାକୃତି ଘର, ଛୋଟ ଦୋକାନ ଘର, କାଠ ତିଆରି ଘର

**ଗୁମୁଟି** - *କେ:ଖୋ:ଭ:* (ବି.) ଛୋଟ ଦୋକାନ ଘର (କାଠ, ଟିଣରେ ତିଆରି), ଝରକା ନଥିବା ଛୋଟ ଘର, ଛୋଟ କାଠ ତିଆରି ଘର

**ଗୁମୁରା** - *ରା:* (ବି.) : ଟାଣିବା

**ଗୁମୁସ୍ତା** - *ସ:* (ବିଂ.) : ଅଳସୁଆ

**ଗୁମ୍ପ** - *କେ:* (ବି.) : ଅଣଓସାରିଆ

**ଗୁମ୍ବା** - *ରା:* (ବି.) : ପିଶାଚିନୀ

**ଗୁୟାଁ** - *ଗ:* (ବିଂ.) : ମନେମନେ ଅଭିମାନ କରୁଥିବା ଲୋକ

**ଗୁର୍** - *କଳା:ସ:ସୁ:* (ବି.) : ଗୁଡ଼

**ଗୁର୍ଡା** - *କଳା:ଝା:* (ବି.) : ଗଦା, ପାଳଗଦା

**ଗୁର୍ଦୁ** - *ସ:କଳା:* (ବିଂ.) : ବେଶୀ ପରିମାଣ, ଗୁଡ଼ାଏ, ଅନେକ

**ଗୁର୍ଦେ** - *ସୁ:* (ବିଂ.) : ପୁଂଜାଏ

**ଗୁର୍ଧୁ** - *ଅ:* (ବିଂ.) : ବେଶୀ

**ଗୁର୍ମଲା** - *ପୁ:* (ବି.) ସିମେଣ୍ଟ ପଲସ୍ତରାପାଇଁ ବ୍ୟବହୃତ ଲୁହାର ଏକ ଚାରି କୋଣିଆ ସାଧନ

**ଗୁର୍ମା** - *କନ୍ଧ:* (ବି.) : ବୁଢ଼ିଆଣୀ

**ଗୁର୍ମୁଟେଇ** - *ଝା:ସ:ବୌ:* (କ୍ରି.ବି.) : ମୋଡ଼ି ମାଡ଼ି ହୋଇ, ଗୁଡ଼େଇ ହୋଇଯିବା, ଲୁଚାକୁଚା ହୋଇଯିବା

**ଗୁରଚନା** - *ସ:କେନ୍ଦୁ:* (ବି.) : ଗୋରଚନା, ଗୋରୁ ମୁଣ୍ଡରୁ ବାହାରୁଥିବା ମୂଲ୍ୟବାନ ପଦାର୍ଥ

**ଗୁରଦୁଟେ** - *ସ:* (ବିଂ.) : ବେଶୀ ପରିମାଣର

**ଗୁରସ** - *ସଂ:ସୁବ:* (ବି.) : କ୍ଷୀର, ଗାଈର କ୍ଷୀର, ଗୋରସ, ଦୁଗ୍ଧ

**ଗୁରସାଇ** - *ସୁବ:* (ବିଂ.) : ବହୁ କ୍ଷୀର ଦେଉଥିବା ଗାଈ, ଦୁଧିଆଳି

**ଗୁରସ୍ତ** - *ଜ:* (ବି.) : ସ୍ୱାମୀ, ଘଇତା, ଗେରସ୍ତ

**ଗୁରା** - *ସୁ:କନ୍ଧ:* (ଆ.ବି.) : ଗୁଡ଼ାକ, ମାଠିଆ

**ଗୁରାକ** - *କୋ:ଯା:କନ୍ଧ:* (ବିଂ.ଅ.ଅ.) ଅନେକ, ଏକାଧିକ, ଅତ୍ୟଧିକ, ଗୁଡ଼ିକ

**ଗୁରାଣ୍ଡି** - *ଗ:ଦେ:* (ବି.) : ଖୁରାଣ୍ଡି, କ୍ଷୁଦ୍ରମୃଗ, ମୂଷାଜାତୀୟ ମୃଗ

**ଗୁରାଣ୍ଡି ହେବା** - *କୋ:* (କ୍ରି.ବି.) : ବିବ୍ରତ ହେବା, ଏପଟ ସେପଟ ହେବା, ଗୋଳେଇ ଘାଣ୍ଟି ହେବା

**ଗୁରାଦୁ** - *ସ:* (ବିଂ.) : କମ୍ ପରିମାଣ

**ଗୁରାଳି** - *ଅନେ:* (ବି.ଅ.କ୍ରି.) : ପାଟିତୁଣ୍ଡ, ପାଟିକରିବା, ଘୋଘା, କାଉଳି, କୋଳାହଳ, ମିଛରେ ପାଟି କରିବା

**ଗୁରିଆ** - *ବୌ:ସ:ସୁ:କଳା:* (ବିଂ.) : ଗୋରା, ଗୌରବର୍ଣ୍ଣ,

**ଗୁରିଇ** - *ପା:* (ବି.) : ଗୋବର

**ଗୁରିବା** - *ଦେ:* (ବି.) : କଞ୍ଚା ଗଛର ଛାଲି ଛଡେଇ ବା ଗୁରିବା ଫଳରେ ଗଛ ମରିଯାଏ

**ଗୁରୁ ଗାଏଁଠ** - *ସୁବ:* (ବି.) : ଗୁରୁଜ୍ଞାନ କରିବା

**ଗୁରୁଗୁଛିଆ** - *କୋ:* (କ୍ରି.) : ଖୁବ୍ ଜୋରରେ ମାଡ଼ ଦେବା

**ଗୁରୁଗୁଡ଼ିଆ** - *ଗ:* (ବି.) : ସମୂଳେ ନଷ୍ଟ ହୋଇଯିବା

**ଗୁରୁଗୁଣ୍ଡିଆ** - *ଗ:* (ବି.) : ଅବାଧ ଅନୁ ପ୍ରବେଶ

**ଗୁରୁ ଗୋସେଇଁ** - *ସଂ:* (ବି.) : ଗୁରୁନାମ ଦେଇଥିବା ବ୍ରାହ୍ମଣ

**ଗୁରୁଜ** - *ଗ:* (ବି.) : କବାଟକୁ ଧରି ରଖିବା ଲୌହ

**ଗୁରୁଜବନ୍ଧ** - *ସଂ:* (ବି.) ପଥରବନ୍ଧ, ନଦୀକୂଳରେ ହୋଇଥିବା ପଥର ବନ୍ଧ

**ଗୁରୁଜି** - *ନବ:* (ବି.) : ଛୋଟଗଳି, ରାସ୍ତା

**ଗୁରୁଡ଼ା** - *ଅନେ:* (ବି.) ଘେରବନ୍ଦୀ, ବଡ଼ବନ୍ଦୀ, ଘେରାହୋଇ ରହିଥିବା ସ୍ଥାନ, ପାଳଗଦା, କୁଟାଗଦା, ଧାନ ରଖିବା ଡୋଲି, ଧାନ ରଖିବାର ଡୋଲି, ଛୋଟଆମ୍ବ

**ଗୁରୁଡ଼ି ଆମ୍ବ** - *ସଂ:* (ବିଂ.) : ଛୋଟ ଆମ୍ବ

**ଗୁରୁଢ଼େଇଦେବା** - *ଗ:* (କ୍ରି.) : ଗାଇଗୋରୁ ପଶି କ୍ଷେତରୁ ସମୂଳେ ଫସଲ ଖାଇଯିବା

**ଗୁରୁଣ୍ଡିବା** - *ଅନେ:* (କ୍ରି.) : ପିଲା ଆଣ୍ଠୁରେ ଯିବାଆସିବା କରିବା, ହାମୁଡ଼ିବା, ଦୁଇହାଡ଼, ଗୋଡ଼ରେ ଭରାଦେଇ ଘୁଷୁରିବା

**ଗୁରୁଦୁ** - *ସୁ:ଝା:* (ବି.) : ବହୁତ

**ଗୁରୁନ୍ଦା** - *ପୁ:* (ବି.) : ଏକ ଦୁଗ୍ଧଜାତ ସୁଖାଦ୍ୟ

**ଗୁରୁନ୍ଦେଇ** - *ଗଦ୍ୟ:* (ବି.) : ଏକ ଜଙ୍ଗଲୀ ଫଳ

**ଗୁରୁପୁଜ** - *ଗ:* (ବି.) : ଗୋରୁ ଏବଂ ମଇଁଷି ଆଦି ଗୃହ ପାଳିତ ପଶୁ

**ଗୁରୁପୁରିଆ** - *ଯା:* (ବିଂ.) : ଗୋଟେ କଥାକୁ ବାରମ୍ବାର ମନେପକାଇବା, ଗୁଁ ପୁଁ ହେବା

**ଗୁରୁଭା** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ଗୁରୁମାଈ** - *ନବ:* (ବି.) : ଦେବୀଙ୍କୁ ପୂଜା କରିବା ସ୍ତ୍ରୀଲୋକ

**ଗୁରୁମେ** - *କଳା:* (ବି.) : ଯେଉଁ ମହିଳାଙ୍କ ଉପରେ ଦେବତା ସବାର ହୋଇଆସନ୍ତି

**ଗୁରୁଲା** - *ସୁ:* (ବି.) : ଘେର

**ଗୁରୁଶାଳ** - *କେ:* (ବି.) : ଗୋଶାଳା, ଗୁହାଳ

**ଗୁରୁସିଆ ଗନ୍ଧ** - *କେ:* (ବି.) : ଦୁଗ୍ଧ ବା ଦୁଗ୍ଧଜାତ ଦ୍ରବ୍ୟର ଦୀର୍ଘ ରହଣି ପରେ ଉତ୍କଟ ଗନ୍ଧ

**ଗୁରୁସ୍ତି ବା ଗିରସ୍ତ** - *ବ:* (ବି.) : ସ୍ୱାମୀ

**ଗୁରେଇବା** - *ନୂ:ଗ:ଭ:* (କ୍ରି.) : ଗୁଡ଼େଇବା, ଧାନ ପାଛୁଡ଼ିବା, ଧାନରୁ ଅଗାଡ଼ି ବାଛିବା, ଗୁଡ଼ାଇବା

**ଗୁରେଥ ତୁରେଇ** - *ଖୋ:* (ବିଂ.ଅ.) ବାରମ୍ବାର

**ଗୁର୍ଜି** - *ଗଜ:କୋ:ରା:କଳା:* (ବି.) : ସଂକୀର୍ଣ୍ଣ ରାସ୍ତା, ଶସ୍ୟ ବିଶେଷ, କାଙ୍ଗୁ ଚାଉଳ, ସଂକୀର୍ଣ୍ଣ ପଥ, ଅଣଓସାରିଆ ରାସ୍ତା, ଦଶହରା ବେଳକୁ ଅମଳ ସରିଥିବା ଶସ୍ୟ ବିଶେଷ

**ଗୁର୍ଦ୍ଧ** - *ରା:* (ବି.) : କମ ପଇସା ନେଇ ପଇସା ସୁଝିବା ଯାଏଁ ଖଟୁଥିବା ଲୋକ, ଗୋତି

ଗୁର୍ଦ୍ଦୁ - *ବ:* (ବିଂ.) : ବେଶୀ, ବହୁତ

ଗୁର୍ଦ୍ଧା - *ବର:* (ବି.) : ବିଧା, ମୁଠା

ଗୁର୍ମୁଟେଇ - *ବ:* (କ୍ରି.) : ମୋଡ଼ି ମାଡ଼ି ହୋଇ ବାନ୍ଧିବା

ଗୁର୍ମୁଲେଇବା - *ବ:* (କ୍ରି.) : ଧଡ଼ଧାଡ଼ ଅଙ୍କାଡ଼ି ହୋଇପଡ଼ିଯିବା

ଗୁଲ୍ - *ମ:* (ବି.) : ଗୁଡ଼

ଗୁଲ୍‌କନ୍ଦ - *ଦେ:* (ବି.) : ଗୋଲାପ ଫୁଲ ପାଖୁଡା, ରସଗୋଲା, ମିଠାଇ

ଗୁଲ୍‌ଗୁଲା - *ଅନେ:* (ଅ.ବିଂ.ବି.) : ଖରାପ ପରିସ୍ଥିତି, ଦୁଃଖକଷ୍ଟ, ଦୁଃଖ ପୂର୍ଣ୍ଣ ଅଭିବ୍ୟକ୍ତି, ଗହମ ଅଟାରେ ତିଆରି ପିଠା, ବିକଳ ଅବସ୍ଥା, ଦୟନୀୟ ସ୍ଥିତି, ଅଟାରେ ପ୍ରସ୍ତୁତ ବରା

ଗୁଲ୍‌ଗୁଲିଆ - *ଦେ୍ୌ:* (ବିଂ.) ସୁନ୍ଦର, ଆକର୍ଷଣୀୟ

ଗୁଲ୍‌ଛା - *କନ୍ଧ:* (ବି.) : ବାଟୁଳି

ଗୁଲ୍‌ଝି - *କଣ:* (ବି.) : ଏକ ପ୍ରକାର ବନଜାତ ଖାଦ୍ୟଶସ୍ୟ

ଗୁଲ୍‌ଠୁ - *ଦେ୍ୌ:* (ବିଂ.) : ଗେଡ଼ା

ଗୁଲ୍‌ଦି - *ଗଦ୍ୟ:* (ବି.) : ଏକ ଫସଲ

ଗୁଲ୍‌ବା - *କନ୍ଧ:* (କ୍ରି.) : ଗୋଳିବା, ତରଳ ପଦାର୍ଥ ଦ୍ୱାରା ମିଶାଇବା

ଗୁଲ୍ ମଲିଆ - *ନୂ:ଦେ୍ୌ:* (ବିଂ.) : ଦୁଷ୍ଟ, ଗୋଳମାଳିଆ

ଗୁଲ୍‌ସୁ - *ସ:* (ବି.) : ଖଡୁ

ଗୁଲଟୁଲ୍ - *ସ:* (ବିଂ.) : ସୁସ୍ଥ ଶରୀର, ସୁନ୍ଦର ଦିଶିବା

ଗୁଲଠା - *ସୁ:* (ବି.) : ଏକ ପ୍ରକାର ପିଠା

ଗୁଲତି - *କେ:* (ବି.) : ଗୁଳି

ଗୁଲର - *ସ:* (ବି.) : ଛିଟ୍‌କିଣି

ଗୁଲହାନି - *ସୁବ:* (ବିଂ.) : କଳହ ପ୍ରିୟା ନାରୀ

ଗୁଲା - *ଅନେ:* (ବି.ବିଂ) : ଗୁଳା, ଗୋଲାକାର, ଗୋଳିଆ, ଅପରିଷ୍କାର, ସମବାୟ କେନ୍ଦ୍ର, ଅକ୍ଷତ, ଅବିକଳ, ସଂପୂର୍ଣ୍ଣ, ଗୋଲ, ସମସ୍ତ, ଗଞ୍ଜାମରେ ବାସ କରୁଥିବା ତେଲିଙ୍ଗି ଜାତି, ବଡ଼ ଟୋକେଇ, ପଶୁପାଳକ ଜାତି, ଗୋଲା, ମେଷ ପାଳକ ଜାତି ବିଶେଷ

ଗୁଲା, ଗୋଲଘର - *ସୁବ:* (ବି.) : ପଞ୍ଚାୟତ ଅଫିସ୍, ଭଣ୍ଡାର ଘର

ଗୁଲାବ୍ - *ନୂ:* (ବି.) : ଗୋଲାପ

ଗୁଲାବାର - *ସୁବ:* (କ୍ରି.) : ଗୋଲ କରିବା

ଗୁଲାମ୍ - *ମ:* (ବି.) : ଗୋଲାମ୍, ଚାକର

ଗୁଲାମୁଲା - *କନ୍ଧ:* (ବିଂ.) : ଅକ୍ଷତ ଅବସ୍ଥା, ସଂପୂର୍ଣ୍ଣ ଅବିକଳ

ଗୁଲି - *ଅନେ:* (ବି.) : ସାନ ଟୋକେଇ, ଠକିବା, ଔଷଧ ବଟିକା, ବାଉଁଶରେ ତିଆରି ହୋଇଥଇବା, ଯାହାକି ସେଥିରେ ଧାନ, ଚାଉଳ, କୁଣ୍ଡା ରଖାଯାଏ

**ଗୁଲିଆ** - *କଳା:ମା:ନ:* (ବିଂ.ବି.) : ଗୋଳିଆ, ମଇଳା, ଗୁଲି ଖାଉଥିବା ବ୍ୟକ୍ତି

**ଗୁଲିଆଳୁ** - *ଗଢ:* (କ୍ରି.) : ଚିତ୍ରକାରମାନେ ଶଂଖବାଟି ତହିଁରେ କଇଥ ଅଠା ମିଶାଇ ରଙ୍ଗ ପ୍ରସ୍ତୁତ କରନ୍ତି

**ଗୁଲିଆଲୁ** - *ଗ:* (ବି.) : ଗଞ୍ଜପା ତାସର ରଙ୍ଗବିଶେଷ

**ଗୁଲିଖଟି** - *ଦେ:ବୌ:କ:* (ବି.ବିଂ.) : ନିଶା ଖାଇବାର ମିଳନ ସ୍ଥାନ, କଥା ହେଉଥିବା ମେଳ, ଗୋଷ୍ଠୀଙ୍କ ସ୍ଥାନ, ବାଜେଗପ

**ଗୁଲିଗପ** - *ସ:* (ବି.) : ଏଣୁ ତେଣୁ ଗପିବା

**ଗୁଲିମାରିବା** - *ଭ:ମ:ସ:* (କ୍ରି.) : ମିଛରେ ଫାନ୍ଦି କଥା କହିବା, ଅନ୍ଧାରକୁ ଟେକାମାରିବା, ବାହାପିଆ, ଫୁଟାଣିଆ କଥା କହିବା

**ଗୁଲିହା** - *ବୌ:ସୁ:ସୁବ:* (ବିଂ.ବି.) : ଗୋଳିଆ, ଗାଳି କରୁଥିବା ବ୍ୟକ୍ତି, କଜଳ ପାତି, କଳହ ପ୍ରିୟ ଗୁଣ ଯୋଗୁଁ ଏପରି ନାମ କରଣ, ପକ୍ଷୀ ବିଶେଷ

**ଗୁଲୁ** - *କୋ:ଗଦ୍ୟ:* (ବି.) : ଚୋପା ଛଡ଼ା ଯାଇଥିବା ବିରି, ଗେଣ୍ଡା

**ଗୁଲୁଗୁଲା** - *ନ:ଅ:* (ବି.) : ମଇଦା, ଗୁଡ଼ରେ ତିଆରି ଘିଅ ଛଣା ଏକପ୍ରକାର ପିଠା

**ଗୁଲୁଗୁଲୁ** - *ଅ:* (କ୍ରି.) : କୁଣ୍ଡେଇ ହେବା, ଗଲୁ ହେବା

**ଗୁଲୁବାସି** - *ଚ:* (ବି.) : ଗେଣ୍ଡୁ ଫୁଲ

**ଗୁଲେର୍** - *କଳା:* (ବି.) : ବାଟୁଳି, ଗୁଲ୍‌ସା

**ଗୁଲେଲ୍** - *ମ:* (ବି.) : ବାଟୁଳି

**ଗୁଲ୍ଲା** - *ଗା:* (ବି.) : ଛେଳି, ମେଣ୍ଢା ପାଳକ

**ଗୁଳ** - *ଚ:* (ବି.) : ଜଳିଯାଇଥିବା ବତୀର ଅବଶେଷ

**ଗୁଳ୍‌ଛି** - *ଦେ:* (ବି.) : ଶସ୍ୟ

**ଗୁଳ୍‌ଟା** - *କୋ:* (ଅ.) : ଗଣ୍ଡଗୋଳ, ଝଗଡ଼ା

**ଗୁଳ୍‌ହେ** - *ମ:* (ବି.) : ଗୁଡ଼ାଏ

**ଗୁଳମୁଣ୍ଡ ଛୁଇଁବା** - *ଭ:* (କ୍ରି.) : ଯଥାସାଧ ଚେଷ୍ଟାରେ ଲକ୍ଷ୍ୟସ୍ଥଳରେ ପହଞ୍ଚିବା

**ଗୁଳା** - *ଅନେ:* (ବି.) : ଶଗଡ଼ ଯିବା ବାଟ, ଗୋଲେଇ, କତା ନଥିବା ନଡ଼ିଆ, ବାରୁଦମିଶା ବଡ଼ ବାଡ଼ିଆ ବାଣ, ନଡ଼ିଆ(ପରିଷ୍କାର),

**ଗୁଳାପକାଇବା** - *ସ:* (କ୍ରି.) : ଅଂଶୀଦାର ଅଂଶ ଠିକ୍ କରିବା ପାଇଁ ଉପଚାର (ଧର୍ମଗୁଳା)

**ଗୁଳାଲ୍** - *ସ:* (ବିଂ.) : ପାଣି ସଫା ନଦିଶିବା, ଗୋଳିଆ

**ଗୁଳି** - *ନ:* (ବି.) : ବନ୍ଧୁକରେ ବ୍ୟବହୃତ ଧାତୁଯୁକ୍ତ ବିସ୍ଫୋରକ

**ଗୁଳିଆ ଖସିବା** - *ନ:* (କ୍ରି.) : ଖଞ୍ଜାରୁ ଗୋଡ଼ ଖସିଯିବା

**ଗୁଳିଆ ଘଣ୍ଟା** - *ଗ:କୋ:* (ବିଂ.) : ଗୋଳିଆ, କାଦୁଆ, ଅସ୍ପଷ୍ଟ

**ଗୁଳୁଗୁଳି** - *ଅନେ:* (ବି.) : ଅତ୍ୟଧିକ ଗରମ, ଅସହ୍ୟ ଉତ୍ତାପ, ଭୀଷଣ ଗରମ

**ଗୁଳୁଚି** - *ଦେ:ଗ:* (ବି.) : ବାୟବୀୟ ମୂଳ, ଔଷଧ ଲତା, ଅମୃତା

**ଗୁଳୁମ** - *ଗ:* (ବି.) : ପେଟରୋଗ ବିଶେଷ

**ଗୁଳୁରି** - *ଗ:* (ବି.) : ରୁପାଦିଆରି କଟୀ ଅଳଂକାର

**ଗୁଲ୍ମ** - *ଦେ:* (ବି.) : ରୋଗ

**ଗୁଷ୍ଟି** - *ଗ:* (ବି.) : ବଂଶ, ଗୋଷ୍ଠୀ

**ଗୁଷ୍ଟିରେ ମଣ୍ଡା** - *କେନ୍ଦୁ:* (ବି.) : ଅଲଣା ଚାଉଳ ଚୂନାର ଧଳା ମଣ୍ଡା

**ଗୁସ୍‌ବାପ** - *ଗ:* (ବି.) : ଗୋସେଇଁ ବାପା ବା ଢେଙ୍କେବାପାଙ୍କ ବାପା

**ଗୁସ୍‌ମା** - *ଗ:* (ବି.) : ଗୋସେଇଁ ମାଆ ବା ଢେଙ୍କେମାଆଙ୍କ ଶାଶୁ

**ଗୁସାଁଇ** - *ରା:* (ବି.) : ଧର୍ମ ଉପରେ ଜ୍ଞାନଥିବା ବ୍ୟକ୍ତି, ପୁରୋହିତ

**ଗୁସିଆଁ** - *ଅନେ:* (ବି.) : ମାଲିକ, ଘରର ମୁଖ୍ୟ, ସ୍ୱାମୀ ଅର୍ଥରେ ବ୍ୟକ୍ତି ବିଶେଷ, ଗୋସ୍ୱାମୀ, ଗୋସାଇଁ, ସ୍ୱାମୀ, ପ୍ରଭୁ

**ଗୁହ** - *ଦେ:ନ:କେନ୍ଦୁ:* (ବି.) : ମଳ, ବିଷ୍ଠା

**ଗୁହଖିଆ** - *ଦେ:ଅ:* (ବିଂ.) : ଲାଞ୍ଛୁଆ, ଅନୁଚିତ କାର୍ଯ୍ୟ କରିବା

**ଗୁହରିଆ** - *କଳା:* (ବି.) : ସରୁସରୁ ପତ୍ର ବିଶିଷ୍ଟ କଣ୍ଟକ ଯୁକ୍ତ ବୃକ୍ଷ ବିଶେଷ

**ଗୁହା** - *ସୁ:* (ବି.) : ସାକ୍ଷୀ (ପଥର ଗୁହା)

**ଗୁହାଣି** - *ଗ:* (ବି.) : ଗୋରୁଙ୍କୁ ଘାସକୁଟା ଦେବାସ୍ଥାନ

**ଗୁହାମୁଖ** - *ସ:* (ବି.) : ମେଲାମୁହଁ

**ଗୁହାରି** - *ଅନେ:* (ବି.କ୍ରି.) : ନିବେଦନ, ଅନୁରୋଧ କରିବା, ଆପତ୍ତି,

**ଗୁହାରିଆ** - *ନ:* (ବି.) : ଅଧିଆ ପଡ଼ିଥିବା ଭକ୍ତ

**ଗୁହାଲ୍** - *କଳା:* (ବି.) : ଗୋଶାଳ, ଗୋରୁଂକ ରହିବା ଘର

**ଗୁହାଲ୍ ଧୁମା** - *ଗୌ:* (ବି.) : ମୋଟା

**ଗୁହାଲି** - *କଣ:* (ବି.) : ଗୁହାଳ

**ଗୁହାଳ** - *ଅନେ:* (ବି.) : ଗାଈଗୋରୁଙ୍କ ଖୁଆଡ, ଗାଈ ଗୋରୁ ରଖିବା ଘର, ଗୋଶାଳା, ଗାଈ ବନ୍ଧା ସ୍ଥାନ

**ଗୁହାଳ ପୂଜା** - *କେନ୍ଦୁ:* (ବି.) : କାଳୀପୂଜାର ଦ୍ୱିତୀୟ ଦିନର ପୂଜା

**ଗୁହି** - *ସୁବ:ଗୌ:ସୁ:* (ବି.) : କଳିକତରା କୀଟ, ଏକ କଣ୍ଟିଆ ସଦୃଶ ଜୀବ (ଯାହାକୁ ଦେଖିଲେ ଅଶୁଭ ବୋଲି ଧାରଣା ରହିଛି)

**ଗୁହି ଖୋଳିବା** - *ସୁ:* (ବି.) : ମନ୍ଦ ପାଞ୍ଚିବା

**ଗୁହିରା** - *ସୁବ:ସୁ:ସ:* (ବି.) : ଗୁହ ଗନ୍ଧାରିଆ ଗଛ, ଚିଙ୍କ

**ଗୁହୁକାଳିକା** - *ଖୋ:* (ବି.) : ଏକ ପ୍ରକାର ପକ୍ଷୀ ଯିଏକି ବିଷ୍ଠା ଖାଇଥାଏ

**ଗୁହୁଖାଇ ମଏନା** - *ସୁବ:* (ବି.) : ଏକ ପ୍ରକାର ବଣି ଚଢ଼େଇ

**ଗୁହୁଡ଼ା** - *ସୁବ:କଳା:ସୁ:ଘା:* (ବି.) : ପଶୁମାନଙ୍କ ଦଳ, ସମୂହ, ଗୋଷ୍ଠୀ, ଗାଈ ବଳଦ ଆଦିଙ୍କର ଗୋଷ୍ଠୀ

**ଗୁହୁରି ଠାନ** - *ନୂ:* (ବି.) : ଅନେକ ଲୋକ ମଳତ୍ୟାଗ କରିଥିବା ସ୍ଥାନ

**ଗୁହେର** - *ସୁ:ସଂ:କଳା:* (ବିଂ.ବି.) : ବହୁତ, ରକ୍ଷକ, କମାର, ଅଭିଭାବକ, ଗୁହାରି

**ଗୁହେର୍ ଗୁହେର୍ ଛାଡ଼ିବା** - *ସଂ:* (କ୍ରି.) : ତ୍ରାହି ତ୍ରାହି ଡାକଦେବା

**ଗୁହ୍ୟଦୀପକ** - *ସଂ:* (ବି.) : ଜୁଳୁଜୁଳା ପୋକ

**ଗୁଁ** - *କଳା:* (ବି.) : ଗୁହ, ମଳ

**ଗୁଁଏଇ ଦେବା** - *ସ:* (କ୍ରି.) : ହଜିଯିବା

**ଗୁଁଗା** - *ଗଡ଼:* (ବି.) : ଖନା, କଥା କହି ନପାରିବା ବ୍ୟକ୍ତି, ଘୁଁଗା

**ଗୁଁ ଗୁଁ ନାଦିଆ** - *ସ:* (ବି.) : କଉଡ଼ିରେ ବେଶ ହୋଇଥିବା ଷଣ୍ଢ, ନନ୍ଦୀ, ବାସୁଆ ବଳଦ

**ଗୁଁ ଛଡ଼େଇ ଦେବା** - *ନ:* (କ୍ରି.) : ଗର୍ବ ଭାଙ୍ଗିଦେବା

**ଗୁଁଡ଼ା** - *ସୁବ:* (ବି.) : ବିଭିନ୍ନ ରଂଗର ଗୁଣ୍ଡ ଏଥରେ ମୁରୁଜ ଦିଆଯାଏ

**ଗୁଁଡ଼ାଦିଆ** - *ସୁବ:* (ବି.) : ବିବାହ ପୂର୍ବରୁ ଜାତିଭାଇମାନଙ୍କୁ ନିମନ୍ତ୍ରଣ

**ଗୁଁଡ଼ି** - *ସୁବ:ବଉ:* (ବି.) : ଚଣା ଭଳି ଛୋଟ ଆମ୍ବ କଷି, ମନ୍ଦିର

**ଗୁଁଡ଼ିଆ** - *ସୁବ:ସ:* (ବି.) : ମଶା

**ଗୁଁଡ଼ିଖାଇ** - *ସୁବ:* (ବି.) : ଖାଇବା ଆଗରୁ ଆମ୍ବ କଷି ଇତ୍ୟାଦି ଠାକୁରଙ୍କଠାରେ ଭୋଗ ଲଗେଇବାର ଅନୁଷ୍ଠାନ

**ଗୁଁଡ଼ା ପୂଜା** - *ବଉ:* (ବି.) : ବଳିପାଇଁ ପୂଜା

**ଗୁଁଡ଼ିଆ** - *ପଦ୍ୟ:ନୂ:* (ବି.) : ମଶା

**ଗୁଁଣିଆ** - *ସ:* (ବି.) : ମଶା

**ଗୁଁ ପୁଁ ହେବା** - *ଗ:* (କ୍ରି.) : କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କରିବା, ଖେଳରେ ଗୋଳାଇବା, କୌଣସି ବିଷୟରେ ସ୍ଥିର ସିଦ୍ଧାନ୍ତରେ ଉପସ୍ଥିତ ନ ହୋଇ ଇତସ୍ତତଃ କରୁଥିବା, ସନ୍ଦେହ କରିବା

**ଗୁଁ ବାଟି** - *କଳା:* (ବି.) : ଗୁହଖାଇ ବଣି

**ଗୁଁ ମୁହାଁ ନାଗର** - *ନ:* (ବି.) : ପରକୀୟା ପ୍ରୀତିରେ ଲିପ୍ତଥିବା ବ୍ୟକ୍ତି

**ଗୁଁ ମୁହିଁ** - *ନ:* (ବିଂ.) ଗୁମ୍ ମାରି ବସୁଥିବା(ସ୍ତ୍ରୀ)

**ଗୁଁର୍‌ରାଇବା** - *ନୂ:* (କ୍ରି.) : କ୍ରୁର ଦୃଷ୍ଟିରେ ଦେଖିବା

**ଗୁଁରୁରୁ** - *ନୂ:ସୁବ:* (ବି.) : ପଡ଼ିଆ ଭୂଇଁରେ ବାସ କରୁଥିବା ଏକ ଛୋଟ ମାଟିଆ ରଙ୍ଗର ପକ୍ଷୀ ବିଶେଷ, ଗୁଣ୍ଡୁରୀ ପକ୍ଷୀ

**ଗୁଁସେଇଁ** - *ସୁବ:* (ବି.) : ବୈଷ୍ଣବ ବା ଦାସ ସଂପ୍ରଦାୟ, କର୍ଣ୍ଣମନ୍ତ୍ର ଦ୍ୱାରା ଦୀକ୍ଷା ଦେଉଥିବା ବ୍ୟକ୍ତି, ଗୋସେଇଁ

**ଗୁଂଗା** - *ସୁ:* (ବିଂ.) : ମୂକ

**ଗୁଂଜ** - *ଚୌ:* (ବି.) : ଏକ ଜଙ୍ଗଲୀ ଗଛର ଲାଲ୍ ଫଳ

**ଗୁଂଜାରୁଅ** - *ଖୋ:* (ବି.) : ପ୍ରଭାବହୀନ ଲୋକ, ବଳେପଣି ରହିଥିବା, ଭୁଞ୍ଜାଣିଆ

**ଗୁଂଧୁଆ** - *ସ:* (ବି.) : ଏକ ପ୍ରକାର ଜଙ୍ଗଲୀ ତୃଣରେ ନିର୍ମିତ ଦଉଡ଼ି

**ଗୁଂମା** - *ଗ:* (ବି.) : ଫୁଲର ମଣ୍ଡଣୀ, ଫୁଲ ଗଭା, ପଥର ଖୋଲ

**ଗୁଢ** - *ଦେ:* (ବି.) : ଗହନ, ଗୁପ୍ତ

**ଗୁଳି** - *କୋ:* (ବି.) : ଗୃହ ପାର୍ଶ୍ୱସ୍ଥ ସଂକୀର୍ଣ୍ଣ ରାସ୍ତା, ବାରିପଟକୁ ଯିବା ପାଇଁ ଗୃହ ପାର୍ଶ୍ୱରେ ଥିବା ସରୁ ଗଳି

**ଗେଏରୁ** - *ଗ:* (ବି.) : ଅଯଥା ଗର୍ବ ପ୍ରଦର୍ଶନକରିବା

**ଗେଏଲି** - *କଳା:* (କ୍ରି.) : ଗାୟନକଲି, ଗାଇଲି

**ଗେଗେଲବା** - *କଳା:* (କ୍ରି.) : ଭୟରେ ଚିତ୍କାର କରିବା

**ଗେଙ୍ଗଟି** - *ଚୌ:ସ:* (ବି.) : ଛୋଟ ପଥର ଖଣ୍ଡ (ଘର ତିଆରି ସାମଗ୍ରୀ), ଛୋଟ ଛୋଟ ପଥର, ଗେଙ୍ଗୁଟି

**ଗେଜରା** - *ନ:* (ବିଂ.) : ସବୁ ସମୟରେ ଗୋଟିଏ କଥାକୁ ବାରମ୍ବାର କହୁଥିବା (ବ୍ୟକ୍ତି)

**ଗେଜରେଇହବା** - *ମ:* (କ୍ରି.) : ଗେଜଗେଜ ହବା, ବକରବକର ହେବା

**ଗେଜା** - *ସୁ:ବ:* (ବିଂ.) : ନିରୀହ, ବୋକା, ଭକୁଆ, ଓଲୁ ବା ଉଲୁ

**ଗେଜେଗେଜେ** - *ନ:* (ଅ.) : କଚ୍ଚିକରିବା ଢଙ୍ଗରେ କଟରକଟର ହେବା

**ଗେଜେଲା ପାଳି** - *ଗଞ୍ଜ:* (ବି.) : ମୋଟୀ ସ୍ତ୍ରୀ ଲୋକ(ଗାଳି)

**ଗେଞ୍ଜ** - *ଗ:କେ:* (ବି.) : ଅଳ୍ପ ସ୍ଥାନରେ ବହୁ ଲୋକଙ୍କ ସମାଗମହେଲେ ସୃଷ୍ଟି ହେବା ସ୍ଥାନଭାବ, ଅଳ୍ପସ୍ଥାନ

**ଗେଞ୍ଜଣା** - *କେ:ସଂ:* (କ୍ରି.ବି.) : ଭୁଷିବା, ଗେଞ୍ଜିବା, ଗାଳିଗୁଲଜ, କଷ୍ଟ

**ଗେଞ୍ଜା ଗୋହିରା** - *ସଂ:* (ବି.) ଅଣଓସାରିଆ ଓ ଗଭୀର

**ଗେଞ୍ଜି** - *କୋ:ଚୌ:ଖୋ:* (ବି.) : ପେଞ୍ଜ, ଜାମା ତଳେ ପିନ୍ଧା ଯାଉଥିବା ବସ୍ତ୍ର, ବାନିଆନ୍, କୁରୁତା ତଳେ ପିନ୍ଧା ହାତ କଟା ବା ହାତଥିବା ଛୋଟ ଜାମା

**ଗେଟ୍ମା** - *ଚୌ:* (ବିଂ.) : ମୋଟା

**ଗେଟଣ** - *ଗ:* (ବି.) : ସଂପର୍କ, ସମ୍ବନ୍ଧ

**ଗେଟମ୍** - *ସଂ:* (ବିଂ.) : ବାମନ, ଗେଟମା, ଗେଡା ଲୋକ

**ଗେଟମା** - *ଭ:* (ବିଂ.) : ଗୋଲାକାର

**ଗେଟା** - *ସଂ:କୋ:* (ବିଂ.ବି.) : ଗୋଲାମ, ପଶୁମାନଙ୍କର ବେକ, ମୁଣ୍ଡ ଇତ୍ୟାଦିରେ ଅଳଂକାର ଗୁନ୍ଥିବା ଦଉଡ଼ି

**ଗେଟି** - *ଅନେ:* (ବି.) : ଚିପସ୍, ପଥରଖଣ୍ଡ, କଂକ୍ରିଟ୍ କାମ ବା ପିଚୁକାମ ପାଇଁ

ଦରକାର ହେଉଥିବା ଛୋଟ ଛୋଟ ପଥର ଖଣ୍ଡ, ଗୋଡି, ନିମ୍ନ ଉଚ୍ଚତା ବିଶିଷ୍ଟ ନାରୀ

**ଗେଟିବା** - *କୋ.ଗ.* (କ୍ରି.ବି.) : ଲାଭହେବା, ସମ୍ପର୍କ ରଖିବା, ଭଲସଂପର୍କ

**ଗେଟୁ** - *ଗଜ.* (ବି.) : ଗେଟ୍

**ଗେଟେଇ** - *ଅ.ଜ.ଦେ.* (ବି.) : କ୍ଷୀର, ଚାଉଳ, ଚିନିରେ ପିଠା ବିଶେଷ, ଗେଟେଇପିଠା, ଗଇଁଠା ପିଠା

**ଗେଠମା** - *ସୁ.* (ବିଂ.) : ବାଙ୍ଗରା ବ୍ୟକ୍ତି

**ଗେଡ଼ରା** - *ମ.* (ବି.) : ଗୋଇଠି

**ଗେଡମା** - *ଯା.* (ବିଂ.) : ଅଳ୍ପଉଚ୍ଚ, ବାଙ୍ଗରା, ଗେଡ଼ା

**ଗେଡ଼ାକାଡି** - *ରା.* (ବି.) : କଟୁରୀ ଲାଗିଥିବା ନଳ

**ଗେଡ଼ା** - *ଅନେ.* (ବିଂ.ବି.) : ବାଙ୍ଗରା, ଠେଙ୍ଗା, ଛୋଟ ଉଚ୍ଚତାର ମଣିଷ, ଟିଂପା, ଝରକା, କବାଟ ବନ୍ଦ କରିବା ପାଇଁ କାଷ୍ଠ ବା ଲୌହ ନିର୍ମିତ କିଳିଣି

**ଗେଡ଼ାଘର** - *କଳା.* (ବି.) : ଗାଦିଆ, ଅମାର

**ଗେଡ଼ାମାରିବା** - *ଗ.* (କ୍ରି.) : କବାଟ କିଳିବା

**ଗେଡ଼ି** - *ଝା.ସୁ.* (ବି.) : ଏକ ପ୍ରକାର ଖେଳ, କାଠ ଦଣ୍ଡରେ ତିଆରି ଠିଆବାଡ଼ି

**ଗେଡ଼ି ଡ଼ାଙ୍ଗ** - *ନୂ.* (ବି.) : ଗଛରେ ଗେଡ଼ି ତିଆରି କରି ସେଥିରେ ଚାଲିବା, ରଣପା

**ଗେଢୁ** - *ଭ.ଖୋ.* (ବିଂ.) : କମ୍ ଉଚ୍ଚ, ବାଙ୍ଗରା ଲୋକ, ଗେଡ଼ା

**ଗେଣା** - *ବର.* (ବି.) : ଠେଙ୍ଗା

**ଗେଣୁଆ** - *ସୁ.* (ବି.) : ବାଉଁଶରେ ତିଆରି ଝୁଡ଼ି

**ଗେଣ୍ଡା** - *ବା.ଦେ.ନ.* (ବିଂ.ବି.) : ମୂଲ୍ୟହୀନ, ଲିଙ୍ଗମଳ, ନିରର୍ଥକ ସୂଚକ, ଅଶାଳୀନ, କିଛି ନଥିବା

**ଗେଣ୍ଡାମୁର୍କୁଣ୍ଡା** - *ଗ.* (ବି.) : ମୂଲ୍ୟହୀନ ପ୍ରସଙ୍ଗ,ଗୁରୁତ୍ୱହୀନ ପ୍ରସଙ୍ଗ

**ଗେଣ୍ଡମଳା** - *କୋ.ଗ.* (ବି.) : ଅସଂଖ୍ୟ ଛୋଟ ଛୋଟ ଲାମାକୃତ ପାଦ ବିଶିଷ୍ଟ କୀଟ ବିଶେଷ

**ଗେଣ୍ଡା** - *ଜ.ଦେ.* (ବି.) : ଜୀବ ବିଶେଷ, ଜଳଜୀବ

**ଗେଣ୍ଡାଳିଆ** - *ଅନେ.* (ବି.) : ବକଜାତୀୟ ପକ୍ଷୀ, ଗେଣ୍ଡାଗିଳୁଥିବା ବଡ଼ବଡ଼ ପକ୍ଷୀ

**ଗେଣ୍ଡୁ** - *ଗ.ଦେ.ଢେ.* (ବି.) : ମୁଥାଘାସର କ୍ଷୁଦ୍ରକନ୍ଦା, ଟଙ୍କା, ମୁଦ୍ରା, କଂସା ପ୍ରଭୃତିବେଳେ ମିଶ୍ରଣ ହେଉଥିବା ଏକପ୍ରକାର ଧାତୁ, କୁସୁମଫୁଲ, ହଳଦିଆ ଫୁଲ

**ଗେଣ୍ଡୁଆ ଚୁକ୍‌କା** - *ଗୌ.* (ବି.) : ଆବୁଡା ଖାବୁଡ଼ା (not plane), ଅସମତଳ

**ଗେଣ୍ଡୁଆଳି** - *ମ.କଅ.* (ବି.) : କେରାଣ୍ଡି

**ଗେଣ୍ଡୁମୁଣ୍ଡି** - *ଭ.* (ବି.) : ମୁଖ୍ୟ

**ଗେଣ୍ଟୁରୁ ମେଣ୍ଟୁରୁ** - *ଗ.* (ବି.) : ଛୋଟଛୋଟ ପିଲା

**ଗେଣ୍ଟୁଲ୍** - *କଳା.* (ବି.) : ଜାଂଗଲିକ ଦ୍ରୁମ ବିଶେଷ । ଏହି ଗଛରୁ ପଟା କାଟି ଆସବାବପତ୍ର ତିଆରି କରାଯାଏ । କାଟିଲେ ଏହାର କାଠର ରଂଗ ଲାଲ ଦିଶେ ଓ ମାଛ କାତି ପରି ହୋଇଥାଏ।

**ଗେଣ୍ଟୁଳିଆ** - *ଜ.* (ବି.) : ଗେଣ୍ଡାଳିଆ ପକ୍ଷୀ

**ଗେଣ୍ଡେଇଦବା** - *ମ.* (କ୍ରି.) : ଠକେଇଦେବା

**ଗେତରିବା** - *ଚ.* (ବିଂ) : ଜଣକ ବିରୁଦ୍ଧରେ ବାରଂବାର କହୁଥିବା

**ଗେଥଲ୍** - *ଚ.* (ବିଂ.) : ବୋକା ଓ ମେଦଯୁକ୍ତ ବ୍ୟକ୍ତି

**ଗେଦୁଲୁ** - *ଗ.* (ବିଂ.) : ଠକ, ସ୍ୱାର୍ଥପର, ନିଜସ୍ୱବାଦୀ

**ଗେଧ** - *ଖୋ.ସଂ.ଗ.ପୁ.* (ବି.) : ଅଣ୍ଡିରା ମାଙ୍କଡ଼, ବୁଢ଼ାମାଙ୍କଡ଼, ଦଳପତି ମାଙ୍କଡ଼

**ଗେଧିଲା** - *ବୌ.* (ବିଂ.) : ମୋଟା

**ଗେନ୍ଧା** - *ବୌ.* (ବିଂ.) : ବେଖାତିର୍ ଭାବ ସୂଚକ ଅଶ୍ଳୀଳ ଶବ୍ଦ

**ଗେନ୍ସା** - *ଚ୍ୀ.* (ବି.) : ଅଳିଆ, ଗନ୍ଧିଆ ଜିନିଷ

**ଗେନଗେନାବାର** - *ସୁବ.* (କ୍ରି.) : ଥଣ୍ଡା ଯୋଗୁଁ ଯେଉଁ ପ୍ରକାର କଣ୍ଠସ୍ୱର ବାହାରେ

**ଗେନେଇବା** - *ଗ.* (କ୍ରି.) : ବଳଦକୁ ଶଗଡ଼ରେ ବାନ୍ଧିବା, ବୁଝାଇ ରାଜିକରାଇବା

**ଗେନେଗେନା** - *ଗ.* (ବି.) : ରକ୍ତାକ୍ତ, ଅସନା

**ଗେନ୍ତିବା** - *କୋ.* (କ୍ରି.) : ଭିତରେ ଲୁଚାଇ ରଖିବା

**ଗେନ୍ଦରା** - *ଦେ.* (ବି.) : ଅସୁନ୍ଦର, ଚୁଣ୍ଡିଚୁଣ୍ଡି ଲେଖିବା, ଅସ୍ପଷ୍ଟ

**ଗେନ୍ଦରେଇବା** - *କୋ.* (କ୍ରି.) : କୌଣସି କାର୍ଯ୍ୟ କରିବାରେ ସହଯୋଗ ନକରିବା

**ଗେନ୍ଦାଫୁଲ୍** - *ମ.* (ବି.) : ଗେଣ୍ଡୁଫୁଲ

**ଗେନ୍ଦିରି** - *କନ.* (ବି.) : ଝାମଲା

**ଗେନ୍ଦିରିବା** - *ଚ୍ୀ.* (କ୍ରି.) : ସନ୍ଦେହ ମୁକ୍ତ କାର୍ଯ୍ୟ ନ କରିବା

**ଗେନ୍ଧରା** - *ନବ.* (ବିଂ.) : ସଫା ରହୁନଥିବା (ବ୍ୟକ୍ତି)

**ଗେନ୍ଧା** - *ସୁ.ଗ.ସୁବ.ଖୋ.* (ବି.) : କଣ, ବେଖାତିର ଅର୍ଥରେ, ଲିଙ୍ଗ ମଳ, ଶୁଷ୍କ ଶୁକ୍ରାଣୁ, ମୂଲ୍ୟହୀନ ବସ୍ତୁ, ଗନ୍ଧିଆ, ଅପରିଚ୍ଛନ୍ନ(ଗାଳି)

**ଗେନ୍ଧାରି** - *ଗ.କୋ.* (ବିଂ.) : କୃପଣ, କଞ୍ଜୁସ୍

**ଗେନ୍ଧାସୁଙ୍ଗା** - *ଜ.* (ବିଂ.) : ଶୁକୁଟା ମୁହଁ

**ଗେନ୍ଧିରିଗୋଳିଆ** - *ଗ.* (ବି.) : ସତକୁ ମିଛବୋଲିବା, କଥାରେ ବାଧାଦେବା

**ଗେନ୍ଧୁରିଆ** - *ନ.* (ବିଂ.) : ଯେ ଅତି ଚତୁରତା ସହିତ ଖେଳରେ କପଟ କରିଥାଏ, ଗୋଳିଆ

**ଗେନ୍ଢେଇଶୁଣୀ** - *ଗ.* (ବିଂ.) : କୃପଣଭାବ ସଂପନ୍ନା ସ୍ତ୍ରୀ

**ଗେପଲ** - *ମା:* (କ୍ରି.) : ମାରିବା

**ଗେପ୍ତାର କରିବା** - *ଯା:* (କ୍ରି.) : ଧରିନେବା, ହାତକଡ଼ା ପକାଇବା

**ଗେଫିବା** - *କୋ:ଗ:ଭ:ପୂ:* (କ୍ରି.) : ଗିଳିବା, ଖାଇବା

**ଗେବ୍‌ଡ଼ା, ଗେବ୍‌ଡୁ** - *ବୌ:* (ବି.) : ଅକ୍ଷମ, ଅସମର୍ଥ, ନିରୀହ

**ଗେବ୍‌ରେଇବା** - *ବୌ:* (କ୍ରି.) : ଗପ୍‌ଲଟି କରିବା କର୍ମ, ଠକିବା

**ଗେବା** - *କଳା:ବୌ:ସ:ବ:* (ବିଂ.ବି.) : ବୋକା, ଅଚତୁର, ଉଲୁ, ଅକ୍ଷମ

**ଗେବୋଡ଼ୋ** - *ସୁ:* (ବିଂ.) : ଭକୁଆ

**ଗେମଟା** - *ଅ:* (ବିଂ.) : ବାଙ୍ଗରା

**ଗେମଣା** - *ଭ:* (ବିଂ.) : ରୋଗା

**ଗେମୁଛୁ** - *କେ:* (କ୍ରି.) : ଖାଉଛୁ, ଖେପୁଛୁ

**ଗେର୍‌ଗେରା** - *ଢେ:* (ବି.) : ଗାଳି, ତିରସ୍କାର, ଅପମାନ

**ଗେର୍‌ମେଟାବାର** - *ସୁବ:* (କ୍ରି.) : ଦଉଡ଼ି କିମ୍ବା ଲହକା ବାଡ଼ି ଆଦିକୁ ବଳିତା ପରି ବୁଲେଇ ଦେବା

**ଗେର୍‌ମେଟେଇବା** - *ବୌ:* (କ୍ରି.) : ଚଳାଇ ନେବା, ଠକିବା, ଭୁଲାଇବା, ବାଆଁରେଇବା

**ଗେରଦ୍** - *ଯା:* (ବି.) : ଚାରିପାଖ ପ୍ରାଚୀର

**ଗେରମେଟ** - *ସୁବ:* (ବି.) : କାଠରେ ଛିଦ୍ର ପାଇଁ ବ୍ୟବହୃତ ଲୁହାର ଭଉଁରୀ ଯନ୍ତ୍ର

**ଗେରା** - *ଅନେ:* (ଅ.ବି.କ୍ରି.) : ଅପଦାର୍ଥ ବାଚକ ଶବ୍ଦ, ଗର୍ବ, ଫୁଟାଣି, ଅହଂକାର, ଦେଖେଇ ହେବା, ମଞ୍ଜ କାଠରେ ଘୋରା, ମାଟିରେ ଇଟା ପଥର ଯୋଡ଼ିବା

**ଗେରାବା** - *ସ:* (କ୍ରି.) : ଗେରୁ ରଂଗରେ ରଙ୍ଗ କରିବା

**ଗେରାହରପ** - *ସୁବ:* (ବି.) : ଇଂରାଜୀ ଲେଖାର ଶୈଳୀ ବିଶେଷ

**ଗେରୁ** - *ସ:ଗ:* (ବି.) : ଏକ ଜାତୀୟ ଗଛ, ଇଷଦ୍ ନାଲିଆମାଟି

**ଗେରୁଆ** - *ନ:କ:ଦେ:* (ବିଂ.) : ଗେରୁ ରଙ୍ଗର (ବସ୍ତ୍ର), ମାଟିବର୍ଣ୍ଣ, ଢଉମାଟି, ରଙ୍ଗ, କଷରା

**ଗେରୁପୁ** - *କୋ:* (ବି.) : ଗର୍ବ, ଫୁଟାଣି

**ଗେରୁମୁଣ୍ଡି** - *ଗ:* (ବି.) : ଗୁରୁତ୍ୱଥିବା ବ୍ୟକ୍ତି, ସମ୍ମାନନୀୟ ବ୍ୟକ୍ତି

**ଗେରୁମୁଣ୍ଡି ସାଆନ୍ତ** - *ଗ:* (ବି.) : ଗୁରୁତ୍ୱଥିବା ବ୍ୟକ୍ତି, ସମ୍ମାନନୀୟ ବ୍ୟକ୍ତି

**ଗେରେଇବା** - *କୋ:* (କ୍ରି.) : ଛିଗୁଲେଇବା, ଚିଡ଼େଇବା

**ଗେରେଗେରେ ହେବା** - *ଯା:* (କ୍ରି.) : ବିରକ୍ତ ହେବା, ଅସନ୍ତୋଷ ପ୍ରକାଶ କରିବା

**ଗେଲ** - *ନ:କେ:* (ବି.) : ସ୍ନେହ, ଚୁମ୍ବନ

**ଗେଲ୍‌ଠି** - *ବୌ:* (ବି.) : ଆଲୁମିନିୟମ୍ ବାସନ

**ଗେଲ୍‌ପି** - *ସୁବ:* (ବି.) : ଗାଲ, ଗାଳିମନ୍ଦ ଉଦ୍ଦେଶ୍ୟରେ ବ୍ୟବହୃତ

ଗେଲ୍ହା - *ସଂ:* (ବିଂ.) ସ୍ନେହଶୀଳ; ଆଦରଣୀୟ, ଗେଲବସର

ଗେଲଫି - *ନୂ:* (ବି.) : ଗାଲ

ଗେଲ ବସର - *ଖୋ:* (ବିଂ.) : ଅତିପ୍ରିୟ

ଗେଲଲାଡ଼ - *ସ:* (ବି.) : ଗେହ୍ଲା

ଗେଲାଇଁ - *ମ:* (କ୍ରି.) : ଗଲା

ଗେଲାଦୁଲା - *ଗ:* (ବି.) : ସ୍ନେହଆଦର ପାତ୍ର

ଗେଲା ଘାରିଆ - *କୋ:* (ବିଂ.) : ଗେଲବସର

ଗେଲାସେରଡା - *ଗ:* (ବି.) ସ୍ନେହ ଆଦରପାତ୍ର

ଗେଲିହା - *ସୁବ:* (ବିଂ.) : ଗେଲବସରିଆ ପୁଅ

ଗେଲୁନି - *ମ:* (କ୍ରି.) : ଗଲୁନାହିଁ

ଗେଲେଇ - *କ:ନ:* (ବିଂ.) : ଅଲିଅଳି, ଗେହ୍ଲେଇ(ଗେହ୍ଲା ହେବା ଝିଅ)

ଗେଲେଗେଲେ - *ନ:* (ବି.) : ଥଟାତାମସା, ଥଟ୍ଟା ମଜାରେ

ଗେସା - *ଡେ:* (ବି.) : ଟାହି ଟାପରା, ପରିହାସ

ଗେଁଦ୍ରି ପାଦ୍ରିହେବା - *ସ:* (କ୍ରି.) : ଗୋଟିଏ କଥାକୁ ବାରମ୍ବାର କହିବା

ଗେଁପେଁ କରିବା - *ଡେ:* (କ୍ରି.) : ଭୁରୁଡ଼େଇବା

ଗେଁରରବାର - *ସୁବ:* (କ୍ରି.) : ଶ୍ୱାସରୁଦ୍ଧ ହୋଇ ଗେଁ ଗେଁ କରିବା

ଗେଂଢ - *ସଂ:* (ବି.) : ସଂକୀର୍ଣ୍ଣ ସ୍ଥାନ

ଗେଂଢ଼ୁଡ଼ୀ - *କଳା:* (ବିଂ.) : ଖେଳରେ ନିୟମ ଭାଙ୍ଗି ଅସ୍ୱୀକାର କରୁଥିବା ଖେଳାଳି(ସ୍ତ୍ରୀ)

ଗେଂଢି - *ରା:ବୌ:* (ବି.) : ତୋରାଣି, ଗଂଢି

ଗୋ - *ଡେ:* (ଅ.) : ସମ୍ବୋଧନ ବାଚକ ଶବ୍ଦ

ଗୋଆଳ - *ଢ:* (ବି.) : ଗୋପାଳ

ଗୋଭ - *ଗ:କଣ:ରା:ଗଜ:* (ବି.କ୍ରି.) : ଗୃହଛିଦ୍ର, ଗୋଧି, ଗାତଖୋଳିବା, ଗୁପ୍ତ ଖବର

ଗୋଇଠା - *ଅନେ:* (ବିଂ.ବି.) : ଗୋଡରେ ମାରିବା, ପାଦ ପ୍ରହାର, ପାଦରେ ଥିବା ଗଣ୍ଠି ତଳ ସ୍ଥାନ, ପାଦ ପଛପାଖ ମୂଳ

ଗୋଉଁ - *କଳା:* (ବି.) : ଗହମ

ଗୋଏଇ - *କଳା:* (ବି.) : କଳି, ଗୋଳ, ଝଗଡା

ଗୋକଣ୍ଟକ - *ସଂ:* (ବି.) ଗୋରୁଖୁରା, ଗୋରୁଖୁରାର ଚିହ୍ନ

ଗୋକହା - *ସଂ:* (ବି.) : ଚର୍ମରୋଗ ବିଶେଷ

ଗୋକ୍ଷରା - *କେ:* (ବି.) : କ୍ଷୁପବିଶେଷ, କଣ୍ଟାଳିଆ, ଭୂଇଁଲଗା ବୁଦା ଗଛ

ଗୋଖର - *ଖୋ:* (ବି.) : ଏକ ପ୍ରକାର ବିଷଧର ସର୍ପ

ଗୋଖରା - *ଭ:* (ବିଂ.) : କାନରେ ପିନ୍ଧିବା ଅଳଙ୍କାର ବିଶେଷ

ଗୋଖା - *ପୁ:ନ:କେ:* (ବି.) : କେଉଟ, ଏକ ଜାତି ବିଶେଷ, ହୁଣ୍ଡା ନୀତିରେ ବିଶ୍ୱାସ,ଗାଈ ଜଗୁଆଳ

**ଗୋଗଚି** - *ନ:* (ବି.) : ଉପରମୁହାଁ ଶୋଇରହି ଗୋଡ଼ରେ ପିଲାକୁ ବସାଇ "ଗୋଗଚି" କରିବା ବା ଗୁଗୁପାଆଞ୍ଚି କରିବା

**ଗୋଗଛ** - *ସଂ* (ବିଂ.) : ନିର୍ଧୁମ; ବାଛବିଚାର ନରଖି (ପିଟିବା)

**ଗୋଗଛ ବାଡ଼ିଆ** - *ପୁ:* (ବି.) : ଗୋରୁଭଳି ପିଟିବା, ନିର୍ଧୁମ୍ ପିଟିବା

**ଗୋଗଛିଆ** - *ଖୋ:* (ବି.) : ନିଷ୍ଠୁକ

**ଗୋଚର** - *ଚ:* (ବି.) : ପଡ଼ିଆ, ଗାଈଚରା ପଡ଼ିଆ

**ଗୋଚିନା** - *ଖୋ:* (ବି.) : ଗୋରଚନା(ଗାଈର ମୂତ୍ରାଶୟରୁ ସଂଗୃହୀତ ଏକ ପଦାର୍ଥ ଯାହା ତିଳକ ଭାବେ ବ୍ୟବହୃତ ହୁଏ)

**ଗୋଚ୍ଛାୟତ** - *ନ:* (ବି.) : ଅନୁସୂଚୀତ ଜାତିର ଲୋକେ ବ୍ୟବହାର କରୁଥିବା ସାଙ୍ଗିଆ

**ଗୋଛା** - *ଅନେ:* (ବି.) : କ୍ଷେତରୁ ଧାନ, ଶସ୍ୟକୁ ମୁଣ୍ଡେଇ, କାନ୍ଧେଇ ଆଣିବାର ବଡ଼ ବଣ୍ଡଲ, ବିଡ଼ା, ବିଡ଼ାବନ୍ଧା

**ଗୋଛି** - *ନ:ସଂ* (ବି.) ନଳୀଗୋଡ଼, ପାଦଗ୍ରନ୍ଥି; ଗ୍ରନ୍ଥି ବନ୍ଧୁଳ ଗୋଇଠି ପଛଭାଗ

**ଗୋଛି କାଟିବା** - *କେ:ବୌ:* (କ୍ରି.) : ଅନିଷ୍ଟ କରିବା, କ୍ଷତି କରିବା

**ଗୋଜ** - *ଭ:ନ:ସଂ:କେ:* (ବି.ବିଂ.) : କାଠ ବା ବାଉଁଶରେ ତିଆରି ମୂଳିଆ ଦଣ୍ଡ, କୀଳା, ମେଖ, ମୁନିଆ

**ଗୋଜଣା** - *ଖୋ:ପଦ୍ୟ:ନ:ସଂ* (ବି.) ଲୁହାଛଡ଼ରେ ତିଆରି ମୁନିଆ ଯନ୍ତ୍ର, ଚୂଲିନିଆଁକୁ ଉଖାରିବା କାଠି, ଶବକୁ ଯେଉଁ କାଠିରେ ଗେଞ୍ଜି ପୋଡ଼ାଯାଏ, ଗଡ଼ାଗଡ଼ି କଲେ ଜଳିବାକୁ ସୁବିଧା ହୁଏ, ଖେଞ୍ଚଣା ବାଡ଼ି

**ଗୋଜି** - *ଯା:ନ:କ:* (ବି.) : ଏକ ପ୍ରକାର ଲଙ୍ଗଳ କାଦୁଅ ହଳ ପାଇଁ ବ୍ୟବହୃତ ହୁଏ, ସରୁ କେରୁଆ ଗଛର କାଠି

**ଗୋଜିଆ** - *ନ:ବା:ନ:* (ବିଂ.ବି.) : କଳେଇ ବୋହିବା ପାଇଁ ବ୍ୟବହାର କରାଯାଏ, ଅସ୍ତ୍ରଶସ୍ତ୍ରର ଶୀର୍ଷଭାଗ, ମୁନିଆଁ (ଅସ୍ତ୍ର)

**ଗୋଜି ବାହାଙ୍ଗି** - *ନ:* (ବି.) : ଦୁଇ ପଟ ମୁନିଆଁଥିବା ବାଉଁଶ ବାହାଙ୍ଗି, ଧାନ ବିଡ଼ା (ଧାନ କଳେଇ) ବୋହିବାରେ ବ୍ୟବହୃତ

**ଗୋଟ** - *ଗ:* (ବି.) : ସଂପର୍କ, ସମ୍ବନ୍ଧ

**ଗୋଟମା** - *ସଂ:ଖୋ:* (ବି.ବି.) : କଷି, ଛୋଟ ନଡ଼ିଆ, ତାଳ ଇତ୍ୟାଦି

**ଗୋଟାକିଆ ପକାଇବା** - *ଭ:* (କ୍ରି.ବିଂ.) : ମୃତ୍ୟୁ ପୂର୍ବର ସୂଚନା ଦେବା

**ଗୋଟାଗୋଟି** - *ନ:* (ବି.) : ତଳୁ ସାଉଁଟି ନେଇଯିବା

**ଗୋଟାପଣେ** - *ଅ:* (ବିଂ.) : ସଂପୂର୍ଣ୍ଣ

**ଗୋଟାଳି** - *ନ:* (ବି.ବିଂ.) : ମୁଣ୍ଡା ଖଡ଼ି, ସଂଗ୍ରହକାରୀ

**ଗୋଟି** - *ଖୋ:ରା:* (ବି.) : ଏକପ୍ରକାର ଖେଳ ସାମଗ୍ରୀ, ପୁରୁଷର ସ୍ତ୍ରୀ ବେଶ

**ଗୋଟିଆ** - *ଛେ:* (ବି.) : ଟାଙ୍ଗିଆ

**ଗୋଟିକା** - *ସଂ:* (ବି.) : ପେଡ଼ା, ସନ୍ଦେଶ

**ଗୋଟିଖଡ଼ିକା** - *ଦେ:* (ବି.) ଶେଫାଳି, ଗଙ୍ଗଶିଉଳୀ

**ଗୋଟି ଖେଳ** - *ଯା:* (ବି.) : ଛୋଟ ବଡ଼ ଦୁଇଖଣ୍ଡ କାଠିରେ ଖେଳ

**ଗୋଟିପୁଅ** - *ଦେ:ପୁ:* (ବି.) : ନାଚୁଆ ପିଲା, ନାରୀବେଶୀ ନର୍ତ୍ତକ ବାଳକଙ୍କ ନୃତ୍ୟ

**ଗୋଟେଇ** - *ଖୋ:* (ବି.) : ଏକ ପ୍ରକାର ମାଛ

**ଗୋଟେନ** - *କଝ:* (ବିଂ.) : ଗୋଟେ କି ?

**ଗୋଠ** - *ଛ:ନ:ଯା:ପୁ:* (ବି.) : ଅଣ୍ଡାସୂତା, ଗାଈ, ମଇଁଷି, ଛେଳି ଆଦି ଏକାଠି ରହିବା ସ୍ଥାନ, ଗୋଷ୍ଠ, ଗୋଷ୍ଠି, ଦଳ

**ଗୋଠଇ** - *ଗଳ:* (ବି.) : ଗୋରକ୍ଷ

**ଗୋଠଖଣ୍ଡିଆ** - *ଦେ:କ:* (ବି.ବିଂ.) : ଯେ ଅନ୍ୟସଙ୍ଗେ ମିଶେ ନାହିଁ, ଦଳରୁ ଅଲଗା

**ଗୋଠିଆ** - *ପୁ:* (ବିଂ.) : କର୍ମକୋଡ଼ି, କାମ କରିବାକୁ ଅନାଗ୍ରହୀ

**ଗୋଡପାଉରାଣୀ** - *ଛେ:* (ବି.) : ଡିଙ୍କି

**ଗୋଡବାରେନ୍** - *କନ୍ଧ:* (ବି.) : ଆଦିବାସୀ କନ୍ଧ ସଂପ୍ରଦାୟରେ 'ବନ୍ଧୁ ସକଲା' ପରେ କନ୍ୟାପକ୍ଷର ଲୋକ ବନ୍ଧୁ ସକଲା ଦିନ ସ୍ଥିର କରିଥିବା ନିର୍ଦ୍ଦିଷ୍ଟ ଦିବସରେ ବର ଘରକୁ ଯିବା ଓ ପୂର୍ବରୁ ବିବାହ ବେଳେ ଦେଇପାରି ନ ଥିବା କୌଣସି ଉପହାର ବା ଟଙ୍କା ପ୍ରଦାନ କରିବା ସହିତ ଗୋଟିଏ ମାତ୍ର

**ଗୋଡ୍ ଲେହେଟେନ** - *ନୂ:* (ବି.) : ବିବାହ ପରେ ଶାଶୁ ଘରରୁ ମାତୃ ଘରକୁ ଝିଅର ପ୍ରଥମ ପ୍ରତ୍ୟାବର୍ତ୍ତନ

**ଗୋଡ଼ଙ୍ଗା** - *କ:* (ବି.) : ସରୁ ଲଙ୍ଗଳ, ବେଉଷଣ ହୁଏ

**ଗୋଡ଼ଭଣ୍ଡା** - *ପଦ୍ୟ:* (ବିଂ.) : ଆଣ୍ଠୁର ତଳେ ଥିବା ନଳିଗୋଡ଼ର ମାଂସର ଅଂଶ, ଜଙ୍ଘ

**ଗୋଡ଼ମଡ଼ା** - *କେ:* (ବିଂ.) : ଯେଉଁ ଭାରାରେ ଠିଆ ହୋଇ, ଯନ୍ତ୍ର ସାହାଯ୍ୟରେ ପାଣି ମଡ଼ାଯାଏ, ଯନ୍ତ୍ର

**ଗୋଡ଼ା** - *ଭ:ନ:ଯା:ପୁ:* (ବି.) : ଗଡ଼ା, ନଈ ଭିତରକୁ ଯିବାପାଇଁ ସରୁ ବାଟ, ଗାଈ, ମଇଁଷି, ଗୋଠ ହେବା ଜାଗା, ଅଣ୍ଡିରା ଚିଙ୍ଗୁଡ଼ି, ଢିପଜାଗା, ଉଚାଜାଗା

**ଗୋଡ଼ାଣିଆଁ** - *ପଦ୍ୟ:* (ବିଂ.) : ପରର ଅନୁସରଣିଆଁ, ଯେ ବିନା ନିମନ୍ତ୍ରଣରେ ଅନ୍ୟ ବ୍ୟକ୍ତିର ପଛରେ ଗୋଡ଼ାଇଥାଏ

**ଗୋଡ଼ାବାଗୁଡ଼ି** - *ଭ:କ:* (ବି.) : ଗୋଡ଼େଇବା ଖେଳ, କବାଡ଼ି, ଦାଣ୍ଡିଆ

**ଗୋଡ଼ି** - *ଗଳ:* (ବି.) : ଛୋଟ ମାଛ, ଚୁନାମାଛ

**ଗୋଡ଼ିଆ** - *ପଦ୍ୟ:* (ବିଂ.) : ଗୋଡ଼ମିଶା, ଗୋଡ଼ଯୁକ୍ତ

**ଗୋଡ଼ିଆ ଡାକ** - *ଖୋ:* (ବିଂ.) : ଉଚ୍ଚସ୍ୱରରେ ଡାକିବା

**ଗୋଡ଼ିବାଣ** - *ପଦ୍ୟ:ଲ:କେ:* (ବି.) : ବନ୍ୟପୁଷ୍ପ କ୍ଷୁପବିଶେଷ, ଫୁଲ ବିଶେଷ, ଏକ ବୃକ୍ଷ

**ଗୋଡ଼ୁ** - *ନୂ:* (ବି.) : ଲୋଟା, ଗଡୁ

**ଗୋଡ଼େଗୋଡ଼େ** - *କ:* (ବି.) : ଆରମ୍ଭରୁ ଲଗିବା

**ଗୋତ** - *ଗ:ଗଦ୍ୟ:କଳା:* (ବି.) : ଗୋତ୍ର, ବଂଶ, ଚକ୍କର, କୁଟୁମ୍ବ, ଜ୍ଞାତି, ବଂଶୀୟ ଲୋକ

**ଗୋତଗାତ** - *ଗଢ:* (ବି.) : ସମ୍ପର୍କିତ

**ଗୋତରା** - *ଗ:* (ବି.) : ପାଦ ଚିହ୍ନ, ପଶୁଙ୍କ ଖୁରି ଚିନ୍ନ

**ଗୋତାମ** - *ଲ:* (ବି.) : ବୋତାମ

**ଗୋତି** - *ମା:ଗ:ପଦ୍ୟ:ରା:* (ବି.ବିଂ.) : ଚାକର, ପରଘରେ ଆଶ୍ରୟ ମାଗି ପେଟ ପୋଶିବା, ଥରେ କିଛି ପଇସା ନେଇ ଜୀବନସାରା କାମ କରି ପଇସା ସୁଝିବା

**ଗୋତିନା** - *ଢେ:* (କ୍ରି.) : ହାତ ଧୋଇବା

**ଗୋତିପଣା** - *ଗ:* (ବିଂ.) : ପରଘରେ ଆଶ୍ରୟ ମାଗି ପେଟ ପୋଷିବା

**ଗୋତ୍ରମାରୁ** - *ପଦ୍ୟ:* (ବି.) : ଗୋତ୍ରଘ୍ନ, ଯେ ଶତ୍ରୁ ସଙ୍ଗେ ମିଶି ଆପଣାର ବିନାଶ ଘଟାଏ

**ଗୋଥୋଲୋ** - *ସୁ:* (ବିଂ.) : ଅଳସୁଆ

**ଗୋଦଡ଼ି** - *ଢେ:ପଦ୍ୟ:* (ବି.) : ଗଣ୍ଡା, ଅନେକ ପରସ୍ତ ଚିରା କନାରେ ତିଆରି ହୋଇଥିବା ଆସ୍ତରଣ, କାନ୍ଥ

**ଗୋଦଣ୍ଡା** - *ଲ:* (ବି.) : ଗାଈଦାଣ୍ଡି

**ଗୋଦଲାପାଲି** - *ଗ:* (ବି.) : ମୋଟା ସ୍ତ୍ରୀ

**ଗୋଦାମ ରଦି** - *ଗ:* (ବିଂ.) : ଅକର୍ମଣ୍ୟ, ଗୋଦାମରେ ଖତ ଖାଉଥିବା ଜିନିଷ

**ଗୋଦୋ** - *କଳା:* (ବି.) : ଗଧିଆ, ହେଟା ବାଘ

**ଗୋଧି** - *ନ:ଲ:ଖୋ:ଦେ:* (ବି.) : ଗୋଧିସାପ, ଏକ ପ୍ରକାର ସରୀସୃପ

**ଗୋନି** - *ଗଢ:* (ବି.) : ବସ୍ତା, ଅଖା

**ଗୋନ୍ଧାରୀ ଆଳା** - *ଗଦ୍ୟ:* (ବି.) : କୋଶଳା ଶାଗ

**ଗୋପକେନା** - *ଗଢ:* (ବି.) : ବୃକ୍ଷ ବିଶେଷ

**ଗୋପତ ମାରୁ** - *ଗଢ:* (କ୍ରି.) : ଗୁପ୍ତ କଥାର ସୁଯୋଗନେବା

**ଗୋପନୀୟ** - *ପଦ୍ୟ:* (ବିଂ.) : ଅପ୍ରକାଶ୍ୟ, ଲୁଚାଇବାର ଯୋଗ୍ୟ, ରକ୍ଷଣୀୟ, ଯାହା ପ୍ରକାଶ କରିବା ଅନୁଚିତ

**ଗୋପାଳ ଭୋଗ** - *ଖୋ:* (ବି.) : ଏକପ୍ରକାର ଧାନ

**ଗୋପାଳି** - *ସଂ:କ:* (ବି.) : ମାଡ଼, ବେଙ୍ଗଳା ପରେ କୁଟାକାଠି,

**ଗୋବ** - *ନ:* (ବି.) : ବାଡ଼ି, ଠେଙ୍ଗା ଅଗ୍ରଭାଗରେ ଗେଞ୍ଜଣ, ବାଡ଼ିର ଶୀର୍ଷଭାଗ

**ଗୋବ କାଢ଼ିବା** - *ସଂ:କ:* (କ୍ରି.) : ଅଭିମାନ କରିବା, ମୁହଁ ଫୁଲେଇ ବସିବା

**ଗୋବର ଗଣେଶ** - *ସଂ:* (ବିଂ.) : ଅଚଳ ବ୍ୟକ୍ତି, ମୂର୍ଖ

**ଗୋବରା** - *ନ:ଛ:* (ବି.) : ଏକ ପ୍ରକାର କଳା ରଙ୍ଗର ଚଢେଇ, ଦେଶୀ ବୁଲ୍‌ବୁଲ୍

**ଗୋବରେଇବା** - *ନ:ଗ:* (କ୍ରି.) : ମିଛ କଥା କହି ଠକିବା, ଖସେଇ ପକାଇବା, ଗାଇର ଗର୍ଭସ୍ରାବ ହେବା

**ଗୋବର୍ଦ୍ଧନ ଝଟା** - *ଗ:ଗଜ:ଗା:* (ବି.) : ଗୁଆଁର

**ଗୋବା** - *କ:* (ବି.) : ଆବୁଭଳି, ମାଡ଼

**ଗୋବାରଣ** - *ସଂ:* (ବି.) : କୂଅ ଚାରିପଟେ ତିଆରି ଛୋଟ ପାଚେରୀ

**ଗୋବୀ** - *କୋ:* (ବି.) : ଗୟସ ଗଛ

**ଗୋୟାଇ** - *ଗଦ୍ୟ:* (ବି.) : ଗୋରୁ

**ଗୋରଡା** - *ସଂ:ଗ:ପୁ:* (ବି.) : ବାଡ଼ଘେର, ଗୋରୁଖୁଆଡ଼, ଗୁହାଳ, ବଗିଚା, ଘରପାଖକୁ ଲାଗି ବଗିଚା ଯେଉଁଥିରେ ବାଇଗଣ ଆଦି ଫସଲ କରାଯାଇଥାଏ

**ଗୋରଲାବା** - *ଯୁ:* (କ୍ରି.) : ବାଡ଼ଦେବା

**ଗୋରସ** - *ଯୁ:* (ବି.) : ଗୋ କ୍ଷୀର

**ଗୋରାପ** - *ଚା:* (ବି.) : ବଡ଼ଜାହାଜ

**ଗୋରାବେପାରୀ** - *ସଂ:* (ବି.) : ଇଂରେଜ ସରକାର

**ଗୋରାମ୍** - *ଗଜ:* (ବି.) : ଘୋଡ଼ା

**ଗୋରାଲି ହେବା** - *କଳା:* (କ୍ରି.) : ଗୁରାଳି ହେବା, ଘାଣ୍ଟିହେବା

**ଗୋରିକଣ୍ଟ** - *କୋ:* (ବି.) ବନ୍‌ସୀ, ମାଛଧରା ଲାଠି

**ଗୋରୁଗାଡ଼ି** - *ଅ:* (ବି.) : ଶଗଡ଼ ଗାଡ଼ି

**ଗୋରୁମାହାର** - *ଗ:* (ବି.) : ଗାଈଆଳ

**ଗୋରୁମୁଣ୍ଡା** - *ଗ:* (ବିଂ.) : ମୂର୍ଖ, ନିର୍ବୁଦ୍ଧିଆ

**ଗୋରୁହାଣ୍ଡି** - *ନ:* (ବି.) : ଯେଉଁ ହାଣ୍ଡିରେ ଗୋରୁଙ୍କପାଇଁ ଘରର ତୋରାଣି, ପେଜ, ବଳକା ଖାଦ୍ୟ ରଖାଯାଏ।

**ଗୋର୍ବଲ୍ଲା ମାଡ଼** - *ଗଜ:* (କ୍ରି.) : ଅତ୍ୟଧିକ ମାଡ଼

**ଗୋର୍ଲି** - *କଳା:* (ବି.) : ଜିନିଷର ସୁରକ୍ଷା ପାଇଁ କରାଯାଉଥିବା ଗୋଲାକାର ବାଡ ବା କାନ୍ଥ

**ଗୋର୍‌ଲା** - *କନ୍ଧ:* (ବି.) : ଗୋଠ

**ଗୋଲ୍‌ଠୋ** - *କଳା:* (ବିଂ.) : ଗୋଲାକାର, ମଣ୍ଡଳାକାର

**ଗୋଲକ ଧନ୍ଦା** - *ସଂ:* (କ୍ରି.ବିଂ.) : ଜଟିଳ ସମସ୍ୟା

**ଗୋଲଞ୍ଜି** - *ଗ:* (ବି.) : ବୟସ୍କ ମାଙ୍କଡ଼

**ଗୋଲନ୍ଦାଜ** - *ସଂ:* (ବି.) : ତୋପଚାଳକ

**ଗୋଲମ** - *ଗ:* (ବି.) : ଏକପ୍ରକାର ପିତଳ ହଣ୍ଡା

**ଗୋଲା** - *ଅନେ:* (ବି.) : ଗଞ୍ଜାମରେ ବାସ କରୁଥିବା ମେଷ ପାଳକ ଜାତି, ଖୁରୁଡ଼ି

ନଡିଆ, କାଠ ଡିପୋ କାଠଗୋଲା, ଧାନ ରଖିବା ସ୍ଥାନ

**ଗୋଲାଘର** - *ସୁ:* (ବି.) : ଶସ୍ୟଘର, ଖମାର

**ଗୋଲାପ ଭଣ୍ଡି** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ଗୋଲାପଜାମୁ** - *ଖୋ:* (ବି.) : ଏକପ୍ରକାର ମିଷ୍ଟାନ୍ନ

**ଗୋଲାପି ଚଣା** - *ଗ:* (ବି.) : ଭଲ କିସମର ବୁଟ ଚଣା

**ଗୋଲିଆଗୁପା** - *ବୌ:* (ବି.) : ଅଡୁଆ ଅବସ୍ଥା

**ଗୋଲ୍ କରିଦେବା** - *ସ:* (କ୍ରି.) : ସବୁ ଶେଷ କରିଦେବା

**ଗୋଳା** - *ମ:* (ବି.) : ଗୁହାଳ

**ଗୋଳାଗୋଳି** - *କ:* (ବି.) ମିଶାଇବା, ମିଶାମିଶି

**ଗୋଳିଆ** - *ଅନେ:* (ବିଂ.ବି.) : ପଙ୍କୁଆ, ଆବିଳ

**ଗୋସ୍** - *ନ:* (ବି.) : ଗାଈକ୍ଷୀର, ଗୋରସ

**ଗୋସା** - *ଗଦ୍ୟ:କେ:* (ବି.) : ଘୋଷା, ରାଗ, କ୍ରୋଧ

**ଗୋସାଣୀ** - *ପୁ:* (ବି.) ଶାରଦୀୟ ଦୁର୍ଗାପୂଜାରେ ପୂଜିତା ମୃଣ୍ମୟୀ ଦେବୀ ପ୍ରତିମା

**ଗୋସାମଣି** - *ଢ:* (ବି.) : ଠାକୁରାଣୀ

**ଗୋହଡ଼ା** - *କଳ:କଳା:* (ବି.) : ଗୋଠ, ଦଳ, ସମୂହ, ଗୋଷ୍ଠୀ

**ଗୋହି** - *ନ:* (ବି.) : ପାଣିଯିବା ପାଇଁ ମାଟିଖୋଳି ଛୋଟ ନଳା ତିଆରି କରିବା

**ଗୋହି ପୁରାଣ** - *ଯା:* (ବି.) : ଏକ ପ୍ରକାର ଗାଳିରେ ପାରମ୍ପରିକ ଦୁର୍ଗୁଣ ଗାନ କରିବା

**ଗୋହିରା** - *ଗଦ୍ୟ:* (ବି.) : ଅଇଁଠା

**ଗୋହିରୀ** - *ସଂଖୋ:* (ବି.) : ଦୁଇପାଖେ ବାଡ଼ ଥିବା ସଂକୀର୍ଣ୍ଣ ପଥ, ଗହୀର

**ଗୋହୁଳା** - *ବ:* (ବି.) : ଗୋଧନ ରକ୍ଷାକାରୀ ଏକ ଜାତି

**ଗୌଁଆଁର ଗୋବିନ୍ଦ** - *ସଂ:* (ବି.) : କାଣ୍ଡଜ୍ଞାନ ଶୂନ୍ୟ ବ୍ୟକ୍ତି

**ଗୌଡକାକୁଡ଼ି** - *ଭ:* (ବି.) : ଫଳ ବିଶେଷ

**ଗୌଡ଼ଗୋବିନ୍ଦ** - *ଖୋ:* (ବି.) : ଏକ ବୃକ୍ଷ ବିଶେଷ

**ଗୌଣି** - *ଗ:ଖୋ:* (ବି.) : ଧାନ ମାପିବା ପରିମାଣ ପାତ୍ର

**ଗୌରୀ ବେତ** - *ଗ:* (ବି.) : ଠାକୁରାଣୀଙ୍କ କାମନା ବେତ

**ଗୌରୀ ରାନ୍ଧଣା** - *ଗଦ୍ୟ:* (ବି.) : ଅଗ୍ନି ଉତ୍ତାପରେ ହେଉଥିବା ରାନ୍ଧଣା

**ଗଁଇତି** - *କଳା:* (ବି.) : ଉଭୟପଟ ଗୋଜିଆ ଥିବା ଲୌହ ନିର୍ମିତ ମାଟି ଖୋଳିବା ଉପକରଣ, ଗଁଇତି ଦେଖ

**ଗଁଇଲୀ** - *କଳା:* (ବିଂ.) : ଗାଉଁଲୀ, ଗ୍ରାମୀଣ

ଗଁଏଠ୍ - *ସ:* (ବି.) : ଗଣ୍ଠି ଦେବା

ଗଁଗଁ - *ଦେ:* (ବି.) : ଚଣ୍ଟିଚିପିବା ବେଳର ଶବ୍ଦ

ଗଁଝିଆ - *ନବ:* (ବିଂ.) : ଗଂଜାଇଖିଆ ଲୋକ

ଗଁଟିଆ - *କଳା:* (ବି.) : ଗଉନ୍ତିଆ, ରାଜୁଡ଼ା ଅମଳରେ ଗ୍ରାମର ରାଜସ୍ବ ଆଦାୟକାରୀ ତଥା ମୁଖିଆ

ଗଁଟେନ୍ - *କଳା:* (ବି.) : ଗଉନ୍ତିଆଂକ ପତ୍ନୀ

ଗଁଠଲି ମୁଠ୍ଲି - *ସ:* (ବି.) : ଗଣ୍ଠିଲି ବୁଦୁଲି

ଗଁ ଠାବା - *ସ:* (କ୍ରି.) : ଗଣ୍ଠି ପକାଇବା

ଗଁଠାବାର୍ - *ସୁବ:* (କ୍ରି.) : ଗଣ୍ଠି ପକେଇବା, ଲୋଭ କରି ନେଇଯିବା

ଗଁଠିଆ - *ନୂ:ସୁବ:ସୁବ:* (ବି.ବିଂ.) : କର୍ଣ୍ଣର ଅଳଙ୍କାର, ଗଣ୍ଠିଯୁକ୍ତ ବା ବଙ୍କା ହେବା କାନର ସୁନା ଅଳଙ୍କାର କୁଣ୍ଡଳ (ବିଶେଷ୍ୟ), ଏକ ପ୍ରକାର ଖଜା

ଗଁଠେଇ - *ଝା:* (କ୍ରି.) : ଗଣ୍ଠି ପକେଇ କିଛି ଜିନିଷ ନେବା

ଗଁଡ - *ସୁବ:* (ବି.) ତଫସିଲଭୁକ୍ତ ଗୋଷ୍ଠୀ(ST) ବିଶେଷ, ଗଣ୍ଡ

ଗଁଢ଼ - *ନୂ:* (ବି.) : ଗଣ୍ଡ (ଜାତି)

ଗଁଢ଼ିଆ - *ସୁବ:* (ବିଂ.) : ମାଇଚିଆ

ଗଁଥିବା - *ସ:* (କ୍ରି.) : ଗୁନ୍ଥିବା

ଗଁଧୁଆ - *ବ:ସ:* (ବି.) : ଘାସର ଦଉଡ଼ି, ରସି, ଦଉଡ଼ି

ଗଁମ୍ହା ପୁନି - *ସ:* (ବି.) : ଗହ୍ମା ପୂର୍ଣ୍ଣିମା

ଗଁର୍ରା - *ସ:* (ବି.) : ଅଣ୍ଡିରା ମେଣ୍ଢା

ଗଂଗାବାଲି - *କଳା:* (ବି.) : ଲାଲ୍ ରଂଗର ସରୁ ଓ ବାସ୍ନା ଦେଶୀଧାନ

ଗଂଗେଇ - *ସୁ:* (ବି.) : ବାଜରାଜାତୀୟ ଶସ୍ୟ

ଗଂଜ - *ଅନେ:* (ବି.) : ମଧ୍ୟମ ଆକାରର ରସ ହାଣ୍ଡି, ଗଡ଼ କରିଦେବା, ଡେକ୍‌ଚି,

ଗଂଜା - *ଦେ:କଳା:ଖୋ:ବୌ:* (ବି.) : ଅଣ୍ଡିରା କୁକୁଡ଼ା, ଗଂଜେଇ, ତୃଣ ଜାତୀୟ,

ଗଂଜା ଚୁଲି - *ନୂ:* (ବି.) : ଫୁଲ ବିଶେଷ

ଗଂଜା ଫୁଲ୍ - *ସ:* (ବି.) : ଗେଣ୍ଡୁ ଫୁଲ

ଗଂଜିହା - *ସ:* (ବିଂ.) : ଗଞ୍ଜେଇ ଯିଏ ବେଶୀ ଖାଏ, ଗଞ୍ଜୋଡ଼

ଗଂଠଲା - *ସୁ:* (ବି.) : ସ୍ୱାମୀ ସ୍ତ୍ରୀଙ୍କ ପୂତ ଗଣ୍ଠି, ଗଂଠିଳି

ଗଂଦା - *ସୁ:ନୂ:* (ବି.) : ଗନ୍ଧାଫୁଲ, ଅଭଦ୍ର, ମଇଳା, ପାଣି ବୋହିବା ପାଇଁ ମୁଣ୍ଡରେ ବ୍ୟବହାର କରୁଥିବା ଛୋଟ କପଡ଼ାର ମଳା

ଗଂଧିଆ - *ଅ:* (ବିଂ.) : ଦୁର୍ଗନ୍ଧ, ମଇଳା

ଗଂଧୁଆ - *ନୂ:* (ବି.) : ରସି, ଦଉଡ଼ି

ଗଂଭିରି - *ଭ:* (ବି.) : ଶୋଇବା ଘର, ସଂକୀର୍ଣ୍ଣ ଓ ଅନ୍ଧାର ଘର

ଗ୍ୟାନ ପାଇବା - *ଗ:* (କ୍ରି.) : କିଶୋରୀର ପ୍ରଥମ ରଜସ୍ରାବ

ଗ୍ୟାପ - *ଖୋ:* (ବି.) : ଗିହାଳି ପୁଅ (ଗାଳି)

ଗ୍ୟାରେଜ୍ - *ସଂ:* (ବି.) : ଗାଡ଼ି ମଟର ମରାମତି ସ୍ଥାନ

**ଗ୍ୟାସ୍ତୁ** - *ଗଜ:* (ବି.) : ଗ୍ୟାସ୍, ବାଷ୍ପ

**ଗ୍ୟାହଳି, ଗିହାଳି** - *ଜ:* (ବି.) : ଭିଣୋଇର ସାନ ଭଉଣୀ

**ଗ୍ୟାହାଳିପ** - *ନ:* (ବି.) : ଅମାର୍ଜିତ ଲୋକ (ଗାଳିବିଶେଷ)

**ଗ୍ରହଣ ଖଣ୍ଡିଆ** - *ଖୋ:ଗଜ:* (ବି.) : ଜନ୍ମରୁ ଯେଉଁ କ୍ଷତ ଥାଏ (ଏକ ପ୍ରକାର ରୋଗ ବିଶେଷ), ଗ୍ରହଣରେ ଜନ୍ମ ଯୋଗୁ ଯାହାର ପାଟି ଓ ନାକ ଖଣ୍ଡିଆ ହୋଇଥାଏ

**ଗ୍ରାପା** - *ଜଝ:* (କ୍ରି.) : ଶିଷ୍ୟ କରିବା

**ଗ୍ରାମ କଣ୍ଟକ** - *ଗ:* (ବି.) : ରାଜସ୍ୱ ନଥିରେ ଗ୍ରାମର ବସତି ଅଞ୍ଚଳ

**ଗ୍ରାସେ** - *ଯା:* (ବିଂ.) : ପେଟପୂରା ଭୋଜନ

**ଗ୍ରାହିଜ୍ୟ** - *ଜ:* (ବି.) : ଗ୍ରହଣୀୟ

**ଗ୍ରାହୀ** - *ଗା:* (ବି.) : ଡାହୁକ

**ଗ୍ରିଣିଗୁଲା** - *ଗ:* (ବି.) : ଗ୍ରାମ୍ୟ ଶସ୍ୟାଗାର

**ଗ୍ରିଧ** - *ଜ:* (ବି.) : ଶାଗୁଣା

**ଗ୍ରିଧିନି** - *ଜ:* (ବି.) : ମାଈ ଶାଗୁଣା

**ଗ୍ଲାସ** - *ନ:* (ବି) : ତରଳ ପଦାର୍ଥ ପିଇବା ପାଇଁ ବ୍ୟବହୃତ ବାସନ

**ଗ୍ଲାସପେଣ୍ଡି** - *ନ:* (ବି.) : ଏକ ପ୍ରକାର ସୁନା ଅଳଙ୍କାର

# ଘ

**ଘଅଡ଼ିବା** - *ଦେ.ସୁବ.* (କ୍ରି.) : ଘଉଡ଼ିବା, ଦୂର କରିବା

**ଘଅବା** - *ଅନେ.* (ବିଂ.) : ଗହଳ, ଘଞ୍ଚ

**ଘଇଆ** - *ଦେ.ବ.* (ବିଂ.) : ଖଣ୍ଡିଆ ଖାବରା, ଘାଏଲା

**ଘଇତା** - *ଅନେ.* (ବି.) ସ୍ୱାମୀ, ଗୃହକର୍ତ୍ତା, ପତି, ଭର୍ତ୍ତା

**ଘଇତାକରି** - *ଚୌ.ଚା.* (ବିଂ.) : ଦାରୀ, ବିଟପୀ ନାରୀ

**ଘଇତାମାଇପ** - *ଦେ.* (ବି.) : ସ୍ୱାମୀ-ସ୍ତ୍ରୀ

**ଘଇତି** - *ନ.* (ବିଂ.) : ସ୍ୱାମୀ ଛାଡ଼ି ପରକୁ ଯେ ଘଇତା କରେ, ଯେଉଁ ନାରୀ ପରକୀୟା ପ୍ରୀତି କରେ

**ଘଇଁଆଁ** - *ଚୌ.* (ବିଂ.) : ରୁଗ୍‌ଣ ବ୍ୟକ୍ତି

**ଘଉଡ଼** - *ସୁବ.ରା.* (ବି.କ୍ରି.) : ଘାଇଲା ହେବା, ବିପଦ, ତଡ଼ିବା

**ଘଏତା** - *ଅନେ.* (ବି.) : ସ୍ୱାମୀ, ପତି

**ଘଏଁଟ** - *ସୁ.* (ବି.) : ଘଣ୍ଟ

**ଘଗଲା** - *ଗଦ୍ୟ.* (ବି.) : ଗଙ୍ଗଶିଉଳି

**ଘଗୁର୍‌ଲା** - *କଳା.* (ବି.) : ଘଣ୍ଟି ଘାଗୁଡ଼ି

**ଘଞ୍ଚ** - *କ.ନ.* (ବିଂ.) : ଲାଗିଲାଗି, ଗହଳିଆ, ନିବିଡ଼

**ଘଟ୍‌କିବ** - *କଣ.* (କ୍ରି.) : ଦଉଡିବା

**ଘଟ୍‌ବା** - *କଳା.ସୁ.* (କ୍ରି.) : ଘଟିବା, ନିଅଣ୍ଟ ହେବା, ନପାଇବା

**ଘଟଓଷା** - *ନ.* (ବି.) : ମଙ୍ଗଳା ଓଷା (ଆଶ୍ୱିନ ଓ ଚୈତ୍ର ମାସର ପ୍ରତି ମଙ୍ଗଳବାରର ଘଟ ବା ଘଡ଼ି ପୂଜା)

**ଘଟ୍‌କିବା** - *ଅନେ.* (କ୍ରି.) : ମୃତ୍ୟୁର ପୂର୍ବାବସ୍ଥା, ଦଉଡ଼ିବା

**ଘଟନ୍** - *କଳା.* (ବି.) : ଗଠନ, ଗଢଣ, ଘଟଣ

**ଘଟବାର** - *ନ.ସୁବ.* (ବି.କ୍ରି.) : ମଙ୍ଗଳବାର, ନିଅଣ୍ଟ ହେବା

**ଘଟ ବୁଲିବା** - *ଗ.* (କ୍ରି.ବି.) : ଠାକୁରାଣୀ ଯାତ୍ରାରେ ମହିଳାମାନେ ମୁଣ୍ଡରେ ଘଟ ଧରି ସାହି ପରିକ୍ରମା କରିବା

**ଘଟରଘୁମା** - *ଦେ.* (ବି.) : ହୁଁ-ହାଁ କରିବା

**ଘଟସୂତ୍ର** - *ଅନେ.* (ବି.) : ସଂଯୋଗ କରିବା, ଘଟନାଚକ୍ର, ଘଟନାକ୍ରମ, ଘଟନା ଘଟିବା, ଉଦ୍ୟମ, ଚେଷ୍ଟା, ବିବାହ ଯୋଗସୂତ୍ର

**ଘଟା** - *ଦେ.* (ବି.) : ତେଲଛିଟ

**ଘଟାଘଟ୍** - *ଦେ.* (ବି.) : ବଳିଯିବା

ଘଟାଟୋପ୍ - *ଗଞ୍ଜ:* (ବି.) : ଆଡ଼ମ୍ବର

ଘଟି - *ଅନେ:* (ବି.) : ଢାଳ, ଛୋଟ କଳସ, ପାଟି, ଘର

ଘଟିଆ - *ଅ:ସୁବ:* (ବି.) : ଗିନା, ନାଉରୀ, ଘାଟ ମାସୁଲ ଆଦାୟକାରୀ ବ୍ୟକ୍ତି

ଘଟିକା - *ନ:ବେ:କେ:* (ବି.) : ଏକ ଘଣ୍ଟା ସମୟ, ତାଳୁ ପାଖରେ ଥିବା ଛୋଟ ମାଂସ ପେଶୀ, ତଣ୍ଟି, ଘଣ୍ଟିକା

ଘଟିକି - *ଭ:* (ବି.) : ଘରକୁ, ଘରଠିକି

ଘଟିବା - *ଚର:* (ବି.) : କମ୍ ହେବା

ଘଟୁଆ - *ରା:* (ବି.) : ଶବ ଦାହପାଇଁ ଯେ ହାଣ୍ଡି ଧରେ

ଘଟୁଆଲ୍ - *କଳା:* (ବି.) : ନଈ ଘାଟରେ ନାବ ଧରି ରହିଥିବା ନାଉରୀ, ଘାଟିଆ

ଘଟେବଢ଼େ - *ସୁବ:* (ବିଂ.) : ଅଳ୍ପ ବହୁତ, ନିଅଣ୍ଟ ଇତ୍ୟାଦି

ଘଟୋ - *ସୁ:* (ବି.) : ମିଶା

ଘଟ୍ରିବା - *କନ୍ଧ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

ଘଡ଼ା - *ଅ:* (ବି.) : ମାଟିଗରା, ବଡ଼ ମାଟିକଳସୀ

ଘଡ଼ି - *ଅନେ:* (ବି.) : ଠେକି, ଛୋଟ ମାଟି ପାତ୍ର, ସମୟ, ଘଣ୍ଟା, ଏକପ୍ରହରର ଏକଚତୁର୍ଥାଂଶ, ଛୋଟ କଲସ, ଦୁଇଦଣ୍ଡ ପରିମିତ ସମୟ, ପାତ୍ର

ଘଡ୍‌ଘଡେନ୍ - *କଳା:* (ବିଂ.) : ଗଡାଣିଆ

ଘଡ୍ଘିଡ଼ି - *ସ:* (ବି.) : କୂଅରୁ ପାଣି କାଢିବା ପାଇଁ ବ୍ୟବହୃତ ଲୁହାଚକ

ଘଡ଼ଘଡ଼ି - *ଅନେ:* (ବି.) : ମେଘରେ ପ୍ରଚଣ୍ଡ ଶବ୍ଦ

ଘଡ଼ଘଡ଼ିଆ - *ନ:* (ବି.) : ଶାମ୍ବ ଦଶମୀରେ ସବୁ ପରିବା ମିଶ୍ରିତ ତରକାରୀ

ଘଡ଼ଣ - *କୋ:* (ବି.) : ଗଠନ, ଗଢଣ

ଘଡ଼ା - *କ:ପଦ୍ୟ:ଗ:ରା:* (ବି.) : ଠେକି, କ୍ଷୁଦ୍ର ବା ବୃହତ୍ କଳାସାକୃତି ମାଟିପାତ୍ର

ଘଡ଼ିଆ - *ଖୋ:* (ବି.) : ଛୋଟମାଟିପାତ୍ର ଯେଉଁଥିରେ ସୁନା ଆଉଟାଯାଏ

ଘଡ଼ିଆଳ - *ପଦ୍ୟ:* (ବି.) : ଯେ ଘଣ୍ଟା ବଜାଏ ଘଡ଼ିମୁହାଁ ବଡ଼ କୁମ୍ଭୀର

ଘଡ଼ିକିଘଡ଼ି - *ପଦ୍ୟ:କ:* (କ୍ରି.ବିଂ.ଅ.) : କ୍ଷଣକୁ କ୍ଷଣ, ପ୍ରତିମୁହୂର୍ତ୍ତରେ, ସର୍ବଦା, ହରଘଡ଼ି, ବାରମ୍ବାର, ବେଳକୁବେଳ

ଘଡ଼ିକେ - *କଳା:* (କ୍ରି.ବିଂ.) : ଅଳ୍ପ ସମୟ ପାଇଁ, ଅଳ୍ପ ସମୟରେ

ଘଡ଼ିଛଡ଼ୁ - *ପୁ:* (ବି.) : ଭଣ୍ଡୁର ହୋଇଯିବା

ଘଡ଼ିମୂଳ - *ଭ:* (ବି.) : ଉପଯୁକ୍ତ ଲଗ୍ନ

ଘଡ଼ିସନ୍ଧି - *କ:ନ:* (ବିଂ.ବି.) : ଗୁରୁତ୍ୱପୂର୍ଣ୍ଣ ସମୟ, ସଙ୍କଟ ସମୟ

ଘଡୁକି - *କୋ:* (ବି.) : ଏକ ବାଦ୍ୟଯନ୍ତ୍ର

ଘଡ଼େ - *ସ:* (ବି.) : କ୍ଷଣେ, ଟିକିଏ ସମୟ

ଘଡ଼େ ଅଧେ - *ସ:* (ବି.) : କିଛି ସମୟ

ଘଡ଼େଇ - *କଳା:* (ବି.) : ଏକ କୌଳିକ ସଂଜ୍ଞା

ଘଡ଼େଇବା - *କୋ:* (କ୍ରି.) : ଗଢିବା, ଗଠନ କରିବା, ସଂଗ୍ରହ ବା ଏକାଠି କରିବା

**ଘଣା** - *ଅନେ:* (ବି.) : ତୈଳବୀଜ ବା ଶସ୍ୟାଦିରୁ ତୈଳ ନିଷ୍କାସନ କରିବା ଯନ୍ତ୍ର, ଆଖୁପେଡ଼ିବା ଯନ୍ତ୍ର, କାଠରେ ନିର୍ମିତ ତେଲ ପେଡ଼ିବା ଯନ୍ତ୍ର

**ଘଣାଜୋତା** - *ଦେ:* (ବି.) : ତେଲି ବଳଦ, ଘଣା ଟାଣୁଥିବା ବଳଦ

**ଘଣା ତେଲ** - *ଗଞ୍ଜ:ଗ:* (ବି.) : ଘଣାରେ ପେଡ଼ା ତେଲ, ଘଣା ପ୍ରସ୍ତୁତ ତେଲ

**ଘଣି** - *ଅନେ:* (ବି.) : ଅନ୍ତରଙ୍ଗ, ଯୋଡ଼ି, ଘନିଷ୍ଠ, ନିବିଡ଼ ସମ୍ପର୍କ, ଯୋଡ଼ି, ଶଗଡ଼ ଚକର ଘର୍ଷଣରେ ରାସ୍ତା ଉପରେ ହେବା ଖାଲ ବା ଗାତ, ଗଭୀର ଶଗଡ଼ ଗୁଳା, ତେଲି, ମାଛଧରା ଖଇଞ୍ଚି

**ଘଣିଖିଆ** - *ଖୋ:* (ବିଂ.) : ପୁରୁଣା, ଘୁଣଖିଆ

**ଘଣେଇବା** - *ଗଞ୍ଜ:* (କ୍ରି.) : ଅତ୍ୟଧିକ କାମ କରେଇବା, ଅସୁବିଧାରେ ପକେଇବା

**ଘଣ୍ଟ** - *ଦେ:ନ:* (ବି.) : ଗାଈ ବଳଦ ବେକରେ ବ୍ୟବହୃତ, ପିତଳ ବୃତ୍ତାକାର ବାଦ୍ୟ ଯେଉଁଠି କାଠି ସାହାଯ୍ୟରେ ଶବ୍ଦ କରାଯାଏ, ବାଦ୍ୟଯନ୍ତ୍ର ଏବଂ ସମୟସୂଚକ କଳ

**ଘଣ୍ଟପାଟୁଆ** - *ଦେ:ଭ:କ:* (ବିଂ.ବି.) : ମଙ୍ଗଳ ଚଣ୍ଡିଆ, ବୈଶାଖ ମାସରେ ଠାକୁରାଣୀଙ୍କୁ ଧରି ନୃତ୍ୟରତ ଲୋକ

**ଘଣ୍ଟ ମର୍ଦ୍ଦଳ** - *ଗ:* (ବି.) : ଗଞ୍ଜାମର ଏକ ଘଣ୍ଟ ବାଦ୍ୟ ଦଳ

**ଘଣ୍ଟରା** - *ଗୌ:* (ବି.) : କମାର

**ଘଣ୍ଟରା ଫୁଟାଇବା** - *ଗ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ଘଣ୍ଟା** - *ବା:ଦେ:* (ବି.) : କୋରଡାଳୁ ଓ ନଡ଼ିଆରେ ତରକାରୀ, ଘାଣ୍ଟିବା

**ଘଣ୍ଟାକର୍ଣ୍ଣ ପୂଜା** - *ଗ:* (ବି.) : ଭାଦ୍ରବ ରେଖା ପଞ୍ଚମୀରେ ଶାସନୀ ବ୍ରାହ୍ମଣଙ୍କ ଘରେ ଅନୁଷ୍ଠିତ ଘଣ୍ଟାକର୍ଣ୍ଣ ପୂଜା, ଭୈରବ ପୂଜା

**ଘଣ୍ଟା ଗୋଳିଆ** - *ଗ:* (ବି.) : ଗୋଳମାଳ

**ଘଣ୍ଟାଚକଟା** - *ଦେ:କ:ଗ:* (ବି.) : ଦଳା-ଦଳି, ଖୋଳତାଡ଼, ଗୋଳମାଳ, ଏପଟ ସେପଟ

**ଘଣ୍ଟି** - *ନ:* (ବି.) : ପିତଳ ନିର୍ମିତ ଶବ୍ଦ ସୃଷ୍ଟି କରୁଥିବା ବାଦ୍ୟ, ପୂଜା ସମୟରେ ବ୍ୟବହୃତ ଘଣ୍ଟି

**ଘଣ୍ଟିକା** - *କେ:ନ:ଖୋ:ଗୌ:* (ବି.) ଗଳାରୋଗ, ମୁଖ ଗହ୍ୱରରେ ଜିହ୍ୱା ପାଖରେ ଥିବା ମାଂସଳ ଖଣ୍ଡ, ଅଳି ଜିହ୍ୱା, ପାଟି ଭିତରର ଏକ ପ୍ରତ୍ୟଙ୍ଗ

**ଘଣ୍ଟିଘାଗୁଡ଼ି** - *କ:* (ବି.) : ପଶୁ ବେକରେ ପିନ୍ଧା ହେବା ଘଣ୍ଟି

**ଘଣ୍ଟୁଆ** - *ନ:* (ବି.) : ଯେ ଘଣ୍ଟ ବାଡ଼ାଏ, ମନ୍ଦିରର ଘଣ୍ଟ ବଜାଇବା ବ୍ୟକ୍ତି

**ଘଣ୍ଟେ** - *କଥ:* (ବିଂ.) : ଏକ ଘଣ୍ଟା ସମୟ

**ଘଣ୍ଟେ ଅଧେ** - *କଥ:* (ବିଂ.) : ମଧ୍ୟାହ୍ନ ସାଢ଼େ ଗୋଟାଏ

**ଘଣ୍ଟେଶ୍ୱରୀ** - *ସଂ* (ବି.) : ସମ୍ବଲପୁରର ଏକ ବିଶିଷ୍ଟ ଠାକୁରାଣୀ

**ଘଣ୍ଡରା** - *ମ.କନ୍ଧ.* (ବି.) : ଘୁଙ୍ଗୁଡ଼ି

**ଘତ** - *ଖୋ.* (ବି.) : ଥାକ

**ଘତାଇବା** - *ନୂ.ସୁ.* (କ୍ରି.) : ଚାରିପଟରୁ ଆକ୍ରମଣ କରିବା, ଆଖେଇବା

**ଘତାବା** - *ସ.* (କ୍ରି.) : ଲକ୍ଷ୍ୟ ରଖିବା

**ଘନ** - *ଦେ.ନ.ସୁବ.* (ବିଂ.ବି.) : ପଥର ଫଟେଇବା ବଡ ହାତୁଡି, ଦୈର୍ଘ୍ୟ, ପ୍ରସ୍ଥ ଓ ଉଚ୍ଚତା ବିଶିଷ୍ଟ, ବହଳିଆ, ଗହଳିଆ

**ଘନ୍ କରି** - *କଳା.* (କ୍ରି.ବିଂ.) : ଏକ ଲୟରେ, ଅପଲକ ନୟନରେ

**ଘନଘଟା** - *ଦେ.* (ବି.) : ଆଡ଼ମ୍ବର

**ଘନମେଘ** - *ସଂ* (ବି.) : କଳା ମେଘ, ପ୍ରବଳ ବର୍ଷା, କଳାହାଣ୍ଡିଆ ମେଘ

**ଘନସାର** - *ସଂ* (ବି.) : କର୍ପୂର, ଚନ୍ଦନ, ଜଳ

**ଘନା** - *ଅନେ.* (ବି.ବିଂ.) ତେଲ ଓ ଆଖୁପେଡ଼ା ଯନ୍ତ୍ର, ଘଣା, ତେଲ ପେଡିବା ଦେଶୀ ଯନ୍ତ୍ର, ଗହଳ

**ଘନା ଲାଏବ୍** - *ସୁବ.* (ବି.) : ଘଣାରେ ଲାଗୁଥିବା ଲମ୍ବ ଗଛ, ଏଥିରେ ବଳଦ ଯୋଚାଯାଏ

**ଘନା ହାଏଁଡ୍ରୁ** - *ସ.* (ବି.) : ମୁଢି ଭାଜିବା ହାଣ୍ଡି

**ଘନି** - *ଦେ.* (ବି.) : ସାଙ୍ଗ

**ଘନିବା** - *କୋ.* (କ୍ରି.) : କିଣିବା, କ୍ରୟ କରିବା

**ଘନେ** - *ବ.ଦେ.ସ.* (ବି.ଅ.ବିଂ.) : ଥରକୁ ଭାଜି ହେଉଥିବା ପରିମାଣ (ମୁଢି ବା ଡାଲି ଜାତୀୟ), ଥରକରେ

**ଘବ୍‌ରେଇ ଯିବା** - *ସ.କନ୍ଧ.* (କ୍ରି.) : ଡ଼ରିଯିବା, ବ୍ୟସ୍ତହେବା

**ଘବଲୋ ଘବଲୋ** - *ସୁବ.* (କ୍ରି.) : ପାଣିରେ ବୁଡି ବୁଡି ଗାଧୋଇବାର କ୍ରିୟା

**ଘମ୍‌କିଯିବା** - *କଳା.* (କ୍ରି.) : ମହକିଯିବା, ସୁବାସ ଚହଟିବା

**ଘମ୍‌କୁଚା** - *ଦେ.* (ବି.) : କୁମ୍ଭାଟୁଆ

**ଘମ୍‌ଘମ୍** - *ଦେ.* (ବିଂ.) : ଜୋର୍‌ରେ ଝାଳ ବୋହିବା, ଗମଗମ

**ଘମ୍‌ଢ଼ିଆ** - *ଦେ.* (ବିଂ.) : ଫୁଟାଣିଆ

**ଘମ୍‌ଲା** - *ନୂ.* (ବି.) : ତସଲା, ସିମେଣ୍ଟ ବାଲିବୁହା କରେଇ

**ଘମଘୁମ** - *ଜ.* (ବି.) : ମାଟିହାଣ୍ଡି, ଘୁମା

**ଘମଡ** - *ସୁ.* (ବି.) : ଗୋଳମାଳ, ଅଭିମାନ

**ଘମଣ୍ଡି** - *ସ.* (ବିଂ.) : କଥାଶୁଣି ଯେ ନ ଶୁଣିବାର ବାହାନା କରେ, ଗର୍ବୀ

**ଘମର** - *ରା.* (ବି.) : ହାତର କୁଚୁଣି

**ଘମାଘୋଟ** - *ଅନେ.* (ବିଂ.ବି.) : ଜୋରଦାର, ବିଶେଷଭାବେ, ଜାକ ଜମକ, ଭୟଙ୍କର, ପ୍ରବଳ, ଜୋରସୋର୍, ପ୍ରାଣମୂର୍ଚ୍ଛା

**ଘରକରଣା** - *ଅନେ.* (ବି.) : ଗୃହସ୍ଥ ଧର୍ମ, ସଂସାର କର୍ମ, ଗୃହର ସମସ୍ତ ବିଷୟ ଚଳିବାର ଅବସ୍ଥା

**ଘର କା ମୁର୍ଗୀ** - *ସଂ* (ବି.) : ଗାଁ କନିଆ

**ଘର କୋରଖ** - *ସଂ* (ବି.) : ଋଣ, ନସୁଝିଲେ ଘର ଆସବାବ ନିଲାମ, ଖାନ୍‌ତଲାସି

**ଘରଖାଇ** - *ସ* (ବିଂ.) : ଘରକୁ ଯିଏ ନଷ୍ଟକରେ, ଘରଭାଙ୍ଗି

**ଘରଗାଡ଼ବା** - *ସ* (କ୍ରି.) : ଘର କରି ରହିବା

**ଘରଚଟିଆ** - *ଅନେ* (ବି.) : ଘର ଚାଳରେ ବାସ କରୁଥିବା ଚଟିଆ ପକ୍ଷୀ

**ଘରଛା** - *କେ* (ବି.) : ଘର ଛପର, ଘରଛୁଆଁ

**ଘରଛୁଆଁ** - *ମା* (ବି.) : ଘରଛାଇଁ

**ଘରଣୀ** - *ଢ଼.ଦେ.ନ.* (ବି.) : ଗୃହିଣୀ, ସ୍ତ୍ରୀ, ପତ୍ନୀ, ଘର ଯେ ଚଳାଏ

**ଘରଧନ୍ଦା** - *ଅ* (ବି.) : ଘରକାମ, ପାଇଟି

**ଘର ଧରିବା** - *ଗ.ନ.ଗଞ୍ଜ* (କ୍ରି.) : ଯୌବନ ପ୍ରାପ୍ତ ହେବା, ଠିକ୍ ବାଟକୁ ଆସିବା

**ଘରପଶା** - *ଅ* (ବିଂ.) : ମନ୍ଦ ଉଦ୍ଦେଶ୍ୟ ରଖି ଅନ୍ୟ ଘରକୁ ଗୋପନରେ ଯିବା(ଗାଳି)

**ଘର ପୋଡ଼ିଆ** - *କେ* (ବି.) : ଗୁଳ୍ମବିଶେଷ

**ଘରବର** - *ଯା.ଦେ* (ବି.) : ବର ଓ ତା ଘର, ଯୋଗ୍ୟ ବର ଦେଖିବା

**ଘରବର ଦେଖା** - *ଅ.ଦେ* (ବି.) : ଝିଅ ପାଇଁ ବର ଓ ତାର ଘର ଦେଖା, କନ୍ୟାଘରେ ବରର ଅବସ୍ଥା ଦେଖିବା

**ଘରବସା** - *ସ* (ବି.) : ବିବାହ ସମୟ ହେବା

**ଘର ବସାବାର** - *ସୁବ* (କ୍ରି.) : ସଂସାର କରିବା, ବାହାଚୋରା ହେବ

**ଘର ବସିବା** - *ନବ* (ବି.) : ବାହାହେବା

**ଘରବୁଡ଼ା** - *ନ.ସ.ପଦ୍ୟ.ଦେ* (ବିଂ.ବି.) : ଯିଏ ଘରର ସମ୍ପତ୍ତି ବୁଡ଼ାଇଦିଏ, ସର୍ବନାଶ କାରୀ, ଘରକୁ ଯେଉଁ ଲୋକ ସର୍ବସ୍ୱାନ୍ତ କରେ, ପରିବାରର ସର୍ବନାଶ

**ଘରଭଙ୍ଗା** - *ଦେ.ସଂ* (ବିଂ.) : ଅମଙ୍ଗଳିଆ, ଘରର ସର୍ବନାଶ କରୁଥିବା

**ଘରମାଉ** - *ସୁବ* (ବିଂ.) : ଘରେ ସ୍ତ୍ରୀଙ୍କ ଭଳି ସବୁବେଳେ ରହୁଥିବା Home sick

**ଘରମୁହାଁ** - *ନ.ଦେ.କ.* (ବିଂ.ବି.) : ଘରଆଡ଼କୁ ମୁହଁ କରି ଫେରୁଥିବା, ନିଜ ଘରକୁ ଲେଉଟୁଥିବା ଲୋକ, ଘରପ୍ରତି ଆସକ୍ତ, ଘର ଆଡ଼କୁ

**ଘରଯୋଗ୍ୟ** - *ଗ.ଦେ* (ବିଂ.ବି.) : ଯୌବନ ପ୍ରାପ୍ତ ହେବା, ଯୁବତୀ

**ଘରରଖା** - *ଦେ* (ବି.) : ଅସରପା

**ଘରଲେନ୍** - *କଳା* (ବିଂ.) : ଗଡାଣିଆ

**ଘରସଜ** - *ଗ* (ବି.) : ଘରର ବାସନ କୁସନ ଓ ଅନ୍ୟାନ୍ୟ ଉପକରଣ

**ଘରା** - *ଅନେ* (ବି.) : ଠଣା, ପକ୍ଷୀବସା, ମହୁଫେଣା, ପହ୍ନା

**ଘରା ଖାଇବା** - *ଦେ.ଗ.* (କ୍ରି.) : ଅଖ ଘଷିହୋଇ ଛିଡ଼ିଯିବା, ତୁଣ୍ଡରୁ ବଚନ ନବାହାରିବା

**ଘରାନା** - *ଗଦ୍ୟ* (ବି.) : ବଂଶ, ଆଭିଜାତ୍ୟ

**ଘରି** - *ସୁ:ବ:ସୁବ:କଳା:* (ବି.) : ଲିଆ କେଳା ବାଂଶ ପାତ୍ର, ଚାଲୁଣି, କାଠିରେ ତିଆରି ମାଛ ଧରିବା ସାଧନ

**ଘରିଆଣୀ** - *ଗ:* (ବି.) : ଘର ମୁଖିଆ

**ଘରିକା** - *ରା:* (ବି.) : ପବନରେ ବୁଲୁଥିବା ବାଉଁଶ ଚକ୍ର

**ଘରୁଆ** - *ଅନେ:* (ବିଂ.) : ଘରର ମର୍ଯ୍ୟାଦା ରଖୁଥିବା, ଖାନ୍‌ଦାନୀ, ଘରଲୋକ, ସଂପର୍କୀୟ, ପାରିବାରିକ, ଘରକଲା ଲୋକ

**ଘରେ ରହିବା** - *ପୁ:ନ:* (ବି.କ୍ରି.) : ପ୍ରଥମ କରି ରଜୋବତୀ ହେବା, ପୁଷ୍ପବତୀ ହେବା

**ଘରୋଇ** - *ନ:* (ବିଂ.) : ଘର ସଂପର୍କୀୟ, ଗୋପନୀୟ, ବ୍ୟକ୍ତିଗତ

**ଘରଂଜ୍ଵା** - *କଜ୍ଵା:* (ବି.) : ଘରଜ୍ଵାଇଁ, ସବୁଦିନ ପାଇଁ ଶ୍ୱଶୁର ଘରେ ପତ୍ନୀ ସହିତ ରହୁଥିବା ପୁରୁଷ

**ଘର୍ଷଣ ପଥର** - *ସଂ:* (ବି.) : ଚକ୍‌ମକି

**ଘର୍‌କରା** - *କଳା:* (କ୍ରି.) : ବିବାହ କରିବା, ଦାଂପତ୍ୟ ଜୀବନ ଭୋଗ କରିବା, ନିଜେ ନିଜେ ସ୍ୱାମୀ ଚୟନ କରି ତାହା ନିକଟରେ ରହିବା

**ଘର୍‌ଛଡ଼ା** - *ଝା:* (ବିଂ.) : ଘର ଛାଡ଼ି ଅନ୍ୟଠି ରହୁଥିବା

**ଘର୍‌ଛାଆ** - *ଗ:* (କ୍ରି.) : ଘରଛପର କରିବା

**ଘର୍‌ଢୁମା** - *ମା:* (ବି.) : ଘରର ମଙ୍ଗଳ କରୁଥିବା ପ୍ରେତ

**ଘର୍‌ଦୁଆର** - *ଦେ:* (ବି.) : ଧନସମ୍ପତ୍ତି

**ଘର୍‌ଧରିବା** - *ଦେ:* (କ୍ରି.) : ନିଜ ଭୁଲ୍ ବୁଝିବା, ପୁଷ୍ପବତୀ ହେବା

**ଘର୍‌ପୋଡ଼ିଆ** - *ଦେ:* (ବି.) : କ୍ଷେତଫାପଡ଼ ଗଛ

**ଘର୍‌ବସା** - *କଳା:* (କ୍ରି.) : ବୋହୂ ଆଣିବା, ଘର ବସେଇବା

**ଘର୍‌ବାଲୀ** - *ସ:* (ବି.) : ଗୃହିଣୀ

**ଘର୍‌ମାଇ** - *ଝା:ସୁ:ଦେ:* (ବି.ବିଂ.) : ଘରେ ଯାହାର ମୁହଁ ଖୋଲେ, ଯେ ବାହାରେ ମୁହଁ ଖୋଲେନାହିଁ, ଘରୁ ବାହାରୁ ନଥିବା ଲୋକ, କୂପମଣ୍ଡୁକ, ସର୍ବଦା ଘରେ ଥିବା ବ୍ୟକ୍ତି

**ଘର୍‌ମୁସକା** - *କଳା:* (ବିଂ.) : ସର୍ବଦା ଘରେ ରହୁଥିବା (ବ୍ୟକ୍ତି)

**ଘର୍ ମୁସେଇ** - *ଝା:* (ବିଂ.) : ଘୋର ବିଷାଦରେ ଅବସନ୍ନ

**ଘର୍‌ରଖା** - *ଝା:ସୁ:ସ:* (ବି.) : ଝିଟିପିଟି

**ଘର୍‌ଲିବା** - *କଳା:* (କ୍ରି.) : ଉପରୁ ତଳକୁ ଆପେଆପେ ଭୂମିରେ ଘସିହୋଇ ପଡିବା, ଗଡି ଗଡି ପଡିବା

**ଘର୍‌ସମା** - *କଳା:* (ବି.) : ଗୃହପ୍ରବେଶ, ଗୃହପ୍ରତିଷ୍ଠା

**ଘଲ୍ ଘଲେଇ** - *ସ:* (ବି.) : ଜୋର୍‌ରେ ରକ୍ତସ୍ରାବ ହେବା

**ଘଜାକାମ** - *କ:* (ବି.) : ନିଜ ପାଇଁ କାମ

**ଘଳିଆ** - *ମା:ବା:ଗଞ:ଯା:* (ବି.) : ଛିଦ୍ର, ହିଡ଼ର ବଡ଼କଣା, ମାଟି ଭିତରେ ଗାତ, ବନ୍ଧ ଭିତର ଗାତ ଦେଇ ପାଣି ଯିବା

**ଘଲୋଘଲୋ** - *ସୁବ:* (ବିଂ.) ବେଶୀ ପରିମାଣରେ ପାଣି ବହିବା, ଅତ୍ୟଧିକ ରକ୍ତସ୍ରାବ ହେବା

**ଘଷ୍ରପଷର୍** - *ଦେ:* (ବି.) : ନହରପହର, ନସରପସର

**ଘଷରା** - *ଛ:ନ:* (ବିଂ.) : ଅଚଳନ୍ତି, ବିକୃତ, ଅସ୍ୱଷ୍ଟ, ଦେହସୁହା, ଘଷିହୋଇ ଅସ୍ୱଷ୍ଟ ହୋଇଥିବା

**ଘଷା** - *ନ:ଦେ:* (ବି.) : ଗୋଡ଼ ହାତ ବିନ୍ଧିଲେ ହାତରେ ଚିପିଦେବା, ଘଷିବା କର୍ମ

**ଘଷାପଥର** - *ଦେ:ନ:* (ବି.) : ତୁଠ ପଥର, ବଢେଇ ରଖିଥିବା ଶାଣପଥର, ଗାଧୁଆ ଘାଟରେ ଥିବା ପାଦଘଷା ପଥର

**ଘଷା ପାଣି** - *ଗଦ୍ୟ:* (ବି.) : ଭାଙ୍ଗ ପାଣି

**ଘଷି** - *ଅନେ:* (ବି.) : ଶୁଖିଲା ଗୋବର, ଶୁଖା ଖତ, ଶୁଖିଲା ଗୋବର, ଜାଳେଣି ପାଇଁ ପ୍ରସ୍ତୁତ ଶୁଖିଲା ଗୋବର, ଶୁଖିଲା ଗୋବର(ଜାଳ ଉପଯୋଗୀ)

**ଘଷିଗୁଣ୍ଡା** - *ଜ:* (ବି.) : ଗୋବରରୁ ତିଆରି ଶୁଖିଲା ମୁଣ୍ଡା

**ଘଷି ପାରିବା** - *ଗ:ଗଞ:* (କ୍ରି.) : ଘଷି ପ୍ରସ୍ତୁତ କରିବା, ଗୋବରରୁ ଜାଳେଣି ତିଆରି କରିବା

**ଘସ୍‌ନା** - *କଳା:* (ବି.) : ଲୁଣ୍ଠାକନା, ଛୁଞ୍ଚକନା

**ଘସ୍‌ରାବା** - *ସୁ:* (କ୍ରି.) : ଘୋସାରିନେବା

**ଘସ୍‌ର୍ତି** - *କଳା:* (ବିଂ.) ପ୍ରଚୁର ପରିମାଣରେ

**ଘସଟା ଖାଇ** - *ସୁବ:* (ବିଂ.) : ଏକ ଗାଳି

**ଘସିଆ** - *ସୁ:* (ବି.) : ଜାତି ବିଶେଷ

**ଘସିପିଟି** - *ଛ:* (ବି.) : ଏକ ଛୋଟ ମାଛ

**ଘସେନ୍** - *କଳା:* (ବି.) : ଘାସିଆଣୀ, ଘାସି ଜାତିର ସ୍ତ୍ରୀ

**ଘାଇ** - *ଅନେ:* (ବି.) : ପାଣି ଦ୍ୱାରା ବନ୍ଧରେ ଫାଟ ସୃଷ୍ଟି, କାଠ କାଟିବାର ଚିହ୍ନ, ଗୁଲି ଜାଲର ତଳପାଖରେ ମାଛ ପଶିବା ସ୍ଥାନ, ନାଳ ବା ପୋଖରୀର ବୃହଦାକାର ଫାଙ୍କ

**ଘାଇମାରିବା** - *ଦେ:* (କ୍ରି.) : ଠକିବା

**ଘାଇଲା** - *ସଂ:ନ:ଦେ:* (ବିଂ.ବି.) : ଆହତ, ଆଘାତଦେବା

**ଘାଇହେବା** - *ସଂ:* (ବି.) : ବନ୍ଧ ଭାଂଗିବା

**ଘାଉଆ** - *ଖୋ:* (ବିଂ.) : ଚତୁର, ଚାଲାକ୍

**ଘାଉଡ** - *ରା:ବା:ସଂ:ଦେ:* (ବି.) : ଖଣ୍ଡିଆ ଖାବରା, କ୍ଷତ, ସାପକାମୁଡ଼ା

**ଘାଭଲା** - *ଯା:* (ବିଂ.) : କ୍ଷତ ବିକ୍ଷତ, ଆଘାତ ପ୍ରାପ୍ତ

**ଘାଭିଁକିନା** - *ଦେ:ମା:କେ:* (ଅ.) : ହଠାତ୍

**ଘାଭିଁସ** - *ଗ:* (ବି.) : ଘାସ

**ଘାଏ** - *ଅନେ:* (ବିଂ.ଅ.) : ଏକାଥରକେ, ଥରେ, ଦଫାଏ

**ଘାଏଗଲେ** - *ସ:* (ବିଂ.) : ଅଳ୍ପ ସମୟ ପରେ

**ଘାଏଘାଏ** - *ବ:ଝା:ଗଦ୍ୟ:* (କ୍ରି.ବି.ବିଂ.) : ଥରେ ଥରେ, ସମୟେ ସମୟେ, ବେଳେବେଳେ

**ଘାଏଘାଏକେ** - *ସ:* (ବିଂ.) : ଥରକୁଥର

**ଘାଏ ଭି** - *ସ:* (ବିଂ.ଅ.) : ଟିକିଏ ମଧ୍ୟ

**ଘାଏଁ** - *କେ:ମା:ସୁବ:* (ଅ.କ୍ରି.ବିଂ.) : ଜୋରରେ, ଟିକେ, ଥରେ, ଅଳ୍ପ ସମୟ

**ଘାଗ୍ରା** - *ଦେ:ମ:* (ବି.) ସ୍ତ୍ରୀମାନଙ୍କ ପୋଷାକ

**ଘାଗଡେଇବା** - *ଗ:* (କ୍ରି.) : ରାଗରେ ଚାହିଁବା, ତରାଟି ଚାହିଁବା

**ଘାଗଡ଼ା** - *କୋ:ମା:* (ବିଂ.ବି.) : ମୋଟା, ବା ଗମ୍ଭୀର ସ୍ୱର, କାଡି

**ଘାଗର ମାଛ** - *ତ:* (ବି.) : ଏକପ୍ରକାର ନଦୀର ମାଛ

**ଘାଗରା** - *କ:ସଂ:କେ:* (ବି.) : ବସ୍ତ୍ର ବିଶେଷ, ସ୍କଟ, ରାଜସ୍ଥାନୀ ସ୍ତ୍ରୀଲୋକଙ୍କ ପୋଷାକ, ଜଳପ୍ରାପତ

**ଘାଗୁଡ଼ି** - *ଅନେ:* (ବି.) : ଘୁଙ୍ଗୁର, ଅଳଂକାର, ଛୋଟ ଘଣ୍ଟି, ନୂପୁର

**ଘାଗୁଡ଼ି ପାଞ୍ଚଣ** - *ଗ:* (ବି.) : ଗଞ୍ଜାମର ଓଷାକୋଠି ପର୍ବର ଉପଦେବତା

**ଘାଘରି** - *ଗଜ:* (ବି.) : ମାଟିହାଣ୍ଡି

**ଘାଚା ଖେଳ** - *ନୂ:* (ବି.) : ପଇସାକୁ ନେଇ ପଥରରେ ମାରି ଖେଳୁଥିବା ଖେଳ

**ଘାଚିକୋବି** - *ରା:* (ବି.) : ପତ୍ରକୋବି, ବନ୍ଧାକୋବି

**ଘାଟ** - *ଅନେ:* (ବି.କ୍ରି.) : ନଦୀବାଟ, ଗାଧୁଆ ତୁଠ, ଦୁର୍ଯ୍ୟୋଗ, ବିପଦ, ଧୋବା ତୁଠ କରିବା ପୋଖରୀ, ଜୋର, କୂଳ, ବଡ଼ ଜଳାଶୟ

**ଘାଟା** - *ଅନେ:* (ବି.) : କ୍ଷତି, ହାନି, ଅସୁବିଧାରେ ପଡ଼ିବା, ନଷ୍ଟରେ ପଡ଼ିବା, ଲୋକସାନ

**ଘାଟି** - *ଅନେ:* (ବି.) : ପର୍ବତର ଦୁର୍ଗମ ପଥ, ଅତିଉଚ୍ଚ ଉଠାଣି, ଜଙ୍ଗଲିଆ ଉଠାଣିଆ ରାସ୍ତା, ଅବତରଣ ସ୍ଥାନ, ମାରକଦଶା, ବିପଦ, ଜୀବନର ନିର୍ଣ୍ଣାୟକ ଘଟଣା

**ଘାଟୁଆ** - *ପଦ୍ୟ:ଦେ:ନ:* (ବି.ବିଂ.) : ଚୈତ୍ର ଓ ଆଶ୍ୱିନ ମାସରେ ଦୁର୍ଗାପୂଜା ସମୟରେ ଯେଉଁବ୍ୟକ୍ତି ଦେବୀଙ୍କ ନାମରେ ଉତ୍ସର୍ଗ ହୋଇଥିବା ଘଟକୁ ଧରି କାଳିସୀ ପାଖରେ ଥାଏ, ଝିରା, କେଉଟ, ଘାଟୁଆଳ

**ଘାଠିମହୁ** - *କେ:* (ବି.) : ଲତା ବିଶେଷ

**ଘାଡ଼** - *ବା:ମ:କଣ:* (ବି.) : ବେକ, କାନ୍ଧ

**ଘାଡ଼ମଗରା** - *ବା:* (ବିଂ.) : ଅଯଥା ଯୁକ୍ତି କରୁଥିବା ବ୍ୟକ୍ତି

**ଘାଡ଼ା** - *କଣ:* (ବି.) : ଗାତ

**ଘାଣ୍** - *ଦେ:* (ବି.) : ବଡ଼ ହାତୁଡ଼ି

**ଘାଣ୍ଟ ତିଅଣ** - *ଗ:* (ବି.) : ବିଭିନ୍ନ ପ୍ରକାର ପନିପରିବାର ମିଶ୍ରଣର ତରକାରୀ

**ଘାଣ୍ଟାକାଢ଼େ** - *ଗଦ୍ୟ:* (ବି.) : ଡାଙ୍ଗ

**ଘାଣ୍ଟିଆ** - *ସଂ:କ:ଗଜ:* (ବି.) : ମିଶାତିଅଣ, ଦ୍ବିତୀୟା ଓଷା ପରଦିନ ବିଭିନ୍ନ ପରିବାରେ ପ୍ରସ୍ତୁତ ତରକାରୀ

**ଘାଣ୍ଟିସାନି** - *ଗୌ:* (ବି.) : ହଇରାଣ

**ଘାଣ୍ଟିହେବା** - *ନ:* (କ୍ରି.) : ହଇରାଣ ହେବା

**ଘାତ** - *ଦେ:ଜ:* (ବି.ବିଂ.) : ବିପଦ, ଖଣ୍ଡିଆ, ଆଘାତ ପ୍ରାପ୍ତ

**ଘାତକ** - *ସଂ:ଦେ:* (ବିଂ.) : ହତ୍ୟାକାରୀ, ହାଣୁଆ, ମାରକ

**ଘାନା** - *ଜ:* (ବି.) : ବଢ଼େଇଙ୍କ କାମର ଯନ୍ତ୍ର

**ଘାନି ଶାଲ୍** - *କଳା:* (ବି.) : ଘଣାଶାଳ, ଆଖୁ ପେଡ଼ିବା ସ୍ଥାନ, ଆଖୁଶାଳ

**ଘାନ୍ତି** - *ଢେ:* (ଅ.) : ଥରକୁ ଥର

**ଘାପଣ୍ଡିଆ** - *ଗ:* (ବି.) : ଅଧାପନ୍ତରିଆ କାର୍ଯ୍ୟ

**ଘାପାଲ୍‌ଘାପାଲ୍** - *ଗ:* (ଅ.) : ଶୀଘ୍ରଶୀଘ୍ର, ଚଞ୍ଚଳ

**ଘାବରା** - *ଅନେ:* (ବି.ବିଂ.) : ବ୍ୟସ୍ତ, ବିବ୍ରତ, ଭୀତତ୍ରସ୍ତ, ବିରକ୍ତିକର ପରିସ୍ଥିତି

**ଘାମ୍** - *ବର:ମ:କଣ:* (ବି.) : ଖରା, ଝାଳ

**ଘାୟାଲ୍** - *କଳା:* (ବିଂ.) : ଆଘାତପ୍ରାପ୍ତ, ଦରମରା, ପଳାଘାରି, ପକ୍ଷୀବସା, ତଳି ବା ପଲ୍‌ହା ପକାଇଥିବା ସ୍ଥାନ, ଛୋଟ ପଟାଳି, ପଞ୍ଜୁରୀ

**ଘାରି କାଟବା** - *ସୁବ:* (କ୍ରି.) : କାନକଟରା ଲାଗିବା କାନମୂଳରେ ଘା ହେବା

**ଘାରିବା** - *ଦେ:ନ:କଳା:କେ:* (କ୍ରି.) : ଢୁଳେଇବା, ଆଚ୍ଛନ୍ନ ହେବା, ମାନସିକ ସ୍ତରରେ କବଳିତ କରିବା, ମନ ଭିତରେ ଝୁରି ହେବା

**ଘାଲି** - *ଦେ:* (ବି.) : ଜଖମ

**ଘାଲି ପଡ଼ିବା** - *ଦେ:* (କ୍ରି.) : ଏକ ପାଖକୁ ଆଉଜି ପଡ଼ିବା, ଅବସନ୍ନ ହେବା

**ଘାଲିହେବା** - *ଖୋ:* (କ୍ରି.) : ମନେପକାଇ ଶୋକ କରିବା

**ଘାଲୁ** - *ଗଜ:* (ବି.) : କଉଡି ଖେଳରେ ବ୍ୟବହୃତ ଶବ୍ଦ

**ଘାଲେଇପଡ଼ିବା** - *ଗଜ:* (କ୍ରି.) : ଚେଇଁ ଶୋଇଥିବା, ଛଟା ଗାଳି ପଡ଼ିରହିବା

**ଘାସା ଘାସାଲୁ** - *ଗଜ:* (ବି.) : ପୋସ୍ତକ ଦାନା

**ଘାସିଆ** - *ଦେ:* (ବି.) : ମେହେନ୍ତର

**ଘାସୀ** - *ଦେ:* (ବି.) : ଏକ ଜାତି

**ଘାସୁଆ** - *ଜ:* (ବିଂ.) : ଘାସଯୁକ୍ତ

**ଘାଁଏକେ** - *ସୁବ:* (ବିଂ.) : ଅଳ୍ପ ସମୟରେ, ଥରେ ମାତ୍ର ସୁଯୋଗରେ

**ଘାଁଟି ସାଥାଁଟି** - *ବର:* (ବିଂ.) : କାର୍ଯ୍ୟରେ ହଇରାଣ ହରକତ, ବାଧାବିଘ୍ନ

**ଘାଁତେ** - *କଳା:* (କ୍ରି.ବିଂ.) : ଥରେ, ଥରେମାତ୍ର

**ଘାଂଙ୍କା** - *ଗା:* (ବି.) : ବଡ ନଦୀ

**ଘା'ଟ** - *ଗଞ:* (ବି.) : କଡ଼ା ମସଲା, ବିପଦ

**ଘା'ଟା** - *କୋ:* (ବି.) : ନଷ୍ଟ, ଲୋକସାନ୍

**ଘା' କାତେ** - *ଟା:* (ବିଂ) : ଦି' ଚାରିପାହାର

**ଘିଅ** - *ଦେ:* (ବି.) : ବୁଦ୍ଧି, ଗାଈଘିଅ

**ଘିଅ ଖାଇବା** - *ଗ:* (ବି.) : ମୃତ ଦଶାହ ଦିନ ଗଞ୍ଜାମର ଶୁଦ୍ର ଜାତିରେ ଘିଅ ଖାଇବା ରୂପକ, ବିଧି

**ଘିଅଦୀପ ଲିଭାଇବା** - *ଗ:* (କ୍ରି.) : ପ୍ରମାଣ କରିବା, ଶପଥ କରିବା, ସତ କହିବା

**ଘିକୁଆଁରି** - *ଢ:କ:ସୁବ:ଦେ:* (ବି.) : ଘୃତକୁମାରୀ, ମୋଟାପତ୍ରଯୁକ୍ତ କଣ୍ଟାଯୁକ୍ତ ବୃକ୍ଷ, ଔଷଧ ଗୁଳ୍ମ, ଏକ ଔଷଧୀୟ ବୃକ୍ଷର ନାମ

**ଘିଚ୍‌ନା** - *ନୂ:* (ବି.) : ଲମ୍ବା ଝୋଟର ରଜ୍ଜୁ

**ଘିଚ୍‌ପିଚ୍** - *ବୌ:* (କ୍ରି.) : ପଛେଇବା

**ଘିଚ୍‌ସନ୍** - *କଳା:* (କ୍ରି.) : ଘିଚନ୍ତି, ଟାଣନ୍ତି, ନିଜର ପକ୍ଷଭୁକ୍ତ କରନ୍ତି

**ଘିଚବାର** - *ସୁବ:* (କ୍ରି.) : ଟାଣିବା

**ଘିଚା ଆମରା** - *ସୁ:* (କ୍ରି.) : ଟଣା ଓଟରା

**ଘିଚାଟଣା** - *ବୌ:* (ବି.) : ଟଣାଓଟରା

**ଘିଚାନି** - *କଳା:* (ବି.) : ଘିଚିବା ବା ଟାଣିବା ପ୍ରକ୍ରିୟା

**ଘିଚା ପୁଚ୍‌କା** - *କଳା:* (କ୍ରି.) : ଟଣାଓଟରା

**ଘିଚା ରପ୍‌ଟା** - *ସ:* (ବି.) : ଟଣା ଓଟରା

**ଘିଚି ଆମରି** - *ସୁ:* (କ୍ରି.) : ଟାଣି ଓଟାରିବା

**ଘିଚିଟାନି** - *ସ:* (ବି.) : ଟାଣି ଓଟାରିବା, ଭିଡ଼ିବା

**ଘିଟ୍‌ଘିଟା** - *ସୁ:* (ବିଂ.) : ଗାଢ, ଅତ୍ୟଧିକ

**ଘିଡାଚ** - *ସୁବ:* (ଅ.ବିଂ.) : ଧକ୍କା ଲାଗିବାର ଶବ୍ଦ, ମେଣ୍ଢା ଲଢେଇ ବେଳେ ସୃଷ୍ଟି ହେଉଥିବା ଧ୍ୱନିବାଚକ ଶବ୍ଦ, ଧକ୍କା ହେବାର ଧ୍ୱନୀ, ମେଣ୍ଢା ଲଢେଇର ଆବାଜ

**ଘିଡ୍‌ଘିଡ଼େଇ ନେବା** - *ସ:* (କ୍ରି.) : ଦଉଡ଼ାଇ ନେବା

**ଘିଡ଼ି ଘଡ଼ି** - *ସ:* (ବି.) : ଚକ ଗଡ଼ିବାର ଶବ୍ଦ, ମେଘ ଗର୍ଜନର ଶବ୍ଦ

**ଘିଡ଼ିଘାଡ଼ିଆ** - *ଗ:* (କ୍ରି.) : ଅତର୍କ୍କା ଏକ ମୁହାଁ ଗତି

**ଘିତିଆଣିବା** - *ନ:* (କ୍ରି.) : ଘେନିଆସିବା, ଆଣିବା

**ଘିନ୍‌ଘିଚା** - *ସୁ:* (ବିଂ.) : ଅପରିଷ୍କାର

**ଘିନ୍‌ଘିନା** - *କଳା:ଦେ:କନ୍ଧ:* (ବିଂ.ବି.) : ପଚା, ଅପରିଷ୍କାର ଦିଶିବା, କୁତ୍ସିତ

**ଘିନ୍‌ବା** - *ବର:ସ:ବୌ:* (କ୍ରି.) : କିଣିବା

**ଘିନ୍‌ସିଁ** - *କଳା:* (କ୍ରି.) : କିଣେ, କ୍ରୟ କରେ

**ଘିନା** - *ଯା:କ:ସୁ:* (ବି.) : ଘୃଣା କରିବା, ଘୃଣା

**ଘିନି ଆସିବା** - *ଦେ:* (କ୍ରି.) : ଆଣିବା

**ଘିନିଖିଆ** - *ସ:* (ବିଂ.) : ଯିଏ କିଣି ଖାଏ

**ଘିନି ପଳାଇବା** - *ଯା:* (କ୍ରି.) :, ନେଇ ପଳାଇଯିବା

**ଘିନିପାଏ** - *ଗଦ୍ୟ:* (କ୍ରି.) : ଭଲପାଏ

**ଘିନିବା** - *ଅନେ:* (କ୍ରି.) : ନେବା; ପିନ୍ଧିବା, କାଖ କରିବା, କିଣିବା, କାଖେଇବା

**ଘିନି ବିକି** - *ସ:* (କ୍ରି.) : କିଣା ବିକା

**ଘିନୁଆଁ** - *ସ:* (ବି.) : କିଣା ଜିନିଷ

**ଘିନେ, ଘେନି** - *କୋ:* (ଅ.) : ପାଇଁ

**ଘି ପିଠା** - *ଯା:* (ବି.) : ଆରିସା ପିଠା

**ଘିଭେଲା** - *କଳା:* (ବି.) : ଗଉଡମାନଙ୍କ କୌଳିକ ଉପନାମ

**ଘିମ୍ବିରି, ଘେମ୍ବିରି** - *ଗ:* (ବି.) : ଘିମିରି

**ଘିରଘିସା, ଘରଖା** - *ସୁବ:* (ବି.) : ଝିଟିପିଟି

**ଘିରଡିଗଲା** - *ରା:* (କ୍ରି.) : ରାଗିଲା

**ଘିରିକା** - *ରା:* (ବି.) : ନଟୁ

**ଘିରିଣ୍ଡି** - *ରା:* (ବି.) : କନ୍ଦା ଜାତୀୟ ଏକ ଔଷଧୀୟ ବୃକ୍ଷ

**ଘିରିମା** - *ରା:* (ବି.) : ପେଷଣା

**ଘିରିସା** - *ଗ:* (ବି.) : ଅଗ୍ରଭାଗରେ ଭୂଷା ଅଟ୍ଟଥିବା ଠେଙ୍ଗା

**ଘିର୍‌ଘିରି** - *ବର:* (ବି.) : ଶାଢୀରେ ଧଡ଼ି ଡିଜାଇନ୍

**ଘିଲ୍‌ଘିଲା** - *ବର:* (ବି.) : କାଳକୂଟ

**ଘିଁ କୁଆଁରୀ** - *ଅନେ:* (ବି.) : ଏକ ପ୍ରକାର ଔଷଧୀୟ ଗୁଳ୍ମ

**ଘିଁଚା** - *ସ:* (ବି.) : ଘଡ଼ି ସନ୍ଧି ସମୟ

**ଘିଁଚାଟନା** - *ସ:* (ବି.) : ଯୁକ୍ତିତର୍କ, ଟଣାଟଣି

**ଘୁଆରି** - *କୋ:* (ବି.) : ଗୁହାରି, ପ୍ରାର୍ଥନା

**ଘୁଇ** - *ସ:ସୁ:* (ବି.) : ପୋକ ବିଶେଷ, କଲିକତରା

**ଘୁକାଳିକା** - *ଗଦ୍ୟ:କ:* (ବି.) : ଚଢେଇ, ଏକ ପ୍ରକାର ପକ୍ଷୀ

**ଘୁଗଲି** - *ବ:* (ବିଂ.) : ବିରକ୍ତ ହେବା

**ଘୁଗୁନି** - *ଦେ:* (ବି.) : ବୁଟ, ଚଣା, ମଟରରେ ତିଆରି ତରକାରୀ

**ଘୁଗୁର୍‌ଲା** - *କଳା:* (ବି.) : ଘଣ୍ଟି-ଘାଗୁଡି

**ଘୁଗୁଳ** - *ସୁବ:* (ବି.) : ସବୁଜ କଣ୍ଟାବାଡ଼

**ଘୁ ଘା** - *ଗ:* (ଅ.) : ଲୋକଙ୍କ ଗହଳ ଚହଳ

**ଘୁଙ୍ଗା** - *ଅନେ:* (ବିଂ.ବି.) : ମୂକ, ସ୍ୱଷ୍ଟ କଥା କହିପାରୁନଥିବା, କାଲ, ଜଡ଼ା, ଖନା, ବେଡ଼ା

**ଘୁଙ୍ଗୁ** - *କନ୍ଧ:ମ:* (ବି.) : ପକ୍ଷିଆ, ତାଳପତ୍ର ଛତା

**ଘୁଙ୍ଗୁଡି** - *ରା:ଦେ:ନ:* (ବି.) : ନିଦ ବେଳେ ନାକରୁ ସୃଷ୍ଟ ଶବ୍ଦ, ଗାଢ଼ ନିଦର ଶବ୍ଦ, ଶୋଇବାବେଳେ ନାକରୁ ସୃଷ୍ଟି ଶବ୍ଦ

**ଘୁଙ୍ଗୁଡ଼ି କାଠୁଆ** - *ଗ:* (ବି.) : ଘୁଙ୍ଗୁଡ଼ି ଶବ୍ଦକୁ ଚୋରର ଭୟ

**ଘୁଙ୍ଗୁର** - *ଖୋ:ଦେ:* (ବି.) : ପାଦରେ ପିନ୍ଧାଯାଉଥିବାଏକ ଅଳଙ୍କାର(ଯାହାକୁ ପିନ୍ଧିଚାଲିଲେ ସେଥିରୁ ମଧୁର ଧ୍ୱନି ଉତ୍ପନ୍ନ ହୋଇଥାଏ, ଘାଙ୍ଗୁର

**ଘୁଙ୍ଗୁରା ମୁହଁ** - *ସଂ:* (ବି.) : ମୁହଁ ଫୁଲେଇବା

**ଘୁଙ୍ଗୁଳା** - *ଦେ:* (ବିଂ.) : ହୁଗୁଳା

**ଘୁଚ୍‌ପୁଚ୍** - *ବଉ:ଦେ:ବୌ:* (କ୍ରି.) : ଦ୍ୱନ୍ଦରେ ପଡ଼ିବା, ଦ୍ୱିଧାଭାବ, ଗୁଁ ପୁଁ

**ଘୁଚ୍‌ପେଲ୍** - *କଳା:* (ବିଂ.) : ଆଗପଛ ହେବା, ହଁ ଓ ନା'ର ଦ୍ୱନ୍ଦରେ ରହିବା, ନିଷ୍ପତ୍ତି ନେଇ ନ ପାରିବା

**ଘୁଚା ଦୁହୁରା** - *ସୁବ:* (କ୍ରି.) : ଦ୍ୱନ୍ଦରେ ପଡ଼ି ଗୋଟିଏ କାମପାଇଁ ବାରମ୍ବାର ଯିବା ଆସିବା କରିବା

**ଘୁଚାବା** - *ସ:* (କ୍ରି.) : ଫେରାଇବା

**ଘୁଚୁ** - *ସୁ:ସୁବ:* (ବିଂ.) : ପଛଘୁଞ୍ଚାବାଲା, ଯେ ପଛଘୁଞ୍ଚାଦିଏ, କାପୁରୁଷ, ଯିଏ ସବୁ କଥା ଓ କାମରେ ଦୋଦୋ ପାଞ୍ଚ ହୁଏ, ପଛଘୁଞ୍ଚା ଦିଏ

**ଘୁଚୁରୁ ପୁଚୁରୁ** - *ବୌ:* (ଅ.) : ହଁ ନାଇଁର ଦ୍ୱନ୍ଦାତ୍ମକ ସ୍ଥିତି(ଦୋ ଦୋ ପାଞ୍ଚ)

**ଘୁଞ୍ଚ ପୁଞ୍ଚ** - *ମା:ଗଞ:* (କ୍ରି.ବିଂ.ଅ.) : ଅନିଚ୍ଛା ଭାବ, କୁଣ୍ଠାଭାବ

**ଘୁଟ୍‌ଘୁଟ୍ରା** - *ଦେ:* (ବିଂ.) : କିଟିକିଟିଆ ଅନ୍ଧାର

**ଘୁଟ୍‌ମା, ଘୁଟ୍‌ବା** - *ବୌ:* (କ୍ରି.) : ପିଟିବା, ଘାଣ୍ଟିବା

**ଘୁଟ୍‌ରିବା** - *ଚ:* (କ୍ରି.) : ଡାହୁକର ଶବ୍ଦ

**ଘୁଟ୍‌ରୁ** - *କଳା:* (ବି.) : ପଟୁଆ, ତେଣ୍ଡା ଯନ୍ତ୍ରର ମଧରେ ବ୍ୟବହୃତ କାଠ, ମାଇ

**ଘୁଟବା, ଘୁଟିବା** - *ସୁ:* (ବି.) : ପିଟିବା

**ଘୁଟାନ୍** - *ବୌ:* (ବି.) : ଗାଳି, ମାଡ଼

**ଘୁଟି** - *ରା:* (ବି.) : ଜଡିବୁଟି ଔଷଧ

**ଘୁଟିବା** - *କଳା:କୋ:ନବ:* (କ୍ରି.) : ଘୋଟିଯିବା, ଆଚ୍ଛାଦନ କରିବା, ବ୍ୟାପିବା, ପେଷିବା, ଗୁଣ୍ଡ କରିବା

**ଘୁଟୁଣା** - *ରା:* (ବି.) ଦୂର ସ୍ଥାନକୁ ନିଆଯାଉଥିବା ଖାଦ୍ୟ

**ଘୁଡ଼ା** - *ଅ:* (ବି.) : ଘୋଡ଼ା

**ଘୁଡ୍‌କିବା** - *ଦେ:* (କ୍ରି.) : ରାଗି ଚିତ୍କାର କରିବା

**ଘୁଡକା** - *ସୁବ:* (ବି.) : ଗୋଧି ଚମଡ଼ାରୁ ପୋଲା ବାଉଁଶରେ ନିର୍ମିତ ବାଦ୍ୟ

**ଘୁଡା** - *ନବ:* (ବି.) : ଘୋଡା

**ଘୁଡିଘୁଡି ପଟି** - *ବୌ:* (ବି.) : ଏକ ପ୍ରକାର କୁଆଖେଳ

**ଘୁଡୁକିନାଚ** - *ଗଞ:* (ବି.) : ଲୋକ ନାଟକ

**ଘୁଡ୍‌କୁବା** - *ବୌ:* (କ୍ରି.) : ଗାଳିଦେବା

**ଘୁଡୁ ଘୁଡୁ** - *ସ:* (ବି.) : ଧାନ ମଡ଼େଇବା ଯନ୍ତ୍ର(କାଠ)

**ଘୁଡ୍‌ମୁଷି** - *କଳା:* (ବି.) : ମୁହଁମାଡ଼ି

**ଘୁଡ଼ା** - *ଅନେ:* (ବି.) : ଘୋଡ଼ା, ଅଶ୍ୱ, ଡଙ୍କା, ଘୁଡ଼ାଯାଇଥିବା ଖାଦ୍ୟ

**ଘୁଡ଼ାଖାଇ** - *ସ.* (ବି.) : ଝିଅଯିବା ବେଳେ ଶାଶୁଘର ତା ସାଂଗରେ ଯିଏ ଯାଏ ସେ ସ୍ତ୍ରୀ ଘୁଡ଼ାଖାଇ

**ଘୁଡ଼ାଚୁଦୀ** - *ଦେଶୀ.* (ବି.) : ଗାଳିବିଶେଷ

**ଘୁଡ଼ାନି** - *ସୁ.* (ବି.) : ଢାଙ୍କୁଣି

**ଘୁଡ଼ାମୁହାଁ ପୁକ** - *ଗ.* (ବି.) : ଚାଉଳରେ ଲାଗୁଥିବା କଳା କ୍ଷୁଦ୍ର କୀଟ

**ଘୁଡ଼ି** - *ଗ.ଦେ.* (ବି.) : କାଗଜ ତିଆରି ଖେଳନା, କାଠ ତିଆରି କ୍ୟାବିନ, ଛତାର ବୋତାମ

**ଘୁଡ଼ିଆ** - *ଦେଶୀ.* (ବି.) : ନଡ଼ା ଛାଉଣୀ ଉପର ଲଦା

**ଘୁଡୁକା**- *ଗ.* (ବି.) : ଅଫିମ ଚିଲମ

**ଘୁଡୁକି** - *ନ.ଗ.* (ବି.) : ଧୁଡୁକି ଏକ ପ୍ରକାର ଲୋକବାଦ୍ୟ, ଗଞ୍ଜାମର ଲୋକବାଦ୍ୟ

**ଘୁଡୁକିଆଣୀ** - *ନ.* (ବି.) : ଘୁଡୁକି ବାଦ୍ୟ ବଜାଉଥିବା ସ୍ତ୍ରୀ ଲୋକ

**ଘୁଡୁଘୁଡ଼ା ପାଲି** - *ଗ.* (ବି.) : ପଶାପାଲି ଭଳି ଏକ ଖେଳ

**ଘୁଡୁବା** - *ବାଲ.* (ବି.) : ମନ ରଖିବାପାଇଁ ବାରମ୍ବାର ପଡିବା

**ଘୁଡେଇନେବା** - *ବାଲ.* (କ୍ରି.) : ଅନ୍ୟର ଦୋଷ ଲୁଚାଇବା

**ଘୁଣ** - *କେ.ଗ.* (ବି.) : ବାଉଁଶ କାଠ ପୋକ ଖାଇବା, କାଠ କୀଟ

**ଘୁଣୀ** - *ପଦ୍ୟ.* (ବି.) : ମାଛ ଧରିବା ପାଇଁ ବାଉଁଶରେ ତିଆରି ଯନ୍ତ୍ରବିଶେଷ

**ଘୁଣ୍ଠ** - *ଗ.* (ବି.) : ଗୁଣ୍ଠ-ଜମି ମାପର ଏକକ

**ଘୁଣ୍ଡି** - *ସଂ.* (ବି.) : (ବଣିଆ ବେପାରି)-ମୁଦି

**ଘୁଣ୍ଡାବାର** - *ସୁବ.* (କ୍ରି.) : ଲୁଗାପଟା ତଳେ ଘୋଷାଡ଼ିବା

**ଘୁଣ୍ଡି ଘୁଣ୍ଡି** - *କଣ.* (କ୍ରି.) : ଗଡ଼ି ଗଡ଼ି

**ଘୁଥା** - *ବାଲ.* (ବି.) : ନିର୍ଦ୍ଦିଷ୍ଟ ମୂଲ୍ୟଦେଇ କାମ ହାତକୁ ନେବା

**ଘୁନ୍‌ଘୁଟି** - *ଅନେ.* (ବି.) : ମଶାଜାତୀୟ ଅତି ଛୋଟ କୀଟ, ଗୁଣ୍ଡିଆ, ଛୋଟ ମଶା ପରି ଜୀବ, ଅତିଛୋଟ ମାଛ, ଗୁଣ୍ଡିମାଛି, ଛୋଟ ମଶା

**ଘୁନ୍‌ଚି** - *ସୁ.* (ବି.) : ଅଣ୍ଡାସୂତା

**ଘୁନଘୁଟି** - *ସୁବ.* (ବି.) : ଅତି ଛୋଟ ଉଡ଼ନ୍ତା ମାଛି ଭଳି ଉଡନ୍ତା କୀଟ। ଘରର ପାଳକୁଟା ଖିଅରେ ଜମା ହୋଇଥାନ୍ତି।

**ଘୁପ୍ ଘାପ** - *ଗ.* (କ୍ରି.) : ଶୀଘ୍ର ଶୀଘ୍ର ଭର୍ତ୍ତି କରିବା

**ଘୁପ୍‌ଘୁପା** - *ଦେଶୀ.* (ବିଂ.) : ଘଞ୍ଚ

**ଘୁବ୍‌କୁଡ୍ରୁ** - *ଦେ.ନୂ.ସ.* (ବି.) : ଘୁଡୁକା ବାଦ୍ୟର ସ୍ୱର, ଘୁଡୁକା ଏକ ପ୍ରକାର ବାଦ୍ୟ ଯନ୍ତ୍ର

**ଘୁମ** - *ଅନେ.* (ବି.ବିଂ.) : ମାଟିରେ ତିଆରି ବଡ଼ ପାତ୍ର, ବଡ଼ ମାଠିଆ, ବଡ଼ ମାଟିଭାଣ୍ଡ, ପାଣି ରଖିବା ପାତ୍ର

**ଘୁମ୍‌କା** - *କଳା.* (ବି.) : ବିଧା

**ଘୁମ୍‌କିବା** - *କଳା:* (କ୍ରି.) ଗରମରେ ଗୁମ୍‌ଗୁମିବା

**ଘୁମ୍‌ରି** - *କଳା:ସ:ବର:* (ବିଂ.ବି.) : ଗୁରୁଗମ୍ଭୀର ଭାବରେ, ଭଲ ଭାବରେ, ଖରାଦିନେ ଝାଳପାଇଁ ହେଉଥିବା ଛୋଟ ବ୍ରଣ, ଘିମିରି

**ଘୁମ୍‌ରି ଉଠିବା** - *ନୂ:* (କ୍ରି.) : ଅତି ମନଲୋଭା ବାଦ୍ୟ

**ଘୁମ୍‌ସେଇଦେବା** - *ନୂ:* (କ୍ରି.) ନୀରବ ହୋଇଯିବା

**ଘୁମଉଛି** - *କେ:* (କ୍ରି.) : ଢୋଳାଉଛି

**ଘୁମଟା** - *ଗ:* (ବି.) : ଓଢ଼ଣୀ, ଘୋଡ଼ଣୀ

**ଘୁମଡ୍** - *ସ:* (ବି.) : ଏକ ଜିଦିଆ

**ଘୁମରି** - *ସୁବ:* (ବି.) : ଘିମିରି

**ଘୁମା** - *ଅନେ:* (ବି.ବିଂ.) : ନିଦ ଲାଗିବା, ଘୂରାଇବା, ଘୁମ, ବଡ଼ ମାଠିଆ, ପକ୍ଷୀବିଶେଷ, ଢୋଳେଇବା, ମାନ୍ଦା, ଧାନଖଲାର ଗେଟ୍, ଧାନ ଚାଉଳ ଥିବା ବଡ଼ ମାଟି ପାତ୍ର

**ଘୁମାହେବା** - *ଗ:* (ବି.) : ବାକ୍‌ଶକ୍ତି ହୀନ ହୋଇ ରହିବା

**ଘୁମୁଟା** - *ବ୍:* (ବି.) : ଏକ ପ୍ରକାର ଘାସ

**ଘୁମୁରା** - *ଅନେ:* (ବି.) : ବାଦ୍ୟ ବିଶେଷ, କଳାହାଣ୍ଡିର ପ୍ରସିଦ୍ଧ ଲୋକ ବାଦ୍ୟ, ଝୁମୁରା, ନାଚଗୀତ, ଏକ ପ୍ରକାର ବାଦ୍ୟଯନ୍ତ୍ର, ଘଉଡ଼ିନେବା

**ଘୁମୁରିଲେ** - *ସ:* (କ୍ରି.) : ଖଣ୍ଡିଉଡା ଦେଲେ

**ଘୁମେଇବା** - *ଅନେ:* (କ୍ରି.) : ଅର୍ଦ୍ଧନିଦ୍ରିତ, ଢୁଳେଇବା ନିଦ୍ରାର ପୂର୍ବ ଅବସ୍ଥା, ଝୁମୁରିବା, ଗମ୍ଭୀର ଭାବରେ ବସିରହିବା

**ଘୁମେର୍** - *କଳା:* (ବି.) : ଘିମିରି

**ଘୁମ୍ ଖାଇବା** - *ନୂ:* (କ୍ରି.) : ଉପାୟ ବାହାର କରି ନ ପାରିବା, ଚୁପ୍ ହୋଇଯିବା

**ଘୁରଡ୍** - *ଗଦ୍ୟ:* (ବି.) : ଏକ ପାହାଡ଼ିଆ ଜୀବ

**ଘୁରନା** - *ନବ:* (ବି.) : ଚୂର୍ଣ୍ଣ କରିବାପାଇଁ ପଥର ନିର୍ମିତ ବସ୍ତୁ

**ଘୁରମୁସେଇ** - *ସୁ:* (ବିଂ.) : ଘୋଡ଼ିଘାଡ଼ି, ଅଣାୟତ୍ତ

**ଘୁରରେଖା** - *ନୂ:* (ବି.) : ଝିଟିପିଟି

**ଘୁରଲି** - *ସୁ:* (ବି.) : ଛୋଟଫଳ

**ଘୁରା** - *ଅ:ସୁ:ଦେ:* (ବି.) : ଖୀରସା, ଛୋଟ କୁଡ଼ିଆ ଘର, ପାଳୁଅ କ୍ଷୀରି, ବୁଲାଣିଆ ବାଟ

**ଘୁରାପେଡ଼ି** - *ଗ:* (ବି.) : ଶିଶୁଙ୍କ ଚେରମୂଳି ଔଷଧ ବଟୁଆ

**ଘୁରିବା** - *ବ୍:* (କ୍ରି.) : ଫେରିଆସିବା

**ଘୁରୁଣିଆ** - *ବ୍:* (ବି.) : କଙ୍କି

**ଘୁରେନ୍** - *ସ:* (ବି.) : ବାଡ଼ (ପ୍ରାଚୀର)

**ଘୁର୍‌ଘୁରିକା ପୁକ** - *ବ୍:* (ବି.) : କଙ୍କି

**ଘୁର୍‌ମୁସେଇ** - *ବ:* (କ୍ରି.) : କଚାଡ଼ି ହୋଇ ପଡ଼ିବା

**ଘୁର୍‌ରେଇବା** - *କଳା:* (କ୍ରି.) : ନାକରେ ଶବ୍ଦ କରିବା, ଭୟ ସୃଷ୍ଟି କଲା ଭଳି ଅନ୍ୟକୁ ଗମ୍ଭୀର ଭାବେ ଦେଖିବା

**ଘୁର୍‌ଲି** - *କଳା:* (ବିଂ.) : ଛୋଟ, ଅତିଛୋଟ

**ଘୁର୍‌ଲିଆ** - *ନୂ:* (ବି.) : କଲକପାତି

**ଘୁଲ** - *ଚ୍।:* (ବି.) : କୁଣ୍ଡା ରଖିବା ପାତ୍ର

**ଘୁଲ୍‌ଘୁଲା** - *ଝ୍।:ସ:ସୁନ:* (ବି.) : ବଡ଼ ଘୁଙ୍ଗୁର

**ଘୁଲା** - *କଳା:* (କ୍ରି.) : ଘୋଳେଇବା, ପକ୍ଷୀ ଅଣ୍ଡାରୁ ଛୁଆ ନକରି ପରିତ୍ୟକ୍ତ କରିବା

**ଘୁଲା ଘୁଷା** - *ଗ:* (ବି.) : ଚଉରଙ୍ଗି ଖେଳ

**ଘୁଲାବାର** - *ସୁନ:* (କ୍ରି.) : ତରଭୁଜ ଭିତରେ ଭିତରେ ସଢିଯିବା

**ଘୁଲି** - *ଅନେ:* (ବି.) : ଗେଣ୍ଡା

**ଘୁଲିକାଁକ, କାଁକ** - *ସୁନ:* (ବି.) : ସାରସ, ବଗ ଜାତୀୟ ବଡ ଥଣ୍ଟିଆ ପକ୍ଷୀ

**ଘୁଲ୍‌ଘୁଲା** - *ଦେ:ଅ:* (କ୍ରି.ବିଂ.) : ପଚାଫଳ, ମିଳେଇଯିବା

**ଘୁଲଦହି** - *ଚ୍।:* (ବି.) : ଘୋଳଦହି

**ଘୁଲାଇବା** - *ଦେ:* (କ୍ରି.) : ପଚିସଢି ନଷ୍ଟ ହେବା

**ଘୁଳେଇବା** - *ଚ୍।:* (କ୍ରି.) : ଘୋଳାବିନ୍ଧା ହେବା

**ଘୁଷ** - *କେ:ଦେ:* (ବି.) : ଲାଞ୍ଚ

**ଘୁଷ୍‌ବା** - *ସ:* (କ୍ରି.) : ମୁଖସ୍ଥ କରିବା

**ଘୁଷ୍‌ରା** - *ନୂ:ଦେ:କଳା:* (ବି.) : ଶୂକର, ଘୁଷୁରୀ, ଉପରୁ ତଳକୁ କାଠଗଣ୍ଡି ବଳଦ, ପୋଡ ଯୋଗେ ଟାଣିବା

**ଘୁଷା** - *କଳା:* (ବି.) : ମୁଷ୍ଟିଘାତ, ଘୋଷା, ବାରମ୍ବାର ଉଚ୍ଚାରଣ, ପାଳି

**ଘୁଷି କନା** - *ଗ:* (ବି.) : ଲେଙ୍ଗୁଟି

**ଘୁଷୁରିଆ** - *ନ:ଦେ:ସ:* (ବି.ବିଂ.) : ଏକ ଯାଯାବର ଶ୍ରେଣୀୟ ଲୋକ; ଘୁଷୁରୀ ପାଳୁଥିବା ଜାତି ବିଶେଷ, ନୀଚ ଜାତି, ଘୁଷୁରି ପାଳକ

**ଘୁସ୍‌ରା** - *ସ:* (ବି.) : ଅଣ୍ଡିରା ଘୁଷୁରୀ

**ଘୁସକାରା** - *ରା:* (ବି.) : ଝୁଡ଼ିକାଠ

**ଘୁସା** - *ଦେ:ରା:* (ବି.) : ବିଧା, କ୍ରୋଧ

**ଘୁସି** - *ରା:କୋ:* (ବି.) : ନାରୀମାନଙ୍କର ଅନ୍ତର୍ବାସ

**ଘୁସି ମାରିବା** - *ଗଙ:ନବ:* (କ୍ରି.) : କଛା ମାରିବା, ହାତ ମୁଠା କରି ମାରିବା

**ଘୁଁସ୍** - *ବର:* (କ୍ରି.) : ଘୋଷିବା

**ଘୁଁସ୍‌ରା** - *ବର:ସୁନ:* (ବି.ବିଂ.) : ଘୁଷୁରୀ

**ଘୁଂଡ଼ିବା** - *ବୌ:* (କ୍ରି.) : ତଳେ ଗଡ଼ିବା

**ଘୂତପୁତ** - *ସୁ:* (ବି.) : ପଛଘୁଞ୍ଚା

**ଘୂଣ** - *ଦେ:* (ବି.) : କାଠପୋକ

**ଘୂଣାକ୍ଷର** - *ଦେ:* (ବି.) : କାଠପୋକ କାଠକାଟି କରିଥିବା ଛିଦ୍ର

**ଘୂମାଟିଆ** - *ଅ:ଗଦ୍ୟ:* (ବିଂ.) : ଘୂମାଇବା ଅବସ୍ଥା

**ଘୂରପାକ** - *ଗଦ୍ୟ:* (ବି.) : ଚକ୍କର

**ଘୂରା** - *ସ:* (ବି.) : ଅଖ

**ଘୂରା ଦେବା** - *ବୌ:* (କ୍ରି.) : ବାଡ଼ ଦେବା

**ଘୂରାବା** - *କଳା:* (କ୍ରି.) : ଘୂରଇବା, ଘୂର୍ଣ୍ଣନ କରିବା, ବୁଲେଇବା

**ଘେଇଡ଼ା** - *ପୁ:* (ବିଂ.) : ଚତୁର, ଧୂର୍ତ୍ତ

**ଘେଙ୍ଗଟା** - *ବ୍ରୀ:* (ବି.) : କ୍ରୋଧଯୁକ୍ତ ଧମକ

**ଘେଙ୍ଗଲାବା** - *ସ:* (କ୍ରି.) : ବାସି ଜିନିଷ ଲାଲୁଆ ହେବା

**ଘେଙ୍ଗଲିଆ** - *ସ:* (ବିଂ.) : ନାଲୁଆ ଜିନିଷ

**ଘେଙ୍ଗଳ** - *ଦେ:* (ବିଂ.) : ଢିଲା

**ଘେଙ୍ଗା** - *ବ୍ରୀ:* (କ୍ରି.ବି.) : କାମ

**ଘେଟୀ** - *କଳା:* (ବିଂ.) : ସାମାନ୍ୟ ଛୋଟୀ

**ଘେଞ୍ଚାଇବା** - *ଦେ:* (କ୍ରି.) ଛୋଟେଇ ଛୋଟେଇ ଚାଲିବା

**ଘେଞ୍ଚ୍ ପେଞ୍ଚ୍** - *ଦେ:* (ବି.) : କାମ କରିବାକୁ ଅନିଚ୍ଛୁକ

**ଘେଟଘେଟେଇ ଯିବା** - *ବର:* (କ୍ରି.) : କାର୍ଯ୍ୟ ସାଧ କରି ନ ପାରିବା

**ଘେଡା** - *ରା:* (ବି.) : କବାଟ ବନ୍ଦକରିବା ସିକୁଳି

**ଘେଡୁ** - *ବ୍ରୀ:* (ବି.) : ଗଛର ଗ୍ରୀବାଦେଶ

**ଘେତାବା** - *ସ:* (କ୍ରି.) : ଲକ୍ଷ୍ୟ ରଖିବା

**ଘେତାବାର** - *ସୁବ:* (କ୍ରି.) : ଚାରିପଟରୁ ଲୋକ ଲଗେଇ ଧରିବାର କ୍ରିୟା, ଠାବ କରିବା

**ଘେନ୍-ଘେନ୍‌ତା** - *ଦେ:* (ବିଂ.) : ଚାଙ୍ଗୁ ବାଦ୍ୟର ତାଳ

**ଘେନ୍‌ବା** - *କଥ:କଳା:ମ:* (କ୍ରି.) : କିଣିବା, ଘେନିବା

**ଘେନ୍‌ସିଁ** - *କଳା:* (କ୍ରି.) : କ୍ରୟକରେ

**ଘେନାଇବା** - *ସଂ:* (କ୍ରି.) ମନାଇବା; ବୁଝାଇବା

**ଘେନି** - *ଗ:ଦେ:* (ଅ.ବି.) : ନିମନ୍ତେ, ପାଇଁ, କିଣି

**ଘେନିଘେନାଇ** - *ଦେ:* (ବି.) : ରାଜି କରାଇବା

**ଘେନିବା** - *ଦେ:କଳା:* (କ୍ରି.) : ଶୌଚହେବା, କିଣିବା, କ୍ରୟ କରିବା

**ଘେପ୍‌ଚାବା** - *ସ:* (କ୍ରି.) : ଲୁଚେଇ ନେବା

**ଘେର** - *ସଂ:କେ:ଢେ:ଦେ:* (ବି.) : ବାଡ଼, ସୀମା, କ୍ଷେତ ବା ବଗିଚା ଚାରିପାଖର ବାଡ଼

**ଘେରଉ** - *ଦେ:ସ:* (ବି.) : ଅବରୋଧ, କାମ ପାଇଁ ଘେରି ରହିବା

**ଘେରଣ** - *ଗ:ପଦ୍ୟ:* (ବି.) : ବେଷ୍ଟନ, ବେଢ଼ିବା

**ଘେରବନ୍ଦୀ** - *ପଦ୍ୟ:* (ବି.) : ଚାରିଆଡ଼େ ବାଡ଼ାବନ୍ଦି, ଜମିର ଚତୁର୍ଦ୍ଦିଗସ୍ଥ ପରିଧିର ମାପ, ଚାରିଆଡ଼ ବାଡ଼ଦ୍ୱାରା ବେଷ୍ଟିତ ହୋଇଥିବା

**ଘେର ବେଣ୍ଟ** - *ସଂ:* (ବିଂ.) : ଶିକାର କରିବାର ଏକ ପଦ୍ଧତି

**ଘେରା** - *ଢେ:ପଦ୍ୟ:ନ:ଦେ:* (ବି.) : ପାଉଁଜି, ବେଷ୍ଟନ, ବେଢ଼ିବା ଚକ୍ରାକାରରେ

ଘୂରିବା, ପ୍ରଦକ୍ଷିଣ, ଚାରିପାଖରେ ବୁଲିବା, ବେଷ୍ଟିତ, ନିର୍ଦ୍ଦିଷ୍ଟ ଅଞ୍ଚଳରେ ବାଡ଼ ବୁଲାଇବା, ବେଢ଼ା ବୁଲିବା

**ଘେରାଏ** - *ପଦ୍ୟ:ଦେ:* (କ୍ରି.ବିଂ.) : ଚାରିଆଡ଼େ ଥରେ ବୁଲି, ଥରେ, ବେଢ଼ାଏ

**ଘେରି** - *ଗ:* (ବି.) : ହାଡ଼ି

**ଘେରିଯିବା** - *ନ:* (କ୍ରି.) : ଆକ୍ରମଣ ଢଙ୍ଗରେ ବେଢ଼ିଯିବା, ବୃତ୍ତାକାର ହଗିବା

**ଘେରୁଆ** - *ଗଦ୍ୟ:* (ବି.) : ବତୀ,ଫିତା

**ଘେରେଇବା** - *ନ:* (କ୍ରି.) : ବାଡ଼ ପକାଇବା

**ଘେସ୍‌ରି** - *କଳା:* (କ୍ରି.ବିଂ.) ପର୍ଯ୍ୟାପ୍ତ ପରିମାଣରେ

**ଘେସଘେସା** - *ସୁ:* (ବି.ବିଂ.) : ଅଭ୍ୟସ୍ତ

**ଘେସଡ଼ା** - *କୋ:ରା:* (ବିଂ.) : ନଛୋଡ଼ବନ୍ଧା, ଅପମାନକୁ ଯେ ଭୟ କରେନାହିଁ

**ଘେସରା** - *ରା:* (ବି.ବିଂ.) ପାଦରେ ଘସିହୋଇ ପଡିଥିବା ବାଟ

**ଘେସେର୍‌ଘେସା** - *ଦେ:* (ବିଂ.) : ସଦାସର୍ବଦା

**ଘେସ୍ରାନି** - *କଳା:* (ବି.) : ଘେସ୍‌ରେଇବା ବା ଘୋଷାରିବା ପ୍ରକ୍ରିୟା

**ଘେସ୍ରେଇବା** - *କଳା:* (କ୍ରି.) : ଘୋଷାରିନେବା

**ଘେଁଘଲ** - *ସୁ:* (ବିଂ.) : ତରଳ, ଅଠାଳିଆ

**ଘେଁଚେଇ ଘେଁଚେଇ** - *ସ:* (ବିଂ.କ୍ରି.) : ଧୀରେ ଧୀରେ, ଛୋଟେଇ ଛୋଟେଇ

**ଘେଁଷରା** - *ବୌ:* (ବି.) : ମାଛ୍‌ରି ଜାତୀୟ ମାଛ

**ଘେଁଷରିବା** - *ଗଢ଼:ସ:* (କ୍ରି.) : ଘୁଷୁରିବା, ପେଟେଇ ପେଟେଇ ଯିବା

**ଘୋଘୋ** - *ଦେ:ସଂ:କ:* (ବିଂ.ଅ.) : ଭୟଙ୍କର ଶବ୍ଦ, ଗୋଳମାଳ ଶବ୍ଦ, ଜୋର ଶବ୍ଦ

**ଘୋଟ** - *ସୁ:ରା:ଗ:* (ବି.ବିଂ.) : ଜମକ, ଅତି; ଘୋର, ଭବିଷ୍ୟତର ଘଟଣା

**ଘୋଟ୍** - *କଳା:* (ବି.) : ମଜା, କୌତୁକ

**ଘୋଟଣା** - *ଗ:ଗଢ଼:* (କ୍ରି.) : ଚଷା ପାଇଁ ବିଲକୁ ନେବା ରନ୍ଧାଖାଦ୍ୟ, ବିଲକୁ ନେବା ଖାଇବା ପଦାର୍ଥ

**ଘୋଟା** - *ଦେ:ଭ:* (ବି.) ଭାଙ୍ଗପଣା, ଘୋଟିବା ଦଣ୍ଡ

**ଘୋଟାଲ୍** - *କଳା:* (ବି.) : ମଜା, ଆମୋଦ

**ଘୋଟାଳ** - *ଗ:* (ବି.) : ଘଟୁଆଳ, ରଜାଙ୍କ ପାଇକ ବିଶେଷ

**ଘୋଟା ସଜ** - *ଗ:* (ବି.) : ଧୂଆଁ ପତ୍ରକୁ ଘୋଟି ନାସ ପ୍ରସ୍ତୁତ କରିବା କାଠଦଣ୍ଡ

**ଘୋଟିବା** - *ଗ:ସଂ:* (କ୍ରି.) : ମର୍ଦ୍ଦନ କରିବା, ବାଟିବା, ଘୋଡ଼ାଇବା, ଢାଙ୍କିବା, ଘୋରିବା

**ଘୋଟୁଲ** - *ଗଦ୍ୟ:* (ବି.) : ଧାଂଡ଼ା, ଧାଂଡ଼ୀଙ୍କ ମିଳନ ସ୍ଥଳ

**ଘୋଢ଼** - *ପଦ୍ୟ:* (ବି.) : ଛତାର ପଶ୍ଚାଦ୍ ଭାଗ, ଆଚ୍ଛାଦନ, ଖୋଳ

**ଘୋଡ଼ା** - *ଦେ:ନ:ନବ* (ବି.) : ଘୋଟକ, ଢାଙ୍କିବା, ଅଶ୍ୱ, କିଳିଣୀ

**ଘୋଡ଼ାଖୁର** - *କଳା:* (ବି.) : ଗୁଡ଼ାଖୁ

**ଘୋଡ଼ାଚଢା** - *ଦେ:* (ବିଂ.) : ଧନୀ, ମାନୀ, ଗୁଣୀ, ଜ୍ଞାନୀ

**ଘୋଡ଼ାଡିମ୍ବ** - *କେ:ଖୋ:* (ବି.) : କିଛି ନାହିଁ, ମୂଲ୍ୟହୀନ, ଗୋପନୀୟ

**ଘୋଡ଼ା ଥୋବଣା** - *ଗ:* (ବିଂ.) : ବ୍ୟଙ୍ଗ ଅର୍ଥରେ ଲମ୍ବାମୁହଁ ବାଲା ମଣିଷ

**ଘୋଡ଼ାପଟା** - *ଦେ:* (ବି.) : ଉପରକୁ ଉଠିବା ପାଇଁ କାଠ ପଟାରେ ତିଆରି ଭାଡ଼ି

**ଘୋଡ଼ା ବେଜ୍ଜିତ୍** - *ସଂ:* (କ୍ରି.ବି.) ଖୁବ୍ ଅପମାନ

**ଘୋଡ଼ାମୁହାଁ** - *କେ:* (ବିଂ.) : ଅଯୋଗ୍ୟ

**ଘୋଡ଼ିଆ** - *ସଂ:* (ବି.) : ମୂର୍ତ୍ତି ତିଆରି ପାଇଁ ଖଡ଼ମା, ଠେକରା

**ଘୋଡ଼ୀ** - *ଢେ:* (ବି.) : ଚଣ୍ଡୀ, ମାଇ ଘୋଡ଼ା

**ଘୋଡ଼ିଆ** - *ଙ:ନ:ଙ:* (ବି.) : କାଠରବେଞ୍ଚ, ଠେକରା, କାଠ ଖ୍ୱିଡ଼ିକି (ଛୋଟ ଧରଣର), ଧାନପିଟା ଉପକରଣ

**ଘୋଡ଼ିଆ ଲଗାଇ ଦେବା** - *ସଂ:* (କ୍ରି.ବିଂ.) : କାନ ପାଖରେ ବନ୍ଧୁକ ମୁନ ଲଗାଇ ଦେବା

**ଘୋଡ଼ିଚି** - *ଙ:* (ବି.) : ଧାନ ପିଟିବା କାଠ ଉପକରଣ

**ଘୋଣୀ** - *ଢେ:* (ବି.) : ଘୁଷୁରୀ

**ଘୋର** - *ଙ:ନ:କେ:* (ବି.ବିଂ.) : ଘୋର କଳିକାଳ, ବହୁତ, ଭୟଙ୍କର, ଗଭୀର

**ଘୋରଣା** - *ରା:ନ:ଖୋ:* (ବି.) : ଶସ୍ୟକୁ ପାଳ କରିବା, ଚକି, ପଥରର ବୃତ୍ତାକାର ଦୁଇ ଫାଳ, ପଥରକୁ ଗୋଲାକୃତି କରି ତିଆରି ହୋଇଥିବା ଏକ ଯନ୍ତ୍ର, ଏଥିର

**ଘୋରସର** - *ନ:* (ବି.) : ବାଦାନୁବାଦ

**ଘୋରିଘୋରି** - *ନ:କେ:* (କ୍ରି.ବିଂ.ଅ.) ଘଷିଘଷି, ବୁଲି ବୁଲି

**ଘୋର୍‌ଲୋ** - *କଳା:* (ବି.) : କୌଣସି ଉଚ୍ଚ ସ୍ଥାନରୁ ଖସିବା, ଧାନ୍ୟାଦି ଶସ୍ୟକୁ କୁଢେଇବାର ଶୀଘ୍ରତା ଓ ତାର ଶବ୍ଦ ବା ନାଦ

**ଘୋଲ** - *ସୁବ:* (ବି.) : ତରଳ ଆସ୍ତରଣ, ସିମେଣ୍ଟ ତରଳ ମିଶ୍ରଣ

**ଘୋଲି** - *ସୁ:ରା:* (ବି.) : ମିଲାଇ, ବଡ଼ପାଟି

**ଘୋଲେଇବା** - *ରା:* (ବି.) : ମାଂସପେଶିର ଯନ୍ତ୍ରଣା, ଘୋଳେଇବା

**ଘୋଲ୍ ଘୋଲ୍କା** - *କଳା:* (ବିଂ.) : ସଂପୂର୍ଣ୍ଣ ବା ଅତିଶୟ ପଚିଯିବା

**ଘୋଳିଆ, ଗଳିଆ** - *ଗ:* (ବି.) : କିଆରିର ଜଳନିର୍ଗମନ ଛିଦ୍ର

**ଘୋଳି ହେବା** - *ସଂ:ନ:* (କ୍ରି.) : କାୟିକ ବଥା ହେବା; ବିନ୍ଧା ଛିଟିକା ହେବା, ବିନ୍ଧିବା, ବଥାହେବା

**ଘୋଷ୍** - *ଯା:ଦେ:* (କ୍ରି.ବି.) : ଘୁଷ୍, ଲାଞ୍ଚ

**ଘୋଷକ** - *ସଂ:* (ବି.) : ଉପସ୍ଥାପନ କରୁଥିବା ବ୍ୟକ୍ତି, ଘୋଷକ

**ଘୋଷରା** - *ପଦ୍ୟ:କେ:* (ବି.ବିଂ.) : ଭୂମିରେ ପକାଇ ଟାଣିବା, ଘୋଷାରିବା କର୍ମ,

ଉଚ୍ଚ ସ୍ଥାନକୁ ନିମ୍ନକୁ ସହଜରେ ଗାଡ଼ି ଘୋଡ଼ା ଆଦି ଯିବା ନିମିତ୍ତ ପ୍ରସ୍ତୁତ ଗଡ଼ାଣିଆ ପଥ, ଗଡାଣିଆ ରାସ୍ତା

**ଘୋଷି** - *ଦେ:* (ବି.) : ବିଧା

**ଘୋଷିବା** - *ପଦ୍ୟ:ନ:* (କ୍ରି.) : ପାଠ କରିବା, ଘୋଷଣା କରିବା, ମୁଖସ୍ଥ କରିବା, ପୁନରାବୃତ୍ତି କରିବା, ପୁନଃପୁନଃ ଉଚ୍ଚାରଣ କରିବା, ଆବୃତ୍ତି କରିବା, ବାରମ୍ବାର ପଢିବା

**ଘୋସାରିବା** - *କେ:* (କ୍ରି.) : ଟାଣି ଟାଣି ନେବା

**ଘୋଂଗୋ** - *କଳା:* (ବି.) : ନଇଁବା, ଲଇଁବା

**ଘଁବ୍‌ରାବା** - *ବଇ:ସ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ଘଁବ୍‌ରିବା** - *ସ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ଘଁଣି** - *ବଇ:* (ବି.) : ଛୋଟଜାତୀୟ ମାଛ ଧରିବାର ବାଉଁଶ ନିର୍ମିତ ବେଦା ବିଶେଷ

**ଘଁସିଆ** - *ବଇ:* (ବି.) : ହରିଜନ ଶ୍ରେଣୀର ଏକ ଜାତି



**ଚଅଟ ଚଂପା** - *ଗ୍ରା:* (ବି.) : ସୁନ୍ଦରୀ ନାରୀ

**ଚଅଁଫଳା** - *ସଂ:* (ବିଂ.) : ଚଞ୍ଚଳମତି, ଅସ୍ଥିର

**ଚଅଁର** - *ଅନେ:* (ବି.) : ନାରିକେଳ ଗଛର ଫୁଲପେଣ୍ଡା, ଚାମର ମଡିଆ, ଖଜୁରି, ମକା ଫୁଲ, ଚାମର, ଫୁଲ ଫଳର ସଂକେତ, ଚମରୀ ବା କପିଳଗୌର ଲାଙ୍ଗୁଳର ଲମ୍ବ ଲୋମଗୁଚ୍ଛ ଏକତ୍ର ମୂଳରେ ବନ୍ଧାଯାଇ ତିଆରି ହୋଇଥିବା ଚାମର, ନିଶୁଣିର ଆଡ଼ିକାଠ

**ଚଅଁରଛାଞ୍ଚୁଣୀ** - *ସଂ:* (ବି.) : ଚଅଁରଝାଡୁ, ଫୁଲଝାଡୁ

**ଚଅଁର ପକାଇବା** - *ଦେ:* (କ୍ରି.) : ଫୁଲ ଧରିବା

**ଚଅଁର ମୁଠା** - *ଦେ:ପଦ୍ୟ:* (ବି.) : ପାଲାବାଲାଙ୍କ ଚାମର, ଚଅଁର ମୁଠି, ପୂଜା କରୁଥିବା ସମୟରେ ପାଲାବାଲା ଯେଉଁ ଚଅଁର ବ୍ୟବହାର କରନ୍ତି, ଚାମରର କେଶଗୁଚ୍ଛ ଏକତ୍ର ବନ୍ଧାଯାଇ ଯେଉଁ ସ୍ଥାନରେ ବେଣ୍ଟସଙ୍ଗେ ସଂଯୁକ୍ତ କରାଯାଇଥାଏ

**ଚଅଁରିବା** - *ଦେ:କେ:ପଦ୍ୟ:ଭ:* (କ୍ରି.) : ଜକ୍‌ଜକ୍ ହେବା, ହାଣ୍ଡି ଫାଟିଯିବା, ଚଅଁର କାଢିବା, ଚଅଁର ପକାଇବା ଦେଖ, କୌଣସି ଭଙ୍ଗପ୍ରବଣ ପଦାର୍ଥ ଫାଟିଯିବାର ପୂର୍ବାଭାସ ପ୍ରକାଶ କରିବା, ଘରକଥା ନ ବୁଝି ଇତସ୍ତତଃ ବୁଲିବା, ସୃଷ୍ଟି ହେବା

**ଚଇ** - *ଗ୍ରା:* (ବି.) : ଚଇତନ ଚୁଟି, ଲଣ୍ଡିତ ମସ୍ତକରେ ଚୁଟି

**ଚଇତ** - *ଅନେ:* (ବି.) : ଚୈତ୍ର ମାସ, ବସନ୍ତଋତୁର ଶେଷ ବା ଦ୍ୱିତୀୟ ମାସ

**ଚଇତନ** - *ଅନେ:* (ବି.) : ମାଢ଼, ଚିତା ଚଇତନ, ଚେଙ୍ଗ, ଚୈତନ୍ୟ ଠାକୁର, ଲଣ୍ଡାମୁଣ୍ଡରେ ଅଳ୍ପଚୁଟି, ପଦ୍ୟ, ଚେତା, ଚେତନା, ଜ୍ଞାନକ, ଚୈତନ୍ୟ, ବଙ୍ଗଦେଶର ପ୍ରସିଦ୍ଧ ଧର୍ମପ୍ରଚାରକ, ଶ୍ରୀଚୈତନ୍ୟ, ପ୍ରହାର, ଯାହାଦ୍ୱାରା ଚେତନା ଉତ୍ପନ୍ନ ହୁଏ, ଚୁଟି,

**ଚଇତା ବିରି** - *ଗ୍ରା:* (ବି.) : ଚଇତ୍ର ମାସରେ ଯେଉଁ ବିରି ଅମଳ ହୁଏ

**ଚଇତି** - *ମା:ଗ୍ରା:ନ:* (ବିଂ.) : ଚୈତ୍ର ମାସ ସମ୍ବନ୍ଧୀୟ, ବସନ୍ତଋତୁ

**ଚଇତିଆଳି** - *ଗ୍ରା:* (ବି.) ଚୈତ୍ରମାସ ସମ୍ବନ୍ଧୀୟ

**ଚଇତିଘୋଡ଼ା** - *ପଦ୍ୟ:ଦେ:* (ବି.) : ଚୈତ୍ରପୂର୍ଣ୍ଣମୀରେ କେଉଟମାନେ ବତା ଥାଟ ଉପରେ ଲୁଗା ଘେରାଇ ଯେଉଁ ଘୋଡାର ରୂପ ନଚାନ୍ତି, ଚୈତ୍ରମାସର ଏକପ୍ରକାର ନାଚ ଓ ଗୀତ, ଘୋଡ଼ାରୂପୀ ବାସେଳୀ

**ଚଇନ୍** - *ଦେ:* (ବି.) : ଆରାମ, ସୁସ୍ଥ, ସୁସଜ୍ଜିତ

**ଚଇନା** - *କେନ୍ଦୁ:* (ବି.) ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ଚଇନ୍ ଫିଟ୍** - *ପଦ୍ୟ:* (ବି.) : ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ବାବୁଗିରି ଉପଯୁକ୍ତ ସାଜସଜ୍ଜାରେ ସଜ୍ଜିତ, ଲମ୍ବଶାଟ ପଟାବୃତ

**ଚଇପଟି** - *ଗ:* (ବି.) : ଜଞ୍ଜାଳ

**ଚଉଆ** - *ଅ:* (ବି.) : ଅଳତୀ (ଏକପ୍ରକାର ରୋଗ)

**ଚଉ ଆଖିଆ** - *ଦେ:ଢେ:* (ବିଂ.) : ଚାରି ଆଡ଼କୁ ନଜର ରଖିବା, ବୁଦ୍ଧିଆ

**ଚଉକ** - *ଦେ:କ:ପଦ୍ୟ:ଗ:* (ବି.) : ଚାରିକୋଣିଆ ସ୍ଥାନ, ଚାଳଘରର ଚାରିପଟରେ ଥିବା କାଠ, ଯାହା ଉପରେ ଚୁଅଗୁଡ଼ିକ ରହିଥାଏ, ଚାରିଆଙ୍ଗୁଳ ପରିମାଣ, ଚତୁଷ୍ପଦ, ବନ୍ଧୁଲୋକଙ୍କ ମିଳନସ୍ଥଳ, ଗଞ୍ଜା, ନୃତ୍ୟର ଏକ ମୁଦ୍ରା

**ଚଉକଣ୍** - *ସୁବ:* (ବିଂ.) : ଶକ୍ତ, ଅତିଶୟ

**ଚଉକତି** - *ଗ:ସଂ:ନ:ଅ:* (ବି.) : ଚାରିପାଖ, ହାତଗୋଡ଼ ଚାରି, ଚାରିଆଡ଼, ଚାରିଦିଗ

**ଚଉକନା** - *ଗ:* (ବି.) : ଅସ୍ତ୍ର ବିଶେଷ

**ଚଉକଷ** - *ବ:ସଂ:* (ବିଂ.) : ମଜବୁତ୍, ଟାଣ, ଜୋର ଦାରିଆ; ମଝବୁତ୍

**ଚଉକା** - *ଅନେ:* (ବି.ବିଂ.) : ଚକ, କ୍ଷେତ, ଜମି, ଚୁଲିର ଚାରିପାଖ, ଗଡିଆ, ଛୋଟ ପାଣିଜାଗା, ତାସ୍, ଗଞ୍ଜପା ଓ ତାସଖେଳରେ ଚାରିଗୋଟି ଟିପ ଥିବା ସାର

**ଚଉକା ଜମି** - *ବୌ:* (ବି.) : ବର୍ଗାକାର, ଚାରିଖୁଣ୍ଟିଆ

**ଚଉକାଠ** - *ଦେ:ନ:ପଦ୍ୟ:* (ବି.) : ଦୁଆର ବନ୍ଧ, ଚୌକାଠ(ଦୁଆର ବନ୍ଧ-୪ବାହୁ ବିଶିଷ୍ଟ), ଘରର ଦୁଆର ମୁହଁରେ ବା ଝରକାରେ ଲାଗିଥିବା ଫରମା, ଯହିଁରେ କବାଟ ଝୁଲା ଥାଏ

**ଚଉକି** - *ନ:ଦେ:କେ:ପଦ୍ୟ:* (ବି.) : ଚୌକି, ଖୁର୍‌ସୀ, କୁର୍‌ସି, ବସିବା ଆସନ, ହାତ ଅଳଙ୍କାର, ବସିବା ନିମନ୍ତେ ଚାରିଗୋଡ଼ିଆ କାଷ୍ଠ ବା ପଥରର ଉଚ୍ଚ ଆସନ

**ଚଉକିଆ** - *ପଦ୍ୟ:ନ:ଦେ:କଳା:* (ବି.) ଚଉକିଦାର, ଚାରିକୋଣିଆ, ଚୌକିଦାର, ଗ୍ରାମରକ୍ଷୀ, ଛାଟିଆ, ଚଉକିଦାର

**ଚଉକିଦାର୍** - *କଳା:* (ବି.) : ଗ୍ରାମ୍ୟ ପୋଲିସ୍, ଗ୍ରାମରକ୍ଷୀ ଜଗୁଆଳି

**ଚଉକିନି** - *ଦେ:କୋ:* (ବି.) : ଚଉତି, ଦନା, ପତ୍ରରେ ତଆରି ହୋଇଥିବା ବ୍ୟଞ୍ଜନ ପାତ୍ର

**ଚଉକେ ଚଉକେ** - *କ:* (କ୍ରି.ବିଂ.) : ଖଣ୍ଡେ ଖଣ୍ଡେ

**ଚଉଖୁଟ** - *ସୁ:କଳା:ନୂ:ସୁବ:* (ବି.) : ଚଉକାଠ, ଦୁଆର ବନ୍ଧ, କବାଟରେ ଲାଗୁଥିବା ଦ୍ୱାର ବନ୍ଧର କାଠ,

**ଚଉଠ** - *ପଦ୍ୟ:ଦେ:* (ବି.) : ଚାରିଭାଗରୁ ଏକଭାଗ

**ଚଉଠି** - *ଅନେ:* (ବି.) : ବିବାହର ୪ର୍ଥ ଦିନ କର୍ମ, ଚାନ୍ଦ୍ରମାନ ପକ୍ଷର ଚତୁର୍ଥୀ ତିଥି, ଶିଶୁ ଜନ୍ମର ଚତୁର୍ଥ ଦିବସର କୃତ୍ୟ, ମାସର ଚତୁର୍ଥ ଦିବସ

**ଚଉଠିବେଭାର** - *ପଦ୍ୟ:* (ବି.) : ବିବାହର ଚତୁର୍ଥୀ ବିଧିପାଇଁ କନ୍ୟାଘରୁ ଆସିବା ବେଭାର

**ଚଉଠିରାତି** - *କ:* (ବି.) ବିବାହର ଚତୁର୍ଥଦିନର ରାତି, ସ୍ୱାମୀ ସ୍ତ୍ରୀ ପ୍ରଥମ ମିଳନ

**ଚଉଠେ** - *ଅନେ:* (ବି.ବିଂ.) : ଚାରିଭାଗରୁ ଭାଗେ, ଏକଚତୁର୍ଥାଂଶ ମାତ୍ର, ଫାଳେ

**ଚଉଡ** - *ଅନେ:* (ବି.) : ଚାରି ଭାଙ୍ଗ କରିବା, ଚାରିପରସ୍ତ କରିବା, ଚାରି ପରସ୍ତ, ଲୁଗାଆଦିର ଚାରିଭାଙ୍ଗ, ଚାରିଭାଙ୍ଗରେ ଭଙ୍ଗା ବା ସଜ୍ଜିତ ହୋଇଥିବା, ଲୁଗା ଭାଙ୍ଗିବା

**ଚଉତରା** - *ଦେ:ପଦ୍ୟ:କେ:ନ:* (ବି.) : ଚାନ୍ଦିନି, ବସିବା ପାଇଁ ପ୍ରସ୍ତୁତ ମେଲା, ଚତୁଷ୍କୋଣ ପୀଠ, ପକ୍କା ତୁଳସୀ ଚଉରା, ଚଉବଛା, ଚତୁଷ୍କୋଣ ଜଳକୁଣ୍ଡ, ଚତୁଃକୋଣ ଥିବା ସ୍ଥାନ, ଅଗଣା, ତୁଳସୀଚଉରା

**ଚଉତାଲା** - *ଗ:ପଦ୍ୟ:* (ବି.) : ଚାରି ମହଲା କୋଠା, ଚାରି ତଳ ବିଶିଷ୍ଟ କୋଠା

**ଚଉତି** - *ଦେ:* (ବି.) : ପତ୍ରରେ ତିଆରି ଠୁଲା

**ଚଉଥା** - *ସୁ:* (ବି.) : ଚତୁର୍ଥାଂଶ

**ଚଉଦ ପୁରୁଷ** - *ଦେ:* (ବି.) : ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସାତସାତ ପୁରୁଷ।

**ଚଉଦ ମାଦଳ** - *ଗ:* (ବି.) : ଚଉଦଟି ମୃଦଙ୍ଗ ଏକ ସମୟରେ ବଜାହୋଇ ଅନୁଷ୍ଠିତ କୀର୍ତ୍ତନ

**ଚଉଦୋଳ** - *ପଦ୍ୟ:* (ବି.) : ବଡ଼ ପାଲିଙ୍କି

**ଚଉପଟ** - *ଦେ:ନ:ପଦ୍ୟ:* (ବି.) : ଚାରିପାଖ, ଯେଉଁ କାଠ ଗଣ୍ଡିକୁ ଚାରିପଟରୁ ସମାନ ଭାବେ ସମତଳ କରି ରଖାଯାଇଥାଏ, ଏକ ପ୍ରକାର ପଶାଖେଳ, ସର୍ବନାଶ

**ଚଉପଟିଆ** - *ସୁ:* (ବିଂ.) : ସବୁମତେ ଚତୁର, ପାରିବାର ପଣ ଥିବା

**ଚଉପଟି** - *ନ:* (ବି.) : ଚଉପଦୀ (ସଂଗୀତ), ପତ୍ରଠୋଲା, ଠୁଙ୍ଗା

**ଚଉପଦୀ** - *ଅ:ଦେ:* (ବି.) : ପତ୍ର ଠୋଲା, ଚାରିପଦ ବିଶିଷ୍ଟ କବିତା

**ଚଉପାଢ଼ି** - *ଅନେ:* (ବି.) : ମଣ୍ଡପ, ବସିବା ପାଇଁ ଉଚ୍ଚାସ୍ଥାନ, ବୈଠକ ଘର, କ୍ଷତ୍ରୀୟମାନଙ୍କ ସଭା ଘର

**ଚଉପାଢ଼ିଆ** - *ଯା:* (ବିଂ.) : ଯାହାର ଚଉପାଢ଼ି ଅଛି, ସମ୍ଭ୍ରାନ୍ତ

**ଚଉପିଠିଆ** - *ବୌ:ଗ:* (ବି.ବିଂ.) : ସବୁ କାମରେ ଦକ୍ଷ, ବଳିଷ୍ଠ ଚେହେରା

**ଚଉବଚା** - *ଦେ:* (ବି.) : ଚାରିକୋଣିଆ ପୋଖରୀ ବା ବନ୍ଧ (ଛୋଟ)

**ଚଉଭେଦି** - *ନ:* (ବିଂ.) : ଚାରିପାର୍ଶ୍ୱ(ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ)କୁ ସ୍ପର୍ଶ କରିଥିବା

**ଚଉ ମୁହାଣି** - *ଯା:* (ବି.) : ଚାରିଛକ, ଚାରିମୁହାଣ ଯୁକ୍ତ

**ଚଉରସ** - *ଗ:ନ:ବ:ଦେ:* (ବି.ବିଂ.କ୍ରି.) : ଯେଉଁ ଭୂମିର ଚାରିଆଡ଼ ସମତଳ, ସୁଦୃଢ଼, ବଳ ପ୍ରୟୋଗକରି, ଭିଡ଼ି, ଭଲ, ସମତୁଲ

**ଚଉରାଗଛ** - *ଅ:* (ବି.) : ତୁଳସୀଗଛ

**ଚଉରୀ ଖଞ୍ଜା** - *ଗ:* (ବି.) : ଅଗଣା ଥିବା ଘର

**ଚଉଶିଙ୍ଗା** - *ଗ:* (ବି.) : ମୃଗ ବିଶେଷ

**ଚଉସାର** - *ପୁ:* (ବି.) : ଗଞ୍ଜପା, ଏକ ଖେଳ

**ଚଉହଦି** - *କେ:ଦେ:ଛ:* (ବି.) : ସୀମା, ଚାରିପାଖ, ପରିସୀମା, ଚାରିପଟ

**ଚଉଁଖୁଟ୍‌** - *ସ:* (ବି.) : ଚଉକାଠ

**ଚଉଁର** - *ନବ:* (ବି.) : ଚାମର

**ଚଉଁରା** - *ଛ:ନବ:* (ବି.) : ତୁଳସୀଗଛପିଣ୍ଡି, ବୃନ୍ଦାବତୀ, ଚାନ୍ଦିନୀ

**ଚଉଁରି** - *ଅନେ:* (ବି.) : ସ୍ତ୍ରୀ ଲୋକମାନଙ୍କର କେଶ ବନ୍ଧନ ପାଇଁ କେଶ, କୃତ୍ରିମ କେଶ, କେଶବନ୍ଧନ ରଜ୍ଜୁ, ଚାମର, ହାତଗହଣା

**ଚଉଁରି ଫାଟ** - *ଗ:* (ବିଂ.) : ସାମାନ୍ୟ ଫାଟ, ଯେଉଁଫାଟ ଆଖିକୁ ଦେଖାଯାଏ ନାହିଁ

**ଚଏଣ୍‌** - *ବନ:* (ବି.) : ଓଠ

**ଚଏତ୍‌** - *ନୁ:* (ବି.) : ଚୈତ୍ର

**ଚକ** - *ଅନେ:* (ବି.) : ଗାଡିର ଗୋଲାକାର ଚକ, ଜମି ସମୂହ, ଜମିର ପରିମାଣ ସୂଚକ, ନିର୍ଦ୍ଦିଷ୍ଟ ଅଞ୍ଚଳର ଭୂଖଣ୍ଡ, ଧାନକ୍ଷେତ ଏରିଆ, ଫୁଲ ଖଡି, ଚକ୍‌ ଖଡ଼ି, ବାଟି ଖେଳିବା ବେଳେ ଦୁଇଟି ବାଟି ମଧ୍ୟରେ ଯଦି ଚାରିଆଙ୍ଗୁଳି ପରିମିତ ବ୍ୟବଧାନ ରହେ, ତେବେ ତାହା ଚକ୍‌ ହୁଏ, ଝୋଟି

**ଚକ୍‌କର** - *ନ:* (ବି.) : ନିର୍ଦ୍ଦିଷ୍ଟ ସ୍ଥାନରେ ବୁଲାବୁଲି କରିବା

**ଚକ୍‌ଚକିଆ** - *ନ:* (ବିଂ.) : ଉଜ୍ଜ୍ୱଳତର, ଅଧିକ ଉଜ୍ଜ୍ୱଳ, ଆଖି ଝଲସା

**ଚକ୍ଟା** - *ମା:କଳା:ସୁ:* (କ୍ରି.ବି.) : ଦଳିବା, ଚକଟିବା, ମିଶ୍ରିତ ଖାଦ୍ୟ

**ଚକ୍ନି** - *ଅନେ:* (ବି.) : ଦନା,

**ଚକ୍ର ଠୁଙ୍କି** - *ଗ:* (ବି.) : ମୂଲ୍ୟହୀନ ପ୍ରସଙ୍ଗ

**ଚକ୍ଲା** - *ଗ୍ୱ:* (ବି.) : ବାସ କରୁଥିବା ପାହି ଜାଗା

**ଚକଟା** - *ଗ:ଦେ:ଯା:ନ:* (ବି.ବିଂ.) : ଚୂଡ଼ା, କଦଳୀ, ସର୍କରାର ମିଶ୍ରଣ, ଦଳିବା, ଗୋଳେଇବା, ଭରତା, ଦଳାଯାଇଥିବା ବସ୍ତୁ

**ଚକଡା** - *ଅନେ:* (ବି.) : ସୀମା, ଚକଲା, ନିର୍ଦ୍ଦିଷ୍ଟ ପରିମିତ ଜମି, ବଡ଼ଖଣ୍ଡ, ଅଞ୍ଚଳ; ଚଉତରା, ଆସନ

**ଚକଡି** - *କେନ୍ଦୁ:* (ବି) : ଆସନ

**ଚକଡ଼ା ନାଇକ** - *ଗ:* (ବି.) : ଧାନକ୍ଷେତ ଜଗାଳୀ

**ଚକଡ଼ା ଭେଜି** - *ଗ:* (ବି.) : ଅଙ୍କରାନ୍ତି

**ଚକଡ଼ା ଲଗାଣ** - *ଗ:* (ବି.) : ସ୍ଥାନେ ସ୍ଥାନେ ବର୍ଷା

**ଚକତି** - *ପଦ୍ୟ:* (ବି.) : ଚମଡ଼ା, ମୋଟା କାଗଜ ବା କନାର ଗୋଲ ପତଳା ଛୋଟଖଣ୍ଡ, ଟିକିଲି, ତାଳି

**ଚକନି** - *କଣ:ଅ:ସୁ:* (ବି.) : ଦନା, ଚଉପଦୀ

**ଚକବନ୍ଦି** - *ଦେ:ପଦ୍ୟ:* (ବି.) : ଜମିର ସୀମା ସରହଦ୍, ସୀମାନିରୂପଣ

**ଚକମା** - *ଅ:ବୌ:* (ବି.ବିଂ.) : ଧୋକା, ଚାଲାକ୍ କରି ଖସିଯିବା, ଭେଳିକି, ଠକି

**ଚକର** - *ଚଉ:* (ବି.) : ବାଟି ଖେଳର ଏକ ଖେଳ ବିଶେଷ, ଚକ୍ରାକାର, ଚାରିପଟେ ଘୂରିବ

**ଚକର ଛେଉଣ୍ଡା** - *ଦେ:* (ବିଂ.) : ଯେଉଁ ପିଲା ଗର୍ଭରେ ଥିବା ଅବସ୍ଥାରେ ପିତା ମରିଥାନ୍ତି

**ଚକଲା** - *ଗ:ଦେ:* (ବି.) : ନିର୍ଦ୍ଦିଷ୍ଟ ପରିମିତ ଜମି, ଚକଡ଼ା, ଭୂଖଣ୍ଡ

**ଚକଲି** - *ସୁବ:* (ବି.) : ଚକୁଳି ପିଠା

**ଚକଲେଇବା** - *କଳା:* (କ୍ରି.) : ଖାଇଦେବା

**ଚକା** - *କେ:ସୁବ:ଦେ:ସୁ:* (ବି.) : ତୁଛାଟାରେ, ଚକ, ଚେକା, ବର୍ତ୍ତୁଳ, ଗୋଲ

**ଚକାପିଡା** - *ଗ:ଗଡ:* (କ୍ରି.) : ପଦ୍ମାସନ ଭଳି ବସିବା, ଚକାମାରି ବସିବା

**ଚକାବେନି** - *ବ:ସୁବ:* (ବି.) : ଏକ ପ୍ରକାର କେଶ ବିନ୍ୟାସ, ଛନ୍ଦଣୀ ବେଣୀ

**ଚକାମାଉଲି** - *ସଂ:* (ବି.) : ଦୁଇ ଜାନୁକୁ ଛନ୍ଦିକରି ବସିବା ଭଙ୍ଗୀ, ଚକାମାଡ଼ି

**ଚକାମାଣ୍ଡୁ** - *ଗ:ଦେ:* (ବି.) : ଦୁଇଗୋଡ଼ ଛନ୍ଦି ବସିବା, ଚକା ଆସନ, ପଦ୍ମାସନ

**ଚକା ମୁଠିଲି** - *ବୌ:* (କ୍ରି.) : ଗୋଡ଼ଭାଙ୍ଗି ବସିବା

**ଚକାସନ** - *ଦେ:* (ବି.) : ଚକା ଆସନ, ପଦ୍ମାସନ

**ଚକି** - *ଅନେ:* (ବି.) : ଗୁଡ଼ି, ନାରୀର ବର୍ତ୍ତୁଳ ନିତମ୍ବ, ପେଷଣା, ଘୋରଣା, ଚୁରିବାର

ପ୍ରସ୍ତର ଚକ, ଚୂନ, ପେଷା ଚକି, ଜଳା, ବଣିଆକାମରେ ବ୍ୟବହୃତ ଏକ ଉପକରଣ

**ଚକିତାକି** - *ଗଦ୍ୟ:* (ବିଂ.) : ତଉଲଡାଉଲ

**ଚକି ଛଡ଼ାଇବା** - *ଗଞ:* (କ୍ରି.) : ଘୋରଣା ଚକି

**ଚକିତ** - *ବେ:ଛ:ପଦ୍ୟ:* (ବି.ବିଂ.) : ଆଶ୍ଚର୍ଯ୍ୟ, ଭୟ, ଜ୍ଞାତ, ପରିଚିତ

**ଚକିଶାଣ** - *ଯା:* (ବି.) : କମାରର କ୍ଷୁର ପଜାଇବା ଗୋଲାକାର ଯନ୍ତ୍ର

**ଚକୁଆ** - *ଛ:ବେ:ପଦ୍ୟ:ଛ:* (ବି.) : କୋକୁଆ, ଚକ୍ରବାକ ପକ୍ଷୀ, ଚକ୍ରବାକ ପକ୍ଷୀ, ରଥାଙ୍ଗ ପକ୍ଷୀ

**ଚକୁଡିବା, ଚକୁଟିବା** - *ଯା:* (କ୍ରି.) : ମଛିଦେବା, ଦଳିଦେବା

**ଚକୁଲି** - *ମା:* (ବି.) : ପିଠା

**ଚକୁଳି** - *ଅନେ:* (ବି.) ଚକୁଳିପିଠା, ଚାଉଳଚୂନା ଓ ବିରିରେ ତିଆରି ଏକ ପ୍ରକାର ପିଠା, ବିରି ପିଠା, ପିଠଉରେ ତିଆରି ଗୋଲାକାର ପତଳା ପିଷ୍ଟକବିଶେଷ,

**ଚକୁଳିଆ** - *ରା:* (ବିଂ.) : ଭବିଷ୍ୟତବାଣୀ ପ୍ରକାଶକ

**ଚକୁଳିଆ ପଣ୍ଡା** - *ଅନେ:* (ବି.) : ଭିକ୍ଷାବୃତ୍ତି କରୁଥିବା ଏକ ପ୍ରକାର ବ୍ରାହ୍ମଣ(୩ଥର ମାତ୍ର ଗାଁରେ ବୁଲନ୍ତି), ଏକଜାତୀୟ ନୀଚଶ୍ରେଣୀୟ ଭିକ୍ଷୁକ ବ୍ରାହ୍ମଣ

**ଚକେ** - *ନ:* (ବି.କ୍ରି.ବିଂ.) : ଚାରି ଆଙ୍ଗୁଳ (ହାତର ଆଙ୍ଗୁଠି ମାପ), ଚାରି ଆଙ୍ଗୁଠି ପରିମିତ, ଚକ ଥରେ ଘୂରିଯିବା ଦୂରତ୍ୱ, ଚକାଏ, ମନୁଷ୍ୟ ବସିଥିବା ଭୂମି ପରିମିତ, ଚାରିଆଙ୍ଗୁଳ ପରିମିତ, ଚଉକେ

**ଚକେନ୍** - *ଝା:* (ବି.) : ପତ୍ରରୁ ତିଆରି ହୋଇଥିବା ଚଉପତି ଠୋଲା

**ଚକେଇ** - *ସ:ସୂ:କଳା:ନୂ:* (ବି.) : ଚକୁଳି ପିଠା, ଜୁନାଗଡ ବ୍ଲକ ଅନ୍ତର୍ଗତ ଚକୁଳି ନାମକ ଗ୍ରାମ

**ଚକୋଇ** - *ବେ:ପଦ୍ୟ:* (ବି.) : ଚକୁଆ, ଚକ୍ରବାକ (ସ୍ତ୍ରୀ) ପକ୍ଷୀ

**ଚକ୍କର** - *ବେ:* (ବି.) : ମୁଣ୍ଡ ବୁଲେଇବା

**ଚକ୍ର କେଦାର** - *ବେ:* (ବି.) : ଦହିଦହିଆ ଲତା

**ଚକ୍ରଗଣ୍ଡୁ** - *ସଂ:* (ବି.) : ଗୋଲ ତକିଆ, ମାଣ୍ଡି

**ଚକ୍ରଛେଉଣ୍ଡ** - *ସଂ:* (ବିଂ.) : ବାରବୁଲା, ଛତରା, ଅନାଥ

**ଚକ୍ରଜୀବକ** - *ସଂ:* (ବି.) : (ଚକ୍ର+ଜୀବ+ଅକ) କୁମ୍ଭାର

**ଚକ୍ରଦଣ୍ଡ** - *ସଂ:* (ବି.) : ଏକପ୍ରକାର କସରତ ବା ଦଣ୍ଡ

**ଚକ୍ରଧାରା** - *ସଂ:* (ବି.) : ଚକ୍ରର ପରିଧି

**ଚକ୍ର ପାଙ୍ଗୁଳୁ** - *ଗ:* (ବି.) : ଗଞ୍ଜାମର ତେଲୁଗୁ ସଂପ୍ରଦାୟ ପ୍ରସ୍ତୁତ କରୁଥିବା ସାତପୁରୀ ମିଠା

**ଚକ୍ରବର୍ତ୍ତୀ** - *ଦେ:* (ବି.) : ଅଧୀଶ୍ୱର, ବଙ୍ଗାଳୀ ଜାତିରେ ସାଙ୍ଗିଆ, ରାଜାଧିରାଜ

**ଚକ୍ରବାତ** - *ଦେ:* (ବି.) : ଖଣ୍ଡିଆ ଭୂତ

**ଚକ୍ରବାରାଟି** - *ଗଜ:* (ବି.) ବାଡ଼ିକୁ ଚକ୍ରାକାରରେ ବୁଲାଇବା ଖେଳ, ବନାଟି

**ଚକ୍ରବୃଦ୍ଧି** - *ଦେ:* (ବି.) : ସୁଧର ସୁଧ

**ଚକ୍ର ବ୍ୟୂହ** - *ଦେ:* (ବି.) : କୁଟିଳ ପରିବେଶ, ଏକ ପ୍ରକାର ସମର ସଜ୍ଜା

**ଚକ୍ରରବ** - *ସଂ:* (ବି.) : ଘୁଷୁରି

**ଚକ୍ରସେଉଳ** - *ଜ:* (ବି.) ମାଛ, ମାଛ ବିଶେଷ

**ଚକ୍ରିଣୀ** - *ସଂ:* (ବି.) : ରଥ

**ଚକ୍ଷୁର୍ଗହଣ** - *ସଂ:* (ବି.) : ଆଖିଧରା ରୋଗ

**ଚଖ** - *ମ:* (ବି.) : ଆଖି

**ଚଖ୍‌ନି** - *କଳା:* (ବି.) : ଦନା, ପତ୍ରରେ ନିର୍ମିତ ଛୋଟ ପାତ୍ର

**ଚଖଡ଼ା** - *ସୁ:* (ବି.) : ଚାକୁଣ୍ଡା

**ଚଖନା** - *ସୁ:ପଦ୍ୟ:* (ବି.) : ଚାଖିବା ଖାଦ୍ୟ, ମଦ ସହିତ ଖିଆଯାଉଥିବା ଖାଦ୍ୟ

**ଚଖା** - *ଅନେ:* (ବି.ବିଂ.) : ଚଖାଲୋକ, ଉପର ଠାଉରିଆ ଖରାପ ଲୋକ, ଯିଏ ବହୁତ ମୂଲ ଚାଲ କରି ଜିନିଷ କିଣେ ନାହିଁ

**ଚଗ୍‌ରା** - *ଝା:* (ବି.) : ଅନ୍ୟର ଜାଗା ବା ସାମୂହିକ ଜାଗା ଆବରିବା, ଖଣ୍ଡ ଖଣ୍ଡ

**ଚଗଲିଆ** - *ପଦ୍ୟ:ନ:* (ବିଂ.) : ଚଗଲା, ଅସ୍ଥିର

**ଚଗିବା** - *ଗଜ:* (କ୍ରି.) : ଚଢିବା

**ଚଘ୍‌ବା** - *ସ:* (କ୍ରି.) : ଚଢିବା

**ଚଘାଳି** - *ଗ:* (ବି.) : ଗଛ ଚଢିବା ଲୋକ

**ଚଘେଣି** - *କନ୍ଧ:* (ବି.) : ନିଶୁଣି

**ଚଘେନ** - *ସୁ:କଳା:* (ବିଂ.ବି.) : ଗଡ଼ାଣି, ଉଠାଣି, ଘାଟିରାସ୍ତା, ଚଢାଇବା, ମାଛ ଧରିବାର ଏକ ବିଶେଷ କୌଶଳ

**ଚଙ୍କିବା** - *ଅନେ:* (କ୍ରି.ବି.) : ହଲିବା; ଘୁଞ୍ଚିବା, ସ୍ଥାନାନ୍ତର ହେବା, ହଲ୍‌ଚଲ୍ ହେବା

**ଚଙ୍ଗ** - *ଗ:ଦେ:* (ବି.) : ସୁନ୍ଦର, ଦକ୍ଷ, ନିପୁଣ, ସୁସ୍ଥ

**ଚଙ୍ଗ୍ ଚଙ୍ଗ୍** - *ଅନେ:* (ଅ.ବି.ବିଂ.) : ଦେଖେଇ ହେବା ପ୍ରବୃତ୍ତି, ବଡ଼ ଚାଗୁଡ଼ି, ଅସ୍ଥିର, ତରତର, ଚଞ୍ଚଳିଆ, ଏଆଡୁ ସେଆଡୁ ଚାହିଁବା,

**ଚଙ୍ଗଚଙ୍ଗିଆ** - *ଗ:ଦେ:* (ବିଂ.) : ଚଞ୍ଚଳ ପଣ ପ୍ରଦର୍ଶନ କରିବା, ଅସ୍ଥିର, ଅବ୍ୟବସ୍ଥିତ ଚିତ୍ତ

**ଚଙ୍ଗଡ଼** - *ପୁ:* (ବିଂ.) : ଚଞ୍ଚଳ, ଫୁର୍ତ୍ତିବାଜ, ଚେଙ୍ଗା

**ଚଙ୍ଗଲ** - *ଗଦ୍ୟ:* (ବି.) : ଅମେଳ, ତ୍ରୁଟିପୂର୍ଣ୍ଣ

**ଚଙ୍ଗା** - *ଭା:* (ବି.) : ନିଆଖୁଡ଼ା

**ଚଟକେଇବା** - *କେନ୍ଦୁ:* (କ୍ରି.) : ଘୁଞ୍ଚେଇବା

**ଚହୁଁ** - *ଦେ:* (ବି.) : ଚକ୍ଷୁ, ଆଖି

**ଚଛମା** - *ଅ:* (ବି.) : ଚଷମା

**ଚଛରା** - *କନ୍ଧ:* (ବି.) : ବଡ଼ପଥର

**ଚଢ଼ିବା** - *ଗ୍ରା:* (କ୍ରି.) : ଧମକେଇବା, ଆକ୍ରୋଶ ରଖିବା

**ଚଞ୍ଚଳି** - *ଗ:* (ବି.) : କର୍ମଠ ସ୍ତ୍ରୀ, ଚଞ୍ଚଳ ପ୍ରକୃତିର

**ଚଞ୍ଚା** - *ଦେ:* (ବି.) : ତଲେଇ, ମସିଣା, ଚାଞ୍ଚ

**ଚଞ୍ଚା** - *ଗ୍ରା:ଦେ:ସଂ:* (ବି.ବିଂ.) ପାନ ବରଜରେ ହେଉଥିବା ଏକରୋଗ, ତଞ୍ଚା, ତାଞ୍ଚିବା, ଚୋପାହୀନ; ଘାସଶୂନ୍ୟ

**ଚଟ** - *ଅନେ:* (ବି.ବିଂ.) : ଅଭା, କୋରା, ଚଟେଇ, ଆସନ, ତାଳପତ୍ରରେ ନିର୍ମିତ ଚଟେଇ, ସୁସ୍ୱାଦୁ, ପାଲ, ଚଞ୍ଚଳ, ତୁରନ୍ତ

**ଚଟ୍** - *ଚ:* (କ୍ରି.ବିଂ) : ବିଶେଷ ଗରମ ହୋଇଥିବା (ପଦାର୍ଥ)

**ଚଟ୍ କନ୍** - *ସ:ସୁ:କଳା:ଝା:* (ବି.) : ଚାପୁଡ଼ା, ଥାପଡ଼୍

**ଚଟ୍‌କା** - *କଳା:* (କ୍ରି.) : ଚକଟିବା, ଓସାରିଆ ଚେପ୍‌ଟା

**ଚଟ୍‌କିନା** - *କେ:ସଂ:ଗ:ବୌ:* (ଅ.ବି.ବିଂ.) : ଅଳ୍ପ ସମୟରେ, ସହସା, ହଠାତ୍, ଶୀଘ୍ର, ଅତି ଚଞ୍ଚଳ

**ଚଟ୍‌ଠା** - *ବୌ:* (ବିଂ.) : ଅଇଁଠାଖିଆ

**ଚଟ୍‌ନା** - *ସ:* (ବି.) : ଟୋକେଇ

**ଚଟ୍ ପଟାଲା** - *ଝା:* (କ୍ରି.) : ଗୋଡ଼ ହାତ ଛାଟିପିଟି ହେବା

**ଚଟ୍‌ପଟି** - *ନ:* (ବି.) : ଭଣ୍ଡାରୀର କ୍ଷୁରଘଷା ଚମଡ଼ାଖଣ୍ଡ

**ଚଟ୍‌ରା** - *ବୌ:* (କ୍ରି.) : ମୁହଁ ବାନ୍ଧିବା

**ଚଟ୍‌ଲି** - *ନବ:* (ବି.) : ପୁରୁଷ ଯୌନାଙ୍ଗ

**ଚଟକ** - *ପଦ୍ୟ:ଭ:କ:* (ବି.ବିଂ.) : ଘରଚଟିଆ, ଫୁଟାଣି, ଫୁଲେଇ ସ୍ୱଭାବ, ଆଗ୍ରହ

**ଚଟକଣା** - *କେ:ସଂ:ଦେ:ଭ:* (ବି.) : ଚାପୁଡ଼ା

**ଚଟକି** - *ଅ:ନ:* (ବି.) : ଥାଳିଆ, ଛୋଟ ଥାଳିଆ

**ଚଟଣି** - *ଗ:କ:ଦେ:* (ବି.) : ଲେହ୍ୟ ବ୍ୟଞ୍ଜନ, (ନଡ଼ିଆ, ଆଳୁ ସହ ଖଟା ମିଶ୍ରଣ), ଚାଟି ଖାଇବା, ମୁଖ ରୋଚକ ଶବ୍ଦ, ଖଟା ଲୁଣଲଙ୍କା ଧନିଆଁ ପତ୍ର, ଅଦାରେ ତିଆରି ଖଟା

**ଚଟପଟାଙ୍ଗ୍** - *ଗ:* (ବି.) : ଚିତ୍ ହୋଇ ପଡ଼ିବା, ମୃତ୍ୟୁ

**ଚଟପଟି** - *ଦେ:* (ବିଂ.) : ମଜାଭଜା

**ଚଟମ୍ ଚଢ଼େଇ** - *କଣ:* (ବି.) : ଚିମିଣିଆ

**ଚଟରପଟର** - *ଦେ:* (ବି.) : ଚଟପଟ

**ଚଟା** - *ମ:କଣ:କେ:* (ବି.କ୍ରି.) : ବାଇଚଢ଼େଇ, ଘରଚଟିଆ, ଚାଟିବା

**ଚଟାଇ** - *କେନ୍ଦୁ:ଗ:* (ବି.) : ମସିଣା, କୁଶ ଆସନ, ନଡ଼ିଆ ପତ୍ରର ଆସନ

**ଚଟାଚଟି** - *ନ:* (ବି.) : ପରସ୍ପରକୁ ଚାଟିବା କର୍ମ

**ଚଟାଣ** - *ଅନେ:* (ବି.) ଘରର ତଳି, ପଥୁରିଆ ସମତଳ, ଅଗଣା

**ଚଟାପଟ** - *ଅନେ:* (ଅ.କ୍ରି.ବିଂ.) ଶୀଘ୍ର, ତୁରନ୍ତ, ଜଲଦି, ତ୍ୱରିତ, ଚଞ୍ଚଳ

ଚଟାବା - *ସୁ:* (କ୍ରି.) : ଚାଟିବା

ଚଟି - *ଅନେ:* (ବି.) : ଚପଲ, ରାସ୍ତା କଡ଼ ବସା ଘର, ପଥିକଙ୍କ ସ୍ୱଳ୍ପକାଳୀନ ବିଶ୍ରାମ ଘର

ଚଟିଆ - *ଅନେ:* (ବି.) : ଘରଚଟିଆ, ଘର ଚେଢ଼େଇ, ଆସନ

ଚଟିଆନାକୀ - *କଝ:* (ବି.) : ଏକ ପ୍ରକାର ସରୁ ଓ ବାସନାଯୁକ୍ତ ଧାନ

ଚଟିକି - *ନ:* (ବି.) : ବାସନ, ଛୋଟ ଗିନା, ଥାଳିଆ

ଚଟିଦେବା - *ଚୌ:* (କ୍ରି.) : ଠକିଦେବା

ଚଟୁ - *ଅନେ:* (ବି.) : ବ୍ୟଞ୍ଜନ ପ୍ରଭୃତି ଘାଣ୍ଟିବା କାଷ୍ଠଦଣ୍ଡ, ନିଆଁ ରଖିବା ପାତ୍ର, ତରକାରୀ କାଢ଼ିବା ଡଙ୍କି ଏବଂ ନିଆଁକଢ଼ା ଲୌହପାତ୍ର

ଚଟୁଆ - *ଅନେ:* (ବି.) : ମୃଗ, ସମ୍ବର ପିଚା ଫଡ଼ିଆ, ପିଚା ସନ୍ନିକଟ ଗୋଡ଼ର ଖଞ୍ଜା ହାଡ଼, ନିତମ୍ବହାଡ଼, କାନ୍ଧର ପଛପାଖ, ଏକଜାତୀୟ କଞ୍ଚା କଦଳୀ

ଚଟୁଆଣି - *ଢ:* (ବି.) : ଚଟଣୀ

ଚଟୁଗୁଡ଼ - *ଚ୍ଚ:* (ବି.) : ଚଟ ବା ଅଖାରେ ଗୁଡ଼ା ହୋଇଥିବା ଶୁଖିଲା ଗୁଡ଼

ଚଟୁଣୀ - *ଭ.ଢ:* (ବି.) : ବଟା ସାମଗ୍ରୀ, ଚଟଣୀ

ଚଟୁପାଳ - *ଗଦ୍ୟ:* (ବି.) : ହାତୁଆ

ଚଟେଇ - *ଅନେ:* (ବି.) : ନଡ଼ିଆ ପତ୍ରରେ ତିଆରି ଛୋଟ ମସିଣା

ଚଟେଇବା - *କ:* (କ୍ରି.) : ଚାଖିବା, ଚାଟି ଖୁଆଇବା

ଚଠ୍ରା - *ଚୌ:* (ବି.) : ଚଠା

ଚଠା - *ନୂ:ସୁବ:ଦେ:ସୁ:* (ବିଂ.) : ଖରାପ ପ୍ରକୃତିର ଲୋକ, ଲଜ୍ଜା ସଂଭ୍ରମ ବଳିଦେଇ ଯିଏ ଅନ୍ୟ ଘରକୁ କେବଳ ଖାଇବା ପାଇଁ ଯାଏ, ଅଇଁଠା ଖିଆ, ଅନିମନ୍ତ୍ରିତ

ଚଠେଇ - *ନୂ:* (ବିଂ.) : ବାରମ୍ବାର ଖାଇବାକୁ ଇଚ୍ଛା ପ୍ରକାଶ କରୁଥିବା ବ୍ୟକ୍ତି(ନାରୀ)

ଚଡ଼େଯା - *ଅ:* (ବିଂ.) : ଚାଲାକ

ଚଡ୍‌କିଯିବା - *ସ:* (କ୍ରି.) : ଫାଟିଯିବା, କ୍ରାକ୍ ହେବା

ଚଡ୍‌ଚଡ଼ି - *ଚ୍ଚ:* (ବି.) : ଶୁଖିଲା ମିଶା ତରକାରୀ

ଚଡକ - *ଦେ:* (ବି.) : ବଜ୍ର, ପଥର, ଘୋର ବିପଦ

ଚଡଚଳି - *ଗଦ୍ୟ:* (ବି.) : କେନ୍ଦରା

ଚଡା - *ଦେ:* (ବି.) : ପଠା

ଚଡାଚଡି - *ନବ:* (କ୍ରି.) : ଉଠାଉଠି

ଚଡେଇ - *ଦେ:* (ବି.) : ପକ୍ଷୀ

ଚଡୋ ଚଡୋ - *ସୁ:* (କ୍ରି.ବିଂ.) : ଠାଏ ଠାଏ, ଠୋ ଠୋ

ଚଡ଼ୁ - *ଚ୍ଚ:* (ବି.) : ନଦୀର ପଠା

ଚଡ଼ୁକା - *କଝ:* (ବି.) : ଗାଈରଟିପା

ଚଡ଼କ - *ଢ:କେ:ନ:* (ବି.) : ଘଡ଼ଘଡ଼ି, ବଜ୍ର, ବିପଦ

**ଚଢ଼କପୂଜା** - *ପଦ୍ୟ:* (ବି.) : ଝାମୁ ପରି ଏକ ପ୍ରକାର ପୂଜା

**ଚଢ଼କା** - *ନ:* (ବିଂ.) : ଚଞ୍ଚଳିଆ

**ଚଢ଼କିବା** - *ନ:ସଂ* (କ୍ରି.) : ଟିକିଏ ଟିକିଏ ଫାଟିଥିବା, ସାମାନ୍ୟ ଫାଟିବା

**ଚଢ଼ଚଢି** - *କେ:ରା:* (ଅ.ବି.) : ବଜ୍ର ଶବ୍ଦ, ଆକାଶରେ ଶବ୍ଦକାରୀ ବଜ୍ର

**ଚଢ଼ ଚାପଢ଼** - *ନ:* (ବି.) : ଚଟାପଟ ମାଡ଼ ମାରିବା

**ଚଢ଼ା** - *ବା:ନ:* (ବି.) : ବାଲିଆପାଳ, ପ୍ୟାଣ୍ଟ ଭିତରେ ପିନ୍ଧୁଥିବା ଅନ୍ତର୍ବାସ

**ଚଢ଼ିଆ ନାଚ** - *ପଦ୍ୟ:* (ବି.) : ପୈରାଣିକ ତଥା ଲୋକକଥା ଉପରେ ଆଧାରିତ ନୃତ୍ୟ, ଚଢେଇୟା ନାଚ

**ଚଢୁକାଠି** - *ଗ:* (ବି.) : ଛୁଆଙ୍କ ପେଟରୁ ଲାଛିବା ଲୌହ କାଠି

**ଚଢୁଡିଆ** - *ଗଞ:* (ବି.) : କେଉଟ ଜାତି

**ଚଢ଼େଇଗୁଢ଼ି** - *ଜ:* (ବି.) : ଏକ ପ୍ରକାର ଶାଗ

**ଚଢା** - *ଯା:ଦେ:ନ:* (ବି.ବିଂ.) : ନଦୀର ପଠା, ଅଧିକ, ଉଚ୍ଚା ଜାଗା, ଉଠାଣି, ବର୍ଦ୍ଧିତ

**ଚଢାଇବା** - *ଦେ:ନ:ରା:* (କ୍ରି.) : ଉପରକୁ ଉଠେଇବା, ମାରିବା, ଚଢିବାରେ ସାହାଯ୍ୟ କରିବା, ଖାନ୍‌ତଲାସି

**ଚଢାଉ** - *ନ:ଦେ:* (ବି.) : ଆକ୍ରମଣ

**ଚଢାଉଦ୍‌ରା** - *କୋ:* (ବି.) : ଚଢା ଓହ୍ଲା

**ଚଢାଦର** - *କ:* (ବିଂ.) : ବେଶୀ ଦର

**ଚଢିବା** - *ସଂ* (କ୍ରି.) : ଧମକ ଦେବା, ଡରାଇବା

**ଚଢିୟା** - *ବା:* (ବି.) : କବାଟ ବନ୍ଧ ଉପରେ ବାହାରିଥିବା ଦୁଇଟି କାଠ, କାଶତଣ୍ଡୀ ଗଛ

**ଚଢୁଆ** - *ଗଞ:ଗ:କୋ:ରା:* (ବି.) : ଖାଇବା ଥାଳି, ଅନ୍ନ ଆଦି ଭୋଜନ କରିବା ପାଇଁ ବଡ଼ ଥାଳି

**ଚଢେ** - *ମା:* (ବି.) : ଚଢେଇ

**ଚଢେଇ ନେଦା** - *ପଦ୍ୟ:* (ବି.) : ଜଗନ୍ନାଥଙ୍କ ଭୋଗ ବିଶେଷ, ଯାହା ଦ୍ୱିପ୍ରହର ଧୂପରେ ଲାଗି ହୁଏ

**ଚଢେନ୍** - *ସ:ସୁ:* (ବିଂ.କ୍ରି.) : ଢିପଜାଗା, ଚଢା

**ଚଢେୟା ନାଚ** - *ଗ:* (ବି.) : ଗଞ୍ଜାମର ଦଣ୍ଡନୃତ୍ୟ

**ଚଣ୍** - *ସ:* (ବି.) : ଓଠ

**ଚଣା** - *ନ:ଦେ:* (ବି.) : ଶସ୍ୟ (ରବି ଜାତୀୟ), ଡାଲି ଜାତୀୟ, ଆମ୍ବ କଷି ବିଶେଷ

**ଚଣାଖଜା** - *ଗ:* (ବି.) : ବାଦାମ ଲଡୁ

**ଚଣାଚୁର** - *ଦେ:* (ବି.) : ବୁଟଭଜା, ରାଗ ଲୁଣ ମିଶା

**ଚଣାଝୁରା** - *ବୌ:* (ବି.) : ଚଣା ପୋଡ଼ି ଖାଇବା

**ଚଣା ତେଲ** - *ଗଞ:କଣ:ଗ:* (ବି.) : ବାଦାମ ତେଲ

**ଚଣ୍ଡିଆ** - *ବୌ:* (ବି.) : ଘର ଚଟିଆ

**ଚଣ୍ଡିକିମିତା** - *ଦୈ* (ବି.) : ତଣ୍ଡି ପର୍ଯ୍ୟନ୍ତ

**ଚଣ୍ଡ** - *କୋ:ସଂ:ଦେ:ଛ:* (ବି.) : ଦେବା ଦେବୀଙ୍କ ଭୋଗ ବା ପ୍ରସାଦର କିଛି ଅଂଶ, ନୈବେଦ୍ୟର ଉତ୍ସର୍ଗୀକୃତ ଅଂଶ, ଖେଚଡ଼, ଦୁଷ୍ଟ, ଭୋଗାଂଶ

**ଚଣ୍ଡକାଢ଼ିବା** - *ରା:ଗ:* (କ୍ରି.) : ଭୋଗରୁ କିଛି ଅଂଶ କାଢ଼ିବା, ଲାଭ କାଢ଼ିବା, ଉତ୍କୋଚ

**ଚଣ୍ଡମାର୍କ** - *ଗ:* (ବି.) : ନାଟକର ଏକ ଚରିତ୍ର, ହିରଣ୍ୟର ସେନାପତି

**ଚଣ୍ଡାଳ** - *ଦେ:* (ବି.) ଜାତୀ ବା ବୃତ୍ତି ବିଶେଷ, ହାଡ଼ି, ମେହେନ୍ତର

**ଚଣ୍ଡୀ** - *କଳା:ରା:* (ବି.) : ଗଉଡ଼ ମାନଙ୍କ କୌଳିକ ଉପନାମ, ରାଗରେ ତମତମ ହେବା ଝିଅ, ଦୁର୍ଗା

**ଚଣ୍ଡୀଚାମଣ୍ଡା** - *ଛ:* (ବି.) : ଚଣ୍ଡୀଚାମୁଣ୍ଡା, ଦଳବଳ

**ଚଣ୍ଡୁଆ** - *ରା:* (ବି.) : ଚମ୍ପା

**ଚଣ୍ଢା** - *ରା:* (ବି.) : ଷଣ୍ଢ

**ଚତ୍‌ରାବା** - *ସ:କଳା:* (କ୍ରି.) : ସଫା କରିବା, ତତ୍‌ରେଇବା ଦେଖ

**ଚତ୍‌ରାଂଗୀ** - *କଳା:* (ବି.) : ଲୋକ କଥାର ଏକ ସୁରମ୍ୟ ବିଭାବ

**ଚତ୍‌ରିଆ** - *କଳା:* (ବି.) ଚୈତ୍ରା, ଚଇତମାସର ଶେଷ, ମଙ୍ଗଳବାର

**ଚତ୍‌ରେଇବା** - *କଳା:* (କ୍ରି.) : ଚାଂଛିବା, ସାଇଜ୍ କରିବା, କ୍ଷୌର ହେବା

**ଚତକା, ଚତରା** - *ଖୋ:* (ବି.) : ଧାନବିଲ ମାନଙ୍କରେ ଥିବା ଛୋଟ ଗାଡ଼ିଆ

**ଚତର** - *ଅନେ:* (ବି.ବିଂ.) : ଅଳ୍ପ ଗଭୀର ପ୍ରଶସ୍ତ ଜଳଭାଗ, ଓସାରିଆ ସ୍ଥାନ, ମୁହଁ ସାମାନ୍ୟ ମୁକୁଳା, ଫଟା, ଝାମ୍ପୁଲା, ବିସ୍ତୃତ, ଚଞ୍ଚଳା, ଲକ୍ଷ୍ମୀ, ଚକ୍ରାକୃତି ଅଳ୍ପ ଖାଲୁଆ ଜାଗା

**ଚତରି** - *କେନ୍ଦୁ:* (ବି.) : ବଡ଼ ପଥର ଖଣ୍ଡ

**ଚତରେଇ ହେବା** - *ଗଦ୍ୟ:* (ବି.) : ଦେଖେଇ ହେବା

**ଚତୁର** - *ରା:ନ:ଦେ:* (ବିଂ.) : ଚାଲାକ, ବୁଦ୍ଧିଆ, ବୁଦ୍ଧିମନ୍ତ

**ଚତୁର ମାସିଆ** - *କ:* (ବିଂ.) : ବର୍ଷା ସମୟ ଚାରିମାସ

**ଚତୁଦଶ** - *ଛ:* (ବି.) : ଚତୁର୍ଦ୍ଦଶ, ଚାଳିଶ

**ଚତୃସମ** - *ଛ:* (ବି.) : ଚତୁଃସମ- ଚନ୍ଦନ, ଅଗୁରୁ, କୁଙ୍କୁମ ଓ କସ୍ତୁରୀ ମିଶ୍ରଣ

**ଚଦର** - *ଖୋ:ଗ:ଦେ:* (ବି.) : ଶୀତରୁ ରକ୍ଷା ପାଇବା ପାଇଁ ଶରୀରକୁ ଆବୃତ ରଖୁଥିବା ବସ୍ତ୍ର ବିଶେଷ, ଚାଦର, ଘର ଉପରର ଘୋଡ଼ଣି

**ଚଦାଚଦି** - *ଗ:* (ବିଂ.) : ପରସ୍ପର ରାଗିବା, ଧମକ ଚମକ ଦେବା

**ଚଦିଗି** - *ରା:* (କ୍ରି.) : ଜିଦ୍ ଧରି

**ଚଦିବା** - *ଅନେ:* (କ୍ରି.) : ଧମକାଇବା, ପ୍ରତିଶୋଧ ବା ହଇରାଣ ପାଇଁ ଧମକଦେବା, ଗାଳିଦେବା, ରାଗିବା

**ଚଦ୍ର** - *କଣ:* (ବି.) : ଚଦର

**ଚନ୍‌ଖା** - *କଳା:* (ବି.) : ଛନ୍‌କା, ଖୋଲ୍‌ସା, ରାପ୍‌ଚର୍

**ଚନ୍‌ଚନ୍** - *ଦେ:* (ବି.) : ଚିଣ୍ ଚିଣେଇବା

**ଚନ୍‌ଚନା** - *କଳା:* (ବିଂ.) : ନିର୍ମଳ, ସଫା

**ଚନଖା** - *ସୁବ:* (ବି.) : ସବୁ ଲମ୍ବ କଡି କାଠ ଯା ଉପରେ ବାଉଁଶ ଲଗାଯାଇ ଛପର ହୁଏ

**ଚନଖା କଁଟା** - *ସୁବ:* (ବି.) : ବଡ କଣ୍ଟା, ଏହା ସାହାଯ୍ୟରେ ବଡ କଡିକାଠ ସହିତ ଖଞ୍ଜାଯାଏ

**ଚନା** - *କଳା:ନୁ:ସୁବ:ସୁ:* (ବି.) : ଚଣା, ଚଣକ

**ଚନାମୁଡ଼ି** - *ସ:ସୁବ:* (ବି.) : ଶଗଡ଼ର ଆଗ ଅଂଶ, ଯେଉଁଠାରେ ଶଗଡ଼ର ଦୁଇଟି ଦଣ୍ଡା ମିଶିଥାଏ ଯାହା ଚଣା ପରି ଗୋଲାକାର ଦିଶେ

**ଚନ୍ଦନପେଡ଼ା** - *ଗ:ନୁ:* (ବି.) : ଚନ୍ଦନ ଘୋରିବା ପଥର

**ଚନ୍ଦନଫୁଲ କରିବା** - *ଗ:* (କ୍ରି.) : ନିମନ୍ତ୍ରଣ କରିବା

**ଚନ୍ଦନବୋଡ଼ା** - *ଗ:* (ବି.) : ଏକ ଜାତିର ବୋଡ଼ା ସାପ

**ଚନ୍ଦନା** - *ଦେ:* (ବି.) : ଶୁଆପକ୍ଷି

**ଚନ୍ଦନି ଶୁଆ** - *ନ:* (ବି.) ଭଲ ପଢିପାରୁନଥିବା ଶୁଆ(କ୍ଷୁଦ୍ରକାୟ)

**ଚନ୍ଦର ବତା** - *ନବ:* (ବି.) : ଦ୍ୱାରବନ୍ଧ କାଛରେ ଥିବା ପଟା

**ଚନ୍ଦରା** - *କୋ:* (ବି.) : ତରତର, ବ୍ୟସ୍ତ

**ଚନ୍ଦା** - *ଅନେ:* (ବି.ବିଂ.) : କେଶହୀନ, ଟାଙ୍ଗରା, କେଶ ବିହୀନ, ମୁଣ୍ଡରେ ବାଳ ନଥିବା ଲୋକ, ଟାଙ୍ଗରା ମୁଣ୍ଡ,

**ଚନ୍ଦାମାଛ** - *ଗ:* (ବି.) କଣ୍ଟାଳିଆ ମାଛବିଶେଷ

**ଚନ୍ଦୁଅ** - *ନ:* (ବି.) : ଚନ୍ଧ, କାନ୍ଧରେ ଯିବା (ରଣପୁର)

**ଚନ୍ଦୁକ** - *ଗ:* (ବି.) : ଚନ୍ଦନପାଣି

**ଚନ୍ଦେଇବା** - *ଅନେ:* (କ୍ରି.) ଠକିବା, କୌଶଳେ ଆଦାୟ କରିବା, ଅନ୍ୟଠାରୁ କୌଶଳରେ ଅର୍ଥ ବା ଦ୍ରବ୍ୟ ଆଦାୟ କରିବା

**ଚନ୍ଦ୍ର ଉଦିଆ** - *ନ:* (ବି.) : ଏକ ପ୍ରକାର ଶୁଭ୍ର ଆଲୋକ, ଏକ ପ୍ରକାର ବାଣ

**ଚନ୍ଦ୍ରକାନ୍ତି** - *ନ:ଗ:* (ବି.) : ମୁଗ କାନ୍ତି; ମୁଗ ପକାଇ ଛାଣିଥିବା ପିଠା

**ଚନ୍ଦ୍ରବୋଡ଼ା** - *ନ:* (ବି.) : ଚନ୍ଦ୍ର ଚିହ୍ନ ଥିବା ବୋଡ଼ାସାପ

**ଚନ୍ଧ** - *ନ:* (ବି.) : କାନ୍ଧ ହେବା

**ଚପ୍** - *ଦେ:* (ବି.) : ଆଳୁ, କଦଳୀ, କିମାରେ ବେସନ ଘୋଳ ଦେଇ ଛଣା

**ଚପ୍‌କାଣ୍ଡିଆ** - *କଳା:* (ବି.) : ପକ୍ଷୀ ଧରିବା ପାଇଁ ବ୍ୟବହୃତ ଅଠା ଓ କାଠି

**ଚପ୍‌ଚପାବାର** - *ସୁବ:* (କ୍ରି.) : ଅଠାଳିଆ ପଦାର୍ଥର ଅନୁଭବ

**ଚପ୍ରା** - *ଝା:* (କ୍ରି.) : ଅନ୍ୟର ଜାଗା ବା ସାମୂହିକ ଜାଗା ଆବରିବା, ଖଣ୍ଡ

**ଚପ୍ରାଶି** - *ଅନେ:* (ବି.) : ପିଅନ, ପୋଲିସ୍

**ଚପ୍ରି ନେବା** - *ସ:* (କ୍ରି.) : ଅଧିକାର କରିବା

**ଚପ୍ରିବାର** - *ସୁବ:* (କ୍ରି.) : ବିସ୍ତାର କରିବା। ରାସ୍ତା ଆଦିକୁ ଘରର ଆୟତନ ମଡାଇ ଦେବା।

**ଚପକନ୍** - *ପଦ୍ୟ:* (ବି.) : ଆଜାନୁ ଲମ୍ବିତ କୁର୍ତ୍ତା

**ଚପରା** - *ଅ:* (ବି.) : ପଙ୍କୁଆ ଜାଗା, ପାଣି ଜମୁଥିବା ଓଦା

**ଚପାଇଚି** - *ସୁ:* (ବି.) : ମିଠା ଆମ୍ବର ଶୁଖିଲା ଛାଲି ଖଣ୍ଡ

**ଚପାଇବା** - *ପଦ୍ୟ:ଦେ:* (କ୍ରି.) ଚାପିବା କ୍ରିୟାର ଣିଜନ୍ତ ରୂପ, କାଳି ଶୋଷିବାକୁ ଚପା କାଗଜ ମଡ଼ାଇବା, ଧମକାଇବା, ମଡାଇବା

**ଚପା କସିଆ** - *ନ:* (ବିଂ.) : ମଜଭୂତ

**ଚପା କାଗଜ** - *ଦେ:* (ବି.) : ଛପା କାଗଜ, ବ୍ଲଟି ପେପର

**ଚବ୍କା** - *କଳା:* (ବି.) : ଗୋରୁଂକ ଫାଟୁଆ ରୋଗ

**ଚବ୍ରା** - *ସୁବ:ସୁ:* (ବିଂ.) : ଯେଉଁ ଛୋଟ ପିଲା ଅନ୍ୟକୁ କାମୁଡି ଦିଏ, ଚାବିବା ପ୍ରକୃତି, କାମୁଡ଼ିବା

**ଚବକା** - *ଅନେ:* (ବି.) : ଛୋଟ ଅଗଭୀର ପୋଖରୀ, ଅତି କ୍ଷୁଦ୍ର ଅଗଭୀର ଜଳାଶ୍ରୟ ଚୁଆ, ଅଗଭୀର କ୍ଷୁଦ୍ର ପୋଖରୀ

**ଚବଚବ** - *ରା:* (ଅ.) : ପାଣିର ଧ୍ୱନି

**ଚବ ଲାଇବା** - *ନୁ:* (କ୍ରି.) : ଚୋବାଇବା

**ଚବା** - *ସୁ:* (ବି.) : କାଇଁଶ, ଚାବିବା

**ଚବିଶପଳିଆ** - *ଯା:* (ବିଂ.) : ଖୁବ୍ ମାଡ଼, ଶକ୍ତିଶାଳୀ ବିଧା

**ଚବୁକା** - *ଗ:* (ବି.) : କ୍ଷୁଦ୍ର ଗାଡ଼ିଆ

**ଚବୁକା ପକାଇବା** - *ଗ:* (କ୍ରି.) : କାଦୁଅ ଜମିରେ ଧାନ ତଳି ପକେଇବା

**ଚବ୍ରା, ଚାବରା** - *ନବ:* (ବିଂ.) : କାମୁଡା

**ଚଭ୍ରା** - *ଗୌ:* (ବି.) : ଯେ କାମୁଡ଼ି ଥାଏ

**ଚଭା** - *ଗୌ:* (ବି.) : ଗାଈର ପାକୁଳି

**ଚମ** - *ଅନେ:* (ବି.) : ଚମଡ଼ା, ଛାଲ, ଜୀବ ଦେହର ଚର୍ମ, ଛାଲ, ଚମଡ଼ା, ଭଣ୍ଡାରିଙ୍କ ଚଟ୍‌ପଟି

**ଚମ୍କିବା** - *କଳା:ସ:* (କ୍ରି.) ଡରିବା, ଝଟ୍‌କିବା, ହଠାତ ଭୟ ଜାତ ହେବା, ଦୀପ୍ତିମନ୍ତ ହେବା, ତେଜୀୟାନ ଦିଶିବା, ଚମକିବା

**ଚମ୍କୁଛେ** - *କଳା:* (କ୍ରି.) : ଚମକି ଯାଉଛି, ଦୀପ୍ତିମନ୍ତ ହେଉଛି

**ଚମ୍କୁଲ୍** - *କଳା:* (ବି.) : ଭାତୁଡି

**ଚମ୍‌ଚମ୍** - *ପର୍ତ୍ତୁ.ଦେ.* (ବି.) : ଚିନି ସିରାରେ ପାକ ହୋଇଥିବା ଦୁଧ ଛେନାର ଏକ ପ୍ରକାର ମିଷ୍ଟାନ୍ନ, ମିଠା

**ଚମ୍‌ରା** - *ଚୌ.* (ବି.) : ମୁଚି, ମୋଚି

**ଚମ୍‌ରା, ଚମାର** - *ଶୁଦ.* (ବି.) : ଜାତି ବିଶେଷ ମୋଚି, ପଶୁର ହାଡ ଓ ଚମଡା ସଂଗ୍ରହ କରି ଚଳୁଥିବା ଲୋକ

**ଚମକ** - *ପର୍ତ୍ତୁ.ଦେ.କଳା.* (ବି.) : ହଠାତ୍ ଉପସ୍ଥିତ, କ୍ଷଣିକ, ଭୟ, ଛାନିଆଁ, ଚମକିପଡ଼ିବା, ବିସ୍ମୟ

**ଚମକିବା** - *କେ.ନ.ପର୍ତ୍ତୁ.ଛ.* (କ୍ରି.ବି.) : ଆଶ୍ଚର୍ଯ୍ୟ ହେବା, ଡରିବା, ଭୟଭୀତ ହେବା, ହଠାତ୍ ଦୂରକୁ ତୀର ବେଗରେ ଗତି କରିବା, ଇତଃସ୍ତତ ସଞ୍ଚାଳିତ ହେବା, ଝଟକିବା

**ଚମଚଟା** - *ଦେ.* (ବି.) : ବାଦୁଡ଼ି, ଚେମିଣି

**ଚମଚଟିଆ** - *କୋ.ଗଛ.* (ବି.) : ଚେମଣି ଚଢେଇ

**ଚମଡା ଉଦ୍‌ରେଇବା** - *ଦେ.* (କ୍ରି.) : ଛାଲ ଛଡ଼େଇବା, ମାରିବା ପିଟିବା

**ଚମଡାଛାଆଣି** - *ଦେ.* (ବି.) : ଢୋଲ, ମୃଦଙ୍ଗ, ମାଦଳ ଆଦି ଛାଇଁବା

**ଚମଡ଼ା** - *ଅନେ.* (ବି.) : ଛାଲ, ଚମ

**ଚମଡ଼ା ଗୁଛେଇଯିବା** - *ଚ.* (କ୍ରି.) : ଝଡ଼ିକରି କଣ୍ଢା ହେଇଯିବା

**ଚମଦୁଳା**- *ସୁ.* (ବି.) : ଚମଦଳା

**ଚମଣି** - *ରା.* (ବି.) : ଚମଚଟା

**ଚମଦଳା** - *ଗ.* (ବି.) : ଆଙ୍ଗୁଠି ବା ଜଙ୍ଘ ସନ୍ଧିର ଚମଘା

**ଚମ ବାଇଦ** - *ଦେ.* (ବି.) : ଚାଙ୍ଗୁ, ଖଞ୍ଜଣି, ଢୋଲ, ମୃଦଙ୍ଗ, ମାଦଳ

**ଚମରୀ** - *ଦେ.* (ବି.) : ଏକପ୍ରକାର ଗାଈ

**ଚମାର** - *ଅନେ.* (ବି.) : ମୋଚି, ଯିଏ ନଡ଼ିଆ ଗଛରେ ଚଢି ନଡ଼ିଆ ତୋଳେ ଓ ଗଚ ସଫାକରେ, ଖଜୁରିଆ, ଜାତି

**ଚମାର କମାର ହେବା** - *ଭ.* (କ୍ରି.) : ପାଟିତୁଣ୍ଡ ବା ପରସ୍ପରକୁ ଦୋଷାରୋପ

**ଚମ୍ପଇତ** - *ଦେ.* (ବି.) : ଆମ୍ବଛେଲି, କୋତରା

**ଚମ୍ପକ** - *ଅନେ.* (ବି.) ଚମ୍ପା, ଗଛ, ଦୀପକରାଗ

**ଚମ୍ପଟ** - *ନୂ.* (କ୍ରି.) : ଫେରାର ହେବା

**ଚମ୍ପତି** - *ଦେ.* (ବି.) : ଉପାଧି

**ଚମ୍ପା** - *ଦେ.ଗଦ୍ୟ.* (ବି.) : ଫୁଲ ଗଛ, ଚଢ଼େଇ, କଦଳୀ, ଗୋରୀ, ଝଲକା, ଝରଣ, ଏକ ଶାଗ, ଏକ ଫୁଲ

**ଚମ୍ପାକଢ** - *କେନ୍ଦୁ.କେ.* (ବି.) : ରୂପା ତିଆରି ବେକ ଅଳଙ୍କାର, ସୂତାରେ ଗୁନ୍ଥି ପିନ୍ଧାଯାଏ, ବେକ ମାଳ

**ଚମ୍ପାବତୀ** - *କଳା.* (ବି.) : ଚମ୍ପେଇତ, ପାଚିଲା ଆମ୍ବକୁ କାଟି ଶୁଖାଇବା ପରେ ଗୁଡରେ ପାଗି ପ୍ରସ୍ତୁତ କରାଯାଉଥିବା ଆଚାର

**ଚମୈଭଚ** - *ଗଞ୍ଜ:କୋ:* (ବି.) : ପାଚିଲା ଆମ୍ବର ଚୋପାରେ ସ୍ୱତନ୍ତ୍ର ଆଚାର, ମିଠା ଆମ୍ବର ଆମ୍ବୁଲ

**ଚମୈଭ ନଳୀ** - *ଗ:ନ:* (ବି.) : ଗୋଧି ଜାତୀୟ କ୍ଷୁଦ୍ର ଏଣ୍ଡୁଅ, ଏକ ସରିସୃପ ବିଶେଷ

**ଚମ୍ପା** - *କେନ୍ଦୁ:* (ବିଂ.) : ନିପୁଣ, ଧୁରନ୍ଧର

**ଚମ୍ବୁ** - *ଗ:* (ବି.) : ଲୋଟା, ତାଳ,ଘଟୀ

**ଚୟନ** - *ସଂ:* (ବି.) : ମନୋନୟନ, ତୋଳିବା

**ଚର** - *ଢେ:ଜ:* (ବି.) : ମଙ୍ଗଳ ଗ୍ରହ, ଗୁପ୍ତଚର

**ଚରକ** - *ଦେ:* (ବି.) : ଭିକାରୀ, ବାଟୋଇ ଘର, ପୋଡ଼ିଆ ଗୁଳ୍ମ

**ଚରକଟିବା** - *ଚ୍ୱ:* (କ୍ରି.) : ଚକଟିବା

**ଚରକଡ଼ି** - *ରା:* (ବି.) : ଚଡଚଡି

**ଚରକେ** - *ଯା:* (ବିଂ.) : ଥରେ, ଅଳ୍ପ

**ଚରଖା** - *ଦେ:ଖୋ:* (ବି.) ଅରଟ, କପାଖାଇ, ଯେଉଁଥିରେ ସୂତା କଟାଯାଏ

**ଚରଖାଡି** - *ଦେ:* (ବି.) : ପେଟ, ଅଣ୍ଡା ପୀଡ଼ାରେ ଦାଗିବା ପାଇଁ ଲୁହାର ଯନ୍ତ୍ର

**ଚରଖି** - *ସୁ:* (ବି.) : ଚରଖା

**ଚରଚା** - *ରା:ନ:ଜ:ଗ:* (ବି.) : ଆତିଥ୍ୟ, କୁଣିଆ, ଅତିଥି ସତ୍କାର, ଅତିଥି ଚର୍ଚ୍ଚା, ଅତିଥି ସେବା

**ଚରଢ** - *ଦେ:ଅ:* (ବି.) : ତରକା, ହରଡ଼

**ଚରଢି** - *ରା:ଗ:* (ବି.ବିଂ.) : ଅସହିଷ୍ଣୁ ନାରୀ, କଳିହୁଡ଼ି ଯୁବତୀ

**ଚରଢ଼ା** - *ଗ:* (ବି.) : ବଣି ଚଢେଇ

**ଚରଣ ଚାରଣ** - *ଦେ:* (ବି.) : ପାଦ ସେବା, ଗୋଡଘଷା

**ଚରଣଚୁଟିଆ** - *ଅନେ:* (ବିଂ.ବି.) : ଠକ, ବେଇମାନ୍, ହାରାମୀ, ଗୋଡତଳେ ପଡ଼ିବା ଲୋକ । କାମ ସରିଗଲେ ମୁଣ୍ଡରେ ଚଢ଼ିବା, ବିପତ୍ତି ବେଳେ ଗୋଡ଼ ଧରେ, କାମ ସରିଲେ ଚୁଟି ଧରେ

**ଚରଣରେଣୁ** - *ଦେ:* (ବି.) : ପାଦଧୂଳି

**ଚରଣା** - *ଦେ:* (ବି.) : ସର୍‌ସରେଇବା, ଯୋନି ରୋଗ

**ଚରଣାମୃତ** - *ଜ:* (ବି.) : ପ୍ରଭୁଙ୍କ ପୂଜା ଜଳ

**ଚରଣି** - *ଗ:* (ବି.) : ଗୋଚର ଜମି ନିମନ୍ତେ ରାଜାଙ୍କ ଧାର୍ଯ୍ୟକର

**ଚରଣ୍ଡା** - *ରା:* (ବିଂ.) : ଅମାନିଆ

**ଚରବି କଣ୍ଟେଇବା** - *ଭ:* (ବି.) : ଅଧିକ ବଳବାନ ହେବା

**ଚରମ** - *ଦେ:* (ବି.) : ପରମ, ପଛଆଡ, ପିଠି, ଅନ୍ତିମ

**ଚରଲୁ** - *ବର:* (ବି.) : କଥାକଥାକେ ରାଗି ଯାଉଥିବା ବ୍ୟକ୍ତି

**ଚରସ୍** - *ଦେ:* (ବି.) : ଆପୁ ଓ ଗଞ୍ଜେଇ ମିଶା ନିଶା ଦ୍ରବ୍ୟ

**ଚରା** - *ଅନେ:* (ବି.କ୍ରି.) : ଚଢ଼ା; ମାଛଖିଆ ଥୋପ, ନଈ ମଝିର ଉଚ୍ଚଜାଗା,

ପଶୁପକ୍ଷୀଙ୍କର ଖାଦ୍ୟ, ଚରିବା, ଚରେଇବାକୁ କହିବା, ତଣ୍ଡୁଳ, ପକ୍ଷୀ ଓ ପଶୁର ଖାଦ୍ୟ

**ଚରା ଖାଇବା** - *ଦେ:* (କ୍ରି.) : ବଳିଦେବା ପୂର୍ବରୁ ବୋଦାକୁ ଦେବୀଙ୍କ ପ୍ରସାଦ ଖୁଆଇବା

**ଚରାଡାହାଣୀ** - *ଗଦ୍ୟ:ଭ:* (ବି.ବିଂ.) : କଣ୍ଠାଡାହାଣୀ, କାଳ୍ପନିକ ନାରୀ ଯିଏ ଚରିବୁଲି ଯାଏ

**ଚରାବା** - *କଳା:* (କ୍ରି.) : ଚରେଇବା

**ଚରାବାତ** - *ନ:ଦେ:* (ବି.) : ଗାଈଗୋରୁଙ୍କ ପେଟଫୁଲା ରୋଗ, ଚିଲ୍ ଚିଲ୍ ମାରିବା, ଶରୀରର ବିଭିନ୍ନ ଅଂଶକୁ ବ୍ୟାପୁଥିବା ବାତ, ଆର୍‌କା

**ଚରା ବାହାରି ପଡ଼ିବା** - *କ:* (କ୍ରି.) : ଅନ୍ତବୁଜୁଳା ବାହାରି ପଡ଼ିବା, ପାଟିରୁ ଖାଦ୍ୟ ବାହାରି ଆସିବା

**ଚରାଭୂଇଁ** - *ନ:ଦେ:* (ବି.) : ଗାଈ ଗୋରୁ ଚରିବାକୁ ଯିବା ସ୍ଥାନ, ନିତିଦିନିଆ ଚଳପ୍ରଚଳ ସ୍ଥାନ, ଚାରଣ ଭୂମି, ଗୋଚର

**ଚରି** - *ଦେ:* (ବି.) : ପଶୁ

**ଚରିଆ** - *ସୁବ:* (ବି.) : ଏକ ପ୍ରକାର ଘାସ, କାଇଁଶ ଘାସ

**ଚରିଆ** - *ରା:ଦେ:କଳା:* (ବି.ବିଂ.) : ଯେଉଁ ଗଛରୁ ଝାଡୁ ପ୍ରସ୍ତୁତ ହୁଏ , ଯେ ଗାଈ ଗୋରୁ ଚରାଏ, ମେରିଆ, ପଶୁମାନଙ୍କୁ ଚରାଉଥିବା ବ୍ୟକ୍ତି ବା ଗଉଡ଼ିଆ

**ଚରିତ** - *ଦେ:ପଦ୍ୟ:* (ବି.) : କଳାବିଦ୍ୟା, କାହାଣୀ, ପୁରାଣ ଆଦିରେ ବର୍ଣ୍ଣିତ ବିଷୟ ବା ବୃତ୍ତାନ୍ତ, ଐତିହାସିକ ଘଟଣା, ଆଚରଣ, ଅନୁଷ୍ଠାନ, ଜୀବନଚରିତ, କାର୍ଯ୍ୟବିଧି, ଢଙ୍ଗ

**ଚରିବା** - *ନ:କଳା:ଦେ:* (କ୍ରି.) : ଗୋରୁ ଘାସ ଖାଇବା

**ଚରିଯିବା** - *ନ:ଦେ:ଛ:* (କ୍ରି.) : ସବୁଖାଇ ଯିବା, ଚଳୁ କରିଦେବା, ଜଳିଯିବା, ବିଷ ଭରିଯିବା, ଗାଈଗୋରୁ ଚରିଯିବା, ମାଡ଼ିଯିବା

**ଚରୁ** - *ଭ:ଛ:ଗ:କଳା:* (ବି.) ଭୋଗ ସାମଗ୍ରୀର ଅଂଶ, ଯଜ୍ଞ ଚରୁ, ଯଜ୍ଞ ଅନ୍ନ, ଚୋରୋ ଦେଖ

**ଚରୁଆ** - *କଳା:ବ:* (ବି.) : ପଶୁମାନଙ୍କୁ ଚରାଉଥିବା ବ୍ୟକ୍ତି ବା ଗଉଡ଼ିଆ, ଗାଈ ଚରାଳି, ଚରିଆ, ଗାଈକୁ ଚରାଇବା ପାଇଁ

**ଚରୁ ଖାଇବା** - *ନ:* (କ୍ରି.) : ଯଜ୍ଞ ଅନ୍ନ ଭୋଜନ, ସାଙ୍କୁଶ ମାଛ କଣ୍ଟାରେ ପେଟାଦି ନୀଳ ଶିରା ସ୍ଥାନରେ ଶିଶୁଙ୍କୁ ଚେଙ୍କ ଦେବା

**ଚରୁହା** - *ସ:ସୁବ:* (ବି.) : ପଶୁ ଚରେଇଭା ଲୋକ

**ଚରେଇ** - *କଳ:ଅ:* (ବି.ବି.) : ଚଢେଇ

**ଚରେଇବା** - *କଳା:* (କ୍ରି.) : ପଶୁମାନଙ୍କ ଚାରଣ କାର୍ଯ୍ୟ କରାଇବା

**ଚର୍କି** - *କ:* (ବି.) : ଘୁରିବା ଦୋଳି

**ଚର୍କରୀ** - *ଦେ:* (ବି.) : ତାଳି ବଜାଇବା, ନାଚ ତାମସା

**ଚର୍ଚ୍ଚା** - *ଦେ:* (ବି.) ସେବା ସତ୍କାର, ଆଲୋଚନା

**ଚର୍ଚ୍ଚିନିଆ** - *ସ:* (ବି.) : ଭୋଜିରେ ଚର୍ଚ୍ଚା କରୁଥିବା ଲୋକ

**ଚର୍ଚ୍ଚିବା** - *ରା:* (କ୍ରି.) : ସୁ ବ୍ୟବହାର ଦେଖାଇବା, ଚର୍ଚ୍ଚା କରିବା

**ଚର୍ବିତ ଚର୍ବାଣ** - *ଦେ:* (ବି.) : ପାକୁଳି, ଅନ୍ୟ କଥାକୁ କହିବା, ଦୋହରାଇବା

**ଚର୍ବିହେବା** - *ଦେ:* (ବି.) : ମୋଟା ହେବା, ଗର୍ବୀ ହେବା

**ଚର୍ବ୍ୟଚୋଷ୍ୟ** - *ସଂ:* (ବିଂ.) : ଚୋବାଇ ଓ ଚୁଚୁମି କରି ଖାଇବାଦ୍ରବ୍ୟ

**ଚର୍** - *ମା:* (ବି.) : ଚୋର, ଦୂତ

**ଚର୍ଖା** - *କଳ:* (ବି.) : ପହଁରା, ଅରଟ

**ଚର୍ଚରା** - *ଦେ:କଳା:* (ବି.) : ନଈ ବାଲିରେ ପାଣି ମାଡ଼ି ଆସିଲାବେଳେ ଶବ୍ଦ, ସଂପୂର୍ଣ୍ଣ ଶୁଖିଯିବା, ଠାଏ କରି ଶୁଖିଯିବା

**ଚର୍ଚରାସି** - *କଳା:* (କ୍ରି.) : ଚଡ଼ଚଡ଼େଇବା, ଚିଲ୍‌ବିଲ୍ ଲାଗିବା

**ଚର୍ଚରି** - *ସ:* (ବିଂ.) : ଯିଏ ମୁହେଁ ମୁହେଁ ଜବାବ୍ ଦିଏ, ମୁହଁରେ ଯାର ବାଡ଼ିବତା ନଥାଏ

**ଚର୍ଚେଇତା** - *ଗ:* (ବି.) ରାଜାଙ୍କ ଚର୍ଚ୍ଚାକାରୀ ସେବକ

**ଚର୍ଡାଙ୍ଗ** - *ସୁବ:* (ବି.) : ଶାଗ ଖରଡ଼ିବାର କାଠର ଖଡ଼ିକା

**ଚର୍ନିଆ** - *ନୁ:* (କ୍ରି.) : ଚାହାଲି ହେବା

**ଚର୍ପଟି** - *ସୁବ:* (ବି.) : ଚଣା ଆଦି ମିଶ୍ରିତ ପାଟି ଲାଳସା ଖାଦ୍ୟ

**ଚର୍ମନି** - *ସ:* (ବି.) : ସଉକ ମେଣ୍ଟାଇବା ପାଇଁ ଖିଆଯାଉଥିବା ଖାଦ୍ୟ

**ଚର୍ହିଆ** - *ବୌ:* (ବି.) : କାଣ ତଣ୍ଡୀ

**ଚର୍ହୁଆ** - *ନୁ:* (ବି.) : ଗାଈ ଜଗୁଆଳ

**ଚଲ୍ଠୁ** - *କଳା:* (ବିଂ.) : ଚତୁର, ସିଆଣିଆ

**ଚଲ୍ତା** - *ବ:* (ବି.) : ଓଉ

**ଚଲ୍ତି** - *ବୌ:* (ବିଂ.) : ଚଲା, ଚଳନ୍ତି

**ଚଲ୍ବା** - *ବୌ:ସ:* (କ୍ରି.) : ଚଳିବ

**ଚଲ୍ସି** - *କଳା:* (କ୍ରି.) : ଚଳିଯିବ, ଚଳିଯାଏ

**ଚଇଣା** - *ଅନେ:* (ବି.) : କାକୁଡ଼ି ପରି ପରିବା, ତରଭୁଜ ବିଶେଷ, ଲେଙ୍ଗୁଟି

**ଚଇଧା** - *ସୁ:* (ବି.) : ବାଉଁଶ ପାତିରେ ତିଆରି ଡାଲା, ଚାଉଳଧୁଆ ପାତ୍ର

**ଚଇନ** - *ଅନେ:* (ବି.ବିଂ.) ବ୍ୟବହାର, ଚଳଣି, ହାବଭାବ, ରୀତି, ଚରିତ୍ର

**ଚଇବଇ** - *ରା:* (ବିଂ.) : ଅସ୍ଥିର

**ଚଲା** - *ଅନେ:* (ବି.) : ଚହ୍ଲା, ଦହି, ଚଳେଇବା, ଚାଲୁଣି, ଘୋଳଦହି, ପାନୀୟ ବିଶେଷ, ଚାଲିବା, ଥଳ

**ଚଲାକ୍** - *ପଦ୍ୟ:ଦେ:* (ବି.ବିଂ.) : ବୁଦ୍ଧିଜୀବୀ, ଚତୁର, ଧୂର୍ତ୍ତ, ଚାଲବାଜ

**ଚଲାକି** - *ଦେ:ଦୌ:ପଦ୍ୟ:* (ବି.) : ଫନ୍ଦି, ଧୂର୍ତ୍ତତା, ଚାଲାକି, ଚତୁର ପଣିଆ, ପାଦରେ ଚାଲିବା, ତୀକ୍ଷ୍ଣ ବୁଦ୍ଧି, ପାଦଚଲା ରାସ୍ତା

**ଚଲାଚଲି** - *ପଦ୍ୟ:* (ବି.) : ପାଦଦ୍ୱାରା ଗମନ, ପାଦରେ ଚାଲିଯିବା, ଚାଲୁଣିରେ ଛାଣିବା

**ଚଲାଚଳ** - *ଦେ:* (ବି.) : କାକ, ବାକ୍ୟ, ଅସ୍ଥି ବିଜ୍ଞାନ

**ଚଲାଣ** - *ଦେ:ପଦ୍ୟ:ରା:* (ବି.) : ରପ୍ତାନି, ପଠେଇବା ଟଙ୍କା ଦାଖଲ କରିବା, ପଣ୍ୟଦ୍ରବ୍ୟାଦିର ପ୍ରେରଣ, ପୋଲିସ ଦ୍ୱାରା ଧୃତ ଅପରାଧିକୁ ମାଜିଷ୍ଟ୍ରେଟଙ୍କ ନିକଟକୁ ବିଚାରାର୍ଥ ପ୍ରେରଣ କରିବା

**ଚଲାଣି** - *ପଦ୍ୟ:* (ବି.) : ଟଙ୍କା ବା ଜିନିଷ ପଠାଇବା, ପଠାଯାଉଥିବା, ରପ୍ତାନିର ଉପଯୋଗୀ, ବିଦେଶ ପ୍ରେରିତ

**ଚଲାଣିମାଲ** - *ଦେ:* (ବି.) : ବିଦେଶରୁ ଆମଦାନୀ

**ଚଲାନି** - *ସୁ:ଦୌ:* (ବି.କ୍ରି.) ଦେଶୀ, ସାଧାରଣରେ, ମେଲାଣି

**ଚଲାବୁଲା** - *ପଦ୍ୟ:ଦେ:* (ବି.) : ଯିବା ଆସିବା, ଗମନାଗମନ, ପାଦଚାରଣ, ଇତସ୍ତତଃ ଭ୍ରମଣ କରୁଥିବା, ବୁଲାବୁଲି କରିବା

**ଚଲ୍ କରିବା** - *କଳା:* (କ୍ରି.) : ଶାରୀରିକ କଷ୍ଟ ବିଶେଷ, ହଠାତ୍ କୌଣସି ଅଂଶରେ ସାମାନ୍ୟ କଷ୍ଟାନୁଭବ କରିବା

**ଚଳଣି** - *ନ:* (ବି.) : ରୀତି, ଆଚରଣ, ବ୍ୟବହାର

**ଚଳତା** - *ଦେ:* (ବି.) : ଓଉ

**ଚଳନ୍ତା** - *ନ:* (ବିଂ.) : ଚାଲୁଥିବା

**ଚଳନ୍ତି** - *ନ:* (ବି.) : ଅସ୍ଥାବର ସମ୍ପତ୍ତି

**ଚଳନ୍ତି ମାଲ** - *ଦେ:* (ବି.) : ଅସ୍ଥାବର ଧନ

**ଚଳପତ୍ର** - *ଗଦ୍ୟ:* (ବି.) : ଅଶ୍ୱତ୍ଥ

**ଚଳ ବିଚଳ** - *ଦେ:* (ବି.) : ଚଳ ପ୍ରଚଳ

**ଚଳ ମାଡ଼ିବା** - *ଦେ:* (କ୍ରି.) : ବିରକ୍ତି, ଚିଟା ଲାଗିବା

**ଚଳମାନ ଦୂରଭାଷ** - *ସଂ:* (ବି.) : ମୋବାଇଲ୍ ଫୋନ୍

**ଚଳୟ** - *କଝ:* (ବି.) : ଚଢେଇ

**ଚଳାଇବା** - *ଦେ:ରା:* (କ୍ରି.) : ବିରକ୍ତ କରିବା, ଦିକ୍ କରିବା, ଚିଡାଇବା, ହାସ୍ୟ କରିବା

**ଚଳାଚଳା** - *ଚ:* (ବିଂ.) : ଟିକିଏ ଟିକିଏ

**ଚଳିତ** - *ଦେ:* (ବି.) : ଚଳୁଥିବା

**ଚଳିବା** - *ଗ:ଢ:ରା:* (ବି.କ୍ରି.) ରାଗିବା, ଚିଡ଼ିବା, ଆରମ୍ଭ ହେବା, ଗତିକରିବା, ବିତେଇବା, ଆବଶ୍ୟକତାର ସାମାନ୍ୟ ପୂରଣ ହେବ

**ଚଳିହେବା** - *ନ:ଦେ:ଗ:* (କ୍ରି.) : ରାଗିବା, ବିରକ୍ତ ହୋଇ ଗାଳିଦେବା, ଗାଳିଦେବା

**ଚଳୁ** - *ଅନେ:* (ବି.) : ଆଚମନ, ଖାଇବା ପୂର୍ବରୁ ଜଳଗ୍ରହଣ, ଖାଇବା ପୂର୍ବର ମନ୍ତ୍ରପୂତ ପାଣି

**ଚଳୁଆ** - *ନ:ଦେ:* (ବି.) : ଯେ ସହଜରେ ଚିଡ଼େ, ରାଗିଯାଏ, ବିରକ୍ତିହୁଏ, ଚିଡ୍ ଚିଡ଼ିଆ, ବଦରାଗୀ

**ଚଳୁ କରିଦେବା** - *ସଂ:ଦେ:କ:* (କ୍ରି.) : ଅନାୟାସରେ ଗ୍ରାସ କରିଦେବା, ଆତ୍ମସାତ୍ କରିଦେବା, ସବୁଶେଷକରିଦେବା

**ଚଳେଇଛନ୍** - *ବୌ:* (କ୍ରି.) : ଚଳେଇଛନ୍ତି

**ଚଳେଇଦବା** - *ନ:* (ବି.) : ଖାପଖୁଆଇ ନେବା, ନିଜ ସହିତ ସାମିଲ କରିନେବା, ମିଶାଇ ନେବା, ମିଶାଇ ଦେବା, ଗ୍ରହଣ କରିନେବା

**ଚଳେୟ** - *ମ:* (ବି.) : ଚଢ଼େଇ

**ଚଷକତାଟିଆ** - *ସଂ:* (ବି.) : ମଦ୍ୟପାତ୍ର

**ଚଷା** - *ଅନେ:* (ବି.) : ଏକ ଜାତି ବିଶେଷ, କୃଷକ, ଜାତି

**ଚଷାଣ୍ଡିଆ** - *ସଂ:* (ବିଂ.) : ନିର୍ବୋଧ; ଗ୍ରାମୀଣ, ରୁଚିହୀନ, ରୁଚିନଥିବା

**ଚଷାପିଲା** - *ଗ:* (ବି.) : ବର୍ଷାଋତୁରେ ଦେଖା ଯାଉଥିବା କ୍ଷୁଦ୍ର ବିଷହୀନ ସାପ

**ଚଷାପୁଅ** - *ଗ:ଦେ:* (ବି.) : ବାୟା ଚଢେଇ, ଚଢ଼େଇ, ଭରତିଆ ପକ୍ଷୀ

**ଚଷାଳ** - *ଦେ:* (ବି.) : ମହୁଫେଣା, ମଧୁଚକ୍ର

**ଚଷୁ** - *ଅନେ:* (ବି.) : ଧାନଚୋପା, ଧାନ ଚୋପାରୁ ପ୍ରସ୍ତୁତ କୁଣ୍ଡା, ତଷୁ

**ଚଷୁ କୁଟିବା** - *ଦେ:ନ:ସଂ:* (କ୍ରି.) : ବୃଥା ପରିଶ୍ରମ କରିବା, ଭୂଷ କୁଟିବା, ବୃଥା ପରିଶ୍ରମ କରିବା, କାର୍ଯ୍ୟ ହାସଲ ନହେବା, ମୂଲ୍ୟହୀନ କାର୍ଯ୍ୟ କରିବା

**ଚହଚହ** - *ନ:ଦେ:* (ବିଂ.ଅ.) ଚକ୍‌ଚକ୍ ଦେଖାଯାଉଥିବା, ଗହଗହ, ଟହଟହ, ମହମହ

**ଚହଟ** - *ଅନେ:* (ବି.ବିଂ.) : ପ୍ରକାଶିତ ହେବା, ବ୍ୟାପୀଯିବା, ଚକ୍‌ଚକିଆ, ଉଜ୍ଜ୍ୱଳ, ଭାସମାନ ସୁଗନ୍ଧ, ଶୋଭା, କାନ୍ତି, ବାସ୍ନା

**ଚହଟ ଚିକଣ** - *ଦେ:ଜ:* (ବିଂ.ବି.) : ସୁନ୍ଦର, ସଜେଇ ହେବା, ସୁନ୍ଦର ଶୋଭା

**ଚହଟଚଂପା** - *ଭ:ସଂ:* (ବିଂ.) : ଫୁଟାଣି ଦେଖାଉଥିବା ସ୍ତ୍ରୀଲୋକ, ନିଜ ଢଙ୍ଗ ଢାଙ୍ଗରେ ଯେ ମନ କିଣି ପାରେ

**ଚହଟା** - *ଗ:* (ବି.) : ଦଣ୍ଡନୃତ୍ୟରେ ଚଢେୟାର ଭାଇ, ଦଣ୍ଡନୃତ୍ୟର ଚରିତ୍ର

**ଚହଟିବା** - *ଦେ:କଳା:* (କ୍ରି.) : ମହକିବା, ସୁବାସ ପ୍ରସାରିତ ହେବା, ଗୁପ୍ତରେ କଥା ପ୍ରଘଟ ହୋଇଯିବା

**ଚହଟୀ** - *ପୁ:* (ବିଂ.) : ଛଟକ ଦେଖାଉଥିବା ବା ଫୁଲେଇ

**ଚହଟେଇବା** - *ନ:* (କ୍ରି.) : ସୁଗନ୍ଧକୁ ପ୍ରସାରିତ କରିବା

**ଚହରା** - *ଝ:* (ବି.) : ସାମୟିକ ଭାବେ ଚେହେରା ଦେଖାଇବା

**ଚହରାଇବା** - *ବୌ:ଦେ:ନୂ:* (ବି.କ୍ରି.) : ଲାଳସା ଦେଖାଇବା, ଲୋଭ ଦେଖେଇବା, ଖାଇବା ପଦାର୍ଥକୁ ଅନ୍ୟକୁ ଦେଖାଇ ଆକୃଷ୍ଟ କରିବା

**ଚହରିବା** - *କଳା:* (କ୍ରି.) : ଲକ୍ଷ୍ୟହୀନ ଭାବରେ ବୁଲିବା

**ଚହଲ୍** - *କଳା:ନୂ:* (ବିଂ.ବି.) ଚଞ୍ଚଳ, କୋଳାହଳ, କୁଆଁଠାରୁ ଅଧିକ ଓସାରିଆ ଜଳାଶୟ

**ଚହଲ ଧାଂଗ୍ରା** - *କଳା:* (ବିଂ.) : ରସିକ ଯୁବାପୁରୁଷ

**ଚହଲା** - *ଅନେ:* (ବି.କ୍ରି.) : ବାଲିରେ କ୍ଷୁଦ୍ର ଜଳାଶୟ, ଛୋଟ ଗାଡ଼ିଆ, କୂପଠାରୁ ସାମାନ୍ୟ ବଡ ଜଳାଧାର, ଜଳକୁଣ୍ଡ, ଚୂଆ

**ଚହଲାଇବା** - *ଦେ:* (କ୍ରି.) : ଗୋଳିଆ କରିବା, ଘାଣ୍ଟିବା

**ଚହଳ** - *ଅନେ:* (ବି.) : ଗହଳି, ଭିଡ଼, ଗହଳର ସ୍ୱର, ଗୋଳମାଳ, ପାଟିତୁଣ୍ଡ, ହଇଚଇ, ଗୋଳ

**ଚହାଁଚହିଁ** - *ଦେ:* (ବି.) : ଦେଖାଦେଖି

**ଚହୁଦ** - *କଳା:* (ବିଂ.) : ଚଉଦ, ଶସ୍ୟାଦି ମାପ ବେଳେ, ଚଉଦର ଉଚ୍ଚାରିତ ରୂପ

**ଚହଁରା ଦେବାର** - *ସୁବ:* (କ୍ରି.) : ଦେଖାଇବା ଉଦ୍ଦେଶ୍ୟରେ ବୁଲିବା

**ଚହଁରାବାର** - *ସୁବ:* (କ୍ରି.) : ପିଲାମାନେ ଖାଇବା ଜିନିଷ ଅନ୍ୟକୁ ଦେଖାଇବା କିନ୍ତୁ ନ ଦେଇ ନିଜେ ଖାଇବା

**ଚହଁରେଇବା** - *କଳା:* (କ୍ରି.) : ସତର୍କ ଭାବରେ ଦେଖିବା, ସୂକ୍ଷ୍ମ ଭାବରେ ଅନୁମାନ କରିବା

**ଚହଁରେଇ ହେବା** - *ସ:* (କ୍ରି.) : ଦେଖେଇ ହେବା, ନିଜର ସଂପତ୍ତି ଅନ୍ୟକୁ ପ୍ରଦର୍ଶିତ କରି ତାର ଅଭାବକୁ ସୂଚାଇଦେବା

**ଚହଁର୍** - *କଳା:* (ବି.) : ପ୍ରତ୍ୟେକ ଗଣ୍ଠିରେ ପ୍ରାୟ ଚାରି ଆଂଗୁଳରୁ ଅଧିକ ଲମ୍ବର ଶାଖା ବିଶିଷ୍ଟ ଲମ୍ବ ବାଉଁଶ । ଏହା ସାହାଯ୍ୟରେ କୂଅ ଭିତରକୁ ସହଜରେ ଓହ୍ଲାଇହୁଏ ଓ ଗଛ ଉପରକୁ ମଧ୍ୟ ଚଢି ହୁଏ ।

**ଚହ୍ଲା** - *ଅନେ:* (ବି.) : ଏକ ପ୍ରକାର ଖଟା, କ୍ଷୀରରୁ ସୃଷ୍ଟି, ପତଳା ଦହିପାଣି, ଘୋଳଦହି

**ଚାଆଁରା** - *ଦେ:* (ବି.) : ଏକ ପ୍ରକାର ଘାସ

**ଚାଇଛାଡ଼** - *ପୁ:* (ବି.) : ଛାଟିଦେଲା ପରି ଚେହେରା ଥିବା, ଛଇଛାଡ଼

**ଚାଇଁ** - *ଅନେ:* (ବିଂ.ବି.) : ଚଞ୍ଚଳିଆ, ଧୂର୍ତ୍ତ, ଚାଲାକ, ଠକ, ତାତିଲା, ଚଞ୍ଚଳ, ଚପଳ, ଖର, ଚତୁର, ଚାଲାକ

**ଚାଇଁଆ** - *ଢେ:ଅ:ନ:* (ବିଂ.) : ଚାଲାକ, ଠକ, ତାତିଲା, ଅସ୍ଥିର, ଚଳଚଞ୍ଚଳ

**ଚାଇଁ କରିବା** - *ଢେ:* (କ୍ରି.) : ଚଟ୍ କରିବା, ତାତିଯିବା

**ଚାଇଁକିନା** - *ଗ:* (ଅ.) ଅଗ୍ନି କିମ୍ବା ବେତ୍ରାଘାତର ଯନ୍ତ୍ରଣା, ତତ୍‌କ୍ଷଣାତ୍

**ଚାଇଁଚର୍‌କା** - *ଗ:* (ବି.) : ଅଳ୍ପ ଜଳ ଥିବା ସ୍ଥାନ

**ଚାଇଁ ପଖାଳ** - *ଗ:ନ:ଢେ:ଜ:* (ବି.) : ସଜ ପଖାଳ, ଗରମ ଭାତକୁ ପାଣିରେ ପଖାଳିବା

**ଚାଇଁପୋକ** - *କ:* (ବି.) : ଆଖିରେ ଉଡ଼ି ପଡୁଥିବା ପତଙ୍ଗ ବିଶେଷ

**ଚାଇଁ ମାରିବା** - *ଗ:* (କ୍ରି.) : ଧପା ମାରିବା, ଧକେଇ ହେବା

**ଚାଉର** - *କଃ:ମ:* (ବି.) : ଚାଉଳ

**ଚାଉଳି** - *କଃ:ଯା:ମା:* (ବି.ବିଂ) : ଚାଉଳ, ଚାଉଳ ରନ୍ଧା ମଦ

**ଚାଉଳ ପଣିବା** - *ଗ:* (କ୍ରି.) : ରୋଷଇ ପାତ୍ରରେ ଚାଉଳ ପକାଇବା

**ଚାଉଳିଆ** - *ଅନେ:* (ବି.ବିଂ.) : କେଳାଜାତି, ଫୁଟିନଥିବା ଭାତ, ପିଜୁଳି, ଦରସିଝା, ପଇସାବାଲା ଲୋକ

**ଚାଉଳେଇବା** - *ଜ:* (କ୍ରି.) : ଗେଲ ହେବା

**ଚାଉଳେଇ ବାଉଳେଇ** - *ଢେ:* (କ୍ରି.ବି.) : ଖଣ୍ଡଖଣ୍ଡିଆ, ଦରୋଟି, ଅସ୍ପଷ୍ଟ କଥା, ପ୍ରଳାପ

**ଚାଇଁକା** - *ଖୋ:* (ବିଂ.) : ଚଞ୍ଚଳିଆ

**ଚାଇଁକିନା** - *ଢେ:କେ:* (ବିଂ.ଅ.) : ଚାଇଁ ଚାଇଁ, ହଠାତ୍ ଗରମ ଅନୁଭବ, ଚେଙ୍କ

**ଚାଇଁଚା** - *ଅ:* (ବି.) : ଚାମଚ

**ଚାଇଁଚାଇଁଆ** - *ଢେ:* (ବିଂ.) : ନିଛାଟିଆ, ନିର୍ଜନ

**ଚାଇଁରୀ** - *ସୁବ:* (ବି.) : ପଶୁଲାଂଜ ବା କୃତ୍ରିମ ନାଇଲନ୍‌ର କେଶ, ସ୍ତ୍ରୀମାନଙ୍କ ଖୋସା ପାଇଁ ବ୍ୟବହୃତ

**ଚାଇଁରୀ ମୁଣ୍ଡି** - *ଗୌ:* (ବିଂ.) : ରୂପା କାଠି ଥିବା ଖୋଷା ଅଳଙ୍କାର ପିନ୍ଧା ମାଇପି

**ଚାଏଲ୍** - *କଳା:* (ବି.କ୍ରି.) : ଛାତ, ଚାଳ, ଛାଣି, ଚାଲିବା

**ଚାଏଲ୍ ଚଲନ୍** - *କଳା:* (ବି.) : ଚାଲି ଚଳଣି, ବ୍ୟବହାର, ଦୈନନ୍ଦିନ ଜୀବନ ଯାପନ ରୀତି

**ଚାକ୍‌ଲେ** - *କଳା:* (କ୍ରି.) : ଚାଖିଲେ, ସ୍ୱାଦ ଜାଣିବା ପାଇଁ ଖାଇଲେ

**ଚାକର ବାକର** - *ଅନେ:* (ବି.) : ଅନୁଚର

**ଚାକା** - *ଭା:* (ବିଂ.) : ବୃତ୍ତାକାର

**ଚାକିରୀ** - *ଢେ:* (ବି.) : ପରପାଖରେ ଚାକର ପରି ଖଟି ବେତନ ପାଇବା, ବୃତ୍ତି

**ଚାକୁ** - *ଅନେ:* (ବି.) : ଛୋଟ ଧାରୁଆ ଛୁରୀ

**ଚାକୁଚାକୁ** - *ଦେ:ନ:* (ଅ.) : ପାକ୍ ପାକ୍, ପାକୁ ପାକୁ କରି ଖାଇବା, କୁକୁରର ଖାଦ୍ୟଗ୍ରହଣ କାଳୀନ ଶବ୍ଦ, ବିନା ଖାଦ୍ୟରେ ପାଟି ଚାକୁଳେଇବା

**ଚାକୁଣ୍ଡା** - *ଅନେ:* (ବି.) : ଏକ ବୃକ୍ଷ ବିଶେଷ, ଶାଗ, ଗଛ, କାଚିଣ୍ଡା

**ଚାକୁଳି** - *ରା:* (ବି.) : ବିରିମିଶା ପିଠା, ଚକୁଳି

**ଚାକୁଳୁ କଥା** - *ଗ:* (ବି.) : ଆତ୍ମ ଗର୍ବି ମହିଳାର ଅହଂକାରୀ କଥା, ଅହଂକାରୀ ଅଭିପ୍ରାୟ

**ଚାକୁଳେଇବା** - *ଅନେ:* (କ୍ରି.) : ଖାଦ୍ୟକୁ ପାଟିରେ ଏପଟସେପଟ କରି ଚୋବେଇବା, ବାରମ୍ବାର ଗୋଟିଏ କଥାକୁ କହିବା, ପାଟି ପାକୁଳି କରିବା, ଖାଇବା ବେଳେ ଚୋବାଇ ଖାଇବା ଶବ୍ଦ, ପାକୁଳେଇବା, କଳ କରିବା

**ଚାଖଣ୍ଡ** - *ଦେ:* (ବି.) : ହାତେର ଅଧେ, ୧୨ ଆଙ୍ଗୁଳ, ଦୁଇ ଚାଖଣ୍ଡରେ ହାତେ

**ଚାଖି** - *ଦେ:ସୁବ:* (ବିଂ.ବି.) : ଯେ ବାଲିଙ୍ଗି ଦେଖାଏ, ଗର୍ବୀ, ସ୍ତ୍ରୀ, ଯୁବତୀମାନଙ୍କ ଛଇ, ଛଟକ

**ଚାଖି ଚାହାନି** - *ସ:* (ବି.) ସୁନ୍ଦର ରୂପଶୋଭା, ବେଶଭୂଷା, ଫେସନ

**ଚାଙ୍ଗଢ଼େ** - *ଗ:* (ବିଂ.) ବାର ଆଙ୍ଗୁଳି ପରିମିତ

**ଚାଙ୍ଗଖାଡ଼ି** - *ସୁବ:* (ବି.) : ଚାଙ୍ଗୁ ଆଦି ବାଦ୍ୟର ବଜାଇବା କାଠି, ନହେଲେ ମଧ କିଛି ଚିନ୍ତା ନାହିଁ-ଏହି ଅର୍ଥକୁ ବିସ୍ତାର ଘଟିଛି

**ଚାଙ୍ଗଡ଼ା** - *କ:ଗ:* (ବି.) : ଚାଙ୍ଗୁଡ଼ି, ବାଉଁଶ ନିର୍ମିତ ଡାଲା

**ଚାଙ୍ଗଡ଼ାଘର** - *କ:* (ବି.) : ଠାକୁର ଭଣ୍ଡାରଘର

**ଚାଙ୍ଗରି** - *ସ:* (ବି.) : ବଡ଼ ପାଛିଆ, ଡାଲା

**ଚାଙ୍ଗା** - *ଅନେ:* (ବି.ବିଂ.) କର୍ମ ଚଞ୍ଚଳ(active), ସତେଜ, ସୁସ୍ଥ ଦେଖାଯିବା, ତେଜିଆନ, ନିରୋଗ, ସବଳ, ତେଜବାନ୍

**ଚାଙ୍ଗୁ** - *ନ:ଗ:ଦେ:* (ବି.) : ଏକ ବାଦ୍ୟ, ପାଉତି ଭୂୟାଁ ମାନଙ୍କ ନାଚ, ଗୀତ ଓ ବାଦ୍ୟ

**ଚାଙ୍ଗୁଡ଼ି** - *ଅ:ଦେ:ରା:* (ବି.) : ଫୁଲ ତୋଳା ଛୋଟ ଡାଲା, ଡାଙ୍କୁଣୀ, ବାଉଁଶିଆ

**ଚାଙ୍ଗୁନୃତ୍ୟ** - *ସଂ:* (ବି.) : ଭୂୟାଁ ସଂପ୍ରଦାୟର ଏକ ନୃତ୍ୟ

**ଚାଙ୍ଗୁଳୁ ଚାଙ୍ଗୁଳୁ** - *ନ:* (ବି.) : ଭୟଭୀତ ହୋଇ ଏଣେତେଣେ ଚାହିଁବା ଭଙ୍ଗୀ, ଉଷାକାଳୀନ ସମୟ

**ଚାଚି** - *ସୁ:* (ବି.) : ଖୁଡ଼ି

**ଚା ଛଣା** - *ନ:* (ବି.) : ଚାହା ଛାଣିବାପାଇଁ ଛାଲି

**ଚାଛିବା** - *କନ:* (କ୍ରି.) : ଚାଞ୍ଛିବା, ପାଲିସ କରିବା

**ଚାଞ୍ଚ** - *ଗ:କୋ:* (ବି.) : ବାଁଶ ନିର୍ମିତ ଡୋଲି, ବାଉଁଶ ନିର୍ମିତ ଚଟେଇ, ମଶିଣା, ହେଁସ

**ଚାଞ୍ଚଡ଼ା** - *କୋ:ମା:ସଂ:ରା:* (ବି.) : ପାହାଡ଼ର ବଡ଼ ସମତଳ ପଥର, ପଥର ଚଟାଣ, ବାଉଁଶ ପାତିଆ ଟାଟି, ଛୋଟ ପାହାଡ଼

**ଚାଞ୍ଚରା** - *ଅନେ:* (ବି.) : କୁଟା ତିଆରି ଝୁଲା, ବାଉଁଶରେ ତିଆରି ଟାଟି, ଟାସରା (ବୃହତ୍ ପ୍ରଶସ୍ତ ପ୍ରସ୍ତରଖଣ୍ଡ ଯେଉଁଠି ବହୁଲୋକ ବସି ପାରନ୍ତି), ନଡ଼ିଆ ପତ୍ରରେ ତିଆରି ଆସନ

**ଚାଞ୍ଚେଡ଼ା** - *ନ:* (ବି.) : ବାଉଁଶରେ ବୁଣା ହୋଇଥିବା ଟାଟି

**ଚାଞ୍ଛି** - *ବା:* (ବି.) : କ୍ଷୀର କୋରୁଅ

**ଚାଟ** - *ଦେ:ପଦ୍ୟ:ନ:ଦେ:* (ବି.) ଛାତ୍ର, ଶିଷ୍ୟ, ମୁଖରୋଚକ ଖାଦ୍ୟ

**ଚାଟଶାଳୀ** - *ଦେ:* (ବି.) ଚାଟଶାଳୀ, ଚାହାଳି, ଚାଟଶାଳା, ପ୍ରାଥମିକ ବିଦ୍ୟାଳୟ

**ଚାଟାନି** - *ମ:* (ବି.) : ଚଟାଣ

**ଚାଟି** - *ଅନେ:* (ବି.) : ଲୁଣ ମରାଯିବା ସ୍ଥାନ, ଝୁଡି, ପିମ୍ପୁଡ଼ି, ମାଟି ପାତ୍ର, ଲୁଣ ଗାଲି, ଗାଈବନ୍ଧା ଦଉଡ଼ି, ଜନ୍ଦା

**ଚାଟିଆ** - *ମ:କଣ:* (ବି.) : ବାଇଚଢ଼େଇ

**ଚାଟିଆଳ** - *ବା:* (ବି.) : ପାଇକ

**ଚାଟିଣୀ** - *ଅନେ:* (ବି.) : ଖଟା, ଯାହା ଚାଟି ଖିଆଯାଏ

**ଚାଟିପିଟା ବ୍ରାହ୍ମଣ** - *ଗ:* (ବି.) : ମୃତ ଦଶାହ କର୍ମ କରୁଥିବା ବ୍ରାହ୍ମଣ

**ଚାଟୁ** - *ଛ:ଦେ:ମ:ମା:* (ବି.) : ଖୋସାମତ, କଥଁଲେଇ ସଅଁଲେଇ କରି କୁହାଯିବା କଥା

**ଚାଟୁକାର** - *ସଂ:ଦେ:* (ବିଂ.ବି.) : ତେଲମାରି କଥାକହିବା ଲୋକ, ଖୋସାମତିଆ

**ଚାଟୁପଟୁ** - *ଦେ:* (ବି.) : ଭଣ୍ଡ ଭାଣ୍ଡ

**ଚାଡ଼ରା** - *ମ:କଣ:* (ବିଂ.ବି.) : ଚନ୍ଦା

**ଚାଡୁ** - *କଣ:* (ବି.) : ଚଟୁ

**ଚାଡୁଆ** - *ବା:* (ବି.) : ମାଛଧରା ଯନ୍ତ୍ରବିଶେଷ

**ଚାଣହେକରା** - *ବର:* (ବିଂ.) : ଶିଘ୍ର, ଜଲଦି

**ଚାଣ୍ଡି** - *ମା:ବୌ:ଅ:ଦେ:* (ବି.) : ପିମ୍ପୁଡ଼ି, ଶାଗ ବିଶେଷ

**ଚାଣ୍ଡିବା** - *ବୌ:* (କ୍ରି.) : ବାଛିବା

**ଚାଣ୍ଡୁ** - *ମ:ଗଦ୍ୟ:* (ବି.) : ଚନ୍ଦ୍ର

**ଚାଣ୍ଡେ** - *ଛ:ଭ:ଦେ:କ:* (ବି.ବିଂ.ଅ.) : ଶୀଘ୍ର, ତୁରନ୍ତ

**ଚାତର** - *ଅନେ:* (ବି.ବିଂ.) : ଫୁଲେଇ ହେବା, ଗର୍ବ କରିବା, ଚାତୁରୀ, ବୁଦ୍ଧି, ସଫା ହୋଇଥିବା ଜାଗା

**ଚାଦର** - *ଅନେ:* (ବି.) : ଚଦର, ପାଛୁଡା, ଉତ୍ତରୀୟ ବସ୍ତ୍ର, ତଉଲିଆ, ଗାମୁଛା

**ଚାନା** - *ଢେ:* (କ୍ରି.) : ନିଅ

**ଚାନ୍ଦ** - *ଦେ:ଗ:କ:ନ:* (ବି.) : ମିତ, ମଇତ୍ର, ବନ୍ଧୁତା, ଚନ୍ଦ୍ର, ସ୍ତ୍ରୀଙ୍କ ଅଳଙ୍କାର ବିଶେଷ, ଜହ୍ନ

**ଚାନ୍ଦକଜା** - *ଗ:* (ବି.) : ଚାଉଳ ଏବଂ କାଳିରେ ପ୍ରସ୍ତୁତ ଏକ ପ୍ରକାର କଜ୍ଜଳ

**ଚାନ୍ଦଚକଟା** - *ଖୋ:କ:* (ବି.) : କୁମାର ପୂର୍ଣ୍ଣିମୀର ପୂଜା ଭୋଗ, କୁମାର ପୂର୍ଣ୍ଣିମାରେ ଝିଅମାନେ ଚାନ୍ଦପାଇଁ ଚକଟିଥିବା ଭୋଗ

**ଚାନ୍ଦମାରି** - *ଯା:* (ବି.) : ପର୍ବ ବିଶେଷ

**ଚାନ୍ଦଲୁ** - *ବୌ:* (ବିଂ.) : ଚନ୍ଦା ମୁଣ୍ଡିଆ, ଚନ୍ଦା

**ଚାନ୍ଦା** - *ଦେ:ଛ:ବର:ଗଦ୍ୟ:* (ବି.) : ଭେଦା, ଦେବାକୁଥିବା ଅର୍ଥଅଂଶ, ବେଳାର ତଳ ଉପର ପାଖର ସାମଗ୍ରୀ, ଏକ ପ୍ରକାର ଚଢେଇ

**ଚାନ୍ଦି** - *ନ:ଦେ:ବୌ:* (ବି.) : ଏକ ପ୍ରକାର ମାଛର ନାମ, ରୂପା

**ଚାନ୍ଦିନୀ** - *ସ:* (ବି.) : ଛୋଟ ଚଉପାଢୀ ଚଟାଣ, ଖୋଲା ମଣ୍ଡପ

**ଚାନ୍ଦୁଆ** - *ଖୋ:ଦେ:* (ବି.) : ରଙ୍ଗ ବେରଙ୍ଗର କପଡ଼ା ଓ ଚୁମୁକିରେ ତିଆରି ଏକ ପ୍ରକାର ଗୃହସଜ୍ଜା ଉପକରଣ, ଆସ୍ତରଣ, ଢାଙ୍କୁଣୀ, ଠାକୁର ଘର ଓଢଣୀ, ସାମିୟାନା

**ଚାନ୍ଦ୍ରାୟଣ** - *ଦେ:* (ବି.) : ଚନ୍ଦ୍ରଙ୍କ ବ୍ରତ, ଚନ୍ଦ୍ର କ୍ଷୟ ବୃଦ୍ଧିରେ ଖାଦ୍ୟ ମାତ୍ର ହ୍ରାସ ଓ ବୃଦ୍ଧି

**ଚାନ୍ଦୋ** - *କଳା:* (ବିଂ.) : ଚନ୍ଦା, କେଶହୀନ

**ଚାପ** - *ଅନେ:* (ବି.) : ପ୍ରଭାବ, ବଳପ୍ରୟୋଗ, ରୂପା ତିଆରି ବାହୁଟି, ନଦୀ ପାରିହେବା ଭେଳା, ଓଜନ, ଭାର, ଡଙ୍ଗାକୁ ଡଙ୍ଗା ସହ ଯୋଡି ଚାପ କରାଯାଏ, ଘୁଙ୍ଗୁର, ଚିପିବା

**ଚାପ୍‌ରା** - *କଝ:ମା:* (ବି.) ଚାପଡ଼ା, ପାଣିଚିଆ ସ୍ୱାଦ

**ଚାପ ଖେଳିବା** - *ଦେ:* (କ୍ରି.) : ନାବକେଳି

**ଚାପଟ** - *ରା:* (ବିଂ.) : ଚଞ୍ଚଳ

**ଚାପଡା** - *ଦେ:ଗ:ନ:* (ବି.) : ଚାପୁଡା, ଥାପଡ଼, କରତଳ ଦ୍ୱାରା ଆଘାତ, ହାତ ପାପୁଲିରେ ପ୍ରହାର କରିବା

**ଚାପଦାର** - *ଚ:* (ବି.) : ଜାହାଜ ଭିତରେ ମନୁଷ୍ୟ ରହିବା ଘର

**ଚାପର** - *ସୁବ:* (ବି.) : ଚାପୁଡ଼ା

**ଚାପରା** - *କୋ:ଗଛ:ନବ:* (ବିଂ.ବି.) ପାଣିଚିଆ, ସ୍ୱଳ୍ପ ସ୍ୱାଦ, ସୁସ୍ୱାଦୁ ନ ଲାଗିବା, ସ୍ୱାଦହୀନ

**ଚାପସରି** - *ଗ:ନ:* (ବି.) : ନାରୀର ବେକ ଅଳଙ୍କାର ବିଶେଷ

**ଚାପା ଗୁଞ୍ଜରଣ** - *ସ:* (ବି.) : ଲୁଚିଯାଇଥିବା କଥା ପୁଣି ପଦାକୁ ଆସିବା, ଗୁପ୍ତ ପ୍ରତିକ୍ରିୟା

**ଚାପାଣ** - *ଚ:* (କ୍ରି.) ଚାଷ ଜମିରେ ସାରଦେବା କାର୍ଯ୍ୟ

**ଚାପୁଲୁସି କରିବା** - *କ:* (ବି.) : ଚେକି କରି କହିବା

**ଚାବ୍‌ରା** - *କୋ:ଦେ:ନବ:ମା:* (ବିଂ.ବି.) କାମୁଡ଼ା

**ଚାବ୍ରି** - *ନୂ:ସ:* (ବିଂ.) : ଦୁଷ୍ଟ ପ୍ରକୃତିର ନାରୀ, ଚଣ୍ଡି ପ୍ରକୃତି

**ଚାବ୍ଲା** - *କଝ:* (କ୍ରି.) : ଚୋବେଇବା

**ଚାବ** - *ରା:* (ବି.) : ପାଟିରୁ ନିର୍ଗତ ଫେଣ, ଛାବ

**ଚାବରିଚାଟି** - *କଳା:* (ବି.) : କାମୁଡୁଥିବା ଲାଲ୍ ପିଂପୁଡି

**ଚାବାସ୍** - *କୋ:* (ବି.) : ସାବାସ୍, ବାହାବା

**ଚାବି** - *ନ:* (ବି.) : ତାଲାର କଞ୍ଚି

**ଚାବିବା** - *ଅନେ:* (କ୍ରି.ବି.) : କାମୁଡ଼ିଦେବା

**ଚାବୁକ** - *ଦେ:* (ବି.) : କୋରଡା

**ଚାବୁକ ସବାର** - *ଦେ:* (ବି.) : ସଇସ

**ଚାବୁରେସ୍** - *କଳା:* (କ୍ରି.) : ଚୋବାଉ ଥାଅ

**ଚାଭ୍ରୀ, ଚବ୍ରୀ** - *କୌ:* (ବିଂ.) : ଯେ କାମୁଡ଼େ (ମାଇପି)

**ଚାମ୍ଚା** - *କଳା:* (ବିଂ.) : ତୋଷାମଦକାରୀ, ଖୋସାମତିଆ

**ଚାମ୍ବାଦି** - *କେ:* (ବି.) : ସବାରୀ

**ଚାମଚଟା** - *ମ:* (ବି.) : ଚେମେଣିଆ (ଛୋଟ ବାଦୁଡ଼ି)

**ଚାମଚାଗିରି** - *କେ:* (ବି.) ଚେଲା, ତୋଷାମୋଦି

**ଚାମଡା ଉତାରିବା** - *କେ:* (କ୍ରି.) : ଚାମଡା ବାହାର କରିବା, ମାଡ଼ ଦେଇ ଶରୀର ଫଟାଇବା

**ଚାମର** - *ଭ:ଦେ:ସଂ:* (ବି.) : ଠାକୁରଙ୍କ ଅର୍ଚ୍ଚନା ପାଇଁ ବ୍ୟବହୃତ ଚଅଁର, ଯାହା ପାଲା ଗାୟକଙ୍କ ହାତରେ ଥାଏ

**ଚାମାନ** - *ଗଜ:* (ଅ.) : ଅଭିମାନ, ଗୁମାନ

**ଚାମିଚି, ଚାମୁଚି** - *ନ:* (ବି.) : ଡାଲି ତରକାରୀ ବାଢ଼ିବା ପାତ୍ର

**ଚାମୁଆ** - *ଗଦ୍ୟ:* (ବି.) : ଏକ ଚେର

**ଚାମୁଚାଏ** - *ଗଦ୍ୟ:* (ବିଂ.) : ଚେନାଏ, ଅଳ୍ପ

**ଚାମୁଡ଼ିବା** - *ଅ:* (କ୍ରି.) ସ୍ପର୍ଶକରିବା, ଅଣ୍ଡାଳିବା

**ଚାମେଲି** - *ଦେ:* (ବି.) : ଜାଇଫୁଲ

**ଚାମ୍ପ** - *ଚ:* (ବି.) : ଫୁଲ (ମୁଗ ଚାମ୍ପ, ନଡ଼ିଆ ଚାମ୍ପ)

**ଚାୟାଁ** - *ସୁ:କୌ:ରା:ଚ:* (ବି.ବିଂ.) : ମୃଦଙ୍ଗର ଡାହାଣ ପାଖ (ତୀବ୍ର ସ୍ୱର ପାଖ), ମୃଦଙ୍ଗର ଡାହାଣ ପାଖ (ତୀବ୍ର ସ୍ୱର ପାଖ), ଚାଲାକ

**ଚାର** - *ଅନେ:* (ବି.) : ଅସ୍ଥାୟୀ ବାଉଁଶ ପୋଲ, ଦୂତ, ଗୁପ୍ତଚର, ଗୂଢ଼ପୁରୁଷ, ଚାରକୋଳି, ମାଛ ଧରିବା ପାଇଁ ବନଶୀରେ ଗୁନ୍ଥା ହୋଇଥିବା ଦ୍ରବ୍ୟ, ସମ୍ବାଦ ବାହକ, କାରାଗାର, ଗତି, ସଞ୍ଚାର, ବନ୍ଧନ, ଉଚ୍ଚକୋଠା ଆଦିରେ କାମ କରିବା ରାଜମିସ୍ତ୍ରୀମାନଙ୍କ ସୁବିଧା ମଞ୍ଚା ବା ଭାଡ଼ି, ଚର, ଦୂତ, ଏକପ୍ରକାର ଜଙ୍ଗଲୀ ଫଳ ଓ ଗଛ

**ଚାରକୋଳି** - *କେନ୍ଦୁ:* (ବି.) : ଏକ କୋଳି, ପାଚିଲେ କଳାରଙ୍ଗ ହୁଏ

**ଚାରଖୁଁଟିଆ** - *ସୁବ:* (ବିଂ.) : ଚାରିକୋଣିଆ

**ଚାରଗୁଡିଆ** - *ସୁବ:* (ବିଂ.) : ଅବଜ୍ଞା ବାଚକ ଶବ୍ଦ, ପଶୁ

**ଚାରଣ** - *ଦେ:* (ବି.) : ବଂଟ, ଭାଟ

**ଚାରଣା ଦିପଇସା** - *ଗ:* (ବି.) : ସ୍ୱଳ୍ପ ମୂଲ୍ୟର ପ୍ରସଙ୍ଗ

**ଚାରନି** - *ସୁ:* (ବି.) : ଚାରିଅଣା

**ଚାରମାଚାଣ୍ଡୁ** - *ଗ:* (ବି.) : ବାଟିଖେଳର ଚାରିଡାକ

**ଚାରମାଳ** - *ସଂ:* (ବି.) ସଂଯୋଗୀ ତାଳଗଛର ପଟାରେ ପ୍ରସ୍ତୁତ ରଥ ସିଢ଼ି

**ଚାରସୁତୁ** - *ଭା:* (ବି.) : ଚାରିଦିଗ, ଚାରିପାଖ

**ଚାରା** - *ଦେ:ନ:ବର:* (ବି.) : ପନ୍ଥା, ଉପାୟ, ଗଛର ଛୋଟ, ବାଳୁତ ଅବସ୍ଥା, କାଦୁଅ ମାଛ ଧରିବାର ବେଦା ବିଶେଷ, ଅନନ୍ୟୋପାୟ

**ଚାରାଗ** - *ଗଦ୍ୟ:* (ବି.) : ଏକ ଓଜନ ମାପ

**ଚାରି ଆଖି** - *ଦେ:* (ବି.) : ଦୁଇ ଜଣଙ୍କର ମିଳନ, ଦେଖାଚାହାଁ

**ଚାରି ଆଖିଆ** - *ଗ:କ:ନ:* (ବିଂ.) : ଚଷମା ପିନ୍ଧିଥିବା ବ୍ୟକ୍ତି, ସିଆଣିଆ, ସବୁ ବିଷୟରେ ପାରଙ୍ଗମ

**ଚାରିଆଡ଼** - *ଦେ:* (ବି.) : ସବୁଦିଗ, ଚତୁର୍ଦ୍ଦିଗ

**ଚାରି କର୍‌ବା** - *ନୁ:* (କ୍ରି.) : ଚୁଗୁଲି କରିବା

**ଚାରିକୁତି** - *ସ:କଳା:* (ବି.) : ଚାରିଆଡ଼େ (ଚାରିଦିଗ), ଚାରିକଡ଼, ଚତୁଃପାର୍ଶ୍ୱ

**ଚାରିଖାମି** - *ଦେ:* (ବି.) : ଅଣ୍ଡଜ, ଜରାୟୁଜ, ସ୍ୱେଦଜ, ଉଦ୍ଭିଦଜ

**ଚାରିଖୁଣ ମାପ୍** - *କ:* (ବିଂ.) : ସବୁ ଦୋଷ ଛାଡ଼

**ଚାରିଗଣ୍ଡା ଦିକଡ଼ା** - *ଗ:* (ବି.) : ଦେବାଳିଆ ଅବସ୍ଥା

**ଚାରିଗୋଡ଼ିଆ** - *ଦେ:* (ବି.) : ପଶୁ, ଜନ୍ତୁ, ଗୁରୁଣ୍ଡିବା

**ଚାରି ଚଉକସ** - *ଗ:* (ବିଂ.) : ପାରଙ୍ଗମ, ବଳିଷ୍ଠ ବ୍ୟକ୍ତିତ୍ୱ

**ଚାରିଚଉରସ** - *ଭା:* (ବିଂ.) : ସବୁକ୍ଷେତ୍ରରେ

**ଚାରି ଚେମା** - *ଗଞ:ଗ:* (ବି.) : କଉଡ଼ି ଖେଳରେ ବ୍ୟବହୃତ ଶବ୍ଦ, ଚାରିଗୋଟି କଉଡ଼ିର ଖେଳ

**ଚାରି ଦଉଡ଼ି କଟା** - *ସଂକ:* (କ୍ରି.ବି.) : କାହାକୁ ନ ମାନିବା, ସମସ୍ତଙ୍କଠାରୁ ସମ୍ପର୍କ ଛିନ୍ନ କରିବା ଲୋକ

**ଚାରିପା** - *ଦେ:ପଦ୍ୟ:* (ବି.) : ଷୋଳଅଣା, ପୂରା, ଏକେର ପରିମାଣ, ସମ୍ପୂର୍ଣ୍ଣ ଷୋଳଅଣା

**ଚାରିସୁତୁ** - *ଭା:* (ବି.) : ଚତୁର୍ଦ୍ଦିଗ

**ଚାରୁ** - *ଗ:ଦେ:ଭା:କୋ:* (ବି.) : ତିନ୍ତୁଳି, ଆମ୍ବୁ ଲର ଖଟା ପାଣି ଦକ୍ଷିଣି ଝୋଳଖାଦ୍ୟ, ତେନ୍ତୁଳି ପାଣି, ସୁନ୍ଦର, ଖଟା ଏବଂ ପାଣିଆ ବ୍ୟଂଜନ ବିଶେଷ

**ଚାରୁପାଣି** - *ଗଜ:ସଂ:ଗ:ନ:* (ବି.) : ଆମ୍ବ ଲ କିମ୍ବା ତେନ୍ତୁଳି ଦ୍ୱାରା ପ୍ରସ୍ତୁତ ଖଟା, ଗଞ୍ଜାମ ତଥା ଦକ୍ଷିଣର ଖଟାଖୋଳ, କଇଁଯା ରସରେ ତିଆରି ପତଳା ପାଣି ଯାହା ଖଟା ଲାଗେ

**ଚାର୍ଟ** - *ସଂ:* (ବି.) : ଖାଦ୍ୟ, ତାଲିକା

**ଚାର୍ ଆଖିଆ** - *କୌ:* (ବିଂ.) : ଚଷମା ପିନ୍ଧା, ସୂକ୍ଷ୍ମ ଦୃଷ୍ଟିସମ୍ପନ୍ନ, ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ

**ଚାର୍ଆଁଖିଆ ମାଛ** - *ଚା:* (ବି.) : ଏକପ୍ରକାର ଛୋଟ ମାଛ

**ଚାର୍ଖେ** - *ସ:* (ବି.) : ପରିମାପକ ଜିନିଷ

**ଚାର୍ନା** - *ଝା:* (ବି.) : ଚାରିଅଣା

**ଚାର୍ହି କୁଡି** - *ଝା:* (ବି.) : ଚତୁର୍ଦ୍ଦିଗରେ

**ଚାଲ** - *ଅନେ:* (ବି.) : ଦେଶାଚାର, ରୀତି, ପ୍ରଥା, ଅଭ୍ୟାସ, ପ୍ରଣାଳୀ, କାର୍ଯ୍ୟର ଧାରା, ବ୍ୟବହାର, ଆଚରଣ, ସ୍ୱଭାବ, ଚରିତ୍ର, କୌଶଳ, ଫନ୍ଦି, ଫିକର, ଚଳନ, ଧରଣ, ଢଙ୍ଗ, ପଶା ଓ ସତରଞ୍ଜ ଆଦି ଖେଳରେ ଗୋଟିର ଏକ ଘରୁ ଅନ୍ୟ ଘରକୁ ଚାଳନ, କପଟ, କୂଟ, ଚାଲାଖି, ଷଡ଼ଯନ୍ତ୍ର

**ଚାଲ୍ କରିବା** - *ଦେ:* (କ୍ରି.) ଛଳ, ଫନ୍ଦିଫିକର କରିବା

**ଚାଲ୍ନି** - *ସୁବ:ସ:* (ବି.) : ଚାଲୁଣି

**ଚାଲ୍ବାଜି** - *ସୁବ:ଗ:* (ବି.ବିଂ.) : ଚାତୁର୍ଯ୍ୟ, ଚାଲାକ ପଣିଆ, ଚଲାକି

**ଚାଲ୍ସିଆ** - *ସୁବ:* (ବିଂ.) : ଚାଳିସବର୍ଷ ବୟସ ହେତୁ ଚକ୍ଷୁ ଦୋଷ

**ଚାଲକା** - *କଳା:* (ବି.) : ଚାଳ, ଚାଂଚ, ବାଡ

**ଚାଲତା** - *ଚା:ଜଷ:ମ:* (ବି.) : ଚାଲୁଣୀ, ଓଉ

**ଚାଲ ପଡ଼ିବା** - *ଗ:* (ବି.) : ଯାନ ବାହାନ ବିନା ପଥ ଅତିକ୍ରମ କରିବା

**ଚାଲା** - *ଦେ:ମ:* (ବିଂ.ବି.) : ଚେଲା, ଚାଟ, ଶିଷ୍ୟ, ଚାଲୁଣି

**ଚାଲାଣ** - *ମା:ପଦ୍ୟ:ଦେ:* (ବି.ବିଂ.) : ଗାଁ ଖବରିଆ, ଚଲାଣ, ରପ୍ତାନି

**ଚାଲି** - *ପଦ୍ୟ:ଦେ:* (ବି.) : ଗମନ, ଭ୍ରମଣ, ପାଦ ଚାରଣ, ଗମନ କରିବାର ରୀତି

**ଚାଲୁ** - *ଅନେ:* (ବି.ବିଂ.) : ନିକୃଷ୍ଟ ଜିନିଷ, ଧୂର୍ତ୍ତ, ଚତୁର, ଦୁଇନମ୍ବରୀ, ନକ୍ଲି, ଚାଲାକ୍, ସାଧାରଣ ଶସ୍ତା, ଯାନାଦିର ଗତି, ଚାଲି

**ଚାଲୁ ଚାଲୁ** - *କେ:* (ଅ.) : ଚୋବାଇବା

**ଚାଲୁଣି** - *ସଂ:ଦେ:କ:ଖୋ:* (ବି.) ଯେଉଁଥିରେ ଧାନ, ବିରି ଚଲାଯାଏ, ଅନେକ ଅପବାଦର ଲୋକଉକ୍ତି, ଗଳେଇବା ଯନ୍ତ୍ର, ବହୁଛିଦ୍ରଯୁକ୍ତ ଚଲା, ଏକାଧିକ କଣାବିଶିଷ୍ଟ ପାତ୍ର

**ଚାଲୁଣିଆ** - *ସଂ:ନ:* (ବି.) : ପଠାବ୍ରଣ, ଗୋଡ ତଳିପାରେ ହେବା ଏକ ରୋଗ, ଏକ ରୋଗ ବିଶେଷ

**ଚାଳୁଣି ପାଣି** - *ଦେ:* (ବି.) : ପହିଲି ରଜବତୀ ହେବାବେଳେ ମୁଣ୍ଡରେ ପାଣି ଢାଳିବା ବିଧାନ

**ଚାଲୁବାଜ୍** - *ଇ:* (ବିଂ.) : ଚତୁର

**ଚାଳ** - *ନ:ଜ:ପଦ୍ୟ:ଦେ:* (ବି.) : ନଡ଼ା ଛପର ଘର, ଗୃହର କ୍ରମ ନିମ୍ନ ଛପର, ଗୃହପଟଳ, ଛାତ, ସ୍ୱର୍ଣ୍ଣଚୂଡ଼ାପକ୍ଷୀ, ଖଞ୍ଜନପକ୍ଷୀ, ଚଳନଶୀଳତା

**ଚାଳକ** - *ଦେ:* (ବି.) : ଯେ ଚଳାଏ, ଗାଡ଼ି ଚଳାଉଥିବା ଲୋକ, ଡ୍ରାଇଭର

**ଚାଳ ଖସିବା** - *ସ:* (କ୍ରି.) : ଗର୍ଭପାତ ହେବା

**ଚାଳଧୁଆ** - *ଜ:* (ବି.) : ବାଉଁଶ ପାତରେ ତିଆରି ଛୋଟ ଆଧାର, ଚାଉଳ ଧୁଆ ପାଛିଆ

**ଚାଳବାଡ଼** - *ଗ:* (ବି.) : ନଡ଼ା ଛପର

**ଚାଳିଆ** - *ଅନେ:* (ବି.) : ନଡ଼ା ଛପର, କୁଡିଆ, କ୍ଷୁଦ୍ର ଚାଳଘର, ବାଉଁଶ ତିଆରି ବାଡ଼

**ଚାଳିଶା** - *ପଦ୍ୟ:ନ:ଦେ:* (ବିଂ.ବି.) : ଚାଳିଶସଂଖ୍ୟା ସମ୍ବନ୍ଧୀୟ, ଚାଳିଶ ନମ୍ବରିଆ କଳସୂତା, ଚାଳିଶ ବସ୍ତୁର ପୁଞ୍ଜ ବା ସମାହାର, ୪୦ ପଦ ବିଶିଷ୍ଟ ପଦ୍ୟ (ହନୁମାନ ଚାଳିଶା), ୪୦ ବର୍ଷପରେ ଆଖିକୁ ଦେଖା ନଯିବା, ହନୁମାନ ଚାଳିଶା

**ଚାଳିଶିଆ** - *ନ:ଜ:ଗ:* (ବି.ବିଂ.) : ୪୦ ବର୍ଷରେ ଆଖିର କମ୍ ଦୃଷ୍ଟିଶକ୍ତି, ୪୦ ବର୍ଷର ପ୍ରଭାବ, ଦୃଷ୍ଟି ଦୋଷ

**ଚାଷ** - *ଅନେ:* (ବି.) : କୃଷି, କର୍ଷଣ, ତାଙ୍କ ଉପରେ ସବୁ ଚାଷ ଦାୟିତ୍ୱ, ଫସଲ

**ଚାଷ୍ନି, ଚାଷାନି** - *ସ୍ଵଦ:* (ବି.) : ଚିନିର ବହଳ ତରଳ ଘୋଳ, ଏଥିରେ ମିଠା ଆଦି ପକାଯାଏ

**ଚାଷବାସ** - *ଗ:* (ବି.) : କୃଷିବୃତ୍ତି, ଘରବାଡି, ବିଲବାଡି

**ଚାଷ ଭାଗ** - *ଗ:* (ବି.) : ଚାଷୀର ଭାଗ

**ଚାହା** - *ସ୍ଵଦ:* (ବି.) : ଚା ଗୁଣ୍ଡ ଏବଂ ପାନୀୟ

**ଚାହାଟ** - *ରା:* (ବି.) : ସୁନ୍ଦର ଦିଶିବା

**ଚାହାଣ** - *ଇ:* (କ୍ରି.) : ଅର୍ଥ ପ୍ରଦାନ କାଗଜପତ୍ର

**ଚାହାଣି** - *ଦେ:* (ବି.) : ଫୁଟାଣି, ଦୃଷ୍ଟିଭଙ୍ଗୀ

**ଚାହାଣିଛଟକ** - *ଦେ:* (ବି.) : ଚାହିଁବାର ଢଙ୍ଗ

**ଚାହାର୍** - *ନୂ:* (ବି.) : ଚାର(ଜଙ୍ଗଲ ଜାତଫଳ, ଗଛ)

**ଚାହାଲି ହେବା** - *ନୂ:ସ:* (କ୍ରି.) କଥାର ମଝିରେ, ଲାଗିବା, ବ୍ୟାଘାତ ସୃଷ୍ଟି କରିବା

**ଚାହାଳୀ** - *ମା:ଅ:ସ:* (ବି.) ଗ୍ରାମ୍ୟ ପାଠଶାଳା

**ଚାହାଁ** - *ଦେ:* (ବି.) : ଦେଖ, ଅନା

**ଚାହି** - *ସ୍ଵଦ:* (ବି.) : ଉଚିତ୍

**ଚାହିକିଚିକଣ** - *ଦେ:ଗ:* (ବି.) : ଦେଖେଇହେବା, ଫୁଟାଣି ମାରିବା

**ଚାହିତା** - *ଗ:* (ବି.) : ଯତ୍ନ

**ଚାହିଦା** - *ନ:* (ବି.) : ଆବଶ୍ୟକ

**ଚାହିବା** - *ଦେ:* (କ୍ରି.) : ଉଚ୍ଛା କରିବା, ମାଗିବା

**ଚାହିଁ କୁକୁକି ଲଗାଇ ଦେବା** - *ସଂ:* (କ୍ରି.) : ଆଖି ଆଗରେ ଠକି ଦେବା

**ଚାହିଁଲେ** - *ଭ:* (ବିଂ.) : ଇଚ୍ଛାକଲେ

**ଚାହୁଣୀ** - *ଚ:* (ବି.) : ଗୌଣୀ

**ଚାଁଖ** - *ଚ:* (ବି.) : ଦଳେ, ପଲେ

**ଚାଁ ଘରି** - *କନ:* (ବି.) : ଚାଙ୍ଗୁଡ଼ି

**ଚାଁଚି ଶାଗ** - *ସ:ସୁବ:ନୁ:* (ବି.) : ଛୋଟ ଛୋଟ ପତ୍ର ବିଶିଷ୍ଟ ଏକ ପ୍ରକାର ଶାଗ

**ଚାଁଦ୍** - *ବର:* (ବି.) : ଅରଟରେ ବ୍ୟବହୃତ ତୀକ୍‌ଷ୍ଣ ଲୁହା

**ଚାଂଚି** - *ନବ:* (ବି.) : ପିମ୍ପୁଡ଼ି

**ଚାଂଶ୍ରି** - *କଳା:* (ବି.) : ଚାଂଗୁଡି, ଚଂଗଡା

**ଚା'ଶ୍ଚ** - *କୋ:* (ବିଂ.) : ଫୁର୍ତ୍ତି, ଚଳଚଞ୍ଚଳ

**ଚା' ପାଣି** - *ଯା:* (ବି.) : ଚା ଓ ଜଳଖିଆ

**ଚିଅଇ** - *ସୁ:କୋ:* (ବି.ବିଂ.) ତୀର, ସନ୍ତସନ୍ତିଆ

**ଚିଅଁ** - *କଳା:* (ବି.) : ଶାବକ, ଛୋଟଶିଶୁ, ଛୋଟ

**ଚିଆନ୍** - *ଝ:* (ବି.ବିଂ.) କଷ୍ଟହେବା, ଶାରୀରିକ କଷ୍ଟ ବେଦନାର ଅନୁଭବ

**ଚିଆବା** - *ସ:* (କ୍ରି.) : ବାଧିବା, ଦରଜ ହେବା

**ଚିଆର** - *କଳା:ଦେ:* (ବିଂ.ବି.) : ଚାରି, ଚତୁର୍ଥ, ଶର, ବାଣ

**ଚିଆଳ କାଣ୍ଡ** - *ଗଦ୍ୟ:କେନ୍ଦୁ:* (ବି.) : ଏକ ପ୍ରକାର ଆଦିବାସୀ ଅସ୍ତ୍ର (କାଣ୍ଡ), ଲୌହ, ତୀକ୍ଷ୍ଣତୀର

**ଚିଆଁ** - *ଅନେ:* (ବି.) ଚେଇଁଥିବା, ଶୋଇନଥିବା, ଅତିଛୋଟ, ଚେଉଁବା, ଚେତା, କୁକୁଡ଼ାଛୁଆ, କୁମ୍ଭୀର, ସରଞ୍ଜାମ, ଚେଙ୍କ, ଲୁହାତତେଇ ଦାଗ ଦେବା, ସଦ୍ୟ ଜନ୍ମିଥିବା ପିଲା,

**ଚିଆଁବା** - *ସ:* (କ୍ରି.) : ଦରଜ ହେବା, ବ୍ୟଥା

**ଚିଇରା ଛାଡ଼ି** - *ଭ:* (ବିଂ.) : ପାଟିକରି

**ଚିଇଁଆ ପହଡ** - *ସଂ:* (ବିଂ.) : ଚେଇଁ ଶୋଇଥିବା

**ଚିଇଁ ଚିଇଁଆ** - *ଦେ:ସଂ:* (ବିଂ.) : ଚିଁ-ଛିଁ କରି ଯେ କହେ, ଅତି ଦୁର୍ବଳିଆ

**ଚିଇଁବା** - *ଗଜ:ଦେ:ଗା:* (କ୍ରି.ବି.) : ଶୋଷିବା, ଚକ୍‌ଚକିଆ, ଜକଜକ, ଲାଖିଯିବା

**ଚିଉର୍ ସାଗ୍** - *ସ:* (ବି.) : ଚିଉର ଶାଗ, ନଦୀରେ ଜନ୍ମେ

**ଚିଏରକୁଡ଼ି** - *ନୁ:* (ବିଂ.) : ଅଶୀ (୮୦)

**ଚିକ୍‌କନ ଚାକନ୍** - *ସ:* (ବିଂ.) : ଚିକ୍କଣ ଦିଶିବା, ଚିକ୍କଣ ଚାକଣ

**ଚିକ୍‌କା** - *ଗଜ:* (ବି.) : ପ୍ରଲୋଭନ, ଆଶା

**ଚିକ୍‌ଚାଟି** - *କଳା:* (ବି.) : ଚିକ୍ ଚିକ୍ କରୁଥିବା କାମୁଡା ଜନ୍ଦା

**ଚିକ୍ ଚିକେଇ ଖେଳ** - *ଦେ:* (ବି.) : ପୁଚି ଖେଳ

**ଚିକ୍‌ଟା** - *ଦେ:କୋ:* (ବିଂ.) : ଖଳିମାଟି, ଚିକ୍କଣିଆ

**ଚିକ୍‌ଣା ଶାଗ** - *ଟ:* (ବି.) : ବିଲବାଡ଼ିରେ ଜନ୍ମୁଥିବା ଏକପ୍ରକାର ଶାଗ

**ଚିକ୍‌ନା** - *ସୁବ:ସ:କଳା:ସୁ:* (ବି.ବିଂ.) : ଲହୁଣୀ, ମକ୍ଖନ ଏଥିରୁ ଘିଅ କରାଯାଏ, ଗୋରସ ସରରୁ ବାହାରେ (ଲହୁଣୀ), ଚିକକଣ, ମସୃଣ, ସୁନ୍ଦର

**ଚିକ** - *କେନ୍ଦୁ:* (ବି.) : ବେକର ଅଳଙ୍କାର, ଏହା ବେକରେ ଚିପି ହୋଇ ରହେ

**ଚିକଣ କୁହା** - *ଗ:* (ବି.) : ଖୋସାମତିଆ କଥା

**ଚିକଣାଚିକିଣି** - *ଦେ:ଗ:* (ବିଂ.ବି.) : ଫୁସୁଲେଇବା, ପାଲିସ୍ କରିବା, ସୁନ୍ଦର ସୁନିର୍ମଳ

**ଚିକନ୍ ଚାକନ୍** - *ସ:କଳା:* (ବିଂ.) : ଭଲ ଦିଶିବା, ଚିକ୍କଣ ସୁନ୍ଦର, ଚିକ୍‌କଣ, ମସୃଣ, ସୁନ୍ଦର, ସଜେଇ ହୋଇଥିବା

**ଚିକର** - *ଟୌ:* (ବିଂ.) : ଚିକ୍କଣ

**ଚିକଲ୍** - *କଳା:* (ବି.) : ପାଣିଆ କାଦୁଅ, କାଦୁଅ

**ଚିକସ୍, ଚିକନ** - *ସୁବ:* (ବିଂ.) : ଚିକ୍‌କଣ

**ଚିକା** - *ଗ:* (ବି.) : ପ୍ରଲୋଭନ, ଲୋଭ, ଗଣ୍ଡିଲି, ବୁଲୁଲା, ବଟୁଆ

**ଚିକିଟା** - *ଅନେ:* (ବିଂ.) : ତେଲିଆ, ତେଲ ମଇଳା ଯୁକ୍ତ ଲୁଗା, ପଙ୍କ ଓ ବାଲି ମିଶା ମାଟି, କାଦୁଆ ମାଟି, କୃପଣ, ଚିକିଟାମାଟି, ଅଠାଳିଆ ମାଟି

**ଚିକିଣିଆ** - *ଗ:କ:ନ:* (ବିଂ.) : ହୃଷ୍ଟପୁଷ୍ଟ, ସାଉଁଳିଆ, ଡଉଲଡାଉଲ, ଖୋସାମତିପୂର୍ଣ୍ଣ (ବାକ୍ୟ)

**ଚିକିତ୍ସା** - *ଅନେ:* (ବି.) : ରୋଗର ପ୍ରତିକାର

**ଚିକିର୍ ପୋ** - *ସ:* (ବିଂ.) ଶ୍ରଦ୍ଧାରେ ଦିଆଯାଉଥିବା ଗାଲି, ଗୁଟେ କିସମର ଗାଲି

**ଚିକୁର** - *ପଦ୍ୟ:* (ବି.) : କେଶର ପ୍ରତିଶବ୍ଦ, କେଶ ବିନ୍ୟାସ ଶୈଳୀ

**ଚିକ୍ଲାସ** - *ଗଦ୍ୟ:* (ବି.) : ଏକ ସଂପ୍ରଦାୟ

**ଚିଗୁଲିଆ** - *ଜ:* (ବିଂ.) : ଯେ ଚିଗୁଲିକରେ, ଜଣକ ବିରୁଦ୍ଧରେ ଯେ ଅନ୍ୟ ଆଗରେ କହେ

**ଚିଙ୍ଗଳେଇବା** - *କୋ:* (କ୍ରି.) : ଛୁଞ୍ଚିରେ ସୂତା ଗଳେଇବା

**ଚିଙ୍ଗରା** - *ବଉ:ସ:ସୁବ:* (ବି.) : ବଡ଼ ଚିଙ୍ଗୁଡ଼ି ମାଛ

**ଚିଙ୍ଗଳେଇବା** - *ନବ:* (କ୍ରି.) : ପଶେଇବା, ପୂରେଇବା

**ଚିଚାନା** - *ଢେ:* (କ୍ରି.) : ଗାଧେଇବା

**ଚିଚାରଣ୍ଡି** - *କଣ:* (ବି.) ମାର୍ଦ୍ଦାଘରର ଉପରେ ଥିବା ଛୋଟଘର।

**ଚିଚିଙ୍ଗା** - *ଦେ:ଟ:* (ବି.) : ଛନ୍ଦିବା

**ଚିଚିଣ୍ଡା** - *ଦେ:* (ବି.) : ସାପୁଆ(ପରିବା)

**ଚିଚିଲିକା** - *ଜଣ:* (ବି.) : ଢକ୍କ

**ଚିଛି, ଛି ଛିକାର, ଛି ଛି** - *ନ:* (ଅ.) : ଅଧିକ ଘୃଣା କରିବା ଭାବ, ନିନ୍ଦା କରିବା ଢଙ୍ଗ

**ଚିଟ୍** - *ଅନେ:* (ବି.) : ତେଲ ଚିକିଟା ମଇଳା, ଅଠା, ତେଲ ଚିଟ, ଚିହ୍ନ, ଚିରକୁଟ, ମଳି, ତେଲରେ ଭିଜିଯିବା, ସଂଗ୍ରାହକ

**ଚିଟ୍‌କା** - *ସୁ:* (ବି.) : ଚକଟା

**ଚିଟ୍ ପଟାଙ୍ଗ୍ ହୋଇଯିବା** - *ନୂ:* (କ୍ରି.) : ମୃତ୍ୟୁ ବରଣ କରିବା, ଉଝାଡ଼ ପଡିଯିବା

**ଚିଟ୍‌ରା** - *ଦୌ:* (ବି.) : ତୈଳାକ୍ତ

**ଚିଟକା** - *କେନ୍ଦୁ:* (ବି.) : ତାରା ପରି ଏକ ପ୍ରକାର ଫୁଲ

**ଚିଟା** - *ଅନେ:* (ବିଂ.ବି.) : ଅଠାଅଠା, ବିରକ୍ତି, ଖାଇ ଖାଇ ଆଗ୍ରହ କମିଯିବା, ପ୍ରେମପତ୍ର

**ଚିଟାଉ** - *ଦେ:କେ:* (ବି.) : ଚିଠି

**ଚିଟାବାର** - *କଳା:* (ବି.) : ଅଶୁଭ ବାର

**ଚିଟାମାଟି** - *ଜଣ:* (ବି.) : ଚିକିଟାମାଟି

**ଚିଟି** - *ମା:* (ବିଂ.) : ଚିଠି

**ଚିଟି କରଣ** - *ଗଞ:* (ବି.) : ସ୍ୱତନ୍ତ୍ର କରଣ ଜାତି

**ଚିଟିଙ୍ଗବାଜ୍** - *ଭ:* (ବିଂ.) : ଠକ

**ଚିଟିଭିଡ଼ି** - *ଅ:* (କ୍ରି.ବିଂ.) : ବିରକ୍ତ, ଅସ୍ୱସ୍ତି ଅନୁଭବ

**ଚିଟୁକୁଣି** - *ଗ:* (ବି.) : ମୁଷ୍ଟି ପ୍ରହାର

**ଚିଠା** - *ଅନେ:* (ବି.) : ତାଲିକା, ପାଣ୍ଡୁଲିପି, ଖସଡା, ହିସାବ ଚିରକୁଟି

**ଚିଠାଖାତା** - *ଦେ:* (ବି.) : ଦୈନିକ ଆୟ-ବ୍ୟୟର ହିସାବ ଖାତା

**ଚିଠେଇ ଯିବା** - *ସ:* (କ୍ରି.) : ବେଶୀ ହୋଇଯିବା

**ଚିଡ଼ି** - *ଅ:* (ବି.) : ବଡ଼ତଲା, ରାଗିଯାଇ

**ଚିଡା** - *ଦେ:* (ବିଂ.) : ରାଗୀ, ବିରକ୍ତ

**ଚିଡିଆ** - *ଦେ:* (ବି.) : ଚଢେଇ ପକ୍ଷୀ, ତାସ୍ ଖେଳରେ ଚିଡିଆ, ପାନ, ଠିକ୍ରି

**ଚିଡିଆଖାନା** - *ଦେ:* (ବି.) ଜୀବଜନ୍ତୁ ପଶୁପକ୍ଷୀଙ୍କ ବସାଘର

**ଚିଡିତନ୍** - *ଦେ:* (ବି.) : କଳାପାନ, ଚିଡିଆ ରଙ୍ଗ

**ଚିଡୋଲ** - *ପଦ୍ୟ:* (ବି.) : ଉଗ୍ର ସ୍ୱଭାବ, ଚିଡ୍ ଚିଡ୍ ଭାବ

**ଚିଡ୍‌ଚିଡ଼ା** - *ମା:* (ବିଂ.) : କ୍ରୋଧୀ, ବିରକ୍ତଭାବ

**ଚିଢ଼ି** - *ଜଣ:ଦୌ:ଅ:* (ବି.) : ବଡ଼ବୋଝ, ବଡ଼ ବାଉଁଶ ଟୋକେଇ, ବଡ଼ ଟୋକେଇ

**ଚିଢ଼ିଆ ଫୁଲ** - *କେ:* (ବି.) : ନାକ ଫୁଲ

**ଚିଢ଼ିକି ମାଛ** - *କେନ୍ଦୁ:* (ବି) : କଳା ଧଳା ରଙ୍ଗ ମିଶ୍ରିତ ଛୋଟ ମାଛ

**ଚିଢ଼େଇ** - *ଖୋ:* (ବି.) : ବାଉଁଶ ପାତିଆରେ ତିଆରି ଏକପାତ୍ର, ମାଛ ଧୋଇବା ପାଇଁ ବ୍ୟବହୃ

**ଚିଣିଚିଣି** - *ଦେ:* (ବି.) : ଫୋଡିହେବା, କଣ୍ଡିବା

**ଚିଣ୍ଡିକାଳି** - *ଖୋ:* (ବି.) : ଏକ ପ୍ରକାର ପକ୍ଷୀ

ଚିତ୍ - *କେନ୍ଦୁ:ଦେ:ବୌ:* (ବି.) : ମୁହଁ ଓ ଦେହକୁ ସିଧା କରି ଶୋଇବା, ମନ, ଜ୍ଞାନ, ଉପରକୁ ମୁହଁ, ଛେଚଲା ହୋଇ ଶୋଇବା, ପତଳା ଚିଜର ଆଗପଟ, ମୁହଁ ଉପରକୁ କରି ଶୋଇବା ଅବସ୍ଥା

ଚିତ୍‌ପଟାଙ୍ଗ - *ଅନେ:* (ବି.କ୍ରି.ବିଂ.) : ଖତମ୍, ଓଲଟି ପଡ଼ିବା, ହାରିବା, ଅଚେତ ହୋଇ ଶୋଇ ପଡିବା, ଚିତ୍‌ହୋଇ ପଡ଼ିଯିବା, ପିଠିମାଡ଼ି ଲମ୍ବହୋଇ ଭୂଇଁରେ ପଡ଼ିବା; ହାରିଯିବା, ଉପରକୁ ମୁହଁକରି ପଡିବା

ଚିତ୍ ପହଁରା - *ଦେ:* (ବି.) : ଉପର ମୁହାଁ ହୋଇ ପହଁରିବା

ଚିତ୍‌ରାଇବା - *ବ:* (କ୍ରି.) : ରଂଗକରିବା

ଚିତ୍‌ରି - *ଗଦ୍ୟ:* (ବି.) : ମାଣ୍ଡିଆ

ଚିତଉ - *ଅନେ:* (ବି.) : ବାସ୍ତସିଦ୍ଧ ପିଷ୍ଟକ ବିଶେଷ, ପିଠା, ମଣ୍ଡା, ଚିତଉପିଠା, ଅଣ ଲେଉଟା ପିଠା, ଚାଉଳ ନଡ଼ିଆରେ ପ୍ରସ୍ତୁତ

ଚିତର୍‌କାବର୍ - *ବୌ:* (ବିଂ.) : ଚିତ୍ରବିଚିତ୍ର, ଛପଛାପିକା

ଚିତଲ - *ନୂ:କଳା:* (ବି.) : ହରିଣ, ଚିତ୍ରମୃଗ

ଚିତା - *ଅନେ:* (ବି.) : ଝୋଟି, ଚନ୍ଦନଚିତା, ଠକିବା, ମଶାଣି ଫୁଲ, ଟିକିଲି, ଚନ୍ଦନ ଟିପ

ଚିତାକଟା - *ନ:ଖୋ:* (ବି.ବିଂ.) : ଠକ

ଚିତା କରିବା - *ପଦ୍ୟ:* (କ୍ରି.) : ସ୍ନାନ ପରେ କପାଳ ଆଦିରେ ଚନ୍ଦନ ଓ ତିଳକାଦି ଲଗାଇବା

ଚିତା ଖୁଣ୍ଟେଇବା - *ଗ:* (କ୍ରି.) ଛୁଞ୍ଚି ଓ କଳାଦ୍ୱାରା ଶରୀରରେ ଚିତ୍ର କରିବା

ଚିତା ଚଇତନ - *ଦେ:* (ବି.) : କପାଳ ଆଦିରେ ଟୀକା

ଚିତାଡିରିବାଟିବା - *ପୁ:* (କ୍ରି.) : ଚିକ୍‌କଣ କରି ଭାଙ୍ଗ ବାଟିବା

ଚିତାପାରୁ - *ଦେ:* (ବି.) : ଗୁଳ୍ମ, ଦଳା, କଳା, ରକ୍ତ ଚିତା

ଚିତାପେଢ଼ି - *ଅ:ଦେ:* (ବି.) : ଡିଆସିଲି, ଖୁଙ୍ଗି, ଚନ୍ଦନ ପେଡି

ଚିତାଭସ୍ମ - *ସଂ:ଦେ:* (ବି.) : ଶବଦାହ ପାଉଁଶ, ମଶାଣି ପାଉଁଶ

ଚିତା ଲେଖିବା - *ସଂ:* (କ୍ରି.) : ପାଠପଢା ଆରମ୍ଭ କରିବା, ଝୋଟି ପକାଇବା

ଚିତି - *ନ:କ:ଦେ:ଖୋ:* (ବି.) : ଏକ ବିଷାକ୍ତ ସର୍ପ

ଚିତିପାଟିଆ - *ଢେ:* (ବି.) : ପିଠାଖଡିକା

ଚିତିମାରିବା - *ଦେ:ନ:* (କ୍ରି.) : ମାକଡଚିତି ମାରିବା, ହାତରେ ଠେବ ଦେଇ ସମସ୍ତ ଶରୀରକୁ ଶୂନ୍ୟରେ ଚକ୍ରାକାରରେ ବୁଲେଇ ବୁଲେଇ ଯିବା

ଚିତ୍କାର - *ଦେ:* (ବି.) : ଭୟରେ ରଡି ଛାଡିବା, ପାଟି କରିବା, ହୋ ହାଲ୍ଲା କରିବା

**ଚିଉ** - *ଦେ:* (ବି.) : ମନ, ଇଛା, ମରଜି

**ଚିଉଡ଼ ଅମାବାସ୍ୟା** - *ନ:* (ବି.) : ଚିତାଲାଗି ଅମାବାସ୍ୟା

**ଚିଉମ୍** - *କୋ:* (ଅ.) : ଆଜ୍ଞା ମଣିମା, ହଁ ମଣିମା

**ଚିଭେଭଚାଁ** - *ନ:* (ବିଂ.) : ଛାତିଏ ଉଚ୍ଚା, ଛାତିଯାଏ ଲମ୍ବା ବିଶିଷ୍ଟ

**ଚିତ୍ରଖେଦା** - *ଗ:* (ବି.) : ଚିତ୍ରିତ ତାଳପତ୍ର ପୋଥି

**ଚିତ୍ର ତାରକା** - *ସଂ:* (ବି.) : ଅଭିନେତା

**ଚିତ୍ରହରିଶଙ୍କର** - *କେନ୍ଦୁ:* (ବି.) : ଲାଲରଙ୍ଗର ସ୍ୱଚ୍ଛମିଆଦି ଧାନ

**ଚିତ୍ରା** - *ଗ:* (ବି.) : ପାନ ପଚି ଗଲେ ତାହାକୁ ଚିତ୍ରା କୁହାଯାଏ

**ଚିତ୍ରା କାବରା** - *କୋ:* (ବିଂ.) : ଚିତ୍ର ବିଚିତ୍ର (ଅସୁନ୍ଦର ଅର୍ଥରେ)

**ଚିତ୍ରିତା** - *ଗଦ୍ୟ:* (ବି.) : ଚିତିସାପ

**ଚିଦ୍ରରୀ** - *ବୌ:* (ବି.) : ସାନ ଉକୁଣି

**ଚିଦା** - *ଗ:* (ବି.) : ଉକୁଣୀ

**ଚିଦିରିବା, ଚେଦିରିବା** - *କୋ:* (କ୍ରି.) : ରାଗିବା

**ଚିଧୁର୍** - *କଳା:* (ବି.) : ଉକୁଣି, ଲିଖ

**ଚିନ୍ବା** - *କଳା:* (କ୍ରି.) : ଚିହ୍ନିବା, ପରିଚିତ ହେବା

**ଚିନ୍ହାର ଜନହାର** - *ସ:* (ବିଂ.) : ଚିହ୍ନା ପରିଚୟ

**ଚିନ୍ହାର ଜନାର** - *ଗ:* (ବି.) : ନିଜେ ଜାଣିଥିବା ଲୋକଙ୍କପାଇଁ

**ଚିନ୍ହାଁ** - *ସ:* (ବି.) ଚିହ୍ନିତ ହେବା, ଜଣାଶୁଣା, ପରିଚିତ

**ଚିନା** - *ଦେ:ନ:ମା:କଳା:* (ବି.) : ସୁନା ରୂପା ଓଜନ କରିବାର ପରିମାଣ, ଚିନାମାଟି, ଚିନା ବାସନ, ସୁନା ଓଜନ=୧୬ ଚିନା=୧୦ଗ୍ରାମ, ଚିହ୍ନା, ସ୍ମୃତି, ସଂକେତ

**ଚିନାଏ** - *ରା:ଜ:ଦେ:* (ବିଂ.ବି.) : ଟିକିଏ, ଅଳ୍ପ ପରିମାଣ, ଏକ ଚିନା

**ଚିନା ପିନ୍ଧା** - *ଗଞ୍ଜ:* (ବି.) : ନିର୍ବନ୍ଧ

**ଚିନାବାଦାମ** - *ଦେ:ଖୋ:* (ବି.) : ମୁଗଫଳୀ, ଭୂଇଁଚଣା, ମାଟିତଳର ଏକ ଫଳ

**ଚିନାମାଳି** - *ଦେ:ନ:* (ବି.) ବେଙ୍କର ସୁନାମାଳ, ଏକ ଧାନ ଶସ୍ୟର ନାମ

**ଚିନି ଆଙ୍ଗଠି** - *ବର:* (ବି.) : କନିଷ୍ଠା ଆଙ୍ଗୁଠି

**ଚିନିସିନ୍ଦୂର** - *ଦେ:* (ବି.) : ରସସିନ୍ଦୂର

**ଚିନେଇହେବା** - *କୋ:* (କ୍ରି.) ଦେଖେଇହେବା, ରହସ୍ୟ ଜଣାପଡ଼ିବା

**ଚିନେ, ଚିନାଏ** - *ନ:* (ବିଂ.) : ସ୍ୱର୍ଣ୍ଣ ଓଜନର, ଅଳ୍ପ ପରିମାଣ ୨୦ ଚିନା = ୧ଭରି =ପ୍ରାୟ ୧୧ ଗ୍ରାମ

**ଚିନ୍ତା ପାଣ୍ଡୁ** - *ଗ:ଗଞ୍ଜ:* (ବି.) : ତିନ୍ତୁଳି

**ଚିନ୍ତାପାଣ୍ଡୁ** - *ଗଞ୍ଜ:* (ବି.) : ତେନ୍ତୁଳି

**ଚିନ୍ନମା** - *ଗଦ୍ୟ:* (ବି.) : ସାନ ଝିଅ

ଚିପ - *କୋ:ଗ:ମା:* (ବି.) : ଭିଡ଼ ରଖିବାପାଇଁ ବାଉଁଶ ବା କାଠର ଖିଲ, କୁରାଡ଼ି ବେଣ୍ଟର କାଠି କିଳିଣି, ଖିଲ

ଚିପ୍‌କାଇବା - *ନୂ:* (କ୍ରି.) ବାନ୍ଧିବା (ଚପକାଇବା)

ଚିପ୍‌କେଇବା - *କୋ:* (କ୍ରି.) : ଛପେଇବା

ଚିପ୍‌ଚି - *ସ:କଳା:ସୁ:ବ:* (ବି.) : ଛୋଟ ପୁଡ଼ିଆ, ମିଷ୍ଟାନ୍ନ ଉପହାର, ପୁଡିଆ, ଛୋଟ ପୁଡା

ଚିପ୍‌ରା - *ବୌ:ସୁବ:ସ:* (ବି.) : ଆଖିର ଲେଂଙ୍ଗରା

ଚିପ୍‌ଲି - *କଣ:* (ବି.) : ଚପଲ

ଚିପ୍‌ସ - *ନବ:* (ବି.) : ଛୋଟ ଛୋଟ ପଥର ଖଣ୍ଡ, ଫ୍ରାଇ ଖାଦ୍ୟ

ଚିପା - *ସଂ:ଦେ:ଅ:ଭ:* (ବିଂ.ବି.) : କୃପଣ, ଖିଲ, କୀଳା-ଛାଙ୍କି, ଢଙ୍କା, କଂସା

ଚିପା ଲାଇଟୁ - *ଗ:* (ବି.) : ଟର୍ଚ୍ଚଲାଇଟ୍

ଚିପିବା - *ଦେ:* (କ୍ରି.) : ହାତ ଆଙ୍ଗୁଳିରେ ଚାପିବା

ଚିପିଲି - *ଗ:କଣ:* (ବି.) : ପାଦର ଯୋତା, ଚପଲ

ଚିମ୍‌ରା - *ମା:ଗଜ:ନବ:କୋ:* (ବିଂ.ବି.) : ମାନ୍ଦାପ୍ରକୃତିର, ନୀରବତା, ନିଶବ୍ଦ, ଖାଲିଖାଲି, ଶୂନ୍‌ଶାନ୍

ଚିମ୍‌ଲା - *ବୌ:* (ବି.) : ମୁଣ୍ଡ ବୋଝ ପାଇଁ କପଡ଼ା ବଇଠି, ଚିମୁଳା,ଚିମୁ ଳା

ଚିମିଚି - *ଦେ:* (ବି.) : ଛିନିବା

ଚିମିଢ଼ି - *ରା:* (ବି.) : ଚମଚଟା ପକ୍ଷୀ

ଚିମିଣି - *ଗ:* (ବି.) : ବାଦୁଡ଼ି ଭଳି କ୍ଷୁଦ୍ର ପକ୍ଷୀ

ଚିମିନି - *ସୁ:ବା:ସଂ:ଅ:* (ବି.) : ଡ଼ିବିରି, ଛୋଟ ଲଣ୍ଠନ, ଧୂଆଁନଳୀ, ଲଣ୍ଠନ

ଚିମିନୀ - *ଯା:* (ବି.) : ଧୂଆଁବାହାରୁ ଥିବା ନଳ

ଚିମିରି - *ଖୋ:* (ବି.) : ଚେମେଡ଼ି ଚଢେଇ, ଏହା ରାତିରେ ବିଚରଣ କରେ

ଚିମିଲି - *ଗ:* (ବି.) : କ୍ଷୁଦ୍ର ଲଣ୍ଠନ

ଚିମୁଟା - *ଖୋ:ଗ:ନ:* (ବି.) : ଏକ ଉପକରଣ, ସୁନାରୀ, କମାରର ଅସ୍ତ୍ର ବିଶେଷ, ଲୁହା ଯନ୍ତ୍ର, ଯାହା ସାହାଯ୍ୟରେ ତତଲା ବସ୍ତୁ କିମ୍ବା ରଡ଼ ନିଆଁକୁ ଧରାଯାଏ

ଚିମୁଟା ଚିମୁଟି - *ନ:* (ବି.) : ନଖ ଆଘାତ

ଚିମୁଟେ - *କ:ନ:* (ବିଂ.) : ଅଳ୍ପ ଟିକିଏ, ଟିକିଏ, (ଅଳ୍ପ ପରିମାଣ) ଟିକିଏ

ଚିମୁଡ଼ିବା - *କୋ:* (କ୍ରି.) : ଚିପୁଡିବା, ମୋଡାମୋଡି କରି ପାଣି ବାହାର କରିବା

ଚିମୁ- *ରା:* (ବି.) : ଡାଳ

ଚିୟାର୍ - *ବା:* (ବି.) : ଚେୟାର୍, ଚଉକି

ଚିର - *ଅନେ:* (ବି.) : ଗାଈ ବା ମଇଁଷି କ୍ଷୀର ବାହାରୁଥିବା ସ୍ଥାନ, ଗୋ ସ୍ତନ ଭୁଣ୍ଡି, ସବୁଦିନ, ସ୍ତନ, ଚୁଚୁକ, ମାଛ ଧରା ଉପକରଣ, ଦୀର୍ଘ ଦିନ, ମୂଳ

ଚିରକୁଟ - *ରା:* (ବି.) : ଛୋଟ କାଗଜ

**ଚିରଗୁଣୀ** - *କେନ୍ଦୁ:* (ବି.) : ଡାହାଣୀ

**ଚିରଗୁନ୍** - *କଳା:ସୁବ:* (ବି.) : ଏକ ପ୍ରକାରର ଅଶରୀରୀ

**ଚିରଚିରା** - *ଦେ:ନବ:* (ବି.ଅ.) : ଲାଗିପଡି ପାଠ ମନେ କରିବା, ଭୟଜନିତ ଚିତ୍କାର

**ଚିରମୁଦ୍‌ରି** - *ସ:* (ବି.) : ବାହାଘର ଆଗରୁ ବର ଘରକୁ ଝିଅପାଇଁ ଜିନିଷ ପଠାଇବା

**ଚିରହା** - *ସୁବ:* (ବିଂ.) : ଚିରା, ଫଟା

**ଚିରା** - *ଅନେ:* (ବିଂ.ବି.) : ଫଟା, ଫାଳ, ଏକ ପ୍ରକାର ଜାତି, ଛିଣ୍ଡା, ଚୁଡା, ଜମିର ପ୍ରଥମ ଓଡ ଚାଷ

**ଚିରାଗ** - *ଦେ:* (ବି.) : ଆଲୁଅ

**ଚିରାଚରିତ** - *ଅନେ:* (ବିଂ.) : ବହୁକାଳ ଧରି ଚଳି ଆସୁଥିବା

**ଚିରାମରା** - *ଦେ:* (ବି.) : ଡିଆଁଡେଇଁ

**ଚିରିକା** - *ଦେ:* (ବି.) : ଜୋରରେ ଛାଡିବା

**ଚିରିକାଏ** - *ଅ:* (ବିଂ.) : ଅଳ୍ପ ପରିମାଣ

**ଚିରିକିବା** - *ଦେ:* (କ୍ରି.) : ପାଣିଆ ଝାଡା ହେବା

**ଚିରିଣୀ କଣ୍ଟା** - *କେନ୍ଦୁ:* (ବି.) : ଚାରା କଣ୍ଟା, ମୁଣ୍ଡ ଖୋସାରେ ଲଗାଯାଏ

**ଚିରିଲିଆ** - *କଳା:ଗଦ୍ୟ:* (ବି.) : ହୁଡୁମ୍ବଲିଆ, ହୁରୁମ୍, ଚୁଡ଼ା ଭଜା

**ଚିରୁଡ଼ା** - *ପୁ:* (ବିଂ.) : ଖଣ୍ଡ

**ଚିରୁଣି** - *ଅନେ:* (ବି.) : ପାନିଆ, କଙ୍କତିକା

**ଚିରେଇତା** - *କେ:ଦେ:ଭ:ପଦ୍ୟ:* (ବି.) ଲତାବିଶେଷ (ପିତା), ଭୂଇଁନିମ୍ବ, ପିତାଶାଗ, ହିମାଳୟଜାତ କ୍ଷୁଦ୍ର ଶାକ ବିଶେଷ, ଭୂନିମ, ଅତ୍ୟନ୍ତ ତିକ୍ତ ଔଷଧ ଗୁଳ୍ମ ବିଶେଷ

**ଚିରଂଗଲ୍** - *କଳା:* (ବି.) : ଚିରାଗୁଣୀ, ଭୂତ, ଡାହାଣୀ

**ଚିର୍** - *ବର:* (ବି.) : ଶାଢିର ଆରମ୍ଭ ଓ ଶେଷରେ ବୁଣାଯାଇଥିବା ଅଂଶ, ଅଞ୍ଚଳ

**ଚିର୍ଲେଇବା** - *କଳା:* (କ୍ରି.) : ବିକଳରେ ଚିତ୍କାର କରିବା

**ଚିର୍‌କା** - *ସୁବ:* (ବି.) : ବିବାହର ଏକ ରୀତି

**ଚିର୍‌କିବା** - *ବୌ:ସୁ:* (କ୍ରି.) : ମଳତ୍ୟାଗ କରିପକାଇବା, ହଗି ପକାଇବା

**ଚିର୍‌କୁଟ** - *ଗ:ଦେ:ଅ:* (ବି.) : ଚିରା ଟୁକୁରା କାଗଜ, ଖଣ୍ଡକାଗଜ, କେତ୍‌କେଚା

**ଚିର୍‌ଗିନି** - *ବୌ:ସୁ:* (ବି.) : ବାଦୁଡ଼ି ଜାତୀୟ ଛୋଟ ପକ୍ଷୀ

**ଚିର୍‌ଗୁଣୀ** - *ମା:ଗ:* (ବି.) : ଡ଼ାହାଣୀ

**ଚିର୍‌ଚିଟି** - *ଖୋ:କେନ୍ଦୁ:* (ବି.) : ଏହାର ଅନ୍ୟ ନାଁ ଅପାମାରଙ୍ଗ

**ଚିର୍ ଚିରେଇବା** - *ଗ:* (କ୍ରି.) : ଭୟରେ ଚିତ୍କାର କରିବା

**ଚିର୍‌ସନ୍** - *କଳା:* (କ୍ରି.) : ଚିରନ୍ତି, ଫାଡିଦିଅନ୍ତି, ଫାଳକରନ୍ତି

ଚିର୍‌ହା - *ଝା:* (ବିଂ.) : ଚିରି ଯାଇଥିବା, ଚିରା

ଚିଲ - *ଅନେ:* (ବି.) : ପକ୍ଷୀ, ଶଙ୍ଖଚିଲ, ଗୁଡି, ଏକ ପକ୍ଷୀର ନାମ(ମାଛ, ପଚା ଶବ ଖାଉଥିବା ପକ୍ଷୀ), ବାଜପକ୍ଷୀ

ଚିଲ୍‌ବିଲ୍ - *ଦେ:* (ବି.) କୁଆଁକୁଟା, ଏଣେତେଣେ

ଚିଲ୍‌ରା - *ଅନେ:* (ବି.) : ଖୁଚୁରା, ରେଜା, କଲରା, ନିମ୍ନ ମୂଲ୍ୟ ସୂଚକ ମୁଦ୍ରା

ଚିଲ୍‌ହା ଟକା - *ବୌ:* (ବି.) : ଖାଦ୍ୟ ଆଶାୟୀ ଲୋକ

ଚିଲ୍‌ହେଇ ଟକି - *ବୌ:* (ବି.) : ଖାଦ୍ୟ ଆଶାୟୀ ସ୍ତ୍ରୀଲୋକ

ଚିଲଙ୍ଗ - *ଗଞ:* (ବି.) : ଚିଲମ

ଚିଲପକ୍ଷିଆ - *ରା:* (ବିଂ.) : ପାଉଁଶିଆ

ଚିଲମ - *ଅନେ:* (ବି) : ଗଞ୍ଜେଇ ଟାଣିବାପାଇଁ ବ୍ୟବହାର କରୁଥିବା ପାତ୍ର ମାଟିନଳୀ, ହୁକା, ଗଞ୍ଜାଇ, ଗୁଡ଼ାଖୁ ଆଦିର ଧୂମପାନର ଉପକରଣ ବିଶେଷ

ଚିଲରା(ଖୁଚୁରା) - *ନ:ରା:* (ବି.) : ରେଜା(ଓଡ଼ଗାଁରେ ପ୍ରଚଳିତ)

ଚିଲରୀ - *ଖୋ:* (ବି.) : ଖୁଚୁରା ପଇସା

ଚିଲର୍ - *କଳା:* (ବି.) : ଖୁଚୁରା, ରେଜା

ଚିଲା ଆକ୍ଷିଆ - *କୋ:* (ବିଂ.) : ଇଷଦ୍ ସବୁଜ ବର୍ଣ୍ଣର ଆଖିଥିବା (ଲୋକ)

ଚିଲାଇବା - *ଦେ:* (କ୍ରି.) : ପାଟି କରି ଡାକିବା, ରଡ଼ି ଛାଡ଼ିବା

ଚିଲାଗୁଣି - *କଳା:* (ବି.) : ଗଉଡ ଜାତିର କୌଳିକ ଉପନାମ

ଚିଲାଙ୍ଗ - *ସୁ:* (କ୍ରି.) : ଡେଇଁ, ଫେରାର

ଚିଲାଡ଼ି - *ଗ:* (ବିଂ.) : ଶିଶୁଙ୍କ ଦୁଷ୍ଟାମି

ଚିଲାଭୁଟିଆ - *ଲ:* (ବି.) : ଧାନ ବିଶେଷ

ଚିଲାମାରିବା - *ଚ:* (କ୍ରି.) : ଡେଇଁବା, ଝାମ୍ପ ମାରିବା

ଚିଲି - *ଦେ:ଗଞ:* (ବି) : ଲଙ୍କା ମରିଚ, ସିକା କାୟା

ଚିଲିମିଲି ପୋକ - *ଦେ:* (ବି.) : ଜୁଳୁଜୁଳିଆ ପୋକ

ଚିଲିରି କଣ୍ଠିଆ - *ଅ:* (ବି.) : ଛୋଟବିଛା

ଚିଲ୍ଲା - *କନ୍ଧ:ଗଞ:* (ବି.) : ଖୁଚୁରା, ରେଜା ପଇସା

ଚିଲ୍ଲର ପଏସା - *ସ:* (ବି.) : ଖୁଚୁରା ପଇସା

ଚିଲ୍ଲେଇବା - *କେ:* (କ୍ରି.) : ବଡ ପାଟି କରିବା

ଚିଳିଙ୍ଗା - *ମ:କନ୍ଧ:* (ବି.) : ଝିଣ୍ଟିକା

ଚିଳିଚିଳିଆ ଛାଟ - *କେନ୍ଦୁ:* (ବି.) : ମାଡ଼ ମାରିବାକୁ ଧରିଥିବା ବାଡ଼ି

ଚିହିଡ଼ିବା - *ମ:* (କ୍ରି.) : ଚିତ୍କାର କରିବା

ଚିହିଁକା - *ଗ:* (କ୍ରି.) : ଚମକି ପଡ଼ିବା

ଚିହିଁକିବା - *ଅନେ:* (କ୍ରି.ବି.) : ଚମକି ପଡ଼ିବା, ରାଗରେ ମାଡ଼ି ଆସିବା, ଉତ୍ୟକ୍ତ ହୋଇପଡ଼ିବା, ହଠାତ୍ ଭୟରେ ଚମକିବା

ଚିହିଁରା - *କନ୍ଧ:* (ବି.) : ଗାଣ୍ଡୁଆ

**ଚିହ୍ନ ବର୍ଣ୍ଣ** - *ଦେ:* (ବି.) : ପଭା

**ଚିହ୍ନରା** - *ଦେ:* (ବିଂ.) : ଯେ ଭଲମନ୍ଦ ବିଚାର କରିପାରେ

**ଚିହ୍ନା** - *ଦେ:ନ:କଳା:* (ବି.ବିଂ.) : ପରିଚିତ, ଜଣାଶୁଣା, ସ୍ମୃତି

**ଚିହ୍ନାପରତ** - *ଭ:* (ବି.) : ଜଣାଶୁଣା

**ଚିଁଇ** - *ଗ:* (ବି.) : ଝିଣ୍ଟିକା

**ଚିଁ ଯିବା** - *କୋ:* (କ୍ରି.) : ପାଣି ଭେଦିଯିବା

**ଚିଂପୁଡ଼ିବା** - *ରା:* (କ୍ରି.) : ପାଣି ବାହାର କରିବା

**ଚୀବ୍** - *ଗଦ୍ୟ:* (ବି.) : ପାଇନ୍ ଗଛ

**ଚୀତା** - *କେ:* (ବି.) : କ୍ଷୁପବିଶେଷ, ଚୀତା ପାରୁ

**ଚୀନାଆଳୁ** - *ଖୋ:* (ବି.) : ଏକ ପ୍ରକାର ମିଠା ଆଳୁ

**ଚୀରଫାଡ଼** - *ସ:* (ବି.) କଟାକଟି, ଚୀରାଫଟା

**ଚୁଆ** - *ଅନେ:* (ବି.) : ଛୋଟ ଖାଲ, ଛୋଟ ଗାଡ଼ିଆ, କୂଅ, ଖଡ଼ାଶାଗ, ଗୁଣ୍ଡିରେ ପଡୁଥିବା ଏକ ତେଲ, ବିଲ ବା କିଆରୀରେ ପାଣି ସଂଗ୍ରହପାଇଁ ଖୋଳାଯାଉଥିବା ଗାତ, ଏକପ୍ରକାର କ୍ଷୁଦ୍ର ବୃକ୍ଷ, ଇନ୍ଦୁର, ସୁଗନ୍ଧି ଦ୍ରବ୍ୟବିଶେଷ, ଔଷଧ ଲତାବିଶେଷ

**ଚୁଆ ଚନ୍ଦନ** - *ଗ:* (ବି.) : ଚନ୍ଦନ ଓ ଗନ୍ଧ ତେଲର ମିଶ୍ରଣ

**ଚୁଆକେ** - *ଯା:* (ବି.ବିଂ.) : ଆଠ ସଂଖ୍ୟା

**ଚୁଆଁ** - *ଅନେ:* (ବି.) : ନଦୀରେ ଖରାଦିନିଆ କୂଅ, ନଈ ପଠାର ଗର୍ତ୍ତ, ହାତରେ ଖୋଳାଯାଇଥିବା ଗର୍ତ୍ତ (ଯହିଁରେ ପାଣିଥାଏ), ଗାଡ଼ିଆ

**ଚୁଇଲ୍** - *କଳା:ସ:* (ବି.) : ଚୁଲି, ଚୁଲ୍ଲି

**ଚୁଇଁ** - *ଅନେ:* (ବିଂ.ବି.) : ଅତିଛୋଟ, ଅତିଛୋଟ(ଶିଶୁ)

**ଚୁଇଁଚା** - *କଣ:ମ:* (ବି.) : ଗୁଣ୍ଡୁଚି ମୂଷା

**ଚୁଏଣ** - *ନୂ:* (ବି.) : ଓଠ (ଚଏଣ୍)

**ଚୁଏଇ** - *ସୁବ:* (ବି.) : ଚୁଲି

**ଚୁକା** - *ସୁ:* (ବି.) : ତଟକା

**ଚୁକାଇବା** - *ଦେ:* (କ୍ରି.) : ମୁଖରତି, କାମ ପ୍ରବୃତ୍ତି-ଚରିତାର୍ଥ କରିବା

**ଚୁକାଁଇବା** - *ରା:* (କ୍ରି.) : ଦାନ୍ତରେ ଆଘାତ କରିବା

**ଚୁକିବା** - *ଗ:* (କ୍ରି.) : ଆନୁଗତ୍ୟ ଭାବ, ନିସର୍ତ୍ତ ଚାକର, ବାଧହୋଇ

**ଚୁକୁରାଇବା** - *ଦେ:* (କ୍ରି.) : ସ୍ତ୍ରୀମାନଙ୍କ ପ୍ରେମ

**ଚୁକ୍ତି** - *ଦେ:* (ବି.) ନିୟମ, ସର୍ତ୍ତ, ସ୍ୱୀକାରୋକ୍ତି

**ଚୁଖା** - *ଭ:* (ବି.) : ସୁନା

**ଚୁଗୁଲି** - *ଅନେ:* (ବି.) : ଖଚ, ପଣ୍ଛାତରେ କୌଣସି ବ୍ୟକ୍ତିର ନିନ୍ଦା, ପରନିନ୍ଦା କରିବା, ମିଛଖଚ କହି କଳି କରିବା, ପଛରେ ନିନ୍ଦା କରିବା

**ଚୁଘୁରିବା** - *ଜଗ:ମ:* (ବି.କ୍ରି.) : ଘୁଷୁରିବା

**ଚୁଙ୍ଗ ଚୁଙ୍ଗ** - *ଅ:* (ବିଂ.) : ଅସ୍ଥିର

**ଚୁଙ୍ଗା** - *ଅନେ:* (ବି.) ନଳ, ନଳୀ, ବାଉଁଶନଳ, କାହାଳି, ପ୍ରଚାର ପାଇଁ ବ୍ୟବହୃତ ଶବ୍ଦ ସୃଷ୍ଟିକାରୀ ଯନ୍ତ୍ର

**ଚୁଙ୍ଗାଚଲା** - *ଚ୍:* (ବି.) : ଖଲୁଆ

**ଚୁଙ୍ଗା ମୁହାଁ** - *ଗ:* (ବିଂ.) : ଅଭିମାନୀର ନିରର୍ଥକ ମୁଖ

**ଚୁଙ୍ଗି** - *ମ:ଜଗ:ଚା:କେ:* (ବି.) : ଡିବି, ଡିବିରି, ଲ୍ୟାମ୍ପ, ମାଟିବତି

**ଚୁଙ୍ଗି ଭଡ଼କା** - *ଗ:* (ବି.) : ଅଫମ ଖାଇବା ନଳୀ, ହୁକାନଳୀ

**ଚୁଙ୍ଗିତେଲ** - *ଚ୍:* (ବି.) : କିରୋସିନୀ ତେଲ

**ଚୁଙ୍ଗିବା, ଚୁଙ୍ଗାଚୁଙ୍ଗୀ** - *ନ:* (କ୍ରି.) : ବାଉଁଶ, ବାଡ଼ି ଇତ୍ୟାଦି ଠିକ୍ ମାପରେ କାଟିରେ ଖଣ୍ଡ କରିବା

**ଚୁଙ୍ଗୁ** - *ଦେ:* (ବି.) : ଚୁଛା

**ଚୁଙ୍ଗୁଚୁଙ୍ଗିଆ** - *ନ:କେ:* (ବିଂ.) : ଚୁରୁଚୁରିଆ, ଅତି ଚଞ୍ଚଳିଆ, ସୁନ୍ଦର, ଚପଳ

**ଚୁଙ୍ଗୁରି** - *କେ:* (ବି.) : ଚିଙ୍ଗୁଡି ମାଛ

**ଚୁଚି** - *ଦେ:* (ବି.) : ଯୁବତୀ ସ୍ତନ

**ଚୁଚୁକାର** - *ପଦ୍ୟ:* (ବି.) : ଜିଭ ଓ ଦାନ୍ତ ଦ୍ୱାରା ପବନକୁ ଈଷତ୍ ପାଟି ଭିତରକୁ ଟାଣିନେବା ଦ୍ୱାରା ଉତ୍ପନ୍ନ ଚୁଚୁ ଶବ୍ଦ

**ଚୁଚୁକୃତି** - *ପଦ୍ୟ:* (ବି.) : ଚୁଚୁକାର ଶବ୍ଦ, ଚୁମ୍ବନ ଶବ୍ଦ, ସ୍ତ୍ରୀ ଗୁଚାଗ୍ର

**ଚୁଚୁନ୍ଦରା** - *ଅନେ:* (ବି.) : ଗନ୍ଧମୂଷିକ

**ଚୁଚୁନ୍ଦ୍ରି** - *ପଦ୍ୟ:* (ବି.) : ଏକଜାତୀୟ ବାଣ, ଲିଙ୍ଗର ରୋଗବିଶେଷ

**ଚୁଚୁମା** - *ଅନେ:* (ବି.) ଚୁଚୁମି ଖିଆଯାଉଥିବା ଖାଦ୍ୟ ପଦାର୍ଥ, ଲଜେଞ୍ଚ, ଚୁମା, ଚୁମ୍ବନ, ଜିଭ ଓ ଓଠ ଦ୍ୱାରା ଶୋଷିବା କର୍ମ

**ଚୁଚୁମୁରିଆ** - *ଗଦ୍ୟ:* (ବିଂ.) : ସୂକ୍ଷ୍ମ, ଅଳ୍ପ

**ଚୁଛା** - *ଗ:ଚ୍:* (ବି.ବିଂ.) : ଖାଲି, ନିରର୍ଥକ, ତୁଚ୍ଛ

**ଚୁଛା ଅଦ୍‌ରବା** - *ସ:* (ବିଂ.) : ଅକ୍ଷମ, ଅପାରଗ

**ଚୁଛା ମାହାଲିଆ** - *କୋ:ଗ:* (ବିଂ.କ୍ରି.) : ବୃଥା, ଆଚରଣ, ମୂଲ୍ୟହୀନ

**ଚୁଛୁ** - *ସୁ:* (ବି.) : ଚୁଚୁନ୍ଦ୍ରା

**ଚୁଛେଇବା** - *କୋ:* (କ୍ରି.) : ଖାଲି କରିବା

**ଚୁଟ** - *ରା:ଜଗ:* (ବି.) : ଆଘାତ(ସାପ), ଚୋଟି

**ଚୁଟ୍‌କି** - *ପଦ୍ୟ:ଦେ:* (ବି.) : ଯାହା ବିଶେଷ ପ୍ରୟୋଗଜନୀୟ ନୁହେଁ, ପଦାଙ୍ଗୁଷ୍ଠର ଅଳଙ୍କାର ବିଶେଷ, ଆଙ୍ଗୁଳିରେ ଆଙ୍ଗୁଳି ପିଟି ଶବ୍ଦ କରିବା

**ଚୁଟ୍‌କି ଚୁଟା** - *ଚୌ:* (ବି.) : ଏକ ପ୍ରକାରର ସମ୍ବଲପୁରୀ ନାଚ ବିଶେଷ

**ଚୁଟ୍‌କିନି** - *ଦେ:* (ବିଂ.) : ଚଞ୍ଚଳ, ଅତିଶୀଘ୍ର

**ଚୁଟ୍ କୁଲା** - *ଚୌ:* (ବି.) : ଛୋଟ ଛୋଟ ମଜାଳିଆ କଥା

**ଚୁଚ୍ଚୁଟି** - *ଦେ:* (ବି.) : ଭରତା

**ଚୁଚ୍ଠା** - *କୌ:* (ବିଂ.) : ବେଇମାନ୍

**ଚୁଚ୍ଚୁଚ୍** - *କଝ:* (କ୍ରି.) : ଲୁଚେଇ ଲୁଚେଇ

**ଚୁଟି** - *ଅନେ:* (ବି.) : କେଶ ଗୁଛ, ଶିଖା

**ଚୁଟିଆ** - *ଅନେ:* (ବି.) : ମୂଷା, ଚରଣ ଚୁଟିଆ(ଗାଳି), ମୁଣ୍ଡରେ ଶିଖା ରଖିଥିବା ଲୋକ, ଚୁଟି ରଖିଥିବା ବ୍ୟକ୍ତି

**ଚୁଟିହେବା** - *ନୂ:* (କ୍ରି.) : କୌଣସି ପଦାର୍ଥ ଆଉଜାଇ ହୋଇ ପଥରୋଧ ହୋଇଯିବା

**ଚୁଟୁଚୁଟିଆ** - *ନୂ:* (ବି.) : ଡ଼ାଲି ଜାତୀୟ ଏକ ପରିବା ବିଶେଷ

**ଚୁଟୁମୁଚୁ** - *କଳା:* (ବିଂ.) : ଦୃଢ ଭାବରେ, ଆଣ୍ଠ କରି

**ଚୁଠା** - *କଝ:ମ:ସୁବ:* (ବି.ବିଂ.) : କୃପଣ, ଧପ୍ପାବାଜ, ମିଛୁଆ ଗାଳି ବାଚକ ଶବ୍ଦ

**ଚୁଡ଼ି** - *ଅ:* (ବି.) : କାଚ

**ଚୁଡ଼ୁଚୁଡ଼ି ଗଛ** - *ବ:* (ବି.) : ବିଲରେ ଉଠୁଥିବା ଛୋଟ ଗଛ

**ଚୁଡା** - *ଦେ:ନ:* (ବି.ବିଂ.) ଓଦାଧାନକୁ ଉଷୁମାଇ ଚୁଡା ବାହାର କରିବା, ନିର୍ବୁଦ୍ଧିଆ (ଓଲା)

**ଚୁଡାଚାଉଳ** - *ଦେ:* (ବି.) ବିଦେଶକୁ ଗଲାବେଳେ ସାଙ୍ଗରେ ନେଉଥିବା ଖର୍ଚ୍ଚା

**ଚୁଡୁଚୁଡ଼ା** - *କୋ:* (ବି.) କଡ଼ାଭଜା ହୋଇଥିବା ବ୍ୟଞ୍ଜନ

**ଚୁଡ଼ାଭଡା** - *ଗ:* (ବି.) : ଚୁଡ଼ା ପ୍ରସ୍ତୁତ କାରୀ

**ଚୁଡ଼ାଖିଆ ପର୍ବ** - *ଗଦ୍ୟ:* (ବି.) : ରଜ ସଂକ୍ରାନ୍ତି

**ଚୁଡ଼ାଘଷା** - *କ:* (ବି.) : ଚୁଡ଼ା, ଗୁଡ଼ ଓ ମହୁରେ ତିଆରି ଭୋଗ

**ଚୁଡ଼ି** - *ଗ:* (ବି.) : ନାରୀ ହସ୍ତର କଙ୍କଣ, ହସ୍ତ ଆଭରଣ

**ଚୁଡ଼ିଦାର** - *ନ:* (ବି.) : ଏକ ପ୍ରକାର ପୋଷାକ

**ଚୁଡୁଚୁଡୁ କେନ୍ଦୁ** - *ଗଜ:* (ବି.) ସାନ କେନ୍ଦୁଗଛ

**ଚୁଣ୍ଡରା** - *କୌ:* (ବିଂ.) : ଚୁଗୁଲିଆ

**ଚୁଣ୍ଡା** - *ଅନେ:* (ବି.) : ବିଣ୍ଡା; ଘଳିଆ ପଡୁଥିବା ସ୍ଥାନକୁ ବନ୍ଦ ରଖିବା ପାଇଁ ଦିଆଯିବା କନାବିଣ୍ଡା , ଯାହା ବନ୍ଦ, ରୁଦ୍ଧ ଥାଏ, ଠିପି

**ଚୁଣ୍ଡାଚୁଣ୍ଡି** - *ନ:* (ବି.) ଖୁନ୍ଦାଖୁନ୍ଦି କରି, ଲଗାଲଗି କରି ରଖିବା

**ଚୁଣ୍ଡିଦେବା** - *ସଂ:* (କ୍ରି.) : ରୁଦ୍ଧ କରିବା, ଚିମୁଟି ଦେବା

**ଚୁଣ୍ଡିବା** - *କଳା:ଦେ:* (କ୍ରି.) : ବନ୍ଦ କରିବା, ଜଣକର କଥାକୁ ଅନ୍ୟ ଆଗରେ ପ୍ରକାଶ କରିଦେବା, ଖାଇବା, ଗେଞ୍ଜି ଦେବା, ପୂରାଇଦେବା, ଛିଦ୍ର ବନ୍ଦ କରିବା

**ଚୁଣ୍ଡା** - *ବ:* (ବିଂ.) : କୃପଣ, ଶୁଣ୍ଡା

**ଚୁଣ୍ଡିଆଇ** - *ଢ:* (ବି.) : ଏକାଠିକରି

**ଚୁଡର** - *ନବ:* (ବି.) : ପିଠା

**ଚୁତଲ** - *ସୁ:କଳା:ସ:* (ବି.) : ପିଚା, ନିତମ୍ବ

**ଚୁତା** - *ଖୋ:* (ବି.) : ଯେଉଁଥିରେ ଧାତୁ ଜିନିଷ ପିଟାଯାଏ

**ଚୁତିଆ** - *ଅନେ:* (ବି.ବିଂ.ଅ.) : ପାଜି, ଏକ ପ୍ରକାର ଗାଳି, ବେଇମାନ, ବିଶ୍ୱାସ ଘାତକ, ବଦମାସ, କୁଳାଙ୍ଗାର

**ଚୁଦ୍‌ବାର** - *ସୁବ:* (କ୍ରି.) : ଅଶ୍ଳୀଳ ଶବ୍ଦ, ମୈଥୁନ କ୍ରିୟା କରିବା

**ଚୁଦ୍‌ରୀ** - *ସୁବ:* (ବିଂ.) : ସ୍ତ୍ରୀମାନଙ୍କୁ ପ୍ରୟୋଗ କରାଯାଉଥିବା ଅଶ୍ଳୀଳ ଗାଳି ବାଚକ ଶବ୍ଦ, ବେଶ୍ୟା

**ଚୁଦିବା** - *ଚୌ:ତ:* (କ୍ରି.) : ସଂଗମ କରିବା (ଅଶ୍ଳୀଳ ଶବ୍ଦ), ରତିକ୍ରିୟା

**ଚୁନ୍‌କି** - *ଚୌ:* (ବିଂ.) : ଦୁଷ୍ଟା

**ଚୁନ୍‌ଚୁନ୍ କରିବା** - *ଦେ:* (କ୍ରି.) : ଟିକିଟିକି କରି ଚୁନାଇବା

**ଚୁନ୍‌ଚୁନା** - *କୋ:* (ବି.ବିଂ.) : ଅତିକ୍ଷୁଦ୍ର ଖଣ୍ଡ, ଖଣ୍ଡ ବିଖଣ୍ଡିତ, ଚୁନାଚୁନା

**ଚୁନ୍‌ନା** - *ସୁବ:* (ବି.) : ଶିଶୁମାନଙ୍କ ଏକ ରୋଗରନାମ, ଏହା ଦ୍ୱାରା ତାତି ବଢି ଝାଡ଼ା ହୁଏ

**ଚୁନ୍‌ନୀ** - *ସୁବ:* (ବିଂ.) : ଚୋରଣୀ

**ଚୁନ୍‌ବା** - *ଚୌ:* (କ୍ରି.) : ବାଛିବା

**ଚୁନକଳା ପିନ୍ଧେଇବା** - *କ:* (କ୍ରି.) : ପଟେ ଚଢେଇବା, ଅତି ଅପମାନିତ କରିବା

**ଚୁନ କାଳି** - *ଗ:* (ବି.) : ଅପମାନ ଜନକ ପ୍ରସଙ୍ଗ

**ଚୁନରା** - *ନ:* (ବି.) : ଯିଏ ଚୂନ ବିକ୍ରିକରେ, ପ୍ରସ୍ତୁତ କରେ

**ଚୁନି** - *ସଂ:* (ବି.) : ଓଢଣି, ଘେରଣା

**ଚୁନିଆ** - *ସୁ:* (ବିଂ.) : ଅଖରିଆ ପାନ

**ଚୁନ୍ଦି** - *ସୁବ:ସୁ:ବର:ଝା:* (ବି.) : ସ୍ତ୍ରୀମାନଙ୍କ ଲମ୍ବ ମୁଣ୍ଡବାଳ, ବାଳ, ମୁଣ୍ଡବାଳ

**ଚୁପ୍** - *ଦେ:ନ:କଳା:* (ବି.ଅ.) : ପାଟି ବନ୍ଦ, ତୁନି, ନୀରବ, ମୁହଁ ବନ୍ଦ କରିଦେବା, ଭାଙ୍ଗିଦିଅ, ନୀରବ ରହିବାକୁ କହିବା

**ଚୁପ୍ କରିବା** - *ନ:* (କ୍ରି.) : ଧମକ୍ ଦେଇ ମୁହଁ ବନ୍ଦ କରିବା, କୌଣସି ଉପାୟରେ କଥାବାର୍ତ୍ତା ନ କରେଇଦେବା

**ଚୁପ୍‌ଚାପ୍** - *ନ:* (ବି.) : ଧୀରସ୍ଥିର ହୋଇ ପାଟି ନକରି ବସି ରହିବା, ଶୂନ୍‌ଶାନ୍, ବିନା ଶବ୍ଦର ପରିସ୍ଥିତି

**ଚୁପ୍‌ବାର** - *ସୁବ:* (କ୍ରି.) : ଛୋଟ ଛୋଟ କରି ମାଂସ କାଟିବା

**ଚୁପ୍‌ରା** - *ଚୌ:ସୁବ:ତ:* (କ୍ରି.) : ପରଛିଦ୍ର, ପରଚର୍ଚ୍ଚା

**ଚୁପ୍‌ରା କୁଟା** - *ମା:ସ:* (ବି.) : ଛୋପରାକଥା, ଚୁଗୁଲି କରିବା

**ଚୁପ୍‌ଲିବା** - *ସ:* (କ୍ରି.) : ବୁଡ଼େଇ ଦେବା, ପାଣିରେ ହଠାତ୍ ହାତ ବୁଡ଼ାଇବା

**ଚୁପ୍-ଶଇତାନ୍** - *କେ:* (ବିଂ.) : ଖଳ ଲୋକ, ନୀରବ ଘାତକ, ଗୁପ୍ତ ଭାବରେ, ଭୟଙ୍କର କାମ କରୁଥିବା ଲୋକ

**ଚୁପକାଁଡ଼ିଆ** - *ସୁ.ଦ.ସ.* (ବି.) : ଅଠାକାଠି, ଏହା ସାହାଯ୍ୟରେ ଚଢେଇ ଧରାଯାଏ

**ଚୁପବା, ଚୁପିବା** - *କଳା.* (କ୍ରି.) : ପିଟିପିଟି ଭାଙ୍ଗିଦେବା

**ଚୁପରା କୁଟ୍‌ବାର** - *ସୁ.ଦ.* (କ୍ରି.) : ପରଚର୍ଚ୍ଚା କରିବା

**ଚୁପ ସଇତାନ୍** - *ଦେ.* (ବି.) : ବାହାରେ ଭଲ ଓ ଭିତରେ ଦୁଷ୍ଟାମି

**ଚୁପା** - *ରା.* (ବି.) : ଫଳର ଉପର ଚୋପା, ଫଳ, ପନିପରିବା ବା ପଶୁପକ୍ଷୀମାନଙ୍କର ଓଦା ବା ଶୁଖିଲା ଚର୍ମ

**ଚୁପାଛଡ଼ା** - *ବୌ.* (କ୍ରି.) : ଟିକିନିକି ଦୋଷ ବାଛିବା

**ଚୁପାପଡ଼ିବା** - *କୋ.* (କ୍ରି.) : ଶୁଖିଯିବା

**ଚୁପୁ** - *ରା.* (କ୍ରି.) : ମୁହଁବନ୍ଦ କରିବା

**ଚୁପୁରା** - *ବ.* (ବି.) : ଅଶ୍ଳୀଳ ଗାଳି

**ଚୁପୁରିବା** - *କୋ.ନବ.* (କ୍ରି.) : ଚୋଷିଚୋଷି ଖାଇବା, ଚାଟିବା

**ଚୁପୁଲି** - *ନ.* (ବି.) : ଚପଲ

**ଚୁପେଚୁପେ** - *ବ.* (ବିଂ.) : ଗୋପନରେ

**ଚୁବ୍‌ଲିବା** - *ସ.* (କ୍ରି.) : ହାତ ବୁଡ଼େଇବା

**ଚୁବୁଚୁବୁ** - *କେ.* (ଅ.) : ପାଣିରେ ଚବ୍‌ଚବ୍ ଶବ୍ଦ କରିବା

**ଚୁବେଇ ରଗଡ଼ି ହେବା** - *କୋ.* (କ୍ରି.) : ରାଗିଯିବା, କ୍ରୋଧାନ୍ୱିତ ହେବା

**ଚୁଭ୍‌ଲିବାର** - *ସୁ.ଦ.* (କ୍ରି.) : ପାଣିରେ ବା ଖାଦ୍ୟ ଜିନିଷରେ ହାତ ବୁଡାଇବା

**ଚୁଭୁରିବା** - *ଦେ.* (କ୍ରି.) : ଖାଦ୍ୟ ପଦାର୍ଥ ବା ପାଣିରେ ହାତମାରି ଦୂଷିତ କରିବା

**ଚୁମ୍‌କି** - *ଦେ.* (ବି.) : ଚକ୍‌ଚକିଆ ଧାତୁଖଣ୍ଡ

**ଚୁମ୍‌ଲା** - *କଳା.* (କ୍ରି.) ଚୁମିଲା, ଚୁମ୍ବନଦେଲା, ସ୍ପର୍ଶକଲା

**ଚୁମା** - *ଅନେ.* (ବି.) : ବୁକ ବା ବୁକିଦେବା, ଚୁମ୍ବନ

**ଚୁମାଚଟା** - *କଳା.* (କ୍ରି.) : ଚୁମ୍ବିବା ଓ ଚାଟିବା

**ଚୁମୁଡ଼ା** - *ବ.* (ବି.) : ଝୋଟ ବା ନଡାର ମୁଠୁଳା

**ଚୁମ୍ବକ ପଥର** - *ଗଦ୍ୟ.ଦେ.* (ବି.) : ଜର ମହୁରା, ଲୁହାକୁ ଟାଣି ଆଣି ପାରୁଥିବା ମଣି

**ଚୁର୍** - *ସୁ.ଦ.ବା.କେନ୍ଦୁ.* (ବିଂ.ବି.) : ଚୋର, ଚୁଡ଼ିପରି ନାରୀହସ୍ତର ଏକ ଅଳଙ୍କାର ବିଶେଷ

**ଚୁର୍‌କି** - *ବ.* (ବି.) : ନଣ୍ଡାହେବା ପରେ ଛାଡ଼ିଥିବା ଚୁଟି ବା ଶିଖା

**ଚୁର୍‌ନା ବଛରା** - *ବୌ.* (ବି.) : ପିଲାଙ୍କ ଛିଦ୍ର ଛିଡ଼ିଆ ପତଳା ଝାଡ଼ା

**ଚୁର୍‌ନି** - *ଅନେ.* (ବିଂ.ବି.) : ଚୋରଣୀ, ଚୋରି କରୁଥିବା ନାରୀ

**ଚୁର୍‌ବା** - *ସ.* (କ୍ରି.) : ଚୂନା କରିବା

**ଚୁର୍‌ମା** - *ସୁ.ବୌ.* (କ୍ରି.) : ଚୁରିବା

ଚୁର୍‌ମାର୍ - *ନ:* (ବି.) : ଧ୍ୱଂସ କରିଦେବା

ଚୁର୍‌ମୁରେଇବା - *ଗୌ:* (କ୍ରି.) : ଲୁଚାକୁଚା ହୋଇଯିବା

ଚୁର - *ଢ:ଗା:ଢ:* (ବି.ବିଂ.) ନିଶାରେ ଘାରିହେବା, ଚୋର, ନିଶାରେ ଭୋଳ, ଭାଙ୍ଗି ଚୁରମାର୍

ଚୁରା - *କଣ:ସୁବ:ଅ:* (ବି.ବିଂ.) : ଚୁଡ଼ା

ଚୁରାବତି - *କେ:* (ବି.) : ଟର୍ଚ୍ଚ, ଟିପା ବତି

ଚୁରି - *କଳା:ସୁ:ସ:* (ବି.) : ଚୁଡି, ସ୍ତ୍ରୀ ହସ୍ତାଭରଣ ବିଶେଷ

ଚୁରିଆ - *ଝ୍:* (ବି.) : ମାଛ ଧରିବାପାଇଁ ଖେତରେ ବ୍ୟବହାର କରାଯାଉଥିବା ମୁଗୁରା

ଚୁରିବା - *ଗା:* (ବି.) : ଚୂର୍ଣ୍ଣ କରିବା

ଚୁରିହାରି - *ସ:* (ବି.) : ଚୋରି ଡକାୟତି

ଚୁରୁକି - *କଳା:ଯା:* (ବି.କ୍ରି.ବିଂ.) : ଚୁଡ଼ି, କାଚ, ଅଳ୍ପ

ଚୁରୁଣି - *ଟ୍:* (ବି.) : ଚୋରଣୀ

ଚୁରେନ୍ - *ନୁ:* (ବି.) : ଚୁଲିରେ ଫୁଙ୍କିବା ପାଇଁ ବ୍ୟବହୃତ ନଳୀ

ଚୁଲ୍ - *ନୁ:ମ:କଣ:* (ବି.) : ଅଳ୍ପ ଆଘାତ, ଚୁଟି, ବାଳ, ଚୁଲି

ଚୁଲ୍‌ଚୁଲିଆ - *କଳା:ନବ:ବ:* (ବିଂ.) : ଖୁବ୍ ଚଳଚଞ୍ଚଳ, ଚୁଂଗ୍ ଚୁଂଗିଆ, ଚଗଲା, ଜିଜ୍ଞାସୁ ବ୍ୟକ୍ତି

ଚୁଲ୍‌ଚୁଲିଏନ୍ - *କଳା:* (ବିଂ.) ଖୁବ୍ ଚଳଚଞ୍ଚଳିଆ ସ୍ତ୍ରୀ, ଖୁଜ୍‌ଖୁଜିଆ ନାରୀ

ଚୁଲ୍‌ହା - *ମ:କଳା:* (ବି.) : ଚୁଲି, ବଡ଼ଚୁଲି

ଚୁଲ୍‌ହି - *ନୁ:* (ବି.) : ଚୁଲି

ଚୁଲମ - *ନ:* (ବି.) : ଚିଲମ

ଚୁଲି ଚାଳ - *ଗ:ଢ:* (ବି.) : ଆର୍ଥିକ ସ୍ଥିତି, ପରିଚିତି, ଘରର ଆସବାବପତ୍ର

ଚୁଲିପଣ୍ଟା - *ଢ:* (ବି.) : ସ୍ତ୍ରୀ ଲୋକଙ୍କ ଗାଳି

ଚୁଲିବନ୍ଧା - *କ:* (ବି.) : ଚୁଲି ଝିଙ୍କର ପାଖ

ଚୁଲ୍ଲା - *ନୁ:* (ବି.) : ବଡ଼ ଚୁଲି

ଚୁଳ - *ନବ:କଣ:ନ:* (ବି.) : ମୁଣ୍ଡର ବାଳ, ଷଣ୍ଢ ପିଠିରେ ଥିବା ମାଂସ ଖଣ୍ଡ

ଚୁଳପକା - *ଟ୍:* (ବି.) : ଠାକୁରଙ୍କ ପାଖରେ ମାନସିକ କରି ଲଣ୍ଡା ହେବା

ଚୁଳା - *ମ:* (ବି.) : ଚୁଡ଼ା, ଅଗ୍ରଭାଗ

ଚୁଳେଇବା - *କେନ୍ଦୁ:ଢେ:* (କ୍ରି.) : ଏକାଠିକରି ରଖିବା, ପରିଶୋଧ

ଚୁଷ୍‌ବା - *ମ:କଣ:କୋ:* (କ୍ରି.) : ଚୁଚୁମିବା, ଶୋଷିବା, ଓଠ ସାହାଯ୍ୟରେ ଜଳୀୟ ଜିନିଷ ଖାଇବା

ଚୁସ୍ତ - *ସୁବ:* (ବିଂ.) : ପ୍ରଚୁର, ଅତିଶୟ

ଚୁହା - *ବ:* (ବି.) : ଶିଶୁଙ୍କୁ ପାଟିରେ ପୁରାଇବା ସକାସେ ଦିଆଯିବା ଏକ କାଠ ନିର୍ମିତ ଖେଳନା

ଚୁହିବାର - *ସୁବ:* (କ୍ରି.) : ଶୋଷିବା, ଚୋଷି ଖାଇବା

**ଚୁହୁନୀ** - *ନୂ:* (ବି.) : ଡାଆଣି

**ଚୁଁଚ୍‌ବାର** - *ସୁବ:* (କ୍ରି.) : ଯା କଥା ତାକୁ କହିବା, କଣାରେ ଠେସ ଦେଇ ବନ୍ଦ କରିବା

**ଚୁଁଟରୀ** - *ସୁବ:* (ବିଂ.) : ଯା କଥା ତାକୁ କହୁଥିବା ସ୍ତ୍ରୀ ଲୋକ, ଚୁଗୁଲି କରିବା

**ଚୁଁଟା** - *ନୂ:ସୁ:ସୁବ:* (ବି.) : ବୋତଲକୁ ଠେଁସ ଦେଇ ବନ୍ଦକରିବା ଜିନିଷ

**ଚୁଁଠା** - *ମା:* (ବିଂ.) : କୃପଣ, ଶୁଣ୍ଡା

**ଚୁଆ** - *ଢେ:ନ:* (ବି.) : ଛୋଟ ପୋଖରୀ ବା ଖାଲ, କଳାରଙ୍ଗର ତରଳ ପଦାର୍ଥ ଗୁଣ୍ଡିରେ ମିଶାଇବା ପାଇଁ, ଦେବୀ ମନ୍ଦିରରେ ପୂଜାପାଇଁ

**ଚୁଆଁ** - *କଳା:ସୁ:* (ବି.) : କୂପ, କୂଅ

**ଚୁଡା** - *ଦେ:* (ବି.) : ଶିଖ, ଶିଖା, ଅଗ

**ଚୁଡା କରଣ** - *ଦେ:* (ବି.) : ଚୁଟି ପକେଇବା, ଲଣ୍ଡା ହେବା, ଦଶବିଧ ସଂସ୍କାର ମଧ୍ୟରୁ ଗୋଟିଏ

**ଚୁଢ଼** - *ପଦ୍ୟ:* (ବି.) : କେଶ ପ୍ରସାଧାନ ଶୈଳୀ

**ଚୁନ** - *ନ:ଦେ:* (ବି.) : ଶିପରୁ ତିଆରି ଦ୍ରବ୍ୟ, ପଥର, ଗେଙ୍ଗୁଠି

**ଚୁନ କଳା** - *ଦେ:* (ବି.) : ଅପମାନିତ କରିବା, ଦଣ୍ଡ ଦେବା

**ଚୁନକାଠି** - *ନ:* (ବି.) : ପାନ ଭାଙ୍ଗିବା ପୂର୍ବରୁ ପାନରେ ଚୂନ ମାରିବା ଛଡିଥିବା କାଠି

**ଚୁନ ପତ୍ର** - *ଦେ:ନ:* (ବି.) : ଧୂଆଁ ପତ୍ର ଓ ଚୂନରେ ତିଆରି ଖଇନି, ଦୁକ୍ତା, ଭାଙ୍ଗ ଧୂଆଁ, ଧୂଆଁପତ୍ର ସହିତ ଚୂନ

**ଚୁନରା** - *ଦେ:* (ବି.) : ଗେଙ୍ଗୁଟି ପୋଡ଼ି ଚୂନ ତିଆରି କରୁଥିବା ଜାତି

**ଚୁନସୁରକି** - *ଦେ:* (ବି.) : ଚୂନ ସଙ୍ଗେ ଇଟାଗୁଣ୍ଡ ମିଶେଇ ତିଆରି କରାଯାଉଥିବା ମସଲା

**ଚୁନା** - *ସୁ:ଦେ:କଳା:* (ବି.) : ଚାଉଳଗୁଣ୍ଡ, ଚୂନ, ଗହମ, ଚାଉଳ ପ୍ରଭୃତି ଶସ୍ୟାଦିର ଗୁଣ୍ଡ ବା ଚୂର୍ଣ୍ଣ, ମଡାଣି ଓ ବେଂଗଳା ପରେ ଖଳାରେ ରହିଥିବା ଧାନ, ଉଡାଯାଉଥିବା ଗୁଣ୍ଡ ଧାନ

**ଚୁନା ଧାନ** - *ଦେ:* (ବି.ବିଂ.) : ବେଙ୍ଗଳା ଧାନ

**ଚୁର** - *ଦେ:ନ:* (ବି.) : ଚୋର, ଚୁରିବା, ଚୂନ ଗୁଣ୍ଡ

**ଚୁରଟ୍** - *ଦେ:* (ବି.) : ଧୂଆଁ ପତ୍ରର ପିକା, କାହାଳୀ

**ଚୁରମାର୍** - *ଭ:* (ବିଂ.) : ନଷ୍ଟ

**ଚୁରା** - *କଳା:* (ବି.) : ଚୂଡା, ଶୀର୍ଷ, ଟିପି

**ଚୁରୁନ୍** - *କଳା:* (ବି.) : ଚୂର୍ଣ୍ଣ, ଗୁଣ୍ଡ, ଚୁରନ୍ତୁ, ଚୂର୍ଣ୍ଣ କରନ୍ତୁ

**ଚୁର୍** - *ଦେ:* (ବିଂ.) : ନିଶାରେ ଟଳମଳ

**ଚୁଲିକିଯିବା** - *ଦେ:* (କ୍ରି.ବିଂ.) : କଥା ନ ଶୁଣିବା, ପୋଡି ହୋଇ ମରିବା, ଚୁଲିପଶା

**ଚୁଲି ଚଉକା** - *ଦେ:* (ବି.) ଗୋବର ପାଣିରେ ପରିଷ୍କାର ପବିତ୍ର କରିବା

**ଚୁଲି ଜଳିବା** - *ଦେ:* (କ୍ରି.) : ରୋଷେଇ ବାସ ହେବା/ଆରମ୍ଭ ହେବା

**ଚୁଲିପଶା** - *ଖୋ:* (ବିଂ.) : ଯୁଦ୍ଧ ରୂପକ ଚୁଲିରେ ପଶିବା, ଅର୍ଥାତ ମରିବା (ଗାଳି)

**ଚୁଲୀ ପଖା** - *ଦେ:* (ବି.) : ରୋଷେଇ ଶାଳ

**ଚୁଲୀମୁଣ୍ଡ** - *ଦେ:* (ବି.) : ରୋଷେଇ ଶାଳ

**ଚୁଳ** - *କେନ୍ଦୁ:ଖୋ:ଦେ:* (ବି.) : ଚୁଟି, କେଶ, ବାଳ, ଶିଖା, ଷଣ୍ଢ, କୁକୁଡା, ମୟୁର ଉପରେ ବାହାରିଥିବା ମାଂସ

**ଚୁଳା** - *ବ:* (ବି.) : ଛପର ଘର ମୂର୍ଦ୍ଧନୀରୁ ବାହାରିଥିବା ଏକ କାଠ

**ଚୁଳି** - *ଦେ:* (ବି.) : କଠଉରେ ଲାଗିଥିବା କାଠ ଖଣ୍ଡ

**ଚୁଳିଆ** - *ଦେ:* (ବି.) : ବାମଣ୍ଡାର ବଡ ପର୍ବତ, ମାଲବାର ଓ ସିଂହଳ ଦେଶର ମୁସଲମାନ

**ଚୁଷିବା** - *ଦେ:* (କ୍ରି.) : ଶୋଷିବା

**ଚୁଷୀ** - *ଦେ:* (ବି.) : ଛୁଆମାନଙ୍କ କାଠରେ ତିଆରି ଖେଳନା

**ଚୁସ୍ତ** - *ଦେ:* (ବିଂ.) : ଚୌରସ, ଶକ୍ତ, ଟାଣୁଆ

**ଚୁହାଡ୍** - *ଦେ:* (ବିଂ.) : ଅସଭ୍ୟ, ଅଭଦ୍ର

**ଚୁହିଁବା** - *ଦେ:* (କ୍ରି.) : ଶୋଷିବା

**ଚେଇଁ** - *କ:* (କ୍ରି.) : ଚେତା, ଜାଗ୍ରତ

**ଚେଇଁ ବସିବା** - *ଦେ:* (କ୍ରି.) : ନିଦ୍ରାହୀନ ହୋଇ ରହିବା

**ଚେଇଁ ଶୋଇବା** - *ଦେ:* (ବି.) : ଜାଣିକରି ଅଜଣା ରହିବା

**ଚେଏଁକା** - *କ:* (ବି.) : ଚେଙ୍କ

**ଚେଓଁ ମାଛ** - *ବ:* (ବି.) : ଏକପ୍ରକାର ସ୍ୱାଦିଷ୍ଟ ନଦୀ ମାଛ

**ଚେକ** - *କେ:ଦେ:* (ବି.) : ପାଉଡି, ଯାଞ୍ଚ, ତନଖି କରିବା, ଟଙ୍କା ଦେବାପାଇଁ ବରାଦ ଚିଠି

**ଚେକଡ଼ା ଶାଗ** - *ନୂ:* (ବି.) : ଜଙ୍ଗଲ ଜାତ ଏକ ଶାଗ

**ଚେକା** - *ଅନେ:* (ବିଂ.ବି.) : ଓସାର, ଗୋଲ ଚରାଡିରେ ମାଟି କାଟିବା, ବଡ ଘାସ ଲଗା ମାଟି ଖଣ୍ଡ, ଘାସ ବିଡ଼ା, ହାତମୁଠାରେ ଯେତିକି ପରିମାଣ ଧରେ, ଚକ୍ରାକାରରେ ଶୋଇବା, ମୋଡ଼ି ହେବା, ୨୫ ଖଣ୍ଡ ବିଡ଼ି ବନ୍ଧାଥିବା ବିଡ଼ା, ଗୋଲାକାର ଖଣ୍ଡ

**ଚେକିଚେକି** - *ଅନେ:* (ବିଂ.) : ଗୋଲଗୋଲ, ଚେକାଚେକା, ଖଣ୍ଡ ଖଣ୍ଡ କଟା ଗୋଲ ପଦାର୍ଥ

**ଚେକି ଭଜା** - *ଗ:* (ବି.) : ସାରୁ, ଆଳୁ ପ୍ରଭୃତିର ଭଜା

**ଚେକି ସୁନା** - *ଗ:* (ବି.) : ସୁନାର ଖଣ୍ଡ

**ଚେଖ** - *ପୁ:* (ବି.) : ପ୍ରତିଘାତ

**ଚେଙ୍ଖେଁ** - *ଭ:* (ବିଂ.) : ପାନେ, ଚେଙ୍କ, ଚିଆଁ

**ଚେଗିବା** - *କୋ:* (କ୍ରି.) : ଚଢ଼ିବା

**ଚେଙ୍କା** - *ଜଗ:ମ:ନ:* (ବି.) : ଖଟା, ତତଲା ଲୁହାରେ ଦାଗଦେବା

**ଚେଙ୍ଗ** - *ନ:ରା:ଖୋ:* (ବି.) : ଛୋଟ ଗଡ଼ିଶା ମାଛ, ତାତିଲା ଜିନିଷ ଦେହରେ ଦେବା, ଚେଙ୍କ

**ଚେଙ୍ଗଡ଼ା** - *ଭ:ରା:ଯା:* (ବିଂ.) : ବଦମାସ୍, ଟରଟର ହେଉଥିବା (ପୁଅ), ଅମାନିଆ, ଚଗଲା

**ଚେଙ୍ଗପାକ୍‌ଳିଆ** - *ଚା:* (ବିଂ.) : ଅଳ୍ପ ବୟସ୍କ ପିଲା ପରିଣତ ବୟସର ଲୋକ ପରି କଥା କହିଲେ

**ଚେଙ୍ଗ ରାଶି ବେଙ୍ଗ ରାଶି** - *ଦେ:ଗ:* (ବି.ବିଂ.) : ଦିଜଣଙ୍କ ମନ ନମିଳିବା, ଏକୁ ଆରେକ

**ଚେଙ୍ଗା** - *ଅନେ:* (ବି.ବିଂ.) : ମଧୁର ଜଳର କାତିଯୁକ୍ତ ଛୋଟ ମାଛ ବିଶେଷ, ଚେଙ୍ଗ ମାଛ, ସତେଜ ହେବା, ଚେଇଁଥିବା, ସତର୍କ ଥିବା, କାନ୍ଦୁଲର କଞ୍ଚା ଫଳ

**ଚେଙ୍ଗି** - *ରା:* (ବି.) : ଦୁଇ ହାତରେ ଚିମୁଟା

**ଚେଙ୍ଗିଡ଼ି** - *ରା:* (ବିଂ.) : ଟରଟର ହେଉଥିବା (ଝିଅ)

**ଚେଙ୍ଗିମୁଡ଼ିବା** - *କୋ:* (କ୍ରି) : ଚିମୁଟିବା

**ଚେଙ୍ଗି ହେବା** - *ଦୌ:* (କ୍ରି.) : ନିଆଁର ଚିଆଁ ଲାଗିବା

**ଚେଙ୍ଗେଇ** - *ସୁ:ବୌ:* (ବିଂ.ବି.) : କହିହୁଡ଼ି, କହିହୁଡ଼ୀ

**ଚେଙ୍ଗେଇବା** - *ଭ:ଜଗ:* (କ୍ରି.) : ପୂରା ଭୋଜନ କରିଛି, ଚିଆଁଦେବା

**ଚେଚକ** - *ସଂ:* (ବି.) : ବସନ୍ତ ରୋଗ

**ଚେଚେଙ୍ଗା** - *ଚା:* (ବି.) : ଛଚିନ୍ଦ୍ରା, ଏକ ପରିବା

**ଚେଙ୍କେଇବା** - *ଅ:* (କ୍ରି.) : ଉସକେଇବା

**ଚେଞ୍ଚଡ଼ା ହାତ** - *ଚା:* (ବି.) : ବାମହାତ, ଡେବିରି ହାତ

**ଚେଞ୍ଚିବୁଟି** - *ଗଜ:* (ବି.) : ବାଣ

**ଚେଡ୍ଡି** - *ଅନେ:* (ବି.) : ପିଲାଙ୍କ ହାପପେଣ୍ଟ, ଚଡ଼ି, ପେଣ୍ଟ, ଅନ୍ତର୍ବାସ, ଜଙ୍ଘିଆ

**ଚେଡୁଆ** - *ଚା:* (ବି.) ମାଛଧରା ଯନ୍ତ୍ରବିଶେଷ

**ଚେଢ଼େ** - *ନବ:* (ବି.) : ଚଢେଇ

**ଚେଣି** - *ପୁ:* (ବି.) : ଚିନି

**ଚେଣ୍ଡରାହାତ** - *ଚା:ଭ:* (ବି.) : ବାମହାତ

**ଚେଣ୍ଡେଇ** - *ଗ:ନ:* (ବି.ବିଂ.) ବାଳିକା, କଳହୀ ନାରୀ, ଯିଏ ଖଟ କହି କଳି ଲଗାଏ

**ଚେଣ୍ଡେଇବା** - *ଗ:* (କ୍ରି.) : ବିରକ୍ତ ହେବା

**ଚେଣ୍ଡା** - *ଗଜ:* (ବି.) : ଅଣ୍ଡିରା ମଇଁଷୀ ବାଛୁରୀ

**ଚେଣ୍ଡି** - *ନବ:ଗଜ:କୋ:* (ବି.) : ଚୁଳରେ ଥିବା ଲମ୍ବା ଅଂଶ, ଚୁଟି

**ଚେଣ୍ଡିଆ** - *ଅ:* (ବି.) : ଯୁବକ

**ଚେତ୍ କେଇବା** - *ମା:* (କ୍ରି.) : ଚିତ୍‌ହେବା

**ଚେତ୍ନା** - *ନୂ:ଦେ:* (କ୍ରି.ବି.) : ଚେଇଁବା, ଜ୍ଞାନ, ବୁଦ୍ଧି, ଜୀବନ, ଚେତିବା

**ଚେଙ୍ଗ୍‌ବା** - *ନୂ:* (କ୍ରି.) : ଚେଇଁ ଉଠିବା, ଚେତିବା

**ଚେତ** - *ଦେ:* (ବି.) : ଜାଗରଣ, ହେଜ, ଜ୍ଞାନ, ଚେତିବା ପାଇଁ ଆଦେଶ

**ଚେତନ** - *ଦେ:* (ବି.) : ଚେତନା

**ଚେତା** - *ଦେ:ଛ:* (ବି.) : ଚେତନା, ହୋସ, ଜ୍ଞାନ୍, ଚେଇଁରହିବା

**ଚେତା ପଶିବା** - *ଦେ:ଗ:ଭା:* (ବି.କ୍ରି.) : ଜ୍ଞାନ ଉଦୟ ହେବା, ଚେତନା ଉଦ୍ରେକ ହେବା, ଠିକ୍ କଥା ବୁଝିପାରିବା

**ଚେତା ବୁଡିବା** - *ଦେ:* (ବି.) : ଅକଲ ଗୁଡୁମ୍ ହେବା, ଅଚେତ ହେବା

**ଚେତି** - *ଛ:* (କ୍ରି.) : ଚିଆଁଇ, ହେଜି

**ଚେତିଆର** - *ଗଦ୍ୟ:* (ବି.) : ଏକ ଜାତି

**ଚେତିବା** - *ଖୋ:ନ:ନବ:ଗ:* (କ୍ରି.) : ସାବଧାନ ହେବା, ମନେ ପକାଇବା, ହେଜିବା, ସାବଧାନ ରହିବା, ହୃଦୟଙ୍ଗମ କରିବା, ମନେରଖିବା, ଜ୍ଞାତ ହେବା, ସତର୍କହେବା, ନବରୋପିତ ଚାରା ବୃକ୍ଷ ଜୀବନ ପାଇବା

**ଚେଦିରିବା** - *କୋ:* (କ୍ରି.) : ରାଗିବା

**ଚେନ୍** - *ଦେ:ନ:ଗ:ନୂ:* (ବି.) : ଶିକୁଳି, ମାଳ, ଭୂମି ମାପିବା ଶିକୁଳି, ଲମ୍ବାଧାଡ଼ି, ସାଇକେଲ ଚେନ୍, ସ୍ୱର୍ଣ୍ଣ ଅଳଙ୍କାର (ବେକରେ ପିନ୍ଧୁଥିବା), ଲୁହା ଶିକୁଳି, ଭୂମିମାପକ ଶିକୁଳି, ବେକର ଅଳଙ୍କାର

**ଚେନ୍‌ମେନ୍** - *ଅନେ:* (ବି.) : ଅମିନ୍‌ଙ୍କ ସହକର୍ମୀ

**ଚେନାଏ** - *ଦେ:* (ବିଂ.) : କଟା ଖଣ୍ଡ, ଖଣ୍ଡେ

**ଚେନାଚୁର** - *କ:ଅ:ଭ:* (ବି.) : ମିଶ୍ରିତ ଖାଦ୍ୟ ପଦାର୍ଥ, ମିକ୍ସଚର, ମିଶ୍ରିତ ମୁଖ ରୋଚକ ଖାଦ୍ୟ

**ଚେନାପାଟଣା** - *ଗ:* (ବି.) ମାନ୍ଦ୍ରାଜ, ଚେନାଇ

**ଚେନି** - *ଚା:କ:ଛ:* (ବି.) : ଚିନି

**ଚେନେଇବା** - *ଗ:* (କ୍ରି.) : କାଠ ଓ ସିମେଣ୍ଟ ପଲସ୍ତରାରୁ କାଟି ଖର୍ଡ ବାହାର କରିବା

**ଚେନ୍ଦ୍ରି** - *ସୁ:* (ବି.) : ଫଟାକପଡ଼ା

**ଚେନ୍ଦ୍ରି ଛଡ଼େଇବା** - *ମା:* (କ୍ରି.) ମଜା ଉଡେଇବା

**ଚେପ୍‌ଟା** - *ନ:କୋ:ଦେ:* (ବିଂ.) ଚୋଲେଇଥିବା, ଲୋଚାକୋଚା, ଦବିଯିବା ଅବସ୍ଥା, ପତଳା

**ଚେପ୍‌ନା** - *ବ:କଳା:* (ବି.) ମୁଣ୍ଡରେ ପିନ୍ଧୁଥିବା ଅଳଙ୍କାର ବିଶେଷ

**ଚେପା** - *ଯା:ସଂ:ମା:ଦେ:* (ବି.ବିଂ.) : ପ୍ରସାରିତ ଅବସ୍ଥା, ଚାପିହୋଇଯିବା, ଚେପ୍‌ଟା, ଚୋଲା, ଭିତରକୁ ଦବିଯିବା

**ଚେପା କାଁଢ଼ିଆ** - *ଝ:* (ବି.) : ଅଠାକାଠି

**ଚେପାବାର** - *ସୁବ:* (କ୍ରି.) ମାଡିଯିବା ଚାପିଧରିବା

**ଚେପୁ** - *ରା:* (କ୍ରି.) : କୁହ

**ଚେପୁଳ୍ପ ମୁକା** - *ଗଞ୍ଜ:* (ବି.) : ଏକ ତାସ୍ ଖେଳ

**ଚେବରା** - *ଭ:* (ବିଂ.) : ବକ୍‌ବକ୍ କରିବା

**ଚେବା** - *ନବ:* (ବି.) : ଖଣ୍ଡାଂଶ

**ଚେମ** - *କେ:* (ବି.) : ଚର୍ମ

**ଚେମ୍‌ଟା** - *କଳା:* (ବି.) : ନିଷାଣ ବଜେଇବା ବାଡି

**ଚେମ୍‌ଟି** - *ମ:* (ବିଂ.) : ପାତଳି

**ଚେମ୍‌ଡ଼ା** - *ବା:କୋ:* (ବିଂ.) : ସହଜରେ ଛିଡୁନଥିବା, ଛାଲ ଭଳି ଅଛିଣ୍ଡା

**ଚେମ୍‌ରହାବାର** - *ସୁବ:* (କ୍ରି.) : ପ୍ରତିକୂଳ ଅବସ୍ଥାରେ ମଧ ଖାପ ଖୁଆଇ ଚଳିବା

**ଚେମଡ୍** - *କଳା:କୋ:* (ବିଂ.) ଦୃଢ, ସହଜରେ ନ ଛାଡିବା, ଅତିଶୟ ପତଳା

**ଚେମଡ଼ଚଟୁ** - *ଭ:ଗ:* (ବିଂ.) ଟାଣୁଆ, ଚେମଣିପକ୍ଷୀ, ଚମଚଟିଆ

**ଚେମଡ଼ା** - *ରା:* (ବି.) : ପତଳା ପୁରୁଷ

**ଚେମଣିଆ** - *ଗ:* (ବି.) ଚେମଣିପକ୍ଷୀ, ଚମଚଟିଆ

**ଚେମରେଇ** - *ସ:* (କ୍ରି.) : ନିର୍ଲଜ ଭାବରେ ସହିଯିବା

**ଚେମା ମାଛ** - *ଚା:* (ବି.) : ଏକପ୍ରକାର ସ୍ୱାଦିଷ୍ଟ ନଦୀ ମାଛ

**ଚେମିଡ଼ି** - *ରା:* (ବି.) : ପତଳା ନାରୀ

**ଚେମୁ** - *ଗଞ୍ଜ:କନ୍ଧ:* (ବି.) : ଡାଳ, ପିତଳର ଛୋଟ ଡାଳ

**ଚେମେଡ଼େଇବା** - *ବ:* (କ୍ରି.) : ଚମଡ଼ାପରି ଦାନ୍ତରେ ନ ଛିଣ୍ଡିବା

**ଚେମ୍ବର** - *ଦେ:* (ବି.) : ଖାସ୍ କମରା

**ଚେମ୍ବୁ** - *ଗଦ୍ୟ:* (ବି.) : ଡାଳ

**ଚେୟାର** - *ଛେ:* (ବି.) : କୁର୍ସି

**ଚେରକନ୍ଦା** - *ଗ:* (ବି.) : କନ୍ଦମୂଳ

**ଚେର କାଟିବା** - *ଦେ:ଗୌ:* (କ୍ରି.ବି.) : ଅନିଷ୍ଟ ସାଧନ କରିବା, ମୂଳରୁ ଉପାଡି ଦେବା

**ଚେରଙ୍ଗା** - *ଗଦ୍ୟ:* (ବି.) : ଏକ ପରିବା

**ଚେରଚଣା** - *ଗଞ୍ଜ:କୋ:ନବ:* (ବି.) ଚିନାବାଦାମ

**ଚେରଚେରା** - *ନବ:* (ବିଂ.) : ପୂରାପୂରି, ସଂପୂର୍ଣ୍ଣ ଭାବେ

**ଚେର ଚଂପା** - *ଗଞ୍ଜ:* (ବି.) : କାଠଚଂପା ଫୁଲ

**ଚେରପେଟା** - *ଅ:* (ବିଂ.) : ଚେପ୍‌ଟା

**ଚେରମାରୁ** - *ଦେ:* (ବି.) : ଚେମିରି ଲଇ, ଅନନ୍ତମୂଳ (ଲତା)

**ଚେରମୂଳିକା** - *କ:* (ବି.) : ଓେଧ ସମ୍ବନ୍ଧୀୟ, ଆୟୁର୍ବେଦୀୟ ଔଷଧ

**ଚେରମେଣ୍ଟିଆ** - *ଅ:* (ବି.) : ଚାଉଳ ଧୋଇବା ପାଇଁ ଛୋଟ ବାଉଁଶିଆ

**ଚେରମେନ୍** - *ସ:* (ବି.) : ଚେୟାର୍‌ମେନ୍

**ଚେର ଲାଗିଯିବା** - *କ:* (କ୍ରି.) : ଟାଣୁଆ ହେବା, ସ୍ଥିତି ମଜବୁତ କରିବା

**ଚେରଷ୍ଟା** - *କୋ:* (ବି.) : ଚେଷ୍ଟା, ଉଦ୍ୟମ

**ଚେରାବା** - *ସ:ଝା:* (କ୍ରି.) : ଚେର ଧରିବା, ଏକ ସ୍ଥାନ ସହ ଯୋଡ଼ିହେବା, ଚେର ଲାଗିବା

**ଚେରିଙ୍ଗୀ** - *ଅ:* (ବିଂ.) : ଡେଙ୍ଗେଇ (ସ୍ତ୍ରୀ)

**ଚେରିମୁଲି ଭସୋ** - *ସ:* (ବି.) : ଚେରମୂଳି ଔଷଧ

**ଚେରୁ** - *ଗ:* (ବି.) : ଦୁର୍ବଳ

**ଚେରୁଆ** - *ଦେ:ମା:ନ:* (ବିଂ.) ଚେର-ତନ୍ତୁଯୁକ୍ତ ପାଚିଲା ଫଳ, ଛେରୁଆ, ତନ୍ତୁପୂର୍ଣ୍ଣ

**ଚେରୁଆଁ** - *ଯା:* (ବି.) : ଗୋଲମୁଣ୍ଡ ସରୁ ଛୋଟ ଲୁଣି ମାଛ

**ଚେରୁହା** - *ଝା:* (ବିଂ.) : ଯେଉଁ ଆମ୍ବ ଆଦି ଚୋଷିଲା ବେଳେ ଚେର ବାହାରେ

**ଚେରେ** - *କଳା:ସ:ଝା:* (ବି.) : ଚଢେଇ, ପକ୍ଷୀ

**ଚେରେଇବା** - *ଗଞ:ବୌ:ନ:ମା:* (କ୍ରି.) : ସ୍ଥାନକୁ ସୁଦୃଢ କରିବା, ଜାଗିଯିବା, ସତେଜ ବା ହୃଷ୍ଟପୁଷ୍ଟ ହେବା, ଚୋରି କରିବା

**ଚେର୍ ପେଟା** - *ସ:* (ବି.) : ଚେପ୍‌ଟା

**ଚେର୍ ମେଟେଇ ଯିବା** - *ନୂ:* (କ୍ରି.) : ନିରୁପାୟ ହୋଇଯିବା

**ଚେର୍‌ଚେର୍** - *ଦେ:* (ଅ.) : ଘିଅ ବା ତେଲ ଦୀପରେ ପାଣି ପଡିଲେ ଯେଉଁ ଶବ୍ଦ ହୁଏ

**ଚେର୍‌ପା** - *ବୌ:* (ବି.) : ସନ୍ଧି, କ୍ଷୁଦ୍ର ଫାଙ୍କ

**ଚେର୍‌ବେଟି** - *ଅ:* (କ୍ରି.) : ବିଭିନ୍ନ ପ୍ରଶ୍ନ ପଚାରି ତାଗିଦ କରିବା

**ଚେଲ୍‌ବା** - *ସୁ:* (କ୍ରି.) : ଯିବା

**ଚେଲା** - *ଅନେ:* (ବି.) : ଶିଷ୍ୟ, ଚେଲା, ଅନୁଚର, ଶିଷ୍ୟ, ପାଦଘସା, ସେବକ

**ଚେଲାଚେଲି** - *ଗ:* (ବି.) : ଶିଷ୍ୟ ସମର୍ଥକ

**ଚେଲାନି** - *ବୌ:* (ବି.) : ଉପର ଓସାରିଆ ଏକ ମାଟି ପାତ୍ର

**ଚେଲାଂ** - *ଗଦ୍ୟ:* (ବି.) : ଛୋଟ ମାଟି ହାଣ୍ଡି

**ଚେଲି** - *ଗ:ମା:* (ବି.) : ତୁଚ୍ଛ ବା ନୀଚଲୋକ, ଛେଳି

**ଚେଲିଆ** - *କଳା:* (ବି.) : ଛାତର ଶୀର୍ଷ

**ଚେଲୁ** - *ଗଞ:* (କ୍ରି.) : ଶୁଝିଯିବା

**ଚେଷ୍ଟିବା** - *ଖୋ:* (କ୍ରି.) : ତିଷ୍ଠିରହିବା

**ଚେହେରା** - *ଅନେ:* (ବି.) : ମୁଖମଣ୍ଡଳ, ଆକୃତି, ରୂପ

**ଚେହେଲିୟା** - *କେ:* (ବିଂ.) : ହାସ୍ୟପ୍ରିୟ, ମଜାଳିଆ

**ଚେହେଁକା** - *ଗ:* (ବିଂ.) : ଭୟ ଦେଖାଇବା, ସକ୍ଷମ ଭାବ

**ଚେହେଁକିବା** - *ଅ:* (କ୍ରି.) : ଚମକିବା, ଚିହିଁକିବା

**ଚେଁକା** - *ମ:* (ବି.) : ନିଆଁଚେଙ୍କ

**ଚେଁଖାଇବା** - *ଦେ:* (କ୍ରି.) : ଚେତାଇ ଦେବା, ପୋଡିବା, ଦାଗିବା

**ଚେଁ ଚେଇଁୟା** - *ଅ:* (ବିଂ.) : ଦୁର୍ବଳ

**ଚେଁନା** - *କଳା:* (ବି.) : ଚମକ

**ଚୈଁସ୍ଶାଗ୍** - *ନୂ:* (ବି.) : ନଳିତା ପରି ଏକ ଶାଗ ବିଶେଷ

**ଚୈଁହେର୍** - *କଳା:* (ବି.) : ଚେର, ଚୈଁର୍

**ଚେଂଗ୍ଚେଂଗା** - *କଳା:* (ବିଂ.) : ସତେଜ, ଫୁର୍ତ୍ତି

**ଚେଂଚୁ** - *ଗଦ୍ୟ:* (ବି.) : ଏକ ଜାତି, ଏକ ଆଦିବାସୀ ସମ୍ପ୍ରଦାୟ

**ଚୈଁଚିଁ ମିଟୁ** - *ନୂ:* (ବି.) : ଯେଉଁ ଶୁଆ ପକ୍ଷୀର ଥଣ୍ଟ ଅଧିକ ଲାଲ ନଥାଏ

**ଚୈତ** - *ଦେ:* (ବି.) : ଚୈତ୍ର ମାସ

**ଚୈତ ନିଆଁ** - *ଗ:* (ବି.) : ଚୈତ ମାସରେ ଅଧିକ ଉଷ୍ଣ ନଥିବା ପବନ, ଅଗ୍ନିବିଶେଷ

**ଚୈତନ୍ୟ** - *ଅନେ:* (ବି.) : ଜ୍ଞାନ, ଚେତନା

**ଚୋକ** - *ଗଦ୍ୟ:ସ:କଣ:* (ବି.ବିଂ.) : ଦାନ୍ତକାଠି, ମୁନିଆଁ, ଧାର, ଅଠା

**ଚୋକ୍** - *ସୁବ:* (ବିଂ.) : ଚକ୍ ଚକ୍, ଧରୁଆ

**ଚୋକଢ଼** - *ଅନେ:* (ବି.) : ଭୁଷି, ଗୋଖାଦ୍ୟ

**ଚୋକୋ** - *ସୁ:* (ବିଂ.) : ଧାରଯୁକ୍ତ

**ଚୋଖ** - *ଦେ:ବା:* (ବି.) : ରାଗ, କ୍ରୋଧ, ତେଜ, ବେଗ, ଆଖି

**ଚୋଖା** - *ନ:ଯା:ପୁ:ଭ:* (ବିଂ.ବି.) : ଉତ୍କୃଷ୍ଟ ଚକଟା, ଉତ୍କୃଷ୍ଟ ବହୁତ ଭଲ, ଖାଣ୍ଟି

**ଚୋଖି** - *ଦେ:* (ବି.) : ଆମ୍ବିଳା ପାଳଙ୍ଗ ଶାଗ, ରାଗ

**ଚୋଗ୍ରା** - *ବା:* (ବିଂ.) : ଚଉଘରିଆ ଫେରଘର

**ଚୋଟ** - *ଦେ:ନବ:ନ:କଳା:* (ବି.) : ମାଡ, ପ୍ରହାର, ଆଷାଢ, ଜୋର, ବଳ, ଶକ୍ତି, ଆଘାତ, ସର୍ପାଘାତ, ଅସ୍ତ୍ରରେ ଆଘାତ

**ଚୋଟ୍ଖାଇବା** - *ସ:* (କ୍ରି.) : ଧୋକା ପାଇବା

**ଚୋଠ** - *ଅନେ:* (ବିଂ.ବି.) : ଠକ, ଠଗ, ବଦମାସ, ଚୋର, ଖେଚଡ, ପାଜି, ବଦମାସ୍, ଏକ ଗାଳି, ନୀଚ, କୃପଣ

**ଚୋଦା ଚୋଦି** - *ଗ:* (ବି.) : ସମ୍ଭୋଗ

**ଚୋଦିବା** - *ଦେ:ସ:* (କ୍ରି.) : ବକିବା, ଗାଳିଦେବା, ଭର୍ତ୍ସନା କରିବା, ବଳାତ୍କାର କରିବା

**ଚୋପ୍** - *ସୁ:* (ବି.) : ବରଅଠା

**ଚୋପ୍କାଣ୍ଡିଆ** - *ସୁ:* (ବି.) : ଅଠାକାଠି

**ଚୋପ୍କୋ ଲଠୋ** - *ଝା:* (କ୍ରି.ବିଂ.) : ମିଶିବାର ଏକ ସ୍ଥିତିକୁ ବୁଝାଏ, ଶୀଘ୍ର ଅଠାଭଳି ଲାଗିଯିବା

**ଚୋପ୍ଲି** - *କଣ:* (ବି.) : ଚପଲ

**ଚୋପଦାର** - *ଗ:* (ବି.) : ରାଜ କର୍ମଚାରୀ

**ଚୋପା** - *ଦେ:ନ:* (ବି.) : ଚାଲ, ଛାଲି, ଚୂପା, ବକଳ, ଶସ୍ୟ, ଫଳ, ପନିପରିବା ଉପରେ ଥିବା ପତଳା ଖୋଳପା/ଚୋପା

**ଚୋପାଛଡା** - *ଦେ:* (ବି.) : ସବୁ କଥାରୁ ଦୋଷ ଗୁଣ ଯେ ବାଛେ

**ଚୋପି** - *ନ:* (ବି.) : କାଠିରେ ଗୋଟିଏ ମୁଣ୍ଡକୁ ଛେଚି ଯେଉଁଥିରେ ଶଗଡ଼ର ଅଖରେ କାଳି ବା ତେଲ ଦିଆଯାଏ

**ଚୋପୋକରି** - *କଳା:* (କ୍ରି.ବି.) : ତୁରନ୍ତ ଠିକ ଭାବରେ

**ଚୋପୋଚୋପୋ** - *କଳା:* (ବିଂ.) : ବ୍ୟବସ୍ଥିତ ଭାବରେ ଯଥାଶୀଘ୍ର

**ଚୋବା** - *ଦେ:ଗ:* (ବି.) : ଚାବି ଚାବି ଖାଇବା, ଦନ୍ତାଘାତ

**ଚୋମିଂକି** - *ନ:* (ବି.) : ମନରୁ କଳ୍ପନା କରି କହିବା

**ଚୋରକାତିଆ** - *ଭ:* (ବିଂ.) ଚୋରି ମନୋବୃତ୍ତି

**ଚୋରପଟିଆ** - *ପୁ:* (ବି.ବି) : ଲଜ୍ଜିତ, ମୁହଁ ଲୁଚାଇବା କୌଣସି ଭୁଲରୁ ବଞ୍ଚିବାକୁ

**ଚୋରମାଲସିଆ** - *ଜ:* (ବିଂ.) : ସଂପର୍କ ରଖି ଯେ ଚୋରି କରେ

**ଚୋରମୁହାଁ** - *ଦେ:ଖୋ:* (ବିଂ.) : ଲଜ୍ଜାଶୀଳ, ଲୁଚିକରି ରହୁଥିବା ଲୋକ

**ଚୋର ଲାଇଟୁ** - *ଗ:* (ବି.) : ଟର୍ଚ ଲାଇଟ୍

**ଚୋରା ଡାହାଣି** - *ଦେ:* (ବି.) : ଆଡ ଡାହାଣି

**ଚୋରିଭାତ** - *ଭ:* (ବି.) : ବିବାହପରେ ବରକନ୍ୟାକୁ ପ୍ରଥା ଅନୁସାରେ ସାତଘରୁ ଆଣିଥିବା

**ଚୋରୁକାଠି** - *ଅ:* (ବି.) : ପିଲା ଜନ୍ମର ୨୧ଦିନ ପରେ ଦାଗ ଦିଆଯାଉଥିବା ଲୁହାକାଠି

**ଚୋରୋ** - *କଳା:* (ବି.) : ଧାନ ଅମଳ ବେଳେ ଧାନ କ୍ଷେତରେ ଦିଆଯାଉଥିବା ବଳି ପୂଜା

**ଚୋଲ୍ ପୁଲିସ** - *ନୁ:* (ବି.) : ଏକ ପ୍ରକାର ଶିଶୁଙ୍କ ଖେଳ

**ଚୋଲି** - *ସ:* (ବି.) : ଓଢଣୀ, ରାଜସ୍ଥାନର ସ୍ତ୍ରୀଲୋକମାନେ ବ୍ୟବହାର ଊର୍ଦ୍ଧ୍ୱ ଅଙ୍ଗବସ୍ତ୍ର

**ଚୋସ୍ତ** - *ବୌ:* (ବି.) : ଅଧିକ, ବେଶୀ, ବହୁତ

**ଚୋହାଡ଼** - *ସୁ:* (ବିଂ.) : ବଦମାସ

**ଚୌକ** - *ଦେ:* (ବି.) : ଛକ, ଚାରବାଟିଆ

**ଚୌକଡ** - *ଦେ:* (ବି.) : ଭୂମି, ଗହମର ଚୋପା

**ଚୌକସୀ** - *ସ:* (ବି.) : ପହରା

**ଚୌକା** - *ସ:ଦେ:* (ବି.) : ଚାରି ରନ୍, ଚାରି କୋଣିଆ ମାଟି ଖାତ

**ଚୌକାଧାରି** - *ସ:* (ବିଂ.) : ଭାଗ୍ୟବାନ୍

**ଚୌଢ** - *ଢେ:* (କ୍ରି.) : ମରିବା

**ଚୌଠ** - *ଗ:* (ବିଂ.) : ଭୋଗ ସାମଗ୍ରୀରୁ ପୂଜକଙ୍କ ପ୍ରାପ୍ୟଅଂଶ, ଚାରି ଭାଗରୁ ଭାଗେ

**ଚୌପାର** - *ଦେ:* (ବି.) : ବୈଠକ ଖାନା, ଚୌପାଢୀ

**ଚୌବାଚ୍ଚା** - *ଚ:* (ବି.) : ଚାରିକୋଣିଆ ପାଣିରଖିବା ସ୍ଥାନ

**ଚୌରୀଭୁଣ୍ଡି** - *ପଦ୍ୟ:* (ବି.) କେଶ ବିନ୍ୟାସର ଅଳଙ୍କାର

**ଚଁଏଢ଼** - *ସ:* (ବି.) : ଓଷ୍ଠ

**ଚଁକିବା** - *କନ୍ଧ:ଦେ:* (ବି.କ୍ରି.) : ଘୁଞ୍ଚିବା, ଉଠିବା, ଚମକିବା

**ଚଁକେଲ୍** - *ସ:* (ବି.) : ଚକୁଳୀ

**ଚଁଖେ** - *ଗ:* (ବିଂ.) : ଚୋଟା

**ଚଁଚରା** - *କଳା:* (ବି.) : ଚାଞ୍ଚଡ଼ା ପଥର

**ଚଁଟିଆ** - *ଅନେ:* (ବି.ବିଂ.) : ଘର ଚଟିଆ, ଛୋଟପକ୍ଷୀ, ଛୋଟ, ଅଳ୍ପ ବୟସରେ (ଆଳଙ୍କାରିକ ପ୍ରୟୋଗ)

**ଚଁଡ** - *ସୁବ:ସୁ:ସ:* (ବି.) : ଉଭୟ ଓଠ, ଲଣ୍ଡା

**ଚଁପା** - *ନୂ:* (ବି.) : ଚମ୍ପା ପକ୍ଷୀ, ଗୋବରା ଚଢେଇ, ଚମ୍ପା ଫୁଲ

**ଚଁରା** - *ସ:ନବ:* (ବି.) : ଚଉରା

**ଚଁଲାକ** - *ସୁବ:* (ବିଂ.) : ଚାଲାକ, ଚତୁର

**ଚଂଗ୍‌ଚଂଗ୍** - *କଳା:* (ଅ.) : ଚଂଚଳ

**ଚଂଗ୍‌ଡ଼ା** - *କଳା:* (ବି.) : ଚାଗୁଡି, ବାଉଁଶ ପାତିଆରେ ନିର୍ମିତ ଅପେକ୍ଷାକୃତ ଛୋଟ ପର୍‌ଲା, ବାଉଁଶିଆ

**ଚଂଘରା** - *ଦେ:* (ବି.) : ଭୁଗା (ଚାଗୁଡ଼ି)

**ଚଂଘରାବୁହି** - *ଦେ:* (ବି.) : ଭୁଗା ମୁଣ୍ଡେଇ (ବୋହି) ଥିବା ସ୍ତ୍ରୀ ଲୋକ

**ଚଂଦଲା** - *ସୁ:* (ବିଂ.) : ଚନ୍ଦା

**ଚଂପଟ ମାରିବା** - *ଅ:* (କ୍ରି.) ହଠାତ୍ ଗୋପନରେ ଚାଲିଯିବା

**ଚଂପେଇତ ଆମ୍ବୁ ଲ**- *ଗଛ:* (ବି.) : ପାଚିଲା ଆମ୍ବର ଚୋପାରେ ପ୍ରସ୍ତୁତ

**ଛନ୍ନ** - *ଗ:* (ବି.) : ଆଚ୍ଛାଦିତ, ଲୁପ୍ତ



**ଛଅତି** - *କେନ୍ଦୁ:* (ବି.) : ମାସିକ ରକ୍ତସ୍ରାବ

**ଛଅର** - *ସଂ:ଅ:ଢ଼:ଦେ:* (ବି.) : ଖ୍ୟୁର; ମୁଣ୍ଡନ, କ୍ଷୌର, ବାଳ କାଟିବା/ବାଳକଟା

**ଛଅର ବାଆର** - *ଦେ:* (ବି.) : ମୃତିକାରେ ନଖ ଓ ବାଳ କାଟଇବା

**ଛଅଁଚାଇବା** - *ଦେ:* (କ୍ରି.) : ଝାଡ଼ା ଫେରିବା ପରେ ପାଣିରେ ଶୌଚ କରିବା, ଛଞ୍ଚିବା

**ଛଅଁଚିବା** - *ନ:ସଂ:ଅ:* (କ୍ରି.) : ଝାଡ଼ାଯିବା ପରେ ଶୌଚହେବା

**ଛଅଁଣ** - *ଦେ:* (ବି.) : ମାରା ହେବା

**ଛଅଁତା** - *ଦେ:* (ବି.) : ମାରା ହେବା

**ଛଅଁରା** - *କଳା:* (ବି.) : ଛାୟା, ଛାଇ

**ଛଆଁରିବା** - *ନୁ:* (କ୍ରି.) : ଆଉଁଷିବା

**ଛଇ** - *ଅନେ:* (ବି.) : ଢଙ୍ଗ ଢାଙ୍ଗ, ଚାଲି ଚଳନ, ବାଲିଙ୍ଗି, ଚାଢର, ଛଟକ, ଭଙ୍ଗୀ, ଫୁଟାଣି, ଦେଖେଇହେବା, ଅଙ୍ଗଭଙ୍ଗୀ, ଛାଣ୍ଡ ଦେଖେଇବା

**ଛଇଆ** - *ବା:ଅ:* (ବିଂ.) : ଛଟକ ଦେଖାଉଥିବା ଲୋକ, ଛଟକଯୁକ୍ତ

**ଛଇ କରିବା** - *ଦେ:* (କ୍ରି.) : ଚଟକ, ବାକ୍, ଚତୁର, ରସିକ

**ଛଇଲାଟ୍** - *ଢ଼:* (ବି.) : ଚମକେଇବା

**ଛଇଲି** - *ଗ:କଳା:ଗା:* (ବି.ବିଂ.) : ଚୁଲ୍‌ବୁଲି ଝିଅ, ଚପଳା ବାଳିକା, ଛଇଲୀ, ସୁନ୍ଦରୀ ନାରୀ, ବିଳାସବତୀ, ରସିକା, ଭଙ୍ଗୀ

**ଛଇଳା** - *ଦେ:* (ବିଂ.) : ରସିକ, ଚତୁର, ସୁନ୍ଦର, ରସିକା, ନାଗରୀ

**ଛଇଁବା** - *ନବ:* (କ୍ରି.) : ଛପର କରିବା

**ଛଉ** - *ଅନେ:* (ବି.) ଏକପ୍ରକାର ନୃତ୍ୟାଭିନୟ, ମୟୂରଭଞ୍ଜର ଏକ ଲୋକନୃତ୍ୟ, ଚର୍ମ ଉପରେ ଦେଖାଯାଉଥିବା ଦାଗ, ଲାଲ ବା ଧଳା ରଙ୍ଗର ଚିହ୍ନ

**ଛଉଆ** - *ନ:* (ବି.) : ଛଉରେ ଆକ୍ରାନ୍ତ ବ୍ୟକ୍ତି

**ଛଉଆଁ ଅଛୁଆଁ** - *ଦେ:* (ବି.) : ଜାତି, ଅଜାତି, ଭେଦଭାବ

**ଛଉକା** - *କ:ନ:* (ବିଂ.) : ଦେହସାରା ବିଭିନ୍ନ ବର୍ଣ୍ଣର ଚିତ୍ରଥିବା ବଳଦ, ଧୂର୍ତ୍ତ

**ଛଉଡ଼ିବା** - *ବା:* (କ୍ରି.) : ବ୍ୟସ୍ତବିବ୍ରତ ହେବା, ଖଣ୍ଡିଆ ଖାବରା ହେବା

**ଛଏଚମକି** - *ବୁଦ:* (ବିଂ) : ବାରମ୍ବାର ଦର୍ପଣ ଦେଖୁଥିବା, ପ୍ରସାଧନ ପ୍ରିୟ ଚଙ୍ଗଚଙ୍ଗି ଯୁବତୀ, ଯୁବତୀ ବଧୂ

**ଛଏଁରା** - *କଳା:ସ:* (ବି.) : ଛାଇ, ଛାୟା

**ଛକ** - *ଦେ:ନ:* (ବି.) : ଚଉକ, ଏକାଧିକ ରାସ୍ତାର ସଙ୍ଗମ ସ୍ଥଳ

**ଛକ୍ ପକ୍** - *ଦୈ* (କ୍ରି.) : ସତର୍କତା ସହ ସୁଯୋଗ ଉଣ୍ଡିବା

**ଛକ୍‌ବା** - *ଦୈ* (କ୍ରି.) : ଜଗିବା

**ଛକଛାଳ** - *ଦେ:* (ବି.) : ସୁବିଧା, ସୂତ୍ର

**ଛକଡ଼** - *ଦେ:* (ବି.) : ଶଗଡ଼, ଦଳ ଦଗାଡ଼ି

**ଛକଡ଼ ମକଡ଼** - *ଦେ:* (ବି.) : ଅପମାନ, ମନ୍ଦ ବ୍ୟବହାର

**ଛକ ପକ** - *ଦେ:* (ବି.) : ଶଙ୍କିତ, ଅସ୍ଥିର

**ଛକ ମାରିବା** - *ଦେ:* (କ୍ରି.) : ଭୁଲ ବୋଲି ପାର ପକେଇବା, ଅନୁପସ୍ଥିତ ରହିଲେ ଛକା ପକାଇବା

**ଛକରା** - *କଝ:* (ବି.) : ପୁଅ

**ଛକା** - *ସଂ:ଦେ:କେ:* (ବି.) : ଛଅରନ୍, ତାସ୍ ଖେଳରେ ଛକା, କ୍ରିକେଟ୍ ଖେଳରେ ୬ ମାରିବା, କଉଡ଼ି ଖେଳରେ ଛଅଟି କଉଡ଼ି, ଲୁଚିବା

**ଛକାଖେଳ** - *ଦେ:* (ବି.) : କଉଡ଼ି ଖେଳ

**ଛକାଛକି** - *ଦେ:କ:ନ:* (ବି.) : ଜଗା ଜଗି, ସତର୍କ, ସାବଧାନ

**ଛକାଠି** - *ଅ:ଦେ:* (ବି.) : ପଞ୍ଜରାକାଠି, ପଞ୍ଜରା ହାଡ଼

**ଛକାଠିଆ** - *ଗଦ୍ୟ:* (ବି.) : ଛ'ଖଣ୍ଡ କାଠ ବିଶିଷ୍ଟ କୋକେଇ

**ଛକାପଞ୍ଝା** - *ନ:ସଂ:ଗ:ଦେ:* (ବି.) : ପରସ୍ପର ସତର୍କ, ଦଳଦଳ, ଛକାଛକି ହୋଇ ଠିଆହେବା, ଚାତୁର୍ଯ୍ୟ, ଡାକ ଡରକ

**ଛକି ପକାଇବା** - *ନ:* (କ୍ରି.) : ଉତ୍ତର ଖାତାରେ ଛକି ଚିହ୍ନ ଦେବା (ଭୁଲ ଥିଲେ)

**ଛକିବା** - *ଅନେ:* (କ୍ରି.) : ଜଗିବା, ବାଧାଦବାକୁ ଅପେକ୍ଷା କରିବା, ଲୁଚିକରି ଜଗିବା

**ଛକିଣୁନ** - *କ:* (ବି.) : ଖେଳ ବିଶେଷ

**ଛକୋର** - *କଳା:* (ବିଂ.) : ଛ' କୋଡ଼ି, ଏକ ଶହ କୋଡ଼ିଏ

**ଛକ୍ରା** - *ମ:* (ବି.) : ଯୁବକ

**ଛଖଁଡି** - *ବ:* (ବି.) : ଛଖଣ୍ଡି(ସଂ)

**ଛଙ୍କା** - *ଭ:ଦେ:କେ:* (ବି.ବିଂ.) : ଛଣାଯନ୍ତ୍ର, ଛାଣିବା, ବଘରା, ବଛା ହୋଇଥିବା, ଛଣା

**ଛଙ୍କାଛଙ୍କି** - *ଦେ:ଅ:* (ବି.) : ଭଲ ଭାବରେ ତଦାରଖ, ଛଣାଛଣି

**ଛଚରି** - *ନୂ:* (ବିଂ.) : ବିଚ୍ୟୁତ, ବିଛାଡ଼ି

**ଛଟା** - *କଳା:ନ:* (ବି.ବିଂ.) : ପୁଡ଼ା ବନ୍ଧା ଦଉଡ଼ି, ସଚୋଟ, ସଚ୍ଚା ପଣିଆ

**ଛଟାନ୍** - *ମା:* (ବି.) : ଛଞ୍ଚାଣ

**ଛଚି** - *ଜଳା:* (ବି.) : ସଂଚୟ କରି, କୃପଣ ଭାବରେ ରଖିବା

**ଛଚିନ୍ଦ୍ରା** - *ଅନେ:* (ବି.) : ଏକପ୍ରକାର ଲମ୍ବ ଲତାଫଳ, ସାପୁଆ (ପରିବା)

**ଛଚିବା** - *ଜଳା:* (କ୍ରି.) : ସଂଚୟ କରିବା, ଠୁଳ କରିବା

**ଛଛନ୍ଦ** - *ଜ:* (ବି.) : ସ୍ୱଚ୍ଛନ୍ଦ, ସୁବିଧାରେ

**ଛଞ୍ଚ** - *ବା:ଦେ:* (ବି.) : ଲିପାକନା, ଅଳ୍ପ ଅଳ୍ପ ଛାଟିବା

**ଛଞ୍ଚିବା** - *ବୌ:* (କ୍ରି) : ଜମାଇବା, ସଞ୍ଚିବା

**ଛଞ୍ଚା** - *ଅନେ:* (ବି.) : ସଞ୍ଚା, ପାନ ବରଜରେ ବ୍ୟବହାର କରାଯାଉଥିବା ସରୁଖଡ଼ି ଗଛ, ପୁଡୁଖ ବାନ୍ଧିବା ପାଇଁ ପୁଆଳ ଦଉଡ଼ି ପକାଇବା, ଚାଉଳ, ଡାଇ, ଫଳ, ପରିବା ଇତ୍ୟାଦି ବ୍ରାହ୍ମଣଙ୍କୁ ଦାନକରି ଟେକିଦେବା

**ଛଞ୍ଚାଣ ଗତି** - *ଗ:* (ବିଂ.) : ଶୀଘ୍ର ଗତି

**ଛଞ୍ଚାଣିଆ** - *ବା:* (ବିଂ.) : ଟାଉଟର

**ଛଞ୍ଚିଆ** - *ବୌ:* (ବି.) : ଛୋଟ ଖୁରୀ

**ଛଞ୍ଚିବା** - *ନ:ଗ:ଦେ:ଭ:* (କ୍ରି.) : ସଞ୍ଚୟ କରି ରଖିବା, ଝାଡ଼ାପରେ ଶୌଚ ହେବା,

**ଛଟ** - *ଗ:ମ:ଦେ:* (ବି.) : ଦୁଷ୍ଟାମୀ, ଛୋଟ, କାର୍ତ୍ତିକ ମାସରେ ବିହାରୀ ମାନଙ୍କ ପର୍ବ

**ଛଟ୍‌କନ୍** - *ଜଳା:* (ବି.) : ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କ ମଧ୍ୟରେ ପ୍ରଶ୍ନୋତ୍ତର-ଗୀତ, ଢାପ ଗୀତ

**ଛଟ୍‌କି ଛଟ୍‌କି** - *ଜଳା:* (କ୍ରି.) : ଡେଇଁବା, ଇତସ୍ତତଃ ପାଦପକାଇବା

**ଛଟ୍‌କିବା** - *ଜଶ:ଦେ:ଜଳା:* (ଅ.କ୍ରି.) : ଛଟ୍‌ପଟ୍, ହାତ ପାଦ ଆଦି ଛାଟି କାନ୍ଦିବା, କୌଣସି ଯନ୍ତ୍ରଣା ଜନିତ କାରଣରୁ ଛଟପଟିବା

**ଛଟ୍‌ନା** - *ସ:* (ବି.) : ବାଉଁଶ କାଠିରେ ତିଆରି ଟୋକେଇ

**ଛଟ୍ ପଟାବା** - *ସ:* (କ୍ରି.) : ଯନ୍ତ୍ରଣାରେ ଛଟପଟ ହେବା

**ଛଟ୍‌ଲେଇ** - *ଝା:* (କ୍ରି.) : ଗୋଡ଼ ଛନ୍ଦି ହୋଇଯିବା

**ଛଟକ** - *ଅନେ:* (ବି.) : ଢଙ୍ଗ, ପଲକ, ଆଖି ପିଛୁଡ଼ା, ଛଳ, ଚାତୁରୀ, ଦେହକୁ ପୋଷାକ ଅଳଙ୍କାର ଇତ୍ୟାଦିରେ ସଜେଇହେବା, ଚତୁର ପଣିଆ, ଲୁଚିଛପି ଆସିବା, ଛଟା, ଛଇ, ଭଙ୍ଗୀ, ରୀତି

**ଛଟକା** - *ପଦ୍ୟ:* (ବି.) ଛନ୍ଦମୟଲଘୁ ସଂଗୀତ

**ଛଟକୀ** - *କ:* (ବିଂ.) : ଫୁଟାଣି ଦେଖୋଉଥିବା ସ୍ତ୍ରୀ ଲୋକ, ଫୁଲେଇ

**ଛଟ ଛଟ** - *ଦେ:* (ବି.) : କଲବଲ

**ଛଟନା** - *ନବ:* (ବି.) : ଝଡ଼ି

**ଛଟର ପଟର** - *ଗ:* (ବି.) କଲବଲ, ଯନ୍ତ୍ରଣାର ଭାବ

**ଛଟରା** - *ଗ:* (ବିଂ.) : ଦୁଷ୍ଟ ବାଳକ

**ଛଟା** - *ଅନେ:* (ବି.ବିଂ.) : ଅଣଖାସୁ ଛେଳି, ପୋଢ଼, ଛୋଟ ଲୋକ, କାଦୁଅଛଟା, ଢଙ୍ଗ, ରୂପ, ଶୈଳୀ, ଭଙ୍ଗୀ, ଛଳ, ବାହାନା, ମାଟି ଲିପା, ଥଟ୍ଟା

**ଛଟା ଅକ୍ଷର** - *ଦେ:* (ବି.) : ଅଙ୍କାବଙ୍କା, କରଣି ଅକ୍ଷର

**ଛଟାଇବା** - *ଦେ:* (କ୍ରି.) କମେଇବା, ହଟେଇବା

**ଛଟାଗାଳି** - *ପଦ୍ୟ:* (ବି.) : ବାହାନା

**ଛଟାଙ୍କି** - *ଅନେ:* (ବିଂ.ବି.) : ଷୋଳ ଭାଗରୁ ଭାଗେ, ପ୍ରାଚୀନ କାଳର ମାପ ଓଜନ ବିଶେଷ, ତୈଳ ମାପକ

**ଛଟାଳି** - *ଗ:* (ବି.) : ଛାଟିବା ଲୋକ,ଫିଙ୍ଗିବା ଲୋକ, ଏକ ପ୍ରକାରର ଖେଳରେ ଛାଟୁଥିବା ପାତ୍ର

**ଛଟିବା** - *ରା:* (କ୍ରି.) : ଚାଲିଯିବା, ଶୀଘ୍ର ବାହାରିବା, ତରତର ହୋଇ

**ଛଟେଇ** - *ସଂ:* (ବି.) : ଚାକିରୀରୁ ବହିଷ୍କାର

**ଛଡ଼ା** - *ଅନେ:* (ବି.ଅ.) : ଅଳ୍ପବୟସର ମାଈବାଛୁରୀ, କପଟ, ଷଡଯନ୍ତ୍ର, ଜନ୍ମ କରିନଥିବା ମାଈ ବାଛୁରୀ, ବିନା, ବ୍ୟତୀତ, ଚୋପାଛଡ଼ାଇବା, ଅଫଳନ୍ତି ଗାଈ

**ଛଡରସ** - *ସୁନ:* (ବି.) : ଷଡ଼ରସ

**ଛଡିଆ** - *କେ:* (ବି.) : ଗୋଡର ଗହଣା, ଆଙ୍ଗୁଠି ବା ଗୋଇଠିରେ ପିନ୍ଧାଯାଏ

**ଛଡୁଣୀ** - *ନବ:* (ବି.) : ଝାଡୁ

**ଛଡ଼** - *ଅନେ:* (ବି.) : ଲୁହା ରଡ଼, ବେହେଲା ବଜାଇବାର କାଠି, ବିଭିନ୍ନ ଅଙ୍ଗଭଙ୍ଗୀ, ବାଡି, ବନିଶୀ, ମାଛଧରା ବାଡ଼ି

**ଛଡ୍ ଛଡ୍** - *ମ:* (କ୍ରି.ବିଂ.) : କଲବଲ

**ଛଡ୍‌ରସ୍** - *କଳା:* (ବି.) : ଆଦିବାସୀ ମାନଙ୍କ ଲୋକଗୀତ ଢାପର ଏକ ଅଂଶ

**ଛଡ୍‌ରା** - *କନ୍ଧ:କୋ:* (ବିଂ.ବି.) : ଛାଡ଼ପତ୍ର, ଘଡ଼ଘଡ଼ି

**ଛଡ଼ରସିକିଆ** - *କେ:* (ବିଂ.) : ଫୁଟାଣିଆ, ହାତରେ ସିଂଘ ବାଡ଼ି ଧରି ଚାଲୁଥିବା ଯୁବକ

**ଛଡ଼ରା** - *ଭ:ଯା:* (ବିଂ.) : ସିଧା, ଉଚ୍ଚ ଓ ସୁନ୍ଦର, ବନ୍ଧୁକରୁ ବିକ୍ଷିପ୍ତ ଗୁଳି

**ଛଡ଼ାଇବା** - *ନ:ଦେ:* (କ୍ରି.) : ଜବରଦସ୍ତ କୌଣସି ଜିନିଷ ଅନ୍ୟଠାରୁ ନେଇଯିବା, ଚୋପାମୁକ୍ତ କରିବା

**ଛଡ଼ାଇହେବା** - *ଦେ:* (କ୍ରି.) : ଅଲଗାହେବା, ଲିଭେଇଦେବା, କାଢିଦେବା

**ଛଡ଼ାଛଡ଼ି** - *ଦେ:* (ବିଂ.) : ଟଣାଟଣି, ଝିଙ୍କାଝିଙ୍କି

**ଛଡ଼ାତୁଳସୀ** - *ଗ:* (ବି.) : ଦେବତାଙ୍କ ବାସୀ ତୁଳସୀ

**ଛଡ଼ା ପାଣି** - *ଗଞ:* (ବି.) : ଗୋବର ପାଣି

**ଛଡ଼ାଫୁଲ** - *ଅନେ:* (ବି.) : ଦେବ ଦେବତାଙ୍କ ବ୍ୟବହାର ହୋଇଥିବା ବାସିଫୁଲ

**ଛଡ଼ି** - *ଅନେ:* (ବି.) : ବାଡ଼ି, ବେତ, ଖୁଣ୍ଟା, ଫୁଟାଣି, ପତିଆରା

**ଛଡ଼ିଆ** - *କେ:* (ବି.) : ଗୋଡ଼ ଅଳଙ୍କାର

**ଛଡ଼ି କରିବା** - *ଚୌ:* (କ୍ରି.) : ଛଇ ଛଟକ, ବେଲି କରିବା

**ଛଡ଼ୀ** - *ସଂ:* (ବି.) : ହାତଧରା ବାଡ଼ି

**ଛଣ** - *ଚ:ଦେ:ଅ:* (ବି.) : କୁଟା, ଶିଙ୍କୁଳା ଘାସ, ନଡ଼ା

**ଛଣ ଛ' ବିଡ଼ାରେ** - *କ:* (ବି.) : ଆଦୌ ପସନ୍ଦ ନକରିବା, ବାସିରେ ନ ପଚାରିବା

**ଛଣପଟ** - *ପଦ୍ୟ:ଦେ:* (ବି.) : ନଡ଼ା, ପାଳ, କାଉଁରିଆ, ନଳିତା ଛମି, ଝୋଟ

**ଛଣବଣିଆ** - *ଗ:* (ବି.) : ଛଣିଘାସର କ୍ଷେତ

**ଛଣା** - *ନୂ:ଗା:* (ଅ.ବି.) : ବ୍ୟତୀତ, ସଫା କରିବା ଯନ୍ତ୍ର

**ଛଣାଛଣି** - *ଅନେ:* (ବି.) : ପକୋଡ଼ି ଭଳି ରୋଚକ ଭଜା, ଘିଅ ତେଲରେ ପିଠା ଇତ୍ୟାଦିଛାଣିବା କାର୍ଯ୍ୟ, ଲୁଗାରେ ମଇଳାକୁ ଅଲଗା କରି ପରିଷ୍କାର କରିବା

**ଛଣି** - *ଗା:କୋ:ପଦ୍ୟ:କନ୍ଧ:* (ବି.) : ସପପାଇଁ ବ୍ୟବହୃତ ପାଣିରେ ଜନ୍ମ ନେଇଥିବା ଘାସ, ଏକ ପ୍ରକାର ସୁତୁଲି, ଶଗଡ଼ ଚକ ମାଣରେ ବ୍ୟବହୃତ ଛଣପଟ, ମାଟିର ଉର୍ବରତା ବର୍ଦ୍ଧକ ବୃକ୍ଷ

**ଛଣିକିକେ** - *ଢେ:* (କ୍ରି.) : ଛପର କରିବା

**ଛଣି, ଛଣ** - *ମ:* (ବି.) : ଝୋଟ

**ଛଣେକ୍** - *କୋ:* (ବି.) : ଅଳ୍ପକ୍ଷଣ, କ୍ଷଣିକ, ଅସ୍ଥାୟୀ

**ଛତ୍‌ନେଇବା** - *ଚ:* (ବିଂ.) କୌଣସି ପଦାର୍ଥରେ ଫିମ୍ପି ଲାଗିଯିବା

**ଛତ୍ରି** - *ସୁବ:* (ବି.) ମୁଣ୍ଡରେ ଲଗାଯାଉଥିବା ତାଳପତ୍ର ଟୋପି, ବର୍ଷାରୁ ରକ୍ଷାପାଇଁ ଚାଷୀମାନେ ଲଗାନ୍ତି

**ଛତ୍ରି** - *ଚୌ:ସ:* (ବି.) : ବେଣ୍ଟ ନଥିବା ଛତା, ତାଳ ପତ୍ରରେ ତିଆରି ଛତା ପରି ଜିନିଷ

**ଛତନାବାର** - *ସୁବ:* (କ୍ରି.) : ଫିମ୍ପି ଲାଗିଯିବା, ହାଣ୍ଡିରେ ଫାଟହେବା

**ଛତର** - *ଅନେ:* (ବି.) : ସଦାବର୍ତ୍ତ ଅନ୍ନଦାନ କେନ୍ଦ୍ର, ମାଗଣା ଖାଦ୍ୟ ବଣ୍ଟନ ସ୍ଥଳ, କାହାଳୀ, ଫନେଇ

**ଛତର କୁଟିଆ** - *ଗ:* (ବିଂ.) : ସ୍ୱାର୍ଥପର

**ଛତରଖାଇ** - *ନ:କେ:ଦେ:କେ:* (ବି.ବିଂ.) : ଏକ ଗାଳି, ଚାରିଆଡେ ବୁଲୁଥିବା ସ୍ତ୍ରୀ, ମାଗି ଖାଇ, ମାଗିଖାଇ

**ଛତରଖିଆ** - *ଅନେ:* (ବିଂ.ବି.) : ଏକ ଗାଳି, ଅନ୍ନଛତ୍ରରେ ମାଗିଖିଆ ଲୋକ, ଦାୟିତ୍ୱହୀନ, ବାରବୁଲା, ଛତରରେ ଖାଇଥିବା ଲୋକ, ମାଗଣା ଭୋଜନ ଖାଇଥିବା, କାଙ୍ଗାଳ

**ଛତରଛାଳ** - *ପୁ.ଅ.* (ବି.) ବିକ୍ଷିପ୍ତ ହୋଇଯିବା, ଅସ୍ତବ୍ୟସ୍ତ ହୋଇଯିବା, ଛିନ୍ନବିଛିନ୍ନ

**ଛତରରେ ପଶିବା** - *ଦେ.* (କ୍ରି.) : ଜାତି ହରେଇବା

**ଛତରା** - *ଅନେ.* (ବିଂ.) : ବଜାରୀ, ବାରବୁଲା, ବଗୁଲିଆ, ଦୁଷ୍ଟ

**ଛତରୀ** - *ନ.* (ବି.) : ଛତରରେ ବୁଲିବା କି ଖାଇବା ସ୍ତ୍ରୀଲୋକ, ଏକ ଗାଳି

**ଛତର୍** - *ସ.* (ବି.) : ଦେବା ଦେବୀଙ୍କ ମସ୍ତକ ଉପରେ ଶୋଭା ପାଉଥିବା ଅଳଙ୍କାର, ଛତ୍ର, ଚାନ୍ଦୁଆ, ଛତି

**ଛତା** - *ଦେ.ଅ.* (ବି.) : କନାରେ ଗୋଲାକାର କରି ତିଆରି ଜିନିଷ ଯାହା ଖରା ବା ବର୍ଷାରୁ ରକ୍ଷା କରେ, ତାଳପତ୍ର, କନାରେ ତିଆରି ବର୍ଷାତି

**ଛତା ଆଡ଼ିବା** - *ଦ.* (କ୍ରି.) : ନିଜକୁ ବଂଚାଇବା

**ଛତା ଧରିବା** - *ଦ.* (କ୍ରି.) : ତୋଷାମଦ କରିବା

**ଛତାବରୀ** - *ଅ.* (ବି.) : ସତାବରୀ (ଔଷଧୀୟ ଲତା)

**ଛତା ମାରିବା** - *ଦ.ଗ.* (କ୍ରି.) ଗାଡ଼ି ଓଲଟିଯିବା, ଛତ୍ରାକାର ହେବା

**ଛତି** - *ଅନେ.* (ବି.) : ଛତ୍ରୁ, ଛତର, ବଡ଼ଛତା, ଅପୁଷ୍ପକ ଉଦ୍ଭିଦ, ଦେବତାଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ଛତା,

**ଛତିଆ** - *ଅନେ.* (ବିଂ.ବି.) : ବିଶେଷ ଆଘାତପ୍ରାପ୍ତ, ଜିହ୍ୱାରେ ଥିବା ମଇଳା, ଜିହ୍ୱାମଳ, ଦୁର୍ଗନ୍ଧଯୁକ୍ତ, ଜିଭରେ ଜମିଥିବା ମଇଳା, ଫିମ୍ପି, ମେଲା

**ଛତିଆନା** - *ଗ.* (ବି.) : ସପ୍ତପର୍ଣ୍ଣ ଔଷଧୀୟ ଗୁଳ୍ମ ବିଶେଷ

**ଛତିଆ ହେବା** - *ଗ.* (ବିଂ.) : ଯୁକ୍ତି ଅଗ୍ରାହ୍ୟ ଯୋଗୁଁ ହାରିଯିବା, ଫିମ୍ପି ମାରିଯିବା

**ଛତିଛତାରୀ** - *ସଂ.* (ବି.) : ବଡ଼ଛତା, ଆଚ୍ଛାଦନ

**ଛତିରି** - *ଜ.ଦେ.* (ବି.) : ଠାକୁର ବିମାନ ସାମନାରେ ବିସ୍ତାରିତ କଳାଛତା, ପିପିଲି ଚାନ୍ଦୁଆ, ଝାମ୍ପି

**ଛତିସା ପାଟ** - *ସଂ.* (ବି.) : ଜାତି ନିଯୋଗ, ପାଣି ଜମି ରହୁଥିବା ଏକ ବଡ଼ସ୍ଥାନ

**ଛତୁଆ** - *କ.* (ବି.) : ବୁଟ, ଚଣା ବା ଗହମର ଗୁଣ୍ଡ, ମୁଢି, ଚୁଡ଼ା ଆଦିର ଚୂର୍ଣ୍ଣ, ବିଭିନ୍ନ ଶସ୍ୟ ଚୂନାରେ ନିର୍ମିତ ଖାଦ୍ୟ

**ଛତୁଆରି** - *ଜ.କେ.ଦେ.* (ବି.) : ବାତାବରଣ, କଣ୍ଟକିତ ଲତା ବିଶେଷ, ବାତାବରୀ, ଶତମୂଳି, ଶତାବରୀ

**ଛତୁ ଉଡେଇବା** - *ସଂ.* (କ୍ରି.) : ସତ୍ତା ଲୋପ କରିବା

**ଛତୁର୍** - *କଳା.* (ବି.) : ପତ୍ର ଓ ବାଉଁଶ ପାତିଆରେ ନିର୍ମିତ ବେଣ୍ଟ ଲାଗି ନଥିବା ଛତା

**ଛତ୍ର** - *ଖୋ:ଗଞ:* (ବି.) ପାଣିଛତ୍ର, ବିଶ୍ରାମାଗାର, ଧର୍ମଶାଳା

**ଛତ୍ରଛାଉଣି** - *ଭ:* (ବି.) : ଛିନ୍ନଛତ୍ର

**ଛତ୍ରା** - *ଗଦ୍ୟ:* (ବି.) : ଧନିଆ

**ଛତ୍ରିଆ** - *କଳା:* (ବି.) : ହରିଜନ ଜାତିର କୌଳିକ ଉପନାମ

**ଛଦରମ** - *ଗ:* (ବି.) : କପଟ, ଶଠତା

**ଛଦା** - *ଗା:* (ବି.) : ଛାଣିବାପରେ ରହିଥିବା ଜିନିଷ

**ଛଦାମ** - *ଦେ:ସୁ:ପଦ୍ୟ:* (ବି.) : ପଇସାରୁ ଚାରିଭାଗରୁ ଏକ ଭାଗ, ଅଳ୍ପ, ଟଙ୍କାପଇସା

**ଛଦାମେ** - *ଢ:* (ବି.) : ସାମାନ୍ୟ ଟିକିଏବି

**ଛଦି** - *ଢେ:* (ବି.) : ଘରର ମଥାନ

**ଛଦ୍ମ** - *ସଂ:ଗଦ୍ୟ:ଢ:ଖୋ:* (ବି.) : ଛଳନା, ବାହାନା, ଛନ୍ଦ, କପଟ, ଷଡ଼ଯନ୍ତ୍ର କରିବା

**ଛନ** - *ସୁ:ଗ:କଳା:* (ବି.ବିଂ.) : କ୍ଷଣ, ଖୋଟ, ଉଚ୍ଛନ୍ନ, ଛଣ, ଛପର ଯୋଗ୍ୟ ବନଜାତ ତୃଣ

**ଛନ୍ କପଟ୍** - *ସ:* (ବି.) : ଛନ୍ଦ କପଟ

**ଛନ୍କା ପଶବା** - *ନୂ:* (କ୍ରି.) : ଭୟଭୀତ ହୋଇଯିବା

**ଛନ୍କି ରାଧା** - *ଗୌ:* (ବିଂ.) : ରଙ୍ଗ୍ ରଙ୍ଗିଆ ଅବିବାହିତା ଝିଅ

**ଛନ୍କୀ** - *ଦେ:* (ବି.) : ଅସ୍ଥିର

**ଛନ୍‌କେଛନ୍** - *କଳା:* (ବିଂ.) : କ୍ଷଣକୁକ୍ଷଣ, ବେଳକୁ ବେଳ

**ଛନ୍‌ଛନ୍** - *ଦେ:ନୂ:ନ:ଗୌ:* (ବି.ଅ.ବିଂ.) ଚଞ୍ଚଳ, ଭୀତ, ଥରକୁ ଥର, ଅସ୍ଥିର ହେବା, ଚଞ୍ଚଳ ପ୍ରକୃତି

**ଛନ୍‌ଛନ୍‌କା** - *କଳା:* (କ୍ରି.) : ସତେଜ ରହିବା, ଚଳଚଞ୍ଚଳ ହେବା

**ଛନ୍‌ଛନିଆ** - *ଅନେ:* (ବିଂ.ବି.) : ସତେଜ ଅବସ୍ଥା, ଚଞ୍ଚଳ ପ୍ରକୃତି, କଞ୍ଚା, ସଜ, ଭେଣ୍ଡିଆ, ଟୋକା, ଟୋକୀ

**ଛନକା** - *ଅନେ:* (ବି.) : ଭୟ, ଛାନିଆ, ଡରିବା

**ଛନକୀ** - *ଗ:* (ବିଂ.) : ଯୌବନ ମତ୍ତ ଯୁବତୀ

**ଛନଛାନ୍** - *ସୁବ:* (କ୍ରି.) : ସିଧାସଳଖ

**ଛନା** - *କନ୍ଧ:* (ବି.) : ଛଣା

**ଛନାପତି** - *ସୁବ:* (ବିଂ.) : ମାଳି, ଶିବମନ୍ଦିର ପୂଜକ

**ଛନେ** - *ଦ:ଗଦ୍ୟ:କଳା:ସ:* (ବି) : ଅଳ୍ପ ସମୟ, କ୍ଷଣେ, ମୁହୂର୍ତ୍ତ ମାତ୍ର

**ଛନେକ୍** - *କଳା:କୋ:* (ବି.କ୍ରି.ବିଂ.) : କ୍ଷଣକ ପାଇଁ, ଅଳ୍ପ କାଳ ପାଇଁ, କିଛି ସମୟ ପାଇଁ

**ଛନ୍ଦ** - *ଅନେ:* (ବି.ବିଂ.) : କାଠ ତିଆରି ଲୁଗା ରଖିବା ଜାଗା, ଅଲଗୁଣି, କପଟ କରିବା, ଛନ୍ଦଣି

**ଛନ୍ଦକୁଟ** - *ଢ:* (ବି.) : କପଟାଚାର

**ଛନ୍ଦଛନ୍ଦ** - *ଦେ:* (ବି.) : ଆଖିରେ ଲୁହ ଭରିଯିବା

**ଛନ୍ଦଦଉଡ଼ି** - *ଗ୍ରା:* (ବି.) : ଦୁଇଟି ଜିନିଷକୁ ବାନ୍ଧିବା ଦଉଡ଼ି ଗାଇ ବାନ୍ଧିବା ପଘା

**ଛନ୍ଦନା** - *ଦେ:* (ବି.) : ଠକାମି, ପ୍ରତାରଣା

**ଛନ୍ଦବନ୍ଦକୌଶଳ** - *ଦେ:* (ବି.) : କପଟତା

**ଛନ୍ଦରେ ପଡ଼ିବା** - *ଗ୍ରା:* (କ୍ରି.) : ଅଡୁଆରେ ପଡ଼ିବା

**ଛନ୍ଦଲେଇ** - *ଦ:* (କ୍ରି.) : ଛନ୍ଦି ହେବା

**ଛନ୍ଦା** - *ଭ.ଦେ:* (ବି.ବିଂ.) : ନଈଘାଟ, ବନ୍ଧା, ରଚିତ

**ଛନ୍ଦାତନକା** - *ଗ୍ରା:* (ବି.) : ବନ୍ଧା ପକେଇବା, ବନ୍ଧକ ଦେବା

**ଛନ୍ଦାବନ୍ଧା** - *ଅନେ:* (ବି.) : ବନ୍ଧାଛନ୍ଦା, ସମ୍ପତି ବନ୍ଧାଦେବା, ବନ୍ଧକ, ବହାଘର ବେଳେ ବରପକ୍ଷରୁ ଆଦାୟ ଗ୍ରାମ୍ୟ ପାଣ୍ଠି

**ଛନ୍ନ** - *ଗ୍ରା:* (ବି.) : ଆଚ୍ଛାଦିତ, ଲୁପ୍ତ

**ଛନ୍ନ ଛନ୍ନ** - *ସଂ:* (ବିଂ.) : ଉଦ୍‌ବିଗ୍ନ

**ଛପ୍‌ଲିବା** - *ସୁ:* (ବି.) : ବ୍ୟାପିବା, ଘାଉଆରେ କାଟିବା

**ଛପ୍‌ଲିବାର** - *ସୁବ:* (କ୍ରି.) ଲୁଗାପଟା, କାଗଜ ଇତ୍ୟାଦି ଚଟାଣର ପାଣିରେ ଭିଜିବା, ପାଣି ଶୁଖିଲା ଲୁଗା କାଗଜରେ ପଡି ବ୍ୟାପିଯିବା

**ଛପ୍‌ଲିବା** - *ସୁ:* (କ୍ରି.) : ଛପିଯିବା, ମାଡ଼ିଯିବା

**ଛପକାବାର** - *ସୁବ:* (କ୍ରି.) : ଭୟରେ ପରିସ୍ରା ବନ୍ଦ କରିଦେବା

**ଛପଛପିଆ** - *ଗ୍ରା:* (ବିଂ.) : ଚିତ୍ରିତ, ଚିତ୍ରଚିହ୍ନ ଯୁକ୍ତ, ଛପଛପିକା

**ଛପଟିଆ ମାରିବା** - *ସଂ:* (କ୍ରି.) : ଝାମ୍ପମାରିବା, ଠକିବା

**ଛପରଫାଡିଦେବା** - *ଅନେ:* (ବି.) : ଅଯାଚିତ ଅନୁଗ୍ରହ

**ଛପର ବନ୍ଦି** - *ଗ୍ରା:* (ବି.) : ଗୃହାଦି ଚାଳକୁ ଛପର କରିବା

**ଛପା** - *ଅନେ:* (ବି.) : ବାଉଁଶ ପାଟିଆ ନିର୍ମିତ ମଶିଣା, ଲୁଚେଇବା, ପଟି, ମସିଣା, ମୁଦ୍ରିତ

**ଛପାକାଗଜ** - *ଦେ:* (ବି.) : ଖବର କାଗଜ, କାଳି ପିଇଯିବା କାଗଜ

**ଛପାଛପି** - *ଦେ:* (ବି.) : ଲୁଚାଇବା, ପ୍ରକାଶ କରିବା କାର୍ଯ୍ୟକ୍ରମ

**ଛପାମୁଦି** - *ଗ୍ରା:* (ବି.) : ନାମାଙ୍କିତ ମୁଦ୍ରିକା

**ଛପାଳି** - *ଗ୍ରା:* (ବି.) : ଛପା ଖାନାରେ କାର୍ଯ୍ୟ କରୁଥିବା ଲୋକ

**ଛପି** - *ଅନେ:* (ବି.) : ଲୁଚିଲୁଚି

**ଛପେଇ** - *ଗଞ:* (ବି.) ଖପରାଦ୍ୱାରା ଝିଅମାନେ ଖେଳିବା ଖେଳର ନାମ

**ଛପେଇ ଦେବା** - *ଅନେ:* (କ୍ରି.) ଲୁଚେଇଦେବା

**ଛପୋଲିଆ** - *ଅନେ:* (ବି.) : ୬ଟି ଫୁକାର ଥିବା ପୋଲ

**ଛବି** - *ଦେ:* (ବି.) : ଚିତ୍ର, ଚେହେରା

**ଛମ୍ଣ୍ଡା** - *କନ୍ଧ:କଳା:* (ବି.) : ଛାମୁଣ୍ଡିଆ

**ଛମା** - *ଦେ:ଗ:* (ବି.) : ପାଛିଆ, ଗାଣ୍ଡୁଆ, ଚାଲୁଣି, ନିର୍ବୋଧ ବୋକା

**ଛମାଖ** - *ଗଜ:* (ବି.) : କଉଡ଼ି ଖେଳରେ ବ୍ୟବହୃତ

**ଛରା** - *ଖୋ:ଗ:ସୁ:* (ବି.) : ବନ୍ଧୁକର ଗୁଳି, ଅଗଣାରେ ଗୋବର ପାଣି ଛିଞ୍ଚିବା

**ଛରା ଖାଇବା** - *ଗ:* (କ୍ରି.) : ଗୁଳି ବିଦ୍ଧହେବ

**ଛରାନଳୀ** - *ଗ:* (ବି.) : ଛୋଟ ବନ୍ଧୁକ

**ଛର୍** - *ସୁବ:ସ:କଳା:* (ବି.) ଖିଅର, ବାଳକାଟିବା, କ୍ଷୌର

**ଛର୍‌ବାର୍** - *ସ:* (କ୍ରି.) : ଢେଙ୍କିରେ କୁଟିବା

**ଛର୍ ଭଦର୍** - *ସ:* (ବି.) : କ୍ଷୌରହେବା

**ଛର୍‌ରା** - *ସୁବ:ନ:* (ବିଂ.ବି.) : ସ୍ୱାମୀକୁ ସ୍ତ୍ରୀ ଛାଡ଼ପତ୍ର ଦେବା, ବନ୍ଧୁକରେ ବ୍ୟବହୃତ ଗୁଳି

**ଛଲ୍‌କା** - *ଦେ:* (ବିଂ.) ଆନ୍ଦୋଳିତ, ନୃତ୍ୟାୟିତ

**ଛଲ୍‌କିବା** - *ବୌ:ନୂ:* (କ୍ରି.) : ଉଛୁଳି ବାହାରି ପଡ଼ିବା

**ଛଲ୍‌ଛଲ୍** - *ସୁବ:* (ଅ.) : ହଠାତ୍ ଲୁହ ବୋହିବା, ହଠାତ୍ ପରିସ୍ରା କରି ପକାଇବା

**ଛଲ୍‌ବା** - *ମା:* (କ୍ରି.) : ଚୋରିକରିବା

**ଛଲା** - *ମ:ସୁ:* (ବି.) : ସୁଲା, ବୁଟ, ଛାଲି

**ଛଲାବାର** - *ସୁବ:* (କ୍ରି.) : ଶିକାର ଦେହରୁ ଛାଲ ଉତାରିବା

**ଛଳ** - *ରା:ଅ:ଦେ:ଖୋ:* (ବି.) : କପଟ, ପ୍ରତାରଣା, ଅଭିମାନ

**ଛଳେଇ** - *ଦେ:* (ବି.) : ଭଣ୍ଡେଇ, ଠକି କରି କାମ ଆଦାୟ କରିବା ସ୍ତ୍ରୀଲୋକ

**ଛହଉ** - *କଳା:* (ବିଂ.) : ଛଅ ସଂଖ୍ୟା, ଶସ୍ୟ ମାପକଲାବେଳେ ଛଅ ସଂଖ୍ୟାର ଉଚ୍ଚାରିତ ରୂପ

**ଛା** - *ମ:କନ୍ଧ:* (ବି.) : ଛୁଆ

**ଛାଆଣି** - *ଦେ:* (ବି.) ଘରର ଥାଟ, ଛପରବନ୍ଦି

**ଛାଇ ଗଡ଼ିବା** - *ଗ:ଭ:ଯା:* (ବି.) : ଅପରାହ୍ନ ଆରମ୍ଭ ସମୟ

**ଛାଇ ଡାକିବା** - *କେନ୍ଦୁ:* (କ୍ରି.) : ମରିଗଲେ ପ୍ରେତାତ୍ମାକୁ ସ୍ମରଣକରି ଦୀପ ଜାଳି ଚାଉଳ ଚୂନାକୁ ସମତୁଲ କରି ଛାଇ ଡକା କାମ ଚାଲେ।

**ଛାଇନିଦ** - *ସଂ:ନ:ଦେ:* (ବି.) ତନ୍ଦ୍ରା; ଅଳ୍ପନିଦ, ଚେଇଁ ଶୋଇବା, ଶୋଇବାର ଉପକ୍ରମ

**ଛାଇନେଉଟା** - *ଅନେ:* (ବି.) ବେଳ ଲେଉଟା, ଖରା ପରେ, ଦ୍ୱିପହର

**ଛାଇବାଇ** - *ଗ:* (ବି.) : ସଂପର୍କ ସଂପର୍କିତ

**ଛାଇବାଭଳା** - *ଗ:* (ବିଂ.) : ସ୍ମୃତି ବିଭ୍ରମ

**ଛାଇବା, ଛୁଆଇବା** - *ନ:* (କ୍ରି.) : ଛୁଆଇବା, ଚାଳରେ ନଡ଼ା ଆଚ୍ଛାଦନ କରିବା

**ଛାଇହେବା** - *ଦେ:* (କ୍ରି.) : ଢାଙ୍କି ହୋଇ ରହିବା, ଭର୍ତ୍ତି ହୋଇଯିବା, ଘେରିଯିବା

**ଛାଉ ଛାଉଆ** - *ଗଦ୍ୟ:* (ବିଂ.) : ଛପି ଛପିକା

**ଛାଉଣି** - *ଦେ:* (ବି.) : ସେନା, ତମ୍ବୁ, ଶିବିର

**ଛାଉଳି** - *ଗ.ଦେ:* (ବି.) : ପରିହାସ,କପଟ

**ଛାଏ** - *ସୁବ:* (ବି.) : ଛାଇ

**ଛାଏଦେଖି** - *ସୁବ:* (ବିଂ.) : ବାରମ୍ବାର ଦର୍ପଣ ଦେଖୁଥିବା, ପ୍ରସାଧନ ପ୍ରିୟ ଚଙ୍ଗଚଙ୍ଗି ଯୁବତୀ, ଯୁବତୀ ବଧୂ

**ଛାଏନ୍** - *କଳା:ଝା:* (ବି.) : ଛାଣି, ଛାତ, ଛାଉଁଣି

**ଛାଏନ ପିରଢ଼ା** - *ସ:* (ବି.) : ଚାଳଘରର ଉପରି ଭାଗ

**ଛାଏଁ** - *ଅନେ:* (ବି.ଅ.) : ଛାଇ, ଅଜାଣିତ, ମନକୁ, ହଠାତ୍, ଆପେ, ସ୍ୱତଃ

**ଛାଏଁଚି** - *ନୂ:* (ବିଂ.) : ଅଛୁଆଁ

**ଛାଏଁଛାଏଁ** - *ଅନେ:* (କ୍ରି.ବିଂ.) : ମନକୁ ମନ, ସ୍ୱତଃ ଘଟିବା

**ଛାଏଁଟ** - *ସୁ:* (ବି.) : ମୋଟା ରସି

**ଛାକଛାକ** - *ଦେ:* (ବି.) : ଥାକ ଥାକ, ଗଦା

**ଛାକେ** - *କଳା:* (ବିଂ.) : ଡୋକାଏ, ଅଳ୍ପ, ପରିମାଣ

**ଛାଗ** - *ଗଦ୍ୟ:* (ବି.) : ଭୃତ୍ୟ, ଅନୁଗତ, ଛେଳି

**ଛାଗଲ** - *ମ:କଣ:* (ବି.) : ଛେଳି

**ଛାଙ୍କଲପିଠା** - *କେନ୍ଦୁ:* (ବି.) : ତେଲ/ଘିଅରେ ଛଣାପିଠା, ଘିପିଠା, କାକର

**ଛାଙ୍କାପିଠା** - *କଣ:ମ:* (ବି.) : ଆରିସାପିଠା, ଛଣାପିଠା

**ଛାଙ୍କିବା** - *ଭ:ଦେ:* (କ୍ରି.) : ବେଶି ରୋଜଗାର କରିବା, ଛାଣିବା

**ଛାଙ୍କୁଣୀ** - *ଗ:ଭ:* (ବି.) : ଚାଲୁଣି, ଛଣା ଯନ୍ତ୍ର

**ଛାଚା** - *ଗ:* (ବି.) : ଭଲ, ଉତ୍ତମ

**ଛାଚିକୋରା** - *ଗ:* (ବି.) : ନଡ଼ିଆ କୋରା ଚିନି ମିଶ୍ରିତ ମିଠା

**ଛାଚିଧଡ଼ିଆ** - *ଗ:* (ବି.) : ଯେଉଁ ବସ୍ତ୍ରରେ ଧଳାରଙ୍ଗର ଧଡ଼ିଥାଏ

**ଛାଚିପାଟ** - *ଗ:* (ବି.) : ନବାତ ରଂଗର ପାଟବସ୍ତ୍ର

**ଛାଞ୍ଚ** - *ଅନେ:* (ବି.) : ବାକ୍ସ, ଫର୍ମା, କୌଣସି ଜିନିଷ ତିଆରି କରିବାର ପ୍ରତିକୃତି, ଆବଦ୍ଧ ବସ୍ତୁ, ଓଜନ ବଟକରା, ନକଲ, ପ୍ରତିକୃତି ନମୁନା, ମୂର୍ତ୍ତି ବା ମୁଖା ଗଢ଼ିବାର ପ୍ରତିକୃତି, ଆଧାର

**ଛାଞ୍ଚ କାଗଜ** - *ସଂ:* (ବି.) : ମାଟ୍ରିକ୍ସ କାଗଜ

**ଛାଞ୍ଚଣି** - *ରା:* (ବି.) : ଝାଡୁ

**ଛାଞ୍ଚଣି ବାନ୍ଧିବା** - *କେନ୍ଦୁ:* (କ୍ରି.) : ଛୋଟ ପିଲାଙ୍କୁ ନଜର ନ ଲାଗିବାପାଇଁ ମା, ପିଲାଟିର ଅଣ୍ଟାରେ ବାନ୍ଧୁଥିବା ଡୋର ଓ ଡେଉଁରିଆ

**ଛାଞ୍ଚି** - *କୋ:* (ବି.) : ଗୁପ୍ତଧନ

**ଛାଞ୍ଚିପାନ** - *ଗ୍:* (ବି.) : ତେଜପତ୍ର ପରି ସୁବାସିତ ପାନ, ଛାଚିପାନ, ମିଠା ଛୋଟ ପାନ

**ଛାଞ୍ଚୁଣି** - *ଅନେ:* (ବି.) : ଝାଟୁଆ, ଝାଡୁ, ଖଜୁରୀ ପିଂଛର ଝାଡୁ, ଖରକା, ବାଡୁଣି, ପହଁରା

**ଛାଞ୍ଚୁଣୀଆ** - *ଗ:* (ବି.) : ଝଙ୍କାଗୁଳ୍ମ

**ଛାଞ୍ଚିବା** - *ଦେ:* (କ୍ରି.) : ଚାଞ୍ଚିବା, ପାଲିସ କରିବା

**ଛାଟ** - *ଅନେ:* (ବି.ବିଂ.) : ଚାବୁକ, ସରୁବେତ, ଡାଙ୍ଗ, ଛାତ୍ରଙ୍କୁ ଦଣ୍ଡ ଦେବା ବାଡ଼ି, ଛୋଟ ବାଡ଼ି, ବେତ, ବାଡ଼, ସଳଖ, ସିଧା, ଯେ କର୍ମଚଞ୍ଚଳ

**ଛାଟ୍‌ନା** - *କୋ:* (ବି.) : ବାଉଁସ ନିର୍ମିତ ଓସାରିଆ ଓ ଖାଲୁଆ ଟୋକେଇ

**ଛାଟବାର** - *ସୁନ୍:* (କ୍ରି.) : ବାଛିବା ପସନ୍ଦ କରିବା, ଅନେକରୁ ଗୋଟିକୁ ପସନ୍ଦ କରିବା

**ଛାଟି** - *ଅନେ:* (ବି.) : ଛୋଟ ଦଉଡ଼ି, ବାଛିବା, ସୂତା ଗୁଡ଼ାଇବା ପାଇଁ ତନ୍ତୀମାନେ ବ୍ୟବହାର କରୁଥିବା ବାଉଁଶ ଯନ୍ତ୍ର, ଖୁବ୍ ଲମ୍ବା ଦଉଡ଼ି, ମୋଟା ଦଉଡ଼ି

**ଛାଟିଆ** - *ଅନେ:* (ବି.ବିଂ.) ଡାଙ୍ଗ, ଚୌକିଦାର୍, ଗଛର ସରୁ ଡାଙ୍ଗ, ଚୌକିଆ, ରାଜାଙ୍କ ପାଇକ, ପାଣ ଜାତିର ଲୋକ

**ଛାଟିକି ଚାଲିବା** - *ଗ୍:* (କ୍ରି.) : ଶୀଘ୍ରଶୀଘ୍ର ଚାଲିବା

**ଛାଟିପିଟି** - *ରା:ଦେ:* (ଅ.ବି.) ଅତି ଯନ୍ତ୍ରଣାରେ ଦେହର ଅବସ୍ଥା, ବାଉଳ ଚାଉଳ, ବ୍ୟତିବ୍ୟସ୍ତ

**ଛାଟିପିଟିକି** - *ଗ୍:* (ବିଂ.) : ତରବର ହୋଇ

**ଛାଟି ହୋଇ ପଡ଼ିବା** - *ଦେ:* (କ୍ରି.) : ଛିଟିକିରି ପଡ଼ିଯିବା

**ଛାଟେ** - *ଦେ:* (ବିଂ.) : ବେଡେ, ଏକାଥରେ

**ଛାଟେଛାଟ୍** - *ସ:ଦେ:* (ବି.) : ସିଧାସିଧା

**ଛାଟେଣୀ** - *ନ:* (ବି.) : କୋରଡ଼ା ବାଡ଼ି, ଯେଉଁ ବାଡ଼ିରେ ସୁତା ଦଉଡ଼ି ଲାଗିଥାଏ

**ଛାଟେର** - *ଦେ:* (ବି.) : ବେକରେ ଛାଟି ଦେଇ ଟାଣି ଟାଣି ନେବା

**ଛାଡ୍‌ରୀ** - *କଳା:* (ବିଂ.) : ସ୍ୱାମୀ ପରିତ୍ୟକ୍ତା ସ୍ତ୍ରୀ, ବର୍ଜିତା ସ୍ତ୍ରୀ

**ଛାଡ୍‌ରୀ ମାଇଝୀ** - *ଗୌ:* (ବି.) : ଛାଡପତ୍ର ପାଇଥିବା ସ୍ତ୍ରୀ

**ଛାଡ ଜଙ୍ଗଲ** - *ସଂ:* (ବିଂ.) : ଜଙ୍ଗଲ, କାଠ ବାଉଁଶ ଆଣିବା କଟକଣା ନଥିବା ଜଙ୍ଗଲ, ଗୋଚର ଜମି

**ଛାଡପତ୍ର** - *ସଂ:* (ବି.) : ତ୍ୟାଗ ପତ୍ର, ବିଚ୍ଛେଦର ବୈଧିକରଣ

**ଛାଡବାଡ଼** - *ସଂ:* (ବି.) : ପଚରା ଉଚରା ନ କରିବା, ଏଡ଼େଇଦେବା

**ଛାଡ଼** - *ଅନେ:* (ବି.) : ତ୍ୟାଗ, ପରମିଟ୍, ଛାଡ଼ିଦେବା, ବର୍ଜନ କରିବା, ବାଦ୍ ଦେବା

**ଛାଡ଼ଖାଇ** - *ସ:ସଂ:ଦେ:ନ:* (ବି.) : ରାସ ପୂର୍ଣ୍ଣିମା ପରଦିନ, କାର୍ତ୍ତିକ ପୁନେଇ ପରଦିନ, ମାର୍ଗଶୀର କୃଷ୍ଣ ପ୍ରତିପଦା, ହବିଷ୍ୟାଳି ଛାଡ଼ିଥିବା ଖାଦ୍ୟକୁ ଖାଇବା

**ଛାଡ଼ଖିଆ** - *ଗ୍ରା:* (ବିଂ.) : ସାମୟିକ ଭାବେ ଛାଡ଼ିଥିବା ଖାଦ୍ୟ ପୁଣି ଖାଇବା

**ଛାଡ଼ଛୁଡ଼** - *ଗଦ୍ୟ:* (ବି.) : ପାଟିତୁଣ୍ଡ, ମନୋମାଳିନ୍ୟ, ପୃଥକ, ବିରକ୍ତ ହୋଇ ଛାଡ଼ିଦେବା ବା ପରିତ୍ୟାଗ କରିବା

**ଛାଡ଼ଝୋଡ଼ ହେବା** - *ସ:* (କ୍ରି.) : ଭାବତୁଟେଇବା

**ଛାଡ଼ବଡ଼** - *ସଂ:ଦେ:କ:ଗ୍ରା:* (ବି.) : ବିସର୍ଜନ, ସମ୍ପର୍କ ନରଖିବା, ରିହାତି, ବିଛେଦ, ଅପଡ଼

**ଛାଡ଼ରି** - *ଯା:ସୁ:* (ବିଂ.) : ସ୍ୱାମୀ ପରିତ୍ୟକ୍ତା, ଛାଡ଼ପତ୍ରଧାରୀ

**ଛାଡ଼ାଭତ୍ରା** - *କନ୍ଧ:* (ବି.) : ଛାଡ଼ପତ୍ର

**ଛାଡ଼ି** - *ଦେ:* (ବି.) : ଅଲଗା ବ୍ୟବଧାନ ରଖି

**ଛାଡ଼ିଗଲା** - *ଗ୍ରା:* (କ୍ରି.) : ଦୂରକୁ ଚାଲିଯିବା

**ଛାଡ଼ିଛାଡ଼ି** - *ଦେ:* (ବି.) : ଅଲଗା, ପୃଥକ, ବ୍ୟବଧାନ

**ଛାଡ଼ିଛୁଡ଼ି** - *ଦେ:* (ବି.) : ପୂରାପୂରି ଛାଡ଼ିଦେବା

**ଛାଡ଼ିବା** - *ଦେ:* (କ୍ରି.) : ଦୂରେଇ ରହିବା

**ଛାଡ଼ିଯିବା** - *ଦେ:* (କ୍ରି.) : ଛାଡ଼ିଯିବା, ଧୋଇଯିବା, ଅଲଗା ହୋଇଯିବା

**ଛାଣି** - *କୋ:ଦେ:ଛେ:* (ବି.) : ଛାତ, ଛଣା, ଛାଙ୍କି, ଛପର, ଛଣଛପର

**ଛାଣିଚୁଣି** - *ଗ:* (ବି.) : କଟାକଟି କରି, ବଛାବଛି କରି କ୍ଷୁଦ୍ର ରୂପ ଦେବା

**ଛାଣିବା** - *ନୂ:ଦେ:* (ବି.କ୍ରି.) : ତେଲଛଣା, ପାଣିରେ ଭାସୁଥିବା ଜିନିଷ ଛାଣି ଆଣିବା, ବାଛିବା

**ଛାଣ୍ଡ** - *କେ:ଦେ:ଜ:* (ବି.ବିଂ.) : ଛଇ, ଢଙ୍ଗ, ଢପ

**ଛାଣ୍ଡକାଣ୍ଡ** - *ଯା:* (ବି.) : ରୂପଗତ ବ୍ୟବହାର ଓ ଚାଲିଚଳଣ

**ଛାଣ୍ଡିଚୁଣ୍ଡି** - *ସଂ:ଦେ:* (କ୍ରି.ବିଂ.) : କଟାକଟି କରି, ସଂକୋଚନ କରି

**ଛାଣ୍ଡିବା** - *ଦେ:* (କ୍ରି.) : ପତଳା କରିବା, କାଟିବା, ବାଛିବା, କାଣ୍ଡିବା, ପାଛୁଡ଼ିବା

**ଛାଣ୍ଡିସ୍** - *ଯା:* (ବି.) : ଛଇ, ଢଙ୍ଗ

**ଛାତ** - *ଦେ:* (ବି.) : ଘରର ଉପର ଭାଗ, ଛାତ

**ଛାତଡ଼ି** - *କୋ:* (ବି.) : ତଲାରି, ମୁଣ୍ଡ ପାଇଁ ବୃଷ୍ଟି ନିବାରକ ଘୋଡଣି

**ଛାତରି** - *ଅ:* (ବିଂ.) : ଛାଡ଼ପତ୍ର ପାଇଥିବା ସ୍ତ୍ରୀ

**ଛାତା** - *ଅନେ:* (ବି.) : ଛତା, ବୁକୁ, ବକ୍ଷ, ହୃଦୟ, ବୁକୁ, ସ୍ତନ, ଚଟୁଆ, ଛାତି

**ଛାତିଏ** - *ଦେ:* (ବିଂ.) : ବୁକୁଏ, ଉଚ୍ଚତା, ଛାତି ପର୍ଯ୍ୟନ୍ତ

**ଛାତିପତଳା** - *ଗଦ୍ୟ:* (ବିଂ.) : ଦୁର୍ବଳମନା

**ଛାତେ** - *ସୁ:* (ବି.) : ଛାତିଯାଏଁ

**ଛାଦିକରଣ** - *ସଂ:* (ବି.) : ବିଛେଇ ଚାଷ କରିବା ପ୍ରଣାଳୀ

**ଛାନ୍‌ପିଡଡା** - *ସୁବ:* (ବି.) ଛାଉଣି ହୋଇଥିବା ଘର ଛାତ

**ଛାନ୍‌ବା** - *ବର:ନୁ:* (ବି.କ୍ରି.) : ଛାଣିବା

**ଛାନଭିନ୍** - *ସୁବ:* (ବି.) : ପରୀକ୍ଷା ନିରୀକ୍ଷା କଟକଣା

**ଛାନା** - *କନ:ମ:* (ବି.) : ପୁଅଛୁଆ

**ଛାନି** - *ବର:ନବ:* (ବି.) : ଛାଉଣୀ, ଘରର ଛାତ, ଚାଳଘରର ଶିଖର ଅଂଶ

**ଛାନିଆ ବାଉଳି** - *ଗ:* (ବି.) : ନିଦରେ ଭୟଭୀତ ସ୍ୱପ୍ନଦେଖି ପ୍ରଳାପ କରିବା

**ଛାନିଆ ଭୁତ** - *ସଂ:* (ବିଂ.) : ଭୟଭୀତ

**ଛାନିଆଁ** - *ଅନେ:* (ବି.) : ଭୟଭୀତ

**ଛାନି ପଡ଼ିବା** - *ବ୍:* (କ୍ରି.) : ଆଖିରେ ପରଳ ରୋଗ ହେବା

**ଛାନ୍ତା** - *କ:* (ବି.) ଝାଂଜରା, ଛଣା ଉପକରଣ

**ଛାନ୍ଦ** - *ଦେ:କେ:* (ବି.) : ରାଗିଣୀ, ଗୀତ, ଛନ୍ଦରେ ରଚିତ ଗୀତ, କବିତା

**ଛାନ୍ଦବା** - *ବର:* (କ୍ରି.) : ଅଁସାରିର ବିଭିନ୍ନ ଅଂଶକୁ ସୂତା ସାହାଯ୍ୟରେ ଯୋଡ଼ିବା

**ଛାପ** - *ବୌ:ଦେ:* (ବି.) : ଚିହ୍ନ, ଛାପିଦିଅ (କ୍ରି.), ଛେପ, ଥୁକ

**ଛାପ୍‌କିବା** - *ବର:ବୌ:ସୁ:* (ବି.କ୍ରି.) : ଖାପି ଧରିବା, ବନ୍ଦ କରିବା, ଢାଙ୍କିବା, ବନ୍ଦ କରିବା, ଢାଙ୍କିବା, ଛୁଇଁବା

**ଛାପ୍‌କିବାର** - *ସୁବ:* (କ୍ରି.) ଦୁଇ ହାତ ପାପୁଲି ଦ୍ୱାରା ଧରିବା

**ଛାପଚିହ୍ନଣିଆ** - *ଖୋ:* (ବିଂ.) : ଚେହେରା ତୁଳନାରେ ବ୍ୟକ୍ତିତ୍ୱ ନଥିବା ଲୋକ

**ଛାପ ରହିବା** - *ଗ:* (ବି.) : ଦୁର୍ନାମର ଚିହ୍ନ ରହିବା

**ଛାପଲ** - *ଦେ:ଝ:* (ବି.) ଗାଡ଼ିଆ, କାଦୁଅପାଣି

**ଛାପା** - *ଅନେ:* (ବି.) ମଉଜ ପାଇଁ ପକାଯାଉଥିବା ଶିବିର, ଅର୍ଦ୍ଧ ବୃତ୍ତାକାର ଛାଉଣୀ, ମୁଦ୍ରଣ, ପ୍ରକାଶିତ, ମୋହର, ମୁଦ୍ରିତ, ଅକ୍ଷର ଖୋଦେଇ, ମୁଦ୍ରା, ଚିହ୍ନ, ମାର୍କ

**ଛାପାଖାନା** - *ଅନେ:* (ବି.) : ମୁଦ୍ରଣାଳୟ

**ଛାପାମାରିବା** - *ଦେ:* (କ୍ରି.) : ଦାଗଦେବା, କଳଙ୍କ ବୋଳିବା

**ଛାପି ଛାପି** - *ଦେ:* (ବି.) : ଲୁଚି ଲୁଚି

**ଛାବରା** - *ରା:* (ବି.) : ଧୂଳିମିଶା ଶସ୍ୟ

**ଛାବୁଲା** - *ଭ:* (ବି.) : ଚିହ୍ନିତ

**ଛାମକିଲା** - *ରା:* (କ୍ରି.) : କବଳିତ ହେବା

**ଛାମଣ୍ଡା** - *କେନ୍ଦୁ:* (ବି.) : ଚାରିପଟେ ଚାରୋଟି ଖୁଣ୍ଟ ପୋତି ମଝିଭାଗକୁ ତାଳପତ୍ରରେ ଆବୃତ କରି ଛାଇ କରିବା

**ଛାମି** - *ଗ୍ରା:* (ବି.) : ପାନ ମଧୁରୀ

**ଛାମୁ** - *ଜ:* (ବି.) : ମହାପୁରୁଷ, ଭଗବାନ, ଜଗନ୍ନାଥ

**ଛାମୁଡ଼ିଆ** - *ସଂ:* (ବି.) : ଖୁଣ୍ଟ ବାଉଁଶ ବାନ୍ଧି ତା ଉପରେ ତାଳପତ୍ର ପକାଇବା

**ଛାମୁଣ୍ଡିଆ** - *ଅନେ:* (ବି.) : ମୁଣ୍ଡ ଗୁଂଜିବା ପାଇଁ ଛୋଟ ଆଶ୍ରୟସ୍ଥଳୀ, ଘର ଆଗରେ ଶୁଭ କାର୍ଯ୍ୟରେ ତିଆରି ପତ୍ରର ଆଚ୍ଛାଦନ ମଞ୍ଚ, ଛାୟା ପ୍ରଦାନ ପାଇଁ ଅସ୍ଥାୟୀ ମଣ୍ଡପ, ତାଳପତ୍ରରେ ତିଆରି ଛେମୁଣ୍ଡା

**ଛାମୁଦାନ୍ତ** - *ନ:ଖୋ:ଦେ:* (ବି.) : ପାଟିର ସମ୍ମୁଖ ଦାନ୍ତ, ଆଗ ଦାନ୍ତ, ପାଟିର ସାମ୍ନା ପଟର ଦାନ୍ତ ଯାହା ବାହାରକୁ ଦେଖାଯାଉଥାଏ,

**ଛାମୁଲାଗି** - *ଗ:* (ବି.) : ରାଜାଙ୍କ ବ୍ୟବହୃତ ଦ୍ରବ୍ୟ

**ଛାୟା** - *ଅ:ଗ:* (ବି.) : ସ୍ତ୍ରୀ ମାନଙ୍କ ଅନ୍ତର୍ବାସ, ଶାୟା

**ଛାୟାଙ୍କ** - *ସଂ:* (ବି.) : ଚନ୍ଦ୍ର

**ଛାୟାଚିତ୍ର** - *ସଂ:* (ବି.) : ଚଳଚ୍ଚିତ୍ର

**ଛାୟାବାଦ** - *ସଂ:* (ବି.) : କୁହୁକ, ଇନ୍ଦ୍ରଜାଲ

**ଛାୟାମୂର୍ତ୍ତି** - *ସଂ:* (ବି.) ପ୍ରେତମୂର୍ତ୍ତି, ଅଶରୀର

**ଛାୟାମୃଗ** - *ସଂ:* (ବି.) : ଚନ୍ଦ୍ରରେ ଥିବା କଳଙ୍କ

**ଛାୟାଯନ୍ତ୍ର** - *ସଂ:* (ବି.) : ସୂର୍ଯ୍ୟଘଡ଼ି

**ଛାର** - *ଅନେ:* (ବିଂ.ବି.) : ତୁଚ୍ଛ, ନିକୁଛିଆ, ନ୍ୟୂନ, ଅଧମ, ଅଯୋଗ୍ୟ, ସାମାନ୍ୟ, କ୍ଷୀର ପାଉଁଶ

**ଛାରକୁମ୍ଡା** - *କଳା:* (ବି.) : ପାଣି କଖାରୁ, କୁଷ୍ମାଣ୍ଡ

**ଛାରଖାର** - *ଦେ:ନ:* (ବି.) : ନାରଖାର, ଧ୍ୱଂସ, ନଷ୍ଟହେବା, ବିଧ୍ୱସ୍ତ

**ଛାରପୋକ** - *ଦେ:ନ:* (ବି.) ଓଡ଼ଶ(ରକ୍ତପାୟୀ କୀଟ), ରକ୍ତ ଶୋଷୁଥିବା କୀଟ ବିଶେଷ, ଗନ୍ଧକୀଟ

**ଛାର୍‌ବୋଡ଼ା** - *କୋ:* (ବି.) : ଛତୁ ବିଶେଷ

**ଛାର୍‌ରି** - *ସ:ବଉ:* (ବିଂ.ବି.) : ଛାଡ଼ ପତ୍ର ପାଇଥିବା ସ୍ତ୍ରୀ, ଛାଡ଼ପତ୍ର, ଛଡ଼ପତ୍ର ପାଇଥିବା ସ୍ତ୍ରୀ

**ଛାଲ୍‌ଛଡ଼ା** - *ଓ:* (କ୍ରି.ବିଂ.) : ଚୋପା ଛଡ଼ା, ଚମଡ଼ା ଛଡ଼ା, ଚମଡ଼ା ଛାଡ଼ିଯାଇଥିବା ଗଛ ବା କାଠ

**ଛାଲ କରାଣ୍ଡି** - *ଯା:* (ବି.) : ଏକ ଜାତୀୟ କରାଣ୍ଡି ମାଛ

**ଛାଲ ଛଡ଼ାଇବା** - *ଗ୍ରା:* (କ୍ରି.) : ହଇରାଣ କରିବା

**ଛାଲି** - *ଅନେ:* (ବି.) : ଗଛର ବକଳ, ଗଛର ଛାଲି, ଫଳାଦିର ଚୋପା, ଚମଡ଼ା, ଗଛର ଖୋଳପା

**ଛାହାଁ** - *କଳା:* (କ୍ରି.) : ଛାଉଣି କରିବା ବା ଛପର କରିବାକୁ କହିବା

**ଛାଁ** - *ଗଦ୍ୟ:* (ବି.) : ସୁରା ଜାତୀୟ ଏକ ପାନୀୟ

**ଛାଁବ୍** - *ନୂ:* (ବି.) : ଛାଞ୍ଚ

**ଛାଁଟ** - *ଖୋ:* (ବିଂ.) : ସଲଖ ସୁନ୍ଦର ଲୋକ

**ଛାଁ ଟି** - *ନୂ:* (ବି.) : ଭିଡ଼ିବା ପାଇଁ ବ୍ୟବହୃତ ଦଉଡ଼ି ବା ଲମ୍ବା ରଜ୍ଜୁ

**ଛାଂଚ** - *ଅ:* (ବି.) : ଗଢ଼ଣ

**ଛିଆଲି** - *ଜଅ:* (ବି.) : ପ୍ରସୂତି ଜନିତ ଛୁଆଁ

**ଛିଆଁ** - *କନ୍ଧ:* (ବିଂ.) : ଛୁଆଁ, ମାରା

**ଛିଆଁଚି, ଛେଡା** - *ସୁବ:* (ବିଂ.) : ଅପରିଷ୍କାର ଜାଗାକୁ ଗଲେ ଅପବିତ୍ର ହେବା

**ଛିଆଁଧରା** - *ସୁବ:* (କ୍ରି.) : ସ୍ପର୍ଶ କରିବା ସୁଯୋଗ

**ଛିକ୍‌ବା** - *ନୂ:* (କ୍ରି.) : ଛିଙ୍କିବା

**ଛିକ୍‌ରାଛାର** - *ସୁବ:* (ବିଂ.) : ଅତି ତୁଚ୍ଛ କଥା, ବିଷୟ, ଅତିଛୋଟ କଥା, ଛୋଟ କଳହ

**ଛିଦ୍ଧର** - *ରା:* (ବି.) : ନ୍ୟୁନଦେଖିବା

**ଛିଗଲା ଛଗିଲି** - *କେନ୍ଦୁ:* (ବି.) : ଚିଡ଼ାଚିଡ଼ି, ଛିଗୁଲାମି

**ଛିଙ୍କ** - *ଅନେ:* (ବି.) : ନାକଦ୍ୱାରା ହଠାତ୍ ପବନ ନିର୍ଗତ ହେବା, ଛିଙ୍କାର ଧ୍ୱନି, ନାକରୁ ବାହାରୁ ଥିବା ଶବ୍ଦ, ଥଣ୍ଡାରୁ ଛିଙ୍କ ହୁଏ

**ଛିଙ୍ଗଲାବାର** - *ସୁବ:* (କ୍ରି.) : ଛିଦ୍ରରେ କୌଣସି ବସ୍ତୁ ପ୍ରବେଶ କରାଇବା, ଗଳାଇଦେବା

**ଛିଙ୍ଗିଲବା** - *ଦେ:ନବ:* (କ୍ରି.) : ଚିଦ୍ର ମଧ୍ୟରେ ଗିଳିବା, ଗଳିଯିବା

**ଛିଚ୍‌ରିବା** - *କଳା:ବର:* (କ୍ରି.) : ଛିଞ୍ଚାଡ଼ିବା, ଛିଂଚିଡ଼ିବା, ଛିଟିକି ପଡ଼ିବା

**ଛିଚା** - *ବ:ଛେ:* (ବି.କ୍ରି.) : ବର୍ଷା ପାଣିର ଛାଟ, ଗାଧେଇବା

**ଛିଛରିବାର** - *ସୁବ:* (କ୍ରି.) : ଏଣେତେଣେ ବୁଣି ହେଇଯିବା, ଛିଞ୍ଚିଡ଼ିବା

**ଛି ଛା କରିବା** - *ସୁ:ଗ:* (କ୍ରି.) : ନିନ୍ଦା କରିବା, ଛି ଛାକର

**ଛିଛିକୁଟା** - *ଗଜ:ଗ:* (କ୍ରି.) : ଘୃଣାକରି ଗାଳି କରିବା

**ଛିଛିକୁନ୍ଦା** - *ଗଜ:ଗ:* (କ୍ରି.) : ପରର ଚିନ୍ତା ଖୋଜିବା

**ଛିଞ୍ଚଡ଼ା** - *ବୌ:ନ:* (ବି.) : ପରିବା, ମାଛର ଏକତ୍ର ମିଶା ତରକାରି,

**ଛିଞ୍ଚା** - *ଦେ:ଭ:* (ବି.) : ପାଣି ଛାଟିବା, ମାରିବା, ଧାନ ଥୋଡ଼ର ଅଂଶ

**ଛିଞ୍ଚା ଛିଞ୍ଚି** - *ଦେ:ନ:* (ବି.) : ପାଣି ଛିଞ୍ଚା କରିବା, ସ୍ୱଚ୍ଛଭାବେ ପାଣି ପକାଇବା

**ଛିଞ୍ଚାଡ଼ି** - *ନ:* (କ୍ରି.) : ମୁଖ ବିକୃତ ଭଙ୍ଗୀ କରି କଥା କହିବା

**ଛିଞ୍ଚାଡ଼ି ମିଞ୍ଚାଡ଼ି ହେବା** - *କୋ:* (କ୍ରି.) : ରାଗିକରି ତୀବ୍ର କଥା କହିବା

**ଛିଞ୍ଚିକନା** - *ଗ:* (ବି.) : ଘର ଲିପିବା କନା

**ଛିଞ୍ଚିକୁଟା** - *ଗ:* (ବି.) : ଗାଳିମନ୍ଦ, ଗାଳିଦେବା

**ଛିଞ୍ଚିବା** - *ନ:ଭା:କେ:* (କ୍ରି.) : ସ୍ୱଚ୍ଛ ପାଣି ଢାଳିବା, ପାଣି ବାହାର କରିବା, ଅଳ୍ପ ଅଳ୍ପ ପାଣଇ ପକାଇବା, ସିଞ୍ଚନ

**ଛିଞ୍ଚୁକୁନ୍ଦା** - *ଗ:* (ବି.କ୍ରି.) : ପରର ଦୋଷ ଦେଖାଇ ସୁଖୀ ହେବା

**ଛିଞ୍ଚ୍ କାନ୍ଦୁଣି** - *ଗ୍ର:* (ବି.) : ମିଛ କାନ୍ଦଣା

**ଛିଟ** - *ଅନେ:* (ବି.) : କନା, ଶାଢୀ, ଚିତ୍ କାଜରା, ଚିତ୍ରବିଚିତ୍ର, ଆସନ୍, ବସିବା ସ୍ଥାନ୍, ମୁଣ୍ଡଦୋଷ ଥିବା ବ୍ୟକ୍ତି, ଦୋଷ, ସିଟ୍

**ଛିଟ୍କା** - *ଦେ:ନ:* (ବି.) : ଛିଡ଼ିକା, ଛିଟା, ଛିଞ୍ଚା

**ଛିଟ୍କା** - *ନ:* (ବି.) : ଜଳଟୋପା ଛିଟିକା ପଡ଼ିବା

**ଛିଟ୍କିଣି** - *ଗ୍ର:* (ବି.) : କବାଟ, ଝରକା ବନ୍ଦ କରିବା ପାଇଁ କାଠର ଏକ ଜିନିଷ

**ଛିଟ୍କିବା** - *ଦେ:* (କ୍ରି.) : ଛିଟିକି ପଡ଼ିବା, ବିକ୍ଷିପ୍ତ ହେବା

**ଛିଟ୍ନି** - *ସ:* (ବି.) : ଛୋଟ ବାଉଁଶ କାଠିଦ୍ୱାରା ତିଆରି ଜିନିଷ

**ଛିଟ କନା** - *ଅନେ:* (ବି.ବିଂ.) : ଦେବାଦେବୀଙ୍କ ଉପରେ ଚଢାଇବା ଚିତ୍ରିତ କନା, ରଙ୍ଗୀନ କନା, ଚିତ୍ରବିଚିତ୍ର କନା, ଠାକୁରଙ୍କୁ ପୂଜାପାଇଁ ନାଲି ଢାଲିକନା, ପତଳା କନା, ପୂଜାପାଇଁ ବ୍ୟବହୃତ କପଡ଼ା

**ଛିଟା** - *ଦେ:ଭା:ନ:* (ବି.) : ଦାଗ, ଦୋଷ, ଭାଗ, ମଳିନ, ସାମାନ୍ୟ ଅଂଶ, ଚିତ୍ର, ଦାଗ

**ଛିଟାବେଢା** - *ଗ୍ର:* (ବି.) : ବାଉଁଶ ଓ ତା'ର କଣିରେ ବାଡ଼ କରି ସେଥିରେ ପତଳା କାଦୁଅ ନେସି ଦିଆଯାଏ

**ଛିଟା ମେଟାବା** - *ସ:* (କ୍ରି.) : ଦୋଷରୁ ମୁକ୍ତି ପାଇବା

**ଛିଟିଆ** - *ଅନେ:* (ବି.ବିଂ.) : ରେଜା, ଖୁଚୁରା, ବାକି ଅଳ୍ପ ପଇସା, ବଳକା ପଇସା, ଅବଶିଷ୍ଟାଂଶ

**ଛିଟିକି** - *ଗଞ:ଭା:ଗ:କୋ:* (ବି.) : ବାଉଁଶ ନିର୍ମିତ ବସ୍ତୁ ଯାହାଦ୍ୱାରା ଭାତ ଗଳାଯାଏ, ପେଜ ବାହାର କରିବାପାଇଁ ବ୍ୟବହୃତ ବାଉଁଶିଆ

**ଛିଟିକିଣି** - *ଅନେ:* (ବି.) : ସ୍ଥିର ରହିବାକୁ କବାଟରେ ଭିତର ପାର୍ଶ୍ୱରେ ଲାଗିଥିବା କାଠଖଣ୍ଡ (ଖଣ୍ଡପତ୍ର), ବାଟୁଳିଖଡ଼ା, ଫେଟି, ଗୁଖୁଣି, ଛନ୍ଦ, ଢେଙ୍କିଆ, ହୁକ

**ଛିଟିକିଣି ପିଞ୍ଚ** - *ନ:* (ବି.) : ବାଉଁଶ ପାତିରେ ତିଆରି ପିଞ୍ଚରେ ବସିଥିବା ଅଥବା ପିଠା, ମଣ୍ଡାପିଠା ଯେଉଁଠି ବାମ୍ଫରେ ସିଝେ।

**ଛଟିରି ପିଟିରି** - *ଦେ:* (ବି.) : ଆଳିମାଳି, ଛୋଟ, ବଡ଼, ଏଣୁତେଣୁ ଜିନିଷ ଭର୍ତ୍ତି ଟୋକେଇ

**ଛିଟୁକୁଣୀ** - *ଗ:* (ବି.) : ବାଉଁଶରେ ତିଆରି ମୂଷାମରା ନଳ

**ଛିଡ୍ଲା ପୁଡ୍ଲା** - *ସୁ:ବୌ:* (ବି.ବିଂ.) : ପରଚର୍ଚ୍ଚା, ରାଗ ଅହଙ୍କାର

**ଛିଡ୍ହା** - *ସୁବ:* (ବି.) : ଚିରା କପଡା, ଋତୁ ରକ୍ଷାକାରୀ କପଡା

**ଛିଡଲ୍** - *ବୌ:* (ବି.) : ଦେବାଳିଆ

**ଛିଡା** - *ରା:କଳା:* (ବି.) : ଠିଆ, ଲୁଗାପଟା, ନାରୀମାନଙ୍କର ନିମ୍ନ ଅନ୍ତଃବସ୍ତ୍ର ବା ଲେଂଗୁଟି

**ଛିଡା ପଟା** - *କଳା:* (ବି.) : କପଡା, ବସ୍ତ୍ର, ଲୁଗାପଟା

**ଛିଡ୍ ଛିଡ଼ା** - *ବୌ:* (ବିଂ.) : ଛିଣ୍ଡା ଛିଣ୍ଡା

**ଛିଡ୍ଡେ** - *ମା:* (ବିଂ.) : ଆବଶ୍ୟକତା ଠାରୁ ଅଧିକ

**ଛିଡ଼ଲା ପୁଡ଼ଲା** - *ସ:* (ବି.) : ଅନ୍ୟ ଲୋକଙ୍କ ଚର୍ଚ୍ଚା

**ଛିଡ଼ାଇବା** - *ଦେ:ବ:* (କ୍ରି.) : ତୁଟେଇବା, ପାଣି ଫଟେଇବା, ଛେନା ଛିଡ଼ାଇବା, ଭାଂଗିବା

**ଛିଡ଼ାଣ** - *ଗ:* (ବି.) : ଗଡ଼ାଣି

**ଛିଡ଼ାପୁଟା** - *କନ୍ଧ:* (ବି.) : ଲୁଗାପଟା

**ଛିଡ଼ାବା** - *ନୁ:* (କ୍ରି.) : ଛିଣ୍ଡାଇବା

**ଛିଡ଼ି ପଡ଼ିବା** - *ଦେ:* (କ୍ରି.) : ଉପରୁ ତଳକୁ ପଡ଼ିବା

**ଛିଡ଼ିପୁଦୁ** - *ଗଜ:* (କ୍ରି.) : ହୀନଦୃଷ୍ଟି(ଗାଳି)

**ଛିଡ଼ିବା** - *ନ:ଦେ:* (କ୍ରି.) : ଛିଣ୍ଡିଯିବା-ବିଚ୍ଛିନ୍ନ ହେବା, ସମ୍ପର୍କ ଭାଙ୍ଗିଯିବା, ତଳକୁ ଖସି ପଡ଼ିବା, ଦୁଧ ଛିଡ଼ିଯିବା, ତୁଟିବା, କମିବା

**ଛିଡ଼େଇ ପୁଡ଼େଇ** - *ସୁ:* (କ୍ରି.) : ଅସହିଷ୍ଣୁ ହେବା

**ଛିଡ଼ୋଛାଡ଼ୋ ଲାଗ୍‌ବା** - *ସ:* (କ୍ରି.) : ଦୁର୍ବଳ ଲାଗିବା

**ଛିଣ୍ଡଇରାମ୍ବୁଡ଼ି** - *ଗଜ:* (କ୍ରି.) ଈର୍ଷାରେ ଜଳିବା, ରକବକ ହେବା

**ଛିଣ୍ଡା** - *ନ:ରା:ଦେ:* (ବିଂ.) ଛିନ୍ନ, ଚିରିଯାଇଥିବା, ଫଟା.ଚିରା

**ଛିଣ୍ଡାଲି** - *ବୌ:* (ବିଂ.) : (ଗାଳି) ନଷ୍ଟ ଚରିତ୍ର ନାରୀ

**ଛିଣ୍ଡା ଲେଙ୍କଡ଼ା** - *କୋ:* (ବି.) : ଚିରା ଲୁଗା

**ଛିଣ୍ଡାଳ** - *କେ:* (ବିଂ.) : ନଷ୍ଟ ଚରିତ୍ର, କୁଳଟା, ବେଶ୍ୟା

**ଛିଣ୍ଡେଇ ଦେବା** - *ଖୋ:* (କ୍ରି) : ସଂପୂର୍ଣ୍ଣ କରିବା, ହିସାବ ଫଇସଲ କରିବା

**ଛିତ୍‌କିଆ** - *ବୌ:* (ବି.) : ପିଲାଛୁଆ ଜନ୍ମ ଜନିତ ଅଶୁଦ୍ଧି

**ଛିତ୍‌କିବା** - *କଳା:* (କ୍ରି.) ଛିଟିଂଡ଼ିବା, ଜୋର୍‌ରେ ପଡ଼ିଯିବା

**ଛିତକାଇବା** - *ନୁ:* (କ୍ରି.) : ବର୍ଷା ଛାଡ଼ିବା

**ଛିତା** - *ବ:* (ବି.) : ପବନ ମାଧ୍ୟମରେ ବର୍ଷାଜଳ ଛିଂଚାଡ଼ି ହେବା, ଛିଟ୍‌କା

**ଛିତୁକ୍** - *କଳା:* (ବି.) : ସୂତିକାଶୌଚ

**ଛିତ୍ରୋପ୍ଳା** - *ଦେ:* (ବି.) : ମହାନଦୀର ନାମ, ଚିତ୍ରୋପ୍ଳା

**ଛିଦର** - *ନ:* (ବି.) : କଣା, କ୍ଷୁଦ୍ରଛିଦ୍ର

**ଛିଦରନି** - *ସ:* (ବିଂ.) : ଟିକିଏ କଥାରେ କଳିକରିବା

**ଛିଦ୍ର** - *ଅନେ:* (ବି.ବିଂ.) : କପଟ, ଯିଏ ତୁଚ୍ଛା କଥାକୁ ଧରି ରାଗିଯାଏ

**ଛିନ୍** - *କଳା:* (କ୍ରି.) : ଗ୍ରହଣ କର, ଧର

**ଛିନ୍ କାନିଆ** - *ଜ:* (ବିଂ.) : ଅସ୍ତ ବ୍ୟସ୍ତ ହୋଇ

**ଛିନ୍ଟା** - *ସୁ:ବୌ:* (ବି.) : ପାଣି ଛିଟିକା

**ଛିନ୍ ଛତର** - *ଅନେ:* (ବି.ବିଂ.) : ଏଣେତେଣେ ପଳାଇବା, ପଡ଼ିବା, ଛିନ୍ନ ଛତ୍ର, ଇତସ୍ତତଃ, ସର୍ବନାଶ, ବିକ୍ଷିପ୍ତ

**ଛିନ୍ଛାନ୍** - *ନୂ:* (ଅ.) : ବହୁତ ଦୂର, ପଳାଇବା ଅର୍ଥରେ (ଦ୍ରୁତ ବେଗରେ)

**ଛିନ୍ଛିନା ଡେଇଁ** - *ବୌ:* (କ୍ରି.) ଡରି ପଳାଇବା

**ଛିନ୍ବା** - *ବଲ:* (ବି.) : ଉପରୁ ଆସୁଥିବା ଜିନିଷକୁ ଧରିବା

**ଛିନ୍ଭିନ୍** - *ଅନେ:* (ବିଂ.ବି.) : ଛିନ୍ନଭିନ୍ନ, ଏଣେତେଣେ, ଇତଃସ୍ତତଃ, ଖଣ୍ଡଖଣ୍ଡ ହୋଇ ପଡ଼ିବା, ଖିନ୍ଭିନ୍

**ଛିନା** - *ଅନେ:* (ବିଂ.ବି.) : ନିର୍ଜନ, ନିଛାଟିଆ, ଶୂନ୍ୟ, ଜନଶୂନ୍ୟ, ଖାଲି ଲାଗିବା, ଲୋକଶୂନ୍ୟ, ନିରୋଳା

**ଛିନା ଛକା** - *ସ:ବୌ:* (ବିଂ.) : ନିର୍ଜନତା, ନିଛାଟିଆ

**ଛିନା ବେଲା** - *ସ:* (ବି.) : ଖାଲି ସମୟ

**ଛିନିବା** - *କଳା:* (କ୍ରି.) : ଧରିବା, ଗ୍ରହଣ କରିବା

**ଛିନ୍ଦି ଆଣିବା** - *ବୌ:* (କ୍ରି.) : ଛାଣି ଆଣିବା

**ଛିନ୍ଦିଇବା** - *ବୌ:* (କ୍ରି.) : ଛନ୍ଦିହେବା, ଝୁଣ୍ଟି ପଡ଼ିବା

**ଛିନ୍ନମସ୍ତା** - *ଅନେ:* (ବି.) : ମୂର୍ତ୍ତି, ମୁଣ୍ଡହୀନା, ଏକ ଦେବୀଙ୍କ ନାମ

**ଛିପ** - *ଗ:* (ବି.) : ଛେପ

**ଛିପ୍ଲି** - *ବୌ:ସ:ସୁବ:ନବ:* (ବି.ବିଂ.) : ଚପଲ, ମୋଟର ଟାୟାର ଟିଉବ ରବର ଦ୍ୱାରା ତିଆରି ଚପଲ୍, ପାଣ୍ଡେଇ

**ଛିମଛତ୍ର** - *ଦେ:* (ବି.) ଛିନ୍ନ-ବିଚ୍ଛିନ୍ନ, ଅସ୍ତବ୍ୟସ୍ତ

**ଛିର** - *ବୌ:କନ୍ଧ:* (ବି.) : ଚିର

**ଛିରା** - *କଳା:* (ବି.) ମାଛ ବିସର, ବିଲହୁଡାରେ ପାର ଦେଇ ପ୍ରବାହିତ ପାଣିରୁ ମାଛ ଧରିବା ପାଇଁ ବ୍ୟବହୃତ ବାଉଁଶ ପାତିଆରେ ନିର୍ମିତ ଯନ୍ତ୍ର ବିଶେଷ

**ଛିରିକା** - *ଗ:* (ବି.) : ସାଦୃଶ୍ୟ, ଲକ୍ଷଣ, ସମାନତା

**ଛିର୍** - *କଳା:ନୂ:ସ:* (ବି.) : ଶିର, ଧମନୀ, ନାଡୀ, ରକ୍ତବାହିନୀ ନାଳୀ, ପ୍ରଶିରା, ପହ୍ନା, ଚିର

**ଛିର୍ଗୁଛା** - *ସ:* (ବି.) : କଥା ବୁଝି ନହେବା, ଅସ୍ପଷ୍ଟ କଥା

**ଛିଲ୍କା** - *ଦେ:* (ବି.) : ଚହଲ, ପାଣିଛିଟା

**ଛିଲ୍ପା** - *କଳା:ନବ:କୋ:* (ବି.) : କାଠ ଚାଂଛିବା ବେଳ ସେଥିରୁ ବାହାରୁଥିବା କ୍ଷୁଦ୍ର କ୍ଷୁଦ୍ର ଅଂଶ, ଛେଲା, ପତଳା ଚୋପା(କାଠର)

**ଛିଲିକା ଛିଲିକା** - *ଗଦ୍ୟ:* (ବିଂ.) : ଆକର୍ଷଣୀୟ

**ଛିଲୋଲାଇ** - *ଚ:* (ବି.) : ଝିଅମାନଙ୍କର ଏକ ପ୍ରକାର ଖେଳ, ପୁଚିଖେଳ

**ଛିଲ୍ଲା** - *କୋ:* (ବି.) : ଛାଲି, କାଠର ଉପର ଅଂଶ

**ଛିଁଚା** - *ସୁବ:କଳା:* (ବି.କ୍ରି.) : ପାଣି ଛିଟିକା ପ୍ରଭାବ, ସ୍ପର୍ଶ କରିବା, ଛୁଇଁବା

**ଛିଂଗ୍ଲିବା** - *କଳା:* (କ୍ରି.) : ଗଳିଯିବା

**ଛୁ** - *ନବ:ନ:ଦେ:* (କ୍ରି.ବି.) : ଚାଲିଯିବା, ଆକସ୍ମିକ ପଳାଇବା, ଚମ୍ପଟ ମାରିବା

**ଛୁଆଞ୍ଚି** - *ଗ:କୋ:* (ବି.) ଋତୁମତୀ, ଅଶୌଚ, ମାରା, ସ୍ତ୍ରୀମାନଙ୍କ ମାସିକ ଋତୁସ୍ରାବ ଅବସ୍ଥା

**ଛୁଆଡି** - *ଅନେ:* (କ୍ରି.ବିଂ.) ଅଶୌଚ, ଅପବିତ୍ର, ପ୍ରସୂତି, ମାରା, ଋତୁମତୀ, ଛୁଆନ୍ତି

**ଛୁଆ ପୁତା** - *ସ:* (ବି.) : ପୁଅ ଝିଅ

**ଛୁଆଲି** - *ଚର:ସୁବ:* (ବି.ବିଂ.) : ପ୍ରସୂତୀ ସ୍ତ୍ରୀ, ପ୍ରସବ, ଛୁଆଁତୀ

**ଛୁଆହେବା** - *ନ:* (କ୍ରି.) : ଛୁଆଜନ୍ମ ଦେବା, ପ୍ରସବ କରିବା

**ଛୁଆଁଇବା** - *ସଂ:* (କ୍ରି.) : ଛପର କରିବା

**ଛୁଆଁଇବା** - *ନ:* (କ୍ରି.) : ସ୍ପର୍ଶ କରିବା

**ଛୁଆଁଚା ଛଅଁଚ** - *ଦେ:* (ବି.) : ଝାଡ଼ା ଯିବା ପରେ ହାତ-ପାଦ ମୁହଁ ଧୋଇବା, ପାଣି ଘିନିବା

**ଛୁଆଁଚି** - *ସ:* (ବିଂ.) : ଅଶୌଚ

**ଛୁଆଁ, ଛୁଆଁ ହେବା** - *ନ:* (ବି.) : ଅସ୍ପୃଶ୍ୟ, ନାରୀର ମାସିକ ଋତୁଚକ୍ର ଯୋଗୁଁ ଅସ୍ପୃଶ୍ୟ, ମାରା ହେବା

**ଛୁଆଁଛୁତ** - *ଦେ:* (ବି.) : ଛୁଆଁ-ଛୁଇଁ

**ଛୁଆଁଛୁତି** - *ନ:* (ବି.) : ଅଶୌଚ ଶୌଚ, ଭଲମନ୍ଦ

**ଛୁଇ** - *ସୁବ:ସୁ:ବା:ଦେ:* (ବି.) : ଆଖୁ ଛେଦା, ସଫେଦ ମାଟି, ଚୂନ, ଝିଅ, ଚୂନପରି ଧଳାମାଟି

**ଛୁଇମାଏବ୍** - *ସୁବ:* (ବି.) ଘର ଧଉଳାଯାଇଥିବା ଚୂନ ପରି ଧଳା ମାଟି ଅପଡରା ମଇଳା

**ଛୁଇଁ** - *ଦେ:ନ:* (ବି.) : ସଜନା ଫଳ, ପରିବା, ସଜନା, ଶିମ୍ବ, ଚଣା, ବାଦାମ ପ୍ରଭୃତିର ମଞ୍ଜି ରହିଥିବା କୋଷ।

**ଛୁକଲା** - *ସୁବ:* (ବି.) : ଚୋପା, ଛାଲ

**ଛୁକୁରିଆ** - *ନବ:* (ବିଂ.) : ଲମ୍ପଟ, ବେହିଆ

**ଛୁଗୁଡା** - *ଅନେ:* (ବି.) : ପିଲାଙ୍କ ଖେଳ ଆରମ୍ଭ କରିବା ବିଧି

**ଛୁଙ୍କ** - *ଅନେ:* (ବି.) : ତରକାରୀରେ ମସଲା ଭଜା, ବଘରା, ପରଝିବା, ବଘାରିବା

**ଛୁଚା** - *କଳା:କନ୍ଧ:ମ:* (ବିଂ.ବି.) : ତୁଚ୍ଛା, ଖାଲି, ଚୁଚୁନ୍ଦ୍ରା

**ଛୁଚାଟା** - *ସ:* (ବିଂ.) : ମିଛକଥା

**ଛୁଚାଟାକେ** - *କଳା:* (ବିଂ.କ୍ରି.) : ତୁଚ୍ଛାଟାରେ, ବିନାକାରଣରେ, ଖାଲିଟାରେ

**ଛୁଚାଟିଆ ଗନ୍ଧ** - *ଚୌ:* (ବି.) : ଚୁଚୁନ୍ଦ୍ରାର ଗନ୍ଧ

**ଛୁଚୁମୁହାଁ** - *ବର:* (ବିଂ.) : ଗାଳି ବିଶେଷ

**ଛୁଚ୍ଛା** - *ଦେ:* (ବିଂ.) : ତୁଚ୍ଛା, ଖାଲି

**ଛୁଚ୍ଛା କରିବା** - *ଦେ:* (କ୍ରି.) : ଲୁଚି ପଳେଇବା, ଖାଲି କରିବା

**ଛୁ ଛାଟା** - *ଝା:* (ବି) : ମିଛଟା, ସତ୍ୟନୁହେଁ

**ଛୁଞ୍ଚକଂସା କାମ** - *ଭ:* (ବି.) : ବାସି ପାଇଟି

**ଛୁଞ୍ଚପତର** - *କ:* (ବି.) : ପତରମିଠା

**ଛୁଞ୍ଚା** - *ଦେ:ଭ:* (ବି.) : ସୂଜି, ଶୌଚହେବା, ପାଣି ଘିନିବା, ଚୁଚୁନ୍ଦ୍ରା

**ଛୁଞ୍ଚି** - *ବା:ନ:* (ବି.) : ଗୋଟି ବାଉଁଶ, ଯାହା ପାନ ବରଜରେ ବ୍ୟବହୃତ ହୁଏ, ଇଂଜେକ୍ସନ୍, ସୂଚୀ

**ଛୁଞ୍ଚିଆ** - *ଦେ:ଭ:* (ବିଂ.ବି.) : ମୁନିଆଁ, ଘାସ ବିଶେଷ

**ଛୁଞ୍ଚିଦେବା** - *ଗ:* (କ୍ରି.) : ଇଂଜେକ୍ସନ୍

**ଛୁଞ୍ଚିପତର** - *ଭ:* (ବି.) : ପୂରଦିଆ ପିଠା ବିଶେଷ

**ଛୁଞ୍ଚିପାଣି** - *ପଦ୍ୟ:* (ବି.) : ଲିପିବାରେ ବ୍ୟବହୃତ ଗୋବର ପାଣି

**ଛୁଞ୍ଚିମାରି ପରୀକ୍ଷା** - *ପୁ:* (ବି.) : ତନ୍ନ ତନ୍ନ ପରୀକ୍ଷା

**ଛୁଞ୍ଚିମୁହାଁ** - *ଗଦ୍ୟ:* (ବିଂ.) : (ଗାଳି ଅର୍ଥରେ) ଚୁପ୍‌ସଇତାନ

**ଛୁଞ୍ଚିମୁହଁ** - *ଗ:* (ବି.) : ଛୁଞ୍ଚିଭଳି ଲମ୍ବାଥଣ୍ଟାଯୁକ୍ତ କ୍ଷୁଦ୍ର

**ଛୁଟ୍‌କି ଫୁଟା** - *ବୌ:* (ବି.) : ଦି'ଆଙ୍ଗୁଠିରେ ଶବ୍ଦ ସୃଷ୍ଟି କରିବା

**ଛୁଟ୍‌କୁରିଆ** - *ଚୌ:* (ବିଂ.) : ଛୋଟକାଟିଆ

**ଛୁଟ୍ ଜୀବନିଆ** - *ବୌ:* (ବି.) : କ୍ଷୁଦ୍ରମନା

**ଛୁଟ୍‌ବା** - *ଦେ:* (କ୍ରି.) : ଧାଇଁବା

**ଛୁଟଉଚି** - *ଚୌ:* (କ୍ରି.) : ଛୋଟେଉ ଚାଲୁଚି

**ଛୁଟା** - *ଅନେ:* (ବିଂ.) : ଛୋଟା, ଗୋଡ଼ ଭାଙ୍ଗିଯାଇଥିବା ବ୍ୟକ୍ତି, ଖଞ୍ଜ, ଲେଙ୍ଗଡ଼ା

**ଛୁଟାକାର** - *ସୁବ:* (କ୍ରି.) : ଛୋଟେଇବା, ହଳ ଦଉଡିକୁ ଛୋଟ କରି ବାନ୍ଧିବା

**ଛୁଟାଛୁଟି** - *ଦେ:* (ବି.) : ଲଣ୍ଡଭଣ୍ଡ

**ଛୁଟି** - *ଅନେ:* (ବି.) : ଫୁରୁସତ୍, ଅବକାଶ

**ଛୁଟିଆ** - *କୋ:ସୁ:* (ବିଂ.) : ଅତିଛୋଟ, ଅତିକ୍ଷୁଦ୍ର, ସାନ

**ଛୁଟିବା** - *ବୌ:ସୁ:ନ:* (କ୍ରି.) : ବାକି ପଇସା ଦେବା, ପରିଶୋଧ କରିବା, ଯିବା, ଧାର ଲାଗିବା, ଧାଇଁବା

**ଛୁଟିବାର** - *ଅ:* (ବି.) : ରବିବାର

**ଛୁଟୀ** - *ଦେ:* (ବିଂ.) : ସ୍ତ୍ରୀ-ଖଞ୍ଜ ଲେଙ୍ଗଡ଼ା

**ଛୁଟେ** - *ବର:* (ବି.) : ଛୋଟ

**ଛୁଡ଼ବା** - *ଚୌ:* (ବି.) : କିଛି କରି ନ ପାରିବା

**ଛୁଡ଼ା ମୁଡ଼ା, ଛୁଡ଼୍‌ମୁଡ଼୍** - *ଚୌ:* (ଅ.) : ଖୁଟୁରୁ ଖାଟୁରୁ, ଯାହା କିଛି ଏପାଖ ସେପାଖ କରିବା କାମ

**ଛୁଡ଼ିଦେବା** - *ଗ:* (କ୍ରି.) : ଭାଲୁ କାମୁଡ଼ିବା, ଆକ୍ରମଣ କରିବା

**ଛୁଣୁକା** - *ପଦ୍ୟ:* (ବିଂ.) : କ୍ଷଣିକ

**ଛୁତ** - *କେ:କେନ୍ଦୁ:ଦେ:* (ବି.) : ପରିସ୍ରା, ମୃତ

**ଛୁତ୍‌କିଆ** - *ସ:* (ବି.) ଛୁତୁକିଆ, ପିଲା ଜନ୍ମକାଳୀନ ଅଶୌଚ ସମୟ

**ଛୁତପୋଡ଼ା** - *ନ:* (ବି.) : ପରିସ୍ରା ପୋଡ଼ା

**ଛୁତି** - *ଗ:* (ବି.) : ମୃତ୍ୟୁଜନିତ ଅସ୍ପୃଶ୍ୟ

**ଛୁତି କଣ୍ଟା** - *କେ:* (ବି.) : ମାଛ ଧରିବା କଣ୍ଟା, ବନ୍‌ସି କଣ୍ଟା

**ଛୁତିକା ଘର** - *ଅ:* (ବି.) : ଯେଉଁ ଘରେ ଛୁଆ ଜନ୍ମ ହୋଇଥାଏ

**ଛୁତିକିଆ** - *ଅନେ:* (ବି.ବିଂ.) ପ୍ରସବ ଅଶୌଚ, ପିଲା ଜନ୍ମର ଛଅଦିନ ପର୍ଯ୍ୟନ୍ତ, ଛୁତୁକିଆ, ସୂତିକା ଅଶୌଚ, ଏକୁଡି ଛୁଆଁ

**ଛୁତିରିକା** - *ଗ:କୋ:* (ବି.) : ଜନ୍ମାଶୌଚ

**ଛୁପ୍‌ଛୁପ୍‌କି** - *କଳା:* (ବି.) : ଗୋଡି ଖେଳର ପ୍ରକାର ବିଶେଷ, ଏଥିରେ ଖେଳୁଥିବା ଗୋଡିମାନଙ୍କୁ ଅନ୍ୟ ଗୋଡି ସାହାଯ୍ୟରେ ଦୁଇଥର ଲେଖାଏଁ ସ୍ପର୍ଶ କରାଯାଇଥାଏ ।

**ଛୁପ୍‌ବାର** - *ସୁବ:* (କ୍ରି.) : ପେଟରେ ମୁଣ୍ଡରେ ପାପୁଲିରେ ପାଣିନେଇ ବାଡେଇବା

**ଛୁମ୍** - *ନୂ:କଳା:* (ଅ.ବି.) : ପାଖ, ନିକଟ, ସମୀପ

**ଛୁମ୍‌କେ** - *କଳା:* (ଅ.) : ନିକଟକୁ

**ଛୁ ମାରିବା** - *କ:* (କ୍ରି.) : ଚାଲିଯିବା

**ଛୁମେକ୍** - *କଳା:ବ:* (ବି.ଅ.) ନିକଟ, ନିକଟରେ, ପାଖରେ, ଅଳ୍ପଦୂର, ପାଖେ ପାଖେ

**ଛୁମେବାଟ** - *ନୂ:* (ବି.) : ଅଳ୍ପଦୂର

**ଛୁରା** - *ଅନେ:* (ବି.) : କଟ୍‌ରା ଛୁରୀ, ଅସ୍ତ୍ର, ନଡ଼ିଆ ଗଛର ଗଜା ଫୁଲକେଣ୍ଡା

**ଛୁରିଆ** - *ଦେ:* (ବି.) : ଏକ ପ୍ରକାର ଘାସ

**ଛୁର୍** - *ଦେ:ଚୌ:* (ବି.) : ଛେକ୍ ଦାଣ୍ଡି, ଖେଳିବା, ଖେଳବିଶେଷ

**ଛୁର୍ ଛୁର୍‌କି ଭୁର୍‌କି** - *ଚୌ:* (ବି.) ଝିଅମାନଙ୍କର ଏକ ଖେଳ

**ଛୁଲ୍‌କି ଯିବା** - *ସ:* (କ୍ରି.) : ତଳେ ପଡ଼ିଯିବା, ତରଳ ପଦାର୍ଥ ଉଛୁଳି ତଳେ ପଡିବା

**ଛୁଲିବା** - *ଦେ:* (କ୍ରି.) : ଛାଲ ଛଡ଼େଇବା

**ଛୁଲ୍ ଫୁଟିଯିବା** - *ଚ:* (କ୍ରି.) : ପ୍ରାବଲ୍ୟ ଅର୍ଥରେ

**ଛୁଲୁଣୀ** - *ଗଦ୍ୟ:* (ବି.) : ଧାଇ, ଶୁଲୁଣୀ

**ଛୁଁଚାବା** - *ସ:* (କ୍ରି.) : ଶୌଚ କରିବା

**ଛୁଁଟା କେଁପା** - *ସ:* (ବିଂ.) ଭିନ୍ନକ୍ଷମ, ଛୋଟାକେମ୍ପା

**ଛେଇ ଦେବି** - *ଗଞ୍ଜ:* (କ୍ରି.) : ହାଣିଦେବି

**ଛେଉଆ** - *ଯା:* (ବି.) : ଏକପ୍ରକାର ଗୋରୁଙ୍କ ରୋଗ

**ଛେଉକିଆ** - *ଗ:* (ବିଂ.) : ନିଶବ୍ଦ ସମୟରେ ଭୂତ ଭୟର ଆଶଙ୍କା

**ଛେଉଣ୍ଡ** - *ଅନେ:* (ବିଂ.ବି.) : ପିତୃମାତୃହୀନ, ପିତାମାତା ହରାଇଥିବା ଶିଶୁ, ଅନାଥ ଶିଶୁ, ପିତୃ, ମାତୃଶୂନ୍ୟ, ଯାହାର ମାଆ ବାପା ନାହିଁ, ପିତୃମାତୃ ହୀନ ବାଳକ

**ଛେଉଣ୍ଡିଆ** - *ନ:ଗା:* (ବିଂ.ବି.) : ଛେଉଣ୍ଡ, ଅନାଥ, ପିତା ବା ମାତାଙ୍କ ମୃତ୍ୟୁ ପରେ ଅନାଥ, ଠିଆହେବା

**ଛେଉରା** - *ନ:* (ବିଂ.) : ଡରୁଆ, ଡରକୁଳା, ଭୟଭୀତ, ଛେରୁଆ

**ଛେକ** - *ଅନେ:* (ବି.ଅ.) ଛକ ସ୍ଥାନ, ଏକାଧିକ ରାସ୍ତାର ସଙ୍ଗମସ୍ଥଳୀ, ଥର, ଏକ ପଂକ୍ତି, ଦଳ, ଛକ (ବି.), ଛେକିବା (କ୍ରି.), ଏକାଥରକେ

**ଛେକ୍‌ବା** - *ଦେ:ବ:* (କ୍ରି.) : ଓଗାଳିବା, ବାଟ ଓଗାଳିବା

**ଛେକଛେକ ହୋଇ** - *ନ:* (ବିଂ.) : ସ୍ତରସ୍ତର

**ଛେକା** - *ବୌ:ସୁ:ଗ:* (ବି.) : ବାଡ଼, ବର୍ଗାକାର କନାଖଣ୍ଡ

**ଛେକିଦେବା** - *ଅ:* (କ୍ରି.) : ଅଟକାଇଦେବା

**ଛେକିବା** - *ଅନେ:* (କ୍ରି.) ଜଗିବା, ବାଧାଦବାକୁ ଅପେକ୍ଷା କରିବା, ଅବରୋଧ, ବାଧାଦେବା, ଛକିବା, ଲୁଚିକରି ଜଗିବା, ରୋକିବା, ଉଗାଳିବା

**ଛେକି ହେବା** - *ବୌ:* (କ୍ରି.) : ପ୍ରତିବନ୍ଧକ ସାଜିବା

**ଛେକୁ** - *କଳା:* (ବିଂ.) : ଅବରୋଧ କରିବା ବ୍ୟକ୍ତି

**ଛେକେ** - *କ:ଭ:* (ଅ.) : ଥରଟିଏ

**ଛେଙ୍ଗମାଛ୍** - *ମ:* (ବି.) : ଚେଙ୍ଗମାଛ

**ଛେଙ୍ଗା** - *ସୁ:* (ବିଂ.) : କଣା

**ଛେଚ୍‌ବା, ଛେଚିବା** - *ବୌ:* (କ୍ରି.) : ପିଟିବା, ମାଡ଼ମାରିବା

**ଛେଚ୍‌ରା** - *ଦେ:* (ବି.) : ଫାଳ ଫାଳ, ଫାଟିଯିବା

**ଛେଚଡ଼** - *ଗ:* (ବିଂ.) : ଲମ୍ପଟ

**ଛେଚଡ଼ା, ଛେଞ୍ଚଡ଼ା** - *ଯା:ଭ:କେ:* (ବି.) : ମାଛ ପଡ଼ିଥିବା ଘାଣ୍ଟତରକାରି

**ଛେଚରା** - *ଭ:* (ବି.ବିଂ.) : ଚାପାଖଣ୍ଡରେ ପରିଣତ, ଛେଚରା, ଛେଚି ହୋଇଥିବା

**ଛେଚା** - *କ:ଦେ:ଗା:* (ବି.) : ଗୁଣ୍ଡ କରିବା, ପୋଡ଼ା ପରିବାକୁ ଗୁଣ୍ଡ କରି ପ୍ରସ୍ତୁତ ଭର୍ତ୍ତା ବା ଚଟଣି, ମାଡ଼, କୁଟିବା

**ଛେଛରି** - *ସୁ:* (ବି.) : ନ୍ୟୂନ ବ୍ୟକ୍ତି

**ଛେଜ ଭେଜ** - *ଦେ:* (ବି.) : କପଟ, ଛଳ

**ଛେଙ୍ଗରା** - *ଦେ:* (ବିଂ.) : କଳିଯେ ଲଗାଏ, ବଦମାସିଆ, ଲୋଭୀ

**ଛେଞ୍ଚଡ଼ା** - *ଅନେ:* (ବିଂ.ବି.) : ବଦମାସ୍, ଦୁଷ୍ଟ, ଆମିଷ ଘାଣ୍ଟ ତରକାରୀ, ଘାଣ୍ଟରେ ମାଛ ମୁଣ୍ଡ ବା ଚିଙ୍ଗୁଡ଼ି ମିଶା ତରକାରୀ

**ଛେଟ୍‌ନା** - *କଳା:* (ବି.) : ଗାଣ୍ଠୁଆ, ଝୁଡି, ମାଟି ଓ ମଇଳା ପ୍ରଭୃତି ଫିଙ୍ଗିବା ପାଇଁ ବାଉଁଶ ପାତିଆରେ ନିର୍ମିତ ଗୋଲାକାର ପାତ୍ର ବିଶେଷ

**ଛେଣା** - *ଗ:ଦେ:* (ବି.) : ବାରସିଦ୍ୱାରା କାଠ ଚାଞ୍ଛିବା, ଖଣତି

**ଛେଣିବା** - *ଦେ:* (କ୍ରି.) : ଧୂର୍ତ୍ମୁଷ କରିବା, ଓଜନିଆ ଜିନିଷରେ ବାଡ଼େଇବା, ଛାପଦେବା

**ଛେଣୀ** - *ଗ:* (ବି.) : ଲୌହ, ପଥର କାଟିବା ଅସ୍ତ୍ର, ସେଣୀ

**ଛେଣ୍ଡିବା** - *ଚୌ:* (କ୍ରି.) : ଗୋଡ଼ ଖସିବା

**ଛେତ୍** - *କଳା:ଦେ:* (ବି.) : ଘୃଣା ବାଚକ ଶବ୍ଦ, ପରପ୍ରତ୍ୟୟ ବିଶେଷ, ଛି

**ଛେତ୍‌କା** - *ଅନେ:* (ବିଂ.ବି.) : ଚିତ୍ ହେବା, ଉପରକୁ ମୁହଁ କରି ଶୋଇବା, ହାରିଯିବା, ପରାସ୍ତ ହେବା, ଅପମାନିତ ହେବା, ଓଲଟା

**ଛେତ୍‌ରା** - *ଚୌ:ମା:* (ବିଂ.) : ଚେପଟା, କଦର୍ଯ୍ୟ, କଦାକାର, ବାଧିଲାପରି, ସଂପୂର୍ଣ୍ଣନଷ୍ଟ

**ଛେତ୍‌ଲା** - *ଦେ:* (ବି.) ଚିତ୍, ଓସାର, ଫେରକା

**ଛେତକୁଣା** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**ଛେତପୁରୁଣି ଶାଗ** - *ଟ:* (ବି.) : ଶ୍ୱେତ ପୁରୁଣି ଶାଗ

**ଛେତା** - *ନ:* (ବିଂ.) : ସମ୍ପୂର୍ଣ୍ଣ ଧଳା

**ଛେଦ** - *ଅନେ:* (ବି.କ୍ରି.) : ବଳି, ବୋଦା ବଳି ଦେବା, ଖଣ୍ଡ, ଭାଗ, ଦେବୀଙ୍କ ପାଖରେ ବଳି ପଡ଼ିଥିବା ମୁଣ୍ଡ ବିହୀନ ପଶୁ, ଛେଦନକରିବା, କଣା, ଶେଷ, ଛିଦ୍ର, ହାଣ

**ଛେଦ୍‌କେ** - *କଳା:* (ବି.) : ଶେଷକୁ

**ଛେଦ୍ ପଡ଼ବା** - *ସ:* (ବି.) : ବଳି ଦେବା

**ଛେଦ୍‌ଲି** - *ସ:କଳା:ଖୋ:ସ:* (ବିଂ.କ୍ରି.) : ସାନ, ଶେଷତମ, ସବାସାନ, ଛେଦିଦେଲି, ହାଣିଦେଲି, ଶେଷ, ଅନ୍ତିମ (ସ୍ତ୍ରୀ ଲିଙ୍ଗରେ ବ୍ୟବହୃତ), ସାନପୁଅ

**ଛେଦମା** - *କଳା:* (କ୍ରି.) : ଛେଦିବା, ହାଣିବା

**ଛେଦର ମେଦର** - *ଗ:* (ବି.) : ପରର ଦୋଷ, ଛିଦ୍ର, ଦୁର୍ବଳତା ବାଛିବା

**ଛେଦରା** - *ଗ:* (ବି.) : ଗଣ୍ଠିଆସୁତା

**ଛେଦଲି ପିଲା** - *ଚୌ:* (ବିଂ.) : ଶେଷ ସନ୍ତାନ

**ଛେଦା** - *ଅନେ:* (ବି.ବିଂ.) : ଆଖୁରୁ ରସ ବାହାରି ପଡ଼ିବା ପରେ ଅବଶିଷ୍ଟ ଅଂଶ ଯାହା ଜାଳେଣୀ ରୂପେ ବ୍ୟବହୃତ ହୁଏ, ପିନ୍ଧା ଲୁଗା, ଖଦରା, ଆଖୁର ଅଗ, ହଣା, ଚିରା କପଡ଼ା, ମାଠିଆ, ଖଣ୍ଡ

**ଛେଦାଲୁଗା** - *ପଦ୍ୟ:* (ବି.) : ଧଡ଼ି ନଥିବା ଲୁଗା

**ଛେଦିବା** - *ଅନେ:* (କ୍ରି.) : କାଟିବା, ହାଣିବା, ଛଦେଇବା, ଭାଗ କରିବା, ଖଣ୍ଡ ଖଣ୍ଡ କରିବା, ଛେଦ ପଡ଼ିବା (ବଳୀ ପକାଇବା)

**ଛେଦ୍ ପଡ଼ିବା** - *ଦେ:* (କ୍ରି.) : ମେରିଆ, ବଳିପଡ଼ିବା

**ଛେନ୍** - *କଳା:ନୂ:* (ବି.) : ଛାଏନ୍, ଛାନ୍ ଦେଖ, ଘରର ଛାତ

**ଛେନ୍‌କା** - *ଚୌ:* (ବି.) ଧିରେ ଧିରେ ପାଛୁଡ଼ିବା ପ୍ରକ୍ରିୟା

**ଛେନା** - *ଅନେ:* (ବି.) : ଗୋକ୍ଷୀରରୁ ପ୍ରସ୍ତୁତ ପଦାର୍ଥ ବିଶେଷ, ଶୁଖିଲା ଗୋବର, ପନୀର, ଦହି, ଦୁଧରୁ ତିଆରି ବହଳ ପଦାର୍ଥ, ଘଷି, କ୍ଷୀରକୁ ଛିଣ୍ଡାଇ ତିଆରି କରାଯାଉଥିବା ଖାଦ୍ୟ, ଶୁଖିଲା ଗୋବର ଖଣ୍ଡ

**ଛେନାପଟା** - *ପୁ:* (ବି.) ପୁରୁଷର ବ୍ୟାୟାମପୁଷ୍ଟ ବକ୍ଷ, ସେନାପଟା

**ଛେନା ପଣା** - *ଅନେ:* (ବି.) : ଛେନା, ଗୁଡ଼ କଦଳୀ, ଘିଅ ମହୁ ମିଶା ପଞ୍ଚାମୃତ

**ଛେନାରୁ ଚୋପା ଛଡ଼ାଇବା** - *ଦେ:* (କ୍ରି.) : ଅଯଥାରେ ଯୁକ୍ତି ତର୍କ କରିବା, ଆଲୋଚନା କରିବା, ଫାଲତୁ କଥା କହିବା ବା ମାତିବା

**ଛେନି** - *ପୁ:କେନ୍ଦୁ:* (ବି.କ୍ରି.) : ବଡ଼ ଲୁହା କାଟିବା ବିନ୍ଧାଣ, ଛେଣି, ନଡ଼ାକୁ ଛୋଟଛୋଟ କରି କାଟିବା

**ଛେନ୍ଦଲି** - *ଚୌ:* (ବିଂ.) : ସାନ

**ଛେନ୍ଦା** - *ଗଞ:* (ବି.) : ମାଠିଆ

**ଛେପ** - *ଦେ:ଖୋ:ନ:* (ବି.) : ଥୁକ, ପାଟିର ବିର୍ଯ୍ୟ ବସ୍ତୁ, ଛାପ

**ଛେପ୍‌ରା** - *କୋ:ବର:ଦେ:* (ବିଂ.ବି.) ଚେପ୍‌ଟା, ଚେପା, ଓସାର, ରସ ଧୋଇ ହୋଇ ଯିବା, ନୀରସ

**ଛେପରା** - *କେ:* (ବି.) : ଜୀର୍ଣ୍ଣ

**ଛେପଲି** - *ଅ:* (ବି.) : ଚପଲ

**ଛେପୋ** - *ପୁ:* (ବିଂ.) : ଚେପ୍‌ଟା

**ଛେବ୍‌ଲି** - *ବ୍ୟ:* (ବି.) : ମାଛ

**ଛେମଣ୍ଡ** - *ନବ:ମା:* (ବିଂ.ବି.) : ଅନାଥ, ଛେଉଣ୍ଡ

**ଛେମୁଣ୍ଡା** - *ଦେ:* (ବି.) : ତାଳପତ୍ରରେ ତିଆରି ଭାଡ଼ି

**ଛେରକୁରା** - *ନ:* (ବିଂ.) : ଡରୁଆ, ଡରକୁଳା, ଭୟଭୀତ ହେଉଥିବା

**ଛେରଛେରା** - *ଅ:* (ବି.) ପୁଷପୁନି (ପୌଷପୂର୍ଣ୍ଣିମା)ଦିନ ଧାନ ମାଗିବାଟା ଗୋଟିଏ ବିଧି, ଯାହାକୁ ଛେରଛେରା କୁହାଯାଏ

**ଛେରାଦେବା** - *ସ:* (କ୍ରି.) : ଗୋବର ପାଣି ସିଞ୍ଚନ କରିବା

**ଛେରାନଳୀ** - *ଗ:* (ବି.) : ଛୋଟହାତ ତିଆରି ବନ୍ଧୁକ

**ଛେରା ପହଁରା** - *ଦେ:* (ବି.) : ଓଳାଇବା, ଝାଡୁ କରିବା, ଖରକିବା, ଠାକୁରଙ୍କ ରଥରେ ଝାଡୁ ଦେବା

**ଛେରା ପାଏନ୍** - *ସ:* (ବି.) : ଗୋବର ପାଣିଦେବା

**ଛେରା ପାତୁଲ୍** - *ଝା:* (ବି.) : ସକାଳୁ ଯେଉଁ ଛୋଟ ହାଣ୍ଡିରେ ଘର ଆଗରେ ଗୋବର ପାଣି ପକାଯାଏ, ଛୁଅଁପାତ୍ର

**ଛେରାଲୁଁଡା** - *ସୁବ:* (କ୍ରି.) ଛୁଅଁ ଗୋବରପାଣି

**ଛେରିବା** - *ସୁ:ନ:ଯା:ଜେ:* (କ୍ରି.) : ତରଳ ମଳ, ଡ଼ରିବା, ପତଳା ଝାଡ଼ା କରିବା,

**ଛେରୁଆ** - *ଅନେ:* (ବିଂ.) : ସାହସ ନ ଥିବା ବ୍ୟକ୍ତି, ଡ଼ରୁଆ, ଭୟାଳୁ, ଭୟାତୁର, ଡରୁଆ, ଛାନିଆଁ, ଡରକୁଳା,

**ଛେରୁଣ୍ଡ** - *ରା:* (ବିଂ.) : ବାପା ମା' ନଥିବା (ପିଲା), ଛେଉଣ୍ଡ

**ଛେରେଇ** - *ବ:* (ବିଂ.) : ଡରକୁଳୀ

**ଛେରେମେରେ** - *କଃ:* (ବି.) : ପାଟିତୁଣ୍ଡ, ତେରିମେରି

**ଛେର୍‌ଛେରା** - *ଅନେ:* (ବି.) : ପୌଷ ପୂର୍ଣ୍ଣିମା, କୃଷି ଭିତ୍ତିକ ପର୍ବ, ପୁଷ୍ ପର୍ବର ଏକ ଅଂଶବିଶେଷ, ପୌଷ ପୂର୍ଣ୍ଣିମାରେ ଭୁଇଁଆ ଜାତିର ଲୋକମାନେ ଧାନ ମାଗିବା, ଏକ ଲୋକ ଗୀତର ନା

**ଛେର୍‌ବାର** - *ସୁବ:* (କ୍ରି.) : ତରଳ ଝାଡା କରିବା

**ଛେର୍‌ରା** - *ଅନେ:* (ବି.) : ବନ୍ଧୁକର ଗୁଳି ନିମିତ୍ତ ସ୍ୱତନ୍ତ୍ର ପ୍ରସ୍ତୁତି, ବନ୍ଧୁକର ଛୋଟ ୨ ଗୁଳି

**ଛେର୍‌ହା** - *ସୁବ:ବର:* (ବିଂ.ବି.) : ଭୟାଳୁ, ଡରୁଆ

**ଛେଲ** - *ଅନେ:* (ବିଂ.ବି.) : ସରାଞ୍ଜ ଗଛ, ଅସ୍ତ୍ର, ଛେଳି,

**ଛେଲ୍ ଛେଲ୍** - *ସୁବ:* (ବିଂ.) : ଛେଳିମାନଙ୍କ ପରି ଅତିଶୟ ଭୟ କରିବା

**ଛେଲ୍‌ଛେଲିଆ** - *ସୁବ:* (ବିଂ.) : ପାଣି ଉପରେ ଛୁଇଁଛୁଇଁ ଯାଉଥିବା ଟେକାମାରିବା ଶୈଳୀ

**ଛେଲ୍‌ଟୁଣ୍ଡି** - *କଃ:* (ବି.) : ଛେଳିତୁଣ୍ଡି

**ଛେଲକାନି** - *ଗଦ୍ୟ:* (ବି.) : ଏକ ପ୍ରକାର ଖଡ଼ାଗଛ

**ଛେଲକାନି ଶାଗ** - *ଗଦ୍ୟ:* (ବି.) : ଏକ ଶାଗ

**ଛେଲା** - *ଅନେ:* (ବି.) : କାଠକୁ ଚାଞ୍ଛିବାବେଳେ ସେଥିରୁ ବାହାରୁଥିବା ପତଳା କ୍ଷୁଦ୍ରାଂଶ, ଫାଳ, କତର କରିବା, ଢେଙ୍କଲା, ଖଣ୍ଡ, ପରିମାଣ ବିଶେଷ, ପଡ଼ିଆ, ବସ୍ତାଏ (୪୦ଗୌଣୀ), ଛୋଟ ପଥର ଖଣ୍ଡ (ପତଳା)

**ଛେଲାକେରାଣ୍ଡି** - *ଖୋ:* (ବି.) : ଏକ ପ୍ରଜାତିର କେରାଣ୍ଡି ମାଛ, ବଡ଼କରାଣ୍ଡି ମାଛ

**ଛେଲା ଛେଲା** - *କେ:* (ବିଂ.) : ଖଣ୍ଡ ଖଣ୍ଡ

**ଛେଲି** - *ଅନେ:* (ବି.) : ବକଳ, ଦେଶିଆ ଛେଳି, ଗଛର ଚୋପା ବା ବକଳ

**ଛେଲିଆ** - *ଚୌ:ସୁ:* (ବି.) : ଛେଳି ରକ୍ଷକ, ଛେଳି ଚରାଳି, ଜଗୁଆଳି

**ଛେଲିବା** - *ଦେ:* (କ୍ରି.) : ଚାଞ୍ଛିବା

**ଛେଲି ହବା** - *ଗ:* (କ୍ରି.) : ପ୍ରବଳ ହେବା

**ଛେଲୁଆ** - *ଅନେ:* (ବି.) : ମାଟିପାତ୍ରର ବଡ଼ ଖଣ୍ଡ, ବଡ଼ ଖପରା

**ଛେଲୁଆ** - *ଅନେ:* (ବି.ବିଂ.) : ମାଟି ପାତ୍ରର ଅଂଶ, ଭଙ୍ଗା ମାଟି ପାତ୍ର, ବଡ ଖପରା

**ଛେଲେଇବା** - *ଦେ:କୋ:* (କ୍ରି.) : କେଦ୍‌ରିବା, ଛଡ଼େଇବା, ତେରେଛା କରି କାଟିବା, ଚାଞ୍ଛିବା

**ଛେଲ୍** - *ମ:* (ବି.) : ଛେଳି

**ଛେଳି ଗୋଡରିଆ** - *ଦେ:* (ବି.) : ବାର ଝାବରା, ନିମ୍ନ ବର୍ଗର

**ଛେଳେଇବା** - *ଭ:* (କ୍ରି.) : ପଛେଇବା

**ଛେଁ** - *ନୂ:* (ବି.) : ଛାୟା, ଛାଇ

**ଛେଁକ୍‌ବା** - *ସ:କଣ:ମ:* (କ୍ରି.) : ଅଟକାଇବା, ବାଟ ଓଗାଳିବା

**ଛୈଛଟା** - *ଗ:* (ବି.) : ଛଇଛଟା

**ଛୋକର** - *ମା:* (ବିଂ.) : ବେହିଆ

**ଛୋକାରିଆ** - *ନ:* (ବିଂ.) : ବଦମାସ, ବେହିଆ

**ଛୋଟ ନଜର** - *ଦେ:କ:* (ବି.) : ହୀନ ଦୃଷ୍ଟି

**ଛୋଟବ୍ରେକ୍** - *ସଂ:* (ବି.) : ବିଜ୍ଞାପନ

**ଛୋଟମୋଟ** - *ଦେ:* (ବିଂ.) : ଚଳନୀୟ, ଚଳନ୍ତି

**ଛୋଟ ଲୋକ** - *ଦେ:କ:* (ବି.ବିଂ.) : କୃପଣ, ଅଧମ, ହୀନ, ଇତର, ହୀନ ମଣିଷ, ନୀଚ ଲୋକ

**ଛୋଟା** - *ଅନେ:* (ବିଂ.) : ଲେଙ୍ଗଡ଼ା, ଖଞ୍ଜ

**ଛୋଟୀ** - *ଦେ:* (ବିଂ.) : ଲେଙ୍ଗଡ଼ୀ

**ଛୋଟେଇବା** - *ନ:* (କ୍ରି.) : ଛୋଟ କରିଦେବା, ଅସ୍ୱାଭାବିକ ଚଲିବା

**ଛୋଡ଼ିପୁଅ** - *ନ:ଗ:* (ବି.) : ଅଶାଳୀନ ଗାଳି(ପୁରୁଷ ଲୋକ ଉଦ୍ଦେଶ୍ୟରେ), ଦାସୀପୁତ୍ର

**ଛୋଡ଼ିବା** - *ନ:ଦେ:* (କ୍ରି.) : ନିର୍ଲ୍ଲଜ ଭାବେ ଦାନ୍ତ ଦେଖାଇବା, ଅଶାଳୀନ ଗାଳି, ଅନିଷ୍ଟ କରି ନପାରିବ

**ଛୋଦ୍‌ରି** - *ଦେ:* (ବିଂ.) : ଲୋଭିଣୀ

**ଛୋପରା** - *ଖୋ:ସଂ:ଭ:ସଂ:* (ବିଂ.ବି.) : ନିଜକୁ ଅତି ଚାଲାକ୍ ମନେ କରୁଥିବା ଲୋକ, ବେଲିଆ; ନବଜି, ନିର୍ଲଜ, କୌତୁକ, ପରିହାସ, ବାହାନା କରିବା

**ଛୋବ** - *ସଂ:ଯା:ଭ:* (ବି.) : ମୂର୍ଚ୍ଛା, ସନ୍ଦେହ

**ଛୋର** - *ଯୁବ:* (ବି.) : ଲେଁଜ, ଦାଢି

**ଛୋର** - *ବ:* (ବି.) : ପୁଅମାନଙ୍କର କବାଡ଼ି ପରି ଏକ ଖେଳ

**ଛୋରଣ** - *ସଂ* (ବି.) : ପରିତ୍ୟାଗ

**ଛୋଲ୍କା** - *କନ୍ନ୍:* (ବି.) : ଚୋପା, ଛାଲି, ଖୋଳପା

**ଛୋଲଙ୍ଗ** - *ସଂ* (ବି.) : ଟଭା, ଲେମ୍ବୁ

**ଛୋଲଦାରି** - *ସଂ* (ବି.) : କ୍ଷୁଦ୍ରତମ୍ବୁ ବା ରାଉଟୀ

**ଛୋଲା** - *ସଂ* (ବି.) : ବୁଟ, ଚଣା, ସୋଲା

**ଛଁତ୍** - *କନ୍ନ୍:* (ବି.) : ଛାଞ୍ଚ, ଖାଲିସ୍ଥାନ

**ଛଁତ୍ବା** - *ଝା:ସ:ସୁ:* (କ୍ରି.) : ଜମା କରି ରଖିବା, ସଞ୍ଚୟ, ଶୌଚକରିବା

**ଛଁଚା** - *ସୁ:ନୁ:ବ:ଅ:* (ବିଂ.ବି.) : ସତ୍ୟବାଦୀ, ପୁରା ବାନ୍ଧିବା ପାଇଁ ବ୍ୟବହୃତ ହେଉଥିବା ଛୋଟ ସରୁ ବେଣ୍ଡ, ଓଳିଆ ବାଂଧିବା ପାଇଁ ଘାସର ଦଉଡ଼ି

**ଛଁଚିରଖିବା** - *ସ:* (କ୍ରି.) : ଜମା କରିବା, ସଞ୍ଚୟ କରିବା

**ଛଂଚ** - *କନ୍ନ:* (ବି.) : ଖାଲି ସ୍ଥାନ, ଛାଞ୍ଚ

**ଛଂଚ୍ରିବା** - *ଦୌ:* (କ୍ରି.) : ଛିଟ୍କିବା

**ଛଂଚା** - *କନ୍ନ:* (ବି.) : ପୁଡ଼ା ବାନ୍ଧିବା ପାଇଁ ବ୍ୟବହୃତ ଦଉଡ଼ି

**ଛ୍ଵାଇବା** - *କ:* (କ୍ରି.) : ଘର ଛପର କରିବା

**ଛ'ପଟିଆ** - *ଗ:* (ବି.) : ଛଅ ଗୋଟି ତଳ ଥିବା ଆୟତନ

# ଜ

ଜଅ - *ଦେ:ଗ:* (ବି.) : ଯବଧାନ, ଯାଅ

ଜଅକିଆ - *ଯା:* (ବି.) : ବଢେଇଙ୍କ କାଠ ହଣା ଯନ୍ତ୍ର

ଜଅର - *ଭ:* (ବି.) : ଜହର, ବିଷ

ଜଆ - *ଅନେ:* (ବି.) : ଗହମ ଭଳି ଏକ ଶସ୍ୟ

ଜଇ - *ନବ:* (ବି.) : ନିଆଁ

ଜଇପେଡ଼ି - *ନବ:* (ବି.) ନିଆଁପେଡ଼ି, ଦିଆସିଲି

ଜଇଇ - *ଗଜ:* (ବି.) : ଜେଲ, କାରାଗାର

ଜଇଁ - *ଦେ:ଗ:* (ବି.) : ଜ୍ୱାଇଁ, ଜାମାତା, ଭିଣୋଇ

ଜଉ - *ଅନେ:* (ବି.) : ବୃକ୍ଷରୁ ପ୍ରସ୍ତୁତ ଅଠା, ଲାଖ, ପୋକବିଶେଷ

ଜଉଆ - *ସଂ:ଅ:ଦେ:* (ବି.) : ଧାନଗଛର ଏକ ରୋଗ, ଜଉରୋଗ (ଗଛରେ ଲାଗେ),

ଜଉକଣ୍ଠି - *ସଂ:* (ବି.) : ଅଳଙ୍କାର ବିଶେଷ

ଜଉଘରା - *ଗ:* (ବି.) : ଭ୍ରମର ଘରା

ଜଉଠ - *ଦେ:* (ବି.) : ଲତାପଣସ, ପାଉଡି ଭୂଇଁୟାମାନେ ଏହି ଫଳ ଖାଆନ୍ତି। ଖଟା-ମିଠା

ଜଉଡ଼ା - *ସୁବ:* (ବି.) : ଜୁଆଳି, ହଳ ସହିତ ଲାଂଗଳକୁ ସଂଯୋଗ କରିବା ଦଣ୍ଡ

ଜଉତିସ୍ - *ସ:* (ବି.) : ଗଣକ(ଯେ ଖଡ଼ି ପାଞ୍ଜି ଦେଖନ୍ତି), ଜ୍ୟୋତିଷ

ଜଉପେଳିଆ - *ଗ:* (ବି.) : ଅଣ୍ଡକୋଷର ଜାବୁ ରୋଗ

ଜଉରା - *ଗ:* (ବି.) : ଜଉରୁ ଚୂଡ଼ି ଅଳଙ୍କାର ପ୍ରସ୍ତୁତ କରୁଥିବା ଜାତି

ଜଏନ୍ - *କଳା:* (ବି.) : ଆୟ, ଆଦାୟ, ଓଜନ

ଜଏଲ୍କା - *କଝ:* (ବି.) : ମକା

ଜକ - *କୋ:ଗଜ:* (ବି.କ୍ରି.) : ଆର୍ଦ୍ରତା, ଭୋକ ନ ଲାଗିବା

ଜକ୍‌ଜକ୍ - *ସଂ:କେ:ଦେ:* (ବିଂ.) : ଚକ୍‌ଚକିଆ, ଚିକ୍କଣ, ଦାଉଦାଉ, ଉଜ୍ଜ୍ୱଳ

ଜକ୍, ଜଗ୍ - *ନ:* (ବି.) : ପାଣି ରଖିବା ପାତ୍ର, କ୍ଷୀର ବୋହିବା ପାତ୍ର

ଜକଜକିଆ - *ଦେ:ଅ:* (ବିଂ.) : ସନ୍ତସନ୍ତିଆ, ଓଦା, ପାଟ, ଉଜ୍ଜ୍ୱଳ

ଜକର - *ଗଜ:* (ବି.) : ପାଣିଝର, ଓଦାଥିବା

ଜକା - *ଅନେ:* (ବିଂ.ବି.) : କୃପଣ; ଜାକିକରି ରଖୁଥିବା (ବ୍ୟକ୍ତି), ଲୋଭୀ, ଦାବିବା, ଜାକିବା କାମ

**ଝକାଝକି** - *ନ:ଦେ:* (ବି.ବିଂ.) : ଲାଗିଲାଗି, ଖୁନ୍ଦାଖୁନ୍ଦି ହେବା, ଠେଲାଠେଲି, ପେଲାପେଲି, ଭିଡ଼ା ଗହଳି

**ଝକାଡ୍** - *ଅ:* (ବି.) : ଖଇରାତ୍, ଦାନ

**ଝକେଇବା** - *ନ:ଦେ:* (କ୍ରି.) : ସନ୍ତେଇବା, ଝାଳେଇବା, ପାଣି ଝରି ଆସି ଓଦା ରହିବା

**ଝଖମ** - *ଅନେ:* (ବି.ବିଂ.କ୍ରି.) : ଆଘାତପ୍ରାପ୍ତ, ଗଇ, ଆହତ, ଖଣ୍ଡିଆ ଖାବଡ଼ା, ଚୋଟ, ମୋଡି ହେବା, ମକଚି ହେବା, ଦରଜ

**ଝଖେଇ** - *ସୁନ:ବ:* (ବିଂ.) : ପାଗଳୀ

**ଝଗ୍** - *କଳା:* (କ୍ରି.) : ଅପେକ୍ଷାକର

**ଝଗ୍‌ଜିହାରୀ** - *ବୌ:* (ବିଂ.) : ଖୋଲାଖୋଲି, ଡାକବଜାର

**ଝଗ୍‌ଡା** - *ଅନେ:* (ବି.ବିଂ.) ମଇଳା, ଆବର୍ଜନା, ଅଳିଆ, ଅଦରକାରୀ ପଦାର୍ଥ

**ଝଗଜିହାରି** - *ସ:* (ବି.) : ସମସ୍ତଙ୍କ ଆଗରେ କରିବା, କହିବା

**ଝଗଡ଼ା କେଚଡ଼ା** - *ସ:* (ବିଂ.) : ଅଳିଆ

**ଝଗତପେଡ଼ି** - *ଯା:* (ବି.) : ସବୁଜିନିଷ ଥିବା ବାକ୍ସ ବା ପେଟରା

**ଝଗଡି** - *ଅନେ:* (ବି.) ଉଚ୍ଚସ୍ଥାନ, କୋଠାଉପର, ସିଂହାସନ

**ଝଗଡିଢେପ** - *ଗ:* (ବି.) : ରାଜନଅର ମଧ୍ୟସ୍ଥ ଆବର୍ଜନା ମୟ ସ୍ଥାନ

**ଝଗଡିବେଢା** - *ଗ:* (ବି.) : ହାତୀ ଧରିବା କୌଶଳ

**ଝଗଦ** - *ଦେ:* (ବି.) : ଅଭିଭାବକ, ରକ୍ଷକ, ପାଳକ

**ଝଗର** - *ଖୋ:ଦେ:* (ବି.) : ଏକ ପ୍ରଜାତିର ମାଛ, ଧୂର୍ତ୍ତ, ଚଲାଖ

**ଝଗର ପାଣି** - *ପଦ୍ୟ:* (ବି.) : ଆଇଁଷ ଝୋଳ

**ଝଗଲ** - *ବୌ:ବର:କଳା:ସୁବ:* (ବି.) : ଶିଉଳି, ପୋଖରୀର ଦଳ, ଜଳଜ ଉଦ୍ଭିଦ ବିଶେଷ,

**ଝଗାବାର** - *ସୁବ:* (କ୍ରି.) : ଚାରା ରୋପଣ କରିବା

**ଝଗାରଖା** - *ଅ:କେ:ନ:* (ବି.) : ଜଗିବା ଓ ରକ୍ଷଣାବେକ୍ଷଣ କରିବା, ତଦାରଖ

**ଝଗାଳି** - *ଅନେ:* (ବି.) ଜଗୁଆଳି, ଚୌକିଦାର

**ଝଗାଳି ଜାତି** - *ଗ:* (ବି.) : ଗଞ୍ଜାମର ଦଣ୍ଡାସୀ ନାମକ ଜାତି

**ଝଗିଚେ** - *ଅ:କଳା:* (କ୍ରି.) : ଜଗିଛି, ଅପେକ୍ଷା କରିଛି

**ଝଗିରଖି** - *ଦେ:* (ବି.) : ସାବଧାନତା, ସତର୍କତା ଅବଲମ୍ବନ କରି

**ଝଗୁଆ** - *ଦେ:* (ବିଂ.) : ଜଗିଆ

**ଝଗେଇବା** - *କଳା:* (କ୍ରି.) : ରୋଇବା, ଲଗେଇବା, ଅପେକ୍ଷା କରେଇବା, ସୁରକ୍ଷା ପାଇଁ ନିଯୁକ୍ତି ଦେବା

**ଜଗେରି** - *କଝ:* (ବି.) : ସାନ ବଣକୁକୁଡ଼ା
**ଜଗ୍ଘ** - *କଝ:* (ବି.) : ଶିଉଳି
**ଜଘଡ଼ା** - *ନୂ:* (ବି.) : ଆବର୍ଜନା
**ଜଘନ** - *ଅନେ.* (ବି.) : ସ୍ତ୍ରୀଲୋକଙ୍କ ଜଙ୍ଘ
**ଜଘନ୍ୟ** - *ଅନେ.* (ବିଂ.) : ଅତ୍ୟନ୍ତ ଘୃଣ୍ୟ, ନିକୃଷ୍ଟ
**ଜଘେନ** - *ସୁ:* (ବି.) : ଜଘନ୍ୟ
**ଜକ୍** - *ଅନେ:* (ବି.) : କଳଙ୍କି, ରକ୍ତଶୋଷା ଏକ ଜଳ ଜୀବ, ଜଙ୍ଗ୍
**ଜଙ୍କନି** - *କେନ୍ଦୁ:* (ବି.) : ପୋଖରୀରେ ଦିଶୁଥିବା ନିଆଁହୁଳା, ଡ଼ାହାଣୀ ଆଲୁଅ
**ଜଙ୍କଲି** - *ଗଜ:* (ବି.) : ବଣୁଆ, ଜଙ୍ଗଲି
**ଜଙ୍ଗମ** - *ଦେ:ପଦ୍ୟ:ଗଜ:* (ବିଂ.ବି.) : ଅସ୍ଥାବର, ଅସ୍ଥାୟୀ, ସଚଳ
**ଜଙ୍ଗମ୍** - *ଗ:* (ବି.) : ଶୈବପୂଜାରୀ ଜାତି
**ଜଙ୍ଗଲିଆ** - *ଅନେ.* (ବିଂ.) : ଘଞ୍ଚ, ବଣୁଆ
**ଜଙ୍ଗଲି ତୁମା** - *ସଂ* (ବି.) : ଶିବ, ଜଙ୍ଗଲର ଈଶ୍ୱର
**ଜଙ୍ଗଲୀ** - *ଦେ:ଜ:* (ବିଂ.) : ବନବାସୀ, ଅସଭ୍ୟ, ନିର୍ବୋଧ, ବଣୁଆ
**ଜଙ୍ଗଳ** - *ଦେ:* (ବି.) : ଶୁଷ୍କ, ଅନୁର୍ବର
**ଜଙ୍ଘା** - *କଝ:* (ବିଂ.) : ଛଅ
**ଜଙ୍ଘାଲ** - *ଦେ:* (ବି.) : ତୁତିଆ ଗଛ
**ଜଙ୍ଘ** - *ଅନେ.* (ବି.) : ଜାନୁ, ପିଚାର ତଳଭାଗ
**ଜଙ୍ଘା** - *ଦେ:ନ:* (ବି.) : ଗଣ୍ଡଜାତିଙ୍କ ଆରାଧ ଦେବତା, ଜଙ୍ଘ ଫୁଲିବା ରୋଗ
**ଜଙ୍ଘିଆ** - *ଅନେ:* (ବି.) ଅନ୍ତର୍ବାସ, ଜଙ୍ଘପର୍ଯ୍ୟନ୍ତ ଅନ୍ତର୍ବାସ
**ଜଚ୍ଛ** - *ଗ:* (ବି.) : ଯଶ, ସ୍ମୃତିଚିହ୍ନ
**ଜଚ୍ଚ୍ଚଚ୍** - *ବୌ:ଅ:ଦେ:* (ବିଂ.) : ଯଥେଷ୍ଟ ପ୍ରଚୁର, ଯାହାକୁ ଯେତେ
**ଜଜମାନିଆଁ** - *ବୌ:* (ବି.) : ନିତିଦିନିଆଁ ପୂଜକ
**ଜଜରମାନ୍** - *ଅ:ବୌ:* (ବିଂ.କ୍ରି.ବି.) : ରାଗ, କ୍ରୋଧ, ବିରକ୍ତି, ଜରଜର
**ଜଜାଙ୍ଗି** - *ନ:ଗଜ:* (ବି.) : ଔଷଧୀୟ ବୃକ୍ଷ ବିଶେଷ
**ଜଜାଳ** - *ଦେ:* (ବିଂ.) : କଳହପ୍ରିୟ, କଳୁଆ
**ଜଞ୍ଜାଳ** - *ଅନେ:* (ବି.) : ସଂସାର ମାୟା, ଅଯଥା ଗୋଳମାଳ, ସମସ୍ୟା, ଅଳି କରିବା, ନାନା କାର୍ଯ୍ୟରେ ବ୍ୟସ୍ତ
**ଜଞ୍ଜିର** - *ଅନେ.* (ବି.) : ଶିକୁଳି, ବେଡି
**ଜଞ୍ଜିର ମାପ** - *ଅନେ.* (ବି.) : ଚେନ୍ ପକାଇ ଭୂମିମାପ କରିବା
**ଜଞ୍ଜିରିଆ** - *କେ:* (ବି.) : ପାଦ ଅଳଙ୍କାର
**ଜଟ** - *ଅନେ:* (ବି.) : ଜଟା, ଚୂଳ, କେଶଗଣ୍ଠି, ଜୁଡା, ବେଣୀ, ବାବାଜୀମାନଙ୍କ କେଶଗୁଚ୍ଛ, ତୁଳସୀଜଟ
**ଜଟ୍‌ବାର୍** - *ସୁବ:* (କ୍ରି.) : ଟଙ୍କା ପଇସା ଆଦି କୌଶଳ କ୍ରମେ ଠକି ଆଣିବା
**ଜଟଭ** - *ଢେ:* (ବି.) : ଛାଞ୍ଚୁଣି

**ଜଟଜଟିଆ** - *ଦେ:ଗୈ:ସଂ:* (ବି.) : ଏକ ପ୍ରକାର ଘାସ, ଶିକୁଳା, ଅପାମାରଙ୍ଗ, ବନ୍ୟ ଛଣପଟ, ଏକପ୍ରକାର ତୃଣ

**ଜଟ ପକାଇବା** - *ଅନେ.* (କ୍ରି.) : ଜୁଡା ବାନ୍ଧିବା

**ଜଟବାର** - *ସୁବ:* (କ୍ରି.) : କୌଶଳ କରି ଜିନିଷ ଠକି ଆଣିବା

**ଜଟବାଂଧିବା** - *ଅନେ.* (କ୍ରି.) : ଜୁଡ଼ାବାଂଧିବା

**ଜଟ ମୁକୁଟା** - *ପଦ୍ୟ:* (ବି.) : କେଶ ବନ୍ଧନ ଶୈଳୀ

**ଜଟା** - *ଅନେ.* (ବି.) : କେଶରାଶିର ଅବିନ୍ୟସ୍ତ ଗଣ୍ଠି ପଡ଼ିବା, ଈଶ୍ୱରଜଟ, ଶତାବରୀ, ଶିଖା, ଅଣ୍ଡିରା ତାଳଗଛର ଫୁଲ

**ଜଟା ଚିଙ୍ଗରି** - *ସ:* (ବି.) : ଏକ ପ୍ରକାର ଚିଙ୍ଗୁଡ଼ି

**ଜଟାଜଟି** - *ଦେ:ନ:* (ବି.) : ଭଣ୍ଡାଭଣ୍ଡି, ଠକିବା କାମ

**ଜଟାଜୁଟ** - *ଅନେ.* (ବି.) : ଜଟା ସମୂହ

**ଜଟାମଣ୍ଡଳ** - *ନ:* (ବି.) : ଏକ ଧାନର ନାମ

**ଜଟି** - *ଗଞ:ଗ:* (ବି.) : ଅଲରାବାଳ, ମୁଣ୍ଡ ବାଳର ଜଟିଳ ଗଣ୍ଠି

**ଜଟିଆ** - *ଅନେ:* (ବିଂ.ବି.) : ଗୋଳମାଳିଆ, ଜଟାଥିବା ଲୋକ, କାମଡ଼ା ଭିଡ଼ିବାପାଇଁ ବ୍ୟବହୃତ ଖୋଟ ଦଉଡ଼ି, ଗୋଳିଆ, ସୂତାର ଛନ୍ଦ, ଅସମାଧାନ ପ୍ରସଙ୍ଗ, ଠକ

**ଜଟିଆ ଗାଈ** - *ନ:* (ବି.) : ପିଠିରେ ଜଟ ଥିବା ଗାଈ

**ଜଟିଳ** - *ଅନେ.* (ବିଂ.) : କୁଟିଳ, କଠିଣ, ଗଣ୍ଠିଗଣ୍ଠିଆ, ଗୋଳମାଳିଆ, ଦୁର୍ବୋଧ

**ଜଟେଇ ଦେବା** - *ଖୋ:* (କ୍ରି) : ବାଧ କରିବା, ପରସ୍ପରକୁ ଯୋଡ଼ିଦେବା

**ଜଠ** - *ଅ:* (ବି.) : ଉଦର

**ଜଡ଼** - *ଦେ:ଅ:* (ବି.) : ମୂଳ, ମୂଳ କାରଣ, ମୂକ, ମୂର୍ଖ, ନିର୍ଜୀବ, ଅଳସୁଆ,

**ଜଡ଼ୁବନ୍ଧ୍** - *ଗୈ:* (ବି.) : ଘନିଷ୍ଠ ବନ୍ଧୁତା

**ଜଡ଼ଉ ଅଳଙ୍କାର** - *ଗଦ୍ୟ:* (ବିଂ.) : ରତ୍ନାଦି ଖଚିତ ଅଳଙ୍କାର

**ଜଡ଼ଉତ** - *ପୁ:* (ବି.) : ଜରିଜମ୍ଭୁରାରେ ସାଜସଜ୍ଜା, ମଣ୍ଡନ

**ଜଡ଼ତା** - *ଦେ:* (ବି.) : ଦେହ କାଲ ମାରିଯିବା, ଆଳସ୍ୟ, ମୂର୍ଖତା, ଅଚେତନତା

**ଜଡ଼ସଡ଼** - *ଦେ:ଅ:* (ବି.) : ଲାଜରେ ସଙ୍କୁଚିଯିବା

**ଜଡ଼ା** - *ଅନେ:* (ବି.ବିଂ.) : କଥା କହିବାରେ ଅସମର୍ଥ, ପାଟି ଫିଟୁନଥିବା ଲୋକ, ଘୁଂଗା, ଖନା, ବୃକ୍ଷ ବିଶେଷ

**ଜଡ଼ାଗଛ** - *ଅନେ.* (ବି.) : ଗବ ଗଛ, ଯାହାର ଫଳରୁ ତେଲ ବାହାରେ

**ଜଡ଼ାଜଡ଼ି** - *ଦେ:* (ବିଂ.) : ଭିଡ଼ାଭିଡ଼ି, ଆଲିଙ୍ଗନ

**ଜଡ଼ାଜାଡ଼ି** - *ଗ:* (ବି.) : ଖନାଖନି

**ଜଡ଼ାପକାଇବା** - *ଗ:* (କ୍ରି.) : ଠକିବା

**ଜଡ଼ାମରା** - *ଗୈ:* (ବିଂ.) : ଠକ

**ଜଡ଼ାମୂର୍ଖ** - *ଦେ:* (ବିଂ.) : ନିରକ୍ଷର, ନିବାମୂର୍ଖ

**ଜଡ଼ିକି ଯିବା** - *ନ:* (କ୍ରି.) : ମୁଢି ମୁଆଁ ପ୍ରଭୃତିର ଟାଣ ଭାଙ୍ଗିଗଲେ ବା ନରମ ହୋଇଗଲେ

**ଜଡ଼ିବୁଟୀ** - *ଦେ:* (ବି.) : ତୁଟୁକା, ମୂଳମୂଳିକା, ଚେରମୂଳକିଆ ଔଷଧ

**ଜଡ଼ିଯିବା** - *ଅନେ:* (କ୍ରି.) : ଲାଗି କରି ରହିବା

**ଜଢେଇ ଯିବା** - *ସ:* (କ୍ରି.) : କଲଠେଇ ଯିବା, ହାତଗୋଡ଼ ମୁଠା ନହେବା, କାଠ ହୋଇଯିବା

**ଜଣାଶୁଣା** - *ଅନେ:* (ବିଂ.) ଭଲଭାବେ ଜଣାଥିବା, ସୁପରିଚିତ

**ଜଣେଇବା** - *ଅନେ:* (କ୍ରି.) : କହିବା, ଗୁହାରି କରିବା, ଖବରଦେବା, ଅବଗତ କରିବା

**ଜଣ୍ଡି ରହିବା** - *ପଦ୍ୟ:* (କ୍ରି.) : ଲାଗି ରହିବା

**ଜଣ୍ଡିସ୍** - *ଅନେ:* (ବି.) : ହଳଦିଆ କାମଳ ରୋଗ

**ଜତଥକତଥ** - *ଦେ:* (ବିଂ.) ଯହିଁତହିଁ, ଯାହାଁତାହାଁ

**ଜତନି** - *ସୁବ:* (ବି.) : ଚାଉଳ ଚୂନା, ଅଟା ଓ ଗୁଡ଼ର ସିଝା ଘାଣ୍ଟ ଏଥିରୁ ଆରିସା, କାକରା କରାଯାଏ, ଜନ୍ତୁଣି

**ଜତୁ** - *ଦେ:* (ବି.) : ଜଉ, ଲାଖ

**ଜଥା** - *ଅନେ:* (ବି.) : ଦେଶୀ ଯୋଡ଼ ଲୁଗା, ଦୁଇପଟ ଧୋତି ଚାଦର, ପିନ୍ଧିବା ଲୁଗା (ପୁରୁଷଙ୍କ ନିମନ୍ତେ), ଦୁଇଟି ଲୁଗା

**ଜନ** - *ଅନେ:* (ବି.) : ଜହ୍ନ, ଲୋକ, ନର, ମଣିଷ, ଜାତ, ଜନା, ଚନ୍ଦ୍ର

**ଜନ୍ ଉଦିକରେ** - *କୋ:* (ବି.) : ଶୁକ୍ଳପକ୍ଷ

**ଜନ୍କରାଏତ୍** - *ବର:* (ବି.) : ଜହ୍ନରାତି

**ଜନ୍ମାମୁଁ** - *କଳା:* (ବି.) : ଜହ୍ନମାମୁଁ, ଚନ୍ଦ୍ର, ଅତିପରିଚିତ ବ୍ୟକ୍ତି

**ଜନ୍ଯାଇକରି** - *କୋ:* (ବି.) : କୃଷ୍ଣପକ୍ଷ

**ଜନ୍ହା** - *ମା:ନବ:* (ବି.) : ମକା

**ଜନ୍ହି** - *ଅନେ:* (ବି.) : ଜହ୍ନି ପରିବା ବିଶେଷ

**ଜନକଧାରୀ** - *ଗ:* (ବି.) : ଜାନୁଘଣ୍ଟ (ଲୋକ ପରଂପରାର ପର୍ଶୁରାମ)

**ଜନନ** - *ଦେ:* (ବି.) : ଉଦ୍ଭବ, ଉତ୍ପତ୍ତି, ଜନମ

**ଜନପଖ ରାତି** - *ଗ:* (ବି.) : ଜହ୍ନ ରାତି, ଶୁକ୍ଳପକ୍ଷ ରାତ୍ରି

**ଜନପରଜା** - *ଜ:* (ବି.) : ଗାଁ ଲୋକ

**ଜନପ୍ରାଣୀ** - *ଅନେ:* (ବି.) : ମନୁଷ୍ୟ ଓ ଅନ୍ୟଜୀବ, ମଣିଷର ସମାଜ, ଲୋକ ସମୂହ

**ଜନବାଦ** - *ଦେ:* (ବି.) : ନିନ୍ଦା, ଗୁଜବ

**ଜନଭା** - *ଗଞ:* (ବି.) : ଜନଗଣନା

**ଜନମ୍** - *କଳା:* (ବି.) : ଜନ୍ମ, ଆବିର୍ଭାବ

**ଜନମ୍ ଭୁଖା** - *ସ:* (ବିଂ.) : ଚିରଦରିଦ୍ର

**ଜନମ ଘାଟ** - *ଗ:* (ବି.) : ନବଜାତ ଶିଶୁର ଆକସ୍ମିକ ବ୍ୟାଧି

**ଜନମଞ୍ଚ** - *ସଂ:* (ବି.) : ଲୋକମାନେ ଏକାଠି ହୋଇ ଆଲୋଚନା କରିବା ମଞ୍ଚ

**ଜନମ ପାଣି** - *ଗ.* (ବି.) : ନବଜାତ ଶିଶୁର ପ୍ରଥମ ସ୍ନାନ, ଚାରା ରୋପଣ ପରେ ପ୍ରଥମେ ଜଳ ସିଞ୍ଚନ

**ଜନମ ବାଉଳା** - *ସଂ* (ବି.) : ଜନ୍ମରୁ ନିର୍ବୋଧ

**ଜନମ ଶତ୍ରୁ** - *ଗ.* (ବି.) : ପାରଂପରିକ ଶତ୍ରୁ

**ଜନରବ** - *ଦେ.* (ବି.) : ଘୋଘା, ଜନଶ୍ରୁତି

**ଜନ ସାଧାରଣ** - *ଦେ.* (ବି.) : ଆବାଳବୃଦ୍ଧ ବନିତା ସମସ୍ତେ

**ଜନା** - *ଅନେ.* (ବି.ବିଂ.) : ମକା, ଶସ୍ୟ ବିଶେଷ, ଜଙ୍ଗଲଜାତ ଶସ୍ୟ, ଜହ୍ନା (ମକାଜାତୀୟ ଶସ୍ୟ), ଜଣା

**ଜନାକାରୀ** - *ଦେ.ଭ.* (ବିଂ.ବି.) : ଅବୈଧ ସ୍ତ୍ରୀ ସଂଭୋଗ, ବ୍ୟଭିଚାରୀ, ନାରୀଧର୍ଷଣ

**ଜନା ଖଇ** - *ଗ.* (ବି.) : ମକା ଖଇ

**ଜନାଜନି** - *କଳା.ଅ.* (ବିଂ.ବି.) : ଜଣାଜଣି, ମୁକାବିଲା

**ଜନାଜା** - *ଦେ.* (ବି.) : କୋକେଇ, ଶବଯାତ୍ରୀ

**ଜନାଜାଡିଭଉଁରିଆ** - *ଦେ.* (ବି.) : ଯେଉଁ ଭଉଁରିଆରେ (ଚକ) ପ୍ରତ୍ୟେକ କିତା ଜମିର ମାପ ଲେଖାଯାଏ

**ଜନାଡ଼ଙ୍ଗ** - *ଗ.* (ବି.) : ଦୁର୍ବଳ ଚେହେରା

**ଜନାନ୍‌ଲୋ** - *ସଂ* (ବି.) : ଶବରମାନେ ନୀଳମାଧବଙ୍କୁ ଏହି ନାମରେ ଡାକୁଥିଲେ

**ଜନାନା** - *ପଦ୍ୟ.* (ବି.) : ଲୋକ, ମହିଳା

**ଜନାବ୍** - *ଦେ.* (ବି.) : ମହାଶୟ, ମାନନୀୟ, ହଜୁର

**ଜନାବା** - *କଳା.* (କ୍ରି.) : ଜଣେଇବା

**ଜନାମଣ୍ଡି** - *ଗ.* (ବି.) : ସଫା, ସଫେଦ

**ଜନାର** - *ଦେ.* (ବି.) : ମକା, ଜନରା, ଆହାର, ଭୋଜନ

**ଜନାସୁନା** - *ନୂ.* (ବିଂ.) : ଜଣାଶୁଣା

**ଜନି** - *କଣ.କଳା.ମା.* (ବି.) : ଜହ୍ନି

**ଜନିତ** - *ଦେ.* (ବିଂ.) : ଉତ୍ପନ୍ନ, ଜାତ

**ଜନେଇ** - *କଳା.* (କ୍ରି.) : ଜଣେଇ, ସୂଚିତ କରି

**ଜନେଲି, ଜଏଲି** - *କଣ.* (ବି.) : ମକା

**ଜନ୍-ଭକିଆ** - *କଳା.* (ବି.) : ଚନ୍ଦ୍ରାଲୋକ, ଜହ୍ନପକ୍ଷ

**ଜନ୍ତ** - *କେ.* (ବି.) ଜମିକୁ ପାଣି ମଡ଼ାଇବାରେ ଲାଗୁଥିବା କାଠ ନିର୍ମିତ ଯନ୍ତ୍ର

**ଜନ୍ତର** - *ଭା.* (ବି.) : ଗୁଣିଆ

**ଜନ୍ତରା** - *ଗଦ୍ୟ.* (ବିଂ.) : ମନ୍ତ୍ର ଦ୍ୱାରା କବଳିତ

**ଜନ୍ତରିଆ** - *ଭା.* (ବିଂ.) : ଗୁଣିଆ

**ଜନ୍ତା** - *ଦେ.* (ବି.) : ଡେଣ୍ଡା, କମାରଶାଳରେ ନିଆଁକୁ ପବନ ଯୋଗାଇବାର ଚମଡ଼ାର ମୁଣା,

**ଜନ୍ତାଜନ୍ତି** - *ଦେ.* (ବି.) : ଲଗାଲଗି, ଚୂନା ଓ ଗୁଡ ମିଶେଇ ଖଳି ଜନ୍ତା, ଠେଲାଠେଲି, ଦଳାଦଳି

**ଜନ୍ତାଳ** - *ଅନେ.* (ବି.) : ଠାକୁରାଣୀଙ୍କ ପାଖରେ ହେଉଥିବା ପୂଜାର୍ଚ୍ଚନା, ପାର୍ବଣ ସମୟର ମିଳିତ ଭୋଜି,

ଦେବୀ ମନ୍ଦିରରେ ସମସ୍ତେ ଏକାଠି ହୋଇ ଭୋଜିଭାତ କରିବା, ଭୋଜି, ମଉଛୁବ, ଗାଁର କୋଠ ଭୋଜି

**ଜନ୍ତିବା** - *ନ:ସଂ:ଦେ:କେ:* (କ୍ରି.ବି.) : ଚାଉଳ ଚୂନା, ଅଟା, ସୁଜି ଇତ୍ୟାଦି ଗରମ ପାଣି ବାମ୍ଫରେ ସିଝାଇବା, ବାଷ୍ପ ସିଦ୍ଧ କରିବା, କାକରାପିଠା କରିବା ପାଇଁ ଖଳିକୁ ଭଲଭାବେ, ଦଳିବା, ଗରମ କରି ଦଳିବା

**ଜନ୍ତିହେବା** - *ନ:ଦେ:* (କ୍ରି.) ନୟାନ୍ତ ହୋଇଯିବା, ଘାଣ୍ଟି ହୋଇଯିବା, ହଇରାଣ ହେବା, ଦହଗଞ୍ଜ, ଅତ୍ୟାଚାରିତ ହେବା

**ଜନ୍ତୁ** - *ଦେ:* (ବି.) : ଜୀବ, ପଶୁ, ଜାନୁଆର୍ ମାନବେତର ପ୍ରାଣୀ

**ଜନ୍ତୁଜୁନ୍ତା** - *କୋ:* (ବି.) : ସରିସୃପ ଆଦି ପ୍ରାଣୀ

**ଜନ୍ତୁଣି** - *ଗଞ୍ଜ:ନବ:ନ:ଗ:* (ବି.) : ଚୁନାକୁ ସିଝାଇ ଜନ୍ତୁଣି ପ୍ରସ୍ତୁତ କରାଯାଇଥାଏ, ପିଠା ପ୍ରସ୍ତୁତର ପୂର୍ବ ମିଶ୍ରଣ, ଖଳି, ଅଟା, ସୁଜି ଚାଉଳଚୂନା ସିଝାଇ ପ୍ରସ୍ତୁତ କରାଯାଇଥିବା ଚକଟା, ପିଠା ତିଆରି ପୂର୍ବରୁ ଅଟାକୁ ପ୍ରସ୍ତୁତ କରିବା

**ଜନ୍ତୁପଡ଼ିବା** - *ଗ:* (କ୍ରି.) : ଘା'ରୁ ପୋକ ପଡ଼ିବା

**ଜନ୍ତୁରୀ** - *କେ:* (ବି.) : ଠେକରା, ଛୋଟ ଠେକି

**ଜନ୍ତେଇବା** - *କୋ:* (କ୍ରି.) : ଗୋଟିକ ଉପରେ ଗୋଟିଏ ସଜେଇ ରଖିବା

**ଜନ୍ଦକ୍** - *କୋ:* (ବି.) : ମକା ଜାତୀୟ ଶସ୍ୟ ବିଶେଷ

**ଜନ୍ଦମାରୀ** - *ଗଞ୍ଜ:* (ବି.) : ଔଷଧୀୟ ବୃକ୍ଷ

**ଜନ୍ଦା** - *ସ:ନ:ଗ:ଦେ:* (ବି.) ପିମ୍ପୁଡ଼ି, କଳାରଙ୍ଗର ଏକ ବଡ଼ ପିମ୍ପୁଡ଼ି, କଳାପୋକ, ବାଲିଜନ୍ଦା, ବଡମୁଣ୍ଡିଆ ଜନ୍ଦା

**ଜନ୍ମଫଳ** - *ଦେ:ସଂ:* (ବି.) : ଡିମ୍ବିରିଗଛ ଓ ଫଳ, ଉଡୁମ୍ବର ଗଛ ଓ ତା'ର ଫଳ

**ଜନ୍ମ ବିଧବା** - *ସଂ:* (ବି.) : ବାଳବିଧବା

**ଜପ୍‌ତି** - *ସୁ:* (ବି.) : ଜବତ

**ଜପତପ** - *ଦେ:* (ବି.) : ମନ୍ତ୍ରଜପ, ତପସ୍ୟା

**ଜପା** - *ଦେ:* (ବି.) : ଜବା ବା ମନ୍ଦାର ଗଛ ଓ ଫୁଲ

**ଜପାମାଳା** - *ଦେ:* (ବି.) ରୁଦ୍ରାକ୍ଷ, ତୁଳସୀକଣ୍ଠି ମାଳ

**ଜବ୍‌ଜବିବା** - *କଳା:* (କ୍ରି.) : ପାଣିରେ ଭିଜି ଯିବା

**ଜବ୍‌ଟା** - *ସୁ:* (ବି.) : ଠକିବା

**ଜବ୍‌ଡା** - *କଳା:* (ବି.) : ମଇଳା, ଅସକରା, ଅନାବନା ପରିତ୍ୟକ୍ତ ଜିନିଷ

**ଜବ୍‌ରାବା** - *ସ:* (କ୍ରି.) : କଥା କହିବା

**ଜବଦ୍** - *ଦେ:ଜେ:* (ବି.ଅ.) ଅଟକ ରଖାଯିବା, କ୍ରୋକ, ବ୍ୟାଜାପ୍ତ, ଆୟତ କରିବା

**ଜବତି ରହିବା** - *ସ:* (କ୍ରି.) : ଭୟଭୀତ ହୋଇ ନୀରବରେ ରହିଯିବା, ଚୁପ୍ ପଡିବା, ଜବତ ହୋଇ ରହିବା

**ଜବଦିବା** - *କଳା:* (କ୍ରି.) : ନିରବ ରହିବା, କୌଣସି ପ୍ରତିକ୍ରିୟା ପ୍ରକାଶନକରି ଚୁପ୍ ହୋଇଯିବା

**ଜବର** - *ଅନେ:* (ବି.ବିଂ) : ଗତି, ବେଗ, ଦ୍ରୁତଗାମୀ, ଜିଦ୍ ଖୋର, ଖୁବ୍, ବହୁତ, ଅଧିକ, ଭାରି, ବେଶୀ, ମାତ୍ରାଧିକ, ଜୋର କରି, ବିରାଟ, ବୃହତ୍, ବଳିଷ୍ଠ, କ୍ଷମତାଶାଳୀ, ବେଶୀ, ଅତ୍ୟଧିକ, ଦୃଢ଼

**ଜବରଦଖଲ** - *କ:ସ:* (ବି.) : ଅନ୍ୟାୟ ବଳରେ ଦଖଲ, ଜମିକୁ ବଳପୂର୍ବକ ମାଡିବସିବା,

**ଜବର ଭୁରୁଦ୍ଧ** - *ଗ:* (ବି.) : ଅଯଥା ଉଦ୍ଧତ କଥା କହିବା, ଧମକ ଦେଖାଇବା

**ଜବରାନ୍** - *ସୁବ:ଝା:* (ବି.କ୍ରି.) : ଜୋରଜୁଲୁମ୍, ବଳ ପ୍ରୟୋଗ ପୂର୍ବକ କିଛି କରିବା

**ଜବରୀ** - *ଛ:* (ବିଂ.) : ଉଦଣ୍ଡୀ

**ଜବରେଇକି** - *ଗ:* (କ୍ରି.ବିଂ.) : ଅଧିକ ପରିମାଣରେ, ଜବରଦସ୍ତ କରି

**ଜବାନ୍‌ବନ୍ଦି** - *ଦେ:* (ବି.) : ଅଦାଲତ୍‌ରେ ହାକିମଙ୍କ ଦ୍ୱାରା ଇଖାର ଲିପିବଦ୍ଧ ହେବା

**ଜବାବ** - *ଅନେ:* (ବି.) : ଉତ୍ତର, ଗାଲୁକରିବା, କୈଫିୟତ୍, ଚୁକ୍ତିବଦ୍ଧ ବଚନ, ପ୍ରତ୍ୟୁତ୍ତର, ପ୍ରତିଶ୍ରୁତି, କଥାଦେବା

**ଜବାବ ସୁଆଲ** - *ଦେ:ଅ:* (ବି.) : ବାଦବିବାଦ, ଉତ୍ତର ପ୍ରତ୍ୟୁତ୍ତର, ପ୍ରଶ୍ନୋତ୍ତର, ଯୁକ୍ତିତର୍କ, ଯୁକ୍ତି ଉପସ୍ଥାପନ

**ଜବ୍ରା** - *ମ:* (ବି.) : ଅପରିଷ୍କାର

**ଜଭର** - *ସୁ:* (ବି.ବିଂ.) : ମୁହଁଖୋର, ଅତି ବଡ଼, ଜବର

**ଜଭେ** - *ଅନେ:* (କ୍ରି.) : ଜବା, ପଶୁହତ୍ୟା ବେଳେ ଆଲ୍ଲାଙ୍କ ନାମ ନେଇ ଯେଉଁ ହତ୍ୟା କରାଯାଏ(ଉର୍ଦ୍ଦୁ 'ଜବା' ଶବ୍ଦରୁ)

**ଜମ୍‌କିବା** - *ଦେ:* (କ୍ରି.) : ଡିଷ୍ଟିବା, ଜମିବା

**ଜମ୍‌କିବାର** - *ସୁବ:* (କ୍ରି.) : ସ୍ୱଚ୍ଛଳ ହେବା

**ଜମ୍‌ଖମ** - *ସୁ:* (ବି.) : ଦୃଢ

**ଜମକ** - *ଦେ:ସୁବ:* (ବି.) : ଜାକଜମକ, ଆଡମ୍ବର, ମଜା, ମଉଜ

**ଜମକନା** - *କୋ:ଗଜ:ଗ:* (ବି.) : ସତରଞ୍ଜି

**ଜମଜପାଣି** - *ଗଜ:* (ବି.) ଏକପ୍ରକାର କଉଡ଼ିଖେଳ

**ଜମଝାଳ** - *ଗଜ:* (କ୍ରି.) ଅତ୍ୟଧିକ ପରିଶ୍ରମର ପରିଣତି, ଭୟଭୀତ ହେବା

**ଜମନ** - *ଦେ:* (ବି.) : ଭକ୍ଷଣ, ମୈଥୁନ, ଖାଦ୍ୟଦ୍ରବ୍ୟ

**ଜମା** - *ଅନେ:* (ବି.ଅ.) ଟଙ୍କା ପଇସା ରଖିବା, ଗଚ୍ଛିତ, ଏକାଠି, ମୋଟ

ସଂଖ୍ୟା, ଆଦୌ, ମୂଳ, ସଂଚୟ କରିବା, ମାତ୍ର

**ଜମାଭତ** - *ପଦ୍ୟ:ପୁ:* (ବି.) : ନାଗା ସନ୍ୟାସୀ, ସାହିଯାତ୍ରାରେ ଜନସମାବେଶ

**ଜମାଟ** - *ଅନେ.* (ବି.) ଘନୀଭୂତ, ବହଳହେବା

**ଜମାଣି** - *ଖୋ:* (ବି.) : ଏକପ୍ରକାର ଧାନ, ଏକାଠି କରିବା ପ୍ରକ୍ରିୟା, ଅତିଭଲ

**ଜମାଣିଆଁ** - *ଅନେ.* (ବିଂ.) : ଜୋର୍‌ଦାର, ଅତି ଆଡ଼ମ୍ବର

**ଜମାଦାର** - *ଅନେ.* (ବି.) ହେଡ୍ କନେଷ୍ଟବଲ୍, ପୋଲିସ କର୍ମଚାରୀ

**ଜମାନ** - *ନବ:ଗଜ:ଦେ:* (ବି.) : ପୋଲିସ୍, ସମୟକାଳ, ଅମଳ

**ଜମାନତ** - *ଅନେ.* (ବି.) : ଜାମିନ୍

**ଜମାନବନ୍ଦୀ** - *ଅନେ.* (ବି.) : ବୟାନ ଦରଜ କରିବା

**ଜମାନା** - *ଭ:ସୁବ:* (ବି.) : ଯୁଗ, ସମୟ, ଏକ ସ୍ତର ବା ବ୍ୟକ୍ତିତ୍ୱଙ୍କ ଅଧୀନସ୍ଥ ସମୟ

**ଜମାବନ୍ଦି** - *ଅନେ.* (ବି.) : ପ୍ରଜାର ଜମିଜମାର ହିସାବ, ଜମି ଉପରେ ଖଜଣା ନିର୍ଣ୍ଣୟ କରିବା

**ଜମାବାର** - *ସୁବ:* (କ୍ରି.) : ଦିନ ବା ସମୟ ବା ନିୟମ

**ଜମାରୁ** - *ଅନେ.* (ଅ.) : ଆଦୌ, ମୋଟେ, ମୂଳରୁ, ମାତ୍ର

**ଜମାଲ୍** - *କଳା:* (ବି.) : କଳଦାନ୍ତ

**ଜମା ହେବା** - *ଅନେ.* (କ୍ରି.) : ଏକତ୍ର ହେବା

**ଜମିଜମା** - *ଅନେ.* (ବି.) : ଭୂସଂପତ୍ତି

**ଜମିଟାକାରା** - *ବା:* (ବି.) : ଜୁଆଣି

**ଜମିଦାର** - *ଅନେ.* (ବି.) : ରାଜାଙ୍କ ସାମନ୍ତ, ଜମି ମାଲିକ, ସଂପତ୍ତି ଅଧିକାରୀ

**ଜମିନ୍** - *ସୁବ:ବର:ଅ:* (ବି.) : ଜମି, କ୍ଷେତ

**ଜମିରହିବା** - *ଅନେ.* (କ୍ରି.) : ଲାଖି ରହିବା, ଆସକ୍ତ ହେବା

**ଜମି ସଞ୍ଜାଦେବା** - *ସଂ:* (ବି.) : ଜମି ଭାଗକୁ ଦେବା

**ଜମୁ** - *ଦେ:* (ବି.) : କେତକୀ ବୃକ୍ଷ

**ଜମେନ** - *ସୁବ:ସୁ:* (ବିଂ.) ଜମାଟ ବାନ୍ଧିଯାଇଥିବା ବାଲିପଡିଥିବା ଗୁଡ, ଘନ, ଜମାଟ

**ଜମୁରା** - *ଭ:* (ବି.) : ଜରିର ବିଶେଷ ରଂଗଥିବା ଫର୍ଦ୍ଦ

**ଜମ୍ବିର** - *ଗ:ଦେ:ବା:* (ବି.) : ଟଭା, କମ୍ବଳା ଜାତୀୟ ଖଟା ଫଳ

**ଜମ୍ବା** - *କଣ:* (ବିଂ.) : ପିତା

**ଜମ୍ବାଳି** - *କଣ:* (ବି.) : କଳଦାନ୍ତ

**ଜମ୍ବୁ** - *ଦେ:* (ବି.) : ଜାମୁଗଛ ଓ କୋଳି

**ଜମ୍ବୁକ** *ଦେ:* (ବି.) : ପଞ୍ଚଫଣା, ବରୁଣ ବୃକ୍ଷ

**ଜୟପକ୍ଷୀ** - *ଚ:* (ବି.) : କୁମ୍ଭାଟୁଆ

**ଜୟା** - *ଦେ:* (ବି.) : ଅଗବଥୁ ଗଛ, ଗଞ୍ଜାଇ, ଶମୀବୃକ୍ଷ

**ଜରକା** - *ଦେ:* (ବି.) : ଜଳକା, ଆଖିଥାଇ ଯେ ଦେଖିପାରେ ନାହିଁ

**ଜରଜର** - *ଅନେ.* (ବିଂ.ଅ.) : ଜର୍ଜରିତ, ଆକ୍ରାନ୍ତ, ଲିପ୍ତ, ଜରହେଲା ପରି ବୋଧ, ସନ୍ତପ୍ତ

**ଜରଡିଗ୍ରୀ** - *ଦେ:* (ବି.) : ଥର୍ମୋମିଟର, ଜ୍ୱରମାପ ଯନ୍ତ୍ର

**ଜରଦା** - *ଅନେ.* (ବି.) କଡ଼ା ପାନ ମସଲାବିଶେଷ

**ଜରବନା** - *ସୁ:* (ବି.) : ଜୋରିମାନା

**ଜରମଲୁ** - *ରା:* (ବି.) : ଜ୍ୱର ରୋଗୀ

**ଜରମାନୀ** - *ଗ:* (ବିଂ.) : ବୁଦ୍ଧିମାନ

**ଜରର୍** - *ସୁବ:* (ଅ.) : ଅତିଶୟ ଥଣ୍ଡା ପାଣିର ଅନୁଭୂତି ବାଚକ ଶବ୍ଦ

**ଜରଶଣ୍ଢା** - *ଅନେ.* (ବି.) : ଜର ଛାଡ଼ିବା ପରେ ଓଠରେ ହେବା ଘା

**ଜରସମନ୍** - *ଅନେ.* (ବି.) : ଜମି କିଣା ବେଳେ ଦିଆଯିବା ଟଂକା

**ଜରସୁଣ୍ଢା** - *ରା:* (ବି.) : ଜରଜନିତ ଘା'

**ଜରା** - *ଅନେ.* (ବି.) : ବାର୍ଦ୍ଧକ୍ୟ

**ଜରାଡ଼ି** - *ନ:* (ବି.) : ଏକ ମାଛର ନାମ

**ଜରାନିବାସ** - *ସ:* (ବି.) : ବୁଢାବୁଢୀଙ୍କ ଆଶ୍ରୟସ୍ଥଳୀ

**ଜରାୟୁ** - *ଦେ:* (ବି.) : ଅଗ୍ନିଲାଲ୍ ବୃକ୍ଷ, ଗର୍ଭାଶୟ

**ଜରାସୁର** - *ଗଦ୍ୟ:* (ବି.) : ମ୍ୟାଲେରିଆ ଜ୍ୱର

**ଜରି** - *ଅନେ:* (ବି.) : ରଙ୍ଗୀନ୍ କାଗଜ, ପଲିଥିନ୍, ଶାଢୀରେ ପଡ଼ିଥିବା ସୁନେଲି ରୂପେଲି ତନ୍ତୁ ସୂତା, ପ୍ଲାଷ୍ଟିକ ମୁଣି, ଝାଲର, ଅଶ୍ୱତ୍ଥ, ପିପ୍ପଳ ବୃକ୍ଷ

**ଜରିଆରେ** - *ଅନେ.* (ବି.ଅ.) : ମାଧ୍ୟମରେ, ମଧ୍ୟସ୍ଥତାରେ, ମଧ୍ୟବର୍ତ୍ତିତାରେ, ଅନ୍ୟଦ୍ୱାରା, ବାଟେ

**ଜରିଗଛ** - *ଗ:* (ବି.) ପଥର କାନ୍ଥରେ ଉଠିଥିବା ଗଛ

**ଜରିବ** - *ଅନେ.* (ବି.) : ଜମିମାପ ଲୁହା ଶିକୁଳି

**ଜରିବା** - *ଅନେ.* (ବି.କ୍ରି.) : ଭିଜିଯିବା, ଜଡ଼ିତ ହେବା, ଭେଦିଯିବା, ଜୀର୍ଣ୍ଣଶୀର୍ଣ୍ଣ ହେବା

**ଜରିବାନା** - *ସୁବ:* (ବି.) : ଜରିମାନା, ଅର୍ଥଦଣ୍ଡ

**ଜରିବୁଟୀ** - *ଦେ:* (ବି.) : ଜଡିବୁଟି

**ଜରି ଭାଜି** - *ନୂ:* (ବି.) : ଲେଉଟିଆ ଶାଗ

**ଜରିମାନା** - *ଅନେ.* (ବି.) : ଫାଇନ୍, ଅର୍ଥଦଣ୍ଡ

**ଜରିଯିବା** - *ସ.ବା:* (କ୍ରି.) : ସମୂଳେ ଗଛ ମରିଯିବା, ଝଡ଼ିଯିବା, ଅଳ୍ପ ପରିମାଣର ହୋଇଯିବା

**ଜରିଲଗା** - *ଜ:* (ବିଂ.) : ଅସହିଷ୍ଣୁ

**ଜରୁଆ** - *ଅନେ:* (ବିଂ.ବି.) : ବାରମ୍ବାର ଜ୍ୱର ରୋଗାକ୍ରାନ୍ତ, ବହୁତ ଦିନ ଜ୍ୱରରେ ପୀଡ଼ିତ ଥିବା

**ଜରୁର୍** - *ଅନେ:* (କ୍ରି.ବିଂ.ଅ.) ନିଶ୍ଚିତ ଭାବରେ

**ଜରୁରି** - *ଅନେ.* (ବି.) ଶୀଘ୍ର ଓ ଗୁରୁତ୍ୱପୂର୍ଣ୍ଣ

**ଜରୁରୀ** - *ଅନେ.* (ବିଂ.) : ଅତି ଆବଶ୍ୟକ, ଅନିବାର୍ଯ୍ୟ

**ଜରୁହା** - *ସୁ.ସ.ସୁବ.* (ବିଂ.) : ରୋଗଣା, ଯାହାକୁ ଜ୍ୱର ହୋଇଯାଏ

**ଜରେଲ୍** - *ନୁ.* (ବି.) : ମାଛ ବିଶେଷ

**ଜର୍** - *କଳା.ବର.ନୁ.* (ବି.) : ଜ୍ୱର୍, ରୋଗ ବିଶେଷ, କୌଣସି ରୋଗର ଉପସର୍ଗ ବିଶେଷ

**ଜର୍ସି** - *ଅନେ.* (ବି.) : ଖେଳାଳିଙ୍କ ଜାମା

**ଜର୍ସିଗାଈ** - *ସଂ.* (ବି.) : ଦୁଧିଆଳି ଗାଈ ବିଶେଷ

**ଜର୍ ଜର୍‌ବା** - *ସ.* (କ୍ରି.) : ଅତିଶୟ, ଜୋର୍ କରିବା

**ଜର୍‌ଜା** - *ମା.* (ବି.) : ଝର୍କା

**ଜର୍‌କିବା** - *କଝ.* (କ୍ରି.) : ସନ୍ତସନ୍ତିଆ ହେବା

**ଜର୍‌ଜରା** - *କଳା.* (ବିଂ.) : ଗାଢ଼ ଭାବରେ, ଦାଉଦାଉ ହୋଇ

**ଜର୍‌ଡ଼ା** - *ଝା.ଚୌ.* (ବି.) : ଏକ ପ୍ରକାର ମାଛର ନାମ, ଅତି ମିଠା ଛୋଟ ମାଛ

**ଜର୍ ତପ୍** - *ସ.* (ବି.) : ଜର ଲାଗିରହିବା

**ଜର୍‌ମନି** - *ସୁବ.* (ବି.) : ନକଲିସୁନା

**ଜଲ୍** - *ଭ.* (ବି.) : ଜଳ, ପାଣି

**ଜଲ୍‌ଜଲି** - *କଳା.* (ବି.) : ଅତ୍ୟଧିକ ବର୍ଷା ବା ଜଳ ସଂରକ୍ଷଣ ଯୋଗୁଁ ଜମିରେ ଝରବାହାରିବା ଭଳି ଅବସ୍ଥା

**ଜଲ୍‌ତା** - *କଳା.* (ବିଂ.) : ଜଳନ୍ତା, ଜ୍ୱଳନ୍ତ, ପ୍ରଜ୍ୱଳିତ

**ଜଲ୍‌ଦି** - *ଅନେ.* (ବିଂ.କ୍ରି.) : ଶୀଘ୍ର, ଚଂଚଳ, ବେଗି, ଝଟ୍

**ଜଲ୍‌ପଟି ହେବା** - *ଚୌ.* (କ୍ରି.) : ଦେହ ଉପରେ ଓଦାଳିଆ ହେବା

**ଜଲ୍‌ବା** - *କଝ.* (କ୍ରି.) : ଜଳିବା

**ଜଲଙ୍ଗିଆ** - *କଳା.* (ବି.) : ମଧୁଘି

**ଜଲପି** - *ଅନେ.* (ବି.) : ଏକପ୍ରକାର ମିଠା ଖାଦ୍ୟ, ଜିଲାପି

**ଜଲମ୍** - *କଳା.* (ବି.) : ଜନ୍ମ, ଆବିର୍ଭାବ, ଜନମ୍

**ଜଲସା** - *ଅନେ.* (ବି.) : ମହୋତ୍ସବ, ମଉଜ, ମଜ୍‌ଲିସ୍

**ଜଲା** - *ମା.* (ବି.) : ଝରଣା, ଛୋଲା

**ଜଲାଦି** - *ରା.* (ବି.) : ଭିକାରି

**ଜଲାବାର** - *ସୁବ.* (କ୍ରି.) : ଜଳାପୋଡା କରିବା

**ଜଲେଇବା** - *ରା.* (କ୍ରି.) : ପୀଡ଼ାଦେବା

**ଜଲଂଗିଆ** - *ଅ.* (ବି.) : ମଧୁଘି

**ଜଲ୍‌ଘଣ୍ଡେଇ** - *ମ.* (ବି.) : ଛୋଟ ଗେଣ୍ଡା

**ଜଲ୍‌ଘାଟ** - *ମ.ବ.* (ବି.) : ଝାଡ଼ାଫେରିବା, କେତେକ ଅଂଚଳରେ ପୋଖରୀପାଣି କହନ୍ତି

**ଜଲ୍‌ବୁତଲ୍** - *ମ.* (ବି.) : ପାଣିବୋତଲ

**ଜଳଓଧ** - *ସ୍ଥ.* (ବି.ବିଂ.) : ପାଣିରେ ରହୁଥିବା ଓଧ, ବୋକା ଅର୍ଥରେ

**ଜଳକଦୀଳ** - *ଚ୍ୟ.* (ବି.) : ପୋଖରୀରେ ଜନ୍ମୁଥିବା ଏକ ଉଦ୍ଭିଦ

**ଜଳକଳ** - *ଚ୍ୟ.* (ବି.) : ନଳକୂପ

**ଜଳକା** - *ଅନେ.* (ବି.ବିଂ.) : ଭଲଭାବେ ଦେଖିନପାରିବା, ଅଜଣା ହୋଇ କାମ କରିବା, ଆଖିକୁ ଦେଖା ନଯିବା, ଢାଲଢାଲୁଆ, ଦୃଷ୍ଟିଦୋଷ

**ଜଳକା ମେଣ୍ଢା** - *ସ୍ଥ.* (ବି.ବିଂ.) : ବୋକାଭଳି ଚାହିଁବା

**ଜଳକେଳି** - *ଅନେ.* (ବି.) : ଜଳକ୍ରୀଡ଼ା

**ଜଳଖିଆ** - *ଅନେ.* (ବି.) : ସାମାନ୍ୟ ଭୋଜନ, ସାମାନ୍ୟଖାଦ୍ୟ

**ଜଳଘେଣ୍ଟେଇ** - *ଚ୍ୟ.* (ବି.) : କୁଜିଗେଣ୍ଡା

**ଜଳଙ୍ଗ** - *ଅନେ.* (ବି.) : ଏକ ପ୍ରଜାତିର ମାଛ

**ଜଳଛାଆ** - *ଚ୍ୟ.* (ବି.) : ବାଡୁଅ ସ୍ଥାନ

**ଜଳଜଳ** - *ଅନେ.* (କ୍ରି.ବି.) : ସ୍ପଷ୍ଟ, ସ୍ଥିର ନିର୍ବାକ (ଚାହିଁବା)

**ଜଳଜଳା** - *ଅନେ.* (ବିଂ.ବି.) : ଅଲାଜୁକ, ବେହିଆ, ଚାହିଁ ରହିଥିବା ବ୍ୟକ୍ତି, ମୃତ୍ୟୁ କାମନା ସୂଚକ ଗାଳି

**ଜଳଜଳି ହାଣ୍ଡି** - *ଗ.* (ବି.) : ପ୍ରେତ ବିସର୍ଜନ କରିବା ହାଣ୍ଡି

**ଜଳଢଳେଇ** - *ଚ୍ୟ.* (ବି.) : ଶିବଙ୍କ ଲିଙ୍ଗରେ ଜଳ ଢାଳିବା କାର୍ଯ୍ୟ

**ଜଳତରଙ୍ଗ** - *ଅନେ.* (ବି.) : ବାଦ୍ୟ

**ଜଳଦୀକ୍ଷା** - *ଗ.* (ବି.) : ଖ୍ରୀଷ୍ଟଧର୍ମର ଡୁବନ

**ଜଳନ୍ତା** - *ଅନେ.* (ବିଂ.) : ଜଳୁଥିବା ନିଆଁ

**ଜଳପାତିଆ** - *ଗ.* (ବି.) : ଜଳରେ ପକ୍ଷୀ

**ଜଳପାନ** - *ସଂ.* (ବି.) : ଜଳଖିଆ

**ଜଳପ୍ଲାବନ** - *ସଂ.* (ବିଂ.) ଚାରିଆଡ ପାଣିରେ ପାଣିରେ ବୁଡ଼ିଯିବା

**ଜଳମଳ** - *ଦେ.* (ବି.) : ଫେମ୍ପଲ, ଫେଣ

**ଜଳଯନ୍ତ୍ର** - *ଅନେ.* (ବି.) : ଖଟଖୁରା ତଳେ ପାଣି ରହି ପାରୁଥିବା ପଥର କୁଣ୍ଡୀ

**ଜଳଲାଗିବା** - *ଅ.* (କ୍ରି.) ଶିବଙ୍କର ଜଳାଭିଷେକ କରିବା

**ଜଳଶାୟୀ** - *ଦେ.* (ବି.) ଶିବଲିଙ୍ଗକୁ ପାଣିରେ ବୁଡାଇ ଅଭିଷେକ କରିବା

**ଜଳସାଇଁ** - *ଗ.* (ବି.) ଶିବାଳୟର ଜଳାଭିଷେକ, ଜଳଶାୟୀ

**ଜଳା** - *ଅନେ.* (ବି.) : ଅମୃତଭଣ୍ଡା, ଛିଦ୍ର, ରନ୍ଧ୍ର, ଜଳପୂର୍ଣ୍ଣ ସ୍ଥାନ, ଋକ୍ଷ, ଖାଲ ବିଲ, ଗଳାବାଟ, ରଂଧା

**ଜଳାକବାଟି** - *ନ.ସଂ.ଗଜ.* (ବି.) : ଛୋଟ ଝରକା

**ଜଳାକାନ୍ଧିଆ** - *ଚ୍ୟ.* (ବିଂ.) : କାନ୍ଧରେ ଭାର ବହନ କରିବାକୁ କୁଣ୍ଠିତ ହେଉଥିବା ବ୍ୟକ୍ତି

**ଜଳାଞ୍ଜଳି** - *ଅନେ.* (ବି.) : ଉତ୍ସର୍ଗ, ତ୍ୟାଗ, ପରିତ୍ୟାଗ

**ଜଳାତଙ୍କ** - *ଅନେ.* (ବି.) : ବାୟା ବିଲୁଆ ବା କୁକୁର କାମୁଡାରେ ହେଉଥିବା ରୋଗ

**ଜଳାତିଳା** - *ଗ.* (ବି.) : ଦଶାହରେ ମୃତବ୍ୟକ୍ତିଙ୍କ ଉଦ୍ଦେଶରେ ତିଳତର୍ପଣ

**ଜଳାପଞ୍ଜୁରୀ** - *ଗ.* (ବି.) : କାନ୍ଥ ଦେହରେ ଥିବା ଛୋଟ ଝରକା

**ଜଳାପୋଡ଼ା** *ଅନେ.* (ବି.) : ଜଳିବା ପୋଡ଼ିବା ଯନ୍ତ୍ରଣା, ଜାଳିବା ପୋଡ଼ିବା କାର୍ଯ୍ୟ

**ଜଳାବାଟ** - *ଢେ.ଗ.* (ବି.) କବାଟରେ ରଖିଥିବା କଣା, ଜଳାକବାଟି, କାନ୍ଥରେ ଥିବା ଗଳା ରାସ୍ତା, ଛିଦ୍ର

**ଜଳିଆ** - *ଗ.* (ବି.) : ଔଷଧ କାଟୁ ନକରିବା

**ଜଳି, ଜଳୀ** - *ଗ.* (ବି.) : ଦୁର୍ଗ ନିକଟ ପରିଖା,ନାଳ

**ଜଳିବା** - *ପୁ.ଦେ.ନ.* (ବି.) : ତୋଫା ଦିଶିବା, ଆକର୍ଷଣୀୟ ଦିଶିବା, ଈର୍ଷା, ପୋଡ଼ିଯିବା କ୍ରିୟା

**ଜଳୋଦରୀ** - *ଦେ.* (ବି.) : ଉଦର ରୋଗ ବିଶେଷ, ପେଟରେ ପାଣି ଭରିଯିବା

**ଜଳ୍ପନା** - *ଗଦ୍ୟ.* (ବି.) : କଥନ, ଅନେକ କଳ୍ପନା, ବାଚାଳତା

**ଜହ** - *ଅନେ.* (ବିଂ.) : ବେଶୀ, ଅଧିକ ପରିମାଣ

**ଜହକିରି** - *ସୁବ.* (ବିଂ.) : ବେଶି ପରିମାଣ

**ଜହରତି** - *ଦେ.* (ବି.) : ମଣିମୁକ୍ତା, ରତ୍ନ ପଥର

**ଜହରି** - *ଖୋ.* (ବିଂ.) ଲାଉଚୋର, ବ୍ୟବସାୟୀ

**ଜହର୍** - *ଅନେ.* (ବି.) : ବିଷ, ମହୁରା, ପ୍ରାଣନାଶକାରୀ ଖାଦ୍ୟ

**ଜହଲ** - *ସୁ.ସ.କଳା.* (ବି.) ଜେଲ୍, କାରାଗାର

**ଜହଲିଆ** - *ଝା.ଚୌ.* (ବିଂ.) : ଜେଲ୍ ଦଣ୍ଡ ଭୋଗିଥିବା ଲୋକ

**ଜହଳେଇ, ଝହଲେଇ** - *ନ.* (ବି.) : ଡରାଇ

**ଜହାରି** - *କଅ.ଦେ.* (ବି.) : ଜୁହାର, ନମସ୍କାର, ମଣିମୁକ୍ତା ବଣିକ

**ଜହାରୀ ପିଠା** - *ଗଦ୍ୟ.* (ବି.) ଏକ ଯନ୍ତାପିଠା

**ଜହଁ** - *ଚୌ.* (ବିଂ.) : ଅଧିକ, ବେଶୀ, ଜହ

**ଜହ୍ନପୁକ୍** - *ମ.* (ବି.) : ଜୁଳୁଜୁଳୁଆ ପୋକ

**ଜହ୍ନି** - *କେ.ଖୋ.* (ବି.) : ପରିବା ବିଶେଷ

**ଜହ୍ନିଓଷା** - *ଦେ.* (ବି.) : ଆଶ୍ୱିନ ପୂର୍ଣ୍ଣିମାରେ ଝିଅମାନଙ୍କ ବ୍ରତ ବା ଓଷା

**ଜହ୍ନି ପୋକ** - *ଗ.* (ବି.) : ଜୁଳୁଜୁଳିଆ ପୋକ

**ଜହ୍ନା** - *କେ.ଖୋ.* (ବି.) : ଏକ ପ୍ରକାର ମାଛ

**ଜହ୍ଲାଣିଆ** - *ଚ.* (ବିଂ.) : ଜମକେଇ, ଆଡ଼ମ୍ବର

**ଜହ୍ଲାଦ** - *ଖୋ.* (ବିଂ.) : ହତ୍ୟାକାରୀ

**ଜାଆ** - *ଅନେ.* (ବି.) : ଦେଢ଼ଶୁର ବା ଦିଅରର ସ୍ତ୍ରୀ

**ଜାଆଁଳ** - *ଅନେ.* (ବି.) : ମାଛଛୁଆ; ସଦ୍ୟ ଡିମ୍ବଜାତ ଛୋଟ ମାଛ

**ଜାଇ** - *ଅନେ:* (ବି.) : ଏକ ଉପଜାତି, ଡାଲି, ଚୋପା ଛଡ଼ା ଡାଲି, କଳାଜାଇ, ଜାଇ ଫୁଲ

**ଜାଇକାଠ** - *ଗଞ:* (ବି.) : ଏକପ୍ରକାର ତୃଣ

**ଜାଇ ଚୂରା** - *ଗ:* (ବି.) : ବିବାହ ପୂର୍ବରୁ ଶୁଭ ଦିନ ଦେଖି ଡାଲି ଚୂରିବା ପ୍ରଥା

**ଜାଇଣ୍ଟି** - *କଝ:* (କ୍ରି.) : ଯୋଡିବା

**ଜାଇଣ୍ଟ ମାଜିଷ୍ଟ୍ରେଟ** - *ଗଞ:* (ବି.) : ଉପ ବିଚାରପତି

**ଜାଇଣ୍ଟ ସମ୍ପତ୍ତି** - *ଗ:* (ବି.) : ମିଳିତ ଧନ କୋଠଧନ

**ଜାଇପତ୍ରି** - *ଗ:* (ବି.) : ସୁଗନ୍ଧ ଔଷଧୀୟ ଗୁଳ୍ମ ପଦାର୍ଥ, ଜାଇତ୍ରି

**ଜାଇଫଳ** - *ନ:ଦେ:* (ବି.) : ଏକ ସୁଗନ୍ଧିତ ଫଳ, ଔଷଧୀୟ ଫଳ ବିଶେଷ

**ଜାଇମନ୍ଦା** - *କୋ:ଦେ:* (ବି.) : ଶରୀରରେ ବଡ଼ କଳା ଚିହ୍ନ ବା ପାଣ୍ଡୁର ବର୍ଣ୍ଣର ଚିହ୍ନ, ତିଳ ଚିହ୍ନ

**ଜାଇ ରଗଡ଼ା** - *ଦେ:* (ବି.) : ଶୁଭ କାମ ପାଇଁ ଜାଇ ବା ଡାଲି ପ୍ରସ୍ତୁତ କରିବା

**ଜାଇଲ** - *କୋ:* (ବି.) : ମଧୁର ଜଳର ସରୁକାତିଯୁକ୍ତ ଚୁନାମାଛ ବିଶେଷ

**ଜାଇଁ, ଦାଇଁ** - *ସ:* (ବି.) : ଦୀର୍ଘ ଦଉଡ଼ି

**ଜାଉ** - *ଅନେ:* (ବି.କ୍ରି.) : ଚାଉଳରେ ତିଆରି ଖାଦ୍ୟ ବିଶେଷ, ଅତିସିଝା ଭାତ ବା ମାଣ୍ଡିଆ, ଢ଼ୁଖା ବା ଚାଉଳ ଖୁଦ ବା ମାଣ୍ଡିଆରେ ରନ୍ଧା ମଣ୍ଡମଣ୍ଡିଆ ଭାତ

**ଜାଉଆ** - *ଅନେ.* (ବି.) : ଜାଉ ଭଳି ଅଧିକ ସିଝିଥିବା ଦ୍ରବ୍ୟ

**ଜାଉଁ** - *ଗୀ:* (ବି.) : ଜାଉ

**ଜାଉଁରୀ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ଜାଏତ୍** - *କଳା:ବର:ନୂ:* (ବି.ବିଂ.) : ଜାତି, ବର୍ଣ୍ଣ

**ଜାଓ୍ୱା** - *ଗୀ:* (ବି.) : ଗଳାଭାତ, ଜାଉଆ

**ଜାଓ୍ୱାଁୟ** - *ମ:* (ବି.) : ଜ୍ୱାଇଁ

**ଜାକ** - *ଅନେ:* (ବି.) : ଛୋଟ ହେବା, ଲଗାଲଗି, ଗହଳି, ଭିଡ

**ଜାକ୍‌ଟି** - *ମା:* (ବି.) : ବ୍ଲାଉଜ, ଅଙ୍ଗବସ୍ତ୍ର ବିଶେଷ

**ଜାକ୍‌ପିଢ଼ା** - *କଳା:* (ବି.) ଜିନିଷପତ୍ର, ଦ୍ରବ୍ୟାଦି

**ଜାକଜମକ** - *ଅନେ.* (ବି.) ଆଡ଼ମ୍ବର, ସମାରୋହ, ଚାକଚକ୍ୟ

**ଜାକଜୁକ** - *ଅନେ.* (ବି.) : ଲଗାଲଗି

**ଜାକଢ଼** - *ଖୋ:* (ବି.) ତନ୍ତ ଉପରେ ବନ୍ଧାହୋଇଥିବା ଉପକରଣ

**ଜାକଢ଼ି** - *ସୁ:* (ବିଂ.) : ବାୟାଣୀ

**ଜାକସରି** - *ଗ:* (ବି.) : ଶିଶୁଙ୍କ ଅତିସାର ରୋଗ

**ଜାକାଟ୍** - *ଗଞ:ଗୀ:* (ବି.) : ବ୍ଲାଉଜ୍

**ଜାକାର** - *ଗୀ:* (ବିଂ.) : ବହଳିଆ

**ଜାକିବା** - *ଅନେ.* (ବି.କ୍ରି.) : ପାଟିରେ ବା କାଖରେ ଚାପି ରଖିବା, ଦୁଇ ଆଣ୍ଠୁ ଚାପିବା, ଭିଡି ଧରିବା, କୁଣ୍ଢାଇବା, ଲୁଚାଇବା

**ଜାକିମି** - *ରା:* (କ୍ରି.) : ଜଖମହେବା

**ଜାକୁସି** - *ନ:ଗଜ:* (ବି.) : ଚର୍ମରେ ପାଣିଲାଗି ସୃଷ୍ଟିହେଉଥିବା ରୋଗ, ଶିଶୁରୋଗ ବିଶେଷ

**ଜାଖଡା** - *ରା:* (ବି.) : ସ୍ତ୍ରୀଲୋକଙ୍କ ଜାକେଟ

**ଜାଗ୍‌ଦା** - *ଖୋ:* (ବି.) : ଏକ ପ୍ରଜାତିର ଚିଙ୍ଗୁଡ଼ି, ବାଗ୍‌ଦା ଚିଙ୍ଗୁଡ଼ି

**ଜାଗ୍‌ବା** - *ନୂ:* (କ୍ରି.) : ଜାଗ୍ରତ ହେବା, ଚେଇଁବା, ଅଙ୍କୁରିବା

**ଜାଗଡିଆର** - *ଅନେ.* (ବି.ବିଂ.) : ସାବଧାନ, ସତର୍କ, ଚେଇଁ ରହିବା

**ଜାଗର** - *ଅନେ.* (ବି.) : ଶିବରାତ୍ରି ଉତ୍ସବ, ଉଜାଗର, ଶିବରାତ୍ରିରେ ଦୀପ ଜାଳିବା

**ଜାଗର-ହନୁ** - *ପୂ:* (ବି.) : ଭାଙ୍ଗ ଖାଇ ବା ରାତି ଅନିଦ୍ରା ହୋଇ ଆଖି ଢୁଳୁଢୁଳୁ କରୁଥିବା ବ୍ୟକ୍ତି

**ଜାଗର୍ତ** - *ଗଜ:* (ବି.) : ଜାଗ୍ରତ, ସାବଧାନ

**ଜାଗା** - *ଅନେ.* (ବି.) : ଆଖଡ଼ା, କୁସ୍ତି କରିବା ସ୍ଥାନ, ଘରଡିହ, ସ୍ଥାନ, ପାତ୍ର, ନିର୍ଦ୍ଦିଷ୍ଟ ଅଞ୍ଚଳ

**ଜାଗାଟାକା** - *କନ୍ଧ:* (କ୍ରି.) : ଜଗିବା

**ଜାଗିଆକରିଦବା** - *ବ:* (କ୍ରି.) : ଖାଇବା ପାଇଁ ଆସନ ପାଡିବା

**ଜାଗିରି** - *ଦେ:* (ବି.) : ଜାଗିରି, ବେତନ ବଦଳରେ ନିଷ୍କର ଜମି ବା ଗ୍ରାମ, ପ୍ରଦତ୍ତଭୂମି

**ଜାଗିରିଖିଆ** - *କ:* (ବି.) : ଭୂମି ବା ଧାନ ବଦଳରେ କାମ କରୁଥିବା ବ୍ୟକ୍ତି

**ଜାଗିରିଦାର** - *ଅନେ.* (ବି.) : ଜାଗିରି ଭୋଗ କରିବା ବ୍ୟକ୍ତି

**ଜାଗିଲି** - *ଗ:ରା:ଗଜ:* (ବି.ବିଂ.) : ଗଞ୍ଜାମରେ ବାସ କରୁଥିବା ଅନୁସୂଚିତ ଜାତି ବିଶେଷ

**ଜାଗୁଆର** - *ସ:* (ବି.) : ଏକ ଚିତାବାଘ ଯିଏକି ଗଛ ଚଢ଼ିପାରେ ଓ ପାଣିରେ ପହଁରିପାରେ

**ଜାଗୁଲି** - *ଗ:* (ବି.) : କ୍ଷୁଦ୍ର ମାଟିପାତ୍ର, ହାଣ୍ଡି

**ଜାଗେଜାଗେ** - *ଅନେ.* (ବି.) : ସ୍ଥାନେସ୍ଥାନେ

**ଜାଙ୍ଗ୍** - *ଯା:* (ବି.) : ହାଡ

**ଜାଙ୍ଗ, ଜାଁଘ୍** - *ବର:* (ବି.) : ଜଂଘ

**ଜାଙ୍ଗଲ୍** - *ସ:ଖା:ବୌ:* (ବି.ବିଂ.) : ଶରୀର, ସାମର୍ଥ୍ୟ, ବଳ

**ଜାଙ୍ଗଲ୍‌ଖାଇ** - *ସ:ବୌ:* (ବିଂ.) : ଯିଏ କାମ କରେ ନାହିଁ, ଅଳସୁଆ ସ୍ତ୍ରୀ

**ଜାଙ୍ଗଲି** - *ଦେ:ପଦ୍ୟ:* (ବି.) : ବଳି, ବର୍ଷା ନହେଲେ ଜଙ୍ଗଲି ନାଚ କରାଯାଏ

**ଜାଙ୍ଗଳ** - *ଦେ:* (ବି.) : ମାଂସ, ତିତିରିପକ୍ଷୀ, ଅସଭ୍ୟ, ଅରଣ୍ୟମୟ

**ଜାଙ୍ଗଳା** - *ଖୋ:କେନ୍ଦୁ:* (ବି.) : ଶକ୍ତି

**ଜାଙ୍ଗା** - *ରା:* (ବି.) : ଜଙ୍ଘ

**ଜାଙ୍ଗୁ** - *ଗ:* (ବି.) : କଳଙ୍କି, ଜଙ୍କ୍

**ଜାଙ୍ଗୁଲ ଜାଙ୍ଗୁଲ** - *ଅନେ:* (ବିଂ.) : ପାହାନ୍ତିଆ ସମୟ, ଭୋର ସମୟ, ପାହି ଆସୁଥିବା (ରାତି), ଅନ୍ଧାରୁଆ, ତ୍ରିସଂଧ୍ୟାର ଅବ୍ୟବହିତ ପରର ଅନ୍ଧାର, ମାଛି ଅନ୍ଧାର

**ଜାଜାଣି** - *କଳ:* (ବି.) : ଥାଳି

**ଜାଞ୍ଜୁ ନାଡ଼ାଙ୍ଗି** - *କଳ:* (ବି.) : ଜହ୍ନରାତି

**ଜାଟ** - *ଗ:* (ବି.) : ଭିଡ଼

**ଜାଟକା** - *ରା:* (ବି.) : ଗୋଟିଏ ଘୋଡ଼ା ଟାଣୁଥିବା ଗାଡ଼ି

**ଜାଟି** - *ଅନେ:* (ବି.ବିଂ.) : ଜଞ୍ଜାଳ, କୁଟିଳ ବିଷୟ, ଅସୁବିଧା, ବିଶୃଖଂଳା, ଅବଶେଷ ପରିସ୍ଥିତି

**ଜାଠ** - *ପୁ:* (ବିଂ.) : କୃପଣ

**ଜାଠିମହୁ** - *ଗ:* (ବି.) : ଔଷଧୀୟ ଗୁଳ୍ମ ବିଶେଷ-ଯଷ୍ଟି ମଧୁ

**ଜାଡ୍‌ଲା** - *ବୌ:* (ବି.କ୍ରି.) : ଜାଡ଼, ଥଣ୍ଡା ଲାଗିଲା

**ଜାଡ଼** - *ଅନେ:* (ବି.ବିଂ.) : କୋହଲା ପାଗ ସହ ଶୀତ, ଥଣ୍ଡା ଅନୁଭବ

**ଜାଡ଼ା** - *ଗଞ:ରା:ମ:ବୌ:* (ବି.ବିଂ.) : ଜଡ଼ା, ମୂକ, କଥା କହିନପାରିବା

**ଜାଡ଼ିଯିବା** - *ଦେ:* (କ୍ରି.) : ଥଣ୍ଡା ହେବା, କାଲ ମାରିବା, ଶୀତଳ ହେବା

**ଜାଡ଼ିଯିବା** - *ଗ:* (ବି.) : ପାଟି ଖନି ମାରିଯିବା, ମୂକ ହୋଇଯିବା

**ଜାଡ଼ିହାଣ୍ଡି** - *ଗଞ:* (ବି.) : ଶସ୍ୟାଦି ସୁରକ୍ଷା ନିମିତ୍ତ ମାଟିର ବଡ଼ ହାଣ୍ଡି

**ଜାଢୁଆ** - *ଟି:* (ବି.) : ଏକପ୍ରକାର ମାଛ

**ଜାଢୁଆଳି** - *କ:କେ:ଗ:* (ବି.) : ଶୀତ ବସ୍ତ୍ର, ଶୀତରେ ଉଷ୍ଣୁମ ଦେଇପାରୁଥିବା ଲୁଗା

**ଜାଢ଼େଇଯିବା** - *ମ:* (କ୍ରି.) : କାଠପରି ହୋଇଯିବା, କୋଲ ମାରିଯିବା

**ଜାଢ଼େନ୍ ବୁଢୀ** - *କଳା:* (ବି.) : ଆଦିବାସୀ ଲୋକଦେବୀ ବିଶେଷ

**ଜାଣ** - *ଗ:ଦେ:* (ବି.) : ମାଛ ଧରିବା ସ୍ଥାନ, ଚିହ୍ନ, ମନେକର, କ୍ରିୟା ରୂପରେ ଜାଣିବାକୁ ନିର୍ଦ୍ଦେଶ

**ଜାଣତରେ** - *ଗଞ:ଖୋ:* (ବି.) : ଜାଣୁ ଜାଣୁ, ଜ୍ଞାତ ସାରରେ

**ଜାଣିତୀର୍ଥ** - *ପୁ:* (ବିଂ.) : ଜାଣିସିହାଣା, ଜାଣିଜାଣି ନ ଜାଣିବାର ଭାବ ପ୍ରକାଶ କରୁଥିବା

**ଜାଣିବାର** - *ନବ:* (ବିଂ.) : ଜ୍ଞାନୀ

**ଜାଣୁଆ** - *ଟି:* (ବି.) : ବଡ଼ ମାଟିହାଣ୍ଡି

**ଜାଣ୍ଠିଁ** - *ରା:* (ବି.) : ଜନ୍ତା

**ଜାଣ୍ଡା** - *ରା:* (ବି.) : ପତାକା, ଝଣ୍ଡା

**ଜାତିଆ** - *ସଂ:କୋ:* (ବିଂ.) : ଭଲ, ଉତ୍କୃଷ୍ଟ

**ଜାତିଆଣ** - *ଅନେ:* (ବି.ବିଂ.) ଜାତି ସମ୍ପର୍କୀୟ, ଜାତିଗତ

**ଜାତିଭାତ** - *ଗ୍ରା:* (ବି.) ବଂଶକୁଳର ଭୋଜିଭାତ

**ଜାତିହେବା** - *ଅନେ:* (କ୍ରି.) : ପ୍ରାୟଶ୍ଚିତ୍ତ ହେବା, ପତିତ ଅବସ୍ଥାରୁ ମୁକ୍ତ ହୋଇ ନିଜ ଜାତିରେ ପୁନରାୟ ମିଶିବା

**ଜାଦା** - *କଳା:* (ବିଂ.) : ଅଧିକ, ବେଶୀ

**ଜାନ** - *ଚ:ଭ:କଳା:* (ବି.ବିଂ.) : ମାଛମାରିବା ବାଉଁଶରେ ତିଆରି ଉପକରଣ, ଜୀବନ, ପ୍ରାଣ, ଜୀବନ, ଲମ୍ବା ଓ ମୋଟା ବାଉଁଶ ପାତିଆକୁ ଶିଆଳି ଦଉଡ଼ିରେ ଗୁନ୍ଥି ପ୍ରସ୍ତୁତ କରାଯାଇଥିବା ଏକ ଜାଲ

**ଜାନ୍ ଅଜାନ୍** - *ସ:* (ବି.) : ସାମାନ୍ୟ

**ଜାନ୍‌ବା** - *ଅନେ:* (କ୍ରି.) : ଜାଣିବା

**ଜାନ୍‌ବାର** - *ସୁବ:କଳା:* (ବିଂ.ବି.) : ଜାଣିବା ଶୁଣିବା ଲୋକ, ଜାଣିବାର, ସଚେତନ

**ଜାନ୍‌ବେଡ଼ା** - *ସ:* (ବିଂ.) : ମୂର୍ଖ, ଯିଏ ଜାଣି ଜାଣି ମୂର୍ଖ ଆଚରଣ କରେ

**ଜାନ୍‌ଲା** - *ଟ:* (ବି.) : ଝରକା

**ଜାନତ୍** - *ଅ:କଳା:* (କ୍ରି.) : ଜାଣିବାରେ, ଜାଣନ୍ତୁ

**ଜାନବାରି** - *ସୁବ:* (ବିଂ.) : ସବୁ ଜାଣିଥିବା ଲୋକ, ଅବଜ୍ଞା ସୂଚକ ଓ ନିନ୍ଦକ ଅର୍ଥରେ ଏହି ଶବ୍ଦ ବ୍ୟବହୃତ ହୁଏ

**ଜାନା** - *ରା:* (ବି.) : ମକା

**ଜାନାଜାନା** - *କନ୍ଧ:* (କ୍ରି.) : ଜାଣିଜାଣି

**ଜାନି** - *ଅନେ:* (ବି.କ୍ରି.) : ପୁରୋହିତ, ଗ୍ରାମ ଦେବତାଙ୍କ ପୂଜକ, ଜାତିବିଶେଷ, ଆଦିବାସୀଙ୍କ ପୁରୋହିତ, ସ୍ତ୍ରୀ, ଭାର୍ଯ୍ୟା, ଜାଣି, ଜାଣିପାରିବା

**ଜାନୁ** - *ଦେ:* (ବି.) : ଜଙ୍ଘ

**ଜାନୁକମ୍ପିବା** - *ସଂ:* (କ୍ରି.) : ବହୁତ ଶୀତହେବା

**ଜାନୁଘଣ୍ଟ** - *ଅନେ:* (ବି.) : ପର୍ଶୁରାମ ଅବତାର ଲୋକ ନୃତ୍ୟ, ଜାନୁରେ ଘଣ୍ଟି ବାନ୍ଧି ସାହିବୁଲି ଭିକ୍ଷା ମାଗନ୍ତି

**ଜାନୁଚେଁ** - *କଳା:* (କ୍ରି.) : ଜାଣୁଛି

**ଜାନୁଭଙ୍ଗା** - *ଟ:* (ବିଂ.) ଠିଆ ହୋଇଥିବାବେଳେ ଯାହାର ଆଣ୍ଠୁ ପଛକୁ ବୁଲିଥାଏ

**ଜାହ୍ନୁସି** - *କନ୍ଧ:* (ବି.) : କଜଳପାତି

**ଜାନ୍ନା** - *ବଉ:* (ବି.) : ଝରକା

**ଜାପ୍‌ଟିବା** - *କୋ:* (କ୍ରି.) : ଜାବୁଡ଼ି ଧରିବା

**ଜାପଟ** - *ଗ୍ରା:* (ବି.) : ଧାନଗଦା ଉପରେ ଦିଆଯିବା ମୁଦ

**ଜାପାନୀ** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ଜାପାନୀ ଚାଷ** - *ଗ୍ରା:* (ବି.) : ଜାପାନୀ ପ୍ରଣାଳୀର ଧାନଚାଷ ଯାହା ୧୯୭୦ ବେଳେ ଗଞ୍ଜାମରେ ପ୍ରଚଳିତ ହେଲା

**ଜାପିତା** - *ଗ୍ରା:* (ବି.) : ତାଲିକା, ଦ୍ରବ୍ୟସୂଚୀ

**ଜାଫରାନୀ ପତି** - *ଗ୍ରା:* (ବି.) : ପାନରେ ବ୍ୟବହୃତ ସୁଗନ୍ଧ ବୈଦେଶିକ ମସଲା ବିଶେଷ

**ଜାଫରି** - *ଗ:* (ବି.) : କାଠ ଓ ଲୁହାର ଛିଦ୍ରଯୁକ୍ତ ବାଡ଼

**ଜାଫିରି** - *କ:* (ବି.) : ମାଟି ଅଟକିବାପାଇଁ ବାଉଁଶବତାରେ ତିଆରି ଜାଲଣା

**ଜାଫେନ୍** - *ସୁ:* (ବି.) : ଦାମ୍ଫଣ

**ଜାବ** - *ଗଦ୍ୟ:ଗ:* (ବି.) : ଝାଳ, ପାଟିରୁ ନିର୍ଗତ ଲାଳ

**ଜାବ୍‌ବାବ୍** - *ରା:* (କ୍ରି.) : କଣ୍ଠା ପଶିବା

**ଜାବଡା** - *ଦେ:* (ବି.) : ଚାପୁଡା

**ଜାବା** - *କଥ:* (ବି.) : ଭାତ

**ଜାବିବା** - *ବ:* (କ୍ରି.) : ଜୋରରେ ଆଣ୍ଡିବା

**ଜାବିହେବା** - *ନ:* (କ୍ରି.) : ଚିପି ହୋଇଯିବା

**ଜାବୁଘାସ** - *କୋ:* (ବି.) ପାଣିରେ ହେଉଥିବା ଘାସ ବିଶେଷ

**ଜାବୁଡ଼ା** - *ସଂ:* (ବି.) : ଚାପୁଡ଼ା

**ଜାମ** - *ଅନେ:* (ବି.ବିଂ.) : ପିଙ୍କୁଳି, କଂସା ପାତ୍ର(ବେଲା), ଜାମୁକୋଳି ଓ ଗୁଡ଼ ମିଶ୍ରିତ ଚଟଣି, ବହୁତ ଭିଡ଼

**ଜାମ୍‌କଲି** - *ଜୋ:* (ବି.) : ଜାମୁକୋଳି

**ଜାମ୍ କଳା** - *ବୌ:* (ବି.) : ଗାଢ଼ କଳା

**ଜାମ୍‌ଲି** - *ନୂ:* (ବି.) : ଜାମୁକୋଳି

**ଜାମଡ଼ା** - *ପୁ:* (ବି.) : ଆଡ଼ମ୍ବର ପୂର୍ଣ୍ଣ

**ଜାମହରି** - *ମ:* (ବି.) : ଖଟାକମଳା

**ଜାମା** - *କେ:ଅ:କେନ୍ଦୁ:* (ବି.) : ସାର୍ଟ, କୁର୍ତ୍ତା, ପୋଷାକ

**ଜାମାଇଁ** - *ମ:* (ବି.) : ଜ୍ୱାଇଁ

**ଜାମାଜୋଡ** - *ସଂ:ଭ:ଯା:* (ବି.) : ପୋଷାକ, ଲୁଗାପଟା, ପୋଷାକରେ ସଜେଇହେବା

**ଜାମାଳି** - *କୋ:ନବ:* (ବି.) : ପାଟିର ତଳ ମାଢ଼ି, ହନୁ ହାଡ଼

**ଜାମି** - *ଗ:ନବ:କଥ:* (ବି.) : ପିଙ୍କୁଳି

**ଜାମିନ** - *ଗ:ସୁ:ଦେ:* (ବି.) : ଅନ୍ୟ ପାଇଁ ବନ୍ଧକ ରହିବା, ଜିମା, ମଧ୍ୟସ୍ଥି, ଅନ୍ୟପାଇଁ ଦାୟୀରହିବା ମୁଚାଲିକା,

**ଜାମିର** - *ମ:* (ବି.) : କମଳା

**ଜାମୁଆ** - *ଗ:ରା:ନ:* (ବି.ବିଂ.) ମାଂସପେଶୀରେ ବଥଚିହ୍ନ, ଆଘାତ କଳା ଚିହ୍ନ, ରକ୍ତ ସଞ୍ଚାଳନ ନ ହୋଇ ଦେହର ଅଂଶ ନୀଳ ହେବା

**ଜାମୁକା** - *ରା:* (ବି.) : ପିଲାଙ୍କ ଖେଳନା, ଛୋଟ ଝୁମୁକା

**ଜାମୁଡାଲି** - *ବୌ:* (ବି.) : ସମ୍ବଲପୁରୀ ନାଚ ବିଶେଷ

**ଜାମୁରଲା** - *କଳା:* (ବି.) : କଞ୍ଚାରେ ଖଟା ଓ ପାଚିଲେ ଖଟା ମିଠା ଲାଗୁଥିବା କୋଳିଜାତୀୟ ଜଂଗଲୀ ଫଳ ବିଶେଷ

**ଜାମୁରୋଳ** - *ଭ:* (ବି.) : ଫଳ ବିଶେଷ, ଗୋଲାପଜାମୁ ଫଳ

**ଜାମୁଳି** - *ଗ:* (ବି.) ବାଣୁଆମାନେ ବନ୍ଧୁକରେ ଲାଛିବା ପାଇଁ ଯେଉଁ ଦଉଡ଼ିରେ ଅଗ୍ନି ସଂଯୋଗ କରଂତି

**ଜାମ୍ ଛତି** - *ଜଗ:* (ବି.) : ଜାମୁକୋଳି ପରି ଛତୁ, ଏକପ୍ରକାରର ଫଳଗଛ

**ଜାମ୍ବ** - *ଅ:ରା:ଗ:* (ବି.) : ପିଜୁଳି, ଜାମୁ ଜଙ୍ଗଲି ବୃକ୍ଷ ବିଶେଷ

**ଜାମ୍ବିର** - *ଗ:* (ବି.) : ଅତ୍ୟନ୍ତ ଖଟା ସ୍ୱାଦର କମଳା

**ଜାୟଗା** - *ଚ୍ଚ:* (କ୍ରି.) : ଜାଗା, ଆସନ

**ଜାୟଗିରି** - *ଚ୍ଚ:* (ବି.) : ଜାଗିରି

**ଜାରଣ** - *ଦେ:* (ବି.) : ଶୋଧନ

**ଜାରଣା** - *ରା:* (ବି.) : ଝରଣା

**ଜାରମହୁରା** - *ଦେ:ଭ:* (ବି.) : ଶଙ୍ଖୁଆ ବିଷ, ସାପବିଷ କଟିବା ପଦାର୍ଥ

**ଜାରି** - *ଅନେ:* (ବି.ବିଂ.) : ପ୍ରବର୍ତ୍ତନ, ଲାଗୁ ହେବା, ନିର୍ଦ୍ଦେଶ ଦେବା, ପ୍ରଚଳନ, ପ୍ରୟୋଗ

**ଜାରିଙ୍ଗା** - *କନ୍ଧ:* (ବିଂ.) : ଦଶ

**ଜାର୍ଜା** - *ଗ:* (ବିଂ.) ଉଦ୍‌ଫୁଲ୍ଲିତ, ଚିନ୍ତାଶୂନ୍ୟ, ପ୍ରଚୁର

**ଜାଲ** - *ଅନେ:* (ବି.) : ମାଛ ଓ ପକ୍ଷୀ ଧରିବା ପାଇଁ ସୂତା, ପଟ ଆଦିରେ ବୁଣା କଣାଯୁକ୍ତ ଫାନ୍ଦ, ଠକେଇ, କପଟ ଲିଖନ, ଗଉଡ଼ମାନଙ୍କ କୌଳିକ ଉପାଧି, ନକଲି

**ଜାଲ୍‌କାରିଆ** - *ଭ:* (ବିଂ.) : ଚତୁର

**ଜାଲ୍‌ଜାଲିଆ** - *କୋ:* (ବିଂ.) : ଝାପ୍‌ସା,ଅସ୍ପଷ୍ଟ

**ଜାଲ୍‌ନା** - *ମ:ସୁବ:* (ବି.) : ଜାଲଣା, ଝରକା

**ଜାଲ୍‌ମଲିଆ** - *ସ:* (ବି.) : ଦ୍ୱିପାକ୍ଷୀ ବିଚାର କରୁଥିବା ବ୍ୟକ୍ତି

**ଜାଲ୍‌ମୁହାଁ** - *ଚ୍ଚ:* (ବି.) : ଧାନ ନ ଖାଇବା ପାଇଁ ଗୋରୁ ମୁହଁରେ ବନ୍ଧାଯାଏ

**ଜାଲ୍‌ରି** - *ଦେ଼ୗ:* (ବିଂ.) : ଠକ

**ଜାଲକାରିଆ** - *ଯା:* (ବିଂ.) : ଠକ, କପଟୀ

**ଜାଲକାଂ** - *ରା:* (ବିଂ.) : କଅଁଳ

**ଜାଲଗଣ୍ଡିଆ** - *ଭ:* (ବି.) : ଘାସ ବିଶେଷ

**ଜାଲବାହ** - *ଦେ଼ୗ:* (ବିଂ.) : ଜାଲିଆତି, ଧୁରନ୍ଧର

**ଜାଲମ** - *ଘୁ:* (ବିଂ.) : ଉଦ୍ଧତ, ଦୁଷ୍ଟ

**ଜାଲ ମାଢୁଆ** - *ଗଦ୍ୟ:* (ବିଂ.) : ଟାଣୁଆ

**ଜାଲମୁଣା** - *ଗ:* (ବି.) : ଗାଞ୍ଜିଆ, କ୍ଷୁଦ୍ରଥଳି

**ଜାଲାରି** - *ନବ:ଗ:ମା:ଗଢ:* (ବି.ବିଂ.କ୍ରି.) : ଠକ, ପ୍ରବଂଚକ

**ଜାଲି** - *ଅନେ:* (ବି.) : ବହୁ ଛିଦ୍ରବିଶିଷ୍ଟ ବସ୍ତୁ, କଣାଥିବା, ତାର, ବାଉଁଶ ଓ ସୂତାଦିରେ ନିର୍ମିତ ଜାଲି, ଜାଲପରି ପତଳା ଆବରଣ, କଣାଯୁକ୍ତ, ତାଟ, ଜାଲ୍

**ଜାଲିଆ** - *ଅନେ:* (ବି.ବିଂ.) : ଠକ, ଫିସାଦିଆ, ଧୂର୍ତ୍ତ, ବଦମାସ, ଜାଲୁଆ, ମିଛୁଆ, ମାଛ ଧରାଳି, ବ୍ୟବସାୟରେ ମଧ୍ୟସ୍ଥ, ବାଉଁଶ ନିର୍ମିତ ଡ଼ାଲା

**ଜାଲିକାମ** - *ଗ:* (ବି.) : ଠକାମି

**ଜାଲି ଚଙ୍ଗରା** - *କନ୍ଧ:* (ବି.) : ଚାଲୁଣୀ

**ଜାଲିଝରା** - *ଦେ଼ୗ:* (ବି.) : ଜାଲ ଝାରିବା ଉପକରଣ

**ଜାଲିବାଡ** - *ଦେ:* (ବି.) : ଜାଲିପରି ଛନ୍ଦା ହୋଇଥିବା, ଡାଳ, ବାଉଁଶ ଓ କାଠରେ ତିଆରି ବାଡ଼

**ଜାଲୁଆ** - *ଭ:* (ବିଂ.) : ଚାଲୁବାଜ୍, କପଟୀ

**ଜାଲ୍ଲା** - *ରା:* (ବି.) : ଜାଲ

**ଜାଳ** - *ସଂ:ଗ:* (ବି.କ୍ରି.) : ଇନ୍ଧନ, କାଠ, ଜାଳିବାକୁ

**ଜାଳା** - *ଅନେ:* (ବି.) : ଦାଉ, ବାଧା, ଦୁର୍ବ୍ୟବହାର

**ଜାହାଙ୍ଗିରା** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**ଜାହାଜ ଖଦି** - *ଗ:* (ବି.) : ବିଦେଶୀ ବସ୍ତ୍ର

**ଜାହାନ** - *ଚ:* (ବି.) : ଜୀବନ

**ଜାହାଲା** - *କେ:ଗ:* (ବି.) : ମାଡ଼ିଆ, କୁଣ୍ଡ, ବଡ଼ହାଣ୍ଡି

**ଜାହିର** - *ଢେ:ଦେ:* (ବି.) : ଅଧିକାର ସାବ୍ୟସ୍ତ କରିବା, ବ୍ୟକ୍ତ, ପ୍ରକାଶିତ

**ଜାହିରା** - *ଚ:ଗଦ:* (ବି.ବିଂ.) : ମହିମା, ବନବାସିନୀ ଦେବୀଙ୍କ ପୀଠ

**ଜାହେର୍** - *ମ:* (ବି.) : ଜାହିରା, ମହିମା

**ଜାଁକ** - *ଚା:ଗ:* (ବି.) : ଭିଡ଼ ସ୍ଥାନାଭାବ, ଆଡ଼ମ୍ବର

**ଜାଁକବାର** - *ସୁବ:* (କ୍ରି.) : ଜାକି ଧରିବା

**ଜାଂଗ୍ଲୀ** - *କଳା:* (ବି.) : ବଣ ଜଗୁଆଳି କର୍ମଚାରୀ

**ଜିଅଳ** - *ଯା:ଗ:* (ବି.) : (ବଡ଼ମାଛ ଧରିବା ପାଇଁ) ଛୋଟମାଛ, ଥୋପ

**ଜିଅଁଳ** - *ଦେ:* (ବି.) : ଓଦା, କଳେଇ କଢ଼େଇବା ପାଇଁ ବଳଦଗାଡ଼ିରେ ବ୍ୟବହୃତ ଦଣ୍ଡା

**ଜିଆ** - *ଦେ:କ:ଗ:ସୁବ:* (ବି.) : କେଞ୍ଚୁଆ, ମାଟିଭିତରେ ରହୁଥିବା ଏକ ପ୍ରକାର ଜୀବ

**ଜିଆ ଗଛ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ, ମୋଟା ମୋଟା ପଟା ହୁଏ

**ଜିଆଦ** - *ନବ:ଗ:* (ବି.) : ମୃଗ

**ଜିଆଁ** - *ନୁ:ସୁ:ଦେ:କଳା:* (ବି.) : ମାଛ ବିଶେଷ, ଜିଆମାଛ, ତୋଡ଼ିମାଛ

**ଜିଆଁଣିଆ ପାଣି** - *ଗ:* (ବି.) : ଧାରାବାହିକ ନଈଧାର

**ଜିଆଁଳି** - *କନ:* (ବି.) : ଯୁଆଳି

**ଜିଇନ୍ତା** - *ଢ:ଖୋ:* (ବିଂ.) : ଜୀବନ୍ତ

**ଜିଉତିଆ** - *ଦେ:ସୁ:* (ବି.) : ଆଶ୍ୱିନ କୃଷ୍ଣାଷ୍ଟମୀ ବ୍ରତ, ଦୂତି ବାହନ ଓଷା, ମଙ୍ଗଳସୂତ୍ର

**ଜିକିଜିକିଆ** - *ଚ:* (ବିଂ.) : ଜରି, ଚକ୍‌ଚକ୍ କରୁଥିବା

**ଜିଗର** - *ଅନେ:* (କ୍ରି ବି.) : ବାଧ୍ୟ କରିବା, ବାରମ୍ବାର ଅନୁରୋଧ କରିବା, ମନ ଲଗାଇ, ଜିଦ୍

**ଜିଗର୍ ଦୋସ୍ତ** - *ସଂ:* (ବିଂ.) : ଘନିଷ୍ଠ ବନ୍ଧୁ

**ଜିଗାସ୍** - *ମ:* (କ୍ରି.) : ପଚାରିବା, ଜିଜ୍ଞାସା

**ଝିଗିଡ଼ିଆ** - *ମା:* (ବି.) : ସଲପ ଗଛରୁ ରସ କାଢ଼ିବା ଲୋକ

**ଝିଗିଡ଼ି ନା'ନୁ** - *କୋ:ଗଞ:* (ବି.) : ଗଳାରେ ପିନ୍ଧିବା ଅଳଙ୍କାର ବିଶେଷ

**ଝିଙ୍ଗା** - *ଗ:ଗଦ୍ୟ:* (ବି.) : ଚିଙ୍ଗୁଡ଼ି

**ଝିଜି** - *ବୌ:ସୁ:* (ବି.) : ମାଛ (ବଡ଼ମାନେ ସାନମାନଙ୍କ ଉଦ୍ଦେଶ୍ୟରେ ମାଛକୁ ଝିଜି କହନ୍ତି)

**ଝିଞ୍ଜିରୀ** - *ସଂ:* (ବି.) : ଶିକୁଳି, ଜଞ୍ଜିର

**ଝିଡୁ** - *କୋ:ଗ:* (ବି.) : ତେଲ ଚିକିଟା, ମୁଣ୍ଡ ବାଳର ତେଲ ମଇଳା, ନଛୋଡ଼ବନ୍ଧା

**ଝିଡ଼୍** - *ରା:* (ବି.) : ବଟପତ୍ର ପରି ଛୋଟ ପତ୍ର ବିଶିଷ୍ଟ ଏକ ଔଷଧୀୟ ବୃକ୍ଷ

**ଝିତ୍‌ମା** - *ଅ:କଳା:* (କ୍ରି.) : ଜିଣିବା, ଜୟଲାଭ କରିବା

**ଝିତାନି** - *ସୁ:* (ବିଂ.) : ବିଜୟ

**ଝିଦ୍** - *ଜ:ଦେ:* (ବି.) : କାର୍ଯ୍ୟ ହାସଲପାଇଁ ନଛୋଡ଼ବନ୍ଧା, ହଟ, ଝୋଙ୍କ

**ଝିଦାଝିଦ** - *ଜ:* (ବି.) : ବାଜିମାରିବା, ପରସ୍ପର ନିଷ୍ପତ୍ତିରେ ଅଟଳ

**ଝିନ୍** - *ଜ:ଦେ:* (ବି.) : ଘୋଡାପିଠିରେ ବସିବା ପାଇଁ ଆସନ, ଭୂତ, ପ୍ରେତ, ମୋଟା ପେଣ୍ଟ କପଡ଼ା

**ଝିନିଆ** - *ଅନେ:* (ବି.) : ଫୁଲ ବିଶେଷ

**ଝିନିପୋକ** - *ଦେ:* (ବି.) : ଜୁଳୁଜୁଳିଆ ପୋକ

**ଝିବ୍** - *ସ:* (ବି.) : ଜିଭ

**ଝିଭା** - *ଦେ:* (ବି.) : ଗାଡିର ଫଳି

**ଝିଭି** - *ବଲ:* (ବି.) : ଟଣ୍ଡୀମାନଙ୍କର ଏକ ଯନ୍ତ୍ର, ଚାରାର ମୁହଁରେ ମାଛ ପଶିଲା ପରେ ବାହାରି ନ ପାରିବାର ବାଉଁଶ ନିର୍ମିତ ସାମଗ୍ରୀ

**ଝିମ୍‌ଲିବା** - *କଳା:* (କ୍ରି.) : ବକଳିଯିବା, କଷି ପୁଷ୍ଟ ନ ହୋଇ ଝଡ଼ିଯିବା

**ଝିମା** - *ଦେ:ଜ:* (ବି.) : ଅଧିକାର, କାର୍ଯ୍ୟର ଭାର, ମାରଫତ, ଦାୟିତ୍ୱ

**ଝିମାକିଆଣୀ** - *ଜ:* (ବିଂ.) : ଜିଦ୍‌ଖୋର ସ୍ତ୍ରୀ

**ଝିମାଣିଖାଡ଼ି** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**ଝିମାନାମା** - *ଅନେ:* (ବି.) : ଜିନିଷ ରଖିବାର ରାଜିନାମା

**ଝିମିଖାନା** - *ଦେ:* (ବି.) : ଖେଳ କୁସ୍ତି କସରତ୍ କରିବାର ସ୍ଥାନ

**ଝିରାବା** - *ସ:* (କ୍ରି.) : ହଜମ କରିବା

**ଝିରାମୁଡି** - *ସୁବ:* (ବି.) : ଶଗଡ ଦଣ୍ଡା ଦୁଇଟି ଯେଉଁଠି ମିଶିଯାଇଥାଏ ସେହି ଅଂଶକୁ କୁହାଯାଏ

**ଝିରାଳ** - *ଗଞ:* (ବି.) : ମାଛ, ଛୋଟମାଛ

**ଝିରେ** - *ରା:* (ବି.) : ଜମାଟ

**ଝିରେଇତି, ଝିରାଇତି** - *ଗ:* (ବି.) : ରୟତର ଜମି

**ଝିରେଇବା** - *ବୌ:ଗଦ୍ୟ:* (କ୍ରି.) : ତିଷ୍ଠିବା, ସମ୍ଭାଳିବା, ହଜମ କରିବା

**ଜିଲ୍‌ବି** - *ସୁବ:* (ବି.) : ଜିଲିପି, ଏକପ୍ରକାର ମିଷ୍ଟାନ୍ନ

**ଜିଲିଙ୍ଗି** - *ଦେ:* (ବି.) : ମଣିଷ ଛୁଆଖିଆ ନର ରାକ୍ଷସ

**ଜିଲ୍ଲାକେଡ଼ି** - *ଗ:* (ବି.) : ଦୁଷ୍ଟ, ଦୁର୍ଦ୍ଦାନ୍ତ, ଚପଳ, ଅଭଦ୍ର, ଚଗଲା

**ଜିହଲ୍** - *କଳା:* (ବି.) : ଜେଲ୍, କାରାଗାର

**ଜି'ନ୍ତଟା** - *କୋ:* (ସ.) : ଯେମିତିଟା

**ଜୀଇଁଛନ୍** - *କଳା:* (କ୍ରି.) : ବଂଚିଛନ୍ତି

**ଜୀଉ** - *ଦେ:ପୁ:କ:* (ବି.) : ଦେବ ବିଗ୍ରହ

**ଜୀଉଁତିଆ** - *ଦେ:* (ବି.) : ଜୀଇଁ ରହିବା ପାଇଁ ବ୍ରତ

**ଜୀଘରା** - *ନୁ:* (ବି.) : ଅଣ୍ଡକୋଷ

**ଜୀବନ୍‌ଲ** - *ବ:* (ବି.) : ଜୀବନରେ

**ଜୀବନ ଗୁଆଁଇବା** - *ନୁ:* (କ୍ରି.) : ଆତ୍ମସମର୍ପଣ କରିବା

**ଜୀବିକା** - *ଦେ:ସୁବ:* (ବି.) : ପେଶା, ବୃତ୍ତି, ଜୀବନ ଜୀବିକା

**ଜୀମନ୍** - *କଳା:* (ବି.) : ଜୀବନ,ପ୍ରାଣ

**ଜୀରା** - *ପଦ୍ୟ:ଦେ:* (ବି.) : ବାଉଁଶ ବୁଣା ମାଛଧରା ଯନ୍ତ, ମସଲାର ଉପାଦାନଟିଏ, ଏକଜାତୀୟ ମସଲା ପଦାର୍ଥ

**ଜୀରାବାର** - *ସୁବ:* (କ୍ରି.) : ଜୀର୍ଣ୍ଣ କରିବା

**ଜୀର୍‌ନ** - *ଦେ:ଗଦ୍ୟ:* (ବି.) : ଜୀର୍ଣ୍ଣ, ହଜମ

**ଜୀହିନିକାମ** - *ନୁ:* (ଅ.) : ଜୀବନ ଥିବା ପର୍ଯ୍ୟନ୍ତ

**ଜୀହିଁବାର** - *ସୁବ:* (କ୍ରି.) : ଘେରି ହୋଇଯିବା, ଜୀର୍ଣ୍ଣ ହୋଇଯିବା

**ଜୁଅ** - *କେ:* (ବି.) : ଜୁଆ ଖେଳ, ଖେଳ

**ଜୁଅଇବା** - *ନବ:* (କ୍ରି.) : ତେଲ ମସଲା ଦେଇ ରଖିବା

**ଜୁଆ** - *ଭ:ନ:ବା:ଗଦ୍ୟ:* (ବି.) : ଦସାଦହି, ତିଆରି ପାଇଁ ଖଟା ବସ୍ତୁ, ପଶା, ବାଜି ଲଗାଇବା

**ଜୁଆଇବା** - *ନ:ବ:* (କ୍ରି.) : କୁଣ୍ଡ ମାଠିଆରେ ପାଣିରଖି ମାଛ ରଖିବା, ଖଟା ପ୍ରସ୍ତୁତ କରିବା

**ଜୁଆଇଁ** - *ନ:ଜ:* (ବି.) : ଝିଅର ସ୍ୱାମୀ, ଜ୍ୱାଇଁ

**ଜୁଆଙ୍ଗ** - *ଦେ:* (ବି.) : ପାହାଡୀ ଜାତି ବିଶେଷ

**ଜୁଆଣ** - *ଗଦ୍ୟ:ଦେ:ବୌ:ନ:* (ବି.) : ଯୋଗଦାନ, ମଣ, ଦହି ପ୍ରସ୍ତୁତି ପାଇଁ ଦରକାରୀ ତରଳ ଖଟା ପଦାର୍ଥ, ଆଖୁଶାଳରେ ଗୁଡ଼ ରାନ୍ଧିବାବେଳେ ପାଗଦେଖି ହାଣ୍ଡିରେ କଞ୍ଚା ଦୋରୁଅ ଢାଳିବା

**ଜୁଆଣଦେବା** - *ନ:* (କ୍ରି.) : କଥା ଉପରେ କଥା କହିବା

**ଜୁଆଣି** - *କେ:ଦେ:* (ବି.) : ସୁଗନ୍ଧିତ ମସଲା

**ଜୁଆନ କଷ** - *ପୁ:* (ବି.) : ମଟର ଘୁଗୁନି

**ଜୁଆପୁନିଅ** - *ଗଞ:* (ବି.) : କୁମାର ପୂର୍ଣ୍ଣମୀ

**କୁଆର** - *ଅନେ:* (ବି.) : କୁହାର, ନୂଆ ପାଣିରେ ହଳଧରା ଜମିରେ ଉଠିବା କଣ୍ଡରା ଘାସ, ନଈ ବା ସମୁଦ୍ରରେ ପାଣି ଫୁଲିବା

**କୁଆରି** - *ମା:ସ:ସୁବ:* (ବି.ବିଂ.) କୁଆ ଖେଳାଳି, କୁଆଡ଼ି

**କୁଆଳି** - *ଅନେ:* (ବି.) : ବଳଦ ବେକରେ ପକାଯିବା କାଠ, ଶଗଡ଼ ଟାଣୁଥିବା ବଳଦ ବା ପୋଡ଼ ବେକରେ ଯୋଚାଯାଉଥିବା କାଷ୍ଠ ଦଣ୍ଡ, ହଳ ସମୟରେ ଶଗଡ଼ର ଯେଉଁ ଅଂଶ ବଳଦ କାନ୍ଧରେ ରହେ, ଧାନ କଟାଳୀ

**କୁଆଁଇବା** - *ଚୌ:* (କ୍ରି.) : ବଞ୍ଚାଇ ରଖିବା, ତେଲ ହଳଦୀ ମସଲା ମରିଚ୍ ଦେଇ ଆଚାର ପ୍ରସ୍ତୁତି

**କୁଇ** - *ଅନେ:* (ବି.) କୁଇଫୁଲ, ନିଆଁ, ଚିତାଗ୍ନି,

**କୁଇକା** - *କଝ:* (ବି.) : ନିଆଁ

**କୁଇଖାଡ଼ି** - *କୋ:* (ବି.) : ଦିଆସିଲି କାଠି, ନିଆଁଖାଡ଼ି

**କୁଇପେଟି** - *ମା:* (ବି.) : ଦିଆସିଲି ଖୋଳ

**କୁଇବା** - *ରା:ବା:* (କ୍ରି.) : ଖଟା ଜିନିଷକୁ ଲୁଣ, ଲଙ୍କା ଦେଇ ଖରାରେ ବସାଇବା

**କୁଇଁ** - *ମା:* (ବି.) : ଜ୍ୱାଇଁ

**କୁଉଳ** - *କ:* (ବି.) : ଲଙ୍ଗଳରେ ଲୁହାକୁ ଯୁକ୍ତକରି ରଖିବାର ଲୁହା

**କୁଏ** - *କନ୍ଧା:ସୁ:ସ:ଚୌ:* (ବି.) : ନିଆଁ, ଅଗ୍ନି, ଅଙ୍ଗାର, କୁଇ

**କୁଏଝୁଲା** - *ସ:* (ବି.) : ମାଟିରେ ତିଆରି ଏକ ପାତ୍ର ଯେଉଁଥିରେ ଅଙ୍ଗାର ରଖାଯାଏ

**କୁଏଁ** - *କନ୍ଧା:ସୁ:* (ବି.) : ଜ୍ୱାଇଁ, ଜାମାତା, ଭିଣୋଇ

**କୁକଆଖିଆ** - *ରା:* (ବିଂ.) : ଟେରା

**କୁକକୁକିଆ** - *ନୂ:ଦେ:କୋ:ଅ:* (ବି.ବିଂ.) : କୁଳୁକୁଳିଆ, ଅଳ୍ପ ସାମାନ୍ୟ ପାଣିଥିବା ତିଅଣ, ଓଦାଳିଆ, ଅତି ଅଳ୍ପ ପାଣି ଥିବା

**କୁକେଇ** - *କେ:* (ବି.) : ମଶାଣି

**କୁଖ** - *ଦେ:* (ବି.) : ତଉଲା, ଓଜନ

**କୁଖିବାର** - *ସୁବ:* (ବିଂ.) : ତଉଲିବା, ଓଜନ କରିବା

**କୁଖା** - *ଅନେ:* (ବି.) : ଜାଉ, ଖିରି

**କୁଖାଭାତ** - *କୋ:* (ବି.) : ଗଳା ଯାଇନଥିବା ଅନ୍ନ

**କୁଗକୁଗିଆ** - *କନ୍ଧା:* (ବି.) : କୁଳୁକୁଳିଆ ପୋକ

**କୁଗ୍‌ବା** - *ଅ:କନ୍ଧା:* (କ୍ରି.) : ଜଗିବା

**କୁଗରାବା** - *ସ:ବ:* (ବି.କ୍ରି.) : ଅନେକ ଜିନିଷ ଗୋଟିଏ ପାତ୍ରରେ ରଖିବା, ଭର୍ତ୍ତି କରିବା

**କୁଗ କୁଗିଆ କୀରା** - *ନୂ:* (ବି.) : କୁଳୁ କୁଳିଆ ପୋକ

**କୁଗନୀ** - *ସୁବ:* (ବି.) : ଯୋଗିନୀ

**କୁଗରାବାର** - *ସୁବ:* (କ୍ରି.) : ଭର୍ତ୍ତି କରିବା (କେବଳ କଠିନ ପଦାର୍ଥ ପରିବା ଶସ୍ୟ ବସ୍ତ୍ର ଇତ୍ୟାଦି ପାଇଁ ଏହା ପ୍ରଯୁଜ୍ୟ ତରଳ ପଦାର୍ଥ ପାଇଁ ନୁହେଁ)

**କୁଗରେଇ ହେବା** - *ବ:* (କ୍ରି.) : କଚାଡ଼ି ହେବା

**କୁଗାର** - *ସଂ:ସୁବ:ବୌ:* (ବି.) : ଗୁଡ଼ ଦ୍ୱାରା ପାଗ କରାଯାଇଥିବା ଦେଉଳ ଆକୃତିର ମୁଆଁ ପୂଜାରେ ଲାଗେ

**କୁଗାରିବା** - *ବୌ:* (କ୍ରି.) : ଭରିବା, ଭର୍ତ୍ତି କରିବା

**କୁଗୁଆ** - *ନୂ:* (ବି.) : ଢଗୁଆଳି

**କୁଗୁଡୁଆ** - *ଅ:* (ବି.) : ଘରର ଅଳିଆ

**କୁଗୁରୁ** - *ବ୍ୟ:* (ଅ.) : ପାଇଁ, ନିମିତ୍ତାର୍ଥେ

**କୁଘା** - *ଭ:* (ବିଂ.) : ବଳୁଆ

**କୁ କୁ** - *ଦେ:* (ବି.) : ଲଢ଼େଇ

**କୁକୁବେଇ** - *ବ୍ୟ:* (ବିଂ.) : ପ୍ରଥମ ସ୍ତ୍ରୀ ଥାଉଁ ଥାଉଁ ଯେ ଦ୍ୱତୀୟ ବିବାହ କରେ

**କୁଝବା** - *ନୂ:* (କ୍ରି.) : ଧକ୍କା ଖାଇବା

**କୁଟ୍** - *ଦେ:* (ବି.) : ଏକତ୍ର, ମିଳିତ

**କୁଟ୍‌ମାଁ** - *ବୌ:* (କ୍ରି.) : କୁଟିବା

**କୁଟହେବା** - *ଗ:ଦେ:* (କ୍ରି.) : ଏକତ୍ରିତ ହେବା

**କୁଟେଇବା** - *ନ:କୋ:କେ:* (କ୍ରି.) : ଯୋଗାଡ଼କରି ପାଖକୁ ନେଇ ଦେଇଆସିବା

**କୁଠ** - *ରା:* (ବିଂ.) : ସମବେତ

**କୁଠା** - *ବଲ:ସୁ:* (ବି.) : ଅଇଁଠା, ଉଚ୍ଛିଷ୍ଟ

**କୁଡ଼** - *ଅ:* (ବି.) : ଘାସ, ଲୁଗା

**କୁଡା** - *ଅନେ:* (ବି.) : ଖୋଷା, ମସ୍ତକରେ ନାରୀମାନେ କରୁଥିବା କେଶ ବିନ୍ୟାସ

**କୁଡା ମହାମଣ୍ଡଳ** - *ନୂ:* (ବି.) : ଏକ ପ୍ରକାର ସର୍ପ

**କୁଡୁବୁଡୁ** - *କେ:* (ଅ.) : ଭିଜିଯିବା, ସରସର

**କୁଢ଼** - *ରା:* (ବି.) : ଉପନଦୀ

**କୁଢୁ** - *କନ୍ଧ:* (ବି.) : ଘାସ

**କୁଢୁଙ୍ଗ** - *ମା:* (ବି.) : ଝୁଡ଼ଙ୍ଗ, ପରିବା ବିଶେଷ

**କୁଣ** - *ଭ:ବା:* (ବି.) ତୃଣ ବିଶେଷ, ଏକପ୍ରକାର ନଡ଼ାଜାତୀୟ ଉଦ୍ଭିଦ

**କୁତ** - *ଦେ:କନ୍ଧ:* (ବି.) : ଦଉଡି, ଲଙ୍ଗଳ ଦଉଡ଼ି(କୁଇ ଶବ୍ଦ)

**କୁତା** - *ଅନେ:* (ବି.) : ଛୋତା, ଲଙ୍ଗଳ ଦଉଡ଼ି, କୁଆଳିରେ ବଳଦଙ୍କୁ ବାନ୍ଧିବା ପାଇଁ ବ୍ୟବହୃତ ଦଉଡ଼ି, ଶଗଡ଼ରେ ବ୍ୟବହୃତ ଦଉଡ଼ି, ପାଣ୍ଡୋଇ

**କୁନ୍ହାଁ** - *ବୌ:ସୁବ:ସୁ:ବଲ:* (ବିଂ.) : ପୁରୁଣା, ଜୀର୍ଣ୍ଣ

**କୁନ୍ତାରୋଟି** - *ଅ:* (ବି.) : ଯନ୍ତା ଯାଇଥିବା ରୁଟି, ସିଝା ଅଟାର ରୁଟି, ଖଳିରୁଟି

**କୁବି** - *କନ୍ଧ:* (ବି.) : ଭୋଗେଇ

**କୁବୁରା** - *ଅ:କେନ୍ଦୁ:* (ବି.) : ଅପରିଷ୍କାର, ଅଳିଆ

**ଜୁଭା** - *ସୁବ:* (ବିଂ.) : ସନ୍ତସନ୍ତିଆ ଜମି, ଜଳା ଭୂଇଁ

**ଜୁମ୍** - *ଦେ:* (ବି.) : ଆନନ୍ଦ, ମଉଜ

**ଜୁମର** - *ଦେ:* (ବି.) : ସଂସ୍କୃତ ବ୍ୟାକରଣ ବିଶେଷ

**ଜୁମ୍ରୁ ର୍** *ରା:* (ବି.) : ଚୋର

**ଜୁମ୍ମାବାର** - *ଗଦ୍ୟ:* (ବି.) : ଶୁକ୍ରବାର

**ଜୁର** - *କ:ଦେ:ଅ:ରା:* (ବି.କ୍ରି.) : ଲୁଟିନେବା, ହରଣ, ନକର, ସର୍ବସ୍ୱାନ୍ତ କରିଦେବା

**ଜୁର ବଢ଼ିବା** - *ରା:* (କ୍ରି.) : ଅନଟନ ଘଟିବା

**ଜୁରମାର** - *ଦେ:* (ବି.) : ଛାରଖାର, ଚୂରମାର

**ଜୁରମିନା** - *ରା:* (ବି.) : ଆର୍ଥିକ ଦଣ୍ଡ

**ଜୁରା** - *ଅନେ:* (ବି.ବିଂ.) ଏକସଙ୍ଗରେ କାଖରେ ଏବଂ ମୁଣ୍ଡରେ ଗରା ବୋହିବା, ପାକଳ, ଯୋଡ଼ା, ଦୁଇଗରା

**ଜୁରାଝିକା** - *କନ୍ଧ:* (ବି.) : ଛଡ଼ାଛଡ଼ି

**ଜୁରାବଣିଆ** - *ଚ:* (ବିଂ.) : ଛୁଆଁ ହୋଇଥିବା, ମାରା ହୋଇଥିବା

**ଜୁରାମୁଣ୍ଡି, ଜିରାମୁଣ୍ଡି** - *ବୌ:* (ବି.) : ଶଗଡ଼ଦଣ୍ଡାର ଅଗ୍ରଭାଗ

**ଜୁରିଆ** - *ପଦ୍ୟ:* (ବି.) : ଡକାଏତ୍, ଖଣ୍ଡ

**ଜୁରିବା** - *ଅନେ:* (ବିଂ.କ୍ରି.) : ଅଧିକ ପକ୍ୱ ହୋଇଯିବା, ଲୁଣ୍ଠନ କରିବା, ବଳାତ୍କାରରେ ଛଡ଼ାଇ ନେବା, ପାକଳ ହେବା, ଜବରଦସ୍ତି ଛଡ଼େଇ ନେଇଯିବା, ତେଜିୟାନ୍ ହେବା, ଯୋଡ଼ି ହେବା

**ଜୁରିବାନା** - *ସୁ:ଅ:* (ବି.) : ଅର୍ଥଦଣ୍ଡ

**ଜୁରିଯିବା** - *କୋ:* (କ୍ରି.) : ପାକଳ ହୋଇଯିବା

**ଜୁରୀ** - *ନ:* (ବି.) : ମଦ

**ଜୁରୁ** - *ରା:* (ବି.) : ମାଣ୍ଡିଆ ଜାଉ

**ଜୁରୁକାଁ** - *ରା:* (ବି.) : ସୁଆଁ ଜାଉ

**ଜୁରୁମ** - *ରା:* (ବି.) : ଜାଉ

**ଜୁରେଇବା** - *ଗଦ୍ୟ:* (କ୍ରି.) : କୋରକ କରିବା

**ଜୁରେନ୍** - *ନୂ:ଝ:* (ବି.) : ପଘା (ଏକାଧିକ ଗୋରୁ ବାନ୍ଧିବା), ଯୋଡ଼ା ହୋଇଥିବା ଜାଗା, ଯୋତା

**ଜୁର୍ଗାପାଙ୍ଗା** - *କନ୍ଧ:* (ବି.) : ଅଁଳା କୋଳି

**ଜୁର୍ଡ଼ା** - *ମା:* (ବି.) : ଅସରପା

**ଜୁର୍ବା** - *ବର:ସ:* (କ୍ରି.) : ଯୋଡ଼ିବା, ଛଡ଼େଇ ନେବା, ଲୁଟିବା

**ଜୁର୍ସୁର୍** - *ମ:* (ବିଂ.) : ପ୍ରଚୁର

**ଜୁଲ୍** - *ମ:ରା:* (କ୍ରି.) : ଜଳିବା, ଗୁଛିବା

**ଜୁଲ୍କା** - *ବୌ:* (ବି.) : ଝରକା

**ଜୁଲାବ** - *ସଂ:* (ବି.) : ଝାଡ଼ା ହେବା ଔଷଧ

**ଜୁଲାବାର** - *ସୁବ:* (କ୍ରି.) ଇତର ପ୍ରାଣୀମାନଙ୍କର ଯୌନକ୍ରିୟା

**ଜୁଲାବାସା** - *କଳା:* (କ୍ରି.) : ଆଦିବାସୀ କନ୍ଧ ସଂପ୍ରଦାୟର ପ୍ରାକ୍‌ବିବାହକାଳୀନ ନିର୍ବନ୍ଧ ବା ପିନ୍ଧାଣି କର୍ମ

**ଜୁଲାଁ** - *ରା:* (ବି.) : ଫିଙ୍ଗା ଜାଲ

**ଜୁଳି** - *ଅନେ:* (ବି.ବିଂ.) : ଯୋଡି, ଗୋଟିଏ ବଳଦର ଉପଯୁକ୍ତ ଯୋଡି, ପାଣି ଯିବା ପାଇଁ ମାହାରା, ସାଂଗ

**ଜୁଳିଆ** - *କଳା:* (ବି.) : ଦୁଇଜଣ ସାଂଗ, ଯୋଡ଼ି

**ଜୁଳିକର** - *ରା:* (ବି.) : ଧନ, ସଂପଦ

**ଜୁଳୁ** - *ରା:* (ବି.) : ପଛ

**ଜୁଳୁପି** - *ବେ:* (ବି.) : ବାବୁରି ବାଳ

**ଜୁଲୋ** - *ସୁ:* (ବି.) : ଦୁଇରୁ ଅଧିକ ହାଣ୍ଡି ବସିବା ଚୂଲି, ଦୁପକାଚୂଲି

**ଜୁଳ** - *ଗ:* (ବି.) : ଗାଈକୁ ଦୁହିଁବା ବେଳେ ଗୋଡ଼କୁ ବାନ୍ଧିବା ଦଉଡ଼ି, ଛନ୍ଦଣି

**ଜୁଳିବା** - *ଗ:* (କ୍ରି.) : ବଳଦକୁ ହଳ ବା ଶଗଡ଼ରେ ଯୋଚିବା

**ଜୁଳୁକୀ** - *ନ:* (ବି.) : କବାଟ ପଛପାଖର କିଳିଣୀ, କିଳିଣୀ ଯିବା ଆସିବା ବନ୍ଧ

**ଜୁଳୁଜୁଳା** - *ରା:* (ବିଂ.) : ଆଖିକୁ ବାରବାର ପକାଉଥିବା, ଆଖି ମିଟିମିଟି କରିବା

**ଜୁହାପହରା** - *କଳା:ଗ:ସୁବ:* (ବି.କ୍ରି.) : ନାୟକ ବା ନାୟିକା, ବାରମ୍ବାର ଆଗମନ ପଥକୁ ଲକ୍ଷ୍ୟକରି ଫେରି ଯାଉଥିବା କ୍ରିୟା, ଜଗିବା କାମ, ଚୋରି ବା ଅସଦ୍ ଉପାୟ ପାଇଁ ଅନ୍ୟକୁ ଚୋରାରେ ଅନିଷା ରଖିବା

**ଜୁହାମାର୍‌ବା** - *ସ:ସୁବ:ବୌ:* (କ୍ରି.) : ଲୁଚିକରି ଅନ୍ୟଙ୍କ କଥା ଶୁଣିବା

**ଜୁହାର** - *ଅନେ:* (ବି.) : ମୁଣ୍ଡିଆ ମାରିବା, ପ୍ରଣାମ କରିବା, ନମସ୍କାର

**ଜୁହାରୀ** - *ରା:* (ବି.) : ନମସ୍କାର

**ଜୁହାଳି** - *ନ:* (ବି.) : ଯୁଆଳି

**ଜୁହାଁ** - *ଟ:* (କ୍ରି.) : ଲୁଚି ରହି ଜଗିବା

**ଜୁହି** - *ଝ:* (କ୍ରି.) : ଜଗିବା

**ଜୁହିଁବା** - *ଅ:ସ:ବେ:* (କ୍ରି.) ଲୁଚିଲୁଚି କଥାଶୁଣିବା, ଛକି ରହିବା

**ଜୁହ୍ନା** - *ସ.ଚ:* (ବିଂ.) : ପୁରୁଣା ସ୍ଥାନ

**ଜୁଂଜୁଲୁ** - *ପଦ୍ୟ:* (ବି.) : କାନର ଉପରେ ପିନ୍ଧା କାନଫୁଲ

**ଜୁଂଟା** - *ଢେ:* (ବି.) : ବାଳ, ଜଟା

**ଜୁ'ଥର** - *କୋ:* (ସ.) : ଯେଉଁଥର

**ଜୁ'ନାହିଁ** - *ନ:* (ବି.) : ଚାରା ନାହିଁ, ଅନ୍ୟଗତି ନାହିଁ

**ଜୁଆଁ** - *ସୁବ:* (ବି.) : ଉକୁଣୀ, ଡିଙ୍ଗ

**ଜୁଇଠା** - *ସୁବ:* (ବି.) : ଅଇଁଠା

**ଜୁଏ** - *ସୁବ:* (ବି.) : ନିଆଁ

**ଜୁନ୍** - *ଗଦ୍ୟ:* (ବି.) : ଜହ୍ନ

**ଜେଅଁଟି** - *ରା:* (ବି.) : ପରେ

**ଜେଇବା** - *ଭ:କେ:* (କ୍ରି.) : ବଞ୍ଚେଇରଖିବା

**ଜେଉଲା** - *ଗଦ୍ୟ:* (ବି.) : ଦେଢଶୁର

**ଜେଖ୍‌ନା** - *କୋ:* (ବି.) : ଶାଖା, ଡାଳ

**ଜେଗା** - *ଅନେ:* (ବି.) ଜାଗା, ସ୍ଥାନ, ଘରଡ଼ିହ, ମାଲଭାଇ ଆଖଡ଼ା

**ଜେଙ୍ଗଲା** - *ମ:* (ବିଂ.) : ଅପରିଷ୍କାର

**ଜେଜୀ** - *ଅ:* (ବି.) : ଜେଜେମା, ବାପାଙ୍କ ମାଆ, ବୁଢ଼ୀମା

**ଜେଜେ** - *ଅନେ:* (ବି.) : ପିତାମହ, ଦେବତା, ବାପାଙ୍କ ବାପା, ପ୍ରଣାମ

**ଜେଜେ କରିବା** - *ନ:ଦେ:* (କ୍ରି.) : ପ୍ରଣାମ କରିବା, ନମସ୍କାର କରିବା

**ଜେଟ** - *କୋ:ନୂ:* (ବି.ବିଂ.) : ଜଟ, ଜ୍ୟେଷ୍ଠ

**ଜେଟା** - *ନବ:* (ବି.) : ଦେଢ଼ଶ୍ୱଶୁର

**ଜେଟାନୀ** - *ନବ:* (ବି.) : ଦେଢ଼ଶାଶୁ

**ଜେଟି** - *ପଦ୍ୟ:* (ବି.) : ଜାହାଜ ଘାଟର ମଞ୍ଚ

**ଜେଠ୍** - *ସୁ:ନବ:ମ:* (ବିଂ.) : ଜ୍ୟେଷ୍ଠ

**ଜେଠ୍ ଉଆଁସ** - *ସ:* (ବି.) ଜ୍ୟେଷ୍ଠ ଅମାବାସ୍ୟା

**ଜେଠନି** - *କୋ:* (ବି.) ବଡ଼ ଯାଆ, ଦେଢ଼ଶ୍ୱଶୁରଙ୍କ ସ୍ତ୍ରୀ

**ଜେଠାନୀ** - *ବୌ:* (ବି.) : ବଡ଼ ଯାଆ

**ଜେଠା / ଜେଠୁ** - *ଦେ:ରା:ମ:* (ବି.) : ଦଦେଇ, ପାକଳ, ବଡ଼ ଦାଦା, ବଡ଼ବାପା

**ଜେଠି / ଜେଠାଇ** - *ମ:ଦେ:* (ବି.) : ବଡ଼ମା, ଦେଠେଇ, ଦେଢ଼ଶାଶୁ

**ଜେଠେଇ** - *ଅ:ରା:* (ବି.) ବଡ଼ମାଆ, ଦାଦାଙ୍କ ସ୍ତ୍ରୀ

**ଜେଠେନ** - *ଅନେ:* (ବି.) : ବଡ଼, ବଡଯାଆ, ଦେଢ଼ଶ୍ୱଶୁରଙ୍କ ପତ୍ନୀ

**ଜେଢ଼ତାଶ୍ୱଶୁର** - *ଦେ:* (ବି.) ଶ୍ୱଶୁରଙ୍କ ବଡଭାଇ, ଦଦେଇ ଶ୍ୱଶୁର

**ଜେଢ଼ଶାଶୁ** - *ଦେ:ବା:ଦେ:* (ବି.) : ସ୍ତ୍ରୀଙ୍କ ବଡ ଭଉଣୀ, ଦେଢ଼ଶାଶୁ

**ଜେତଅଳ** - *କୋ:* (ଅ.) : ଯେତେବେଳ

**ଜେନ୍‌ତା** - *ସ:ସୁ:* (ଅ.ସ.) : ଯେପରି

**ଜେନାପାତ୍ର** - *ଗ:* (ବି.) : ରଜାଙ୍କ ଅଳଙ୍କାର ନିର୍ମାଣ କରୁଥିବା ବଣିଆ

**ଜେନ୍ତା** - *ବା:* (ଅ.) : ଯେପରି

**ଜେବ** - *ଗ:* (ବି.) : ପକେଟ, ବଟୁଆ

**ଜେମ୍** - *ରା:* (ବି.) : ଝରିବା

**ଜେମା** - *ବୌ:ଦେ:* (ବି.) : ଅତି ଆଦରଣୀୟା ଧନୀ ଘର ଝିଅ, ରାଜକନ୍ୟା

**ଜେମାଖୁଆଡ଼** - *ଗ:* (ବି.) : ରାଜକୁମାରୀଙ୍କ ଆବାସ

**ଜେମାପାଇଛା** - *ଗ:* (ବି.) : ରାଜନନ୍ଦିନୀ

**ଜେରପାଇ** - *ପଦ୍ୟ:* (ବି.) : ଅଗ୍ରଭାଗ ମୁନିଆ ହୋଇଥିବା ଏକପ୍ରକାର ଜୋତା

**ଜେରା** - *ସଂଦେ:* (ବି.) : ସତକଥା ଆଦାୟ କରିବା ପାଇଁ ଗୁଡେଇ ତୁଡ଼େଇ ପ୍ରଶ୍ନ କରିବା, ଯଥାର୍ଥ କଥା ଜାଣିବା ପାଇଁ କୂଟ ପ୍ରଶ୍ନ କରିବା

**ଜେର୍ଭାଶ୍ୱଶୁର** - *ବା:* (ବି.) : ଜ୍ୟେଷ୍ଠଶ୍ୱଶୁର

**ଜେର୍‌କାଇବା** - *କୋ:* (କ୍ରି.) : ଚିଡ଼େଇବା

**ଜେଲ ଖେଲା** - *ଅ:* (କ୍ରି.ବିଂ.) : ସାଂଘାତିକ ଭାବେ ଆଘାତ ପ୍ରାପ୍ତ

**ଝେହେଲିଆ** - *ଚୌ.* (ବି.) : କଏଦୀ, ଜେଲ୍ ଫେରନ୍ତା ବନ୍ଦୀ

**ଝେ'ପା** - *ନ.* (ବି.) : ଜେଜେ ବାପା, ବୁଢ଼ା ବାପା

**ଝୋକ** - *ଖୋ.ନ.ଭ.ନୂ.* (ବି.) : ଦୁଇମୁଣ୍ଡ ବିଶିଷ୍ଟ ଜଳଚର ଜୀବ, ମାରାତ୍ମକ ଜଳପୋକ, କଥାରେ ହାସ୍ୟରସ ସୃଷ୍ଟି କରିବା, ନଛୋଡ଼ ବନ୍ଧା

**ଝୋକର** - *ଖୋ.* (ବି.) ହାସ୍ୟରସ ସୃଷ୍ଟିକାରୀ ସର୍କସ୍‌ର ଚରିତ୍ର

**ଝୋକିଆ** - *ନ.* (ବି.) : U ଆକାରର ଲୌହ ଖଣ୍ଡ-କାଠ ଭାଙ୍ଗିଥିଲେ ସଂଯୁକ୍ତ କରେ ଲଙ୍ଗଳ ପାହିଆ ଯୋଡ଼ିପାରେ ସାହାଯ୍ୟ କରେ

**ଝୋଖ୍** - *ଝ.* (ବି.) : ସାପର କାତି

**ଝୋଖା** - *ସୁ.ଗ.ସୁ.ଭ.* (ବି.) : ସୁନାର ପିଣ୍ଡୁଳା, ବହୁଦିନ କାଳ ଗୋଟାଏ ସ୍ଥାନରେ ସୁନା ପୋତା ହୋଇ ରହିଲେ ତାହା ଜୀବନ୍ତ ହୋଇ ରାତିରେ ପିଣ୍ଡୁଳା ଭଳି ଗଡ଼ି ଗଡ଼ି ଯାଏ ବୋଲି ଲୋକ ବିଶ୍ୱାସ ରହିଛି, ଯକ୍ଷ, ମୋଟାମୋଟି ହିସାବ, ଗଳା ନ ହେବା ଭାତ, ଜାଉ, କଣ୍ଟ ଭାତ

**ଝୋଖାଲେଖା** - *ଗ.* (ବି.) : ସଂପର୍କ, ସମ୍ବନ୍ଧ

**ଝୋଗାଡ** - *କେ.* (ବି.) : ସଂଗ୍ରହ କରିବା

**ଝୋଗାଡ଼ ଯନ୍ତର** - *ଗ.* (ବି.) : ବନ୍ଦୋବସ୍ତ

**ଝୋଗାର** - *ସୁ.* (ବି.) : ଉପହାର ସାମଗ୍ରୀ

**ଝୋଟ୍** - *ନୂ.* (ବିଂ.) : ଐକ୍ୟ, ସଂଯୋଗ

**ଝୋଟ** - *ଗ.* (ବି.) : ସମକକ୍ଷ

**ଝୋଡ଼** - *ଗ.ନ.* (ବି.) : ବର୍ଷାଜଳ ଯେଉଁଠାରେ ଜମାହୁଏ, ଦୁଇ ସଂଯୁକ୍ତ ଲୁଗା, ବିବାହ ଉତ୍ସବପାଇଁ ମିଳୁଥିବା ଦ୍ୱୈତଲୁଗା (ଯୋଡ଼ିଥିବା ୨ଲୁଗା)

**ଝୋଡ଼ା** - *ନବ.* (ବି.) : ଯୁଗଳ

**ଝୋଡ଼ାଏ, ଝୋଡ଼ିଏ** - *ଦେ.* (ବି.) : ଦୁଇଟା

**ଝୋଡ଼ାଣି** - *ଗ.* (ବି.) : ପରସ୍ପର ଜୋଡ଼ିବା

**ଝୋତ** - *କ.ଭ.ଦେ.ନ.* (ବି.) : ଗୋଛା ବାନ୍ଧିବାପାଇଁ ବ୍ୟବହୃତ ଝୋଟରେ ତିଆରି ଦଉଡ଼ି, ଭାଗଚାଷ ପାଇଁ ଦିଆଯିବା ଜମି, ପଲପ, ତଲପ, ଦଉଡ଼ି ୨ଖଣ୍ଡ, ଯାହା ବଳଦ ବେକରେ ବାନ୍ଧି ହଳ, ଶଗଡରେ ବ୍ୟବହାର କରାଯାଏ

**ଝୋବ୍‌ରା** - *ମ.* (ବି.) : ମଇଳା

**ଝୋୟ** - *ଗଦ୍ୟ.* (ବି.) : ପୁଅ

**ଝୋର୍** - *ସୁବ.କଳା.* (କ୍ରି.ବି.) : ଝରଣା, ଶାଖାନଦୀ ଶକ୍ତି, ଦ୍ରୁତ ଭାବରେ, ଆଣ୍ଡ, ବଡ ନାଳ

**ଝୋର୍‌ଜାର** - *ଚୌ.ଗ.* (ବିଂ.) : ବହୁତଅଧିକ

**ଝୋର୍ ତୁଣେ** - *ନୂ.* (ବିଂ.) : ବହୁତ

**ଝୋର୍‌ଦାର୍** - *ନୂ.* (ବିଂ.) : ବହୁତ, ବଳିଷ୍ଠ

**ଝୋର୍‌ସେ** - *ନୂ.* (କ୍ରି.ବିଂ.) : ଦ୍ରୁତ ବେଗରେ

**ଜୋର** - *ଅନେ:* (ବି.) : ନାଳ, ବଳ, ବେଗ, ଜବରଦସ୍ତି, ଛୋଟନଇ

**ଜୋର ଜବରାନ୍** - *ସୁନ:* (ବି.) : ଜୋର ଜୁଲୁମ୍

**ଜୋଲ୍‌ଯିବା** - *ସୁନ:* (କ୍ରି.) : ସାପମାନଙ୍କର ଯୌନ ସଙ୍ଗମ ହେବା

**ଜୋଲାଟଙ୍କା** - *କଳା:* (ବି.) : ଆଦିବାସୀ ସମାଜରେ କନ୍ୟା ନେବା ପାଇଁ ବରଘର ପକ୍ଷରୁ କନ୍ୟାପିତାଙ୍କୁ ତାଙ୍କର ଇଚ୍ଛା ମୁତାବକ ଦିଆଯାଉଥିବା ଟଙ୍କା

**ଜୋଲି** - *ଗ:* (ବି.) : ପରଛିଦ୍ର, ପରପ୍ରସଙ୍ଗ, ଜଞ୍ଜାଳ, ଅଡୁଆ

**ଜୋସ୍** - *କଳା:ଅ:* (ବି.) : ଝୁଙ୍କ୍, ଉତ୍ସାହ

**ଜୋହାଡ଼** - *ପଦ୍ମ:* (ବି.) : ବର୍ଷାଜଳ ସଂରକ୍ଷଣ

**ଜୌଲସ** - *ଗଦ୍ୟ:* (ବି.) : ପରଂପରା, ଚଳଣି

**ଜଁକ** - *ଅନେ:* (ବି.) : ପାଣିରେ ରହୁଥିବା କେଉଟିଆ ପୋକ ଜୀବ, ରକ୍ତ ଶୋଷୁଥିବା କୀଟ, ଜୋକ

**ଜଁକା** - *ସୁ:* (ବି.) : ଜାକିବା

**ଜଁଘ୍** - *ସ:* (ବି.) : ଆଣ୍ଠୁ ଉପର ମାଂସାଳ ଅଂଶ, ଜଂଘ

**ଜଁଚାଇବା** - *ନୂ:* (କ୍ରି.) : ଯାଚିବା

**ଜଁଚାବାର** - *ସୁନ:* (କ୍ରି.) : ଯାଚିକରି ଦେବା

**ଜଁନ୍ତ୍** - *କଳା:* (ବି.) : ଜନ୍ତୁ

**ଜଁନ୍ତୁ** - *ସୁନ:* (ବି.) : ପଶୁ, ବନ୍ୟପଶୁ

**ଜଂଗ** - *ନୂ:କଳା:* (ବି.) : ଜଙ୍ଘ

**ଜଂଗ୍‌ଲିଆ** - *କଳା:* (ବିଂ.) : ଜଂଗଲର (ଅଧିବାସୀ)

**ଜଂଗଲି, ଜଂଗଲୀ** - *ଅନେ:* (ବିଂ.) ଜଙ୍ଗଲରେ ରହୁଥିବା, ଜଙ୍ଗଲଜାତ

**ଜଂଘିଆ** - *କୋ:* (ବି.) : ପୁରୁଷ ଲୋକଙ୍କ ଅନ୍ତଃବସ୍ତ୍ର, ଚଡ଼ି

**ଜଂଜର୍ଲା** - *କଳା:* (ବି.) : ଖେଡଜନା, ଏକ ପ୍ରକାର ଶସ୍ୟ

**ଜଂଜଲା** - *ବୌ:* (ବି.) : ଲିଆ ଜାତୀୟ ଶସ୍ୟ

**ଜଂଜିରା** - *ପଦ୍ମ:* (ବି.) : କେଶ ବିନ୍ୟାସରେ ବ୍ୟବହୃତ ଅଳଙ୍କାର

**ଜ୍ଞାନ ପାଇବା** - *ସଂଗ:* (କ୍ରି.) : ଘରଯୋଗ୍ୟ ହେବା, ରଜୋବତୀ ହେବା

**ଜ୍ଞାନସଣ୍ଡା** - *ଗଦ୍ୟ:* (ବି.) : ଏକ ପରିବା

**ଜ୍ୟେଷ୍ଠାଂଶ** - *ଗ:* (ବି.) : ସାନ ଭାଇଠାରୁ ବଡ଼ ଭାଇ ପାଇବା ଅଧିକ ଅଂଶ

**ଜ୍ୱଇ, ଜୁଇ** - *କୋ:* (ବି.) : ନିଆଁ

**ଜ୍ୱର ଧନ୍ୱନ୍ତରୀ** - *ଗଦ୍ୟ:* (ବି.) : ଗଙ୍ଗଶିଉଳି



**ଝଅକମାରି** - *ଗ.* (ବି.) : ଅଗ୍ନି ଉତ୍ପାଦନକାରୀ ପଥର, ଚିକିମିକି ପଥର

**ଝଅଟ** - *ଅନେ.* (କ୍ରି.ବିଂ.) : ଜଲଦି, ଶୀଘ୍ର, ଚଞ୍ଚଳ, ବେଗେ

**ଝଇଁମୁଖ** - *ଢ.* (ବି.) : ମୁଗମଣ୍ଡା

**ଝଉ** - *କଳା.* (ବି.) : ଝାଂଜି, ଗ୍ରୀଷ୍ମ, ଉଷ୍ଣ ପବନ, ତାତି

**ଝକ୍‌ଝକା** - *କଝ.* (ବିଂ.) : ସଫାସୁତୁରା

**ଝକ୍‌ଝକାବା** - *ନୂ.* (ବି.) : ଝଲସି ଉଠିବା

**ଝକ୍‌ମକି ପଥର** - *ଚ୍‌.* (ବି.) : ଅଗ୍ନି ପ୍ରସ୍ତର

**ଝକ୍ ମାରିବା** - *ଦେ.ଭ.ସଂ.* (କ୍ରି.) : ସମୟ ବୃଥା ନଷ୍ଟ କରିବା, ଦୁଃଖ ଭୋଗ କରିବା, କାଇଲି ହେବା, ଚମକି ଉଠିବା, ଶିକାର କରିବା, ଅନୁତାପ କରିବା

**ଝକ୍‌ମାରୀ** - *ଦେ.* (ବି.) : ତ୍ରୁଟି, ଅପରାଧ, ଅବିବେକିତାର କାର୍ଯ୍ୟ

**ଝକଝକ ହେବା** - *ଖୋ.* (କ୍ରି.) : ବାରମ୍ବାର କଥା କହି ବିରକ୍ତ କରିବା, କଳି କରିବା

**ଝକଝକିଆ** - *ଦେ.* (ବିଂ.) : ଦରଦାମରେ ବହୁଥର ଯେ କଟା ବଛା କରେ, ଝଟକୁଥିବା

**ଝକଡା** - *ରା.* (ବିଂ.) : ପୋକଲଗା

**ଝକମରା** - *ସୁ.* (ବିଂ.) : ଜବରଦସ୍ତ

**ଝକର** - *ଚ୍‌.* (ବି.) : ଅଝଟ, ଜିଦି

**ଝକାଝକ୍** - *ଦେ.* (ବିଂ.) : ବହୁଳ, ପ୍ରଚୁର, ଝିଙ୍କାଝିଙ୍କି, ଟଣା ଓଟରା

**ଝକାସ** - *ସଂ.କଳା.* (ବିଂ.) : ଖୁବ୍ ବଢିଆ, ଦୀପ୍ତିମନ୍ତ, ଉଜ୍ଜ୍ୱଳ, ସୁନ୍ଦର

**ଝକିବା** - *ନବ.* (କ୍ରି.) : ଚକଚକହେବା

**ଝକୈର** - *ସ.* (ବି.) : ଅବିରତ ବର୍ଷା, ଲଗାଣ ଝଡ଼ି ବର୍ଷା

**ଝଗଡ଼** - *ଗ.* (ବି.) : ରାଜାଙ୍କ ସ୍ନାନ

**ଝଗଡ଼ାଝାଟି** - *ସ.ସଂ.ଗ.* (ବି.) କଳି ତକରାଳ କରିବା, କଳିକଜିଆ

**ଝଗଡ଼ି** - *ଦେ.* (ବି.) : ଧାନର ନାମ

**ଝଗଡ଼ିଆ** - *ଦେ.* (ବିଂ.) : କଳହପ୍ରିୟ

**ଝଗରୁ** - *ସୁ.* (ବିଂ.) : ଝଗଡୁ, କଳହପ୍ରିୟ

**ଝଗା** - *କଳା.* (ବି.) : ଝିଅଙ୍କ ପୋଷାକ ବିଶେଷ, ସ୍କର୍ଟ୍

**ଝଙ୍କା** - *ଅନେ.* (ବିଂ.ବି.) : ଝଙ୍କାଳିଆ, ବହଳ, ଗହଳ, ବଡ଼ଟୋକେଇ, ବାଉଁଶ ତିଆରି ସିଇରା

**ଝଙ୍କାର** - *ଦେ:* (ବି.) : ଝମ୍‌ଝମ୍ ଶବ୍ଦ, ଗୁଞ୍ଜନ, ବୀଣାର ଧ୍ୱନି

**ଝଞ୍ଜ** - *ଗ:* (ବି.) : ଦୂରବର୍ତ୍ତୀ ବାତ୍ୟାର କ୍ଷୀଣ ପ୍ରକୋପ

**ଝଞ୍ଜକିବା** - *କଳା:* (କ୍ରି.) : ଚମକିବା, ହଠାତ୍ ଡରିଯିବା

**ଝଞ୍ଜାମଞ୍ଜା** - *ଗଞ:* (ବି°) : ସଚ୍ଚା, ପ୍ରକାଶ୍ୟରେ

**ଝଞ୍ଜି** - *ଗଞ:କଣ:ନବ:ଗ:* (ବି.) : ପତଳା ସାନ ଗାମୁଛା

**ଝଞ୍ଜାଟ** - *ଅନେ:* (ବି.) : ଅଡୁଆ, ଝିଂଝଟ, ଗୋଳମାଳ, ବିରକ୍ତ ପରିସ୍ଥିତି, ଜଞ୍ଜାଳ, କଷ୍ଟ

**ଝଞ୍ଜାଳିବା** - *କୋ:* (କ୍ରି.) କଟୁବାକ୍ୟ ପ୍ରୟୋଗ କରିବା

**ଝଟ୍‌କାଇବା** - *ସୁ:* (କ୍ରି.) : ଚମକାଇବା

**ଝଟ୍‌ପଟ୍** - *ଅନେ:* (ବି°.) : ଚଂଚଳ, ଅତି ଶୀଘ୍ର

**ଝଟ** - *ଅନେ:* (କ୍ରି.ବି°.ବି.) : ଅତି ଶୀଘ୍ର, ନୂଆ ପିଲା, ଅଡୁଆ କରିବା

**ଝଟକ** - *ଦେ:* (ବି.) : କ୍ଷଣିକ

**ଝଟକା** - *ଦେ:ନବ:ସୁ:* (ବି.) : ଆଘାତ, ଧକ୍କା, ଛନକା

**ଝଟକିବା** - *ଗଞ:* (କ୍ରି.) : ଫୁଟି ଉଠିବା, ଚକିତ କରିବା, ଶୋଭା ପାଇବା

**ଝଟଝଟିଆ** - *ଦେ:* (ବି°.) : ତରବରିଆ

**ଝଟତି** - *ଢ:* (କ୍ରି.ବି°.) : ଶୀଘ୍ର

**ଝଟା** - *ଅନେ:* (ବି.) : ନଡ଼ିଆ ପତ୍ରର ମଝିଶିରା, ବାଡ଼ କରାଯାଉଥିବା ଡାଳ, ଶିମ୍ବ, ପରିବା, ଝାଡୁ

**ଝଟାପଟା** - *ସ°ନ:* (ବି°.) : ବହୁତ, ଅତ୍ୟଧିକ (କଳି)

**ଝଟାପେଞ୍ଜ** - *କଣ:* (ବି.) : ଶିମ୍ବସିଝା

**ଝଟି** - *ଗ:* (ବି.) : ପ୍ରବଳ ପବନ ବର୍ଷା, ଲଗାଣ ବର୍ଷା

**ଝଟୁଆ** - *ମ:କେନ୍ଦୁ:* (ବି.) : ଶିମ୍ବ

**ଝଟେଇ ପଟେଇ** - *ଢ:* (ବି.) : ଲାଗିପାତି

**ଝଟେଇବା** - *ମ:* (କ୍ରି.) : ଝାଡୁମାରିବା

**ଝଟୋଝଟୋ** - *ବ:କଳା:* (କ୍ରି.ବି°.) : ଶୀଘ୍ର, ତରତର ହୋଇ

**ଝଡ଼ା** - *ଢ:* (ବି.) : ଶୁଖିଲାକାଠ, ଝାଡ଼ିବା

**ଝଡ଼ାଝଡ଼ି** - *କ:ନ:ଦେ:* (ବି.) : ସବୁ ଶେଷ କରିବା, ଝାଡ଼ିବା କର୍ମ, ଗୁଣିଆ ଫୁଙ୍କାଫୁଙ୍କି କରିବା, ସଫାକରିବା

**ଝଡ଼ି** - *ଅନେ:* (ବି.) : ବର୍ଷାପାଗ, ପବନ ସହ ବର୍ଷା, ଲଗାତର ବର୍ଷା

**ଝଡ଼ିଜଞ୍ଜାଳ** - *ଗ:* (ବି.) : ଦୀର୍ଘଦିନ ବ୍ୟାପୀ ଲଗାଣ ବର୍ଷା

**ଝଡ଼ିପାଗ** - *ଦେ:* (ବି.) : ଅନବରତ ବର୍ଷା ଲାଗି ରହିଥିବା ପାଗ

**ଝଡ଼ିପୋକ** - *ଦେ:* (ବି.) : କଲେଇପୋକ

**ଝଡ଼ି ବରଷା** - *ନ:ଢ:* (ବି.) : ଝିପି ଝିପି ବର୍ଷା, ଅବିରାମ ବର୍ଷା

**ଝଡ଼େଇବା** - *ଗ:ଜ:ସଂ:* (କ୍ରି.) : ସୁତ୍ରକରି ଅନ୍ୟଠୁ ଟଙ୍କା ବାହାର କରିବା, ଚାନ୍ଦାଦେବା, ଖର୍ଚ୍ଚାନ୍ତ କରେଇବା

**ଝଡ଼େଇ ହେବା** - *ସଂ:* (କ୍ରି.) : କସରତ କରିବା, ଲଢାଲଢି ହେବା

**ଝଢଙ୍କା** - *ଗ:* (ବି.) : ଅବାଗରେ ବଢିଥିବା ଗୁଳ୍ମ, ଅନାବନା ଗୁଳ୍ମ

**ଝଣାଝିଙ୍କା** - *ଢ:* (ବି.) : ଆକର୍ଷଣ, ଟାଣିବା

**ଝଣାଦ୍** - *ଗଦ୍ୟ:* (ବି.) : ଝଣଝଣ ଶବ୍ଦ

**ଝଣ୍ଡା** - *ବୌ:* (ବି.) : ଶିମ୍ବ

**ଝନ୍କ** - *ବ:* (ବିଂ.) : ଏକମାତ୍ର

**ଝନ୍କିବାର** - *ସୁବ:* (କ୍ରି.) : କହୁଣି ପାଖର ଶିରାରେ ଆଘାତ ହେବାର ଅନୁଭୂତି

**ଝନ୍କେଇବା** - *କଳା:* (କ୍ରି.) : ହଲେଇବା, ଝଂକେଇବା, ଝାଂକିବା

**ଝନ୍ଝଟ** - *ଯା:ବ:କଳା:ଢ:* (ବି.ବିଂ.) : ଝମେଲିଆ, ଜଞ୍ଜାଳ, ଅଡୁଆ

**ଝନ୍ ଝନା** - *କଳା:* (ବିଂ.) : ଝଣଝଣା, ସଂପୂର୍ଣ୍ଣ ଶୁଖିଲା

**ଝନ୍ଝନାବାର** - *ସୁବ:* (କ୍ରି.) : ଶିକୁଳୀ ଝନ ଝନ ଶବ୍ଦ କରିବା

**ଝନକା ଗୁଡିଆ** - *ସୁବ:* (ବିଂ.) : ବଳଦର ପଛ ଗୋଡର ଏକ ରୋଗ, ବଳଦମାନଙ୍କର ପଛଗୋଡ଼ରେ ହେଉଥିବା ରୋଗ

**ଝନେ** - *ବ:ସ:କଳା:ନୂ:* (ବି.ବିଂ.) : ଜଣେ, ଜଣିଏ, ଗୋଟିଏ ବ୍ୟକ୍ତି

**ଝନେକ୍** - *ନୂ:* (ସ.) : ଗୋଟିଏ ବ୍ୟକ୍ତି

**ଝନେକର୍** - *ନୂ:* (ସ.) : ଜଣକର

**ଝପ୍କରି** - *କଳା:* (କ୍ରି.ବିଂ.) : ଜଲ୍‌ଦି, ଯଥାଶୀଘ୍ର

**ଝପ୍କିବା** - *ଝ:* (କ୍ରି.) : କଷ୍ଟଦେବା

**ଝପ୍ଟି ଯିବା** - *କଳା:* (କ୍ରି.) : ଧାଇଁଯିବା, ତୁରନ୍ତ ଯିବା

**ଝପ୍ଡ଼ି** - *ଅ:* (ବି.) : କୁଡ଼ିଆଘର, ଝୋପଡ଼ି

**ଝପକିନା** - *ନ:* (ବିଂ.) : ଅତିଶୀଘ୍ର

**ଝପଟ** - *କେ:ଭା:ଦେ:* (ବି.) : ଶୀଘ୍ର ଦୌଡିବା, ଚଞ୍ଚଳ, ଧାଇଁବା, ଦୌଡ

**ଝପଟଧାଇଁ** - *ନ:* (ବି.) : ଧାଇଁ ଧାଇଁ ଯିବା ଆସିବା କରିବା

**ଝପାଝପା** - *କଣ:* (ବି.) : ପୁଞ୍ଜାପୁଞ୍ଜା

**ଝପାବା, ଝପେଇବା** - *କଳା:କୋ:* (କ୍ରି.) : ନିକ୍ଷେପ କରିବା, ଧପେଇବା

**ଝପିବା** - *ଭା:* (କ୍ରି.) : ମନ୍ତ୍ର କରିବା

**ଝପେଇବା** - *କୋ:* (କ୍ରି.) : ଧପେଇବା

**ଝପେଇ ହେବା** - *କଳା:କୋ:* (କ୍ରି.) : ପକେଇ ହେବା, ଅନାହୁତ ପ୍ରବେଶ କରିବା, ଉପରେ ପଡ଼ି କହିବା, ବିନା ନିମନ୍ତ୍ରଣରେ ଧସେଇ ପସିବା

**ଝବା** - *ଭି:ନ:ଦେ:* (ବି.) : ଅଦରକାରୀ ଧାନ, ମାଟି ମାଠିଆ( କ୍ଷୀର ପାଣି ରଖିବା)ପାତ୍ର

**ଝମଝାଳ** - *ନ:* (ବି.) : ଶ୍ରମ ଝାଳ

ଝମେଣା - *ଭ.* (ବି.) : ଗୋଳମାଳ

ଝମେଲା - *ଢ.କଳା.* (ବି.) : ଗଣ୍ଡଗୋଳ, ଝଂଝାଳ, ଝଗଡା, କଳିତ କରାଳ

ଝମ୍ପରା - *ରା.* (ବି.) : ଗହଳିଆ ପତ୍ର ଥିବା ଲତା ଗଛ

ଝମ୍ପାଣ - *ପା.* (ବିଂ.) : କାଳ୍ପନିକ

ଝରକାଢ଼ିଆ - *ଗ.* (ବିଂ.) : ଜଳଉହ ଆରମ୍ଭ ହେବା, ଜଳ ଝରିବା

ଝରଝରା - *କଳ.* (ବିଂ.) : ସଚେତନ

ଝରଣ - *ଦେ.ଗ.* (ବି.) : ସ୍ୱତଃ ପ୍ରବାହିତ ଚମ୍ପାଝରଣ, ବେତଝରଣ, ଶୃଙ୍ଖଳା ନଈରେ ସ୍ନାନ ନିମିତ୍ତ ପ୍ରସ୍ତୁତ ଚୂଆ

ଝରଣି - *କଳ.* (ବି.) : ମଦ ରାନ୍ଧିଲା ବେଳେ ବ୍ୟବହୃତ ପାତ୍ର

ଝରନ୍ - *କଳା.ସ.ସୁ.* (ବି.) : ଝରଣା, ଝର

ଝରମରା - *ସୁବ.ବଲ.* (ବି.ବିଂ.) : କ୍ଷତିପୂର୍ଣ୍ଣ, ବିପଦପୂର୍ଣ୍ଣ, କ୍ଷତିରେ ପଡ଼ିବା

ଝରସରୀ - *ଗଦ୍ୟ.* (ବି.) ଅନ୍ୟକୁ ସହିପାରୁନଥିବା ସ୍ତ୍ରୀ, ଅସହିଷ୍ଣୁ ନାରୀ

ଝରସେଇବା - *ନ.* (କ୍ରି.) : ଝଟକିବା

ଝରା - *ଅନେ.* (ବି.ବିଂ.) : ଜାତିବିଶେଷ (ଏମାନେ ନଦୀରୁ ସ୍ୱର୍ଣ୍ଣ କଣିକା ହୀରା ଆଦି ମୂଲ୍ୟବାନ ପଥର ସଂଗ୍ରହ କରନ୍ତି, ମାଛ ମଧ୍ୟ ମାରନ୍ତି), କାନରେ ପିନ୍ଧା ଯାଉଥିବା ଏକ ଅଳଙ୍କାର, ବନ୍ୟଧାନ, ବାଳୁଙ୍ଗା ଧାନ, ଝରା ବଉଳ, ଝରା, ଓହଳିଥିବା ଜରି, ରାଜାଙ୍କ ରକ୍ଷିତା, ସାନରାଣୀ, ଓସାରିଆ ଢାଲିଥିବା ଚଟୁ

ଝରାଇବା - *ଦେ.* (କ୍ରି.) ବୁହାଇବା, ଗଡାଇବା

ଝରାକାଠି - *ଗ.* (ବି.) : ସ୍ତ୍ରୀମାନଙ୍କ ମୁଣ୍ଡବାଳ ଖୋସାକୁ ବାନ୍ଧିରଖିବା ରୁପାକାଠି

ଝରାଗୁନା - *ବ.କଳା.* (ବି.) : ଝରା ଲାଗିଥିବା ଗୁଣା, କର୍ଣ୍ଣାଳଙ୍କାର ବିଶେଷ, ଝରା ଲମ୍ବିଥିବା ନାକ ଗୁଣା

ଝରାଚଟୁ - *ସ.* (ବି.) : ଯାହା ଛଣାଛଣିରେ ବ୍ୟବହାର କରାଯାଏ

ଝରାପନା - *ସୁ.* (ବି.) : ପଣାପାଣି

ଝରାମାରିବା - *ନ.* (କ୍ରି.) : ଗୁଡ଼ରୁ ତରଳ ପଦାର୍ଥ ଉତୁରିଆସି ତଳେ ଢଳିବା

ଝରାମୁଣ୍ଡି - *ବ.* (ବି.) : ଶଗଡ଼ର ଅଗ୍ରଭାଗ

ଝରି - *ଅନେ.* (ବି.) : ଜଳପାତ୍ର, ପାଣିଠେକି, ଡାଳ, ସିଗାରେଟ ପେଟିରେ ଥିବା ଜରିକାଗଜ, ଲଗାଣ ବର୍ଷା, ସୁବର୍ଣ୍ଣ କଳସୀ

ଝରିଆ - *ସୁବ.* (ବି.) : ଅନବରତ, ଲଗାଣ ବର୍ଷା

ଝରିକାଟିବା - *ନ.* (କ୍ରି.) : ଦୁଆର ବନ୍ଧର ଗୋଟିଏ ପାର୍ଶ୍ୱରେ କବାଟ ପଡ଼ିବାପାଇଁ ୧ ଇଞ୍ଚ ଘରା କାଟିବା

ଝରିପୋକ - *କ.* (ବି.) : ଡେଣାଯୁକ୍ତ ଉଇ

**ଝରେଇ** - *ସୁବ:* (ବି.) : ଛୋଟ ବୁଦ୍ବୁଦିଆ ଭଙ୍ଗଲ, ବୁଦବୁଦିକା ଭଙ୍ଗଲ

**ଝର୍ଝରୀ** - *ଦେ:* (ବି.) ଝାଞ୍ଜ, ଚଟକା, ନାଗରା, ଚାଙ୍ଗୁ, ତାସାବାଦ୍ୟ

**ଝଲ୍କା** - *ଦୌ:କଲ:* (ବି.) : କାନ ଅଳଙ୍କାର, ଏକ ପ୍ରକାର ବଡ଼ଧାନ

**ଝଲ୍ଙ୍ଗୋ** - *ସ:* (ବିଂ.) : ଢିଲା

**ଝଲ୍ଝଲା** - *ମା:କଳା:* (ବି.ବିଂ.) : ଚମକ ପ୍ରଦ, ଦୀପ୍ତିଯୁକ୍ତ

**ଝଲକା** - *ଚ:ସୁ:ଦେ:କେ:* (ବି.) : କର୍ଣ୍ଣାଳଙ୍କାର ବିଶେଷ, କର୍ଣ୍ଣ ଭୂଷଣ, ନାକର ଦଣ୍ଡି, ଅଳଙ୍କାର, ଝରକା

**ଝଲକାଏ** - *ଗ:ଦେ:* (ବିଂ.) : ମନ୍ଦାଏ, ଅଳ୍ପ

**ଝଲଙ୍ଗୋ** - *ସୁ:* (ବିଂ.) : ଢିଲା

**ଝଲପି** - *ଦେ:* (ବି.) : ଘଞ୍ଚ, ବାବୁରି ବାଳ

**ଝଲମ** - *ଗ:* (ବି.) : ଦେଉଳ ପୀଢ଼ାର ଚାଳ

**ଝଲମଲ** - *ଦେ:ନ:କେ:* (ବିଂ.ବି.) : ଝଲଝଲିଆ, ଜାଲ୍ଜାଲୁଆ, ଜକଜକ, ଦୀପ୍ତିଶାଳୀ, ଉଜ୍ଜ୍ୱଳ କରିବା, ଚିକ୍ଚିକ୍ କରିବା

**ଝଲର** - *ସୁବ:* (ବି.) : ଝାଲର, ସୁସଜ୍ଜିତ ଧଡ଼ି

**ଝଲସିବା** - *ସଂ:ଦେ:* (କ୍ରି.) : ଚମକାଇ ଦେବା; ଝଟକିବା, ଆଲୋକରେ ଆଖିବୁଜି ହେବା, ଜକଜକ ହେବା

**ଝଲା** - *ସୁ:* (ବିଂ.) : ଫମ୍ପା

**ଝଲିଆ** - *ସୁବ:* (ବିଂ.) : ଲାଂଜଥିବା, ଲଙ୍ଗଳ ସହିତ ଥିବା କଣ୍ଟି ବା ମୁଠି

**ଝଲେଇ ହେବା** - *ଗ:* (କ୍ରି.) : ଗର୍ବ କରିବା

**ଝଲୋ ଝଲୋ** - *ଦୌ:* (ବିଂ.) : ସ୍ପଷ୍ଟ, ଜଳଜଳ

**ଝଳକେ** - *ଯା:* (କ୍ରି.ବିଂ.) ଅର୍ଦ୍ଧାଞ୍ଜଳି ପରିମାଣ, ମୁନ୍ଦେ

**ଝଳା** - *ଦେ:କେନ୍ଦୁ:* (ବି.) : ଭଙ୍ଗା ଅଳଙ୍କାର ବାସନକୁ ଯୋଡିବା ପାଇଁ ସୀସା ଓ ରଙ୍ଗ ଦେଇ ଯୋଡ଼ିବା କର୍ମ, ବାଲୁଙ୍ଗା ଧାନଗଛ

**ଝଳାଝଳି** - *ନ:* (ବି.) : ଲୁହା ବା ସୁନା, ରୂପାକୁ ଅନ୍ୟ ଧାତୁଦେଇ ଝାଳିବା କର୍ମ

**ଝଳାରି** - *କୋ:* (ବି.) : ଯେ ଝଳେଇବା କାର୍ଯ୍ୟ କରେ

**ଝଳି** - *ଗଦ୍ୟ:ଦେ:କୋ:* (ବି.) : ଦୀପ୍ତି, ଶୋଭା, କାନ୍ତି, ଜକ୍ ଜକ୍ କରୁଥିବା, ତୋଫା, ଆଲୋକ ତରଙ୍ଗ, ତେଜ

**ଝଳେଇ** - *କ:ପୁ:ଜ:ଗ:* (ବି.) : ମରାମତି, ଧାତୁରେ ତାଳିପକା କାମ, ଧାତୁ ସାମଗ୍ରୀ ଫଟାଫଟିର ମରାମତି, କଣା ବାସନକୁ ଝଳେଇବା

**ଝସାଇବା** - *ଗ:* (କ୍ରି.) : ସାହସରେ ପଶିବା, ଧସେଇ ପଶିବା

**ଝାଆଁରା** - *ଦେ:* (ବି.) : ନଦୀ ଗର୍ଭରେ ହେଉଥିବା ଗୁଳ୍ମ

**ଝାଉନ** - *ଗ:* (ବି.) : ଚୂନାମାଛ

**ଝାଉନୁ** - *ଗଜ:* (ବି.) : ସହର

**ଝାଉପଲ** - *ରା:* (ବି.) : ଜାଇଫଳ

**ଝାଇଁ** - *ଅନେ:* (ବି.) : ଟାଣ ଖରା, ଗରମ ଚାଉଳକୁ ଗୁଣ୍ଡ କରି ବ୍ୟଥା ହେଉଥିବା ସ୍ଥାନରେ ଲେପ ଦେବା, ଏକ ପ୍ରଜାତିର ଚିଙ୍ଗୁଡ଼ି, ଅତିଗୁଣ୍ଡ, ଚିକଚିକ୍ କରୁଥିବା ଛୋଟଛୋଟ ମାଛ

**ଝାଇଁଆ** - *ଜ:* (ବିଂ.) : ଖରାରେ କ୍ଲାନ୍ତ, ବିସ୍ୱାଦ

**ଝାଇଁଝାଇଁ** - *ଗ:ଦେ:* (ବି.ଅ.) : ତପ୍ତ, ମୁଣ୍ଡ ବୁଲାଇବା ଅନୁଭବ, ଝାଞ୍ଜ, ଝିଙ୍କାରି, ନିଶା ରାତିର ଗର୍ଜନ ବା ଶବ୍ଦ, ଝୋଲା

**ଝାଇଁପାଣି** - *ଗ:* (ବି.) ଚୁଲିଉପରେ ବସିଥିବା ଭାତ ହାଣ୍ଡିର ପାଣି

**ଝାଇଁମାରିବା** - *ନ:* (କ୍ରି.) : ଶୋଷହେବା (ପ୍ରବଳ ମାତ୍ରାରେ)

**ଝାଇଁମୁଗ** - *ଗ:* (ବି.) : ଖରାଟିଆ ମୁଗ

**ଝାଉ** - *ଝା:ସ:ଗଦ୍ୟ:ବୌ:* (ବି.) : ଖରାବେଳେ ବହୁଥିବା ଗରମ ପବନ, ସୂର୍ଯ୍ୟ କିରଣରେ ଦେହରେ ହେଉଥିବା ବିକାର, ଝାଞ୍ଜି

**ଝାଉଁ** - *ଦେ:ଗ:ସୁ:* (ବି.) : ବାଲି ମାଟିରେ ହେଉଥିବା ଝାଉଁ ଗଛ

**ଝାଉଁଆ** - *ବା:* (ବିଂ.) : ପୋଡ଼ିଯାଇ ନାଲି ପଡ଼ିଯାଇଥିବା ଇଟା, ଝାମ

**ଝାଉଁଶିଆ** - *ଯା:* (ବିଂ.) : ଟାଣ

**ଝାଏଁ** - *ଅନେ:* (ବି.ଅ.) : ଚେତା ପଶିବା, ଝାଞ୍ଜିରେ ବେହୋସ ହେବା, ଝାଇଁ, ଝାଂଜି, ଖାଲି ଖାଲି ଲାଗିବା, ହଠାତ୍ ଅନୁପସ୍ଥିତିର ଅନୁଭବ, ଶୂନ୍ୟ

**ଝାକର** - *କନ୍ଧ:କଳା:* (ବି.) : କୋଠିର ପୂଜକ, ଆଦିବାସୀ ସଂପ୍ରଦାୟର ପୂଜକ, କେତେକ ଆଦିବାସୀଙ୍କ କୌଳିକ ଉପନାମ

**ଝାକାସ** - *କେ:କୋ:ଗ:* (ବିଂ.ଅ.) : ମାଡ୍ରୁଆ, ବଢ଼ିଆ, ଚମତ୍କାର, ଆଶ୍ଚର୍ଯ୍ୟ ପ୍ରକାଶ, ଭାବ ପ୍ରକଟ

**ଝାକେ** - *କଳା:* (ବିଂ.) : ଖୁବ୍ କମ୍ ସମୟ ପାଇଁ ନିଦ୍ରାଯିବା

**ଝାଗା** - *କଳା:* (ବି.) : ସ୍କଟ, ଝିଅଙ୍କ ପୋଷାକ

**ଝାଗିଡ଼ି ଭାକା** - *କନ୍ଧ:* (ବି.) : ଝାଗିଡ଼ି ପର୍ବ

**ଝାଙ୍କ** - *ଦେ:ନବ:ନ:* (ବି.) : ଏକ ମୁହୂର୍ତ୍ତ, ମଜା, ତାମସା, ହାଲିଆ

**ଝାଙ୍କ ଛଡ଼େଇ ଦେବା** - *ସଂ:* (କ୍ରି.) : ଜିଦ୍‌ଧରି ଅଥୟ ହେବା, ଝୁଙ୍କ ଧରିବା

**ଝାଙ୍କର** - *ଦେ:ମା:* (ବି.) ଅନାର୍ଯ୍ୟ, ଚଉକିଦାର, ଗ୍ରାମ ଦେବତୀଙ୍କ ପୂଜକ, ଗ୍ରାମଦେବୀ

**ଝାଙ୍କରା** - *କୋ:* (ବିଂ.) : ଝଙ୍କାଳିଆ

**ଝାଙ୍କରୀ** - *ରା:* (ବି.) : ଭୂତ ଭୟ ଦୂରକାରୀ ପୁରୋହିତ

**ଝାଙ୍କି** - *ଭ:କେନ୍ଦୁ:* (ବି.) : ବଡ଼ ପାଛିଆ, ବାଉଁଶ କାଠିରେ ଗୁନ୍ଥା ଝୁଡ଼ି ଟୋକେଇ

**ଝାଙ୍କିନେବା** - *ନ:* (କ୍ରି.) : ଉଠାଇନେବା

**ଝାଙ୍କିବା** - *ସଂ:ନ:ଦେ:ଗ:* (କ୍ରି.) : ନିଦ ଆସିବା, ଝିଙ୍କିବା, ଗାଳି-ମନ୍ଦ କରିବା

**ଝାଙ୍କୁଆ** - *ରା:* (ବିଂ.) : ଝାଙ୍କିକରି ଯେ ଫଳ ସଂଗ୍ରହ କରେ

**ଝାଙ୍ଗ୍‌ନା** - *ନବ:* (ବି.) : ଝୁଡ଼ି

**ଝାଞ୍ଜ** - *ଅନେ:* (ବି.) : କରତାଳ, ଏକ ପ୍ରକାର ବାଦ୍ୟ, ପିତ୍ତଳ, କଂସା ନିର୍ମିତ କରତାଳ

**ଝାଞ୍ଜବଳା** - *ନ:* (ବି.) : ଶଗଡ଼ ତୁମ୍ବର ଦୁଇ ପାର୍ଶ୍ୱରେ ଲାଗୁଥିବା ଲୌହବଳା

**ଝାଞ୍ଜରି** - *ଦେ:* (ବି.) : କଣା ମାଟି ହାଣ୍ଡି, ଖଇ ଭାଜିବା ପାଇଁ ଧାନ ଝାଞ୍ଜରେଇବାରେ ବ୍ୟବହୃତ ସାଧନ

**ଝାଞ୍ଜି** - *ନ:ଦେ:ଗଜ:* (ବି.) : ତତଲା ପବନ, ଖରା, ତାତି, ଝାଉଁ

**ଝାଟ** - *ଦେ:ଗ:କଳା:* (ବି.) : ଛାଟ, ଘର ଓଳେଇବା, ଘଞ୍ଚ, ଜଙ୍ଗଲିଆ, ନମନୀୟ ବାଡ଼ି

**ଝାଟ୍‌କାମେରା** - *କଝ:* (ବି.) : ଅଚେତ ହେବା, ଝଟକା ଲାଗିବା

**ଝାଟକା** - *ରା:କୋ:ଗଜ:ଗ:* (ବି.) : ଗୋଟିଏ ଘୋଡ଼ାର ଗାଡ଼ି, ଘୋଡ଼ାଗାଡ଼ି

**ଝାଟା** - *ଦେ:ବା:ରା:* (ବି.) : ଭୂଇଁ ଅଁଳା, ଝାଡୁ, ବିନସ୍

**ଝାଟି** - *ଅନେ:* (ବି.) : ବାଉଁଶ କଣି, ଛୋଟ ଡ଼ାଳ, ଝାଟିମାଟି ଘର, କୁଟାକାଠି, ସରୁ ସରୁ ଜାଳେଣି କାଠ ବା ବାଉଁଶ, ରାଞ୍ଜି, ଝୁରିକାଠ, ଲମ୍ବା ଲମ୍ବା ସରୁ ଗଛ

**ଝାଟିଆ ତଳଲା** - *ସଂ:* (ବି.) : ଗୋଚର ସ୍ଥାନ

**ଝାଟିପର୍ବ** - *ପଦ୍ୟ:* (ବି.) : ପୌଷପର୍ବ

**ଝାଟିବଣ** - *ଗ:* (ବି.) : ପତଳା ଜଙ୍ଗଲ, ଜଙ୍ଗଲତଳି ଅଞ୍ଚଳ

**ଝାଟିମାଟି** - *ଛ:ନ:ଦେ:* (ବି.) ଶୁଖିଲା ଡାଳରେ ମାଟିଛଟା ଘର, ଛୋଟ ଗଛର ଡାଳପତ୍ର ଓ କଣିରେ ନିର୍ମିତ ମାଟିଘର

**ଝାଟୁଆ** - *ଅନେ:* (ବି.) : ଝାଡୁ, ଛାଞ୍ଚୁଣୀ, ଅଳିଆ, ଖରକା, ଝାଡୁ, ଯେଉଁଥିରେ ଘରଦ୍ୱାର ଝାଡୁ କରାଯାଏ

**ଝାଟେଣି** - *କଝ:* (ବି.) : ଝାଡୁ

**ଝାଡ଼** - *ଅନେ:* (ବି.ବିଂ.) : ନିଘଞ୍ଚ, ଜଙ୍ଗଲ, କାଚରେ ତିଆରି ଆଲୋକ ଧାର, ଆତସବାଜି ବିଶେଷ, ବଣ

**ଝାଡ୍କୁଝୁଡ୍କୁ** - *ବା:* (ବି.) : ନିଃସ୍ୱହୋଇଯିବା

**ଝାଡ଼ଣ** - *ଗ:ଭ:* (ବି.) : ଝାଡ଼ିବା, ସମାର୍ଜନ, ମନ୍ତ୍ର, ତଉଲିଆ, ଗାମୁଛା

**ଝାଡ଼ମାଲି** - *ଗଜ:ଗ:* (ବି.) : ଗୁଣିବିଦ୍ୟା, ଭୂତ ଛଡ଼ାଇବା ଗୁଣୀ ବିଦ୍ୟା

**ଝାଡ଼ିଆ** - *ଗ:* (ବି.) : ଗଛରୁ ଆମ୍ବ, ତିନ୍ତଳି ତୋଳିବା ବାଉଁଶ

**ଝାଡ଼ିଝୁଡ଼ି** - *ରା:ସ:* (ବି.) : ଦେହରୁ ମଇଳା ସଫା, ଝାଡ଼ିଝୁଡ଼ି, ଖାଲି

**ଝାଡ଼ିଦେବା** - *ଗ:* (କ୍ରି.) ଗାଳିଦେବା, ମନ୍ତ୍ରଫୁଙ୍କିବା

ଝାଡ଼ିବା - *ନ:* (କ୍ରି.) : ଝାଡୁ କରିବା, ଅଳିଆ ଅଳନ୍ଧୁ ସଫା କରିବା

ଝାଡୁ - *ଦେ:* (ବି.) : ଖରକା, ଛାଞ୍ଚୁଣି, ବାଡୁଣି, ପଇଁରା

ଝାଡୁଆ ବାମହନ - *ସୁବ:* (ବିଂ.) : ବ୍ରାହ୍ମଣ ଗୋଷ୍ଠୀ ବିଶେଷ, ଆରଣ୍ୟକ ବ୍ରାହ୍ମଣ

ଝାଣ୍ଡା - *ଦେ:* (ବି.) : ଝାଡୁ

ଝାଣ୍ଡି - *ବୌ:* (ବି.) : ଛୋଟ ଢାଳ କାଠ

ଝାଣ୍ଡୁ - *ବୌ:* (ବି.) : ପତଳା ଲୋକ

ଝାଣ୍ଡୁରା - *ଗ:* (ବିଂ.) : ଶିଶୁର ଦୁଷ୍ଟାମୀ

ଝାଣ୍ଡା - *କୋ:* (ବି.) : ପତାକା

ଝାନି - *ରା:* (ବି.) : ଢାମୁକୋଳି

ଝାନୁ - *ବା:* (ବିଂ.) : ବଦ୍‌ରାଗୀ ପ୍ରକୃତିର

ଝାପରୁ - *ଝା:* (ବିଂ.) ଶାଖା ପ୍ରଶାଖା ପତ୍ରରେ ଭର୍ତ୍ତି ହୋଇଥିବା (ଗଛ)

ଝାପ୍‌ସା - *ଗ:ଦେ:* (ବିଂ.) : ଅସ୍ପଷ୍ଟ

ଝାପରିବା - *କୋ:* (କ୍ରି.) : ଆଲୋଚନା କରିବା

ଝାପି, ଝାଂପି - *କଳା:* (ବି.) : ଝାଙ୍କି, ବାଉଁଶ ପାତିଆରେ ତିଆରି ବାକ୍‌ସ ଓ ଛଣି

ଝାପୁ, ଝାପୁରୁ - *ସୁବ:* (ବିଂ.) : ଝାମ୍ପୁରା, ଯାହାର ମୁଣ୍ଡବାଳ ମୁହଁକୁ ଘୋଡ଼ାଇ ପକାଏ, ଆଗକୁ ମୋଡ଼ିହୋଇ ଥିବା ଶିଙ୍ଘଥିବା ବଳଦ

ଝାବ୍‌ରା - *ବା:* (ବି.) : ଅଗାଡ଼ି

ଝାବଡ଼ - *ଭ:ଯା:ପୁ:* (ବିଂ.) : ବହଳିଆ, ଖୁବ୍ ସାଧାରଣ ବା ନଗଣ୍ୟ, ଫାଲ୍‌ତୁ, ମୂଲ୍ୟହୀନ

ଝାବରା - *ରା:ଗ:* (ବିଂ.ବି.) : ଅପରିଷ୍କାର (ଶସ୍ୟ), ଧୂଳିପୂର୍ଣ୍ଣ, ବିରକ୍ତ, ଅନାବନା

ଝାବୁକ - *ଗ:* (ବି.) : ଝାଉଁଗଛ

ଝାମ - *ସଂ:ଗ:ଦେ:* (ବି.) : ମୂର୍ଚ୍ଛା, ନିଆଁଭରା ଲମ୍ବ ଗାତ, ଭ୍ରମ, ଶଗଡ ବା ଗାଡିଚକ ଉପରେ ଲାଗୁଥିବା ଲୁହା ବଳା

ଝାମଝାଡ଼ା - *ପୁ:* (ବି.) : ଆଡ଼ମ୍ବର ପୂର୍ଣ୍ଣ

ଝାମଦେବା - *ନ:* (କ୍ରି.) : ମୁଣ୍ଡ ବୁଲାଇବା

ଝାମା - *ଖୋ:ଗ:ସ:* (ବି.ବିଂ.) କାଟ, ପୋଡ଼ାଇଟା

ଝାମି - *ଗଞ:* (ବି.) : ପିଙ୍ଗୁଳି

ଝାମି ଯାତରା - *ରା:ଗଞ:* (ବି.) : ନାଗପୂଜା ପାଟ ଯାତରା

ଝାମିରି ଗଛ - *କେନ୍ଦୁ:ଖୋ:* (ବି.) : ଏକ ପ୍ରକାର ଗଛ

ଝାମୁ - *ଗ:ଦେ:* (ବି.) : ଝାଉଁଗଛ, ଯାତ୍ରା, ଚୈତ୍ର ପର୍ବ

ଝାମୁଆ - *ଦେ:* (ବି.) : ପାଟୁଆ

ଝାମେଲା - *କେ:* (ବି.) : ଗଣ୍ଡଗୋଳ

ଝାମ - *ବା:ସଂ:ବା:ମ:* (ବି.) : କାଛକୁ ବର୍ଷା ଦାଉରୁ ରକ୍ଷା କରିବାକୁ କୁଟା ତିଆରି ଘୋଡ଼ଣୀ, ଏହାଦ୍ୱାରା କୂଅ ପୋଖରୀରୁ ଜିନିଷ ଉଦ୍ଧାର

କରାଯାଇଥାଏ, ଗୁଡ଼ାଏ ବସାକୁ ଏକତ୍ର କରି ବାଉଁଶରେ ବାନ୍ଧି ନଦୀରେ ମାଛ ଧରିବା କାର୍ଯ୍ୟ, ବାଡ଼ର ଟାଟି, ବଡ଼ ଝାମି

**ଝାମଡ଼ା** - *ଗ:* (ବି.) : ଅଲରା ମୁଣ୍ଡବାଳ

**ଝାମନ** - *ଗଦ୍ୟ:* (ବି.) : ସାପଖେଳ

**ଝାମର** - *ରା:* (ବି.) : ପତ୍ର କୁଡ଼ିଆ

**ଝାମରା** - *ଦେ:* (ବିଂ.) : ଝାମୁଲା (ଗଛ)

**ଝାମରୀ** - *ନବ:* (ବିଂ.) : ଯାହା ମୁଣ୍ଡରେ ଅଡୁଆ ବାଳ ଥାଏ

**ଝାମି** - *ଅନେ:* (ବି.) : ବର୍ଷାରୁ ମୁଣ୍ଡକୁ ରକ୍ଷା କରିବାପାଇଁ ବାଉଁଶରେ ତିଆରି ଟୋପି, ଘୋଡ଼ଣି ଥିବା ବାଉଁଶ ନିର୍ମିତ ଟୋକେଇ, ଟୋପର, ତଲାରି

**ଝାମିପେଡ଼ି** - *ଗଦ୍ୟ:* (ବି.) : ତାଳପତ୍ର ପେଡ଼ି

**ଝାମିବା** - *ଗଜ:* (କ୍ରି.) : ଟାଣି ନେଇଯିବା

**ଝାମୁରିଆ** - *ଛେ:* (ବିଂ.) : ଝଙ୍କାଳିଆ

**ଝାମୁରୀ** - *ରା:ନବ:* (ବିଂ.) : ଯିଏ ବାଳର ଯତ୍ନ ନିଏ ନାହିଁ

**ଝାମୁଲା** - *ଭ:କେ:ନ:* (ବିଂ.) ଆଗକୁ ସିଙ୍ଘଥିବା ବଳଦ, ନୂଆଣିଆ, ଗହଳିଆ

**ଝାମୁ** - *ରା:* (ବି.) : ପିକ୍ନିକ୍, ଚୈତ୍ର ମାସରେ ଦେବୀ ପୀଠରେ ହେବା ଯାତ୍ରା

**ଝାୟାଁ ହେବା** - *ବୌ:* (କ୍ରି.) : ମୂର୍ଚ୍ଛା ଯିବା

**ଝାର୍** - *ଅନେ:* (ବି.) : ଜଙ୍ଗଲ, ଘାସ, ବଡ଼ ବଡ଼ ଗଛ ଥିବା ଭୂଇଁ, ନାଳ

**ଝାର୍ କଡ଼ୋ** - *ସ:* (ବିଂ.) : ବୋକା ମଣିଷ

**ଝାର୍ଝୁର୍** - *କଳା:* (ବି.କ୍ରି.) : ଘାସ ପ୍ରଭୃତି, ଝାଡ଼ିଝୁଡ଼ି ହେବା

**ଝାର୍ ଚଲିଆ ଲୋକ** - *ସ:* (ବିଂ.) : ଜଙ୍ଗଲିଆ ଲୋକ, ଆଦିବାସୀ ଲୋକ

**ଝାର୍‌ବା** - *ସ:ବୌ:ନୂ:* (କ୍ରି.) : ଝାଡ଼ିବା, ପାରିବା

**ଝାର୍ ବିଲେଇ** - *କନ୍ଧ:* (ବି.) : ବଣଭୁଆ

**ଝାର୍ ବୁର** - *ବୌ:* (ବି.) ଜଂଗଲୀ ବରକୋଳି

**ଝାର୍ ବେରା** - *ସ:* (ବି.) : ଛୋଟ ସୂର୍ଯ୍ୟମୁଖୀ ଆକୃତି ବିଭିନ୍ନ ରଙ୍ଗର ଫୁଲ

**ଝାର୍‌ରାଜି** - *କୋ:* (ବି.) : ଜଙ୍ଗଲ ନଥିବା ଗାଁ

**ଝାର କେଡ଼ିଆ** - *ସ:* (ବିଂ.) : ଜଙ୍ଗଲୀ ଲୋକ

**ଝାରଖଜୁର୍** - *କଳା:* (ବି.) : ଛୋଟ ଛୋଟ ବୁଦାଳିଆ ଖଜୁରି

**ଝାରବାର** - *ସୁବ:* (କ୍ରି.) : ଝାଡ଼ିବା, ସଫା କରିବା

**ଝାର ବିଲେଇ** - *ବୌ:* (ବି.) : ବଣଭୂଆ

**ଝାରମା** - *ରା:* (ବି.) : ଝରଣା

**ଝାରା** - *ଦେ:* (ବି.) : କୁସୁନା, ଚାଉଳି ମଦ, ଜାଲିଚଟୁ

**ଝାରି** - *ଅନେ:* (ବି.) : ଖରିପ୍ ଋତୁରେ ଅମଳ ହେଉଥିବା ଗୁରୁଜି ଭଳି ଶସ୍ୟ, ଗଡୁ, ଢାଳ, ନୁଟା, ଲୁଟା, ପସାରି ଚାଉଳ ଅମଳ ପ୍ରକ୍ରିୟା, ଗୁଂଜି ପରି ଏକ ଶସ୍ୟ

**ଝାଲ୍ ତରକାରୀ** - *ଢ଼.* (ବି.) : ରାଗ ତରକାରୀ

**ଝାଲ୍‌ପୁଛା କମାନି** - *ସ.* (ବି.) : ପରିଶ୍ରମ ଆୟ

**ଝାଲ୍‌ଫୁଟିବା** - *କଝ.* (କ୍ରି.) : ଝାଳ ବାହାରିବା

**ଝାଲ୍‌ମୁଢ଼ି** - *ଦେ.ପୁ.* (ବି.) ମୁଢ଼ିରେ ଲଙ୍କାଗୁଣ୍ଡ ଆଳୁ ପିଆଜ, ସୋରିଷ ତେଲ ଆଦି ପକାଇ ପ୍ରସ୍ତୁତ ଖାଦ୍ୟ

**ଝାଲ** - *ଅନେ.* (ବି.ବିଂ.) : ଝାଳ, ରାଗ

**ଝାଲଖେସୁ** - *ମ.* (ବି.) : ଘିମିରି

**ଝାଲର** - *ଦେ.ଗ.ଢ଼.* (ବି.) ଚାନ୍ଦୁଆ ପ୍ରଭୃତିରେ ଝୁଲୁଥିବା ବସ୍ତ୍ର, ଚାନ୍ଦୁଆରେ ଝୁଲୁଥିବା ବସ୍ତ୍ର, ରଂଗୀନ୍ କନା, ରଙ୍ଗିନ କାଗଜର କୁଞ୍ଚିତ କତରଙ୍ଗି, କୁଞ୍ଚିତ ରଙ୍ଗିନ କନା

**ଝାଲରି** - *ଦେ.* (ବି.) : ଝିଲିମିଲି, ଜାଲ ଜାଲୁଆ, ମୟୂର ଚନ୍ଦ୍ରିକା

**ଝାଲସା** - *ରା.* (ବି.) : ଚକଚକ କରିବା

**ଝାଲି** - *ରା.ଦେ.* (ବି.) : ଛେନା, ମୟୂର ଚନ୍ଦ୍ରିକା, ଖରାବେଳ କଟାଇବାକୁ ବିଶ୍ରାମ ନେବା

**ଝାଲିଆ** - *ଦେ.* (ବି.) : ମୟୂର

**ଝାଲିଆମେଂଢ଼ୋ** - *କଳା.* (ବି.) : ସାମାନ୍ୟ ଲାଲ୍ ରଙ୍ଗର ଦେଶୀ ବଡ଼ ଧାନ ବିଶେଷ

**ଝାଲେ** - *ମ.* (ବି.) : ହଳେ

**ଝାଳ** - *ଅନେ.* (ବି.) : ଘର୍ମ, ସ୍ୱେଦ, ଝାଳିବା, ଲଙ୍କାମରିଚ

**ଝାଳ ଗାମୁଛି** - *ଗ.* (ବି.) : ଘିମିରି

**ଝାଳେଇଯିବା** - *ଢ଼.* (କ୍ରି.) : ଲାଳେଇଯିବା, ଝାଳରେ ଭିଜିଯିବା

**ଝାସ** - *ଗ.ଦେ.ଢ଼.* (ବି.) : ଜଳ କିମ୍ବା ଅଗ୍ନିରେ ପ୍ରାଣତ୍ୟାଗ କରିବା, ଅଗ୍ନିର ଉତ୍ତାପ, ବନ୍ୟା ଜଳର ପ୍ରବଳ ସୁଅ, ତାପ, ଧାସ, ନିଆଁକୁ ଡେଇଁବା, ଆତ୍ମହତ୍ୟା

**ଝାସିହେବା** - *ଦେ.* (କ୍ରି.) : ଝାମ୍ପ ମାରିବା, ଅଚାନକ ମାଡ଼ି ଆସିବା, ଗହଳି କରିବା

**ଝାଁକର** - *ପୁ.ସ.* (ବି.) : ଚାକର, ଗ୍ରାମ ଦେବାଦେବୀ ପୂଜକ

**ଝାଁକେ** - *ସ.ପୁ.* (ବିଂ.) : ଟିକେ, ଅଳ୍ପ, ପହଣ୍ଡେ

**ଝାଂଭଳା** - *ଭ.* (ବିଂ.) : ଲାଜକୁଳା

**ଝାଂଜ** - *ରା.ବୌ.କଳା.* (ବି.) : ତାଳ, ଧାତବ ବାଦ୍ୟଯନ୍ତ୍ର, ଝାଂଜି, ଖରା

**ଝାଂଜରା** - *ଭ.* (ବି.) : ମିଠା ଜିନିଷ ଛାଣିବା ଉପକରଣ

**ଝାଂଜି** - *ଅନେ.* (ବି.) : ଗରମ ପବନ, ତାତି, ମୁଠା ଝୁମୁକା

**ଝାଂଜୁଆ** - *କଳା.* (ବିଂ.) : ଝାଂଜ ବାଦକ

**ଝାଂପ** - *ଭ.* (ବି.) : ଧାନ ଗଦାର ଅଂଶ

**ଝି** - *ଅନେ.* (ବି.) : ଝିଅ, କନ୍ୟା

**ଝିଅ** - *ଅନେ.* (ବି.) : ପିଉସୀ, ବାପାଙ୍କ ଭାଇଙ୍କ ସ୍ତ୍ରୀ, କନ୍ୟା, ବାଳିକା, ପିଲା, ସାନଭଉଣୀ, କନ୍ୟାସନ୍ତାନ, ଦୁହିତା

**ଝିଅସଜ** - *ଗ.* (ବି.) କନ୍ୟାର ପ୍ରଥମ ରଜୋବତୀ ହେବା ପ୍ରସଙ୍ଗ

**ଝିଇଁକ୍ଷିବା** - *ବୌ.* (କ୍ରି.) : ଘଷି ହୋଇ ହୋଇ କ୍ଷୟ ହେବା

**ଝିଏଇ ଯିବା** - *ନୂ.* (କ୍ରି.) : ଘୋରି ହୋଇଯିବା

**ଝିକ** - *ଗ.* (ବି.) : ଏକ କ୍ଷୁଦ୍ର ଜଙ୍ଗଲୀ ପଶୁ, ଝିଙ୍କ

**ଝିକ୍‌ଝିକ୍** - *ଯା.* (କ୍ରି.ବିଂ.) : କ୍ରମାଗତ ଭାବରେ ଦାବି କରିବା

**ଝିକର ଚାଳ** - *ଗ.ନୂ.* (ବି.) : ଟାଇଲ ଛପର

**ଝିକା** - *ଅନେ.* (ବି.ବିଂ.କ୍ରି.) : କର୍ଣ୍ଣାଳଙ୍କାର ବିଶେଷ, କୁଞ୍ଚିତ, ଚୂଲିର ତିନୋଟି କୁଦ, ଧୂଆଁ ନିର୍ଗମନ ରାସ୍ତା, ଇଣ୍ଡା

**ଝିକାପୋଡ଼କା** - *କଳା.* (ବି.) : ଟଣାଓଟରା

**ଝିକାବିଭା** - *ଗ.* (ବି.) : ଆଦିବାସୀ ବିବାହ ପ୍ରଥା

**ଝିକିରିଝିକା** - *ଗ.* (ବି.) : ପିଲାଙ୍କ ଏକ ପ୍ରକାର ଖେଳ

**ଝିକଂର** - *ନବ.କୋ.ଖୋ* (ବି.) : ମାଟିରେ ନିର୍ମିତ ଖପରଲୀ, ଛପରପାଇଁ ଝିଙ୍ଗାସିବା, ଏକ ପ୍ରକାର ନଟି

**ଝି ଖାଇ** - *ବୌ.* (ବି.) ଝିଅ ଖାଇ (ଗାଳିବିଶେଷ)

**ଝିଗ୍‌ଡ଼ାଝାଟି** - *ବୌ.* (ବି.) : କଳିଗୋଳ

**ଝିଘାଂସିବା** - *ନ.* (କ୍ରି.) : ଝିଙ୍ଗାସିବା; ପ୍ରଶ୍ନ କରି ତିରସ୍କାର କରିବା

**ଝିଙ୍କା** - *ଅନେ.* (ବି.) : ଚୁଲିର ଶିଙ୍ଘ, ଚୂଲୀର ତିନି ଉଚ୍ଚ ମାଟିପିଣ୍ଡ

**ଝିଙ୍କାରି** - *ଗ.ଦେ.* (ବି.) : ଗ୍ରୀଷ୍ମ ସଂଧ୍ୟାରେ ଝିଂ ଝିଂ ଶବ୍ଦ କରୁଥିବା କୀଟ

**ଝିଙ୍କିବା** - *ସଂ.ଗଞ୍ଜ.ନ.କେ.* (କ୍ରି.) : ବଳ ପ୍ରୟୋଗ କରି ଟାଣିବା

**ଝିଙ୍ଗା** - *ଅନେ.* (ବି.) : ଜିଦ୍ଦି, କୁବଚନ

**ଝିଙ୍ଗାଣିଳିଆ** - *ଗ.* (ବି.) କଟୁବଚନ କହୁଥିବା ବ୍ୟକ୍ତି

**ଝିଙ୍ଗାସ** - *ଢ.ଦେ.ଭ.* (ବିଂ.ବି.) : ଝିଙ୍ଗାସ କଥା, କଟୁକଥା, ଗଞ୍ଜଣା, କଡା କଥା କହିବା, ଗାଳି ଦେବା, ଭର୍ତ୍ସନା କରିବା

**ଝିଞ୍ଜଟ୍** - *ବା.* (ବି.) : ଝାମେଲା

**ଝିଞ୍ଜଟିଆ** - *ଦେ.* (ବିଂ.) : ଅଡୁଆ ତଡୁଆ, ଗୋଳମାଳିଆ

**ଝିଞ୍ଜରୀ** - *ବା.ନ.* (ବି.) : ଜଂଜିର

**ଝିଞ୍ଜାରିବା** - *ନ.* (ବି.) : ରସଶୂନ୍ୟ କରି ଖାଇଯିବା, ଚିକ୍‌ଚିକ୍ କରି ଖାଇବା

**ଝିଞ୍ଜିରା** - *ଦେ.* (ବି.) : ରିଠା, ମୁକୁତାମଞ୍ଜା ଫଳ

**ଝିଞ୍ଜିସେଇବା** - *ଦେ.* (ବି.) : ଖଇଭଜା ପାଇଁ ଧାନ ପାଗ କରିବା

**ଝିଟ** - *ଭ.* (ବିଂ.) : ନଗଣ୍ୟ

**ଝିଟ୍‌କା** - *ଅନେ.* (ବି.) : ବଗଧରିବା ପାଇଁ ପ୍ରସ୍ତୁତ ତାର ଓ କଣିରେ ଯନ୍ତ୍ର, ଝିଂଟିକା, କ୍ଷୁଦ୍ରାକୃତି ଜାଳେଣି କାଠ ବା ବାଉଁଶ, ବାଉଁଶ କଣିକା

**ଝିଟିଝିଟିଆ** - *ଢ.* (ବି.) : ବଡ଼ିଭୋର

**ଝିଟିପିଟି** - *ଢ଼:ଦେ:କଳା:* (ବି.) ଏକ ସରିସୃପ, ପଲ୍ଲୀ

**ଝିଟିବା** - *କଳା:* (କ୍ରି.) : ସିଂଚନ କରିବା, ଜଳ ଭଳି ତରଳ ପଦାର୍ଥକୁ ହାତରେ ବା ଅନ୍ୟ କୌଣସି ଉପକରଣ ସାହାଯ୍ୟରେ ଇତସ୍ତତଃ ବା ଅନ୍ୟତ୍ର ପକାଇବା, ସ୍ପ୍ରେ କରିବା

**ଝିଟୁଆ** - *ଗଦ୍ୟ:* (ବିଂ.) : ଅବୁଝା

**ଝିଟେଇବା** - *ଖୋ:କେନ୍ଦୁ:* (କ୍ରି.) : ଝାଡୁରେ ଓଳାଇବା, ଝାଡୁ କରିବା

**ଝିଡ୍ଗା** - *କୋ:* (ବି.) ରଂଙ୍ଗା, ଲତା ମାଡ଼ିବାପାଇଁ ଆଶ୍ରୟ ସ୍ତମ୍ଭ ବା ଭାରା

**ଝିଣ୍ଡିକା** - *ଢ଼:* (ବି.) : ପତଙ୍ଗ

**ଝିଣ୍ଡେଇବା** - *ଚ୍ଚ:* (କ୍ରି.) : ଖାଦ୍ୟକୁ ଅଳ୍ପ ଅଳ୍ପ କରି ପାଟିରେ ପକାଇବା ଅଥବା ଗୋଡ଼ରେ ଠେଲିଦେବା

**ଝିଡ୍ରା** - *ସୁ:* (ବିଂ.) : ଅବିନ୍ୟସ୍ତ କେଶ

**ଝିଡ୍ରି ମୁଁଡ଼ି** - *ସ:* (ବି.) : ନୁଖୁରାମୁଣ୍ଡି ଝିଅ, ମୁଣ୍ଡବାଳ ଆଲୁରୁବାଲୁରୁ ହୋଇଥିବା ପିଲା

**ଝିନ୍ ଝିନ୍ ପାତଳ** - *ବୌ:* (ବିଂ.) : ଅତି ପତଳା

**ଝିନ୍ ସପୁର** - *ସ:* (ବିଂ.) : ସୂକ୍ଷ୍ମ

**ଝିନପଳା** - *କେନ୍ଦୁ:* (ବି.) : ଘରୁ ପଳାଇଯାଇ ବିବାହ, କୌଣସି ଅବିବାହିତ ପୁଅ, ଝିଅ ସହିତ ପଳାଇବା।

**ଝିନିଷ୍** - *କଳା:* (ବି.) : ଜିନିଷ, ଦ୍ରବ୍ୟ

**ଝିପା** - *ସୁବ:ବୌ:କଳା:* (ବି.) : ଏକ ପ୍ରକାର ଘାସ ଯାହା ଧାନବିଲରେ ଉଠେ

**ଝିପୁଡ଼ି କୋଳି** - *ଗଦ୍ୟ:* (ବି.) : ଏକ କୋଳି

**ଝିମରି** - *ମ:* (ବି.) : ବାଉଁଶରେ ତିଆରି ମାଛ ଧରିବା ଉପକରଣ

**ଝିମା** - *ଗ:କୋ:ରା:* (ବି.) : ସ୍ନାୟୁ ବିକାର, ଅଚାନକ ଗୋଡ଼ ସାମୟିକ ଅଚଳ, ରକ୍ତ ସଂଚାଳନ ବ୍ୟାଘାତ ଜନିତ ଝିମ୍‌ଝିମ୍ ଭାବ, ରକ୍ତ ସଞ୍ଚାଳନ ସାମୟିକଭାବେ ବନ୍ଦହୋଇ ଅଚଳ ହେବା ଅଙ୍ଗ

**ଝିମାଣ ଖେଳ** - *ଗ:* (ବି.) : ଡୁଡୁ ନାମକ ଖେଳ, କବାଡ଼ି ଖେଳ

**ଝିମାଣି** - *ଗଦ୍ୟ:ଗ:* (ବି.) : ପଶାଖେଳ, କମାରଶାଳର ଅଗ୍ନି

**ଝିମା ମାରିବା** - *ଗଢ଼:ରା:* (କ୍ରି.) : ରକ୍ତ ସଞ୍ଚାଳନ ନ ହେବା, ଅଙ୍ଗପ୍ରତ୍ୟଙ୍ଗ କାମ ନ କରିବା, ବଧିରା ହେବା

**ଝିମିକାତି** - *ନ:* (ବି.) : ଏକ ମାଛର ନାମ

**ଝିମିଟ୍‌କେ** - *ମା:ରା:* (କ୍ରି.ବିଂ.) : ନିମିଷକରେ

**ଝିମିଟି ଖେଳ** - *ଗ:ଦେ:* (ବି.) : ଡୁଡୁ ନାମକ ଖେଳ, କବାଡ଼ି ଖେଳ

**ଝିମିରି** - *ଦେ:* (ବି.) : ହତିଆର ତିଆରି କରୁଥିବା କାରିଗର

**ଝିମୋମାଛ** - *କଳା:* (ବି.) : ଅତିଶୟ ଛୋଟ ମାଛ, ଡଂଡେଇ ଝୁରି

**ଝିରେଇ୍** - *କଳା:* (ବି.) : ଧାନକଟା ପରେ ତିଆସିଚଣା ସହିତ ହେଉଥିବା କ୍ଷୁଦ୍ର ତଥା ଗୋଲାକାର ଚଣା

**ଝିର୍ଝିରା** - *କୋ:* (ବିଂ.) : ଅତିବେଶୀ

**ଝିର୍ଝିରି** - *ସ:* (ବି.) : ଫୁଲ ଝରି ବାଣ

**ଝିର୍ଡ଼ି** - *ବୌ:* (ବି.) : ତାଳ ପତ୍ରର ଶିରା

**ଝିଲ** - *ଗ:* (ବି.) : ଜଳାଶୟ

**ଝିଲ୍ ମିଲାବା** - *ସ:* (ବି.) : ଝଲସି ଯିବା

**ଝିଲାପି** - *ନ:ଗ:* (ବି.) : ଜିଲାପି; ବେସନ ଘିଅ, ଚିନିରେ ନିର୍ମିତ ମିଠା

**ଝିଲି** - *ଗ:ସୁ:* (ବି.ବିଂ.) : ଏକ ପ୍ରକାର ଛେନାରୁ ପ୍ରସ୍ତୁତ ମିଠା, ଖଜା, ସରୁ, ସୂକ୍ଷ୍ମ

**ଝିଲିକା** - *ରା:* (ବିଂ.) : ଦୁର୍ବଳ

**ଝିଲିକାରା** - *ରା:* (ବି.) : ଶୁଆ

**ଝିଲିଝିଲିଆ** - *ରା:* (ବିଂ.) : ଅସ୍ପଷ୍ଟ ଆଲୋକ

**ଝିଲି ପୁଆଗି** - *କଳା:* (ବି.) : ଧଳା ରଙ୍ଗର ସରୁ ଦେଶୀ ଧାନ

**ଝିଲିରି ଶାଗ** - *ଖୋ:କେନ୍ଦୁ:* (ବି.) : ଏକ ପ୍ରକାର ଶାଗ

**ଝିଲ୍ଲିପିଠା** - *ନ:* (ବି.) ଘିଅ ତିଆରି ମିଠାପକା ପିଠା

**ଝିଁକା** - *ଝା:ସୁବ:* (ବି.) : ଚୂଲିର ଉପରେ ଥିବା ତିନିଟି ପିଣ୍ଡ

**ଝିଁବ୍ବାର୍** - *ସ:* (କ୍ରି.) : ପାଣି ସିଞ୍ଚିବା

**ଝିଁଟିଆ** - *ସୁ:* (ବି.) : ବୁଢା ଆଙ୍ଗୁଟି ପର ଆଙ୍ଗୁଠି ମୁଦି

**ଝିଂଜକୁଟିଆ** - *ଭ:* (ବିଂ.) : କଷ୍ଟଦାୟକ

**ଝୁଆର୍** - *କଳା:କୋ:* (ବି.) ଜୁହାର, ନମସ୍କାର

**ଝୁକା** - *ବ:ସୁ:* (ବି.) : ଚୂଲିର ଫାଙ୍କସ୍ଥାନ, ଆଖୁ ବିହନର ମାପ (ତିରିଶଟି ପବ ବା ଗଣ୍ଡି), ପେଣ୍ଠା

**ଝୁକାବାର** - *ସୁବ:* (କ୍ରି.) : କୌଶଳର ସହିତ ଜଣକୁ ହରାଇବା, ପାଶରେ ଥାଇ ମଧ ଅନ୍ୟକୁ ଧରା ନ ଦେବାର ଶାରୀରିକ ଅଙ୍ଗପ୍ରତ୍ୟଙ୍ଗର କୌଶଳ, ଫୁଟବଲ ଖେଳିବା ବେଳେ ବଲକୁ ଝୁକାଇବା

**ଝୁକିବା** - *କୋ:ନବ:* (କ୍ରି.) ନଇଁବା, ହାରମାନିବା

**ଝୁକିଯିବା** - *କଳା:* (କ୍ରି.) : ସୁଯୋଗ ହାତଛଡା କରିବା, ଓହରିଯିବା

**ଝୁକୁ** - *ସୁ:* (ବିଂ.) : ତଳମୁହାଁ

**ଝୁଖା** - *ରା:* (ବି.) : ପେଜ କଢା ନଯାଇ ପ୍ରସ୍ତୁତ ଭାତ, କାଠିମରା ଭାତ

**ଝୁଙ୍କ** - *କେ:ଜ:ଦେ:ସଂ:* (ବିଂ.ବି.) : ନିଶା, ଜିଦ୍, ନତ, ଜିଦି

**ଝୁଙ୍କଡ଼ କାଢ଼ିବା** - *କ:* (କ୍ରି.) : ଜିଦ୍ ଧରିବା

**ଝୁଙ୍କିବା** - *ଗ:ନ:* (କ୍ରି.) : ମାଦକ ଦ୍ରବ୍ୟଖାଇ ନିଶାଶକ୍ତ ହେବା, ପଡ଼ିବା

**ଝୁଞ୍ଜଲ** - *ଗ:* (ବି.) : ବାଦ୍ୟ ବିଶେଷ

**ଝୁଟକିନା** - *ରା:* (ବିଂ.) : ଚଞ୍ଚଳ

**ଝୁଟଲେଇ ହେବା** - *କଳା:* (କ୍ରି.) : ଝୁଣ୍ଡିପଡ଼ିବା

**ଝୁଟା** - *ବୌ:ଢେ:ମା:ଦେ:* (ବି.) : ଅଇଁଠା, ସଂଖୁଡି, ମିଛକଥା, ମିଛୁଆ ଲୋକ

**ଝୁଟି** - *ଅନେ:* (ବି.) : ଝୁଣ୍ଟି, ଝୋଟି, କାଛର ଚିତା, ଚିତାମୁରୁଜ

**ଝୁଟେଇବା** - *ଜଶ:* (କ୍ରି.) : ଓଳେଇବା,ଝାଡୁ କରିବା

**ଝୁଡି** - *ଦେ:କେ:* (ବି.) : ବାଉଁଶରେ ତିଆରି ଗାଣ୍ଡୁଆ, ଟୋକେଇ, ବୋଝ, ସିଡ଼ା

**ଝୁଡ଼ଭଜା** - *ଗଦ୍ୟ:* (ବି.) : ଏକ ପ୍ରକାର ଖାଦ୍ୟ

**ଝୁଣ୍‌ଝା** - *ସ:* (ବିଂ.) : ଅନ୍ଧାରୁଆ, ବୁଦ୍‌ବୁଦିଆ

**ଝୁଣକାଠି** - *କେନ୍ଦୁ:* (ବି.) : ଡାହାଣୀମାନେ ମଣିଷ ଦେହରୁ ରକ୍ତ ଶୋଷିବା କାଠି

**ଝୁଣା** - *ଦେ:ଜ:* (ବି.) : ଶାଳଗଛର ଅଠା, ଶାଳ ଗଛରୁ ନିର୍ଗତ ରସରୁ ଉତ୍ପନ୍ନ ପୂଜା ସାମଗ୍ରୀ

**ଝୁଣାମରା** - *ଘ:ବୌ:* (ବିଂ.) : ଠକ

**ଝୁଣିବା** - *ଅନେ:* (କ୍ରି.) : ରେକଟିବା, ଶୋଷଣ କରିବା, ଅନ୍ୟକୁ ତଳିତଳାନ୍ତ କରିବା, ଦୋହଲେଇବା, ଦାନ୍ତରେ କାମୁଡି ଟାଣିବା, ଟାଣିକରି ଶୋଷିବା, କୁକୁର, ବିରାଡ଼ି ଇତ୍ୟାଦି ଦାନ୍ତରେ ଝିଙ୍କି ଖାଇବା, କ୍ଷତାକ୍ତ କରିବା

**ଝୁଣୁକା** - *ଢେ:* (ବି.) : ଝାଡୁ

**ଝୁଣ୍ଡଲା** - *ବୌ:* (ବି.) : ଗଣ୍ଡିଆ, ଟାଙ୍ଗିଆରେ କଟୁନଥିବା କାଠ

**ଝୁଣ୍ଡା** - *ଅ:* (ବି.) : ଅଳିଆ, ବିଣ୍ଡି (କାନର), ପର୍ବଦିନ ଚାଉଳ ଗୁଣ୍ଡ ଗୋଳାଇ ଦିଆଯାଉଥିବା ଝୋଟି

**ଝୁଣ୍ଟିଆ** - *ଅନେ:* (ବି.) : ଗୋଡ଼ରେ ପିନ୍ଧିବା ଅଳଙ୍କାର, ପାଦମୁଦି, ପାଦର ଅଳଙ୍କାର, ଗୋଡ଼ବଳ

**ଝୁଣ୍ଟି କୁଟା** - *ଜଶ:* (କ୍ରି.) : ଝୋଟିକଟା

**ଝୁଣ୍ଟିବା** - *ଅନେ:* (କ୍ରି.) : ପାଦରେ ଚାଲିଲାବେଳେ ଅଙ୍ଗୁଳିରେ ଆଘାତ ପାଇବା, ଅଟକିବା, ହାବୁଡ଼ିଯିବା, ଗୋଡରେ ଆଘାତ ପାଇବା

**ଝୁନ୍‌ଗା** - *ଅନେ:* (ବି.) : ଝୁଡ଼ଙ୍ଗ, ଡାଲିଜାତୀୟ ଶସ୍ୟ

**ଝୁନ୍‌ଝା** - *ସ:* (ବି.) : ଖାଇବା ଜିନିଷ ତୃପ୍ତିରେ ନଖାଇବା, କୌଣସି କାମ ଠିକ୍ ନକରିବା

**ଝୁନ୍‌ପୁକ୍** - *ମ:* (ବି.) : ଲୁଳୁଲୁଳିଆ ପୋକ

**ଝୁନ୍‌ବା** - *ବର:ବୌ:ସ:* (କ୍ରି.) : ହଲାଇବା, ଝୁଣିବା, ଝାଡ଼ିଦେବା

**ଝୁନଗା** - *ସୁ:* (ବି.) : ଝୁଡୁଙ୍ଗ

**ଝୁନଙ୍ଗା** - *ସୁବ:ସୁ:* (ବି.) : ଝୁଡଙ୍ଗ ଛୁଇଁ

**ଝୁନା** - *ଜଶ:* (ବି.) : ଝୁଣା

**ଝୁନୁକ** - *ବା:* (ବି.) : ଛୋଟ ପିଲାଙ୍କୁ କ୍ଷୀର ପିଆଇବା ପାଇଁ ପିତଳ ପାତ୍ର

**ଝୁପ୍‌ବା** - *ବର:* (କ୍ରି.) : ନିଦ ଅବସ୍ଥାରେ ଦୋହଲିବା

ଝୁପା - *କନ୍ଧ* (ବିଂ.) : ଝୁଂପା, ପେଣ୍ଡା

ଝୁପାଝୁପା - *କନ୍ଧ.ସ.* (ବିଂ.) : ପେଣ୍ଡାପେଣ୍ଡା, ପୁଚ୍‌କା ପୁଚକା, ଥୋଲା ଥୋଲା

ଝୁମ୍ - *କନ୍ଧ* (ବି.) : ମାଛି ଅନ୍ଧାର, ସନ୍ଧ୍ୟା ଗଡିଯାଉଥିବା ସମୟ

ଝୁମ୍‌କୁ - *ବଣ୍ଡ* (ବି.) : ଛୋଟ ଘୁଙ୍ଗୁର

ଝୁମ୍‌ରିବା - *ସ.ବଣ୍ଡ.କନ୍ଧ* (କ୍ରି.) : ଘୁମେଇବା, ନିଦୁଆ ଅବସ୍ଥା, ନିଦରେ ଢୁଳେଇବା, ନିସ୍ତେଜ ହୋଇଯିବା

ଝୁମଝୁମି - *ଧୁବ.* (ବି.) : ଝୁମୁକା

ଝୁମା - *ଦେ.ଗା.ନବ.* (ବି.) ଝିଅଙ୍କ ବେଣୀରେ ଉଲ୍ ଫୁଲ

ଝୁମିବା - *ଗ.* (କ୍ରି.) : ମାତାଲ ହେବା, ନିଶାରେ ପ୍ରଗଲ୍ଭ ହେବା

ଝୁମୁକା - *ଅନେ.* (ବି.) : ପ୍ଲାଷ୍ଟିକ ବା ତାଳପତ୍ରରେ ତିଆରି ପିଲାଙ୍କ ଖେଳନା, ମଞ୍ଚରେ ବ୍ୟବହୃତ ଏକ ବାଦ୍ୟଯନ୍ତ୍ର, କାନଫୁଲ

ଝୁମୁର - *ଦେ.ପଦ୍ୟ.* (ବି.) : ନାଚ ଓ ଗୀତ

ଝୁମୁରା - *କଣ୍ଡ.କନ୍ଧ.କୋ.* (ବି.) : ନିଦ, ଢୁଳେଇବା

ଝୁମେର - *ସୁ.ଚୌ.* (ବି.) : ଆଦିବାସୀ ନୃତ୍ୟ ସ୍ୱର, ଓଡ଼ିଶାର ଏକ ଲୋକନୃତ୍ୟ

ଝୁମ୍ପା - *ଅନେ.* (ବି.) : ପେଣ୍ଡା, ଅଳଙ୍କାର ବିଶେଷ, ଫୁଲ ଗଭା, ଗୁଚ୍ଛ

ଝୁମ୍ପି - *କୋ.ଗଞ୍ଜ.ଗଦ୍ୟ.* (ବି.) କର୍ଣ୍ଣ ଅଳଙ୍କାର ବିଶେଷ

ଝୁମ୍ପିଇଲାକୁ, ଝୁମ୍ପିନଲାକୁ - *ଗ.ଗଦ୍ୟ.* (ବି.) : କର୍ଣ୍ଣ ଅଳଙ୍କାର

ଝୁମ୍ପୁଡି - *ଦେ.ନ.ସଂ.* (ବି.) : କୁଡିଆ ଘର, ଝାଟିମାଟି ଘର

ଝୁରବାର, ଝୁରାବାର - *ଧୁବ.* (କ୍ରି.) : ଡାଳ ସହିତ କଞ୍ଚା ଚଣା କାନ୍ଦୁଲ ବାଦାମ ଆଦି ନିଆଁ ଧାସରେ ପୋଡ଼ିବା

ଝୁରମୁରାବା - *ସ.ବଣ୍ଡ.* (କ୍ରି.) : ମଉଳିଯିବା, ମରିବା ପ୍ରାୟ ହେବା

ଝୁରା - *ଅନେ.* (ବି.କ୍ରି.) : ଶଗଡ଼ ଜୁଆଳି; ଶଗଡ଼ର ଆଗପଟ, ଦୁଇପାଖରେ ଧରିବା ପାଇଁ ବାଉଁଶ ଲାଗିଥିବା ଅଖା ତିଆରି ଉପକରଣ

ଝୁରାଡିହ - *ନ.ଛ.* (ବି.) ଶଗଡ଼ରେ ଲାଗିଥିବା ଯୁଆଳି, ଶଗଡ଼ ଟାଣିବାରେ ସାହାଯ୍ୟ କରୁଥିବା କାଠଖଣ୍ଡ

ଝୁରାବାର - *ଧୁବ.* (କ୍ରି.) : ବିଲରେ ଅମଳ ପରେ ଛପର କରିବା ପାଇଁ ଧାନର ଛୋଟ ଛୋଟ ବିଡା ବାନ୍ଧିବା

ଝୁରାହେବା - *ନ.* (କ୍ରି.) : ଶଗଡ଼ର ଆଗ ଭାଗ ଓଜନିଆ ହେବା

ଝୁରି - *ଅନେ.* (ବି.ବିଂ) : ଶଗଡ଼ର ଅଂଶ, ଛୋଟମାଛ, ପ୍ରଥମେ ଚୁଲିରେ ନିଆଁଧରାଇବା, ମଦ, ଗୁଣ୍ଡ କାଠ

ଝୁରିକାଠ - *କଣ୍ଡ.ଗଞ୍ଜ.* (ବି.) : ଜାଳେଣି ଉପଯୋଗୀ ଛୋଟ ଛୋଟ କାଠ

**ଝୁରିବା** - *କେ:ଦେ:ନ:ସୁ:* (କ୍ରି.) : ମନେ ପକାଇବା, କଷ୍ଟ ପାଇବା, ବିରହରେ ଜଳିବା, ଶୋକ କରିବା, ଗୁଣ ମନେପକାଇବା, ପୋଡ଼ିବା

**ଝୁରୁବୁରୁ** - *ବ:* (କ୍ରି.) : ଏକାଧିକ ବ୍ୟକ୍ତି ଅତି ଧୀରେ କଥାହେବା

**ଝୁର୍‌କା** - *ମ:* (ବି.) : ଝରକା

**ଝୁର୍‌ଝୁରା** - *ଦେ:ବୌ:* (ବି.) : ଟିକିଟିକି କରି କାଟିଦେବା, ଶୁଖା ଖଡ଼ଖଡ଼

**ଝୁର୍‌ଝୁରି** - *ବୀ:* (ବି.) : ନାକର ଅଳଂକାର ବିଶେଷ

**ଝୁର୍‌ଝୁର୍** - *ସୁ:* (ବିଂ.) : ବୟସ୍କ, ପୁରା ପାଚିଲା

**ଝୁର୍‌ମା** - *ବୌ:* (କ୍ରି.) : ଝୁରିବା, ପୋଡ଼ିବା

**ଝୁର୍‌ମୁରେଇଯିବା** - *କଝ:କଳା:* (କ୍ରି.) : ଝାଉଁଳିଯିବା, ନିସ୍ତେଜ ହୋଇଯିବା

**ଝୁର୍‌ଲା** - *କଳା:* (ବି.) : ଅସରପା

**ଝୁଲ** - *ଅନେ:* (ବି.) : ନିଆଁକଣା, ନିଆଁର ଏକଦମ ଛୋଟ ଅଂଶ, ଘରର ଅଳନ୍ଧୁ; ଅଗ୍ନିକଣା, ନିଆଁଝୁଲ, ଝରି, ଝୋଳ, ଗୋଡ଼ ବୁଢା ଆଙ୍ଗୁଠିରେ ପିନ୍ଧୁଥିବା ରୂପାର ଅଳଙ୍କାର, ପାଇ ଝୁଲ୍, ଜୁଣ୍ଡିଆ, ଝୁଲିବା

**ଝୁଲ୍‌କୁନା** - *କଳା:* (ବି.) : କାଛଖୁରା

**ଝୁଲ୍‌କେଇବା** - *କୋ:* (କ୍ରି.) : ଦୋହଲେଇବା

**ଝୁଲ୍‌ଝୁଲିଆ** - *ବୌ:* (ବିଂ.) : ଝୋଳବିଶିଷ୍ଟ

**ଝୁଲ୍‌ନା** - *ମା:* (ବି.) : ଦୋଳି, ଝୁଲଣା

**ଝୁଲ୍‌ପି** - *ସ:* (ବି.) : ଅଳ୍ପ ଝୁଲୁଥିବା ବାଳ

**ଝୁଲ୍‌ର** - *କଝ:* (ବି.) : ଝୁଡ଼ଙ୍ଗ

**ଝୁଲ୍‌ଲା** - *ସ:* (ବି.) : ଅସରପା

**ଝୁଲକା** - *ବ:* (ବି.) : କାଂଥର ଠଣା

**ଝୁଲଝୁଲୁଁ** - *ସ:* (ବି.) : ପାହାନ୍ତିଆ ବେଳ

**ଝୁଲଣ** - *ଗ:ଢ:* (ବି.) : ଶିମ୍ବ ଜାତୀୟ, ଝୁଡ଼ଙ୍ଗ, ରାଧାକୃଷ୍ଣଙ୍କ ଝୁଲଣ ଯାତ୍ରା

**ଝୁଲଣା** - *ସଂଦେ:* (ବି.) : ଦୋଳି

**ଝୁଲପିଆ** - *ସ:ସୁ:* (ବି.ବିଂ.) : ଝୁଲୁପ ବାଳ, କୁଞ୍ଚବାଳ ଝୁଲିବା ଅବସ୍ଥା

**ଝୁଲପୁଲ୍** - *ଝା:ସ:* (ବି.) : ବଡ଼ିଭୋର, ସକାଳ, ପ୍ରତ୍ୟୁଷ

**ଝୁଲରୀ** - *ପଦ୍ୟ:* (ବି.) : ନାକ ଫୁଲ

**ଝୁଲା** - *ଅନେ:* (ବି.) : ମୁଣି, ବେଣୀ, ଲୁହା ଦଉଡ଼ିର ଝୁଲନ୍ତା ପୋଲ, ଅଳନ୍ଧୁ, ବ୍ୟାଗ୍, ସଂକୀର୍ଣ୍ଣ ଉପତ୍ୟକା, ବ୍ୟାଗ୍, ଥାଳିଆ

**ଝୁଲାମାର୍‌ବା** - *ସ:* (କ୍ରି.) : ଦୁର୍ବଳ ଲାଗିବା

**ଝୁଲାମୁଣି** - *ନ:* (ବି.) : କନାରେ ନିର୍ମିତ ସାଧୁସନ୍ଥଙ୍କ ମୁଣି ବା ଥଳି

**ଝୁଲି** - *ଅନେ:* (ବି.) : ଏକ ବିଶେଷ ଧରଣର ପାତ୍ର, ଝୁଲିକନ୍ଥା, ସରୁ ଚାଉଳ, ଜଂଘର ମାଂସଳ ଅଂଶ, ଗୁଡ଼ ରାନ୍ଧିବା ପାଇଁ ବ୍ୟବହୃତ ବଡ଼ ଚୂଲା, ଧାନ ସିଝାଇବା ପାଇଁ ନିର୍ମିତ ବଡ଼ ଚୁଲି

**ଝୁଲିବା** - *ଢ:ସଂଦେ:* (କ୍ରି.) : ଦୋହଲିବା, ଦୋଳିରେ ପହଁରିବା, ଥରିବା, ହଲିବା,

ଦୋଳି ଖେଳିବା, ଟଳି-ଟଳି ପଡ଼ିବା, ଓହଳିବା, ଡଳିବା, ନଇଁଯିବା

**ଝୁଲୁପ** - *ଝା:* (ବିଂ.) : ପଛପଟକୁ ଝୁଲିଥିବା

**ଝୁଲୁମୁନା** - *ଝା:ସ:* (ବି.) : ଝୋଲାମୁଣା, ଗାମୁଛାରେ ଗଣ୍ଠି ପକାଇ ଯେଉଁ ମୁଣା ତିଆରି ହୁଏ

**ଝୁଳ** - *ନ:ବା:* (ବି.) : ଝୋଳ

**ଝୁଳା** - *ଗ:* (ବି.) : ନିର୍ଦ୍ଦିଷ୍ଟ ପରିଧିର ଚାଷଜମି

**ଝୁଁଟାବାର** - *ସୁବ:* (କ୍ରି.) : ଝୁଣ୍ଟିପଡ଼ିବା

**ଝୁଁଟି ପକାବା** - *ସ:* (କ୍ରି.) : ଚିତା ପକେଇବା

**ଝୁଁଟେଇବା** - *ଝା:* (କ୍ରି.) : ବାଟରେ ଚାଲିଲା ବେଳେ ଝୁଣ୍ଟିବା

**ଝୁଂପା** - *ରା:* (ବି.) : ଆଦିବାସୀ ଝିଅଙ୍କ କେଶ ପ୍ରସାଧାନ ପାଇଁ ବ୍ୟବହୃତ ଅଳଙ୍କାର

**ଝେଲା** - *ରା:* (ବି.) : ଗୋଲାକାର ବାଉଁଶରେ ଆବୃତ ଛାଳ

**ଝୋକାଡ଼ିବା** - *ରା:* (କ୍ରି.) : ଟାଣିବା

**ଝୋ ଝୋ** - *କଳା:* (ବିଂ.) : ଅସରା ଅସରା, ଝାଇଁ ଝାଇଁ

**ଝୋଟିଦେବା** - *ନ:ଗ:* (କ୍ରି.) : ଚିତାଦେବା, ଚିତ୍ର କରିବା (ଚାଉଳଚୂନା ପାଣିରେ)

**ଝୋଡି** - *ରା:* (ବି.) : ମାଟି

**ଝୋଡ଼ିଆ** - *ରା:* (ବି.) : ବାଉଁଶର ଟୋକେଇ

**ଝୋବା** - *ଭ:* (ବି.) : ମାଟି ମାଠିଆ( କ୍ଷୀର ଓ ପାଣି ରଖିବା) ପାତ୍ର

**ଝୋର** - *ନୂ:* (ବି.) : ଏକ ପ୍ରକାର ମାଛ

**ଝୋଲ** - *ସୁ:ଗଦ୍ୟ:ଝା:* (ବି.) : ଝୋଳ, କନ୍ୟାସୁନା, ତରକାରୀ ପାଣି

**ଝୋଲଝୋଲ୍** - *ସୁବ:* (ବି.) ବେଶୀ ପରିମାଣରେ ସ୍ରାବ ହେବା

**ଝୋଲା** - *ମା:ଗଦ୍ୟ:* (ବି.) : ପାହାଡ଼ି ଖାଲ ଯେଉଁଠି ପାଣି ରହେ, ଏକ ଦୋଳି

**ଝୋଲାଝାଇଁ** - *ନ:* (ବି.) : ତଣ୍ଟି ଶୁଖିଯିବା

**ଝୋଲାମାରିବା** - *ସ:ଭ:ନ:ରା:* (କ୍ରି.ବିଂ) : ଅଚେତ ହେବା ଭଳି ଲାଗିବା, ଅତିରିକ୍ତ ଭୋକରେ ଦୁର୍ବଳ ହେବା, ତଣ୍ଟି ଶୁଖିଯାଇ ମୁଣ୍ଡବୁଲାଇ ପଡ଼ିଯିବା

**ଝୋଲୋଙ୍ଗୋ** - *ସୁ:* (ବିଂ.) : ଢିଲା

**ଝୋଁକ** - *ଯା:* (କ୍ରି.) : ଜିଦ୍

**ଝଁକ୍‌ବାର** - *ସୁବ:* (କ୍ରି.) : ଚକଚକ ଦେଖାଯିବା

**ଝଁକେର** - *ସୁ:ସୁବ:* (ବି.) : ଅବିରତ ବର୍ଷା, ପବନ ବହିବା ସହିତ ଲଗାତାର ବର୍ଷା

**ଝଁଟା** - *ସୁ:* (ବି.) : ଗଛର ଛୋଟ ଶାଖା

**ଝଁପାବାର** - *ସୁବ:* (କ୍ରି.) : ଅନିଚ୍ଛା ସତ୍ତ୍ୱେ ଜଣକୁ ବାଧକରି ପାଣିକୁ ଠେଲିବା, ବିପଦ ଭିତରକୁ ଜଣକୁ ଠେଲିଦେବା

**ଝଁପେଇ** - *ଝା:* (କ୍ରି.) : ଝାମ୍ପଦେବା

**ଝଂକା** - *କଳା:* (ବି.) : ବାଉଁଶ ଖଡ଼ିକା ବା ପଡିଆରେ ନିର୍ମିତ ପେଡି

**ଝଂଗି** - *ରା:* (ବି.) : ତାଳ

**ଝଂଜ** - *ଚୌ:* (ବି.) : ବାଦ୍ୟବିଶେଷ

**ଝଂଜା** - *ଚୌ:* (କ୍ରି.) : ବାରିବା

**ଝଂଜେଇବା** - *ଚୌ:* (କ୍ରି.) : ସିଝାଇବା

**ଝଂଝଟିଆ** - *ଗ:ରା:* (ବି.) ବ୍ୟସ୍ତ, ଗୋଳମାଳିଆ ପରିସ୍ଥିତି

# ଟ

ଟଇ - *କଝ:* (ବି.) : ଛୋଟଶୁଆ

ଟଇକା - *କ:* (ବିଂ.) : ଅତି ଆଗ୍ରହୀ

ଟଏଁର ଖୁଟି - *କଳା:* (ବି.) : ଯୁଆଳିର ମଧ୍ୟ ଭାଗରେ ଦଉଡି ବାନ୍ଧିବା ପାଇଁ ଥିବା କଣ୍ଟା

ଟକ - *ଅନେ:* (ବି.) : ଲାଳସା, ଖଟା, ଆମ୍ବିଳା

ଟକ୍‌କରି - *ଦେ:* (କ୍ରି.ବିଂ.) : ଏକାଥରକେ, ହଠାତ୍

ଟକ୍‌ଟକ୍ - *ଦେ:ନ:କେ:* (ଅ.) ଚଞ୍ଚଳ, ପାଣିଫୁଟିବା ଶବ୍ଦ

ଟକ୍‌ର - *କଝ:* (ବି.) : ଠୋକର

ଟକ୍‌ରେନ୍ - *କଳା:* (ବିଂ.) : କୌଣସି ଭୂତ ପ୍ରେତାଦିଙ୍କର କୁଦୃଷ୍ଟି ପଡ଼ିଥିବା ସ୍ଥାନ

ଟକଟକାବାର - *ସୁବ:* (ବିଂ.) : ଖାଇବା ପାଇଁ ଲୋଭ ହେବା

ଟକଟକିଆ - *ଦେ:ବୌ:* (ବିଂ.) : ଲୋଭନୀୟ, ଲାଳାୟିତ, ଟକା

ଟକତୁନି - *ବ:* (ବି.) : ଖଟାତୋରାଣି

ଟକଭେଣ୍ଡି - *କ:* (ବି.) : ଏକ ପ୍ରକାର ଭେଣ୍ଡି

ଟକରସା - *ବ:* (ବି.) : ଖଟାତରକାରୀ

ଟକରାଟକରି - *କ:କେ:* (ବି.) : ପ୍ରତିଦ୍ୱନ୍ଦ୍ୱିତା, ଲଗାଲଗି ହେବା

ଟକରା ମାରିବା - *ମ:* (କ୍ରି.) : ପାଟିରେ ଟକ୍‌କରି ଏକ ପ୍ରକାର ଶବ୍ଦ କରିବା

ଟକଲା - *ସ:* (ବିଂ.) : ଖାଦ୍ୟଲୋଭୀ; ଖାଦ୍ୟ ଲାଳାୟିତ

ଟକା - *ନୂ:କଝ:* (ବି.) : ଟଙ୍କା

ଟକି - *ମା:ନବ:* (ବି.) : ଟୋକୀ, କୁମାରୀ କନ୍ୟା

ଟକୁ - *ଦେ:* (ବି.) : ଉଇବସା, ଉଇ ହୁଙ୍କାର ଭିତର

ଟକ୍କର - *କ:ସୁ:* (ବି.) : ପ୍ରତିଦ୍ୱନ୍ଦ୍ୱିତା, ବାଜି, ସମକକ୍ଷ ପ୍ରତିବାଦ

ଟଖରିଆ - *ସୁ:* (ବିଂ.) : ଦେଖାପିଆ

ଟଙ୍କ - *କ:ଦେ:ଭ:* (ବିଂ.ବି.) : ଆମ୍ବିଳା, ଖଟା, ଟାଙ୍ଗରାଭୂଇଁ

ଟଙ୍କପାଣି - *ଦେ:* (ବି.) : ଖଟାପାଣି, ଆମ୍ବିଳି, ତୋରାଣି

ଟଙ୍କା ବାନ୍ଧିବା - *କଝ:କୋ:* (କ୍ରି.) : ଟଙ୍କା ଜମା ରଖିବା, ଅର୍ଥ ପୈଠ କରିବା

ଟଙ୍କାର ବାଦ୍ୟ - *ଗଦ୍ୟ :* (ବି) : ଧନୁଗୁଣ ଟାଣିବା ଶବ୍ଦ

ଟଙ୍କାରି - *ଭା:* (କ୍ରି.) : ଜଙ୍ଘରେ ଘଣ୍ଟ ବାନ୍ଧିବା

**ଟଙ୍କାରିବା** - *ରା:* (କ୍ରି.) : ଦଉଡ଼ି ଟାଣିବା

**ଟଙ୍ଗ୍‌ଟାଙ୍ଗ୍** - *ସ:* (ବିଂ.) : ଧଡ଼ପଡ଼

**ଟଙ୍ଗଟଙ୍ଗ** - *ନବ:ଦେ:କୋ:କେ:* (କ୍ରି.ବିଂ.) : ତରବରରେ ଏପଟସେପଟ ହେବା

**ଟଙ୍ଗରା** - *କନ୍ଧ:* (ବି.) : ଲଣ୍ଡା ମଣିଷ, ଟାଙ୍ଗରା

**ଟଙ୍ଗା** - *ରା:ଦେ:ଖୋ:ନ:* (ବି.) : ରାଗି, ଝୁଲାଇବା, ଯେଉଁଥିରେ ଲିଆରୁ ଚୋପା ଛଡ଼ାଯାଏ, ଖଇଞ୍ଚି

**ଟଙ୍ଗାରି** - *ବର:ସ:କନ୍ଧ:ବର:* (ବି.) : ଟାଙ୍ଗିଆ

**ଟଙ୍ଗେଇବା** - *ନ:* (କ୍ରି.) ଟଙ୍ଗାଇବା; ଝୁଲେଇଦେବା; ଲଟକାଇ ଦେବା

**ଟଚୋକଲା** - *ସୁବ:* (କ୍ରି.ବିଂ.) : ଅତି ଅଳ୍ପ ସମୟରେ, ତତକ୍ଷଣାତ୍

**ଟଟି** - *କଳା:* (ବି.) : ତୋଟି, ବେକ, ଗଳା

**ଟଟିକଟିଆ** - *କଳା:* (ବି.) ଗଳାକାଟି ଦେଉଥିବା ବ୍ୟକ୍ତି, ତଣ୍ଟିକଟା

**ଟଟୋ** - *ସୁ:* (ବି.) : କ୍ଷୁଦ୍ର, ଲିଙ୍ଗ

**ଟଢ଼ିଆ** - *କନ୍ଧ:ଗଦ୍ୟ:* (ବି.) ବଡ଼ବଡ଼ ମାଟିହାଣ୍ଡି

**ଟଣକ** - *କେ:* (ବି.) : ଟଣା ଦଉଡ଼ି

**ଟଣକା** - *ନ:ପୁ:ନ:* (ବି.) କାନରେ ଯନ୍ତ୍ରଣାଦାୟକ ବ୍ୟଥା, ଟାଣିକରି ବାନ୍ଧିବା ଦଉଡ଼ି, ମାଠିଆ କଣାହୋଇ କନା ବନ୍ଧା ହୋଇଥିବା ଏକ ବାଦ୍ୟ

**ଟଣାକନା** - *ଗ:* (ବି.) : ପାନ ବରଜରେ ମାଟି ବୁହାଳି ଅଣ୍ଟାରେ ବାନ୍ଧୁଥିବା କନା

**ଟଣି ଛିଣ୍ଡେଇବା** - *ପୁ:* (କ୍ରି.) : ଉଚ୍ଚ ସ୍ୱରରେ କଥା କହିବା

**ଟଣେଇ** - *କଳା:* (ବି.) ମନୁଷ୍ୟ ରକ୍ତ ଶୋଷୁଥିବା ଡାହାଣୀ

**ଟଣେଇବା** - *କଳା:* (କ୍ରି.) ଟାଣିବା, ଅନ୍ୟଦ୍ୱାରା କୌଣସି ଜିନିଷ ସ୍ଥାନାନ୍ତର କରାଇବା

**ଟଣ୍ଟି** - *ମ:* (ବି.) : ତଣ୍ଟି

**ଟଣ୍ଟିଆ** - *ନବ:ବୌ:ମା:* (ବି.) : ଗଳାଧକ୍‌କା, ତଣ୍ଟିଆ

**ଟଣ୍ଡେଇ** - *ସ:* (ବି.) : ଡାହାଣୀ

**ଟନ୍‌କିବା** - *ଗଦ୍ୟ:ବୌ:ସୁ:* (କ୍ରି.) : ଟାଙ୍କୁରିବା, ଠିଆହେବା, ପୀଡ଼ା ହେବା, ମୁଣ୍ଡ ବ୍ୟଥା

**ଟନ୍‌ଟନ୍** - *ସୁବ:* (କ୍ରି.) : ବିନ୍ଧିବାର ବ୍ୟଥା

**ଟନ୍‌ଟନିଆଁ** - *ବୌ:* (କ୍ରି.) : ଜୋର୍

**ଟପ୍‌କାବାର୍** - *ସୁବ:* (କ୍ରି.) : ବନ୍‌ଶି ଖଡ଼ାରେ ଥୋପ ଲଗେଇ ପାଣିରେ ହଲେଇବା

**ଟପ୍‌କିନା** - *ନ:ଗ:କନ୍ଧ:* (ଅ.କ୍ରି.ବିଂ.) : ହଠାତ୍, ତତ୍‌କ୍ଷଣାତ୍, ଫୋଡ଼ିହେବା କ୍ରିୟା

**ଟପଟପି** - *ଗ:* (ବିଂ.) : ମୁଖରା ନାରୀ

**ଟପା** - *ଅନେ:* (ବି.) : ଚୋପା, ବାଉଁଶ ପାତିଆରେ ନିର୍ମିତ ପାତ୍ର, ଟାଙ୍ଗୁ, ଝଞ୍ଜାଳିର ଡାଳ, ପାଳି, ଯେଉଁ ଲୋକ ଡାକ ଥଳି ବହେ, କିଛିଦୂରକୁ ମାଟିଖୋଳି ଜଣକୁ ଜଣେ ବୋଝ ବଢ଼ାଇବାକୁ ଗୋଟିଏ ଟପା କୁହାଯାଏ,

ଅଧାବାଟିଆ କରି ମାଲ ବୋହିବା, ପ୍ରଗଣା

**ଟପାକାରିଆ** - *ଗ:* (ବି.) : ଡାକବାଲା

**ଟପାଡ଼ାଏକା** - *ସ:* (ବି.) : ଟାହିଟାପରା

**ଟପା ପକାଇବା** - *ନ:* (କ୍ରି.) : ଧାଁ ଧାଉଁଡ଼ କରିବା

**ଟପାଳିଆ ହେବା** - *ନ:* (କ୍ରି.) : ଶଗଡ଼ର ପଛଭାଗ ଓଜନିଆ ହେବା, ଏକପାଖିଆ ହେବା

**ଟପେଇବା** - *ନ:* (କ୍ରି.) : ଶଗଡ଼ର ପଛରେ ରହି ଦଣ୍ଡାଧରି ଓଜନ ଟେକିବା, ଶଗଡ଼ର ସମ୍ମୁଖଭାଗରେ ରହି ବଳଦର ବେକକୁ ଲାଗି ରହିବାପାଇଁ ଯୁଆଳିକୁ ଚାପିବା

**ଟପୋ** - *ସୁ:* (ବି.) : ଏକାଥରକୁ

**ଟଫା** - *ଭ:* (ବି.) : ଡାଲା

**ଟଫି** - *ସ:* (ବି.) : ଚକ୍‌ଲେଟ୍

**ଟବ୍‌କା** - *ବ:* (ବିଂ.) : ଟାଉଟର

**ଟବ୍‌କିବା** - *କଳା:* (କ୍ରି.) : ଅଗ୍ନିରେ ସିଦ୍ଧହେବା ବେଳେ ତରଳ ପଦାର୍ଥ ଫୁଟିବା

**ଟବକା** - *ଜ:* (ବି.) : ବୁନ୍ଦିଆ ମିଠେଇ

**ଟବର** - *ଦେ:* (ବି.) : କୁଟୁମ୍ବ, ପରିବାର

**ଟବାଲୁ** - *ଗ:* (ବି.) : ତଉଲିଆ, ଟାୱେଲ

**ଟଭା** - *ଅନେ:* (ବି.) : ଲେମ୍ବୁ ଜାତୀୟ ଫଳ, ଆଚାର ହେବା କମଳା ଭଳି ଫଳ, ଖଟା କମଳା

**ଟମ୍‌କଢ଼ି** - *ଜଝ:* (ବି.) : ଟମକ, ବାଦ୍ୟ ବିଶେଷ

**ଟମ୍‌କୋ** - *ସୁ:* (ବିଂ.) : ଫୁଲା, ଆକାରରେ ବଢ଼ିଯିବା

**ଟମ୍‌ଟମ୍** - *ସ:ଗ:* (ବି.) : ଘୋଡାଗାଡି

**ଟମ୍‌ଟମା** - *କୋ:ଭ:* (ବି.) : ଧେଣ୍ଡୁରା, ବାଦ୍ୟନାଦ ସହ ଘୋଷଣା

**ଟମକ** - *ନ:ଭ:ଦେ:କ:* (ବି.) : ଧେଣ୍ଡୁରା ବାଜା, ଆଦିବାସୀ ବାଦ୍ୟ, ନାଗରା, ବାଦ୍ୟ ବିଶେଷ

**ଟମକିଆ** - *ଭ:* (ବିଂ.) : ଯେ ଶବ୍ଦ ମାଧ୍ୟମରେ ଖବର ଦିଏ, ଡେଙ୍ଗୁରାବାଲା

**ଟମାଟର୍** - *ଅନେ:* (ବି.) : ଟମାଟୋ, ବିଲାତି ବାଇଗଣ

**ଟର୍** - *ସୁବ:ସ:* (ବିଂ.) : ଅତିଶୟ ଖଟା

**ଟର୍‌ଟରା** - *କଳା:* (ବିଂ.) : ପ୍ରଚଣ୍ଡ, ଅତ୍ୟଧିକ

**ଟର୍‌ଟର୍** - *ଦେ:* (ବି.) : ଅଟକି ନ ରହି ସିଧା ଚାଲିଯିବା, ରାଗରେ ଚାଲିବାର ଏକ ଭଙ୍ଗୀ, ଶୀଘ୍ର ଶୀଘ୍ର ଚାଲିବାର ଭଙ୍ଗୀ

**ଟର୍‌ରା** - *ସୁ:* (ବିଂ.) : ଟେଢ଼ା

**ଟର୍‌ଲି** - *କଳା:ସୁ:* (ବି.) : ଟ୍ରକ୍ ଓ ଟ୍ରାକ୍‌ଟର୍ ଆଦିର ଡାଲା, ଟ୍ରଲି

**ଟରକ୍** - *କଳା:ସୁ:* (ବି.) : ଟ୍ରକ୍, ଯନ୍ତ୍ର ଚାଳିତ ମାଲବୁହା ଗାଡ଼ି ବିଶେଷ

**ଟରଣି** - *ସ:* (ବି.) : ଯୋଗାଡ଼ିଆ, ଦଲାଲ ଦୂତ, ଚର

**ଟଲ୍‌ଟଲ୍** - *ଗ୍ରୌ:* (ବିଂ.) : ଅସ୍ଥିର, ଟଳମଳ

**ଟଳାଟଳି କରିବା** - *ଦେ:* (କ୍ରି.) : ସମୟ ବିତେଇବା, ଭଣ୍ଡେଇବା, ଫୁସଲେଇବା

**ଟଳେଇଦେବା** - *ନ:* (କ୍ରି.) ପରାଜିତ କରିଦେବା, ମାଟିରେ ଗଡ଼େଇ ଦେବା

**ଟସକିବାର** - *ସୁବ:* (କ୍ରି.) : ଅଳ୍ପ ଘୁଞ୍ଚିବା

**ଟସଲା** - *ନ:* (ବି.) ପିତଳ ଓ ଆଲମୁନିଅମର ବଡ଼ ଓସାରିଆ ହାଣ୍ଡି

**ଟହକ** - *ଦେ:* (ବିଂ.) : ସୁନ୍ଦର

**ଟହଟହ** - *ଦେ:ନ:କେ:ସଂ:* (ଅ.ବିଂ.) : ହସରେ ଫାଟିପଡ଼ିବା, ହସ ଫୁଟିବା, ଜୋରରେ ହସିବା, ଉଜ୍ଜ୍ୱଳ, ଅତିଲାଲ

**ଟହରେ** - *ଭ:* (ବି.) : ବାଣ ରୋଷଣୀ

**ଟହଲ** - *ଅନେ:* (ବି.) ଚାଲବୁଲ୍, ପଦଚାରଣା, ଭ୍ରମଣ

**ଟହଲମାରିବା** - *ନ:ବା:ଗ୍ରୌ:ସୁ:* (କ୍ରି.) : ଏଣେତେଣେ ବୁଲିବା, କାମ ନଥାଇ ବୁଲିବା, ପଦଚାରଣା କରିବା

**ଟହଲିଆ** - *ଅନେ:* (ବି.) ମନ୍ଦିରରେ ବୋଲହାକ କରୁଥିବା ବ୍ୟକ୍ତି, ଗାଁ ସଭାସ୍ଥଳକୁ ଲୋକମାନଙ୍କୁ ଯିଏ ଡାକେ, ଚାକର, ରୋଷେୟାର ସହଯୋଗୀ

**ଟହଲିଟହଲି** - *ନ:* (କ୍ରି.ବିଂ.) : ହଲିହଲି, ମଠମଠ କରି, ଧୀରେ ଧୀରେ

**ଟାଆଣି** - *ନୂ:* (ବି.) ଛୋଟ ମାଠିଆ, ସାମାନ୍ୟ ଟାଣ ବା ଶକ୍ତି

**ଟାଆଁଶା** - *ଗ୍ରୌ:ଦେ:ସଂ:* (ବି.ବିଂ.) : କର୍କଶ, କଠିନ

**ଟାଇକିରି** - *ଗଦ୍ୟ:* (ବି.) : ଏକ ପ୍ରକାର ଚିଙ୍ଗୁଡ଼ି ମାଛ

**ଟାଇଗା** - *ସଂ:* (ବି.) : କଷ୍ଟମୟ ଅଞ୍ଚଳ, ଦୁର୍ଗମ ବନାଞ୍ଚଳ

**ଟାଇଚୁଙ୍ଗ** - *ନ:* (ବି.) : ଏକ ଧାନର ନାମ

**ଟାଇଟଲ** - *ସଂ:* (ବି.) : ସାଙ୍ଗିଆ, ପଦବୀ

**ଟାଇଟୁ** - *ବା:* (ବିଂ.) : ଚିପା

**ଟାଇରି** - *ବା:* (ବି.) : ଟାୟାର

**ଟାଇଲ** - *ଦେ:* (ବି.) : ମାଟି ଓ ସିମେଣ୍ଟରେ ତିଆରି ଚାରିକୋଣିଆ ଖପର

**ଟାଇଁଟାଇଁ** - *ଦେ:* (କ୍ରି.ବିଂ.) : ସ୍ପଷ୍ଟଭାବରେ କହିବା, ଟାଣ କରି କହିବା, ପ୍ରଚଣ୍ଡ

**ଟାଇଁନ** - *ଢ:* (ବି.) : ସମୟ

**ଟାଉଆ** - *ମା:* (ବି.) : ଅତିଶୀଘ୍ର, ତରବର

**ଟାଉକା** - *ଭ:ଦେ:* (ବିଂ.ବି.) : ବିକଳିଆ, ମଉକା ଦେଖି ଯେ ଚୋରି କରେ

**ଟାଉକି** - *ଢ:* (ବିଂ.) : ଟାକିକରି ଯେ ରହେ, ପାଟି ଓ ପେଟ ବିକିଳିଆ

**ଟାଉକିନା** - *କେ:* (କ୍ରି.ବିଂ.) : ଚଟ୍‌କିନା, ହଠାତ୍

**ଟାଉଟ୍** - *ଚ୍:* (ବି.) : ପାନ ବଛାବଛି କରୁଥିବା ଲୋକ

**ଟାଉଟର** - *ଢ:ଦେ:* (ବି.ବିଂ.) : ମାମଲତକାର, ମଧ୍ୟସ୍ଥତା କରି ଯେ ସ୍ୱାର୍ଥ ହାସଲ କରେ, ଦଲାଲ୍

**ଟାଉଟାଉ** - *ଅନେ:* (ଅ.କ୍ରି.ବିଂ.) : ତରବରରେ, ଚଞ୍ଚଳ, ସନ୍ତର୍ପଣରେ, ଅତିଶୀଘ୍ର

**ଟାଉଟାଉଆ** - *ଛ:* (ବିଂ.) : ଉପରେପଡ଼ି କହିବା ଲୋକ

**ଟାଉଳି** - *ଭ:* (ବିଂ.) : ବାଆଁରେଇ କହିବା, ଥଟ୍ଟା କରିବା

**ଟାଏଟ** - *ସୁ:ସ:* (ବି.) : କବାଟ

**ଟାଏଁ** - *ସୁ:* (ବି.) : ଖୁବଟାଣ, ବେଶି

**ଟାଓ** - *ସୁ:* (ବି.) : ଖଜୁରି ରସ

**ଟାକ୍‌ବା** - *କଳା:ସୁ:* (କ୍ରି.) : ଟାକିବା, ଅପେକ୍ଷା କରିବା, ଜଗିବା

**ଟାକରା** - *ନ:କେ:* (ବି.ଅ.) କୌଣସି ଭୋଜନ ପ୍ରତି ଲାଳସା ରଖିବା, ପାଟିରେ ଏକ ପ୍ରକାର ଶବ୍ଦ କରିବା

**ଟାକାରୁ** - *କଳା:* (ବି.) : ଆଦିବାସୀ କନ୍ଧ ସଂପ୍ରଦାୟ ଭିତରେ ପ୍ରଚଳିତ ଲୋକ ଖେଳରେ କଳ୍ପିତ ଦେବତା, ଏହି ନାମର ଲୋକଖେଳ

**ଟାକିବା** - *ଅନେ:* (କ୍ରି.) ଚାହିଁରହିବା, ଆଶାକରିବା, ଜଗିବସିବା, ଅପେକ୍ଷାକରିବା

**ଟାକୁଆ** - *କେ:ନ:* (ବି.) : ଆମ୍ବ ଭିତରର କଠିନ ଅଂଶ, ଟାକୁ

**ଟାକୁଆପଥର** - *ନ:* (ବି.) : ସଉପ ବୁଣାର ଦଉଡ଼ିରେ ବନ୍ଧାଥିବା ପଥର

**ଟାକୁଟୁକ** - *ବା:* (ବିଂ.) : ଅନାୟସରେ

**ଟାକୌ** - *ସ:ବର:* (ବି.) : ଟାକୁଆ

**ଟାଖୁ** - *ବା:* (ବି.) : ଆମ୍ବ ଟାକୁଆ ବା ଟାଙ୍କୁ

**ଟାଗା** - *ବା:* (ବି.) : ଗ୍ରୀଷ୍ମ

**ଟାଘ** - *ବା:* (ବି.) : ଗଛରେ ଜନ୍ମ ନେଇଥିବା ଆଉ ଏକ ଗଛ, ମଲାଙ୍ଗ

**ଟାଙ୍କ** - *ଅନେ:* (ବି.) : ଛତାର ଖାଡ଼ି ବା କାଠି, ପଶୁର ଜଂଘ, ନଳିଗୋଡ଼, କୁସ୍ତିର ଏକ କୌଶଳ

**ଟାଙ୍କମାରିବା** - *ନ:* (କ୍ରି.) : ପୋଷାକ ଢିଲା ଥିଲେ କିମ୍ବା ଛିଡ଼ିଗଲେ ସୂତା ଛୁଞ୍ଚିରେ ସିଲାଇକରି ସଜାଡ଼ିବା

**ଟାଙ୍କି** - *କୋ:ଦେ:* (ବି.) : ତରଳ ପଦାର୍ଥ ବା ବାଷ୍ପ ରହୁଥିବା ଆଧାର, ପାଣି ବା ତେଲ ରଖିବା ବଡ ପାତ୍ର

**ଟାଙ୍କିବା** - *ଦେ:ନ:* (କ୍ରି.) : ଚିପିବା, ସିଲେଇ କରିବା, ଜୋରରେ ପିଇଦେବା, ଖାଇଦେବା, ଜୋର୍ କରି ଭରିବା

**ଟାଙ୍କୁ** - *ଅନେ:* (ବି.) : ଆମ୍ବ ଟାକୁଆ, ଆମ୍ବର ବୀଜ, ପାଦ, ଉଇଘର, ଆଣ୍ଠୁଚକି

**ଟାଙ୍କୁରିବା** - *ବା:ଦେ:ନ:* (ବିଂ.କ୍ରି.) : ପୁଲକିତ ହେବା, ଶିହରି ଉଠିବା, ରୋମାଞ୍ଚିତ ହେବା

**ଟାଙ୍କେ** - *ମା:ବା:ଭ:ସଂ:* (କ୍ରି.ବିଂ.ବି.) : ପୁଳାଏ, ଖୁବ୍, ଜୋରରେ ଆଘାତ, ଅନେକ ପରିମାଣରେ, ପ୍ରଚୁର ପରିମାଣରେ, ପେଟେ, ଢୋଳେ

**ଟାଙ୍କେ ଛେଚ଼ିବା** - *ଗୌ:* (କ୍ରି.) : ଭଲ କରି ମାଡ଼ ମାରିବା

**ଟାଙ୍କ** - *ସଂ:ପଦ୍ୟ:* (ବି.) : ଚିମୁଟା, ସଣ୍ଢୁଆଶୀ, ହୀରା ଓଜନ ପରିମାପ

**ଟାଙ୍ଗଣ** - *ଗଦ୍ୟ:* (ବି.) : ଟଟୁ ଘୋଡ଼ା

**ଟାଙ୍ଗଣା** - *ଖୋ:ଦେ:ନ:* (ବି.) : ବଣିଆକାମରେ ବ୍ୟବହୃତ ଏକ ପଦାର୍ଥ, କାନ୍ଦି କାନ୍ଦି କହି ନପାରିବା

**ଟାଙ୍ଗଣେ** - *ନବ:* (ବିଂ.) : ସଂପୂର୍ଣ୍ଣ, ପୂରାପୁରି

**ଟାଙ୍ଗନା** - *ବର:* (ବି.) : ଟାଙ୍ଗିଆ, ଛୋଟ କୁରାଢ଼ି

**ଟାଙ୍ଗର** - *ଅନେ:* (ବି.) : ପଥର ଚଟାଣ

**ଟାଙ୍ଗରା** - *ଅନେ:* (ବିଂ.ବି.) ଲଣ୍ଡା, ଚନ୍ଦାମୁଣ୍ଡିଆ, ଉଚ୍ଚ ତୃଣହୀନ ଜମି, ଶୁଷ୍କ ପଥୁରିଆ ମାଟି, ଘାସ ବୃକ୍ଷଲତା ନଥିବା ସ୍ଥାନ

**ଟାଙ୍ଗଲି** - *କୋ:* (ବି.) କଳସରେ ଘୋଡ଼ାଇବା ସରା

**ଟାଙ୍ଗସ** - *କଝ:* (ବି.) : ଚନ୍ଦାମୁଣ୍ଡିଆ

**ଟାଙ୍ଗା** - *ଖୋ:ଗ:ରା:ବର:* (ବି.) : ଗୋଟିଏ ବଳଦ ଟାଣୁଥିବା ଗାଡ଼ି, ଘୋଡ଼ାଗାଡ଼ି

**ଟାଙ୍ଗି** - *ମ:ନ:ସୁବ:ନୂ:* (ବି.) : ଟାଙ୍କିଆ, ବୃକ୍ଷହୀନ ଶୁଷ୍କ ପଥୁରିଆ ସ୍ଥାନ, ଫାର୍ଶା ପରଶୁ, ଏକ ପକ୍ଷୀ

**ଟାଙ୍ଗିଆ** - *ଅନେ:* (ବି.) : ଲୌହ ନିର୍ମିତ କାଠ ଫାଳ କରିବା ଯନ୍ତ୍ର, କାଠକଟା ଉପକରଣ, ଛୋଟ କୁରାଢ଼ି, ଫାରସା, ପରଶୁ, ବୁଡିଆ

**ଟାଙ୍ଗିଣିଖଡ଼ା** - *ବ:* (ବି.) : ଟଙ୍ଗାଯାଉଥିବା ବନ୍‌ଶୀ

**ଟାଙ୍ଗିବା** - *ଦେ:ନୂ:* (କ୍ରି.) : ଝୁଲାଇବା, ଟାଣିବା

**ଟାଙ୍ଗୁ** - *ରା:* (ବି.) : ଟାଙ୍ଗିଆ

**ଟାଙ୍ଗୁରୁ** - *ମା:* (ବି.) : ଲଣ୍ଡାମୁଣ୍ଡ

**ଟାଟର** - *ମ:* (ବି.) : ଚାଞ୍ଚଡା, ତାଟି

**ଟାଟଲୁ** - *ଦେ:* (ବିଂ.) : ଚନ୍ଦାମୁଣ୍ଡିଆ

**ଟାଟି** - *ମା:* (ବି.) : ମଶିଣା

**ଟାଟିରୀ** - *ରା:* (ବି.) : ବଡ଼ ଛୁରୀ

**ଟାଟୁ** - *ସଂ:* (ବି.) : ଚିତାକୁଟା ଶୈଳୀ

**ଟାଠ** - *ରା:* (ବି.) : ବଡ଼ ଡାଲା

**ଟାଡ୍** - *ନୂ:କଳା:* (ବି.) : ଧାତୁର ବଡ଼ ପାତ୍ର, ରସ ବା ପିତ୍ତଳର ବଡ଼ ହାଣ୍ଡି

**ଟାଡ଼** - *ସ:ସୁ:* (ବି.) : ବାହୁରେ ଧାରଣ କରାଯାଉଥିବା ଗୋଟିଏ ପ୍ରକାର ଅଳଙ୍କାର, ବାହୁ ସୂତା, ବଡ଼ ମାଠିଆ

**ଟାଡ଼ବାର** - *ସୁବ:* (ବି.) : ତାଡ଼ିବା ବାଡ଼ି ବା ଶାବଳ ଦ୍ୱାରା ମାଟିରୁ ଭାରଦଣ୍ଡ ପ୍ରଣାଳୀ ଅବଲମ୍ବନ କରି ଖୋଳିବା

**ଟାଡ଼ା** - *ରା:* (ବି.) : ଛୋଟ ଟୋକେଇ

**ଟାଡ଼ିସରୁ** - *କଝ:* (ବି.) : ଉଚ୍ଚପର୍ବତ

**ଟାଢୁ** - *ସୁ:* (ବିଂ.) : ପଥୁରିଆ

**ଟାଡ୍ରା** - *କଝ:* (ବି.) : ଗଞ୍ଜା

**ଟାଣ** - *ଅନେ:* (ବିଂ.କ୍ରି.) ଶକ୍ତ, ଦୃଢ଼, ଝିଙ୍କିବା

**ଟାଣା ପେନୁ** - *କଣ:* (ବି.) : ମାଟି ଦେବତା

**ଟାଣି** - *ଖୋ:କଳା:* (କ୍ରି.ବି.) : ସୂତାକୁ ଟାଣି କରାଯାଏ, ଖଜୁରି ରସ ସଂଗ୍ରହ କରିବାପାଇଁ ବ୍ୟବହୃତ ମାଟିରେ ତିଆରି ଛୋଟ ହାଣ୍ଡି

**ଟାଣିଚୁଣି** - *କ:ଦେ:ନବ:* (ବି.) : କଷ୍ଟରେ ତୁଲାଇବା, କୌଣସିମତେ ଯଥେଷ୍ଟ ହେବା, ଭିଡ଼ିଓଟାରି

**ଟାଣିବା** - *ଅନେ:* (କ୍ରି.) ନିଜଆଡ଼କୁ ଆକର୍ଷିତ କରିବା, ଝିଙ୍କିବା

**ଟାଣୁଆ** - *ନ:ଗ:* (ବିଂ.) : ମଜଭୁତ, ଆଣ୍ଟୁଆ, ସମର୍ଥ, କଠିନ

**ଟାଣେ** - *ମା:* (କ୍ରି.ବିଂ.) : ଭଲକରି

**ଟାଣ୍ଡି** - *ରା:* (ବି.) : କଳସ

**ଟାଣ୍ଡିମାରା** - *ରା:* (ବି.) : ବାହାଡ଼ା ଗଛ

**ଟାନ୍** - *ଅନେ:* (ବିଂ.ବି.) : ଟାଣ, କଠିନ, ଟାଣିବାକୁ କହିବା, ଆଣ୍ଟପଣ, ଦମ୍ଭ, ଦୃଢ

**ଟାନ୍‌ବା** - *କଳା:* (କ୍ରି.) : ଟାଣିବା, ଝିଂକିବା

**ଟାନ୍‌ସି** - *କଳା:* (କ୍ରି.) : ଟାଣେ, ଟାଣୁଛି

**ଟାପ** - *ଖୋ:ନ:* (ବି.) ଅପେକ୍ଷାକୃତ ବଡ଼ଖାଲ, ଛୋଟଗାଡ଼ିଆ, ଛୋଟ ପାଣି ରହିବା ସ୍ଥାନ

**ଟାପକାରିଆ, ଟେପା** - *କୋ:* (ବି.) : ଡାକବାଲା

**ଟାପଣା** - *ଗଦ୍ୟ:* (ବି.) : ପରିହାସ

**ଟାପରା** - *ଅନେ:* (ବି.) : ଥଟ୍ଟା, ହୁରିଆ, ତାମସା, ରଙ୍ଗ, ପରିହାସ, ରହସ୍ୟ

**ଟାପିବା** - *ରା:* (ବି.) : ଖମ୍ବଆଳୁ

**ଟାପୁ** - *ନ:ଦେ:ଇ:* (ବି.) : ପଶୁଙ୍କର ଖୁରାଚିହ୍ନ, ପାଣି ଭିତରେ ଥିବା ଉଚ୍ଚ ଭୂମି

**ଟାପୁଆ** - *ସୁବ:* (ବିଂ.) : ଶୁଖୁଆ, ତାମ୍ପଡ଼ା

**ଟାବଲ୍ ଟଂଗିଆ** - *କଳା:* (ବି.) : ଓସାରିଆ ଟାଂଗିଆ

**ଟାବିବା** - *କୋ:* (କ୍ରି.) : ବକର ବକର ହେବା, ବେଶୀ କଥା କହିବା

**ଟାମ୍‌କି** - *ନୁ:* (ବି.) : ଅଣ୍ଟାରେ ଝୁଲାଇ ଖଡ଼ିକାରେ ବଜା ଯାଉଥିବା ଯନ୍ତ୍ର, ଟାମ୍‌କି

**ଟାମ୍‌ଡିବା** - *କଳା:ବର:ସ:ନୁ:* (କ୍ରି.) ଦରାଣ୍ଡିବା, ଖୋଜିବା, ଛୁଇଁବା, ଅଣ୍ଡାଳିବା

**ଟାମକ୍** - *ପଦ୍ୟ:* (ବି.) : ଚମଡ଼ା ଛାଉଣି ବାଦ୍ୟ ଯନ୍ତ୍ର

**ଟାମକିଡି** - *ସୁବ:* (ବି.) : ତାସା, ନାଗରା

**ଟାମାକୋ** - *ନୁ:* (ବି.) : ଅଣ୍ଟାରେ ଝୁଲାଇ ଖଡ଼ିକାରେ ବଜା ଯାଉଥିବା ଯନ୍ତ୍ର, ଟାମ୍‌କି

**ଟାମିଟୁଲ** - *ନବ:* (ବି.) : କାନର ଅଳଙ୍କାର ବିଶେଷ

**ଟାମ୍ବା** - *ରା:* (ବି.) : ପାଣିକୁଣ୍ଡ

**ଟାୟା** - *କଳା:ଗଜ:* (ବି.) : ଟାହିଆ

**ଟାରକାନି** - *ରା:* (ବି.) : ଆମ୍ବ କୋଇଲିର ଭାତ

**ଟାର୍ଚ୍ଚୁ** - *ଗଞ:* (ବି.) : ଟର୍ଚ୍ଚ ଲାଇଟ୍

**ଟାଲ** - *ଅନେ:* (ବି.) : ମାଛ ଯେଉଁଠି ବେଶୀ ରହନ୍ତି, ପାଣି ଚହଲା, ଖାଲ, ଗଣ୍ଡ, ପହର

**ଟାଲ ମୁଣ୍ଡ** - *ପୁ:* (ବି.) : ନଈର ବାଙ୍କ

**ଟାଲିଦେବା** - *କଳା:* (କ୍ରି.) : ଅସ୍ୱୀକାର କରିବା, ସମର୍ଥନ ନ କରିବା, ମୋଡିବା, ବଙ୍କେଇବା, ଟାଳିଦେବା

**ଟାଳଟୁଳ** - *ଯା:ଗ:ଦେ:* (ବିଂ.ବି.) : ନିଷ୍ପତ୍ତି ନେବାରେ ଅହେତୁକ ବିଳମ୍ବ, କାଳକ୍ଷେପଣ, ଭଣ୍ଡାଭଣ୍ଡି, ଠକାଠକି

**ଟାଳିବା** - *ଦେ:ବା:ରା:* (କ୍ରି.) : ଭାଙ୍ଗିବା, ସମୟ ଗଡ଼େଇବା, ଅସ୍ୱୀକାର କରିବା

**ଟାସରା** - *ନ:* (ବି.) : ପ୍ରଶସ୍ତ ପଥର

**ଟାହାକୁ** - *କନ୍ଧ:* (ବି.) : ଆମ୍ବ ଟାକୁଆ

**ଟାହି** - *ଅନେ:* (ବି.) : ହାସ୍ୟ, ଥଟ୍ଟାକରିବା, ଟାପରା, ପରିହାସ କରିବା

**ଟାହିଟାପରା** - *ବୌ:ସଂ:ନ:* (ବି.) : ପରିହାସ, ଉପହାସ, ଥଟ୍ଟା ମଜା

**ଟାହିବା** - *ଗ:* (କ୍ରି.) : ପରିହାସ କରିବା

**ଟାହୁଲି** - *ଢ:ଦେ:* (ବି.) : ଟାପରା, ପରିହାସ କରିବା, ଥଟ୍ଟା କରିବା

**ଟାଁକୋ** - *ସୁ:ସୁବ:ବର:ସ:* (ବି.) : ଆମ୍ବ ଟାକୁଆ, ଉଇ ସହ ଉଈଘର

**ଟାଁଗି** - *ଝା:* (ବି.) : ଲୁହାରେ ତିଆରି ଏକ କାଟିବା ଉପକରଣ, ଛୋଟ କୁରାଢ଼ି

**ଟାଁଚବାର** - *ସୁବ:* (କ୍ରି.) : ଦୋଷୀ ବା କୁହାଳିଆ ଲୋକକୁ ଉଚିତ ଜବାବ୍ ଦେବା

**ଟାଁଚି କରି** - *ସ:* (କ୍ରି.) : ହୃଦୟକୁ ଯନ୍ତ୍ରଣା ଦେବା ଭଳି କଥା କହିବା

**ଟାଁସା, ଟାଆଁସା** - *ଉ:* (ବିଂ.) : କର୍କଶ, ଟାଣ

**ଟିଅଁ** - *କନ୍ଧ:ନୂ:ଗଞ:କଳା:* (ବିଂ.ବି.) : ଅତି ଛୋଟ ଶିଶୁ, ପଶୁ, ପକ୍ଷୀ ଶାବକ, ଟିଆଁ

**ଟିଅଁମିଟ** - *ବୌ:* (ବି.) : ହଲଚଲ, ଏପାଖ ସେପାଖ

**ଟିଆ** - *ଅନେ:* (ବି.ଅ.) : କଣ୍ଟ, ଏକ ପ୍ରକାର ପକ୍ଷୀ, ଛୋଟ ଶୁଆ

**ଟିଆମୁଣ୍ଡ** - *ବୌ:* (ବି.) : ଶେଷ ଭାଗ

**ଟିଆଁ** - *ରା:ସ:ସୁ:* (ବିଂ.) : ସହଜେ ରାଗୁଥିବା (ପିଲା), ଅତି ଛୋଟ

**ଟିଆଁସି** - *ଉ:* (ବି.) : ଘାସ ବିଶେଷ

**ଟିଇକ** - *ନବ:* (ବି.) : ଟିକେ

**ଟିଇଣି** - *ଗ:* (ବି.) : ଟିଣ ଧାତୁ

**ଟିଓ** - *କଳା:* (ବି.) : ଧଳାରଙ୍ଗର ବଡ଼ଧାନ

**ଟିକ୍** - *ଦେ:କନ୍ଧ:* (ବି.) : ସାଗୁଆନ୍ ଗଛ, ଟିଙ୍କ

**ଟିକ୍‌ଟିକି** - *ମ:* (ବି.) : ଝିଟିପିଟି

**ଟିକ୍ରା** - *ବୌ:ସ:କୋ:* (ବିଂ.ବି.) : ଉଚ୍ଚସ୍ଥାନ, ପଡ଼ିଆ ଜମି, ଉଚ୍ଚ ଚାଷ ଜମି

**ଟିକ୍‌ଲି** - *ଅନେ.* (ବି.) : ଟିକା, ନାରୀମାନେ କପାଳରେ ଲଗାଉଥିବା ସିନ୍ଦୂରର ବିକଳ୍ପ ଦ୍ରବ୍ୟ

**ଟିକ୍‌ଲେଇବା** - *ବୌ.କଳା.* (କ୍ରି.) : ଗମାତ କରିବା, ପରୋକ୍ଷରେ ଅନ୍ୟକୁ ଆକ୍ଷେପ କରିବା

**ଟିକ୍‌ସନ୍** - *ନୂ.* (ବି.) : ଟ୍ୟୁସନ

**ଟିକକ** - *ଅନେ.* (ବିଂ.) : ଟିକିଏ, ସାମାନ୍ୟ ଅଳ୍ପ

**ଟିକକଠଇଁ** - *ଦେ.* (ବି.) : କିଛି ବାକି ନରଖି

**ଟିକମ୍** - *ଦେ.* (ବି.) : ବାମନ, ବାଙ୍ଗରା

**ଟିକଲ** - *ଅନେ.* (ବିଂ.ବି.କ୍ରି.) : ଥଟ୍ଟା ପରିହାସ, ଟାପରା

**ଟିକସ୍** - *ଅନେ.* (ବି.) : ଖଜଣା, କର, ଶୁଳ୍କ, ଟ୍ୟାକ୍ସ

**ଟିକା** - *ଅନେ.* (ବି.) : ଟିକିଲି ନାରୀମାନେ କପାଳରେ ଲଗାଉଥିବା ସିନ୍ଦୂରର ବିକଳ୍ପ, ପାଦଭେଟି, ଭେଟି, ସୁନା ବା ରୂପା ଧାତୁର ପଦକ, ଚନ୍ଦନ, ସିନ୍ଦୂର, ଗୋରଚନା ଆଦିର ତିଳକ ଟୋପା, ଇଞ୍ଜେକସନ୍

**ଟିକାଏତ** - *ଗ.* (ବି.) : ଯୁବରାଜ, ରାଜାଙ୍କ ବଡ଼ପୁଅ

**ଟିକାଘେନିବା** - *ଦେ.* (କ୍ରି.) : କପାଳରେ ଚିତା ଧାରଣ କରିବା

**ଟିକାନେବା** - *ଦେ.ନ.* (କ୍ରି.) : ବସନ୍ତରୋଗ ପାଇଁ ଗୋବୀଜ ଟିକା ନେବା, ପ୍ରତିଷେଧକ ଇଂଜେକ୍‌ସନ ନେବା

**ଟିକାସି** - *ସ.ସୁ.* (ବି.) : ଶିଢ଼ି, ନିଶୁଣି

**ଟିକିନିକି** - *ଅନେ.* (କ୍ରି.ବିଂ.) : ପୁଙ୍ଖାନୁପୁଙ୍ଖ, ଗଭୀର ଭାବେ

**ଟିକିଫାରମ** - *ଛ.* (ବି.) : ଏକ ପ୍ରକାର ଧାନକିସମ

**ଟିକିରା** - *ବା.* (ବି.) : ହୁକା

**ଟିକିରି** - *ରା.* (ବି.) : ଛୋଟ ଗାଁ

**ଟିକେନ** - *ବୌ.* (ବିଂ.) : ଏତିକି ଟିକିଏ

**ଟିକ୍ରା** - *ଗଦ୍ୟ.ବର.* (ବି.) : ଢିପ, ଉପଗାଁ

**ଟିଖିରି** - *ସୁବ.ସ.* (ବି.) : ଝାଉ, କ୍ଷିରୀ

**ଟିଙ୍କ** - *ଅନେ.* (ବି.) : ରକ୍ତ ଶୋଷୁଥିବା କୀଟ, ପଶୁଙ୍କ ଚର୍ମରେ ଲାଗି ରହିଥିବା କୀଟ ବିଶେଷ

**ଟିଙ୍କାମାରିବା** - *ଭ.କ.* (ବି.କ୍ରି.) : ଅଙ୍ଗୁଳି ଅଗ୍ରଭାଗରେ ଠେଲିଦେବା

**ଟିଙ୍ଗ** - *ରା.* (ବି.) : ପଶୁ ଦେହର ରକ୍ତ ଶୋଷକ ଜୀବ

**ଟିଙ୍ଗଟିଙ୍ଗାବା** - *ବର.* (କ୍ରି.) : ଚିଡ଼ିଚିଡ଼ି ହେବା, ବିରକ୍ତ ହେବା

**ଟିଙ୍ଗରି** - *ଗ.ମା.* (ବି.ବିଂ.) : ଛୋଟ ଶିଶୁ, ଛୋଟ ବୟସର ବାଳକ

**ଟିଙ୍ଗାଲି** - *ସୁବ.ସ.* (ବିଂ.ବି.) : ବାହାପିଆ, ଫୁଟାଣିଆ, ବଡ଼ିମା ପ୍ରକାଶ କରୁଥିବା

ଲୋକ, କିଛି ନଜାଣି ଯିଏ ସବୁ ଜାଣିଛି ମନେକରେ, ଟିଙ୍ଗା

**ଟିଙ୍ଗାଲୁ** - *ଦେ:* (ବି.) : ଟିଙ୍ଗାଲୋକ

**ଟିଙ୍ଗିଶୁଙ୍ଗିଆ** - *ପୁ:* (ବିଂ.) : ଟିଙ୍ଗା, ଚିଡ଼ି ଚିଡ଼ା ସ୍ୱଭାବ ବିଶିଷ୍ଟ

**ଟିଙ୍ଗ୍ ଟିଙ୍ଗା** - *ମା:* (ବି.) : ବଦ୍‌ରାଗୀ

**ଟିଚୌଁ** - *ସ:* (ବି.) : ଆକୃତିରେ ଯିଏ ଛୋଟ

**ଟିଞ୍ଚୋ ଟିଞ୍ଚୋ** - *ଦେ:* (ବିଂ.) : ସାନ ସାନ, ଟିକି ଟିକି

**ଟିଚ୍‌କାରୀ** - *ବା:* (ବି.) : ବିଦ୍ରୁପ

**ଟିଚ୍‌ର** - *ଦେ:* (ବି.) : ଜଂଘ ସନ୍ଧିର ଫୁଲା

**ଟିଟ୍‌ରୀ ବେଙ୍ଗ** - *ନୂ:* (ବି.) : ଆଷାଢ଼ ମାସରେ ମାଟିରୁ ବାହାରୁଥିବା ବେଙ୍ଗ

**ଟିଟିଆ** - *କୋ:* (ବି.) : ଏକ ପ୍ରକାର ପକ୍ଷୀ

**ଟିଟିକାର** - *ଅନେ:* (ବି.) : ଅବଜ୍ଞା, ନିନ୍ଦା, ଅପମାନ ସୂଚକ ଭର୍ତ୍ସନା

**ଟିଟିକାରି** - *କ:* (ବି.) : ଥଟ୍ଟା କରିବା

**ଟିଟିକିରି** - *ରା:* (ବି.) : କାଠହଣା ଚଢ଼େଇ

**ଟିଟିୟାଁ** - *ରା:* (ବି.) : ଏକ ପ୍ରକାର ପକ୍ଷୀ

**ଟିଟିରିଣ୍ଡିଆ** - *କନ୍ଧ:* (ବି.) : ଟେଣ୍ଟେଇ

**ଟିଠେଇ** - *ସୁନ:* (ବି.) : ଟେଁଟେଁୟା ପକ୍ଷୀ

**ଟିଠେଇ ଟାଙ୍ଗର** - *ସ:* (ବି.) : ଢିପ ପଥୁରିଆ ଜମି

**ଟିଡୁବିଡୁ** - *ମା:* (ବି.) : ଛୋଟବାଙ୍କା

**ଟିଢ଼ି** - *ରା:* (ବି.) : ବିଜୁଳି

**ଟିଣା** - *ଭ:କ:ଦେ:କେନ୍ଦୁ:* (ବି.ବିଂ.) : ଏକଧାତୁ, ଟିଣାପାତ୍ର, ରାଗିଲୋକ, ଯେ ନିଜର ଅନ୍ୟାୟ ସ୍ୱୀକାର କରେ ନାହିଁ, ଡିବି

**ଟିଣିଆ** - *କୋ:ନ:* (ବି.) ଏକପ୍ରକାର ଚାକୁଣ୍ଡା ଗଛ

**ଟିନ୍** - *କଳା:* (ବି.) : ଟିଣ ଧାତୁ, ଟିଣପାତ୍ର

**ଟିପ** - *ଅନେ:* (ବି.) : ଶୀର୍ଷ, ଅଙ୍ଗୁଳିର ଶୀର୍ଷ

**ଟିପ୍‌କିଟିଆ** - *ଦେ:* (ବିଂ.) : ମାପିଚୁପି

**ଟିପ୍‌ଚିହ୍ନା** - *ସ:* (ବି.) : ଟିପଚିହ୍ନ

**ଟିପ୍‌ବା** - *ନୂ:ସ:* (କ୍ରି.) : ଲକ୍ଷ୍ୟସ୍ଥଳକୁ ମାରିବା, ହାତରେ ସିଲାଇ କରିବା

**ଟିପ୍‌ବାର** - *ସୁନ:* (କ୍ରି.) ଛୁଞ୍ଚିସୂତାରେ ସିଲେଇ କରିବା

**ଟିପ୍‌ରି** - *କଳା:ନୂ:* (ବି.ବିଂ.) : ଛୋଟ ଛୋଟ ଆକାରରେ ଜମି, ଜମିର ସବାଉପର ଅଂଶ, ଛୋଟ ଢୁଲି

**ଟିପଚାଳିବା** - *ଦେ:* (କ୍ରି.) : ଲେଖିବା, କଳି ଲଗେଇ ଚୁପ ହୋଇ ବସି ମଜା ଦେଖିବା

**ଟିପଣା** - *ଜ:କୋ:ଗ:* (ବି.) : ଜାତକ ଟିପଣା, ଚିଠା, କୋଷ୍ଠି, ଜନ୍ମ କୁଣ୍ଡଳୀ, ଜାତକ ବା ଜନ୍ମ ପତ୍ରିକାର ସଂକ୍ଷିପ୍ତ ଲିପି

**ଟିପରାମନା** - *କୋ:* (ଅ.) କାହା ଉଦ୍ଦେଶ୍ୟରେ ତାଚ୍ଛଲ୍ୟ ସମ୍ବୋଧନ

**ଟିପର୍ ଡିନ୍** - *କଳା:ବେ:* (ବି.) : ଆଜିଠାରୁ ହିସାବ କଲେ ଚତୁର୍ଥ ସଂଖ୍ୟକ ଦିବସ ।

ଏହା ଗତ ବା ଆଗତ ଉଭୟ ଦିନ ପାଇଁ ବ୍ୟବହୃତ ହୁଏ

**ଟିପା** - *ଅନେ:* (ବି.) : ଲେଖି ରଖିବା, ଟିପିରଖିବା, କିରୋସିନ ପ୍ରଭୃତି ତରଳ ପଦାର୍ଥ ରଖାଯାଉଥିବା ଟିଣ ଡବା, ଟୋପା, ଟିକା, ଇଞ୍ଜେକସନ୍, ଟିପାଖାତା, ଚିଠା, ପଶୁଙ୍କ ବେକରେ ବନ୍ଧାଥିବା ଏକ ବାଉଁଶ ଘଣ୍ଟି, ଚିଠା

**ଟିପାଆଲ** - *ବ:* (ବି.) : ଟର୍ଚ୍ଚ

**ଟିପାକାଠି** - *ପଦ୍ୟ:* (ବି.) : ମାଛଧରା ଯନ୍ତ୍ରବିଶେଷ

**ଟିପାଙ୍କାର୍** - *କନ୍ଧ:* (ବି.) ଟିକା ବା ଇଞ୍ଜେକସନ୍ ଦେଉଥିବା ବ୍ୟକ୍ତି

**ଟିପାଟିପି** - *ନ:ଦେ:* (ବି.) : ଲେଖାଲେଖି, ଠରାଠରି, ଠାରଠୁର

**ଟିପାଟିପି ହେବା** - *ଗ:* (କ୍ରି.) : ଠାର ଦ୍ୱାରା ପରସ୍ପର ଭାବ ବୁଝିବା

**ଟିପି** - *ଅନେ:* (ବି.ବିଂ.) : ଶିଖର, ପର୍ବତ ବା ଗଛର ଉପରଭାଗ, ଶୀର୍ଷ, ଅଗ୍ରଭାଗ

**ଟିପିଟାଣିଆ** - *ନ:* (ବି.) : ଜୋରରେ ବାନ୍ଧିବା, କଡ଼ା ନୀତିନିୟମ

**ଟିପିଣି** - *ବ:* (ବି) : ଟିଫିନ୍, ଜଳଖିଆ

**ଟିପିଦେବା** - *ଯା:ଗ:* (କ୍ରି.) : ମୃଦୁ ଆଘାତ, ପରକଥା ଅନ୍ୟକୁ ଗୁପ୍ତରେ କହିବା, ନକଲ କରିବା, ଲେଖି ରଖିବା

**ଟିପୁଣି** - *ଭ:* (ବି.) : ଟୋକେଇ

**ଟିପେ** - *ନ:ଯା:* (ବିଂ.ବିଂ.) : ଅଳ୍ପ ପରିମାଣର

**ଟିପେଇ** - *ନ:ଖୋ:* (ବି.) : ଦୁଇ କେନାଥାଇ (ଗୋଡ଼) କୁରାଢ଼ି ଓ ଶଗଡ଼କୁ ଯିଏ ଠିଆ ରଖିବାରେ ସାହାଯ୍ୟ କରେ, ଶଗଡ଼କୁ ଯାହାଉପରେ ଲଟକାଇ ସିଧାରଖାଯାଏ

**ଟିବଲ୍** - *ସୁବ:* (ବିଂ.) : ତିନିଥର

**ଟିବି** - *ଭ:* (ବି.) : ସାଇକେଲ୍ ଟିଉ

**ଟିବିରା** - *ଭ:* (ବିଂ.) : ଗେଡା

**ଟିମ୍କି** - *କନ୍ଧ:* (ବି.) : ମାଟିରେ ନିର୍ମିତ ଏକ ପ୍ରକାର ବାଦ୍ୟ ଯନ୍ତ୍ର

**ଟିମକିଡ଼ି** - *ସ:* (ବି.) : ଏକ ବାଦ୍ୟ ଯନ୍ତ୍ର

**ଟିମା** - *ଅନେ:* (ବି.ବିଂ.) : ଶିଶୁ, ବାଙ୍ଗରା, ଖର୍ବକାୟ

**ଟିମ୍ପା** - *କନ୍ଧ:ମା:କୋ:* (ବିଂ.) : ଗେଡ଼ା, କମ୍ ଉଚ୍ଚତା ବିଶିଷ୍ଟ ମଣିଷ

**ଟିରକିଗିଜି** - *ବର:* (ବି.) : କଥାକଥାକେ ରାଗି ଯାଉଥିବା ନାରୀ

**ଟିରକୁ** - *ବର:* (ବିଂ.) : କଥା କଥାକେ ରାଗି ଯାଉଥିବା ବ୍ୟକ୍ତି

**ଟିରକୁଗିଜା** - *ବର:* (ବି.) : କଥାକଥାକେ ରାଗି ଯାଉଥିବା ବ୍ୟକ୍ତି

**ଟିରଟିରି** - *ସୁବ:* (ବି.) : ଜଙ୍ଘ ସନ୍ଧିର ଦୁଇଟି ଶିରା, ଏହା ଟାଣିଲେ କଷ୍ଟ ହୁଏ

**ଟିରଲୁ** - *ବର:* (ବି.) : ଅବୁଝା, ଅପର ପକ୍ଷରେ କଥା କଥାକେ ରାଗି ଯାଉଥିବା ବ୍ୟକ୍ତି

ଟିର୍କା - *ସୁନ:* (ବିଂ.) : ଅତିଶୟ ଖଟାର ବିଶେଷଣ

ଟିର୍କି - *କୌ:ନବ:ଗଞ:* (ବିଂ.ବି.) : ଟିକିଏ କଥାରେ ଚମକିବା, ରାଗିବା ସ୍ତ୍ରୀ, ପିଚା, ମଳଦ୍ୱାର

ଟିର୍କେଇବା - *କୌ:* (କ୍ରି.) : ରଗେଇବା

ଟିର୍ଟିରା - *କଳା:* (ବି.) : ରକ୍ତଗୁଳା

ଟିଲମୂଷା - *ମା:* (ବି.) : ଗୁଣ୍ଡୁଚି ମୂଷା

ଟିଲୋରାଇଁ - *କୌ:* (ବି.) : ଝିଅ ମାନଙ୍କର ଏକ ଖେଳ

ଟିହା - *ଅନେ:* (ବି.) : ଭରତିଆ ପକ୍ଷୀ, ରଙ୍ଗୀନ ପରଥିବା ଚଢେଇ, ଭଦଭଦଳିଆ, ଭରଦ୍ୱାଜ ପକ୍ଷୀ, ଶୁଭପକ୍ଷୀ

ଟିହାଇବା - *ସଂ:କୌ:ନ:* (କ୍ରି.) : ଉସ୍କାଇବା, ଉତ୍ତେଜିତ କରିବା, କ୍ରୋଧାନ୍ୱିତ କରାଇବା

ଟିହା ମାର୍ବା - *ସ:* (କ୍ରି.) : ଶୁଭ ସୂଚନା

ଟିହିଲିଆ - *କୌ:* (ବି.) : ନିଜକୁ ଦେଖେଇ ହେବା ପାଇଁ ବୁଲିବା ଲୋକ

ଟିହିଁକେଇବା - *କଳା:* (କ୍ରି.) : ଉତ୍ତେଜିତ କରେଇବା

ଟିଁଚେ - *ସ:* (ବିଂ.) : ଛୋଟ

ଟିଂଗାଲୁ - *କଳା:* (ବିଂ.) : ଅଳ୍ପ କଥାରେ ରାଗିବା, ଅତ୍ୟଧିକ ଦେଖେଇହେବା, ନିଜର ସାମର୍ଥ୍ୟ ଅପେକ୍ଷା ଅଧିକ ଦେଖେଇହେବା

ଟିଂପା - *ରା:ନବ:ଗଞ:* (ବିଂ.ବି.) : ବାଙ୍ଗରା, ଗେଡ଼ା, ଛୋଟ

ଟୀକା - *ଦେ:ଗ:ସଂ:* (ବି.) : ବିବୃତି, କାବ୍ୟ କବିତାର ବ୍ୟାଖ୍ୟା

ଟୀଘା - *ରା:* (ବି.) : କପାଳର ଦାଗ

ଟୁଆକୁଟୁଆ - *କୌ:* (ବିଂ.) : ମାପିଚୁପି

ଟୁଇ - *ମ:ବା:* (ବି.) : ଛପର ଘରର ଉପର ଅଂଶ, ଚାଳଘରର ଅଗ୍ରଭାଗ

ଟୁଇଁ - *କଳା:* (ବି.) : ଗାଣ୍ଠି, ପିଚା

ଟୁଇଁବା - *ଅନେ:* (ବି.କ୍ରି.) : ଘା ବଥକୁ ଛୁଞ୍ଚିରେ ଫୋଡ଼ି ପୂଜ ବାହାର କରିବା

ଟୁକ୍ନା - *ସ:* (ବି.) : ବାଉଁଶ ପାତିରେ ତିଆରି ଟୋକେଇ, ବାଉଁଶର ବଡ଼ ଡାଲା

ଟୁକ୍ରା - *କୋ:* (ବି.) : ଛୋଟଛୋଟ ଖଣ୍ଡ

ଟୁକ୍ରି - *କୌ:ବା:* (ବି.) : ସାନ କ୍ଷେତ, ଛୋଟ ପାନ ଝୁଡ଼ି

ଟୁକନ୍ - *ସଂ:* (ବି.) : ଟୁକୋନ, ସ୍ମାରକ ବସ୍ତୁ, ନିଦର୍ଶନ, ଟୋକନ୍

ଟୁକିବା - *ଗ:ନବ:* (କ୍ରି.) : ଗୋଟାଇ କରି ରଖିବା, ଖୁଣ୍ଟିଖୁଣ୍ଟି ଖାଇବା

ଟୁକୁ - *ମ:* (ବି.) : ଅଳ୍ପ

ଟୁକୁଟୁକିଆ - *ରା:* (ବିଂ.) : ସବୁବେଳେ କିଛି ଖାଇବା ପାଇଁ ଇଚ୍ଛା କରୁଥିବା (ବ୍ୟକ୍ତି)

ଟୁକୁଣା - *ଅନେ:* (ବି.) ନୋଟା, ଢାଳ, ଛୋଟ ଧାତବ ହାଣ୍ଡି

ଟୁକୁଲା - *ଦେ:* (ବି.) : ପୁଅପିଲା

**ଟୁକେଇ** - *ସ:କଳା:ବର:* (ବି.) : ଅବିବାହିତା ଝିଅ, କନ୍ୟା

**ଟୁକେଇ ବଟା** - *ସ:* (ବି.) : ଝିଅ ବାହାଘର

**ଟୁଙ୍କାଟୁଙ୍କି** - *ବା:* (ବି.) : ସାମାନ୍ୟ ଗଣ୍ଡଗୋଳ

**ଟୁଙ୍କିବା** - *ଗଦ୍ୟ:କ:ଦେ:* (କ୍ରି.) : ଅପମାନ ଦେବା, ଅଗଛିଡ଼ାଇବା, ନଖରେ ଛିଡେଇବା

**ଟୁଙ୍ଗର ଡାଲି** - *ବ:* (ବି.) : ହରଡ଼ ଜାତୀୟ ଏକପ୍ରକାର ଡାଲି

**ଟୁଙ୍ଗା** - *ନ:ଗଦ୍ୟ:* (ବି.) : ବଣଜାତ ଏକ ମାଟିଆଳୁ, ଖାଦ୍ୟ ରୂପେ ବ୍ୟବହୃତ ଏକ ଜଙ୍ଗଲୀ ମୂଳ

**ଟୁଙ୍ଗାରିବା** - *ନ:ଦେ:କେ:* (କ୍ରି.) : ବୁଝି ବା ନ ବୁଝି ଖାଲି ହଁ ମାରିବା ପାଇଁ ମୁଣ୍ଡ ହଲେଇବା, ମୁଣ୍ଡ ହଲେଇ ସମ୍ମତି ଜଣାଇବା

**ଟୁଙ୍ଗାର୍‌ଲା** - *ମା:* (କ୍ରି.) : ମୁଣ୍ଡ ହଲେଇଲା

**ଟୁଙ୍ଗି** - *ଦେ:କେ:ନ:ବୌ:* (ବି.) : ଧାନ ଶୁଖାଇବା ପାଇଁ ଭାଡି, ନୁଆଣିଆ ଗୋଟିକିଆ ଚାଳଘର, ଆଖଡ଼ା ଘର

**ଟୁଙ୍ଗିପୁଆ** - *ଖୋ:* (ବି.) : ଡାଗର ପୁଆ, ଏକଖେଳ

**ଟୁଙ୍ଗୁରା ଟୁଙ୍ଗରି** - *ବା:* (ବି.) : ଛୋଟ ପିଲା

**ଟୁଙ୍ଗୁଲି** - *ଦେ:* (ବି.) : ଛୋଟ ପାହାଡ, ଡୁଙ୍ଗୁରି

**ଟୁଙ୍ଗେଇ** - *ନ:* (ବି.) : ଛୋଟ ମୂଷା

**ଟୁଟାବା** - *ନୂ:* (କ୍ରି.) : ମୂଲ୍ୟ ଧାର୍ଯ୍ୟ କରିବା

**ଟୁଟାବାର** - *ସୁବ:* (କ୍ରି.) : ହିସାବନିକାଶ କରିବା, ଋଣ ପରିଶୋଧ କରିବା

**ଟୁଟୁ** - *କଝ:* (ବି.) : ପେଟ

**ଟୁଟୋଲ** - *ସୁବ:* (କ୍ରି.) : ଋଣ ସମସ୍ତ ପରିଶୋଧ କରିବା

**ଟୁଡ଼ା** - *ବୌ:ନୂ:ସୁବ:* (ବି.) : ନଈବଢି, ବନ୍ୟାର ଉଜାଣି ସ୍ରୋତ, ବନ୍ୟାହେତୁ ଜଳ ଆବଦ୍ଧ ହୋଇ ଉପର ମୁଣ୍ଡକୁ ଠେଲିହେବା

**ଟୁଣ** - *ନୂ:କଳା:* (ବି.) : ପାଟି ତୁଣ୍ଡ କରିବା

**ଟୁଣ୍ କରିବା** - *ନୂ:* (କ୍ରି.) : ଅଶ୍ଳୀଳ ଭାଷାରେ ରାଗରେ କଥା କହିବା

**ଟୁଣ୍‌ହା** - *କଳା:* (ବିଂ.) : ବଡ ପାଟିରେ କଥା କହୁଥିବା ବ୍ୟକ୍ତି

**ଟୁଣା** - *କେନ୍ଦୁ:* (ବି.) : ଅପଦେବତା

**ଟୁଣୁକା** - *ଜ:କେନ୍ଦୁ:ସ:* (ବି.ବିଂ.) : ଜଡ଼ିବୁଟି, ତୁଟୁକା

**ଟୁଣୁକେଇବା** - *ବା:* (କ୍ରି.) : ଦୋଷ ଦେଖାଇ ବିରକ୍ତି ସୃଷ୍ଟି କରିବା

**ଟୁଣ୍ଟୁଣୁକା** - *ଗ:* (ବି.) : ଦେଶୀୟ ଉପଚାର ଚିକିତ୍ସା

**ଟୁଣେନି ଆଏବା** - *ନୂ:* (କ୍ରି) : ଭୁଲିଯିବା

**ଟୁନ୍‌ଟୁନି** - *ସୁବ:* (ବି.) : ଏକ କଣ୍ଟାବାଡ଼ ଗଛ

**ଟୁନି** - *ସୁବ:* (ବି.) : ଗୋଟିଏ ପ୍ରଜାତିର ଶୁଆ, ଛୋଟ ଶୁଆ

**ଟୁନୁରା** - *ବା:* (ବିଂ.) : ଟିମା

**ଚୁପ୍‌କୁଚୁପା** - *ବୌ:* (ବିଂ.) : ମାପିଚୁପି

**ଚୁପ୍‌ଲି** - *ଅନେ:* (ବି.) : ବାଁଉଶରେ ତିଆରି ଛୋଟ ଟୋକେଇ, ବାଉଁଶିଆ

**ଚୁପଟାପ୍** - *କଳା:* (ବିଂ.) : ଫୁସଫାସ୍ କଥା, ଖୁବ କମ୍ ସ୍ୱରରେ କୌଣସି ଗୋପନ ବିଷୟରେ କଥା ହେବା

**ଚୁପର୍** - *ସ:* (ବି.) : ତେଲ ପେଡ଼ିବା କିମ୍ବା ଧାନ ଅମଳ ସମୟରେ ବଳଦଙ୍କ ଆଖିରେ ଦିଆଯାଉଥିବା ଘୋଡ଼ଣି

**ଚୁପା** - *ଅନେ:* (ବି.) : ବାଉଁଶ ପାତିର ଭୋଗେଇ, ଛୋଟ ପାଛିଆ, ଟୋପା, ବୁନ୍ଦା, ଟିକା, କପାଳରେ ଦିଆଯାଉଥିବା ଚିହ୍ନ, ଶସ୍ୟ ରଖିବା ପାଇଁ ବାଉଁଶ ତିଆରି ଟୋକେଇ

**ଚୁପି** - *ଅନେ:* (ବି.) : ଟୋପି

**ଚୁପୁଷି ମୁହାଁ** - *ପୁ:* (ବିଂ.) : ମଉନମୁହାଁ, ଚୁପ୍‌ଚୁପ୍ ସବୁ ଅନର୍ଥ କରୁଥିବା ସ୍ତ୍ରୀଲୋକ

**ଚୁପେର** - *କନ୍ଧ:* (ବି.) : ଏକପ୍ରକାର ଅଳଙ୍କାର

**ଚୁବୁକା** - *ରା:* (ବି.) : ପାଣିରେ ବୁଡ଼ିବା

**ଚୁବୁଳି** - *ଟା:* (ବି.) : ଛୋଟଗାଡ଼ିଆ

**ଚୁବେରୀ** - *ରା:* (ବିଂ.) : ଗୋଲ

**ଚୁମ୍‌ଡ଼ି** - *ସ:* (ବି.) : ଛୋଟ ବସ୍ତା

**ଚୁମୁକୁଡ଼ି** - *କନ୍ଧ:* (ବି.) : ଚମକ

**ଚୁମେଇବା** - *ପୁ:* (କ୍ରି.) : ଫୁଲିବା

**ଚୁରା** - *ଅନେ:* (ବିଂ.ବି.) : ମା'ବାପ ଛେଉଣ୍ଡ ପିଲା, ଚିମା ଓ ମୋଟା, ଗେଡ଼ା, ବାଙ୍ଗରା, ଗାଳି ବିଶେଷ

**ଚୁରାପିଲା** - *ମା:ସ:* (ବି.ବିଂ.) : ଅନାଥ, ଛେଉଣ୍ଡ ପିଲା

**ଚୁରୀ** - *ସୁବ:କଳା:* (ବିଂ.) : ଚୁରାର ସ୍ତ୍ରୀଲିଙ୍ଗ, ବାପା-ମା ଛେଉଣ୍ଡ ଝିଅ

**ଚୁରୁ** - *କଳା:ବୌ:ନୂ:* (ବି.) : ଏକ ପ୍ରକାର ଛୋଟ ମାଛ

**ଚୁରୁବାଲୁ** - *ରା:* (ବି.) : ଗାମୁଛା

**ଚୁର୍‌କିଚୁର୍‌କି** - *ବୌ:* (ବିଂ.) : ସାନସାନ

**ଚୁଲ୍‌ବା** - *ସ:* (କ୍ରି.) : ତୋଳିବା

**ଚୁଲା** - *ରା:ଦେ:* (ବି.) : ମାଟି ବହୁତ ତଳକୁ ଦବିଥିବା ଅଞ୍ଚଳ, ପଡ଼ା ଗାଁ

**ଚୁଲି** - *ନୂ:* (ବି.) : ଘାସ ବିଶେଷ

**ଚୁଲୁ** - *ରା:* (ବି.) : କାଠର ବସିବା ବସ୍ତୁ, ଷ୍ଟୁଲ୍

**ଚୁଲୁଣି** - *କୋ:* (ବି.) : ଧାନଚାଉଳ ଆଦି ଶସ୍ୟରେ ମିଶିଥିବା ତୃଣବୀଜ

**ଚୁଲୁଚୁଲୁ** - *ଅନେ:* (ବିଂ.) : ପୂର୍ଣ୍ଣ, ଭର୍ତ୍ତି ହୋଇଥିବା

**ଚୁସୁପର୍ବ** - *ସଂ:ପଦ୍ୟ:* (ବି.) : ଉତ୍ତାରାଞ୍ଚଳର ଏକ ପର୍ବ, ମକର ସଂକ୍ରାନ୍ତି ଅବସରରେ ପାଳିତ ପର୍ବ

**ଚୁହିଁବା** - *ବୌ:* (କ୍ରି.) : ଫୋଡ଼ି ଦେବା

**ଚୁଁଡାବାର** - *ସୁବ:* (କ୍ରି.) : ପଚାରିବା, କୁଶଳ ଜିଜ୍ଞାସା ଭଲ ମନ୍ଦ ପଚାରିବା

**ଟୁଁଡ଼ି** - *ସ:ସୁବ:* (ବି.) : ହଳ କଲାବେଳେ ବଳଦ ଶସ୍ୟ ନଖାଇବା ପାଇଁ ତା' ମୁହଁରେ ଦିଆଯାଉଥିବା ବାଉଁଶ ଉପକରଣ, ତୁଣ୍ଡି, ବାଛୁରୀମାନଙ୍କ ମୁହଁରେ ବନ୍ଧାଯାଉଥିବା ବାଉଁଶ ପାତ୍ର

**ଟେକ** - *ଅନେ:* (ବି.କ୍ରି.) : ସ୍ୱାଭିମାନ, ସମ୍ମାନ, ଉପରକୁ ଉଠାଇବାକୁ ନିର୍ଦ୍ଦେଶ

**ଟେକ୍‌ନା** - *ସ:କଳା:* (ବି.) : ଟେକିବା ପାଇଁ କାଠରେ ତିଆରି ଜିନିଷ, ସାମୟିକ ସାହାଯ୍ୟ

**ଟେକ୍‌ସି** - *କଳା:* (କ୍ରି.ବି) : ଭଡ଼ା ମୋଟର କାର୍, ଟ୍ୟାକ୍ସି

**ଟେକପାଡ଼** - *ଗ:* (ବି.) : ଖୋସାମତି କରିବା

**ଟେକା** - *ଅନେ:* (ବି.) : ମାଟି ହାଣ୍ଡି, ମାଟି ଖଣ୍ଡ, ଛୋଟ ପଥରଖଣ୍ଡ

**ଟେକାଟେକି** - *ନ:ଦେ:* (ବି.) : ତୋଷାମଦକରି କହିବା, ଧରାଧରି, ପରସ୍ପରର ପ୍ରଶଂସା

**ଟେଙ୍କ କରିଦିଅ** - *କଣ:* (କ୍ରି.) : ଓଜନକରିଦିଅ

**ଟେଙ୍କଚାଭଳିଆ** - *ବ:* (ବିଂ.) : କ୍ଷଣକୋପୀ, ଚିହାଇ କରି କଥା କହିବା

**ଟେଙ୍କର** - *ଗଦ୍ୟ:ସୁ:* (ବି.) : ବିରୁଡ଼ି ଜାତୀୟ ଏକପ୍ରକାର ଜୀବ

**ଟେଙ୍ଗଟା** - *ସୁବ:ବର:ନବ:ସ:* (ବି.) : ଏଣ୍ଡୁଅ

**ଟେଙ୍ଗନି** - *ସୁବ:ବୌ:* (ବି.) : ମୁଣ୍ଡରେ କଣ୍ଟାଥିବା ଗୋଟିଏ ଛୋଟ ମାଛ

**ଟେଙ୍ଗରା** - *ଗଦ୍ୟ:ଝା:ବା:* (ବି.ବିଂ.) : ହାଣ୍ଡି ରହିବା ପାଇଁ ହୋଇଥିବା ଛୋଟ ଖାଲ, ତେଙ୍ଗଡ଼ା, ଦେଇପିଣ୍ଡି, ଏକ ଜିନିଷ ଉପରେ ଆଉ ଏକ ଜିନିଷ ରଖିବା, କଣ୍ଟିଆମାଛ

**ଟେଙ୍ଗୁଆ** - *ନବ:* (ବିଂ.) : ଅବିବାହିତ ପୁରୁଷ

**ଟେଙ୍ଗେଇବା** - *କୋ:ମା:ଭ:* (କ୍ରି.) : ଲିଙ୍ଗ ଶକ୍ତ ହେବା, ଟିହେଇବା

**ଟେଙ୍ଗୋ** - *ନୁ:* (ବି.) : ଟ୍ରାଙ୍ଗୋ

**ଟେଟ୍** - *କଳା:ନୁ:* (ବି.) : ଟାଟି, କବାଟ

**ଟେଟ୍‌ମୁଣ୍ଡ** - *କୋ:* (ବିଂ.) : ଆମୂଳଚୂଳ

**ଟେଟ୍‌ମେରିହା** - *ଝା:ବୌ:* (ବିଂ.) : ଦୁର୍ବଳିଆ ଲୋକ

**ଟେଟେଙ୍ଗା** - *ସୁ:* (ବି.) : ଝିଟିପିଟି

**ଟେଟେଂଗ** - *କଳା:* (ବି.) : ଧାନ ବିଲରେ ଦେଖାଯାଉଥିବା ଏକ ପ୍ରକାର ଅନାବନା ଗଛ

**ଟେଡ଼ି** - *ରା:* (ବି.) : ଚଡ଼ଚଡ଼ି

**ଟେଢ଼େଲି** - *ରା:* (ବି.) : ଅଣ୍ଡା

**ଟେଢା** - *ସୁବ:ସ:ସୁ:ବର:* (ବିଂ.) : ତେରଛା, ବଙ୍କା, କୁଟିଳ, ବକ୍ର

**ଟେଣ୍ଡ୍‌କୋ** - *ନୁ:କଳା:* (ବି.) : ଏଣ୍ଡୁଅ

**ଟେଣି ହେବା** - *ନୁ:* (କ୍ରି.) : ଅଧିକ ଲୋକ ରୁଣ୍ଡ ହେବା

**ଟେଣ୍ଡୁ** - *କଳା:* (ବିଂ.) : ପାଣି ତେଣ୍ଡିବା ବ୍ୟକ୍ତି

**ଟେଣ୍ଡଲିଆ** - *କେନ୍ଦୁ:* (ବିଂ.) : ଛୋଟିଆ

**ଟେଣ୍ଟା** - *ରା:* (ବି.) : ଅସୁବିଧା

**ଟେଣ୍ଟେଇ** - *ଗୋ:ସ:ଗ:ଢ:* (ବି.) : ଜଳାଶୟ ନିକଟବର୍ତ୍ତୀ ଅଞ୍ଚଳରେ ଏକ ପ୍ରକାର ପକ୍ଷୀ ବାସ କରନ୍ତି

**ଟେଣ୍ଡକା** - *ମା:କୋ:* (ବି.) : ଏଣ୍ଡୁଅ

**ଟେଣ୍ଡର** - *ଢେ:* (ବି.) : ଠିକା କାମ ପାଇଁ ଆବେଦନ ପତ୍ର

**ଟେଣ୍ଡା** - *ରା:ସୁ:* (ବି.) : ପାଣି ମଡ଼େଇବା ଉପକରଣ, ପାଣି କାଢିବା ଦଣ୍ଡ

**ଟେଣୋ** - *କଳା:* (ବି.) : ଏଣ୍ଡୁଅ, ଟେଣ୍‌କା

**ଟେନହା** - *ବର:ସୁବ:ବୌ:* (ବି.) : କଥା ନ ବୁଝି ରାଗି ଯାଉଥିବା ବ୍ୟକ୍ତି, ଜିଦ୍‌ଖୋର୍

**ଟେନିଂ** - *ସୁ:ଢେ:* (ବି.) : ପ୍ରଶିକ୍ଷଣ, ତାଲିମ୍

**ଟେପ୍‌ରା** - *କଳା:* (ବିଂ.) : ଯାହାର କାନ ଟେକିହୋଇ ରହିଥାଏ

**ଟେପ୍‌ରି** - *ସୁ:ସ:* (ବିଂ.ବି.) : ଛୋଟକ୍ଷେତ, ଚାରିକୋଣିଆ ଛୋଟ ଜମି

**ଟେପୁ** - *କୋ:* (ବିଂ.) : ଅହମିକା, ଅହଙ୍କାର

**ଟେପେ** - *ସୁବ:* (ବି.) : ଚାଖଣ୍ଡେ

**ଟେଭା** - *ସୁ:ବୌ:କଳା:ସୁବ:* (ବି.) : ଖଟାଫଳ ବିଶେଷ, ଟଭାଫଳ

**ଟେମ** - *ସୁ:ସୁବ:ଢେ:କଳା:* (ବି.ବିଂ.) : ଠିକଠାକ୍, ଭଲ, ସୁନ୍ଦର, ଆଡମ୍ବର, ଟାଇମ୍, ସମୟ, ଟାଣ, ବଡ଼ପଣ

**ଟେମ୍‌ଚେନ୍** - *ସ:* (ବି.) : ଚଳଚଞ୍ଚଳ, ଫୂର୍ତ୍ତି

**ଟେମୋକରିଆ** - *କଳା:* (ବିଂ.) ଗର୍ବୀ, ଅହଂକାରୀ, ଉଦ୍ଧତ ବ୍ୟକ୍ତି

**ଟେମିର** - *ରା:* (ବି.) : ବଡ଼ କଥା

**ଟେମ୍ପସା** - *ଗ:* (ବି.) : ଥଣ୍ଡା ହେତୁ ଆଖି ଫୁଲିବା

**ଟେମ୍ପି** - *କେନ୍ଦୁ:* (ବିଂ.) : ଗେଡ଼ା (ସ୍ତ୍ରୀ)

**ଟେମ୍ପୁ** - *ଅନେ:* (ବି.) : ଅଟୋ ରିକ୍ସା

**ଟେମ୍ପ୍ରିଆ** - *କନ୍ଧ:ବୌ:* (ବି.) : ଟିଙ୍ଗା, ଗର୍ବୀ

**ଟେର** - *ନ:ସଂ:ଗ:ରା:* (ବି.) ସନ୍ଧାନ, ସୂଚନା, ପ୍ରମାଣ ପାଇବା, ସନ୍ଦେଶ

**ଟେରା** - *ଅନେ:* (ବିଂ.ବି.) ବଙ୍କେଇ ଚାହୁଁଥିବା ଲୋକ, ବଙ୍କା ଆଖି, ଟିହା ପକ୍ଷୀ

**ଟେରାକୁଟା** - *ରା:ସ:* (ବି.) ମାଟିର କାରୁକାର୍ଯ୍ୟ

**ଟେରାହେବା** - *ଢ:* (ବି.) ଆଶ୍ଚର୍ଯ୍ୟ ହୋଇଯିବା

**ଟେରିସଙ୍ଗିବା** - *ଭ:* (କ୍ରି.ବି) : ମୁଣ୍ଡକୁଣ୍ଡାଇବା

**ଟେର୍ ଆମିଲ୍** - *କଳା:* (ବିଂ.) : ଅତ୍ୟଧିକ ଆମିଳା

**ଟେର୍‌କା, ଟିର୍‌କା** - *ବୌ:* (ବିଂ.) : ଅଳ୍ପକେ ରାଗିବା ଲୋକ

**ଟେର୍‌ଚୀ** - *ସ:* (ବିଂ.) : ଶୀର୍ଣ୍ଣ କାୟ

**ଟେର୍‌ଚେଇବା** - *ବ:ନୁ:* (କ୍ରି.ବିଂ.) : କଣେଇ କରି (ଚାହିଁବା), ଆଡ଼ ଆଖିରେ (ଦେଖିବା)

ଟେଲୁଣି - *ରା:* (ବି.) : କରେଇ

ଟେଳା - *ଢ଼:ଦେ:ନ:* (ବି.) ଟେକା, ପଥରଖଣ୍ଡ, ଢେଲା, ମୁଣ୍ଡା

ଟେଳାଏ - *କେ:* (ବିଂ.) : କିଛି, ଅଳ୍ପ ପରିମାଣର ଗୋଲାକାର ନରମ ପଦାର୍ଥ

ଟେସନ - *ନ:ରା:ସୁ:କଳା:* (ବି.) : ରେଳଗାଡ଼ି ରହୁଥିବା ସ୍ଥାନ, ରେଳଷ୍ଟେସନ

ଟେହିବା - *ଗ:କେ:ମା:* (କ୍ରି.) ଅନ୍ୟକୁ ଉତ୍ତେଜିତ କରିବା, ପ୍ରୋତ୍ସାହନ ଦେବା, ଉତ୍ତେଜିତକରିବା

ଟେହେଣି - *କେନ୍ଦୁ:* (ବି.) : କହୁଣୀ

ଟେଁକର ଘରା - *ସ:* (ବି.) : ବିରୁଡ଼ି ବସା

ଟେଁକାରୁ - *ସୁବ:* (ବିଂ.) : ଯିଏ ଅଳ୍ପ କଥାରେ ରାଗିଯାଏ

ଟେଁଟାବା - *ଅ:* (କ୍ରି.) : ଗୋଡ଼ ହାତ ରହିଯିବା

ଟେଂଗ୍ରା-ଉପ୍ରା - *କଳା:* (ଅ.) : ତଳ ଉପର

ଟେଂଗାସି - *କଳା:* (କ୍ରି.) : ଗାଡ଼ିର ଗୋଟିଏ ମୁଣ୍ଡ ସ୍ୱାଭାବିକ ଅବସ୍ଥାରୁ ଅଧିକ ଉପରକୁ ଉଠିବା

ଟେଂଗୁଳୁଷ୍ - *କଳା:* (ବି.) : ଉଠାପକା ଖେଳ

ଟେଂଟିଆ - *କଳା:* (ବି.) : ଗଳାଧକ୍କା, ତଣ୍ଟିଆ

ଟୈଙ୍କେଇବା - *କଣ:* (ବି.) : ଯୌନକ୍ରିୟା ବିଷୟକ

ଟୋକଣା - *ଗ:* (ବି.) : ବଡ଼ପିତଳ ହଣ୍ଡା

ଟୋକଳୀ - *ଅନେ:* (ବି.) : ଯୁବତୀ

ଟୋକା - *ଅନେ:* (ବି.) : ଯୁବକ, କିଶୋର

ଟୋକାଳିଆ - *ଅନେ:* (ବିଂ.) : ଯୁବସୁଲଭ

ଟୋକୁଆ - *ସୁ:* (ବିଂ.) : ଟାକୁଆ ଯୁକ୍ତ ଆମ୍ବ

ଟୋକେଇ - *କ:ନ:ଢ଼:* (ବି.) : ବାଉଁଶ ବା ବେତରେ ତିଆରି ଆଧାର, ଝୁଡ଼ି, ବାଉଁଶ ନିର୍ମିତ ଓ ଭିତରେ ମାଟି ଲିପା ହୋଇଥିବା ଝୁଡ଼ି

ଟୋଙ୍ଗରି - *ଗଦ୍ୟ:* (ବି.) : ଛୋଟ ପାହାଡ଼

ଟୋଟାଦାର - *ନ:* (ବି.) : ଖୁନ୍ଦାବନ୍ଧୁକ

ଟୋଟିଆ - *କଳା:* (ବି.) : ତଣ୍ଟିଆ, ଗଳାଧକ୍କା

ଟୋପ - *ଗ:ଖୋ:* (ବି.) : ଖାଲ, ଖାଲୁଆ, ବଣିଆକାମରେ ବ୍ୟବହୃତ ଏକ ଉପକରଣ

ଟୋପର - *ନ:ପୁ:ଭ:ଗ:* (ବି.) : ଟୋପି ସଦୃଶ ଝାମ୍ପି, ଟୋପି, ଛୋଟ ବାଇଗଣ, ଶସ୍ୟାଦିର ଚୋପା ଅଂଶ

ଟୋପା - *ଗୌ:ଗ:ସୁ:* (ବି.) : କପାଳରେ ବିନ୍ଦୁ, ବିନ୍ଦି, ବାଉଁଶ ଝୁଡ଼ି

ଟୋପାକଳା - *ଗ:* (ବି.) : ସ୍ତ୍ରୀମାନଙ୍କ କଳା ସିନ୍ଦୁର ଲଗାଇବା ପ୍ରସଙ୍ଗ

ଟୋପିପକାଇବା - *ଗ:* (କ୍ରି.) : ଠକିବା, ଟୋପି ପିନ୍ଧାଇବା

ଟୋମ୍‌କୋ - *ସ:* (ବି.) : ମୋଟା ହୋଇ ଫୁଲିଯିବା

ଟୋରକୋ - *ସୁ:* (ବିଂ.) : ଛୋଟ

ଟୋର୍‌କୋଲ୍ - *କଳା:* (ବିଂ.) : ଅତ୍ୟନ୍ତ ଖଟା

ଟୋର୍‌ଟୋ - *କଳା:* (ବି.) : କଣ୍ଢା ଫୋଡ଼ି ହେବା, ତ୍ୱରିତତା ଓ ଧ୍ୱନି ସମ୍ବନ୍ଧରେ କୁହାଯାଉଥିବା ଶବ୍ଦ

ଟୋଲ - *ଅନେ:* (ବି.) : ମହୁଲ ଗଛର ଫଳ, ସଂସ୍କୃତ ବିଦ୍ୟାଳୟ, ଏକ ତୈଳବୀଜ

ଟୋଲା - *ଗଦ୍ୟ:ଗ:* (ବିଂ.ବି.) : କଠିନ ପଦାର୍ଥର ଆଘାତ ଯୋଗୁ କୌଣସି ଅଂଶ ଚେପା ହୋଇଥିବା, ଧାତୁପାତ୍ରର ଆଘାତ ପ୍ରାପ୍ତ ଅଂଶ

ଟୋଲି - *କଥ:ଦେ:* (ବି.) : ଅଧପାହି, ଧାନ ବିଲରେ ଘାସ

ଟୋଲିକଉଡ଼ି - *ଗ:* (ବି.) : ଟଙ୍କାର ସ୍ୱଳ୍ପଅଂଶ, ଏକ ପଇସା

ଟୋଲେଇବା - *ପୁ:କ:* (କ୍ରି.) : ଫମା ହେତୁ ଫୁଲିବା, ଅସ୍ଥିର

ଟଁଢେଇ - *ନୃ:ସ୍ତ୍ରବ:* (ବି.) : ଡାଆଣୀ, ତନ୍ତ୍ରବିଦ୍ୟା ସାହାଯ୍ୟରେ ତୁଣ୍ଡରେ ଅନ୍ୟର ରକ୍ତଶୋଷଣ କରୁଥିବା ସ୍ତ୍ରୀ, ଚଣ୍ଡୀଚାମଣ୍ଡା

ଟଂଗା - *କଳା:* (ବି.କ୍ରି.) : ଓହଳେଇବା

ଟଂଗିଆ - *କଳା:* (ବି.) : କୁରାଢ଼ି, ଟାଙ୍ଗିଆ

ଟ୍ୟାସିଇ - *ଅନେ:* (ବି.) : କୃତ୍ରିମ ବାଳ

ଟ୍ରଙ୍କ - *କ:ବୌ:ଇ:* (ବି.) : ଟିଣରେ ତିଆରି ଜିନିଷ ରଖିବା ବାକ୍ସ

ଟ୍ରାଙ୍କୁ - *ଗଜ:* (ବି.) : ଟ୍ରଂକ, ପେଡ଼ି

ଟ୍ରେଞ୍ଚ୍ - *ସଂ:* (ବି.) : ଖାଇ, ସୁଡ଼ଙ୍ଗ



ଠଅଁକେଇବା - *କଳା:* (କ୍ରି.) : ଅନୁମାନ କରି ଦେଖିବା

ଠଅଁରିବା - *କଳା:* (କ୍ରି.) : ରହିବା, ଦମ୍ଭ ଧରିବା

ଠଉରାଇବା - *ଅନେ:* (କ୍ରି.) : ଅନୁମାନ କରିବା, ସନ୍ଧାନ କରିବା

ଠକ୍‌ରା - *ସୁ:ସ:ବୌ:କଳା:* (ବି.ବିଂ.) : ଠକ, ଠକୁଥିବା ସ୍ତ୍ରୀଲୋକ

ଠକ୍‌ରି - *ସୁବ:କଳା:* (ବିଂ.) : ଠକୁଥିବା ସ୍ତ୍ରୀ

ଠକର - *ନବ:* (ବି.) : ବାଧା

ଠକାଠକି - *ନ:ଦେ:* (ବି.) : ଭଣ୍ଡାଭଣ୍ଡି

ଠକାନରା - *ସ:* (କ୍ରି.) : ଠକିବା

ଠକାବା - *ସୁ:* (କ୍ରି.) : ଠକିହେବା, ଠକିବା

ଠକିଡ଼ି - *ସୁ:* (ବି.) : ଚିଲମର ଗୁଳି

ଠକୋ - *ବ:* (ବି.) : ଠିକ୍, ଲକ୍ଷ୍ୟସ୍ଥାନ

ଠକ୍କର - *ନ:* (ବି.) : ସମକକ୍ଷପାଇଁ ଇଚ୍ଛା, ଯୁକ୍ତି କରି ନମାନିବା

ଠକୋକଲା - *ସୁବ:* (କ୍ରି.ବିଂ.) : ଠିକ୍ ସେହି ସମୟରେ, ତତ୍କାଳ

ଠଗ - *ରା:ସୁ:ସଂ:* (ବି.ବିଂ.) : ଚୋର, ଠକ, ଦସ୍ୟୁ

ଠଟାବଜ୍ଜା - *ସ:* (କ୍ରି.) : ଛୁଆଁ, ଛୁଇଁବା

ଠଟାବା - *ବ:* (କ୍ରି.) : ଖାତିର କରିବା, ସାମାନ୍ୟ ଚାପ ସହିତ ଅନ୍ୟକୁ ଛୁଇଁବା

ଠଟାବାର - *ସୁବ:* (କ୍ରି.) : ଦୁଇଟି କଠିନ ପଦାର୍ଥର ଠୋକର

ଠଠେଇ - *ଝା:* (କ୍ରି.) : ସମତୁଲ ହେବା, ଲଗାଲଗି ହେବା

ଠଡ୍‌କଡ୍ - *କଳା:* (ବି.) : କଷ୍ଟ, ଦୁଃଖ

ଠଡକା - *ସୁବ:କଣ:ସ:* (ବି.) : ଟାକୁଆ ଥିବା ଆମ୍ବ, ଶୁଖିଲା ଆମ୍ବ ଲ

ଠଣ - *ଗ:* (ବି.) : ଅଙ୍ଗଭଙ୍ଗୀ, ଚାହାଣି ଚମକ

ଠଣ୍‌କି - *ଦେ:* (ବି.) : ପରିସ୍ରା ପୋଡିବା ରୋଗ

ଠଣ୍‌ଠଣ୍ - *କେ:ଦେ:* (ବି.) : ଟଙ୍କା ପଇସା, ନଗଦ, ଟଙ୍କା ଗଣିବାର ଶବ୍ଦ

ଠଣା - *ଅନେ:* (ବି.) : କାନ୍ଥରେ ଥିବା ଖୋପ, ମାଟିକାନ୍ଥରେ ଜିନିଷ ରଖିବାକୁ ଛୋଟ ଗାତ, ପଇସା ଜମା କରିବା ଘଡ଼ି, ବଡ଼ ମାଟିହାଣ୍ଡି, କାନ୍ଥକୁରା, ହାତ ମୁଠା କରି ଅନ୍ୟର ମୁଣ୍ଡକୁ ଆଘାତ କରିବା

ଠଣି - *ନବ:* (ବି.) : ଭଙ୍ଗୀ

ଠଣ୍ଟ - *ମ:* (ବି.) : ଥଣ୍ଟ

ଠଣ୍ଡା - *ସୁବ:* (ବିଂ.) : ଥଣ୍ଡା

ଠନ୍ - *କନ୍ଧ:* (ବି.) : ସ୍ତନ

ଠନ୍କି - *ସୁ:ସୁବ:ବ:* (ବି.) ବହୁମୂତ୍ର, ଗରମରେ ପେଟ ଗରମ ହୋଇ ପରିସ୍ରା ଅତି ଅଳ୍ପ ବାରମ୍ବାର ହେବା

ଠପ୍ - *ଦେ:ସ:ଂଗ:* (କ୍ରି.ବିଂ.) ସମ୍ପୂର୍ଣ୍ଣ ବନ୍ଦହେବା, ହଠାତ୍ ବନ୍ଦ ହୋଇଯିବା

ଠପା - *ଗଦ୍ୟ:* (ବି.) : ଚିଠି

ଠମ - *ଦେ:* (ବି.) : ଗଠନ

ଠମକ - *ଗ:ଦେ:* (ବି.) : ହାବଭାବ ସହିତ ଗତି ଭଙ୍ଗୀ, ଛଇ, ନୃତ୍ୟଭଙ୍ଗୀରେ ଚାଲିବା

ଠରା - *ନବ:* (ବି.) : ଇସାରା, ଠାର

ଠର୍ରା - *ଅନେ:* (ବି.) : ମହୁଲି ମଦ, ଦେଶୀ ମଦ

ଠସ୍କିନା - *ରା:* (ଅ.) : କୌଣସି ଶବ୍ଦ ନକରି

ଠସ୍ଠସ୍ - *ସୁ:ବ:କଳା:* (ବି.ଅ.) : କାନ୍ଦ ବିଶେଷ, ହଠାତ୍ କାନ୍ଦି ପକାଇବା

ଠ-ସଲ୍ଲ - *ଗଦ୍ୟ:* (ବି.) : ପିଢା, ପାଣି ରଖି ଖାଦ୍ୟ ବାଢିବା

ଠସରଠସା - *ରା:* (ବି.) : ହାସ୍ୟାସ୍ପଦ କଥା

ଠସରା - *ରା:* (ବି.) : ଶିଉଳିଆ ପାହାଡ଼ ରାସ୍ତା

ଠସୋଠସୋ - *ନୂ:ସୁ:ସ:* (କ୍ରି.ବିଂ.) : ଶୀଘ୍ର ଶୀଘ୍ର, କାନ୍ଦିବାର ଏକପ୍ରକାର ଶବ୍ଦ

ଠସ୍ କଅଁଳି - *ସୁବ:* (ବିଂ.) : ଭେଣ୍ଡି କାକୁଡ଼ି ପାକଳ ହେବାର ପୂର୍ବାବସ୍ଥା, ଖୁବ୍ କଅଁଳ

ଠହକାବାର - *ସୁବ:* (କ୍ରି.) ସନ୍ଧାନ ବା ଠିକଣା ନେବା

ଠହରିବା - *କଳା:* (କ୍ରି.) : ଦମ୍ଭ ଧରିବା, ଧୈର୍ଯ୍ୟ ରଖିବା, ଅପେକ୍ଷା କରିବା

ଠାଆ - *ଅନେ:* (ବି.) ଠାବ, ସ୍ଥାନ, ଭୋଜନସ୍ଥାନ

ଠାଆକୁଠାଆ - *ଗ:* (ବି.) : ଅନେକ ସ୍ଥାନରେ, ଅନେକ କ୍ଷେତ୍ରରେ, ଏଠିସେଠି

ଠାଆପାଲଟ - *ସୁ:* (ବି.) : ସ୍ଥାନାନ୍ତରରେ ଶୋଇବା

ଠାଇକରି - *ଦେ:* (କ୍ରି.ବିଂ.) : ଜୋର କରି ଚଟ୍କଣା ମାରିବା

ଠାଇଁଆ - *କ:* (ବି.) : ଯାହାର ସ୍ତ୍ରୀ ମୃତ, ମୃତଦାର

ଠାଇଁ ପଶିବା - *କ:* (କ୍ରି.) : ଅନ୍ୟର ଅନୁଗ୍ରହରେ ରହିବା, ରକ୍ଷିତା ଭାବେ ରହିବା

ଠାଉକିଆ - *କୋ:ଗ:ରା:* (ବି.ବିଂ.) : ଆଗରୁ ଜାଣିପାରି ନେଇଯିବା ପାଇଁ ଛକି ରହିଥିବା ବ୍ୟକ୍ତି, ଚୋର, ଆଖି ଉହାଡ଼ରୁ ମାରିନେବା ଚୋର, ଠାଉକା

ଠାଉନ୍ - *ରା:* (ବି.) : ସହର, ଟାଉନ୍

ଠାଉର - *ମା:* (ବି.) : ଅନୁମାନ

**ଠାଭରିଆ** - *ଜ:କେ:* (ବିଂ.) ଠକ, ଛୋଟକାଟର ଚୋର, ଘରର ମୂଲ୍ୟବାନ ପଦାର୍ଥ ଥିବା ସ୍ଥାନ ଜାଣିଥିବା ଲୋକ, ଅନୁମାନ

**ଠାଭରିବା** - *ରା:* (କ୍ରି.) ଖୋଜିବା, ଠଉରେଇବା

**ଠାଏ** - *କଳା:ଦେ:* (ବିଂ.ବି.) : କୋରରେ, ସଂପୂର୍ଣ୍ଣ ଶୁଷ୍କ, ଏକ ପ୍ରକାର ତରକାରୀ, ସ୍ଥାନେ ସ୍ଥାନେ

**ଠାଏକରିବା** - *କଳା:* (କ୍ରି.) ସଂପୂର୍ଣ୍ଣ ଶିଖେଇବା

**ଠାକ** - *ରା:* (ବିଂ.) : କମ ଉଚ୍ଚ

**ଠାକବାପା** - *ବ:* (ବି.) : ଜେଜେବାପା

**ଠାକରା** - *ଦେ:ଯା:* (ବି.ବିଂ.) : ଆମ୍ବ ଲ ଫଡ଼ା ପଶିଯିବା ଗାଲ

**ଠାକିବା** - *କେ:ନ:ଭ:ଦେ:* (କ୍ରି.) : ରହିବା, ଲାଖିବା, ଅଟକିଯିବା

**ଠାକୁଆ** - *କୋ:ଗ:* (ବି.ବିଂ.) : ଭିତରକୁ ପଶିଯାଇଥିବା ଅବସ୍ଥା, ରସହୀନ

**ଠାକୁବା** - *ବ:* (ବି.) : ଠାକୁର ବାପା

**ଠାକୁବାପ** - *ବ:* (ବି.) : ବୁଢାବାପା

**ଠାକୁ ମା** - *କେ:ବ:* (ବି.) : ବୁଢୀମାଆ

**ଠାକୁର** - *ଦେ:ଗଦ୍ୟ:* (ବି.) : ସାଈଁା, ପ୍ରଭୁ, ଗୁରୁ, ବ୍ରାହ୍ମଣ ପାଚକ

**ଠାକୁର ଝି** - *ବ:* (ବି.) : ନଣନ୍ଦ

**ଠାକୁର ପୋ** - *ବ:* (ବି.) : ଦିଅର

**ଠାକୁର ବାଡି** - *ବ:* (ବି.) : ଠାକୁରଙ୍କ ରହିବା ସ୍ଥାନ, ଠାକୁର ଘର

**ଠାକୁର ବାଡ଼ିଆ** - *ଭ:* (ବି.) : ଯାହାଘରେ ଠାକୁର ନିତି ନିୟମରେ ପୂଜା ପାଆନ୍ତି

**ଠାକୁରମୁଣ୍ଡି** - *ରା:* (ବି.) : ଠାକୁର ମନ୍ଦିର

**ଠାକୁରା** - *ରା:* (ବି.) : ଶୁଭବାଦ୍ୟ, ଯାହା ଗୀତ ସହ ବଜାଯାଏ

**ଠାକୁରାଣୀ ଗଛ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ଠାକୁରାଣୀ ଲାଗିବା** - *ଅନେ:* (କ୍ରି.) : କାଳିସୀ ଲାଗିବା, ମଣିଷ ଦେହରେ ଦେବୀଙ୍କ ଆବିର୍ଭାବ ହେବା

**ଠାଟ୍** - *ଅନେ:* (ବି.) : ଠାଣି ବା ଆଡ଼ମ୍ବର, ଶରୀର, ବପୁ, ଶକ୍ତି, ଥାଟ

**ଠାଟୁ** - *ନୂ:ସ:ସୁବ:* (ବିଂ.) : ଚନ୍ଦାବ୍ୟକ୍ତି, ଲଣ୍ଡା

**ଠାଟେ** - *କଳା:ପଦ୍ୟ:* (କ୍ରି.ବିଂ.) : ଆରାମରେ, ସୁଖରେ, ସଂପୂର୍ଣ୍ଣ, ପୁରା

**ଠାଢ୍** - *କଳା:ବର:ନୂ:* (ବି.) ଠିଆ, ଦଣ୍ଡାୟମାନ

**ଠାଢେ** - *କଳା:* (କ୍ରି.ବିଂ.) : ସ୍ପଷ୍ଟ ଭାବରେ, ଠିଆ ହୋଇ

**ଠାଢ଼େଠାଢ୍** - *ସ:ସୁ:* (ବି.) : ସ୍ତମ୍ଭୀଭୂତ ହୋଇରହିବା, ନିଶ୍ଚଳ ହୋଇଯିବା

**ଠାଣ** - *ମ:* (ବି.) : ସ୍ଥାନ, ଥାନ

**ଠାଣଦାର** - *ରା:* (ବି.) : ଜମାଦାର, ଥାନା ଦାରୋଗା

**ଠାଣିମାଣି** - *ଗ:* (ବି.) ଅଙ୍ଗଭଙ୍ଗୀ, ଭାବରଙ୍ଗୀ

**ଠାଣେ** - *କନ:* (ବି.) : ଜାଗାରେ

**ଠାନ ଅଠାନ** - *ବୌ:* (ବି.) : ଜାଗା ଅଜାଗା

**ଠାନି** - *ସୁବ:ନୂ:* (ବି.) : ଗର୍ବ, ଫୁଟାଣି, ଠାଣି

**ଠାନୁ** - *ନବ:ନୂ:କଳା:* (ଅ.ବି.) ଠାରୁ, ନିକଟରୁ, ସ୍ଥାନରୁ

**ଠାନେ ଠାନେ** - *ବୌ:* (ଅ.) : ସ୍ଥାନେ ସ୍ଥାନେ

**ଠାପାଣି** - *ବ୍ର:* (ବି.) : ଖାଇବା ଯୋଗାଡ଼

**ଠାପୁଆ** - *ଅନେ:* (ବିଂ.ବି.) : ମଠୁଆ, କାମଦାମ ନକରି ବସି ରହିବା ବ୍ୟକ୍ତି, ଅଳସୁଆ, ଖଟମିଛ କହୁଥିବା ବ୍ୟକ୍ତି

**ଠାବ** - *ଦେ:* (ବି.କ୍ରି.ବିଂ.) : ସ୍ଥାନ, ଜାଗା, ଠିକଣା ପାଇବା, ଚିହ୍ନଟ କରିବା, ସଂଧାନ

**ଠା ବଢ଼ିବା** - *ଦେ:* (ବି.) : ଖାଇବା ଶେଷହେବା

**ଠା ବଡା** - *ଦେ:* (ବି.) : ଜଣକ ପାଇଁ ଖାଇବା ପଦାର୍ଥ, ଭୋଜନ ପ୍ରସ୍ତୁତ

**ଠାବେ ଠାବେ** - *ଦେ:* (ବିଂ.) : ସ୍ଥାନେ ସ୍ଥାନେ

**ଠାଭା** - *ରା:* (ବି.) : ରାସ୍ତା କଡ଼ ହୋଟେଲ, ଢାବା

**ଠାମ୍ବୁ** - *ରା:* (ବି.) : ଜମି କ୍ରୟ ପାଇଁ ସରକାରୀ କାଗଜ

**ଠାୟ** - *ଢ:* (ବି.) : ଜାଗାର

**ଠାର୍ ନାର୍** - *ନୂ:* (ଅ.) : ଠରାଠରି

**ଠାର୍‌ବା** - *ମ:* (କ୍ରି.) : ସଙ୍କେତ ଦେବା

**ଠାରନାର** - *କୋ:* (ବି.) : ସଙ୍କେତ

**ଠାସ୍** - *ରା:କଳା:* (ବି.) : ଦେଖେଇ କରି କହିବା, ତାତ୍ପର୍ଯ୍ୟ, ଭିତିରି ଅର୍ଥ

**ଠାସ୍‌କୁମାରିବା** - *ଦେ:ସଂ:କେ:* (କ୍ରି.) ଅନୁମାନ କରି କହିବା, ଗାଲୁ ମାରିବା, ଅଣ୍ଡାଳିବା

**ଠାସନ୍** - *କଳା:* (ବି.) : ତାତ୍ପର୍ଯ୍ୟ

**ଠାଁକୁଠାଁ** - *ରା:* (ଅ.) : ବିଭିନ୍ନ ସ୍ଥାନ

**ଠାଁ'ସଜ** - *କୋ:ନ:ଗ:* (ବି.) : ଶଶୁର ଘରେ ଜୋଇଁଙ୍କୁ ପ୍ରଥମ ନିମନ୍ତ୍ରଣରେ ଉପହାର ଦିଆଯାଉଥିବା ସାମଗ୍ରୀ

**ଠା'ବସିବା** - *ନ:* (କ୍ରି.) : ଖାଇବସିବା

**ଠା'ସଜ** - *ନ:* (ବି.) : ଜୋଇଁ ଶ୍ୱଶୁର ଘରେ ପ୍ରଥମଥରପାଇଁ ପ୍ରଥମ ଖାଦ୍ୟ ଗ୍ରହଣବେଳେ ବାସନ ଦିଆଯିବା

**ଠିଅ** - *କୋ:ଦେ:* (ବି.) : ଜିଦ୍, ଭଙ୍ଗା ଦୁର୍ବଳ କାନ୍ଥ ବାହାରେ ଦିଆଯିବା ଠିଅ ବା ଠିକ

**ଠିଆଗିନା** - *ଗ:* (ବି.) : ଯେଉଁ ପାତ୍ରର ତଳ ଅଂଶରେ ଉଚ୍ଚବଳା ବା ବଇଠି ଥାଏ

**ଠିଆ ଗୋଇଠା** - *ଦେ:* (ବି.) : ନାତ ମାରିବା

**ଠିଆଚିତା** - *ଗ:* (ବି.) ନାସାଗ୍ରରୁ କପାଳଯାଏ କାଟିବା ଚିତା

**ଠିଆଟୋଢ଼କି** - *ପୁ:* (ବି.) : ଟକଳା ସ୍ତ୍ରୀଲୋକ

ଠିଆମେଲା - *ଅ:ଗଜ:ପୁ:* (ବି.) : ସଂପୂର୍ଣ୍ଣ ଖୋଲାମେଲା

ଠିଆରିଆ - *ଦେ:* (ବିଂ.) ବିଚାରହୀନ ଅବିବେକୀ, ଅଭଦ୍ର

ଠିକ୍‌ଠାକ୍ - *ଦେ:* (ଅ.) : କମ୍ ବା ବେଶି ନହେବା। କଣ୍ଟେ କଣ୍ଟେ ଲାଗିଯିବା

ଠିକ୍‌ଡି - *ସୁବ:* (ବି.) : ଦୁଇଖଣ୍ଡ କାଠି, ଏହା ବଜାଯାଇଥାଏ

ଠିକ୍‌ନା - *ଘା:କଳା:* (ବି.) ଅବସ୍ଥିତି ସୂଚେଇବାପାଇଁ ପ୍ରୟୋଗ, ସଠିକତା ପାଇଁ, ସ୍ଥିରତା, ଠିକ୍-ଠିକଣା

ଠିକ୍‌ନା ସମିଆ - *ବୌ:* (ବି.) : ଉପଯୁକ୍ତ ସମୟ

ଠିକ୍ ବତରେ - *ସ:* (କ୍ରି.ବିଂ.) : ଠିକ୍ ଭାବରେ, ପାଗ ଯୋଗ ଅନୁସାରେ

ଠିକ୍ ବନ୍ଧ - *ସ:* (ବି.) : ଠିକ୍ ଠିକଣା

ଠିକଡ଼ି - *ନୂ:କୋ:* (ବି.) : କାଠି (ହାତରେ ବଜାଯାଏ), ମଳଦ୍ୱାର ଉପରକୁ ଥିବା ମେରୁଦଣ୍ଡର ଶେଷଭାଗ

ଠିକଣା - *କୋ:ଦେ:* (ବିଂ.ବି.) : ଯୋଗ୍ୟ, ସୁନ୍ଦର, ଥୟ, ସ୍ଥିରତା, ସତ୍ୟ, ସୁନିଶ୍ଚିତ

ଠିକଣା ଜବାବ୍ - *ସଂ:* (ବି.) : ଉପଯୁକ୍ତ ଉତ୍ତର, ଉଚିତ୍ ଶିକ୍ଷା

ଠିକରା - *ଦେ:* (ବି.) : ଇଟିଲା, ଚୂଲିର କଣରେ ଥିବା ଉଚ୍ଚ ବସ୍ତୁ, ତେଙ୍ଗେଡ଼ା

ଠିକା - *ନ:ସୁବ:ଦେ:* (ବି.ବିଂ.) : କାମ କରିବାକୁ ଚୁକ୍ତିବଦ୍ଧ ହେବା, ଚୁକ୍ତିଭିତ୍ତିକ

ଠିକିବା - *କେନ୍ଦୁ:ଯା:* (କ୍ରି) : ଠକିଯିବା ପରେ ବୁଦ୍ଧି ଶିଖିବା, ଭୁଲ୍ କରି ଶିଖିବା

ଠିକିରି - *ନ:ଦେ:ଗଦ୍ୟ:ଗ:* (ବି.) : ତାସ ଖେଳର ଏକ ରଙ୍ଗ ଘର, ତେରେଛା ଚାରିକୋଣିଆ ଚିହ୍ନ

ଠିକିରିଯିବା - *ଗ:* (କ୍ରି.) : ଛିଟିକିଯିବା

ଠିକେ - *ରା:* (କ୍ରି.ବିଂ.) : ସଂକ୍ଷେପରେ

ଠିକେଣ - *ଜ:* (କ୍ରି.ବିଂ.) ଠିକେଠିକେ, ସଂକ୍ଷିପ୍ତରେ

ଠିଘା - *ରା:* (ବି.) : ଚୁକ୍ତି ମୁତାବକ କାମ ବା ବ୍ୟବସାୟ, ସମୟାନୁଭିତ୍ତିକ ନିଯୁକ୍ତି

ଠିଙ୍ଗା - *ରା:* (ବି.) : ଉପଦେଶ ନମାନିବା

ଠିଙ୍ଗି - *ଛେ:* (ବି.) : ପିଠି, ପଶୁମାନଙ୍କ ପିଠିହାଡ଼

ଠିଡ୍‌କା - *କଣ:କୌ:* (ବି.) : ଗାଈ ବଳଦର ବେକରେ କାଠର ଟିପା, କାଠଘଣ୍ଟି

ଠିପା - *ସୁ:* (ବି.) : ବିନ୍ଦୁ, ଟିପ ଆକାରର ଚିହ୍ନ

ଠିପି - *ଅନେ:* (ବି.) : ବୋତଲର ଖିଲ, ବାଟ ବନ୍ଦ କରିବା, ଘୋଡ଼ଣି

ଠିମିରି - *କେ:* (ବି.) : ବୃକ୍ଷବିଶେଷ

ଠିମ୍ଭେଇବା - *ରା:* (କ୍ରି.) : ଛୋଟେଇ କରି ଚାଲିବା, ଟିପେଇବା

ଠିରି - *ରା:* (କ୍ରି.) : ସ୍ଥିର ହୋଇ ରହିବା

**ଠିର୍କେଇବା** - *ଅ:* (କ୍ରି.) : ଆଗରୁ ସତର୍କ କରିଦେବା, ଡରକେଇବା

**ଠିଲ୍କା** - *ଦେ:* (ବି.) : କାଠରେ ତିଆରି ବାଦ୍ୟ, ଯାହା ଓଲେଇ ଗାଈ ବେକରେ ବନ୍ଧାଯାଏ

**ଠିସ୍କା** - *କଅ:* (ବିଂ.) : ବାଙ୍ଗରା

**ଠିଁକା** - *ରା:* (ବି.) : ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ

**ଠୁଇ** - *ଢେ:* (ବି.) : ଠୋଲା

**ଠୁକ୍** - *ଗଦ୍ୟ:କଳା:ରା:* (ବି.) : ଏକ ପକ୍ଷୀ, କଠିନ ପଦାର୍ଥରେ ଆଘାତ ଧ୍ୱନି, ପକ୍ଷୀର ଥଣ୍ଟରେ ଦାନା ଖୁଣ୍ଟିବା

**ଠୁକ୍ବା** - *କଳା:ସ:ବୌ:* (କ୍ରି.ବି.) : ଚଢେଇ ଥଣ୍ଟରେ ଆଘାତ କରିବା, ଖାଇବା, ମାରିବା, ବାଡ଼େଇବା, ଠୁକିବା

**ଠୁକଡାବାର** - *ସୁବ:* (କ୍ରି.) : ଠୁକ୍ଠୁକ୍ କରିବା, ଅଳ୍ପ ଆଘାତ ଦେବା, ଠୁକେଇବା

**ଠୁକର** - *ଦେ:ଅ:ଛ:* (ବି.) : ଠୋକର୍, ବାଧା, ଦଣ୍ଡ, ଚେତାବନି

**ଠୁକା** - *ସ:ଗଛ:ସୁବ:* (ବି.କ୍ରି.) : କାଗଜ ତିଆରି ଖୋଳ, ଠୁଙ୍ଗା, ସଂଖ୍ୟା ଓ ତାଳ ଅନୁସାରେ ବାଡ଼ିଖେଳ ପ୍ରଦର୍ଶନ(ଆଠ, ବାର ଭେଦରେ)

**ଠୁକା ଠୁକା** - *ବୌ:* (କ୍ରି.ବି.) : ବସିଲା ବସିଲା

**ଠୁକାଠୁକି** - *ଗ:ଦେ:* (ବି.) : କୌଣସି ବସ୍ତୁକୁ ଆଘାତ କରିବା, ପରସ୍ପର ମଧ୍ୟରେ ଅଳ୍ପ କଳିଗୋଳ, ବାଦ-ବିବାଦ

**ଠୁକାନ୍** - *ସୁବ:* (କ୍ରି.) : ମାଡ

**ଠୁକାନି** - *କଳା:* (ବି.) : ମୃଦୁ ଆଘାତ କରି ଅଧିକାର ସାବ୍ୟସ୍ତ କରିବା ପ୍ରକ୍ରିୟା

**ଠୁକୁମୁକୁ** - *ଗଛ:* (ବି.) : ଯେନତେନ, ସୁବିଧା ଅସୁବିଧା ସହିତ

**ଠୁକୁର୍ମୁକୁର୍** - *ବ:* (ବି.) : ପ୍ରୟୋଜନୀୟ କାର୍ଯ୍ୟ, ଛୋଟ ଛୋଟ କାମ

**ଠୁକୁଲ୍** - *କ:* (ବି.) : ଶେଷ, ବନ୍ଦ

**ଠୁକୁଲା** - *ରା:* (ବି.) : ରକ୍ତହୀନତା

**ଠୁଙ୍କପିରି ବସିବା** - *କୋ:* (କ୍ରି.) : କିଛି ନକହି ବସି ରହିବା

**ଠୁଙ୍କା** - *ନ:* (ବି.) : ଆଣ୍ଠୁ ଦୁଇଟି ଉପରକୁ ରଖି ବସିବା, ଟେକିହେଇ ବସିବା

**ଠୁଙ୍କିବା** - *ରା:ଅ:କୋ:* (କ୍ରି.) ଆପତ୍ତି ଉଠାଇବା, ମାରିବା, ଖାଇବା, ଭର୍ତ୍ତି କରିବା

**ଠୁଙ୍ଗା** - *କେ:କ:ଦେ:* (ବି.) : ଗଛ ପତ୍ରରେ ତିଆରି ପାତ୍ର, କାଗଜ ତିଆରି ଖୋଳ, ଠୁଙ୍କା

**ଠୁଙ୍ଗାଭାଙ୍ଗି** - *ସ:* (ବି.) ବେଠିଖଟିବା, ବେକାରୀ ଜୀବନ ବିତାଇବା, ଅଳ୍ପଅର୍ଥ ଉପାର୍ଜନ କରିବା

**ଠୁଙ୍ଗି** - *ମ:* (ବି.) : ପୁଡ଼ିଆ

**ଠୁଙ୍ଗୀ** - *କଳା:* (ବି.) : କୁଜଥିବା ଲୋକ, ଦେହରେ କୌଣସି ସ୍ଥାନ ବା ଅସ୍ଥି ସାମାନ୍ୟ ଉପରକୁ ଉଠିଥିବା ଅଂଶ

**ଠୁଙ୍କୁଣା** - *ଗ:* (ବି.) : ଏକୁଟିଆ

**ଠୁଣ୍ଠା** - *ବା:* (ବି.) : ଛୋଟ ବାଉଁଶିଆ

**ଠୁଟି** - *ଚ:କଳା:* (ବି.ବିଂ.) : ଅର୍ଧଦଗ୍ଧ, ଖଂଡିତ, ଲମ୍ବା ଜିନିଷର ଛୋଟ ରୂପ, ବ୍ୟବହାର ଦ୍ୱାରା କୌଣସି ଜିନିଷ ସରି ସରି କ୍ଷୁଦ୍ରାକୃତି ଲାଭ କରିଥିବା ଅବସ୍ଥା, ଅତି ନିମ୍ନ ଧରଣର, ନିମ୍ନ ଶ୍ରେଣୀର

**ଠୁଟି ମାଉଲି** - *କଳା:* (ବି.) : ଆଦିବାସୀମାନଙ୍କ ଏକ ଦେବତା

**ଠୁଠା** - *କୋ:ନବ:ସୁ:* (ବି.ବିଂ.) : କୁଷ୍ଠରୋଗ, ଶଢ, ଛିଣ୍ଡା ଆଙ୍ଗୁଠି, ଥୁଣ୍ଟା

**ଠୁଠିଁ** - *ବର:* (ବିଂ.) : ଅବଶିଷ୍ଟ ଅଂଶ, ଥୁଣ୍ଟା

**ଠୁ ଠୁ** - *ଦେ:* (ବି.) : ସୀତାଗାଡି ଖେଳ

**ଠୁଡ଼ି** - *କଳା:* (ବି.) : ଥୋଡ଼ି

**ଠୁଣା** - *କଳା:ଗ:କୋ:* (ବି.) : ଏକ ପ୍ରକାର ମୁଷ୍ଟିଘାତ, ମୁଠାକୁ ଓଲଟାଇ ଅଂଗୁଳିର ଗଣ୍ଠି ଦ୍ୱାରା ଅନ୍ୟକୁ ଆଘାତ କରିବା, ବାଙ୍ଗର, ସାନ, କାନ୍ଥରେ ଛୋଟ ଜିନିଷ ରଖିବା ପାଇଁ ଛିଦ୍ର, ଠଣା

**ଠୁଣି** - *କ:* (ବି.) : ଗଡ଼ିଶ ମାଛ

**ଠୁଣିଠୁଣିକା** - *ନ:ଗ:* (ବି.) : ଚେରମୂଳୀ ଔଷଧ, ଗାଉଁଲୀ କବିରାଜି

**ଠୁଣିବାଜିବା** - *ନୂ:* (କ୍ରି.) : ଅତ୍ୟନ୍ତ ଶୀତରେ ଥରି ଉଠିବା

**ଠୁଣୁଠୁଣୁ** - *ବା:* (ବି.) : ବାସନ ବିକ୍ରି କରୁଥିବା ବ୍ୟକ୍ତି, କଂସାରି

**ଠୁଣ୍ଟା** - *ମା:ଦେ:* (ବିଂ.ବି.) : ଥୁଣ୍ଟା, ପତ୍ର ଫୁଲ ଆଦି କିଛି ନଥିବା ଅବସ୍ଥା

**ଠୁଣ୍ଡି** - *ଦେ:* (ବି.) : ବାଙ୍କି, ଆଣ୍ଡକୁରି, ପୁଅଝିଅ ଆଦି ନଥିବା

**ଠୁଣ୍ତି** - *ବା:* (ବି.) : ଏକ ପାଣି ପରିବା

**ଠୁବ** - *ବା:* (ବି.) : ନର୍ଦ୍ଦମା

**ଠୁବୁରୁ** - *ଦେ:* (ବିଂ.) : ବାଙ୍ଗରୁ, ପୁଟୁକି

**ଠୁରା** - *ଅନେ:* (ବିଂ.ବି.) : ବାଙ୍ଗର, ବାମନ, ଗେଡ଼ା, ଛୋଟ ମଣିଷ

**ଠୁରି** - *ବା:* (ବିଂ.) : ଛୋଟ, ଗେଡ଼ି

**ଠୁରୁ** - *ବୌ:ସୁ:* (ବିଂ.) : ଗେଡ଼ା

**ଠୁରୁଲି** - *ସୁ:* (ବିଂ.) : ଅଳ୍ପ ଲୋମଯୁକ୍ତ

**ଠୁରୋ** - *ସୁବ:* (ବି.) : ଏକ କାତି ନଥିବା ଛୋଟ ମାଛ, ବାଲିଗରଡ଼ା ମାଛ

**ଠୁର୍ଲି** - *କଳା:* (ବିଂ.) : ଛୋଟ, କ୍ଷୁଦ୍ର

**ଠୁର୍ ଠୁରାବା** - *ସ:* (କ୍ରି.) : ବେଶୀ ଶୀତରେ ଥରିବା

**ଠୁଲ** - *ଢେ:* (ବି.) : ଫୁଲ ଚାଙ୍ଗୁଡ଼ି

**ଠୁଲ୍କା** - *କୋ:* (ବି.) : ଫୁଲି ଉଠିଥିବା ଏକ ପ୍ରକାର ପିଠା

**ଠୁଲ ହେଇ** - *ନୂ:* (କ୍ରି.) : ଏକତ୍ର ହୋଇ

**ଠୁଲା** - *ବୌ:ମ:କନ୍ଧ:* (ବି.) : ବଡ଼ ପତର ଦନା ଯହିଁରେ ଭାତ ଖିଆଯାଏ, ଦୋନା, ଏହା ଶିଆଳିପତ୍ରରେ ତିଆରି ମଧ୍ୟମ ଧରଣର ଦନା ବା ଠୋଲା

**ଠୁଲାଇବା** - *ନୂ:ବ:* (କ୍ରି.) : ରୁଣ୍ଡ କରିବା, ଜମା କରିବା

**ଠୁଲି** - *ଗ.ଦେ.* (ବି.) : ମୁଣ୍ଡ ଖପୁରି, ପତ୍ରରେ ନିର୍ମିତ ଦନା, ମୃତ, ପ୍ରେତାତ୍ମାଙ୍କ ଉଦ୍ଦେଶ୍ୟରେ ଅଭିପ୍ରେତ

**ଠୁଳ କରିବା** - *ନ.ଅ.* (କ୍ରି.) : ଏକାଠି କରିବା, ସଂଗ୍ରହ କରିବା

**ଠୁଳା** - *ସୁ.* (ବି.) : କାଗଜ ଠୁଙ୍ଗା

**ଠୁଳି** - *ଦେ.* (ବି.) : କାଣ୍ଡ, ଶର, ଧୂଣରେ ବ୍ୟବହାର କରାଯାଏ, ଠୁଳି, ବିଟା, କାନି

**ଠୁଳି ଉଡ଼ିଯିବା** - *ଗ.* (କ୍ରି.) : ଭାଙ୍ଗିଯିବା ବିନଷ୍ଟ ହେବା

**ଠୁସ୍ କର୍‌ଲା, ଠୁସି କର୍‌ଲା** - *ସ.ବ.* (ବି.) : ଛୋଟ କଲରା, କୁଜି କଲରା

**ଠୁସ୍କି** - *କଳା.* (ବିଂ.) : ଛୋଟ, କ୍ଷୁଦ୍ର, ବାଙ୍ଗରୀ ନାରୀ

**ଠୁସ୍କୁ ଗୁଣ୍ଡରୁ** - *ବୌ.* (ବିଂ.) : ସାନ ସାନ, ଟିକିଟିକି

**ଠୁସ୍କୁଲା** - *କଳା.* (ବି.) : ଲୋକକଥାର ଏକ ଲଘୁ ରମ୍ୟ ବିଭାବ

**ଠୁସକୁ ଢୁବ୍‌ରୁ** - *ସ.* (ବିଂ.) : ସାନ ସାନ ଓ ବଡ଼ ମିଶି ଦଳେ ଛୁଆ

**ଠୁସା** - *ସୁ.ବା.କଳା.ନୂ.* (ବିଂ.) ଖଣ୍ଡ, ଅର୍ଥହୀନ, ଅଚ୍ଚ

**ଠୁସି** - *ଗଦ୍ୟ.ବା.* (ବିଂ.) : ଛୋଟ, ସାନ

**ଠୁସୁ** - *କେନ୍ଦୁ.* (ବି.) : ଠୁସୁ ଠାକୁରାଣୀ

**ଠୁଁକିବା** - *ଗଞ.* (କ୍ରି.) : ଜଣକର କଥା ଅନ୍ୟ ଜଣକୁ କହିବା

**ଠୁଁଠି** - *ସୁବ.ଝା.* (ବିଂ.) : ଘୋରି ହୋଇଥିବା, ବ୍ୟବହାର ହୋଇ ଛୋଟ ହୋଇ ଯାଇଥିବା, ଟୁଣ୍ଡା

**ଠେକ** - *ଗ.ଦେ.* (ବି.) : ସମ୍ମାନ, ଉଚ୍ଚସ୍ଥାନ, ଢିରା, ଠିଆ, ଠେସ

**ଠେକରା** - *ଅନେ.* (ବି.ବିଂ.) : ଢେରା, ଛେଲୁଆ, ଭଙ୍ଗା ହାଣ୍ଡିର ଅଂଶ, ପାକହାଣ୍ଡି

**ଠେକା** - *ଅନେ.* (ବି.) : କାଠହାତୁଡ଼ି, ଝୁଡ଼ି, ଝଙ୍କା, ମୁଣ୍ଡରେ ବାନ୍ଧିବା ପାଗ, ପଗଡ଼ି, ମାଟି ହାଣ୍ଡି

**ଠେକାମରା** - *ବୌ.* (ବି.) : ପଗଡ଼ି ଭିଡ଼ା

**ଠେକି** - *ଅନେ.* (ବି.) : ତେଲ, ଘିଅ ଆଦି ରଖିବା ଆଧାର, ଛୋଟମାଟି ହାଣ୍ଡି, ମାଟିରେ ତିଆରି ଘଡ଼ି

**ଠେଙ୍କି** - *ବଉ.* (ବି.) : ମୁଣ୍ଡନ ହୋଇଥିବା ବାଳିକା

**ଠେକୁଆ** - *ଦେ.* (ବି.) : ଖରିଆ, ଢେଙ୍କଳା, ପିଟିବା ପାଇଁ କାଠ ଗଣ୍ଠିରେ କିଆରି ହାତୁଡ଼ି

**ଠେଙ୍ଗ** - *ଅନେ.* (ବି.ବିଂ.) ଗୋଡ଼, ଅନମନୀୟ, ଚଟୁଆ, ଢିପା, ଉଚ୍ଚଭୂମି, ଘାସ ବିନା ପଡ଼ିଆ, ବାଡ଼ି

**ଠେଙ୍ଗଣା** - *ନ.ଦେ.* (ବି.) କଟୁକଥା, ଢିପଢମି

**ଠେଙ୍ଗଣି** - *ବୌ.କଳା.* (ବି.) : ଅଣ୍ଡାହାଡ଼, ଦୁଇ ହାତ ପରିମିତ ଲମ୍ବର ବାଉଁଶ

**ଠେଙ୍ଗରାଣିଆ** - *ଦେ:* (ବିଂ.) : ନିର୍ଦ୍ଦୟ, ଗାଈ ଗୋରୁଙ୍କୁ ଯେ ପ୍ରହାର କରେ

**ଠେଙ୍ଗରି** - *ସୁ:* (ବି.) : ଛୋଟ ଠେଙ୍ଗା

**ଠେଙ୍ଗସ କଥା** - *କୋ:* (ବି.) : ଅନ୍ୟକୁ ବାଧିଲା ଭଳି କଥା

**ଠେଙ୍ଗା** - *ଅନେ:* (ବି.) : ହଡ଼ାଗାଈର ହାଡୁଆ ସ୍ଥାନ, ଲମ୍ବାରାଶି ପରି ଦାନା। ଲାଠି, ବଡ଼ ନିଦା ବାଉଁଶ ବାଡ଼ି

**ଠେଙ୍ଗାଜର** - *ଦେ:କୋ:ସଂ:* (ବି.) : କଳାଜର, ମିଳିମିଳା, ଡେଙ୍ଗୁଜ୍ଵର

**ଠେଙ୍ଗି** - *ଗଦ୍ୟ:ଦେ:* (ବି.) : କଟିତଳର ଉଭୟ ପାର୍ଶ୍ୱସ୍ଥ ହାଡ଼, ମୂଳିଆ ବାଉଁଶର ଛୋଟ ଠେଙ୍ଗା, ଖୁଣ୍ଟିହାଡ଼

**ଠେଙ୍ଗୁଆ** - *ଅନେ:* (ବିଂ.ବି.) : ଅବିବାହିତ ଲୋକ, ଏକୁଟିଆ, ରଣ୍ଡା, ଭେଣ୍ଡା

**ଠେଙ୍ଗୁଏନ୍** - *ସ:* (ବିଂ.) : ଅବିବାହିତା ଝିଅ

**ଠେଙ୍ଗ୍ ବାଙ୍ଗର୍** - *ଦେ:* (କ୍ରି.ବି.) : ଉଚା ନିଚା

**ଠେଟିଆ** - *ସ:* (ବିଂ.) : ଦୁଷ୍ଟ ପ୍ରକୃତିର

**ଠେଠ୍ରୀ ପିଠା** - *ଗଦ୍ୟ:* (ବି.) : ଚାଉଳରେ ତିଆରି ଏକପ୍ରକାର ପିଠା

**ଠେଣ୍ଟ** - *ଦେ:ଦେ:* (ବି.) : ଡକାୟତ, ଖଣ୍ଟ, ଚୋର-ଠକ

**ଠେଣ୍ଟାରି** - *ମ:* (ବି.) : କଂସାରି

**ଠେଣ୍ଟିଆ** - *ରା:* (ବିଂ.) : ମିଛସତ କହି ଗଣ୍ଡଗୋଳ ସୃଷ୍ଟି କରୁଥିବା (ବ୍ୟକ୍ତି)

**ଠେନି** - *ସୁନ:* (ବି.) : ଗର୍ବ, ଡାଫିନ୍

**ଠେପା** - *ସୁ:* (ବି.) : ଟିପ, କିଳା

**ଠେପି** - *ସୁ:* (ବି.) : ବାଙ୍ଗରି, ବାଙ୍ଗିରୀ

**ଠେମେକା** - *ରା:* (ବି.) : ଆଦିବାସୀ ବାଦ୍ୟ

**ଠେଲ** - *ଗ:* (ବି.) : ଭିଡ଼

**ଠେଲ୍କୋ** - *ଅନେ:* (ବି.) : ଶଶଯୁକ୍ତ ଏକ ବନ୍ୟ ଫଳ

**ଠେଲହା** - *ସୁବ:* (ବି.) : ବାଉଁଶ ପତ୍ର ଗୁଞ୍ଜ ଇତ୍ୟାଦିକୁ ବାଟି କରାଯାଇଥିବା ଔଷଧର ପିଣ୍ଡୁଳା, ଯାହା ଗୋରୁମାନଙ୍କ ଝାଡା ରୋଗରେ ଦିଆଯାଏ

**ଠେଲା** - *ପୁ:ଦେ:କ:* (ବି.) : ଭୁଲ କଥା ହେଲେ ମଧ ନିଜ ବୁଝାମଣା ଓ ଯୁକ୍ତି ତର୍କରେ ଅଟଳ ରହୁଥିବା ଲୋକ, ଗୁମ୍ଚି, ଯାହା ଠେଲିରଖେ

**ଠେସ** - *ଅନେ:* (ବି.କ୍ରି.) : ଠୋସ୍ ପ୍ରମାଣ, ସଠିକ ଖବର, ରକ୍ଷାକାରୀ ଖୁଣ୍ଟ, ଅବଲମ୍ବନ, ଭାରା, ଆଶ୍ରୟ

**ଠେସାଳିଆ** - *ରା:* (ବିଂ.) : ମନକୁ ବାଧୁଥିବା କଥା କହୁଥିବା (ଲୋକ)

**ଠେସାଁ କଥା** - *ସ:* (ବି.) : ବ୍ୟଥା ଦାୟକ କଥା

**ଠେସିବା** - *ଅନେ:* (କ୍ରି.) : ପିଟିବା, ଖୁଂଦି ଖୁଂଦି ଜିନିଷ ରଖିବା, ପେଲିବା, କୁଟିବା, ବାଟିବା, ଧକା ଦେବା

**ଠେସୁ** - *କଳା:* (ବିଂ.) : ମାରୁଥିବା, ପିଟୁଥିବା (ବ୍ୟକ୍ତି)

ଠେଁକି - *ସୁବ:ସ:* (ବି.) : ଠେକି, ଛୋଟ ମାଠିଆ

ଠେଁଚ - *ସୁ:ସୁବ:କଳା:* (ବିଂ.) : ଖଣ୍ଡ, ଚୋର, ଠକ

ଠେଁଚିଆ - *ବ:ସୁବ:* (ବି.) : ଅନ୍ୟକୁ ଠକି ଲାଭବାନ ହେବା ବ୍ୟକ୍ତି

ଠେଁସ ଦେବା, ଠେକା ଦେବା - *ଅ:* (କ୍ରି.) : ଢେରାଦେବା

ଠେଁସବାର - *ସୁବ:* (କ୍ରି.) : ଠେସିବା, କୌଣସି ଲୋକକୁ ମାଡଦେବା

ଠୋଇ - *ଢେ:* (ବି.) : ଟୋପି

ଠୋକ୍ - *ଦେ:* (ବି.) : ଥୋକ, ସମଷ୍ଟି

ଠୋକର - *କେ:ନ:* (ବି.) : ଧକ୍କା, ଆଘାତ

ଠୋ କରି - *ରା:* (କ୍ରି.ବିଂ.) : ଏକାବେଳେକେ

ଠୋକୋଢ଼େ - *ସୁ:* (ବିଂ.) : ଶୁଖିଲା

ଠୋଙ୍ଗରୋ - *ଝା:* (ବିଂ.) : ନିପଟ ଶୁଖିଲା, ଟାଙ୍ଗର, ନିରସ

ଠୋଙ୍ଗା, ଠୋଲା - *ନ:* (ବି.) : ଦନା, ପାତ୍ର

ଠୋ ଠୋ - *ଦେ:ସୁ:* (ବିଂ.ବି.) : ଉଚ୍ଚ ଓ ସ୍ପଷ୍ଟ କଥା, ନିଅଣ୍ଡ

ଠୋ ପଟକା - *ଦେ:* (କ୍ରି.ବିଂ.) : ସଙ୍ଗେ ସଙ୍ଗେ, ତତ୍‌କ୍ଷଣାତ୍

ଠୋରଚୁ - *ସୁ:* (ବିଂ.) : ଛୋଟ, ସାନ

ଠୋରୋ - *ସୁ:* (ବିଂ.) : ଲଣ୍ଡା, ଚନ୍ଦା

ଠୋଲ୍ ହେବା - *ସ:* (କ୍ରି.) : ଏକାଠି ଜମା ହେବା, ସମବେତ ହେବା

ଠୋଲକା - *କେ:ଗଦ୍ୟ:ଗ:* (ବିଂ.ବି.) : ଠୋଲା ହୋଇଥିବା, ଫୁଲାଳିଆ, ଏକ ପିଠା

ଠୋସ୍ - *ଦୌ:ଗ:* (ବିଂ.) : ଦମ୍ଭ, ଟାଣ, ଆଣ୍ଟ, ନିର୍ଦ୍ଦିଷ୍ଟ

ଠୋସକଥା - *ନ:* (ବି.) ନ୍ୟାୟକଥା, ସତ୍ୟକଥା, ଖାଣ୍ଟିକଥା

ଠଁଥିକାବା - *ସ:* (କ୍ରି.) : ନିରୀକ୍ଷଣ କରିବା

ଠଁକ୍‌ବା - *କଳା:* (କ୍ରି.) : ଠକି ଦେବା



**ଡଅଚେ** - *କନ୍ଧ:* (କ୍ରି.) : ଶୋଇବା

**ଡଅଁର** - *ଅନେ:* (ବି.) : ପାହାଡ଼ୀ ରାସ୍ତା, ଗଭୀର ଗଣ୍ଡ, ଜଳଭଉଁରୀ

**ଡଅଁରିଆ** - *ନୁ:* (ବି.) : ଡଉଁରିଆ

**ଡଅଂ** - *ଖ:* (ବି.) : ଦେହ

**ଡଇ** - *କନ୍ଧ:* (ବି.) : ଝିଟିପିଟି

**ଡଇଆଜା** - *କନ୍ଧ:* (ବି.) : ଦେହ ଖରାପ

**ଡଇଡା** - *ଖ:* (ବି.) : ଶିକାର

**ଡଇଁ** - *ଗଜ:ଗ:* (ବି.) : ଖେଳରେ ହାରିବା ବ୍ୟକ୍ତି, ପରଛିଦ୍ର

**ଡଇଁସା** - *କନ୍ଧ:* (ବି.) : ଚମ୍ପେଇନେଉଳ

**ଡଇକ୍** - *କଳା:* (ବି.) : ଡାହୁକ ପକ୍ଷୀ

**ଡଉକା** - *ବଣ୍ଡ:* (ବି.) : ବାଳକ, ପୁଅପିଲା

**ଡଉକି** - *ବଣ୍ଡ:* (ବି.) : ବାଳିକା

**ଡଉରିଆ** - *କୋ:* (ବିଂ.) : ସିଧାଗାର ପଡ଼ିଥିବା, ଡୋରିଆ

**ଡଉଲ** - *ଅନେ:* (ବିଂ.) : ସୁନ୍ଦର ଗଠନ

**ଡଉଁରିଆ** - *ଦେ:ମା:ଖ:* (ବି.) : ଡେଉଁରିଆ, ତାବିଜ

**ଡଏଁନା** - *ସ:* (ବିଂ.) : ରୁଗ୍‌ଣ ସ୍ୱାସ୍ଥ୍ୟ

**ଡକ୍ରୀ** - *କୋ:ନବ:* (ବି.) : ବୁଢ଼ୀ

**ଡକଡକା** - *ଦେ:* (ବିଂ.) : ଡବଡବା, ପେଟରେ କଥ ନରଖି କହିଦିଏ, ଗପୁଡ଼ି

**ଡକରା** - *କେ:ନ:ସୁବ:* (ବି.) ଖବର ପଠାଇବା, ଡକାଇବା, ଆମନ୍ତ୍ରଣ, ଆହ୍ୱାନ

**ଡକା** - *ଖ:ନବ:* (ବି.) : ହାଣ୍ଡି, ଛୋଟ ଡିବା

**ଡକା** - *କନ୍ଧ:* (ବି.) : ବେକ

**ଡକାଏତ** - *ଅନେ:* (ବି.) : ଭୟଭୀତ କରି ଚୋରି କରୁଥିବା ବ୍ୟକ୍ତି

**ଡକାବା** - *କଳା:* (କ୍ରି.) : ଡକେଇବା, ନିକଟକୁ ଆସିବା ପାଇଁ ଖବର ଦେବା

**ଡକାର** - *ଅ:* (କ୍ରି.) : ବାନ୍ତି ଲାଗିବା

**ଡକାହକା** - *ଦେ:କେ:* (ବି.) : ଡକାଡକି, ବିଭିନ୍ନ ଲୋକଙ୍କୁ ଏକାଥରେ ଡାକିବା

**ଡକୁ** - *ଗ:କନ୍ଧ:ଖ:କୋ:* (ବି.) : ପେଡ଼ିଡବା, ଜିନିଷ ରଖିବା ପେଡ଼ି, ଢାବଲ, ଦ୍ରବ୍ୟାଦି ରଖିବା ଆଧାର

**ଡକୁଆ** - *ସୁ:* (ବି.) : ଡାକିବା ଲୋକ

**ଡଗ୍ରାବା** - *କଳା:ନୁ:* (କ୍ରି.) : ଖୋଜିବା, ଅନୁସନ୍ଧାନ କରିବା

**ଡଗଡଗ** - *ଅନେ:* (କ୍ରି.ବିଂ.) : ଶୀଘ୍ର, ଜଲ୍‌ଦି, ଅତି ଚଞ୍ଚଳ(ଚାଲି), ଅତି ତରତର

ହୋଇ କହିବା, ଲମ୍ବଲମ୍ବ ପାହୁଣ୍ଡ ପକାଇ ଚାଲିବା

**ଢଗଢଗା** - *ଗ୍ରା:* (ବି°.) : ଅସ୍ଥିର ମନା, ଆଗକୁହା

**ଢଗର ପାରା** - *ଗ୍ରା:* (ବି.) : କପୋତ

**ଢଗରା** - *ଗ୍ରା: ଦେ:ନ:* (ବି.) : ଗୁପ୍ତ କଥାକୁ ପ୍ରଘଟକରୁଥିବା ଲୋକ, ଭାଟ, ଗୁପ୍ତଚର, ସାଙ୍ଗା, ତରତର ହୋଇଯିବା, ଦ୍ରୁତଗାମୀ ସମ୍ବାଦ ବାହକ

**ଢଗରେଇବା** - *କଳା:ନବ:ଦେ:* (କ୍ରି.) : ଖୋଜିବା, ଅନ୍ୱେଷଣ କରିବା, ଏକ ଦୃଷ୍ଟିରେ ଚାହିଁବା, ବାଟ ଦେଖାଇ ନେବା

**ଢଗଲଫସଲ** - *ଦେ:* (ବି.) : ଦଗାବାଜି, ହେଳା

**ଢଗାଇବା** - *ନବ:* (କ୍ରି.) : ଚେଇଁବା

**ଢଙ୍କ** - *ଅନେ:* (ବି.) : ମାଡୁଥିବା ଲତାର ଶାଖା, ଲତାର କୋମଳ ଅଗ୍ରଭାଗ, ବେଙ୍କ

**ଢଙ୍କ ଢାଳିକି** - *ଗ୍ରା:ନ:* (କ୍ରି.ବି°.) : ଅଚେତ ହୋଇ ପଡ଼ିବା

**ଢଙ୍କପାଣି** - *ସ°:* (ବି°.) : ଡଙ୍କ, ସନ୍ତୁଳା

**ଢଙ୍କଶୁଣୀ** - *କେ:* (ଅ.) ଡାହାଣୀ, ଏକପ୍ରକାର ଗାଳି

**ଢଙ୍କଶ୍ୟାପ** - *ଗ୍ରା:* (ବି.) : ତାଜା ଅଭିଶାପ

**ଢଙ୍କା** - *ଅନେ:* (ବି.) : ନଡ଼ିଆ ଷଢେଇରେ ନିର୍ମିତ ଡଙ୍କି, ଲୁହା, ପିତ୍ତଳ, ସିଲଭର, ବାଉଁଶ ତିଆରି କରଚୁଲି

**ଢଙ୍କାରି** - *ଗ୍ରା:ଦେ:* (ବି.) : ବାତ ରୋଗର ଔଷଧ, ବନଗୁଳ୍ମ

**ଢଙ୍କି** - *ଅନେ:* (ବି.) : ଭୋଜି ସାମଗ୍ରୀ ପରଶିବା ଉପକରଣ, ଚାମୁଚ, କରଚୁଲି, ଡାଲି, ତରକାରୀ ବାଢ଼ିବା ଉପକରଣ, କାଠତିଆରି ରାନ୍ଧଣା ସରଞ୍ଜାମ

**ଢଙ୍କିଆ** - *ଗ୍ରା:* (ବି.) : ଲମ୍ବାବେଣ୍ଟ ଯୁକ୍ତ ଅଣକ, ଷଢେଇରେ ତିଆରି ବଡ଼ ଡଙ୍କି

**ଢଙ୍କିପୋକ** - *ଖୋ:* (ବି.) : ଫସଲର ଡଙ୍କକୁ ଆକ୍ରମଣ କରୁଥିବା ପୋକ

**ଢଙ୍କୁଣା** - *ଗ୍ରା:* (ବି.) : ଡାଆଣୀ

**ଢଙ୍ଗ** - *କେ:* (ବି.) : କାଠି, ଡାଙ୍ଗ

**ଢଙ୍ଗର** - *ଅନେ:* (ବି°.ବି.) : ଟାଙ୍ଗରା ଭୂଇଁ, ଉଦ୍ଭିଦ ନଥିବା ସ୍ଥାନ, ପାହାଡ଼ିଆ ଅଞ୍ଚଳ, ଢିପ ଜମି, ଜଙ୍ଗଲ

**ଢଙ୍ଗା** - *ଅନେ:* (ବି.) : କୁଣ୍ଡ, କ୍ଷୁଦ୍ର ଆକୃତିର ବିଲ, ନାଆ, ନାବ, ଗୋରୁଙ୍କ ପିଇବା ପାତ୍ର

**ଢଙ୍ଗି** - *ସ°:ଦେ:ଅ:* (ବି.) : ଛୋଟଡଙ୍ଗା, କମଚଉଡ଼ା ଲମ୍ବ କିଆରି, ଦୁଇ ଚାଳ ମଝିରେ ଡଙ୍ଗା ଆକୃତି କାଠ ବା ଟିଣ

**ଡଙ୍ଗିଆ** - *ସୁବ:* (ବି.) : ଗୋଟିଏ ଶୁଖିଲା ବାଡ଼ିର ଦୁଇପଟେ କଣା କରାଯାଏ ଓ ଏହାର ଦୁଇପଟର ଦଉଡ଼ିରେ ଖୁଣ୍ଟ ଓ ବଳଦକୁ ବନ୍ଧାଯାଏ

**ଡଙ୍ଗି କିଆରି** - *ସଂ:* (ବି.) : ଲମ୍ବା କିଆରି

**ଡଙ୍ଗିରା** - *ଭ:* (ବି.) : ଛୋଟଡାଳ

**ଡଙ୍ଗୀ** - *ଚା:* (ବିଂ.) : ତାଡୁଆ, କଳହପ୍ରିୟ

**ଡଙ୍ଗୁର ନାଚ** - *ଦେ:* (ବି.) କୋହ୍ଲ ଭୂୟାଁମାନଙ୍କ ଏକପ୍ରକାର ନାଚ

**ଡଣ୍** - *ବର:* (ବି.) : ଦଣ୍ଡନାଚ

**ଡଣସେନା** - *କଳା:* (ବି.) : କେତେକ ଜାତିର କୌଳିକ ଉପନାମ, ଦଣ୍ଡସେନା

**ଡଣା** - *କଳା:ନୁ:* (ବି.) : ଦଣ୍ଡା, ଶଗଡ ଦାଣ୍ଡି

**ଡଣାଣରାନ୍** - *କଳା:* (ବି.) : ଦଣ୍ଡ ପ୍ରମାଣ

**ଡଣି** - *କଳା:* (ବି.) : ଦଣ୍ଡି, ନାସାଳଙ୍କାର ବିଶେଷ

**ଡଣି** - *ନୁ:* (ବି.) : ନାକର ଅଳଙ୍କାର, ଦଣ୍ଡୀ

**ଡଣିମାରିବା** - *ପୁ:* (କ୍ରି.) : ମୁଣ୍ଡକୁ ଆଙ୍ଗୁଠିରେ ଆଘାତ କରିବା

**ଡଣେ** - *କଳା:* (ବିଂ.) : ଦଣ୍ଡେ, ଖୁବ୍ ଅଳ୍ପ ସମୟ

**ଡଣେଇ** - *କଳା:ନୁ:* (ବି.) : ଖୁବ୍ ଛୋଟ ଛୋଟ ମାଛ, ଦଣ୍ଡକିରି ମାଛ

**ଡଣ୍ଡି** - *ସୁ:* (ବି.) : ନାକର ବସଣି

**ଡଣ୍ଡିଆ** - *ମା:* (ବି.) : ଧଣ୍ଡସାପ

**ଡଫଲଶଙ୍ଖ** - *ସଂ:* (ବି.) : ଯେ ତିଳକୁ ତାଳ କରି କହିବୁଲେ

**ଡବ୍‌କରି** - *କଳା:* (ବିଂ.) : ହଠାତ୍, ତୁରନ୍ତ

**ଡବ୍‌କା** - *କଳା:* (କ୍ରି.) : ଫୁଟିବା, ଫୁଟାଅ

**ଡବ୍‌କିବା** - *କଳା:* (କ୍ରି.) : ଫୁଟିବା, ଟକ୍‌ମକ୍ ହେବା

**ଡବକା** - *ବ:* (ବିଂ.) : ଧାନ ବୁଣିବା ଆଗରୁ ଧାନକୁ ଗରମ ପାଣିରେ ପକାଇବା ଓ ଗରମ କରିବା

**ଡବଡ଼ବି** - *ଅ:ଭ:* (ବି.) : ମୁହଁରେ ମୁହଁରେ ସବୁ କହିଦେବା

**ଡବଢ୍‌ବିବା** - *କଳା:* (କ୍ରି.) ଭିଜିଯିବା, ଓଦାହୋଇଯିବା, ଆଗକୁହା ସ୍ତ୍ରୀଲୋକ

**ଡବଲପାନା** - *ଗ:* (ବି.) : ମୋଟି ଝିଅ (ବ୍ୟଙ୍ଗ)

**ଡବଲି** - *ରା:* (ବି.) : ଦାଆ

**ଡବା** - *ଅନେ:* (ବି.) : ଟିଣ, ପ୍ଲାଷ୍ଟିକ୍‌ରେ ତିଆରି ପାତ୍ର ରେଳଡବା

**ଡବି** - *ଅନେ:* (ବି.) : ଡିବି, ଡିବିରି, କରାଟ, ଅଣ୍ଟାରେ ଖୋସାଯାଉଥିବା ଛୋଟ ଧାତବ ଡବା

**ଡବେଇଦବା** - *ମ:* (କ୍ରି.) : ଢଙ୍କାଇଦେବା

**ଡବେଇବା** - *କଳା:* (କ୍ରି.) ପ୍ରବେଶ କରାଇବା, ଶସ୍ୟ କ୍ଷେତ୍ରରେ ଗୋରୁ ଓ ଛେଳି ଆଦିଙ୍କୁ ଚରିବା ପାଇଁ ଛାଡ଼ିଦେବା

**ଡଭା** - *ଦେ:* (ବି.) : ମୋଟା ଓ ପୋଲା ବାଉଁଶ

**ଡମ** - *ଅନେ:* (ବି.) : ବାଉଁଶ କାମ କରୁଥିବା ଜାତି, ଯିଏ ବାଉଁଶ ଜିନିଷ ତିଆରି କରେ, ଡମ୍ବ

**ଡମ୍‌କଚ୍** - *ଗଦ୍ୟ:ସୁବ:* (ବି.) : ଏକ ନାଚ, କଜଳ ପାତି ପକ୍ଷୀ

**ଡମ୍ରୁ** - *ସ:କଳା:ଛ:* (ବି.) : ଡମ୍ବୁରୁ

**ଡମ ଘୁରୁହୁ** - *କେନ୍ଦୁ:ଖୋ:ଦେ:* (ବି.) : ଏକ ପ୍ରକାର ଗଛ, କାଠ ପାନିଆ

**ଡମଣା** - *କେ:* (ବି.) : କବଜା

**ଡମଣି** - *ଛ:* (ବି.) : କବାଟରେ ଲାଗୁଥିବା ଲୁହାକଣ୍ଟା

**ଡମଣୀ** - *କେ:* (ବି.) : ଅଷ୍ଟ ଧାତୁରେ ତିଆରି ଠାକୁରାଣୀ

**ଡମରଗାଡ଼** - *ବୌ:* (ବି.) : ପାହାଡ଼ ବିଶେଷ

**ଡମା** - *ରା:* (ବି.) : ଚିହ୍ନଟ ପଥର

**ଡମାଡଭଲ** - *ଅ:* (ବିଂ.) : ଅମିତ ବ୍ୟୟୀ

**ଡମୁ** - *କନ୍ଧ:* (ବି.) : ଶୋଇବା, ଶୟନ

**ଡମେନ୍** - *କଳା:* (ବି.) : ଡମ୍ବ ଜାତିର ସ୍ତ୍ରୀ

**ଡମ୍ଭର** - *ଦେ:* (ବି.) : ମାଲବୁହା ଗାଧୀ

**ଡମ୍ଭା** - *ପୁ:ନ:ଦେ:ମା:* (ବିଂ.) : ପବନା, ବହାପିଆ, ଫୁଟାଣିଆ, ବହୁଭାଷୀ ପ୍ରଗଲ୍‌ଭ, ଫମ୍ପା, ପୋଲା, ଆଗବୋଲା

**ଡମ୍ଭା** - *ଗ:* (ବିଂ.) : ଆଗବୋଲା, କିଛି ନବୁଝି ଯେ ଉତ୍ତର ଦିଏ

**ଡମ୍ବ** - *ଗଞ:ନବ:ଗ:* (ବି.) : ଏକ ଦଳିତ ଜାତି, ଡମ

**ଡମ୍ବରୁ ହାଡ଼** - *ବା:* (ବି.) : ମେରୁଦଣ୍ଡ

**ଡମ୍ବରଜା** - *ଗ:* (ବି.) : ଅଯୋଗ୍ୟ ହାତରେ କ୍ଷମତା ରହିବା ପ୍ରସଙ୍ଗ

**ଡରକୁଳା** - *ନ:କ:* (ବିଂ.) : ଭୟାଳୁ, ଡରୁଆ

**ଡରବାଂ** - *ରା:* (ବି.) : ଡବା

**ଡରର୍‌ମାଡେ** - *କଳା:* (ବି.) : ଭୟରେ, ଭୟଭୀତ ହୋଇ

**ଡରହେଇ** - *ସୁବ:* (ବିଂ.) : ଡରକୁଳି ସ୍ତ୍ରୀଲୋକ

**ଡରାଚିମିକା** - *ଗ:* (ବି.) : ଭୂତପ୍ରେତ ଭୟ

**ଡରାଣ** - *ଅନେ:* (ବି.) : ଡରାଇବା, ଅନ୍ୟର ମନରେ ଭୟ ସୃଷ୍ଟି କରିବା

**ଡରୁବଗା** - *ସୁ:* (ବି.) : ଏକପ୍ରକାର ହେଟା

**ଡରେଇଧୁପେଇ** - *ସ:* (କ୍ରି.) : ଭୟଭୀତ କରାଇ

**ଡରେଇହରେଇ** - *ଅ:* (କ୍ରି.) : ଧମକ୍ ଚମକ୍ ଦେଇ

**ଡରେନ** - *ଝା:ସୁ:* (ବି.) ଭୟଭୀତ କରେଇବାପାଇଁ ଯାହା ବ୍ୟବହାର କରାଯାଏ, ଭୟ ପ୍ରଦର୍ଶନ

**ଡରେହି** - *କଳା:* (ବିଂ.) : ଡରକୁଳା ନାରୀ

**ଡର୍‌ଚକ୍** - *କନ୍ଧ:* (ବି.) : ଭୟଭ୍ରାନ୍ତି

**ଡର୍‌ଡର୍‌ନିଆଁ** - *ସ:* (ବିଂ.) : ଭୟଙ୍କର

**ଡର୍‌ହା** - *ଅନେ:* (ବିଂ.) : ଡରକୁଳା, ଭୟାଳୁ, ଯେ ଡ଼ରେ, ଡରୁହା

**ଡଲ୍‌ଫିନ୍** - *ସଂ* (ବି.) : ଏକ ସ୍ତନ୍ୟପାୟୀ ଜଳଜୀବ (ସାମୁଦ୍ରିକ)

**ଡଲା** - *ଅନେ:* (ବି.) : ବାଉଁଶ ପାତିଆ, ଗାଣ୍ଡୁଆ ଝୁଡ଼ି, ବାଉଁଶ ତିଆରି ଭୋଗ ପାତ୍ର, ଚୋପା, ଡାଲା

**ଡସେଇବା** - *କଳା:* (କ୍ରି.) : ନିଆଁ ଲଗେଇବା, ବିଛା, ସର୍ପାଦି କାମୁଡ଼ିବା

**ଡହ** - *ଦେ:* (ବି.) : ଜୈଉଠ ଫଳ

**ଡହକ** - *ଅନେ:* (ବିଂ.ବି.) : ଅତ୍ୟନ୍ତ ଗରମ, ତାତି, ଅସହ୍ୟ ଗରମ, ଝାଞ୍ଜି

**ଡହକି** - *ସୁ:* (ବିଂ.) : ଡହକ ତାତି

**ଡହଡହ** - *କ:ଦେ:ନ:* (ବିଂ.) : ତାତିଲା, ଉତ୍ତପ୍ତ (ଖରା), ନିଆଁ ଦାଉଦାଉ ହେଉଥିବା

**ଡହଦେବା** - *ନ:* (ବି.) : ଉତ୍ତାପ ଥିବା, ଜ୍ୱରରେ କମ୍ପୁଥିବା

**ଡହନା** - *ବଲ:* (ବି.) : ବଡ଼ ହାଣ୍ଡି

**ଡହରା** - *ଅନେ:* (ବିଂ.) : ମିଛୁଆ, ଗାଲୁ ପେଲୁଥିବା(ବ୍ୟକ୍ତି), ଫୁଟାଣିଆ, ଗପୁଡି, ଡବଡବା

**ଡହଳବିକଳ** - *ଅନେ:* (ବିଂ.ବି.ଅ.) : ଅସ୍ତବ୍ୟସ୍ତ ହେବା, ଅତି ବିକଳ, ଶୋକାକୁଳ, ଆତୁର ହେବା

**ଡହୁ** - *ଦେ:* (ବି.) : ଜୈଉଠ ଗଛ

**ଡହୁକ୍** - *କଳା:* (ବି.) : ଡାହୁକ ପକ୍ଷୀ

**ଡହଁକ୍ ବିକଲ୍** - *ନୂ:ଖୋ:ସ:* (ଅ.) : ଇତସ୍ତତଃ, ଯନ୍ତ୍ରଣା ପାଇବା, ଶାରୀରିକ କଷ୍ଟ

**ଡହଁରିଆ** - *କଳା:* (ବି.) : ଡେଉଁରିଆ

**ଡାଆଣା** - *ଦେ:* (ବିଂ.) : ଆଗଁଷିଆ ପ୍ରକୃତି

**ଡାଆଣିଆଖରା** - *ଅନେ:* (ବିଂ.) : ଶୀତ ଦିନର ଖରା

**ଡାଆଁଶ** - *ଅନେ:* (ବି.) : ରକ୍ତଶୋଷକ ମାଛି

**ଡାଇ** - *ସୁ:ଦେ:ରା:* (ବି.) : ନିଦ୍ରା (ଶିଶୁ ଭାଷା), ରଙ୍ଗ, ଛାଞ୍ଚ, ପିଲାଙ୍କ ଭାଷାରେ ଶୋଇବା, ଗଛ ହାଣିବା ପୂର୍ବରୁ ଚିହ୍ନଟ

**ଡାଇନୀ** - *ନବ:* (ବି.) : ଡାହାଣୀ

**ଡାଇପୁଲ** - *ଗ:* (ବି.) : ପଥ, ଶଗଡ଼ଗୁଳା

**ଡାଇବିରି** - *ପୁ:* (ବି.) : ଉଚ୍ଚସ୍ଥାନରୁ ପାଣିକୁ ଲମ୍ଫ ଦେବା

**ଡାଇମାନ** - *ଗ:* (ବି.) : ତାସଖେଳର ରଙ୍ଗ, ତାସବିଶେଷ, ଠିକିରି

**ଡାଇର୍** - *ନବ:* (ବି.) : ଅଣ୍ଡର୍ ୱେର

**ଡାଇଲାର** - *ରା:* (ବି.) : ଦରଜୀ

**ଡାଇସ୍** - *ଖୋ:* (ବି.) : ବଣିଆ କାମରେ ବ୍ୟବହୃତ ଏକ ଯନ୍ତ୍ର

**ଡାଇସି** - *କଣ:* (ବି.) : ସକାଳ

**ଡାଇହଣା** - *ଗ:* (ବି.) : ଖରାପଲୋକ, ଅନିଷ୍ଟକାରୀ

**ଡାଉଡ଼ି** - *କଣ:* (ବି.) : ବାଡ଼ି

**ଡାଉଣି** - *ଜ:ନ:* (ବି.) : ବଳଦ ଯୋଚା ଦଉଡ଼ି, ବଳଦ ବା ପୋଡୁଅଙ୍କୁ ଶସ୍ୟ ଅମଳପାଇଁ ଏକାଠି ବାନ୍ଧୁଥିବା ପଘା, ଦାଉଣି

**ଡାଭନି ମୁହାଁ** - *ସ.* (ବିଂ.) : ଶୁଖିଲା ମୁହଁ

**ଡାଭଁବାଭଁ** - *କ.* (କ୍ରି.ବିଂ.) : ଅଡୁଆ କରି କହିବା, ଏପଟସେପଟ, ବୁଲେଇ ବଙ୍କେଇ

**ଡାଭଁରେଇବା** - *ଗ.* (କ୍ରି.) : ଘୂର୍ଣ୍ଣିର ମନ୍ଥର ଗତି

**ଡାଭଁଶ** - *ଦେ.ନ.* (ବି.) : କୁକୁରିମାଛି, ରକ୍ତପାୟୀ ମାଛି, ଡାଆଁଶ

**ଡାଏଭର୍** - *ସ.* (ବି.) ଡ୍ରାଇଭର, ଗାଡ଼ିଚାଳକ

**ଡାଏଲ୍** - *କଳା.* (ବି.) : ଡାଲି

**ଡାକ** - *ଅନେ.* (ବି.) : ଡାକିବା, ଡାକଘର ସେବା, ଚିଠି ପତ୍ର ଆଣୁଥିବା ଲୋକ

**ଡାକ୍‌ଦର୍** - *କଳା.* (ବି.) : ଡାକ୍ତର, ଚିକିତ୍ସକ

**ଡାକ୍‌ନି** - *ସ.* (ବି.) : ଢାଙ୍କୁଣି

**ଡାକ୍‌ବଜ୍ଜା** - *ଗ.କଳା.* (ବିଂ.) : ପ୍ରସିଦ୍ଧ, ସୁଖ୍ୟାତି, ଜଣାଶୁଣା, ସୁପରିଚିତ

**ଡାକପାଣି କରିବା** - *ଅ.* (କ୍ରି.) : ଗୁଣିଆ ଦ୍ୱାରା ବଶୀଭୂତ କରିବା

**ଡାକବଙ୍ଗଳା** - *ଦେ.ସ.* (ବି.) : ବିଶ୍ରାମାଗାର, ସରକାରୀ କର୍ମଚାରୀଙ୍କ ଗସ୍ତକାଳର ରହଣିସ୍ଥଳ

**ଡାକବଜ୍ଜା** - *ଗ.* (ବିଂ.) : ବିଖ୍ୟାତ, ସୁପରିଚିତ ବ୍ୟକ୍ତି

**ଡାକବାଜିଯନ୍ତ୍ର** - *ଅନେ.* (ବି.) : ମାଇକ୍, ଧ୍ୱନିବର୍ଦ୍ଧକ ଯନ୍ତ୍ର

**ଡାକରା ପାଳି** - *ଗ.* (ବି.) : ଝିଅ ଶାଶୁଘରକୁ ଯିବାପରେ ପ୍ରଥମ ଥର ମା' ଘରକୁ ନିମନ୍ତ୍ରଣ

**ଡାକିନେ** - *ରା.* (କ୍ରି.) : ଚାଲିବା

**ଡାକିରି** - *ଗ.* (ବି.) : ଯତ୍ନ, ଜଗୁଆ

**ଡାକୁ** - *ଅନେ.* (ବି.) : ଜଣାଶୁଣା, ପ୍ରଖ୍ୟାତ, ପ୍ରବଞ୍ଚକ, ଡକାୟତ

**ଡାକୁଆ** - *ନ.ମା.କେ.ଗଦ୍ୟ.* (ବି.ବିଂ.) ଭଣ୍ଡାରୀଙ୍କ ସାଙ୍ଗିଆ, ଡାକ ପକାଇ ଡାକିବା, ବାରିକ

**ଡାକୁଣୀ** - *ଦେ.* (ବି.) : ଡାକିନୀ, ଡାଆଣୀ

**ଡାକୁରା** - *ରା.* (ବି.) : ଡାକିବାକୁ ଆସିଥିବା ଲୋକ

**ଡାକେବାଟ** - *ଅନେ.* (ବି.ବିଂ.) : ଖଣ୍ଡେ ଦୂର, ଡାକିଲେ ଶୁଭୁଥିବା ଦୂରତା

**ଡାଗରା** - *ଅନେ.* (ବି.) : ବଡ଼ ଡିଙ୍ଗା ଉକୁଣି

**ଡାଙ୍କିରି** - *ରା.* (ବି.) : ଟାଙ୍ଗରା ଜମି

**ଡାଙ୍କୁଣୀଗୋଳ** - *ଗଦ୍ୟ.* (ବି.) : ହଇଜା

**ଡାଙ୍କୁବା** - *ରା.* (ବି.) : ଛଞ୍ଚାଣ

**ଡାଙ୍ଗ** - *ଅନେ.* (ବି.ବିଂ.) : ବାଡ଼ି, କାଣ୍ଡ, ଛୋଟ ବାଉଁଶ ଦଣ୍ଡ, ଖଇ ପାଗିବା

**ଡାଙ୍ଗ୍‌ଗୁଡ଼ି** - *ସ.* (ବିଂ.) : ଗୋଡ଼ ଲମ୍ବା ଥିବା ସ୍ତ୍ରୀ

**ଡାଙ୍ଗ ଗଡ଼ା** - *ଝା.* (ବି.) : ଶରୀର ଭାରସାମ୍ୟ ରଖିବାର ଏକ ଖେଳ

**ଡାଙ୍ଗଡ଼ା** - *ସ.* (ବି.) : ଖେଳବିଶେଷ

**ଡାଙ୍ଗଡ଼ି** - *ରା:* (ବି.) : ଯୁବତୀ, ଧାଙ୍ଗିଡ଼ୀ

**ଡାଙ୍ଗତା** - *ରା:* (ବି.) : ନୌକା, ଡଙ୍ଗା

**ଡାଙ୍ଗଦେଖା ଅମାବାସ୍ୟା** - *ଗ:* (ବି.) : ଦୀପାବଳି ଅମାବାସ୍ୟା

**ଡାଙ୍ଗରା** - *ଗ:ରା:* (ବି.) : ବାଉଁଶ ନିର୍ମିତ ପାତ୍ର, ଖବର ପ୍ରଚାରକାରୀ

**ଡାଙ୍ଗରା ଫାଟିବା** - *କୋ:* (କ୍ରି.) : ଅତି ଖରାରେ ଭୂଇଁ ଫାଟିଯିବା

**ଡାଙ୍ଗଳା** - *ରା:* (ବି.) : ବାଉଁଶିଆ

**ଡାଙ୍ଗ ହୋଇଯିବା** - *ସ:ପୁ:* (କ୍ରି.ବି.) : ମରିଯିବା, ନିଶ୍ଚଳ ହୋଇଯିବା

**ଡାଙ୍ଗିଆ** - *କ:କୋ:ନ:* (ବି.) : କାମଡ଼ାକୁ ଶକ୍ତ କରିବା ଲାଗି ବ୍ୟବହୃତ ଡାଙ୍ଗ, ଓଲିଆ ଗାଈର ବେକରେ ଝୁଲା ଯାଇଥିବା ଛୋଟ କାଠଗଡ଼

**ଡାଙ୍ଗିର ବିଲ** - *ଟି:* (ବି.) : ଉଚ୍ଚବିଲ

**ଡାଙ୍ଗୁ** - *ରା:* (ବି.) : ବାଡ଼ି

**ଡାଙ୍ଗୁଆ** - *କେ:* (ବି.) : ଗାଁ ଜଗୁଆଳି

**ଡାଙ୍ଗୁଆ ଘର** - *ଟି:* (ବି.) : ଛୋଟ ପରିବାର

**ଡାଙ୍ଗେନ୍** - *ସ:* (ବି.) : ଗାଳି ବିଶେଷ

**ଡାଙ୍ଗ୍, ଡାଙ୍ଗି** - *ସୁବ:* (ବି.) : ଶାଖା ନଥିବା ଛୋଟ ସରୁ କାଠି

**ଡାଠାଁ କଁକରା** - *ନୂ:* (ବି.) : ପଥର ଖୋଳରେ ରହୁଥିବା ବଡ଼ କଙ୍କଡ଼ା

**ଡାହୁ** - *କନ୍ଧ:* (ବି.) : ବାହୁରୀ

**ଡାଢ଼ି** - *ସ:* (ବି.) : ଦାଢ଼ି, ଗାଲରେ ବାଳ

**ଡାଣ୍** - *ନୂ:* (ବି.) : ଦାଣ୍ଡ, ଖୁଏଲ୍

**ଡାଣି** - *କଳା:* (ବି.) : ଦାଣ୍ଡି, ଶଗଡର ଦଣ୍ଡା

**ଡାଣ୍ଡା** - *ନବ: ମା:କୋ:* (ବି.) : ଆଖୁ

**ଡାଫଣ** - *ଅନେ:* (ବି.) : ସିଲେଇ ପାଇଁ ବ୍ୟବହୃତ ବଡ଼ ଛୁଞ୍ଚି ବା ଡାମଣ

**ଡାବ** - *ଅନେ:* (ବି.) : ଖୁବ୍ ବଡ଼ କରଚୁଲି, ପଇଡ଼, ବଡ଼ ଡଙ୍କା, ଅଟକଳ, ଲାଞ୍ଚ, ତାଲିକା,

**ଡାବ୍ବାର** - *ସୁବ:* (କ୍ରି.) : ଘୋଡ଼ାଇଦେବା

**ଡାବ୍ରି** - *ପଦ୍ମ:* (ବି.) : ଚୈତ୍ରପର୍ବ ନାଚରେ ଧରିବା ଛତ୍ରି

**ଡାବଖଡ଼** - *କଳା:* (ବି.) : ମୁନିଆଁ ଲମ୍ବ ଘାସ, ଏହାର ପତ୍ର ମୋଟା ଓ ଧାରୁଆ, ଏକ ପ୍ରକାର ଛଣ

**ଡାବଖଣ୍ଡା** - *ଗ:* (ବି.) : ଦୁଇପଟେ ଧାରଥିବା ଖଣ୍ଡା

**ଡାବର** - *ଦେ:* (ବି.) : ରାଳ, ଆଲକାତରା

**ଡାବା** - *ଅନେ:* (ବି.) : ଡବା, ବଡ଼ଟିଣ, ମିଛକଥା, କାଠ, ଟିଣ ବା ପ୍ଲାଷ୍ଟିକ ଆଦି ଦ୍ୱାରା ନିର୍ମିତ ଆଧାର

**ଡାବାମରା** - *ଦେୌ:* (ବିଂ.) : ମିଛକୁହା, ଯେ ମିଛକହେ

**ଡାବାଲ୍** - *କଳା:* (କ୍ରି.) : ଚାପଡ଼ ପିଟିବା, କବାଟ ଦେଇଦେବା, ବନ୍ଧର ପାଣିକୁ ଡେଇଁବା, ଉତ୍ପନ୍ନ ଶବ୍ଦ

**ଡାବି** - *ମା:କଳା:* (ବି.) : ଦୀପ, ଡିବରି, ଡବା

**ଡାବିଦେବା** - *କଳା:କନ୍ଧ* (କ୍ରି.) : ଘୋଡ଼େଇ ଦେବା

**ଡାବିଲିଭିବା** - *ଗ:* (କ୍ରି.) : ଅନ୍ଧାର ହେବା

**ଡାବୁ** - *ଅନେ:* (ବି.) : ବାଢିବା ଯନ୍ତ୍ର ବିଶେଷ, ବଡ଼କରଛୁଲି, ଧନ, ପଇସା, କୃତ୍ରିମ ଆଡ଼ମ୍ବର ପ୍ରଦର୍ଶନ

**ଡାବୁଆ** - *ଗ୍ୱା:* (ବି.) : ବଡ଼ଡଙ୍କି

**ଡାବୁଗୁଡୁ** - *ସୁବ:* (ବି.) : ମୁଣ୍ଡରୁ ପାଦଯାଏ ଢାଙ୍କିହେବା

**ଡାବୁ ବାନ୍ଧିବା** - *ମା:* (ବି.) : ଢୋରିମାନା

**ଡାମରା** - *ଦେ:* (ବି.) : ଏକ ପ୍ରଜାତିର କାଉ, କାଠ ମଝିରେ କୀଳା (ଶକ୍ତ ହେବା ପାଇଁ)

**ଡାମାଜି** - *ଗ:* (ବି.) : ନଷ୍ଟ

**ଡାମୁର୍** - *କଳା:* (ବି.) : ପିଚୁ, ଆଲକାତାରା, ଡାମ୍ବର

**ଡାମ୍ଫ** - *ଗ:* (ବି.) : ବାଦ୍ୟବିଶେଷ

**ଡାମ୍ଫଣ** - *ମା:କେ:ନ:* (ବି.) : ବଡ଼ ଲୁହାଛୁଞ୍ଚି, କନ୍ଥା କିମ୍ବା ଅଖାସିଲେଇ ଛୁଞ୍ଚି

**ଡାମ୍ଫୁଣିଆ** - *ଭ:* (ବି.) : ଘାସ ବିଶେଷ

**ଡାର୍** - *ମ:* (ବି.) : ଡାଳ

**ଡାର୍‌ହା** - *ଚୌ:* (ବି.) : ଡରକୁଳା

**ଡାଲ୍‌କୁବ୍‌ରା** - *ଚୌ:* (ବି.) : ମାଙ୍କଡ

**ଡାଲ୍‌ଖାଇ** - *ଅନେ:* (ବି.) : ସମ୍ବଲପୁରର ପ୍ରସିଦ୍ଧ ନୃତ୍ୟ, ଏକପର୍ବ

**ଡାଲ ଉଦ୍‌ରାବା** - *ସ:* (କ୍ରି.) : ଡାଳ କାଟିବା

**ଡାଲ କଲେଦ୍** - *ସ:* (ବି.) : ଏକ ପ୍ରକାର ଡାଳରେ ରହୁଥିବା ସାପ

**ଡାଲା** - *ଅନେ:* (ବି.) : ବାଉଁଶବୁଣା ଚାଙ୍ଗୁଡ଼ି, ପାଚିଆ, ବାଉଁଶ ପାଡିଆରେ ତିଆରି ବଡ଼ ଝୁଡ଼ି, ଟ୍ରଲି, ଟ୍ରକ୍ ଆଦିରେ ଜିନିଷ ପରିବହନର ଆଧାର

**ଡାଲି** - *ଅନେ:* (ବି.) : ଖାଦ୍ୟବିଶେଷ, ହରଡ଼, ମୁଗ ବିରିର ଫାଳ, ଛାଇ, ଗୋରୁମାନଙ୍କୁ କୁଣ୍ଡା ଦିଆଯାଉଥିବା ବାଉଁଶ ଖଡ଼ିକାର ଓ ପାଟିର ପାତ୍ର

**ଡାଲିଆ** - *ସୁ: ଚୌ:* (ବି.) : ଗୋ ଖାଦ୍ୟ ପରିବେଷଣ ଡାଲା, ଓସାରିଆ ବାଉଁଶ ବୁଣା ପାତ୍ର, ଫୁଲଗଛବିଶେଷ

**ଡାଲିମ୍** - *ନୂ:ସ:କଳା:* (ବି.) : ଡାଳିମ୍ବ

**ଡାଲୁ** - *କ:* (ବିଂ.) : ଗଡ଼ାଣିଆ, ଢାଲୁ

**ଡାଲୁ** - *ଗୀ:* (କ୍ରି.) : ଘୋଡାଇବା

**ଡାଲୁଆ** - *ସୁବ:* (ବି.) : ଡାଲୁଅ, ଦୁଇଫସଲି ଚାଷ

**ଡାଢଖାଇ** - *ନ:ଦେ:* (ବି.) : ଜଙ୍ଗଲ ରାସ୍ତାରେ ଥିବା ଦେବୀ, ବଣଦେବୀ, ପଶ୍ଚିମ ଓଡ଼ିଶାରର ଗୀତ ଓ ନାଚବିଶେଷ

**ଡାଢଚିନି** - *ଅନେ:* (ବି.) : ଗଛ ଛେଲିର ଏକ ମସଲା

**ଡାଢମାକୁଡ଼ି** - *ଅନେ:* (ବି.) : ପିଲାମାନଙ୍କ ଖେଳ ବିଶେଷ

**ଡାଳି** - *ଅନେ:* (ବି.) : ଆଦିବାସୀ ମାନଙ୍କ ପଶୁଶିକାର, ଡାଳଲତା, ଚିତ୍ରବିଚିତ୍ର, ଛୋଟ, କୁଟକମ, ଶିଳ୍ପକଳାର କାରୁକାର୍ଯ୍ୟ

**ଡାଳିମହୁ** - *ଗ:* (ବି.) : ଗଛ ଡାଳରେ ହୋଇଥିବା ଫେଣାର ମହୁ

**ଡାଳୁଆ** - *ଅନେ:* (ବି.) : ଖରାଦିନେ ଜଳସେଚନ କରି ଚାଷ ହେଉଥିବା ଧାନ, ଗଛରେ ରହୁଥିବା ଏକପ୍ରକାର ସାପ

**ଡାହ** - *ଗଦ୍ୟ:ଅ:ନ:* (ବି.କ୍ରି.) : ଶବ ସଂସ୍କାର, ଦାହ କରିବା

**ଡାହା** - *ନ:ନବ:କେ:* (ବି.ବିଂ.) ଅତି ଉତ୍ତାପରେ ଦେହ ପୋଡ଼ିବା, ଅତ୍ୟଧିକ, ସମ୍ପୂର୍ଣ୍ଣ

**ଡାହାଙ୍ଗିରି** - *ଅନେ:* (ବି.) : ମାଛ ବିଶେଷ

**ଡାହାଣା** - *ପୁ:କେ:ନ:* (ବିଂ.) : ଲୋଭାସକ୍ତ, ଖାଦ୍ୟ ଆଶାୟୀ

**ଡାହାଣିଆ** - *ଜ:ଖୋ:* (ବିଂ.ବି.) : ହଳ କିମ୍ବା ବେଙ୍ଗଳାର ଡାହାଣପାଖ ବଳଦ, ସନ୍ଧ୍ୟା ପୂର୍ବର କଅଁଳ (ଖରା)

**ଡାହାନୀ** - *ଗୌ:* (ବି.) : ଡାଆଣୀ

**ଡାହା ମିଛ** - *ଜ:କେ:ଦେ:ଜ:* (ବିଂ.ବି.) : ଡୁଚ୍ଛା ମିଛ କଥା

**ଡାହାଳିଆ** - *ଅ:* (ବିଂ.) : ଡେଙ୍ଗା, ଦୁର୍ବଳ

**ଡାହାଁକ୍ବା** - *ନୂ:* (କ୍ରି.) : ଡେଇଁବା

**ଡାହାଁକି ବୁଲିବା** - *ନୂ:* (କ୍ରି.) : ଡିଆଁ ମାରିବା

**ଡାହି** - *ଅନେ:* (ବି.ବିଂ.) : ଶାଖା, ପଡ଼ିଆ ଜମି, ଛୋଟଡାଳ

**ଡାହିଆ** - *ବା:* (ବି.) : ବଡ଼ ଜନ୍ଦା

**ଡାହି ପଖୁରା** - *ଗୌ:* (ବି.) : ଶାଖା ପ୍ରଶାଖା, ଡାଳପତ୍ର

**ଡାହିହେବା** - *ଗୌ:* (କ୍ରି.) : ଅତ୍ୟଧିକ ପୋଡ଼ିଯିବା

**ଡାହୁକ** - *ଅନେ:* (ବି.) : ରଥ ଗୀତ ଗାଏ ଡାହୁକ, ପକ୍ଷୀବିଶେଷ, କୁମ୍ଭାଟୁଆ

**ଡାହୁକା** - *ଅ:ଗା:* (ବି.) : ପୋଲିଓ ଗୋଡ଼ ଆକ୍ରାନ୍ତ ବ୍ୟକ୍ତି, କୁମୁଟିକାଉ, କୁମ୍ଭାଟୁଆ

**ଡାହୁଣି** - *ବା:* (ବି.) : ବେଙ୍ଗଳା ସମୟରେ ଯୋଚା ଯାଉଥିବା ଦଉଡ଼ି, ଦାଉଣି

**ଡାଁକିଆ** - *ବର:* (ବି.) : ଶେଉଳ ମାଛ

**ଡାଁଙ୍ଗରମା** - *ମ:* (ବି.) : ନାଡୁକା

**ଡାଁଡ଼** - *ଖ:* (ବି.) : ଦାଣ୍ଡ

**ଡାଁଣେ** - *ସ:* (ବି.) : ଦାଣ୍ଡରେ

**ଡାଂଗ୍ରୋଟ୍** - *କଳା:* (ବିଂ.) : ବଡ଼ମୋଟା

**ଡାଂଗ ଉପାସ** - *ଗଦ୍ୟ:* (ବିଂ.) : ନିର୍ଜଳା

**ଡାଂଗିଆ** - *କଳା:* (ବି.) : କୌଣସି ଦଣ୍ଡର ମଧ୍ୟଭାଗରେ ଓଜନିଆ ଜିନିଷକୁ ରଖି ତା'ର ଦୁଇ ପ୍ରାନ୍ତକୁ ଦୁଇଜଣ କାନ୍ଧେଇ ନେବା ପ୍ରଣାଳୀ

**ଡାଂଚଢ଼ା** - *ରା:* (ବି.) : ଯୁବକ

**ଡାଂହୁ** - *କଣ:* (ବି.) : ରାସ୍ତା

**ଡାଂପେଣ(ନ୍)** - *କନ୍ଧ:* (ବି.) : ଡାମ୍ପଣ, ବସ୍ତାଦି ସିଲାଇବା ମୋଟା ଛୁଞ୍ଚି

**ଡିଆଚିରା** - *ଝା:* (କ୍ରି.) : ଡେଇଁଡେଇଁଯିବା

**ଡିଆସିଲି** - *ଦେ:* (ବି.) : ନିଆଁପେଡ଼ି

**ଡିଆସୁ** - *ଯା:* (ବି.) : କୁମ୍ଭାଟୁଆ

**ଡିଆଁ** - *କନ୍ଧ:* (ବି.) : ଏରୁଣ୍ଡି ବନ୍ଧ, ଉଇ

**ଡିଆଁପୋକ** - *ଦେ:* (ବି.) : ଉଇ

**ଡିଆଁଲାଗିଯିବା** - *ସ:* (କ୍ରି.) : ଉଇ ଖାଇଯିବା

**ଡିକାସିନି** - *ଗ:* (ବି.) : ଚାହା ପତ୍ରର ସିଝାପାଣି

**ଡିକି** - *ରା:ଦେ:* (ବି.) : ଗଣ୍ଡଗୋଳ ପାଇଁ ଆହ୍ୱାନ, ମଟର ସାଇକେଲ୍‌ରେ ଥିବା ଜିନିଷରଖା ବାକ୍ସ

**ଡିଗ୍ରା** - *କନ୍ଧ:* (ବି.) : ଉଚ୍ଚସ୍ଥାନ, ଢିପ

**ଡିଗରେଇ** - *ବର:* (ବି.) : ତାସର ଏକ ଖେଳ

**ଡିଗ୍ରୀ** - *ରା:ଦେ:* (ବି.) : ଅଦାଲତର ସପକ୍ଷ ହୁକୁମ, କୋଣମାପ, ଉତ୍ତାପ ମାପ

**ଡିଙ୍ଗ୍‌ଗ୍ରମାରିବା** - *ଗୌ:ସ:* (ବି.କ୍ରି.) : ଉଦ୍ଧତ, ଅହଂକାରୀ, ଦେଖେଇ ହେବା

**ଡିଙ୍ଗର** - *ଗ:ବର:ଦେ:* (ବି.) : ବଣପାହାଡ଼, ଟାଙ୍ଗର ଭୂମି, ଶଠ, ଠକ

**ଡିଙ୍ଗରା** - *ସୁନ:* (ବି.) : ଧଣ୍ଡୁରା

**ଡିଙ୍ଗଲା** - *ମ:* (ବି.) : ବୋଇତି କଖାରୁ

**ଡିଙ୍ଗା** - *ଅନେ:* (ବିଂ.ବି.) : ସହଜରେ ରାଗିବା (ବ୍ୟକ୍ତି), ବଡ଼ଉକୁଣି, ଉପନିବେଶ

**ଡିଙ୍ଗାରିହେବା** - *ପଦ୍ୟ:କୋ:* (କ୍ରି.) : ଛାଟିପିଟି ହେବା, ଗୋଡ଼ହାତ ସିଧାକରି ଆଉଜିବା

**ଡିଡ଼ାର** - *ଝା:* (ବି.) : ରାଜାଙ୍କ ଜମି ଓ ଗୋରୁର ଦାୟିତ୍ୱ ନେଉଥିବା ବ୍ୟକ୍ତି

**ଡିଡଇ** - *ଚ:* (କ୍ରି.ବିଂ) : ପାଦର ଆଂଗୁଠିରେ ଭରାଦେଇ ଛିଡାହେବା

**ଡିଡ଼ା** - *ସୁନ:* (ବିଂ.) : ଅବିବାହିତ ଯୁବକ

**ଡିଡ଼ିହେବା** - *ଗୌ:ଝା:କନ୍ଧ:* (କ୍ରି.) ପାଦଅଗରେ ଛୁଆ ଠିଆ ହେବା

**ଡିଣା** - *ଗ:ସ:* (ବି.ବିଂ.) : ପାନ ରଖିବା ପାତ୍ର, ଧାନମାପିବା ପାତ୍ର, ଅବିବାହିତ

**ଡିଣ୍ଡା** - *ଦେ:କେନ୍ଦୁ:ଗୌ:* (ବି.) : ଅବିବାହିତ ପୁରୁଷ ବା ସ୍ତ୍ରୀ, ବାପଘରୁ ଆଣିଥିବା ଟଙ୍କା ପଇସା/ଧାନ ଚାଉଳ ନିଜ ନାଁରେ ରଖିବା, ଏଥିରୁ ଅନ୍ୟ କେହି ବ୍ୟକ୍ତି ବିଶେଷ ନେଇ ପାରନ୍ତି ନାହିଁ

**ଡିଣ୍ଡା** - *ନବ:* (ବି.) : ଯୁବତୀ

**ଡିଣ୍ଡିମପିଟିବା** - *ସଂ:* (କ୍ରି.) : ପ୍ରଚାର କରିବା, ନିଜ ପ୍ରଶଂସା ନିଜେ ଗାଇବା

**ଡିଣ୍ଡିର** - *ଦେ:* (ବି.) : ଫେଣ, ଫେମ

**ଡିନଡିନକ** - *ଦେ:* (ବି.) : ପକ୍ଷୀମାନଙ୍କର ଗତି, ଉଡିଗଲା ଚଢେଇର ପେଟକଥା ଜାଣେ

**ଡିପେଣି** - *କନ୍ଧ:* (ବି.) : ଛୋଟ ଚଦର

**ଡିପୋ** - *ଦେ:* (ବି.) : ଭଣ୍ଡାର, ଗୋଦାମ

**ଡିବା** - *ଅନେ:* (ବିଂ.ବି.) : ଛୋଟଡବା, ଛୋଟ ଆଟିକା, ଡିବିରିବତୀ

**ଡିବି** - *ଅନେ:* (ବି.) : ଛୋଟ ମାଟିହାଣ୍ଡି, ସକାଳଓଳି ଶ୍ରମିକମାନେ ଓ କୃଷକମାନେ ବିଲରେ ଖାଉଥିବା ବାସିପଖାଳ, କିରାସିନି ଦୀପ, ଡିବିରି

**ଡିବିଖିଆ** - *କଳା:* (ବି.) : ସକାଳ ଜଳଖିଆ ସମୟରେ ଶିଶୁମାନଂକୁ ଖୁଆ ଯାଉଥିବା ସଜଭାତ

**ଡିବିଡିବି** - *ଅନେ:* (ଅ.) : ନାଗରା, ଡମ୍ବରୁ ବାଜିବାର ଶବ୍ଦ, ଡିଣ୍ଡିମ ଶବ୍ଦ, ଅପପ୍ରଚାର

**ଡିବିଡିବିହେବା** - *ସଂ:* (କ୍ରି.) : ଚାରିତ୍ରିକ ଦୋଷଗୁଣ ପ୍ରଚାର ହେବା, ଦୁର୍ନାମ ପ୍ରଚାରିତ ହେବା

**ଡିବି ଦେବା** - *ଅ:* (କ୍ରି.) : ପୋଡ଼ିଦେବା

**ଡିବିରି** - *ଅନେ:* (ବି.) କିରୋସିନିର ଛୋଟଦୀପ, ଛୋଟ ତୈଳଆଧାର ଉପରେ ଜଳୁଥିବା ବତୀ

**ଡିବେ** - *ନ:* (ବି.) : ଏକ ତୁମ୍ବର ଅଧା, ନଉତିର ୧/୬ ଅଂଶ ଶସ୍ୟମାପିବା ପାତ୍ର

**ଡିଭ** - *କନ୍ଧ:* (ବି.) : ଘରଚଟିଆ

**ଡିମ** - *ଅନେ:* (ବି.) : ଅଣ୍ଡା, ଡିମ୍ବ

**ଡିମା** - *କୋ:ଦେ:ରା:କଳା:* (ବିଂ.ବି.) : ଡିମାକୃତ ହୋଇ ପଦାକୁ ବାହାରିଥିବା, ଆବୁଆବୁଆ, ଫୁଲିଥିବା ଆଖି, ନିର୍ଦ୍ଦିଷ୍ଟ ଓଜନର ଗୁଣ, ଡୋଳା, ଛୋଟ ମାଟିଗଦା

**ଡିମାଇଟ୍** - *ନ:* (ବି.) : ଯୌତୁକ

**ଡିମାକ** - *ସୁବ:* (ବି.) : ଗର୍ବ, ଫୁଟାଣି

**ଡିମାଡିମା** - *କଳା:ରା:* (ବିଂ.ବି.) : ଆଖିକୁ ବଡ ବଡ କରିବା, ଉଚ୍ଚନୀଚ ରାସ୍ତା, ଡିମାଢିମା

**ଡିମ୍ବ** - *ଅ:ଇ:କେ:ଦେ:* (ବି.) : ଅଣ୍ଡା

**ଡିମ୍ବିରି** - *ଯା:ଦେ:* (ବି.) : ଗଛ ଓ ଫଳବିଶେଷ

**ଡିମ୍ଭୁ** - *କନ୍ଧ:* (ବି.) : ଉଇ

**ଡିର** - *ସୁବ:କଳା:ବ:* (ବି.) : ଲତା, ଡଙ୍କ

**ଡିଲ** - *ରା:* (ବି.) : ଭଲ

**ଡିଲରୁ** - *ରା:* (ବି.) : ସରକାରୀ ଦୋକାନ ମାଲିକ

**ଡିଲା** - *କଳା:* (ବି.) : ମଞ୍ଚା, ପତ୍ରରେ ତିଆରି ହୋଇଥିବା ଛୋଟ ବୁଙ୍କୁଳା ଭଳି ଘର ଏଥିରେ ଚଢି ଶିକାର କରାଯାଏ

**ଡିଲି** - *କଳା:* (ବି.) : ଦୁଇ କାନିଆ ଲମ୍ବ କାଠ

**ଡିହ** - *ଅନେ:* (ବି.) : ଘର କରିବା ଜାଗା, ବାସୋପଯୋଗୀ ଭୂଇଁ, ଘରଡିହ

**ଡିହମାରିବା** - *ଅ:ବୌ:ପୁ:* (କ୍ରି.) : ଖୁନ୍ଦିବା, କହୁଣିରେ ମାରିବା, ଧକ୍କା ମାରିବା

**ଡିହା** - *ନ:* (ବିଂ.) : ଅମାନିଆ

**ଡିହାଗାଲୁଆ** - *ପୁ:* (ବି.) : କଥା ନଶୁଣୁଥିବା ଓ ନିରର୍ଥକ ଗାଲୁ ବା ଯୁକ୍ତିତର୍କ କରୁଥିବା

**ଡିହାମାରିବା** - *ନ:* (କ୍ରି.) : ଫୁଲାଫାଙ୍କାଳିଆ ହୋଇ ବୁଲିବା, ମନଇଚ୍ଛା ଏଣେତେଣେ ବୁଲିବା

**ଡିହି** - *ସୁବ:ଦେ:* (ବି.) : ଘରଡିହ, ଡିହ ବା ଉଚ୍ଚଜମି

**ଡିଁଗ୍** - *ଝା:* (କ୍ରି.ବିଂ.) : ନିଜର ବଡ଼ପଣ ଦେଖାଇବା

**ଡିଁଡ଼ା ଠେଙ୍ଗ୍** - *ସ:* (ବି.) ଯାହାର ପିଲା ନାହାଁନ୍ତି

**ଡିଂ ମାରିବା** - *ନୂ:* (କ୍ରି.) : ବାହାବାହା ନେବା, ଫୁଟାଣି

**ଡୁଆ** - *ଅନେ:* (ବି.) : ଚାମଚ, ଛୋଟ ଡାଳ, ପିଲା, ଅଣକା, ପଳା, ଡାଲି ତରକାରି ଆଦି ପରିବେଷଣ କରିବା ଉପକରଣ ବିଶେଷ

**ଡୁଆମାଲି** - *କଳା:* (ବି.) : ଗିନିମାଳି

**ଡୁଆଁ** - *ରା:* (ବି.) : ଭୂତ ପ୍ରେତ ଘରେ ନ ପଶିବା ପାଇଁ ଦିଆଯାଉଥିବା ତାନ୍ତ୍ରିକ ତାବିଜ

**ଡୁଇଁ** - *ଗ:* (ବି.) : ଖେଳରେ ହାରିବା

**ଡୁଇଁହେବା** - *ରା:* (କ୍ରି.) : କଷ୍ଟପାଇବା

**ଡୁକ୍‌କା** - *ରା:ଗଛ:* (ବିଂ.) : ମୋଟା

**ଡୁକ୍‌ରୀ** - *କଳା:* (ବି.) : ଲୋକ ଦେବୀ ବିଶେଷ, ଗ୍ରାମଦେବୀ ବିଶେଷ

**ଡୁକରା** - *ରା:* (ବିଂ.) : ଅଣ୍ଡିରା

**ଡୁକା** - *ଅନେ:* (ବି.ବିଂ.) ମୋଟା, ପୃଥୁଳକାୟ, ଡୋକା, ଡୋକିବା, ପିଇବା

**ଡୁକିରୀ** - *ରା:* (ବି.) : ମାଇକିନା, ସ୍ତ୍ରୀଲୋକ

**ଡୁକୁଇ** - *ଢେ:* (ବି.) : ବେଙ୍ଗ

**ଡୁକେଇଠୁକେଇ** - *ଚୌ:* (ବି.) : ବାଡ଼ିଧରି ଯିବା

**ଡୁଖା** - *ରା:* (ବିଂ.) : ରୋଗଗ୍ରସ୍ତ

**ଡୁଗା** - *ଗ:* (ବି.) : ଭୂତପ୍ରେତ

**ଡୁଗାଦବା** - *ଚ:* (କ୍ରି.) : ହିଡ଼ ଦେବା

**ଡୁଗି** - *ଢେ:ରା:* (ବି.) : ବାଇଁଆ, ତବଲା ସହ ବାଦ୍ୟ

**ଡୁଗିଦଣ୍ଡା** - *ଖୋ:* (ବି.) : ଡାଗର ପୁଆଖେଳ

**ଡୁଗୁଡୁଗୁ** - *ରା:* (କ୍ରି.ବିଂ.) : ବାରମ୍ବାର

**ଡୁଗୁରି** - *ଚ:* (ବିଂ.) : ମୁଖରା

**ଡୁଗୁରୀ** - *ଗଦ୍ୟ:* (ବିଂ.) : ଗେଡ଼ୀ, ଛୋଟ, କ୍ଷୁଦ୍ର

**ଡୁଙ୍ଗି** - *ଚ:* (ବି.) : ପାନ ବରଜରେ ଜୁଣ ବାନ୍ଧିବା ପାଇଁ ନୌକାପରି ଦରକାର ହେଉଥିବା ବାଉଁଶ

**ଡୁଙ୍କୁରା** - *ରା:* (ବିଂ.) : ନିନ୍ଦୁଆ

**ଡୁଙ୍ଗଡୁଙ୍ଗା** - *ମା:* (ବି.) : ବାଦ୍ୟଯନ୍ତ୍ର ବିଶେଷ

**ଡୁଙ୍ଗବାର** - *ସୁବ:* (କ୍ରି.) : କାନ୍ଥକଣା, କବାଟ ଫାଙ୍କ ବା ଅନ୍ୟ କେଉଁ ଜାଗାରୁ ଚୋରାରେ ଦେଖିବା

**ଡୁଙ୍ଗରି** - *ସ:ମ:କଳା:* (ବି.) : ଛୋଟ ପାହାଡ଼, ପାହାଡ଼ିଆ ଜାଗା, ଟୁଙ୍ଗିରି, ମୁଣ୍ଡିଆ, ପାହାଡ଼, ଛୋଟ ପାହାଡ଼

**ଡୁଙ୍ଗି** - *ପୁ:ସୁ:* (ବି.) : ନଡ଼ିଆ ବା ତାଳ ଗଛର ଗଣ୍ଡିରେ ଖୋଳାଯାଇ ତିଆରି ହୋଇଥିବା ଏକ ପ୍ରକାର ଡ଼ଙ୍ଗା, ଗୋରୁ ପାଇଁ ପାଣିପାତ୍ର

**ଡୁଙ୍ଗିଦବା** - *ବା:* (କ୍ରି.) : ଢାଳିଦବା

**ଡୁଙ୍ଗିବା** - *ଅନେ:* (କ୍ରି.) : ଲୁଚିକରି ଚାହିଁବା, ନଇଁକି ଦେଖିବା, ଉଣ୍ଡିବା, ଦେଖିବା, ନିଜକୁ ଗୋପନରେ ରଖି ଦେଖିବା

**ଡୁଙ୍ଗୀ** - *ଗଦ୍ୟ:* (ବି.) : ତନ୍ତରେ ବୁଣିବାପାଇଁ ଭରଣୀ ସୂତା ଗୁଡ଼ା ହୋଇଥିବା କାଠି

**ଡୁଙ୍ଗୁଡୁଙ୍ଗୁ** - *ରା:* (ବିଂ.) : ଡରବର

**ଡୁଙ୍ଗୁରୀ** - *ବୌ:* (ବି.) : ଛୋଟ ପାହାଡ଼

**ଡୁଙ୍ଗୁରେଇବା** - *ମା:* (କ୍ରି.) : ଡୁଳାଇବା

**ଡୁଙ୍ଠା** - *ସୁବ:* (ବି.) : ଘର ବାରଣ୍ଡା, ଏଠାରୁ ଚାରି ଆଡିକୁ ଦୃଷ୍ଟି ପାଉଥାଏ

**ଡୁଡ୍‌କା** - *ସୁବ:* (ବି.) : ତରଡ଼ା

**ଡୁଡ୍‌ଙ୍ଗୀ** - *କଳା:* (ବି.) : ବାଉଁଶ ପାତିଆ ବା ଖଡ଼ିକାରେ ନିର୍ମିତ ବୃହଦାକାର ପାତ୍ର

**ଡୁଡମା** - *କଳା:* (ବିଂ.) : ମାନ୍ଦା, ଅପ୍ରସନ୍ନ ଭାବ

**ଡୁଡୁ** - *ଅନେ:* (ବି.) : ଏକପ୍ରକାର ଖେଳ, କବାଡ଼ି ଖେଳର ଏକ ରାହା ରଖା ସ୍ୱର

**ଡୁଡୁକା** - *ଦେ:ସୁ:କଝ:* (ବି.) : ଏକ ପ୍ରକାର ପରିବା, ଜହ୍ନି ଜାତୀୟ, ତରଡ଼ା

**ଡୁଡୁକୁ** - *କଝ:* (ବିଂ.) : ତିନି

**ଡୁଡୁବଗା** - *ଝା:* (ବି.) : ଏକ ମାଂସାଶୀ ପ୍ରାଣୀ

**ଡୁଡୁମ୍** - *ବର:ସ:ନୂ:* (ବି.) ବୋକା, ମାଛବିଶେଷ

**ଡୁଡ଼ି** - *କଝ:* (ବି.) : ମୁଗୁରା ଜାତୀୟ ଯନ୍ତ୍ର

**ଡୁଢା** - *ବୌ:ସୁବ:* (ବି.) : ପାଣିଥିବା ଗାତ, ଖାଲ ଜାଗା

**ଡୁଣା** - *କଝ:* (ବି.) : ବାଡ଼ି

**ଡୁନକ୍** - *ପଦ୍ୟ:* (ବି.) : ଫାଶ

**ଡୁନା** - *କଳା:* (ବି.) : ବନ୍ଧୁକ, ନଳୀ

**ଡୁପେଇବା** - *କଳା:* (କ୍ରି.) : ଲୁଚିକରି ଡୁଂଗିବା

**ଡୁବ** - *କେନ୍ଦୁ:ଦେ:କୋ:ରା:* (ବି.) : ଗୋଟିଏ ସ୍ଥାନରେ ଜମା ହୋଇଯିବା, ବୁଡ଼, ପାଣିଥିବା ଖାଲୁଆ ଜାଗା

**ଡୁବ୍‌କି** - *ବର:* (କ୍ରି.) : ବେଦା ଖେଳିବାର ପ୍ରକ୍ରିୟା ବିଶେଷ, ବୁଡ଼ିବା

**ଡୁବ୍‌ଡୁବି** - *କଳା:* (ବି.) : ତବଲା ଭଳି ଚର୍ମ ଆଚ୍ଛାଦିତ ଛୋଟ ବାଦ୍ୟଯନ୍ତ୍ର

**ଡୁବ୍‌ଲା** - *କୋ:* (ବି.) : ବଡ଼ ଦନା, ପତ୍ରରେ ତିଆରି ଆଧାର ବିଶେଷ

**ଡୁବନ** - *ଗ:* (ବି.) : ଖ୍ରୀଷ୍ଟ ଧର୍ମର ଜଳଦୀକ୍ଷା

**ଡୁବମାରିବା** - *ନ:* (କ୍ରି.) : ପାଣିରେ ବୁଡ଼ି ସ୍ନାନ କରିବା

**ଡୁବାଇ** - *ଗ:* (ବି.) : କ୍ଷୁଦ୍ରପାତ୍ର

**ଡୁବି** - *ସୁବ:ସ:* (ବି.) : ଭାଙ୍ଗ (ଧୂଆଁପତ୍ର ଗୁଣ୍ଡ) ରାନ୍ଧିବା ପାଇଁ ଛାଟ ତବା, ବାଦ୍ୟ ବିଶେଷ, ଡୁବି ତବଲା, ଛୋଟତବା

**ଡୁବି ଗଡ଼ିଆ** - *ଅ:* (ବିଂ.) : ଛୋଟ ପୋଖରୀ

**ଡୁବିବା** - *ନ:ଚୌ:* (କ୍ରି.) : ପାଣିରେ ବୁଡ଼ିବା, ସମ୍ପୂର୍ଣ୍ଣ ହତାଶ ହେବା, ବ୍ୟବସାୟ ବୁଡ଼ିଯିବା

**ଡୁବୁଡୁବା** - *ନ:ଗା:* (ବି.) : ଏକ ଯାଯାବର ଶ୍ରେଣୀୟ ଜାତିବିଶେଷ, ସାପଧରା ବ୍ୟବସାୟୀ

**ଡୁବୁରା** - *ଚୌ:ଗା:* (ବିଂ.ବି.) : ପଚାଶଡା, ଅତିରିକ୍ତ ବ୍ୟୟସାଧକ ବ୍ୟକ୍ତି

**ଡୁବୁରି ପଣସ** - *ଗ:* (ବି.) : ଛୋଟପଣସ

**ଡୁବୁଲି** - *ଗ:* (ବି.) : ଛୋଟକାଠଗଡ଼, ପାତ୍ର

**ଡୁଭା** - *ସୁ:ଚୌ:ଦେ:ସୁବ:* (ବି.) : କ୍ଷୁଦ୍ର ଜଳାଶୟ, ଗହୀର ପାଣି ଥିବା ସ୍ଥାନ, ପାଣିଧାର ଶୁଖିଯିବା ପରେ ଖାଲ ଜାଗାରେ ଯେଉଁ ପାଣି ଥାଏ

**ଡୁମ୍** - *ପୁ:ମ:* (ବି.) : ବିଦ୍ୟୁତ୍ ବଲ୍‌ବ, ଡୋମ୍

**ଡୁମ୍‌କା** - *କୋ:* (ବିଂ.) : ଫୁଲି ଉଠିଥିବା, ଇସତ୍ ମୋଟା

**ଡୁମ୍‌ଡା** - *କୋ:ମା:* (ବି.ବିଂ.) : ଫୁଗ୍ଗୁଳା

**ଡୁମ୍ ଫଟାସ୍** - *ଚ:* (ବି.) : ସବୁ କିଛି ବ୍ୟର୍ଥ ହୋଇଯିବା

**ଡୁମ୍‌ରା** - *ଚୌ:ସ:* (ବିଂ.) : ଅତି ଦୁର୍ଗନ୍ଧ, ପଚା, ଏକ ବିଶେଷ ପ୍ରକାର ଦୁର୍ଗନ୍ଧ, ଡିମିରି

**ଡୁମରି** - *ସୁବ:* (ବି.) : ଛୋଟ ବୁଦୁବୁଦିକିଆ ଜଙ୍ଗଲୀ ପାହାଡ଼

**ଡୁମା** - *ଅନେ:* (ବି.) ଭୂତ, ପ୍ରେତ, ମୃତବ୍ୟକ୍ତିଙ୍କ ଆତ୍ମା, ଏକ ପ୍ରକାରର ଗୋବରା ଚଢେଇ, ଆତ୍ମା, ଡାଆଣୀ

**ଡୁମାଲ** - *ସୁବ:* (ବି.) : କୃଷିକାରୀ ଯାଦବ, ଜାତି ବିଶେଷ

**ଡୁମିବା** - *କଳା:* (କ୍ରି.) : ବଡ଼ ଆଧାରରେ ଥିବା ତରଳ ଦ୍ରବ୍ୟକୁ ଛୋଟପାତ୍ରରେ ବୁଡ଼ାଇ ଆଣିବା

**ଡୁମୁଡୁମା** - *ଗା:* (ବି.) : ବଡ଼ ପଥରର ଦେବତା

**ଡୁମୁରା** - *କେନ୍ଦୁ:* (ବିଂ.) : ଫୁଲିଯାଇଥିବା

**ଡୁମୁରି** - *କେନ୍ଦୁ:* (ବି.) : ଏକ ଗଛବିଶେଷ, ଡିମିରି

**ଡୁମେର** - *ଅନେ:* (ବି.) : ଡିମିରି, ଉଦୁମ୍ବର, ଡିମିରି ଫଳ, ଉଦୁମ୍ବର, ଡୁମେର ନାମକ ଲାଲ ରଙ୍ଗର ଦେଶୀ ଧାନ

**ଡୁମ୍‌ଢ଼ା** - *ନବ:* (ବି.) : ଖାଲି ଦେହ

**ଡୁମ୍ରାଭ** *ଚୌ:* (ବିଂ.) : ପଚାସଢା

**ଡୁମ୍ବା ଜଡ଼ା** - *ନବ:* (ବି.) : ଖନା

**ଡୁମ୍ବାଲ** - *ଗା:* (ବି.) : ଛାରଖାର

**ଡୁମ୍ବାଲୁ** - *ଦେ:* (ବି.) : ଗଉଡ ଜାତି

**ଡୁମ୍ବେଇବା** - *ଗଦ୍ୟ:* (କ୍ରି.) : ବୁଡ଼ାଇବା, ଲୋପ କରିବା

**ଡୁର** - *ଗା:ସୁବ:* (ବି.) : ଛୋଟ ସରୁ ଦଉଡ଼ି

**ଡୁରା** - *ବେ:* (ବି.) : ଦଉଡ଼ି, ସୂତା, ଲୁଗା
**ଡୁରି** - *ସୁ:* (ବି.) : ମହୁଲ ଡାଳି
**ଡୁରିଆ** - *ରା:* (ବି.) : ଡଉଁରିଆ
**ଡୁରିତେଲ** - *ସ:* (ବି.) : ମହୁଲ ଫୁଲର ତେଲ
**ଡୁରୁ** - *ସୁ:* (ବି.) : ଅଫୁଟା ଧାନ, ଚାଉଳ
**ଡୁରୁକା** - *ନବ:* (ବି.) : ଗଧିଆ ବାଘ
**ଡୁର୍‌କା** - *ମା:କଳା:କୋ:* (ବି.) ଗଧିଆ ବାଘ, ହେଟାବାଘ, ଚିତାବାଘ
**ଡୁଲ** - *ରା:* (ବି.) : ପ୍ରତିଶୋଧ
**ଡୁଲ୍‌କି** - *ଅ:* (ବିଂ.) : ଢୋଲକି
**ଡୁଲଠା** - *ସୁ:* (ବି.) : ପିଣ୍ଡା
**ଡୁଲା** - *ରା:* (ବି.) : ଶିଶୁ
**ଡୁଲାବାର** - *ସୁବ:* (ବି.) ମାଟିବୋହି ଆଡ଼ିଦେଇ ବିଲ ତିଆରି କରିବା
**ଡୁଲି** - *ଅନେ:* (ବି.) : ବଡ଼କ୍ଷେତ, କିଆରି, ଧାନ ରଖିବା ପାଇଁ ବାଉଁଶରେ ତିଆରି ବଡପାତ୍ର, ଜମିନ, ଧାନ କିଆରି, ଛୋଟ ଶବାରି, ଡୋଲି
**ଡୁଲଂଗୀ** - *କଳା:* (ବି.) : ପତଳା ବାଉଁଶ ପାତିଆ କିମ୍ବା ଖଡ଼ିକାରେ ନିର୍ମିତ ବୃହଦାକାର ପାତ୍ର, ଏଥିରେ ଶସ୍ୟାଦି ଦ୍ରବ୍ୟ ରଖାଯାଏ ବାଉଁଶ ବତାରେ ନିର୍ମିତ ଆୟତାକାର ବୃହତ ପାତ୍ର
**ଡୁଳା** - *ରା:ବ:* (ବି.) : ଲୋକଙ୍କୁ ବୋହିବା ବାଉଁଶିଆ, ଆଖିର ଡୋଳା
**ଡୁଳେଇବା** - *ବ:* (କ୍ରି.) : ଶୁଭକାର୍ଯ୍ୟରେ ମାଟି ହାଣ୍ଡିକୁ ଚାଉଳ ପିଠଉରେ ଚିତ୍ରିତ କରିବା, ଗଛର ଡାଳ କାଟିବା
**ଡୁସା** - *ନବ:* (ବିଂ.) : ମୋଟା
**ଡୁସେଇବା** - *ନୁ:* (କ୍ରି.) : ଦଂଶନ କରିବା
**ଡୁହା** - *କଳ:ସୁବ:ଢ:ବେ:* (ବି.) : ଗୀତ, ଦୋହା, ଘୋଷା ପଦ, ପାଳିଆ ଧରିବା
**ଡୁହୁରି** - *ବୌ:ବେ:ସୁବ:* (ବି.) : ସିଆର, ଆଖୁ ରୋଇଲାବେଳେ କରାଯାଉଥିବା ପଟାଳି
**ଡୁହୁଁକ୍** - *ନୁ:* (ବି.) : ଡାହୁକ
**ଡୁଁଡା** - *ଝା:* (ବିଂ.) : ଯେଉଁ ଗଛରେ ପତ୍ର ନଥାଏ, ଥୁଣ୍ଡା
**ଡୁଁଡୁଆ** - *ବ:* (ବି.) : ଦଣ୍ଡନାଚ ନାଚୁଥିବା ବ୍ୟକ୍ତି
**ଡୁଂଗଡୁଂଗା** - *କଳା:* (ବି.) : ବଡ ବଡ ଲାଉ ତୁମ୍ବାରେ ତିଆରି ଏକ ପ୍ରକାର ବାଦ୍ୟ
**ଡେଉଁରିଆ** - *ଗଜ:ଗ:* (ବି.) : କବଚ, ତାବିଜ
**ଡେକି** - *ସୁ:ମା:* (ବି.) : ମଧ୍ୟମ ମାଠିଆ, ଢିଙ୍କି
**ଡେକିଚି** - *ଅନେ:* (ବି.) : ପାତ୍ରବିଶେଷ, ରୋଷେଇ କରିବା ଆଲୁମିନିୟମ ପାତ୍ର
**ଡେଗ** - *ରା:* (ବି.) : ମାଈ ଶାଗୁଣା
**ଡେଗ୍‌ଚି** - *ବ:* (ବି.) : ଡେକ୍‌ଚି
**ଡେଗ୍‌ବା** - *ଅନେ:* (କ୍ରି.) : ଡେଇଁ ପାର ହେବା, ଲମ୍ଫ ଦେବା

**ଢେଗା ଉଧ୍ଲା** - *ବୌ.* (କ୍ରି.ବି) : ସ୍ଥାନ ଅଦଳ ବଦଳ, ଉଠା ପକା

**ଢେଗାଢ଼େଗି** - *କଳା.* (ବି.) : ଡିଆଁଡେଇଁ

**ଢେଗାନ** - *ଝା.ସୁ.* (ବି.କ୍ରି.) : ଢେଇଁବାର ଆଚରଣ, ଡ଼ିଆଁଦେବା

**ଢେଗା ନଚା** - *ବୌ.* (ବି.) : ନାଚ କୁଦ

**ଢେଗାନି** - *କଳା.* (କ୍ରି.) : ଲୋକ ଖେଳରେ ଡେଗେଇବା ବା ଡେଇଁ (ଅତିକ୍ରମ କରିବା)

**ଢେଗୁ** - *ସୁବ.* (ବିଂ.) ଡେଇଁ ଡେଇଁ ଚାଲୁଥିବା ଲୋକ, ଫୁଟାଣିଆ ଲୋକ

**ଢେଗେଇବା** - *ମା.କୋ.* (କ୍ରି.) : ଡେଇଁବା

**ଢେଙ୍ଗ** - *ଦେ.ବୌ.* (ବି.ବିଂ.) : ଡେଙ୍ଗା, ଉଚ୍ଚ

**ଢେଙ୍ଗରା** - *ରା.* (ବି.) : ଅସ୍ଥାୟୀ ଗୃହ

**ଢେଙ୍ଗରାପିଟା** - *ବୌ.* (ବି.) : ଖୋଲା ପ୍ରଚାର

**ଢେଙ୍ଗା ପୋଟଳ** - *ମା.* (ବି.) : ଛଚିନ୍ଦ୍ରା

**ଢେଙ୍ଗୁଜ୍ୱର** - *ଅ.* (ବିଂ.) : ଠେଙ୍ଗାଜ୍ୱର, ଏକ ରୋଗ

**ଢେଙ୍ଗୁରା** - *କେ.ଦେ.ଢ.ରା.* (ବି.) : ବାଦ୍ୟ ବଜାଇ ଖବର ଜଣାଇବା, ନାଗରା, ଧେଣ୍ଟୁରାବାଦ୍ୟ, ଅସ୍ଥାୟୀ ଅବସ୍ଥିତି

**ଢେଙ୍ଗ୍ ଗୁଡିଆ** - *ବୌ.* (ବି.) : ଡେଙ୍ଗାଲୋକ

**ଢେଟି ଟାକାଙ୍ଗା** - *କଣ.* (ବି.) : ପଇସା ମାଳି

**ଢେଟିପାଡି** - *କଣ.* (ବି.) : ଅଣ୍ଡାପାଡିଆ

**ଢେଡ୍ଙ୍ଗା** - *କଳା.କଣ.* (ବି.) : ନିଶୁଣି, ସିଢ଼ି, ପାହାଚ

**ଢେଡ୍ଶଶୁର୍** - *କଳା.* (ବି.) : ଦେଢଶୁର, ସ୍ୱାମୀଙ୍କ ବଡଭାଇ

**ଢେଡ୍ଶାଶ୍** - *କଳା.* (ବି.) ଦେଢଶାଶୁ, ପତ୍ନୀଙ୍କ ବଡ଼ ଭଉଣୀ

**ଢେଡ଼ିଙ୍ଗକା** - *କଣ.* (ବି.) : ମାଣ୍ଡିଆ ଢାଉ

**ଢେଢି** - *ସ.* (ବି.) : ମୋଟା ଖଦଡ଼ କପଡ଼ା

**ଢେଣୁଆ** - *ଗ.* (ବି.) : ଟେକା, ଟେଳା

**ଢେଣୁଆ** - *ନ.କେ.* (ବି.) ବଡ଼ଟେକା, ମସିଣା ବୁଣାରେ ବ୍ୟବହୃତ ପଥର, ଶୂଳା

**ଢେଣ୍ଡା** - *ରା.* (ବିଂ.) : ଭଙ୍ଗା

**ଢେଣ୍ଡୁରା** - *ଢ.* (ବି.) : ଡେଙ୍ଗୁରା

**ଢେଣୋ** - *କଳା.* (ବି.) : ଧଣ୍ଡ ସାପ

**ଢେନା** - *କଳା.କଣ.* (ବି.) : ଡେଣା, ପକ୍ଷ

**ଢେନାବାହା** - *ବୌ.* (ବି.) : ହାତବାହା

**ଢେବ୍ରିଆ** - *ବୌ.* (ବି.) : ବାମ ହାତିଆ

**ଢେବା** - *କଳା.* (ବି.) : ବାମ, ଦକ୍ଷିଣେତର

**ଢେବାଫାଲ୍** - *କଳା.* (ବି.) : ବାମପଟ, ବାଁଆଡ

**ଢେବିରି** - *ଅନେ.* (ବି.ବିଂ.) : ବାମ

**ଢେବ୍ରି** - *ସଂ.* (ବି.) : ରାଜସ୍ଥାନରେ ଦସ୍ତାଶିଳ୍ପ ପାଇଁ ପ୍ରସିଦ୍ଧ ନାମ

**ଢେମ୍ବା** - *ନୂ.* (କ୍ରି.) : ଆଉଜାଇବା

**ଢେମା** - *ସୁ.* (ବିଂ.) : ମୋଟା

**ଢେମ୍ପ** - *ଦେ.* (ବି.) : ବୃନ୍ତ ବା ନାଡ

**ଢେର** - *ଦେ.* (ବି.) : ଠିଆ

ଡେରଙ୍ଗା - *କଣ:* (ବି.) : ନିଶୁଣି

ଡେରନୀ - *ସୁ:* (ବି.) : ନିଶୁଣି, ଶିଢ଼ି

ଡେରା - *ଅନେ:* (ବି.) : ଅସ୍ଥାୟୀ ଶିବିର, ଲୁଗାବୁଣିବା ଜାତି ବିଶେଷ, ତନ୍ତୀ, କାଛକୁ ଆଉଜା ହୋଇଥିବା, ରେଶମ ସୂତା ତିଆରିକାରୀ ଏକ ଗୋଷ୍ଠୀ, ପଡ଼ି ରହିବା, ଆସ୍ଥାନ, ଆଶ୍ରୟ, କ୍ଷଣସ୍ଥାୟୀ ବସା

ଡେରାଖଦି - *ଗ:* (ବି.) : ହାତବୁଣା ସୁତାଲୁଗା

ଡେରା ମସନା - *ସୁବ:* (ବି.) : ଶୋଇବା ସରଞ୍ଜାମ ଇତ୍ୟାଦି

ଡେରି - *ଝା:ନ:ଦେ:ବ:* (କ୍ରି.ବିଂ.ବି.) : ଏକ ଦ୍ରବ୍ୟକୁ ଆଉଜାଇ ରହିବା, ଉଛୁର, ବିଳମ୍ବ, ନିଜକୁ ଦେଖେଇ ହେବା

ଡେରି ଜମି - *ସ:* (ବିଂ.) ଫୁଲେଇ, ଅଭିମାନୀ

ଡେରିବା - *ନ:ସ:* (କ୍ରି.) ଆଉଜାଇ ରଖିଦେବା, ଟିକିଏ ସଳଖିଦେବା

ଡେରେଙ୍ଗା - *ଗ:* (ବି.) : ନିଶୁଣି

ଡେର୍ - *କଳା:* (କ୍ରି.) : ଡ଼ରିବା, ଭୟ କରିବା

ଡେର୍‌ତ - *କଳା:* (କ୍ରି.) : ଡରିବ, ଡରିଯିବ, ଡରିପାରେ

ଡେର୍‌ବା - *କଳା:ସୁବ:* (କ୍ରି.) : ଡରିବା, ଆଉଜେଇ ଦେବା, ଡରିବା

ଡେସିମିଲ୍ - *ଦେ:* (ବି.) : ଏକ ଏକରଭୂମିର ଶହେଭାଗରୁ ଏକ ଭାଗ

ଡୈଂଟ୍ - *ସୁ:* (ବି.) : ଫାଉଡ଼ାଦି ବେଣ୍ଟ

ଡୈଂଢୁ - *ସୁବ:* (ବି.) : ଧଣ୍ଡସାପ

ଡୋଭଲୁ ଡାଭଲୁ - *ଅ:ଗ:ଗୌ:* (ବିଂ.) : ସୁନ୍ଦର, ସବୁଆଡୁ ସୁନ୍ଦର

ଡୋକ୍ - *କଳା:* (ବି.) : ଡାହୁକ

ଡୋକ୍‌ରୀ - *ମା:ରା:* (ବିଂ.ବି.) : ବୁଢ଼ୀ

ଡୋକରା - *ଗ:ନବ:ରା:* (ବି.) : ଅତିବୁଢ଼ା

ଡୋଗୋ ଡୋଗୋ - *ଝା:* (କ୍ରି.ବି.) : ଖୁବ୍ ସ୍ୱଚ୍ଛ ଦିଶିବା

ଡୋଙ୍ଗର୍ଲା - *କଳା:* (ବି.) : ପାର୍ବତ୍ୟାଞ୍ଚଳ

ଡୋଙ୍ଗର୍ - *କଳା:* (ବି.) : ପର୍ବତ, ପାହାଡ

ଡୋଡ୍‌କା - *କଳା:* (ବି.) : ଏହା ବଡ ଆକୃତିର ଗୋଲାକାର ଦେଶୀଆମ୍ବ

ଡୋଡୋ - *କଳା:* (ବିଂ.) : ବଡ, ବିରାଟ, ବୃହତ୍

ଡୋବ - *ଗ:* (ବି.) : କର୍ଦ୍ଦମାକ୍ତ ସ୍ଥାନ, ଜଳବିନ୍ଦୁ

ଡୋମ - *ନ:* (ବି.) : ଡମଜାତି ବିଶେଷ

ଡୋମ୍ - *କଳା:* (ବି.) : ଡମ୍, ଜାତିବିଶେଷ

ଡୋମାଡ଼ା - *ଅ:ଗଦ୍ୟ:* (ବି.) : ପାହାଡ଼ ତଳ ଅଞ୍ଚଳ

ଡୋର - *ଅନେ:* (ବି.) : ସୂତା, ରସୀ, ଛୋଟ ସରୁ ଦଉଡ଼ି

ଡୋର - *ଗ:* (ବି.) : ସାନଦଉଡ଼ି

ଡୋର ଘିଚା - *ଝା:* (ବି.) : ବଳ ପ୍ରୟୋଗ କରି ଡୋରକୁ ଟାଣିବା

**ଡୋର ଲଗାଇବା** - *ଦେ:* (କ୍ରି.) : ସ୍ନେହର ଡୋରରେ ଟିଙ୍କିବା, ଟାଣିବା, ଆକର୍ଷଣ କରିବା

**ଡୋରିଆ** - *ମା:* (ବିଂ.) : ଗାରଗାରିଆ

**ଡୋରିବନ୍ଧା** - *ସଂ:* (ବି.) : ପାଠପଢା ଅଧାରୁ ରହିବା

**ଡୋରେଇ** - *ଅ:* (କ୍ରି.) : ବାନ୍ଧିବା ଅର୍ଥରେ

**ଡୋଲମା** - *ନ:* (ବି.) : ବାଉଁଶପାତିଆରେ ନିର୍ମିତ ଛୋଟ ଡୋଲି

**ଡୋଲି** - *ଅନେ:* (ବି.) : ଧାନ ରଖିବା ପାଇଁ ବାଉଁଶରେ ତିଆରି ହୁଏ, ଶବାରି, ଶସ୍ୟ ରଖିବା ଆଧାର

**ଡୋହିବା** - *ନ:* (କ୍ରି.) : ଗାଳିଦେବା

**ଡୌଇ** - *ଗଦ୍ୟ:* (ବି.) : ସୁନ୍ଦର

**ଡଁଡଭ** - *ସୁବ:* (ବି.) : ଛୋଟ ମାଛ ବିଶେଷ

**ଡଁଡା** - *ସ:* (ବି.) : ଶଗଡ଼ର ପଛ ଲମ୍ବା କାଠ

**ଡଁଣ୍ ଶାଇ୍** - *ସ:* (ବି.) : ଦଣ୍ଡବତ

**ଡଁଣା** - *ବ:* (ବି.) : ଶଗଡ଼ର ଦୁଇ କାଠ ଯାହା ମାଧ୍ୟମରେ ଶଗଡ଼ଟି ଅଖ ଉପରେ ରହେ, ଦଣ୍ଡା

**ଡଂଗଡଂଗେଇବା** - *କଳା:* (କ୍ରି.) ସ୍ଥିର ରହିବା, ଜମାହେବା, ନିଶ୍ଚଳ ରହିବା, ଏକତ୍ର ରହି କ୍ରିୟାଶୂନ୍ୟ ହେବା

**ଡଂଗଡ଼ଂଗା** - *କଳା:* (ବିଂ.) : ପରିଷ୍କାର, ନିର୍ମଳ

**ଡଂଗର୍ଲା** - *କଳା:* (ବି.) : ପାର୍ବତ୍ୟାଞ୍ଚଳ

**ଡଂଡା** - *କଳା:* (ବି.) : ନାଡ଼, ଲାଂଗ, ବାଡ଼ି

**ଡଂଶିବା** - *ଅ:* (କ୍ରି.) : ଦଂଶନ କରିବା

**ଡ୍ରଇଁ** - *ଦେ:* (ବି.) : ରେଖାଚିତ୍ର ଅଙ୍କନ, ଛବି

**ଡ୍ରମ୍** - *ଖୋ:ଦେ:* (ବି.) ଜଳପାତ୍ର, ବାଦ୍ୟବିଶେଷ



**ଢଭ** - *ରା:ଗ:* (ବି.) : ପାଣିରେ ନଷ୍ଟ ହୋଇ ପାରୁନଥିବା କାଠ, ଏକ ଜଙ୍ଗଲି ବୃକ୍ଷ

**ଢକ** - *ଗ:* (ବି.) : ଢଗ

**ଢକ୍କା** - *ଗଦ୍ୟ:* (ବି.) : ଏକ ବାଦ୍ୟ, ଢୋଲ

**ଢକ୍‌ନି** - *କଳା:* (ବି.) : ଢାଙ୍କୁଣି

**ଢକ୍‌ଲୋ ପାଣି** - *ବୌ:* (ବି°.) : ପାଣିଚିଆ

**ଢକ ଭାଙ୍ଗିବା** - *ଗ:* (କ୍ରି.) : ଢଗର ଅର୍ଥ କହିବା

**ଢକାର** - *କେ:କେନ୍ଦୁ:ଭ:* (ବି.ଅ.) : ହାକୁଟି

**ଢଗ** - *ନ:* (ବି.) : ପ୍ରବଚନ, ଲୋକକୁହା କଥା

**ଢଗ୍‌ଢଗି** - *ସ:* (ବି°.) : ବଡ଼ବଡ଼ କଥା କହୁଥିବା ସ୍ତ୍ରୀ ଲୋକ

**ଢଗଢମାଳି** - *ନ:କ:* (ବି.) : କିଛି କହିବା, ଉକ୍ତି, ଗାଉଁଲି ଶିକ୍ଷଣୀୟ କଥା

**ଢଗା** - *ଯା:* (ବି°.) : ବଡ଼

**ଢଗି** - *ରା:* (ବି.) : ଖଡ

**ଢଗୁରୁ** - *ରା:* (ବି.) : କଥା ସଂଗ୍ରହକାରୀ ବ୍ୟକ୍ତି, ଖବରି

**ଢଙ୍କଗିରି** - *ସୁବ:* (ବି.) : ଆଖି ଉପର ଚମଡା ଭୂଲତା ଉପରେ ହେଉଥିବା ବଥ

**ଢଙ୍କଣ** - *ରା:* (ବି.) : ଢୁଙ୍କେଇବା

**ଢଙ୍କପାଣି** - *ଗ:* (ବି.) ନିଛକ ପାଣି, ଆବଶ୍ୟକତାରୁ ବହୁ ଅଧିକ ପାଣି

**ଢଙ୍କସର** - *ଭ:ଅ:* (ବି.ବି°.) : ପୂରାପୂରି ପାଣିଆଁ, ଅତି ପାଣିଆଁ

**ଢଙ୍କା** - *ରା:ଦେ:* (ବି°.ବି.) : କିଛି ମିଶି ନଥିବା, ଏକ ଖାଇବା ଫଳ

**ଢଙ୍କାରିବା** - *ଗଦ୍ୟ:* (କ୍ରି.) : ଖୁରି ଖାଇବା

**ଢଙ୍କୁଣୀ** - *କ:* (ବି.) : ଘୋଡଣୀ

**ଢଙ୍ଗ** - *ଦେ:କେ:ଗଞ:ନୂ:* (ବି.ଅ.) : ଢାଞ୍ଚା, ରୀତି, ଭଙ୍ଗୀ, ଭଦ୍ରତା, ବ୍ୟାବହାରିକ ଆଚରଣ

**ଢଙ୍ଗଢାଙ୍ଗ** - *ଦେ:କ:ସ:* (ବି°.ବି.) : ଆଚାର, ବ୍ୟବହାର, ରୀତି, ପ୍ରଥା, ଚାଲିଚଳଣ

**ଢଙ୍ଗ ବାଇଶ** - *କେ:* (ବି.) : ବ୍ୟବହାର, ବାଗ ବରଗ, ବାଗବାଇଶ

**ଢଡ଼ସୋ** - *ସୁ:* (ବି.) : ମୋଟ

**ଢଣ** - *ରା:ସୁ:* (ବି.) : ଧନୁ, ଢେମଣା, ବଡ଼ମାଛି

**ଢଣ୍ଢଣା** - *କଳା:* (ବି°.ବି.) : ସଂପୂର୍ଣ୍ଣ ଲଂଗଳା, ସଂପୂର୍ଣ୍ଣ ମେଲା, ବଡ଼ ନୀଳରଙ୍ଗ ମାଛି

**ଢଣକୋଇଲା** - *ଗ:ଗଦ୍ୟ:ଦେ:* (ବି.) : ଗଞ୍ଜାମର ଏକ ଲୋକନୃତ୍ୟ, ଓଷାକୋଠି, ଏକ ପ୍ରାଚୀନ ବାଦ୍ୟ ଯନ୍ତ୍ର

**ଢଣରୁଗ** - *ରା:* (ବି.) : ଧନୁଷ୍ଟଙ୍କାର ବାତ

**ଢଣା** - *କଡ଼:ଦେ:ନ:* (ବି.ବିଂ.) ସରୁ, ଗୋରୁଙ୍କ ରୋଗ

**ଢଣାଲି** - *ବର:* (କ୍ରି.) : ଖୋଜିବା

**ଢଣୁଆ ଗାଈ** - *ଗ:* (ବି.) : ଦୁଧିଆଳୀ ଗାଈ

**ଢନ୍ଢନା** - *ବୌ:* (ବିଂ.) : ପୂରାପୂରି, ଦୁର୍ବଳ

**ଢନମାଛି** - *ନୂ:* (ବି.) : ବଡ଼ ମାଛି, ଢଣା ମାଛି

**ଢନସା** - *ରା:* (ବି.) : ଡେକିଚି

**ଢପ** - *ଅନେ:* (ବି.) : ବଢେଇ କରି କହିବା, ଫେସନ, ରୀତି, ଛଇ, ଢାଞ୍ଚା, ଆଡ଼ମ୍ବର, ବହପ

**ଢପନୀ, ଢପନା** - *ସୁ:* (ବି.) : ଢାଙ୍କୁଣି

**ଢପା ଖେଳ** - *କ:* (କ୍ରି.) : ପିଲାଙ୍କ ଏକ ଖେଳ

**ଢପା ମାରିବା** - *ବ୍:* (କ୍ରି.) : ପହଁରିବା ବେଳେ ପାଦରେ ପାଣି ଉପରେ ଆଘାତ କରିବା

**ଢପୋଡ଼ୋ** - *ନୂ:* (ବିଂ.) : ବୋକା

**ଢବ** - *ସ:* (ବି.) : ବାଉଁଶ ପାତିଆରେ ତିଆରି ବଡ଼ ଢାଗା

**ଢବା** - *ଦେ:ସୁବ:ଝା:ସୁ:* (ବି.) : ଆଟୁଘର, ମାର୍ଦ୍ଧା ଘର, ଛାତଘର

**ଢବାଘର** - *କଳା:ସ:* (ବି.) : ମାରଦା ଘର, ଭିତରେ ଥିବା ଘର

**ଢମ** - *ଭ:ସଂ:ଦେ:ଛ:* (ବିଂ.ବି.) : ବଢେଇ, ନିଜଗୁଣ କୀର୍ତ୍ତନ, ଚାତର, ଢଙ୍ଗ, ରୀତି, ଅସାରକଥା, ଫୁଟାଣି, ବଡ଼ିମା

**ଢମ୍‌କରି** - *ବୌ:* (ବି.) : ଆଖି ଆଳୁଅ, ବ୍ରଣଜାତୀୟ ବଥ

**ଢମ୍‌କା** - *ସ:* (ବିଂ.) : ମୋଟା

**ଢମଣା** - *କ:ରା:ଖୋ:* (ବି.) : ଶର ତିଆରି ପାଇଁ ବ୍ୟବହୃତ ଗଛର କାଠ, ଏକ ପ୍ରକାର ବିଷ ନଥିବା ସାପ

**ଢମଣା ଡେଇଁବା** - *ଭ:* (ବିଂ.) : ବଂଶହୀନ ହୋଇଯିବା

**ଢମା** - *ଦେ:କେ:ଗ:* (ବି.) ଗୋରୁଙ୍କୁ କୁଣ୍ଡାପାଣି ଖୁଆଇବା ପାଇଁ ତିଆରି ବାଉଁଶ ଟୋକେଇ

**ଢମା ପଥର** - *ପୁ:* (ବି.) : ସାମାନ୍ୟ ବଡ଼ ଆକୃତିର ପଥର

**ଢମାଳି** - *ସଂ:ଦେ:* (ବି.) : ପରିହାସ, ଗର୍ବ, ଅହଂକାର

**ଢମାଳିଆ** - *ସଂ:* (ବିଂ.) : ଗର୍ବୀ, ଫୁଟାଣିଆ

**ଢମୁକ** - *ଦେ:* (ସ.) : ଫଲଣା, ଅମୁକ

**ଢମ୍ପା** - *ଦେ:* (ବି.) : ଢାଙ୍କିବା

**ଢମ୍ପିବା** - *କେନ୍ଦୁ:* (କ୍ରି.) : ଘୋଡ଼େଇ ହେବା

**ଢରା** - *ଅ:* (ବି.) : ଠେସ, ଢେରା

**ଢଲା** - *କୋ:* (ବି.) : ବାଉଁଶର ବଡ଼ ଡାଲା

**ଢଲିଆ** - *ବ:* (ବିଂ.) : ଗୋଟିଏ ପଟକୁ ଢଳି ପଡୁଥିବା (ଖୋସା)

**ଢଳିଆ ଖୁସା** - *ବଉ:* (କ୍ରି.) : ଅଳ୍ପ ଢଳି ରହିଥିବା ଖୋସା

**ଢଳା** - *ଦେ:* (ବି.) : ଧାତୁକୁ ତରଳାଇ ଛାଞ୍ଚରେ ଢାଳିବା

**ଢଳିଯିବା** - *ନ:* (କ୍ରି.) : ତରଳପଦାର୍ଥ ଚହଲିଯାଇ ଅଜାଡ଼ିହୋଇ ପଡ଼ିବା, ନଇଁଯିବା

**ଢଣାରୀ** - *କୋ:* (ବି.) : ଗୁଣିଆ, ତନ୍ତ୍ରବିଦ୍ୟା ବିଶାରଦ

**ଢଷ୍କିବା** - *କଳା:* (କ୍ରି.) : ଭୁଷୁଡିବା, ଅତଡ଼ା ଖସିବା, ଧସେଇବା

**ଢସଳ** - *କେନ୍ଦୁ:* (ବିଂ.) : ଢିଲା

**ଢସିଯିବା** - *କୋ:* (କ୍ରି.) : ଧସେଇ ପଶିବା

**ଢାଇ** - *କଳା:ନ:* (ବି.) : କଢ, ମୁଣ୍ଡକୁ ମୁଣ୍ଡ ଦେଇ ଲଢେଇ କରିବା

**ଢାଇଢେ** - *ଢେ:* (କ୍ରି.) : ଚଢିବା

**ଢାଉ** - *ଗ:ଦେ:* (ବି.) : ଗେରୁ, ରଙ୍ଗମାଟି

**ଢାଉଆ** - *କେ:କ:ଯା:* (ବିଂ.) : ମାଟିଆ, ଲାଲ ମିଶା, ଢାଉ ବା ଗେରୁଆ ରଙ୍ଗବିଶିଷ୍ଟ

**ଢାଉକ** - *କ:ବା:ଢ:ଗ:* (ବି.) : ବାଡିରେ, ବାଉଁଶ ବଣରେ ରହୁଥିବା ପକ୍ଷୀ, ଡାହୁକ

**ଢାଉସା** - *ଯା:* (ବି.) : ଏକ ବାଦ୍ୟଯନ୍ତ୍ର ଜନଜାତିର ଲୋକ ବ୍ୟବହାର କରନ୍ତି

**ଢାଏ ଢାଏ** - *ସୁବ:* (ଅ.) : ଅତିଶୟ ବାଚକ ଶବ୍ଦ ଏହା ମାଡ ଓ ଖରା ଗୁଳି ପ୍ରଭୃତି ଶବ୍ଦ ପୂର୍ବରୁ ଲାଗେ

**ଢାକା** - *ଗ:* (ବି.) : ମଦନିଶା, ଏକ ଥର ପାନ କରିବା ପରିମାଣର ମଦ

**ଢାକି** - *ପଦ୍ୟ:ସୁ:* (ବି.) : ଯୁଦ୍ଧ ନାଚ, ବଡ଼ ଡାଲା, ଢାଙ୍କି

**ଢାକିବା** - *ନବ:* (କ୍ରି.) : ଘୋଡ଼ାଇବା

**ଢାଗୁଆ** - *ବ:* (ବି.) : ମାଟି ଛାତ

**ଢାଙ୍କୁଣୀ** - *କ:ନ:କେ:ଖୋ:* (ବି.) ଘୋଡ଼ାଇବା ପାତ୍ର, ଘୋଡ଼ଣି, ଚଟକା ଧାତୁପାତ୍ର

**ଢାଙ୍କୋଇ** - *ଖୋ:* (ବି.) : ଏକପ୍ରକାର ଧାନ

**ଢାଙ୍ଗ** - *ଢ:* (ବି.) : ଧରଣ, ଲକ୍ଷଣ

**ଢାଙ୍କେଣୀ** - *ନବ:* (ବି.) : ଘୋଡ଼ଣି

**ଢାଚ** - *ସୁବ:* (ବି.) : କୌଶଳ, ଫନ୍ଦି

**ଢାଞ୍ଚା** - *କେ:ଦେ:* (ବି.) : ଚଳଣି, ନମୁନା, ଢଙ୍ଗ, ଆଚରଣ

**ଢାଡମିଆ** - *ସୁବ:* (ବିଂ.) ଆଖିବୁଜା, ଆନୁମାନିକ

**ଢାଡ୍** - *ସ:* (ବିଂ.) : ବଡ଼

**ଢାପ୍** - *କଳା:* (ବି.) ଆଦିବାସୀ ଓ କନ୍ଧମାନଙ୍କର ଢାପ ବାଦ୍ୟ

**ଢାପ୍** - *ବୌ:* (ବି.) : ଚାଙ୍ଗୁବାଦ୍ୟ

**ଢାପ୍ନା** - *କଳା:କନ୍ଧ:* (ବି.କ୍ରି.) : ଘୋଡଣି, ବନ୍ଦ କରିଦିଅ

**ଢାପ୍ବା** - *ବୌ:ବର:ସ:* (କ୍ରି.) : ଢାଙ୍ଗୁଣି ଦେବା

**ଢାପନ୍** - *ସୁବ:କଳା:* (ବି.) : ଢାମ୍ପଣ

**ଡାପବାର** - *ସୁବ:* (କ୍ରି.) ଢାଙ୍କିବା, ଘୋଡେଇବା

**ଡାପା ମାରିବା** - *ଗ:କୋ:* (କ୍ରି.) : ମିଛକଥା କହିବା, ଗୁଲି ମାରିବା

**ଡାପାଲୁ** - *ଗଞ:*(ବି.) : ମିଛକଥା

**ଡାପୁ** - *ଗଞ:* (କ୍ରି.) : ଦୋଷ

**ଡାପୁଆ** - *କଳା:ବା:* (ବିଂ.) ଡାପ ନୃତ୍ୟକାରୀ, ଡାପ ବାଦକ

**ଡାବଲ** - *ଦେ:ଛ:* (ବି.) : ରାସ୍ତାକଡର ଢାବା, ଭୋଜନାଳୟ, ପରିବହନରେ ବ୍ୟବହୃତ କାଠ ତିଆରି ବାକ୍ସ

**ଡାବା** - *କେ:ଗଞ:କଳା:* (ବି.) : ଅନୁମାନ କରିବା, କୋଠାଘର, ରାସ୍ତା କଡରେ ଥିବା ଛୋଟ ହୋଟେଲ୍

**ଡାବାଘର** - *ବା:ଗ:* (ବି.ବି.) : ଭଲ ମଜବୁତ ଛାତ ଘର, କୋଠାଘର

**ଡାବା ବାଉଁଶ** - *ସଂ:* (ବି.) : ମୋଟା ବାଉଁଶ, ପାତିଆ ତିଆରି ଉପଯୋଗୀ ବାଉଁଶ

**ଡାବା ମାରିବା** - *କେନ୍ଦୁ:ବୌ:ମା:* (କ୍ରି.) : ପହଁରିବା ବେଳେ ଗୋଡ଼ ଦୁଇଟିକୁ ପାଣିରେ ବାଡ଼େଇବା, ମିଛ କହିବା, ଅନୁମାନ କରିବା

**ଡାବାର** - *ବା:* (ବି.) : ବଟଗଛ

**ଡାବାଲା** - *ବା:* (ବି.) : ଏକ ସାମୁଦ୍ରିକ ମାଛ

**ଡାବିଦେବା** - *ନୂ:କଳା:* (କ୍ରି.) ବନ୍ଦ କରିଦେବା, ଘୋଡ଼ାଇବା

**ଡାବୁଆ** - *ମ:କେନ୍ଦୁ:* (ବି.) : ଛାତଘର, ଆଟୁ

**ଡାଭଲ** - *ବା:* (ବି.) : କେନ୍ଦୁ

**ଡାମ** - *ବା:କେନ୍ଦୁ:* (ବିଂ.ବି.) : ଡମ, ଗର୍ବ

**ଡାମଣ** - *ନ:* (ବି.) : ଏକ ପ୍ରକାର ଶକ୍ତ କାଠଗଛ, ଡମଣାଗଛ

**ଡାମଣା** - *ବୌ:ନ:ଦେ:* (ବି.) : ଏକ ଶକ୍ତ ଗଛ, ବିଷହୀନ ସର୍ପ (ବଡ଼)

**ଡାମା** - *ମ:* (ବି.) : ଗାଈଗୋରୁଙ୍କୁ ଖାଇବାକୁ ଦିଆଯାଉଥିବା ସିମେଣ୍ଟରେ ତିଆରି କୁଣ୍ଡ

**ଡାମେଇ** - *କେନ୍ଦୁ:* (ବିଂ.) : ଗର୍ବୀ (ମହିଳା)

**ଡାମ୍ପ** - *କୋ:* (ବି.) : ଚାଙ୍ଗୁ ବାଦ୍ୟ

**ଡାମ୍ପିବା** - *ଗଞ:ବୌ:* (କ୍ରି.) : ବନ୍ଦକରିବା, ଢାଙ୍କିବା

**ଡାମ୍ପୁଣି** - *ଗଞ:* (ବି.) : ଶରୀର

**ଡାମ୍ପୁଣୀ** - *କେନ୍ଦୁ:* (ବି.) : ଘୋଡ଼ଣୀ

**ଡାଲ** - *ଦେ:ବା:କ:* (ବି.) : ଶସ୍ତ୍ରାଘାତରୁ ରକ୍ଷା ପାଇବା ପାଇଁ ବ୍ୟବହୃତ ଫଳକ, ପାଣି ପିଇବା ପାତ୍ର, ଗଡୁ, ସୁରକ୍ଷା ଅସ୍ତ୍ର

**ଡାଲ୍‌ବା** - *କଳା:* (କ୍ରି.) : ଗୋବର ପାଣିରେ ଲିପିବା, ତରଳ ପଦାର୍ଥ ଇଡ଼ିଦେବା

**ଡାଲା** - *ବା:* (ବି.) : ସାଧୁତା

**ଡାଲି** - *ପଦ୍ୟ:* (ବି.) : ଯୁଦ୍ଧ ନାଚ

**ଡାଲିଆ** - *ବ:ନ:* (ବି.) : ବାଉଁଶ ପାତିଆ ନିର୍ମିତ ଘୋଡ଼ଣି, ଟାହିଆ, ଠାକୁରଙ୍କ ମୁଣ୍ଡରେ ରଥଯାତ୍ରାରେ ପହଣ୍ଡିରେ ଲାଗିବା ଫୁଲ ମୁକୁଟ

**ଢାଲିଆ ଖୁଷା** - *କନ୍ଧା:* (ବି.) : ସ୍ତ୍ରୀମାନେ ବାନ୍ଧୁଥିବା ବଡ଼ ଗୋଲାକାର ଖୋଷା

**ଢାଲୁଆ** - *ଗ.ନ.* (ବି.ବିଂ.) : ଗଡ଼ାଣିଆ

**ଢାଳ** - *ଅନେ:* (ବି.) . ଗଡୁ, ଲୁଟା, ଜଳପାତ୍ର, ଛୋଟ ପାଣି ପାତ୍ର(ପିତ୍ତଳ, କଂସା, ତମ୍ବା, ରସ ନିର୍ମିତ), ବିରିପିଠାରେ ପୁରଦେଇ, ଛାଣି ଚିନି ଶିରାରେ ବୁଡାଇବା

**ଢାଳେ** - *ଭ:* (ବିଂ.) : ନୋଟାଏ

**ଢାସବେ** - *ରା:* (କ୍ରି.) : ବୋହିବା

**ଢାହେବା** - *ନବ:* (କ୍ରି.) : ଘୋଡ଼ାଇଦେବା

**ଢାଁକ୍‌ବା** - *ନୂ:* (କ୍ରି.) : ଢାଙ୍କିବା

**ଢାଁଚା** - *ସ.ନୂ:* (ବି.) ଲୋକ ଚଳଣି, ପ୍ରଣାଳୀ, ପଦ୍ଧତି, ଗତାନୁଗତିକ ଧାରା

**ଢିଅ** - *ରା:ଗଢ:* (ବି.) : ଘରପାଇଁ ଖାଲି ଜାଗା, ଘର ଭାଙ୍ଗିବା ପରେ ସେ ଜାଗାରେ ଯାହା ରହେ, ପଡ଼ିଆ

**ଢିଅ ଫସଲ** - *କ:* (ବି.) : ଉଚ୍ଚ ଜାଗାରେ ହେଉଥିବା ଫସଲ

**ଢିଅହେବା** - *ଗ:* (କ୍ରି.) : ନଷ୍ଟ ହେବା

**ଢିଆ** - *ଗଢ:ସ:ସୁବ:* (କ୍ରି.ବି.) : ନଦୀମଧ୍ୟସ୍ଥ ସ୍ଥଳଭାଗ, ବଡ଼ଉକୁଣୀ, ବଡ଼ପୋକ

**ଢିକିଆ ପଣସ** - *ଗଦ୍ୟ:* (ବି.) : ଲମ୍ବା ବଡ଼ ପଣସ

**ଢିକିଦେବା** - *ଯା:* (କ୍ରି.) : ଠକିଦେବା

**ଢିଗା** - *କୋ:ରା:* (ବି.) : ତାର, ଧାତୁ ନିର୍ମିତ ସରୁ ସୁତା, ବାଦ୍ୟ ବଜାଇବାପାଇଁ ବ୍ୟବହୃତ ବାଡ଼ି

**ଢିଙ୍କି** - *ଅନେ:* (ବି.) : ଧାନ କୁଟିବାର ଦେଶୀ ଯନ୍ତ୍ର, କାଠତିଆରି ଧାନକୁଟା ଚାଉଳ ଓ ହଳଦୀଗୁଣ୍ଡ କରିବା ସାଧନ

**ଢିଙ୍କିଆ** - *ଅନେ:* (ବି.ବିଂ.) : ଧାନ ଓଳିଆ ପିଟୁଥିବା ଛୋଟ ପିଟଣାର କାଠଖଣ୍ଡ, ଜଙ୍ଗଲ ବିଭାଗଦ୍ୱାରା ତନଖି ଫାଟକ ନିକଟରେ ଅଟକ ଅର୍ଗଳ, ଓଲେଇ ଗାଈ ବେକରେ ଝୁଲାଇବା ଢିଙ୍କି ଆକାରର, କାଠଖଣ୍ଡ, ଘଣ୍ଟା, କବାଟ କିଳିଣି, ଛିଟିକିଣି, ଢିଙ୍କିଆ ବାଘ, କୁମ୍ଭୀର

**ଢିଙ୍କିଆଶାଳୀ** - *କ:* (ବି.) : ଧାନ ବିଶେଷ

**ଢିଙ୍କିପାଇପ୍** - *ଗ:* (ବି.) : ନଳକୂଅ

**ଢିଙ୍କିମାଲ** - *ଗ:* (ବି.) : ଢିଙ୍କିକୁ ଧରି ରଖିଥିବା ଦୁଇପାର୍ଶ୍ୱର ଖମ୍ବ

**ଢିଙ୍କିଶାଳ** - *ନ:ସ:* (ବି.) : ଢିଙ୍କିଥିବା ସ୍ଥାନ, ଯେଉଁଠାରେ ଢିଙ୍କି ଥାଏ

**ଢିଟା** - *ନୂ:* (ବିଂ) : ଅଲାଜୁକ, ଅଧିକ ଖାଇବାକୁ ସଦା ସର୍ବଦା ମନ କରୁଥିବା ଅଥଚ ପାଉ ନଥିବା (ବ୍ୟକ୍ତି)

**ଢିଟୁଲ୍** - *କନ୍ଧା:* (ବି.) : ତୁଟି, ମାଛ ରଖିବା ପାଇଁ ବାଉଁଶ ପାତିଆରେ ନିର୍ମିତ ସରୁ ମୁହାଁ ପାତ୍ର ବିଶେଷ, ଖାଳେଇ

**ଢିପ** - *ଅମେ.* (ବି.ବିଂ.) : ଉଚ୍ଚସ୍ଥାନ, ଉଚ୍ଚଭୂମି, ପାଣି ଜମୁନଥିବା ସ୍ଥାନ

**ଢିପଣ** - *କ* (ବି.) : ମାଡ଼

**ଢିପା** - *ଗ୍.* (ବି.) : ଘରଡିହ

**ଢିପୁ** - *ସୁବ.* (ବିଂ.) : ଢିପ

**ଢିପେଇ** - *କେ.ବ.ଗୌ.କଳା.* (ବି.) : ଶଗଡ଼କୁ ଠିଆ କରିବା ପାଇଁ ଆଗରେ ବ୍ୟବହାର କରାଯାଉଥିବା ଦୁଇନେଳିଆ କାଠ, ଟିପେଇ

**ଢିପେଇବା** - *କେ.ଗଦ୍ୟ.* (ବି.କ୍ରି.) : ଛୋଟେଇବା, ବଙ୍କେଇବା, ଧୀରେ ଚାଲିବା

**ଢିମ୍‌କା** - *ସ.* (ଅ.) : ଅମୁକ

**ଢିମା** - *ଅନେ.* (ବି.) : ସଂକେତ ପ୍ରଦାନକାରୀ ପଥର, ଛୋଟଛୋଟ ପଥର ଖଣ୍ଡ, ବଡ଼ ମାଟିଟେଳା, କାଠଗଡ଼, ଟାଣ ମାଟି, ବଡ଼ଖଣ୍ଡ

**ଢିମା ଆଖିଆ** - *ଗୌ.ସଂ.* (ବି.ବିଂ.) : ବଡ଼ ବଡ଼ ଆଖିଥିବା ଲୋକ, ଡୋଳା ବାହାରକୁ ବାହାରି ଆସିଥିବା

**ଢିମିରି** - *ଗଙ୍ଗ.ବା.ଗ.* (ବି.) : ଛୋଟ ପାହାଡ଼, ଡିମିରିଫଳ, ଘିମିରି

**ଢିମ୍ବିରା** - *ବା.ଗ.* (ବି.) : ପାହାଡ଼ର ଉଚ୍ଚଅଂଶ, ଛୋଟ ପାହାଡ଼, ଟୁବୁରି

**ଢିରା** - *ଅନେ.* (ବି.) କୌଣସି ଆଶ୍ରାବାଡ଼ିରେ ଠେବ ଦେବା, ଓଜନ ସମ୍ଭାଳିବା ପାଇଁ ବ୍ୟବହୃତ ଦଣ୍ଡ, ଠେସ

**ଢିଲ** - *କୋ.କଳା.* (ବିଂ.) : ଢିଲା, ହୁଗୁଳା, ପଶୁ ଆଦିର ବନ୍ଧନ ଖୋଲିବାର ନିର୍ଦ୍ଦେଶ

**ଢିଲ୍‌ଢିଲ୍** - *କଠ.* (ବିଂ.) : ପ୍ରବଳ

**ଢିଲ୍‌ଫୁସ୍** - *କଳା.* (ବିଂ.) : ହୁଗୁଳା

**ଢିଲ୍‌ବାର** - *ସୁବ.* (କ୍ରି.) ଖୋଲିବା, ଫିଟାଇବା, ହୁଗୁଳା କରିବା

**ଢିଲା** - *ଅନେ.* (ବିଂ.) : ଉଶ୍ୱାସ, ଖୋଲା, ହୁଗୁଳା, ହେଳା, ନିୟମ ବା ଶୃଙ୍ଖଳାର ଅଭାବ, ଅନାଗ୍ରହୀ, ଦୀର୍ଘସୂତୀ

**ଢିଲାମାରିବା** - *ନ.* (କ୍ରି.) : ବ୍ୟଗ୍ର ନ ହେବା, ଗୁରୁତ୍ୱ ନ ଦେଇ ଅବହେଳା କରିବା

**ଢିଲିଦେବା** - *ସ.ନୂ.* (କ୍ରି.) : ଖୋଲିଦେବା, ମୁକ୍ତ କରିବା, ହୁଗୁଳା କରିବା

**ଢିଁଢ଼େ** - *ସ.* (ବିଂ.) : ମେଞ୍ଚାଏ, ପୁଳାଏ

**ଢୁଆ** - *ବା.* (ବି.) : ନାଚର ପାଳିଆ, ଘୋଷ

**ଢୁଉଙ୍ଗି** - *ଗୌ.* (ବି.) : ଧାନରଖା ବାଉଁଶ ତିଆରି ବଡ଼ଡାଲା

**ଢୁକ୍‌ମାଁ** - *ଗୌ.* (କ୍ରି.) : ଢୋକିବା, ଢୁକିବା

**ଢୁକାବାର** - *ସୁବ.* (କ୍ରି.) : ପଶେଇବା, ଗଳେଇବା, ପୂରେଇବା

**ଢୁକିବା** - *ବ.ନୂ.କୋ.ନୂ.* (କ୍ରି.) : ପାଣି ଢୋକିବା, ପଶିବା, ଘର ଭିତରକୁ ଯିବା, ଗିଳିବା

**ଢୁକୁ** - *ବଲ.ଦେ.* (ବି.) : ଉଇ, ଟକୁ, ଟଙ୍କୁ, ଟାଙ୍କୁ

**ଢୁକୁଢୁକିବା** - *ଦେ:* (କ୍ରି.) : କୌଣସି ବିବାହିତା ସ୍ତ୍ରୀ ସ୍ୱେଚ୍ଛାକ୍ରମେ ପରପୁରୁଷର ରକ୍ଷିତା ହେବା

**ଢୁକୁରା** - *ରା:* (ବି.) : ଅତିବୁଢା

**ଢୁକେ** - *ନବ:* (ବିଂ.) : ଢୋକେ

**ଢୁକେଇବା** - *ନ:କେନ୍ଦୁ:କଳା:* (କ୍ରି.) : ହାଜତ ବା ଜେଲରେ ପୂରାଇବା, ଭିତରେ ଭର୍ତ୍ତି କରିବା, ଗୃହପାଳିତ ପଶୁ ପକ୍ଷୀମାନଙ୍କୁ ନିଜ ନିଜ ବାସସ୍ଥଳକୁ ପ୍ରବେଶ କରାଇବା

**ଢୁଙ୍କ** - *ବୌ:* (ବି.) : ଶିମ୍ବ ଜାତୀୟ ଫଳ

**ଢୁଲୁରେଇବା** - *କୋ:ବୌ:* (କ୍ରି.) : ଢୁଳେଇବା, ବସିବାବେଳେ ତନ୍ଦ୍ରାଚ୍ଛନ୍ନ ହେବା

**ଢୁଙ୍ଗଳା ଢୁଙ୍ଗୁଳୀ** - *କେନ୍ଦୁ:* (ବିଂ.) : ଢିଲା

**ଢୁଙ୍ଗୁ ଢୁଙ୍ଗୁ** - *ଜ:* (ବିଂ.) : ନିରର୍ଥକ ଭ୍ରମଣ

**ଢୁଟି** - *କଳା:* (ବି.) : ମାଛ ରଖିବା ପାଇଁ ବାଉଁଶ ପାତରେ ତିଆରି କରାଯାଇଥିବା ସରୁ ମୁହାଁ ପାତ

**ଢୁଢବାର** - *ସୁବ:* (କ୍ରି.) : ଖୋଜିବା

**ଢୁଡିବା, ଢୁଡବା** - *କଳା:* (କ୍ରି.) : ମିଛ କହିବା, ଅଧିକ କହିବା, ଗୁଲି ମାରିବା

**ଢୁଡୁ** - *କଳା:ନୂ:* (ବି.) : ମିଛ କହିବା ଲୋକ, ଅଧିକ କହିବା ଲୋକ

**ଢୁଡେଇ ହେବା** - *କଳା:ସୁବ:* (କ୍ରି.) : ତରଳ ଝାଡା ହେବା

**ଢୁଡୁମେଇ ହେବା** - *ସ:* (କ୍ରି.) : ଅଣ୍ଡାଳି ହେବା, ଅସ୍ୱଚ୍ଛନ୍ଦ ହେବା, ଉନ୍ଧୁ ଉନ୍ଧୁ ହେବା

**ଢୁଡ଼ା** - *ଅନେ:* (ବି.ବିଂ.) : ପାଣିଗାତ, ଖାଲ, ନଦୀର ଚୁଆ

**ଢୁଡ଼ା ଆଳୁ** - *କେନ୍ଦୁ:* (ବି.) : ଖମ୍ବଆଳୁ

**ଢୁଢୁଷ, ଢୁଢ୍‌ଷ** - *ବୌ:* (ବି.) : ଧାନ ଅଗାଡ଼ି

**ଢୁଣି** - *ନୂ:* (ବି.) : କଢ

**ଢୁଣେଇ** - *ବର:* (କ୍ରି.) : ଖୋଜିବା

**ଢୁଣ୍ଡିବା** - *ସୁ:ଦେ:* (କ୍ରି.) : ଖୋଜିବା

**ଢୁପା** - *ବୌ:* (ବି.) : ମହୁଲ

**ଢୁମା** - *ରା:* (ବି.) : ଭୂତ

**ଢୁମ୍ପା** - *ଅନେ:* (ବି.) : ଗଞ୍ଜାମର ଦିଗ ପହଣ୍ଡି ଅଂଚଳରେ ପ୍ରଚଳିତ ପ୍ରାଚୀନ ଲୋକବାଦ୍ୟ, ଗଛର ଖୋଳପାରେ ତିଆରି ବାଦ୍ୟଯନ୍ତ୍ର, ଏକ ପାରମ୍ପରିକ ବାଦ୍ୟ ଓ ଲୋକ ସଙ୍ଗୀତ

**ଢୁରି** - *ସୁ:* (ବି.) : ଶଗଡ଼କୁ ଟେକିବା ପାଇଁ ଦୋକେନାଯୁକ୍ତ ଦଣ୍ଡ

**ଢୁର୍‌ଷ** - *ବୌ:* (ବି.) : ଢୁଦ୍‌ଷ, ଢୁଢୁଷ

**ଢୁଲ** - *ଅନେ:* (ବି.) : ବାଦ୍ୟଯନ୍ତ୍ର ବିଶେଷ, ଢୋଲକି

**ଢୁଲ୍‌କି** - *ଅନେ:* (ବି.) : ବାଦ୍ୟବିଶେଷ, ଛୋଟ ଢୋଲ, ଖୋଳ ଆକୃତିର ବାଦ୍ୟ, ଢୋଲକି

**ଢୁଲକ୍** - *କଳା:* (ବି.) : ମର୍ଦ୍ଦଳ ଭଳି ବାଦ୍ୟ

**ଢୁଇଙ୍ଗି** - *ସୁବ:* (ବି.) : ଧାନ ରଖିବା ପାଇଁ ଡୋଲି, ଡେଲିଙ୍ଗି

**ଢୁଲା** - *କଳା:* (କ୍ରି.) : ତଳେପକା

**ଢୁଲି** - *ରା:* (ବି.) : ଶସ୍ୟରଖିବା ବାଉଁଶିଆ

**ଢୁଲିଆ** - *କଳା:* (ବି.) : ଢୋଲ ବା ମର୍ଦ୍ଦଳ ବାଦକ

**ଢୁଲୁଚନା** - *ସ:* (ବି.) : ଚଣା ଭାଜିଲେ ଯାହା ଫୁଟି ପାରେ ନାହିଁ

**ଢୁଳେଇବା** - *ଦେ:ବା:ବା:* (କ୍ରି.) : ଝୁମେଇ ହେବା, ବସି ବସି ଶୋଇବା, ନିଦମାଡ଼ିବା, ବନ୍ଧୁ ଘରକୁ ମିଷ୍ଟାନ୍ନ ପ୍ରେରଣ ପାଇଁ ମାଟି ହାଣ୍ଡିକୁ ଚାଉଳ ପିଠଉରେ ଚିତ୍ରବିଚିତ୍ର କରିବା, ବାହାଘର, ବ୍ରତଘର ଆଦିରେ ମାଟି ଘର କାନ୍ଥ, ହାଣ୍ଡି, କଳସ ଆଦିକୁ ଚାଉଳ ବଟା ବା ଗେରୁରେ ଚିତ୍ର ଆଙ୍କିବା

**ଢୁସ୍‌ବାର** - *ସୁବ:* (କ୍ରି.) : ବାଡ଼ିରେ ଖେଞ୍ଚିବା / ବିନ୍ଧିବା, ଫୋଡ଼ିବା

**ଢୁସ୍‌ମା ମାରବାର** - *ସୁବ:* (କ୍ରି.) : ଘର ଘର ତୁଚ୍ଛାଟାରେ ବୁଲିବା

**ଢୁସ୍‌ମେଇବା** - *ସ:ବୌ:* (କ୍ରି.) : ଜବରଦସ୍ତ ପଶିବା, ହାବୋଡ଼ିଯିବା

**ଢୁସା** - *ସୁବ:ଗଞ୍ଜ:କୋ:ନୂ:* (ବି.ବିଂ.) : ମୁଥ, ମୋଟା, ସ୍ଥୁଳକାୟ, ମୋଟା ଚଦର, ପାଳର କୁଟାକାଟି

**ଢୁସିହେବା** - *ମା:* (କ୍ରି.) : ବାଧା ପାଇବା

**ଢୁସୁକା** - *ରା:* (ବି.) : ଗଛର ଆବୁ

**ଢୁଁଢ଼େଇ କୁଁଚେଇ** - *ଝା:* (କ୍ରି.) : ଏଣେତେଣେ ପଶିବା

**ଢେଉ** - *ଢ଼:ନ:କେ:* (ବି.) : ତରଙ୍ଗ, ଲହରୀ, ସମୁଦ୍ର ଲହଡ଼ି

**ଢେକଲ** - *ସୁ:କଳା:ସ:* (ବି.) : ମାଟିର ଖଣ୍ଡ, ଟେକା, ଢେଲ୍, ଡଟକା, ଟେଳା, ମାଟି ମୁଣ୍ଡା, ବଡ଼ ପଥର

**ଢେକାନ୍** - *କଳା:ନୂ:* (ବି.) : ଟେକା, ଟେଳା, ଛୋଟ ପଥର

**ଢେକାର** - *କୋ:କଳା:ମ:* (ବି.) : ହାକୁଟି, ଏଉଡ଼ି, ଖାଇ ସାରିବା ପରେ ପେଟ ଭିତର ବାୟୁ ମୁଖ ଗହ୍ୱର ବାଟ ଦେଇ ବାହାରକୁ ଆସିବା ଶବ୍ଦ

**ଢେକାଲ** - *ସୁବ:ବୌ:* (ବି.) : ଢେଲା, ଶୁଖା ମାଟି ଖଣ୍ଡ, ଢେଲା ପଥର

**ଢେକି** - *କଣ:* (ବି.) : ଢିଙ୍କି

**ଢେକିଆ** - *ଗଦ୍ୟ:* (ବି.) : ଦୁଷ୍ଟ ଗୋରୁଗାଈଙ୍କ ବେକରେ ଝୁଲୁଥିବା କାଠ

**ଢେକୁନ** - *ସୁ:କଳା:ନୂ:* (ବି.) : ଓଡ଼ଶ, ଛାରପୋକ

**ଢେଗ** - *ଅ:ଦେ:ରା:ନ:* (ବି.) : ଢଗ, କ୍ଷୁଦ୍ର କବିତା

**ଢେଗରା** - *ଅ:* (ବିଂ.) : ମୋଟା

**ଢେଗଲିବା** - *କଳା:* (କ୍ରି.) : ଜୋର ଜବରଦସ୍ତି ପ୍ରବେଶ କରିବା

**ଢେଙ୍କ** - *କନ୍ଧ:ଗ:ଗଦ୍ୟ:* (ବି.) : ଢିଙ୍କି, ତନଖି ଫାଟକ, ଠେଙ୍ଗା

**ଢେଙ୍କା** - *ପୂ:କେନ୍ଦୁ:* (ବି.) : ଢରା, ଲମ୍ବା ଧାନ ଗଛରେ ବନ୍ଧା ହୋଇଥିବା ଦଉଡ଼ି

**ଢେଙ୍କାଳ** - *ଗ:ନ:ଅ:ଦେ:* (ବି.) ବଡ଼ ମାଟିଗୁଳା, ଚେଳା, ବଡ଼ ମାଟିଖଣ୍ଡ

**ଢେଙ୍କିଆ** - *ବୌ:ରା:* (ବି.) : ନଳକୂଅ, ହେଟା

**ଢେଙ୍କିମେରା** - *ରା:* (ବି.) : ବୋରିଂକୂଅ

**ଢେଙ୍କୁଲି** - *ଅ:* (ବି.) : ଛିଟିକିଣି

**ଢେଙ୍ଗ୍‌ଟି** - *କନ୍ଧ:* (ବି.) : ଡେମ୍ଫ

**ଢେଟା** - *କଳା:* (ବି.) : ନାଡ଼, ବୃନ୍ତ

**ଢେଣାହେବା** - *କଳା:* (କ୍ରି.) ମୁଣ୍ଡା ହେଇଯିବା, ସଂକୁଚିତ ହୋଇ ସ୍ଥିର ରହିଯିବା, ପ୍ରତିକ୍ରିୟାଶୂନ୍ୟ ହେବା

**ଢେଣୀ** - *କେନ୍ଦୁ:* (ବିଂ.) : ଅତି ଦୁର୍ବଳ

**ଢେଣ୍ଡୁ** - *କନ୍ଧ:* (ବି.) : ଧନୁଶର

**ଢେଣ୍ଡି** - *ନବ:ବୌ:* (ବି.) : ଡେମ୍ଫ

**ଢେପ୍‌ଲା** - *କନ୍ଧ:* (ବି.) : ଡୋଲି

**ଢେପଡୋ** - *ନୂ:* (ଅ.) : ହତାଶ, ନିଷ୍ଫଳ

**ଢେପେଇ** - *ଗ:* (ବି.) : ଶଗଡ଼କୁ ଟେକି ରଖିବା କାଠ

**ଢେବାଢେବି** - *ରା:* (ବି.) : ଚୁଣ୍ଡ ହେବା

**ଢେବୁଆ** - *ବା:* (ବି.) : ଛାତ

**ଢେମଣି** - *ଭ:* (ବିଂ.) : ବେଢଙ୍ଗି

**ଢେମସା** - *ସଂ:କୋ:ମା:ଗଦ୍ୟ:* (ବି.) : ଗଦବା ସଂପ୍ରଦାୟର ଏକ ନୃତ୍ୟ, ଆଦିବାସୀ ନୃତ୍ୟ ବିଶେଷ, ଏକ ପ୍ରକାର କୋୟାନୃତ୍ୟ

**ଢେମା** - *ସୁବ:* (ବି.) ଗୋଲାକୃତି, ଗୋଟାଳିଆ

**ଢେର** - *ଦେ:ନ:* (ବିଂ.) : ଅନେକ, ଅଧିକ, ବହୁତ

**ଢେରା** - *ଅନେ:* (ବି.ବିଂ.) : ବାଡ଼ି ଉଠାଇବା ପାଇଁ ବ୍ୟବହୃତ ଓଜନ ଜିନିଷ, ଶସ୍ୟ ବିଶେଷ, ଦଉଡି ବଳିବା ବେଳେ ଗୁଣ ଧରିବା ଯନ୍ତ୍ର ବିଶେଷ, ଦଉଡ଼ି ତିଆରି ପାଇଁ ଦରକାର କାଠ ଫ୍ରେମ୍, ଝୋଟ ଦଉଡ଼ି ବଳିବାର ନଟେଇ, ବଳଦ ଗାଡ଼ିକୁ ଠିଆ କରାଇବା ପାଇଁ ଆଗରେ ବ୍ୟବହାର ହେଉଥିବା ଦୁଇ ଫାଳିଆ କାଠ

**ଢେରାମଣ୍ଡା** - *ଭ:* (ବି.) : ଚୈତ୍ର ମଙ୍ଗଳବାରରେ ଯୋଗିନୀଙ୍କୁ ଦିଆଯିବା ପିଠା

**ଢେଲ** - *ନବ:କଳା:ନୂ:* (ବି.) : ଟେକା, ଢେଲା

**ଢେଲପୁରି** - *ଗଦ୍ୟ:* (ବି.) : ଏକ ଶାଗ

**ଢେଲା** - *ଅନେ:* (ବିଂ.ବି.) : ବଡ଼ଆଖିଆ, ବଡ଼ ବଡ଼ ଆଖି ବିଶିଷ୍ଟ ବ୍ୟକ୍ତି, ଢିମା ଆଖିଆ, ମାଟିମୁଣ୍ଡା, ଟେଳା

**ଢେଲୁ** - *ନୂ:* (ବି.) : ପେଚା ପକ୍ଷୀ

**ଢେଷା** - *ବୌ:ନୂ:* (ବି.) : ବଡ଼ ଉକୁଣି

**ଢେସେଇବା** - *ମା:* (କ୍ରି.) : ଧକ୍‌କା ଦେବା

**ଢେସେଙ୍ଗା** - *ସୁବ:* (ବି.) : ଦୂଷିତ ପାଣିରେ ଗାଧୋଇବା ହେତୁ ଦେହରେ ଫଳି ଯାଉଥିବା ଛୋଟ ଛୋଟ ଆବୁ

**ଢେଁକ୍ରାବା** - *ସ:* (କ୍ରି.) : ହାକୁଟି ମାରିବା

**ଢେଁକିଆ କଲ୍** - *ସ:* (ବି.) : ନଳକୂଅ

**ଢେଁକି ପବନ ବହିବା** - *ନୂ:* (ଗ.) : ନିଶ୍ୱାସ ପ୍ରଶ୍ୱାସ ପ୍ରଖର ହେବା

**ଢେଁଠା** - *ସୁବ:* (ବି.) : ଡେମ୍ଫ

**ଢେଁଡା** - *ସୁବ:* (ବି.) : ମୁଣ୍ଡା

**ଢେଂଟ** - *କଳା:* (ବି.) : ଋଂପା, ଟାଂଗିଆ ପ୍ରଭୃତିର ବେଣ୍ଟ

**ଢେଂଟି** - *କଳା:* (ବି.) : ମୁଣ୍ଡି, ଫଳ ଡେମ୍ଫ

**ଢୋକ** - *ନ:କେ:* (ବି.) : ପାଟିଭରା ତରଳ ପଦାର୍ଥ, ଥରକେ ପାଣି ପାଟିରେ ଧରିବାର ପରିମାଣ

**ଢୋକଡ଼** - *ଗ:* (ବିଂ.) : ଅଣଓସାରିଆ

**ଢୋକପାଣି** - *ପୁ:* (ବି.) : ସ୍ୱଳ୍ପ ଉପାର୍ଜନ, ବଞ୍ଚିବାପାଇଁ ସାମାନ୍ୟ ପାଥେୟ

**ଢୋକର୍** - *କଳା:* (ବି.) : ଶଗଡ଼ର ଏକ ଉପକରଣ । ଶଗଡର ଚକ ହଳର ଗୋଡରେ ନ ବାଜିବା ପାଇଁ ଦିଆଯାଇଥିବା ଆଡ୍‌କି ପଟା

**ଢୋକେ** - *ଢ:କେ:ଯା:* (ବି.ବିଂ.) : ଏକ ଢୋକ, ମୁନ୍ଦେ, ଟିକେ ଟିକେ, ଥରକରେ ପିଇବାର ପରିମାଣ

**ଢୋଢ୍** - *କଳା:* (ବି.) : ପଶୁର ଶବ

**ଢୋଡ୍ର** - *ଢେ:* (ବି.) : କୋରଡ଼, ପୋଲା

**ଢୋଢୋ** - *କଳା:ଝା:* (ବିଂ.) : ବଡ଼, ବିରାଟ

**ଢୋଢ୍ଲ ପୋଢ୍ଲ** - *ସ:* (ବିଂ.) : ଆକୃତିରେ ବଡ଼

**ଢୋଢ୍ଲବଁକ** - *ନୂ:* (ବି.) : ଆକାରରେ ବଡ଼ ଓ ଲମ୍ବା ବେକ ବିଶିଷ୍ଟ ବଗ

**ଢୋପ୍‌ଢୋ** - *କଳା:* (ବିଂ.) : ଅନିମନ୍ତ୍ରିତ (ବ୍ୟକ୍ତି), ଅଦରକାରୀ (ବ୍ୟକ୍ତି)

**ଢୋପୋ** - *ସ:* (ବିଂ.) : ବଡ଼

**ଢୋର୍, ଢୋହ୍** - *ନୂ:* (ବି.) : ଶବ (ପଚା)

**ଢୋଲ** - *ଗ:କଣ:* (ବି.) : ବାଦ୍ୟ ବିଶେଷ

**ଢୋଲ୍‌ଡ଼ାଂଗ୍** - *କଳା:* (ବି.) ନଦୀ ଓ ପୋଖରୀରେ ହେଉଥିବା ଏକପ୍ରକାର ତୃଣ ଏହାର ଫଳ ଢୋଲ ପିଟା ବାଡ଼ିପରି ଦେଖାଯାଏ

**ଢୋଲ୍‌ମାରିବା** - *କଳା:* (କ୍ରି.) ଗୋଡ଼ି ବେଟାଣି ଖେଳରେ ପ୍ରତିପକ୍ଷ ଖେଳାଳିକୁ ହରାଇବା

**ଢୋଲି** - *ବ:* (ବି.) : ଚାରିକଡ଼ା ପାନ ଅର୍ଥାତ୍ 'ଦୁଇଶହ' ସଂଖ୍ୟକ ପାନରେ ଏକ 'ଢୋଲି' ହୁଏ

**ଢୋଲିଆ** - *ନ:ଢେ:ଗ:* (ବି.) ଯିଏ ଢୋଲପିଟେ, ଯେ ଢୋଲ ବଜାଏ, ଢୋଲବାଦନ କରୁଥିବା ଲୋକ

**ଢୌକନ** - *ଢେ:* (ବି.) : ଭେଟି, ଉପହାର, ଲାଞ୍ଚ, ଉତ୍କୋଚ

**ଢଁକ** - *ସୁବ:* (ବି.) : ବାଇଡ଼ଙ୍ଗ ଫଳ

**ଥନ୍ଥନ୍** - *ନବ:* (ଅ.) : କାନ୍ଦିବାର ପୂର୍ବାବସ୍ଥା

**ଥନ୍ଥନାବା** - *ସୁ:* (ବି.) ଆଖିଲୁହ ଛକେଇବା

**ଥନଘରା** - *କୋ:ଗ:* (ବି.) : ସ୍ତ୍ରୀମାନଙ୍କର ସ୍ତନ ରୋଗ, ସ୍ତନ ବ୍ୟଥା

**ଥତକା** - *ଗ:* (ବିଂ.) : ମୂର୍ଖ

**ଥତଡ଼ା** - *ଅ:କୋ:* (ବିଂ.) : ଦନ୍ତର, ଦାଢ ବା ଧାର ନଥିବା, ଦନ୍ତଡ଼ା

**ଥତରା** - *ଅନେ:* (ବି.ବିଂ.) : ଅକର୍ମଣ୍ୟ, ଅନ୍ଥରା, ଦାଢନଥିବା

**ଥତଲ** - *ଅନେ:* (ବିଂ.) : ପୃଥୁଳ, ସ୍ଥୂଳ, ପୁଥୁଳ (ପେଟ)

**ଥତା** - *ଗଞ:* (ବି.) : କହିଲାବେଳେ ପାଟି ଲାଗିବା

**ଥପଡ** - *ଅନେ:* (ବି.) : ଚାପୁଡ, ଥାପଡ଼

**ଥପା** - *ଅନେ:* (ବି.) : ମାଛ ଧରିବା ଯନ୍ତ୍ର, ଗେଣ୍ଡୁ ଫୁଲ, ମାଛଧରା ଖାଲୁଆ, ମାଛିଧରା ଉପକରଣ, କାଦୁଅ ମାଛ ଧରିବାର ସାଧନ ବିଶେଷ, କୋନ୍ ଆକୃତିର ବାଉଁଶ ଖଡ଼ିକାର ମାଛଧରା ଯନ୍ତ୍ର

**ଥପାକାଢ଼** - *ସୁ:* (ବି.) : ତିନି ଅଂକୁଶର ତୀର

**ଥପାତୁନା** - *ବୌ:* (ବି.) ମରାମତି, କାମଚଳା

**ଥପାଇହ** - *ସୁ:* (ବି.) : ଗୁଳ୍ମବିଶେଷ

**ଥପି** - *ବ:* (ବି.) : ବାଉଁଶ ଖାଡ଼ିରେ ତିଆରି ମାଛଧରା ଉପକରଣ

**ଥବ୍କାଇବା** - *ବୌ:* (କ୍ରି.) : ଅଟକାଇବା

**ଥବ୍କିଥବ୍କି** - *ବୌ:* (କ୍ରି.ବି.) : ଅଟକି ଅଟକି, ରହି ରହି

**ଥବଭୋ** - *ସୁ:* (ବିଂ.) : ସାମାନ୍ୟ ସରଳିଆ

**ଥବିର** - *ଦେ:* (ବିଂ.) : ବୃଦ୍ଧ, ବୁଢା, ସ୍ଥବିର

**ଥମ୍** - *ମା:* (ବି.) : ଥମ୍ବ, ସ୍ତମ୍ଭ

**ଥମ୍ଖାଇବା** - *ଅ:* (ବିଂ.) : ଆଶ୍ଚର୍ଯ୍ୟ ହେବା

**ଥମ୍ଣା** - *ମା:* (ବି.) : ଥୋଡ଼ି

**ଥମ୍ଥମ୍** - *କେ:* (ଅ.) : ରାଗିକି ଥମଥମ ହେଉଛି

**ଥମ୍ଥମାଲା** - *ଝା:* (କ୍ରି.ବିଂ.) ଦୁଃଖର ଆବେଗରେ ଭର୍ତ୍ତି ମୁହଁର ଦୃଶ୍ୟ

**ଥମକି** - *ସୁ:* (ବିଂ.) : ଅଟକି

**ଥମିକାଠ** - *ବା:* (ବି.) : ମେରୁକାଠ

**ଥମିଦ୍** - *ସ:* (ବି.) : ସ୍ଥିର ଅବସ୍ଥା

**ଥମିବା** - *ଅନେ:* (କ୍ରି.) : ଅଟକିଯିବା, ବନ୍ଦ ହେବା, ଥକିବା

**ଥମିଯିବା** - *ନ:* (କ୍ରି.) : ଥକିଯିବା, ବାର୍ଦ୍ଧକ୍ୟରେ ପହଞ୍ଚିବା

**ଥମ୍ବ** - *ଢ:ଦେ:* (ବି.) : ସ୍ତମ୍ଭ, ସାଙ୍ଗା, ଖୁଣ୍ଟ, ଖମ୍ବ

**ଥମ୍ଭନ** - *ଢ:* (ବି.) ସ୍ତମ୍ଭନ ବିଦ୍ୟା, ବଶୀକରଣ, ସ୍ତମ୍ଭନ

**ଥମ୍ବଲ** - *ସଂ:* (ବି.) : ସିଲେଇ ବେଳେ ଆଙ୍ଗୁଠିରେ ପିନ୍ଧା ଲୁହା ଟୋପି

**ଥୟ** - *ଦେ:ଛ:ଗ:କେ:* (ବି.ବିଂ.) : ଶାନ୍ତ, ସମ୍ଭାଳ, ନିଶ୍ଚଳ, ନିଶ୍ଚିତ, ସ୍ଥିର, ଅପେକ୍ଷା କର

**ଥୟଲ** - *ଛ:* (ବି.) : ପେଟୁଆ, ପୃଥକ

**ଥରଥରି** - *ସୁବ:* (ବି.) : ଛୋଟ ନଦୀର ବାଲିରେ ହେଉଥିବା ଏକ ସୁନ୍ଦର ଗୁଳ୍ମ, ଏହା ଝାଉଁଗଛ ପରି ଅବିକଳ ଦେଖାଯାଏ, କାଇଁଶରି ଲତା

**ଥରମହନା** - *ବା:* (ବିଂ.) : ସ୍ଥିରମନା, ଚୁପ ଶଇତାନ୍

**ଥରା ବାତ** - *ଅ:* (ବି.) : ବାତରୋଗ

**ଥରୁଆ** - *ଗ:ନ:* (ବିଂ.) : ଭୟାଳୁ, ଡରୁଆ

**ଥରୁଛେ** - *ଚୌ:* (ବିଂ.) : କମ୍ପୁଛେ

**ଥର୍‌ଗୁଟେ** - *କଳା:* (ବିଂ.) : ଥରେ ମାତ୍ର, ଗୋଟିଏ ଥର

**ଥଇକୁଲ୍** - *କଳା:* (ବି.) ଥଳକୁଳ, ଠିକ୍‌ଠିକଣା, ଗତିବିଧି, ଚିନ୍ତାଧାରା

**ଥଲ୍ ଥଲ୍** - *କଳା:ଗ:ନ:* (ବିଂ.) : ଢଳ ଢଳ, ତରଳ ବା ଅର୍ଦ୍ଧତରଳ ପଦାର୍ଥରେ କଂପନ ଅବସ୍ଥା ଚର୍ବି ମିଶ୍ରିତ, ମେଞ୍ଚା ମେଞ୍ଚା, ବହଳିଆ

**ଥଳ** - *ଅ:ଦେ:ନ:* (ବି.) : ପାଣିର ଗଭୀରତା, ଜଳର ତଳ, ଅଗଭୀର, ସ୍ଥଳ

**ଥଳାଇବା** - *ଗ:* (କ୍ରି.) : ସମତଳ କରିବା

**ଥଳିଆଚୁଘର** - *ନ:* (ବି.) : ମାରଦା ଘର

**ଥଳୀ** - *ନ:ଦେ:* (ବି.) : ମୁଣି

**ଥସଲା** - *ବା:* (ବି.) : ଢେକିଚି

**ଥାଆଟ** - *ଗ:* (ବିଂ.) : ଆଡ଼ମ୍ବର ସହକାରେ

**ଥାଇ** - *ଗ:ସୁବ:* (ବି.ବିଂ.) : ସ୍ଥାୟୀ

**ଥାଇତା** - *ଗଦ୍ୟ:* (ବି.) : ଅସ୍ଥିତ୍ୱ, ଥଇଥାନ

**ଥାଇ ଥିବାର** - *ଗ:* (ବି.) : ସ୍ଥିର ପ୍ରସଙ୍ଗ, ସ୍ଥାୟୀ ବ୍ୟାପାର

**ଥାଇସି** - *ଚୌ:* (କ୍ରି.) : ଥାଏ

**ଥାଉ** - *ନ:* (କ୍ରି.) : ରହୁ

**ଥାଉନ୍** - *ଚୌ:* (କ୍ରି.) : ଥାଆନ୍ତୁ

**ଥାଏତ** - *ସୁ:* (ଅ.) : ଯଦି, ହୁ, ତ

**ଥାଏତା** - *କଳା:* (କ୍ରି.) : ଥାଆନ୍ତା

**ଥାଏନି** - *ବା:* (କ୍ରି.) : ନଥାଏ

**ଥାକ** - *ଅନେ:* (ବି.କ୍ରି.) : ଧାଡି, ଗଦା, ଥକ୍‌କା ମାର, ଥକ୍‌କା ମେଣ୍ଟାଅ, ତାଙ୍ଗା, ଜାତିଆ, ଆଲମିରା ଆଦିର ଥାକ, ତଳଉପର କରି ସମାନ ଭାବରେ ରଖିବା କୌଶଳ

**ଥାକ୍‌ବା** - *ସ:* (କ୍ରି.) : ବିଶ୍ରାମ ନେବା

**ଥାକ୍‌ବାର** - *ସୁବ:* (କ୍ରି.) : କାମ ମଝିରେ ବିରାମ ନେବା

**ଥାକାଫୁଗ** - *କନ୍ଧ:* (କ୍ରି.) : ହାଲିଆହୋଇ

**ଥାକି** - *ବର:* (ବିଂ.) : ଗଚ୍ଛିତ

**ଥାକିତି ବଳଦ** - *ଗଞ୍ଜ:ଗ:* (ବି.) : ଶଗଡ଼ର ବାମପାର୍ଶ୍ୱରେ ଥିବା ବଳଦ

**ଥାକିବା** - *କେ:ଦେ:ନବ:ମା:* (କ୍ରି.ବିଂ.) ରହିବା, ଥାକ ମାରିବା, ଥକ୍କା ମାରିବା, କିଛି ସମୟପାଇଁ ବିଶ୍ରାମ ନେବା, କ୍ଳାନ୍ତ

**ଥାକୁଲମାକୁଲ** - *ନ:ମ:ଦେ:* (ବିଂ.) : ପେଟା, ପେଟୁଆ

**ଥାଚି** - *ରା:* (କ୍ରି.) : ଥିବ

**ଥାଟ** - *ଅନେ:* (ବି.ବିଂ.) : ସୈନ୍ୟସାମନ୍ତ, ଲୋକ ସମୂହର ଗହଣ, ଦଳ, ବାଉଁଶରେ ତିଆରି ଚାଳ, ଥାଟପଟୁଆର, ଆଠ, ସୈନ୍ୟ, ଦଳ, ବୈଷୟିକ ସମ୍ପତ୍ତି, ସୁଖ, ଆଡ଼ମ୍ବର, ପ୍ରାଚୁର୍ଯ୍ୟ

**ଥାଟ୍‌ବାଟ୍** - *କଳା:ଝା:* (ବି.) : ଆଡମ୍ବର, ପ୍ରାଚୁର୍ଯ୍ୟ ସମ୍ପନ୍ନ, ଶୋଭାଯାତ୍ରାରେ ଆସିବା, ଚିକିଣିଆ ରୂପ

**ଥାଟି** - *ରା:* (ବି.) : ବାଉଁଶର କାନ୍ଥ

**ଥାଟେ** - *କଳା:* (ବିଂ.) : ଆରାମରେ, ସୁଖରେ, ଆନନ୍ଦରେ

**ଥାଟ୍ଟ** - *ଭ:* (ବିଂ.) : ଚେହେରା

**ଥାଡମା** - *ଗ:* (ବିଂ.) : ମୂର୍ଖ

**ଥାଡାଥୁମା** - *କୋ:* (କ୍ରି.) କଲବଲ ହୋଇଯିବା

**ଥାଡି** - *ଦେ:ଗଦ୍ୟ:* (ବି.) : ଜମା, ପୁଞ୍ଜି, ଧନ ସମ୍ପଦ

**ଥାଡୁଆ** - *ଟା:* (ବିଂ.) : ଉଦ୍ୟୋକ୍ତା

**ଥାଥା ମାମା** - *ଯା:ନବ:ଗଜ:ଖୋ:* (କ୍ରି.ବିଂ.ଅ.) : ଚଳେଇନେବା ବ୍ୟାପାର, ହଁ ନାହିଁ ଦ୍ୱନ୍ଦ୍ୱରେ ଥିବା, ଦ୍ୱନ୍ଦ୍ୱ, ସନ୍ଦିହାନ, ଅନିଶ୍ଚିତ

**ଥାନ** - *ଅନେ:* (ବି.) : ଜାଗା, ଲୁଗା, ସ୍ଥାନ, ରହିବାର ସ୍ଥାନ, କପଡ଼ା, ଧଳାଲୁଗା

**ଥାନ ଅଥାନ** - *କୋ:* (ବି.) : ଶରୀରର ସମ୍ବେଦନଶୀଳ ଅଂଶ

**ଥାନପତି** - *ପୁ:ଦେ:* (ବି.) : ସ୍ଥାୟୀ ବାସିନ୍ଦା, ସ୍ଥାନ ଅଧିକାରୀ, ଅଧିଷ୍ଠାତ୍ରୀ ଦେବତା

**ଥାନମୁଦ୍ରା** - *କୋ:ଗଜ:* (ବି.) : ଆକ୍ଷି ଓ କର୍ଣ୍ଣର ମଧ୍ୟଭାଗ, କାନମୁଣ୍ଡା

**ଥାନି** - *କୋ:ଗ:ରା:* (ବି.) : ଲମ୍ବା କପଡ଼ା, ଲୁଗା, ସୂତା ଲୁଗାର ଖଣ୍ଡ, ଶାଢୀ

**ଥାନୁ, ଠାନୁ** - *କୋ:* (ଅ.) : ଠାରୁ

**ଥାପ** - *ଢ:କଳା:* (କ୍ରି.) : ସ୍ଥାପନ କରିବା, ହାତ ପାପୁଲିରେ ଘୋଡେଇବା ଓ ଚେପେଇବା

**ଥାପ୍‌କିବା** - *ଗୌ:* (କ୍ରି.) : ଅଟକିବା

**ଥାପ୍‌ନା** - *ଅନେ:* (କ୍ରି.ବି.) : ସ୍ଥାପନ, ପ୍ରତିଷ୍ଠା

**ଥାପ୍‌ବା** - *କଳା:ସ:କଳା:* (କ୍ରି.) : ଥାପିବା, ହାତ ପାପୁଲିରେ ଘୋଡେଇବା ଓ ଚେପେଇବା, ସ୍ଥାପନ କରିବା, ପ୍ରତିଷ୍ଠା କରିବା

**ଥାପଡ** - *ଅନେ:* (ବି.) : କଟୁରୀ, ଚାପଡ଼ା

**ଥାପା** - *ଦେ:* (ବି.) : ମାଛ ଧରିବା ପୁଳ

**ଥାପାଥୁପି** - *କଳା:* (କ୍ରି.) : ଉପର ଠାଉରିଆ ଭାବେ ଛୁଆଁ ଛୁଇଁ କରିବା, କୌଣସି ମତେ ଘଟଣା ବା ସମସ୍ୟାକୁ ଚପେଇ ଦେବା

**ଥାପି ପଡ଼ିବା** - *କୋ:* (କ୍ରି.) : ଜଣକପାଇଁ ଅନ୍ୟଜଣେ ଦାୟିତ୍ୱ ନେବା

**ଥାପିବା** - *କଳା:ଭ:ନବ:* (କ୍ରି.) : ହାତ ପାପୁଲିରେ ଘୋଡେଇବା ବା ଚେପେଇବା, ସ୍ଥାପନ କରିବା, ଲେପିବା, ବସାଇବା, ପ୍ରତିଷ୍ଠା କରିବା

**ଥାପି ମାରବାର୍** - *ସୁବ:* (କ୍ରି.) : ଇଟା, ଧାନ ବସ୍ତା ଇତ୍ୟାଦି ଧାଡିରେ ଉପରକୁ ଉପରକୁ ଲଦି ଥୋଇବା

**ଥାବ** - *ସ:ସୁବ:* (ବି.) : ସ୍ଥିର, ନିର୍ଣ୍ଣୟ

**ଥାବର** - *ଅ:ନ:କଣ:* (ବି.ବିଂ.) ସ୍ଥାବର ସଂପତ୍ତି

**ଥାବୁରା** - *ଭ:* (ବିଂ.) : ଚାଲିବାକୁ ଅକ୍ଷମ

**ଥାବେ** - *ସ:* (ବି.) : ସ୍ଥିର ରହିବା

**ଥାବେଥାବେ** - *ସ:* (ବିଂ.) ଠିକ୍‌ଠିକ୍ ଜାଗାରେ

**ଥାମ୍‌ବା** - *ମ:* (କ୍ରି.) : ଥମିଯିବା

**ଥାୟି** - *ରା:* (ବି.) : ଛୋଟ ଭଉଣୀ

**ଥାୟିଲି** - *ରା:* (ବି.) : କଇଁଚି

**ଥାଇ୍** - *ମ:* (ବି.) : ଥାଳି

**ଥାଇକୁଡ଼ି** - *କ:ସଂ:* (ବି.) : ଏକ ପ୍ରକାର ଔଷଧୀୟ ଗୁଳ୍ମ, ସ୍ମୃତିଶକ୍ତି ପାଇଁ ଔଷଧ ଗଛ

**ଥାଇବନ୍ଧାନି** - *ଝା:* (କ୍ରି.) : ବାହା, ବ୍ରତ ବେଳେ ଥାଳରେ ଯେଉଁ ବନ୍ଧାପନା କରାଯାଏ

**ଥାଲା, ଥାଲି** - *ମା:ସୁ:ବ:ସୁବ:* (ବି.) : ଥାଳି, ବଡ଼ଥାଳି

**ଥାଲାସେମିଆ** - *ସଂ:* (ବି.) : ଏକ ରକ୍ତଜନିତ ରୋଗ

**ଥାଳ** - *ନ:ଦେ:ଅ:* (ବି.) : ଭିକ୍ଷାପାତ୍ର, ତୁମ୍ବା, ଯୋଗୀର ଲାଉତୁମ୍ବା

**ଥାଳମଟାଳ** - *ଯା:* (ବି.) : ବିପୁଳ, ପରିପୂର୍ଣ୍ଣ

**ଥାଳା** - *ମ:* (ବି.) : ଛୋଟ ଥାଳିଆ

**ଥାଳିଆ** - *ଖୋ:ନ:* (ବି.) : ଚଟକା ଧାତୁ ନିର୍ମିତ ପାତ୍ର, ଛୋଟଥାଳି

**ଥି** - *କଣ:* (ଅ.) : ଠାରେ

**ଥିଅନ୍** - *କଳା:* (କ୍ରି.) : ଥାଆନ୍ତୁ

**ଥିଆ** - *ମ:* (ବି.) : ଥିବ

**ଥିଏଟର** - *ଢେ:ଦେ:* (ବି.) ଡ୍ରାମା, ନାଟ୍ୟଶାଳା, ନାଟକାଭିନୟ

**ଥିତା** - *କଳା:* (କ୍ରି.) : ଥାଏତା, ଥାଆନ୍ତା

**ଥିତି** - *ସୁବ:ଅ:ଜ:* (ବି.) : ସ୍ଥାୟିତ୍ୱ, ସ୍ଥିତି

**ଥିତି କରବାର** - *ସୁବ:* (କ୍ରି.) : ସ୍ଥାୟୀ ଭଆବରେ ରଖିବା ପାଇଁ ଘର ଦ୍ୱାର ଆସବାବପତ୍ର

**ଥିନ୍** - *ବା:* (ଅ.) : ଟି, ଦବୁଥିନ୍

**ଥିନି** - *କଳା:* (କ୍ରି.) : ଥିଲି

**ଥିପ୍‌ଥିପା** - *ଚୌ:* (ବିଂ.) : ସରସର

**ଥିପ୍‌ବା** - *ସ:ସୁ:କଳା:* (କ୍ରି.ବି.) : ବିନ୍ଦୁବିନ୍ଦୁ ପଡ଼ିବା, ଥିପିବା, ପଡ଼ିବା

**ଥିପେ** - *ସୁବ:ସ:ସୁ:* (ବିଂ.ବି.) : ଅଳ୍ପ, ତରଳ ବସ୍ତୁ ପାଇଁ ଏହା ବୁଝାଇ ଥାଏ, ଥୋପାଏ, ଟୋପେ, ଅଳ୍ପ

**ଥିବେ** - *ସୁ:* (କ୍ରି.) : ରହିବେ

**ଥିମେଟ୍** - *ସୁବ:* (ବି.) ଦାନାଦାର କୀଟନାଶକ ବିଷ

**ଥିର** - *ଅନେ:* (ବି.) : ତୋରାଣି, ଘିର, ଧୀର, ପେଜ,

**ଥିରପାଏନ୍** - *ସ:* (ବି.) : ଥିର ପାଣି

**ଥିରପିଆ ବେଲା** - *ସୁବ:* (ବି.) : ଚାଷୀମାନଙ୍କ ବିଲରେ ପଖାଲ ଖିଆ ସମୟ, ସକାଲ ଆଠ ନଅଟା ସମୟ

**ଥିର୍‌କରି** - *ମ:* (କ୍ରି.) : ଆସ୍ତେକରି

**ଥିଲାବାଲା** - *ସୁ:ନ:ଭ:* (ବିଂ.) : ଧନୀ

**ଥିସି, ଥିସୁ** - *କଳା:* (ବିଂ.କ୍ରି.) : ଥାଏ, ଥାଉ

**ଥିଁ** - *ସୁବ:* (ଅ.) : ଠାରେ

**ଥିଂଅ** - *କଳା:* (ଅ.) : ଥାଅ

**ଥୀରି** - *କୋ:* (ବିଂ.) : ଧୀରେ

**ଥୁଆ** - *ସୁବ:ସୁ:ବୌ:ଦେ:* (ବି.) : କଣ୍ଟାଥିବା ସବୁଜ ବାଡ ଏହାର ପତ୍ର ଛେଳି କାନ ପିର, ଏ ଗଛର ପତ୍ର ଛିଣ୍ଡେଇଲେ କ୍ଷୀର ବାହାରେ, ରଖା, ବହଳ, ନିଶ୍ଚିତ ଅର୍ଥରେ,

**ଥୁଆଥୋଇ** - *ନ:ଗ:* (ବି.) : ଜିନିଷଗୁଡ଼ିକ ରଖିବା, ବିଧବା ଶୁଦ୍ର ଜାତୀୟ ସ୍ତ୍ରୀର ପୁନର୍ବିବାହ

**ଥୁଇନ୍** - *ଚର:* (ବି.) : ବୁଣାଯାଇଥିବା ଶାଢ଼ିକୁ ଗୁଡ଼ାଯାଇଥିବା କାଠ

**ଥୁଇବାର** - *ସୁବ:* (କ୍ରି.) : ରଖିବା, ଥୋଇବା

**ଥୁକ** - *ଅନେ:* (ବି.) : ଛେପ, ପିକ, ପୁସ୍ତକର ପୃଷ୍ଠା ନିର୍ଣ୍ଣୟ ପାଇଁ ଦିଆଯାଉଥିବା ଚିହ୍ନ, ଥୋକ,

**ଥୁକୁରେସ୍** - *କଳା:* (କ୍ରି.) : ଛେପ ପକାଉ ଥାଏ

**ଥୁଙ୍ଗା** - *ରା:* (ବି.) : ଖଲିର ପାତ୍ର

**ଥୁଡ଼ି** - *ରା:କେ:କୋ:* (ବି.) : ତଳପାଟି, ଚିବୁକ, ଥୋଡ଼ି, ମୁହଁର ନିମ୍ନଭାଗ

**ଥୁଡୁକା**- *ରା:* (କ୍ରି.) : ଥରିବା

**ଥୁଣ୍ଡିଆମି** - *ମ:* (ବି.) : ଯୁକ୍ତିତର୍କ

**ଥୁଣ୍ଡୁକୁ** - *ରା:* (ବି.) : ଲାଉତୁମ୍ବା

**ଥୁତ୍‌ନା** - *ବୌ:ସ:ଗଦ୍ୟ:* (ବି.) : ଥୋମଣା, ଥୁମୁନା, ଥୁଣ୍ଡି, ମୁହଁ

**ଥୁତ୍‌ରା** - *ନବ:* (ବିଂ.) : ଖନା

**ଥୁଚକୁଣ୍ଡି** - *ବ:* (କ୍ରି.) : ଥୁଥୁ କରିବା

**ଥୁତା** - *ସ:* (ବିଂ.) : ଧାର ବିହୀନ

**ଥୁତୁଡ଼ା** - *ନବ:* (ବିଂ.) : ଖଣ୍ଡିଆ କହୁଥିବା (ବ୍ୟକ୍ତି)

**ଥୁତୁମ୍ ଥାତୁମ୍** - *ସ:କଳା:* (ବି.କ୍ରି.) : କିଛି ଭାବି ନପାରିବା, କିଂକର୍ତ୍ତବ୍ୟ ବିମୂଢ, ଦରାଣ୍ଡିହେବା

**ଥୁତୁଲା** - *ବ:* (ବିଂ.) : ଖନେଇ କଥା କହୁଥିବା ଲୋକ

**ଥୁଥନା** - *ସୁ:ସୁବ:ଚର:* (ବି.) : ଥୋମଣି, ଥୋଡି, ଚିବୁକ

**ଥୁଥମେଇ** - *ଝା:* (କ୍ରି.) : ମୁହଁ ଲଗେଇ

**ଥୁଥରିବା** - *ସୁ:* (କ୍ରି.) ବାରଂବାର ମନେକରିବା

**ଥୁଥା** - *ଦେ:* (ଅ.) : ଧିକ୍କାର

**ଥୁନ୍** - *କଳା:* (ଅ.) : ଠାରୁ, ରୁ

**ଥୁନା** - *ଗଦ୍ୟ:* (ବି.) : ଭଉଣୀ

**ଥୁନିଏ** - *ଗଦ୍ୟ:* (ବି.) : ଅଣ୍ଟା ଦଉଡ଼ି

**ଥୁପ** - *ବା:ନ:* (ବି.) : ଥୋପ, ଛେପ

**ଥୁପନା** - *ଗଦ୍ୟ:* (ବି.) : ପାଲିଙ୍କି ଭିତରେ ଝୁଲୁଥିବା ରେଶମର ସୂତା ପେଣ୍ଡା

**ଥୁପାଥୁପି** - *ବା:* (ବିଂ.) : ଗଣ୍ଡଗୋଳ ପାଇଁ ଉଦ୍ୟତ

**ଥୁପି** - *କଳା:ସୁବ:ସ:ବର:* (ବି.) ମାଛ ଧରିବା ପାଇଁ ବ୍ୟବହୃତ ବାଉଁଶ (ହ୍ୟାଣ୍ଡେଲ୍) ଲଗା କ୍ଷୁଦ୍ର ଜାଲ ବିଶେଷ, ମାଛ ଧରିଥିବା ଛୋଟ ଜାଲ, ମଶାରୀକୁ ବାଉଁଶ ବାଡ଼ିଦ୍ୱାରା ବନ୍ଧାଯାଇ ମାଛ ଧରା ସାମଗ୍ରୀ

**ଥୁପିଆସିବା** - *ବା:* (କ୍ରି.) : ମାରିବାକୁ ଆସିବା

**ଥୁପେ** - *ସ:ବୌ:କନ୍ଧ:* (ବିଂ.) : ଅଳ୍ପ ପରିମାଣ, ଟିକେ

**ଥୁବ୍ରାମୁହାଁ** - *ବୌ:* (ବି.) : ଥୋବଡ଼ା ମୁହାଁ

**ଥୁବକୁଥାବ୍‌କୁ** - *ବୌ:* (ବି.) : ଥତମତ

**ଥୁମ୍‌ସି** - *ନୂ:* (ବିଂ.) : ନୀରବ

**ଥୁମା, ତୁମା** - *ସୁ:* (ବି.) : ଶୁଖା ଲାଉ ମାଠିଆ

**ଥୁମେନ** - *ଗ:* (ବିଂ.) : ଯେଉଁ ପାଣି ବଂଧା ଦ୍ୱାରା ଅଟକି ଫୁଲି ରହିଥାଏ

**ଥୁମେର** - *ସୁବ:* (ବି.) : ସାପପରି ମୁଣ୍ଡଥିବା କାତି ନ ଥିବା ଏକ ମାଛ .ଏହାକୁ ଖାଆନ୍ତି

**ଥୁମ୍ପିବା** - *କୋ:ବା:* (କ୍ରି.) : ଛେପ ପକାଇବା

**ଥୁମ୍ବା** - *ଗଦ୍ୟ:* (ବି.) : ମଲ୍ଲୀଫୁଲ

**ଥୁମ୍ଭି** - *ବା:* (ବି.) : ଗୁଣ୍ଡୁରି ପକ୍ଷୀ

**ଥୁରବାଲା** - *ସୁ:* (କ୍ରି.) : ପଛରେ ଗୁଡ଼ାଇବା

**ଥୁରରେ** - *ସୁବ:* (ଅ.) : ଛିକର, ଅବଜ୍ଞାସୂଚକ ଛେପ ପକାଇବା ଆଦି ସୂଚକ ଉଚ୍ଚାରଣ

**ଥୁରେ** - *ନୂ:ସୁବ:ସ:ଗ:* (ବିଂ) ଅଳ୍ପ, ଧୋଡାଏ

**ଥୁର୍ପିବା** - *ବୌ:* (କ୍ରି.) : ତାଳି ପକା କାମ କରିବା

**ଥୁର୍ ଥରାବା** - *ସ:* (କ୍ରି.) : ଥରହର ହେବା

**ଥୁର୍‌ଶାଗ୍** - *ଗଦ୍ୟ:* (କ୍ରି.) : ଗଜାହେବା

**ଥୁର୍‌ସିଏ** - *ଗଦ୍ୟ:* (ବି.) : ବଥ

**ଥୁଲ୍ଲାବାର** - *ସୁବ:* (କ୍ରି.) : ଜଣକ ପଛରେ କୁକୁର ଲଗାଇ ଦେବା

**ଥେଇଆ** - *ଅ:* (ବିଂ.) : ହାଲିଆ, ବାରମ୍ବାର ଚେଷ୍ଟା କରି ଥକିଯିବା

**ଥେଇ ଥେଇ** - *ଦେ:* (ଅ.) : ନାଚିବାର ଉକୁଟ, କଳିକଜିଆ

**ଥେଇୟା** - *ନ:ଦେ:* (ବି.) : ହାଲିଆ ହେବା, ନୟାନ୍ତ ହେବା, ଅତିଷ୍ଠ ହେବା, ବିରକ୍ତ ହେବା

**ଥେଣିକି** - *ରା:* (ବି.) : ଇନ୍ଦ୍ରଧନୁ

**ଥେଣ୍ଟ** - *ଯା:ବା:ଦେ:* (ବି.) : ଭୂଭାଗର ଗୋଜିଆ ଅଂଶ, ଖଣ୍ଡ, ଦୁଷ୍ଟଲୋକ, ଚୋର

**ଥେଣ୍ଟକାଲା** - *ବା:ରା:ଗ:* (ବିଂ.ବି.) : ପ୍ରକୃତ କାଲ ହୋଇନଥିବା ବ୍ୟକ୍ତି, ଅଳ୍ପକାଲ

**ଥେଣ୍ଡା** - *ରା:ଦେ:* (ବି.) ଚଞ୍ଚଳ ବୁଝିପାରୁନଥିବା ଲୋକ, ଅମାନିଆ, ଅବାଧ

**ଥେତ** - *କଳା:ସ:* (ବି.ଅ.) : ଥିବ, ଥାଇପାରେ, ଧେତ୍

**ଥେତା** - *ବୌ:ସୁବ:* (ବିଂ.) : ନିର୍ବୁଦ୍ଧିଆ, ମୂଢ, ବୋକା, ବାକ୍‌ଚାତୁରୀ ନଥିବା

**ଥେନ୍ତେଇ** - *ଭ:* (କ୍ରି.) : ଖଟେଇ ହେବା

**ଥେବ୍** - *ସୁବ:* (ବି.) : ବିଶ୍ରାମ, ବିରତି, ଶାନ୍ତି

**ଥେବ୍‌ବା** - *ନୂ:କଳା:* (କ୍ରି.) ରହିବା, ଅଟକିବା, ସ୍ଥିର ହେବା

**ଥେୟା** - *ରା:* (ବି.) : ମୃଦଙ୍ଗର ଦକ୍ଷିଣପାର୍ଶ୍ୱ

**ଥୋଇଲୀ** - *ଗଦ୍ୟ:ନ:* (ବି.) : ପୋଇଲୀ, ରକ୍ଷିତା

**ଥୋକ** - *ପୁ:ସୁ:* (ବିଂ.) : ଅଧିକ ପରିମାଣ, ପୁଳାଏ, ମୋଟାମୋଟ

**ଥୋକେ** - *ଜ:ରା:ନ:* (ବି.ବିଂ.) : ଦଳେ, କମ ଜିନିଷ, କିଛି

**ଥୋଡୁଆ** - *ଦେ:* (ବି.) : ଧାନଗଛର ଗର୍ଭରେ ଥିବା ଧାନ କେଣ୍ଡା

**ଥୋଢ଼** - *ଭ:ନ:କେ:ଜ:* (ବି.) : ଓଠ, ଓଷ୍ଠ, ଧାନ ଗଛରୁ ଧାନ ବାହାରିବା, ଗର୍ଭସ୍ଥ ଧାନସିଞ୍ଜା, ଦାଢ଼ି, କଦଳୀ ମଞ୍ଜା

**ଥୋଢ଼ପାହାର** - *ନ:ଗ:* (ବି.) : ହାତୀର ଶୁଣ୍ଢ

**ଥୋଢ଼ାଏ** - *ନ:* (ବିଂ.) : ମୋଞ୍ଚାଏ, ବିଡ଼ାଏ

**ଥୋଢ଼ି** - *କଳ:ସୁ:* (ବି.) : ଚିବୁକ, ତଳଓଠ, କମ୍, ଥୋଡ଼ା

**ଥୋଢ଼ିଆ** - *ନ:ଦେ:* (ବିଂ.) : ଦାଢ ନଥିବା, ଅପରିଷ୍କାର, ବଳଦ ଉପରେ ମାଲ ବୋଝାଇ କରି ନେବା ବ୍ୟବସାୟୀ

**ଥୋଢ଼ିଆ ବଳଦ** - *ଗ:* (ବି.) : ଯୋଉଁ ବଳଦ ପିଠିରେ ଭାର ବହନ କରାଯାଏ

**ଥୋତଡା** - *ନବ:ଗ:* (ବିଂ.) : ଖନା, ଜରାଜୀର୍ଣ୍ଣ ପୁରୁଣା

**ଥୋତନା** - *କଳା:* (ବି.) : ତୁଣ୍ଡ, ଦୁଇଓଠ

**ଥୋତା** - *ଖୋ:* (ବିଂ.) : ଖନା

**ଥୋତୋଗୋମୋ** - *କଳା:* (କ୍ରି.) ହଡ଼ବଡ଼େଇଯିବା

**ଥୋତୋ ଥୋମୋ** - *ସ:* (ବି.) : କିଂକର୍ତ୍ତବ୍ୟ ବିମୂଢ

**ଥୋଥୋ** - *ସ:* (ବିଂ.) : ବିଫଳ ବ୍ୟକ୍ତି

**ଥୋପ** - *ଜ:ନ:ଦେ:ଖୋ:* (ବି.) : ମାଛ ଆଧାର, ଗଭା, ଝରା, ଗୁଚ୍ଛ, ପୋକ, ଜିଆ, ମଇଦା, ଇତ୍ୟାଦି ବନସୀରେ ବ୍ୟବହାର କରାଯାଉଥିବା ପଦାର୍ଥ

**ଥୋପା** - *ଜ:* (ବି.) : ପେଣ୍ଠା

**ଥୋପି** - *ରା:* (ବିଂ.) : ସ୍ଥିର କରି

**ଥୋପେଇବା** - *ପୁ:* (କ୍ରି.) : ମୁଣ୍ଡକୁ ପାପୁଲିରେ ମୃଦୁ ଆଘାତ କରିବା

**ଥୋବଣୀ** - *ଗ:* (ବି.) : ପଶୁ ମାନଙ୍କର ଓଷ୍ଠ, ତୁଣ୍ଡ

**ଥୋବରା** - *ଭ:ଢ:ପୁ:* (ବିଂ.) : ବେହିଆ, କଥା ଯାହାକୁ କାଟେ ନାହିଁ, ଅଲାଜୁକ, ନିର୍ଲଜ

**ଥୋମ୍ନା** - *କଳା:* (ବି.) : ଥୋମଣା, ତୁଣ୍ଡ

**ଥୋମଣି** - *ଭ:ନ:* (ବି.) : ମୁହଁର ଅଗ୍ରଭାଗ, ଗୋରୁଙ୍କ ମୁହଁ

**ଥୋର୍‌ପାଲ୍** - *କଳା:* (ବି.) : ହାତୀର ଶୁଣ୍ଢ, ଥୋର୍‌ପା

**ଥୋଲିମୁଆଁ** - *ଗଦ୍‌ୟ:* (ବି.) : ଏକ ପ୍ରକାର ମୁଆଁ

**ଥୋଲା** - *ଦେ:ଯା:* (ବି.) : ଗୁଚ୍ଛ, ପେନ୍ଥା, ସ୍ତବକ

# ଦ

ଦଅଡ଼ - *ଭ:* (ବି.) : ସରୁ ମସିଣା

ଦଅଣା - *କ:ଦେ:* (ବି.) : ସୁବାସ ଗଛ ଓ ପତ୍ର, ଦୟଣା

ଦଅଁରା - *ଢ଼:ବ:କଲା:* (ବି.) ଦଉଡ଼ି, ହଳପଘା ଦଉଡି, ଚାରି-ପାଞ୍ଚ ହାତ ଲମ୍ବର ସାମାନ୍ୟ ମୋଟା ଦଉଡି

**ଦଇ** - *ମା:ଅ:କ:* (ବି.) : ଦହି, ଦଧି

**ଦଇତ** - *ଅନେ:* (ବି.) : ଅସୁର, ରାକ୍ଷସ

**ଦଇତା** - *ନ:ପୁ:* (ବି.) : ଜଗନ୍ନାଥଙ୍କ ସେବକ

ଦଇତାପତି - *ପୁ:ଖୋ:ସ:* (ବି.) : ଜଗନ୍ନାଥ ମନ୍ଦିରର ବ୍ରାହ୍ମଣ, ସ୍ନାନପୂର୍ଣ୍ଣିମା ଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଯେଉଁମାନେ ଜଗନ୍ନାଥଙ୍କ ପ୍ରମୁଖ ସେବକ

ଦଇଦଇକାଇଟି - *ଖୋ:* (ବି.) : ଏକପ୍ରକାର ଲଟା

ଦଇନି - *କ:ନ:* (ବି.) : କାତର ପ୍ରାର୍ଥନା, ପ୍ରାର୍ଥନା

ଦଇବ - *ଅନେ:* (ବି.) : ଈଶ୍ୱର, ଭଗବାନ, ଖୋଦା, ବିଧାତା, କପାଳ, ଭାଗ୍ୟ

**ଦଇବଛଡ଼ା** - *ଅନେ:* (ବିଂ.) : ମନ୍ଦ କପାଳ, ଅଲକ୍ଷଣା, ଈଶ୍ୱରଛଡ଼ା, ଅବାଗିଆ, କାହା କଥା ଶୁଣୁନଥିବା

ଦଇବାତ୍ - *ଅନେ:* (ଅ.) : ହଠାତ୍

ଦଇବିଯୋଗ - *ଅନେ:* (ବିଂ.) : ଅଲୌକିକ ଭାବେ

ଦଇମି - *ଦେ:* (ବି.) : ବିନୟୀ, ବିନୀତ, ନିବେଦନ

**ଦଇଲା** - *ଗ:* (ବି.) : ଗଞ୍ଜପା ସାରର ଦଶଟି ପଟ ସାର

**ଦଉ** - *ଅନେ:* (କ୍ରି.) : ଦେଉ

**ଦଉଜନା ଧାନ** - *କେନ୍ଦୁ:* (ବି.) : ଧଳା ରଙ୍ଗର ମଧ୍ୟମ କିସମର ଧାନ

**ଦଉଡ଼ ଧାପଡ଼** - *ଅ:* (ବି.) : ଧାଁ ଧପଡ଼

ଦଉଡ଼ା - *ଅ:* (ବି.) : ରଶି

ଦଉଡ଼ି ଦେବା - *ଅନେ:* (କ୍ରି.) : ଫାଶୀ ଦେବା, ରଶି ଲଗାଇ ଆତ୍ମହତ୍ୟା

ଦଉଡି ଖେଳ - *ଚ:* (ବି.) : ଧାନକଟା ପରେ ଏଇ ସବୁ ଖେଳ, କୌଶଳ ଗାଁ ଅଞ୍ଚଳର ଲୋକେ ପ୍ରଦର୍ଶନ କରିଥାଆନ୍ତି

ଦଉଡ଼ି - *ଖୋ:ନ:ଦେ:* (ବି.କ୍ରି.) : ଗରମ ଭାତ, ପାଣି ଟାଣିବାପାଇଁ, ଚାଷପାଇଁ ଲଙ୍ଗଳରେ ବ୍ୟବହୃତ ଟାଣ ରସି, ଧାଇଁ ଧାଇଁ, ଦଉଡ଼ା, ଦଉରା

**ଦଉଡ଼ିଆ** - *ଦେ:* (ବିଂ.) : ଦଉଡ଼ିରେ ବୁଣା (ଖଟ, ଢାଲ)

**ଦଉଡ଼ି ଭାଙ୍ଗିବା** - *ସଂ:* (କ୍ରି.) : ଦଉଡ଼ି ତିଆରି କରିବା

**ଦଉଥିତା** - *କଳା:* (କ୍ରି.) : ଦେଉଥାନ୍ତା

**ଦଉନ୍** - *କଳା:ସ:* (କ୍ରି.) : ଦିଅନ୍ତୁ, ଦିଅ, ପ୍ରଦାନ କର

**ଦଉରା** - *ସୁ:ଦେ:ଅ:* (ବି.) : ଛେଳି ଆଦି ବାନ୍ଧିବା ରସି, ଦଉଡ଼ା, ରଜ୍ଜୁ, ଦଉଡ଼ି

**ଦଉରି** - *ବୌ:* (ବି.) : ଦଉଡ଼ି

**ଦଉଲ୍** - *କଳା:ସ:ନୂ:* (ବି.) : ଦେଉଳ, ମନ୍ଦିର

**ଦଉଲତ** - *ଅନେ:* (ବି.) : ସମ୍ପତି

**ଦଉଁରା** - *ସୁବ:ଝା:ବର:ସ:* (ବି.) : ବଡ଼ ଦଉଡ଼ି, ବଳଦ ବାନ୍ଧିବା ଦଉଡ଼ି

**ଦଏବ** - *ନୂ:ଝା:* (ବି.) : ଦଇବ, ଦୈବ

**ଦକ** - *ଅନେ:* (ବି.) : ଭୟ, ଚିନ୍ତା, ସନ୍ଦେହ, ସଂଶୟ, ଦକା

**ଦକଦକ** - *ଖୋ:କେ:ନ:ଦେ:* (କ୍ରି.ଅ.ବିଂ.) : ଉଠପଡ଼ ହେବା, ଛାନିଆ, ଶଙ୍କାକୁଳ, ଭୟାଚ୍ଛନ୍ନ, ଧକ୍ ଧକ, ଛାତି ପଡ଼ିବା, ଭୟରେ କମ୍ପିବା

**ଦକଲା** - *ନ:* (ବି.) : କାଦୁଅରେ ଥିବା ଘାସତୃଣାଦି

**ଦକାତଡ଼ା** - *ବୌ:* (ବି.) : ଠେଲାପେଲା

**ଦକ୍ଷ** - *ଦେ:* (ବିଂ.) : ନିପୁଣ, ପଟୁ

**ଦକ୍ଷିଣ କବାଟ** - *ଅନେ:* (ବି.) : ସାଙ୍ଖା, ଉପାଧିବିଶେଷ

**ଦକ୍ଷିଣା** - *ଦେ:ଅ:ଖୋ:* (ବି.) : ବିଜୁଳି, ପବନ, ଗୁରୁ, ପୁରୋହିତ ଆଦିଙ୍କୁ ଦିଆଯାଉଥିବା ମର୍ଯ୍ୟାଦା ପ୍ରାପ୍ୟ,

**ଦକ୍ଷିଣାବର୍ତ୍ତ** - *ଦେ:* (ବି.) : ଶଙ୍ଖ

**ଦକ୍ଷିଣାୟନ** - *ଦେ:* (ବି.) : ଶ୍ରାବଣ ମାସଠାରୁ ପୌଷ ପୂର୍ଣ୍ଣିମା ପର୍ଯ୍ୟନ୍ତ ଛଅ ମାସ

**ଦକ୍ଷିଣୀ** - *ଦେ:ଖୋ:* (ବିଂ.) : ଦକ୍ଷିଣ ସମ୍ବନ୍ଧୀୟ ବାଦ୍ୟବିଶେଷ, ଦକ୍ଷିଣ ଓଡ଼ିଶାର (ଲୋକ)

**ଦକ୍ଷିନ୍** - *କଳା:* (ବି.) : ଦକ୍ଷିଣ, ଦକ୍ଷିଣ ଦିଗ

**ଦଖଲ** - *ଅନେ:* (ବି.) : ଅଧିକାର, ଭୋଗ କରିବା, ଜମିଦଖଲ

**ଦଖଲନାମା** - *ଅନେ:* (ବି.) : ଆଦେଶ, ଅଧିକାର ପାଇବା

**ଦଗ୍‌ଦଗା** - *ନୂ:କଳା:* (ବିଂ.) : ପରିଷ୍କାର, ସୁନ୍ଦର, ଅତିସ୍ୱଚ୍ଛ

**ଦଗ୍‌ଧ** - *କୋ:* (ବି.) : ଅମ୍ଳପିତ୍ତ ରୋଗ

**ଦଗଡ଼** - *ଗ:* (ବି.) : ବାଦ୍ୟ ବିଶେଷ

**ଦଗଲ୍‌ବାଜିଆ** - *ବୌ:ଛ:* (ବି.) : ଦୁଷ୍ଟ, ବଦ୍‌ମାସ୍ ଦଗାବାଜ୍

**ଦଗଇଦିଆ** - *ନ:* (ବିଂ.) : ଠକ, ପ୍ରତାରକ

**ଦଗଲ ବାଜି** - *ଗ:* (ବିଂ.) : ଅଭଦ୍ର, ଶଠ, ଠକ

**ଦଗା** - *ଅନେ:* (ବି.) : ଶଠତା, ଛଳନା, ଠକିବା, ବିଶ୍ୱାସ ଘାତକତା, ଧୋକା

**ଦଗାଦିଆ** - *ଅନେ:* (ବିଂ.) : ଅନ୍ୟକୁ କଷ୍ଟ ଦେଉଥିବା ଲୋକ, ଅନ୍ୟକୁ ଅସୁବିଧାରେ ପକାଉଥିବା ବ୍ୟକ୍ତି, ଠକ

**ଦଗାଲ୍** - *କଳା:ବ:* (ବିଂ.) ଦଗଦଗା, ଚକଚକ, ଉଜ୍ଜ୍ୱଳ, ଦୀପ୍ତିମାନ୍

**ଦଗୋ** - *ସ:* (ବିଂ.) : ଉଜ୍ଜ୍ୱଳ

**ଦଗ୍ଧଆଟିକା** - *ଯା:* (ବି.) : ଚୁଠରେ ମୃତାହ କାର୍ଯ୍ୟ ଶେଷରେ ତେଲପକାଇ ଚୁଲିରେ ବସାଇ ଜଳାଇଦେବା ଆଟିକା

**ଦଗ୍ଧମାନ୍** - *ଚା:ବା:* (ବି.) : ବ୍ୟସ୍ତ, ବିବ୍ରତ, ଜାଳି ପୋଡ଼ି ମାରିବା

**ଦଙ୍ଗା** - *ଅନେ:* (ବି.) : ଗୋଷ୍ଠୀଗତ ଲଢେଇ, ମାରପିଟ, ଗୋଳମାଳ

**ଦଙ୍ଗାଫିସାଦ** - *ଅନେ:* (ବି.) : ଗଣ୍ଡଗୋଳ, ଟାଉଟରି, ଗୋଳମାଳ, ମାରପିଟ

**ଦଛ** - *ଦେ:କୋ:ଢ:ଗ:* (ବ.) : ଯଶ, ଦକ୍ଷ

**ଦଢ଼ଦଢ଼ି ଯିବା** - *କଳା:* (କ୍ରି.) : ମଜ୍ଭୁତ୍ ହେବା, ଶକ୍ତ ହେବା

**ଦଢ଼** - *ଯା:* (ବି.) : ସପ

**ଦଢ଼କା** - *ଦେ:* (ବି.) : ଆବେଶ

**ଦଢ଼ା** - *ମ:* (ବି.) : ଦଉଡ଼ି

**ଦଢ଼ି** - *ଗ:କେ:* (ବି.) : ଅଧିକ କାର୍ଯ୍ୟ, କାର୍ଯ୍ୟର ଚାପ, କାବୁଆ

**ଦଣଜମି** - *ଚା:* (ବି.) : ଗହୀରା ବିଲ

**ଦଣ୍ଡା** - *ଅନେ:* (ବିଂ.) : ଶକ୍ତ, ଜ୍ଞାନୀ, ଦକ୍ଷ, ନିପୁଣ, କଡ଼ା, ଟାଣୁଆ ଲୋକ, ଦୃଢ, ସିଦ୍ଧ, ପାରଙ୍ଗମ

**ଦଣ୍ଡାଇବା** - *କୋ:* (କ୍ରି.) : ଚାପ ପ୍ରୟୋଗ କରିବା

**ଦଣ୍ଡାମାର୍କା** - *ଗଞ:ଭ:* (ବି.ବିଂ.) : ବଳିଷ୍ଠ, ଟାଣୁଆ

**ଦଣ୍ଡେଇବା** - *ଦେ:* (କ୍ରି.) : କଠିନ ଶାସନ ଦ୍ୱାରା କାବୁ କରିବା

**ଦଣ୍ଡ** - *ଅନେ:* (ବି.) : ଲମ୍ବଲାଠି, ଦମନ, ଶାସନ, ଜୋରିମାନା, ୨୪ ମିନିଟ, ଯାତ୍ରା, ବ୍ୟାୟାମ

**ଦଣ୍ଡକାମନା** - *ଗ:* (ବି.) ଦଣ୍ଡକାଳୀ ଠାକୁରାଣୀଙ୍କ ନିକଟରେ ମାନସିକ କରିବା

**ଦଣ୍ଡକାୟା** - *ରା:* (ବି.) : ବଡ଼ତୋରଡ଼ା

**ଦଣ୍ଡକାରୀ ମାଛ** - *କେନ୍ଦୁ:* (ବି.) : ଛୋଟ ମାଛବିଶେଷ

**ଦଣ୍ଡଗାରିଆ** - *କେ:* (ବି.) : ରାଜକର୍ମଚାରୀ

**ଦଣ୍ଡନାଚ** - *ଅନେ:* (ବି.) : ଏକପ୍ରକାର ନାଚ ଓ ଗୀତ, ଦଣ୍ଡଯାତ୍ରା, ଲୋକନାଟକ ବିଶେଷ, ଚୈତ୍ର ମାସର ମାନସିକ ପୂଜା

**ଦଣ୍ଡପାଟ** - *ଦେ:* (ବି.) : ଗଣ୍ଡ ଜାତିର ସାଙ୍ଗାବିଶେଷ

**ଦଣ୍ଡବତ** - *ଅନେ:* (ବି.) : ଦଣ୍ଡପରି ପଡ଼ି ପ୍ରଣାମ, ନମସ୍କାର

**ଦଣ୍ଡବତୀ** - *ଗଞ:* (ବି.) : ସଲାମିରୂପେ ପାଇଥିବା ଧନ

**ଦଣ୍ଡ ଭାଙ୍ଗିବା** - *ଗ:* (କ୍ରି.) : ଦଣ୍ଡ ନୃତ୍ୟ ପରିବେଷଣ କରିବା

**ଦଣ୍ଡସେନା** - *ଅନେ:* (ବି.) : ଗଣ୍ଡ ଓ ପାଇକ ଜାତିର କୌଳିକ ଉପନାମ, ରାଜକୀୟ ଉପାଧି, ପାଇକ ମାନଙ୍କ ଉପାଧି

**ଦଣ୍ଡା** - *ଅନେ:* (ବି.ବିଂ.) : ଆଖୁ, ଠେଙ୍ଗା, ଲମ୍ବାବାଡ଼ି ପତିତଭୂମି ଗୋଚର, ଶଗଡ଼ର ବାହି, ଡଣ୍ଡା, ଶଗଡ଼ର ଲମ୍ବା କାଠ, ହାଣ୍ଡି ପ୍ରଥମ ନିର୍ମାଣରେ କଞ୍ଚା ଅବସ୍ଥା, ସଡ଼କ, ଶଗଡ଼ର ସମ୍ପୂର୍ଣ୍ଣ ପଛପାର୍ଶ୍ୱ, ପଥ, ଗୁଳିଦଣ୍ଡା, ଗାଁରାସ୍ତା, ଲାଠି, ନଈକୁ ଯିବା ବାଟ

**ଦଣ୍ଡାଦେବା** - *ଚ୍ୱ:* (କ୍ରି.) : ହିଡରେ ମାଟି ଲଦି ଉଚ୍ଚ ଓ ଓସାରିଆ କରିବା

**ଦଣ୍ଡାବାଳୁଙ୍ଗା** - *ଖୋ:ସଂ:ଅ:* (ବିଂ.) : ଅତି ଦୁଷ୍ଟ, ଅତି ବଦମାସ

**ଦଣ୍ଡାବିଲ** - *ଖୋ:* (ବି.) : ବିଶାଳ ବିଲ, ବିରାଟ ବା ବିସ୍ତୃତ କିଆରି

**ଦଣ୍ଡାଳୁ** - *ଅ:* (ବି.) : ଖମ୍ବଆଳୁ

**ଦଣ୍ଡାସି** - *ଗ:ନ:ଗଜ:* (ବି.) ଗଞ୍ଜାମର ଅନୁସୂଚିତ ଜାତି ବିଶେଷ

**ଦଣ୍ଡା ହେବା** - *ଗ:* (କ୍ରି.) : ନେହୁରା ହେବା, ଦଣ୍ଡାହୋଇ ପଡିବା

**ଦଣ୍ଡି** - *ଅନେ:* (ବି.ବିଂ.) : ଓଜନ ଯନ୍ତ୍ର, ନିକିତି, ସ୍ତ୍ରୀଙ୍କ ନାସା ଅଳଙ୍କାର, ଦି'ନାକ ପୁଡ଼ା ମଝି ଦଣ୍ଡିର ପତ୍ରୀ ଆକାର ଅଳଙ୍କାର

**ଦଣ୍ଡିଆ** - *ଅନେ:* (ବିଂ.ବି.) : ହାଟ ବଜାର ବୁଲୁଥିବା ସ୍ତ୍ରୀ, ଦଣ୍ଡିଧରିଛି ଯେ, ବେପାରି, ପାଇକ ଜାତିର କୌଳିକ ଉପନାମ, ଯିଏ ଓଜନ କରେ, ବଣିଆ ଜାତିର ସାଙ୍ଗିା

**ଦଣ୍ଡି କିରି** - *ଅନେ:* (ବି.) ଛୋଟ ମାଛବିଶେଷ

**ଦଣ୍ଡିକିରି** - *କ:* (ବି.) : ଦଣ୍ଡକିରିମାଛ

**ଦଣ୍ଡିଗୁଣା** - *ସ:ଭ:* (ବି.) ନାକଚଣା, ନାକଗହଣା ବିଶେଷ

**ଦଣ୍ଡିପାଲା** - *ଯା:ଭ:* (ବି.) : ଓଜନ କରିବା ଉପକରଣ

**ଦଣ୍ଡିମରା** - *ଅନେ:* (ବିଂ.) : ଠକ, ଓଜନରେ ଯେ ଠକେ

**ଦଣ୍ଡିଲପଣ** - *ପୁ:* (ବି.) : ଔଦ୍ଧତ୍ୟ, ଅନମନୀୟ ମନୋଭାବ

**ଦଣ୍ଡୁଆ** - *ରା:ନ:ଗ:* (ବି.) : ଦଣ୍ଡ କାଳୀଙ୍କ ଭକ୍ତ, ଦଣ୍ଡଯାତ୍ରାର ଉପାସକ, ବ୍ରତଧାରୀ

**ଦଣ୍ଡୁଆସି** - *ଅ:* (ବି.) : ଷଣ୍ଡୁଆସୀ

**ଦଣ୍ଡୁରି** - *ଯା:ଭ:* (ବି.) : ବାଉଁଶ କଣିରେ ତିଆରି ମାଛ ରଖିବା ଜାଗା

**ଦଣ୍ଡେଇ** - *ବୌ:ଦେ:ଖୋ:* (ବି.) : ଛୋଟ ମାଛ ବିଶେଷ, ଦଣ୍ଡକିରି

**ଦଣ୍ଡ୍ରି** - *ଚ୍ୱ:* (ବି.) : ଖାଲେଇ, ନାକର ଅଳଂକାର ବିଶେଷ

**ଦଦ୍ରା** - *କଳା:* (ବିଂ.) : ଦାନ୍ତୁରା

**ଦତ୍ତପତ୍ର** - *ନ:ଖୋ:* (ବିଂ.ବି.) : ବିଲବାଡ଼ି ସଂପତ୍ତି ଜଣକ ନାମରେ ମାଗଣାରେ ପ୍ରଦାନ କରିବା କାଗଜପତ୍ର, ଦାନପତ୍ର

**ଦଦ** - *ଦେ:କୋ:ସୁବ:ନବ:* (ବି.) ଶିଶୁ ଭାଷା, ମାଆକ୍ଷୀର, ମାତୃସ୍ତନ, ଦୁଧ

**ଦଦ୍‌ରା** - *ଦେ:କୋ:ନ:* (ବିଂ.) ଫଟା, ବଡ଼ଗର୍ତ୍ତ, ଯାହା ବ୍ୟବହାରଯୋଗ୍ୟ ନୁହେଁ, କୁତୁରା, ଦୁର୍ବଳ

**ଦଦଲ୍ ମସଲ୍** - *ଷ:* (ବି.) : ମୋଟାମୋଟି ସ୍ୱାସ୍ଥ୍ୟ

**ଦଦା** - *ଅନେ:* (ବି.) : ବଡ଼ଭାଇ, ଅଜା, ବଡ଼ବାପା, କକା

**ଦଦେଇ** - *ଅନେ:* (ବି.) : ବଡ଼ବାପା (ବ୍ରାହ୍ମଣ ଜାତି ବିଶେଷ), ପିତାଙ୍କ ବଡ଼ଭାଇ, ଦଦା, ଦେବୁତା, ବ୍ରାହ୍ମଣ ପରିବାରରେ ବଡ଼ବାପାଙ୍କୁ ଏପରି କୁହାଯାଏ

**ଦଧିନଉତି** - *ଅନେ:* (ବି.) : ମନ୍ଦିରର ଶୀର୍ଷଦେଶ

**ଦଧିନାଟ** - *ବ୍:* (ବି.) : ମହୋତ୍ସବ ସମୟରେ ରାଧିକାଙ୍କ ଦହି ବିକ୍ରୀ ହୁଏ । ସଂକୀର୍ତ୍ତନ ରୀତିରେ ସମସ୍ତ ଗୀତ ଗାନ କରାଯାଏ

**ଦନ୍‌କି** - *ଝ୍:* (କ୍ରି.) : ଦୋହଲେଇବା

**ଦନ୍‌ଗୋ ଦନ୍‌ଗୋ** - *ବଲ:* (ବି.) : ଶୀଘ୍ରଶୀଘ୍ର

**ଦନ୍‌ଦନା** - *ଗ:କୋ:* (ବିଂ.) : ରକ୍ତାକ୍ତ ଅବସ୍ଥା, ଦନଦନିଆ, ନରମିଯାଇ ପାଚିଲା ଫଳ, ଘା' ଅତ୍ୟଧିକ କ୍ଷତ ହୋଇଯିବା

**ଦନ୍‌ଦନିବା** - *କଳା:* (କ୍ରି.) : ମଜ୍‌ଭୁତ୍ ହେବା, ଦୃଢହେବା, କଂପିବା, ଥରିବା

**ଦନଦନା** - *ଖୋ:* (ବି.) : ପାଣି ବତକ ପରି ଏକ ପ୍ରକାର ପକ୍ଷୀ

**ଦନା** - *ଅନେ:* (ବି.) : ଖଲି, ପତ୍ର ନିର୍ମିତ ପାତ୍ର, ଚଉକୁଣି, ପତ୍ରଠୋଲା, ପନଗା, ପଲଙ୍ଗା, ଦୁମୁଣ୍ଡିଆ, ଠୁଙ୍ଗା, ଚରପଦୀ, ଚଉପଦୀ

**ଦନାଦନ** - *ସୁ:ଖୋ:* (ବି.ବିଂ.) : ଯୋର, ଜଲଦି ପ୍ରହାର ବିଶେଷ, ଲାଗ୍‌ଲାଗ୍

**ଦନା-ପୁତୁଗା** - *ଗଜ:* (ବି.) : ପତ୍ରପୋଡ଼ା(ଛତୁ ଓ ଚୁନା ମାଛ ରନ୍ଧା)

**ଦନାବାର** - *ସୁବ:* (କ୍ରି.) : ପାଦରେ ଟାଣି ଧରିବା, ପାଦରେ ଟାଣିବା, ଠେସଦେବା

**ଦନେଇ** - *ସୁ:ଷ:* (ବିଂ.) : ଭିଡ଼ିଧରି

**ଦନ୍ତା** - *ବ୍:ଦେ:* (ବି.) : ମିର୍ଦ୍ଧାହନୁ, ଅଣ୍ଡିରା ହାତୀ, ଦନ୍ତାବଳ

**ଦନ୍ତାରି** - *ଦେ:ଗଜ:* (ବି.) : ଲତା

**ଦନ୍ତାଳ** - *ଜ:ରା:ଗ:ଦେ:* (ବି.) : ପାର୍ବଣ ସମୟର ମିଳିତ ଭୋଜି, ଜନ୍ତାଳ, ଗାଁ ମୁଣ୍ଡିଆରେ କରାଯାଉଥିବା ବାର୍ଷିକ ଭୋଜି, ଦନ୍ତାହାତୀ

**ଦନ୍ତିରୀ** - *କେ:* (ବିଂ.) : ଧାର ନଥିବା ଅସ୍ତ୍ର

**ଦନ୍ତଢା** - *ଅ:* (ବିଂ.) : ଥନ୍ତରା, ଅସମତଳ, ଧାର ନଥିବା

**ଦପ୍‌ଦପ୍** - *ଦେ:ଜେ:* (ଅ.) : ଜକଜକ, ଧକଧକ, ଉଜ୍ଜ୍ୱଳ ଜଳିବା

**ଦପେଇ** - *ଜଳା:* (ବି.) : ଢିପେଇ, ଶଗଡକୁ ସମାନ ଭାବରେ ରଖିବା ପାଇଁ ଆଗପଟେ ବ୍ୟବହାର କରାଯାଉଥିବା ଦୁଇ ଗୋଡିଆ କାଠ

**ଦପେନ୍** - *ଜଳା:* (ବି.) : ଲୋକକଥାର ଏକ ଲଘୁରମ୍ୟ ବିଭାବ

**ଦପ୍ତର** - *ଅନେ:* (ବି.) : ଅଫିସ୍, କାର୍ଯ୍ୟାଳୟ

**ଦପ୍ତରୀ** - *ଅନେ:* (ବି.) : ପିଅନ, ବନ୍ଧାଳି, ଯିଏ ବାଇଡିଙ୍ଗ୍ କରେ

**ଦଫ୍‌ତର୍** - *ଜଳା:* (ବି.) : ଦପ୍ତର, କାର୍ଯ୍ୟାଳୟ

**ଦଫା** - *ଅନେ:* (ବି.ବିଂ.) : କେସ୍‌ର ବିଭିନ୍ନ ଧାରା, କର୍ମ ପଟୁ, ଧାରା, ବାର, ଥର, କିସ୍ତି, ନିୟମ, ଆଇନ

**ଦଫାଦାର** - *ଦେ:ଗୋ:* (ବି.) : ମେଣ୍ଟ, ଜମାଦାର, ଦାରୋଘା, ପୋଲିସ୍

**ଦଫାରଫା** - *ଗଜ:ଦେ:ନ:* (କ୍ରି.ବି.) : ଖାରଜ ହେବା, ଆପୋଷ ମିଳାମିଶା, ବିଚାର, ସବୁଶେଷ, ପ୍ରାଣନାଶ

**ଦବ୍‌ଡ଼ିବା** - *କଝ:ନବ:ସୁବ:* (କ୍ରି.) : ଧାଇଁବା

**ଦବ୍‌ଦବା** - *ନୂ:ସ:* (ବିଂ.) : ଝଲସେଇ ପଡୁଥିବା, ସଜ, ପ୍ରଭାବ

**ଦବଡ଼ି** - *ସୁ:* (ବି.) : ଦଉଡ଼ି

**ଦବନ** - *ଦେ:* (ବି.) : ଚମକ, ଶଙ୍କା

**ଦବଲା** - *ରା:* (ବିଂ.) : ଧଳା

**ଦବଲୁ** - *ଗ:* (ବି.) : ବାଦ୍ୟଯନ୍ତ୍ର ବିଶେଷ

**ଦବା** - *ଦେ:ମା:* (କ୍ରି.ବି.) : ଦେବା, ଦବାଇବା, ଦାନ କରିବା, ଧୋବା

**ଦବାଇ** - *ଦେ:ଅ:* (ବି.) : ଔଷଧ, ଚପେଇ ମାଡ଼ିଦବା, ଦାବିଦବା

**ଦବାଇବା** - *ରା:* (କ୍ରି.) : ପ୍ରଭାବ ବିସ୍ତାର କରିବା, ଚାପିଦେବା

**ଦବିବା** - *ନବ:ଦେ:* (କ୍ରି.) : ଶଙ୍କିଯିବା, ତଳକୁ ପଶିଯିବା

**ଦବ୍ ଦବି** - *ଅ:* (ବି.) : ହଇଜା

**ଦମ** - *ଅନେ:* (ବି.) : ସାହାସ, ନିଶ୍ୱାସ, ବଳ, ଜୋର, ଆଳୁଦମ୍, ଗଞ୍ଜେଇ ଟାଣିବା, ଦମ୍ଭ, ଗାମ୍ଭୀର୍ଯ୍ୟ, ବିଶ୍ରାମ, ଶକ୍ତି, ସାମର୍ଥ୍ୟ

**ଦମ୍‌କଳ** - *ଅନେ:* (ବି.) : ନିଆଁ ଲିଭାଇବା ଗାଡ଼ି

**ଦମ୍‌କା** - *ନୂ:* (ବି.) : ମୋଟା

**ଦମ୍‌ଛୁଟିଯିବା** - *ଦେ:* (କ୍ରି.) : ବେଦମ୍ ହେବା, ହାଲିଆ

**ଦମ୍‌ଦମ୍** - *ନ:ଦେ:* (ବି.ଅ.) : ଭୟରେ ଛାତି ଦୁଲୁକିବା, ଦୁମ୍‌ଦୁମ୍ ଚାଲିବା, ଦକ୍‌ଦକ୍, ଛାତି ଧଡ୍‌ଧଡ୍

**ଦମ୍‌ଦମା** - *ଚୌ:ସ:* (ବି.) : ନିଶୁଣି

**ଦମ୍‌ଦାର୍** - *ଅନେ:* (ବିଂ.) : ଶକ୍ତିଶାଳୀ

**ଦମ୍ ମାରିବା** - *ଦେ:* (କ୍ରି.) : ବିଶ୍ରାମ ନେବା

**ଦମ୍‌ସା** - *ଜଳା:* (ବିଂ.) : ଜୋର୍, ଦୃଢ଼

**ଦମ୍‌ସିବା** - *ସୁ:* (କ୍ରି.) : ଚାପିବା, ନିଃଶ୍ୱାସ ନେବା

**ଦମକେଇବା** - *ଗ:* (କ୍ରି.) : ଚମକାଇବା, ଦୋହଲାଇବା

**ଦମଖମ୍** - *କଳା:* (ବିଂ.) : ଖୁବ୍ ଶକ୍ତ ଭାବରେ

**ଦମନ** - *ଦେ:ଛ:* (ବି.) ଦବେଇବା, ରକ୍ଷାକରିବା, ଶୃଙ୍ଖଳିତ, ଦଣ୍ଡ, ଶାସନ, ଶତ୍ରୁଦମନ, ରୋଗଦମନ, ଦବେଇ ଦେବା, ନିପାତ କରିବା

**ଦମନକ** - *ଦେ:* (ବି.) : ଦଅଣା ବୃକ୍ଷ, ଗୁଳ୍ମ ବିଶେଷ୍

**ଦମା** - *ଗ:ସ:ଦେ:* (ବି.) : ବାଦ୍ୟ ବିଶେଷ, ଶ୍ୱାସରୋଗ, କାଶ, ହିକ୍କା

**ଦମାନ୍** - *ଚଉ:* (ବି.) : ଜୋଇଁ

**ଦମାଲୁ** - *ଗଦ୍ୟ:ଦେ:ଛ:* (ବି.) : ବଡ଼ ନାଗରା, ଶିଶୁର ସ୍ତନ ଚୁଚୁମିବା

**ଦମାଳି** - *ଗ:* (ବି.) : ବାଦ୍ୟ ବିଶେଷ

**ଦମେ ମାରବା** - *ନୂ:* (କ୍ରି.) : ଗଂଜେଇ ଟାଣିବା ଅର୍ଥରେ, ସୁଟକ ଟାଣିବା

**ଦମ୍ କା ପାଣି** - *ଅ:* (ବି.) : ମଚୁରା ପାଣି

**ଦମ୍ପତି** - *ଅନେ:* (ବି.) : ସ୍ୱାମୀ-ସ୍ତ୍ରୀ

**ଦମ୍ଭ** - *ଅନେ:* (ବି.ବିଂ.) : ଦର୍ପ, ଟାଣପଣ, ଗର୍ବ, ସାହସ, ଶକ୍ତି, ଧୈର୍ଯ୍ୟ

**ଦମ୍ଭିଲା** - *ଅନେ:* (ବିଂ.) : ଶକ୍ତିଶାଳୀ, ସମର୍ଥ

**ଦୟଣା** - *ଅନେ:* (ବି.) : ସୁଗନ୍ଧ ଗୁଳ୍ମ ବିଶେଷ

**ଦୟନୀୟ** - *କେ:* (ବିଂ.) : ଦରିଦ୍ର, ଶୋଚନୀୟ

**ଦୟା ପଡ଼ିବା** - *ଗଞ:* (କ୍ରି.) : କରୁଣା ପ୍ରଦର୍ଶନ

**ଦୟାଳୁ** - *ଅନେ:* (ବିଂ.) : ଉଦାର, ଦୟାବନ୍ତ

**ଦର** - *ଅନେ:* (ବି.) : ଦାମ, ମୂଲ, ମୂଲ୍ୟ, ଭାଉ, ଅଧାଖଣ୍ଡିଆ

**ଦରଓ୍ୱାଜା** - *ଅ:* (ବି.) : ଦୁଆର

**ଦରକଞ୍ଚା** - *ଅନେ:* (ବିଂ.) : ଅଧାପାଚିଲା, ଅଧାକଞ୍ଚା, ଅଧାପଚା

**ଦରକଞ୍ଚା ମଣିଷ** - *ସ:* (ବି.) : ଅର୍ଦ୍ଧସିଦ୍ଧ ଲୋକ

**ଦରକାର** - *ଅନେ:* (ବି.) : ପ୍ରୟୋଜନ, ଆବଶ୍ୟକ

**ଦରକି ଯିବା** - *ସ:* (କ୍ରି.) : ଧୋତି କପଡ଼ା ଆଦି ଚିରିଦେବା

**ଦରଖାସ୍ତ** - *ଅନେ:* (ବି.) ଆବେଦନ, ନିବେଦନ ପତ୍ର, ଦରଖାସ୍ତ

**ଦର ଖିଆ** - *ଅନେ:* (ବି.) : ଅଧା ଖିଆ ଅବସ୍ଥା

**ଦରଘା** - *ଦେ:* (ବି.) : ଦାରଘା, ଦାରଗା, ରାଜକର୍ମଚାରୀ, ଦଫେଦାର

**ଦରଜ** - *ଅନେ:* (ବି.) : ବଥା, ଚିପି ରଖିବା, ଲେଖି ରଖିବା

**ଦରଜା** - *ଅନେ:* (ବି.) : ଦ୍ୱାର, କବାଟ, ଅଗଣା, ଚିରାଲୁଗା, ଦୁଇଖଣ୍ଡକୁ ଯୋଡ଼ି ପିନ୍ଧିବା

**ଦରଜୀ** - *ଅନେ:* (ବି.) : ଟେଲର୍, ଖଲିପା, ସିଲେଇ କାମ କରୁଥିବା ବ୍ୟକ୍ତି

**ଦରଣ୍ଡା** - *ଦେ:ଗ:* (ବି.କ୍ରି.) ବାରଣ୍ଡା, ଖୋଜିବା, ଅଣ୍ଡାଳିବା, ଖୋଜିବା ଲୋଡ଼ିବା

**ଦରଦ** - *ଅ:ଦେ:ସ:* (ବି.) : ଜଳପ୍ରପାତ, ସମ୍ବେଦନ, ଭୟ, ଯନ୍ତ୍ରଣା

**ଦରଦରା** - *ନୂ:* (ବିଂ.) : ଖଡ଼ଦ, ଦଦରା

**ଦରଦାମ** - *ଅନେ:* (ବି.) : ମୂଲଚାଲ

**ଦରଦୀ** - *ଅନେ:* (ବିଂ.) : ପରର ଦୁଃଖରେ ଯେ ଦୁଃଖୀ

**ଦରପଚା** - *ନ:ଦେ:* (ବିଂ.) : ଅଧାରୁ ଅଧିକ ପାଚିଥିବା (ଫଳ), ଭଲ ଭାବରେ ପାଚିନଥିବା

**ଦରପନ୍** - *ସ:* (ବି.) : ଆଇନା, ଦର୍ପଣ

**ଦରପତରା** - *ଦେ:* (ବି.) : ଅଧା ପତରା

**ଦର ପାଠୁଆ** - *ଅନେ:* (ବିଂ.) : ଅଳ୍ପ ପାଠୁଆ

**ଦରପାନି** - *ଛେ:* (ବି.) : ଦର୍ପଣ

**ଦରବ** - *ଅନେ:* (ବି.) : ପଦାର୍ଥ, ଦ୍ରବ୍ୟ, ଜିନିଷ ପତ୍ର, ଚିଜ,

**ଦରବଣା** - *ସ:* (ବିଂ.) : ଅର୍ଦ୍ଧପାଗଳ

**ଦରବା** - *ନବ:ଗଦ୍ୟ:ଖୋ:* (ବି.) : ଛିଣ୍ଡା ଲୁଗା, କୁକୁଡ଼ା ଘର

**ଦରବାନ** - *କନ୍ଧ:ଦେ:* (ବି.) : ଦରୱାନ୍, ରାଜସଭା, ସଭାଘର, ସଭାଗୁଲି

**ଦରବାରିଆ** - *ଦେ:* (ବିଂ) ସଭ୍ୟ, ମାମଲତ୍କାର

**ଦରବୁଡ଼କା** - *ସୁ:* (ବି.) : ଅଧକାମରେ ଅଟକି ରହିଯିବା

**ଦରବୁଢ଼ା** - *ଅନେ:* (ବିଂ.) : ଅର୍ଦ୍ଧ ବୃଦ୍ଧ

**ଦରଭଙ୍ଗା** - *ଅ:* (ବିଂ.) : ଅଧାଭଙ୍ଗା

**ଦରମରା** - *ଅନେ:* (ବିଂ.) : ଦରମଲା, ଅଧାମରା, ମୃତପ୍ରାୟ, ଅର୍ଦ୍ଧମୃତ

**ଦରମା** - *ଅନେ:* (ବି.) : ବେତନ, ଚଟେଇ, ମସିଣା

**ଦରର୍** - *ଅ:* (ବିଂ.) : ବିଲ ମଝିରେ ଥିବା ଗାତର ପାଣି

**ଦରଳା** - *ଅ:ଗ:* (କ୍ରି.) : ଚକଟିବା, ଘାଣ୍ଟିବା

**ଦରୱାଜା** - *ଅନେ:* (ବି.) : ଦରଜା, ଦ୍ୱାର, କବାଟ

**ଦରଶନ** - *ଅନେ:* (ବି.) : ଦିଅଁ ଦର୍ଶନ, ଦେଖିବା

**ଦରଶନି** - *ଅନେ:* (ବି.) : ଠାକୁର ଦେଖି ବ୍ରାହ୍ମଣକୁ ପଇସା ଦେବା

**ଦରସଂଭାଲ** - *ସ:* (ବି.) : ଅସମ୍ଭାଳ ଅବସ୍ଥା

**ଦରହସା** - *ନ:* (ବି.) : ଅଧାହସ, କୁଟିଳ ପ୍ରକୃତିର ଲୋକର ହସ

**ଦରାଞ୍ଜି** - *ବା:ମ:* (ବି.) : ବାଉଁଶରେ ଦାଆକୁ ବାନ୍ଧି କଣ୍ଟା କଟାଯାଏ, ନଗି

**ଦରାଣ୍ଡିବା** - *ଅନେ:* (କ୍ରି.) ଖୋଜିବା, ଅଣ୍ଡାଳିବା, ଲୋଡ଼ିବା,

**ଦରାତି** - *ଅ:ଗଦ୍ୟ:* (ବି.) : ଦାଆ

**ଦରାଜିବା** - *ଗ:* (କ୍ରି.) : ଚକଟିବା, ଘାଣ୍ଟିବା

**ଦରାସ** - *କେ:* (ବି.) : ଫଳବୃକ୍ଷ

**ଦରି** - *ଅନେ:* (ବି.) : ସତରଞ୍ଜି, ପାଲ, ଗୁହା, ବିବର, ଗାଢ, ଆସନ ବିଶେଷ

**ଦରିଆ** - *ଅନେ:* (ବି.) : ସମୁଦ୍ର, ସାଗର, ଯଥେଷ୍ଟ

**ଦରିଦ୍ର** - *ଅନେ:* (ବିଂ.) : ଗରିବ, ରଙ୍କ, ନିର୍ଦ୍ଧନ, ଅସ୍ୱଚ୍ଛ

**ଦରିଦ୍ରିଆ** - *ଚୌ:* (ବିଂ.) : ଅଭାବୀ

**ଦରିବା** - *ଅ:* (ବିଂ.) : ଛିଣ୍ଡା

**ଦରୀ** - *ଅନେ:* (ବି.) : ଗିରିବର୍ମ, ଗରିକନ୍ଦର, ଗିରିଗୁହା, ବିବର

**ଦରୁଆନ** - *ଅନେ:* (ବି.) : ଦ୍ୱାରପାଳ, ଦ୍ୱାରରକ୍ଷୀ, ପ୍ରହରୀ, ଜଗୁଆଳି

**ଦରୁଡ଼** - *କେ:* (ବି.) : ଗଉଡ଼

**ଦରୋଚି** - *ଦେ:* (ବିଂ.) : ଖଣ୍ଡିଆ ଭାଷା, ଶିଶୁ ପିଲାଙ୍କ କଥା

**ଦର୍ଜା** - *ଅନେ:* (ବି.) : ଦୁଆର

**ଦର୍ଜି** - *ଅନେ:* (ବି.) : ସିଲେଇ କରୁଥିବା ଲୋକ

**ଦର୍ଶା** - *ଦେ:* (ବି.) : କୁଶ, ପୁରୁଣା ଲୁଗା

**ଦର୍ପ** - *ଅନେ:* (ବି.) : ଗର୍ବ, ଅହଙ୍କାର, ମାନ

**ଦର୍ପନ୍** - *କନ୍ଧ:* (ବି.) : ଦର୍ପଣ

**ଦର୍ଭ** - *ଅନେ:* (ବି.) : କୁଶ

**ଦର୍ଭା** - *ଦେ:* (ବି.) : କୁଶ, ପୁରୁଣା ଲୁଗା

**ଦର୍ମୁ** - *ମା:* (ବି.) : ଧର୍ମ ଦେବତା

**ଦର୍ଶକ** - *ଅନେ:* (ବି.) : ଦେଖଣାହାରୀ, ଯେ ଦେଖେ, ଯେ ଦେଖାଏ

**ଦର୍ଶନ ହେତା** - *ଗ:* (ବି.) : ରାଜ ପ୍ରଦତ୍ତ ଠାକୁରଙ୍କ ଜମି

**ଦର୍ଶନିଆ** - *ଗ:* (ବି.) : ଦେବତା ଦର୍ଶନ ନିମିତ୍ତ ନିଯୁକ୍ତ ରାଜ ପ୍ରତିନିଧି

**ଦର୍ଶନୀ** - *ସଂ:* (ବି.) : ଫି, ଯାତ୍ରାଖର୍ଚ୍ଚ, ବକ୍‌ସିସ୍, ବୋହୂଦେଖା ଟଙ୍କା

**ଦର୍‌ଇଁଚରା** - *ଝା:* (କ୍ରି.) : ଅଧା ଖୋଲିବା, ଅଧା ଦେଖିବା

**ଦର୍‌କିଲା** - *ଝା:* (କ୍ରି.ବିଂ) : ଫାଟି ଯାଇଥିବା, ଚିରି ଯାଇଥିବା

**ଦର୍‌ଖାସ୍** - *ନୂ:* (ବି.) : ଦରଖାସ୍ତ

**ଦର୍ ଖଁଡ଼ିଆ** - *ସ:* (ବି.) : ଅଧା ପତରିଆ

**ଦର୍‌ଦରା** - *କଳା:* (ବିଂ.) : ଦଦରା, ଫଟା, ଜୀର୍ଣ୍ଣ, ନଷ୍ଟ ପ୍ରାୟ ଅବସ୍ଥା

**ଦର୍‌ପଚା** - *ଚଉ:* (ବି.) : ଅଧା ପାଚିଥିବା

**ଦର୍ ବୁଝା** - *ସ:* (ବିଂ.) : ଯିଏ ବୁଝେ ନାହିଁ

**ଦର୍‌ଲା** - *କଳା:ନୂ:* (ବି.) : ଅସରା, ଜମିକୁ ହଲ ନ କରି ବିହନ ବୁଣିବା ପ୍ରଣାଳୀ, ଦଲକାଏ ବର୍ଷା

**ଦର୍‌ସକଲ** - *କୋ:* (କ୍ରି.) : ଥକି ପଡ଼ିବା

**ଦର୍‌ହ** - *ସୁବ:ବୌ:* (ବି.ବିଂ.) ବେଶୀ ପାଣିଥିବା ନଦୀ, ଉପନଦୀର ଗଣ୍ଡ, ଗଭୀର ଗଣ୍ଡ

**ଦଲ୍** - *କଳା:ସ:* (ବି.) : ଦଳ, ଗୋଷ୍ଠୀ

**ଦଲ୍କ** - *ବା:* (ବି.) : ଜ୍ୱରରେ ବା ଥଣ୍ଡାରେ କମ୍ପିବା

**ଦଲ୍କା** - *କଳା:କନ:* (ବିଂ.ବି.) : ଖଣ୍ଡ, ଚେକା, କାନର ଉପରି ଭାଗରେ ଲଗାଯାଉଥିବା ଅଳଙ୍କାର

**ଦଲ୍କିବା** - *ସୁ:ଦେ:* (କ୍ରି.) : ଦୋହଲିବା, କଂପିବା

**ଦଲ୍କୀ** - *ସୁ:* (ବି.) : ଜଳ ଜମୁଥିବା ଜମି, ସନ୍ତସନ୍ତିଆ ବିଲ

**ଦଲ୍ଦଲି** - *ସ:ନୂ:ସଂ:ବ:* (ବି.ବିଂ.) : ଚୁଗୁଡ଼ିମାଟିର କାଦୁଅଜାଗା, ବେଶୀ ଆର୍ଦ୍ରତା, ଥରିଉଠିବା

**ଦଲ୍ଦଲିବା** - *କଳା:* (କ୍ରି.) ଥରିବା, କଂପମାନ ହେବା

**ଦଲ୍ପଟିବା** - *ସ:* (କ୍ରି.) : ଦଳାଚକଟା କରିବା

**ଦଲ୍ପତ** - *ଦେ:* (ବି.) : ଦଳପତି

**ଦଲ୍ବା** - *ସ:* (କ୍ରି.) : ଦଳିବା

**ଦଲକିଲା** - *ଅ:* (କ୍ରି.) ଦୁଲ୍କିଲା, ଦୋହଲିଗଲା

**ଦଲମ** - *ଦେ:କଳା:ନୂ:* (ବି.) : ବଡ଼ କଡ଼ିକାଠ, ଘରତିଆରର ଆବଶ୍ୟକ ହେଉଥିବା ମୋଟା, ଶକ୍ତ ଲମ୍ବ କାଠ, ଛାତକୁ ଉପଯୁକ୍ତ ଭାବରେ ରଖିବା ପାଇଁ ବ୍ୟବହୃତ ବଡ଼ ବଡ଼ କାଠ ଗଣ୍ଡି

**ଦଲାଇତ୍** - *ଗଦ୍ୟ:* (ବି.) : ଚପରାସୀ

**ଦଲା, ଘୁର୍ନା** - *ବୌ:* (ବି.) : ଡାଲି ଦଳା ଉପକରଣ

**ଦଲାଣ** - *ଅନେ:* (ବି.) : ଘରର ଉପରଭାଗ, ଲମ୍ବା ବାରଣ୍ଡା, ଛାତଘର, ସିମେଣ୍ଟ ଛାତ, କୋଠାଘର, ଲମ୍ବାବାରଣ୍ଡା, ଚଟାଣ

**ଦଲାନ** - *ଗଦ୍ୟ:ବୌ:* (ବି.) : ରୋଷେଇ ଘର, ଢବା ଘର ଉପର

**ଦଲାରୀ** - *ସ:* (ବି.) : ଦଲାଲୀ, ଦି ପାଖିଆ କାମ କରିବା

**ଦଲାଲ** - *ଅନେ:* (ବି.) : କିଣାବିକାରେ ମଧ୍ୟସ୍ଥି, ଟାଉଟର

**ଦଲାଲି** - *ଅନେ:* (ବିଂ.ବି.କ୍ରି.) : କ୍ରେତା ଓ ବିକ୍ରେତାଙ୍କ ମଧ୍ୟରେ ଯେ ମଧ୍ୟସ୍ଥି କରେ, ଦଲାଲର କାମ, ଦଲାଲଗିରି

**ଦଲି** - *କନ:ଗ:* (ବି.କ୍ରି.) : ଗୁମ୍ଫା, ପର୍ବତର ଗହ୍ବର, କାଦୁଅସ୍ଥାନ

**ଦଲିଆ** - *କେ:* (ବି.) : କୋମଳ, କାଦୁଅ, ଖାଦ୍ୟବିଶେଷ

**ଦଲିବା** - *ସୁ:ଝା:* (କ୍ରି.) : ପେଷିବା, (ଖଣ୍ଡଖଣ୍ଡ), ମୁଗ, ବିରି ଆଦି ଚୋପାକୁ ବାହାର କରିବା

**ଦଲିଲ୍ ଦସ୍ତାବିଜ୍** - *ଅନେ:* (ବି.) : ଲିଖିତ ନିଦର୍ଶନ, କାଗଜପତ୍ର

**ଦଲ୍ ଦଲେଇବା** - *ଅ:* (କ୍ରି.) : ଶୀତରେ ଥରିଉଠିବା

**ଦଳ** - *ଅନେ:* (ବି.) : ପତ୍ର, ଜଳଜ ଉଦ୍ଭିଦ, ପାଖୁଡ଼ା, ପାଣିରେ ଭାସମାନ ଅବସ୍ଥାରେ ରହୁଥିବା ଗଛ, ଜଳଜାତ ତୃଣ, ଗୋଷ୍ଠୀ, ରାଜନୀତିକ ସଂପ୍ରଦାୟ

**ଦଳଖୁମ୍ପି** - *ଢ଼:* (ବି.) : ଛୋଟ ମାଛ ବିଶେଷ

**ଦଳନ** - *ଅନେ:* (ବି.) : ପେଷିବା, ରଗଡ଼ିବା, ଦମନ, ଶାସନ

**ଦଳପତି** - *ଅନେ:* (ବି.) : ସର୍ଦ୍ଦାର, ନେତା, ମୁଖିଆ

**ଦଳବଳ** - *ଅନେ:* (ବି.) : ଅନୁଚରବର୍ଗ, ସାଙ୍ଗସାଥୀ

**ଦଳବେହେରା** - *ଅନେ:* (ବି.) : ସାଞ୍ଜା, ପାଇକମାନଙ୍କ ସର୍ଦ୍ଦାର

**ଦଳା** - *ଗ.ମ.ଦେ:* (ବି.) : ଛୁଆ ଜନ୍ମ ପରେ ପଶୁ ଯୋନିରୁ ନିର୍ଗତ ରକ୍ତ ନାଡ଼ୀ ଇତ୍ୟାଦି, ଚକଟା, ଲୁଗାରଖା ଦଉଡ଼ି, ପଥରରେ ତିଆରି ଚକି, ପେଶିବା, ଚକଟିବା

**ଦଳାଚକଟା** - *ଅନେ:* (ବି.) : ତଳେ ପଡ଼ିଯାଇ ପାଦରେ ଚକଟି ହେବା

**ଦଳି** - *ମ:* (ବି.) : ଦଉଡ଼ି

**ଦଳିତ** - *ଅନେ:* (ବିଂ.) ନିପୀଡ଼ିତ, ନିର୍ଯ୍ୟାତିତ, ନିଷ୍ପେସିତ

**ଦଳୁଆ** - *ଗଞ:* (ବି.) : ଜାତିବିଶେଷ

**ଦଶ୍‌ରା** - *ନୂ:ସ:* (ବି.) : ଦଶହରା

**ଦଶକ** - *ଅନେ:* (ବି.) : ଦଶବର୍ଷ, ଦଶନ୍ଧି

**ଦଶ କରତା** - *ଗ:* (କ୍ରି.) : ଶାଶୁ ଘରୁ ଝିଅ ପ୍ରଥମ ଥର ମା'ଘରକୁ ଫେରିବା

**ଦଶକୁଠ** - *ଅ:* (ବି.) : ଯେଉଁଠି ପ୍ରେତାତ୍ମା ଲାଗି ଦଶକ୍ରିୟା କରାଯାଏ

**ଦଶମଙ୍ଗଳା** - *ଅନେ:* (ବି.) : ବିବାହ ପରର ଦଶଦିନର ବେଦୀ କାର୍ଯ୍ୟ

**ଦଶମାସିଆ** - *ଦେ:* (ବିଂ.) : ଠିକ୍ ସମୟରେ ଜନ୍ମହେବା ଛୁଆ

**ଦଶମୀ** - *ଅନେ:* (ବି.) : ଏକତିଥି (ଶୁକ୍ଳ ଓ କୃଷ୍ଣ ପକ୍ଷ), ତିଥି ବିଶେଷ

**ଦଶମୂଳ** - *ଅନେ:* (ବି.) : ଗର୍ଭଣା ସଂକ୍ରାନ୍ତିରେ ସଂଗ୍ରହ କରି ପାଚନ କରାଯାଏ, ଦଶମୂଳର ସମାହାର

**ଦଶା** - *ଅନେ:* (ବି.) : ଦଶା ପଡ଼ିଛି, ରିଷ୍ଟ, ବିପତ୍ତି, ଅବସ୍ଥା, ମୃତ୍ୟୁ ପରେ ଦଶମ ଦିନ, ଦଶାହ, ଦୁର୍ଦ୍ଦଶା

**ଦଶା ଖଟିବା** - *ଗ:* (କ୍ରି.) : ମୃତ ବ୍ୟକ୍ତିଙ୍କ ଦଶାହରେ ଶୁଦ୍ଧି ହେବା

**ଦଶା ଘାଟିଆ** - *ଗ:* (ବି.) : ପ୍ରେତ କର୍ମ କରୁଥିବା ବ୍ରାହ୍ମଣ

**ଦଶାହାଟିଆ ବ୍ରାହ୍ମଣ** - *ଡ଼:* (ବି.) : ଦଶାହ କ୍ରିୟା କରୁଥିବା ବ୍ରାହ୍ମଣ

**ଦଣି** - *ନ:ଅ:ଗ:ସ:* (ବି.) : ନଖକୋଣରେ ଛାଡୁଥିବା ଛୋଟ ଚମଡ଼ା ଖଣ୍ଡ, ଗୋଡ଼ଫାଟିଥିବା ଚମ, ପୂଜ, ପିନ୍ଧା ଲୁଗାର ଶେଷ ଅଂଶ, ଛୋଟ ଲୁଗା, ଗାମୁଛା

**ଦଣ୍ଡିଆ** - *ନ:ବା:ଗଦ୍ୟ:ବଲ:* (ବି.) : ଚେରୁଆ କାଠ ଖଣ୍ଡ, ଏକପ୍ରକାର ମାଛଧରା ଯନ୍ତ୍ର, ମୋଟା ସୂତାରେ ବୁଣା ଚାଦର,

ଶାଢ଼ି ବୁଣା ସାରିବା ପରେ ଅବଶିଷ୍ଟ ସୂତା

**ଦଣ୍ଡିପୋକ** - *ଗ.ଗଜ.ନ.* (ବି.) : କୃମିପୋକ

**ଦସ୍ନା** - *ଝା.* (ବି.) : ଶୋଇବା ପାଇଁ ବ୍ୟବହାର ଉପକରଣ

**ଦସ୍ରା ପୁନି** - *ସ.* (ବି.) : କୁମାର ପୂର୍ଣ୍ଣିମା

**ଦସକଦ୍** - *ଚା.* (କ୍ରି.) : ଦସ୍ତଖତ

**ଦସକେରେଣ୍ଡା** - *ଖୋ.* (ବି.) : ଏକପ୍ରକାର ଫୁଲ

**ଦସନା ପଟା** - *ସ.* (ବି.) : କନ୍ଥାପଟା

**ଦସି** - *ସୁ.ରା.* (ବି.) : ସୂତା, ଲୁଗାର ଧଡ଼ି

**ଦସିଆଁ** - *ଖୋ.* (ବିଂ.) : ମଇଳା ଲୁଗା

**ଦସେଇବା** - *ସୁ.ସ.* (କ୍ରି.) : ଶଯ୍ୟା ପାରିବା

**ଦସ୍ତ** - *ଯା.* (ବି.) : ଅଧିକ ଝାଡା

**ଦସ୍ତବସ୍ତ** - *ଅ.* (ବିଂ.) : ଯୋଡ଼ହାତ

**ଦସ୍ତା** - *ଗ.ଦେ.* (ବି.) : ଧାତୁ ପାତ୍ର ବିଶେଷ, ହାତ ତିଆରି ବେଣ୍ଟ, ଏକ ପ୍ରକାର ଧାତୁ

**ଦସ୍ତି** - *ଗ.* (ବି.) : ଭୂମି ମାପର ପରିମାଣ ବିଶେଷ

**ଦସ୍ତୁ** - *ଦେ.ଅ.* (ବି.) : କରିଆ, ପିନ୍ଧାଲୁଗା

**ଦସ୍ତୁର** - *ଦେ.ନ.ଯା.କେ.* (ବି.) : ଲୋକାଚାର, ପ୍ରଥା, ରୀତି, ନିୟମ, ବିଧି, ଚାଲିଚଳନ, ନିତିନିୟମ, ଚାରିତ୍ରିକ ଗୁଣ

**ଦସ୍ତୁରି** - *ଗଜ.ଗ.* (ବି.କ୍ରି.) : ଦସ୍ତଖତ, ସ୍ୱାକ୍ଷର, ସ୍ୱଭାବ ଲକ୍ଷଣ

**ଦହ** - *ଦେ.ସୁ.* (ବି.) : ଦହନକାରୀ, ପୋଡ଼ାଯାଉଥିବା, ତାସପତିର ଦଶମ ପତି

**ଦହକ** - *ଗ.କୋ.ଦେ.* (ବି.) : ଉତ୍ତାପ, ଡ଼ହକ, ରଡ଼, ଦାଉ ଦାଉହେବା

**ଦହଗଞ୍ଜ** - *ଅନେ.* (ବି.) : ବ୍ୟତିବ୍ୟସ୍ତ, ଯନ୍ତ୍ରଣା, ହଇରାଣ, କଷ୍ଟ

**ଦହଜ** - *ଅ.* (ବି.) : ଯୌତୁକ

**ଦହତ ପାଣି** - *ଗଦେ୍ୱ.* (ବି.) : ତାତିଲା ପାଣି

**ଦହଡ଼ା** - *କନ୍ଧ.* (ବି.) : ଦଉଡ଼ି

**ଦହ ଦହ** - *ସ.* (ବି.) : ଆଖି ଆଗରେ

**ଦହଦହକା** - *ଗଦେ୍ୱ.* (ବି.) : ଏକ ପ୍ରକାର ଲତା

**ଦହନା** - *ଅନେ.* (ବି.) : ଏକ ପ୍ରକାରର ଗଛ, ଦୟଣା, ଦହଣା, ମନ୍ଦାର ଫୁଲ, ବଣ ତୁଳସୀ

**ଦହମ୍ଭ** - *ଦେ.* (ବି.) : ବ୍ୟତିବ୍ୟସ୍ତ, ପୀଡ଼ିତ

**ଦହର** - *ଅ.* (ବି.) : ଚୁଚୁନ୍ଦ୍ରା, ମୂଷା

**ଦହଲା** - *ଅ.ଦେ.* (ବିଂ.ବି.) ପଙ୍କୁଆ, କାକୁଆ, କାଦୁଆ, ପଙ୍କ ଓ ଜଳମୟ

**ଦହଲାବା** - *ସ.* (ବି.) : କଲିଗୋଳ କରି ସମସ୍ତଙ୍କ ମନରେ ଅଶାନ୍ତି ସୃଷ୍ଟି କରିବା

**ଦହଣ** - *କନା.* (ବିଂ.) : ଦଶ, ଦଶମ, ଶସ୍ୟାଦି ମାପକଲାବେଳେ ସଂଖ୍ୟା ଗଣନାର ଉଚ୍ଚାରିତ ରୂପ

**ଦହସତ** - *ଗ.ସ.ନୂ.* (ବି.କ୍ରି.) : ହତସତ, କଷ୍ଟ ଉଠାଇବା, ହଇରାଣ

**ଦହି** - *ଅନେ:* (ବି.) : ଦଧି, ଗାଈଦୁଗ୍ଧରୁ ପ୍ରସ୍ତୁତ ଏକ ଖାଦ୍ୟ, ବସାଦହି, ମସ୍ତିଷ୍କରେ ଥିବା ମଗଜ

**ଦହିକଡ଼ି** - *ସଂ:* (ବି.) : ଘୋଳଦହିକୁ ବଘାରି ଖାଦ୍ୟ ପ୍ରସ୍ତୁତ କରିବା

**ଦହିକନ୍ଦା** - *ଦେ:* (ବି.) : ଏକ ପ୍ରକାର ଧାନ

**ଦହିକାଦୋ** - *ସୁ:* (ବି.) : ଦଧିଭଞ୍ଜନ ପର୍ବ

**ଦହିକେରା** - *ଖୋ:* (ବି.) : ଏକପ୍ରକାର ଧାନ

**ଦହିଚୂଡ଼ା** - *ଅନେ:* (ବି.) : ଚୂଡ଼ାଦହି ବ୍ରାହ୍ମଣ ଭୋଜନ

**ଦହିଜ** - *ଛ:* (ବି.) : ପୋଡ଼ିଯିବା

**ଦହିପଖାଳ** - *ଅନେ:* (ବି.) : ଦହି ଓ ଭାତ

**ଦହିସଜା** - *ମ:* (ବି.) : କ୍ଷୁଆ

**ଦହିହେବା** - *ଦେ:* (କ୍ରି.) : ଦହଗଞ୍ଜ ହେବା

**ଦାଆ** - *ଅନେ:* (ବି.) : ଫସଲ କାଟିବାର ହତିଆର

**ଦାଆକୁଡି** - *ଦେ:* (ବି.) : ଦରାଣ୍ଡି, ଉଚ୍ଚ ଯାଗାରୁ ଫଳ, କଣ୍ଟା କାଟିବା ଯନ୍ତ୍ର

**ଦାଆରା** - *କନ୍ଧ:* (ବି.) : ଦୁଆର

**ଦାଆଁ** - *ଦେ:* (ବି.) : ଘାସ, ଧାନ କାଟିବାର ଯନ୍ତ୍ର

**ଦାଇ** - *କେ:ମ:ଦେ:* (ବି.) : ଦାୟୀ, ଦେଇ (ବଡ଼ଭଉଣୀ), କଟା

**ଦାଇକା** - *ଗ:* (ବି.) : ନାଟୁଆ ପିଲାମାନେ ବାଦୀପକ୍ଷକୁ ଲକ୍ଷ୍ୟ କରି ବୋଲୁଥିବା ଗୀତ

**ଦାଇକା ଦେବା** - *ଗଦ୍ୟ:* (କ୍ରି.) : ଛଳକରି କହିବା

**ଦାଇତ** - *କେ:* (ବି.) : ଦାୟିତ୍ୱ

**ଦାଇବା** - *ଦେ:ଗ:* (କ୍ରି.) : ଧାନ ଗଛ କାଟିବା, ଦାଆରେ କାଟିବା

**ଦାଇଲି** - *କ:ଜ:ଖୋ:* (ବି.) : ଛୋଟ ଦା, ଏଥିରେ ବିଲ ବଛାଯାଏ, ଲମ୍ବା ବାଉଁଶରେ ଦାଆ ସଂଯୋଗ କରି ଡାଳ ବା ବାଉଁଶ କଣି କଟା ହତିଆର, ଛୋଟ ଦା', ଘାସବଛା ଯନ୍ତ୍ର

**ଦାଇଁ** - *ସୁ:ସୁବ:ବ:କଳା:* (ବି.) : ଧାନ ବେଙ୍ଗଳା ପକେଇବା ରସି ଯାହା ବଳଦ ବେକରେ ରହେ, ଗୋଟିଏ ଦଉଡ଼ିରେ ଅନେକ ପଘା ଲାଗିଥାଏ। ବେଙ୍ଗଳା ମଡ଼େଇଲାବେଳେ ଏଥିରେ ଅନେକ ବଳଦଙ୍କୁ ଫନ୍ଦାଯାଇଥାଏ, ପଶୁମାନଙ୍କୁ ଏକତ୍ର ବାଂଧିବା ଦଉଡ଼ି

**ଦାଇଁ ପକେଇବା** - *ଦେ:* (କ୍ରି.) : ମାଛ ମାରିବା ସକାଶେ ପାଣିରେ ବାଉଁଶ ଛାଲି ପୋତିବା

**ଦାଇମା** - *ସଂ:* (ବି.) : ଧାଇମା, ଆୟା

**ଦାଉ** - *ଅନେ:* (ବି.କ୍ରି.ବିଂ.) : ଦୁଃଖ, ଯନ୍ତ୍ରଣା, ପ୍ରତିଶୋଧ, ହଇରାଣ ହରକତ କରିବା, ଅସୁବିଧା କରିବା

**ଦାଉକ** - *ଅ:* (ବି.) : ଡାହୁକ ପକ୍ଷୀ

**ଦାଉଣି** - *ଯା:ଦେ:କ:ଯା:* (ବି.) : ବେଙ୍ଗଳାରେ ବଳଦ ବନ୍ଧା ଦଉଡ଼ି, ବେଙ୍ଗଳା କରିବା

ପାଇଁ ବଳଦ ଯୋଚିବାକୁ ପଘା, ଗୋଟିଏ ବଡ଼ ଯୋତ, ଦାଗ

**ଦାଉଦାଉ** - *ଅନେ:* (ବିଂ.ଅ.) : ଅତିପ୍ରଖର, ଜଳ ଜଳ, ହୁହୁ ହୋଇ ଜଳିବା

**ଦାଉନି** - *ଚର:* (ବି.) : ଏକାଧିକ ଗରିକଣ୍ଠା ଗୋଟିଏ ଲମ୍ବ ସୂତା ଦ୍ୱାରା ବନ୍ଧାଯାଇଥାଏ

**ଦାଉଲା** - *ଚ:* (ବି.) : କଟୁରି

**ଦାଉଳି** - *ସୁ:* (ବି.) : ଡାଳ ହାଣିବା କଟୁରୀ

**ଦାଉ ସାଧିବା** - *ଅନେ:* (ବି.) : ପ୍ରତିଶୋଧ ନେବା

**ଦାଉଁ** - *ଅ:* (ବି.) : ଡେଙ୍ଗ

**ଦାଏକା** - *କଳା:ଚର:ସୁ:* (ବି.) : ଦାଇକା, ଡାପ (ବ) ଭଳି ଲୋକଗୀତରେ ଘୋଷା ପଦ, ଆକ୍ଷେପ କରି କହିବା, ଦକା

**ଦାଏର** - *ନ:ଦେ:ସୁ:* (ବି.ବିଂ.) : ଦାଖଲ, ଉପସ୍ଥାପନ, ଉପସ୍ଥାପିତ କରିବା,

**ଦାଏଲ** - *ସୁ:କଳା:ବୌ:ସ:* (ବି.) : ଡାଳି, ଦାଉଲି

**ଦାଓ କର୍‌ବା** - *ସ:* (କ୍ରି.) : ଚକ୍ ମକେଇ ଯିବା

**ଦାଖଲ** - *ଅନେ:* (ବି.) : ପଇଠ, ଦାଏର, ଉପସ୍ଥାପନ

**ଦାଖଲଖାରଜ** - *ଅନେ:* (ବି.) : ଜମିକିଣି ନିଜ ନାଁରେ ରେକର୍ଡ କରିବା, ମିଉଟେସନ କେସ୍

**ଦାଖଲା** - *ଢେ:ଗ:* (ବି.) : ଟଙ୍କାଦେବାର ପାଉତି, ଉଦାହରଣ

**ଦାଖଲା ମାରିବା** - *ଢେ:* (କ୍ରି.) : ଦେଖେଇ କରି କହିବା

**ଦାଗ** - *ଅନେ:* (ବି.) : ଚିହ୍ନ, କଳଙ୍କ, କାଳି, ବଦ୍‌ନାମ

**ଦାଗ୍‌ବା, ଦାଗିବା** - *ଅନେ:* (କ୍ରି.) : ନିଆଁ ଚେଙ୍କ ଦେବା

**ଦାଗୀ** - *ଅନେ:* (ବି.ବିଂ.) : ଚୋରି କରିଥିବା ବ୍ୟକ୍ତି, ଖୁନୀ ଆସାମୀ, ଥରେ ସଜା ଭୋଗିଥିବା ଲୋକ, ବାରମ୍ବାର ଦୋଷୀସାବ୍ୟସ୍ତ ହୋଇଥିବା ବ୍ୟକ୍ତି

**ଦାଙ୍ଗଡ଼ା** - *ଗ:* (ବି.) : ଯୁବକ

**ଦାଠାଙ୍ଗି** - *ଅ:* (ବିଂ.) : ଚାଲାକ୍

**ଦାଢ** - *ଅନେ:* (ବି.ବିଂ.) ଅଭିଶାପ, ସରୁସରୁ, ଛୋଟଛୋଟ, ଧାର, ତାଳ ବାହୁଙ୍ଗାର ଦୁଇପଟର ଧାରଯୁକ୍ତ ଅଂଶ, କାଦୁଅ ମାଟିକୁ ସମାନ କରିବାର ଏକ କାଠ ଫାଳିଆ ପଟାର ଯନ୍ତ୍ର, ହଳ ସାହାଯ୍ୟରେ ମାଟି ଟଣାଯାଏ, ତୀକ୍ଷଣ

**ଦାଢ ବାହୁଡ଼ା** - *ଚ:* (ବିଂ.) : ଠାକୁରାଣୀଙ୍କ କୋପରୁ ବର୍ତ୍ତିଯାଇଥିବା

**ଦାଢମଇ** - *ଗ:* (ବି.) : ବଙ୍କା ମଇ, ଚାଷ ଉପକରଣ

**ଦାଢ଼ି** - *ଅନେ:* (ବି.) : ଗାଲରେ ବଢ଼ିବା ଲୋମାଦି; ଶ୍ମଶ୍ରୁ, ନିଶ

**ଦାଢିଆ** - *ଅନେ:* (ବିଂ.) : ଯା'ର ଦାଢିଥାଏ

**ଦାଢିଧାନ** - *ସୁ:* (ବି.) : ଅଫୁଟା ଖଇ

**ଦାଢି ପାଇବା** - *ଦେ:* (କ୍ରି.) : ଦାମୁଡି ବଳଦର ଦାନ୍ତ ଉଠିବା

**ଦାଢୁଆ** - *ଖୋ:ନ:* (ବିଂ.) : ଧାରୁଆ, ତୀକ୍ଷ୍ଣ ଧାରଯୁକ୍ତ, ଶାଆଣଯୁକ୍ତ

**ଦାଣ୍ଟିବା** - *ଦେ:* (କ୍ରି.) : ଆକଟ କରିବା, ଅଟକେଇବା, ଧମକେଇବା, ଧଡକାଇବା

**ଦାଣ୍ଡ** - *ସୁ:* (ବି.) : ଦୁଃସାହସ

**ଦାଣ୍ଡି** - *ଦେ:ଗ:* (ବି.) : ଟାଣ କରି, ଶୁଖିଲା ଡାଳ ବା ଛୁଇଁ

**ଦାଣ୍ଡିଦେବା** - *ନ:* (କ୍ରି.) : ଜବଦ୍ କରିବା, ହାଙ୍କିଦେବା, ଡରାଇଦେବା

**ଦାଣ୍ଡିବା** - *ବୌ:ଅ:* (କ୍ରି.) : ଆକଟ କରିବା, ଜବଦ୍ କରିବା, ଜୋର କରି ତାଗିଦ୍ କରିବା

**ଦାଣ୍ଡ** - *ଅନେ:* (ବି.) : ସ୍ଥଳପଥ, ଘରର ଆଗ ପାଖ, ରାସ୍ତା, ବାଟ, ପଥ, ଗାଁ ଦାଣ୍ଡ, ଚଲାରାସ୍ତା(ଗାଁ ଭିତରର)

**ଦାଣ୍ଡ କଥା** - *ଅନେ:* (ବି.) : ବାହାର, ବାଜେ କଥା

**ଦାଣ୍ଡ ଘର** - *ଅନେ:* (ବି.) : ଦାଣ୍ଡ ପାଖରେ ଥିବା ବଖରା

**ଦାଣ୍ଡପହଁରା** - *ନ:* (ବି.) : ପୌଷ କୃଷ୍ଣ ଦ୍ୱିତୀୟା(ଓଷା)-ପୁଅକୁଧରି କୋଳରେ ଧରି ମାଆ ଦାଣ୍ଡ ପହଁରିବା

**ଦାଣ୍ଡରେ ପକେଇବା** - *ଅନେ:* (କ୍ରି.) : ବିଚାର ସକାଶେ ସର୍ବସାଧାରଣରେ ଉପସ୍ଥାପିତ କରିବା

**ଦାଣ୍ଡି** - *ନବ:ଦେ:କୋ:* (ବି) : ଶଗଡ ଦଣ୍ଡା, ଓଡ଼ିଆ ପଦ୍ୟ, ଦାଣ୍ଡି ରାମାୟଣ, ଗାଡି ଦାଣ୍ଡି, ଗୋଦାଣ୍ଡି, ଶଗଡ଼ ଯିବା ରାସ୍ତା

**ଦାଣ୍ଡିଆ** - *କେ:ଦେ:* (ବି.) : ବାରବୁଲା ସ୍ତ୍ରୀ, ସାଧା-ସିଧା, ଆଗୁଆ, ସିଧା ଓ ଲମ୍ବ, ଚକର ଅର, ଡାଙ୍ଗିଆ

**ଦାଣ୍ଡିଆ ମାଛ** - *ଗ:* (ବି.) : ଏକ ପ୍ରକାର ଛୋଟ ମାଛ-ଦଣ୍ଡକିରୀ

**ଦାଣ୍ଡିକିଳା** - *ଗ:* (ବି.) : ଶଗଡ଼ର ଅଖ ମଝିରେ ଥିବା କୀଳା

**ଦାଣ୍ଡିପାଲା** - *ମ:* (ବି.) : ନିକିତି

**ଦାଣ୍ଡି ମାରିବା** - *ଦେ:* (କ୍ରି.) : ପଥରୋଧ କରିବା

**ଦାଣ୍ଡେଇ** - *ଅ:* (ବିଂ.) : ଘରେ ନରହି ପଦାରେ ବୁଲୁଥିବା ସ୍ତ୍ରୀ

**ଦାତ୍** - *ମା:* (ବି.) : ଦାନ୍ତ

**ଦାତମାତ** - *ଜ:* (ବି.) : ପିତାମାତା, ତାତମାତ

**ଦାତା** - *ଅନେ:* (ବିଂ.) : ଦୟାଳୁ

**ଦାତୁନ** - *ଅନେ:* (ବି.) : ଦାନ୍ତକାଠି

**ଦାତୁନ୍ କରବା** - *ନୂ:ଜଳା:* (କ୍ରି.) : ଦାନ୍ତ ଘଷିବା ଅର୍ଥରେ

**ଦାଦନ** - *ଅନେ:* (ବି.) : ଶ୍ରମିକ, ଅଗ୍ରୀମ ନେବା, ଠିକା କାମରେ ବାହାର ରାଜ୍ୟକୁ ଯାଇ ଖଟିବା

ଦାଦନା - *ଖୋ:* (ବି.) : ବେପରୁଆ

ଦାଦନି - *ଦେ:* (ବି.) : ଆଗତୁରା ଦିଆଯିବା ଧାନ ବା ଟଙ୍କା

ଦାଦନିଆ - *ନ:* (ବିଂ.) : ରୁଗ୍‌ଣ, ଦେବାଳିଆ

ଦାଦା - *ଅନେ:* (ବି.) : ଗୁଣ୍ଡା, ବଡ଼ ଭାଇ, ମା'ଙ୍କ ବାପା (ଅଜା), କକା, ବାପାଙ୍କ ଭାଇ

ଦାଦାଗିରି - *ସଂ:* (କ୍ରି.ବିଂ.) : ପ୍ରଭୁତ୍ୱ ଜାହିର

ଦାଦାବାବୁ - *ମ:ବା:* (ବି.) : ଭିଣୋଇଁ

ଦାଦି - *ଅନେ:* (ବି.) ଅଜା, ବାପାଙ୍କ ସାନଭାଇ, କକା (ପୁଂଲିଙ୍ଗ ଅର୍ଥରେ ବ୍ୟବହୃତ), ମାତାମହ, ପିତାମହ, କକା, କକେଇ

ଦାଦିନା - *ପୁ:* (ବିଂ.) : ଅକର୍ମୀ, ହୀନ, ତୁଚ୍ଛ

ଦାଦୁ - *ଅନେ:* (ବି.) : ଯାଦୁ, ଚର୍ମରୋଗ, କାଛୁ କୁଣ୍ଡିଆ, ଚର୍ମରୋଗ

ଦାଦୁଆ - *ଅ:* (ବିଂ.) : ଜାଦୁଆ ରୋଗାକ୍ରାନ୍ତ

ଦାନ - *ଦେ:ନ:* (ବି.) : ଦେବା, ତ୍ୟାଗ, ବିତରଣ, ପଶାଖେଳର ସାରା, ସଂଖ୍ୟା, ବାଣ୍ଟିବା

ଦାନ୍‌ଦପାନ୍ - *ସ:* (ବି.) : ଦାନକାର୍ଯ୍ୟ

ଦାନ୍‌ଦାନ୍ - *ଗ:* (କ୍ରି.ବିଂ.) : ସଙ୍ଗେ ସଙ୍ଗେ, ଶବ୍ଦସହ ସଙ୍ଗେ ସଙ୍ଗେ

ଦାନଗଦି - *ଅନେ:* (ବି.) : ଧାନ ବିକ୍ରୟକେନ୍ଦ୍ର, ମ୍ୟୁନିସିପାଲିଟି ଏରିଆରେ ଆଦାୟ କରୁଥିବା ଶୁଳ୍କ କାର୍ଯ୍ୟାଳୟ

ଦାନଗଦି ମାହାଶୁଲ - *ଅନେ:* (ବି.) : ପଣ୍ୟ ଦ୍ରବ୍ୟ ଉପରେ ମ୍ୟୁନିସିପାଲିଟି ଯେଉଁ ଶୁଳ୍କ ଆଦାୟ କରେ

ଦାନପତ୍ର - *ଅନେ:* (ବି.) : ଘରବାଡ଼ି ଜଣକ ନାମରେ ମାଗଣାରେ ପ୍ରଦାନ କରିବା, କୌଣସି ସମ୍ପତ୍ତି ଅନ୍ୟକୁ ଦାନ କରିବାର ଲେଖା, ଦତ୍ତପତ୍ର

ଦାନବ - *ଅନେ:* (ବି.) : ଅସୁର, ରାକ୍ଷସ

ଦାନା - *ଅନେ:* (ବି.) : ପଶୁଖାଦ୍ୟ, ବେସନ ପ୍ରସ୍ତୁତ ମିଠାଇର କ୍ଷୁଦ୍ର ଅଂଶ, ଖାଦ୍ୟ, ଗାଈ ଗୋରୁଙ୍କୁ ଦିଆଯିବା ଖାଦ୍ୟଶସ୍ୟ, ଛୋଟ ଛୋଟ ଗୋଲବସ୍ତୁ, ଖାଦ୍ୟ, ଅନ୍ନ

ଦାନା କନା - *ଅନେ:* (ବି.) : ଖାଇବାକୁ ଗଣ୍ଡେ, ପିନ୍ଧିବାକୁ ଖଣ୍ଡେ, ଅନ୍ନ ବସ୍ତ୍ର

ଦାନାକଷ୍ଟିଆ - *ଭ:* (ବିଂ.) : କୃପଣ

ଦାନାଛଡ଼ା - *ଭ:* (ବି.) ଖାଦ୍ୟଛାଡ଼ି ଦେଇଥିବା ଲୋକ

ଦାନାଦାର - *ଅନେ:* (ବି.) : ଏକପ୍ରକାର ସାର, ବିଷକ୍ରିୟା ସୃଷ୍ଟିକାରୀ କୃଷିସାର

ଦାନାପାଣି - *ଅନେ:* (ବି.) : ଖିଆପିଆ, ଚାକିରୀ, ଖାଦ୍ୟର ଆବଶ୍ୟକତା

ଦାନାବାନ୍ଧିବା - *ଅନେ:* (କ୍ରି.) : ଏକାଠି ହେବା, ସୂତ୍ରପାତ ହେବା

ଦାନୀ - *ଅନେ:* (ବିଂ.ବି.) : ଦାତା, ନାସ ଗୁଣ୍ଡି ରଖିବା ପାତ୍ର

ଦାନୁଆ - *ଅନେ:* (ବିଂ.ବି.) : ଦାନଗ୍ରହୀତା, ବ୍ରାହ୍ମଣ ଜାତି, ଦାନ ଗ୍ରହଣକାରୀ

ବୈଦିକ ବ୍ରାହ୍ମଣ, ଗଞ୍ଜାମର ଶାସନୀ ବ୍ରାହ୍ମଣ

**ଦାନେଇବା** - *ବୌ:* (କ୍ରି.) : ଅନ୍ୟ ଉପରେ ଚାପ ଦେଇ ଉପରକୁ ଉଠିବା

**ଦାନ୍ କରବା** - *ସ:* (କ୍ରି.) : ଦାନ କରିବା

**ଦାନ୍ତ ଖୁଣ୍ଟା** - *ବୌ:* (ବି.) : ଦାନ୍ତ ଖୁଣ୍ଟିବା କାଠି

**ଦାନ୍ତକାନି ଧାନ** - *କେନ୍ଦୁ:* (ବି.) : ମଧ୍ୟମ କିସମର ଧାନ

**ଦାନ୍ତଖାଡ଼ି** - *କୋ:* (ବି.) : ଦାନ୍ତକାଠି

**ଦାନ୍ତଖୁଣ୍ଟା** - *ନ:* (ବି.) : ଦାନ୍ତ ସନ୍ଧିରେ ଲାଗିଥିବା ଖାଦ୍ୟାଂଶ କାଢିବା ସରୁ କାଠି

**ଦାନ୍ତଘଷା** - *ଦେ:* (ବି.) : କାଠି, ଗୁଡ଼ାଖୁ, କୋଲଗେଟ୍, ଦନ୍ତ ମଞ୍ଜନ

**ଦାନ୍ତଛୋଡ଼ା** - *ନ:ଦେ:* (ବି.) ଦାନ୍ତ ଦେଖାଇବା (ଅଶ୍ଳୀଳ), ନିର୍ଲଜ୍ଜ ହସ

**ଦାନ୍ତନିକୁଟା** - *ଅନେ:* (ବି.) : ବିରିପୁରଥିବା ସିଝାମଣ୍ଡା, ବିକୃତ ହସ, ଦାନ୍ତ ଦେଖେଇବା, ନେହୁରା ହେବା, ପ୍ରାର୍ଥନା କରିବା

**ଦାନ୍ତମଳିଖିଆ** - *କୋ:* (ବିଂ.) : କଂଜୁସ୍

**ଦାନ୍ତରଗଡ଼ା** - *କ:* (ବିଂ.) : ଯେଉଁ ବଳଦ ଦାନ୍ତ ରଗଡ଼େ

**ଦାନ୍ତ ଲେସଡ଼ିବା** - *ଦେ:* (କ୍ରି.) : ଦାନ୍ତ ନେଫେରିବା

**ଦାନ୍ତି** - *ଅନେ:* (ବି.) : ପାଣି ଛିଟିକାର ପ୍ରତିରୋଧକ (ଚାଳଘର ପାଇଁ), କାଦୁଅ ଜମିକୁ ସମତଳ କରିବା ମଇ, ଧାର, ମୁଗୁରା ମୁହଁ

**ଦାନ୍ତିଆ** - *ଦେ:କ:ଗ:* (ବି.) : ବନ୍ଧରିଆ, ରୂପା ଅଳଙ୍କାର, ଓରା ଓ ଶେଣିର ସଂଯୁକ୍ତକାରୀ ଠେକ, ମାଛଧରା ଯନ୍ତ୍ର, ଘରପିଣ୍ଡାର ଖୁଣ୍ଟ ଓ ଚାଳସଂଲଗ୍ନ କାଠ

**ଦାନ୍ତିକିଲୁ** - *କୋ:* (ବି.) : ବେସନରେ ତିଆରି ଗୋଲାକାର ପରସ୍ତ ପରସ୍ତ ଥିବା ଖାଦ୍ୟ ପଦାର୍ଥ ବିଶେଷ

**ଦାନ୍ତୀ** - *କଳା:* (ବି.) : ଦାନ୍ତି ବିସର, ସ୍ରୋତର ପ୍ରତିକୂଳ ଗତିରେ ଯାଉଥିବା ମାଛକୁ ଧରିବା ନିମନ୍ତେ ବ୍ୟବହୃତ ବାଉଁଶ ପାତିଆ ବା ଖଡିବା ନିର୍ମିତ ଯନ୍ତ୍ର । ଚଘେନ ବିସର, କାଠି ବା ଲୁହା କଣ୍ଟା ଲଗା କପର ବା ମଇ

**ଦାନ୍ତୁନ** - *ଅ:କୋ:* (ବି.) : ଦାନ୍ତକାଠି, ଦନ୍ତ ମଂଜନ ପାଇଁ ବ୍ୟବହୃତ କାଠି

**ଦାନ୍ତୁରା** - *ଅନେ:* (ବିଂ.) : ଯାହାର ଦାନ୍ତ ପାଟିର ବାହାର ପଟକୁ ବଢିଥାଏ (ଦାନ୍ତୁରୀ-ସ୍ତ୍ରୀ

**ଦାନ୍ଧର** - *କୋ:ଦେ:* (ବି.) : ବାଉଁଶ ନିର୍ମିତ ମାଛଧରା ଯନ୍ତ୍ର ଖାଲେଇ, ମୁଗୁରା

**ଦାନ୍ଧରିବା** - *କେନ୍ଦୁ:* (କ୍ରି.) : ରାଗିବା

**ଦାପେଦାପେ** - *କଳା:* (ବିଂ.) : ତରବରରେ, ତରତରରେ, ସାମାନ୍ୟ ଲଘୁକଷ୍ଟାନୁଭବ ସହିତ, ତୁରନ୍ତ

ଦାବ - *ବର.ଦେ:* (ବି.) : ଚାପ, ଶାସନ, ଦମନ, ବନାଗ୍ନି

ଦାବା - *ଗ.ଭା.ଗଞ୍ଜ:* (ବି.) : ମକଦ୍ଦମା

ଦାବା ଦରବାର - *ଗଞ୍ଜ:* (ବି.) : ଅଦାଲତ ସଂପର୍କିତ ଶବ୍ଦବିଶେଷ

ଦାବିଦାର - *ଅନେ:* (ବି.) : ଦଖଲକାରୀ, ଅଧିକାରୀ

ଦାବିବା - *ଅନେ:* (କ୍ରି.) : ତଳକୁ ଚାପିବା, ଦମନ କରିବା

ଦାବୀ - *ଅନେ:* (ବି.) : ସ୍ୱତ୍ୱ, ଅଧିକାର

ଦାବୁଡ଼ିବା - *ଭା:* (କ୍ରି.) : ଧାଇଁବା

ଦାବେନ୍ - *ସୁନ:* (ବି.) : ଗାଳିଦେଇ ସତର୍କ କରିବା

ଦାମ - *ଅନେ:* (ବି.) : ମୂଲ୍ୟ

ଦାମ୍ରି - *ସୁନ:ବୌ:* (ବି.) : ଦାମୁଡ଼ି, କଅଁଳା ବାଛୁରୀ

ଦାମଡ଼ା - *ଗ:* (ବି.) : ଯୁବା ବୟସର ବଳଦ

ଦାମା - *ଯା:* (ବି.) : ଢୋଲକ, ବାଦ୍ୟଯନ୍ତ୍ର

ଦାମୀ - *ଅନେ:* (ବିଂ.) : ଦାମିକା, ମୂଲ୍ୟବାନ

ଦାମୁଡ଼ି - *ଅନେ:* (ବି.) : ଗାଈର ଅଣ୍ଡିରା ବାଛୁରୀ, ପଇସା, ପାହୁଲା, ଯୁବା ବଳଦ, ଶିଶୁବୃକ୍ଷ, ପାଞ୍ଚଗଣ୍ଡା କଉଡ଼ି, ଛୋଟବଳଦ

ଦାମୁଡ଼ିଆ - *କେନ୍ଦୁ:* (ବିଂ.) : ଅଣ୍ଡିରା ବାଛୁରୀ ପରି

ଦାମୁଣିଆ - *ପଦ୍ୟ:* (ବି.) : ବେଙ୍ଗଳାରେ ବୁଲୁଥିବା ଗୋରୁ

ଦାମ୍ନା - *ଗ:* (ବି.) : ବଳ, ହେମତ

ଦାମ୍ଡି - *ଭା:କୋ:ନ:ଗ:* (ବି.) : ମାଈ ବାଛୁରୀ, ନିମ୍ନତମ ମୂଲ୍ୟ ସୂଚକ ମୁଦ୍ରା, ଅଧାବୟସର ବଳଦ ବା ପଣ୍ଡା

ଦାମ୍ବାରି - *କନ୍ଧ:* (ବି.) : ବାଛୁରି

ଦାମ୍ଡ଼ିକା *ଗ:* (ବି.) : ଏକ ପଇସି

ଦାୟ - *ଅନେ:* (ବି.) : ଦାୟବଦ୍ଧତା, ପକ୍ଷ

ଦାୟରା - *ବୌ:* (ବି.) : ଦଉଡ଼ି

ଦାରା - *କନ୍ଧ:ଦେ:* (ବି.) : କବାଟ, ସ୍ତ୍ରୀ, ଭାର୍ଯ୍ୟା

ଦାରାକ୍ଷ - *କୋ:ଗ:* (ବି.) : ଅଙ୍ଗୁର

ଦାରିଆ - *ଖୋ:* (ବିଂ.) : ଯେ ବେଶ୍ୟା ସଙ୍ଗକରେ, ପରସ୍ତ୍ରୀ ଗମନକରେ ଯେ

ଦାରିଖଞ୍ଜ - *ଗ:* (ବି.) : ବେଶ୍ୟାର ଆକର୍ଷଣ

ଦାରିସଜ - *ଗ:* (ବି.) : ବେଶ୍ୟାର ବେଶ ବିନ୍ୟାସ

ଦାରୀ - *ଅନେ:* (ବି.ବିଂ.) : ଗଣିକା, ବେଶ୍ୟା, ରୂପଜୀବୀ

ଦାରୀନାଚ - *ଦେ:* (ବି.) : ବାଈ ନାଚ

ଦାରୁ - *ଅନେ:* (ବି.) : ବାରୁଦ, ମହୁଲିମଦ, ଦେବଦାରୁ ଗଛ, କାଠ, ରଞ୍ଜକ, ଅଗ୍ନିଉତ୍ପାଦକ, ଜାଳେଣି କାଠ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ଗଢାଯାଇଥିବା ନିମ୍ବବୃକ୍ଷ, ଦିଆସିଲି ରଂଜକ କାଣ ଫୋଟକା ଭିତରେ ଥିବା ରାସାୟନିକ ଗୁଣ୍ଡ

**ଦାରୁଗା** - *ବା:ନ:* (ବି.) : ଦାରୋଗା, ପୋଲିସ ଇନ୍ସପେକ୍ଟର

**ଦାରୁଚିନି** - *ଅ:ଯା:* (ବି.) : ଡାଲଚିନି

**ଦାରୁଣ** - *ଦେ:* (ବିଂ.) : ଭୟଙ୍କର, କଠିଣ, କଠୋର

**ଦାରୁଦିଅଁ** - *ଢ:* (ବି.) : ଜଗନ୍ନାଥ, କାଠ ତିଆରି ଠାକୁର

**ଦାରୁମୂଷି** - *ଗ:* (ବି.) : ଶଂଖିଆ ବିଷ, ଯାହା ଶୋଧନ କରି ଔଷଧରେ ବ୍ୟବହୃତ

**ଦାରୁହଳଦୀ** - *ଅନେ:* (ବି.) : ବଣହଳଦୀ

**ଦାର୍ପଣୀ** - *ରା:* (ବି.) : ଦର୍ପଣ

**ଦାର୍ଯ୍ୟା** - *ଗ:କୋ:ନବ:* (ବିଂ.ବି.) : ସ୍ୱଚ୍ଛଳ, ବିଳାସପୂର୍ଣ୍ଣ, ଭୋଗ ବିଳାସ

**ଦାର୍‌ଦରି** - *ନୂ:* (ବିଂ.) ପେଟୁ, ଯିଏ ସବୁବେଳେ ଅଧିକ ଖାଇବା ଖାଇବା ହେଉଥିବା

**ଦାଲ୍** - *କଳା:ମ:ଗଦ୍ୟ:* (ବି.) : ଡାଲି

**ଦାଣ୍ଡିଆ ନାଚ** - *ଦେ:* (ବି.) : କୋହ୍ଲମାନଙ୍କ ନାଚ

**ଦାସକାଠି** - *ନ:ଗଜ:ଗ:* (ବି.) : ଦାସକାଠିଆ ବଜାଉଥିବା କାଠି (କାଠିରେ ଝୁମୁକା ଯୁକ୍ତଥିବା), ରାମତାଳି, ଗଞ୍ଜାମର ଏକ ଲୋକ ନୃତ୍ୟ

**ଦାସିରି** - *ଗ:ଗଜ:* (ବି.) : ଗଞ୍ଜାମରେ ବାସ କରୁଥିବା ଏକ ଅନୁସୂଚୀତ ଜାତି, ତେଲ୍‌ଗୁ ଭାଷୀ ଜାତି, ପୁଝାରୀ

**ଦାସିରି ନାଚ** - *ଗ:* (ବି.) : ଛନ୍ଦ, ଲୟ, ତାଳ ନଥିବା ନୃତ୍ୟ

**ଦାସୀ** - *ଅନେ:* (ବି.) : ପୋଇଲି, ଚାକରାଣୀ, ଦେବଦାସୀ

**ଦାସୀନାଗିବା** - *ମ:* (କ୍ରି.) : କାଳିସୀଲାଗିବା

**ଦାସ୍ତ** - *କେନ୍ଦୁ:* (ବି.) : ଯତ୍ନ ନେବା

**ଦାହ** - *ଅନେ:* (ବି.) : ଦହନ କରିବା, ଜାଳିବା, ପୋଡ଼ିବା, ଶବଦାହ, ସତୀଦାହ

**ଦାହଜାତି** - *ଖୋ:* (ବି.) : ଦେହରୁ ଛାଡୁଥିବା ଚମଡ଼ା

**ଦାହୁଣି** - *ବା:* (ବି.) : ବେଙ୍ଗଳା ସମୟରେ ଯୋଚା ଯାଉଥିବା ଦଉଡ଼ି

**ଦାଁଡ଼** - *ସୁ:* (ବି.) : ବାହାର, ଲମ୍ବ ଦଣ୍ଡ

**ଦାଁଣ୍ଡି** - *ମ:* (ବି.) : ଢ଼େଙ୍ଗ

**ଦାଁତଗିଜରା** - *ସୁ:* (କ୍ରି.) : ଦାନ୍ତ ଦେଖେଇ ହସିବା

**ଦାଁତି** - *ସୁ:ସ:ବର:* (ବି.) ଦାନ୍ତଯୁକ୍ତ ଲୁହାଧାର କରିବା ଯନ୍ତ୍ର, ପାଳରେ ଛୋଟ ଛୋଟ ଚାଳଘର, ଚାରାର ମୁହଁ ଆଡୁ ମାଛର ଫେରିବାକୁ ଅଟକାଇବା ପାଇଁ ଜିଭିରେ ପ୍ରଯୁକ୍ତ ମୁଳିଆ ବାଉଁଶ କାଠି

**ଦାଁ ବରଦା** - *କ:* (ବି.) : ଚଉକରୁ ମୁଖାକୁ ଟେକିଧରୁଥିବା କାଠଖଣ୍ଡ

**ଦିଅଚେ** - *କଳା:* (କ୍ରି.) : ଦେଉଛି

**ଦିଅଣନିଅଣ** - *ରା:* (ବି.) : ଦେବାନେବା

**ଦିଅର** - *ଅନେ:* (ବି.) : ସ୍ୱାମୀଙ୍କ ସାନଭାଇ, ଦେବର

**ଦିଅଁ** - *ଅନେ:* (ବି.) : ଠାକୁର, ଦେବତା

**ଦିଅଁଖୁଣ୍ଡି** - *ନ:* (ବି.) : କ୍ଷୀରଖୁଣ୍ଡି

**ଦିଆ** - *ଅନେ:* (ବି.ବିଂ.) : ଡିବିରି, ଦାନୀ, ଦତ୍ତ, ଦୀପ, ଦେବା

**ଦିଆଥୁଆ** - *ସ:* (କ୍ରି.) : ଦେବାନେବା

**ଦିଆନ** - *ଗ:କଳା:ଦେ:* (ବି.) : ଦେବାନ, ରାଜାଙ୍କ ମୁଖ୍ୟ ବ୍ୟବସ୍ଥାପକ, ଦେୱାନ୍,

**ଦିଆଲି** - *ଅନେ:* (ବି.) ଦିପାବଳୀ ଅମାବାସ୍ୟା

**ଦିଆଲିଆ** - *ଅ:ସୁବ:* (ବି.ବିଂ.) : ଦେବାଳିଆ, ଯିଏ ଋଣ ପରିଶୋଧ କରିପାରେ ନାହିଁ

**ଦିଆଲି କାଁଚି** - *ସ:* (ବି.) : ଦୀପ

**ଦିଆଲୀ ଉଆଁସ** - *ସ:* (ବି.) : ଦୀପାବଳି, କାର୍ତ୍ତିକ ଅମାବାସ୍ୟା

**ଦିଆସ୍** - *କଳା:* (କ୍ରି.) : ଦିଅ, ଦିଅନ୍ତୁ

**ଦିଓଟି** - *ନ:ଦେ:* (ବିଂ.ବି.) : ଅଳ୍ପକିଛି, ଦୁଇଟି

**ଦିକ୍‌ଦାର** - *ଅନେ:* (ବି.) : ବିରକ୍ତ, ରାଗ

**ଦିକଡ଼ା** - *ଅନେ:* (ବି.କ୍ରି.) : ଅତି ସାମାନ୍ୟ, ୧୦୦ ସଂଖ୍ୟା ବିଶିଷ୍ଟ ପାନ କିମ୍ବା ବିଡ଼ି, ଦୁଇଗୋଟି କଉଡ଼ିର ମୂଲ୍ୟ, ଗାଳି ବିଶେଷ, ଛତରା, ସ୍ୱଳ୍ପମୂଲ୍ୟର ଦ୍ରବ୍ୟ, ମୂଲ୍ୟହୀନ

**ଦିକୁ** - *ଗଦ୍ୟ:ମା:* (ବି.) : ଅବଙ୍ଗା, ବ୍ରାହ୍ମଣ

**ଦିକୁଶ୍** - *ବ:* (ବି.) : ଦୁଇକ୍ରୋଶ

**ଦିଗଡ଼** - *ଅନେ:* (ବି.) : ଦୁଇଖଣ୍ଡ

**ଦିଗତେନା** - *ଢେ:* (ବିଂ.) : ଶୀଘ୍ର

**ଦିଗର** - *ଢେ:* (ବି.) : ଅଡ଼ିବସିବା

**ଦିଗହରା** - *ଅନେ:* (ବି.ବିଂ.) : ବାଟଭୁଲା, ଅଜ୍ଞାନ, ଉପାୟ ପାଉନଥିବା, ପଥହରା, ବାଟବଣା

**ଦିଗୁଣ** - *ଅନେ:* (ବି.) : ଦୁଇଗୁଣ

**ଦି ଘଡ଼ି** - *ଅନେ:* (ବି.) : କିଛି ସମୟ

**ଦିଢ** - *ଛ:* (ବିଂ.) : ଦୃଢ

**ଦିଣ୍ଡା** - *ଅନେ:* (ବି.) ସ୍ତ୍ରୀ, ଯୁବତୀ, ଅଭିଆଡ଼ୀ

**ଦିଣ୍ଡାଘର** - *କନ୍ଧ:* (ବି.) କୁଡ଼ିଆ ବା ଛୋଟଘର

**ଦିଦି** - *ଦେ:* (ବି.) : ଭଉଣୀ, ନାନୀ

**ଦିନ୍ ଡାହାଡ଼ା** - *ନୂ:ସ:ବ:* (ଅ.) : ଖୋଲା ଖୋଲି ଭାବରେ

**ଦିନ୍‌ମୁଡ ପାଏବା** - *କଳା:* (କ୍ରି.) : ବର୍ଷ ପାଇବା, ସମୟ ଆସିବା

**ଦିନକାଳ** - *ଅନେ:* (ବି.) : ସମୟ, ଅସମୟ

**ଦିନଗଡ଼ିବା** - *ଅନେ:* (କ୍ରି.) : ଦିପହର ହେବା

**ଦିନ ବୁଡ଼ିବା** - *ଦେ:* (ବି.) : ବେଳବୁଡ଼

**ଦିନଭର** - *ଅନେ:* (ବି.) : ସାରାଦିନ

**ଦିନଶ୍ରାଦ୍ଧ** - *ଗ:* (ବି.) ପ୍ରତିବର୍ଷ କରାଯାଉଥିବା ପିତୃଶ୍ରାଦ୍ଧ

ଦିନ ସରିବା - *ଗ:ଦେ:* (କ୍ରି.ବି.) : ମୃତ୍ୟୁ ହେବା, ସମୟ ସରିବା, ଦିନଯିବା, କାଳ କାଟିବା

ଦିନାନ୍ତୁ - *ନୂ:ସ:* (ଅ.ବି.) କିଛିଦିନ, କେତେଦିନର ବ୍ୟବଧାନ

ଦିନେକ୍ - *କଳା:* (ଅ.) : ଦିନକ ପାଇଁ,ଏକଦିନ

ଦିନେକର୍ - *କଳା:* (ଅ.) : ଦିନକ ପାଇଁ, ଏକଦିନ ନିମନ୍ତେ

ଦି ପହର - *ଅନେ:* (ବି.ବିଂ.) : ଅପରାହ୍ଣ, ଦୁଇପ୍ରହର, ମଧ୍ୟାହ୍ନ

ଦିପାଳି - *ଅନେ:* (ବି.) : ମାଟିଦୀପ, ଦୁଇପାଳି ବା ଦୁଇଥର

ଦିପୁର - *ଢେ:* (ବିଂ.) : ଦୁଇଥର କଣ୍ଡା ଯାଇଥିବା

ଦିପୁରିଆ ମଣିଷ - *ଗ:* (ବି.) : ମୋଟା ମଣିଷ, ସ୍ୱାସ୍ଥ୍ୟବାନ ମୋଟାସୋଟା ମଣିଷ, ଗର୍ଭବତୀ ସ୍ତ୍ରୀ

ଦିବ୍‌ସା - *ମ:ଦେ:* (ବି.) : ଶ୍ରାଦ୍ଧ, ଦିବସ

ଦିବାଲ୍ - *ନୂ:* (ବି.) : କାନ୍ଥ

ଦିବାଲା - *ଗ:ଗଜ:* (ବିଂ.ବି.) : ଦେବାଳିଆ, ନଷ୍ଟ, କ୍ଷତି

ଦିବାଲିଆ - *କୋ:ଦେ:* (ବିଂ.) : ଦେବାଳିଆ, ସର୍ବସ୍ୱ ହରେଇଥିବା ଅବସ୍ଥା, ଋଣଗ୍ରସ୍ତ

ଦି ବାହି - *ନ:* (ବି.) : ଦୁଇହାତରେ ବହୁତ କାଚ

ଦିମାକ - *ନ:କୋ:କଳା:ସୁ:ଦେ:* (ବି.) : ଗର୍ବ, ଅହଂକାର, ଦମ୍ଭ, ମଗଜ, ଅଭିମାନ କରିବା, ବୁଦ୍ଧି, ଚୈତନ୍ୟ, ଶକ୍ତି, ମନ

ଦିମାଗ - *ସଂ:* (ବି.) : ମସ୍ତିଷ୍କ

ଦିମି - *କଳା:* (କ୍ରି.) : ଦେବି

ଦିରିବ - *ଦେ:କଳା:* (ବିଂ.) : ଦିବ୍ୟ, ସୁନ୍ଦର

ଦିରିଭିଚ୍ଛି - *କୋ:ଗଜ:* (ବିଂ.) : ହିନିମାନିଆ, କୁତ୍ସିତ, ଦୁର୍ଭିକ୍ଷ, କୃପଣ

ଦିର୍ ଭିକିଆ - *ଦୌ:* (ବି.) : ଭୋକିଲା

ଦିଲ୍ - *ସଂ:* (ବି.) : ଛାତି, ହୃଦୟ, ସ୍ମରଣ ଶକ୍ତି

ଦିଲ୍ ଖୁସ୍ - *ଅନେ:* (ବି.) : ଆନନ୍ଦ ପ୍ରଫୁଲ୍ଲ

ଦିଲ୍‌ଦାର୍ - *ଦେ:* (ବିଂ.) ଉଚ୍ଚମନା, ମହାନୁଭାବ, ଉଦାର

ଦିଶା ଫେରିବା - *ଅ:* (କ୍ରି.) : ଝାଡ଼ା ଫେରିବା

ଦିଶାରି, ଦିଶାରୀ- *କଳା:ନବ:ମା:* (ବି.) : ଆଦିବାସୀଙ୍କ (କନ୍ଧ) ପୂଜାରୀ, ଏହାକୁ କାଳିସୀ ଲାଗେ

ଦିଶୁ - *ଗଦ୍ୟ:* (ବିଂ.) : ସାମାନ୍ୟ ପରିମାଣ, ଅଳ୍ପ ସଂଖ୍ୟକ

ଦିସରି - *ଗ:* (ବି.) : ଦୁଇଖିଅ

ଦିସି - *ଦେ:* (ବି.) : ଦିନ, ଦିବସ

ଦିସୁରା - *ନବ:* (ବି.) : ଦୁଇଗୋଟି

ଦିସ୍ତା - *ଅନେ:* (ବି.) : କାଗଜର ଗଣତି ପରିମାଣ, ୨୪ଟା କାଗଜର ସମଷ୍ଟି, ୨୪ ଫର୍ଦ୍ଦ କାଗଜ

**ଦିହକ** - *ନ:ଦେ:ଖୋ:କନ୍ଧ:* (ବି.) : ସାରାଜୀବନ, ଜୀବିତ କାଳ, ଜୀବନକାଳ ମଧ୍ୟରେ, ତମାମ, ଅମଳ

**ଦିହଘଷା** - *ଅନେ:* (ବି.) : ଯେ ସବୁବେଳେ ସାଙ୍ଗରେ ଥାଏ

**ଦିହପା** - *ଅନେ:* (ବି.) : ଶରୀର, ସ୍ୱାସ୍ଥ୍ୟ, ଦେହପା

**ଦିହମାରାହେବା** - *ନ:* (କ୍ରି.) ମାସିକ ଋତୁସ୍ରାବ(ନାରୀର) ହେତୁ ଅସ୍ପୃଶ୍ୟ ହେବା

**ଦିହ ମିହ୍ନତ** - *ଅ:* (ବି.) : ଶାରୀରିକ ପରିଶ୍ରମ

**ଦିହମୁଣ୍ଡ** - *ଦେ:* (ବି.) : ସ୍ୱାସ୍ଥ୍ୟ

**ଦିହଲଗା** - *ନ:* (ବିଂ.) : ଏକାନ୍ତ ଆପଣାର (ଲୋକ)

**ଦିହସୁହା** - *ଅନେ:* (ବି.) : ସହ୍ୟ କରିବା

**ଦିହାତି** - *ଅନେ:* (ବି.) : ଦୁଇହାତି, ଗାଉଁଲୀ, ମଫସଲି

**ଦିହି** - *ସ:ଝା:ସୁବ:* (ବି.) : ଦେହ, ଶରୀର

**ଦିହୁଡ଼ିଆ** - *ଗ:* (ବିଂ.) : ମସାଲ ଧରିବା ଲୋକ

**ଦିହେ ବୁହିବାର** - *ସୁବ:* (କ୍ରି.) : ଗର୍ଭବତୀ ହେବା

**ଦି'କରି** - *କଳା:* (କ୍ରି.) : ଦେଇକରି

**ଦି'ପିଠି** - *ନ:* (ବି.) : ଯିବାଆସିବା ଉଭୟ ପଟକୁ, ଉଭୟପକ୍ଷ

**ଦି'ପୁରୁ** - *କୋ:* (ବି.) : ଦୁଇ ମହଲା, ଦୁଇ ପରସ୍ତ

**ଦି' ଫୁଣ୍ଡା** - *ଅ:* (ବିଂ.) : ଦୁଇଖଣ୍ଡ, ଦୁଇଟୋପା

**ଦି'ମୁଣ୍ଡିଆ** - *ନ:* (ବିଂ.) : ଦୁଇ ମୁଣ୍ଡଯୁକ୍ତ, ଦୁଇ ପ୍ରକାର କଥା କହୁଥିବା

**ଦି'ସୁକା** - *ନ:* (ବି.) : ଆଠଅଣା, ପଚାଶ ପଇସା

**ଦି'ଆଢ଼ର** - *କୋ:* (ସ.) : ଦୁଇ ପଟରେ

**ଦୀକ୍ଷା** - *ଅନେ:* (ବି.) : ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ କରିବା

**ଦୀଘୀ** - *ବା:ନ:ଛେ:* (ବି.) : ବଡ଼ପୋଖରୀ, ପୁଷ୍କରିଣୀ, ପୋଖରୀ

**ଦୀପ** - *ଦେ:କଳା:କଳା:* (ବି.) : ଆଲୋକ, କେତେକ ଅନୁସୂଚିତ ଜାତିର ଲୋକଙ୍କ କୌଳିକ ଉପନାମ, ଡିବିରି

**ଦୀପଟ** - *ଦେ:* (ବି.) : ତେଜ, ଗର୍ବ

**ଦୀପରୁଖା** - *ଜ:* (ବି.) : ଦୀପ ରଖିବା ପାଇଁ କାଠ ତିଆରି ସ୍ଥାନ

**ଦୀପିଦାଣ୍ଡି** - *ଖୋ:* (ବି.) : ପୋଖରୀ ମଝିରେ ଥିବା ଛୋଟ ଦେଉଳ

**ଦୀୟା** - *ମ:* (ବି.) : ଦୀପ

**ଦୁଅଳ** - *କେ:* (ବିଂ.) : ଗାଈ କ୍ଷୀର ଦେବା, ଦୁହାଁଳିଆ ଗାଈ

**ଦୁଆକ** - *ବା:* (ବି.) : ପାନବରଜରେ ଦୁଇଟି ବାଉଁଶର ମଝିକୁ ବାନ୍ଧିବା

**ଦୁଆକୁ** - *ବା:* (ବି.) : ଦୁଆରକୁ

**ଦୁଆତ** - *ଅନେ:* (ବି.) : କାଚରେ ଭର୍ତ୍ତି କାଳି, କାଳି ରଖିବା ପାତ୍ର, କାଳିଘଡ଼ି

**ଦୁଆଦୁଇ** - *ଦେ:ଗଞ୍ଜ:ଗ:* (ବି.) : ଧାନ କଟାକଟି

**ଦୁଆନି** - *ସୁ:* (ବି.) : ଦେଓ୍ଵାନି

**ଦୁଆ ପଡୁଆଁ** - *ସଂ:* (ବିଂ.) : ଜ୍ୟେଷ୍ଠସନ୍ତାନର ପରବର୍ତ୍ତୀ ଦ୍ୱିତୀୟ ସନ୍ତାନ

**ଦୁଆପାଳି** - *ଗ:* (ବି.) : ଶାଶୁଘର ଝିଅ ଦ୍ୱିତୀୟ ଥର ମା ଘରକୁ ଆସିବା

**ଦୁଆପିକା** - *ସଂ:* (ବି.) ଏକପ୍ରକାର କଉଡ଼ିଖେଳ

**ଦୁଆର ଆଣ୍ଠି, ଦୁଆର ହାଣ୍ଡି** - *ଟା:* (ବି.) : ଦ୍ୱାର ମୁହଁ

**ଦୁଆର ବନ୍ଧ** - *ଅନେ:* (ବି.) : ଏରୁଣ୍ଡି ବନ୍ଧ, ଚୌକାଠ

**ଦୁଆରମଣ୍ଡା** - *ଭ:* (ବି.) : ନଣନ୍ଦ ଦ୍ୱାରା ବଧୂର ଗୃହପ୍ରବେଶବେଳେ ଦୁଆର ଓଗାଳ

**ଦୁଆରି** - *ଗ:ସୁ:ନ:* (ବି.) : ଲୋକ ନୃତ୍ୟର ଏକ ଚରିତ୍ର, ବିଦୂଷକ, ଦୁଆରି ନାଚର ମୁଖ୍ୟ ନାୟକ

**ଦୁଆରିବା** - *କୋ:* (କ୍ରି.) : ବାରମ୍ବାର ଆଣିବା,

**ଦୁଆଳି** - *ଦେ:* (ବିଂ.) : ଧାନକଟାଳୀ

**ଦୁଆଁ** - *ଅନେ:* (ବି.) : ପଘା, ବଡ଼ ଦଉଡ଼ି

**ଦୁଆଁକଟା** - *ସ:* (ବି.) : ଚାରିଦଉଡ଼ି କଟା

**ଦୁଇ କେନିଆ** - *ସ:* (ବିଂ.) : ଦୁଇ ଶାଖା ବିଶିଷ୍ଟ

**ଦୁଇପରାଣୀ** - *ଅନେ:* (ବି.) : ସ୍ୱାମୀ ଓ ସ୍ତ୍ରୀ

**ଦୁଇ ପୁରିଆ** - *ଚୌ:* (ବିଂ.) : ମୋଟା

**ଦୁଇବା** - *ଟା:* (କ୍ରି.) : ଦୁହିଁବା

**ଦୁଇବାଟିଆ** - *ଅନେ:* (ବି.) : ଦୋ ଛକି

**ଦୁଇବେତିଆ (ଗାଈ)** - *ଚୌ:* (ବିଂ.) : ଦୁଇଥର ଜନ୍ମ କରିଥିବା (ଗାଈ)

**ଦୁଇମଙ୍ଗଳା** - *ଟା:* (ବି.) ବିବାହ ଦୁଇଦିନରେ ନବବଧୂକୁ ସମ୍ବର୍ଦ୍ଧନା କରିବା

**ଦୁଇ ମୁଣ୍ଡିଆ** - *ଚୌ:* (ବି.) : ଦି ପାଖିଆ, ଦି' ପକ୍ଷର

**ଦୁଇଯିବା** - *ଅନେ:* (କ୍ରି.) : ଝାଡ଼ା ଯିବା

**ଦୁଇ ସୁକା** - *ରା:* (ବି.) : ୫୦ ପଇସା

**ଦୁଇଁବା** - *ନ:* (କ୍ରି.) : କ୍ଷୀର ଦୋହନ କରିବା, ଧାନଶିଂସାରୁ ଧାନକୁ ଅମଳ କରିବା

**ଦୁଇଁମୁହାଁ** - *ଦେ:* (ବିଂ.) : ପେଞ୍ଚୁଆ

**ଦୁଇଚି** - *ଅନେ:* (କ୍ରି.) : ଦିଶୁଚି

**ଦୁଇସୀ** - *କେ:* (ବି.) : ଗଛବିଶେଷ

**ଦୁଏର** - *ନୁ:କଳା:* (ବି.) : ଗାତ, ବିମ୍ବର

**ଦୁଏଲ୍** - *ସ:ବ:କଳା:* (ବି.) : ଗାତ, ଦୋଳି

**ଦୁକ୍** - *ମ:* (ବି.) : ଦୁଃଖ

**ଦୁକ୍ ଦୁକି** - *ଦେ:ସୁବ:* (ବି.) : ହିଆ, ହୃଦୟ, ହୃତପିଣ୍ଡ

**ଦୁକ୍‌ନା** - *ମା:* (ବି.) : ବିଛଣା (ଦେଶିଆ)

**ଦୁକ୍‌ସୁକ୍** - *ମା:* (ବି.) : ଦୁଃଖ ସୁଖ

**ଦୁକା** - *ଗ:କୋ:ନବ:* (ବି.) : ଦୁଇ ସଂଖ୍ୟା, ତାସ୍ ଖେଳରେ ବ୍ୟବହୃତ, କଥା, ବ୍ୟଥା

ଦୁକାଲ - *ସୁବ:କଳା:ସ:* (ବିଂ.ବି.) : ଅଭାବ

ଦୁକୁଣ - *ଦେ:* (ବି.) : ଧୂଆଁପତ୍ର, ତମାଖୁ

ଦୁକୁତା - *ଗ:ବୌ:* (ବି.) : ଧୂଆଁପତ୍ର ଗୁଣ୍ଡ, ନାସ ନାମକ ମାଦକ ଗୁଣ୍ଡ, ତମାଖୁ

ଦୁକେସୁକେ - *କଳା:* (ଅ.) ଦୁଃଖରେ ସୁଖରେ

ଦୁଖମନା - *ସୁ:ଦେ:* (ବିଂ.ବି.) : ଦୁଃଖିତ, ମନଦୁଃଖ କରିବା

ଦୁଖ କରିଯିବା - *ବୌ:* (କ୍ରି.) : ମୂଳ ଲାଗିବା

ଦୁଖଧନ୍ଦା - *ଦେ:* (ବି.) : ଜୀବିକା

ଦୁଖ ପାଏବା - *ସ:* (କ୍ରି.) : ପ୍ରସବ ଜନିତ ଯନ୍ତ୍ରଣା

ଦୁଖସୁଖ - *ଦେ:* (ବି.) : ଭଲମନ୍ଦ କଥାବାର୍ତ୍ତା

ଦୁଖା - *କଳା:ସୁ:* (ବି.) : ବଥା, ବ୍ୟଥା, କଷ୍ଟ, ଦୁଃଖ

ଦୁଖାଇବା - *ଅନେ:* (କ୍ରି.) : ବଥା ହେବା

ଦୁଖାଣ - *ଗ:ରା:କୋ:* (ବି.) : ଦୋକାନ

ଦୁଖାନ୍ - *ସୁ:* (ବି.) : ବଥା

ଦୁଖାବା - *ସ:* (କ୍ରି.) : ପୀଡ଼ାହେବା

ଦୁଖାଲି - *ସୁ:* (ବିଂ.) : କଷ୍ଟଭୋଗୀ

ଦୁଗ୍‌ଧା - *ସୁବ:* (ବି.) : ଦ୍ୱିଧା ଘୁଂଚପୁଂଚ ଭାବ

ଦୁଗା - *ରା:ଗଞ:* (ବିଂ.) : ଦୁଇ

ଦୁଗି, ଦୁଗି - *ଗ:* (ବି.) : ସକଟା ଏବଂ କଉଡ଼ିଖେଳର ଦୁଇ ସଂଖ୍ୟକ ଦାନ

ଦୁଗୁଣ - *କେ:* (ବିଂ.) : ଖରାପ ଗୁଣ, ଦୁର୍ଗୁଣ

ଦୁଗୁଣା - *ଜ:* (ବିଂ.) : ଦୁଇଗୁଣ

ଦୁଗୁଣେଇବା - *ସୁ:* (କ୍ରି.) : ଦୁଇଗୁଣ କରିବା

ଦୁଗୁଣେଇ ହେବା - *ଗ:* (କ୍ରି.) : ଭର୍ତ୍ସନା କରିବା, ଅଯଥା ଗାଳିଦେବା, ବର୍ଣ୍ଣନାତ୍ମକ ଭାବେ ଭର୍ତ୍ସନା

ଦୁଚାଉଳ - *ଗ:* (ବି.) : ଦୁବଚାଉଳ

ଦୁଚାରନି - *ସୁବ:ବୌ:* (ବିଂ.) : ଦୋଚାରୁଣୀ, ଗାଳିବାଚକ ଶବ୍ଦ

ଦୁଚାରୁଣୀ - *କୋ:ବୌ:* (ବିଂ.) : ଦୋଚାରୁଣୀ, ନଷ୍ଟ ଚରିତ୍ରା ନାରୀ

ଦୁଜନ - *ଜ:* (ବିଂ.) : ଦୁର୍ଜନ

ଦୁଜା - *ଜ:କେ:* (ବିଂ.) : ଦୁଇଗୁଣ, ଦ୍ୱିତୀୟ

ଦୁଜୁଡି - *କେ:* (ଅ.) : ଜିଦି

ଦୁଟିଆ - *ବା:* (ବି.) : ଦୁଇଟି

ଦୁଠା - *ବୌ:* (ବି.) : ବୈଠକ ସ୍ଥାନ

ଦୁଡ୍‌କା - *ବୌ:* (ବି.) : ଜହ୍ନି ଜାତୀୟ ଫଳ

ଦୁଡ଼ି - *ଗ:ଗଞ:* (ବି.) : ପାଇଖାନା, କାଞ୍ଜିଆ ହୁଦା

ଦୁଡ଼ିଘର - *କୋ:* (ବି.) : ପାଇଖାନା

ଦୁତିଅ - *ଜ:* (ବି.) ଦ୍ୱିତୀୟବାର ବିଭାହୋଇଥିବା ସ୍ତ୍ରୀ

ଦୁତିଆ - *ଅନେ:* (ବି.) : ସନ୍ତାନର ମଙ୍ଗଳ ପାଇଁ ମା' କରୁଥିବା ଏକ ଓଷା, ମୂଳାଷ୍ଟମୀ

ଦୁଦ୍ - *ନୂ:କଳା:* (ବି.) : ସ୍ତନ, ଦୁଧ

ଦୁଦ୍ କଁକରା - *ନୂ:* (ବି.) : ଧଳା ରଙ୍ଗର କଙ୍କଡ଼ା

**ଦୁଦ୍‌ରା ପିଠା** - *ଦେ଼ୌ:* (ବି.) : ମୁଗ ବଟା ତେଲରେ ଛଣା ପିଠାବିଶେଷ

**ଦୁଦିଆ** - *କଝ:* (ବି.) : କୁଦ, ଉଚ୍ଚସ୍ଥାନ

**ଦୁଦୁପାଞ୍ଚ** - *ଗ:* (କ୍ରି.) : ସଂଦେହ ଭିତରେ ରହି ନିଷ୍ପତ୍ତି ନେଇ ନପାରିବା

**ଦୁଧ** - *ଅନେ:* (ବି.) : ସ୍ତନ, ଦୁଗ୍ଧ, କ୍ଷୀର

**ଦୁଧ୍ ପାଏନ୍** - *କନ୍ଧ:* (ବି.) : ଆଦିବାସୀ ଓ ଅନ୍ୟ କେତେକ ସଂପ୍ରଦାୟର ମୃତାହ ଅଶୌଚ ତିନିଦିନରେ ଶୁଦ୍ଧି ହେବାର ପ୍ରକ୍ରିୟା

**ଦୁଧ ଗଇଁଠା-** *ସଂ:* (ବି.) : କ୍ଷୀରରେ ପ୍ରସ୍ତୁତ ଏକ ପ୍ରକାର ପିଠା

**ଦୁଧଦାନ୍ତ** - *ଅନେ:* (ବି.) : ଛୋଟ ପିଲାଙ୍କର ନୂଆକରି ଉଠିଥିବା ଦାନ୍ତ

**ଦୁଧିଆଳୀ** - *ଅନେ:* (ବିଂ.) : ବହୁତ କ୍ଷୀର ଦେଉଥିବା (ଗାଈ)

**ଦୁଧିଖଜରା** - *ଖୋ:* (ବି.) : ଏକପ୍ରକାର ଧାନର ନାମ

**ଦୁଧ୍ ଗେଣ୍ଡୁଳି ପିଠା** - *ବି:* (ବି.) : ଚାଉଳ ଚୂନାରେ ନିର୍ମିତ ଗୋଲାକାର ପିଠାକୁ କ୍ଷୀରରେ ଫୁଟାଇ ପ୍ରସ୍ତୁତ କରାଯାଏ

**ଦୁନା** - *ମ:* (ବି.) : ପତ୍ର ତିଆରି ଠୋଲା, ଦନା

**ଦୁନି** - *ଦେ:* (ବି.) : ଦୁଇଗୁଣ

**ଦୁନିଆ** - *ଅନେ:* (ବି.ବିଂ) : ବିଶ୍ୱ, ପୃଥିବୀ, ସଂସାର, ଦୁଇପ୍ରସ୍ଥ

**ଦୁନ୍ଦରୀ** - *ରା:* (ବି.) : କେନ୍ଦରା ବାଦ୍ୟ

**ଦୁନ୍ୟ** - *ଗଡ:* (କ୍ରି.) : ଗଣ୍ଡଗୋଳ

**ଦୁବ** - *ଅନେ:* (ବି.) : ପୂଜାରେ ବ୍ୟବହୃତ, ଘାସ, ଦୁବ

**ଦୁବ୍‌ଲାପତ୍‌ଲା** - *ବି:* (ବିଂ.) : ଦୁର୍ବଳ

**ଦୁବୁଳି** - *ରା:* (ବି.) : ପିଲାଙ୍କ ରୋଗ, ଯାହା ତାଙ୍କୁ ପତଳା କରିଦିଏ

**ଦୁଭା** - *ଦେ଼ୌ:* (ବି.) : ଗାତ

**ଦୁମକା** - *ସୁ:* (ବି.) : ଛୋଟ ବାଲିଗଦା

**ଦୁମକିବା** - *ଗ:* (କ୍ରି.) : ଡେଇଁବା

**ଦୁମା** - *ଦେ:କେ:କେନ୍ଦୁ:* (ବି.ବିଂ.) : ଉଚ୍ଚା, ହୁଙ୍କା, ଢିପ, ବିଧା, ମୋଟା

**ଦୁମାଙ୍ଗ** - *ଯା:* (ବି.) : ମୃଦଙ୍ଗ

**ଦୁମୁକିବା** - *ଗଡ:* (କ୍ରି.) ଚମକିବା, ଲମ୍ଫପ୍ରଦାନ କରିବା

**ଦୁମୁଡ଼ି** - *ଭ:* (ବି.) : ପେଟ

**ଦୁମୁର** - *ଯା:* (ବି.) : ମହୁ

**ଦୁମ୍ପା** - *ରା:* (ବି.) : କାଠଆଳୁ, ଏକପ୍ରକାର ମୂଳ ଯାହା ପରିବା ଭାବେ ବ୍ୟବହୃତ ହୁଏ

**ଦୁମ୍ବାଳି** - *ଗଡ:ଗ:* (କ୍ରି.ବି.) : ଗହଳି କରିବା

**ଦୁର** - *ଗଡ:କୋ:* (ବି.) : ଦୋରୁଅ, ରସ

**ଦୁରଦାର** - *ସୁ:* (ବିଂ.) : ନିସ୍ତୁକ

**ଦୁରନ୍ଧା** - *କୋ:* (ବିଂ.) : ଦୋରନ୍ଧା

**ଦୁରପୁଡ଼ା** - *କୋ:* (ବିଂ.) : ଅଧାଭଜା

**ଦୁରା** - *କନ୍ଧ:ବ:ଦେ଼ୌ:* (ବିଂ.) : ଅଳ୍ପ ପରିମାଣ, ସାମାନ୍ୟ, ଟିକିଏ, ମୁଠାଏ, ଅଳପ

**ଦୁରାଚାର** - *ଅନେ:* (ବି.) : ଖରାପ ବ୍ୟବହାର

**ଦୁରାଂ** - *ମ:* (ବି.) : ଗୀତ

**ଦୁରିଆ** - *ବ:ଦେ:* (ବିଂ.ବି.) : ଥଟ୍ଟାମଜା କରିବାର ହକ୍ ବା ସଂପର୍କ, ଦୂରବର୍ତ୍ତୀ

**ଦୁରୁଭିକ୍ଷ୍ୟ** - *ଗ:* (ବି.) : ଦୁର୍ଭିକ୍ଷ

**ଦୁର୍ଗ** - *ଅନେ:* (ବି.) : ଗଡ଼, କିଲ୍ଲା, ଦୁର୍ଗମ

**ଦୁର୍ଗତ** - *ଅନେ:* (ବିଂ.) : ବିପଦଗ୍ରସ୍ତ

**ଦୁର୍ଗନ୍ଧ** - *ଦେ:* (ବି.) : ଗନ୍ଧିଆ, ଖରାପ ଗନ୍ଧ

**ଦୁର୍ଗମ** - *ଅନେ:* (ବିଂ.) : ଗମନାଗମନ ସହଜ ନୁହେଁ

**ଦୁର୍ଦୁରା** - *କୋ:* (ବି.) : ଦୁଦୁରା, ଧୁତୁରା

**ଦୁର୍ଦ୍ଦଣ୍ଡ** - *ନ:* (ବିଂ.) : ବାଲୁଙ୍ଗା, ଅସଭ୍ୟ, ଅଶାସନୀୟ

**ଦୁର୍ଦ୍ଦାନ୍ତ, ଦୁର୍ଦ୍ଦାନ୍ତିଆ** - *ଅନେ:* (ବିଂ.) : ପ୍ରବଳ ଦୁଷ୍ଟ

**ଦୁର୍ନାମ** - *ଅନେ:* (ବି.) : କଳଙ୍କ, ଅପଯଶ, ବଦ୍‌ନାମ

**ଦୁର୍ନୀତି** - *ଅନେ:* (ବି.) : ଅନ୍ୟାୟ, ମନ୍ଦ ଆଚରଣ

**ଦୁର୍ବଳ** - *ଅନେ:* (ବିଂ.) : ବଳହୀନ, ଶକ୍ତିହୀନ

**ଦୁର୍ବୁଦ୍ଧିଆ** - *ଅନେ:* (ବିଂ.) : ଖଳ ବୁଦ୍ଧି ସଂପନ୍ନ

**ଦୁର୍ଭାଗ୍ୟ** - *ଅନେ:* (ବି.) ମନ୍ଦଭାଗ୍ୟ, ଫଟାକପାଳ

**ଦୁର୍ଭାବନା** - *ଅନେ:* (ବି.) : ଦୁଶ୍ଚିନ୍ତା

**ଦୁର୍ଭିକ୍ଷ** - *ଅନେ:* (ବି.) : ମରୁଡ଼ି, ନଅଙ୍କ, ଖାଇବାକୁ ନ ପାଇବା

**ଦୁର୍ଭେଦ୍ୟ** - *ସ:* (ବି.) : ଘୋର, ଭେଦ କରି ନ ହେଉଥିବା

**ଦୁର୍ମୂଲ୍ୟ** - *ଦେ:* (ବି.) : ଚଢାଦାମ୍, ଅଧିକ ମୂଲ୍ୟ

**ଦୁର୍ଯୋଗ** - *ଦେ:* (ବି.) : ଦୁଃଖର ସମୟ

**ଦୁର୍ଲିନଚା** - *କନ୍ଧ:* (କ୍ରି.) : ଦୋଳିରେ ନଚେଇବା ପ୍ରକ୍ରିୟା । ଆଦିବାସୀ କନ୍ଧ ସଂପ୍ରଦାୟର ଏହା ଏକ ବିବାହ କାଳୀନ ସାମାଜିକ ବିଧି । ଏଥିରେ ବିବାହ ଦିନ ସନ୍ଧ୍ୟା କାଳରେ ପୂର୍ବରୁ ଡାଳ ନେଇଥିବା ବ୍ୟକ୍ତି ବିବାହ ନିମନ୍ତେ ଉଦ୍ଦିଷ୍ଟ ଛାମୁଣ୍ଡିଆ ତଳେ ବରକୁ ସ୍ନାନ କରାନ୍ତି । ଏଥିପାଇଁ ବରକୁ ଥଟ୍ଟା ଓ ପରିହାସ କରୁଥିବା ମହିଳାମାନେ (ଭାଉଜ, ଢେଙ୍କେମା, ଆଈ ପ୍ରଭୃତି) ପୂର୍ବରୁ କେବଳ ଗରିଆରେ (ଗରିଆ ମାଟି ବା ଧାତୁ ନିର୍ମିତ ହୋଇପାରେ) ସାତ ବା ନଅ ଗରିଆ ପାଣି ଆଣି ରଖିଥାନ୍ତି । ସ୍ନାନ ପରେ ବର ଯେଉଁ ବସ୍ତ୍ର ପିନ୍ଧି ବିବାହ କରେ ସେହି ବସ୍ତ୍ର ସେତେବେଳେ ପରିଧାନ କରିଥାଏ ଓ ପୂର୍ବରୁ ପ୍ରସ୍ତୁତ ହୋଇ ରଖାଯାଇଥିବା ଏକ ବାଉଁଶ ଦୋଳାରେ ଉପବେସନ କରେ । ଏହି ଦୋଳାକୁ ପୂର୍ବୋକ୍ତ ମହିଳାଗଣ କାନ୍ଧେଇ ବରକୁ ସେହି ଛାମୁଣ୍ଡିଆ ଚାରି

କଡରେ ସାତ ଥର ବୁଲାଇ ଆଣନ୍ତି । ଏହି ସମୟରେ ସେମାନେ ବରକୁ ଆନନ୍ଦିତ କଲା ଭଳି ନାନା ଅଶ୍ଳୀଳ ଗୀତ ଗାନ କରିଥାନ୍ତି । ଏହି ବିଧାନକୁ ଦୁର୍ଲି ନଚା କୁହାଯାଏ ।

**ଦୁର୍ଦୁର (ଜଳିବା)** - *ଦେ:* (କ୍ରି.) : ପ୍ରବଳ (ଜଳିବା)

**ଦୁର୍ଦୁରା** - *କେ:* (ବି.) : ଏକପ୍ରକାର ଫୁଲ

**ଦୁର୍ବଲ୍** - *କଳା:* (ବିଂ.) : ଦୁର୍ବଳ

**ଦୁର୍ବୁଧିଆ** - *ସ:* (ବିଂ.) : ଖଳ ବୁଦ୍ଧିଆ

**ଦୁର୍ଭିକିଆ** - *ଗୌ:* (ବିଂ.) : ଭୋକିଲା, ଦୁର୍ଭିକ୍ଷଗ୍ରସ୍ତ

**ଦୁର୍ଭିଛିଆ** - *ଗ:* (ବିଂ.) ହୀନମତି, କାଙ୍ଗାଳର ଭାବ

**ଦୁର୍ମିଦେବା** - *କଳା:* (କ୍ରି.) : ଭଲକରି ବର୍ଷିବା, ଅଧିକ ମାଡ଼ଦେବା

**ଦୁର୍ମୁସ୍** - *ବ:* (ବି.) : ଭୂଇଁ ବାଡ଼େଇ ସମତଳ କରିବା ଏକ ଯନ୍ତ୍ର

**ଦୁଲ୍** - *ବର:କନ୍ଧ:ଦେ:* (ବି.) : ଦୁଲ୍ଫୁଲ୍ର ଦୋଳାୟମାନ ଅଂଶ, ଦୋଳ, କାନର ଅଳଙ୍କାର

**ଦୁଲ୍କା** - *ଗୌ:ଝା:* (ବି.) : ମାଟି କାନ୍ଥରେ ଥିବା ଥାକ, ଦୁଲୁକେଇ ଦେବାର କ୍ଷମତା

**ଦୁଲ୍କି** - *ନୂ:* (ବି.) : କାନର ଅଳଙ୍କାର, ଦୁଲ୍

**ଦୁଲ୍କିବା** - *ଅନେ:* (କ୍ରି.) : କଂପିବା, ଧଡପଡ ହେବା

**ଦୁଲ୍ଦୁଲ୍** - *ଯା:ଦେ:* (କ୍ରି.ଅ.) : ରାଗରେ ଚାଲିବା

**ଦୁଲ୍ଦୁଲାଉଛେ** - *ଗୌ:* (କ୍ରି.) : ଢୁଲ ବାଦ୍ୟର ପ୍ରବଳ ଶବ୍ଦରେ କମ୍ପିବା

**ଦୁଲ୍ପୁନି** - *କନ୍ଧ:* (ବି.) : ଦୋଳ ପୂର୍ଣ୍ଣିମା

**ଦୁଲଣୀ** - *ଗଦ୍ୟ:ପଦ୍ୟ:* (ବି.) : ଗେହ୍ଲାରେ ଝିଅକୁ ଏପରି କହିନ୍ତି

**ଦୁଲମ** - *ଗଢ଼:କୋ:* (ବି.) : ଘରଛାତକୁ ସମ୍ଭାଳିଥିବା କାଠବିଶେଷ, ଦୁଇ କାନ୍ଥକୁ ସଂଯୋଗ କରି ଛାତ ବା ଆଟୁର ଭାର ବହନ କରୁଥିବା ଲୁହା ବା କାଠ

**ଦୁଲା** - *ଅନେ:* (ବି.) : ଘର ତିଆରିରେ ବ୍ୟବହୃତ ଛାତ ତଳର କଡ଼ିକାଠ

**ଦୁଲାଳିଆ** - *ଗ:* (ବିଂ.) : ଗେହ୍ଲା

**ଦୁଲି** - *ସୁବ:ନବ:ସୁ:କଳା:* (ବି.) : ଦୋଳି, ମୂଷାଗାତ, ସାପଗାତ

**ଦୁଲିବା** - *ସୁ:* (କ୍ରି.) : ଦୋଳି ଝୁଲିବା

**ଦୁଲୁକୁଛି** - *ସଂ:* (କ୍ରି.) : ସ୍ଥାନଟି ଜନଗହଳିରେ ପଡ଼ିବା ଉଠିବା, ଥରିବା

**ଦୁଲୁଭା** - *କେନ୍ଦୁ:* (ବି.) : ତୁଳସୀ ଫୁଲ ପରି ଫୁଲ, ପତ୍ର ସବୁସବୁ ଓ ସୁବାସିତ

**ଦୁଲା** - *ଢ଼:କୋ:* (ବି.) : ନିଆଁ ମସାଲ, ଝୁଲା, ମାଛ ଧରିବା କପଡ଼ା

**ଦୁଶାବାର** - *ସୁବ:* (କ୍ରି.) : ପୀଡ଼ାହେବା

**ଦୁଶିବା** - *ଅନେ:* (କ୍ରି.) : ଦେଖାଯିବା

**ଦୁଷୀ** - *ନୂ:* (ବିଂ) : ଅପରାଧୀ, ଦୋଷୀ

**ଦୁଷ୍ଟବ୍ରଣ** - *ସଂ:* (ବିଂ.) : ଖଳ ପ୍ରକୃତିର ଲୋକ, ବିଷାକ୍ତବ୍ରଣ

**ଦୁସ୍‌ରା** - *ଅନେ:* (ବିଂ.) : ଅନ୍ୟ, ଅଲଗା, ଭିନ୍ନ, ଦ୍ୱିତୀୟ ବସ୍ତ୍ର, ଦୋସଡ଼ା

**ଦୁସିବା** - *ସୁ:* (କ୍ରି.) : ଦୋଷଦେବା

**ଦୁସୁନ୍ଧି** - *କେ:* (ବି.) : ଦୋସନ୍ଧି, ସଂଶୟ

**ଦୁସ୍ତର** - *ଅନେ:* (ବି.ବିଂ.) : ଭୟଙ୍କର, ଦୁସ୍ତର ବିପଦ, ଅତି କଷ୍ଟକର

**ଦୁହାଇ** - *ଜ:* (ବି.) : ଦ୍ୱାହି

**ଦୁହାଡ଼ିଦେବା** - *ନ:* (କ୍ରି.) : ଗାଳିଦେବା

**ଦୁହାରବାର୍** - *ସୁବ:* (କ୍ରି.) : ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ବୋହିବା

**ଦୁହାରି ହେବା** - *ସ:ବୌ:ଦେ:ସୁବ:* (କ୍ରି.) : ସବୁବେଳେ ଗୋଟିଏ ଘରକୁ ଯିବା, ବାରମ୍ବାର ବାହୁନିବା

**ଦୁହାଲି ଗେଏ** - *ନୂ:* (ବି.) : କ୍ଷୀର ଦେଉଥିବା ଗାଈ

**ଦୁହାଁ** - *ସୁ:ଦେ:ନ:* (ବିଂ.ବି.) : ଦୁହିଁବା, ଦୁହାଁଳ, କ୍ଷୀର ଦୁହିଁବା

**ଦୁହାଁଳିଆ** - *ନ:* (ବିଂ.) : କ୍ଷୀର ଦେଉଥିବା

**ଦୁହିଟା** - *ନୂ:* (ବିଂ.) : ଦୁଇଜଣ

**ଦୁହିଁବା** - *ଅନେ:* (କ୍ରି.) : ଦୋହନକରିବା, ଗାଈ ପହ୍ନାରୁ ଦୁଗ୍ଧ ନିଷ୍କାସନ କରିବା, ଚିପୁଡ଼ି ବାହାର କରିବା

**ଦୁହୁଡ** - *ଗ:* (ବି) : ଦୋହଡ, ଦୁଇ ଓଡଚାଷ

**ଦୁହୁଡ଼ି** - *ଖୋ:* (ବି.) : ଦିହୁଡ଼ି, ମଶାଲ

**ଦୁହୁରା** - *ଗ:କଳା:ସୁବ:* (ବି.କ୍ରି.ବିଂ.) ଦୋହରା, ଜମିର ଦ୍ୱିତୀୟ ଓଡଚାଷ, ଦୁଇଥର

**ଦୁହୁରା ତିହିରା** - *ସ:* (ଅ.) : ଥରକୁ ଥର, ବାରମ୍ବାର

**ଦୁହୁରି** - *କଳା:ବ:* (ବି.ବିଂ.) : ଆଖୁ ଓ ପରିବା ବିହନାଦି ରୋଇବା ପାଇଁ ପ୍ରସ୍ତୁତ ଛୋଟ ଛୋଟ ଶିଆର ବା ଲଂଗଳ ଗାର, ଦ୍ୱିତୀୟଥର ପାଇଁ

**ଦୁହୁଲ** - *ବୌ:* (ବି.) : ତଳ ଖୋଲା ବାରଣ୍ଡା

**ଦୁହୁଲିବା** - *ସ:* (କ୍ରି.) : ଢିଲାହେବା, ଲମ୍ବିଯିବା

**ଦୁହୁଳ** - *ଅ:* (ବି.) : ଘରର କବାଟ ଝରକା ନଥିବା ଖାଲି ସ୍ଥାନ, ବାରଣ୍ଡା

**ଦୁଁଚି, ଦୁଁଚ** - *ନ:* (ବି.) : ଗାଈ ଦୁହିଁବା

**ଦୂ'ଚି** - *ନ:* (କ୍ରି.) : ଦେଖାଯାଉଛି

**ଦୂରଦୂର** - *ସୁବ:* (କ୍ରି.ବିଂ.) : ନିଆଁ ଜଳିବାର ପ୍ରବଳତା

**ଦୂରବୀନ** - *ଅନେ:* (ବି.) : ଦୂରବୀକ୍ଷଣ ଯନ୍ତ୍ର

**ଦୂର ସଞ୍ଚାର** - *ସଂ:* (ବି.) : ଦୂରକୁ ସମ୍ବାଦ ସରବରାହ

**ଦୂରିଆ** - *ବୌ:ସୁ:ସୁବ:* (ବି.ବିଂ.) : ଦୂର, ଦୂରସ୍ଥାନ, ବେଶୀଦୂର

**ଦୂରୁନ୍** - *କଳା:* (ଅ.) : ଦୂରରୁ

**ଦୂଲକିବା** - *ସୁ:* (କ୍ରି.) : କଂପିବା

**ଦୃଢ** - *ଅନେ:* (ବିଂ.) : ଜୋର ଦେଇ କହିବା, ଟାଣ, ଶକ୍ତ, କଠିନ

**ଦେଇକା** - *ଗା:* (କ୍ରି.) : ଦେଇଦିଅ

**ଦେଇଥୁଇ** - *ସ:* (କ୍ରି.) : ଦେବା ଏବଂ ରଖିବା

**ଦେଇପିଣ୍ଡ** - *ଅନେ:* (ବି.) : ଇଷାଣ ଘର, ହାଣ୍ଡିଶାଳରେ ପିତୃ ପୁରୁଷଙ୍କୁ ପିଣ୍ଡ

**ଦେଇସନ୍** - *ଚୌ:* (କ୍ରି.) : ଦିଅନ୍ତି

**ଦେଈ** - *ଅନେ:* (ବି.) : ରାଜକନ୍ୟା, ଅପା, ନାନୀ, ସ୍ତ୍ରୀଙ୍କ ସମ୍ମାନ ସୂଚକ ପଦ, ଭଉଣୀ, ପିଉସୀ, ଅପା

**ଦେଉ** - *ଗ:* (ବି.) : ଦେଓ, ରାଜାଙ୍କ ଅନ୍ତର ପୁତ୍ର

**ଦେଉତା** - *କେନ୍ଦୁ:* (ବି.) : ଦେବତା

**ଦେଉତା ମାଡ୍‌ବା** - *ଦେ:* (କ୍ରି.) : କାଳିସୀ ଲାଗିବା

**ଦେଉର** - *ଦୀ:ନବ:* (ବି.) : ଦିଅର

**ଦେଉରାନୀ** - *ନବ:* (ବି.) : ଦିଅରର ସ୍ତ୍ରୀ

**ଦେଉଳ** - *ଅନେ:* (ବି.) : ମନ୍ଦିର, ଦେବାଳୟ

**ଦେଉଳିଆ** - *ଦେ:କ:ଗ:* (ବିଂ.) : ସେବକ, ପଣ୍ଡା, ନିଃସ୍ୱ, ସର୍ବସ୍ୱାନ୍ତ, ଋଣ ଖିଲାପକାରୀ, ଦେବାଳିଆ

**ଦେଉଳିଆମୁଆଁ** - *ନ:* (ବି.) : ପର୍ବତ ଆକାର ଶୃଙ୍ଗଥିବା ଭଳି ଲିଆ ଓ ଗୁଡ଼ର ମିଶ୍ରଣରେ ପ୍ରସ୍ତୁତ ମୁଆଁ

**ଦେଉଁନ** - *ସୁ:* (କ୍ରି.) : ଦିଅନ୍ତୁ

**ଦେଓରାନି** - *କୋ:* (ବି.) : ସାନ ଯାଆ, ଦିଅରଙ୍କ ସ୍ତ୍ରୀ

**ଦେଓ୍ୱାନ** - *କଳା:* (ବି.) : ମହାରାଜା ବା ରାଜାଙ୍କ ପରେ ରାଜ୍ୟର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଅଧିକାରୀ

**ଦେକ୍‌ତେ ରଂ** - *ମା:* (କ୍ରି.) : ଦେଖୁଥା

**ଦେଖିମାଁ** - *ସ:ଚୌ:* (କ୍ରି.) : ଦେଖିବା

**ଦେଖିରେଖି** - *ସ:* (କ୍ରି.ବିଂ.) : ନଜର ରଖିବା, ଦେଖାଶୁଣା କରିବା

**ଦେଖିଲାଧାପ୍** - *କଳା:* (ଅ.) : ଦେଖିବା କ୍ଷଣି, ଦେଖିବା ମାତ୍ରେ

**ଦେଖନ୍ ହାରି** - *ଝା:ନୂ:* (ବି.) : ଦେଖିବା ପାଇଁ ଆସିଥିବା ବ୍ୟକ୍ତି, ଦର୍ଶକ, ଦେଖଣାହାରୀ

**ଦେଖନ ସୁନ୍ଦର** - *ନୂ:* (ବିଂ.) ଉପର ଚାକଚକ୍ୟ

**ଦେଖନି ମାଗ୍‌ନି** - *ସ:* (ବି.) : ବିବାହ ପୂର୍ବରୁ ପରସ୍ପର ଦେଖାଚାହାଁ

**ଦେଖଭାଲ** - *ସୁ:* (ବି.) : ଦେଖାଶୁଣା, ନଜର ରଖିବା

**ଦେଖାଚାହାଁ** - *ଅନେ:* (ବି.) : ତତ୍ତ୍ୱ ନେବା

**ଦେଖାନ** - *ସୁ:* (ବିଂ.) : ଲେଉଟିଆଣି, ଦେଖାଣିଆ

**ଦେଖାନ୍ତିରେ** - *ଗଦ୍ୟ:* (ବି.) : ଜନ୍ମଠାରୁ ଆଜି ପର୍ଯ୍ୟନ୍ତ ଦେଖିବାରେ

**ଦେଖାଳି** - *ଅନେ:* (ବିଂ.ବି.) : ଦେଖିବାଲୋକ, ଦେଖୁଥିବା ଲୋକ, ଦର୍ଶକ

**ଦେଖାଶିଖା** - *ଅନେ:* (ବି.) ଅନ୍ୟର ଅନୁକରଣ କରିବା

**ଦେଖୁତେ** - *ଗ୍ରା.ମ.* (କ୍ରି.) : ଦେଖୁବାକୁ

**ଦେଖୁନେବା** - *ଅନେ.* (କ୍ରି.) : ଏକପ୍ରକାର ଧମକ, ଧମକ ଦେବା

**ଦେଗନ୍‌ସନ୍** - *ସ.ସୁ.ସୁବ.* (ବି.) : ଦେବତାଙ୍କର ଆବାହନ କରିବା, ତାନ୍ତ୍ରିକ ପଦ୍ଧତିର ଦେବତା ପୂଜାର ଅନୁଷ୍ଠାନ, ଗାଁର ଝାଁକର ଘରକୁ ପୂଜା ଜିନିଷ ଧରି ଯିବା

**ଦେଠା** - *ଅନେ.* (ବି.) : ପିତାଙ୍କର ବଡ଼ଭାଇ, ବଡ଼ବାପା

**ଦେଠାଶ୍ବଶୁର** - *ଅନେ.* (ବି.) : ସ୍ତ୍ରୀ ବା ସ୍ୱାମୀର ବଡ଼ବାପା

**ଦେଠେଇ** - *ଅନେ.* (ବି.) ବଡ଼ମା, ବଡ଼ବୋଉ, ଜେଠେଇ

**ଦେଠେଇଶାଶୁ** - *ଅନେ.* (ବି.) : ସ୍ତ୍ରୀ ବା ସ୍ୱାମୀର ବଡ଼ମାଆ

**ଦେଠେନ** - *ସୁ.* (ବି.) : ବଡ଼ଯା'

**ଦେଢି କରଜ** - *ସଂ.* (ବିଂ.) : ଦେଢ଼ା ସୁଧରେ କରଜ

**ଦେଢୁତାଶୂର** - *ସଂ.* (ବି.) : ଶଶୂରଙ୍କ ବଡ଼ ଭାଇ

**ଦେଢ଼ଶାଶୁ** - *ଅନେ.* (ବି.) : ସ୍ତ୍ରୀର ବଡ଼ ଭଉଣୀ

**ଦେଢ଼ଶ୍ୱଶୁର** - *ଅନେ.* (ବି.) : ସ୍ୱାମୀର ବଡ଼ଭାଇ

**ଦେଢ଼ୁ ଶଳା** - *ନୁ.* (ବି.) : ସ୍ତ୍ରୀର ବଡ଼ଭାଇ

**ଦେଢ଼ୁ ଶଶୁର** - *ନୁ.ସ.* (ବି.) : ସ୍ୱାମୀଙ୍କ ବଡ଼ ଭାଇ, ଦେଢଶୁର

**ଦେଢ଼ୁ ଶାଶ୍** - *ସ.ନୁ.* (ବି.) : ସ୍ୱାମୀଙ୍କ ବଡ଼ ଭଉଣୀ, ସ୍ତ୍ରୀଙ୍କ ବଡ଼ ଭଉଣୀ

**ଦେଢଶଳା** - *ସୁ.* (ବି.) : ପତ୍ନୀର ବଡ଼ଭାଇ

**ଦେଢି** - *ଖୋ.ଦେ.ଗ.* (ବିଂ.ସ.ବି.) : ଧାନକୁ କରଜରେ ଦେବା, ଦେଢଗୁଣ, ମାଠ, ବର୍ଷକେ ମୂଳଧନର ଅର୍ଦ୍ଧେକ ସୁଧ ମିଳୁଥିବା ଋଣ

**ଦେଢିଆ** - *ଗ.ଖୋ.* (ବିଂ.) : ଅସମାନ, ବଙ୍କାଟଙ୍କା

**ଦେଢି କରଜ** - *ସଂ.* (ବି.) : ଉଚ୍ଚ ସୁଧରେ ଧାର

**ଦେଢେଇ** - *କେ.* (ବିଂ.ବି.) : ଅଳ୍ପ ଶୁଖୁବା, ଅଧା ଶୁଖୁବା

**ଦେଢ଼** - *ନ.* (ବି.) : ଏକ ପୂର୍ଣ୍ଣ ଓ ଆଉ ଏକର ଅର୍ଦ୍ଧ

**ଦେଣ୍‌ନେଣ୍** - *ଅନେ.* (ବି.କ୍ରି.) : ଦେବା ନେବା, କାରବାର, ଦାନ-ପ୍ରତିଦାନ

**ଦେଣା** - *ଅନେ.* (ବି.) : ଦେୟ, ଋଣ, କରଜ, ଧାର

**ଦେଣାନେଣା** - *ନ.* (ବି.) : ଦେବାନେବା

**ଦେବୁ** - *କଳା.* (କ୍ରି.) : ଦିଅନ୍ତୁ, ଯଦି ଦେବୁ, ଦେବୁ

**ଦେଦେଗାଲା** - *ବା.* (କ୍ରି.) : ଋଣ ସୁଝିଦେଲା

**ଦେ ଦେବତା** - *ସ.* (ବି.) : ଦିଅଁ ଦେବତା

**ଦେନ୍‌ରେଣ୍** - *ଦେ.* (ବି.) : ଦେବାନେବା

**ଦେନଦାର୍** - *ଯା.* (ବି.) : ଋଣୀ, ଦେଣାଦାର

**ଦେନାଷ୍ଟି** - *କୋ:* (ବିଂ.) : ନଷ୍ଟ, ଖଇରାତ

**ଦେନି** - *କଳା:ମ:* (କ୍ରି.) : ଦେଲି

**ଦେନେବାଲା** - *ସୁ:* (ବିଂ.) : ଦାନକର୍ତ୍ତା

**ଦେପିଣ୍ଡି** - *ଯା:* (ବି.) : ହାଣ୍ଡିରଖିବା ସ୍ଥାନ

**ଦେବତା ଆସିବା** - *କଳା:* (ବି.) : ଦେବତା ଧରିବା, ଆଦିବାସୀ ପୂଜକ ଉପରେ ଦେବତା ସବାର ହେବା, କାଳିସୀ ଲାଗିବା

**ଦେବତା ଭରା** - *କଳା:* (କ୍ରି.) : କୌଣସି ରୋଗ ହେଲେ ବା କାହାର କିଛି ଜିନିଷ ହଜିଲେ ଯାହା ମୁଣ୍ଡରେ ଦେବତା ବିଜେ କରନ୍ତି, ତାହାଙ୍କୁ ଡାକି ଦେବତା ଭରାଇ ପ୍ରତିକାର ବିଧାନ କରିବା ପଦ୍ଧତି । ଏହା ଆଦିବାସୀ ସଂପ୍ରଦାୟରେ ବିଶେଷ ପ୍ରଚଳିତ

**ଦେବଦାରୁ** - *ଅନେ:* (ବି.) : ଏକ ଉଚା ବୃକ୍ଷର ନାମ, ଏକପ୍ରକାର ବୃକ୍ଷ

**ଦେବନାଗରୀ** - *ଅନେ:* (ବି.) : ଲିପିବିଶେଷ, ଯେଉଁଥିରେ ସଂସ୍କୃତ, ହିନ୍ଦୀ ପ୍ରଭୃତି ଭାଷା ଲେଖାଯାଏ

**ଦେବଭାଷା** - *ଅନେ:* (ବି.) : ସଂସ୍କୃତ ଭାଷା

**ଦେବସ୍ଥାନ** - *ଅନେ:* (ବି.) : ଦେବାଳୟ, ଦେବତାଙ୍କ ଆସ୍ଥାନ

**ଦେବସ୍ୱ** - *ଅନେ:* (ବି.) : ଦେବତାଙ୍କ ଧନ, ଦେବତାଙ୍କ ପ୍ରାପ୍ୟ

**ଦେବାରି** - *ଗଦ୍ୟ:* (ବି.) : ଦେବତାମାନଙ୍କର ଶତ୍ରୁ

**ଦେବାଲ** - *ଛ:ମା:* (ବି.) : ପାଚେରି, କାନ୍ଥ, ପ୍ରାଚୀର

**ଦେବାଲି** - *ଛ:* (ବି.) : ଦୀପାବଳି ଉତ୍ସବ

**ଦେବାଳିଆ** - *ଅନେ:* (ବିଂ.ବି.) : ସର୍ବସ୍ୱାନ୍ତ, ଦୁଆଳିଆ, ଋଣ ଗ୍ରସ୍ତ, କ୍ଷତିଗ୍ରସ୍ତ, ବୁଡ଼ିଯାଉଥିବା

**ଦେବୋତ୍ତର** - *ଅନେ:* (ବି.) : ଦେବତାଙ୍କ ସ୍ଥାବର ଅସ୍ଥାବର ସଂପତ୍ତି

**ଦେମା** - *ସ:ଦେୌ:* (କ୍ରି.) : ଦେବା

**ଦେମି** - *ସ:ଯା:* (କ୍ରି.) : ଦେବା ଅର୍ଥରେ, ଦେବି

**ଦେମେଇଁ** - *କେନ୍ଦୁ:* (କ୍ରି.) : ଦେବେ

**ଦେରିଆ** - *କଣ:* (ବି.) : ବଡ଼ମାଆ

**ଦେରିଆବା** - *କଣ:* (ବି.) : ବଡ଼ବାପା

**ଦେରେନ** - *ସୁ:ବ:ନୂ:* (ବି.) : ଦିଅରାଣୀ, ଦିଅରର ସ୍ତ୍ରୀ, ସ୍ୱାମୀଙ୍କ ସାନ ଭାଇର ସ୍ତ୍ରୀ

**ଦେରେନି** - *ସ:* (ବି.) : ସାନଯାଆ, ଦିଅରାଣୀ

**ଦେର୍ ଘେଡ଼ିଆ** - *ସ:* (ବିଂ.) : ଯାହା ଚିକ୍କଣ ନୁହେଁ

**ଦେଷାଂ** - *ଗଦ୍ୟ:* (ବି.) : ଗୁଣିଆ

**ଦେଶ** - *ଅନେ:* (ବି.) : ଅଞ୍ଚଳ, ସ୍ଥାନ, ନିଜଗ୍ରାମ, ଅଞ୍ଚଳ, ଗାଁ, ବିଦେଶ ବା ପ୍ରବାସ

**ଦେଶ୍‌ଫାଲ୍** - *ସୁବ:* (ବି.) : ସୋନପୁର ଜିଲ୍ଲାର ମହାନଦୀ ବାମପଟର ଅଞ୍ଚଳ

**ଦେଶଗାଁ** - *କୋ:* (ବି.) : ପଲ୍ଲୀ ଗାଁ

**ଦେଶାଜି** - *ବା:* (କ୍ରି.) : ସମଗ୍ର ଗାଁ ଲୋକଙ୍କୁ ନିମନ୍ତ୍ରଣ କରି ଭୋଜି ଦେବା

**ଦେଶିଆ** - *ମା:ଗଜ:ନ:କୋ:* (ବି.ବିଂ.) : ଗ୍ରାମ୍ୟଲୋକ, ଗାଉଁଲୀ, ଗ୍ରାମୀଣ, ଆଦିବାସୀ ଜାତି ସମୂହ

**ଦେଶୀ ଆଳୁ** - *ଅନେ:* (ବି.) : ମାଟିତଳେ ଉତ୍ପନ୍ନ ଏକ ପ୍ରକାର ଆଳୁ, ବିଲାତି ଆଳୁ ଠାରୁ ଭିନ୍ନ ଆଳୁ, ଖମ୍ବ ଆଳୁ, ମାଟି ତଳର ମୂଳ ଧରିବା ଭାବେ ବ୍ୟବହୃତ

**ଦେଶୀମଦ** - *ଅନେ:* (ବି.) : ସ୍ଥାନୀୟ ଅଞ୍ଚଳରୁ ପ୍ରସ୍ତୁତ ଏକପ୍ରକାର ମଦ

**ଦେଶୀଲୁଗା** - *ଗ:* (ବି.) : ତନ୍ତବୁଣା ଲୁଗା

**ଦେଶୁଆ** - *ଅନେ:* (ବିଂ.) : ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକ

**ଦେସନ୍** - *କଳା:* (କ୍ରି.) : ଦିଅନ୍ତି

**ଦେସିକି** - *ରା:* (ବି.) : କୋଇଲି

**ଦେସୁଁ** - *କଳା:* (କ୍ରି.) : ଦେଉଁ, ଦେଇଥାଉ

**ଦେହ** - *ଅନେ:* (ବି.) : ଗଣ୍ଡି; ଶରୀର

**ଦେହ କିଳିବା** - *ଅନେ:* (କ୍ରି.) : ଭୂତ ପ୍ରେତ ନିବାରଣ ପାଇଁ ଶରୀରରେ ତାବିଜ ଧାରଣ କରିବା

**ଦେହପାଣି** - *ଗଦ୍ୟ:* (ବି.) : ସ୍ନାନ

**ଦେହ ବ୍ୟବସାୟ** - *ସଂ:* (ବି.) : ଯୌନବେପାର

**ଦେହରେ ଲାଗିବା** - *ଅନେ:* (କ୍ରି.) ପୁଷ୍ଟିସାଧନାକରିବା

**ଦେହାତି** - *ସୁ:* (ବିଂ.) : ମଫସଲି

**ଦେହାଳୁ** - *ଗଦ୍ୟ:* (ବି.) : ହୃଷ୍ଟପୁଷ୍ଟ

**ଦେହୀ** - *ଜ:କଳା:* (ବି.) : ଯାହାର ଦେହ ଅଛି, ଶରୀରଧାରୀ

**ଦେହୁରି** - *ଅନେ:* (ବି.) : ଦେବ-ଦେବୀ ସେବକ, ଏକ କୌଳିକ ଉପନାମ, ପୂଜକ, ପୂଜାରୀ, ମାଳୀ

**ଦେହେଗିଛି** - *ରା:* (କ୍ରି.) : ଋଣ ସୁଝୁଅଛି

**ଦେହେରି** - *ସ:ସୁବ:ବୌ:* (ବି.) : ପୂଜାରୀ, ଦେବୀ ପୂଜକ

**ଦେହେଲିଆ** - *ସୁବ:* (ବିଂ.) ଯିଏ ଦେବାଦେବୀ ପୂଜା କରେ, ଯା ଘରେ ଦେବୀ ଥାପନା ହୋଇଥାନ୍ତି

**ଦେହେଲେଇ ଦେବା** - *ସ:* (କ୍ରି.) ଆଲୋଡ଼ନ ସୃଷ୍ଟି କରିବା

**ଦେ'ମୁଲ** - *ଝା:* (ବି.) : ଯେଉଁଠାରେ ଗ୍ରାମ ଦେବୀ, ଦେବତା ପୂଜା ପାଉଛନ୍ତି

**ଦେ'ନି** - *ସୁବ:* (ବି.) : ଦେଣା, ବାକିଥିବା ଟଙ୍କା

**ଦୈବାତ୍** - *କେ:* (ଅ.) : ହଠାତ୍

**ଦୋଅଳବେଇ** - *ଭ:* (ବିଂ.) : ଯିଏ ସ୍ତ୍ରୀ ମରିଯିବା ପରେ ଆଉଥରେ ବାହାହୁଏ

**ଦୋଓଡ଼** - *କୋ:* (ବିଂ.) : ବର୍ଷକୁ ଜମିରେ ୨ଥର ଫସଲ ହେବାକୁ ଏପରି କହନ୍ତି

**ଦୋଓଡ଼ା ଖାଇବା** - *ଅନେ:* (କ୍ରି.) : ଦ୍ୱିତୀୟ ଥର ଖାଇବା

**ଦୋକ୍‌ତା** - *ଅନେ:* (ବି.) : ଭାଙ୍ଗପତ୍ର ଚୁରା

**ଦୋକଡ଼ି** - *ଅନେ:* (ବି.) : ଦୁଇକାନ୍ଥ ମଧ୍ୟସ୍ଥ ଅଳ୍ପ ଲମ୍ବ ସ୍ଥାନ, ଦୁଇଟି ପୃଥକ ଘରର ଚାଳ ତଳେ ଥିବା ମଧ୍ୟବର୍ତ୍ତୀ ଭୂମି

**ଦୋଗଲା** - *ସୁ.ଯା:* (ବିଂ.ବି.) : ମିଥ୍ୟାବାଦୀ, କଥା ଏପଟସେପଟ କରୁଥିବା ବ୍ୟକ୍ତି, ଦୋମୁହାଁ ଲୋକ

**ଦୋଘାଇ** - *କ.ଗ:* (ବି.) : ବିଷମ ଅବସ୍ଥାରେ, ଦ୍ୱିଧାଗ୍ରସ୍ତ, ବିଷମ ଘଟଣା

**ଦୋଘେଇ** - *ଖୋ:* (ବିଂ.) : ଦୁଇପ୍ରକାର

**ଦୋଚଡ଼** - *ଖୋ:* (ବିଂ.) : ଠକ

**ଦୋଚାରୁଣୀ** - *ଅନେ:* (ବିଂ.) : ଚରିତ୍ରହୀନ ନାରୀ, ବିଟପୀ, କୁଳଟା, ସ୍ୱାମୀ ଥାଇ ଯେ ପରପୁରୁଷକୁ ସ୍ୱାମୀ କରେ

**ଦୋଛକି** - *କ:* (ବିଂ.) : ଦୁଇରାସ୍ତାର ଛକଯାଗା

**ଦୋଢ଼ବାହୀ** - *ନ:* (ବି.) : ଦ୍ୱିତୀୟ ବିବାହିତା ନାରୀ

**ଦୋଢ଼ି** - *ଗ:* (ବି.) : ପାଇଖାନା

**ଦୋଢ଼ିଘର** - *ଗ:* (ବି.) : କାଞ୍ଜିଆଘର

**ଦୋତାଲା** - *ଅନେ:* (ବି.) : ଦୋମହଲା ଘର

**ଦୋଦୁଲ୍ୟମାନ** - *ଅନେ:* (ବିଂ.) : ଦୋଳାୟମାନ, ଅସ୍ଥିର ଅବସ୍ଥା

**ଦୋଦୋଚିହ୍ନା** - *ଅନେ:* (ବିଂ.) : **ଅଳ୍ପଅଳ୍ପ ଚିହ୍ନିହେବା, ସଂପୂର୍ଣ୍ଣ ଚିହ୍ନିନପାରିବା**

**ଦୋ ଦୋ ପାଞ୍ଚ** - *ଅନେ:* (ଅ.କ୍ରି.ବିଂ.) : ଅସ୍ଥିର, ଅସ୍ତବ୍ୟସ୍ତ, କିଛି ସ୍ଥିର ନକରି ପାରି, ଦ୍ୱିଧାଯୁକ୍ତ, ଆଗପଛ ଚିନ୍ତା, କ'ଣ କରିବା ଠିକ୍ ନ କରି ପାରିବା, ଆଗପଛ ହେବା

**ଦୋଧକ ଗାଈ** - *ଭ:* (ବିଂ.) : ପିଲାଜନ୍ମ କରି କ୍ଷୀର ଦେଉଥିବା ଗାଈ

**ଦୋନମ୍ବରୀ** - *ଖୋ:* (ବିଂ.) ନକଲି, ଜାଲିଆତି

**ଦୋନାବୁଡ଼ିଆ** - *ଖୋ:* (ବିଂ.) : ଦୋମୁହାଁ, ଦୁଇପକ୍ଷକୁ ସମର୍ଥନ କରୁଥିବା

**ଦୋପଟୀ** - *ଗ:* (ବି.) : ଚାଦର

**ଦୋପାଣି ଉଖୁଡ଼ା** - *ଖୋ:* (ବି.) : ଦୁଇଥର ପାଗ କରାଯାଇଥିବା ଉଖୁଡ଼ା

**ଦୋପୁରୀ** - *ନବ:* (ବି.) : ଦି'ମହଲା

**ଦୋଫସଲି** - *କେ:* (ବିଂ.) : ଯେଉଁ ଜମିରେ ଦ୍ୱିପ୍ରକାର ଫସଲ ହୁଏ

**ଦୋବ୍‌ଲା ଲହ** - *ନୁ:* (ବି.) : ଲତା ବିଶେଷ, ଏଥିରୁ ରଜୁ ତିଆରି ହୁଏ

**ଦୋବେଇ** - *ଖୋ:* (ବିଂ.) ଦିତୀୟ ବାହାହେଉଥିବା ବର

**ଦୋଭାଷୀ** - *ନ:* (ବିଂ.) : ଦୁଇଟି ଭାଷା ଜାଣିଥିବା ବ୍ୟକ୍ତି

**ଦୋମଲାଜାଲ** - *ଗ:* (ବି.) : ବଡ଼ ଆକୃତିର ଜାଲ

**ଦୋମାଟିଆ** - *କ:* (ବିଂ.) : ଦ୍ୱିତୀୟଥର ମାଟିଦେବା

**ଦୋମୁଣ୍ଡିଆ ସାପ** - *ଖୋ:* (ବି.) : ଏକ ପ୍ରକାର ଛୋଟ ସାପ ଯାହାର ଦୁଇପଟେ ମୁଣ୍ଡ ଥାଏ

**ଦୋମୁହାଁ** - *ଖୋ:* (ବିଂ.) : ଯାହାର କଥାରେ ଠିକ୍ ନଥାଏ

**ଦୋର** - *ଗ:* (ବି.) : ପତ୍ରରସ

**ଦୋରକାଢ଼ିବା** - *ଗ:* (କ୍ରି.) : ରସ କାଢ଼ିବା, ପ୍ରତିଶୋଧନେବା

**ଦୋରଙ୍ଗି** - *ଅନେ:* (ବିଂ.) : ଦୁଇରଙ୍ଗ ବିଶିଷ୍ଟ

**ଦୋରନ୍ଧା** - *ଅନେ:* (ବିଂ.) : ଦୁଇଥର ସିଝା ଯାଇଥିବା

**ଦୋରସା ମାଟି** - *ଅନେ:* (ବି.) : ପଙ୍କ ଓ ବାଲି ମିଶ୍ରିତ ଉନ୍ନତ ଜମି

**ଦୋରଣ୍ଡ** - *ଅନେ:* (ବିଂ.କ୍ରି.) : ପ୍ରଚୁର, ପ୍ରବଳ, ଅଧିକ ଅର୍ଥରେ, ଠିକ୍ କରିବା, ବହୁତ

**ଦୋରଣ୍ଡା** - *ଖୋ:* (ବିଂ.) : ବିଲକୁ କାଦୁଅ କରିବା

**ଦୋରା** - *ଗ:ଗଞ୍ଜ:* (ବି.) : ଗଞ୍ଜାମରେ ବାସ କରୁଥିବା ଜାତି ବିଶେଷ, ତୈଲିଙ୍ଗ ଖଣ୍ଡାଏତ

**ଦୋରୁଅ** - *ଅନେ:* (ବି.) : ଆଖୁରସ

**ଦୋରୋ** - *କଳା:* (ବି.) : ଦର, ଅପେକ୍ଷାକୃତ ବଡ ପାଣିଖାଲ

**ଦୋରୋ ଦୋରୋ** - *କଳା:* (ବିଂ.) : ଧାର ଧାର ହୋଇ

**ଦୋଲା** - *କଳା:* (ବି.) : ଦୋଳା, ମାଟି ପ୍ରଭୃତି ବୋହିବାର ଆଧାର ବିଶେଷ । ଦୁଇ ପଟରେ ଦୁଇ ଜଣ ଧରି ନେଇ ପାରୁଥିବା ବାଉଁଶ ପାତିଆ ଦ୍ୱାରା ନିର୍ମିତ ଉପକରଣ

**ଦୋଳବେହି(ଇ)** - *ଯା:* (ବିଂ.) : ସ୍ତ୍ରୀ ମୃତ୍ୟୁପରେ ଦ୍ୱିତୀୟ ବିବାହ କରୁଥିବା ପୁରୁଷ

**ଦୋଳମଣ୍ଡପ** - *ଅନେ:* (ବି.) : ରାଧାକୃଷ୍ଣ ଦୋଳିଖେଳିବାର ମଣ୍ଡପ

**ଦୋଳା** - *ନ:ଗ:* (ବି.) : ବାଉଁଶ ପାତିରେ ନିର୍ମିତ, ଯାହାର ୪ ବାହୁକୁ ୨ଜଣ ଉଭୟ ଦିଗରେ କାନ୍ଧାନ୍ତି, ବୋହି ନିଅନ୍ତି କିଛି ଜିନିଷ ଯଥା- ମାଟି, ପଥର, ଇଟା ଇତ୍ୟାଦି, ଖଟିଆ ଦୋଳି

**ଦୋଳି** - *ଅନେ:* (ବି.) : ଝୁଲଣ, ଏକ ପ୍ରକାର ଖେଳ ଉପକରଣ, ଏଥିରେ ଝୁଲିଝୁଲି କରି ଖେଳାଯାଏ

**ଦୋଷଗୁନା** - *ନୂ:* (ବି.) : ନିନ୍ଦା, ଦୋଷଗୁଣ

**ଦୋଷରି ଶଙ୍ଖ** - *ଗ:* (ବି.) : ଯୋଡ଼ା ଶଂଙ୍ଖ

**ଦୋସଡ଼ା** - *ଅନେ:* (ବି.) : ଚାଦର, ଓଢା, ଗାମୁଛା, ଯୋଡ଼ ସହିତ ଲାଗିଥିବା ବଡ଼ ଗାମୁଛା ବା ଉତ୍ତରୀୟ

**ଦୋସର** - *ନବ:ଗଦ୍ୟ:* (ବି.) : ସଙ୍ଗାତ, ସଙ୍ଗୀ, ପୁଣି, ଦ୍ୱିତୀୟ ଥର ଅନ୍ୟ

**ଦୋସା** - *ଅନେ:* (ବି.) : ଏକ ପ୍ରକାର ବିରି ଚକୁଳି

**ଦୋସାଲି** - *ଅ:* (ବିଂ.) : ଦୁଇବର୍ଷ ବ୍ୟାପୀ

**ଦୋସିଆଁ** - *ଗଦ୍ୟ:* (ବିଂ.) : ଦୁଇଥର ସିଲାଇ ହୋଇଥିବା, ଚିରାଲୁଗା ସିଆଁ ହୋଇଥିବା

**ଦୋହଡ଼ପକ୍ଷ** - *ଗ:* (ବି.) : ଦ୍ୱିତୀୟ ବାର ବିବାହ

**ଦୋହରା** - *ସୁ:ଖୋ:ଛ:* (ବି.) : ଦ୍ୱିବାର, ଦୁଇଥର, ବାର ବାର କାମ, ଦି'ଥର କରିବା

**ଦୋହଳ** - *ଅ:* (ବି.) : ଘର ଆଗ ବାରଣ୍ଡା

**ଦୋହଳି** - *ଛ:* (ବି.) : ଛୁଆଳି

**ଦୋହିଁବା** - *ଅନେ:* (ବି.) : ଦୋହନ

**ଦୋ'ଅଡି** - *ସଂ:* (ବିଂ.) : ଦୁଇଥର ଚାଷ

**ଦୋ'ଘାଇ** - *ସଂ:* (ବିଂ.) : ଦୁଇକାମରେ ହାତଦେବା, ବିଷମ ସଂକଟ

**ଦୋ'ଭେଇ** - *ସଂ:* (ବିଂ.) : ଯିଏ ସ୍ତ୍ରୀ ମରିଗଲା ପରେ ଆଉଥରେ ବାହାହୁଏ

**ଦ୍ଁଢେଇ** - *ବ:* (କ୍ରି.) : ଜବରଦସ୍ତି କଳି କରିବା ବା କଳି ଲଗାଇବା

**ଦ୍ଁଡ୍‌ବାର** - *ସୁବ:* (କ୍ରି.) : ବେଶୀ ପରିମାଣରେ ଖାଇବା

**ଦ୍ଁଡ୍‌ରା** - *ସୁ:ସୁବ:* (ବିଂ.) : ଦାନ୍ତରା, ବଡ଼ ଦାନ୍ତିଆ

**ଦ୍ଁତରି** - *ସୁ:* (ବି.) : ବିରି ଦଳିବା ଗୋଳ ପଥର

**ଦ୍ଁତା** - *ସୁବ:* (ବି.) : ବଡ଼ ଦାନ୍ତଥିବା ହାତୀ, ହନୁମାଙ୍କଡ଼, ବାର୍‌ହା ଦଳର ନେତା, ଦଳପତି

**ଦ୍ଁତାବାର** - *ସୁବ:* (କ୍ରି.) : ଗୋଡ଼ରେ ଠେସ ଦେଇ ଭିଡ଼ିବା, ତାଳ ବାହୁଙ୍ଗାରୁ ପଟ ବାହାର କଲାବେଳେ ଏପରି କରାଯାଏ

**ଦ୍ଁନି ଛୁଇଁବା** - *ସ:* (କ୍ରି.) : ମୃତ୍ୟୁ ପୂର୍ବବର୍ତ୍ତୀ ଅବସ୍ଥା

**ଦ୍ଂଦରୋ** - *ସୁ:* (ବି.) : ବଡ଼ ଖୋଳପା

**ଦ୍ଂଶିବା** - *ଅନେ:* (କ୍ରି.) : ଚୋଟ ମାରିବା

**ଦ୍ରାବକ** - *ଗ:* (ବି.) : ସୁନାରେ ମିଶିବା ଖାଦ

**ଦ୍ରୋହ** - *ଅନେ:* (ବି.) : ଅପରାଧ, ବିଦ୍ରୋହ

**ଦ୍ୱନ୍ଦ୍ୱ** - *ଅନେ:* (ବି.) ଗୋଳମାଳିଆ ପରିସ୍ଥିତି, ଝଗଡ଼ା

**ଦ୍ୱାରି** - *ଅନେ:* (ବି.) : ସାଙ୍ଗିଆ(ଜାତିର), ଜାତି ବିଶେଷ, ଦ୍ୱାରପାଳ

**ଦ୍ୱିଧା** - *ଅନେ:* (ବି.) ସନ୍ଦିହାନ, ଦୋଦୋପାଞ୍ଚଭାବ

# ଧ

**ଧଅପେଲିବା** - *ଖୋ:* (କ୍ରି.) : ଗାଲୁକରିବା

**ଧଅଁରା** - *କଳା:ସ:* (ବି.ବିଂ.) : ଗଛ ବିଶେଷ, ଭେଣ୍ଡିଆ, ଯୁବକ

**ଧଇନ** - *ମ:* (ବି.) : ଧନ୍ୟ

**ଧଇରି** - *ଗ:ଯା:* (ବି.) : ବାଉଁଶ ପାତିଆରେ ତିଆରି ମାଛଧରା ଯନ୍ତ୍ର

**ଧଇର୍ଯ** - *କେ:ଢ:କେନ୍ଦୁ:* (ବି.) : ଧୈର୍ଯ୍ୟ

**ଧଇଁ** - *ନ:ଗ:ଦେ:* (ବି.) : ଶ୍ୱାସରୋଗ

**ଧଇଁଆ** - *ପୁ:ଖୋ:ନ:କେ:* (ବିଂ.) : ଅତିଶୟ ଧଇଁପେଲୁଥିବା ରୁଗ୍‌ଣ ଓ ଭଗ୍ନସ୍ୱାସ୍ଥ୍ୟ (ବ୍ୟକ୍ତି)

**ଧଇଁଚା** - *ଅ:* (ବି.) : ଧଣିଆ

**ଧଇଁସଇଁ** - *ନ:ଖୋ:* (ବି.କ୍ରି.ବିଂ.) : ଅତିପରିଶ୍ରମ, ଧାଇଁଧାଇଁ ଆସିବା ଯୋଗୁଁ ଖର ନିଃଶ୍ୱାସ, ହାଲିଆ ହୋଇଯିବା

**ଧଉରା** - *ଅନେ:* (ବି.) : ଏକ ବୃକ୍ଷର ନାମ, ଶଗଡ଼ ଅଖ, ବେଣ୍ଟ ଇତ୍ୟାଦିରେ ଏହି ଟାଣ କାଠ ବ୍ୟବହୃତ ହୁଏ।

**ଧଉଳା** - *ଖୋ:ନ:* (ବିଂ.କ୍ରି.) : ରଙ୍ଗଲେପ ଦେବା

**ଧଉଁଲା** - *ସୁ:* (ବି.) : ଏକ ଟାଣ ଗଛ

**ଧଏନ** - *ସୁ:ସୁବ:କଳା:* (ବିଂ.ଅ.) : ଧନ୍ୟ, ପ୍ରଶଂସାର ଯୋଗ୍ୟ, କୃତକୃତ୍ୟ, ଧନ୍ୟ

**ଧଏଁର** - *କଳା:* (ବି.) : ବାଉଁଶ ଖଡିକାରେ ଘର ଭଳି ତିଆରି କରାଯାଇଥିବା ମାଛ ଧରା ଯନ୍ତ୍ର । ବିଅଁର

**ଧକ** - *ଦେ:ସୁବ:ସୁ:ନ:* (ବି.) : କ୍ଲାନ୍ତି, ଚିନ୍ତା, ଦାୟିତ୍ୱ ଭାବନା, ଆଶଙ୍କା, ଧକେଇବା(ପରିଶ୍ରମକରି)

**ଧକ୍‌ଧକ** - *ସୁ:ଦେ:* (ଅ.) : ଆଶଂକା, ଛାତି ଥରିବା, ଦକ ଦକ

**ଧକଚକ** - *ଖୋ:ଦେ:* (ବିଂ.ଅ.) : ଉଠାପକା, ବକର ବକର

**ଧକ ଧକ ହେବା** - *ଦେ:* (କ୍ରି.) : ସଂଶୟାକୁଳ

**ଧକର୍ କଚର୍** - *ଗୌ:* (ବି.) : ଦ୍ୱିଧାଗ୍ରସ୍ତ

**ଧକା ଦେବା** - *ସ:* (କ୍ରି.) : ବିଶ୍ୱାସ ଘାତକତା କରିବା, ଧୋକା

**ଧକେଇବା** - *ଯା:ଦେ:ନ:ଖୋ:* (କ୍ରି.) : କାହିଲ୍କାନ୍ତ ହେବା, ଧଇଁସଇଁ ହେବା, କଠିନ ପରିଶ୍ରମ କରି ହାଲିଆ ହେବା

**ଧକିଆ ମାରିବା** - *କୋ:* (କ୍ରି.) : ଧକ୍କା ଦେବା, ଢକିଆ ମାରିବା

**ଧଙ୍କିବା** - *ଗ୍ରା:* (କ୍ରି.) ହାଲିଆ ହୋଇ ଶୀଘ୍ରଶ୍ୱାସ ନେବା, ଧକେଇ ହେବା

**ଧଙ୍ଗଡ଼ା** - *ନବ:ଗୌ:ସୁ:* (ବି.ବିଂ.) : ଯୁବକ, ଅବିବାହିତ ଯୁବକ, ସ୍ୱାସ୍ଥ୍ୟବାନ୍ ଯୁବକ, ଧଙ୍ଗରା

**ଧଙ୍ଗିଆ** - *ପଦ୍ମ:* (ବି.) : ଧୁଆଁ ପତ୍ର

**ଧଜ** - *ସୁ:* (ବି.) : କେତନ, ପତକା, ବାନା

**ଧଜି** - *ନ:* (ବି.) : ଲୁଗାଧଡ଼ି

**ଧଡ଼ରା** - *ଅ:* (ବିଂ.) : ଦୁର୍ବଳ

**ଧଡ଼ା** - *ଅ:* (ବି.) : ବାଉଁଶ ବା କାଠରେ ତିଆରି ଫାଙ୍କ ଥିବା ଫାଟକ

**ଧଡ଼ାଙ୍ଗ** - *ଅ:* (ବିଂ.) : ଡେଙ୍ଗା, ପତଳା, ରୋଗା

**ଧଡ୍‌କିନା** - *କେ:* (ଅ.) : ଯୋର ଶବ୍ଦ କରି

**ଧଡ୍‌ଧଡ଼ିଆ** - *କଳା:* (ବିଂ.) : ଅସମତଳ, ବନ୍ଧୁର, ଖାଲଢିପ

**ଧଡି** - *ବା:ନବ:କେନ୍ଦୁ:* (ବି.) : ଲୁଗାର ଦୁଇପାଖ, ଛିଣ୍ଡା କନା

**ଧଡିଆ** - *ଗୌ:* (ବିଂ.) : ଶୀର୍ଣ୍ଣକାୟ

**ଧଡ୍‌କାଇବା** - *ନୂ:କଣ:* (କ୍ରି.) : ଚମକଦେବା, ଧମକଦେବା

**ଧଡ୍‌କାବା** - *ସୁ:* (କ୍ରି.) : ଧମକେଇବା

**ଧଡ୍ ପଡ଼ାନୁ** - *ସ:* (ବିଂ.) : ଧଡ୍ ପଡ୍ ହୋଇ

**ଧଡ୍‌ପେଇ** - *ନୂ:* (କ୍ରି.) : ଚମକାଇ

**ଧଡ଼ଧଡ଼ିଆ** - *ନ:ଖୋ:* (ବିଂ.) : ପୁରୁଣା ଓ ନଷ୍ଟ ହୋଇଯାଉଥିବା ଅବସ୍ଥା; ଅବକ୍ଷୟ, ପତଳା

**ଧଡ଼ରା** - *କେ:* (ବିଂ.) : ଦୁର୍ବଳ

**ଧଡ଼ସ** - *ଗଦ୍ୟ:ଖୋ:* (ବି.କ୍ରି.) : ଗଡ଼ା ବା ଗଡ଼ାନ୍ତି, ଡର, ଭୟ

**ଧଡ଼ସିଆ** - *ଗ:* (ବିଂ.) : ଏକ ଚିହ୍ନିଦିଆ ଲୋକ

**ଧଡ଼ା** - *ଅନେ:* (ବି.ବିଂ.) : କାଠ ବା ବାଉଁଶ ଗେଟ, କବାଟ, ମାପ ଓଜନ ଦଣ୍ଡି

**ଧଡ଼ାଧରାଳୀ** - *ନ:* (ବି.) : ଧଡ଼ାଧରି ଓଜନ କରୁଥିବା ଲୋକ, ଦଣ୍ଡିଆ

**ଧଡ଼ି** - *ଅନେ:* (ବି.) ଲୁଗାର ଧାର, ଛିଣ୍ଡାକନା, ଲୁଗାର ବାହ୍ୟବନ୍ଧ, ଲୁଗାଧଡ଼ି, ସାହସ, ଲୁଗାଧଡ଼ି, ଶକ୍ତି

**ଧଡ଼ିଆ** - *ଖୋ:ବା:* (ବିଂ.) : ପତଳା, ଦୁର୍ବଳ

**ଧଡ଼ି ଛିଡ଼ିଯିବା** - *ଗୌ:ଗ:* (ବି.କ୍ରି.) ହଇରାଣରେ ପଡ଼ିବା ସୂଚକ ଶବ୍ଦ, ହାଲିଆ ହେବା, ନିରାଶ ହେବା

**ଧଡ଼ିବାଜ** - *ଯା:ଦେ:* (ବି.ବିଂ.) : ଦୁଷ୍ଟ, ଚଲାକ, ଧୋକାବାଜ, ଖେଡ଼େ, ଧୂର୍ତ୍ତ

**ଧଣ୍ଡରା** - *ଗ୍ରା:* (ବି.) : ଧେଣ୍ଡୁରା, ଗାଁରେ ବାଜା ବଜାଇ ଏକ ନିର୍ଦ୍ଦିଷ୍ଟ ବାର୍ତ୍ତା ପ୍ରଚାର କରାଯିବା କାର୍ଯ୍ୟ, ଡେଙ୍ଗୁରା

**ଧଣ୍ଡା** - *ଢ଼:କେ:ନ:* (ବି.) : ପ୍ରଭୁଙ୍କ ପାଦରେ ଅର୍ପିତ ତୁଳସୀ ମଞ୍ଜରୀ, ବେଲପତ୍ର ଓ ଷୋଲରେ ତିଆରି ଠାକୁରଙ୍କ ମାଳା, ଫୁଲମାଳ

**ଧଣ୍ଡାଳିବା** - *ଅ:* (ବି.) : ଧନ୍ଦାଳିବା, ଖୋଜିବା

**ଧଣିଚା** - *ଅ:ଗଦ୍ୟ:* (ବି.) : ଧଣିଆଁ ଫଳ, ମାଟିରେ ମିଶି ସାର ରୂପେ ବ୍ୟବହୃତ ଗଛ, ଧନିଚା

**ଧକ୍କାବାଭ** - *ସୁବ:* (କ୍ରି.) : ଯାନବାହାନ ଧକ୍କା ଲଗାଇବା

**ଧଡଡ଼ା** - *ଅ:ନବ:ସୁ:* (ବିଂ.) : ଛିଣ୍ଡା, ଅତି ପୁରୁଣା, ନଷ୍ଟ, ଫଟା, ଭଙ୍ଗା

**ଧଡରା** - *ଅନେ:* (ବିଂ.) : ପୁରୁଣା, ଖୋଡରା, ଦଦରା, ଚିରା, ଜୀର୍ଣ୍ଣ, ନଷ୍ଟହୋଇ ଆସୁଥିବା

**ଧଡୋରୋ** - *ନୂ:* (ବି.ଣ.) : ଯାହା ମୁନିଆଁ ନୁହେଁ

**ଧନଝେରୀ** - *ସୁବ:* (ବିଂ.) : ଅଳ୍ପଚେରୀ ଯୁବତୀ ସ୍ତ୍ରୀ

**ଧନ ଦଉଲତ** - *ସ:ଦେ:* (ବି.) : ଧନ ସମ୍ପତ୍ତି

**ଧନ ମାଉଲୀ** - *ସୁବ:* (ବି.) : ଧନର ଏକ ଦେବୀ

**ଧନମାଇ** - *ସ:* (ବି.) : ପୁଅଝିଅଙ୍କୁ ଏହା କୁହାଯାଏ, ସ୍ନେହାସ୍ପଦ

**ଧନା** - *ସୁ:* (ବି.) : ମୁଖ୍ୟ ଚାକର

**ଧନିଆ** - *ନ:କଳା:ଦେ:* (ବି.) : ଏକ ଶସ୍ୟ ବା ମସଲାର ନାମ

**ଧନିଆଁ ଫାଞ୍ଜି** - *ଅ:* (ବି.) : ସୁନାହାର ଅଳଙ୍କାର, ଧଣିଆ ଫାଳି

**ଧନିତ୍ରୀ** - *ଜ:* (ବି.) : ଗୋରୁଙ୍କ ଚିକିତ୍ସା ପାଇଁ ବ୍ୟବହୃତ ଔଷଧ

**ଧନୁ** - *କଳା:ଦେ:* (ବି.) : ଶାୟକ, ଧନୁ ରାଶି, ବାଣ, କାଣ୍ଡ

**ଧନୁମୁଆଁ** - *ଗ:ଖୋ:ନ:ଦେ:* (ବିଂ.) : ଧନୁମାସରେ ଭୋଗ କରାଯାଉଥିବା ଲିଆ ପ୍ରସ୍ତୁତ ଲଡୁ

**ଧନୁଷ୍କାର** - *ଦେ:* (ବି.) : ବାତ ରୋଗ

**ଧନ୍ତରୀମୁଣ୍ଡ** - *ଅ:* (ବିଂ.) : ଆଲୁଳାୟିତ କେଶ

**ଧନ୍ଦା କରିବା** - *ଗ:ଗଜ:* (କ୍ରି.) : କାର୍ଯ୍ୟକରିବା, ବୃତ୍ତି, ମନ୍ଦକାର୍ଯ୍ୟ କରିବା, ବେପାର

**ଧନ୍ଦାଳି** - *ଗ:* (ବିଂ.) : ଢାଲ ଢାଲୁଆ, ଅସ୍ପଷ୍ଟ

**ଧନ୍ଦାଳିଆ** - *ଖୋ:* (ବିଂ.) : ସବୁବେଳେ ଯେ କାର୍ଯ୍ୟ ବ୍ୟସ୍ତ ରହୁଥାଏ

**ଧନ୍ଦିହେବା** - *ଖୋ:କଳା:ନ:ଢ:* (କ୍ରି.) ଜଞ୍ଜାଳରେ ବିବ୍ରତ ହୋଇ ପଡ଼ିବା, ଖୋଜିହେବା, କାର୍ଯ୍ୟବ୍ୟସ୍ତ ରହିବା

**ଧନ୍ଦେଇ ହେବା** - *କଳା:* (କ୍ରି.) : ଖୋଜିବା, ଖୋଜିହେବା

**ଧନ୍ଦୋଳ** - *ଗ:* (ବିଂ.) : ଗହଳ, ଗୋଳମାଳ

**ଧପ୍** - *ଦେ:କେ:* (ଅ.) : ହଠାତ୍ ପଡ଼ିବାର ଶବ୍ଦ, ଆଲୁଅ ଲିଭିବା ପୂର୍ବରୁ ଶବ୍ଦ

**ଧପ୍ ଧାପ୍** - *ଦେ:* (ବି.) : ଦଉଡ଼େଇବା

**ଧପଟଧପଡ଼** - *ଅ:* (କ୍ରି.ବିଂ.) : ଝଅଟ, ଝପଟ

**ଧପଡ଼ାଧାପଡ଼ି** - *ମା:* (କ୍ରି.ବିଂ.) : ଧାଁ ଦଉଡ଼

**ଧପଡ଼େଇବା** - *ନବ:ଦେ:* (କ୍ରି.) ଧମକେଇବା, ଠକାମି, ପ୍ରତାରଣା

**ଧପସପ** - *ଗଦ୍ୟ:* (ବିଂ.) : ଏପଟ ସେପଟ

**ଧପା** - *ନବ:ଦେ:ଗଦ୍ୟ:* (ବି.) : ଠକାମି, ପ୍ରତାରଣା

**ଧପାଡ଼ି** - *ଗ:* (କ୍ରି.) : ଧମକ ପ୍ରକାଶ କରିବା

**ଧପା ବାଜ** - *ଦେ:ଗ:ଖୋ:* (ବିଂ.) : ଠକ, ପ୍ରତାରକ, ଭଣ୍ଡ

**ଧପାବାର** - *ସୁବ:* (କ୍ରି.) : ଭୟ ଦେଖାଇବା

**ଧପାଲି** - *ଛ:* (ବି.) : ଦୌଡ଼

**ଧପାଳିଆ** - *ଖୋ:* (ବିଂ.) : ଠକ

**ଧପେଇବା** - *କୋ:ଗଛ:* (କ୍ରି.) : ଧମକେଇ ଆସିବା, ଆଗକୁ ମାଡ଼ିଯିବା

**ଧବ** - *ଢେ:* (ବି.) : ସ୍ୱାମୀ

**ଧବଡ଼ିବା** - *ନବ:* (କ୍ରି.) : ଧାଇଁବା

**ଧବା** - *ମ:* (ବି.) : ଧୋବା

**ଧମ୍‌ନା** - *ଅନେ:* (ବି.) : ଢମଣା, ବିଷହୀନ ହଳଦିଆ ରଙ୍ଗର ଲମ୍ବା ସର୍ପ ବିଶେଷ, ଢେମଣା, ଧାମଣା,

**ଧମକ** - *ଦେ:* (ବି.) : ଭୟ ଦେଖାଇବା

**ଧମନ** - *ଦେ:* (ବି.) : ନଳ

**ଧମନା** - *କଳା:* (ବି.) : ଧାମଣା ସାପ

**ଧମନୀ** - *ଦେ:* (ବି.) : ନାଡ଼ି

**ଧମସ** - *ଗଦ୍ୟ:* (ବି.) : ଆଘାତ

**ଧମା** - *ବା:ଗ:* (ବି.ବିଂ.) : ଧାନ ବା କୁଣ୍ଡା ରଖା ଜାଗା, ଜାଣିଶୁଣି ଯିଏ ମୂର୍ଖଭଳି ଆଚରଣ କରେ

**ଧମାଟିଆ** - *ପଦ୍ୟ:* (ବି.) : ତୀବ୍ରବାସ୍ନା, ଉଗ୍ର ବାସ୍ନା

**ଧମାଧମୀ କରିବା** - *ଦେ:* (କ୍ରି.) : ଅତିଶୟ ପ୍ରଶଂସା କରିବା

**ଧୟାଁ, ଶୟାଁ** - *ନ:* (ବିଂ.) : କର୍ମକୋଢିଆ, ଅଳସୁଆ, ଶ୍ୱାସରୋଗୀ

**ଧରଣ** - *ଦେ:* (ବି.) : ଆକାର, ପ୍ରକୃତି

**ଧରଣ ଧରିବା** - *ଗ:* (ବି.) : ଧୈର୍ଯ୍ୟ ପ୍ରକାଶ କରିବା

**ଧରଣୀ** - *ଦେ:* (ବି.) : ପୃଥିବୀ, ଭୂମି

**ଧରନୀ ଖୁଂଟା** - *କଳା:* (ବି.) : ଧରଣୀ ଦେବୀଙ୍କୁ ସ୍ଥାପନ କରାଯାଇଥିବା କାଠ ଖମ୍ବ, ଏଥିରେ ଧରଣୀ ଦେବୀ ବିରାଜମାନ କରିଥିବା ବିଶ୍ୱାସ

**ଧରନୀ ଶାଲ୍** - *କଳା:* (ବି.) : ଧରଣୀ ଦେବୀଙ୍କ ବାସସ୍ଥାନ ବା ମନ୍ଦିର

**ଧର ପଗଡ଼** - *ଦେ:ଖୋ:* (ବି.କ୍ରି.ବିଂ.) : ଖାନ୍ ତଲାସ, ଅନୁସନ୍ଧାନ, ଖୋଳତାଡ଼ କରିବା

**ଧରମ** - *ଦେ:ସୁବ:କଳା:* (ବି.) : ଧର୍ମ, ପୁଣ୍ୟ, ଧର୍ମଦେବତା, ସୂର୍ଯ୍ୟ

**ଧରମ ବେହିଆ** - *ଖୋ:* (ବିଂ.) : ବଡ଼ ଅଲାଜୁକ

**ଧରମ ଭଉଣୀ** - *ସଂ:* (ବି.) : ଅନ୍ୟକୁ ଭଉଣୀ କରିବା

**ଧରମ ଭାଇ** - *ସଂ:* (ବି.) : ଅନ୍ୟକୁ ଭାଇ କରିବା

**ଧରମ ସହିବା** - *ଦେ:* (କ୍ରି.) : ଭଗବାନ ସାହା ଭରସା ହେବା।

**ଧରମାର** - *ଦେ:* (ବି.) : ମାରଧର

**ଧରମ୍ ଦେବତା** - *କଳା:* (ବି.) : ସୂର୍ଯ୍ୟ ଦେବତା

**ଧରଲିବା** - *ସୁ:* (କ୍ରି.) : ଢାଳିବା

**ଧରସ୍** - *କଳା:* (ବି.) : ସଂକୀର୍ଣ୍ଣ ରାସ୍ତା, ଛୋଟ ରାସ୍ତା

**ଧରସମ୍ହାଲ୍** - *ସ:* (ବି.) : ଅସମ୍ଭାଳ ପରିସ୍ଥିତି

**ଧରସା** - *ସୁ:ବ:* (ବି.) : କୃଷିକ୍ଷେତ୍ର ରାସ୍ତା, ପାଦଚଲା ରାସ୍ତା

**ଧରାକ** - *ଗଢ:ଗ:* (ବି.) : କଟକଣା

**ଧରାକୁଟା** - *ଚ:* (ବି.) ଯେଉଁ ନଡାକୁ ସାଇଜ କରି ରଖାଯାଏ

**ଧରାଟିସୁଧ** - *ଚ:* (ବି.) ଉଚ୍ଚ ହାରରେ ସର୍ତ୍ତମୂଳକ ମହାଜନୀ ସୁଧ ବ୍ୟବସ୍ଥା

**ଧରାଧରି** - *ନବ:କଳା:ଦେ:ନ:* (କ୍ରି.) : ଲୁଚାଇବା, ପରସ୍ପରକୁ ଧରିବା, ପିଟାମରା ହେବାର ପ୍ରାକ୍ ଅବସ୍ଥା, ପ୍ରଭାବିତ କରିବା, ଲବି କରିବା, ବିନୟ ଅନୁରୋଧ, ଲାଞ୍ଚ ପ୍ରଦାନ

**ଧରାନି** - *କଳା:* (ବି.) : ଧରିବା ପ୍ରକ୍ରିୟା

**ଧରାନି ଗୁହୁ** - *କଳା:* (ବି.) : ଡୁଡୁଖେଳ

**ଧରାପଟ** - *ଗ:* (ବି.) : ବସ୍ତୁର ତଳଅଂଶ

**ଧରାବନ୍ଧା** - *ଦେ:କେ:* (ବି.ବିଂ.) : ସୁନିଶ୍ଚିତ, ନିୟମିତ

**ଧରାମତ** - *ଗଢ:* (ବି.) : କ୍ରମାଗତ ଭାବେ

**ଧରାମସ୍କା** - *କଳା:* (କ୍ରି.) : ପରସ୍ପର ଧରାଧରି ହେଇ ଝଗଡ଼ା କରିବା

**ଧରାରପଟା** - *ସୁ:* (ବି.) : ଟଣାଓଟରା, ଝଟପଟ

**ଧରି ବସିବା** - *ଦେ:* (କ୍ରି.) : ଜିଦ୍ କରିବା

**ଧରିବା** - *କଳା:ସ:ଦେ:* (କ୍ରି.) : ଧାରଣ କରିବା, ହସ୍ତଗତ କରିବା, କିଣିବା

**ଧରୁଆ** - *କଳା:* (ବି.) : ଗଣ୍ଡ ସଂପ୍ରଦାୟର କୌଳିକ ଉପନାମ ବିଶେଷ

**ଧରୁନ୍** - *କଳା:* (କ୍ରି.) : ଧରନ୍ତୁ, ଧାରଣ କରନ୍ତୁ

**ଧରୁନ୍ ଧରୁନ୍** - *କଳା:* (କ୍ରି.ବିଂ.) : ଧରୁଧରୁ

**ଧରେଇବା** - *କୋ:କଳା:ଗ:* (କ୍ରି.) : ବଳଦକୁ ତାଲିମ୍ ଦେବା, ପଶୁଙ୍କୁ ଖାସୁକରିବା

**ଧର୍ମ ଗୁଳା** - *କୌ:* (ବି.) : ବିଜିତ ପ୍ରାର୍ଥୀ ଚୟନର ଏକ ମାଧ୍ୟମ

**ଧର୍ମଘଟ** - *ଦେ:* (ବି.) : ହରତାଳ

**ଧର୍ମ ନିକିତି** - *ସଂ:* (ବି.) : ନ୍ୟାୟ

**ଧର୍ମବକ** - *ସଂ:* (ବିଂ.) : କପଟୀ ଧାର୍ମିକ

**ଧର୍ମଶାଳା** - *ଦେ:* (ବି.) : ଅତିଥି ଶାଳା, ପାନ୍ଥ ଶାଳା

**ଧର୍କା** - *ସୁବ:ସ:* (ବି.) : ଚିରା କପଡ଼ା

**ଧର୍ତନୀ** - *କଳା:* (ବି.) : ଧରଣୀ, ପୃଥିବୀ, ବସୁମାତା

**ଧର୍ତି** - *ସୁବ:କଳା:ମା:* (ବି.) : ଧରିତ୍ରୀ ମାତା ପୃଥିବୀ, ଧରନ୍ତି, ଧାରଣ କରନ୍ତି

**ଧର୍ନୀ** - *କଳା:* (ବି.) : ଧରଣୀ, ଆଦିବାସୀ କନ୍ଧ ସଂପ୍ରଦାୟର ଆରାଧ୍ୟ ଦେବୀ

**ଧର୍ ପଲାପୁଲି** - *ଦେ୍ୈ:* (ବି.) : ଧରାଧରି ହୋଇ ଘରୁ ପଳାଇବା ପୁଅ ଝିଅ

**ଧର୍‌ବା** - *ମ.ନୂ:* (କ୍ରି.ବି.) : ଧରିବା

**ଧର୍‌ସକଲ୍** - *ନୂ:* (ବିଂ.) : କଷ୍ଟେମଷ୍ଟେ

**ଧର୍‌ସା** - *ସୁବ:ଝା:ସ:* (ବି.) : ଓସାରିଆ ରାସ୍ତା, ପାଦରେ ଯିବାପାଇଁ ରାସ୍ତା, ଗାଁ ମୁଣ୍ଡ ରାସ୍ତା

**ଧଳାଚାନ୍ଦି** - *ଖୋ:* (ବି.) : ଏକ ପ୍ରକାର ମାଛ

**ଧଳାମଟା** - *ଖୋ:* (ବି.) : ଏକପ୍ରକାର ଧାନ

**ଧଳା ହାତୀ** - *ସ:* (ବିଂ.) : ବଦ୍ ଖର୍ଚ୍ଚି, ଅନ୍ୟ ଅର୍ଥରେ ପୁଷ୍ଟ ଧୋବ ଧାବଳିଆ ବାବୁ

**ଧସ୍‌କାବାର** - *ସୁବ:* (କ୍ରି.) : କାନ୍ଥ, ଆଡ଼ି ଆଦି ଭାଙ୍ଗିବା, ମାଟି ଉପରୁ ଧସେଇବା

**ଧସ୍‌କି ଯିବା** - *ସ:* (କ୍ରି.) : ଭାଙ୍ଗିଯିବା

**ଧସମ୍** - *ଦେୈ:* (ବି.) : ଧ୍ୱଂସ, ଶେଷ

**ଧସରା** - *ରା:* (ବିଂ.) : ରଙ୍ଗ ଛାଡ଼ିଯାଇଥିବା

**ଧସା** - *ଦେ:* (ବି.) : ମାଟି ଅତଡ଼ା ଖାଇବା

**ଧସେଇ ପଶିବା** - *ଢ:* (କ୍ରି.) : ବଳପୂର୍ବକ ପଶିବା

**ଧସ୍ତା** - *ଦେ:* (ବି.) : ଝଣ୍ଡା

**ଧସ୍ତାଧସ୍ତି** - *ନ:ଦେ:* (ବି.) : ଠେଲାପେଲା, ମରାମରିହେବା

**ଧାଇଁ କିଡ଼ିକିଡ଼ି** - *ପୁ:* (କ୍ରି.ବି.) : ଶୀଘ୍ର ଶୀଘ୍ର, ଧାଇଁକରି

**ଧାଇଁଧୁପି** - *ସ:* (ବି.) : ଦଉଡ଼ା ଦଉଡ଼ି

**ଧାଈ** - *ଅନେ:* (ବି.) : ପ୍ରସୂତି, ପ୍ରସବ କରାଉଥିବା ସ୍ତ୍ରୀଲୋକ, ଧାତ୍ରୀ, ସେବିକା, ନର୍ସ

**ଧାଉଡ଼ିଆ ଟପା** - *ଗଞ:* (ବି.) : ଦୌଡୁଥିବା ବ୍ୟକ୍ତିଦ୍ବାରା ଡ଼ାକସେବା (ପ୍ରାଚୀନ)

**ଧାଉଁଡ଼ି** - *ଚା:* (ବି.) : ଲମ୍ବାମସିଣା

**ଧାଏଡ୍** - *କଳା:ସୁ:* (ବି.) : ଧାଡି, ସିଧା

**ଧାଏଁକଲା** - *ସୁବ:* (ବିଂ.) : ଶୀଘ୍ର

**ଧାକ୍** - *ଦେ:* (ବି.) : ଆଧାର

**ଧାକଡ଼** - *ଗଞ:ଗଦ୍ୟ:* (ବି.) : ଅଯୋଗ୍ୟ

**ଧାକା** - *କଳା:ଗ:ଗଞ:* (ବି.ବିଂ.କ୍ରି.) : ଧମକ, ଡ଼ରାଣି, ସାହସୀ, ମଦ୍ୟ

**ଧାଗ୍** - *ସୁବ:ସ:* (ବି.ବିଂ.) : ସାହସ, ଶକ୍ତି, ଜୋର, ଔଦ୍ଧତ୍ୟ, ଗର୍ବ

**ଧାଙ୍କରା** - *ରା:* (ବିଂ.) : ପତ୍ର ବା ଫଳ ବହୁଳ

**ଧାଙ୍ଗଡ଼ା** - *ଦେ:ଖୋ:ନବ:* (ବି.) : ଭେଣ୍ଡିଆ, ଅବିବାହିତ, ଟୋକା, ଆଦିବାସୀ ଯୁବକ(ଧାଙ୍ଗଡ଼ି-ସ୍ତ୍ରୀ)

**ଧାଙ୍ଗଡ଼ା, ଧାଙ୍ଗିଡ଼ି** - *କୋ:* (ବି.) : ଯୁବକ, ଯୁବତୀ

**ଧାଙ୍ଗରି** - *କନ୍ଧ:ସୁବ:* (ବି.) ଅଭିଆଡ଼ି, ଯୁବତୀ, କିଶୋରୀ

**ଧାଙ୍ଗୁରି** - *ସ:* (ବିଂ.) ବେଶୀଗୋରା ଅର୍ଥରେ ଝିଅମାନଙ୍କୁ କହନ୍ତି

**ଧାଡି** - *ଚା:ମ:* (ବି.) : ମାଈ କୁକୁଡା, ଶ୍ରେଣୀ, ରେଖା, ମାଈ ଛେଳି

**ଧାଡ଼ଙ୍ଗ** - *ଗଞ:* (ବି.) : ଅସଭ୍ୟ, ଜଙ୍ଗଲୀ

**ଧାଡ଼ସିଆ, ଅନ୍ଦାଜିଆ** - *ବୌ:* (ବିଂ.) : ଆନୁମାନିକ

**ଧାଡ଼ିଧୁକୁଡ଼ି** - *ବା:ଗଞ:ଗ:* (ବି.) : ଖେଳ ବିଶେଷ, ଶିଶୁଙ୍କ ଖେଳ, ଦେଶୀୟ ଖେଳ

**ଧାଣ୍ଡରା, ଧେଣ୍ଡରା** - *କୋ:* (ବି.) : ବାଦ୍ୟ ସହ ଘୋଷଣା

**ଧାତାକୁଣ୍ଡା** - *ଗ:* (ବି.) : ନିହାତି ନିର୍ବୋଧ

**ଧାତି** - *ଛ:* (ବିଂ.) : ଶୀଘ୍ର

**ଧାତିଙ୍ଗ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ଧାତୁକୀ** - *ଗ:* (ବି.) : ଗୁଳ୍ମ ବିଶେଷ

**ଧାତୁ ପଡ଼ିବା** - *ଗ:ନ:* (କ୍ରି.) : ଶୁକ୍ର କ୍ଷୟ ହେବା, ଯୌନ ରୋଗ ହେବା

**ଧାତୁରା** - *କେ:* (ବି.) : ଦୁଦୁରା ଗଛ

**ଧାତ୍ରୀକୁଳି** - *ବ:* (ବି.) : ଅଁଳାକୋଳି

**ଧାନ୍ ପେଟା** - *ସ:* (ବି.) : କିଆରିରେ ଅଳ୍ପ ଅଳ୍ପ ଥିବା ଧାନକେଣ୍ଡାର ଗଦା

**ଧାନଅମାର** - *ସଂ:* (ବି.) : ଧାନକୋଠି

**ଧାନ ଭଁସା** - *କେ:* (ବି.) : ଧାନ ସିଝାଇବା

**ଧାନଖଟି** - *ବ:* (ବି.) : ଧାନ ବିକ୍ରୀର ସ୍ଥାନ

**ଧାନ ଘର** - *ଗ:* (ବି.) : ଧାନ୍ୟ କୋଠି, ଅମାର

**ଧାନପୁଛିଆ** - *ଗଦ୍ୟ:* (ବି.) : ଏକ ପ୍ରକାର ମାଛ

**ଧାନ ମିର୍ଚା** - *ସୁବ:* (ବି.) : ଧାନୁଆଁ ଲଙ୍କା

**ଧାନମେଣ୍ଟି** - *ନ:* (ବି.) : ଲକ୍ଷ୍ମୀପୂଜାପାଇଁ ଧାନଶିଶାକୁ ଏକାଠି ବେଣ୍ଟି କରିବା।

**ଧାନୁଆ ମରିଚ** - *ଗଞ:ଗ:* (ବି.) : ଛୋଟ ମରିଚ, କ୍ରୋଧୀ ମଣିଷ ପାଇଁ ଉପମା

**ଧାନୁଆ ମାଳି** - *ନବ:* (ବି.) : ବେକର ଅଳଙ୍କାର (ଧାନ ସଦୃଶ)

**ଧାନୁଆଲଙ୍କା** - *ଖୋ:* (ବି.) : ଏକପ୍ରକାର ଛୋଟ ରାଗଲଙ୍କା

**ଧାନେ** - *ଦେ:* (ବିଂ.) : ଅଳ୍ପରେ, ଧାନ ପରିମାଣ

**ଧାନ୍ଦଲ୍** - *କଳା:* (ବିଂ.) : ସର୍ବଦା ଖାଇବାକୁ ଚାହୁଁଥିବା ବ୍ୟକ୍ତି, ପେଟୁ

**ଧାପ** - *ଅନେ:* (ବିଂ.) : ସାମର୍ଥ୍ୟ, ଝଟ, ଅତି ଅଳ୍ପ ଦୂରତା, ପରାକ୍ରମ, ଅତ୍ୟାଚାର, ପୀଡ଼ନ, କ୍ଷଣି, ମାତ୍ରେ

**ଧାପ୍ସା** - *ମା:* (ବିଂ.) : ଝାପ୍ସା

**ଧାପଟ** - *ଗ:* (ବି.) : ପ୍ରଭାବ

**ଧାପଡ଼ିବା** - *ନବ:* (କ୍ରି.) : ଡରାଇବା, ଦଉଡିବା

**ଧାପ ଦେବା** - *ଦେ:* (କ୍ରି.) : ସାହାସର ସହିତ କାମ କରିବା

**ଧାପ ଧାଉଁଡ଼ି** - *ଗ:* (ବି.) : ଏକ ପ୍ରକାର ଗ୍ରାମ୍ୟ ଖେଳ

**ଧାପୁ** - *ମା:* (ବିଂ.) : ଶୀଘ୍ର

**ଧାପେ** - *ନବ:କେ:ଦେ:ଛ:* (ବିଂ.ବି.) ଅତିଶୀଘ୍ର, ଟିକିଏ ମାତ୍ର, ଅତି ଅଳ୍ପ

**ଧାପେକ୍** - *କନ୍ଧ:* (ବିଂ.) : ଖୁବ୍ ଅଳ୍ପ ବାଟ, ନିକଟ

**ଧାବୁଡ଼ିବା** - *ଗା:* (କ୍ରି.) : ଧାଇଁବା

**ଧାମ** - *ଅନେ:* (ବି.) : ତୀର୍ଥ, ଦମ୍ଭ, ସବଳତା, ଉପସ୍ଥାନ, ସ୍ଥାନ

**ଧାମ ରହିବା** - *ପୁ:* (କ୍ରି.) : ଇଜ୍ଜତ ରହିବା, ବଞ୍ଚିଯିବା

**ଧାମା** - *ଦେ:* (ବି.) : ଢମା

**ଧାୟାଁ** - *ଚୌ:* (ବି.) : ମୃଦଙ୍ଗର ବାମ ପାଖ (ମଧ୍ୟମ ସ୍ୱର ପ୍ରଦାନକାରୀ ପାଖ)

**ଧାର** - *ଅନେ:* (ବିଂ.ବି.) : ଦାଢ, ସ୍ରୋତ, ତୀକ୍ଷ୍ଣ, କରଜ, କଡ଼, ପାର୍ଶ୍ୱ, ସ୍ରୋତ,

**ଧାର ଉଧାର** - *କୋ:ଦେ:* (ବି.) : କରଜ, ଋଣ

**ଧାରକ** - *ଗ:* (ବି.) : ବାଧ୍ୟବାଧକତା

**ଧାରଣା** - *ବା:ଦେ:ନ:* (କ୍ରି.ବି.) : ଦେବତାଙ୍କ ପାଖରେ ଅଧିଆ ପଡିବା, ବିଶ୍ୱାସ, ପୋଲରେ ଥିବା ବାଉଁଶ ବାଡ଼, ଲାଇନ୍

**ଧାର ଧାରିବା** - *ଦେ:* (ବି.) : ଋଣୀ ହୋଇ ରହିବା

**ଧାରନ୍** - *କନ୍ଧ:* (ବି.) : ଧାରଣ, ଧାରଣ କରିବା

**ଧାରା** - *ଦେ:ସୁବ:* (ବି.) : ଅସରା, ନିୟମ, ଜଳ ଧାରା, ଅଶ୍ରୁଧାରା

**ଧାରା ବିବରଣୀ** - *ସଂ:* (ବି.) : ଏକ କଥାକୁ କ୍ରମାନ୍ୱୟରେ କହିବା

**ଧାରିଜ୍** - *ଝା:* (ବି.) : ନିଶ୍ଚିତ

**ଧାରୁଆ** - *ନ:କେ:ନବ:ଗ:ଚୌ:* (ବିଂ.) : ଋଣୀ, ତୀକ୍ଷ୍ଣ ଧାରଯୁକ୍ତ, ଦାଢଯୁକ୍ତ, ଋଣଗ୍ରସ୍ତ

**ଧାରେନ୍** - *କନ୍ଧ:* (ବି.) : ଛାତର ସର୍ବୋଚ୍ଚ ସ୍ତର, ଛାତ ଶୀର୍ଷ

**ଧାର୍** - *କନ୍ଧ:* (ବି.) ସ୍ରୋତ, ଦାଢ, ତୀକ୍ଷଣତ୍ୱ, ଉଧାର

**ଧାର୍ନି** - *କୋ:* (ବି.) : ରାସ୍ତା କଡ଼ରେ ଥିବା ଦେବୀ ପୀଠ ବା ଛୋଟ ପୂଜା ସ୍ଥଳ

**ଧାର୍ବି** - *କୋ:* (ବି.) : ଗ୍ରାମଦେବୀ

**ଧାସ** - *ଅନେ:* (ବି.) : ପାର୍ଶ୍ୱପ୍ରଭାବ, ଉତ୍ତାପ, ତାତି, ତେଜ, ତାପ, ନିଆଁ, ଝାସ, ନିଆଁର ଦାହକ, କିରଣ

**ଧାସି** - *ଦେ:* (ବି.) : ବଳାତ୍କାର ପ୍ରବେଶ କରିବା, ଧସେଇ ପଶିବା

**ଧାସୁଆ** - *ଜୋ:* (ବିଂ.) : ମଇଳା ରଙ୍ଗର

**ଧାଁଆଧୁପା** - *ସ:* (ବି.) : ଲୋକଙ୍କ ବ୍ୟସ୍ତତା କୌଣସି ବିପଦ ସମୟରେ

**ଧାଁସା** - *ଗଛ:* (ବି.) : ଢାଞ୍ଚା, ପ୍ରଥା

**ଧୃଅ** - *ଗ:* (ବି.) : ଦେହ, ଶରୀର

**ଧୃଅନ୍ କରିବା** - *ଅ:* (କ୍ରି.) : ହେଜିବା, ସ୍ଥିର ଭାବେ ମନେପକେଇବା

**ଧୃଅପା** - *କୋ:* (ବି.) : ସ୍ୱାସ୍ଥ୍ୟ, ଶରୀର, ଦେହପା

**ଧୃଆତି** - *ଗଦ୍ୟ:* (ଅ.) : ଏଯାବତ୍

**ଧୃଆନ** - *ଦେ:ନ:* (ବି.) : ଧ୍ୟାନ, ମନନ

**ଧୃକ୍କାର** - *ଢ଼:କେ:ଦେ:* (ଅ.ବି.) : ଗାଳି, ତିରସ୍କାର, ନିନ୍ଦା, ଭର୍ତ୍ସନା

**ଧୃଙ୍ଗମାଳି** - *କେନ୍ଦୁ:* (ବି.) : ମାଦଳ ବଜାଇ ଗୀତ ଗାଇବା

**ଧୃଙ୍ଗା** - *ରା:* (ବି.) : ସାପବିଲ

**ଧୃଙ୍ଗାସ** - *ଦେ:* (ବି.) : ଝାରି ହୋଇ କଟୁ କଥା କହିବା

**ଧୃଟ** - *ଦେ:* (ବିଂ.) : ନିର୍ଲଜ

**ଧୃମା** - *ରା:ଦେ:ଗ:* (ବିଂ.) : ଗତିରେ ନ୍ୟୁନତା, ଅତିଧୀର, କ୍ଷୀଣ, ବିଳମ୍ବ

**ଧୃମେଇ** - *କେ:* (କ୍ରି.) : ଧୀରେ ଧୀରେ

**ଧୃରତି** - *ଦେ:* (ବି.) : ତିଷ୍ଠିବା

**ଧୃରଯ** - *ଢ଼:* (ବି.) : ଧୈର୍ଯ୍ୟ

**ଧୃସା** - *ଯା:* (ବି.) : ନଜର, ଦିଶା

**ଧୃଂଗିଆ** - *କଳା:* (ବି.) : ଭାଂଗ, ମାଦକ ଦ୍ରବ୍ୟ ବିଶେଷ

**ଧୀବର** - *ସୁବ:ଦେ:* (ବି.) : କେଉଟ ଜାତି

**ଧୀମା** - *ଗଢ଼:ଖୋ:* (ବି.) : ଅଳସୁଆ, ମଠ

**ଧୀରା** - *ସୁବ:* (ବିଂ.) : ଧୀର ସ୍ୱଭାବ ଯୁକ୍ତ ଧୀରେ ଧୀରେ କାମ କରୁ ଥିବା ଲୋକ

**ଧୁଆଁ** - *ଗଢ଼:ଗଦ୍ୟ:* (ବି.) : ଧୂଆଁପତ୍ର, ବିଡ଼ି, ପିକା

**ଧୁଆଁ ଧୁପା** - *ଅ:* (କ୍ରି.ବି.) : ଦଉଡ଼ା ଦଉଡ଼ି, ଧାଁ ଦଉଡ଼

**ଧୁଇବାର** - *ସୁବ:* (କ୍ରି.) : ଧୋଇବା

**ଧୁଇଲ୍** - *ନୂ:ସ:* (ବି.) : ଧୂଳି

**ଧୁଉଚି** - *ଗ୍:* (କ୍ରି.) : ଧୋଉଚି

**ଧୁକ୍‌ଡି** - *କଳା:* (ବିଂ.) ଅତିପୁରୁଣା, ଭଗ୍ନପ୍ରାୟ, ନଷ୍ଟପ୍ରାୟ

**ଧୁକ୍ ଧୁକି** - *ଦେ:ସ:ଝା:* (ବି.କ୍ରି.) : କଲିଜା, ହୃତ୍‌ପିଣ୍ଡ, କମାର ଶାଳର ପବନମୁଣା, ଧକ ଧକ କରୁଥିବା

**ଧୁକ୍‌ନା** - *ବୌ:କଳା:ସୁବ:* (ବି.) : ବିଞ୍ଚଣା, ହାତପଙ୍ଖା

**ଧୁକ୍‌ପୁଚ୍** - *କଳା:ଦେ:* (ବିଂ.ବି.) : ମନର ଏକ ଆନ୍ଦୋଳିତ ଅବସ୍ଥା, ଆଶା ଓ ନିରାଶା ଭାବ, ଉଦବେଗ ଅବସ୍ଥା, ଅସ୍ଥିର, ଦ୍ୱନ୍ଦ

**ଧୁକ୍‌ବାର** - *ସୁବ:* (କ୍ରି.) : ପବନ ବୋହିବା, ପବନ କରିବା

**ଧୁକନା** - *ସ:* (ବି.) : ବିଞ୍ଚଣା

**ଧୁକା** - *ଅନେ:* (ବି.ବିଂ.) : ପବନ, ଝଡ଼, ବତାଶ, ମାଛତରକାରୀ ପ୍ରସ୍ତୁତିର ଏକ ପଦ୍ଧତି

**ଧୁକା ଗରଡ଼ି** - *ସ:ଅ:* (ବି.) : ଝଡ଼ ତୋଫାନ

**ଧୁକା ଗରେଲ୍** - *ସ:* (ବି.) : ଜୋର୍‌ରେ ପବନ ବହିବା, ଝଡ଼

**ଧୁକା ବାଜ୍** - *ବୌ:* (ବିଂ.) : ଧୋକା ଦେବା ଲୋକ, ଶଠ

**ଧୁକିବା** - *କଳା:ଦେ:ବୌ:* (କ୍ରି.) : ବିଞ୍ଚିବା, ପଙ୍ଖା କରିବା

**ଧୁକୁଡି** - *ନବ:କୋ:ଭ:* (ବିଂ.) : ସଂପୂର୍ଣ୍ଣ ନଷ୍ଟ, ବାଦ୍ୟବିଶେଷ

**ଧୁକୁଡ଼ା** - *ମା:* (ବିଂ.) : ଜୀର୍ଣ୍ଣଶୀର୍ଣ୍ଣ
**ଧୁକୁଡ଼ୀ** - *ଭା:* (ବିଂ.) : ଅତିବୁଢୀ
**ଧୁକୁଧୁକୁ ହେବା** - *ଖୋ:* (କ୍ରି.) : ଆସନ୍ନ ମୃତ୍ୟୁ
**ଧୁକୁର ପୁଚିଆ** - *ସୁବ:* (ବିଂ.) : ଘୁଞ୍ଚୁପୁଞ୍ଚିଆ ଲୋକ
**ଧୁକୁର୍ ପୁଚୁର୍** - *କଳା:ସ:* (ବିଂ.) : ଆଶା ଓ ନିରାଶା ଭିତରେ ଗତିକରିବା, ମନକୁ ଛୋଟ ଓ ବଡ କରିବା, ଉଦ୍‌ବେଗ ଅବସ୍ଥା
**ଧୁଙ୍ଗାବାର** - *ସୁବ:* (କ୍ରି.) : ମଶାଧୂଆଁ ଦେବା ମୂଷା ଗାତରେ ଧୂଆଁ ପୂରେଇବା
**ଧୁଙ୍ଗିଆ** - *ଅନେ:* (ବି.) : ଧୂଆଁପତ୍ର, ଧୂଆଁ ଦେବା, ନାଶ, କୁହୁଳି କୁହୁଳି ଧୂଆଁ ହେବା
**ଧୁଙ୍ଗୁରା** - *ଅ:* (ବି.) : ଧୂଆଁ
**ଧୁଡ଼କା** - *ଅ:* (ବି.) : ତୋରଡ଼ା, ଫଳବିଶେଷ
**ଧୁଡ଼ିକି** - *ଭା:* (ବି.) : ଆଦିବାସୀ ବାଦ୍ୟ
**ଧୁଢୁକିନି**- *ଗ:* (ଅ.) : ହଠାତ୍
**ଧୁଣ** - *ଦେ:* (ବି.) : ଧନୁ
**ଧୁଣ୍ଡି** - *କୋ:* (ବି.) : ମାଛ ରଖିବାର ବାଉଁଶ ନିର୍ମିତ ପାତ୍ର
**ଧୁଣ୍ଡବା** - *ବୌ:* (କ୍ରି.) : ଖୋଜିବା
**ଧୁଣ୍ଡରୀ** - *ଗ:* (ବି.) : ମାଛଧରିବା ଦେଶୀ ଯନ୍ତା, ଖେଳେଇ ଯନ୍ତା
**ଧୁଣ୍ଡା** - *ଅ:* (ବିଂ.) : ମୋଟା
**ଧୁଣ୍ଡାଧୁଣ୍ଡି** - *ଦେ:* (ଅ.ବି.) : ଖୋଜାଖୋଜି
**ଧୁଣ୍ଡି** - *ଭା:* (ବି.) : ମାଛ ରଖିବା ମୁଗୁରା
**ଧୁଣ୍ଡି ହେବା** - *ବୌ:* (କ୍ରି.) : ଏଣେ ତେଣେ ଖୋଜି ବୁଲିବା
**ଧୁଣ୍ଡୀ** - *ଜ:* (ବି.) : ଗାଳିବିଶେଷ
**ଧୁତ୍‌ମେଇ** - *ବ:* (ବିଂ.କ୍ରି.) : ଲଗେଇ ହେବା, ଲାଗି ଆସିବା
**ଧୁତି** - *ଜ:ବୌ:ଭା:କଳା:* (ବି.) ଧୋତି, ଲୁଗା, ବସ୍ତ୍ର ବିଶେଷ, ଖଦୀ
**ଧୁତୁଡ଼ା** - *ଦେ:* (ବିଂ.) : ଧତଡ଼ା, ଭଙ୍ଗାତୁଟା
**ଧୁତୁମ୍** - *ସୁବ:ସ:* (ବିଂ.) : ମୋଟା ବୁଦ୍ଧିଆ, ମୋଟା ଲୋକ
**ଧୁତୁରା** - *ବା:ଭା:* (ବି.ବିଂ.) : ଦୁଦୁରା, ବହୁତ ବ୍ୟବହୃତ
**ଧୁଧିଲା** - *ଦେ:* (ବିଂ.) : ଧୁଣ୍ଡା, ମୋଟା
**ଧୁଧୁଖରା** - *ଜ:ଖୋ:* (ବିଂ.) : ପ୍ରଚଣ୍ଡଖରା, ପ୍ରବଳ ଖରା
**ଧୁନ୍** - *ଦେ:* (ବି.) : ଧନୁ, କମ୍ପନ
**ଧୁନ୍‌କାଣ୍** - *କଳା:* (ବି.) : ଧନୁ ଓ ଶର
**ଧୁନ୍ କେଲି** - *ବୌ:* (ବି.) : ଫମ୍ପା ମାଠିଆ ବଜାଇ ଏକ ସ୍ପଷ୍ଟ ସ୍ୱର
**ଧୁନ୍‌ମୁଡି** - *କଳା:* (ବି.) : ଶଗଡ ଦଣ୍ଡାର ଅଗ୍ରଭାଗ
**ଧୁନି** - *ନ:ସ:ଦେ:* (ବି.) ନିଆଁକୁଣ୍ଡରେ ଅଗ୍ନିଶିଖା, ଯଜ୍ଞକୁଣ୍ଡରେ ପ୍ରଜ୍ୱଳିତ ଅଗ୍ନି, ସନ୍ୟାସୀମାନଙ୍କର ଯଜ୍ଞାଗ୍ନି

**ଧୂନିଖାପିବା** - *ସଂ* (କ୍ରି.) : ବଡ କାଷ୍ଠକାଳି ଅଗ୍ନିକୁ କିଛି ସମୟ ଜାଳି ରଖିବା

**ଧୂନିବା** - *ସୁ* (କ୍ରି.) : ତୁଳା ଭିଣିବା

**ଧୂନ୍‌ଦ୍‌ରାମୁହାଁ** - *ବୌ* (ବି.) ମୁହଁ ଫୁଲାଉଥିବା ସ୍ତ୍ରୀଲୋକ

**ଧୂନ୍ଦି** - *ଢ* (ବି.) : ହଇରାଣ

**ଧୂନ୍ଦିଆ** - *ଦେ* (ବିଂ.) : କୁହୁଳା

**ଧୂନ୍ଦୁରେଇବା** - *ଦେ* (କ୍ରି.) : ମୁହଁ ଫୁଲେଇବା

**ଧୂନ୍ଦୁଳ** - *ଦେ* (ବି.) : ଘୁଙ୍ଗୁଳିବା

**ଧୂପ୍‌ଖାଡ଼ି, ଧୂପ୍‌କାଠି** - *କୋ* (ବି.) : ଧୂପବତୀ, ଅଗରବତୀ

**ଧୂପିବା** - *ଗ* (କ୍ରି.) : ଧମକ ଦେଖାଇବା, ଧମକ ପୂର୍ଣ୍ଣ ଗାଳି ଦେବା

**ଧୂପୁଣି** - *କୋ* (ବି.) : ଝୁଣା

**ଧୂପେଇବା** - *ରା* (କ୍ରି.) : ଆଘାତ ପାଇଁ ଆଗେଇଯିବା

**ଧୂବ** - *ମ.ରା* (ବି.) : ଧୋବ, ଧଳା

**ଧୂବ୍‌ଦାହାଲିଆ** - *ବୌ* (ବି.) : ଫୁଲାଫାଙ୍କିଆ

**ଧୂବ୍‌ନି** - *ବୌ* (ବି.) : ଧୋବଣୀ

**ଧୂବ୍‌ଲା** - *ଅନେ* (ବିଂ.) : ଧଳା, ସଫା, ଶ୍ୱେତ, ଧୋବଲା

**ଧୂବ୍‌ଲାପତଳା** - *ବୌ* (ବିଂ.) : ଅତି ପତଳା

**ଧୂବ୍‌ଲୀ** - *ବୌ* (ବିଂ.) : ଗୋରୀ

**ଧୂବା** - *ଅନେ* (ବି.) : ଧୋବା

**ଧୂବୁଣା** - *ବ* (ବି.) : ଢମଣା

**ଧୂବୁଣା ହାଡ଼** - *ବ* (ବି.) : ଗୋଡ଼ର ହାଡ଼

**ଧୂବେନ୍** - *ସୁବ.ନୁ.ସ* (ବି.) : ଧୋବଣୀ, ଧୋବା ସ୍ତ୍ରୀ

**ଧୂବେଲ୍** - *କଳା* (ବିଂ.) : ଧବଳିମା, ଶୁକ୍ଳତ୍ୱ

**ଧୂମ୍** - *ସୁବ.ଗ* (ବିଂ.ଅ.) : ବହୁତ, ଅତିଶୟ

**ଧୂମ୍‌କା ପାଉଁଶ** - *କୋ* (ବି.) : ଗରମ ପାଉଁଶ

**ଧୂମ୍‌ଡା** - *କୋ* (ବିଂ.) : ମୋଟା

**ଧୂମ୍‌ଧାମ୍** - *ଅନେ* (ଅ.) : ଆନନ୍ଦ ଉଲ୍ଲାସ, ଆଡମ୍ବର ଗହଳ

**ଧୂମ୍‌ସା** - *କଳା.ଦେ* (ବି.) : ଅଧିକ ଭୋଜନ କିମ୍ବା ଅନ୍ୟ କାରଣରୁ ପେଟ ଫମ୍ପେଇବା, ରଗଡ଼

**ଧୂମା** - *ଅନେ* (ବିଂ.) : ମୋଟା, ପୃଥୁଳକାୟ

**ଧୂମାଧୂମ** - *ନବ* (ବି.) : ଭୀଷଣ ଗଣ୍ଡଗୋଳ

**ଧୂମାପୋଲ୍** - *କଳା* (ବି.) : ଧାନ ପରି ଦେଖାଯାଉଥିବା ପୋଲ ବା ଅଗାଡି

**ଧୂମା ଲେଙ୍ଗିଆ** - *ନୁ* (ବିଂ.) : ଅଳସୁଆ

**ଧୂମୁକତ** - *ଗ* (ବିଂ.) : ଅଯଥା ଗହଳ, ଅକାରଣ କୋଳାହଳ

**ଧୂମୁକା** - *ରା* (ବି.) : ଝୁମୁକା

**ଧୂମୁସା** - *ଗ* (ବିଂ.) : କୁରୂପ,କଦାକାର

**ଧୂମୁସେଇବା** - *ବ* (କ୍ରି.) : ଢିଙ୍କି ପାହାର ଦ୍ୱାରା ଧାନ, ଚାଉଳ କୁଟିବା

**ଧୂମ୍ବା** - *ରା* (ବି.) : ଲିଭିବା

**ଧୂରକୁଟ** - *ସୁ.ସୁବ* (ବିଂ.ବି.) : ପ୍ରବଳ, ନିସ୍ତୁକ, ନଷ୍ଟ କରିବା, ଅଯତ୍ନ

**ଧୂରକୁଟା** - *ସୁ* (ବିଂ.) : ପ୍ରବଳ ପ୍ରହାର

**ଧୁରନ୍ଧର** - *ଦେ:* (ବି.) : ପାରଙ୍ଗମ

**ଧୁରମୁସ୍** - *ଅନେ:* (ବି.) : ମାଟିଗୋଡ଼ି ଦେଇ ସମତୁଲ କରିବା ଲୁହାର ଓଜନିଆ ଉପକରଣ। ଏଥିରେ କାଠବେଣ୍ଟିଏ ଲାଗିଥାଏ, ମୂଷଳ

**ଧୁରା** - *ଗ:* (ବି.) ଶଗଡ଼ ଯୁଆଳିରେ ବନ୍ଧାଯାଉଥିବା ଚମ ଦଉଡ଼ି

**ଧୁରିଆ** - *ଚ:* (ବିଂ.) : ଦୂର, ଦୁରିଆ

**ଧୁରୁମୁସିଆ ପାଉଁଶ** - *କୋ:* (ବି.) : ଅଙ୍କ ନିଆଁଥିବା ପାଉଁଶ

**ଧୁରୁଁ** - *କଳା:* (ଅ.) : ଦୂରରୁ, ଦୂରବର୍ତ୍ତୀ ଅଂଚଳରୁ

**ଧୁଲ୍ କୁଟା** - *ବୌ:* (ବି.) : ଧୂଳିଉଡ଼ାଇ, ପ୍ରବଳ ଭାବରେ ଭଂଗାରୁଜା କରିବା

**ଧୁଳିଆ ଗୁଣ୍ଡା** - *ଗ:* (ବିଂ.) : ଭାଗଚାଷ ସଂପର୍କିତ, ରୟତ ଓ ଭୂମି ମାଲିକର ଭାଗ

**ଧୁଳି ଉଡ଼ାଇବା** - *ଗ:* (କ୍ରି.) : ଧର୍ମକୁ ସାକ୍ଷୀ ରଖିବା, ଅସହାୟ ଭାବ ପ୍ରକାଶ କରିବା

**ଧୁଳିଦଣ୍ଡ** - *ଗ:* (ବି.) : ଗଂଜାମର 'ଦଣ୍ଡ' ନାମକ ଲୋକ ନୃତ୍ୟର ମଧ୍ୟାହ୍ନ କାର୍ଯ୍ୟକ୍ରମ

**ଧୁଳିମଳିରୁ ବାହାର** - *ଗ:* (ବି.) : ଦାୟିତ୍ୱ ନଥିବା, ସ୍ୱାର୍ଥପର ମଣିଷ

**ଧୁଷ** - *ଗ:କଳା:* (ବି.) : ଲେଞ୍ଜରା, ଧୂଳି, ଧାନ ବା ପାଳରୁ ବାହାରୁଥିବା ଗୁଣ୍ଡ

**ଧୁଷରା** - *କୋ:* (ବିଂ.) : ମଳିରଙ୍ଗ

**ଧୁଷୁରା** - *ଢ:* (ବି.) : ଧାନକିସମ

**ଧୁସା** - *ଗଢ:* (ବି.) : ସ୍ଥୁଳକାୟ ବ୍ୟକ୍ତି

**ଧୁସ୍ତର** - *ଅ:* (ବି.) : ଧୁଦୁରା ଗଛ

**ଧୁଂଗିଆ** - *ଗଦ୍ୟ:କଳା:* (ବିଂ.) : ଧୂଆଁ ପତ୍ରରେ ତିଆରି ପିକା, ଭାଂଗ, ଧୂଆଁପତ୍ର ଓ ଚୂନ ମିଶ୍ରିତ ଗୁଣ୍ଡ

**ଧୁଂପ** - *ନବ:* (ବି.) : ଛେପ

**ଧୂଆ ଚିଙ୍ଗରୀ** - *ବୌ:* (ବି.) : ଅତି ସାନ ଚିଙ୍ଗୁଡ଼ି

**ଧୂଆମୂଳା** - *ଗ:* (ବିଂ.) : ସଚ୍ଚାବ୍ୟକ୍ତି, ବାସ୍ତବ ବ୍ୟକ୍ତିତ୍ୱ

**ଧୂଆଁ** - *କଳା:ଦେ:* (ବି.) : ଧୂମ, କୁହୁଳା, ଧୂଆଁପତ୍ର, ଦୋକତା, ଭାଙ୍ଗ, କୁହୁଳା

**ଧୂଆଁକସ୍** - *ଅ:* (ବି.) : ଧୂଆଁ ବାହାରିବା ନଳ

**ଧୂଆଁ କାଳି** - *ଅ:* (ବି.) : ଅଳନ୍ଧୁ, ଅଳିଆ

**ଧୂଆଁ ଦୁଡ଼ିଆ** - *ଚ:* (ବିଂ.) : ଧୂଆଁଳିଆ

**ଧୂଉଲ** - *ସୁ:କଳା:* (ବି.) : ଧୂଳି, ମୃତ୍ତିକା ରଜ

**ଧୂଖାଡ଼ି** - *ବୌ:* (ବି.) : ଧୂପକାଠି

**ଧୂଙ୍ଗିଆ** - *ବୌ:* (ବି.) : ଧୂମପାନ

**ଧୂଡୁକି**- *ଗ:* (ବି.) : ଏକ ପକ୍ରାର ବାଦ୍ୟ ଯନ୍ତ୍ର

**ଧୂଣା** - *ମ:* (ବି.) : ଝୁଣା

**ଧୂନକେଲ** - *ସୁବ:ସୁ:* (ବି.) : କୁଲା ଓ ଧନୁର

ବାଦ୍ୟଯନ୍ତ୍ର, ଢଣକୋଇଲା, ଢଣ କୋଇଲା

**ଧୂନି** - *ଦେ:ଅ:* (ବି.) : କମ୍ପନ, ନିଆଁ

**ଧୂନ୍ଧି** - *ବୌ:* (ବି.) : ଘୂର୍ଣ୍ଣିଝଡ଼

**ଧୂପ** - *ଖୋ:ନୂ:ଦେ:* (ବି.) ଦେବୀ ଦେବତାଙ୍କ ପାଖରେ ବ୍ୟବହାର କରାଯାଉଥିବା ଏକ ପ୍ରକାର ସୁଗନ୍ଧଯୁକ୍ତ ପଦାର୍ଥ, ଝୁଣା, ସୁଗନ୍ଧଦ୍ରବ୍ୟ, ଧୂଆଁ

**ଧୂପଦାନୀ** - *ନୂ:କେ:ନ:* (ବି.) : ଯେଉଁଥିରେ ଧୂପ ଦିଆଯାଏ, ଧୂପାଳି

**ଧୂପିବା** - *ଗଡ:* (କ୍ରି.) : ମାରି ଗୋଡ଼ାଇବା

**ଧୂମ୍** - *ଅ:କେ:ଦେ:* (ବିଂ.ଅ.ବି.) : ଜାକ୍‌ଜମକ, ପ୍ରବନ୍ଧ, ଆଡମ୍ବର ସହ, କୋଳାହଳ

**ଧୂମ୍‌ସା** - *ମ:ଦେ:* (ବି.) : ନାଗରା, ଧୂମ୍‌ସୀ, ମାଗରା, ବାଦ୍ୟର ତାଳ

**ଧୂମକେତୁ** - *ଦେ:* (ବି.) : ଲଞ୍ଜାତାରା

**ଧୂମ ଧକ୍କା** - *ସୁବ:ଦେ:* (ବିଂ.ବି.) : ପ୍ରଚୁର, କୋଳାହଳ ଶବ୍ଦ

**ଧୂମାଡ୍** - *ଅ:* (ବି.) ଖୁନ୍ ଖରାପ, ଅରାଜକତା

**ଧୂମାଧୂମି** - *ଗଡ:* (ବି.) : ଉତ୍ପାତ, ଝଂଝାଳ

**ଧୂମାଈ** - *ସୁ:ବୌ:* (ବିଂ.) : ବହୁଳ, ନିସ୍ତୁକ, ଅଧିକ

**ଧୂମାଳ** - *ଖୋ:ଦେ:* (ବିଂ.ବି.) : ବାଲିଝଡ଼, ତୋଫାନ୍

**ଧୂମିଳ ପଟା** - *ସ:* (ବି.) : ମିଷ୍ଟବୋର୍ଡ

**ଧୂମୀ** - *ଗଡ:* (ବି.) : ମୋଟୀ ସ୍ତ୍ରୀ

**ଧୂର** - *ବୌ:ଦେ:କଳା:ସୁ:* (ବି.ବିଂ.) : ଦୂର

**ଧୂରଲା** - *ସୁ:* (ବିଂ.) : ଧୂଳିପୂର୍ଣ୍ଣ

**ଧୂରିଆ** - *ସୁ:ସୁବ:* (ବି.ବିଂ.) : ଜାଗା, ଦୂର

**ଧୂରୁ** - *କୋ:* (ବିଂ.) : ଦୂର,ଦୀର୍ଘପଥ

**ଧୂରୁତେ** - *ଅ:* (ବିଂ.) : ଧୂର୍ତ୍ତ, ଚାଲାକ

**ଧୂର୍ତ୍ତ ମଣିଷ** - *ସ:* (ବିଂ.) : ଚକ୍ରାନ୍ତକାରୀ ମଣିଷ, ଦୋ'ମୁହାଁ ନାରଦ

**ଧୂର୍ମୁଷ** - *ଅନେ:* (ବି.) : କାଠଖଣ୍ଡ ବା ଲୁହାର ପିଟଣା, ଚଟାଣ ନିର୍ମାଣ ବେଳେ ବ୍ୟବହୃତ

**ଧୂର୍** - *କଳା:* (ବିଂ.) : ଦୂର, ଦୂରବର୍ତ୍ତୀ

**ଧୂଲ୍** - *କଳା:* (ବି.) : ଧୂଳି

**ଧୂଲ୍‌କୁଟା** - *ବୌ:* (ବିଂ.) : ଧୂଳି ଉଡ଼ାଇ, ପ୍ରବଳ, ବହୁତ

**ଧୂଲ୍‌କୁଟା ପିଟାନ୍** - *ବୌ:* (ବି.) : ପ୍ରବଳ ମାଡ଼ ପ୍ରଦାନ

**ଧୂଳ୍‌ଧୂଳା** - *ଦେ:* (ବି.) : ଗୁଣ୍ଡ

**ଧୂଳା ଉଡ଼ିବା** - *ଅ:* (ବିଂ.) : ଧୂଳିସାତ ହେବା

**ଧୂଳା ଉଡ଼େଇ ଦେବା** - *ସୁ:* (କ୍ରି.) : କିଛି ଚମକପ୍ରଦ କଥା କରି ଦେଖେଇ ଦେବା

**ଧୂଳି** - *ଦେ:ନ:* (ବି.) : ବାଲି, ମାଟି, ମଇଳା, ମଇଳାଗୁଣ୍ଡ, ମାଟିଗୁଣ୍ଡ

**ଧୂଳିଆ ଦଣ୍ଡ** - *ନ:* (ବି.) : ଦଣ୍ଡଯାତ୍ରାର ମଧ୍ୟାହ୍ନ ଦଣ୍ଡ, ଦଣ୍ଡୁଆମାନଙ୍କ ଦଣ୍ଡ ନୃତ୍ୟ

**ଧୂଳିଆ ପୂଜା** - *ଦେ:* (ବି.) : ଖରାଦିନେ ଗ୍ରାମ ଦେବତାଙ୍କ ପୂଜା

**ଧୂଳି ଝାଡ଼ିବା** - *ସଂ:* (କ୍ରି.) : ଦୋଷ ଛଡେଇବ

**ଧୂଳି ଧୂସର** - *ଦେ:ଅ:* (ବି.ବିଂ.) : ମଇଳା, ବିବର୍ଣ୍ଣ

**ଧୂଳି ମଳି** - *ଦେ:* (ବି.) : ସାମାନ୍ୟ ମାତ୍ର ସନ୍ଦେହ

**ଧୂଳି ସାତ୍** - *ଦେ:* (ବି.) : ମାଟିରେ ମିଶିବା

**ଧୂଷ** - *ନ:* (ବି.) : ଧାନର ଶେଷ କ୍ଷୁଦ୍ର ମଇଳା ଗୁଣ୍ଡ

**ଧୂସର ଧୂମା** - *ଦେ:* (ବିଂ.) : ମୋଟା, ଗେଧା

**ଧୂସରିଆ** - *ନ:* (ବିଂ.) : ପାଣ୍ଡୁରିଆ

**ଧୂସା** - *କେ:* (ବିଂ.) : ମୋଟା, ସ୍ଥୂଳକାୟ

**ଧୂସି** - *ଚ଼:* (ବି.) : ଅଗାଡ଼ି

**ଧୂସିଯିବା** - *ଚ଼:* (କ୍ରି.) : ବେଶୀ ସାର ପାଇ ଗଛ ବଢିଗଲେ

**ଧେଙ୍ଗଡ଼ି** - *ନ:* (ବି.) : ଏକ ପ୍ରକାର ଛତୁ

**ଧେଡ଼** - *ଚ଼:ରା:ଗଞ:* (ବି.ବିଂ.) : ଏକ ପ୍ରକାର ଗାଳି, ମୋଟା ବୁଦ୍ଧିଆ, ମୂଲ୍ୟହୀନ

**ଧେଡେଙ୍ଗୀ** - *ପୁ:* (ବିଂ.) : ପତଳା ମହିଳା

**ଧେଡ଼ି** - *ଖୋ:* (ବିଂ.) : ସ୍ୱାସ୍ଥ୍ୟହୀନା(ସ୍ତ୍ରୀ)

**ଧେଡ଼ିଆ** - *ନ:କୋ:* (ବିଂ.) : କଙ୍କାଳସାର (ଲୋକ), ଛିଣ୍ଡୁନଥିବା

**ଧେଢୁଆ** - *ଚ଼:* (ବି.) : କଉଡ଼ି ପରି ଚିହ୍ନ ଥିବା, ସାପ, ଧଣ୍ଡସାପ

**ଧେଢ଼େଙ୍ଗା** - *ପୁ:* (ବିଂ.) : ଅତି ପତଳା ଲୋକ

**ଧେଣ** - *ନବ:* (ବି.) : ବେଣ

**ଧେଣି** - *କୋ:* (ବି.) : ମକା ମଂଜି ବାହାର କଲାପରେ ରହିଥିବା ଅଂଶ

**ଧେଣ୍ଡ** - *କଝ:ବୌ:* (ବି.) : ଧଣ୍ଡ ସାପ

**ଧେଣ୍ଡା** - *ବୌ:* (ବି.) : ନାଡ଼

**ଧେଣ୍ଡୁରା** - *ଢ:କେନ୍ଦୁ:ଖୋ:ଗ:* (ବି.) ଡେଙ୍ଗୁରା, ଡିଣ୍ଡିମ, ନାଗରା, ପ୍ରଚାର କରିବା

**ଧେଡ୍‌ଡେରିକା** - *ଗଞ:ଖୋ:* (ଅ.ବି.) : ଅବଜ୍ଞା ସୂଚକ ଧ୍ୱନ୍ୟାତ୍ମକ ଶବ୍ଦ

**ଧେୟା** - *ଗ:* (ବି.) : ମୃଦଙ୍ଗ ତଥା ବାଦ୍ୟର ଡାହାଣ ପାର୍ଶ୍ୱ

**ଧେର** - *ଚ଼:* (ବି.) : ଦେହର

**ଧେରଡ଼ା** - *ଅ:* (ବିଂ.) : ଶୁଖିଲା

**ଧେର୍‌ନା** - *କଳା:* (କ୍ରି.) : ଧର, ଧରିବା, ଧରିବି

**ଧୋଇଆ** - *ନ:* (ବି.) : ତଳ ପାଣିଅଞ୍ଚଳ, ବନ୍ୟାକ୍ଲିଷ୍ଟ ଅଞ୍ଚଳ

**ଧୋଓରା ମାଟି** - *ଅ:* (ବି.) : ବର୍ଷାପାଣିରେ ଧୋଇ ହୋଇଯାଉଥିବା ମାଟି

**ଧୋକଡ଼** - *ଗଦ୍ୟ:ଦେ:* (ବି.ବିଂ.) : ଅଙ୍ଗଛୁ, ବୁଢା, ବାରବୁଲା

**ଧୋକଡ଼ା ଧୋକଡ଼ି** - *ଗଞ:* (ବି.) : ବୁଢାବୁଢୀ

**ଧୋକା** - *ଖୋ:ଛେ:* (କ୍ରି.ବିଂ.) : ଭରଷା ଦେଇ ଠକିଦେବା, ବିଶ୍ୱାସ ଘାତକରିବା, ବେଇମାନୀ

**ଧୋଜଭଙ୍ଗ** - *ନ:* (ବି.) : ପୁରୁଷର ପୌରୁଷ ଲୋପ ରୋଗ, ଧ୍ୱଜଭଙ୍ଗ

**ଧୋଡ଼କା** - *ଗ:* (ବି.) : ଶିଥିଳ, ଫମ୍ପା

**ଧୋଡ଼ା** - *ନ:ଗ:* (ବି.) : ଉଭୟପଟେ ଢିପ ଜମି ମଝିରେ ଯାଉଥିବା ନାଳ, ମୁହାଁଣ

**ଧୋତ୍‌ଡ଼ା** - *କଳା:* (ବିଂ.) ଧାର ନଷ୍ଟ ହୋଇଥିବା, ଧତଡ଼ା, ପୁରୁଣା, ଛିଣ୍ଡା

**ଧୋତାଡ଼ିବା** - *ନ:* (କ୍ରି.) ଜୋରକରି ମାଡ଼ଦେବା

**ଧୋତି** - *ଦେ:* (ବି.) : ଧଳା ଲମ୍ବା କପଡ଼ା, ଯାହା ଅଣ୍ଟାରେ ପିନ୍ଧାଯାଏ

**ଧୋତେଡ଼େଇକି** - *ନ:* (ବି.) : ବହୁଦିନଧରି ପିନ୍ଧିବା

**ଧୋଧୋଲୋ** - *ସ:* (ବିଂ.) : ବଡ଼ ପେଟ ଧାରୀ, ଅନ୍ତଲ ପେଟ ଧାରୀ

**ଧୋନ୍ଦଳ** - *ଦେ:* (ବିଂ.) : ପୃଥୁଳ

**ଧୋପ** - *ଜ:* (ବି.) : ଧୁକ, ମାଛର ଆଧାର, ଥୋପ

**ଧୋପଖାଡ଼ି** - *ନୂ:* (ବି.) : ଧୂପକାଠି

**ଧୋବ** - *ଗ:ସୁ:ସୁବ:* (ବି.) : ଧଳା, ଶ୍ୱେତ

**ଧୋବଣୀ** - *ନ:* (ବି.) : ଧୋବାର ସ୍ତ୍ରୀ

**ଧୋବଧାଉଳିଆ** - *ନ:* (ବି.) : ଧଳା ପିନ୍ଧୁଥିବା ଲୋକ, ରାଜନେତାଗଣ

**ଧୋବଲୁଚେଇ** - *କଳା:* (ବି.) : ଧଳାରଙ୍ଗର ଦେଶୀ ଧାନ ବିଶେଷ

**ଧୋବଳା** - *ଅ:* (ବି.) : ଧଳା

**ଧୋବା** - *ନୂ:ନ:ଦେ:* (ବି.) ରଜକ, ଲୁଗାସଫା କରିବା ଲୋକ

**ଧୋବାତୁଠ** - *ଖୋ:ଭ:ଯା:କେ:* (ବି.) : ଯେଉଁ ତୁଠରେ ଧୋବାମାନେ ଲୁଗା ସଫାକରନ୍ତି

**ଧୋବା ଭଣ୍ଡାରି ଅଟକ** - *ଦେ:* (ବି.) : ଏକ ଘରିଆ, ବାସନ୍ଦ

**ଧୋବି** - *ଦେ:* (ବି.) : ଏକ ପ୍ରକାର ଗଛ

**ଧୋବିଲା** - *ନ:* (ବିଂ.) : ଧଳାରଙ୍ଗର

**ଧୋବେନ** - *ସୁ:* (ବି.) : ଧୋବଣୀ

**ଧୋବେଲ୍** - *କଳା:* (ବିଂ.) : ଧବଳମୟ, ଧବଳିମା

**ଧୋବ୍ କୁହୁଲା** - *କଳା:* (ବି.) : ଝୁଣା, ଧୂପ

**ଧୋୟା** - *ଖୋ:* (ବି.) : ଯେଉଁସବୁ ଅଞ୍ଚଳରେ ବର୍ଷାସମୟରେ ବା ବନ୍ୟାରେ ଫସଲ ନଷ୍ଟ ହୁଏ

**ଧୋରଣା** - *ଗଦ୍ୟ:* (ବିଂ.) : ଛିଣ୍ଡା

**ଧଁ** - *କଳା:* (କ୍ରି.) : ଧାଅଁ, ଦୌଡ଼

**ଧଁକିଆ** - *ଗଜ:* (କ୍ରି.) : ଧକ୍କା ମାରିବା

**ଧଁନ୍ଦା** - *ନବ:* (ବି.) : ଜୀବିକା, ବେପାର

**ଧଁସିମାରବାର** - *ସୁବ:* (କ୍ରି.) : ହାଲିଆ ହୋଇ ଧକେଇବା

**ଧଁସି ହେବା** - *ସ:ମ:* (କ୍ରି.) : ଶ୍ୱାସରୁଦ୍ଧ ହେବା

**ଧଂଗଡା (ଧାଙ୍ଗରା)** - *କନ୍ଧ:* (ବିଂ.) : ଯୁବକ, ଯୁବାବସ୍ଥା, ଯୁଆନ, ଯୌବନ

**ଧଂଘିବା** - *କୋ:* (କ୍ରି.) : ଦଂଶନ କରିବା

**ଧାନ** - *ଦେ:* (ବି.) : ଭାବନା, ଖିଆଲ, ଚିନ୍ତନ

**ଧ୍ରୁପଦ** - *ଦେ:* (ବି.) : ସଙ୍ଗୀତର ରୀତି ବା ରାଗ ବିଶେଷ

**ଧ୍ରୁବ** - *ଢ଼:ଦେ:* (ବି.) : ସତ୍ୟ, ସ୍ଥିର, ତାରା, ଖୁଣ୍ଟା, ଲମ୍ବା ଗଛ

**ଧ୍ରୁବସତ୍ୟ** - *ଦେ:* (ବି.) : ଚିର ସତ୍ୟ

**ଧ୍ୱଜ** - *ଢ଼:ଦେ:* (ବି.) : ରଥରଧ୍ୱଜ, ଅଗ୍ରଭାଗ, ନିଶାଣ, ଲିଙ୍ଗ, ଯୋନି, ଶିଖର

**ଧ୍ୱଜଭଙ୍ଗ** - *ଦେ:* (ବି.) : କ୍ଲୀବତା

**ଧ୍ୱଜା** - *ଅନେ:* (ବି.) : ପତାକା

**ଧ୍ୱଂସ** - *ଅନେ:* (ବି.) : ବିନାଶ, ସର୍ବନାଶ

# ନ

**ନଅ** - *ବେ:ବଲ:* (ବି.) : ନବମ ସଂଖ୍ୟା, ଲତା ବିଶେଷ

**ନଅକର୍** - *ନୁ:* (ବି.) : ଚାକର, ନୌକର

**ନଅଙ୍କିଆ** - *ଅନେ:* (ବିଂ.) : ଦୁର୍ଭିକ୍ଷଗ୍ରସ୍ତ, ଅନକ୍ଲିଷ୍ଟ, ଛତରଖିଆ

**ନଅଣ୍ଟ** - *ଅନେ:* (ବି.) : ଅଭାବ, ଅନଟନ

**ନଅନା** - *ଢେ:* (କ୍ରି.) : ଯିବା

**ନଅମାକେ** - *ଭ:* (ବି.) : ଅଳ୍ପସମୟରେ

**ନଅମୀ** - *ବେ:* (ବି.) : ନବମୀ

**ନଅର** - *ଅନେ:* (ବି.) : ଉଆସ, ରାଜଭବନ

**ନଅର କୋଳି** - *ସଂ:* (ବି.) : ଅଁଳା ଭଳି ଏକ କୋଳି

**ନଅସରେ** - *ଗଦ୍ୟ:* (କ୍ରି.ବି.) : ଲହସରେ

**ନଅଁକିଆ** - *ଖୋ:* (ବିଂ.ଅ.) : ବିକଳିଆ(ଗାଳି)

**ନଇ** - *ଇ:ବା:ବେ:* (ବି.) : ଘରଛପର ବତା ବନ୍ଧାଦଉଡ଼ି, କୁଟାରସି, ନଦୀ

**ନଇଖଣ** - *କେ:* (ବି.) : ଲକ୍ଷ୍ମଣ

**ନଇଭାଲିଆ** - *ଗ:* (ବି.) : କାଜୁବାଦାମ

**ନଇଲା** - *ଭ:ବେ:* (ବି.କ୍ରି.) : ଆସିଲା ନାହିଁ

**ନଇଲେ** - *ମା:* (କ୍ରି.) : ନହେଲେ

**ନଇଲେନାହିଁ** - *ବେ:* (କ୍ରି.) : ନ ହେଲେ ନାହିଁ

**ନଇଣ୍ଡୁଆ** - *ଗ:* (ବି.) : ଗାଳିବିଶେଷ

**ନଇଁ** - *କନ୍ଧ:* (ବି.) : ନଦୀ

**ନଇଁସଇଁହେବା** - *ନ:* (କ୍ରି.) : ନତମସ୍ତକ ହୋଇ କାମ କରିବା

**ନଇଖଣ୍ଡି** - *ବେ:* (ବି.) : ନଦୀକୂଳ

**ନଇତଳିଆ** - *ବେ:* (ବିଂ.) : ନଈତଳେ ବାସ କରୁଥିବା ଲୋକ

**ନଇପାସି** - *ବେ:* (ବି.) : ନିର୍ମଳଜଳ, ଢଳଢଳ

**ନଇବଢି** - *ବେ:* (ବି.) : ବନ୍ୟା

**ନଇଯୁଡ଼ି** - *ବା:* (ବି.) : ନୟନଦ୍ୱୟ / ଯୋଡ଼

**ନଉ** - *ଗ:* (ବିଂ.) : ନବେ, ୯୦ ସଂଖ୍ୟକ

**ନଉକର** - *ବେ:ନ:* (ବିଂ.ବି.) : ନୌକର, ଚାକର

**ନଉକା** - *ଅନେ:* (ବି.) : ନାଆ, ନାବ

**ନଉଟ** - *ବେ:* (ବି.) : ଲେଉଟ

**ନଉଟୁଣି** - *ମ:* (ବି.) : ଖଡ଼ିକା

**ନଉଡ଼ି** - *ବେ:* (ବି.) : ବାଡ଼ି, ଲଉଡ଼ି

**ନଉଡ଼ିଖେଳ** - *ବେ:* (ବି.) : ଗଉଡ଼ ବାଡ଼ିଖେଳ

**ନଉତି** - *ଅନେ:* (ବି.) : ଧାନ ତଥା ଶସ୍ୟ ମାପକ ହାଣ୍ଡି, ଚାରିଗୌଣିର ମାପ

**ନଉନୁଆଣ** - *ଅ:* (କ୍ରି.) : ଲହୁଲୁହାଣ

ନଭରୁଣି - *ଗ:କେ:* (ବି.) : ନଖ କାଟିବା ଅସ୍ତ୍ର/ ନଖ କଟା ଛୁରୀ

ନଭଳ - *ମା:ଦେ:କେନ୍ଦୁ:* (ବି.) : ନେଉଳ

ନଭସନ୍ଧା - *କେ:* (ବିଂ.) : ଚତୁର

ନଏଦ - *ସୁ:ନୂ:କଳା:ସ:* (ବି.) : ନଦୀ

ନଏଦ୍ ଖଁଡ଼ି - *ସ:* (ବି.) : ନଦୀ ତୀରବର୍ତ୍ତୀ

ନଏଦ୍ ଖଣି - *କଳା:* (ବି.) : ନଦୀ ତଟ, କଛାର

ନଏଲ୍‌ତା - *ସ:* (ବି.) : ନଳିତାଶାଗ

ନକ୍ - *ମ:* (ବି.) : ନଖ

ନକ୍‌ପଚା - *ମ:* (ବି.) : ନଖ ରଙ୍ଗ କରିବା ସାମଗ୍ରୀ, ମଞ୍ଜୁଆତି

ନକ୍‌ପାଲିସି - *ମା:* (ବି.) : ନଖପଲିସି

ନକ୍‌ରି - *ସୁ:ନୂ:* (ବି.) : ଚାକିରି, ନୌକରି

ନକ୍‌ସଲ୍‌ଙ୍କ ନେଟ୍‌ୱାର୍କ - *ସଂ:* (ବି.) : ନକ୍ସଲଙ୍କ ଯୋଗସୂତ୍ର

ନକ୍‌ସା - *ଝା:ନ:* (ବି.) : ଜମି ଆଦିର ରେଖାଙ୍କିତ ଚିତ୍ର, ମାନଚିତ୍ର

ନକଚକଟ - *ଦେ:* (ବି.) : ଗୋଳମାଳିଆ

ନକଟ - *ଖୋ:* (ବିଂ.) : ନିଅଣ୍ଟ

ନକଟକ - *ଦେ:* (ବି.) : ଟିକିଏ ମାତ୍ର

ନକଟେ - *ଖୋ:* (ବିଂ.) : କ୍ଷୁଦ୍ର, ଛୋଟ

ନକଠକ - *ଦେ:ଗଜ:ସୁ:* (ବି.ବିଂ) : ଠିକ, ଅବିକଳ, ମାପିଚୁପି, ବାହାପିଆ, ଫୁଟାଣିଆ

ନକଡ଼ଛକଡ଼ - *ଅ:ଦେ:* (ବିଂ.ବି.) : ଗୋଳମାଳ, ଜଂଜାଳ, ଅଡୁଆ

ନକଡ଼ା - *ସୁବ:* (ବିଂ.) : ଲମ୍ବ ନାକ ଥିବା ଲୋକ

ନକନକ - *ନ:ଦେ:* (ବିଂ.) : ଝୁଗୁଲା, ପତଳା ଢିଲା

ନକମାରିଚ - *ଅ:* (ବି.) : ଲଙ୍କାମରିଚ

ନକର - *ସୁ:* (ବି.) : କରନାହିଁ, ନୌକର

ନକରେନ - *ସୁ:* (ବି.) ଚାକରାଣୀ, ନୌକରାଣୀ / ନୌକରାଣୀ

ନକଲ - *ଦେ:ସଂ:ସୁ:ନ:ନୂ:* (ବି.) : ଅନୁକରଣ, କପି, ପ୍ରତିଲିପି

ନକଲବାଜିଆ - *ଛ:* (ବି.ବିଂ.) : ଅନୁକରଣ କରୁଥିବା ଲୋକ

ନକଲି - *ସଂ:ଦେ:* (ବିଂ.) : ଯାହା ଅସଲି ନୁହେଁ, ଭେଜାଲ

ନକଲିଆ - *ଖୋ:ନ:* (ବିଂ.) ଅନୁକରଣକାରୀ, ବିଦୁଷକ, ପରିହାସକ, ଥଟ୍ଟାକାରୀ, ବ୍ୟଙ୍ଗକାରୀ

ନକଲି ଭୋଟ୍ - *ସଂ:* (ବି.) : ଜାଲିଆତି ମତଦାନ

ନକଶ - *ଗ:* (ବି.) : ଗଂଜପା ତାସର ଏକପ୍ରକାର ଖେଳ

ନକସା - *ଦେ:* (ବି.) : ମାନଚିତ୍ର

ନକସାନ - *ସ:* (ବିଂ.) : କ୍ଷତିରେ ପଡ଼ିବା

ନକସ୍ତକ *ଗ:* (ବିଂ) : ଅନୁନୟ ବିନୟ

ନକା - *କଣ:ସୁ:* (ବି.) ଗେଣ୍ଡାଳିଆ, ପକ୍ଷୀବିଶେଷ

**ନକାମ୍ବୁ** - *ଅ:* (ବି.) : ଲଙ୍କାଆମ୍ବ
**ନକାମ୍ବ** - *ଅ:* (ବି.) : ପିଜୁଳି
**ନକାର** - *ଦେ:* (ବି.) : ନାସ୍ତିସୂଚକ
**ନକି** - *ଅନେ:* (ବି.) : ପାତ୍ରବିଶେଷ, ତସଲା, ପିତଳ ପଲମ
**ନକିରିଆ** - *ସୁବ:* (ବି.) : ମୃତାହ କର୍ମର ନବମ ଦିନର ଅନୁଷ୍ଠାନ
**ନକୁଳ** - *ଅନେ:* (ବି.) : ନେଉଳ
**ନକଂମାରିଚ** - *କେ:* (ବି.) : ଲଙ୍କାମରିଚ
**ନକ୍ଷ** - *ଗୀ:* (ବିଂ.) : ଲକ୍ଷ(ଶହେ ହଜାର)
**ନକ୍ଷତ୍ର ଇଣ୍ଟୁରି** - *ଗଦ୍ୟ:* (ବି.) : ଛୋଟ ଏଣ୍ଟୁରି
**ନକ୍ଷିମନ୍ତ** - *ଅ:* (ବିଂ.) : ଲକ୍ଷ୍ମୀବନ୍ତ
**ନକ୍ଷେ** - *କେ:* (ବିଂ.) : ଲକ୍ଷେ ପରିମାଣର
**ନଖ** - *ଦେ:ସ:* (ବି.) : ଆଙ୍ଗୁଠି ଅଗର କଠିଣ ଅଂଶ
**ନଖ୍ ଝୁଲିଆ** - *ସ:* (ବିଂ.) : ଅଳ୍ପ ଖୋଳ
**ନଖ ଭଷୁମ** - *ଅ:ଖୋ:ପୁ:ଦେ:* (ବି.ବିଂ.) : ସାମାନ୍ୟ ଉଷ୍ଣ
**ନଖଦର୍ପଣ** - *ସଂ:ଦେ:* (ବି.) : ଯେଉଁ ନଖରେ ଆପଣା ମୁହଁ ଦେଖାଯାଏ, ବିଦ୍ୟା ବିଶେଷ
**ନଖଦଣ୍ଡି** - *ନ:* (ବି.) : ନଖପାଖରେ ଥିବା ଚମଡ଼ାର କ୍ଷୁଦ୍ରଅଂଶ
**ନଖପଚା** - *ଖୋ:ନ:* (ବି.) : ଝିଅମାନେ ନଖକୁ ରଙ୍ଗବେରଙ୍ଗ କରିବାପାଇଁ ବ୍ୟବହାର କରୁଥିବା ପ୍ରସାଧନ, ନଖରେ ଦେବା ରଙ୍ଗ(ମଞ୍ଜୁଆତି ପତର, ଖଇର ଇତ୍ୟାଦି)
**ନଖପଲିସି** - *ନ:* (ବି.) : ନଖରେ ରଙ୍ଗ ଦେବା
**ନଖବାହୁନା** - *ଭ:* (ବିଂ.) : ଯିଏ ପ୍ରତ୍ୟେକ କଥାରେ ବାଛେ
**ନଖରା** - *ଦେ:ଖୋ:କେ:* (ବିଂ.କ୍ରି.) : ଛଳ, ତାମସା, ଖଳ ପ୍ରକୃତିର
**ନଖରୀ** - *ଖୋ:ଦେ:* (ବିଂ.) : କଳିହୁଡ଼ି, ତାମସାବାଲୀ
**ନଖଶିଖ** - *ଦେ:ଖୋ:* (ବି.ବିଂ.) : ପାଦରୁ ମୁଣ୍ଡଯାଏ, ଆପାଦମସ୍ତକ
**ନଖା ଜାଲ** - *ଯା:* (ବି.) : ନଦୀରେ ଟାଙ୍ଗି ମାଛ ଧରା ଜାଲ
**ନଖି** - *କଳା:ସୁ:କୋ:* (ବି.) : ରନ୍ଧନ ପାତ୍ର ବିଶେଷ, ପଖାଳ ଖାଇବା କଂସା, ଅପଟ, ରାଣ, ତାବଲା
**ନଖିତର** - *ଖୋ:* (ବି.) : ଢଙ୍ଗ, ଚରିତ୍ର
**ନଖେ** - *ସୁ:ନବ:* (ବି.ବିଂ.) : ଅଳ୍ପ, ସାମାନ୍ୟ, ଟିକେ
**ନଖ(କ୍)** - *କଳା:* (ବି.) : ନଖ
**ନଖି ମୀ** - *ଅ:* (ବି.) : ଲକ୍ଷ୍ମୀ
**ନଗ** - *ଦେ:* (ବି.) : ଅଚଳ, ପର୍ବତ
**ନଗଦ** - *ଦେ:ଖୋ:* (ବି.ବିଂ.) : ସଙ୍ଗେ ସଙ୍ଗେ ଟଙ୍କା ଦିଆଯିବା, ତୁରନ୍ତ, ବର୍ତ୍ତମାନ
**ନଗଦ ନାରାୟଣ** - *ସଂ:* (ବି.) : ବାକି ନଦେବା, ଟଙ୍କା ପୈଠ କରିନେବା

**ନଗଦାନଗଦ** - *ଦେ:* (ବି.) : ସଙ୍ଗେ ସଙ୍ଗେ ଟଙ୍କା ଦିଆଯିବା

**ନଗଦି ଘିନିବା** - *ସ:* (କ୍ରି.) : ଟଙ୍କା ଦେଇ ଜିନିଷ ଆଣିବା

**ନଗର** - *ଅନେ:* (ବି.) ନଅର, ନଜର, ନହର

**ନଗରିଆ** - *ଦେ:* (ବିଂ.) ନାଗରିକ, ସହରିଆ, ପାଉଡ଼ି ଭୂୟାଁ

**ନଗରୀ** - *ଦେ:* (ବି.) : ବଡ଼ ସହର

**ନଗାଇବା** - *ଦେ:* (କ୍ରି.) : ଲଗାଇବା

**ନଗାନଗି** - *ଅ:* (ବି.) : ଲଗାଲଗି

**ନଗାମଣି** - *ଦେ:* (ବି.) : ଲଗାଲଗି

**ନଗାହାରି** - *ଭ:* (ବି.) : ମୃତ୍ୟୁର କାରଣ, ଭାଗ୍ୟ

**ନଗି** - *ଅନେ:* (ବି.) : ଆଙ୍କୁଡ଼ି, ଏକ ଲମ୍ବା ବାଡ଼ିର ଅଗ୍ରଭାଗରେ ଅଙ୍କୁଶ ପରି ଏକ ଛୋଟ କାଠି

**ନଗୁଚ୍ଛ ଝଗୁଚ୍ଛ** - *ଗ:* (ବି.) : ସଂପର୍କ

**ନଗେଇ ଦେବା** - *ଭ:* (କ୍ରି.) : ଖପେଇବା

**ନଗେଇବା** - *ଜେ:* (କ୍ରି.) : ଲଗାଇବା

**ନଗ୍ନ** - *ଦେ:* (ବିଂ.) : ଲଙ୍ଗଳା

**ନଘୁ** - *ଚ:* (ବିଂ.) : ଲଘୁ

**ନଙ୍କା** - *ଦେ:ଜେ:* (ବି.) : ଲଙ୍କା ମରିଚ

**ନଙ୍ଗପଙ୍ଗ** - *ଦେ:ଅ:* (ବି.ଅ.) : ଲଙ୍ଗପଙ୍ଗ, ନୁଙ୍ଗୁରୁପୁଙ୍ଗୁର

**ନଙ୍ଗରପଙ୍ଗର** - *ନ:* (ବି.) : ପଛେପଛେ ଯିବା, ପଛ ନ ଛାଡ଼ିବା

**ନଙ୍ଗଲ** - *ନବ:କନ୍ଧ:ସ:* (ବି.) : ଲଙ୍ଗଳ

**ନଙ୍ଗଲା** - *ବର:* (କ୍ରି.) : ନଗ୍ନ, ଲଙ୍ଗଳା

**ନଙ୍ଗଳ** - *ଅ:ଦେ:ଖୋ:ମ:* (ବି.) ଲଙ୍ଗଳ, ଲଙ୍ଗଳା, ଉଲଗ୍ନ

**ନଙ୍ଗଳା** - *ସୁ:* (ବି.) : ଉଲଗ୍ନ

**ନଙ୍ଗା** - *ପୁ:* (ବିଂ.) : ଜୋରଦାର

**ନଙ୍ଗୁଟି** - *ଦେ:* (ବି.) : କୌପିନୀ

**ନଙ୍ଗୁଳି** - *ଖୋ:* (ବିଂ.) : ଯାହାର ଆଗକୁ ପଛକୁ କେହି ନାହାନ୍ତି, ବେପରୁଆ ଲୋକ

**ନଚ୍‌ନିଆ** - *ବୌ:* (ବି.) : ନର୍ତ୍ତକ, ଯେ ନାଚେ

**ନଚ୍‌ନିଆଁ** - *ସୁବ:କଳା:* (ବି.) ବରଯାତ୍ରୀବେଳେ ଜଣେ ବିଭିନ୍ନ ଶାସ୍ତ୍ରୀୟ କଥା, ଗୀତ ଆଦି ଗାଇ ନାଚେ, ନାଚୁଣିଆ

**ନଚନଚ** - *ଦେ:* (ବିଂ.) : ନକନକ

**ନଚାଇବା** - *ଦେ:* (କ୍ରି.) : ନୃତ୍ୟ, ନଚାଇବା

**ନଚାକୁଦା** - *ଦେ:* (ବି.) : ଡିଆଁଡ଼େଇଁ

**ନଚେତ୍** - *ଦେ:* (ଅ.) : ନହେଲେ

**ନଛ କହିବା** - *ଅ:* (ବି.) : ମିଥ୍ୟା କହିବା

**ନଛା** - *ଗଦ୍ୟ:ପୁ:* (ବି.ବିଂ.) : ପ୍ରକାର, ଆକୃତି, ରାବିଡ଼ି ପ୍ରସ୍ତୁତ ହେବାବେଳେ ଭିତରେ ଚାରିପଟେ ଲାଗୁଥିବା ସର, ଅତି ଭଲ

**ନଛୋଡ଼ବନ୍ଧା** - *ଚ:* (ବିଂ.) : ଜିଦ୍‌ଖୋର

**ନଜର** - *ସଂଦେ:* (ବି.) : ଦୃଷ୍ଟି, ନିଘା

**ନଜର ନଳା** - *ଗ:* (ବି.) : ଦୂରବୀକ୍ଷଣ

**ନଜର ପକାଇବା** - *ନ:* (କ୍ରି.) : ଦୃଷ୍ଟିପକାଇବା, ଆଖି ପକାଇବା, ସତର୍କ ଦୃଷ୍ଟି ରଖିବା

**ନଜରବନ୍ଦୀ** - *ଦେ:ସଂ:* (ବି.) : ଅଟକ ରଖିବା, ଦୃଷ୍ଟିରେ ରହିବା

**ନଜର୍ ପଡ଼ିବା** - *ସ:* (କ୍ରି.) : ଖରାପ ଦୃଷ୍ଟି ପଡ଼ିବା

**ନଜିକ** - *ଯା:ଭ:* (ବି.) : ପାଖ, ନଇଦିକ

**ନଜିର** - *ଦେ:କେ:* (ବି.) : ନମୁନା, ଉଦାହରଣ

**ନଟ** - *କେ:ଦେ:ଦେ:* (ବି.ବିଂ.) : ଅଭିନେତା, ନାଚୁଆ

**ନଟ୍‌କୁଟିଆ** - *ବୌ:ଖୋ:ଗଞ:* (ବି.) : ନାଟର ଗୋବର୍ଦ୍ଧନ, କପଟିଆ, କୁଟିଳ ବ୍ୟକ୍ତି

**ନଟ୍‌ବୋଲ୍ଟ** - *ସଂ:* (ବି.) : ନଟ୍ ଥିବା ପେଚ

**ନଟକଟିଆ** - *ନ:* (ବିଂ.) : କୂଟକପଟିଆ

**ନଟକଣ** - *ଭ:କ:* (ବି.) : ଲଣ୍ଠନ

**ନଟକାଇବା** - *ଦେ:* (କ୍ରି.) : ଲଟକାଇବା

**ନଟକୁଟ, ନଟଖୁଟ୍** - *ନ:* (ବି.) : ନାନା ହୁନ୍ଦର, ମଜା ତାମସା, ଦୁଷ୍ଟପଣ

**ନଟଖଟ** - *ନ:ଦେ:* (ବି.) : ଗୋଳମାଳ, ନଟକୂଟ

**ନଟ ନାଗର** - *ଅନେ:* (ବି.) : ଶ୍ରୀକୃଷ୍ଣ

**ନଟପଟିଆ** - *ଦେ:* (ବିଂ.) : ଲଟପଟିଆ

**ନଟପୁଷ୍ପ** - *ଗଦ୍ୟ:* (ବି.) : ଅଶୋକ ବୃକ୍ଷ

**ନଟବର** - *ଦେ:* (ବି.) : ଅଭିନୟର ସୂତ୍ରଧର

**ନଟରପଟର** - *ନ:* (ବି.) : ପଛେପଛେ ଲାଗିଥିବା, ପ୍ରେମ ସଂପର୍କପାଇଁ ପଛେ ପଛେ ଲାଗି ରହିବା

**ନଟରା** - *ଖୋ:* (ବି.) : ଇଞ୍ଜାଳ

**ନଟରଂଗ** - *ଦେ:* (ବି.) : ରଙ୍ଗମଞ୍ଚ

**ନଟା** - *ଯା:ଦେ:ଭ:* (ବି.) : ଲଟା, ଲତା

**ନଟା କଳମ** - *କେନ୍ଦୁ:* (ବି.) : ଧଳାରଙ୍ଗର ଦୀର୍ଘମିଆଦି ଧାନ

**ନଟାଲ** - *ଦେ:* (ବି.) : ଲଦି

**ନଟି** - *ଅନେ:* (ବି.) : ଦୁଷ୍ଟା ନାରୀ, ଲଟି, ଲତା, ନୌକାର ପାଲ ନିମିତ୍ତ ବ୍ୟବହୃତ ଦଉଡ଼ି, ନଟନଟୀ, ପାତ୍ରୀ, ନାଟକର ଆଦ୍ୟ ଚରିତ୍ର, ଯେଉଁମାନେ ବିଷୟବସ୍ତୁ ବର୍ଣ୍ଣନା କରନ୍ତି, ଅଭିନେତ୍ରୀ

**ନଟୁ** - *ଅନେ:* (ବି.) : ପେଣ୍ଡୁ ଭଳି ଖେଳନା, ଲଟୁ, କାଠରୁ ତିଆରି ଖେଳଣା, ଗୋଲାକୃତି କାଠ ଏବଂ ଛୋଟ ଲୁହା କଣ୍ଟାରେ ନିର୍ମିତ

**ନଟେଇ** - *ଖୋ:ଦେ:* (ବି.) : ଯେଉଁଥିରେ ଗୁଡ଼ିର ସୂତା ଗୁଡ଼ା ହୋଇଥାଏ

**ନଟେଇ ପଟେଇ** - *ଦେ:* (ବି.) : ଲଟପଟ

**ନଟେଇହେବା** - *ଅ:* (କ୍ରି.) : ଲଟାପରି ଲୋଟିଯିବା

**ନଠୀ** - *ଯା:* (ବି.) : ଦଶକଡ଼ିର ମାପ ଠେଙ୍ଗା

**ନଠାବାଡ଼ି** - *ଭ:* (ବି.) : ଜମି ମାପିବା ଦଣ୍ଡ

**ନଡ଼ପ** - *ଅ:* (ବି.) : ତେଲ

**ନଡ଼ବଡ ହେବା** - *ଅ:* (ବି.) : ଢିଲା ହୋଇଯିବା

**ନଡ୍‌ଗା** - *କଙ୍କା:* (ବି.) : ନଡ଼ା, ଉଡେଇ ସାରିବା ପରେ ଚଣା, ମୁଗ ଓ ବିରି

ପ୍ରକୃତିରେ ରହିଯାଇଥିବା ସେହି ଗଛର ଛୋଟଛୋଟ ଡାଂଗ

**ନଡ୍‌ଗୋଡ୍** - *ଦେଶ:* (ବି.) : ନଳିଗୋଡ଼

**ନଡ୍‌ବଡ୍** - *ଢେଁ:* (ଅ.) : ଇତସ୍ତତଃ ହେବା, ଟଳମଳ ପାଦ

**ନଡର ଦୁକ** - *ଚା:* (ବି.) : ଏକ ପ୍ରକାର ଖଟାଳିଆ ପରିବା, ଯାହା ନୀଳଗିରି ପାହାଡ଼ିଆ ଅଞ୍ଚଳରେ ଫଳେ

**ନଡା** - *କଳା:କେନ୍ଦୁ:* (ବି.) : ନାଡ, ଘର ଛାଉଣି ଉପଯୋଗୀ ପାଳ

**ନଡିଆକୁରା** - *ଚା:* (ବି.) : ନଡ଼ିଆ କୋରଣା ବା କୋରାଯାଇଥିବା ନଡିଆ

**ନଡିଆ ଚଡା** - *ଚା:* (ବି.) : ନଡ଼ିଆ କୋରୁଆ

**ନଡିଆ ଚାମ୍ପ** - *ଚା:* (ବି.) : ନଡ଼ିଆ ଫୁଲ

**ନଡିଆ ମାଲହା** - *ଚା:* (ବି.) : ନଡ଼ିଆ ସଢେଇ / ଷଢେଇ

**ନଡୁବୋଉ** - *ଖୋ:* (ବି.) : ଦେଠେଇ

**ନଡ଼କା** - *ଗ:ଯା:* (ବି.ବିଂ.) ଝୁଲୁଥିବା, ଦୋହଲୁଥିବା, ସରୁ, ଡେଙ୍ଗା ପତଳା

**ନଡ଼ନଡ଼** - *ଭ:ଖୋ:* (ବି.ବିଂ.) : ହତଚକିତ, ହଲିବା, ଢିଲାହୋଇଥିବା, ଦୃଢ ନଥିବା, ସନ୍ତାନ ଜନ୍ମର (ନାରୀର) ପୂର୍ବ ଅବସ୍ଥା

**ନଡ଼ବଡ଼** - *ଦେ:ଗଡ:ଯା:* (ବିଂ.କ୍ରି.ବି.) : ନଡ଼ନଡ଼, ଟଳଟଳ, ଏପାଖ ସେପାଖ ହେବା, ଏପାଖ ସେପାଖ, ଦୁର୍ବଳ

**ନଡ଼ାଇ** - *ଦେ:* (ବି.) : ଲଢିବା

**ନଡ଼ା ଛତୁ** - *ନ:* (ବି.) : ଏକ ଜାତୀୟ ଛତୁ, ପାଳଛତୁ

**ନଡ଼ିଆ** - *ଦେ:* (ବି.) : ନାରିକେଳ

**ନଡ଼ିଆ କୁରା** - *ନୂ:* (ବି.) : ନଡ଼ିଆ କୁରିବା ଯନ୍ତ୍ର, ନଡ଼ିଆ କୋରଣି

**ନଡ଼ିଆଖାଇ** - *ଯା:* (ବି.) : ପଙ୍କରେ ରହୁଥିବା ତୋଡ଼ି ଜାତୀୟ ମାଛ

**ନଡ଼ିଆତାଡ** - *ସଂଗ:* (ବି.) : ଚାରାନଡ଼ିଆ, ଛୋଟ ନଡ଼ିଆ ଗଛ

**ନଡ଼ିଆଫାଳି ମାଛ** - *ଚା:* (ବି.) : ସାମୁଦ୍ରିକ ମାଛ, ଏଥିରୁ ତେଲ ବାହାରେ

**ନଡ଼ିଆ ଫୁଲ** - *କେନ୍ଦୁ:* (ବି.) : ରୁପାର ଅଳଙ୍କାର, ସୂତାରେ ଗୁନ୍ଥି ବେକରେ ପିନ୍ଧନ୍ତି

**ନଡ଼ିଆ ବରଡ଼ା** - *ଦେ:* (ବି.) : ନଡ଼ିଆ ବାହୁଙ୍ଗା

**ନଡ଼ିଆ ବାଗନ୍** - *ସଂ:* (ବି.) : ନଡ଼ିଆ ବଗିଚା

**ନଡ଼ିଆ ଭଣ୍ଡା** - *ଚା:* (ବି.) : ପାନ ବରଜରେ ବାନ୍ଧିବା ପାଇଁ ଏହା ଦରକାର ହୁଏ। ନଡ଼ିଆ କାନ୍ଧି ଉପରେ ଥିବା ଢାଙ୍କୁଣି ଟିକୁ ଭଣ୍ଡା କୁହାଯାଏ

**ନଡ଼ିଆ ଲଢେଇ** - *ସଂ:* (ବି.) : ନଡ଼ିଆକୁ ନଡ଼ିଆ ସହ ଭାଂଗିବା, ବଳପରୀକ୍ଷା

**ନଡୁ** - *ମା:ଗ:ଦେ:ମ:* (ବି.) : ଲଡୁ, ମିଠେଇ

**ନଡ଼େଇ** - *ନୂ:ସୁ:* (ବି.) : ନଡ଼ା, କଟା ଧାନଗଛର ଅବଶିଷ୍ଟାଂଶ

**ନଢେଇ** - *ନ:ମ:* (ବି.) : ଲଢେଇ, ଗଣ୍ଡଗୋଳ, ଯୁଦ୍ଧ

**ନଣନ୍ଦ** - *କ:ଦେ:* (ବି.) : ସ୍ୱାମୀର ଭଉଣୀ

**ନଣନ୍ଦେଇ** - *ନ:କ:ଖୋ:* (ବି.) : ନଣନ୍ଦର ସ୍ୱାମୀ, ସ୍ୱାମୀଙ୍କ ଭିଣୋଇ

**ନଣ୍ଡଭଣ୍ଡ** - *ନ:* (ବି.) : ଏପଟସେପଟ ହେବା

**ନଣ୍ଡ ମୁଣ୍ଡେଇ** - *କେ:* (ଅ.) : ଶୀଘ୍ର ଆସିବା

**ନଣ୍ଡା** - *ଅ:ଦେ:ଖୋ:ଭା:* (ବିଂ.କ୍ରି.) : ମୁଣ୍ଡରେ କେଶ ସମ୍ପୂର୍ଣ୍ଣ କଟାହୋଇଥିବା, ଲଣ୍ଡା, ଶୂନ୍ୟ ହୋଇଯିବା, ପାଖରେ ଆଦୌ ଅର୍ଥ ନଥିବା

**ନଣ୍ଡାକୂହ** - *ଗ:* (ବି.) : ଚାନ୍ଦିନୀ ନଥିବା କୂଅ

**ନଣ୍ଡାବିଳା** - *ଭା:* (ବି.) : ସାପ ରହୁଥିବା ବିଳ

**ନଣ୍ଡେଇବା** - *ସ:* (କ୍ରି.) (ବଣିଆ ବେପାରୀ)-ନେଇ ଆସିବା

**ନତ୍‌ପତ୍‌** - *ନ:* (ବି.) ଅତି ପାଚିବାର ପୂର୍ବାବସ୍ଥା

**ନତଙ୍ଗନା** - *ଢେ:* (କ୍ରି.) : ଠିଆହେବା

**ନତନତ** - *ନ:* (ଅ.) : ପାଚିଲା ପରେ ପଚ ପଚ ହେବା ଅବସ୍ଥା

**ନତନତିଆ** - *ନ:* (ଅ.) : ଅତି ପକ୍ୱ ହବା ଅବସ୍ଥା

**ନତା** - *ମ:ମା:* (ବି.) : ଲତା

**ନତାଢ଼ିଆ** - *ଅ:ଭ:* (ବିଂ.ଅ.) : ଲାଗଲାଗ, ଲଗାତର

**ନତିଆ** - *ସୁ:* (ବି.) : ନାତି

**ନଥ** - *ଦେ:ବୌ:ବର:* (ବି.) : ନାକର ଅଳଙ୍କାର, ବାମ ନାକ ଅଳଙ୍କାର

**ନଥନଥିଆ** - *ଭା:* (ବିଂ.) : ମୋଟା

**ନଥ ଭେମର୍‌** - *ଗ:* (ବି.) : ନାକର ଅଳଂକାର ବିଶେଷ

**ନଥା** - *ଦେ:ଖୋ:* (ବି.) : ଲଥା, କଥାର ନଥା

**ନଥାନା** - *ସ:* (ବି.) : ନାକପୁଡ଼ା

**ନଥି** - *ଅ:* (ବି.) : ପୋଥି

**ନଥିପତ୍ର** - *ଖୋ:ନ:* (ବି.) : ଫାଇଲପତ୍ର, କାଗଜପତ୍ର, ଅଦାଲତର କେଶ୍‌ ସମ୍ପର୍କୀୟ କାଗଜ ପତ୍ର

**ନଥିବା** - *କୋ:* (ବିଂ.) : ଗରିବ

**ନଥିଲା** - *ଦେ:* (ବି.) : ଗରିବ

**ନଥୁ** - *କେନ୍ଦୁ:* (ବି) : ନାକର ଏକ ଅଳଙ୍କାର

**ନଥୁନୀ** - *ପଦ୍ୟ:* (ବି.) : ନାକଫୁଲ

**ନଦନା** - *ଗ:* (ବି.) : ବଡ ବାଉଁଶ ପିଟଣା

**ନଦା** - *ଦେ:ମା:ନବ:* (ବି.କ୍ରି.) : ଲଦିବା, ଛପର ଉପରେ ଦିଆଯିବା କାଠ

**ନଦାରଦ୍‌** - *ଦେ:* (ବିଂ.) : ଖରାପ

**ନଦିଆ** - *ମ:କଣ:ଦେ:* (ବି.) : କଂସା, ଏକ ପ୍ରକାର ବାଦ୍ୟଯନ୍ତ୍ର, ନବଦ୍ୱୀପ

**ନଦିଆ କୀର୍ତ୍ତନ** - *ସ:* (ବିଂ.) : ସଂକୀର୍ତ୍ତନ, ଶ୍ରୀଚୈତନ୍ୟ ଦେବଙ୍କ ଦ୍ୱାରା ପ୍ରଚଳିତ କୀର୍ତ୍ତନ

**ନଦିଦେ** - *ଅ:* (କ୍ରି.) : ଥୋଇଦେ

**ନଦିବା** - *ଖୋ:* (କ୍ରି.) : ଲଦିବା, ରଖିବା, ବୋଝେଇ କରିବା

**ନଦୀକେରୀ** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ନଦୀଖଣ୍ଡି** - *କୋ:* (ବି.) : ନଦୀତଟ

**ନଦୁ** - *ଭ:* (ବି.) : ଏକପ୍ରକାର ମାଟି କାନ୍ଥ

**ନନା** - *ଅନେ:* (ବି.) : ପିଉସା, ବାପା(ବ୍ରାହ୍ମଣ ମାନଙ୍କର), ଭାଇ, ପିତା, ବଡଭାଇ

**ନନାନାନୀ** - *ଗ:* (ବି.) : ଭାଇଭଉଣୀ, ବାପା ମା

**ନନି** - *କନ୍ଧ:* (ବି.) : ଝିଅ, ଛୋଟ ଝିଅ

**ନନିବାର** - *ଅ:* (ବି.) : ଶନିବାର

**ନନୀ** - *ଅନେ:* (ବି.) : ଛୋଟ, କଶୋରୀ, ଝିଅ, କନ୍ୟା, ଶିଶୁକନ୍ୟା, ଅବିବାହିତ କନ୍ୟା

**ନନ୍ଦ** - *ବୌ:ମ:କଳା:* (କେ.ବି.) : ସ୍ୱାମୀର ସାନ ଭଉଣୀ, ନଣନ୍ଦ, କୂଅ ତିଆରି ପାଇଁ ବ୍ୟବହୃତ ମାଟିର ଆବରଣ

**ନନ୍ଦନ** - *ଅନେ:* (ବି.) : ପୁଅ

**ନନ୍ଦନ ବନ** - *ଅନେ:* (ବି.) : ନନ୍ଦନ କାନନ

**ନନ୍ଦା** - *ଅ:* (ବି.) : ବଡ଼ମାଠିଆ

**ନନ୍ଦା ମାଢିଆ** - *ଭ:* (ବି.) : ବଡ଼ ମାଟିପାତ୍ର

**ନନ୍ଦିଆ** - *ପୁ:କ:* (ବି.) : ମାଟିରେ ନିର୍ମିତ ବଡ଼ପାତ୍ର ବିଶେଷ

**ନନ୍ଦୀ** - *କଳା:* (ବି.) : ନଦୀ

**ନନ୍ଦୋତ୍ସବ** - *ଦେ:* (ବି.) : ଜନ୍ମାଷ୍ଟମୀ

**ନନ୍ଧାଦଉଡ଼ି** - *ନ:* (ବି.) : ଝୁରାଡ଼ିହ୍ନ ଓ ଦଣ୍ଡାକୁ ବାନ୍ଧୁଥିବା ଦଉଡ଼ି (ଶଗଡ଼ର ଅଗ୍ରଭାଗରେ ବ୍ୟବହୃତ)

**ନପା** - *ଦେ:ସୁ:* (ବି) : ମାପ

**ନପାଜୁଖା** - *ସୁ:ସ:* (ବି.) : ମପାମପି

**ନପୁଣ** - *ଅନେ:* (ଅ.) : କେଜାଣି, ଅବା

**ନପୁଂସକ** - *ଅନେ:* (ବି.) : ହେଣ୍ଡେଡ଼ା

**ନପେଇ** - *ଝ:* (କ୍ରି.) ମାପ କରି ଦେଇଦେବା

**ନଫର ନଫର** - *ରା:* (ଅ.) : କୌଣସି କାମ ନଥାଇ ଏଣେତେଣେ ଧାଇଁବା

**ନଫା** - *ଦେ:ଖୋ:ଗଦ୍ୟ:ସୁ:* (ବି.) : ଲାଭ, ସୁବିଧା, ଆୟ, ଉପୁରି

**ନଫେଇ ପଡ଼ିବା** - *ଚ:* (କ୍ରି.) : ଲମ୍ଫ ପ୍ରଦାନ କରିବା

**ନବ** - *ଅନେ:* (ବି.) : ନୂଆ

**ନବକଳେବର** - *ସଂ:* (ବି.) : ନୂଆରୂପ

**ନବଙ୍ଗ** - *ମ:ଦେ:ବା:* (ବି.) : ଲବଙ୍ଗ

**ନବଜ** - *କେ:* (ବି.) : ଅଭିନୟ

**ନବଣି, ଲବଣି** - *ଖୋ:* (ବି.) : ଲହୁଣି

**ନବତ** - *ଛେ:* (ବିଂ.) : ନବେ

**ନବମ** - *ଅନେ:* (ବି.) : ୯ ସଂଖ୍ୟାର ପୂରଣ ବାଚକ

**ନବମୀ** - *ଦେ:* (ବି.) : ତିଥି

**ନବର** - *ଗ:କେ:* (ବି.) ରାଜଉଆସ, ରାଜାଙ୍କ ପ୍ରସାଦ, ନଅର

**ନବରଙ୍ଗ** - *ଗଞ୍ଜା:ଦେ:* (କ୍ରି.ବି.) : ନାନାଭଙ୍ଗୀ ପ୍ରକାଶ ହେବା, ରହସ୍ୟ, ଚାତୁରୀ

**ନବରଙ୍ଗିଆ** - *ଗ:ଚୌ:* (ବି.) : କୌତୁକିଆ ବ୍ୟକ୍ତି, ନଟକୁଟିଆ

**ନବସନ୍ଧା** - *ଦେ:* (ବି.) : ଦଲିଲ ଲେଖକ

**ନବା** - *ଦେ:* (କ୍ରି.) : ନେବା

**ନବାକୀ** - *ଅ:* (ବିଂ.) : ପାଂକ୍ତିଲାମୀ

**ନବାଙ୍କ** - *କେ:* (ବି.) : ନୂଆବର୍ଷ

**ନବାତ** - *ଦେ:ନ:ଗ:ଅ:* (ବି.) : କନ୍ଦ, ମିଠା, ଚିନିରସରେ ପ୍ରସ୍ତୁତ ମିଷ୍ଟାନ୍ନ, ଶୋଧିତ ଗୁଡ଼

**ନବାତ ମୁଆଁ** - *ଗ:* (ବି.) ଗଂଜାମର ବ୍ରହ୍ମପୁରରେ ମିଳୁଥିବା ସ୍ୱତନ୍ତ୍ର ମୁଆଁ

**ନବାନ୍ନ** - *ନ:* (ବି.) : ନୂଆଖିଆ ଉତ୍ସବ, ନ'ଅ ପ୍ରକାର ଶସ୍ୟରେ ପ୍ରସ୍ତୁତ

**ନବାବ** - *ଖୋ:ଦେ:* (ବି.) ବଡ଼ଲୋକ, ରାଜା, ଶାସନକର୍ତ୍ତା, ମୁସଲମାନ ଶାସକ

**ନବାବ ନାତି** - *କ:* (ବି.) : ନିଜକୁ ଖୁବ୍ ବଡ଼ ବିଚାରୁଥିବା

**ନବାବି** - *ଦେ:* (ବି.) : ଧନଗାରିମା

**ନବାବ୍ କାଇଦା** - *ଅ:* (ବିଂ.) : ନବାବ୍ ଙ୍କ ଭଳି ରୀତି, ନବାବୀ

**ନବାହୋ** - *ଗଦେ୍ୟ:* (ବି.) : ଏକ ସଂପ୍ରଦାୟ

**ନବିସ୍** - *ଦେ:* (ବି.) : ଲେଖକ

**ନବୀନ** - *ଅନେ:* (ବିଂ.) : ତରୁଣ, ନୂତନ

**ନବୀନା** - *ଦେ:କେନ୍ଦୁ:* (ବିଂ.ବି.) : ତରୁଣୀ, ଧଳାରଙ୍ଗର ସ୍ୱଚ୍ଛମିଆଦି ଧାନ

**ନବେ** - *ଦେ:* (ବି.) : ୯୦

**ନଭ** - *ଅନେ:* (ବି.) : ସଂଖ୍ୟା, ଆକାଶ

**ନମ** - *ଅନେ:* (ବି.) : ନମସ୍କାର, ପ୍ରଣାମ

**ନମକିନ୍** - *ସୁ:* (ବି.) : ଲୁଣି ଯୁକ୍ତ ବିସ୍କୁଟ

**ନମତା** - *ଅ:* (ବି.) : ଭୃତ୍ୟ

**ନମସ୍କାର** - *ଅନେ:* (ବି.) : ପ୍ରଣାମ, ମୁଣ୍ଡିଆ ମାରିବା

**ନମସ୍ତେ** - *ଅନେ:* (ବି.) : ନମସ୍କାର

**ନମହା** - *ଚ୍ୟ:* (ବି.) : ଆପଣାଛାଏଁ ଉଠିଥିବା ଗଛ

**ନମୁନା** - *ଅନେ:* (ବି.) : ଉଦାହରଣ, ଦୃଷ୍ଟାନ୍ତ

**ନମ୍ପ** - *ଚ୍ୟ:* (ବି.) : ଇଂରାଜୀ ଲ୍ୟାମ୍ପ ଶବ୍ଦରୁ ସୃଷ୍ଟ

**ନମ୍ପ ତେଲ** - *ଚ୍ୟ:* (ବି.) : କିରୋସିନୀ ତେଲ

**ନମ୍ବ** - *ନବ:ଦେ:* (ବିଂ.) : ଲମ୍ବ

**ନମ୍ବର** - *ଦେ:ଖୋ:* (ବି.) : ଅଙ୍କ, ସଂଖ୍ୟା, ସୂତା ନମ୍ବର

**ନୟନ** - *ଅନେ:* (ବି.) : ଆଖି, ଚକ୍ଷୁ

**ନୟନଯୋଡୀ** - *ନ:* (ବି.) : ଗାଁ ସଡ଼କର ଉଭୟପଟେ ପାଣି ନାଳ (ଡ୍ରେନ୍)

**ନୟନା** - *ଦେ:* (ବି.) : ଆଖିର ପିତୁଳା

**ନୟାନବେ** - *ନୁ:* (ବି.) : ୯୯, ଅନେଶ୍ୱତ

**ନୟାନ୍ତ** - *ନ:ଖୋ:* (ବି.ବିଂ.) : କ୍ଳାନ୍ତ, ହାଲିଆ

**ନର** - *ଦେ:କେ:* (ବି.) : ମଣିଷ, ମାନବ

**ନରକ** - *ଅନେ:* (ବିଂ.ବି.) : ଯାତନା, ନର୍କ

**ନରକୋଳି** - *ଛ:କ:* (ବି.) : ଖଟା କୋଳି ବିଶେଷ

**ନରଖରିଆ** - *ନ:* (ବିଂ.) : ଦୁଷ୍ଟ

**ନରଦିଢ଼େଗି** - *ସ:* (କ୍ରି.) : ଦୌଡ଼ି ଢେଙ୍ଗଁ ଆସିବା

**ନରଦିବା** - *ସୁ:* (କ୍ରି.) : ଦଉଡ଼ିବା

**ନରବର** - *ଦେ:* (ବି.) : ଲଡ୍‌ଲଡ୍

**ନରବଳି** - *ଅନେ:* (ବି.) : ନରହତ୍ୟାକରି ଦେବୀପୀଠରେ ସମର୍ପଣ

**ନରମ** - *ଅନେ:* (ବିଂ.) : କଅଁଳ

**ନରମ ଗରମ** - *ଦେ:* (ବି.) : କଡ଼ା ଓ ଥଣ୍ଡା

**ନରମ ବଜାର** - *ସଂ:* (ବି.) : ମାନ୍ଦା ବଜାର

**ନରମା** - *ନ:* (ବିଂ.) : କଳ୍ପିତ ଭୂତ ବା ଡାଆଣି

**ନରହନ୍ତା** - *ସଂ:* (ବିଂ.) : ଘାତକ, ହତ୍ୟାକାରୀ ବ୍ୟକ୍ତି

**ନରହିଏନ୍** - *ସ:* (ବି.) : ଚାକର(ସ୍ତ୍ରୀ)

**ନରା** - *ଦେ:କେ:ଅ:* (ବି.) : ନଡ଼ା

**ନରାଜ** - *ସଂ:* (ବି.) : ଧଳା ପଥର ପାଇଁ ପ୍ରସିଦ୍ଧ ଏକ ସ୍ଥାନ

**ନରା ଝୁରା, ଅର୍କାଝୁରା** - *ବୌ:* (ବି.) : ନଡ଼ା ବନ୍ଧା

**ନରାଚ** - *ସଂ:* (ବିଂ.) : ପ୍ରଚଣ୍ଡ

**ନରାଶ** - *ନୂ:* (ବିଂ.) : ନିରାଶ

**ନରିଆ** - *ଦେ:ବୌ:ସୁ:ପଦ୍ୟ:* (ବି.) : ଚାକର, ଗାଈଆଳ, ପାଣିବାଲା, ଗଉଡ଼, ସେବକ

**ନରିଆଣି** - *ଗଦ୍ୟ:ଦେ:* (ବି.) : ଚାକରାଣୀ, ପାଣିତି, ପାଣି ଯୋଗାଉଥିବା ସ୍ତ୍ରୀ

**ନରିଏନ୍** - *ସୁ:* (ବି.) : ଗଉଡୁଣୀ

**ନରିହା** - *ସୁ:ଝା:ସୁବ:ସ:* (ବି.) ପାଣିଦେବାବାଲା, ଗାଈଚରାଳି, ପାଣି ଦେଉଥିବା ଲୋକ

**ନରେନ୍** - *କଳା:* (ବି.) ପରିଚାରିକା, ପୋଇଲି, ଘରକାମ କରୁଥିବା ସ୍ତ୍ରୀ

**ନର୍କ** - *ଗଦ୍ୟ:* (ବି.) : ପାପୀର ଦଣ୍ଡ ଭୋଗିବା ସ୍ଥାନ

**ନର୍ଦ୍ଦମା** - *ଦେ:* (ବି.) : ମଇଳା, ପାଣିନାଳ

**ନର୍ସ** - *ନ:* (ବି.) : ଧାଈ, ସେବାକାରିଣୀ, ସେବିକା

**ନର୍‌ଦବା** - *ନୂ:* (କ୍ରି.) : ଦୌଡ଼ିବା

**ନର୍‌ଦାନର୍‌ଦି** - *ବୌ:* (କ୍ରି.) : ଦୌଡ଼ା ଦୌଡ଼ି

**ନର୍‌ଦି ନର୍‌ଦି** - *କଳା:* (କ୍ରି.) : ଦୌଡି ଦୌଡି, ଧାଇଁ ଧାଇଁ

**ନର୍‌ଦିବା** - *ଝା:ସ:କଳା:* (କ୍ରି.) : ଦଉଡ଼ିବା

**ନଲ** - *ମ:କେନ୍ଦୁ:କଳା:* (ବି.) : ଓଠ, ନଳା, ବାଉଁଶ, ନଳକୂପ

**ନଲ୍‌କୂଆଁ** - *ବୌ:* (ବି.) : ନଳକୂଅ

**ନଲ୍‌ଖି** - *କଳା:* (ବି.) : ସାଇକେଲ୍ ଟ୍ୟୁବ୍‌ର ପମ୍ପଦେବା ଅଂଶ ବିଶେଷ

**ନଲ୍‌ଚୁଆଁ** - *ନୂ:କଳା:* (ବି.) : ନଳକୂପ

**ନଇକୂଆଁ** - *ସୁବ:* (ବି.) : ନଳକୂପ

**ନଇଥପ** - *ଅ:* (ବିଂ.) : ସ୍ଥିର କରିନପାରିବା

**ନଇବଲ** - *ଅ:* (କ୍ରି.) : ହାସାରା ଲାଗିଯିବା

**ନଲା** - *କଳା:ସୁ:କଣ:* (ବି.) : ନଳ, ପାଇପ, ଛୋଟ ପାଣି ନାଳ, କୃତ୍ରିମ ନାଳ, ଫୁଙ୍କନଳୀ

**ନଲି** - *ମା:କଣ:* (ବି.) : ବନ୍ଧୁକ

**ନଲିଆ** - *ଅନେ:* (ବି.) : ଛୋଟ ଛୋଟ ପାଣି ନାଳ, ନାଳ, କ୍ଷୁଦ୍ର ଜଳସ୍ରୋତ, ଉପନଦୀର ଶାଖା ନାଳ, ନାଳିଆ

**ନଲୁଆ** - *କଳା:* (ବି.) : ନାଳି, ଲାହି, ନାଭି

**ନଳ** - *ଅନେ:* (ବି.) : ବାଉଁଶ ଖଣ୍ଡ, ଗଣିତ ବିଦ୍ୟା, ଜମିମପା ବାଉଁଶ, ପୋଲଥିବା ବାଉଁଶ, ଚୂଲିଫୁଙ୍କ, ଘାସ, ଜମିମାପ

**ନଳଘଣ୍ଟା** - *ଗଞ:* (ବି.) : ସବୁ ପରିବା ପକାଇ ଘଣ୍ଟାଘଣ୍ଟି ତରକାରୀ କରିବା

**ନଳଘାଣ୍ଟ, ନଳରନ୍ଧା** - *ଗ:* (ବି.) : ପରିବା, ଚାଉଳର ଘଣ୍ଟାଘଣ୍ଟି ଖାଦ୍ୟ

**ନଳଟଣ** - *ଗଦ୍ୟ:* (ବି.) : ଲଣ୍ଠନ

**ନଳବଣ** - *ସଂ:* (ବି.) : ପକ୍ଷୀ ଅଭୟାରଣ୍ୟ

**ନଳା** - *ଅନେ:* (ବି.) : ଚୁଲି ଫୁଖା, ଧାନଗଛରେ ଏକ ପ୍ରକାର ରୋଗ, ମୂଷା ମରା ନଳା (ଯନ୍ତ୍ର)

**ନଳାଖଳା** - *ଗ:* (ବି.) : ଅଟାରେ ପ୍ରସ୍ତୁତ ନଳୀ ଭଳି ମିଠେଇ

**ନଳାଦଣ୍ଡି** - *ଗଞ:* (ବି.) ଦୀପଦଣ୍ଡି, ଗରୁଡ଼ଖମ୍ବ

**ନଳାପାଣି** - *କେନ୍ଦୁ:ଭ:* (ବି.) : କ୍ଷୀର

**ନଳାପୋକ** - *ଗଞ:* (ବି.) : ଲାଙ୍ଗୁଡ଼ିଆ ପୋକ

**ନଳି** - *କେ:ଦେ:* (ବିଂ.ବି.) : ସରୁ, ବାଉଁଶରେ ତିଆରି ନଳି

**ନଳିଗୋଡ଼** - *ଦେ:* (ବି.) : ପୁଟିଆ, ସରୁଗୋଡ଼

**ନଳିଗୋଡ଼ ଘା** - *ଦେ:* (ବି.) : ଲାଞ୍ଜି ଘା

**ନଳିତା** - *ଅନେ:* (ବି.) ଝୋଟଗଛ, କାଉଁରିଆ

**ନଳିତାକଚା** - *କ:* (ବି.) : ନଳିତା ଗଛ ପାଣିରେ ପଡ଼ି ପଚିଗଲେ ସେଥିରୁ ଝୋଟ ତନ୍ତୁକୁ ଅଲଗା କରିବା

**ନଳିବା** - *ଦେ:* (କ୍ରି.) : ଜମି ମାପ କରିବା

**ନଳୀ** - *ଅନେ:* (ବି.) : ବନ୍ଧୁକ

**ନଳୀଗୁଡ** - *ଦୌ:* (ବି.) : ପ୍ୟାଣ୍ଟ, ସରୁ ଗୋଡ଼

**ନଳୁଆ କେଳା** - *ଦେ:* (ବି.) : ପକ୍ଷିଧରିବା କେଳା, ଚଢେୟା

**ନଳେଇବା** - *ଗ:* (କ୍ରି.) : ଜମିମାପିବା

**ନଶ୍ୱପଶ୍** - *ଦେ:* (ବି.) : ଲଶ୍ପଶ

**ନଶମ** - *ଦେ:ଯା:* (ବି.) : ଥଣ୍ଡା ରୋଗ

**ନଶା** - *ଦେ:* (ବି.) : ଲସା, ଘା, ରସ

**ନଶି** - *ଦେ:* (ବି.) : ଲଣି

**ନଶିଫିଟିବା** - *ଦେ:* (କ୍ରି.) : କ୍ଷୀର ନିର୍ଗତ ହେବା

**ନଷିବା** - *ବୌ:ଢେ:* (କ୍ରି.) ନାଶଯିବା, ବିଗିଡ଼ିବା
**ନଷିଲା** - *ଢ:* (କ୍ରି.) : ଦବିଯିବା, ନରମିଲା
**ନଶ୍ୱର** - *ଦେ:* (ବି.) : ମରଣଶୀଳ
**ନଷ୍ଟ** - *ଦେ:* (ବିଂ.) : ନାଶ, ମୃତ, ଖଳ, ଭ୍ରଷ୍ଟ
**ନଷ୍ଟି** - *ମା:ନବ:ନ:* (ବି.କ୍ରି.) : ନଷ୍ଟ, କ୍ଷତି
**ନସ୍** - *ସୁ:* (ବି.) : ଶିରା
**ନସ୍‌ନିଆ** - *ସୁ:* (ବିଂ.) : ବିଗିଡ଼ି ଯାଇଥିବା
**ନସ୍‌ବାର** - *ସୁବ:* (କ୍ରି.) : ଯାନ୍ତ୍ରିକ ତ୍ରୁଟି
**ନସମ** - *ମ:ନ:* (ବିଂ.ବି.) : ଓଦା, ଥଣ୍ଡା, ସର୍ଦ୍ଦି
**ନସରପସର** - *ଯା:ଦେ:ନ:* (ବି.ବିଂ.) : ଏ ପାଖ ସେ ପାଖ, ଉଦ୍ଦେଶ୍ୟମୂଳକ ଭାବେ ଲାଗିରହିବା, ଲସର ପସର,
**ନସରି** - *ଗ:* (ବି.) : ଗ୍ରୀବା ଅଳଙ୍କାର ବିଶେଷ
**ନସା** - *ନବ:* (ବି.) : ବୃକ୍ଷରୁ ନିର୍ଗତ ରସ
**ନସାବା** - *ସୁ:କଲା:* (କ୍ରି.) : ବିଗିଡ଼ାଇବା, ଖରାପ କରିବା
**ନସାବାର** - *ସୁବ:* (କ୍ରି.) : ମନ୍ତ୍ର ବଳରେ କା'ର କ୍ଷତି କରିବା
**ନସିବ** - *ଭ:* (ବି.) : ଭାଗ୍ୟ
**ନସିବା** - *ନବ:କଲା:ବ:ବର:* (କ୍ରି.) : ନଷ୍ଟ ହେବା, ଖରାପ ହେବା, ଅକଳ ହେବା, ବିଗିଡ଼ିଯିବା
**ନସି ବାହାରିବନି** - *ଭ:* (ବିଂ.) : କିଛି ନଦେବା ବ୍ୟକ୍ତିର ଅଭ୍ୟାସ (କୃପଣ ପଣିଆ)
**ନସିଯିବା** - *କୋ:* (କ୍ରି.) : ନଷ୍ଟହେବା
**ନସୁଗ୍** - *ଅ:* (ବି.) : ଛୁରୀ
**ନସେଇବା** - *କୋ:କେ:* (କ୍ରି.) : ତନ୍ତ୍ର ପ୍ରୟୋଗ କରି, ଗୁଣିକରି ଅନିଷ୍ଟ କରିବା, ପାଖକୁ ଆସିବା
**ନସଁ** - *ଅ:* (ବି.) : ମାଟିହଣା କୋଡ଼ି
**ନହ** - *ଦେ:ଗ:* (ବି.) : ଲହ, ଲତା, ନବମ, ୯ ସଂଖ୍ୟା
**ନହଉ** - *କଲା:* (ବି.) : ନଅ, ନବମ ସଂଖ୍ୟା, ଶସ୍ୟାଦି ମାପ କଲାବେଳେ ସଂଖ୍ୟା ଗଣନାର ଉଚ୍ଚାରିତ ରୂପ
**ନହକା** - *ଅନେ:* (ବିଂ.ବି.) : ନଇଁଯାଉଥିବା, ଖୁମ୍ପ, ଡେଙ୍ଗା ଓ ପତଳା, ହାଲୁକା, ଶକ୍ତ ନଥିବା
**ନହଗୁଲ୍ଲା** - *ଖୋ:* (ବି.) : ତାସ୍ ଖେଳ
**ନହଙ୍ଗା** - *ଦେ:* (ବି.) : ଲହଙ୍ଗା
**ନହଡ଼** - *ଦେ:* (ବି.) : ଢେଉ, ଲହରୀ
**ନହଡ଼ି** - *ଦ୍ର:* (ବି.) : ଲହରୀ, ଢେଉ
**ନହଣୀ** - *ଗଦ୍ୟ:ଅ:* (ବି.) : ଲହୁଣୀ
**ନହଢେଇବା** - *ଦ୍ର:* (କ୍ରି.) : କଢ଼େଇବା
**ନହନହ** - *ଦେ:* (ବି.) : ଲହଲହ
**ନହନା** - *ସୁ:* (ବି.) : ଚମଡ଼ା ଦଉଡ଼ି
**ନହବତ୍** - *ଭ:* (ବି.) : ବାଦ୍ୟ ବିଶେଷ
**ନହର** - *ଅନେ:* (ବି.) : ନଅର, ପ୍ରସାଦ
**ନହରପହର** - *ଦେ:* (ବି.) : ଭଣ୍ଡେଇ ହେବା
**ନହରିବା** - *କଳା:* (କ୍ରି.) : ଅନୁସରଣ କରିବା, ପଛେ ପଛେ ଯିବା

**ନହଲା** - *ପୁ:* (ବି.) : ଛୋଟ କରଣୀ
**ନହସିବା** - *ଦେ:* (କ୍ରି.) : ବଙ୍କା ହୋଇଯିବା
**ନ ହାରିବା** - *ଗଦ୍ୟ:* (କ୍ରି.) : ହେଷ୍ଟାଳିବା
**ନହିଲେ** - *ଦେ:* (ଅ.) : ନଇଲେ
**ନହୁ** - *ମ:ବା:କେନ୍ଦୁ:ଦେ:* (ବି.) : ଲହୁ (ରକ୍ତ), ରୁଧିର
**ନହୁଣି** - *ଦେ:କେ:ମା:* (ବି.) : ଲହୁଣୀ
**ନହୁନୁହାଣ** - *ଅନେ:* (ବିଂ.) : ରକ୍ତ ବୁହାଇ ପଡ଼ିବା ଅବସ୍ଥା; ରକ୍ତାକ୍ତ
**ନହୁରୁଣି** - *ଅନେ:* (ବି.) : ନଖ କାଟିବା ଅସ୍ତ୍ର, ଭଣ୍ଡାରୁଣୀ
**ନହୁଲି** - *ଖୋ:ଦେ:* (ବିଂ.) : ଯୌବନ ପ୍ରାପ୍ତ କନ୍ୟା, ସୁକୁମାରୀ
**ନହେନେ** - *ବା:* (ଅ.) : ନହେଲେ
**ନହେସେ** - *ସ:* (ଅ.) : ନୁହେଁ
**ନା** - *ଦେ:ନୂ:କଳା:* (ଅ.) : ନାହିଁ, ନାସ୍ତିବାଚକ, ନିଶ୍ଚୟାତ୍ମକ ହିଁ ଅର୍ଥରେ ବ୍ୟବହୃତ ହୁଏ
**ନାଆ** - *ଅନେ:* (ବି.) : ବଡ଼ ଡଙ୍ଗା
**ନାଆଡ଼ି** - *କ:* (ବି.) : ପାଣିବୁହା କୁମ୍ଭୀର ସରଞ୍ଜାମ
**ନାଆଣି** - *କନ୍ଧ:* (ବି.) : ନିଆଁ
**ନାଆଁକୁ** - *ଅନେ:* (ବିଂ.) : ଅତି ସାମାନ୍ୟ
**ନାଆଁଣିଆ** - *କନ୍ଧ:* (ବି.) : ନଡ଼ିଆ
**ନାଇ** - *ଅ:ଦେ:* (ବି.) : ଲାଭ, ପିନ୍ଧି
**ନାଇକ** - *ରା:ମା:* (ବି.) : ପ୍ରଧାନବ୍ୟକ୍ତି, ନାୟକ, ଗ୍ରାମ ମୁଖ୍ୟ
**ନାଇକ୍ ସରପଞ୍ଚ** - *ନବ:* (ବି.) : ନାଇବ ସରପଞ୍ଚ
**ନାଇଚା ଗଣ୍ଡି** - *ବା:* (ବି.) : ଘରଛାଉଣି କାଳରେ ତାଳ ବରଡ଼ାରୁ ବାହାର କରାଯାଉଥିବା ଏକପ୍ରକାର ବନ୍ଧନ ସାମଗ୍ରୀ
**ନାଇଟ୍** - *ବା:* (ବି.) : ପେଟ୍ରୋମାକ୍ସ ଲାଇଟ୍
**ନାଇଟାଳ** - *ଗ:* (ବି.) ରାତ୍ରୀରହଣୀ କରୁଥିବା ବସ୍
**ନାଇଟି** - *ଅ:* (ବି.) : ଲାଇଟ୍
**ନାଇତୁ** - *ରା:ଗଜ:* (ବି.) : ଭୂମ୍ୟାଧିକାରୀ, ଶୁଦ୍ରଜାତି ବିଶେଷ
**ନାଇନ** - *ସୁ:ଅ:ବା:ଦେ:* (କ୍ରି.ବି.) : ନାହିଁ, ଇଂରାଜୀ ଲାଇନ୍
**ନାଇନକା** - *କନ୍ଧ:* (କ୍ରି.) : ନାହିଁକି
**ନାଇନା** - *କଳା:* (ଅ.) : ନାହିଁ
**ନାଇବା** - *ଅ:ସଂ:* (ବି.କ୍ରି.) : ପିନ୍ଧିବା, ଆଭୂଷିତ ହେବା
**ନାଇମାରିବା** - *ଯା:* (କ୍ରି.) : ପିନ୍ଧିବା
**ନାଇଁ** - *ସୁବ:ଦେ:କଳା:* (ଅ.) : ନାହିଁ, ନା
**ନାଇଁନେ** - *କଳା:* (ଅ.) : ନାହିଁ
**ନାଇଁ ପାଇଲା** - *ବୌ:* (କ୍ରି.) : ନିଅଣ୍ଟିଆ ହେଲା
**ନାଇଁବଇଲେ** - *କୋ:* (ଅ.) : ନଚେତ୍, ନହେଲେ, ନତୁବା
**ନାଇଁ ବୈଲୁ** - *କନ୍ଧ:* (କ୍ରି.) : ନାହିଁ କହିଲୁ

**ନାଇଁ ଶୁନ୍‌ବାର୍** - *ବୌ:* (କ୍ରି.) : ଶୁଣୁନାହିଁ

**ନାଇଁସେ** - *କଳା:* (ଅ.) : ନୁହେଁ, ନାହିଁ

**ନାଇଁହେଲା କଥା** - *ବୌ:* (ବିଂ.) : ଅସମ୍ଭବ କଥା

**ନାଇଁହେଲେ** - *ନୂ:ସ:* (ଅ.) : ନହେଲେ, ନତୁବା

**ନାଉ** - *ଅନେ:* (ବି.) : ଲାଉ ବା ପିଠିରେ ବୋହିବା, ଲତା ଜାତୀୟ ପରିବା ଫଳ, ପିଠିରେ ଓହଳିବା

**ନାଉଡଙ୍କିଆ** - *ଗ:* (ବି.) : ସବୁଜ ରଂଗର ବିଷାକ୍ତ ସାପ

**ନାଉପଚା** - *ଭ:* (ବି.) ଛୋଟ ଛୁଆଙ୍କୁ ପିଠିରେ ପକାଇ ଖେଳାଇବା

**ନାଉରିଆ** - *ନ:କେ:* (ବି.) : ନାବିକ, ଡଙ୍ଗା ବାହିବା ଲୋକ

**ନାଉଲ୍** - *କଅ:* (ବି.) : ନେଉଳ

**ନାଉଲି** - *ଗଦ୍ୟ:* (ବି.) : ଟାହୁଲି, ଟାପରା, ଥଟ୍ଟା, ପରିହାସ ବ୍ୟଙ୍ଗ

**ନାଏକ** - *ଦେ:ପଦ୍ୟ:କଳା:* (ବି.) : ନାୟକ, ଗ୍ରାମର ମୁଖିଆ, କେତେକ ଜାତିର କୌଳିକ ଉପନାମ

**ନାଏବ ସରପଞ୍ଚ** - *ଅନେ:* (ବି.) : ସରପଞ୍ଚଙ୍କ ତଳ ପାହ୍ୟା ପଦବୀ

**ନାଓ୍ବା** - *ମ:* (ବିଂ.) : ନୂଆ

**ନାକ** - *ଦେ:କଳା:ସ:* (ବି.) : ନାସିକା, ନାସା, ଘ୍ରାଣେନ୍ଦ୍ରୀୟ, ନାକ

**ନାକ୍ ଘଟରା** - *ସୁ:* (ବିଂ.) ନିଦ୍ରାରେ ନାକବାଜିବା, ଘୁଁଗୁଡ଼ି

**ନାକ୍ ଘରାଇବା** - *ନୂ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ନାକ୍‌ଚନା** - *କଳା:* (ବି.) : ବୁଟ

**ନାକ୍ ଝଲ୍‌କା** - *ନୂ:* (ବି.) : ନାକର ଅଳଙ୍କାର, ରିଙ୍ଗ ଭଳି ଗୋଲାକାର

**ନାକ୍‌ଟିଚଣା** - *ନବ:କୋ:ମା:* (ବି.) : ଛୋଟ ବୁଟ

**ନାକ୍‌ଡଣା** - *କଳା:* (ବି.) : ନାକ ଭିତରେ ଦୁଇଟି ପୁଡା ବା ନାସାରନ୍ଧ୍ରକୁ ବିଭାଜିତ କରୁଥିବା କୋମଳ ଅସ୍ଥି, ନାସାଳଙ୍କାର ବିଶେଷ

**ନାକ୍ ପୁଟ୍‌କି** - *ନୂ:କଳା:ସୁ:* (ବି.) : ନାକର ଅଳଙ୍କାର, ଗୁଣା ନାମକ ନାସାଳଙ୍କାର, ନାକଚଣା

**ନାକ୍‌ଶୁଆ** - *ସୁବ:* (ବି.) ନାକପୁଡ଼ା ଚାରିକଡ଼େ ହେଉଥିବା ଘା

**ନାକ୍‌ସୁରା** - *କଅ:* (ବି.) : ନାକଦଣ୍ଡା

**ନାକ୍‌ସୁରିଆ** - *ଦେ:* (ବିଂ.) : ନାକସିଧା

**ନାକଇ** - *ଯା:* (ବି.) : ପାନିଆ

**ନାକ କାନ୍ଦଣା** - *ଦେ:* (ବି.) : ସକେଇବା

**ନାକକାନ୍ଦୁରା** - *ନ:* (ବିଂ.) ନାକରେ ସକେଇସକେଇ କାନ୍ଦୁଥିବା, ନାକ କାନ୍ଦୁରୀ (ସ୍ତ୍ରୀ ଲିଙ୍ଗ)

**ନାକଖଡ଼ି** - *ଗଦ୍ୟ:* (ବି.) : ଏକ ପ୍ରକାର ଶାସ୍ତି

ନାକ ଘଷା - *ଦେ:* (ବି.) : ହଲାପଟା, ଅସ୍ତବ୍ୟସ୍ତ

ନାକଚ୍ - *ଦେ:ନ:* (ବି.ବିଂ.) : ରଦ୍, ନାମଞ୍ଜୁର, ଅସିଦ୍ଧ

ନାକଚଣା - *ଦେ:ନ:ଗଞ୍ଜ:* (ବି.) : ନାକର ଅଳଙ୍କାର, ବୁଟ

ନାକଚୁଣ୍ଡିଯିବା - *ଖୋ:* (କ୍ରି.) : ଅତ୍ୟଧିକ ଥଣ୍ଡାହେତୁ ନାକ ବନ୍ଦ ହୋଇଯିବା

ନାକ ଛିଞ୍ଚାଡିବା - *ସଂ:* (କ୍ରି.) : ବିରକ୍ତି ପ୍ରଦର୍ଶନ କରିବା

ନାକଜର - *ଦେ:* (ବି.) : ପାଳିଜର

ନାକ ଟେକିବା - *ଅ:* (କ୍ରି.) : ଘୃଣା କରିବା

ନାକ ଡିଆଁ - *ଅ:* (କ୍ରି.) : ନାକ ଛିଞ୍ଚିଡ଼ା

ନାକଡ଼ା - *ସୁ:* (ବିଂ.) : ଭଣ୍ଡାମୀ

ନାକଡ଼ି - *ସୁବ:* (ବିଂ.) : ନକଡ଼ାର ସ୍ତ୍ରୀ ଲିଙ୍ଗ

ନାକଡ଼ିଆଁ - *ଦେ:* (ବି.) : ଘୃଣାରେ ନାକ ଟେକିବା

ନାକଡ଼ିଚନା - *ସୁବ:* (ବି.) : ବୁଟଚଣା

ନାକଢ଼ିଁଡ଼ି - *ଝା:* (ବି.) : ନାସା ଅଗ୍ରରେ ଏକ ଅଳଙ୍କାର

ନାକଦଣ୍ଡି - *ନ:ଦେ:* (ବି.) : ନାକର ଶୀର୍ଷସ୍ଥାନ, ନାଗଅଗ

ନାକଦେଖିଆ - *ସୁବ:* (ବିଂ.) : ଠିକ୍ ନାକ ଉପରେ

ନାକ ପୁତ୍‌କି - *ବୌ:ବ:ଗଦ୍ୟ:ଦେ:* (ବି.) : ନାକ ଫୁଲ, ନାକରେ ପିନ୍ଧୁଥିବା ଅଳଂକାର

ନାକପୁଡ଼ା - *ନ:* (ବି.) : ନାକର ବାଟଦ୍ୱୟ, ନିଃଶ୍ୱାସପ୍ରଶ୍ୱାସ ଯିବା ସ୍ଥାନ

ନାକପୁଲି - *ଦେ:* (ବି.) : ନାକର ଗୁଣା

ନାକପୋଡ଼ା - *ପଦ୍ୟ:* (ବି.) : ବିବାହ ଯୋଗ୍ୟା ହେବାର ସନ୍ଦେଶ

ନାକବକଳା - *ନ:* (ବି.) : ନାକଭିତରର ଶୁଖିଲା ସିଙ୍ଗାଣୀ

ନାକବାଲ୍ - *ସୁବ:* (ବି.) : ଇଜ୍ଜତ ମାନ

ନାକବାଳ ଧରିବା - *ଗ:* (କ୍ରି.) : ଦଣ୍ଡଦେବା, ବାଧାଦେବା

ନାକବୁଡ଼ିବା - *ଯା:* (କ୍ରି.) : ଅତି ବିପଦରେ ପଡିବା

ନାକ ବେସର - *ପଦ୍ୟ:* (ବି.) : ନାକ ଫୁଲ

ନାକମାଛି - *ବା:ମ:* (ବି.) : ନାକର ଅଳଂକାର ବିଶେଷ, ନାକଫୁଲ

ନାକରା - *ଅନେ:* (ବିଂ.) : ଇଜ୍ଜତ, ମାନ, ନିକୃଷ୍ଟ, ଖରାପ, ଅଦରକାରୀ, ଅକାମିକା

ନାକସରିଆ - *ସୁ:* (ବି.) : ନାକସିଧା

ନାକ ସଳଖ - *ଗଞ୍ଜ:* (କ୍ରି.) : ସିଧା ଗମନ କରିବା

ନାକସିଟକା - *ବା:* (କ୍ରି.) : ତୀବ୍ର ଆଘ୍ରାଣ କରିବା

ନାକସୁରିଆ - *ସୁବ:* (ବିଂ.) : ନାକ ସଳଖ

ନାକା - *ଅନେ:* (ବି.) : ଜଙ୍ଗଲକୁ କାଠ କାଟିବା ପାଇଁ ଗଲାବେଳେ

କର୍ମଚାରୀଙ୍କୁ ଦିଆଯାଉଥିବା ପାରିତୋଷିକ, ବନରକ୍ଷୀ

**ନାକାରା** - *ଦେ:* (ବିଂ.) : ବୋକା

**ନାକାଲ** - *ଚ୍ଚ୍ଚ:* (ବି.) : ହଇରାଣ

**ନାକି** - *ଦେ:ଗ:ନ:* (ବି.) : ମୁଣ୍ଡି, କାଠର ମୁଣ୍ଡରେ କଣା, ଲଙ୍ଗଳର କିଳିଣୀ ଲୁହା ଖଣ୍ଡ, ଏକପ୍ରକାର ଆମ୍ବର ନାମ, କାଠଗଡ଼କୁ ଦଉଡ଼ି ଲଗାଇ ଟାଣିବାକୁ ଗଣ୍ଡିର ଶୀର୍ଷରେ ଗାତ କରିବା ସ୍ଥାନର ନାମ

**ନାକିଚି** - *ଗା:* (ବିଂ.) : କୃପଣ

**ନାକୀ** - *କଳା:* (ବି.) : ଝୁଲିର ଦ୍ୱାର ଓ ଗର୍ଭକୁ ସଂଯୁକ୍ତ କରୁଥିବା ଅଂଶ, ବଡ଼ କାଠ ଗଣ୍ଡିକୁ ହଳରେ ଫାନ୍ଦିକରି ଆଣିବା ନିମନ୍ତେ କରାଯାଇଥିବା ଛୋଟ କଣା

**ନାକୁଆ** - *ନ:* (ବିଂ.) : ବଡ଼ ଲମ୍ବା ନାକ ଥିବା ବ୍ୟକ୍ତି

**ନାକୁଆଳ** - *ଗଦ୍ୟ:* (ବି.) : ଏକ ପକ୍ଷୀ

**ନାକୁଆସି** - *ଗ:* (ବି.) : ନାକରୁ ବାଳ ବାହାର କରିବା ଅସ୍ତ୍ର, ଚିମୁଟା

**ନାକୁଡ଼ି** - *କଣ:* (ବି.) : କୁକୁର

**ନାକୁ, ନକା** - *ସୁବ:* (ବିଂ.) : ଲମ୍ବ ନାକ ଲୋକ

**ନାକୁରୁ** - *ଚ୍ଚ୍ଚ:* (ବି.) : ଅଳ୍ପବୋଧକ ଶବ୍ଦ

**ନାକୁଣ୍ଡି** - *ଗ:* (ବି.) : କାକୁତି, ମିନତି

**ନାକେଇ** - *ଖୋ:ବୌ:* (କ୍ରି.ବିଂ.) : ଲମ୍ବାନାକ ଥିବା ଝିଅ, ନାକ ବଡ଼ ଥିବା ସ୍ତ୍ରୀ ଲୋକ

**ନାକେଇବା** - *ନ:* (କ୍ରି.) : କୌଣସି ପଦାର୍ଥ ପାଇବାକୁ ଆଶା କରି ରହିବା

**ନାକେଦମ** - *ନ:କେ:ଦେ:ସ:* (ବିଂ.ବି.) ବହୁତ ବେଶ୍ ହଇରାଣ, ଥକିଯିବା, ବିବ୍ରତ, ଅସ୍ତବ୍ୟସ୍ତ ହୋଇଯିବା

**ନାକେରା** - *ଛ:ପୁ:* (ବିଂ.ବି.) : ଅପସନ୍ଦ, ଅସନା, ଖରାପ, ଛୋଟିଆ, ତୁଚ୍ଛ

**ନାକୋଇ** - *କଳା:* (ବି.) : ଅପେକ୍ଷାକୃତ ବଡ ଆକାରର ଦେଶୀ ଆମ୍ବ । ଏହାର ନିମ୍ନାଂଶରେ ନାକ ଭଳି ଗୋଟିଏ ଅଂଶ ବାହାରି ଥାଏ

**ନାଖ** - *ଗଞ:ନବ:ମ:ଦେ:* (ବି.) : ଲାଖ, ଜଉ, ଲକ୍ଷ୍ୟ

**ନାଖ୍‌ଡ଼ା** - *ସ:* (ବି.) : କୌଣସି କାମ ସଚ୍ଚୋଟ ଭାବରେ ନକରିବା

**ନାଖନାମି** - *ଗା:* (କ୍ରି.) : ଖୋଳିବା

**ନାଖରା** - *ଅନେ:* (ବିଂ.ବି.) : ଛଳନା, ଖରାପ, ଦୁଷ୍ଟ

**ନାଖରାଜି** - *ଭ:* (ବି.) : ଜମିର କିସମ ବିଶେଷ

**ନାଖିଯିବା** - *ଯା:* (କ୍ରି.) ଅଟକିଯିବା, ଲାଖିଯିବା

**ନାଗ** - *ଅନେ:* (ବି.) : ସାପ, ଉପାଧି, ଗଉଡ଼ ଓ ହରିଜନ ଜାତିର ଉପନାମ

**ନାଗ୍ ଦେହେନୀ** - *ନୁ:* (ବି.) : ନାଗ ସର୍ପକୁ ଖେଳାଇବା ବ୍ୟବହୃତ ପୁଙ୍ଗା ଯନ୍ତ୍ର

**ନାଗ୍‌ଫେନି** - *ସ:* (ବି.) : ନାଗଫେଣି

**ନାଗଚତୁର୍ଥୀ** - *ଢେ:* (ବି.) : ଚୁଡ଼ା ଚଉଠି

**ନାଗଢେ ନାଗଢେ** - *ଜ:* (ବି.ଅ.) : ଲାଗି ଲାଗି

**ନାଗଣ** - *ଖୋ:* (ବିଂ.) : ନଗନ୍ୟ

**ନାଗଧୂନି** - *ସୁ:* (ବି.) : ସାପ ଖେଳେଇବା ଧୂନି, ପଦ୍ମତୋଳା

**ନାଗନାଡ଼ି** - *ଖୋ:ଢେ:ଗ:* (ବି.) : ଆଦୌ ନପଡ଼ିବା(ଅହୀ ନକୁଳ ସଂପର୍କ), ଶରୀରର ଏକ ଅଂଶ, ଅଙ୍ଗ

**ନାଗପଣି** - *ଢେ:* (ବି.) : କଣ୍ଟାଗୁଳ୍ମ

**ନାଗଫେଣୀ** - *ନ:* (ବି.) : ଏକ କଣ୍ଟାଜାତୀୟ ଗୁଳ୍ମ

**ନାଗବନ୍ଧୁ** - *ଗଦ୍ୟ:* (ବି.) : ଅଶ୍ୱତ୍ଥ

**ନାଗ ମୂଲିଆ** - *ଯା:କ:* (ବି.) : ମୁଖ୍ୟ ମୂଲିଆ, ଯେ ସବୁଦିନେ ଜଣକ ଘରେ କାମକରେ, ବାରମାସିଆ

**ନାଗର** - *ଢେ:ନ:ଗଦ୍ୟ:* (ବିଂ.ବି.) : ବଜାରୀ, ରସିକ, ଶୁଣ୍ଡି

**ନାଗରମ୍** - *ଗ:ଗଜ:* (ବି.) ମହିଳାଙ୍କ ଖୋସାର ଅଳଂକାର, ଦକ୍ଷିଣରେ ବ୍ୟବହୃତ, ମଥାଳଙ୍କାର

**ନାଗରା** - *ଅନେ:* (ବି.ବିଂ.) : ବାଦ୍ୟବିଶେଷ, ଦୁଷ୍ଟ, ଖରାପ ପ୍ରକୃତିର, ଘୋଷଣାବାଜା, ବଜା, ଅଳଙ୍କାର, ଜୋତା, ପାଟିରେ ଫୁଙ୍କି ବଜାଯାଉଥିବା ବାଦ୍ୟ

**ନାଗରା ବାଜିବା** - *ଗ:* (କ୍ରି.) : ଗୁପ୍ତକଥା ପ୍ରଘଟ ହେବା

**ନାଗରା ଶିର** - *ନ:* (ବି.) : ନଳୀଗୋଡ଼ଦେଇ ଯାଇଥିବା ରକ୍ତପ୍ରବାହୀ ଶିରା

**ନାଗରିକ** - *ଅନେ:* (ବି.) : ଅଠର ବର୍ଷରୁ ଉର୍ଦ୍ଧ୍ୱ ଯୁବକ, ଯାହାର ଭୋଟ ଦେବାର ଅଧିକାର ଅଛି

**ନାଗରୀ** - *ଢେ:ନ:* (ବି.) : ଦେବନାଗରୀ ଭାଷା, ରସିକା ସ୍ତ୍ରୀ, ଏକ ଗୁଳ୍ମଜାତୀୟ କଣ୍ଟା (ବୃକ୍ଷ) ଗଛ

**ନାଗଲ ଚଉଠି** - *ଗ:ପୁ:* (ବି.) : ନାଗ ଚତୁର୍ଥୀ

**ନାଗଲତା** - *ଢେ:* (ବି.) : ପାନ ଲତା

**ନାଗା** - *ଅନେ:* (ବି.) : ସନ୍ୟାସୀ ବିଶେଷ, ଦୁଷ୍ଟ ଲୋକ, ଅନୁପସ୍ଥିତ, ବନ୍ୟ ଜାତି, ପୁରୀର ସାହିଯାତ୍ରାରେ ବାହାରୁଥିବା ଏକ ଲୋକନୃତ୍ୟ କଳାକାର, ସନ୍ନ୍ୟାସୀ, ବାଜା, ଫକୀର

**ନାଗାଚାଲି** - *ପୁ:* (ବି.) : ଅବିଶ୍ୱାସପୂର୍ଣ୍ଣ ଚାଲି, ସାହସିକ ଚାଲି

**ନାଗାଡର** - *ପୁ:* (ବି.) : ଆସ୍ଫାଳନ

**ନାଗାନ୍ତୀ** - *ଗଦ୍ୟ:* (ବି.) : ନାଗା ସନ୍ୟାସୀ

**ନାଗାବାଗା** - *ଭ:* (ବି.) : ଯାଯାବର

**ନାଗାଭାଗା** - *ପୁ:* (ବିଂ.) ବେପରୁଆ ଏକବାଗିଆ ଅନମନୀୟ ବ୍ୟକ୍ତି

**ନାଗି** - *ଢେ:ଦେ:* (ବି.ଅ.) : ପ୍ରସାଦ, ଲାଗି

**ନାଗିଣି କରିବା** - *ବ:* (କ୍ରି.) : ଚୁକ୍ତିବଦ୍ଧ ହୋଇ ମୂଲ ଲାଗିବା

**ନାଗିବା** - *ନବ:* (କ୍ରି.) : ଲାଗିବା, କଳି କରିବା

**ନାଗିଲା** - *କେ:* (କ୍ରି.) : ଲାଗିଲା

**ନାଗିଲି** - *ବା:* (ବି.) : ଖମ୍ବଆଳୁ

**ନାଗୁଆ** - *ଅନେ:* (ବି.ବିଂ.) ନିୟମିତ ପ୍ରଦାନକାରୀ, ନିୟମିତ ଜିନିଷ ଦେବା, ବ୍ୟବସାୟ ସୂତ୍ରରେ ବନ୍ଧା, ପ୍ରତିଦିନ, ନିୟମିତ ଗ୍ରାହକ, ବାକିରେ କ୍ରୟ

**ନାଗୁଆଣି** - *ଯା:ଭ:କେ:* (ବି.) : ଶୁଷ୍କ ଜାଳେଣି ବିଶେଷ

**ନାଗୁଚି** - *କ:* (କ୍ରି.) : ଲାଗୁଚି

**ନାଗୁଣୀ** - *କ:* (ବି.ବିଂ.) : ନାଗର ସ୍ତ୍ରୀ, ଦୁଷ୍ଟ ସ୍ତ୍ରୀ

**ନାଗୁଲ** - *ଗ:* (ବି.) : କର୍ଣ୍ଣ ଅଳଙ୍କାର

**ନାଗେଶ୍ୱର** - *ଦେ:* (ବି.) : ବୃକ୍ଷ ଓ ଫୁଲ

**ନାଙ୍କରା** - *ଅ:ଭ:* (ବିଂ.) : ତୁଚ୍ଛା, ମନ୍ଦ

**ନାଙ୍ଗ୍** - *କୁ:* (ବି.) : ନାଗ ସର୍ପ

**ନାଙ୍ଗଲ୍** - *ମ:* (ବି.) : ଲଙ୍ଗଳ

**ନାଚ୍‌ନି** - *ସ:* (ବି.) : ନର୍ତ୍ତକୀ

**ନାଚାର** - *କେ:ଦେ:ସଂ:* (ବିଂ.ବି.) : ନିରୂପାୟ, ଅସହାୟ, ଅସମର୍ଥ

**ନାଚୁଆ** - *ଦେ:* (ବିଂ.) : ନାଚୁଆ

**ନାଛ** - *ନ:* (ବି.) : ନାସ(ଧୂଆଁପତ୍ର, ଚୂନରେ ନିର୍ମିତ ନିଶା ଦ୍ରବ୍ୟ)।

**ନାଛିଦେବା** - *ନ:* (କ୍ରି.) : ଗୁଳି ମାରିବା

**ନାଛିବା** - *ଅନେ:* (କ୍ରି.) : ବାଛିବା, ବନ୍ଧୁକ ମାରିବା, ରାମ୍ପିଦେବା, ଚାଞ୍ଛିବା

**ନାଜ** - *ମ:କେ:ବା:* (ବି.) : ଲାଜ

**ନାଜର** - *ଦେ:* (ବି.) : କର୍ମଚାରୀ

**ନାଜିମନ୍ତ** - *ଯା:* (ବି.) : ବରଯାତ୍ରୀଙ୍କ ସହ ଯାଇଥିବା ବାରିକ, ବାଜାବାଲା, ମାନ୍ୟଗଣ୍ୟଙ୍କ ତଳପାହିଆ।ର ଲୋକ

**ନାଜୁ** - *କନ୍ଧ:* (ବି.) : ଗାଁ

**ନାଝା** - *ସଂ:* (ବିଂ.) : (ବଣିଆ ବେପାରୀ)-ଲାଭ

**ନାଟ** - *ଅନେ:* (ବି.) ନାଚ, ଅଭିନୟ, ଲୋକନାଟକ, ଯାତ୍ରା, ନାଟ

**ନାଟ୍‌ସାହେବ** - *ସଂ:* (ବି.) : ବାବୁ ପଣିଆ, ଲାଟ ସାହେବ

**ନାଟଗଡ଼ା** - *ସ:* (ବି.) : ଖେଳ ଦେଖାଇବା

**ନାଟ ମନ୍ଦିର** - *ଦେ:* (ବି.) : ମୁଖଶାଳା

**ନାଟର ଗୋବର୍ଦ୍ଧନ** - *ଦେ:* (ବି.) : ନାଟର ଗୁରୁ, ବିବାଦର ମୂଳ କାରଣ

**ନାଟି** - *ସଂ:* (ବି.) : (ବଣିଆ ବେପାରୀ)-ରୂପା

**ନାଟିକା** - *ଦେ:* (ବି.) : ଛୋଟ ନାଟକ, ନାଡ଼ି

**ନାଟିମ** - *ବା:* (ବି.) : ଛୋଟ ପିଲାଙ୍କ ଖେଳନା, ନଟୁ

**ନାଟୁ** - *ନବ:* (ବି.) : ନଟ

**ନାଟୁଆ** - *ଅନେ:* (ବି.ବିଂ.) ନାଟ୍ୟ ଅଭିନେତା, ନାଟ୍ୟଭିନେତା, ନାଚ କରୁଥିବା ବ୍ୟକ୍ତି, ନଟ

**ନାଟୁଆଣୀ** - *ନ:* (ବିଂ.) : କଳହୀ, କଳି ସୃଷ୍ଟିକାରୀ

**ନାଟୁବାଟ** - *ଗ:ଗଜ:* (ବି.) : ଅପନ୍ତରା ରାସ୍ତା, ପାଦଚଲା ରାସ୍ତା

**ନାଟେଇବା** - *ଗ:* (କ୍ରି.) ଲଗାଯୋଡା, ଅପ୍ରିତିକର ପ୍ରବର୍ତ୍ତନା

**ନାଠଙ୍ଗା ଠେଙ୍ଗା** - *ଭ:* (ବି.) ବିଷାକ୍ତ ଜଳପୋକ

**ନାଠା** - *ଅ:* (ବିଂ.) : ଗେଡ଼ା

**ନାଠି** - *ନବ:ଦେ:ଅ:କେନ୍ଦୁ:* (ବି.) : ଲାଠି, ଲଟେଇ, ତୋଳିବାପାଇଁ ବ୍ୟବହୃତ ହେଉଥିବା ଦଣ୍ଡ

**ନାଠୁନାଠୁ** - *ଅ:* (ବିଂ.) : ଅଠାଭଳି

**ନାଡୀ** - *କଳା:* (ବି.ବିଂ.) : ରକ୍ତ ବାହି ଧମନୀ, ନାଡିର ସ୍ପନ୍ଦନ, ହୃତପିଣ୍ଡର ସ୍ପନ୍ଦନ, ଜାଣିବା ପାଇଁ ଦେଖାଯାଉଥିବା ମଣି ବନ୍ଧର ଧମନୀ, ଲଣ୍ଡା ହୋଇଥିବା ସ୍ତ୍ରୀ ଲୋକ

**ନାଡୁ** - *କଳା:* (ବିଂ.ବି.) : ଲଣ୍ଡା ହୋଇଥିବା ପୁରୁଷ, ମୁଣ୍ଡନ, ଲଣ୍ଡା

**ନାଡୋ** - *କଳା:* (ବିଂ.) : ଲଣ୍ଡା ହୋଇଥିବା ବ୍ୟକ୍ତି, ଲଣ୍ଡା

**ନାଢ଼** - *କେ:ଦେ:ଯା:* (ବି.) : ପଦ୍ମ, କଇଁର, କଥୋରୁ ପ୍ରଭୃତି ଫୁଲକୁ ଧରି ରଖୁଥିବା କୋମଳ ଦଣ୍ଡ, ନାଳ, ତନ୍ତି

**ନାଢୁକା** - *ଗଦ୍ୟ:* (ବି.) : ଏକ ଶସ୍ୟ

**ନାଢ଼ ଛତୁ** - *ନ:* (ବି.) : ମଉଳା ଛତୁ, ଭାଦ୍ରବ, ଆଶ୍ୱିନ ମାସରେ ଦେଖାଯାଏ, ଯା' ଦେହରେ ନାଢ଼, ବହୁତ ଲମ୍ବା

**ନାଡ଼ା** - *କନ୍ଧ:* (ବି.) : ନଡ଼ା

**ନାଡ଼ାଙ୍ଗି** - *କନ୍ଧ:* (ବି.) : ସନ୍ଧ୍ୟା, ରାତି

**ନାଡ଼ିଆ** - *ଚ୍ୟ:* (ବି.) : ନଡ଼ିଆ

**ନାଡ଼ିଗୁଡ଼ିବା** - *ଦେ:* (କ୍ରି.) ପ୍ରାଣବାୟୁ ବାହାରିଯିବା

**ନାଡ଼ି ଚିପିବା** - *ଚୌ:* (ବିଂ.) : କଥା ମାଚ୍ଚି ଜାଣିବା, ସ୍ୱଭାବ ଜାଣିଯିବା

**ନାଡ଼ିଦେବା** - *ମ:* (କ୍ରି.) : ହଲେଇ ଦେବା

**ନାଢୁଆ** - *କୋ:* (ବି.) : ଡାଙ୍ଗୁଆ

**ନାଢୁକା** - *ମ:* (ବି.) : ଝୁଡ଼ଙ୍ଗ

**ନାଢୁ** - *ସଂ:* (ବି.) : ଠାରଭାଷା-ପାଣି

**ନାଣ** - *ଦେ:* (ବି.) : କ୍ଷତି.ଧ୍ୱଂସ

**ନାଣବନ୍ତ** - *ଢେ:* (ବି.) : ହାତୀଦାନ୍ତ

**ନାଣି** - *ଗଦ୍ୟ:* (ବି.) : ନିଆଁ

**ନାଣ୍ଡି** - *ଖୋ:* (ବି.) : ଏକପ୍ରକାର ଧାନ, ଲଣ୍ଡିତ ସ୍ତ୍ରୀ

**ନାଣ୍ଡିଆ, ଲାଣ୍ଡିଆ** - *ନ:ଖୋ:* (ବିଂ.) : ଶାଖା ଓ ପତ୍ରଶୂନ୍ୟ (ଗଛ), ବିକୃତାଙ୍ଗ, ଅସୁନ୍ଦର

**ନାଣ୍ଡିକା** - *ନ:* (ବି.) : ଧାନର ନାମ

**ନାଣ୍ଡିକିରୀ** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ନାତ** - *ଅନେ:* (ବି.) ପାଦପ୍ରହାର, ଗୋଡ଼ଛଟା, ଲାତ, ଗୋଇଠା

**ନାତ୍ ଗୁତ୍** - *ଝା:* (ବି.) : ନାତି ଏବଂ ଗୋତ୍ରର ସଂପର୍କୀୟ ମାନେ

**ନାତ୍ନୀ** - *ଚୌ:* (ବି.) : ନାତୁଣୀ

ନାତା - *ସୁ:* (ବିଂ.) : ମାନ୍ୟତା
ନାତି - *କଳା:* (ବି.) : ପୁଅ ବା ଝିଅର ପୁଅ
**ନାତିଆ** - *ନୂ:ସୁ:* (ବି.) : ନାତି
**ନାତୁଆ** - *କେ:ନ:* (ବିଂ.) : ନାତ ମାରେ ଯେ, ଗୋଇଠା ପ୍ରହାର କରୁଥିବା(ଗାଇ, ବଳଦ)
**ନାତୁଣୀ** - *ଢ:* (ବି.) : ପୁଅରଝିଅ, ଝିଅର ଝିଅ
**ନାତେନ** - *ସୁ:କଳା:* (ବି.) : ନାତୁଣୀ
**ନାଥ** - *ଢ:ଦେ:* (ବି.) : ସ୍ୱାମୀ, ପ୍ରଭୁ, ଯୋଗୀ
**ନାଥିଆ** - *ଭ:* (ବିଂ.) : ସବୁକାମରେ ଆଗଭର
**ନାଥୁରା** - *ଗଦ୍ୟ:* (ବି.) : ଖେଳରେ ପଛୁଆ
**ନାଥୁଲା** - *ଭ:* (ବିଂ.) : ଯିଏ ମୋଟା ହେଇ ଥିବାରୁ ଚାଲିପାରେନି
**ନାଦ** - *ଭ:ନ:ସୁ:ଦେ:* (ବି.) : ଖୋଳିବା ଆଘାତ, ଶବ୍ଦ, ନାମ ବିଶେଷ, ଗର୍ଜ୍ଜନ, ଶବ୍ଦ
**ନାଦତନୟ** - *ଢ:* (ବି.) : ଶ୍ରୀକୃଷ୍ଣ, ନାଦର ପୁତ୍ର
**ନାଦାନ୍** - *ଦେ:* (ବି.) : ଗରିବ
**ନାଦାବି** - *ଯା:* (କ୍ରି.) : ଅଧିକାର ଛାଡ଼ିବା, ଦାବି ନ କରିବା
**ନା-ଦାର୍** - *ଗଦ୍ୟ:* (ବି.) : ତ୍ୟାଗ ପତ୍ର
**ନାଦି** - *ଗ:* (ବି.) : ଗାତ
**ନାଦିଦେବା** - *ପୁ:* (କ୍ରି.) : ପୁରା ଭୋଜନ କରିବା, ଜୋର ଆଘାତ କରିବା
**ନାଦିବା** - *ଭ:ଯା:ଦେ:* (କ୍ରି.) : କଷ୍ଟଦେବା, ମାରିବା, ପ୍ରହାର କରିବା

ନାନ - *ଢେ:* (ବି.) : ପୁତ୍ର
**ନାନମୁକୀ ଶ୍ରାଦ୍ଧ** - *ଭ:* (ବି.) : ବିବାହବେଳେ କନ୍ୟା ଘରେ ପଡୁଥିବା ଶ୍ରାଦ୍ଧ
**ନାନା** - *ଅନେ:* (ବି.ଅ.ବିଂ.) : ଅନେକ ପ୍ରକାର, ବଡ଼ଭାଇ, ଆଇ, ନନା, ବହୁତ, ପିତାଙ୍କ ଭଉଣୀ, ଅଜା, ଗୋସେଇଁ ବାପା, ବଡ଼ଭଉଣୀ,
**ନାନାଖାନା** - *ଯା:* (କ୍ରି.ବିଂ.) : ସର୍ବସ୍ୱ ନଷ୍ଟ ହେବା
**ନାନାଥାନ** - *ଗଦ୍ୟ:* (ବି.) : ନଷ୍ଟଭ୍ରଷ୍ଟ
**ନାନାଦି** - *ଅନେ:* (ଅ.) : ଅନେକ
**ନାନାମା** - *ରା:* (ବି.) : ଗୋସାଇଁ ମା
**ନାନି** - *ଅନେ:* (ବି.) ବଡ଼ଭଉଣୀ, ମା(ବ୍ରାହ୍ମଣ), ପିଉସୀ
**ନାନୁ** - *ଢେ:* (ବି.) : ଅଜା (ମାର ବାପା)
**ନାନୁମାନ ପିଠା** - *ଗଞ:* (ବି.) : ଖଳି ଭିତରେ ପୁରଦେଇ ଘିଅରେ ଛଣାହେବା ପିଠା
**ନାନ୍ଦୀ** - *ଦେ:* (ବି.) : ମଙ୍ଗଳାଚରଣ, ଶ୍ରାଦ୍ଧ
**ନାନ୍ଦୀମୁଖି** - *ଗଦ୍ୟ:* (ବି.) : ବିବାହାଦି ଅନୁଷ୍ଠାନର ପିତୃଲୋକଙ୍କ ଉଦ୍ଦେଶ୍ୟରେ କରାଯାଉଥିବା ପାର୍ବଣ ଶ୍ରାଦ୍ଧ
**ନାପ** - *ଅନେ:* (ବି.) : ପରିମାଣ, ମାପ
**ନାପ୍‌ବା** - *ସ:* (କ୍ରି.) : ମାପିବା
**ନାପ୍‌ବାର** - *ସୁବ:* (କ୍ରି.) : ମାପିବାର
**ନାପଛାଟ ହେବା** - *ଅ:* (କ୍ରି.) : ସିଧାପଡ଼ିଯିବା

**ନାପର୍** - *ଜୋ:* (ବିଂ.) : ଯଥେଷ୍ଟ,ଅଧିକ

**ନାପାକ** - *ସଂ:* (ବିଂ.) : ଅପବିତ୍ର

**ନାପାକୁନା** - *କଝ:* (ବି.) : ବଣକନ୍ଦା

**ନାପାନୁପି** - *କଳା:* (ବି.) : ମାପାମୁପି, ମାପ ପ୍ରଭୃତି

**ନାପାସ** - *ସୁବ:* (ବି.) : ନାପସନ୍ଦ

**ନାପିତ** - *ଅନେ:* (ବି.) : ବାରିକ

**ନାପିବା** - *ଅନେ:* (କ୍ରି.) ମାପିବା, ମାପ କରିବା

**ନାବ** - *ଦେ:ଭ:* (ବି.) : ନାଆ, ବୋଇତ

**ନାବ ଚଳାଇବା** - *ସଂ:* (କ୍ରି.) : ଜୀବନଯାତ୍ରା ନିର୍ବାହ କରିବା

**ନାବତା** - *ଅ:* (ବିଂ.) : ଲଂପଟ

**ନାବରା ଦଉଡି** - *ଚା:ଗଦ୍ୟ:* (ବି.) : ଜାହାଜ ଦୁଇ ପାଖରେ ଡୋଲ ମସ୍ତକ ପର୍ଯ୍ୟନ୍ତ ନିଶୁଣୀ ପରି ବନ୍ଧା ତିନୋଟି ଦଉଡି,

**ନାବାଳକ** - *ଅନେ:* (ସ.ବିଂ.) : ପିଲା ବୟସ, ଅପ୍ରାପ୍ତବୟସ୍କ, ୧୮ ବର୍ଷରୁ କମ୍ ପୁଅ

**ନାବିକ** - *ଅନେ:* (ବି.) : କେଉଟ, ଝରା, ନାଉରିଆ

**ନାଭ** - *ଚା:* (ବି.) : ଲାଭ

**ନାଭା** - *ରା:* (ବି.) : ପାଣିପାତ୍ର

**ନାମ** - *ଅନେ:* (ବି.) : ସଂକୀର୍ତ୍ତନ, କର୍ଣ୍ଣମନ୍ତ୍ର, ନାଆଁ

**ନାମ୍ ଯଏଗଁ** - *ସ:* (ବି.) : ନାମଯଜ୍ଞ, ନାମ ସଂକୀର୍ତ୍ତନ

**ନାମକ** - *ଅ:ଦେ:* (ବି.) : ଲୁଣ, ନମକ, ଅଭିହିତ

**ନାମକରା** - *ଅନେ:* (ବିଂ.) : ପ୍ରସିଦ୍ଧ

**ନାମକା** - *ଗ:ରା:* (ବି.) : ସମ୍ମାନ, ପ୍ରଭାବ ପ୍ରତିପତ୍ତି

**ନାମଗନ୍ଧ** - *ନବ:* (ବି.) : ଚିହ୍ନ

**ନାମ ଘେନିବା** - *ଗ:* (କ୍ରି.) : ମନ୍ତ୍ର ଗ୍ରହଣ କରିବା, ଗୁରୁ ଦୀକ୍ଷା ଗ୍ରହଣ କରିବା

**ନାମଜାଦା** - *ଅନେ:* (ବିଂ.) : ଖ୍ୟାତନାମା, ପ୍ରସିଦ୍ଧିଥିବା

**ନାମଡାକ, ନାଁ ଡାକ** - *ଯା:ଭ:କେ:* (ବି.) : ଖ୍ୟାତନାମା

**ନାମତରା** - *ନବ:* (ବି.) : ଲଣ୍ଠନ

**ନାମଧାମ** - *ଅନେ:* (ବି.) : ଠିକଣା

**ନାମନେବା** - *ଅନେ:* (କ୍ରି.) : ଧର୍ମଗ୍ରହଣ କରିବା, କର୍ଣ୍ଣମନ୍ତ୍ର ଦେବା; ଠକିହେବା, ଗୁରୁମନ୍ତ୍ର ଦେବା

**ନାମ ପାଇବା** - *ନ:* (କ୍ରି.) : ଶିକ୍ଷାପାଇବା, ଅସୁବିଧାଭୋଗିବା

**ନାମ ଫଳକ** - *ସଂ:* (ବି.) : ନାମ ଲେଖାଥିବା ଫଳକ

**ନାମମାତ୍ର, ନାଁକୁ ମାତ୍ର** - *ଅନେ:* (ବିଂ.) : ନାମକୁ ମାତ୍ର, ଅଳ୍ପ ପରିମାଣ, କ୍ଷୁଦ୍ର

**ନାମର୍ଦ୍ଦା** - *ଗ:* (ବି.) : ଖାତିର୍

**ନାମସିକ** - *ଗ:* (ବି.) : ଅପଖ୍ୟାତି, ନିନ୍ଦା

**ନାମା** - *ଦେ:* (ବି.) : ଦଲିଲ, ଆଦେଶନାମା

**ନାମାବଳୀ** - *ନ:* (ବି.) ଠାକୁରଙ୍କ ନାମଲେଖାଥିବା ଗାମୁଛା, ଉତ୍ତରୀୟ

**ନାମିକା** - *ନବ:* (ବିଂ.) : ସମ୍ମାନାସ୍ପଦ (ବ୍ୟକ୍ତି)

**ନାମିବା** - *ଗ:* (ବି.) : ରାଜିହେବା, ନଇଁବା

**ନାମୀ** - *ଅନେ:* (ବି.) : ନାମଧାରୀ

**ନାମୀଦାମି** - *ଅନେ:* (ବି.) : ପ୍ରତିଷ୍ଠିତଲୋକ

**ନାୟକ** - *ଗଞ:ଦେ:* (ବି.) : ଗ୍ରାମର ମୁଖ୍ୟ ବ୍ୟକ୍ତି, ଶ୍ରେଷ୍ଠ, ଗଣକ

**ନାୟନ୍** - *କଳା:* (ଅ.) : ନାହାନ୍ତି

**ନାୟବ** - *ସଂ:* (ବି.) : ଡ଼େପୁଟି

**ନାୟିକା** - *ଅନେ:* (ବି.) : ପ୍ରଧାନ ନାରୀ

**ନାର** - *ଦେ:* (ବି.) : ଠାର

**ନାରଖାର** - *ଅନେ:* (ବି.) : ଛାରଖାର, ନଷ୍ଟ, ଅଯତ୍ନ, ଧ୍ୱଂସ

**ନାରଖାରିଆ** - *ନ:* (ବି.) : କ୍ଷତି କରୁଥିବା ପୁରୁଷ, ବ୍ୟକ୍ତିବିଶେଷ

**ନାରଖାରୀ** - *ନ:* (ବିଂ.) : ନଷ୍ଟଭ୍ରଷ୍ଟ, ଧ୍ୱଂସ, କ୍ଷତି କରୁଥିବା ସ୍ତ୍ରୀ

**ନାରଙ୍ଗ** - *ଗ:ଦେ:* (ବି.) : କମଳା ଜାତିର ଫଳ, ଏକ ଜାତୀୟ ବନ୍ୟ ବୃକ୍ଷ

**ନାରଙ୍ଗି** - *ସୁ:ଦେ:* (ବି.ବିଂ.) : ଖଟାଫଳ, ସାନ୍ତରାରଙ୍ଗ, କମଳା, ନାଲିମିଶା ହଳଦିଆ ରଙ୍ଗ

**ନାରଜି** - *ଗ:ଗଞ:* (ବି.) : ନିକିତି, ଖଟା ଛୋଟ କମଳା

**ନାରଦ** - *ଦେ:* (ବି.) : କଳିଲଗା ଲୋକ

**ନାରସୁ** - *ରା:* (ବି.) : ଧାଇ

**ନାରା** - *ରା:* (ବି.) : ଝୋଟ

**ନାରାଚ** - *ଢେ:ନ:* (ବି.) : ଶର, ବାଣ

**ନାରାଜ** - *ଢ:ଦେ:ସଂ:ଗଦ୍ୟ:* (ବି.) ରାଜିନହେବା, ଅରାଜି, ଅସନ୍ତୁଷ୍ଟ, ଯେଉଁ କାଷ୍ଠ ଦଣ୍ଡରେ ଲୁଗାବୁଣାପାଇଁ ଟାଣିସୂତା ଗୁଡ଼ା ହୋଇଥାଏ

**ନାରାଜି** - *ସଂ:* (ବି.) : ରୋଷ, ଅନିଚ୍ଛା

**ନାରାବାଜି** - *ସଂ:* (ବିଂ.) : ସ୍ଲୋଗାନ ସର୍ବସ୍ୱ

**ନାରିକି** - *ଯା:* (ବି.) : ମାଛ ପାଇଁ ଓଜନ ଦଣ୍ଡ

**ନାରିକେଳ** - *ଅନେ:* (ବି.) : ନଡ଼ିଆ

**ନାରି ଦେବାର** - *ସୁବ:* (କ୍ରି.) : ଠକିଦେବା

**ନାରୀ** - *ଅନେ:* (ବି.) : ସ୍ତ୍ରୀ, ଭାର୍ଯ୍ୟା

**ନାରେ ପଡ଼ିବା** - *ସୁ:* (ବି.) : ପ୍ରତାରିତ ହେବା

**ନାର୍‌ହାଣ୍ଡା** - *କେନ୍ଦୁ:* (ବି.) : ନଳୀଗୋଡ଼

**ନାଲ** - *ଅନେ:* (ବି.) : ଶଗଡ଼ର ପହି ଉପରେ ଲାଗିଥିବା ମୋଟା ଲୌହ ପାତ, ଲାଲ, ଗୋରୁ ଘୋଡାଙ୍କ ଖୁରାରେ ମାରିବା ଲୁହା ପତ୍ରୀ, ନାଳ, ବାଦ୍ୟ ଯନ୍ତ୍ର ବିଶେଷ, ପଣ୍ଡା, ପୋଡୁଅ

**ନାଲ୍‌ଟିଣି** - *ବ:* (ବି.) : ଲଣ୍ଠନ

**ନାଲକାରା** - *ରା:* (ବି.) : ଶୃଙ୍ଖଳା କାଠ

**ନାଲକୁ** - *ରା:* (ବି.) : ତଳା

**ନାଲଭାଜି** - *ବା:ଭ:ଯା:କେ:* (ବି.) ଖାସିମାଂସ ତରକାରୀ

**ନାଲା** - *ମ:ଭ:* (ବିଂ.ବି.) : ନାଳ, ଲାଲରଂଗ

**ନାଇାହା** - *ରା:* (ବି.) : ତାଳ ବରଡ଼ାର ଲଇ

**ନାଲି** - *ଅନେ:* (ବି.ବିଂ.) : ଲାଲ୍, ରକ୍ତବର୍ଣ୍ଣ, ପାଣିନାଳ, ସୁନା, ଲାଲରଙ୍ଗ

**ନାଲି ଆଖି** - *ଅନେ:* (ବି.) : ଭୟ ପ୍ରଦର୍ଶନ, ରାଗିଯିବା

**ନାଲି କଣ୍ଡିଆ** - *ଖୋ:* (ବି.) : ନାଲି ରଙ୍ଗର କଣ୍ଡିଆ ମାଛ

**ନାଲି ଖୁଡା** - *କେନ୍ଦୁ:* (ବି.) : ଲାଲ ରଙ୍ଗର ସ୍ୱଳ୍ପମିଆଦି ଧାନ

**ନାଲିଛାଲି** - *ଯା:ଭ:କେ:* (କ୍ରି.) : ନେଉରା, ନେହୁରା

**ନାଲି ଜଗନ୍ନାଥ** - *ନ:* (ବି.) : ଧାନର ନାମ

**ନାଲି ଜନ୍ଦା** - *ଖୋ:* (ବି.) : ନାଲି ରଙ୍ଗର ଜନ୍ଦା

**ନାଲିତା** - *ରା:* (ବିଂ.) : ବଡ

**ନାଲିଧୁସୁରା** - *ଖୋ:* (ବି.) : ଏକପ୍ରକାର ଧାନର ନାମ

**ନାଲି ପଗଡ଼ିଆ** - *ପଦ୍ୟ:* (ବି.) : ପୋଲିସ୍

**ନାଲି ପାଣି** - *ନ:* (ବି.) : ଦେଶୀ ମଦ

**ନାଲି ମାଟରା** - *କେନ୍ଦୁ:* (ବି.) : ଲାଲରଙ୍ଗର ଦୀର୍ଘମିଆଦି ଧାନ

**ନାଲିମୁଣ୍ଡିଆ ବାଜ** - *ଗଦ୍ୟ:* (ବି.) : ଏକପ୍ରକାର ବାଜପକ୍ଷୀ

**ନାଲିଶ** - *ସୁ:ଦେ:* (ବି.) ଆପତ୍ତି, ଅଭିଯୋଗ, ମକଦ୍ଦମା

**ନାଲି ସଚିନା** - *କେନ୍ଦୁ:* (ବି.) : ଲାଲ ରଙ୍ଗର ସ୍ୱଳ୍ପମିଆଦି ଧାନ

**ନାଲୁ** - *ଦେ:* (ବି.) : ଲାଲୁ

**ନାଲୁଆ** - *ଭ:ନବ:* (ବିଂ.) : ଅଳସୁଆ, ନେସଡା

**ନାଲେ** - *ମ:* (କ୍ରି.ଅ.) : ନହେଲେ

**ନାଳ** - *ଅନେ:* (ବି.) : ଲାଳ, ଛୋଟ ଜଳଧାର, ପଅଣୀ, ଲୋକ, ନାଳିଆ, ପାଣିଯିବା ବାଟ

**ନାଳଚା** - *ଦେ:ଗଦ୍ୟ:* (ବି.) : ନାଳସା, ଲାଳସା, ଏପାଖ ସେପାଖ, ତୀକ୍ଷଣ ଦେବା

**ନାଳଚିଆ** - *ଗ:* (ବି.) : ଧନ ପ୍ରଭୃତ ଲାଭର ଆଶା

**ନାଳଛେଇ ହେବା** - *ପଦ୍ୟ:* (କ୍ରି.) : ଥାଇ ନଥିବାର ଅଭିନୟ କରିବା

**ନାଳଝାଡ଼ା** - *ନ:* (ବି.) ନାଳରକ୍ତ ଝାଡ଼ାରୋଗ

**ନାଳା** - *ଢେ:* (ବି.) : ନଡ଼ା

**ନାଳି** - *ଦେ:* (ବି.) : ଧାନକ୍ଷେତ, ଜମି

**ନାଳିଆ** - *କୋ:ଯା:ରା:* (ବି.) : କ୍ଷୁଦ୍ରନାଳ, ସଂକୀର୍ଣ୍ଣ ପାଣିଯିବା ରାସ୍ତା, ବେତ ବା କାଇଁଚରେ ତିଆରି ପାଛିଆ

**ନାଳିଘା** - *ଗଦ୍ୟ:* (ବି.) : ଶିରା ଭିତରେ ହେଉଥିବା ଘା

**ନାଳିତା** - *ଗଦ୍ୟ:* (ବି.) : ନାଲୁଆ

**ନାଳିମୂଳି** - *ପଦ୍ୟ:* (ବି.) : ଏକ ପ୍ରକାର ଶଂଖ

**ନାଳୀ** - *ଅନେ:* (ବି.) ନଳା, ଛୋଟ ପାଣିନାଳ, ପିଣ୍ଡାନାସିରେ ଥିବା ଛୋଟ ଗମ୍ଭିରୀ, ପଇଡ଼, ନଡ଼ିଆ ଭିତରେ ଥିବା କୋମଳ ରସୁଆଳ ଅଂଶ

**ନାଳୁଆ** - *ଅନେ:* (ବିଂ.ବି.) : ପାଟିରୁ ଯା'ର ଲାଳବହେ ; ପଚମାନ, ଯୌନ ବିକାରଗ୍ରସ୍ତ ବ୍ୟକ୍ତି, ବିରି, ଲାଳଯୁକ୍ତ, ଗୋଲାକାର ନାଳ

**ନାୱାଲିଗ୍** - *ସଂ* (ବି.) : ନାବାଳକ, ମାଇନର, ଅଠର ବର୍ଷରୁ କମ୍

**ନାଶ** - *ଅନେ:* (ବି.) ନଷ୍ଟ, ଧ୍ୱଂସ, ଦୁକ୍ତାଭାଙ୍ଗ

**ନାଶନ୍** - *କଳା:ବୌ:* (ବି.) : ନାଶନ୍ ବିଦ୍ୟା, ତନ୍ତ୍ରମନ୍ତ୍ର ଦ୍ୱାରା ଅନ୍ୟକୁ ବିପଦରେ ପକାଇବା, ଗୁଣିବିଦ୍ୟା

**ନାଶୁଆ** - *ବୌ:* (ବି.) : ଭାଙ୍ଗଖିଆ ଲୋକ

**ନାସ** - *ଅନେ:* (ବି.) : ଲଙ୍ଗଳ ଉପକରଣ, ଭାଙ୍ଗ ନାସ, ଧୂଆଁପତ୍ର ଗୁଣ୍ଡ, ଦୋକତା

**ନାସ୍‌ଖାନା** - *ନ:* (ବି.) : ଲାସ୍‌ଖାନା, ଶବ ବ୍ୟବଚ୍ଛେଦ ଘର

**ନାସ୍‌ମାଇନା** - *ନ:* (ବି.) : ଶବବ୍ୟବଚ୍ଛେଦ

**ନାସଣ** - *ଦେ:* (ବି.) : ଗୁଣିଗାରେଡ଼ି

**ନାସଦାନୀ** - *ଭ:ନ:ଗ:* (ବି.) : ନାସାଧାର, ଧୂଆଁପତ୍ର, ଗୁଣ୍ଡଥିବା କ୍ଷୁଦ୍ର ଡବା, ନାସ ରଖିବା ପାତ୍ର, କରାଟ

**ନାସନା** - *ଭ:ଯା:* (ବି.) : ଅପରିଷ୍କାର

**ନାସପାତି** - *ଅନେ:* (ବି.) : ଏକ ପ୍ରକାର ଫଳ

**ନାସା** - *ଅନେ:* (ବି.) : ନାକ

**ନାସି** - *ଦେ:କୋ:ଭ:ଗଜ:* (ବି.) : ମୁନିଆ, ଅଗ୍ରଭାଗ, ପର୍ବତର ଶିଖ, ଶେଷରେ

**ନାସୁର** - *ସଂ* (ଅ.ବି.) : ବଣିଆ ବେପାରୀ, ନାହିଁ

**ନାସ୍ତା** - *ଅନେ:* (ବି.) : ଜଳଖିଆ

**ନାସ୍ତିକ** - *ଅନେ:* (ବି.) : ଯେ ଭଗବାନଙ୍କୁ ମାନେ ନାହିଁ

**ନାହା** - *ସଂ:କ:ନୂ:ଦେ:* (ବି.କ୍ରି.) : ଡଙ୍ଗା, ଶ୍ରେଷ୍ଠ, କିଅ, ପ୍ରଭୁ, ରାଜା

**ନାହାକ** - *କ:ଦେ:ନ:* (ବି.) : ଜ୍ୟୋତିଷ, ନାୟକ, ପାଣଜାତିର ସଂଜ୍ଞା

**ନାହାକା** - *ଦେ:ଗ:* (ବି.) : ଶୁଆ (ରାଇଆ), ନୃତ୍ୟାଙ୍ଗନା, ଏକ ଜାତୀୟ ଶୁକ ପକ୍ଷୀ

**ନାହାରା** - *ପଦ୍ୟ:* (ବିଂ.) : ଅଚେତ

**ନାହାଲିବା** - *ବୌ:* (କ୍ରି.) : ଲଗାତର ପତଳା ଝାଡ଼ା ହେବା

**ନାହାଳ** - *କ:* (ବି.) : ଗର୍ଜନ

**ନାହାଳିଆ** - *ବା:* (ବି.) : ଚିତ୍କାର କରି ଉଚ୍ଚ ସ୍ୱରରେ କଥା, କଳି କରିବା

**ନାହି** - *ଅନେ:* (ବି.) : ନାଭି, ଛୋଟ ପିଲାର ନାଭି ବନ୍ଧନୀ, ଘରର ନିହଁ

**ନାହିତଳ** - *ନ:* (ବି.) : ତଳିପେଟ

**ନାହି ବୁଁହୁକି** - *ସ:ବର:* (ବି.) : ନାଭି

**ନାହିମୁଣ୍ଡ** - *ନ:* (ବି.) : ନାଭିସ୍ଥଳ

**ନାହିଁ** - *ନ:ଦେ:* (ଅ.ସ.) : ନାସ୍ତିବାଚକ ଅର୍ଥରେ, ନା

**ନାହୁଡ଼** - *ଖୋ:ଗ:* (ବି.) : ମହୁମାଛି, ଭଅଁର, ବିଛା-ପ୍ରଭୃତିଙ୍କ ପଛପଟେଥିବା ଶୁଣ୍ଢ, କଙ୍କଡ଼ା ବିଛାର ଲାଂଜ

**ନାହୁଲି** - *ଛ:* (ବିଂ.) : ଛଳନା, ବିନତି

**ନାଁ** - *ବା:କଳା:ନୂ:* (ଅ.ବି.) ନାମ, ନାସ୍ତିବାଚକ ଶବ୍ଦ, ନାହିଁ, ନାମ

**ନାଁ କରା** - *ଝା:* (ବି.) : ଭଲ ନାଁ କରିଥିବା

**ନାଁକୁ** - *କେ:* (ଅ.) : କେବଳ ମାତ୍ର

**ନାଁ ଗାଁ** - *ଦେ:ଖୋ:* (ବି.) : ସୁନାମ, ଦୁର୍ନାମ, ପରିଚୟ

**ନାଁଚାରିଆ** - *ନ:* (ବିଂ.) : ନାଁ ପକାଇବା, ଦୁର୍ନାମ ରଟିଥିବା

**ନାଁ ଡରା** - *କନ୍ଧ:* (କ୍ରି.) : ଡରନାହିଁ

**ନାଁଡାକ୍ ଅଛି** - *ସ:* (ବିଂ.) : ସୁନାମ ଥିବା

**ନାଁବୁ କରିବା** - *ବର:* (କ୍ରି.) : ନଷ୍ଟ କରିବା, ସର୍ବସ୍ୱାନ୍ତ କରିବା

**ନାଁତର, ନାଁତରା** - *ଗଜ:* (ବି.) : ଲଣ୍ଡନ

**ନାଁ ଧରାନି** - *ମା:* (ବି.) : ନାମକରଣ

**ନାଁପକାଇବା** - *ନ:* (କ୍ରି.) : ନିନ୍ଦା, ଅପକୀର୍ତ୍ତି ଅର୍ଜନ କରିବା

**ନାଁ ପଟିଆ** - *ଯା:* (ବିଂ.) : ଶକ୍ତିରେ ଊଣା

**ନାଁ ପଡ଼ିବା** - *ଦେ:* (କ୍ରି.) : କଳଙ୍କ ରଟନା ହେବା

**ନାଁ ବାଳିକା** - *ଅନେ:* (ବି.) : ସାବାଳିକି ହୋଇ ନଥିବା ପିଲା, ୧୮ ବର୍ଷରୁ କମ୍ ଝିଅ

**ନାଁରଖିବା** - *ଅନେ:* (କ୍ରି.) : ସୁନାମ ଅର୍ଜନ କରିବା, ଟେକ ରଖିବା

**ନାଁରୁ** - *ନବ:* (ଅ.) : ଆଦୌ, ଜମାରୁ, ନାମରୁ

**ନାଂଗ୍** - *କଳା:* (ବି.) : ନାଗ, ନାଗସାପ

**ନାଂଗ୍ରୀ** - *କଳା:* (ବିଂ.ବି.) : ନାଗରୀ, ରସିକାନାରୀ, ବହୁପୁରୁଷ ଆସକ୍ତା ନାରୀ

**ନା'ଚୁ ଭସ** - *କୋ:* (ବି.) : ଜଡ଼ିବୁଟି, ଟୁଟୁକା ଔଷଧ, ଗାଉଁଲି ଔଷଧ

**ନା'ନୁ** - *କୋ:* (ବି.) ଗଳାରେ ପିନ୍ଧିବା ଅଳଙ୍କାର ବିଶେଷ

**ନି** - *ସ:କଳା:* (ବି.ଅ.) : ନାସ୍ତି ବାଚକ, ନାହିଁ, ନେତି ବାଚକ ଧ୍ୱନି

**ନିଅ** - *ଦେ:* (ବି.) : ନେବା

**ନିଅଣ୍ଟ** - *ଛ:କେ:ନ:* (ବି.ଅ.ବିଂ.) : ନ ଅଣ୍ଟିବା, ଅଭାବ

**ନିଅତ** - *ଛ:ଯା:ଭ:କେ:* (ବି.) : ନିୟମ, ସଚ୍ଚୋଟ, ନିଷ୍ଠା

**ନିଅମ** - *ଗା:ଛ:* (ବି.) : ପ୍ରମାଣ, ଭଗବାନଙ୍କୁ ସାକ୍ଷୀ, ନିୟମ

**ନିଅସି** - *ଛ:* (କ୍ରି.) : ନିଅନ୍ତୁ

**ନିଅଁ** - *ଅନେ:* (ବି.) : ମୂଳଦୁଆ, ଭିତ୍ତିପ୍ରସ୍ତର, ଘରର ଭିତ୍ତି, ଘରର ମୂଳଦୁଆ ପକାଇବାପାଇଁ ଖୋଳାଯାଇଥିବା ଖାଲ

**ନିଅଁମ** - *ଛ:* (ବିଂ.) : ନିୟମ, ବିଧି

**ନିଅଁଶ** - *ଛ:* (ବି.) : କୁଳବୁଡ଼ିବା, ଅଂଶ ବା ଉତ୍ତରାଧିକାରୀ ନଥିବା

**ନିଅଁଶୀ** - *ଛ:* (ବିଂ.ବି.) ବଂଶରେ କେହିନଥିବା ପରିବାର ବା ଲୋକ, ଉତ୍ତରାଧିକାରୀ ହୀନ

**ନିଅଂଟିଆ** - *ଖୋ:* (ବିଂ.) : ଅଭାବି

**ନିଅଂଶ** - *ଅନେ:* (ବି.) : ନିର୍ବଂଶିଆ

**ନିଅଂଶିଆ** - *ଅନେ:* (ବିଂ.) : ବଂଶହୀନ, ଯାହାବଂଶରେ କେହିନଥାନ୍ତି, ବଂଶହୀନ (ଗାଳି ବିଶେଷ)

**ନିଅଂଶୀ** - *ଗ:* (ବି.) : ନିର୍ବଂଶ, ଅପୁତ୍ରିକ

**ନିଅଂଶୀ ଧନ** - *ଗ:* (ବି.) : ଉତ୍ତରାଧିକାରୀ ନଥିବା ବ୍ୟକ୍ତିର ଧନ

**ନିଆ** - *ଅ:ଦେ:* (ବି.) : ଖଇ, ଲିଆ

**ନିଆଅନା** - *ସ:* (କ୍ରି.) : ନେବା ଆଣିବା

**ନିଆଡ** - *ଅ:* (ଅ.) : ନିକଟ

**ନିଆରା** - *ଅନେ:* (ବିଂ.) ଭିନ୍ନସ୍ୱର, ବ୍ୟତିକ୍ରମ, ସ୍ୱତନ୍ତ, ପୃଥକ, ଅଲଗା, ଭିନ୍ନ, ସ୍ୱତନ୍ତ୍ର, ବାରିହୋଇଯିବା, ଖୁବ୍ କମ୍, ବିରଳ

**ନିଆଳି** - *ଦେ:ଖୋ:* (ବି.) ବଣମଲ୍ଲୀ, ଏକପ୍ରକାର ଧାନ

**ନିଆଶା** - *ଦେ:* (ବିଂ.) : ନିରାଶ

**ନିଆଶୀ** - *ଛ:ସୁ:* (ବିଂ.) : ଆଶାଶୂନ୍ୟ, ଅନାଥ

**ନିଆଶ୍ରିଦ୍ଧୀ** - *ଅ:* (ବିଂ.) : ନିଆଶ୍ରୀ, ଅସହାୟା

**ନିଆଁ** - *ଢେ:ଦେ:* (ବି.) : ଘର, ଯୁଇ, ଅଗ୍ନି

**ନିଆଁକାଠି** - *ଅ:ନ:* (ବି.) : ଦିଆସିଲି

**ନିଆଁ କୁହୁକୁଛି** - *ସ:* (କ୍ରି.) : ବିପଦ ବଢୁଛି

**ନିଆଁ ଖପରା** - *ସ:ଅ:* (ବିଂ.ବି.) : ଅତିକ୍ରୁଦ୍ଧ, କ୍ରୋଧ

**ନିଆଁ ଖାଡ଼ି** - *ସ:ସୁବ:ନୂ:* (ବି.) : ଦିଆସିଲି

**ନିଆଁଖୁଡ଼ା** - *ଗ:* (ବି.) : ଚୁଲିର ଅର୍ଦ୍ଧଦଗ୍ଧ କାଠଖଣ୍ଡ

**ନିଆଁଖୁଣ୍ଡା** - *ଦେ:ଖୋ:* (ବି.ବିଂ.) : ଅନ୍ତରରେ ଜଳିବା ନିଆଁ, ଏକ ପତ୍ରିକା, କଳିହା

**ନିଆଁଗିଳା** - *ଦେ:ଯା:ଖୋ:* (ବି.ବିଂ.) ବାହାପିଆ, ଭଲ ମନ୍ଦରେ ବିଚାର ନଥିବା, ଏକପ୍ରକାର ଗାଳି, ଦୁଃସାହସୀ

**ନିଆଁନଗା** - *ଖୋ:ଗଦ୍ୟ:* (ବିଂ.) : ହତଭାଗ୍ୟ, ମୃତ୍ୟୁ କାମନା କରି ପ୍ରୟୋଗ କରାଯାଉଥିବା ଗାଳି

**ନିଆଁ ନଥାଇ ଧୂଆଁ** - *ଦେ:* (ବି.) : କାରଣ ନଥାଇ ଘଟଣା ଘଟିବା

**ନିଆଁପଥର** - *ସ:* (ବି.) : ଚକମକି

**ନିଆଁପାଣିବନ୍ଦ** - *ଖୋ:* (କ୍ରି.) ବାଛନ୍ଦ, ଏକଘରିକିଆ

**ନିଆଁପିଢ଼ି** - *ଅନେ:* (ବି.) : ଦିଆସିଲି

**ନିଆଁ ପୁଆଁଇବା** - *ସ:ଦେ:* (କ୍ରି.) : ନିଆଁ ପାଖରେ ବସିବା

**ନିଆଁବଢ଼** - *ଚ:* (ବି.) : ନିଆଁଲୁଣ୍ଠା

**ନିଆଁ ବରସିବା** - *ଦେ:* (କ୍ରି.) : ଅସହ୍ୟ ଗ୍ରୀଷ୍ମ, ଉତ୍ତାପ

**ନିଆଁ-ବରିଆ** - *କେ:* (ବି.) : ନଡ଼ାରେ ତିଆରି ନିଆଁକୁ ଧରି ରଖିବାର ମଶାଲ

**ନିଆଁବାଣ** - *ନ:ଦେ:ସ:* (ବି.ବିଂ.) : କ୍ରୋଧାଗ୍ନିରେ ପ୍ରଜ୍ଵଳିତ, କ୍ରୋଧରେ ଜଳିବା, ରାଗରେ ଜଳିଯିବା

**ନିଆଁରଡ଼** - *ଦେ:* (ବି.) : ଜ୍ଵଳନ୍ତ ଅଗ୍ନିଖଣ୍ଡ

**ନିଆଁଲଗା** - *ନ:* (ଅ.) : ଗାଳି

**ନିଆଁହୁଳା** - *ଦେ:* (ବି.) : ମଶାଲ

**ନିଇତି** - *କେ:* (ଅ.) : ପ୍ରତିଦିନ

**ନିଉଗୁଳି** - *ଦେ:* (ବି.) : ବନ୍ଦନା, ପ୍ରଣାମ

**ନିଉଛ** - *ଢ:* (ବି.) : ଅତିଊଣା

**ନିଉଛାଇବା** - *ଗ:ଦେ:* (ବି.କ୍ରି.) : ଖାଦ୍ୟଦୃଷ୍ଟି ନିବାରଣ କରିବା, ଅପଦୃଷ୍ଟି ନିବାରଣ, ବନ୍ଦାଇବା

**ନିଉଛାଣି** - *ଢ:* (ବିଂ.) : ଲଘୁକଥା

**ନିଉଛାଳ** - *ଅ:* (ବି.) : କାତର ହୋଇ କହିବା

**ନିଉଛାଳିବା** - *ଗ:* (କ୍ରି.) : ବନ୍ଦାଇବା

**ନିଉଛୁଣା** - *ଢ:ଭ:* (ବିଂ.) : ଅଦାକାରୀ, ତୁଚ୍ଛ, ଦୁଷ୍ଟ, ହୀନ

**ନିଉଡ଼ିବା** - *ଅ:ଗ:କେ:ନ:* (ବି.କ୍ରି.) : ଉଡ଼ିବା, ଅଢାଡ଼ିବା

**ନିଉତା** - *ଖ:ଦେ:ସ:ଦେ:* (ବି.କ୍ରି.) : ନିମନ୍ତ୍ରଣ, ଛାତିଆଣ ଭୋଜି

**ନିଉନ** - *ସ:ଜ:ଦେ:କେ:* (ବିଂ.) : ଛୋଟ, ଅତିତୁଚ୍ଛ, ନମ୍ର, ନ୍ୟୁନ, ଊଣା

**ନିଉଁଛଣା** - *ଖୋ:କେ:* (ବିଂ.) : ଅଲକ୍ଷଣା, ହୀନଲୋକ

**ନିଉଁଛାଳି** - *ଖୋ:* (କ୍ରି.) : ଅତ୍ୟଧିକ ଅନୁରୋଧ କରିବା, ବିନମ୍ର ଅଳି କରିବା

**ନିଏ** - *ଯୁ:ନୂ:ନୂ:* (ବି.ବିଂ.) : ନ୍ୟାୟ, ସଭା

**ନିଏଇ** - *ଦେ:* (ବି.) : ନ୍ୟାୟ

**ନିଏଗେଲ** - *ମ:* (କ୍ରି.) : ନେଇଗଲ

**ନିକ** - *ଅନେ:* (ବିଂ.ବି.) : ସ୍ଵଚ୍ଛ, ନିର୍ମଳ, ନିଷ୍କଳଙ୍କ, ଉତ୍ତମ, ସୁନ୍ଦର, ଭଲ, ଉପନାମ, ଶୁଦ୍ଧ, ନିଷ୍କଳଙ୍କ

**ନିକ୍‌ଲାବା** - *କଳା:* (କ୍ରି.) : ତଡି ଦେବା, ଖେଦିଦେବା, ବାହାର କରିଦେବା, ପଦାକୁ ଆଣିବା

**ନିକକି** - *ନ:* (ଅ.) : ଭଲକି

**ନିକକିନି** - *ନ:* (ବିଂ.) : ଭଲଭାବେ କାମକରିବା, ସଫା ସୁତୁରା ଭାବେ କାମକରିବା

**ନିକଟ** - *ଅନେ:* (ବି.) : ପାଖ, ପାଖକୁ

**ନିକଟା** - *କେ:ଦେ:* (ବିଂ.ବି.) : ନେହୁରା

**ନିକତେଲ** - *କେନ୍ଦୁ:* (ବି.) : ସୋରିଷ ତେଲ

**ନିକମା** - *ଅନେ:* (ବିଂ.ବି.) : କର୍ମହୀନ, କାମ ନଥିବା, ଅକର୍ମା, ଅକାମି, ଅଳସୁଆ, ଯେ କେଉଁ କାମକୁ ନୁହନ୍ତି, ଅଯୋଗ୍ୟ, କର୍ମକୁଢି,

**ନିକମାକାର** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଚ୍ଛମିଆଦି ଧାନ

**ନିକମାର** - *ଯା:* (ବିଂ.) : ନିର୍ଦ୍ଧାରିତ କର୍ମ ବିନା ଫାଙ୍କା ଦିନ

**ନିକର** - *ଦେ:ଗଜ:ଗ:କୋ:* (ବି.) : ଧନ, ରାଶି, ପେଣ୍ଡ, ନିର୍ଗତ

**ନିକର୍ମା** - *ସ:* (ବିଂ.) : ଅକର୍ମଣ୍ୟ, ତୁଚ୍ଛ

**ନିକଲ** - *ଢ:* (ବି.) : ବିତାଡ଼ିତ

**ନିକଲା** - *ସୁ:ଦେ:* (ବି.) : ଲିଙ୍ଗାଗ୍ର

**ନିକଳଙ୍କ** - *ଢ:* (ବିଂ.ବି.) ନିଷ୍କଳଙ୍କ, ଦୋଷତ୍ରୁଟି ବିହୀନ

**ନିକା** - *ଅ:ଭ:ଦେ:ଖୋ:* (ଅ.ବି.ବିଂ.) : ଝମାରୁ, ଖାଲି, ଘର ସଫାକରିବା, ଆଦୌ

**ନିକାକିନି** - *ନ:* (କ୍ରି.ବିଂ.) : ସମ୍ପୂର୍ଣ୍ଣଭାବେ

**ନିକା ଚା** - *ଭ:ଯା:* (ବି.) : କ୍ଷୀର ବିହୀନ ଚା

**ନିକାଞ୍ଚନ** - *ଦେ:* (ବିଂ.) : ଧନହୀନ, ନିର୍ଦ୍ଧନ

**ନିକାମୀ** - *ନବ:* (ବିଂ.) : ଅକାମିଆ

**ନିକାଳିବା** - *ଦେ:ନବ:କୋ:କନ୍ଧ:* (କ୍ରି.) : ବାହାର କରିବା, ତଡିବା

**ନିକାଶ** - *ଦେ:ନ:* (ବି.) ପ୍ରକାଶ, ନିଷ୍ପତ୍ତିହେବା

**ନିକି** - *ଅନେ:* (ବି.ଅ.) : ନାହିଁକି, କି, ସତେ, ନୁହେଁ କି, ପରା

**ନିକିଟା** - *ଭ:* (ବି.) : ଲାଗିରହିବା ଲୋକ

**ନିକିଡ଼ି** - *ଗ:* (ବିଂ.) : ହୀନିମାନ

**ନିକିଡ଼ି ନାଥିଆ** - *ଗ:* (ବିଂ.) : ହୀନିମାନ ବ୍ୟକ୍ତିତ୍ୱ

**ନିକିତି** - *ଅନେ:* (ବି.) : ତରାଜୁ, ଓଜନ ଯନ୍ତ୍ର, ତୁଳାଦଣ୍ଡ

**ନିକିତି କଟାଳ** - *ଗ:* (ବି.) ସୁନା ଓଜନ କରିବା କ୍ଷୁଦ୍ର ତରାଜୁ ଓ ବଟକରା

**ନିକିତିପେଡ଼ା** - *ଖୋ:* (ବି.) : ଯେଉଁବାକ୍ସ ଭିତରେ ନିକିତି ରଖାଯାଏ

**ନିକିମା** - *ଅନେ:* (ବିଂ.) : ଅଳସୁଆ, ନିଷ୍କର୍ମା, କର୍ମଶୂନ୍ୟ, ଅକାମିକା

**ନିକିମାର** - *ଭ:* (ବି.) : ଫାଙ୍କାସମୟ

**ନିକିଲ୍** - *ସ:ଦେ:ଢ:* (କ୍ରି.ବି.) : ବାହାରି ଯିବା, ଫୁଟିବାହାରିବା

**ନିକିଲିବା** - *ଚ:ସୁ:* (କ୍ରି.) : ଦାନ୍ତ ନିକୁଟିବା, ବାହାରିବା

**ନିକିଳିବା** - *ଗ:* (କ୍ରି.) : ତଡ଼ିବା, ବାହାର କରିବା

**ନିକୁଚିଆ** - *ନ:* (ବିଂ.) : ନିମ୍ନ ପ୍ରବୃତ୍ତିର, ଅତିକମ୍‌ରେ

**ନିକୁଚ୍ଛ** - *ଦେ:* (ବି.) : ହେୟ, ଅନୁଚିତ, ଅତି ହୀନଦୃଷ୍ଟିରେ

**ନିକୁଚ୍ଛିଆ** - *ଅନେ:* (ବିଂ.ବି.) : ଲୋଭୀ, ହୀନମନ୍ୟ, କୃପଣ, ଛୋଟଲୋକି, ହିନିମାନିଆ, ନିମ୍ନମାନର ଲୋକ

**ନିକୁଞ୍ଜ** - *ଅନେ:* (ବି.) : କୁଞ୍ଜବନ

**ନିକୁଟା** - *ଖୋ:* (ବିଂ.) : ଢିରାରୁ ସିରା କାଢୁଥିବା ଲୋକ, କୃପଣ

ନିକୁଟି ନାଥିଆ - *ଗଦ୍ୟ:* (ବି.) : କୃପଣ ବ୍ୟକ୍ତି, ନୀଚ ବ୍ୟକ୍ତି

ନିକୁସେଇ - *ନ:* (କ୍ରି.ବିଂ.) : ଖୁସାମତ କରି କହିବା, ଅନୁନୟ ପୂର୍ବକ

ନିକେ - *କଳା:ସ:ନୁ:* (ଅ.ବି.) ପାଖକୁ, ନିକଟକୁ

ନିକେଇବା - *ଅନେ:* (କ୍ରି.ବି.) : ଛଡେଇବା, ନିର୍ମଳ କରିବା, ପାଛୁଡି ସଫା କରିବା

ନିକେତନ - *ଦେ:* (ବି.) : ଆବାସ, ଗୃହ

ନିକେର୍ - *କୋ:* (ବି.) : ହାଫ୍‌ପ୍ୟାଣ୍ଟ, ଛୋଟ ପିଲାଙ୍କ ପିନ୍ଧା ବଡ଼ଚଡ଼ି

ନିକେଲ - *ଦେ:* (ବି.) : ଧାତବ ପଦାର୍ଥ

ନିକେଳେଇବା - *କେନ୍ଦୁ:* (କ୍ରି.) : ଏକପ୍ରକାର ଗାଳି

ନିକେଁ - *କଳା:* (ଅ.) : ନୁହେଁକି, ନାଇସେକି

ନିକୋ - *କଳା:ସୁ:* (ବିଂ.) : ଭଲ, ସୁନ୍ଦର, ନୂଆ

ନିକ୍ତି - *କନ୍ଧ:ଗ:* (ବି.) : ନିକିତି, ସୁନା ରୂପା ମଦି ଓଜନ କରିବା ତରାଜୁ

ନିଖ - *ଅନେ:* (ବି.) ଛୋଟ ଭଉଣୀ, ଉକୁଣୀଙ୍କ ଡିମ୍ବ

ନିଖାତ - *ଗ:* (ବି.) : ଜମି ସମୂହ

ନିଖାରିବା - *ଗ:* (କ୍ରି.) : ଲେଉଟ ପାଉଟ କରିବା

ନିଖାର୍ - *ସ:* (ବି.) : ଧୋବାଘରୁ ଆସିଥିବା ଲୁଗା

ନିଖି - *ଭ:ଯା:* (ବି.) : ଉକୁଣିର ଅଣ୍ଡା, ଉକୁଣୀ ଜାତୀୟ କେଶରେ ଲାଗିବା କୀଟ

ନିଖିଏ - *ଅ:ଗ:* (ବିଂ.) : ଅତିସାମାନ୍ୟ, ମଶାଏ, ସାମାନ୍ୟ ପରିମାଣର, ନିଖେ

ନିଖିଙ୍କେ - *ଢେ:* (କ୍ରି.) : ନାଚିବା

ନିଖୁଣ - *ନ:ଦେ:* (ବିଂ.) ଖଣ୍ଡିଆ ହୋଇନଥିବା, ଦୋଷ ନଥିବା, ନିପୁଣ, ନୀରୋଗ

ନିଖୁତ - *ଇ:* (ବିଂ.) : ଅକ୍ଷତ

ନିଖୁନ୍ - *ସଂ:* (ବିଂ.) : ନିଖୁଣ

ନିଖୁନ୍ ଦିହି - *ସ:* (ବି.) : ନୀରୋଗ ଶରୀର

ନିଖେତରା - *ଯା:ଭ:କେ:* (ବିଂ.) : ଖୁବ୍ ଦରିଦ୍ର

ନିଗଡ଼ - *ନ:ଦେ:* (ବି.) : ବହୁତ ଗୁଡିଏ, ଦୃଢ

ନିଗଡ଼ ନିଦ - *ସଂ:* (ବିଂ.) : ଘୋରନିଦ

ନିଗମ - *ଗଦ୍ୟ:ଦେ:* (ବି.) ଅଗମ୍ୟ, ଗମନାଗମନ ସୁବିଧା ନଥିବା, କାର୍ଯ୍ୟାଳୟ

ନିଗମନ - *ଦେ:* (ବି.) : ବାଟ ଚାଲିବା

ନିଗର - *ଭ:ଯା:* (ବିଂ.) : ମୂଳ, ଅସଲ, ଖାଣ୍ଟି

ନିଗାଡ଼ିବା - *ଯା:ନ:ଭ:* (କ୍ରି.) : ଢାଳିବା, ଇଡ଼ିବା, ତରଳପଦାର୍ଥକୁ ଓଲଟାଇ ବାହାର କରିବା

ନିଗାମ୍ - *ମା:* (ବି.) : ଲଗାମ୍

ନିଗିଡିବା - *କେ:ଯା:ଭ:ଗ:* (କ୍ରି.) : ବୋହିଯିବା

ନିଗିଡ଼ି - *ଗଞ:ଖୋ:* (ବି.) : ଶୀତଦିନେ ନିଆଁପାଇଁ ରଖିଥିବା କାଠଖଣ୍ଡ, ଶୁଖିଯିବା

**ନିଗିଧା** - *ଅ:ଭ:ଖୋ:* (ବିଂ.) କୃପଣ, ଚିଟାଲୋକ, ନଛୋଡ଼ବନ୍ଧା ପ୍ରକୃତିର ଲୋକ

**ନିଗୁ** - *ଗ:* (ବିଂ.) : ଉତ୍କୃଷ୍ଟ

**ନିଗୁଦି** - *ପୁ:* (ବି.) : ବଟାଭାଙ୍ଗର ଗୁଳା

**ନିଗୂଢ** - *ଦେ:* (ବି.) : ଗୁପ୍ତ

**ନିଗ୍ରହ** - *ଦେ:* (ବି.) : ଅନୁଗ୍ରହ

**ନିଘଞ୍ଚ** - *ଗ:* (ବି.) : ଜଂଗଲିଆ

**ନିଘଞ୍ଚ ବତର** - *ଗ:* (ବି.) : ଅତ୍ୟଧିକ ବର୍ଷା, ଅତି ଓଦା

**ନିଘନ** - *ଗଦ୍ୟ:ମ:* (ବିଂ.ବି.) : ଶକ୍ତ, ନିଜର

**ନିଘା** - *ଅନେ:* (ବି.) : ଆଖି, ଦୃଷ୍ଟିରଖିବା, ଅଳସପଣ, ଲକ୍ଷ୍ୟ ରଖିବାକୁ ବୁଝାଏ, ଦୃଷ୍ଟି, ତନଖି, ଧ୍ୟାନ, ମନୋଯୋଗ, ଜଗାରଖା, ତତ୍ତ୍ୱାବଧାନ

**ନିଘାନଗେଇବା** - *ନ:* (କ୍ରି.) : ଜିଦ୍‌ଧରିବା

**ନିଘାରଖିବା** - *ନ:ସ:* (କ୍ରି.) : ଲକ୍ଷ୍ୟ ରଖିବା, ନଜର ରଖିବା

**ନିଘୋଡ଼** - *ଦେ:* (ବି.) : ଗାଢ

**ନିଘ୍ ନିଘା** - *ଅ:* (ବିଂ.) : ପ୍ରବଳ ଖରା

**ନିଙ୍ଗଳ** - *କୋ:କେନ୍ଦୁ:* (ବିଂ.ବି.) : ନିର୍ମଳ, ସଫା, ସ୍ୱଚ୍ଛପାଣି

**ନିଙ୍ଗାମ୍** - *କନ୍ଧ:* (ଅ.) : ଉଁ

**ନିଙ୍ଗାମନ** - *ଗଦ୍ୟ:* (ବି.) : ଅମିନ

**ନିଚୟ** - *ଦେ:* (ବି.) : ଗଦା, ରାଶି, ନିଶ୍ଚୟ

**ନିଚଲ୍** - *କଳା:ଢ:* (ବିଂ.) : ନିଶ୍ଚଲ୍, ସ୍ଥିର, ଅବିଚଳ

**ନିଚା** - *ମା:ସୁନ:* (ବି.ବିଂ.) : ନିମ୍ନ, ନୀଚ, ଖାଲ, ତଳିଆ ସ୍ତର

**ନିଚି** - *ମା:କୋ:* (ଅ.) : ନାହିଁ, ନାସ୍ତିବାଚକ

**ନିଚିତ** - *ଦେ:* (ବି.) : ରଚିତ, ସଞ୍ଚିତ

**ନିଚିନ୍ତ** - *ଢ:* (କ୍ରି.ବି.) : ନିଶ୍ଚିନ୍ତ, ଚିନ୍ତାଶୂନ୍ୟ

**ନିଚିପର** - *ଗଦ୍ୟ:* (ବିଂ.) : ପରିଷ୍କାର

**ନିଚିପଳ** - *ପଦ୍ୟ:* (ବିଂ.) : ପରିଷ୍କାର, ନିର୍ମଳ

**ନିଚୁ** - *ବା:* (ବି.) : ଲିଚୁ

**ନିଚେତ** - *ଢ:* (ବି.) : ଚେତାଶୂନ୍ୟ

**ନିଚ୍ଛକ** - *ଦେ:* (ବିଂ.) : ଖାଣ୍ଟି, ନିରୋଳା

**ନିଛବା** - *ସୁ:* (କ୍ରି.) : ଛେଲିବା

**ନିଛାଟିଆ** - *ଅନେ:* (ବିଂ.) : ନିର୍ଜନ, ଏକୁଟିଆ, ଏକାକୀ

**ନିଛାଲ୍** - *କଳା:* (ବିଂ.) : ଅତ୍ୟନ୍ତ କୃପଣ, ଲୋଭୀ

**ନିଛିବା** - *ବର:* (କ୍ରି.) : ଚୋପା ଛଡ଼ାଇବା

**ନିଜ** - *ଅନେ:* (ସ.) : ଆପଣାର

**ନିଜରା** - *ଦେ:* (ବି.) : କୁମାରୀ

**ନିଜାଣି** - *ଗଦ୍ୟ:କୋ:ନବ:* (ବି.କ୍ରି.) : ଫସଲ ଥିବା ଜମିର ଅନାବନା, ଘାସ କିମ୍ବା ଅନିଷ୍ଟକାରୀ ଗଛ ଉପାଡ଼ିବା କାମ, ବିଲ ବାଛିବା

**ନିଜାମଥାନ** - *ଗଞ:* (ବି.) : ଠିକଣାସ୍ଥାନ

**ନିଜୁ** - *କନ୍ଧ:* (ବି.) : ତେଲ

**ନିଜେ** - *ଅନେ:* (ବି.) : ଆପେ

**ନିଜୋର** - *ଅନେ:* (ବିଂ.) : ଦୁର୍ବଳ, ବଳହୀନ

**ନିଝୁରାବାର** - *ସୁବ:* (କ୍ରି.) : ଚାଉଳ, ଭାତ ଇତ୍ୟାଦିରୁ ପାଣି ଇଡ଼ିଦେବା

**ନିଝରିବା** - *ସ:* (କ୍ରି.) : ପାଣି ପଡ଼ିବା

**ନିଝାଢ଼** - *ଢ:* (ବିଂ.) : ନିଘଞ୍ଚ ଜଙ୍ଗଲ

**ନିଝାନ ମାରିବା** - *ଗ:* (କ୍ରି.) : ବେଉଷଣ

**ନିଟ୍** - *ଦେ:* (ବିଂ.) : ଠିକ୍, ଖାଣ୍ଟି

**ନିଟାଣୁଆ** - *ପଦ୍ୟ:* (ବିଂ.) : ସରଳ, ନରମ

**ନିଟୁଣୀ** - *କଳା:* (ବିଂ.) : କଥା କହିପାରୁ ନ ଥିବା ନାରୀ

**ନିଟୋଳ** - *ଦେ:* (ବିଂ.) : ସୁଗୋଲ, ଚୌରସ

**ନିଠା** - *ଦେ:* (ବିଂ.) : ଅଳସୁଆ, ମଠୁଆ

**ନିଠାର** - *ସୁ:* (ଅ.) : ନିହାତି

**ନିଠୁର** - *ଜ:ଦେ:କଳା:କୋ:* (ବିଂ.) : ନିର୍ଦ୍ଦୟ, ନିଷ୍ଠୁର, କଠୋର ହୃଦୟ

**ନିଠେଇ** - *ଜ:କେ:ସୁ:* (ବି.କ୍ରି.) : ଧୀରେସୁସ୍ଥେ, ଧୀର ଭାବରେ ମନ ଲଗାଇ, ନିବିଡ଼ ଭାବରେ

**ନିଠେଇବା** - *ଯା:ସୁ:* (କ୍ରି.) : ଜୋରଦେଇ ବାରମ୍ବାର କହିବା, ପଡ଼ିରହିବା, ସ୍ୱାର୍ଥ ପାଇଁ ଇତସ୍ତତ

**ନିଡ୍‌ପଟ୍** - *ସ:* (ବି.) : ନିଶ୍ଚିନ୍ତ

**ନିଡ଼ର** - *ସଂବୌ:ଦେ:* (ବିଂ.) : ଭୟହୀନ, ନିର୍ଭୟ, ସାହସୀ

**ନିଡ଼ିବିଡ଼ି** - *ଭ:* (ବି.) : ଟିକିନିକି ଦେଖିବା

**ନିଣ୍ଡି** - *କେନ୍ଦୁ:* (ବି.) : ଛୋଟ

**ନିତାନି** - *ଅନେ:* (ବି.) : କ୍ଷୀର, ଦୁଧ, ଗୋରସ

**ନିତିଦିନ** - *ନ:* (ଅ.) : ପ୍ରତିଦିନ

**ନିତିଦିନିଆ** - *ନ:* (ବି.) : ପ୍ରତିଦିନ, ସବୁ ସମୟରେ

**ନିତ୍ୟାନି** - *ଅନେ:* (ବିଂ.ବି.) ନିତ୍ୟ ନୈମିତ୍ତିକ, ଦୁଗ୍ଧ

**ନିଥର** - *ଦେ:* (ବିଂ.) : ଧୀର, ସ୍ଥିର

**ନିଥରିବା** - *ସୁ:* (କ୍ରି.) : ଅଳ୍ପ ଅଳ୍ପ ଝରିବା

**ନିଥିରିବା** - *କଳା:* (କ୍ରି.) : ଝରିବା, ଥିପିବା, ତରଳ ପଦାର୍ଥ ଗଳି ନିଗିଡିବା

**ନିଥିର୍‌ଲା** - *ଝା:* (ବିଂ.) : ଝରୁଥିବା

**ନିଦ** - *ଅନେ:* (ବି.) : ନିଦ୍ରା, ଶୋଇବା

**ନିଦ୍‌ରିବା** - *ବୌ:* (କ୍ରି.) : ଫାଟିବା

**ନିଦକ** - *ଢ:* (ବି.) : ଭୟହୀନ

**ନିଦମ୍ଭ** - *ଅ:* (ବିଂ.) : ଦୁର୍ବଳ

**ନିଦା** - *ଅନେ:* (ବି.) : ଯାହା ପୋଲା ନୁହେଁ, ମଞ୍ଜ, ଶକ୍ତ, ଟାଣ, ଭାରୀ, ଓଜନିଆ, କଠୋର

**ନିଦାଘ** - *ଅନେ:* (ବି.) : ଖରାଦିନ

**ନିଦାନ** - *ଅନେ:* (ବି.ବିଂ.) : ରୋଗ ନିର୍ଣ୍ଣୟ, ଆଦି କାରଣ, ପ୍ରକୃତ କାରଣ, ନିଶ୍ଚୟ, ମୂଳକାରଣ, ନିହାତି, ନିତାନ୍ତ, ଅସଲ

**ନିଦାନ କାଳ** - *ଗ:* (ବି.) : ଶେଷକାଳ

**ନିଦା, ନିଦୁଆ** - *ନ:* (ବିଂ.) : ପୋଲା ନୁହେଁ, ନିଦ୍ରାଯୁକ୍ତ ଆଳସ୍ୟ ବ୍ୟକ୍ତି

**ନିଦାବିଷ୍ଣୁ** - *ଅନେ:* (ବି.) : ଧର୍ମବକ, ବିରାଡ଼ି ବୈଷ୍ଣବ

**ନିଦାମୂର୍ଖ** - *ଦେ.* (ବି.) : ଗଜମୂର୍ଖ

**ନିଦାରୁଣ** - *ଜ.ଦେ.* (ବିଂ.) : ନିଷ୍ଠୁର, କଠିନ, ଅସଭ୍ୟ

**ନିଦୁଆଳୀ** - *ଗଦ୍ୟ.* (ବିଂ.) : ନିଦର ଅନୁକୂଳ

**ନିଦୁରା** - *ଗ.* (ବିଂ.) : ଯେ ଅଧିକ ଶୋଇ ରହେ, ନିଦୁଆ

**ନିଦେଖିଆ** - *ଅ.* (ବି.) : କେବେ ଦେଖିନଥିବା

**ନିର୍ଦ୍ଧାର୍ଯ୍ୟ** - *ଦେ.* (ବି.) : ନିର୍ଣ୍ଣୟ, ନିଶ୍ଚିତ

**ନିଧକ** - *ସୁ.ମ.ସ.* (ବି.) : ବାଧାଶୂନ୍ୟ, ନିଶ୍ଚିନ୍ତ, ନିର୍ଭୟ

**ନିଧଡ଼କ** - *ନ.ଜ.* (ବିଂ.) : ଶଙ୍କାଶୂନ୍ୟ, ଭୟଶୂନ୍ୟ

**ନିଧାନ** - *ଦେ.* (ବି.) : ଆଧାର, ପାତ୍ର, ଆଶ୍ରୟ

**ନିଧି** - *ଦେ.* (ବି.) : ଧନ, ସମ୍ପତ୍ତି

**ନିଧୋକା** - *ଗଦ୍ୟ.* (ବିଂ.) : ଚିନ୍ତାଶୂନ୍ୟ, ଶାନ୍ତି

**ନିନ୍‌ଖୁଦିଆ** - *ଦେ.* (ବିଂ.) : ଅମଙ୍ଗଳିଆ

**ନିନା** - *ଗ.* (ବି.) : ବଡ଼ଭାଇଙ୍କୁ କେତେକ ରାଜପରିବାରରେ ନିନା ଡାକନ୍ତି

**ନିନାଗୀତ** - *ଗଜ.* (ବି.) : ଶିଶୁଗୀତ

**ନିନାଦିତ** - *ଅନେ.* (ବିଂ.) : ମୁଖରିତ

**ନିନାସ୍** - *କଳା.* (ବି.) : ନିଃଶ୍ୱାସ, ଶ୍ୱାସକ୍ରିୟା

**ନିନି** - *ସ.ମା.କୋ.* (ବି.ସ.) ଝିଅ, ଅଳ୍ପବୟସର ସ୍ତ୍ରୀଲୋକ, ଝିଅମାନଙ୍କୁ ସ୍ନେହ ସମ୍ବୋଧନସୂଚକ ଶବ୍ଦ

**ନିନି ଛୁଆ** - *କେନ୍ଦୁ.* (ବି.) : ଛୋଟ ଝିଅ, କଅଁଳା ପିଲା

**ନିନି, ରିନି, ବୁଭ** - *ଟୌ.* (ବି.) : ସାନଝିଅ

**ନିନ୍ଦ** - *ବା.ବର.କଳା.* (କ୍ରି.ବି.) : ନିଦ୍ରା

**ନିନ୍ଦବା** - *ଟୌ.* (କ୍ରି.) : ନିନ୍ଦା କରିବା

**ନିନ୍ଦା** - *ରା.କଳା.ଦେ.* (ବି.କ୍ରି.) : ଅପଯଶ, ବିଲରୁ ଘାସ ବାଛିବ କାର୍ଯ୍ୟ, ଅପବାଦ

**ନିନ୍ଦାବୁନ୍ଦା** - *କଳା.* (ବି.) : ବଦ୍‌ନାମ୍, ଅପବାଦ

**ନିନ୍ଦିକା** - *ରା.* (ବି.) : ନିନ୍ଦାକରି କହିବା

**ନିପ** - *ଦେ.* (ବି.) : କଦମ୍ବ ଗଛ

**ନିପଟ** - *ଖୋ.ଦେ.ଯା.ଭ.* (ବିଂ.) : ଏକଦମ୍, ପୁରାପୁରି, ନିତାନ୍ତ

**ନିପଟ ମଫସଲ** - *ସ.* (ବି.) : ଗାଉଁଲି ଅଞ୍ଚଳ

**ନିପଟି** - *ରା.* (ଅ.) : କେବଳ, ପୁରାପୁରି, ସମ୍ପୂର୍ଣ୍ଣ

**ନିପାଣିଆ** - *ଅ.ଜ.* (ବିଂ.) : ଜଳବିହୀନ, ଶୁଖିଲା

**ନିପାଣିଆ କଣ୍ଢା** - *ଖୋ.କେନ୍ଦୁ.* (ବି.) ଏକପ୍ରକାର କଣ୍ଢା ଜାତୀୟ ଗୁଳ୍ମ

**ନିପାତ** - *ଅନେ.* (ବି.ସ.) : ଶେଷ, ନିପାତନ, ବିନାଶ, ମୃତ୍ୟୁ

**ନିପାରିଲା** - *ଗ.* (ବିଂ.) ଅସହାୟ, ଅପାରିବାର

**ନିପାଲିଆ** - *ଯା.* (ବିଂ.) : ଅକ୍ଷମ, ଦୁର୍ବଳ, ନ ପାରିଲା

**ନିପିବା** - *ଖୋ.* (କ୍ରି.) : ଲିପିବା

**ନିପୀଡ଼ିତ** - *ଅନେ.* (ବିଂ.) : ଦଳିତ, ପତିତ

**ନିପୁଣ** - *ଅନେ.* (ବିଂ.) : କୁଶଳ, ପଟୁ

**ନିପୁହୁଁଚା** - *କଳା:* (କ୍ରି.) : ନେଇ ପହଞ୍ଚେଇବା, ନେଇ ଛାଡିବା

**ନିବର୍ତ୍ତିଆ** - *ନ:* (ବିଂ.) : ସରଳିଆ ବ୍ୟକ୍ତି

**ନିବଳ** - *ଛ:* (ବି.ବିଂ.) : ବଳହୀନ

**ନିବାଢ଼** - *ପୁ:ଯା:ଖୋ:ଗ:ନ:* (ବିଂ.ବି.) : ଅଧିକା, ଶେଷ, ନିର୍ବାହିତ, ପ୍ରଚୁର, ମଜଭୁତ, ଦୃଢ, ଜୋରରେ

**ନିବାଢ଼ ବେଲା** - *କେନ୍ଦୁ:* (ବି.) : ବଡ଼ କଂସା

**ନିବାଢ଼ିବା** - *ଗଦ୍ୟ:* (ବି.କ୍ରି.) : ତୁଲାଇବା, ଶେଷକରିବା

**ନିବାତ** - *ନବ:* (ବି.) : ସଫାଗୁଡ଼

**ନିବାର** - *ଛ:* (ବି.) : ନିଷେଧ

**ନିବାରିବା** - *ସୁ:* (କ୍ରି.) ବନ୍ଦକରିବା, ମନାକରିବା

**ନିବାସ** - *ଅନେ:* (ବି.) : ଗ୍ରାମ, ବାସସ୍ଥାନ

**ନିବାସୀ** - *ଅନେ:* (ବିଂ.) : ବାସିନ୍ଦା

**ନିବିଡ଼** - *ଅନେ:* (ବିଂ.) : ଘନ

**ନିବିତ** - *ଅନେ:* (ବି.) : ଧାନ କ୍ଷେତରେ ବଳିପୂଜା

**ନିବୁଜ** - *ଅନେ:* (ବି.) : ଯହିଁରେ ଫାଙ୍କ ନଥାଏ

**ନିବୃତ** - *ଅନେ:* (ବି.ବିଂ.) : ଓଢଣା, ବିରତ, ଅଭାବ, ବନ୍ଦହେବା

**ନିବେଦନ** - *ଅନେ:* (ବି.) : ଦରଖାସ୍ତ, ଆବେଦନ, ପ୍ରାର୍ଥନା

**ନିବେଶ** - *ଅନେ:* (ବି.) : ଏକାଗ୍ରତା, ଲିଖନ

**ନିବୋଇଣା** - *ଗଦ୍ୟ:* (ବିଂ.) : ପରିଷ୍କାର

**ନିବଂଶ** - *ନବ:* (ବିଂ.) : ବଂଶହୀନ

**ନିଭରସା** - *ଛ:* (ବି.) : ଭରସାହୀନ, ଅସହାୟ

**ନିଭା** - *ଦେ:ନ:ଭ:* (କ୍ରି.ବିଂ.ବି.) : ଲିଭେଇବା, ଅନୁଭବ କରିବା, ସର୍ବ ନଷ୍ଟକାରୀ

**ନିଭାଇବା** - *ନ:* (କ୍ରି.) : କାର୍ଯ୍ୟ ତୁଲାଇବା

**ନିଭିନଗା ପାଲି** - *ପୁ:* (ବି.) : ଭାଙ୍ଗ ଖାଇ ନିଶାମଗ୍ନ ଅବସ୍ଥାରେ ଦୂରବାଟକୁ ଚାଲିଯିବା

**ନିଭିବା** - *ଦେ:ଅ:* (କ୍ରି.ବି.) : ଲୁଚିଯିବା, ଲିଭିବା

**ନିଭିଯିବା** - *ଯା:ଭ:* (କ୍ରି.) : ଲିଭିବା

**ନିଭିଲା** - *ଛ:* (କ୍ରି.) : ଲିଭିଲା

**ନିଭେଇବା** - *ନ:* (କ୍ରି.) : ଲିଭେଇ ଦେବା

**ନିମ** - *ଅନେ:* (ବି.) : ଲିମ୍ବଗଛ, ପିତା

**ନିମ୍କି** - *ନ:* (ବି.) : ଘିଅ, ମଇଦାରେ ପ୍ରସ୍ତୁତ ଖାଦ୍ୟ

**ନିମ୍‌ଜିଗଲା** - *ମ:* (କ୍ରି.) : ମରିଗଲା

**ନିମକ** - *ଦେ:ନବ:ନ:* (ବି.ବିଂ.) : ନୁଣ, ଲୁଣ, ଲବଣ

**ନିମକ ହଲାଲ** - *ଦେ:ଅ:* (ବି.ବିଂ.) ରାଜଭକ୍ତ, ବିଶ୍ୱସ୍ତ, କୃତଜ୍ଞ

**ନିମକହାରାମ** - *ଖୋ:* (ବିଂ.) : କୃତଘ୍ନ, ବେଇମାନ

**ନିମକି** - *ସୁ:ଦେ:* (ବି.) : ସେଓ, କାଠି ନିମିକି, ଲୁଣିଆ ଗଜା, ନିମିକି

**ନିମଗ୍ନ** - *ଅନେ:* (ବିଂ.) : ନିବିଷ୍ଟ, ନିମଜ୍ଜିତ

**ନିମତ** - *ଢ:* (ବି.) : ଉତ୍ସବ, ଶୁଭଅଶୁଭ କାର୍ଯ୍ୟ, ବାହାନିମତ

**ନିମତା** - *ଢ:* (ବି.) : ଉତ୍ସବ, ନିମନ୍ତ୍ରଣ

**ନିମନ୍ତି** - *ଢ:* (ବି.) : ନିମନ୍ତ୍ରଣ

**ନିମନ୍ତେ** - *ଦେ:ନ:* (ଅ.) : ଯୋଗୁଁ, ପାଇଁ, ହେତୁ

**ନିମନ୍ତ୍ରଣ** - *ଦେ:* (ବି.) : ଡାକ, ଡାକରା, ଅନୁରୋଧ

**ନିମମ ବଚନ** - *ଢ:* (ବି.) : ଶାସ୍ତ୍ରବଚନ, ନିର୍ମମ କଥା

**ନିମାଇ** - *ମା:* (ବି.) : ଅଣ୍ଡା

**ନିମାଜ** - *ଅ:* (ବି.) ନମାଜ (ମୁସଲମାନମାନଙ୍କ ପ୍ରାର୍ଥନା)

**ନିମାନ୍** - *କୋ:ମା:* (ବିଂ.) : ସୁନ୍ଦର, ଡଉଲ, ଠିକ୍, ଭଲ

**ନିମାନୁ** - *ଗଞ:* (ବି.) : ମୋଟେ, ଆଦୌ

**ନିମାର** - *ଜଈ:* (କ୍ରି.) : ନମାର, ମାରନାହିଁ

**ନିମିଟେଲ୍** - *ପୁ:* (ବି.) : କାନ୍ଥ ୫, ୬ ଫୁଟ୍ ଗଢ଼ା ହୋଇଗଲା ପରେ ରଡ଼ ଗୋଡ଼ି ସିମେଣ୍ଟରେ ଦିଆଯାଉଥିବା ଏକ ବାନ୍ଧେଣି, ଲିଣ୍ଟଲ୍

**ନିମିତ୍ତ ଘର** - *ଗଞ:* (ବି.) : ପୁଆଣି ଘର

**ନିମିତ୍ତ୍ୟ** - *ଢ:ଗ:କୋ:* (ବି.) ବିବାହ ପରବର୍ତ୍ତୀ ଚଉଠି ଆସର, ପୁଆଣି

**ନିମିଷ** - *ଦେ:* (ବି.) : ପଲକ, ମୁହୂର୍ତ୍ତ

**ନିମିଷକ** - *ଢ:* (ବିଂ.) : କ୍ଷଣିକ

**ନିମୁଛାଇ** - *ଗ:* (କ୍ରି.ବିଂ.) : ସମର୍ପଣକରି, ମନାସି

**ନିମୁଛିଦେବା** - *କୋ:* (କ୍ରି.) : ଆଶା ଛାଡ଼ିଦେବା, ଅନ୍ୟକୁ ଦେଇଦେବା, ଉତ୍ସର୍ଗ କରିବା

**ନିମୁଛେଇବା** - *କୋ:* (କ୍ରି.) : ବନ୍ଦାପନା କରିବା, ନିଉଛେଇବା

**ନିମୁଣ୍ଡିଆ** - *ବା:* (ବିଂ.) : ମୁରବୀ ବିହୀନ

**ନିମ୍ବୁ, ନେମ୍ବୁ** - *ନବ:* (ବି.) : ଲେମ୍ବୁ

**ନିମ୍ବୁଲି** - *ରା:ଗ:* (ବିଂ.) : ଅତି ଗରିବ, ଦରିଦ୍ର ସ୍ୱଭାବ

**ନିମ୍ବୁ** - *ଦେ:* (ବି.) : କମଳା, ଲେମ୍ବୁ

**ନିମୋଦ** - *ବା:* (ବି.) : ଉଲ୍ଲେଖ, ନିଯୁକ୍ତି

**ନିଯୁକ୍ତି** - *ଅନେ:* (ବି.) : ଅଧିକାରପ୍ରାପ୍ତି, ବିଶିଷ୍ଟ ଆଦେଶ

**ନିଯୋଗ** - *ଭ:ଗଦ୍ୟ:* (ବି.) : ସିଦ୍ଧାନ୍ତ ବୈଠକ, ଖଟଣି, ସେବା

**ନିୟତ** - *ଯା:ଦେ:* (ବି.) : ସର୍ବଦା, ନିତ୍ୟ

**ନିୟତି** - *ଅନେ:* (ବି.) : ଅଦୃଷ୍ଟ, ଦୈବ, ଭାଗ୍ୟ

**ନିୟନ୍ତା** - *ଅନେ:* (ବି.) ନିୟାମକ, ନିୟମକାରୀ

**ନିୟନ୍ତ୍ରଣ** - *ଅନେ:* (ବି.) : ନିବାରଣ

**ନିୟମ** - *ନ:ଦେ:* (ବି.) : ଶପଥ, ପ୍ରତିଜ୍ଞା, ଆଇନ୍, ପ୍ରଣାଳୀ, ସୂତ୍ର, ରାଣ, କରିଆ

**ନିୟମଗିରି** - *କଳା:* (ବି.) : କଳାହାଣ୍ଡି ଓ ରାୟଗଡା ଜିଲ୍ଲାର ସୀମାରେ ଅବସ୍ଥିତ ନିୟମଗିରି ନାମକ ପର୍ବତ

**ନିୟମରଜା** - *କଳା:* (ବି.) ନିୟମଗିରି ପର୍ବତର ଅଧିବାସୀ, ଆଦିବାସୀମାନଙ୍କର ପରମାରାଧ୍ୟ ଦେବତା

**ନିୟମିତ** - *ଅନେ:* (ବିଂ.) : ବିହିତ, ଧରାବନ୍ଧା, ସଂଯତ

**ନିୟାମକ** - *ଅନେ:* (ବି.) : ନିୟନ୍ତା, ନିରୂପକ, ପଥ ପ୍ରଦର୍ଶକ

**ନିୟୁତ** - *ଅନେ:* (ବିଂ.) : ଦଶଲକ୍ଷ

**ନିୟେମ** - *ଢ:* (ବି.) : ନିୟମ

**ନିୟୋଗ** - *ଅନେ:* (ବି.) ନିଶ୍ଚୟ, ମନଯୋଗ, ଅନୁମତି, ଆଜ୍ଞା

**ନିୟୋଗୀ** - *ଅନେ:* (ବିଂ.) : ଆଦେଶକାରୀ

**ନିୟୋଜନ** - *ଅନେ:* (ବି.) : ପ୍ରବର୍ତ୍ତନ, ପ୍ରେରଣ

**ନିରକ୍ତ** - *ଅନେ:* (ବିଂ.) : ଦୁର୍ବଳ, ଭୀରୁ

**ନିରକ୍ତିଆ** - *ଗଦ୍ୟ:* (ବିଂ.) : ରକ୍ତହୀନ, ଦୁର୍ବଳ, ସାହସହୀନ, ଭୀରୁ

**ନିରକ୍ଷର** - *ଅନେ:* (ବି.) : ମୂର୍ଖ

**ନିରଖ** - *ଦେ:* (ବି.) : ବଜାର ଦର, ଭାଉ

**ନିରଗୁଣ୍ଡି** - *ସୁ:* (ବି.) : ବେଗୁନିଆ, ଗୁଳ୍ମ ବିଶେଷ

**ନିରଙ୍କୁଶ ଶାସନ** - *ସ:* (ବି.) : ସ୍ୱେଚ୍ଛାଚାରୀ ଶାସନ

**ନିରତ** - *ଦେ:* (ବି.) : ଆସକ୍ତ, ସନ୍ତୁଷ୍ଟ, ଦିବାନିଶି

**ନିରନ୍ତର** - *ଅନେ:* (ବିଂ.) : ନିରତ, ସର୍ବଦା

**ନିରପେକ୍ଷ** - *ଅନେ:* (ବିଂ.) : ସ୍ୱାର୍ଥଶୂନ୍ୟ, ସ୍ୱାଧୀନ, ଉଦାସୀନ

**ନିରବଧି** - *ଅନେ:* (ସ.ଅ.) : ନିରନ୍ତର, ଅନନ୍ତ, ସଦାବେଳେ

**ନିରମାଇଲ** - *ଅ:* (ବି.) : ନିର୍ମାଲ୍ୟ (ପ୍ରସାଦ)

**ନିରମାଏଲ** - *ସୁ:* (ବିଂ.) : ନିର୍ମାଲ୍ୟ

**ନିରମୂଲିଆ** - *ଦେ:* (ବିଂ.) : ମୂଲ୍ୟହୀନ

**ନିରର୍ଥ** - *ଅନେ:* (ବିଂ.) : ଅର୍ଥଶୂନ୍ୟ, ନିଷ୍ଫଳ

**ନିରସ** - *ଢ:* (ବିଂ.) : ରସହୀନ, ଶୁଖିଲା

**ନିରାଇଁସ** - *କୋ:* (ବିଂ.) : ନିରାମିଷ

**ନିରାକାର** - *ଅନେ:* (ବି.) : ଆକାରହୀନ, ପରମେଶ୍ୱର

**ନିରାଟ** - *ଦେ:ନ:ଗ:ରା:* (ବିଂ.) : ନିପଟ, ସଂପୂର୍ଣ୍ଣରୂପେ, ଦୃଢ, ନିଶ୍ଚୟ, ତୀବ୍ର, କର୍କଶ, ପ୍ରକୃତ

**ନିରାଟ ସତ୍ୟ** - *ସ:* (ବି.) : ବାସ୍ତବସତ

**ନିରାଟିଆ** - *ନ:* (ବିଂ.) : ଅତି ଦୃଢ

**ନିରାଡ଼ମ୍ବର** - *ଅନେ:* (ବିଂ.) : ଆଡ଼ମ୍ବରହୀନ

**ନିରାଧାର** - *ଢ:ଗ:* (ବିଂ.) : ନିଧାର୍ଯ୍ୟ, ସର୍ବଦା, ନିଶ୍ଚୟ

**ନିରାଧାରିଆ** - *ନ:* (କ୍ରି.ବିଂ.) : ମନଧ୍ୟାନଦେଇ

**ନିରାପଦ** - *ଦେ:* (ବିଂ.) : ନିର୍ବିଘ୍ନ, ନିର୍ଭୟରେ

**ନିରାମ** - *ବ୍ୟ:* (ବି.) : ନିରାମିଷ, ନିଷ୍ଠୁର, ଆଦେଶ

**ନିରାମିଷ** - *ଅନେ:* (ବି.) : ଯାହା ଆମିଷ ନୁହେଁ

**ନିରାଶ** - *ଅନେ:* (ବି.) : ହତାଶ, ବଞ୍ଚିତ, ବିଷାଦ

**ନିରାଶ୍ରୟ** - *ଅନେ:* (ବି.) : ଆଶ୍ରୟହୀନ

**ନିରାହାର** - *ଅନେ:* (କ୍ରି.) : ଉପବାସ

**ନିରିଖିବା** - *ଅ:ଦେ:* (କ୍ରି.ବି.) : ନିରୀକ୍ଷଣ କରିବା, ଦେଖିବା

**ନିରିଘାତ** - *ଗ:* (ବିଂ.) : ନିଷ୍ଠୁର

**ନିରିବଂଶିଆ** - *ଗ:* (ବିଂ.) : ବଂଶହୀନ, ବଂଶବୁଡ଼ିବା

**ନିରିଭର** - *ରା:* (ବି.) : ଆଶ୍ରୟ

**ନିରିମାଖି** - *ଛ:ସଂ:ନ:* (ବିଂ.) : ନିରାଶ୍ରୟ, ଅସହାୟ

**ନିରୀକ୍ଷା** - *ଅନେ:* (ବି.) : ଦେଖିବା

**ନିରୀଖ** - *ଅନେ:* (ବି.) : ଖଜଣାର ହାର

**ନିରୀହ** - *ଅନେ:* (ବିଂ.) : ଶାନ୍ତଶିଷ୍ଟ, ଉଦାସୀନ, ସ୍ଥିର, ଶାନ୍ତପ୍ରକୃତି

**ନିରୁଆଁ** - *ଦେ:ଅ:* (ବିଂ.) : ଖାଣ୍ଟି, ନିରୋଳା

**ନିରୁଜ** - *ଅ:* (ବିଂ.) : ନିରୋଗୀ

**ନିରୁତା** - *ନ:ଢ:* (ବିଂ.) : ବିଶୁଦ୍ଧ, ଖାଣ୍ଟି

**ନିରୁମା** - *ପୀ:* (ବିଂ.) : ଅସହାୟ, ବେଚାରା

**ନିରୁଁଆ, ଅବଗେଇ** - *ସ:* (ବି.) : ମିଶାମିଶି ଚାଉଳ

**ନିରେଇଲା** - *ଅ:* (କ୍ରି.) : ଚିତ୍କାର କଲା

**ନିରେଖ** - *ଅନେ:* (ବିଂ.) : ଅନାଥ, ଅନାଶ୍ରିତ

**ନିରେଖି** - *ଅନେ:* (ବି.) : ଭଲଭାବେ ଦେଖି

**ନିରୋଧ** - *ଅନେ:* (ବି.) : ବାରଣ, ବାଧା, କଣ୍ଡୋମ

**ନିରୋଲ** - *ସୁ:ନୂ:* (ବି.ବିଂ.) : ଅସଲ, ବିଶୁଦ୍ଧ, ନିରୋଳା

**ନିର୍ଘାତ** - *ଅନେ:* (ବିଂ.ବି.) : ଦୃଢ଼, ଆଘାତ, ପ୍ରଚଣ୍ଡ, ଭୀଷଣ, ନିପଟ, ପ୍ରବଳ, ଜୋର୍ କରି

**ନିର୍ଘାତିଆ** - *ଅନେ:* (ବିଂ.ବି.) : ନିଷ୍ଠୁର, ନିର୍ଧୁମ ମାଡ଼, ନିର୍ମମ, ନିଦାରୁଣ ଭାବେ

**ନିର୍ଘିନିଆ** - *ବ:* (ବି.) : ନିର୍ଘୃଣ(ସଂ)

**ନିର୍ଜଳା** - *ନ:* (ବିଂ.) : ଜଳବିନା

**ନିର୍ଝର** - *ଅନେ:* (ବି.) : ଝରଣା

**ନିର୍ଦ୍ଦୟ** - *ଅନେ:* (ବିଂ.) : ଦୟାହୀନ, ନିଷ୍ଠୁର

**ନିର୍ଦ୍ଦେଶକ** - *ଅନେ:* (ବି.) : ପ୍ରଦର୍ଶକ, ଉପଦେଶକ

**ନିର୍ଦ୍ଦୋଷୀ** - *ନ:* (ବିଂ.) : ଦୋଷକରିନଥିବା, ଦୋଷୀ ସାବ୍ୟସ୍ତ ହୋଇନଥିବା

**ନିର୍ଦ୍ଧୁମ୍** - *ପୀ:ଦେ:ଢ:ନ:* (ବିଂ.) : ଭୀଷଣ, ପ୍ରବଳ, ଅତ୍ୟନ୍ତ, ବେଦମ୍, ନିସ୍ତୁକ

**ନିର୍ଧନ** - *ଅନେ:* (ବି.) : ଦରିଦ୍ର

ନିର୍ବନ୍ଧ - *ନ:ଦେ:* (ବି.) : ବିବାହ ପାଇଁ ସଂକଳ୍ପ କରିବା ବା କଥା ଦେବା, ବ୍ୟବସ୍ଥା, ବିଧାନ, ବାକ୍‌ଦାନ, ବନ୍ଧନ

ନିର୍ବାଣ - *ଅନେ:* (ବି.) : ମୁକ୍ତି, ବିଶ୍ରାନ୍ତି

ନିର୍ବୀଜ - *ଅନେ:* (ବିଂ.) ବୀଜଶୂନ୍ୟ, ପୁରୁଷତ୍ୱହୀନ

ନିର୍ବୁଦ୍ଧି - *ଅନେ:* (ବିଂ.) : ବୁଦ୍ଧିହୀନ, ବୋକା

ନିର୍ବୋଧ - *ଅନେ:* (ବିଂ.) : ବୁଦ୍ଧିହୀନ, ମୂର୍ଖ, ମେଧାହୀନ, ଜ୍ଞାନ ହୀନ

ନିର୍ଭୟ - *ଅନେ:* (ବିଂ.) : ନିର୍ଭୀକ, ସାହସୀ

ନିର୍ଭର - *ଦେ:ଢ:* (ସ.ବି.) : ଅଧିକ, ବହୁଳ, ଆସ୍ଥା, ବିଶ୍ୱାସ, ଭରସା

ନିର୍ଭା - *ଢ:ନ:* (ବି.) : କାର୍ଯ୍ୟ ସମାପ୍ତ, ଭଲରେ ଶେଷ କରିବା

ନିର୍ଭୁଲ - *ଅନେ:* (ବିଂ.) : ଭ୍ରମଶୂନ୍ୟ

ନିର୍ମମ - *ଅନେ:* (ବିଂ.) : ନିର୍ଦ୍ଦୟ, ନିଷ୍ଠୁର

ନିର୍ମଳ - *ଅନେ:* (ବିଂ.) : ସ୍ୱଚ୍ଛ, ସଫା, ପରିଷ୍କାର

ନିର୍ମଳା - *ଅନେ:* (ବି.) : କତକ ଫଳ

ନିର୍ମାଖୀ - *ଭ:* (ବିଂ.) : ନିରିମାଖୀ, ଅସଂପୃକ୍ତ, ନିରୀହା

ନିର୍ମାଲ୍ୟ - *ଢ:ଖୋ:ଦେ:* (ବି.) : ଶୁଖିଲା ମହାପ୍ରସାଦ, ଶୁଖିଯାଇଥିବା ଅବଢାଅନ୍ନ

ନିର୍ମୂଳି - *ଢ:* (ବି.) : ପତ୍ର ଓ ମୂଳ ନଥିବା ହଳଦିଆ ରଂଗର ସୂତାପରି ଲଟା

ନିର୍ଯ୍ୟାତ୍ - *ସଂ:* (ବି.) : ରପ୍ତାନି

ନିର୍ଲୋଭ - *ଦେ:* (ବିଂ.) : ଲୋଭଶୂନ୍ୟ

ନିର୍‌ଗୁଣି - *କଳା:* (ବି.) : ନିର୍ଗୁଣ୍ଡି, ଛୋଟ ଛୋଟ ପାଉଁଶିଆ ପତ୍ର ବିଶିଷ୍ଟ ବଡ଼ ଗଛ

ନିର୍‌ଘଡିଆ - *ବ:ସୁବ:* (କ୍ରି.ବିଂ.) : ତୁହାକୁତୁହା, ଥରକୁଥର, ସ୍ଥାନ ଅସ୍ଥାନ ଆଗ ପଛ କିଛି ନ ବିଚାରି

ନିର୍‌ଭା - *ନ:* (ବି.) : ଆଶାରଖି

ନିର୍‌ଲେଇବା - *କଳା:* (କ୍ରି.) : ସଫା କରିବା, ଫଳର ଚୋପା ଛଡ଼ାଇବା

ନିର୍‌ସା - *ବୌ:* (ବିଂ.) : ନିମ୍ନମାନର

ନିଲ୍‌ଛା - *କଣ:* (ବି.) : ଛେଳି

ନିଲ୍‌ଜିଆ - *କଳା:ଦେ:* (ବିଂ.) : ନିର୍ଲଜ, ଲଜ୍ଜାହୀନ

ନିଲ୍‌ଠିଆ - *ବୌ:* (ବିଂ.) : ମଠୁଆ

ନିଲଜାବାର - *ସୁବ:* (କ୍ରି.) : ଗାଳିଦେଲେ ମଧ ନିର୍ଲଜ ପରି ପ୍ରତିକ୍ରିୟା କରେ ନାହିଁ

ନିଲମ୍ବିତ - *ସଂ:* (ବି.) : ଚାକିରୀରୁ ଛଟେଇ

ନିଲାମ - *ନ:ଦେ:ଢ:* (ବି.) : ଖୋଲାଡ଼ାକରେ ଲଢିବା; ଡାକି ହାକି ବିକିବା, କିଣିବା, ସର୍ବସାଧାରଣରେ କିଣାବିକା

ନିଲାମୁ - *ଗା:* (ବି.) : ସର୍ବୋଚ୍ଚ ସ୍ତରରେ ବିକ୍ରି କରିବା

ନିଳି - *ନବ:* (ବି.) : ନେଳି

ନିଳିଆ - *ସୁବ:ମା:* (ବିଂ.ବି.) : ନେଳି ରଙ୍ଗର

**ନିଲିଜି** - *ଅ:* (ବିଂ.) : ନିର୍ଲଜ

**ନିଲୁବା** - *ରା:* (ବି.) : କୁଙ୍କୁମ

**ନିଳିଛ** - *ଗ:* (ବି.) : ଛେଳି ବୋଦା, ଖାସି

**ନିଶ** - *ଅନେ:* (ବି.) : ମୁହଁରେ ଥିବା ମୁଛ, ମେଗ୍ଘ, ଦାଢ଼ି, ନିଶ

**ନିଶ୍ଚେ** - *ନୂ:* (ଅ.) : ନିଶ୍ଚୟ

**ନିଶ୍ଚୁଚି** - *ଗ:* (ବିଂ.) : ନିଶ୍ଚିନ୍ତ, ଝଞ୍ଜାଳମୁକ୍ତ, ଫଭସଲା

**ନିଶ୍‌ବା, ପଜାବା** - *ସ:* (କ୍ରି.) : ଶାଣଦେବା

**ନିଶମନ** - *ଦେ:* (ବି.) : ଦର୍ଶନ, ଶ୍ରବଣ

**ନିଶା** - *ଦେ:ନ:ଗଦ୍ୟ:* (ବି.) : ରାତି, ମାଦକ, ମାଦକ ଦ୍ରବ୍ୟ, ହଳଦୀ, ଉତ୍ସାହ

**ନିଶାଖା** - *ଦେ:* (ବି.) : ଆଶ୍ରାହୀନ, ଶାଖାହୀନ

**ନିଶାଖୋର** - *ନ:* (ବିଂ.) : ଯିଏ ମାଦକ ଦ୍ରବ୍ୟ ଖାଏ

**ନିଶାଢ଼ି** - *ଭ:ଯା:କେ:* (ବିଂ.) : ନିଶାସକ୍ତ

**ନିଶାଣ** - *ପୁ:ମା:* (ବି.) : ଧ୍ୱଜ, ପତାକା, ଚିହ୍ନ, ବାଦ୍ୟବିଶେଷ

**ନିଶାନ** - *ନୂ:ସ:* (ବି.) : ନିଶାଣ, ଢୋଲ ପରି ନିଶାନ, ସମ୍ବଲପୁରୀ ଗୀତର ବାଦ୍ୟଟିଏ

**ନିଶାନି** - *ପୁ:* (ବି.) : ଚିହ୍ନ

**ନିଶାପ** - *ଅନେ:* (ବି.କ୍ରି.) : ନ୍ୟାୟ ବସିବା, ବିଚାର କରିବା, ନିଷ୍ପତ୍ତି ଦେବା

**ନିଶାପାଣି** - *ନ:* (ବି.) : ମଦ

**ନିଶାବାର୍** - *ସଂ:* (ବି.) : ନିଶାଦ୍ରବ୍ୟ ମିଳୁଥିବା ସ୍ଥାନ

**ନିଶାସ୍** - *ନୂ:କଳା:* (ବି.) ନିଃଶ୍ୱାସ, ଶ୍ୱାସକ୍ରିୟା, ନିନାସ୍, ଅସନ୍ତୋଷ

**ନିଶାସ ପଡ଼ିବା** - *ସ:* (କ୍ରି.) : ଅଭିଶାପ ଦେବା

**ନିଶି** - *ଅନେ:* (ବି.) : ରାତି

**ନିଶିଡ଼ା** - *ଦେ:* (ବି.) : ଦାନ୍ତ ନିଫିଡ଼ି ହସିବା

**ନିଶିଣି** - *ଦେ:* (ବି.) : ନିଶୁଣୀ, ସିଡ଼ି

**ନିଶିପାଳନ** - *ନ:* (ବି.) ଅମାବାସ୍ୟା, ସଂକ୍ରାନ୍ତିରେ ଅନ୍ନଭୋଜନ ନକରିବା

**ନିଶୁଣି** - *ସଂ:ଢ:ଅ:* (ବି.) : ବାଉଁଶ ତିଆରି ସିଡ଼ି

**ନିଶୂତି** - *ଗଦ୍ୟ:* (ବିଂ.) : ନିରବ, ଶବ୍ଦଶୂନ୍ୟ

**ନିଶ୍ଚୟ** - *ଦେ:* (ବି.) : ନିର୍ଣ୍ଣୟ, ସ୍ଥିର, ନିର୍ଦ୍ଧାରଣ

**ନିଶ୍ଚଳସାଧିବା** - *ଢ:* (ବି.) : ସ୍ଥିର ସାଧନା, ଦୃଢ଼ ସାଧିକା

**ନିଶ୍ଚିନ୍ତ** - *ଦେ:* (ବିଂ.) ଚିନ୍ତା ରହିତ, ଚିନ୍ତାଶୂନ୍ୟ

**ନିଶ୍ୱାସ ପଡ଼ିବା** - *କୋ:* (ବି.) : ଅଭିଶାପ

**ନିଷ୍କିବା** - *କଳା:* (କ୍ରି.) : ପଦାକୁ ବାହାରି ପଡିବା

**ନିଷ୍ଟିଆ** - *ବୌ:* (ବିଂ.) : ଅଳସୁଆ

**ନିଷଢ** - *ଦେ:* (ବିଂ.) : ଦୁର୍ବଳ, କ୍ଳାନ୍ତ

**ନିଷଦ୍** - *କଳା:ସୁବ:* (ବିଂ.) : ଅଳସୁଆ, କଦରିଆ

**ନିଷାନ୍** - *ସୁବ:* (ବି.) : ଦୁନ୍ଦୁଭି, ଦୁଲ୍‌ଦୁଲି ବାଜା

**ନିଷିଦ୍ଧ** - *ଅନେ:* (ବିଂ.) : ବାଧାପ୍ରାପ୍ତ, ମନ୍ଦ, ବାରଣ

**ନିଷେଦ** - *ଅନେ:* (ବି.) ଅନୁରକ୍ତ, ଅନୁସରଣ, ପୂଜା

**ନିଷେଧ** - *ଅନେ:* (ବି.) : ବାଧା, ପ୍ରତିଷେଧ, ବାରଣ

**ନିଷ୍ଟି କରିବା** - *ଅ:* (ବି.) : ନିୟମ କରିବା

**ନିଷ୍ଠା** - *ଅନେ:* (ବି.) : ଭକ୍ତି, ଏକବ୍ରତ, ଉତ୍କର୍ଷ, ବ୍ୟବସ୍ଥା

**ନିଷ୍ଠାକଥା** - *ଗଦ୍ୟ:* (ବି.) : ଜବାବ, ଖାଣ୍ଟିକଥା

**ନିଷ୍ଠାପର** - *ଅନେ:* (ବିଂ.) : ଖାଣ୍ଟି, ଧାର୍ମିକ

**ନିଷ୍ଠୁର** - *ଅନେ:* (ବିଂ.) : ବର୍ବର

**ନିଷ୍ପାପ** - *ଅନେ:* (ବିଂ.) : ପାପଶୂନ୍ୟ

**ନିଷ୍ପତ୍ତି** - *ଅନେ:* (ବି.) : ନିର୍ବାହ, ମୀମାଂଶା

**ନିଷ୍ଫଳ** - *ଦେ:* (ବିଂ.) : ବୃଥା, ନିରର୍ଥକ

**ନିସ୍କାମ୍** - *ସ:* (ବି.) : ମୂଳପୋଛ

**ନିସ୍ ତିଏନ୍** - *ସ:* (ବିଂ.) : ଯିଏ କାମ କରେ ନାହିଁ(ସ୍ତ୍ରୀ), ଅଳସୁଆ ସ୍ତ୍ରୀ

**ନିସ୍‌ନିଆ** - *କଳା:* (ବି.) : ନିସାଣ ବାଦକ

**ନିସ୍‌ଫିକର** - *ସୁ:* (ବିଂ.) : ବେଫିକର

**ନିସ୍‌ବା** - *ସୁ:* (କ୍ରି.) : ଶାଣଦେବା

**ନିସକାତିଆ** - *ବା:* (ବିଂ) : ହାଲିଆ

**ନିସଖା** - *ଦେ:* (ବିଂ.) : ନିରାଶ୍ରୟ, ବନ୍ଧୁହୀନ

**ନିସଙ୍ଗ** - *ଜ:* (ବିଂ.) : ଏକୁଟିଆ, ପରିତ୍ୟକ୍ତ

**ନିସାନ** - *ସୁ:କଳା:ସ:* (ବି.) : ବାଦ୍ୟ, ଚିହ୍ନ, ଗୋଲାକାର ଏକ ମୁହାଁ ବାଦ୍ୟ ବିଶେଷ

**ନିସାନି** - *ସୁବ:* (ବି.) : ସିଢ଼ି

**ନିସ୍ମା** - *ନ:* (ବି.) : ଥଣ୍ଡାହୋଇଯିବା

**ନିସିଡିବା** - *ବା:ଗଦ୍ୟ:* (କ୍ରି.) : ଦାନ୍ତନିକୁଟି ଖତେଇହେବା, ନିର୍ଲଜ ଭାବେ ଦେଖାଇବା

**ନିସିମିଯିବା** - *ନ:* (ବି.) : ଚେମେଚିଆ ହୋଇଯିବା, ଜଳୀୟବାଷ୍ପ ସଂସ୍ପର୍ଶରେ ଆସିବା ପରେ ଓଦାଳିଆ ହୋଇଯିବା ଅବସ୍ଥା, ସିଲ୍‌ପିଯିବା

**ନିସିର୍‌ବାର** - *ସୁବ:* (କ୍ରି.) : ଧାନ କେଣ୍ଡା ବାହାରିବା

**ନିସୁଆସ** - *ସୁ:ଦେ:* (ବି.) : ନିଃଶ୍ୱାସ, ଅଭିଶାପ

**ନିସୋର** - *ଗଦ୍ୟ:* (ବିଂ.) : ଶାନ୍ତ, କୋଳାହଳ ଶୂନ୍ୟ

**ନିସ୍ତ** - *ଗଜ:ରା:କୋ:* (ବି.ବିଂ.) : ଅଳସୁଆ, ଆଳସ୍ୟ, ଅଳସ

**ନିସ୍ତର** - *ଜ:* (କ୍ରି.) : ଉଦ୍ଧାର, ନିସ୍ତାର

**ନିସ୍ତାର** - *ସୁବ:ଦେ:* (ବି.) : ଜଣକର ଦାଉ ବା ଜଂଜାଳରୁ ରକ୍ଷା, ଉଦ୍ଧାର, ଅବ୍ୟାହତି, କର, କାଠପଞ୍ଚା

**ନିସ୍ତିଆ** - *ସୁବ:* (ବିଂ.) : ନିର୍ଲଜ

**ନିସ୍ତୁକ** - *ଅ:ଖୋ:ଜ:* (ବିଂ.କ୍ରି.) : ନିର୍ଦ୍ଧୁମ, ପ୍ରବଳ, ନିର୍ମମ

**ନିସ୍ତେଇବା** - *ବୌ:* (କ୍ରି.) : ଅଳସେଇବା

**ନିସ୍ତେଜ** - *ଦେ:ଜ:* (ବିଂ.) : ଦୁର୍ବଳ, ଶକ୍ତିହୀନ

**ନିସ୍ପନ୍ଦ** - *ଦେ:* (ବିଂ.) : ସ୍ଥିର, ସ୍ପନ୍ଦନହୀନ
**ନିସ୍ପୃତି** - *କେ:* (ବିଂ.) : ନିଶ୍ଚିନ୍ତ, ନିରାପଦ
**ନିସ୍ୱ** - *ଦେ:* (ବିଂ.) : ଦରିଦ୍ର, ଦୀନ, ଧନହୀନ
**ନିହ** - *ଚୌ:* (ବି.) : ନିଆଁ
**ନିହଣ** - *ଖୋ:ଦେ:* (ବି.) : ଯେଉଁଥିରେ ଧାତୁ କଟାଯାଏ ଏକମୁଣ୍ଡରେ ଧାର ହୋଇଥିବା ଦଣ୍ଡ, ବଟାଣି
**ନିହତ** - *ଦେ:* (ବିଂ.) : ହତ, ଆହତ
**ନିହନ** - *ନୂ:* (ବିଂ.) : ଗରିବ
**ନିହମା** - *ଗ:* (ଅ.) : ହଠାତ୍
**ନିହଲ** - *କଝ:ଗଛ:* (ବି.ଅ.) : ସୁବିଧାରେ
**ନିହାଇ** - *ଖୋ:* (ବି.) : ଯାହାଉପରେ ଧାତୁ ଜିନିଷ ପିଟିବାପାଇଁ ରଖାଯାଏ
**ନିହାଣ** - *ଖୋ:* (ବି.) : ଛୋଟ ସାବଳ ଭଳି ଏକ ଅସ୍ତ୍ର
**ନିହାଣ ମୁଗୁର** - *ସଂ:* (ବି.) : ଟାଙ୍କି ମାର୍‌ତୁଲ୍
**ନିହାତି** - *ନ:କେ:ଦେ:* (ଅ.) : ନିତ୍ୟାନ୍ତ, ଅତ୍ୟନ୍ତ
**ନିହାର** - *ଦେ:* (ବି.) : କାକର
**ନିହାଲ** - *ଅନେ:* (ବିଂ.) : ହାଲିଆ, ବ୍ୟଙ୍ଗାତ୍ମକ ସ୍ୱରରେ ନିଶ୍ଚିନ୍ତ, ବେଫିକର, ଧନବାନ, ସୁଖୀ, ନିଶ୍ଚିତ, ଧନ୍ୟ
**ନିହି** - *ନୂ:* (ବି.) : ଭିତ୍ତି
**ନିହିତ** - *ଦେ:* (ବି.) : ସ୍ଥାପିତ, କୃତ
**ନିହିଁ** - *ସୁ:* (ଅ.) : ନାହିଁ
**ନିହେ** - *ଅ:ଦେ:* (ଅ.) : ନାହିଁ, ନା, ନୁହେଁ
**ନିହେ ଆସେ** - *ଚୌ:* (କ୍ରି.) : ଏ ପର୍ଯ୍ୟନ୍ତ ଆସିନାହିଁ
**ନିହେଲେ** - *ସ:* (ଅ.) : ନହେଲେ
**ନିଃଶଙ୍କ** - *ଗ:* (ବି.) : ରାଜତନ୍ତ୍ର ଯୁଗର ନଗର ରକ୍ଷକଙ୍କ ଉପାଧି, ଗଞ୍ଜାମ ବୁଢାରଶିଙ୍ଗି ରାଜାଙ୍କ ସାଙ୍ଗା ଉପାଧି
**ନିଃସନ୍ତାନ** - *ନ:* (ବିଂ.) : ଆଣ୍ଟୁକୁଡ଼ା, ସନ୍ତାନ ନଥିବା (ଲୋକ)
**ନୀଚ** - *ଛ:ନ:ଦେ:* (ବିଂ.) : ଛୋଟ, ହୀନ, ଘୃଣ୍ୟ, ବର୍ବର
**ନୀଚବୁଦ୍ଧି** - *ଦେ:* (ବିଂ.) : ହୀନବୁଦ୍ଧି
**ନୀଚା** - *ଦେ:* (ବି.) : ତଳ, ଖାଲ
**ନୀତି** - *ଛ:ଦେ:* (ବି.) : ପ୍ରତ୍ୟହସେବା, ଦେବତାଙ୍କ ଭୋଗ ସେବା, ରୀତି, ପ୍ରଥା, ନିୟମ, ଭଲକାମ
**ନୀତି ପ୍ରଣୟନ** - *ସଂ:* (ବି.) ନିୟମ ନିର୍ଦ୍ଧାରଣ
**ନୀନି** - *ଦେ:* (ବି.) : ଝିଅ, କନ୍ୟା
**ନୀବାର** - *ଦେ:* (ବି.) : ଝରା, ବାଲୁଙ୍ଗା ଧାନ
**ନୀବି** - *ଦେ:* (ବି.) : କଛା, କଟି
**ନୀର** - *ଦେ:* (ବି.) : ଜଳ, ପାଣି
**ନୀରବ** - *ଦେ:* (ବିଂ.) : ଚୁପଚାପ୍, ପାଟିତୁଣ୍ଡ ବନ୍ଦ
**ନୀରସ** - *ଦେ:* (ବିଂ.) : ଶୁଷ୍କ, ସ୍ୱାଦୁହୀନ
**ନୀରା** - *ଗଦ୍ୟ:* (ବି.) : ସଢତାଡ଼ି, ମହୁରାଳି ମାଛ

**ନୀରୋଗ** - *ଦେ:* (ବିଂ.) : ରୋଗଶୂନ୍ୟ

**ନୀର୍‌ସା, ନୀରସା** - *ଗୌ:* (ବିଂ.) : ଅନୁର୍ବର

**ନୀର୍‌ହୀ** - *ସୁବ:* (ବିଂ.) : ନିରପରାଧ, ନିରୀହ

**ନୀଳିଆ** - *କଳା:* (ବିଂ.କ୍ରି.) : ନେଳି, ନୀଳ ବର୍ଣ୍ଣ, ନେଇଯାଇପାରେ

**ନୀଳିକାଟ୍‌ବାର** - *ସୁବ:* (କ୍ରି.) : ଧାନକେଣ୍ଡା କ୍ଷୀର ଢୋକି ବଙ୍କାହେଲା ସମୟରେ ଶୁଖିଯିବା

**ନୀଳ** - *ବା:ଦେ:* (ବି.) : ପାଟୁଆ ଯାତ୍ରାର ପୂର୍ବଦିନକୁ କୁହାଯାଏ, ସେଦିନ ପୋଖରୀରୁ ଥମ୍ବିକାଠ ବା ମେରୁକାଠ ଉଠାଯାଏ, ପିଲା ଜନ୍ମ ହେବାର ନଅ ଦିନରେ ପାଳିତ କର୍ମ, ନେଳିରଙ୍ଗ

**ନୀଳଗାଈ** - *ଅନେ:* (ବି.) : ଏକ ପ୍ରକାର ବନ୍ୟପଶୁ

**ନୀଳନାଟ** - *ବା:* (ବି) : 'ଜମିଦାର ଗଡ଼'ରେ ଅନୁଷ୍ଠିତ ଯାତ୍ରା ନାଟ

**ନୀଳପଡିଯିବା** - *ସଂ:* (କ୍ରି.) : ଶରୀରରେ ବିଷ ଖେଳିଯିବା, ସର୍ପାଘାତ ହେବା

**ନୀଳବାର** - *ପଦ୍ମ:* (ବି.) : ବ୍ରତ ଉଦ୍‌ଯାପନର ପୂର୍ବ ଦିନ

**ନୀଳସରସ୍ୱତୀ** - *ଅନେ:* (ବି.) : ତାରାଦେବୀ

**ନୀଳି** - *ଦେ:* (ବି.) : କଛା, କଟି

**ନୀଳିଆ** - *ଦେ:* (ବି.) : କଳାଭୀମ ପାଣି, ନୀଳିମା

**ନୀଳିମା** - *ଦେ:* (ବି.) : ନୀଳବର୍ଣ୍ଣ

**ନୁ** - *ଗୌ:ସ:* (ଅ.) : ଠାରୁ

**ନୁଆଇ** - *ପଦ୍ମ:* (ବି.) : ଦାଦନ

**ନୁଆଁଟି** - *ନୂ:* (ବିଂ.) : ନୂତନ ଭାବରେ

**ନୁଆଁଣିଆ** - *ଯା:ଦେ:* (ବିଂ.) : କମ ଉଚ୍ଚ, ନଇଁପଡ଼ିଥିବା, ମୁଣ୍ଡ ନୁଆଇଁ ଘରେ ପଶିବା

**ନୁଆ'ଭ** - *କେ:* (ବି.) : ନୂଆ ବୋଉ, ଭାଉଜ

**ନୁଭକି** - *ଢ:* (ବି.) : ଝଡ଼ିବର୍ଷା, ବତାସ

**ନୁଭଛଣା** - *ଗ:* (ବି.) : ହତଭାଗ୍ୟ

**ନୁକ** - *ବା:ଦେ:ମ:ଗୌ:* (ବି.ବିଂ.) : ଲୋକ, ଡଉଲ

**ନୁକ୍‌ସାନ** - *ସଂ:ବା:ସୁ:ନୂ:* (ବି.ବିଂ.) : କ୍ଷତି, ଘାଟା, ହାନି, ଅପଚୟ

**ନୁକ୍‌ସେନ୍** - *ସ:* (ବି.) : ନଷ୍ଟ

**ନୁକୁରୁବାର** - *ଛ:* (ବି.) : ଶୁକ୍ରବାର

**ନୁକୋ** - *ଅନେ:* (ବିଂ.) : ନିଖୁଣ, ଭଲ, ସାରାଂଶ, ସୁନ୍ଦର, ମଙ୍ଗଳ

**ନୁଖ୍‌ରା** - *ନୂ:* (ବିଂ.) ତେଲ ଦେହରେ ନଲଗାଇ ଥିବା

**ନୁଖୁରା** - *ଅନେ:* (ବିଂ.ବି.) : ରୁକ୍ଷ, ତେଲ ନ ଲଗାଇଥିବା କେଶ, ଅଲରା

**ନୁଖୁରା ମଣିଷ** - *ସଂ:* (ବିଂ.) : ଚର୍ମରୋଗୀ, ଝଡ଼ିଯାଇଥିବା ଲୋକ

**ନୁଖୁରା ମାଟି** - *ସଂ:* (ବି.) : ମରୁଡ଼ି

**ନୁଗା** - *ଅ:କେନ୍ଦୁ:* (ବି.) : ଲୁଗା

**ନୁଙ୍ଗାମୁହାଁ** - *ନ:* (ଅ.) : ଏକପ୍ରକାର ଗାଳି, ଚୋରମୁହାଁ

**ନୁଙ୍ଗି** - *ବ୍ରା:* (ବି.) : ପିନ୍ଧାବସ୍ତ୍ର, ଲୁଙ୍ଗି

**ନୁଙ୍ଗୁଡେଇବା** - *ନ:* (କ୍ରି.) ଝିଅଙ୍କ ପଛେପଛେ ଯିବା

**ନୁଙ୍ଗୁଡ଼ା** - *କେ.ନ:* (ବିଂ.) : ଲମ୍ପଟ, ଅସନା, ଝିଅଙ୍କ ପଛେ ପଛେ ଯେ ଗୋଡାଇଥିବା, ପଟେଇବାକୁ ଇଛା କରୁଥିବା

**ନୁଙ୍ଗୁ ନୁଙ୍ଗୁ ହେବା** - *ଗ:* (କ୍ରି.) : ଲମ୍ପଟ ଭାବର ଭ୍ରମଣ

**ନୁଙ୍ଗୁପୁଙ୍ଗୁ** - *ଯା:ଭ:* (କ୍ରି.ବିଂ.) : ଫାଇଦା ପାଇଁ ଇତସ୍ତତ ହେବା

**ନୁଙ୍ଗୁରା** - *ଅନେ:* (ବିଂ.ବି.) : ଘୃଣ୍ୟ, ମନ୍ଦ, କଳିଲଗାଇବା ଅଭ୍ୟାସ ଥିବା ଲୋକ, ଲମ୍ପଟ

**ନୁଙ୍ଗୁରୁ ପୁଙ୍ଗୁରୁ** - *ନ:* (କ୍ରି.ବିଂ.) : ପଛେ ପଛେ ଗୋଡ଼ାଇବା

**ନୁଚନୁଚାଣି** - *ବ୍ରା:* (କ୍ରି.) : ଲୁଚକାଳି ଖେଳ

**ନୁଚାଚୋରା** - *ଭ:* (ବି.) : ଗୋପନୀୟ

**ନୁଚି** - *ଗଦ୍ୟ:ବ୍ରା:* (ବି.) : ଲୁଚି ବା ପୁରୀ

**ନୁଚୁନୁଚାଣି** - *ବ୍ରା:* (ବି.) : ବିବାହର ସାତ ଦିନରେ ନବବଧୂ ଅନ୍ୟଘରେ ଲୁଚେ, ସେଦିନ ତାର ଶାଶୁଘର ଲୋକେ କେହି ତାର ମୁହଁ ଦେଖନ୍ତି ନାହିଁ

**ନୁଚେଇ** - *କେ:* (କ୍ରି.) : ଲୁଚାଇ

**ନୁଛିବା** - *ଗ:* (କ୍ରି.) : ସୌନ୍ଦର୍ଯ୍ୟରେ ମୁଗ୍ଧ ହେବା

**ନୁଛୁଣା** - *ଭ:* (ବିଂ.) : ଦୁଷ୍ଟ, ହୀନ

**ନୁଟକୁଟିଆ** - *ଅନେ:* (ବିଂ) : ଦୁଷ୍ଟବୁଦ୍ଧି

**ନୁଟା** - *କେନ୍ଦୁ:ମ:ଅ:* (ବି) : ଢାଳ, ଲୋଟା

**ନୁଟିବା** - *କେ:* (କ୍ରି.) : ଲୁଟ୍ କରିବା

**ନୁଟୁଖୁଟିଆ** - *ପୁ:* (ବିଂ.) : ଦୁଷ୍ଟ

**ନୁଟୁଣୀ** - *ଗଦ୍ୟ:* (ବି.) : ଗଭା

**ନୁଟୁଣୀ ଖଡା** - *ଖୋ:କେନ୍ଦୁ:* (ବି.) : ଏକ ପ୍ରକାର ଜଙ୍ଗଲି ଲତା

**ନୁଟୁରୀନଈ** - *ନ:* (ବି.) ଏକ ଲତାର ନାମ(ଶାଗ ମିଶ୍ରିତ ଖଟା କରାଯାଏ)

**ନୁଡ୍‌ବା** - *କଳା:* (କ୍ରି.) : ଖୋଜିବା, ଲୋଡ଼ିବା

**ନୁଡାନୁଡି** - *କଳା:* (କ୍ରି.) : ଖୋଜାଖୋଜି

**ନୁଡୁକା** - *ନ:* (ବି.) : ନାକର ଅଳଙ୍କାର

**ନୁଡୁକୀ** - *ଗ:* (ବି.) : ଆଭରଣ ବିଶେଷ

**ନୁଡ଼ା** - *ବା:ଦେ:ସ:* (ବିଂ.ବି.) : ଆବଶ୍ୟକ, ଲୋଡ଼ା, ଗୋବର ଘଷା

**ନୁଡ଼ିଆ** - *ମ:* (ବି.) : ନଡ଼ିଆ

**ନୁଢୁକା** - *ଗ:* (ବି.) : ଆଭରଣ ବିଶେଷ

**ନୁଢୁନୁଢୁ** - *ନ:* (କ୍ରି.ବିଂ.) : ପଛେପଛେ ହେବା

**ନୁଣ** - *ଅନେ:* (ବି.) : ଲୁଣ, ଲବଣ

**ନୁଣ କାଠୁଆ** - *ଯା:* (ବି.) : ଲୁଣ ରଖିବା କାଠ ପାତ୍ର

**ନୁଣଦାଣ୍ଡିଆ** - *ବ୍ରା:* (ବିଂ.) : ଭୋଗରାଇର ସମୁଦ୍ର ଉପକୂଳବର୍ତ୍ତୀ ଲୋକଙ୍କୁ

ତଳମାଳର ଲୋକେ କହନ୍ତି, ଲୁଣ ରାଲିରେ ପହରା ଦେଉଥିବା ଲୋକ

**ନୁଣା** - *ଭ.* (ବିଂ.) : ଲୁଣିଆ

**ନୁଣ୍ଡା** - *ନ.* (ବି.) : କନା ବିଣ୍ଡା, ଲୁଣ୍ଡା

**ନୁତୁନୁତୁ** - *ନ.* (ବି.) : ପକ୍ୱ ଅବସ୍ଥା, ପାଚିବା

**ନୁତୁପୁତୁ** - *ମ.* (ବିଂ.) : ନରମ

**ନୁଥ** - *କେ.ଉ.* (ବି.) : ନୋଥ ଗହଣା, ନାକ ଅଳଙ୍କାର

**ନୁଦର** - *ଦେ.* (ବି.) : ବାଉଁଶରେ ତିଆରି ବଡ଼ ଡାଲା

**ନୁଦୁର** - *ଅ.* (ବି.) : ଶଗଡ଼ ଉପରେ ଖତମାଟି ବୋହିବା ପାତ୍ର, ଓଦର

**ନୁଧ** - *ବ.* (ବି.) : ଓଧ

**ନୁନ** - *ଅନେ.* (ବି.ଅ.) : ଲୁଣ, ନ୍ୟୁନ, ନୀଚ

**ନୁନ୍‌କୁବି** - *କଝ.* (ବି.) : ଓଲୁକୋବି

**ନୁନ୍‌ଲିଆ** - *ନୂ.କଳା.* (ବି.) : ମୁଢିଲିଆ, ଭୁଜା

**ନୁନା** - *କଝ.* (ବି.) : ପୁଅ

**ନୁନି** - *ସୁ.ଗଦ୍ୟ.ଗ.* (ବି.) : ଝିଅ, ଏକ ଶାଗ, ବାଳକ ଶିଶୁର ଲିଙ୍ଗ

**ନୁନିଆ** - *ସୁ.* (ବିଂ.) : ଲୁଣିଆ

**ନୁନିଆ ମାଛ୍** - *ନୂ.* (ବି.) : ଲୁଣି ମାଛ

**ନୁନୀ** - *ସ.କଳା.* (ବି.) : ଝିଅ

**ନୁନୀ ଶାଗ୍** - *ସ.* (ବି.) : ଶାଗ ବିଶେଷ, ଲୋଣା ଶାଗ

**ନୁନୁରା** - *ଅ.* (ବିଂ.) : ଗୋଳମାଳିଆ

**ନୁରଗଳିଆ** - *ଅ.* (ବିଂ.) : ତୁପ୍‌ସଇତାନିଆ, ଦୁଷ୍ଟ

**ନୁରା** - *ସ.କଳା.ଝା.* (କ୍ରି.) ଖୋଜା, ମନେପଡିବା, ଘରକୁ ଯିବାପାଇଁ ଇଚ୍ଛା ହେବା

**ନୁରାଖୁଜା** - *ସ.* (କ୍ରି.) : ଖୋଜିବା

**ନୁରାନୁରି** - *ବୌ.* (କ୍ରି.) : ଖୋଜାଖୋଜି

**ନୁରିଆ** - *ବୌ.* (କ୍ରି.) : ଖୋଜିବା

**ନୁରି ନୁରି** - *ନୂ.ସ.* (କ୍ରି.ବି.) : ଖୋଜି ଖୋଜି

**ନୁରୁଖୁରିଆ** - *ନ.* (ବି.) : ଚଗଲାମି, ଖଚଡ଼, ଦୁଷ୍ଟାମି

**ନୁର୍ ନୁର୍ ହେବା** - *ଅ.* (କ୍ରି.) : ନୁଗ୍ନୁଗୁ ହେବା

**ନୁର୍‌ବାର** - *ସୁବ.* (କ୍ରି.) : ଖୋଜିବା, ତନ୍ନତନ୍ନ କରି ନିରୀକ୍ଷଣ କରିବା

**ନୁଲୁକ** - *କେ.ମ.ବ.* (ବି.) : ନାକ ଫୁଲ, ନାକ ତଳକୁ ଝୁଲିଥିବା ଅଳଙ୍କାର ବିଶେଷ

**ନୁଲୁଖୁଲୁ** - *ଉ.* (ବି.) : ଫଳ କୋବି

**ନୁଳି** - *କୋ.* (ବି.) : କର୍ଣ୍ଣାଳଙ୍କାର ବିଶେଷ

**ନୁହସି** - *ଛ.* (ଅ.) : ନହେବା

**ନୁହା** - *ଅ.* (ବି.) : ଲୁହା

**ନୁହାନ୍** - *ବଲ.* (ବି.) : ସ୍ନାନ, ଗାଧୋଇବା

**ନୁହାନତା** - *ଭ.* (ବି.) : ଲୌହ ସାମଗ୍ରୀ

**ନୁହେ** - *ସୁବ.* (ଅ.) : ନୁହେଁ, ନାହିଁ

**ନୁହେଆଏ** - *ସ.* (ଅ.) : ଏଇଟା ନୁହେଁ

**ନୁହଁଇ** - *ଛ.* (ଅ.) : ନୁହେଁ

**ନୁଁ** - *ସୁବ:* (ଅ.) : ପଞ୍ଚମୀ ବିଭକ୍ତି ପରସର୍ଗ

**ନୂଆଉ** - *ନ:* (ବି.) : ଭାଉଜ

**ନୂଆକୂଳିଆ** - *ଚ୍।:* (ବିଂ.) : ନୂଆ ବାସିନ୍ଦା ହେବା

**ନୂଆଖାଇ** - *କଳା:ସୁ:* (ବି.) : ନବାନ୍ନ ପର୍ବ

**ନୂଆଖିଆ** - *ଗ:* (ବି.) : ନବାନ୍ନ ଭକ୍ଷଣ

**ନୂଆଦିଆ** - *କଡ:* (ବି.) : ଭାଦ୍ରବମାସର କୃଷିଭିତ୍ତିକ ପୂଜା

**ନୂଆ ଭୁଆସେନ** - *ନୂ:* (ବି.) : ନବ ବଧୂ

**ନୂଆଁଣ** - *ଗୌ:* (ବିଂ.) : ନଇଁବା, ଡଳୁଆ, ଅଳ୍ପ ଉଚ୍ଚା

**ନୂପୁର** - *ଦେ:* (ବି.) : ଘୁଙ୍ଗୁର

**ନୂପୁରି** - *ନ:* (ବି.) : ନେଉଳ

**ନୃତ** - *ଅନେ:* (ବି.) : ନିର୍ବାକ ଅଭିନୟ

**ନୃତ୍ୟ** - *ଅନେ:* (ବି.) : ତାମସା, ନାଚ

**ନୃଶଂସ** - *ଅନେ:* (ବି.) : ନିଷ୍ଠୁର, ନିର୍ଦ୍ଦୟ

**ନେ** - *ନୂ:* (କ୍ରି.) : ନିଅ

**ନେଇ** - *ଯା:ଦେ:ଲ:* (ବି.) : କମାର, ବଣିଆଙ୍କ ଲୁହା ଷାଣ୍ଡ, ବିଷୟରେ, ସମ୍ପର୍କରେ, ସମ୍ବନ୍ଧରେ, ନେବା

**ନେଇଆ** - *ରା:* (ବି.) : ଘିଅ

**ନେଇଆଣି ଥୋଇବା** - *ଦେ:* (କ୍ରି.ବି.) : ସାବଧାନତାର ସହ କାର୍ଯ୍ୟ କରିବା (ଋଣି ଅର୍ଥରେ)

**ନେଇତେ** - *ମ:* (ବି.) : ନେବାକୁ

**ନେଇଥେଇ** - *ଛ:* (କ୍ରି.) : ନେଇଥିଲି

**ନେଇନା** - *ନୂ:* (କ୍ରି.) : ନାହିଁ

**ନେଇ ପୁହୁଚାଁ** - *ନୂ:* (କ୍ରି.) କନ୍ୟା ବିଦା କରିବା

**ନେଇସନ୍** - *ଗୌ:* (କ୍ରି.) : ନିଅନ୍ତି, ନେଇଛନ୍ତି

**ନେଇଁ** - *କଳା:* (ଅ.) : ନାହିଁ

**ନେଉଆ** - *ଅନେ:* (ବି.) : ଆତଫଳ, ସୁସ୍ୱାଦୁ କଳା ବଡ଼ ମଂଜିଯୁକ୍ତ ଫଳ, ସୀତା ଫଳ

**ନେଉଟ** - *ନ:ଗ:* (ବି.) : ଲେଉଟ, ଫେରିବା, ଗୁଣିଗାରିଡ଼ି ତନ୍ତ୍ର ବିଦ୍ୟାର ପ୍ରତିକାର

**ନେଉଟାନେଉଟି** - *ନ:* (କ୍ରି.ବିଂ.) : ଘାଣ୍ଟିବା, ଏପଟସେପଟ କରିବା

**ନେଉଟିଆ** - *କେନ୍ଦୁ:ଯା:କ:ନ:* (ବି.) : ଏକ ପ୍ରକାର ଶାଗ, ଲେଉଟିଆ

**ନେଉଟିବା** - *ଯା:ନ:* (କ୍ରି.) : ଫେରିବା, ଲେଉଟିବା

**ନେଉଟେଇଦେବା** - *ନ:* (କ୍ରି.) : ଓଲଟାଇ ଦେବା, ଫେରାଇଦେବା

**ନେଉଡ଼ି** - *ରା:* (ବି.) : କୁକୁର

**ନେଉରା** - *ଛ:* (ବି.) : ନେହୁରା

**ନେଉଲା** - *ମ:* (ବି.) : ନେଉଳ

**ନେଉଲି ଛେଉଲି** - *ଛ:* (ବିଂ.) : ବିକଳ

**ନେଉଳ** - *ଦେ:ଗ:* (ବି.) : ମୂଷା, ନକୂଳ ନାମକ କ୍ଷୁଦ୍ର ଜୀବ

**ନେଉଜା** - *ଚ୍।:* (ବି.) : ଦୀପଦଣ୍ଡୀ

**ନେଓ୍ୱା** - *ଅ:* (ବି.) : ପିଙ୍କୁଳି

**ନେକଡିୟା** - *ଚ୍।:* (ବି.) : ଗଧିଆ

ନେକୁଡ଼ି - *ଗଦ୍ୟ:* (ବି.) : ଛିଣ୍ଡା ଦଦରା କନା

ନେକେଟା - *ରା:ନ:* (ବି.ବିଂ.) : ଶୃଙ୍ଖଳା ଅଭଣ୍ଡା, କାର୍ଯ୍ୟ ହାସଲ ପର୍ଯ୍ୟନ୍ତ ପଡ଼ିରହିବା

ନେକେଟି ଚାହିଁବା - *ନ:* (କ୍ରି.) : ଏକ ଧ୍ୟାନରେ ଅନାଇ ରହିବା

ନେକେଟିବା - *ନ:* (କ୍ରି.) ଲାଖି ରହିବା, ଲାଗିକି ରହିବା

ନେକେଡ଼ା ବାଘ - *ଗ:* (ବି.) : ଗଧିଆ ବାଘ

ନେକେଳା - *କେନ୍ଦୁ:* (ବି.) : ହେଟା ବାଘ

ନେଖ - *କେ:* (ବି.) : ନଖ

ନେଖରା - *ଦେ:* (ବି.) ଚାଲାଖି, ଥଟ୍ଟା, ରସିକତା

ନେଖା - *ବ୍ୟ:* (ବି.) : ଲେଖା ବା ଲେଖାଏଁ

ନେଖାଯୁଖା - *ବ୍ୟ:* (ବିଂ.) : ସଂପର୍କୀୟ

ନେଖୁଛ - *କେ:* (କ୍ରି.) : ଲେଖୁଛ

ନେଖୁନି - *କେ:* (କ୍ରି.) : ନଖ ମାରିବା

ନେଗି - *ଦେ:* (ବି.) : କିରାନୀ

ନେଘେସେଭ ହେବା - *ଅ:* (କ୍ରି.) : ପାଖକୁ ଲାଗିଆସିବା

ନେଙ୍କୁଡ଼ି - *ଭ:* (ବି.) : ଛିଣ୍ଡାକନା, ଚିରାଲୁଗା

ନେଙ୍ଗଟା - *ବ୍ୟ:* (ବିଂ.) : ଲଂଗଳା

ନେଙ୍ଗଟି - *କେନ୍ଦୁ:* (ବି.) : କଛା

ନେଙ୍ଗଡ଼ା - *ଗ:ନ:* (ବିଂ.) : ଛୋଟା (ଲୋକ)

ନେଙ୍ଗୁଟି - *ନ:ଯା:* (ବି.) : ବାବାଜୀଙ୍କ କଉପୁନି ବା କାଛା, ଅର୍ନ୍ତବସ୍ତ୍ର, ଲେଙ୍ଗୁଟି

ନେଙ୍ଗୁଡ଼ା - *ରା:* (ବିଂ.) : ଛୋଟା

ନେଙ୍ଗଡ଼ା - *ଦେ:* (ବିଂ.) : ଚେପା

ନେଞ୍ଜାକାନି - *ମ:* (ବି.) : ପଣତକାନି

ନେଞ୍ଜରା - *ଯା:ଅ:* (ବି.) : ଶୋଇ ଉଠିବା ପରେ ଆଖିରେ ଲାଗିଥିବା ଧଳାଧଳା ମଇଳା, ଲେଞ୍ଜରା

ନେଞ୍ଜୁ - *କଦ:* (ଅ.) : ଆଜି

ନେଟଙ୍ଗା - *ଭ:* (ବି.) : ଅଡୁଆ

ନେଟମା - *ଯା:ଅ:* (ବି.) : ଅଡୁଆ ବଢେଇ କହିବା, ଗୋଳମାଳିଆ କଥା ବା କାମ

ନେଟି - *ବ୍ୟ:* (ବି.) : ନେଡ଼ି, ପାପୁଲିର ଉପର ଭାଗ

ନେଟୁ ମାରିବା - *ଗ:* (କ୍ରି.) : ବସ୍ତା ଗୁଡ଼ିକୁ ସଜାଇ ରଖିବା

ନେଠା - *ବ୍ୟ:ଅ:* (ବି.) : କାମ, ଝାମେଲା, ଅଠା

ନେଡ଼ା - *ନ:* (ବି.) : କରତଳ

ନେଡ଼ି - *ନ:ଗ:ଖୋ:* (ବି.) କରତଳ, ପାପୁଲିର ଉପର ଅଂଶ, ଗୋଡ଼ର ଗୋଇଠି, ଲେଡ଼ି

ନେଣଦେଣ - *ଅନେ:* (ବି.) : ନେବା ଓ ଦେବା

ନେଣ୍ଡାହାତ୍ - *ମ:* (ବି) : ବାମ ହାତ

ନେଣ୍ଡି - *ପୁ:* (ବିଂ.) : ସାନ, ହୀନ, ଦୁର୍ବଳ, ଅକର୍ମା, ଲେଣ୍ଡି

ନେଣ୍ଡ - *ବ୍ୟ:* (ବି.) : ଗୁହଲଣ୍ଡି

**ନେଷୁଆ** - *ଗଦ୍ୟ:ଭ:ଯା:* (ବି.) : ଚୂଲିରେ ଜଳିବା ଜାଳ

**ନେତ** - *ନ:ଦେ:କଳା:ପୁ:* (ବି.କ୍ରି.) : ପତାକା (ଦେଉଳର), ନେବ, ନେବାର ସମ୍ଭାବନା, ନେଇପାରେ

**ନେତଓଷା** - *ଗ:* (ବି.) : ଭାଦ୍ରବ ମାସରେ ପାଳିତ କୁମାରୀ ଓଷା

**ନେତା** - *ଦେ:* (ବି.) : ନାୟକ, ଯେ ନିଏ

**ନେତି** - *ଗଦ୍ୟ:ରା:କଳା:ଦେ:* (ବି.କ୍ରି.) : ଏକ ପ୍ରକାର ଯୋଗ ଚିକିତ୍ସା, ବିଭିନ୍ନ, ନିଅନ୍ତି, ପରଂବ୍ରହ୍ମ

**ନେତୁର ମାଛ** - *କେନ୍ଦୁ:* (ବି.) : ଲମ୍ବାଲମ୍ବା ନଈ ମାଛ

**ନେତ୍ର** - *ଅନେ:* (ବି.) : ଚକ୍ଷୁ, ନୟନ

**ନେତ୍ରେ** - *ଯା:* (ବି.) : ତିନି ସଂଖ୍ୟା

**ନେଥୁଡ଼ିଆ** - *ରା:* (ବିଂ.) ସମର୍ଥହୀନ (ବ୍ୟକ୍ତି)

**ନେନା** - *ନୂ:* (ଅ.) : ନାହିଁ

**ନେନ୍ତା** - *ଯା:* (ବି.) : ମଂଜିଯୁକ୍ତ ଫଳ ପେଣ୍ଡା, ଲେନ୍ତା

**ନେନ୍ତେଇବା** - *ଅ:* (କ୍ରି.) : ଥାକମାରି ରଖିବା, ମାଡ଼ିବା

**ନେନ୍ଧା** - *ମା:* (ବି.) : ହାଜତ୍

**ନେପ** - *ମ:ବା:* (ବି.) : ପ୍ରଲେପ, ରେଜେଇ

**ନେପଡା** - *କେ:* (ବିଂ.) : ବେହିଆ, ହସକୁରା, ନେଫଡ଼ା

**ନେପଟା** - *ଭ:* (ବି.) : ମାଡ଼ି ଥିବା ନିର୍ମୁଳୀ ଲତା

**ନେପଥ୍ୟ** - *ଦେ:* (ବି.) : ରଙ୍ଗଭୂମି

**ନେପାଳ** - *ବ:* (ବି.) : ଗୁଣ୍ଡୁଚି ମୂଷା

**ନେପୁର** - *ଗ:ସୁ:ଗଜ:* (ବି.) : ଏକ ଜାତୀୟ ମୂଷିକ, ଗୁଣ୍ଡୁଚି, ନୂପୁର

**ନେପେଟିବା** - *ନ:* (କ୍ରି.) ଛକିରହିବା, ଜଗିକିରହିବା

**ନେଫଡ଼ା** - *ଅନେ:* (ବି.ବିଂ.) : ଛୋଟା, ବେହିଆ, ଏକ ଜାତୀୟ ଫଳ, ଲେଫଡ଼ା

**ନେଫେଡାମି** - *ଖୋ:* (ବି.) : ଥଟ୍ଟାମଜା

**ନେଫେଡ଼ିବା** - *ନ:ଗଦ୍ୟ:* (କ୍ରି.ବି.) ଦାନ୍ତଦେଖାଇବା, ବୁଲାଇବା

**ନେବା** - *ଅନେ:* (କ୍ରି.) : କଟାଇବା, ଗ୍ରହଣ କରିବା

**ନେବେନ୍ ଚୁଷ୍** - *ବା:ଭ:* (ବି.) : ଲଜେନସ୍, ଚୁଚୁମା

**ନେଭିଡି ପଡିବା** - *ବ:* (କ୍ରି.) ନେପଟେଇଯିବା

**ନେମ୍‌ପ୍ଲେଟ୍** - *ଗଜ:* (ବି.) : ନାମଫଳକ

**ନେମା** - *କ:* (କ୍ରି.) : ନେବା

**ନେମିଣି** - *ଯା:* (ବିଂ.) : ଦୁର୍ବଳ

**ନେମେଇଁ** - *ମ:କେନ୍ଦୁ:* (କ୍ରି.) : ନେବେ

**ନେମ୍ବୁ** - *ଅନେ:* (ବି.) : ଲେମ୍ବୁ

**ନେରେଢୁ** - *ଗଦ୍ୟ:* (ବି.) : ଜାମୁ

**ନେଲ୍** - *ମ.* (ବି.) : ନେଉଳ

**ନେଲାଚେ** - *କଳା.* (କ୍ରି.) : ନେଇଚି

**ନେଳିଆ** - *ଯା.ଗ.* (ବି.) : ରଙ୍ଗବିଶେଷ, ନୀଳ

**ନେଳିକାର୍ଡ଼** - *ଗ.* (ବି.) : ଅନ୍ତର୍ଦ୍ଦେଶୀୟ ପତ୍ର

**ନେଳି ପଡ଼ିବା** - *ଯା.* (କ୍ରି.) : ମଳିନ ହେବା

**ନେଳୀ** - *ନ.* (ବି.) : ନୀଳରଙ୍ଗ

**ନେଶୁଣି** - *ନ.* (ବି.) : ସିଡ଼ି(ବାଉଁଶ, କାଠରେ ନିର୍ମିତ)

**ନେସ** - *କଳା.* (କ୍ରି.) : ନିଅ, ନେଇଥାଅ

**ନେସଡା** - *ରା.ନବ.* (ବିଂ.) : ଅପମାନ ଯାହାକୁ ବାଧେନି, ନିର୍ଲଜ

**ନେସି** - *କଳା.* (କ୍ରି.) : ନିଏ, ନେଇଥାଏ

**ନେସିବା** - *ନବ.କେନ୍ଦୁ.* (କ୍ରି.) : ଲେସିବା, ଲିପିବା

**ନେସେଡ଼ିବା** - *ନ.* (କ୍ରି.) : ଦାନ୍ତଦେଖାଇବା, ହସିବା ନିର୍ଲଜଭଳି, ଅଭାବରେ ପଡ଼ି

**ନେହୁଆ** - *ଅ.ଖୋ.* (ବି.) : ଏକ ପ୍ରକାର ଦେଶୀୟ ସୁମିଷ୍ଟ ଫଳ

**ନେହୁରା** - *ଢ.ଦେ.* (ବି.) : ପ୍ରାର୍ଥନା, କାକୁତି ମିନତି, ଚାଟୁ, ଖୋସାମତ୍

**ନେହେଲେ** - *ନୂ.* (ଅ.) : କିମ୍ବା, ନୋହିଲେ

**ନେଁଏଲା** - *କଳା.* (ଅ.) : ନଇଲା

**ନେଁକା** - *ମ.* (ବି.) : ମନା କରିବା ସତ୍ତ୍ୱେ ବାରବାର ମିଶିବା

**ନେଁବୁ** - *ମ.* (ବି.) : ଲେମ୍ବୁ

**ନୈବିଦ୍ୟ** - *ଅନେ.* (ବି.) ନୈବେଦ୍ୟ, ଭୋଗ, ଅର୍ପଣ

**ନୋଇଆ** - *ଯା.* (ବି.) କିଆରିରେ ନାଳକାଟିବା

**ନୋଉଡି** - *ଭ.* (ବି.) : ମାପ ଟୋକେଇ

**ନୋଉରୁଣୀ** - *ଭ.* (ବିଂ.) : ନୋହୁରୁଣୀ, ନଖକଟା ଯନ୍ତ୍ର

**ନୋକସାନି** - *ଗ.ନ.ଭ.* (ବି.) କ୍ଷତି, ଅପମାନ, ଲୋକସାନ୍, ନଷ୍ଟ

**ନୋକିଡାବଲା** - *ଗଦ୍ୟ.* (ବି.) : ବାସନ କୁସନ

**ନୋକୋ** - *କଳା.* (ବି.) : ଭଲ, ସୁନ୍ଦର, ମଂଗଳ, ଲୋକ

**ନୋଚାକୋଚା** - *ଖୋ.ଗ.* (ବିଂ.) : ଜାକିଜୁକି ହୋଇଯାଇଥିବା, ଲୋଚାକୋଚା

**ନୋଟ** - *ଅନେ.* (ବି.) : କାଗଜ ଟଙ୍କା, ସ୍ମରଣ

**ନୋଟା** - *ଅନେ.* (ବି.) : ଢାଳ, ବୈଶ୍ୟଜାତିର ଲୋକେ ଢାଳକୁ ନୋଟା କହନ୍ତି, ପାଣିର ରଖିବା ପାତ୍ର

**ନୋଟିଯିବା** - *ଯା.* (କ୍ରି.) : ଲୋଟିଯିବା, ତଳେଗଡ଼ିଯିବା

**ନୋଟିସ୍** - *ଦେ.* (ବି.) : ବିଜ୍ଞାପନ

**ନୋଟୁ** - *ଗଡ.ରା.* (ବି.) ନୋଟ୍, କାଗଜଟଙ୍କା

**ନୋଡରା** - *ନ.* (ବିଂ.) : ଟାଣନଥିବା (କାଗଜ, କାଗଜଟଙ୍କା)

**ନୋଥ** - *ଅନେ:* (ବି.) : ନାକ ଫୁଲ, ନାକର ଅଳଙ୍କାର

**ନୋଦା** - *କ:* (ବି.) : ପାଣି ବୋହି ନେବାର ଆଧାର

**ନୋଧା** - *ଖୋ:* (ବି.) : ପାଣିବୋହିବା ପାଇଁ ହୋଇଥିବା ତାଳପହତି(ପାଣିବୁହାଯନ୍ତ୍ର)

**ନୋଧିଆ** - *କେନ୍ଦୁ:* (ବି.) : ଝୁଡ଼ଙ୍ଗ

**ନୋଭ** - *ନବ:* (ବି.) : ଲୋଭ

**ନୋଲକ** - *ଭ:କେନ୍ଦୁ:* (ବି.) : ନାକରେ ନାଇବା ଗହଣା ବିଶେଷ

**ନୋଳ** - *ନ:କେ:ଖୋ:* (ବି.) : ପେଷଣା (ବିରିବଟା ପଥର ପାତ୍ର ), ଘୋରଣା, ମାଡ଼ ଚିହ୍ନ, ଫଡ଼ା

**ନୋଳି** - *ଦେ:ଗ:ରା:ନବ:* (ବି.) : କାନର ଅଳଙ୍କାର

**ନୋଳିଆ** - *ଗ:* (ବି.) : ମତ୍ସ୍ୟଜୀବୀ ଜାତି

**ନୋଳିବା** - *ନ:* (କ୍ରି.) : ଘୋରଣାରେ ବିରି ବାଟିବା

**ନୋଲେଇ** - *କେ:* (ବିଂ.) : ଖଣ୍ଡେ, ପାଖୁଡ଼ାଏ, ନୋଳେ, ଚତୁର୍ଥାଂଶ

**ନୋହିବା** - *ଦେ:* (କ୍ରି.) : ନ ହେବା

**ନୋହିଲେ** - *ଦେ:କେ:* (ବି.ଅ.) : ନ ହେଲେ

**ନୌକର** - *ଗଡ:କେ:ସ:* (ବି.) : ଚାକର

**ନୌକରୀ** - *ମା:* (ବି.) : ମୂଲିଆ କାମ, ଚାକିରି

**ନୌଣୀ** - *ଗଦ୍ୟ:* (ବି.) : ଲହୁଣୀ

**ନୌତନ** - *ମ:* (ବି.) : ନୂତନ

**ନଁଗଲ** - *ଓ୍ୱ:* (ବି.) : ଲଙ୍ଗଳ

**ନଁମୀ** - *ଦେ୍:* (ବିଂ.) : ନବମୀ

**ନଂକେଇଚ** - *ବ୍:* (ବି.) : ଲଙ୍କା ମରିଚ, ନଙ୍କା

**ନଂଗଲ** - *ଅ:* (ବି.) : ଲଂଗଳ

**ନଂଗଲା** - *ନୂ:* (ବିଂ.) : ଲଙ୍ଗଳା

**ନଂଘା** - *ଛେ:* (ବି.) : ଭିତର ବାରଣ୍ଡା

**ନଂଦ** - *ନୂ:* (ବି.) : ନଣନ୍ଦ

**ନଂଦୀ, ନୁଏଦ୍** - *ନୂ:* (ବି.) : ନଦୀ

**ନ୍ୟାୟ** - *ଦେ:ଗଦ୍ୟ:* (ବି.) : ସାଧୁନୀତି, ସତ୍ ବିଚାର, ଉଚିତ କଥା

**ନ୍ୟୁନ** - *ଦେ:କେ:* (ବିଂ.) : ହୀନ, ନୀଚ, ଅଭାବ

**ନ'କ୍ରିୟା** - *ନ:* (ବି.) : ଶୁଦ୍ଧିକ୍ରିୟା, ମୃତ୍ୟୁର ୯ମ ଦିନରେ କାର୍ଯ୍ୟ

**ନ'ନୁଆଣି** - *ଭ:* (ବି.) : ଅସନା ମସନା ଜାଗା

**ନ'ବିରି** - *ନ:* (ବି.) : ହିଡ଼ରେ ଥିବା ଲତାଳିଆ ବିରି

**ନ'ସରେ** - *ପଦ୍ୟ:* (କ୍ରି.ବିଂ.) : ଏକ ଧ୍ୟାନରେ, ଏକ ଲୟରେ

# ପ

**ପଅ** - *ମ:* (ବି.) : ପୁଅ

**ପଅଁର** - *ସୁ:* (କ୍ରି.) : ପଇଁରି, ପହଁରିବା, ପହଁରା

**ପଅଁରା** - *ଛ:ଅ:ଜ:* (ବି.) : ଝାଡୁ, ନଡ଼ିଆ କଞ୍ଚିରେ ତିଆରି ଝାଡୁ

**ପଅଁଲା ମାଳି** - *ସ:* (ବି.) : ପୋହଳା ମାଳି

**ପଅଁଳା** - *ବୌ:* (ବି.) : ସୁନା କଣ୍ଠି ଲଗା ପୋହଳାର ଗଳାମାଳ

**ପଇ** - *କ:କେ:* (ବି.) : ବିଲମୁଣ୍ଡରେ ବା ବାଡ଼ କଡ଼ରେ ଖୋଳାଯାଇଥିବା ଗାତ, ପୋଇ ଲତା

**ପଇଆ** - *କ:* (ବି.) : ଶଗଡ଼ ଚକ

**ପଇଉଠା** - *କ:* (ବି.) : ବିଲ ଚାରିପଟୁ ମାଟି ଉଠାଇବା

**ପଇକା** - *ବୌ:* (ବି.) ଛୋଟ ନଡ଼ିଆ ସଢେଇ

**ପଇଗଲା** - *ରା:* (କ୍ରି.) : ପଶିଲା

**ପଇଜ** - *କୋ:* (ବି.) : ଫୁଟାଣି, ଟାଣପଣ

**ପଇଞ୍ଚ** - *ଅ:କେ:ଯା:* (ବି.) : ହାତଖଡୁ

**ପଇଞ୍ଚି** - *ଗଦ୍ୟ:ଗ:ଗଛ:କ:* (ବି.) ଏକ ପ୍ରକାର ଖଡୁ, ହସ୍ତ ଅଳଙ୍କାର, ଝାଡୁ

**ପଇଟ** - *ଦେ:ଅ:ଗ:* (ବି.ବିଂ.) : ପାଠ, ମୁଖସ୍ତ କରିବା

**ପଇଟି** - *ଗ:* (ବି.) : ବାରଣ୍ଡା

**ପଇଟିବା** - *ବୌ:ଗଦ୍ୟ:ଖୋ:* (କ୍ରି.) ଘୋଷିବା, ମୁଖସ୍ଥ କରିବା, ଆୟତ୍ତ ହେବା, ପଟିବା, ଓଲଟିବା

**ପଇଠ** - *ଅନେ:* (ବି.କ୍ରି.) ଦାଖଲ, ପରିଶୋଧ, ଜମା କରିବା

**ପଇଠି** - *ଛ:ଅ:* (ବି.) : ପାହାଚ, ହାତଭାର

**ପଇଡ଼** - *ଖୋ:ଦେ:* (ବି.) ପାକଳ ହୋଇନଥିବା ନଡ଼ିଆ, କଷି ନଡ଼ିଆ

**ପଇତ** - *ବୌ:* (ବି.) : ମୁଗ

**ପଇତା** - *ଛ:ଖୋ:କ:ଯା:* (ବି.) ବ୍ରହ୍ମ ଉପବୀତ

**ପଇତି** - *ଅନେ:* (ବି.) : ସିଦ୍ଧ ହୋଇଥିବା ଡାଲି (ଅନ୍ନ ସହିତ ଗୋଳାଇ ଭୋଜନ କରାହୁଏ), ମୁଗଡ଼ାଲି

**ପଇତି ପାଣି** - *ବ:* (ବି.) : ଛୁତିକା ତରକାରୀ

**ପଇନି** - *ଅ:* (କ୍ରି.) : ପଡ଼ିଗଲି

**ପଇନ୍ତରା** - *ଖୋ:* (କ୍ରି.) : ଇତସ୍ତତଃ ହେବା, ବାରମ୍ବାର ଦେଖାଦେବା

**ପଇପଇ ଖେଳ** - *କେନ୍ଦୁ:ଖୋ:* (ବି.) : ବାଲିରେ ଛୋଟ ପିଲାଙ୍କ ଖେଳ

**ପଇ, ପହି** - *ନ:* (ବି.) : ଛୋଟ କିଆରୀର ନାଳ, ପହି, ଶଗଡ଼ର ଚକର ଅର୍ଦ୍ଧବୃତ୍ତାକାର କାଷ୍ଠ ଖଣ୍ଡ

**ପଇଲମ** - *ଗ:* (ବି.) : ପାତ୍ର

**ପଇଲା** - *କେ:ଗଦ୍ୟ:* (କ୍ରି.) : ପଡ଼ିଲା, ଓଜନ, ମାପବିଶେଷ

**ପଇସା** - *ଢେ:* (ବି.) : ତମ୍ବା ପଇସା

**ପଇସା କର** - *ଗ:* (ବି.) ଏକ ପଇସା ମୂଲ୍ୟର, ଅଳ୍ପ ଦାମ୍

**ପଇସା କାଢୁଆ** - *ଗ:* (ବି.) : ଯେ ଧନ ବ୍ୟୟ କରିପାରେ

**ପଇସା ଟେମ୍ପର** - *ଗ:* (ବି.) : ଧନଗର୍ବ

**ପଇସା ମୁଣ୍ଡି** - *ଚୌ:* (ବି.) : ଜବରଦସ୍ତ ପତ୍ନୀ ସାଜିବା ସ୍ତ୍ରୀ ଲୋକ

**ପଇଁଜ** - *ଭା:* (ବି.) ସ୍ତ୍ରୀଲୋକମାନଙ୍କ ଗୋଡର ଅଳଂକାର

**ପଇଁଜନ୍** - *ମ:* (ବି.) : ପାଉଁଜି

**ପଇଁଟ** - *ସୁ:* (ବି.) : ମୁଖସ୍ତ

**ପଇଁତରା** - *ନ:ଭା:* (ବି.) : (ପଏଁତରା) କାମ ନଥାଇ ଏଣେତେଣେ ବୁଲିବା

**ପଇଁରୀ** - *ନବ:* (ବି.) : ଗୋଡ଼ର ଅଳଙ୍କାର

**ପଉକଟା** - *ଗଦ୍ୟ:* (ବିଂ.) : ଫରକଟା

**ପଉଡ଼ର୍** - *କଳା:* (ବି.) ପାଉଡ଼ର, ପ୍ରସାଧାନ ସାମଗ୍ରୀ ବିଶେଷ

**ପଉଁଚ୍** - *କଳା:* (ବି.) : ପାହାଚ

**ପଉଁଚି** - *ଗ:* (ବି.) : ହସ୍ତ ଅଳଙ୍କାର ବିଶେଷ

**ପଉଁରା** - *କୋ:* (ବି.) : ଦାଣ୍ଡ ବା ଗୁହାଳ ସଫା କରିବା ଝାଡୁ

**ପଏଚାନ** - *ନୂ:* (ବିଂ.) : ଚିହ୍ନା

**ପଏଟ୍** - *ବ:ନୂ* (କ୍ରି.) : ମୁଖସ୍ଥ

**ପଏଠି** - *ସୁ:* (ବି.) : ଛୋଟବୋତଲ

**ପଏତା** - *ମ:ସ:ସୁ* (ବି.) : ପଇତା

**ପଏଦଁ** - *ବର:* (ବି.) : ହାତ ପାପୁଲିର ଉପର ଅଂଶ

**ପଏରଛା** - *ସୁବ:* (ବିଂ.) : ପରିଷ୍କାର, ଖୋଲା

**ପଏରେନ୍** - *ଝା:ଗଦ୍ୟ:* (ବି.) : ମାନସିକ କରି ଦେବାଦେବୀଙ୍କ ଦରବାରରେ ଶୋଇବା, ଅଧିଆ ପଡ଼ିବା

**ପଏର୍କେ** - *ସ:* (ବି.) : ଆସନ୍ତା ବର୍ଷକୁ

**ପଏସାକର୍** - *ଚୌ:* (ବି.) : ଏକ ପଇସାର

**ପଏସା ମୁଢ଼ି** - *ସ:* (ବି.) : ଅର୍ଥ ଦେଇ ଝିଅ ଆଣିବା

**ପଏଁକ୍** - *ନୂ:* (ବି.) : ପର

**ପଏଁକରା** - *ଝା:* (ବି.) : ପ୍ରଶାଖା

**ପଏଁଖ** - *ସୁ:ସୁବ:କଳା:* (ବି.) : ପର, ପକ୍ଷୀର ପର

**ପଏଁଠୀ** - *ନୂ:* (ବି.) : ପାହାଚ (ପୋଖରୀ ହୁଡ଼ାରେ ପାହଚ)

**ପଏଁରା** - *କଳା:* (ବି.) : ପଇଁରୀ ନୂପୁର

**ପଏଁରୀ** - *ବ:ସ:* (ବି.) : ସ୍ତ୍ରୀ ଲୋକମାନେ ଗୋଡ଼ରେ ପିନ୍ଧୁଥିବା ଅଳଙ୍କାର, ପାଉଁଜ

**ପକ** - *କୋ:* (କ୍ରି.) : ପକାଅ

**ପକ୍‌କା** - *ପୁ:* (ବିଂ.) : ଚମତ୍କାର, କୋଠା

**ପକ୍‌ଡ଼ି** - *ବୌ:ମ:* (ବି.) : ପକୁଡ଼ି (ବେସନ, ପିଆଜ, ମରିଚ ମିଶା ଖାଇବା ଜିନିଷ)

**ପକ୍‌ନା** - *ବୌ:* (ବି.) : ଫିଙ୍ଗା, ବେକାର

**ପକ୍‌ନିଆ** - *ଅନେ:* (ବିଂ.) : ମାହାଳିଆରେ ଯିବା, କାମକୁ ନ ଆସିବା, ଅଦରକାରୀ, ବଳକା ହେବାରୁ କାମରେ ନ ଆସିବା

**ପକଡ଼ରାମ** - *ଗଛ:ଗ:* (ବିଂ.) : ଫୁଲିଫାଙ୍କିଆ

**ପକଲା** - *ଭ:* (ବି.) : ଛୋଟ ମାଇ କୁକୁଡ଼ା

**ପକା** - *ଦେ:କ:ଗଛ:ସୁବ:* (କ୍ରି.ବି.ଅ.) : ଫିଙ୍ଗା, ମଜ୍‌ବୁତ୍, କୋଠା, ଠିକ୍, ଦାଖଲ କର

**ପକାବା** - *କଳା:ନୂ:ସୁ:* (କ୍ରି.) : ପ୍ରସବ କରିବା, ଫିଙ୍ଗିଦେବା, ପକେଇବା

**ପକୁଡ଼ି** - *ଅନେ:* (ବି.) : ପକୋଡ଼ି ଖାଦ୍ୟ ବିଶେଷ, ବେସନ୍‌ରେ ଆଳୁ, ପିଆଜ, ଶାଗ ମିଶାଇ ତେଲରେ ଛାଣିବା, ପକୋଡ଼ି

**ପକେଇବା** - *କୋ:କଳା:ଗ:* (କ୍ରି.) : ପଶୁ ସମୂହ ପ୍ରସବ କରିବା, ପତନ କରିବା, ପ୍ରସବ କରିବା, ଫିଙ୍ଗିଦେବା, ବୁଣିବା

**ପକେଲଛଡ଼ା** - *ସୁବ:* (ବିଂ.) : ଯେଉଁ ଯୁବତୀ ଅବିବାହିତା ରହିଯାଏ

**ପକ୍କା** - *ନୂ:* (ବିଂ.) : ନିଶ୍ଚିତ

**ପକ୍ଷ** - *ଦେ:* (ବି.) : କୃଷ୍ଣ ଓ ଶୁକ୍ଳ ପକ୍ଷ

**ପକ୍ଷ ଏଗାରଣ୍ଡା** - *ପ୍ରା:* (ବି.) : ଷୋଳ ସଂଖ୍ୟା

**ପକ୍ଷ ତାଡେ** - *ପ୍ରା:* (ବି.) : ଅଠର ସଂଖ୍ୟା

**ପକ୍ଷ ବାଇଣ୍ଡା** - *ପ୍ରା:* (ବି.) : ଉଣେଇଶ ସଂଖ୍ୟା

**ପକ୍ଷ ରାମେ** - *ପ୍ରା:* (ବି.) : ସତର ସଂଖ୍ୟା

**ପକ୍ଷରୀ (ପଖିରୀ)** - *କଳା:* (ବି.ବିଂ.) : ଧାନ ବେଂଗଲାର ତଡରେ ଚାଲୁଥିବା ବଳଦ

**ପକ୍ଷିଆ** - *ଅନେ:* (ବି.) : ବର୍ଷାରୁ ରକ୍ଷା ପାଇବା ପାଇଁ ତାଳପତ୍ରରେ ତିଆରି ଆବରଣ, ପକ୍ଷୀପରି ଦିଶୁଥିବା ଗାଉଁଲି ଛତା, ଢିଙ୍କିର ମଝିଅଂଶରୁ ଉଭୟଦିଗକୁ ବାହାରିଥିବା ବାହୁ

**ପକ୍ଷୀରା** - *କେନ୍ଦୁ:* (ବି.) : ଶିଆଳି ପତ୍ରରେ ତିଆରି ଝାମ୍ପ, ଯାହା ମୁଣ୍ଡରୁ ପିଠିଯାଏ ଲମ୍ବିଥାଏ, ପଖିଆ

**ପକ୍ଷୀରାଜ୍** - *କଳା:* (ବି.) : ଲାଲରଙ୍ଗର ପକ୍ଷଯୁକ୍ତ ଦେଶୀ ବଡ ଧାନ ବିଶେଷ

**ପଖ** - *ଦେ:ଝା:* (ବି.) : ଗଉଡ଼ ମାନେ ଦହି, ନିଗନି, ଘିଅ, ଛେନା ଆଣିବା, ମାସର ପନ୍ଦର ଦିନକୁ ଏକ ପକ୍ଷ

**ପଖଣ** - *କନ୍ଧ:* (ବି.) : ପଥର

**ପଖଉଜ** - *ନ:ଗ:ସୁ:* (ବି.) : ଏକ ବାଦ୍ୟଯନ୍ତ୍ର, ମର୍ଦ୍ଦଳ ବାଦ୍ୟ

**ପଖନା** - *ନବ:* (ବି.) : ପଥରଖଣ୍ଡ

**ପଖପାଲିସି, ନଖପଚା** - *ନ:* (ବି.) : ନଖରେ ରଙ୍ଗଦେବା

**ପଖଲାବାର** - *ସୁବ:* (କ୍ରି.) ଭାତରେ ପାଣିଦେଇ ପଖାଳ କରିବା

**ପଖା** - *ନବ:କ:ଦେ:କୋ:* (ବି.) : ପାର୍ଶ୍ୱ, ପାଖ, ବାହୁମୂଳ, ଚୁଲିର ଝିଙ୍କା

**ପଖା ଖସେଇବା** - *କ:* (କ୍ରି.) : ମାଡ଼ଦେଇ ବାହୁକୁ ଖସେଇ ଦେବା

**ପଖାଡ଼ି** - *ଦେ:* (ବି.) : ଛଣକାଠି

**ପଖାନ ଚାଟୁ** - *ନୂ:* (ବି.) : ମାଛ ବିଶେଷ

**ପଖାଲ** - *ସ:ଝା:* (ବି.) : ପଖାଳ ଭାତ

**ପଖାଳ କରିଆ** - *ଗଦ୍ୟ:ଗ:କ:* (ବି.ବିଂ.) : ଯେଉଁ ମୋଟା ଖଦି ଲୁଗା ସବୁଦିନ ଧୁଆ ହୁଏ, ଉତ୍ତରୀୟ, ଟବାଲ୍, ଚାଦର ସ୍ନାନ ବେଳର ଅଙ୍ଗର ବସ୍ତ୍ର, ରାତିପିନ୍ଧା ଲୁଗା

**ପଖିଆ** - *ଅନେ:* (ବିଂ.ବି.) : ଜଣକର ପକ୍ଷନେବା, ତାଳପତ୍ରରେ ତିଆରି ଛତା ବା ବର୍ଷାତି, ତଲାରି

**ପଖେ** - *ସୁ:* (ବି.) : ଏକ ପକ୍ଷ

**ପଗ** - *ଅନେ:* (ବି.) : ଆଖୁ ଓ ବାଉଁଶର ଗଣ୍ଠିର ମଝିଅଂଶ, ୨୦ ପୁଂଜା ବା ୮୦ଟି ବିଡ଼ାକୁ ପଗ କୁହାଯାଏ, ଆଙ୍ଗୁଳି ଗ୍ରନ୍ଥି

**ପଗ ଛାଡ଼ିବା** - *ଗ:* (କ୍ରି.) : ଲତାର କାଣ୍ଡ ବିସ୍ତାର ହେବା

**ପଗଡ଼** - *ଅନେ:* (ବି.) : ମୋଟାଦାନା, ଗୁଡ଼, ଚିନି ଓ ସୁଜି ଅର୍ଥରେ

**ପଗଡ଼ଦଣ୍ଡା** - *ଗ:* (କ୍ରି.) : ଦଣ୍ଡିତ କରାଇବା, ଜବରଦସ୍ତ ଅଟକ କରିବା

**ପଗଡ଼ା** - *ଭା:* (ବି.) : ମୋଟାଶସ୍ୟ (ଚାଉଳ)

**ପଗଡ଼ି** - *ଦେ:ସ:ନ:* (ବି.) : ଠେକା ପାରିବା, କନା ବା ଲୁଗା, ଗାମୁଛାକୁ ମୁଣ୍ଡରେ ବାନ୍ଧିବା ଗ୍ରୀଷ୍ମ ଋତୁରେ ଯାତ୍ରା କରିବା ବେଳେ

**ପଗଡ଼ିଘେର** - *ସଂ:* (ବିଂ.) : ଠେକା, ମୁଣ୍ଡରେ ଗାମୁଛା ବାନ୍ଧିବା

**ପଗଦଣ୍ଡି** - *ଅ:ଗଦ୍ୟ:* (ବି.) : ଚଲାବାଟ

**ପଗା** - *ଭା:* (ବି.) : ଗୋରୁ ବନ୍ଧାଦଉଡ଼ି

**ପଗାର** - *ଗ:କ:* (ବି.) : ହିଡ଼, ସୀମାରେ ଦିଆଯାଇଥିବା ବାଡ଼, ସ୍ୱର୍ଣ୍ଣକାରଙ୍କ ଯନ୍ତ୍ରବିଶେଷ, କ୍ଷେତର ସୀମା, ଉଚ୍ଚାହିଡ଼

**ପଗୁ** - *ଭା:* (ବି.) : ସବୁଜ ରଙ୍ଗ

**ପଘଲା** - *ଗଦ୍ୟ:* (ବି.) : ଗଙ୍ଗଶିଉଳି

**ପଘା** - *ଅନେ:* (ବି.) : ଗାଈ ଗୋରୁଙ୍କ ବାନ୍ଧିବା ପାଇଁ ଦଉଡ଼ି

**ପଙ୍କ ଉଝୁଳା** - *କ:* (ବି.) : କୂଅ ବା ପୋଖରୀରୁ ପଙ୍କ କାଢିବା

**ପଙ୍କା** - *ମା:* (ବି.) : ପଙ୍ଖା

**ପଙ୍କାଳ** - *ରା:* (ବି.) ବନ ଦେବୀଙ୍କ ସନ୍ତୁଷ୍ଟପାଇଁ ଭୋଜନ

**ପଙ୍କିରା** - *କେନ୍ଦୁ:* (ବି.) : ଦୀର୍ଘମିଆଦୀ ଧଳା ରଙ୍ଗର ଧାନ

**ପଙ୍କୁଆ** - *ନ:* (ବିଂ.) : ପଙ୍କଯୁକ୍ତ ମାଟିକାଦୁଅ

**ପଙ୍ଗ** - *ରା:* (ବି.) : ବଗ

**ପଙ୍‌ଗ୍‌ପଙ୍ଗ୍** - *କଳା:* (ବି.) : ଭୋର୍, ପ୍ରାତଃ କାଳ, ମୁହଁ ଅନ୍ଧାର ଥାଉ ସକାଳ ହେବା

**ପଙ୍ଗତ** - *ଅନେ:* (ବି.) ଏକାଠି ବସି ଖାଇବା, ସଭା, ପଙ୍‌କ୍ତିଭୋଜନ

**ପଙ୍ଗନିଆ** - *ସୁ:ଦୌ:* (ବି.) : ଗୁଣୀ ପ୍ରୟୋଗ କରୁଥିବା ଲୋକ

**ପଙ୍ଗପାଳ** - *ଢେ:କ:ଗ:ସ:* (ବି.) : ପତଙ୍ଗ, ଝିଣ୍ଟିକା, ପୋକ

**ପଙ୍ଗା** - *ଗ:* (ବି.) : ଲବଣ ବିଶେଷ

**ପଙ୍ଗାନେବା** - *ଅ:* (କ୍ରି.) : ପ୍ରତିଦ୍ୱନ୍ଦିତା କରିବା

**ପଙ୍ଗୁ** - *ନ:ଢେ:* (ବିଂ.) : କୁଷ୍ଠରୋଗାକ୍ରାନ୍ତ, ଛୋଟାଲୋକ, ଅକାମୀ, ଅଚଳ, ଅଥର୍ବ

**ପଙ୍ଗୁଲୁ** - *କୋ:* (ବି.) : କର୍ଣ୍ଣର ନିମ୍ନଭାଗରେ ପିନ୍ଧିବା ଅଳଙ୍କାର ବିଶେଷ

**ପଚ୍‌ରାବା** - *ନୂ:କଳା:* (କ୍ରି.) : ପଚାରିବା

**ପଚକିବାର** - *ସୁବ:* (କ୍ରି.) : ଚାରି ପଟରୁ ଚାପ ଯୋଗୁଁ ମଝି ଅଂଶ ବାହାରି ପଡିବା

**ପଚରା** - *ଢେ:କେ:* (ବି.ବିଂ.) : ପ୍ରଶ୍ନ, ଗଣ୍ଠିଆ, ରଙ୍ଗ ଛାଡିଯିବା, ପଚିଥିବା

**ପଚରା ଉଚରା** - *ଢେ:ସ:* (ବି.କ୍ରି.) କୁହାବୋଲା, ବୁଝାବୁଝି କରିବା

**ପଚରୀ** - *ଅ:* (ବିଂ.) : ଅସନା ସ୍ତ୍ରୀ

**ପଚା** - *ନବ:ନ:ଗଞ:ଢେ:* (ବିଂ.) : ସବୁଜ, ଦୁର୍ଗନ୍ଧଯୁକ୍ତ, ଅତି ପାଚିବା

**ପଚାଣି** - *ବ:* (କ୍ରି.) : ଧାନ ରୋଗ ବା ଆଗରୁ ହଳ କରି ପାଣି ବୁଡାଇ ରଖାଯାଏ

**ପଚାବା** - *ସୁ:* (କ୍ରି.) : ସୂତା ଟାଣ କରି ବଳିବା

**ପଚିଣ୍ଡି ଯିବା** - *ଅ:* (କ୍ରି.) : ଖସିଯିବା

**ପଚିବା** - *ନ:* (କ୍ରି.) : ଅତି ସଢିଯିବା, ନଷ୍ଟ ହୋଇଯିବା

**ପଚିମ୍** - *କଳା:* (ବି.) : ପଶ୍ଚିମ, ପଶ୍ଚିମ ଦିଗ

**ପଚେଇ** - *ବ:* (କ୍ରି.) : ସୂତା ବା ଦଉଡ଼ିକୁ ମଜଭୂତ କରିବା ପ୍ରଣାଳୀ

**ପଚେ ହେବା** - *ସ:* (କ୍ରି.) : ପରିଚୟ ହେବା

**ପଛ୍‌କୁତି** - *କଳା:* (ବିଂ.) : ପଛକୁ, ପଛରେ, କମ୍ବଳ

**ପଛ୍‌ଲା** - *ଦୌ:* (ବି.) : ଦଣ୍ଡାର ପଛଭାଗ

**ପଛକୁ** - *ଢେ:* (ଅ.) : ପରେ

**ପଛକୁହା** - *ଅ:ଢେ:* (ବିଂ.) : ଚୁଗୁଲିଆ

**ପଛକେ** - *ଢେ:* (ଅ.) : କାଳେ

**ପଛଧରିବା** - *କ:* (କ୍ରି.) : ଅନୁସରଣ କରିବା

**ପଛତେ** - *କ:ଦେ:* (ଅ.) : ଶେଷରେ, ପରେ

**ପଛନ୍ଦ** - *ଦେ:* (ବି.) : ପସନ୍ଦ

**ପଛରା** - *ସୁ:ସୁବ:* (ବି.) : ପାଛୁଡ଼ା, ଶୀତବସ୍ତ୍ର

**ପଛଲା** - *ବ:ଦେ:* (ବି.) : ପଶ୍ଚାଦ୍‌ବର୍ତ୍ତି, ପିଛଲା, ପଛରେ ଗୋଡ଼ାଇବା

**ପଛଲିଆ** - *କଳା:ଗୌ:* (ବିଂ.ବି.) : ପଛରେ, ପଛେ ପଛେ, ଗୋଡାଣିଆ, ପଛରେ ଥିବା ଲୋକ

**ପଛାଡ଼** - *କ:* (ବି.) : ପଛପଟ, ପଛଆଡ଼

**ପଛାଡ଼େ** - *ସୁ:ସ:* (ବି.) ପଛଆଡ଼େ, ପଛପଟେ

**ପଛାଶୂଳ** - *ଗ:* (ବି.) : ଧାନକଟା ପରେ ଏଇ ସବୁ ଖେଳ, କୌଶଳ ଗାଁ ଅଞ୍ଚଳର ଲୋକେ ପ୍ରଦର୍ଶନ କରିଥାଆନ୍ତି

**ପଛୁଆଲ** - *ସୁବ:କଳା:ସ:* (ବିଂ.ବି.) : ପଛରେ ଅନୁସରଣ କରୁଥିବା ସାହାଯ୍ୟକାରୀ, ଅଙ୍ଗ ରକ୍ଷୀ

**ପଛୁକୁ** - *କ:* (ଅ.) : ପରେ, ଉପରବେଳା

**ପଛେ** - *କଣ:ନୂ:* (ଅ.) : ପରେ

**ପଛେକା** - *ଗୌ:ସ:* (ଅ.ବି.) : ଟିକିଏ ପରେ

**ପଛେଁ** - *ସ:* (ବି.) : ପରେ

**ପଜାବା** - *ସୁ:ସ:ମ:କଳା:* (ବି.କ୍ରି.) : ଧାରକରିବା (ଗରମ କରି), ଶାଣ ଦେବା

**ପଝରିବା** - *ସ:* (କ୍ରି.) : ତରଳିଯିବା

**ପଝରେନ୍** - *ସ:* (ବି.) : ପାଣି ସର୍ବଦା ଝରିବା

**ପଝାକରିବା** - *ଅ:* (କ୍ରି.) : ପାକୁଳି କରିବା

**ପଝାର** - *ଅ:* (ବି.) : ସୁନା

**ପଝାରି** - *ଗଦ୍ୟ:ସଂ* (ବି.) : ଡଙ୍ଗାରେ ପାରି ହେଉଥିବା ଯାତ୍ରୀ, ନୌଯାତ୍ରୀ

**ପଞ୍ଚ** - *ଗୌ:* (ବି.) : ଗାଁ ସଭା

**ପଞ୍ଚକ** - *ଦେ:* (ବି.) : ପଞ୍ଚୁକ, କାର୍ତ୍ତିକ ମାସର ଦଶମୀରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ନିରାମିଷ ଭୋଜନ କରିବା ବିଧି

**ପଞ୍ଚକି** - *କଳା:* (ବିଂ.) : ଏହା ବାର୍ଟାର୍ ପ୍ରଣାଳୀର ଏକ ରୂପ । ଜିନିଷର ସିଧାସଳଖ ଅଦଳବଦଳ

**ପଞ୍ଚମା** - *ଗଙ୍:* (ବି.) : ନିୟମ, ସାକ୍ଷୀ

**ପଞ୍ଚହତା** - *ପଦ୍ୟ:* (ବିଂ.) : ଡେଙ୍ଗା

**ପଞ୍ଚା** - *କୋ:ଦେ:ଗ:* (ବି.) : ଘରର ଛୋଟ ବଖରା, ଚାନ୍ଦା, ଛଣଘର

**ପଞ୍ଚାଣ** - *ଯା:* (ବି.) : କାଠ ତିଆରି ପଦାର୍ଥ ରସି ପାକଳ କରିବା ପାଇଁ ବ୍ୟବହୃତ ହୁଏ

**ପଞ୍ଚାଦି** - *ମା:* (ବି.) ବିଚାର ନିମନ୍ତେ ପଞ୍ଚାୟତ

**ପଞ୍ଚାପଞ୍ଚି** - *ଗ:* (କ୍ରି.) : ବଳକଷି ବାହୁଯୁଦ୍ଧ କରିବା

**ପଞ୍ଚାଲି** - *ଗୌ:* (ବି.) : କୁଆଳିର ଅଂଶ ବିଶେଷ

**ପଞ୍ଚୁଆତି** - *ଅନେ:* (ବି.) : ଶିଶୁ ଜନ୍ମର ପଞ୍ଚମ ଦିବସର କାର୍ଯ୍ୟକ୍ରମ, ପଞ୍ଚାୟତ

**ପଞ୍ଚଇନ୍ଦ୍ରି** - *ଢ:* (ବି.) : ପାଞ୍ଚଇନ୍ଦ୍ରିୟ

**ପଞ୍ଚକ** - *ଖୋ:* (ବି.) : କାର୍ତ୍ତିକ ମାସର ଶେଷ ପାଞ୍ଚଦିନ

**ପଞ୍ଚତିର** - *ଗଢ:* (କ୍ରି.) : ପଞ୍ଚଆତି ଉତ୍ସବ

**ପଞ୍ଚଦୋଳ** - *କ:* (ବି.) : ଦୋଳପୂର୍ଣ୍ଣିମା ପରଠାରୁ ପାଞ୍ଚଦିନଯାଏ ଯେଉଁ ଦୋଳଉତ୍ସବ ହୁଏ

**ପଞ୍ଚବନି** - *କ:* (ବିଂ.) : ପାଞ୍ଚରଙ୍ଗର ମୁରୁଜ, ଚାଉଳ,ମୁଗଡ଼ାଲି,ଘିଅ, ପରିବା ଓ ନଡ଼ିଆ ପକା ଖେଚୁଡ଼ି, ପାଞ୍ଚବର୍ଣ୍ଣ ଯୁକ୍ତ

**ପଞ୍ଚେତ୍** - *ସ:* (ବି.) : ପଞ୍ଚାୟତ

**ପଞ୍ଚ ବସା** - *କଳା:* (ବି.) ପଞ୍ଚଆତି, ଗ୍ରାମସଭା

**ପଞ୍ଜା** - *ଖୋ:* (ବି.) : ହାତର ପାପୁଲି

**ପଞ୍ଜାମ୍** - *ମ:* (ବି.) : ପାଉଁଜି

**ପଞ୍ଜର** - *ଗ:* (ବି.) : ବନ୍ଧ ପକ୍ଷୀର ଗୃହ, କଙ୍କାଳ

**ପଞ୍ଜରା** - *ନ:ଦେ:କ:* (ବି.) : ଶରୀରସ୍ଥ କଙ୍କାଳସାର ଅସ୍ଥି, ହାଡ଼, କଙ୍କାଳହାଡ଼

**ପଞ୍ଜାବି** - *ଦେ:* (ବି.) : କୁର୍ତ୍ତା

**ପଞ୍ଜୁରିଆ** - *ଦ୍ରୁ:ନ:* (ବିଂ.) : ପଞ୍ଜୁରିରେ ରଖାଯାଇ ପୋଷା ମନାଯାଇଥିବା ଗୋବରା ଚଢ଼େଇ, କୁଚକ୍ରୀ, କୁଶଳୀ, କୌଶଳିଆ

**ପଞ୍ଜୁରୀ** - *ନ:* (ବି.) : ଶୁଆରହିବା ଲୌହ କକ୍ଷ

**ପଟ** - *ଅନେ:* (ବିଂ.ବି.) : ନିପଟ, ଝୋଟ, ବସ୍ତା,ପାଖ, ତରଫ, ଦଉଡ଼ି, ଏକ, ପକ୍ଷ, ବଳଦ, ଆଦିବାସୀ କନ୍ଧ ସଂପ୍ରଦାୟରେ ବିବାହ ବେଳେ ବର କର୍ତ୍ତା କନ୍ୟାପିତାଙ୍କୁ ପୂର୍ବରୁ ତାଙ୍କର ଦାବି ମୁତାବକ ଦେଉଥିବା ନିର୍ଦ୍ଦିଷ୍ଟ ସଂଖ୍ୟକ ବଳଦ ଝୋଟ, ପଶୁ ପକ୍ଷୀଙ୍କ ଗଣନାବେଳେ ବ୍ୟବହୃତ ସଂଖ୍ୟାର ପରିମାଣ, ଆଡ଼, ଚିତ୍ରପଟ

**ପଟ୍** - *ଅନେ:* (ବି.) : ଛଣ, ଟି ଅର୍ଥରେ, କାଉଁରିଆ ଛଣର ପଟ, ମାଂସପେଶୀ

**ପଟ୍‌କନ୍** - *ଦେ:* (ବିଂ.) : ଠକାମି

**ପଟ୍‌କା** - *ସୁବ:ସୁ:* (ବି.) ବେକରେ ପକାଯାଇଥିବା ଗାମୁଛା

**ପଟ୍‌କାପଟ୍‌କି** - *ବର:କ:* (କ୍ରି.) : କୁଣ୍ଢାକୁଣ୍ଢି, ପ୍ରବର୍ତ୍ତାଇବା

**ପଟ୍‌କିବାର** - *ସୁବ:* (କ୍ରି.) : ଆଲିଙ୍ଗନ କରିବା, କୁଣ୍ଢାଇ ପକେଇବା

**ପଟ୍‌କୁଚି** - *ମ:* (କ୍ରି.) : ମରିବାକୁ ଯାଉଛି

**ପଟ୍‌ଖାଇବା** - *କଳା:* (କ୍ରି.) : ଆଦିବାସୀ କନ୍ଧ ସଂପ୍ରଦାୟରେ ବିବାହ ପୂର୍ବରୁ କନ୍ୟାପିତା ବରପିତାଙ୍କଠାରୁ କନ୍ୟା ସୁନା ଆକାରରେ ବଳଦ ଗ୍ରହଣ କରିବା ପ୍ରକ୍ରିୟା

**ପଟ୍‌ଟୀ** - *ସଂ:* (ବି.) : ବେଣ୍ଡେଜ, ମୋଟା ମାଟିଆ କାଗଜ

**ପଟ୍ନି** - *ସୁ:* (ବିଂ.) : କାଠପଟା

**ପଟ୍ନିଆ** - *କଳା:* (ବିଂ.) ପାଟଣା (ବଲାଂଗିର)ର ବାସିନ୍ଦା

**ପଟ୍‌ପଟା** - *କଳା:ଗ:* (ବିଂ.) : ଶୀର୍ଣ୍ଣ, ପତଳା, ଗାରଗାର

**ପଟ୍‌ପଟିଆ** - *ବୌ:* (ବି.) : ଏକମୁହାଁ

**ପଟ୍‌ବା** - *କଳା:* (କ୍ରି.) : ମିଶିବା, ମେଳ ଖାଇବା, ଖାପ ଖାଇବା, ଏକାତ୍ମ ହେବା

**ପଟକଣ ଖାଇବା** - *ଗୋ:* (କ୍ରି.) : ଟାଲୁଟାଲୁ ଝୁଣ୍ଟିପଡ଼ିବା

**ପଟକା** - *ବା:ଗଦ୍ୟ:* (ବି.) : ଗଳବସ୍ତ୍ର, ଗାମୁଛା

**ପଟକାର** - *ଗଦ୍ୟ:* (ବିଂ.) ମିଛୁଆ, ବାହାପିଆ

**ପଟଣି** - *କଣ:* (ବି.) : ମାଟି ଘରେ କାଠ ପଟାରେ ତିଆରି ତାଙ୍ଗା, ବର୍ଦ୍ଧିତ ଅଂଶ

**ପଟନିପଥର** - *ସୁବ:* (ବି.) : ଘର ଛାତରେ ଲାଗୁଥିବା ପଥର ପାତ

**ପଟ ନିଷତ** - *ସୁବ:* (ବିଂ.) : ବଡ଼ ଅଳସୁଆ

**ପଟପଟ** - *ନ:* (ବିଂ.) : ଲଟପଟ୍, ଅଶ୍ଳୀଳ ଗାଳି

**ପଟବା** - *ସୁ:* (ବି.) : ରାଜିହେବା

**ପଟମସୁ** - *ବୌ:* (ବିଂ.) : ଅଳସୁଆ

**ପଟଲାମ** - *ଗ:* (ବି.) : ସୈନ୍ୟଦଳ

**ପଟଳ** - *ସ:* (ବି.) : ଫଳକ

**ପଟା** - *ଅନେ:* (ବି.) : ରୟତର ଜମି ସମ୍ବନ୍ଧୀୟ ସନନ୍ଦ, କାଠଗଣ୍ଡିରୁ କଟାଯାଇଥିବା ଅଂଶ, ସ୍ଲେଟ୍, ତମ୍ବାପଟା

**ପଟାଇବା** - *ବୌ:ନୂ:ଗଦ୍ୟ:* (କ୍ରି.) : ମନାଇବା, ମୂଲ୍ୟ ଧାର୍ଯ୍ୟ କରିବା, କୌଣସିମତେ ମନେଇବା

**ପଟାଏ** - *କ:* (ଅ.) : ଥରେ, ପ୍ରତିଶୋଧ ନେବା ଅର୍ଥରେ(ଦେଲି ପଟାଏ)

**ପଟା କରିବା** - *ଗ:* (କ୍ରି.) : ଚାଷ ଜମିର ସତ୍ତ୍ୱକୁ ନିଜ ନାମରେ ସନନ୍ଦ କରାଇବା

**ପଟାଖଡ଼ି** - *ଗ:* (ବି.) : ସ୍ଲେଟ୍‌ରେ ଲେଖିବା ଖଡ଼ି

**ପଟାଗଛ** - *କ:* (ବି.) : ଯେଉଁ ଗଛର କାଠରୁ ପଟାହୁଏ

**ପଟାଙ୍ଗି ଭଉଁସ** - *ଗଞ୍ଜ:* (ବି.) : ଦୀପାବଳି

**ପଟାଟମ** - *ଗ:* (ବି.) : ଆଡ଼ମ୍ବର, ପଟାଟୋପ

**ପଟାତଳିଆ** - *କଳା:* (କ୍ରି.) : ଗଜା ହୋଇଥିବା ଧାନକୁ ସମତଳ କାଦୁଅରେ ବୁଣି ତା ଉପରେ ଦାନ୍ତି କପରି ବୁଲାଇବା ପ୍ରଣାଳୀ

**ପଟାନ୍ତର** - *ଦେ:* (ବି.) : ତୁଳନା, ଉପମା

**ପଟାପଟି** - *ନ:ଗ:କଳା:ଦେ:* (ବି.କ୍ରି.ବିଂ.) : ଭୁଲାଭୁଲି କରିବା, ବୁଝାସୁଝା କରି ସପକ୍ଷକୁ ଆଣିବା, ମିଳିମିଶି, ଫୁସୁଲା ଫୁସୁଲି, ଭଣ୍ଡାଇବା

**ପଟାପତ୍ର** - *ଗ:* (ବି.) : ଅଧିକାର ପତ୍ର

**ପଟାପାଉତି** - *ସଂ:* (ବି.) : ଜମିବାଡ଼ିର ରେକର୍ଡ ପତ୍ର

**ପଟାବା** - *କଳା:ସ:* (କ୍ରି.) : ମନେଇବା, ନିଜ ତରଫକୁ ଅନୁରାଗୀ କରାଇବା, ପୋଟାଇବା, ମୂଲେଇବା

**ପଟାଭାଡ଼ି** - *ଗ:* (ବି.) : କାଠ ପଟାରେ ତିଆରି ଭାଡ଼ିଆଟୁ

**ପଟା ମାରିବା** - *କୋ:* (କ୍ରି.) : କାଠ ପଟା ସାହାଯ୍ୟରେ ଜମିକୁ ସମତଳ କରିବା

**ପଟାମୁଣା** - *ଗ:* (ବି.) : ସ୍ଲେଟ୍ ରଖିବା ମୁଣି

**ପଟାରି** - *ସୁବ:* (ବି.) : ପଟୁଆରୀ, ଜମିମାପ କରୁଥିବା ଲୋକ, ଅମିନ

**ପଟାରୁଟ୍** - *ଗଦ୍ୟ:* (ବି.) : ନିଶ୍ଚିହ୍ନ ହେବା

**ପଟାଲେଖା** - *ସଂ:* (ବିଂ.) : ପ୍ରଦର୍ଶିତ କନା ଲେଖା, ଧୂଜା ବ୍ୟାନର

**ପଟାଳି** - *କ:ଗ:କୋ:ନ:* (ବି.) : ଶାଗକିଆରି, ଚାଷ ଜମିର କ୍ଷୁଦ୍ର କିଆରି, ଫସଲ କରିବା ଯାଗାକୁ ବିଭକ୍ତ କରାଯାଇଥିବା ସାନ ସାନ ଭାଗ ଭାଗ, ଆଖୁ, ବାଇଗଣ କ୍ଷେତରେ ବିଭାଜିତ କ୍ଷୁଦ୍ର ଭୂମିଖଣ୍ଡ

**ପଟାଳିପଡ଼ିବା** - *କ:* (କ୍ରି.) : ବହୁସଂଖ୍ୟାରେ ଲୋକ ମୃତ୍ୟୁବରଣ କରିବା

**ପଟାସ** - *ଗ:ଦେ:* (ବି.) : ବାଣବିଶେଷ, ସାମର୍ଥ୍ୟ, ପାଉଁଶ, କ୍ଷାର

**ପଟାଂକିନି** - *ଗ୍ରା:* (ବିଂ.) : ହଠାତ୍

**ପଟି** - *ଅନେ:* (ବି.) : କ୍ଷତ ସ୍ଥାନରେ କପଡ଼ା ଗୁଡ଼ାଇବା, ଆସନ, ମସିଣା, ଛପା, ଶଗଡ଼ ଚକର କାଠ ଫାଳ, ଛୋଟ କିଆରି, ପାଉଁଜି, ଯାହାପାଦରେ ପିନ୍ଧାଯାଏ, ବିଛଣା, ପଟି ଜୁଆ ଖେଳ, ପଟି ମହାପୁରୁ, ଛବି

**ପଟିଆ** - *ଅନେ:* (ବି.) : ଖଜୁରି ପତ୍ର ତଟେଇ, ସପକ୍ଷ, ସମର୍ଥନ, ମଶିଣା, ପାଖିଆ,

**ପଟିଆ ବାହାରିବା** - *ଗ:* (କ୍ରି.) : ସପକ୍ଷ ହେବା

**ପଟିଆବେଣୀ** - *ଗଦ୍ୟ:* (ବି.) : ଏକ ପ୍ରକାର ଲମ୍ବା ସାପ

**ପଟିଆର** - *ଗଦ୍ୟ:* (ବି.) : କ୍ଷତ୍ରିୟ ଜାତି

**ପଟିଉଟି** - *ସ:* (ବି.) : ମିଳିମିଶି

**ପଟିକନ୍ଦା** - *କଥ:* (ବି.) : ଏକ ପ୍ରକାରର କନ୍ଦା

**ପଟିକା** - *କୋ:ଗଞ:* (ବି.) : ଗୋଟିକା, କଉଡି ଖେଳରେ ବ୍ୟବହୃତ

**ପଟିକିଆ** - *ନବ:ମା:ଦେ:* (ବିଂ.) : ଗୋଟିକିଆ

**ପଟି ଖେଲ୍** - *ସୁବ:* (ବି.) : ଏକ ପ୍ରକାର ଜୁଆ ଖେଳ, ଏଥିରେ ଛଟି ଚିହ୍ନ ଥିବା ପଟି ଓ ଗୋଟି ବ୍ୟବହାର ହୁଏ

**ପଟି ଚଢାଇବା** - *ବୌ:ଖୋ:* (କ୍ରି.) : ଠକିବା

**ପଟିମରା** - *ସୁ:* (ବିଂ.) : ଠକାମୀ

**ପଟିମାଲା** - *କଳା:* (ବି.) : ରାଜମିସ୍ତ୍ରୀମାନେ କାନ୍ଥ ପଲସ୍ତରା କଲାବେଳେ କାନ୍ଥକୁ

ଚିକ୍କଣ କରିବା ପାଇଁ ବ୍ୟବହାର କରୁଥିବା ଟିଣ ପଟା, ଏହାକୁ କାଛରେ ଘଷାଯାଏ

**ପଟୁ** - *ଖୋ:ଦେ:ଗ:* (ବିଂ.ବି.) : ପଙ୍କ, ନିପୁଣ, ଦକ୍ଷ, ଜଳ ପ୍ରବାହରେ ଆସୁଥିବା ସାର ମୃତ୍ତିକା

**ପଟୁଆ** - *ଅନେ:* (ବି.) : ଏକପ୍ରକାର ଜୋକ ଜାତୀୟ ପୋକ, ଛୋଟ ଡଙ୍ଗା, କଦଳୀ ପଟୁଆ, ହୁଲି ଡଙ୍ଗା, ମାଲ୍ ବୁହା ବଡ଼ ନାଆ, ଦୀର୍ଘାକୃତି ଡ଼ଙ୍ଗା, ଘୁଟୁ, ତେଣ୍ଡା ଡିଲିରେ ପାଟି ବସିବା ନିମନ୍ତେ ବ୍ୟବହୃତ ଯନ୍ତ୍ର, ଦେବତାଙ୍କ ଶୀତଳ ସାମଗ୍ରୀ ସଜାଡିବା ସେବକ

**ପଟୁଆର** - *କ:ସଂ:ନ:ଦେ:* (ବି.) : ଶୋଭାଯାତ୍ରା

**ପଟୁଆରି** - *ଗ:ଦେ:* (ବି.) : ଜମି ମାପିବା କର୍ମଚାରୀ, ଅମିନ

**ପଟୁକା** - *ଗ:* (ବି.) : ଏକ, ଗୋଟିଏ

**ପଟୁଳି** - *କେନ୍ଦୁ:* (ବି.) : ଲାଲ ରଙ୍ଗର ସ୍ୱର୍ଣ୍ଣମିଆଦି ଧାନ

**ପଟେ** - *ଅନେ:* (ବିଂ.ବି.) : ଗୋଟିଏ, ଏକ ଗଣନସଂଖ୍ୟା, ଅମିନ, ହଳରୁ ଏକ, ଦୁଇଟିରୁ ଗୋଟିଏ

**ପଟେଇ** - *କ:ଯା:କେ:* (ବି.) : ଛୋଟ ନାଆ ବା ସାମାନ୍ୟ ବଡ଼ ଡଙ୍ଗା, ଡଙ୍ଗାଠୁ ବଡ଼, ଯାହାଠୁ ସାନ ନୌକା

**ପଟେଇ ଦେବା** - *ଘ:* (କ୍ରି.) : ନିଷ୍ପତ୍ତି କରିଦେବା

**ପଟେଇବା** - *ଅନେ:* (କ୍ରି.) : ମନେଇବା, ଭୁଲେଇବା, ଆୟତ୍ତାଧୀନ କରିବା, ବୁଝେଇ ରାଜି କରେଇବା, ପଟାବା ଦେଖ, କଥାରେ ଫସେଇ ଦେବା

**ପଟ୍ଟଯୋଷୀ** - *ଗ:* (ବି.) : ରାଜାଙ୍କ ପଟ୍ଟ ଜ୍ୟୋତିଷ

**ପଟ୍ଟା** - *ଅ:ଭା:କେ:* (ବି.) : ଜମିର ପରିମାଣ ଲେଖାପତ୍ର, ଘର ଓ ଜମି ସଂକ୍ରାନ୍ତୀୟ ସରକାରୀ ନଥି, ଜମି ସତ୍ତ୍ୱ କାଗଜ

**ପଟ୍ଟାୟତ** - *ଗ:* (ବି.) : କନିଷ୍ଠ ରାଜପୁତ୍ର, ରାଜାଙ୍କ ସାନଭାଇ

**ପଟ୍ଟି** - *ଗଦ୍ୟ:* (ବି.) : ପାଖ ପାଖ ହୋଇ ରହିଥିବା କେତୋଟି ଗ୍ରାମର ମିଶ୍ରଣ

**ପଟ୍ଟିଚଢ଼ା** - *ବୌ:* (ବିଂ.) : ଠକ, ପଟ୍ଟିମରା

**ପଠରା** - *ସୁ:* (ବି.) : କାନ୍ଥରେ ରଖିବା ସ୍ଥାନ, କୁଲୁକା

**ପଠା** - *ଦେ:ଗଦ୍ୟ:ଗ:* (ବି.) : ପଠେଇବା, ନଦୀ, ମଝିରେ ଥିବା ସ୍ଥାନ, ପୃଷ୍ଠ ବ୍ରଣ, ନଦୀ ଗର୍ଭସ୍ଥ ଉଚ୍ଚଭୂମି, ପ୍ରେରଣ, ନଦୀ ମଧ୍ୟସ୍ଥ ଉଚ୍ଚସ୍ଥାନ

**ପଠାଡ଼ିହେବ** - *ଭା:* (କ୍ରି.) : ପାଟି କରି କହିବା

**ପଠାଣ** - *କ:* (ବି.) : ମୁସଲମାନ୍

**ପଠାର** - *ଭା:* (ବି.) : ପିଠିର ଘା'

**ପଠାରି** - *ସୁ:* (ବି.) : ପୋକ ବିଶେଷ

**ପଠାର୍** - *ଗଦ୍ୟ:* (ବି.) : ପର୍ବତ ଶିଖରର ସମତଳ ଅଂଶ, ସାନୁ

**ପଠାର୍‌ନୀ** - *ଚୌ:* (ବି.) : ପଠାଣର ସ୍ତ୍ରୀ, ପଠାଣ ଜାତୀୟା ସ୍ତ୍ରୀ

**ପଠାଳ** - *ରା:* (ବି.) : ଛୋଟ କିଆରି

**ପଠାସ** - *ଦେ:* (ବି.) : ଯବନ, ମୁସଲମାନ

**ପଠେନ** - *ସୁ:* (ବି.) : ପ୍ରଥମବାର ଝିଅର ଶାଶୁଘର ଯାତ୍ରା

**ପଡ଼ ଚାଇବା** - *ଅ:* (କ୍ରି.) ମୁହାଁମୁହାଁ ମୁକାବିଲା କରିବା

**ପଡ୍‌ବା** - *କଳା:* (କ୍ରି.) : ପଡ଼ିବ, ନିମ୍ନକୁ ଖସିବ

**ପଡତା** - *ବ:* (କ୍ରି.ବିଂ) : ପଡନ୍ତା

**ପଡସାରୀ** - *ରା:* (ବି.) : ପଡୋଶି

**ପଡିଅ** - *ବ:* (ବି.) : କାର୍ତ୍ତିକ ଅମାବାସ୍ୟା ପରଦିନ ପ୍ରଭାତରୁ

**ପଡିଅଣ** - *ବ:* (ବି.) : କାଳୀ ପୂଜା ବାସୀଦିନ ଭଉଣୀମାନେ ଭାଇମାନଙ୍କୁ ସଜ କରାନ୍ତି

**ପଡିଆ ଭଠିଆ** - *ଗ:* (ବି.) : ଚାଷବାସ ପ୍ରସଙ୍ଗ

**ପଡୁା** - *ସୁ:* (ବିଂ.) : ପାଡୁଆ

**ପଡୁକିବାର** - *ସୁବ:* (କ୍ରି.) : ହାଡ଼, କାଠ ଆଦି ଫାଟିଯିବା

**ପଡ଼ା** - *ଅନେ:* (ବି.) : ବସ୍ତି, ପଡ଼ିବା, ଗାଁ, ଛୋଟ ବସ୍ତି, ସାହି, ପଲ୍ଲୀଗ୍ରାମ, ଗ୍ରାମ ବା ସହରର ଏକ ଏକ ସ୍ୱତନ୍ତ୍ର ଜନବସତି

**ପଡ଼ାକ୍** - *କଳା:* (ଅ.) : ହଠାତ୍, ଖୁବ୍ ଶୀଘ୍ର

**ପଡ଼ି** - *ଅନେ:* (ବି.ବିଂ.) : ମାପପାତ୍ର, ଭରଣପୋଷଣ ପାଇଁ ଖାଦ୍ୟ, ପରିମାଣ ଜାଣିବା ପାଇଁ ଯେ କୌଣସି ପାତ୍ର, ଖଞ୍ଜା, ଦୈନିକ ଭରଣ ପୋଷଣ ସାମଗ୍ରି, ପରି

**ପଡ଼ିଅ** - *ଚୌ:* (ବି.) : ପଇଡ଼

**ପଡ଼ି ଅଖ** - *ଗ:* (ବି.) : ଶଗଡ଼ର ଅଖ ଭାଙ୍ଗିଗଲେ ଅନ୍ୟ ଯେଉଁ କାଠ ଅଖ ରୂପେ ବ୍ୟବହାର ହୁଏ

**ପଡ଼ିଆ** - *ଦେ:ସୁ:ନ:* (ବି.) : ପଦା, ତଇଲା, ଚାଷ ନହୋଇ ପଡ଼ି ରହିବା ଜମି, ଅନାବାଦୀ କ୍ଷେତ୍ର

**ପଡ଼ିଆଣି** - *କ:* (ବି.) : ପ୍ରଥମ ଓଡ଼ଚାଷ

**ପଡ଼ିଆତଡ଼ା** - *ଢ:* (ବି.) : ଘାସମାରିବାପାଇଁ ପ୍ରଥମେ ଚାଷ, ଅନାବାଦୀ ଜମି ଚାଷ

**ପଡ଼ିଆଭଙ୍ଗା** - *କ:* (କ୍ରି.) : ପଡ଼ିଆ ମାଟିକୁ ଚାଷ କରିବା

**ପଡ଼ିକାର୍ଡ଼** - *ସଂ:* (ବି.) : କଣ୍ଟ୍ରୋଲ ଜିନିଷ ମିଳିବାପାଇଁ ପ୍ରଦତ୍ତ ରେକର୍ଡ

**ପଡ଼ିଦାତା** - *କ:* (ବି.) : ଅନ୍ନଦାତା, ପଡ଼ି ଦେଉଥିବା ଲୋକ

**ପଡ଼ିବାଣୁଆ** - *ଗ:* (ବି.) : ସହାୟକ ବାଣୁଆ

**ପଡ଼ିଶା** - *କ:ନ:କେ:ଦେ:* (ବି.) : ପାଖରେ ଥିବା ଲୋକ, ପଡ଼ୋଶୀ, ଘରପାଖ ଲୋକ, ସାଇଭାଇ

**ପଢୁଖା** - *ଗ:* (ବି.) : ଅନୁକୂଳ

**ପଢୁନି** - *କୋ:* (ଅ.) : ମନ ମିଶୁ ନାହିଁ, ମନ ନ ମିଶିବା

**ପଢ଼ୋପଢ଼ୋ** - *ବୌ:* (ଅ.) : ଠାଏ ଠାଏ

**ପଢ଼ତେ ଯିମି** - *ମ:* (ବି.) : ପଢ଼ିବାକୁ ଯିବି

**ପଢଭ** - *ଛେ:ଗ:* (ବି.) ଛୋଟଡ଼ଙ୍ଗା, କ୍ଷୁଦ୍ରନୌକା

**ପଢଲେ** - *ଛେ:* (କ୍ରି.) : ପଢିବା

**ପଢୁଆଁ** - *ଅନେ:* (ବିଂ.ବି.) : ଜ୍ୟେଷ୍ଠ, ପ୍ରଥମ ସନ୍ତାନ

**ପଣ** - *ଅନେ:* (ବି.) : ପ୍ରତିଜ୍ଞା, ବାଜି, ଜିଦ୍, କୋଡ଼ିଏ ଗଣ୍ଡା, ପ୍ରତିଜ୍ଞା, ଷୋଳପଣ, ବଡ଼ପଣ, ୨୦ ଗଣ୍ଡା

**ପଣ୍ଡ୍କା** - *ଅନେ:* (ବି.) : କପୋତ ପକ୍ଷୀ, ପଣ୍ଡକା, ପାଣ

**ପଣ୍ଡ୍ହେଭ** - *କଳା:* (ବି.) : ପାଣ୍ଡୋଇ, କୋତା

**ପଣଅଜା** - *ଗ:* (ବି.) : ମାତାମହ ପିତାମହଙ୍କ ପିତା

**ପଣକିଆ** - *ଦେ:କ:* (ବି.) : ଗୁଣନ ଅଙ୍କ, ଗୁଣନଖନ୍ଦା

**ପଣଜେ'ପା** - *ନ:* (ବି.) : ଜେଜେବାପାଙ୍କ ବାପା

**ପଣତ** - *ଦେ:କ:* (ବି.) : କାନି, ଲୁଗାର ଶେଷ ଭାଗ, ଶାଢି ଶେଷଭାଗ କାନି,

**ପଣନ** - *ଦେ:* (ବି.) : ବିକ୍ରୟ

**ପଣପଣ** - *ଅ:ଦେ:* (ଅ.ବିଂ.) : ଅସଂଖ୍ୟ

**ପଣସକଠା** - *ଖୋ:* (ବି.) : କସି ପଣସ

**ପଣସକଣ୍ଟା** - *ନ:* (ବି.) : ହାତର ଏକପ୍ରକାର ସ୍ୱର୍ଣ୍ଣ ଅଳଙ୍କାର

**ପଣସ ବନ୍ଧା** - *ଗ:* (ବି.) : ପଣସ ଭିତରୁ କୋଷ ବାହାର କରି ଆଣିବା ପରେ ରହୁଥିବା ଅଂଶ

**ପଣା** - *ଗ:ନ:କେ:ଦେ:* (ବି.) : ନବାତ ସର୍କରାଯୁକ୍ତ ପାନୀୟ, ଚିନି, ଦହି, ଛେନା, କଦଳୀ, ଗୋଲମରିଚ, ଅଦା ମିଶା ପାନୀୟ, ସରବତ, ଗୁଡ଼ ପଣା, ଆଖୁରସ, କୁଟିବା ନିମନ୍ତେ ଢିଙ୍କି ପାଖରେ ଭର୍ତ୍ତି କରିବା

**ପଣାକାନ୍ତି** - *ଗ:* (ବି.) : ଏକପ୍ରକାର ବ୍ୟଂଜନ

**ପଣାପାଣି** - *ନ:* (ବି.) ଅମାବାସ୍ୟା, ସଂକ୍ରାନ୍ତି, ଶନିବାର, ମଙ୍ଗଳବାର ଇତ୍ୟାଦିରେ ଦିଅଁକୁ ଦିଆଯିବା ଦ୍ରବ୍ୟ

**ପଣାସଂକ୍ରାନ୍ତି** - *ନ:ଦେ:* (ବି.) : ବିଷୁବ ସଂକ୍ରାନ୍ତି, ଓଡ଼ିଆ ନବ ବର୍ଷର ପ୍ରଥମ ଦିବସ

**ପଣି** - *କ:ପଦ୍ୟ:ଦେ:ଭ:* (ବି.) : କମିସିନି, ମଧ୍ୟସ୍ଥିର ପ୍ରାପ୍ୟ, ସିଆର ନାଳ, ଧାଡ଼ି କାଟିବା, ପଣି ଧରିବା, ସିଅର

**ପଣିଆ ଦେଖାଇବା** - *ଗ.* (କ୍ରି.) : ଗର୍ବ ପ୍ରଦର୍ଶନ କରିବା, ଜାହିର୍ କରିବା

**ପଣିବା** - *ଅନେ.* (କ୍ରି.) : ଢିଙ୍କିରେ ଧାନ କୁଟିବାବେଳେ ଭୁଞ୍ଜାଇ ଦେବା, ଖାଇବା, ଜମାକରିବା, ଢିଙ୍କି ଗାତରେ ଧାନ ଭରିବା

**ପଣେ** - *ଊ.ବା.ନ.ଦେ.* (ବି.ବି.) : ୨୦ ଗଣ୍ଡା

**ପଣେଇ** - *କଳା.* (ବି.) : ପାଣ୍ଠୋଇ, ଜୋତା

**ପଣେସି** - *କନ୍ଧ.* (ବି.) : ପଣସ

**ପଣ୍ଡ** - *ଦେ.ନବ.ଗଦ୍ୟ.* (ବି.) : ନିରର୍ଥକ, ବୃଥା, ପୌଷମାସ, ବିଫଳ

**ପଣ୍ଡକା** - *ବୌ.* (ବି.) : କାପ୍ତା

**ପଣ୍ଡକାଳିଆ ଧାନ** - *କେନ୍ଦୁ.* (ବି.) : କଳା ରଙ୍ଗର ଶୁଙ୍କଯୁକ୍ତ ମଧ୍ୟମ କିସମର ଧାନ

**ପଣ୍ଡରା** - *ଗଞ୍ଜ.ସ.* (ବି.) ଜାତିବିଶେଷ, ଧୂସରିଆ

**ପଣ୍ଡଖାନି** - *ଗଦ୍ୟ.* (ବି.) : ଏକ ପ୍ରକାର ନୃତ୍ୟ

**ପଣ୍ଡା** - *ଅନେ.* (ବି.) : ଅଣ୍ଡିରା ମଇଁଷି ଯାହାର ମୁଷ୍କ ଛେଦନ ହୋଇଥାଏ, ପୌରୁଷହୀନ ପୋଡୁଅ, ପୂଜକ, ବ୍ରାହ୍ମଣ ଜାତିର ଏକ ସାଙ୍ଗିଆ, ପୋତ, ବ୍ରାହ୍ମଣ

**ପଣ୍ଡା ପଣସ** - *ଗ.* (ବି.) : ରସହୀନ ପଣସ

**ପଣ୍ଡିଆ** - *ଦେ.* (ବି.) : ବୃକ୍ଷର ଉପର ଅଂଶ, ମଞ୍ଜା ନୁହେଁ

**ପଣ୍ଡୁଅ** - *କ.* (ବି.) : ବଡ଼ ପତ୍ର ବିଡ଼ା

**ପଣ୍ଡୁକୁଟା** - *ବା.* (ବି.) : ଛୋଟକୁଟା

**ପଣ୍ଡେର୍** - *ଗଦ୍ୟ.* (ବି.) : ଠେକୁଆ

**ପତ୍‌ନି** - *ମ.* (ବି.) : ପ୍ରଜାପତି

**ପତ୍‌ରା** - *ବୌ.କଳା.ବା.ସୁବ.* (ବି.) : ବୁଦ୍ ବୁଦିଆ ଜଙ୍ଗଲ, ଲଟାବୁଦା ବହୁଳ ଥିବା ଅନାବାଦୀ ଶୁଖିଲି ପତ୍ର ଜମି, ଛୋଟ ଗଛର ବୁଦୁବୁଦି କିଆ ଜଙ୍ଗଲ ଉପବନ

**ପତ୍‌ଲିଆ** - *କଳା.* (ବିଂ.) : ପତଳା ଭାବରେ

**ପତକା** - *କଳା.ଦେ.* (ବି.) : ପତାକା, ଧ୍ୱଜ, ବାନା, ନେତ

**ପତର** - *ଗଦ୍ୟ.* (ବି.) : ପୃଷ୍ଠା, ପତ୍ର

**ପତର କୋବି** - *ମା.* (ବି.) : ବନ୍ଧାକୋବି

**ପତରଚଟା** - *କ.* (ବିଂ.) : ଅଇଁଠା ଖିଆ

**ପତର ପଡ଼ିବା** - *ଯା.* (କ୍ରି.) : ଖାଇବାର ବ୍ୟବସ୍ଥା

**ପତର ପିଠା** - *ଗଦ୍ୟ.* (ବି.) : ଏଣ୍ଡୁରି ପିଠା

**ପତରଫେଡ଼ି** - *ସୁ.* (ବି.) : କେନ୍ଦୁ ପତ୍ର ଗୋଦାମ

**ପତର ମଡା** - *ନୂ.* (ବିଂ.) : ଯେଉଁ ମଣ୍ଡା ପତ୍ର ଦେଇ ସିଝା ଯାଇ ତିଆରି କରାଯାଏ

**ପତର ସଉରା** - *ଗଦ୍ୟ.* (ବି.) : ଏକ ପ୍ରକାର ଆଦିବାସୀ ସଂପ୍ରଦାୟ

**ପତରା** - *ବା.ଗଦ୍ୟ.ସୁ.* (ବି.) : ଶୁଖିଲା ପତ୍ର, ଗ୍ରାମ ପାଖର ସଂରକ୍ଷିତ ଜଙ୍ଗଲ, ଛୋଟ ଜଙ୍ଗଲ

**ପତରାଫୁଲ** - *କେନ୍ଦୁ.* (ବି.) : ଗେଣ୍ଡୁଫୁଲ

**ପତରି** - *ସୁ:* (ବି.) : ଖଲିପତ୍ର

**ପତରେ** - *ସୁ:* (ବି.) : ଏକପତ୍ର, ଗୋଟିଏ (ପତ୍ରେ) ଦାଆକୁ

**ପତର୍ ପୁଡା** - *ବା:* (ବି.) : ନିମ୍ବ, ଜଡ଼ି, ପ୍ରସାରୁଣୀ ଆଦି ପତ୍ରକୁ ବାଟି କଦଳୀ ପତ୍ରରେ ସ୍ୱତନ୍ତ୍ର ଭାବରେ ବାନ୍ଧି ନିଆଁରେ ପୋଡିବା, ପତ୍ରପୋଡ଼ା

**ପତର୍‌ଖୁଣ୍ଟ** - *ମ:* (ବି.) : ଅମରପୋଇ

**ପତର୍‌ଲଛାପୁକ** - *କଣ:* (ବି.) : ଏକ ପ୍ରକାର ପୋକ

**ପତର୍ ଲେଛା** - *ସ:ଶୌ:* (ବି.) : ପତରରେ ପୋଛି ଶୌଚକାମ ସାରିବା ପ୍ରକ୍ରିୟା

**ପତଲି** - *ସୁ:* (ବିଂ.) : ପାତଳୀ

**ପତଲା** - *କେନ୍ଦୁ:ଦେ:ନ:* (ବିଂ.) : ବୁଦୁବୁଦୁକିଆ (ଜଙ୍ଗଲ), ସରୁ

**ପତଳି** - *ମ:* (ବି.) : ବେଙ୍ଗଳା

**ପତା** - *ସୁ:ନ:ଦେ:* (ବି.) : ଠିକଣା, ଆଖିପତା, ଖବର

**ପତାଇବା** - *ଗ:ନ:* (କ୍ରି.) : ହସ୍ତ ପ୍ରସାରଣ କରିବା, ହାତଦେଖାଇ ମାଗିବା

**ପତାଉତା** - *ସ:* (ବି.) : ଖୋଜ ଖବର

**ପତାଙ୍ଗି** - *ଶୌ:ସୁ:* (ବି.) : ଗୁଡ଼ି

**ପତାଣ୍ଡି** - *ଭ:ବା:ବା:* (ବି.) ଧାନରୁ ବାହାରୁଥିବା ଗୁଣ୍ଡିକୁଟା

**ପତାପଡ଼ିନି** - *ନ:* (କ୍ରି.) : ଅନିଦ୍ରା ରହିବା

**ପତାଲି** - *ବର:* (ବି.) : ପାତଳଘଣ୍ଟା

**ପତି** - *ଦେ:ନ:* (ବି.) : ବ୍ରାହ୍ମଣଙ୍କ ଉପାଧି, ଗଞ୍ଜେଇ ଗଛର ପତ୍ର, ସ୍ୱାମୀ,

**ପତିଆର** - *କ:* (ବି.) : ଖାତିର

**ପତିଆରା** - *ଖୋ:ନ:ଢେ:ଗ:* (ବି.) : ପ୍ରଭୁତ୍ୱ, ଖାତିର, ଫୁଟାଣି, ଗର୍ବ ଦେଖାଇବା, ପ୍ରତିଷ୍ଠା, ଭାଉ, ପ୍ରତ୍ୟୟ, ବିଶ୍ୱାସ, ସମ୍ମାନ

**ପତିତ** - *ଦେ:ଢ:* (ବି.ବିଂ.) : ପଡ଼ିଆ, ପାପୀ, ଅଛୁବ

**ପତିନିପାଟ** - *ଗ:* (କ୍ରି.) : ପରିଧେୟ ପାଟ

**ପତିବର୍‌ତା** - *କଳା:* (ବିଂ.) : ପତିବ୍ରତା, ସତୀ

**ପତିଲି** - *ଅ:* (ବି.) : ଗମଲା, ଗାଗୁଲା, ଛୋଟ ମାଠିଆ

**ପତୁଆ** - *ଗଦ୍ୟ:ବା:* (ବି.) : ବାଲେଶ୍ୱରରେ ଏକ ପ୍ରକାର ଖାଦ୍ୟ, ପତର ପୁଡାକୁ ପତୁଆ କହନ୍ତି

**ପତୁଆ ପୋଡି** - *ଗଦ୍ୟ:* (ବି.) : ପତ୍ରପୋଡା

**ପତୁକ** - *ବା:* (ବି.) : ପତଙ୍ଗ

**ପତୁରୀଢାଳ** - *ନ:* (ବି.) : ଆଖୁପତରରେ ଚୁଲିରେ ଗୁଡ଼ ରାନ୍ଧିବାର ଢାଳ ବିଶେଷ

**ପତୁଲି** - *କେନ୍ଦୁ:ପଦ୍ୟ:* (ବି.) : ଛୋଟ ମାଟି ପାତ୍ର, ବେଙ୍ଗଳା ବୁଲୁଥିବା ବଳଦ

**ପତୁଳି** - *ଭ:ବା:ଯା:* (ବି.ବିଂ.) : ଧାନ ଅମଳ ପାଇଁ ବେଙ୍ଗଳା

**ପତେ** - *କଳା:* (ବି.) : ପର୍ଯ୍ୟନ୍ତ, ପତେ

**ପଟେଲବା** - *ପଟ୍ୟ:* (କ୍ରି.) : ଦେଖେଇବା, ପ୍ରସାରଣ କରିବା

**ପଟେକ୍** - *କଳା:* (ବି.) : ପର୍ଯ୍ୟନ୍ତ, ପତେ

**ପଟେଂଗା** - *କଳା:* (ବି.) : ପତଙ୍ଗ

**ପଟଁର ପେଡ଼ି** - *ଗଦ୍ୟ:* (ବି.) : ନିର୍ବନ୍ଧ

**ପତ୍ତା** - *ନ:ଛ:* (ବି.) : ଠିକଣା

**ପତାସତ୍ତା** - *କ:* (ବି.) : ଠିକଣା, ସ୍ଥିତି

**ପତ୍ରନିର୍ମିତ ପାତ୍ର, ଚଉଡି, ଶିଆଳୀ ପତ୍ରର** ଦନା

**ପତ୍ରମାଡାପିଠା** - *ବ୍ୟ:* (ବି.) : ଖଳିକୁ ନେଇ ପତ୍ରରେ ତିଆରି ହେଉଥିବା ପିଠା

**ପତ୍ରା** - *ବ:* (ବି.) : ବୁଦା, ଗୁଳ୍ମ ଥିବା ଛୋଟ ଜଂଗଲ

**ପତ୍ରୀ** - *କଳା:* (ବି.ବିଂ.) : ଆଖୁ ଗଛର ପତ୍ର, ପତ୍ର ବହୁଳ

**ପଥ୍‌ରିଆ** - *ସୁ:ସ:* (ବିଂ.) : ପଥୁରିଆ, ପଥର କାମ କରୁଥିବା ଲୋକ

**ପଥର** - *ଦେ:ବ୍ୟ:* (ବି.) : ପାଷାଣ, ବଟକରା

**ପଥର ପାଣି** - *କୋ:* (ବି.) : ପିଲାମାନଙ୍କ ଏକ ପ୍ରକାର ଖେଳ

**ପଥରିବସା** - *ବ୍ୟ:* (ବି.) : ପଥୁରି ବାସନରେ ଯେଉଁ ବ୍ୟଞ୍ଜନ ପ୍ରସ୍ତୁତ କରାଯାଏ

**ପଥା ପାକେନି** - *ସ:* (ବି.) : ଅତଡ଼ା ନଖାଇବା ପାଇଁ ଯେଉଁ ପଥର ସ୍ତୁପ କରାଯାଏ

**ପଥ୍ୟ** - *ଅନେ:* (ବି.) : ଜମି, ବହି, ପୁସ୍ତକ, ରୋଗୀଯୋଗ୍ୟ ଖାଦ୍ୟ, ପଥ୍ୟ, ରୋଗୀର ଆହାର

**ପଥୁରି** - *କ:ସଂ:ଦେ:ଗ:* (ବି.) : ପଥର ବାସନ, ବାସନ, ମୁତ୍ରାଶୟ ରୋଗ

**ପଥୁରିଆ** - *ସଂ:କ:ଦେ:ନ:* (ବିଂ.ବି.) : ପଥର ପୂର୍ଣ୍ଣ ବନ୍ଧୁର ରାସ୍ତା, ପଥରରେ ଯେ ମୂର୍ତ୍ତିଗଢେ, ମଥୁରିଆ ରୋଗ, ବଢେଇ, ଶିଳ୍ପୀ

**ପଥୁରିଗଛ** - *ସଂ* (ବି.) : ପାଷାଣଭେଦୀ ନାମକ ଔଷଧୀୟ ଗୁଳ୍ମ

**ପଦ** - *କ:ଦେ:* (ବି.) : ମନ୍ତ୍ର, ଗାଳି, ଚରଣ, ତଳିପା, ବଢେଇ, ଶିଳ୍ପୀ

**ପଦକ** - *ଦେ:ଛ:ଗ:* (ବି.) : କଣ୍ଠ ଭୂଷଣ, ମୁଦ୍ରା, ହାରର ମଝି ଫୁଲ

**ପଦବୀ** - *ଦେ:* (ବି.) : ପଦ, ସମ୍ମାନ ସୂଚକ

**ପଦମ** - *ଅନେ:* (ବି.) : ଚାରି ଅଙ୍ଗୁଳିର ମାପ, ପାଦର ମାପ, ପାପୁଲି, ପଦ୍ମ

**ପଦମଦ** - *ଦେ:* (ବି.) : ବଡ଼ବଡ଼ିଆ, ବଡ଼ାମି

**ପଦମାଲି** - *ରା:* (ବି.) : ପଦକ

**ପଦରବୁଲି** - *ଗ:* (ବି.) : ଦୁଶ୍ଚରିତ୍ରା

**ପଦରଭୋଜି** - *ଗ:* (ବି.) : ଚାଷ ଜମିରେ କୃଷି ଦେବତାଙ୍କ ଉଦ୍ଦେଶ୍ୟରେ ଦେବା ଭୋଜି

**ପଦରି** - *ସୁ:* (ବି.) : ପ୍ରଦର ରୋଗୀ ସ୍ତ୍ରୀ

**ପଦରିଧାନ** - *ଗ.* (ବି.) : ପାହାଡ଼ିଆ ଜମିର ଧାନ ଫସଲ

**ପଦର୍** - *କଳା.* (ବି.) : ଢିପ ଜମି, ଗ୍ରାମର ଉପନାମ ବିଶେଷ

**ପଦା** - *ଅନେ.* (ବି.ବିଂ.) : ପଡ଼ିଆ ଭୂମି, ସଫା ଅଞ୍ଚଳ, ଗହଳ ନଥିବା ସ୍ଥାନ, ଜନବସତି ହୀନ, ସଂପୂର୍ଣ୍ଣରୂପେ ନଷ୍ଟ, ବାହାର ସ୍ଥାନ

**ପଦାକରିବା** - *ସଂଖୋ.* (କ୍ରି.) : ଗଛପତ୍ର ହାଣି ଜମି ସଫା କରିବା, ଶେଷକରିଦେବା

**ପଦାକୁ** - *ଗଞ୍ଜ.ନବ.ସଂ.* (କ୍ରି.ବି.) : ମଳତ୍ୟାଗ କରିବାକୁ, ଝାଡ଼ା ପରିସ୍ରା ଯିବା

**ପଦାକୁ ହେବା** - *ଗ.ସଂ.* (କ୍ରି.ବି.) : ସ୍ତ୍ରୀଙ୍କ ମାସିକ ରକ୍ତସ୍ରାବ ହେବା

**ପଦାଗାଁ** - *ସଂଗ.* (ବି.) : ଅନ୍ୟଗ୍ରାମ

**ପଦାଚରି** - *ସୁ.* (ବି.) : ପଦାରେ ବୁଲୁଥିବା ସ୍ତ୍ରୀ, ଘୋଡା

**ପଦା ପକାଇବା** - *ଗ.* (ବି.) : ପ୍ରଘଟ କରିବା

**ପଦାପଡ଼ା ହେବା** - *ଗ.ସଂ.* (ବି.କ୍ରି.) : ଗୁପ୍ତ ବିଷୟ ପ୍ରକାଶ ହୋଇଯିବା

**ପଦା ପଡ଼ିବା** - *ରା.* (କ୍ରି.) : ଗୋପନୀୟ ପ୍ରକାଶ କରିବା

**ପଦାରେ** - *କୋ.* (ବି.) : ବାହାରେ

**ପଦାଲୋକ** - *ସଂଗ.* (ବି.) ବାହାରର ଲୋକ

**ପଦାଳ ଯିବା** - *କେନ୍ଦୁ.* (କ୍ରି.) : ଝାଡ଼ା ଯିବା

**ପଦାଳିଆ** - *ସଂ.* (ବିଂ.) : ଗଛ ଅରମା ନଥିବା ସଫା ସ୍ଥାନ

**ପଦାସ୍ତ** - *ରା.* (ବି.) : ତିଆରି ଜିନିଷ

**ପଦିଏ** - *ଦେ.* (ବି.) : ଏକ ପଦ

**ପଦିକା** - *ଅନେ.* (ବି.) : ସୁନା ଓଜନର ପରିମାଣ ବିଶେଷ, ଗ୍ରୀବା ଅଳଙ୍କାର ବିଶେଷ, ଭୂମି ମାପ ପରିମାଣ ବିଶେଷ, ଜମିମାପର ଏକ ଚେନର ୧, ୫ ଅଂଶର ବାଉଁଶ ବାଡ଼ି (୨୦ କଡ଼ି)=୧ପଦିକା, ଏକ ନିର୍ଦ୍ଦିଷ୍ଟ ପରିମାଣ ଜମିକୁ ସୂଚାଏ, ଜମିମାପର ବାଡ଼ି

**ପଦିଭ, ପଧୁପ** - *ଯା.* (ବି.) : ପରମ୍ପରା

**ପଦିଷ୍ଠା** - *ଚା.* (ବି.) : ପ୍ରତିଷ୍ଠା

**ପଦୁଅଁ** - *ସଂଦେ.କ.ଗ.* (ବି.) : ପଦ୍ମପୁଷ୍ପ, ହାତ ପାପୁଲି, ସ୍ତ୍ରୀ ଯୌନାଙ୍ଗ, ଜାତୀୟ ଫୁଲ, ଲକ୍ଷେ କୋଟି

**ପଦ୍ମକେଶରୀ** - *ନ.* (ବି.) : ଏକ ଧାନର ନାମ

**ପଦ୍ମତୋଳା** - *ଦେ.* (ବି.) : ସାପୁଆ କେଳାଙ୍କ ସାପ ଖେଳାଇବା କଥା

**ପଦ୍ମ ପୁଷ୍କର** - *ସଂ.* (ବି.) : ପଦ୍ମଫୁଲର କନ୍ଦା

**ପଧାନ** - *ସଂକ.ଦେ.* (ବି.) : ଗାଁର ମୁଖିଆ ବ୍ୟକ୍ତି, ଏକ ସଂଜ୍ଞା, ମୁଖିଆ

**ପଧାନୀ** - *ରା.* (ବି.) : ଜାତିର ମୁଖ୍ୟ

**ପଧୁଆ** - *ଗଦ୍ୟ.* (ବି.) : ଅଧୁଆ

**ପନ୍** - *ଜଳା:* (ବି.) : ପଣ, ପଦବୀ

**ପନ୍ଖି** - *ସୁ:* (ବି.) : ପନିକି

**ପନ୍ଚକି** - *ଗଦ୍ୟ:ଅ:* (ବି.) : ଏକ ଯନ୍ତ୍ର

**ପନ୍ଚେଇବା** - *ସୁ:* (ବି.) : ମୁହଁରୁ ପାଣି ବାହାରିବା

**ପନ୍ଛି** - *ଜଳା:* (ବି.) : ପକ୍ଷୀ, ପକ୍ଷୀର ଡ଼େଣା, ପର

**ପନ୍ପୁରଷା** - *ଜଳା:* (ବି.) : ପୂର୍ବପୁରୁଷ

**ପନକ୍** - *ଜଳା:* (ବି.) : ଚୋପା, ବକଳ

**ପନକୋଇଡ** - *ଯା:* (ବି.) : ପାଣିକୁଆ

**ପନା** - *ଅନେ:* (ବି.) : ଆଖୁରସ, ପହ୍ନା, ପଶୁର ସ୍ତନ ପାଖର ମାଂସଳ ଭାଗ, ଗାଈର ସ୍ତନ, ମାର କ୍ଷୀର

**ପନାଡ଼୍** - *ଗ:ସ:* (ବି.) : ନଈକୂଳିଆ ଭୂମି, ନଈକୂଳିଆ ଗ୍ରାମ

**ପନା ପିଇବା** - *ନୂ:* (କ୍ରି.) : ସ୍ତନ୍ୟପାନ

**ପନାସି** - *ସୁ:ଗଦ୍ୟ:ସୁବ:* (ବି.) : ସବାଇ ଘାସ, ଏକ ଲମ୍ବ ଜଙ୍ଗଲୀ ଘାସ, ଏଥିରେ ଖଟର ଦଉଡ଼ି ପ୍ରସ୍ତୁତ ହୁଏ

**ପନି** - *ନ:* (ବି.) : କ୍ଷେତରେ ଗୋଟିଏ ପଟାଳିର ଅର୍ଦ୍ଧେକ, ଲଙ୍ଗଳର ତଳଭାଗ

**ପନିଅର** - *କ:* (ବି.) : ପନିପରିବା

**ପନିଅର ଲାଗି** - *ସଂଗ:* (ବି.) : କ୍ଷୌର କର୍ମ

**ପନିଆ** - *ମା:ସୁବ:ସ:ଜଳା:* (ବି.) : ପାନିଆ

**ପନିକି** - *ନ:ସଂ:କ:ଖୋ:* (ବି.) : ପରିବା କଟା ଲୌହ ଯନ୍ତ୍ର, କାଠଖଣ୍ଡରେ ବସିଥିବା ଲୌହଖଣ୍ଡ, ଫଳମୂଳ ଓ ପନିପରିବା କାଟିବା ଅସ୍ତ୍ର,

**ପନିହା** - *ସୁ:* (ବି.) : ପାନିଆଁ

**ପନୀର** - *ଦେ:* (ବି.) : ଛେନା ଜାତୀୟ ଖାଦ୍ୟ

**ପନେଇବା** - *ସଂଭ:* (କ୍ରି.ବିଂ) ଗୋ ଦୋହନର ପୂର୍ବାବସ୍ଥା, ଦୁଗ୍ଧବତୀ ହେବା

**ପନ୍ତେ** - *ଗଦ୍ୟ:କୋ:ଜଳା:* (ଅ.ବିଂ.) ପର୍ଯ୍ୟନ୍ତେ, ପର୍ଯ୍ୟନ୍ତ, ପତେ, ପତେକ୍

**ପନ୍ତେଇବା** - *ଯା:ଗ:* (କ୍ରି.) : ପଳାଇବା, ବିଦାୟ କରିବା, ବିଦା କରିବା

**ପନ୍ଥେଇ ପୂଜା** - *ସଂ* (ବି.) : ଚୈତ୍ର ମାସରେ ଛକ ଜାଗାରେ କିଛି ସ୍ତ୍ରୀଲୋକ ଏକାଠି ହୋଇ ମଙ୍ଗଳବାର ଦିନ କରୁଥିବା ପୂଜା

**ପନ୍ଥେଇବା** - *ଖୋ:* (କ୍ରି.) : ବଣିଆମାନେ ବ୍ୟବହାର କରୁଥିବା ଏକସାଂକେତିକ ଶବ୍ଦ

**ପଦରା** - *ସଂଗ:କୋ:ଗଜ:* (ବି.) : କୃଷିକାରୀ ଜାତି, ପନିପରିବା ଚାଷ କରୁଥିବା ଜାତି ବିଶେଷ

**ପଦ୍ଧାଡ଼ି** - *ଗ:ସ:* (ବି.) : ଶଗଡ଼ ତୁମ୍ବର ବିନ୍ଧରେ ଲାଗିଥିବା ଲୌହ ବଳୟ

**ପଦ୍ଧାରି** - *ନ:* (ବି.) : ଶଗଡ଼ ତୁମ୍ବରେ ଭିତର ପାର୍ଶ୍ୱରେ ଥିବା ଏବଂ ଅଖସହ ମିଶୁଥିବା ଲୌହ ବୃତ୍ତାକାର ବଳା

ପନ୍ନା - *ଗ.ସଂ.* (ବି.) : ପୃଷ୍ଠା, ଗୋସ୍ତନ, ସ୍ତନର ଦୁଗ୍ଧ ସ୍ରାବ

ପପଞ୍ଚ - *ଅ.* (ବି.) : ପରପଞ୍ଚ ଖରାପ ବୁଦ୍ଧି ଥିବା ଲୋକ

ପପରା - *ନୂ.* (ବି.) : ପରାତ

ପପିତା - *ମ.* (ବି.) : ଅମୃତଭଣ୍ଡା

ପପେୟା - *ଅ.* (ବି.) : ଅମୃତଭଣ୍ଡା

ପବ - *ଅନେ.* (ବି.) : ଗଣ୍ଠି, ଦୁଇ ଗଣ୍ଠିର ମଧ୍ୟସ୍ଥଳ, ବାଉଁଶ ବା ଆଙ୍ଗୁଠିର ଗଣ୍ଠି, ଡାଳ, ବାହୁଙ୍ଗୀ

ପବଅଇରି - *ଦେ.* (ବି.) : ହାଡ଼ଯୋଡ଼ାଯନ୍ତ୍ର

ପବଛଡ଼ା - *କ.* (ବି.) : ଡେଙ୍ଗା, ଦ୍ରୁତଗତିରେ ବଢ଼ିବା

ପବଣ - *ଇ.* (ବି.) : ପ୍ରବଣ

ପବନା - *ଅନେ.* (ବିଂ.) : ବଡ଼ବଡ଼ କଥା କହୁଥିବା ବ୍ୟକ୍ତି, ଧୂର୍ତ୍ତ, ବାହାପିଆ, ଖଚୁଆ, ଯିଏ ମିଛ ଓ ମନଗଢା କଥା କହେ, ଯେ ମୂଲ୍ୟହୀନ କଥା କହେ

ପବନା କଙ୍କଡ଼ା - *ଇ.* (ବି.) : ଛୋଟ କଙ୍କଡ଼ା

ପବିତର୍ - *କଳା.* (ବିଂ.) : ପବିତ୍ର, ପୁଣ୍ୟମୟ, ପାବନ

ପମ୍‌ପାଲ୍ - *ଗଦ୍ୟ.* (ବିଂ.) : ଠକ

ପମାଙ୍କୁ - *ଗଦ୍ୟ.* (ବି.) : ବିଭିନ୍ନ ଦେବତା ମନ୍ଦିରର ପୂଜକ

ପମ୍ପୁ - *ଅ.* (ବି.) : ପାଣିଉଠା ଯନ୍ତ

ପର - *ଅନେ.* (ବି.ବିଂ.) : ପକ୍ଷୀ, ଯେ ନିଜର ନୁହେଁ, ଅନ୍ୟ, ନିଜ ବ୍ୟତୀତ

ପରଓ୍ୱା - *ଗଜ.* (କ୍ରି.) : ଖାତିର

ପରକଣା - *ସ୍ମ.* (ବି.) : ଦୁଇ ଶାଖା ବିଶିଷ୍ଟ କାଠ, ବାଡ଼ିକିଆ ଜାତୀୟ କଣ୍ଟାଗଛକୁ ଏଥିରେ ଠେଲି ରଖି କଟାଯାଏ

ପରକନା - *ସଂ.* (ବି.) : କଣ୍ଟା କାଟିବା ବାଡ଼ି ଯଷ୍ଟି

ପରକୁତ୍ - *କଳା.* (ବିଂ.) : ପ୍ରକୃତ, ଯଥାର୍ଥ, ବାସ୍ତବିକ

ପରକୁତି - *କୋ.କ.ନବ.* (ବି.) : ପ୍ରକୃତି

ପରକୁତିଆ - *ସୁବ.ସୁ.* (ବିଂ.) : କାମୁକ ଲୋକ, ମନ୍ଦ ପ୍ରକୃତି ବିଶେଷ

ପରକ୍ଷିଆ - *କଳା.* (ବି.) : ପରୀକ୍ଷା

ପରଖ - *ଇ.ଦେ.ନ.* (ବି.) : ଠିକକରି ଚିହ୍ନିବା, ପରୀକ୍ଷା

ପରଖାଉ - *ସୁବ.* (ବି.) : ଯିଏ ଅନ୍ୟର ଉପାର୍ଜନରୁ ଖାଇଥାଏ

ପରଖିବା - *ସଂ.ଇ.ନ.* (କ୍ରି.) : ଦେଖିବା, ଲକ୍ଷ୍ୟ ଦେବା, ଭଲଭାବେ ଦେଖିନେବା, ପରୀକ୍ଷା କରିବା

ପରଘଇତୀ - *ନ.* (ବିଂ.) : (ଗାଳି) ସ୍ୱାମୀ ଛାଡ଼ି ପରକୁ ଅସ୍ଥାୟୀ ସ୍ୱାମୀ କରିବା

ପରଘରପଶା - *ଗଦ୍ୟ.କ.* (ବିଂ.) : ଲମ୍ପଟ, ଦୁଶ୍ଚରିତ୍ର

ପରଘାବା - *ସୁ.* (କ୍ରି.) : ପାଛୋଟି ନେବା

**ପରଘାବାର** - *ସୁବ:* (କ୍ରି.) : ଦେବତାଙ୍କୁ ଅର୍ଘ୍ୟ ଦେଇ ନିମନ୍ତ୍ରଣ କରିବା

**ପରଙ୍ଗ** - *ସଂ:* (ବି.) : ପୁରୀର ଟାଙ୍ଗି ଅଞ୍ଚଳ

**ପରଚ କରିବା** - *ନ:* (କ୍ରି.) ପରିଚୟ କରାଇବା, ପର ଚେଇବା, ମୁକାବିଲା କରାଇବା

**ପରଚକ୍ଷୁ** - *ଅନେ:* (ବି.) : ଚଷମା, ପର୍ଚକ୍ଷୁ

**ପରଚା ପରଚି** - *ନ:* (କ୍ରି.) : ମୁକାବିଲା କରିବା, ସାମ୍‌ନାସାମ୍‌ନି ହୋଇ କଥାବାର୍ତ୍ତା କରିବା

**ପରଚୁଳା** - *କ:* (ବି.) : କୃତ୍ରିମ କେଶ

**ପରଚେଇବା** - *ନ:* (କ୍ରି.) : ମୁହାଁମୁହିଁ ମୁକାବିଲା କରିବା

**ପରଛିଦ୍ର** - *ସଂ:* (ବି.) : ଅନ୍ୟ ସଂପର୍କରେ ଆଲୋଚନା

**ପରଜଣା କରିବା** - *ନବ:* (କ୍ରି.) : ପୁଟଣ କରିବା, ପରଜିବା

**ପରଜା** - *ଅନେ:* (ବି.) : କରଦାତା କୃଷକ, ପ୍ରଜା, ଏକ ଆଦିବାସୀ ସଂପ୍ରଦାୟ, ବ୍ୟଂଜନାଦିରେ ଛୁଙ୍କ ଦେବା

**ପରଝନା** - *ସୁବ:* (ବି.) : ତିଅଣରେ ଛୁଙ୍କ ଦେବା, ବଘାରିବା

**ପରଞ୍ଚ** - *ଗଞ:* (ବି.) : ଘର କାମରେ ବ୍ୟବହୃତ ଅସ୍ଥାୟୀ ମଞ୍ଚ

**ପରଡ଼ା** - *କୋ:ନବ:* (ବି.) : ବାଉଁଶ ନିର୍ମିତ, ଓସାରିଆ ନାତ୍ୟୁଚ ଡାଲା, ଡାଙ୍ଗରା

**ପରତାରା** - *ପୁ:* (ବି.) : ହୁଦା, କନାପଟି ସହ ଛାତିରେ ପକାଯାଏ

**ପରତାଳ** - *ସଂ:* (ବି.) : ସତମିଛ ବିବେଚନା

**ପରତିଙ୍ଗା** - *ସଂ:* (ବି.) : ପ୍ରତିଜ୍ଞା

**ପରତେଯିବା** - *ଢେ:* (କ୍ରି.) : ବିଶ୍ୱାସ କରିବା

**ପରଦନା** - *ସଂ:* (ବି.) : ସାରାସାର ପରୀକ୍ଷା

**ପରଦିନେ** - *ସ:* (ବି.) : ଗୋଟିଏ ଦିନର ପରବର୍ତ୍ତି ଦିନ

**ପରଦେଶୀ** - *ଦେ:ନୂ:* (ବି.) : ବିଦେଶୀ

**ପରଧିଆ** - *ଚୌ:* (ବି.) : ଶିକାରୀ

**ପରପଞ୍ଚିଆ** - *ନ:ସଂ:କ:* (ବିଂ.) : ପ୍ରପଞ୍ଚ, ଗାଳି ବିଶେଷ, ହରବର, ହଇରାଣ କରୁଥିବା ଲୋକ, କପଟିଆ, ହଟହଟା କରଉଥିବା ଲୋକ

**ପରପାଟୁ** - *ଗଜ:ରା:* (ବି.) : ଦୋଷ, ଭୁଲ ଅନ୍ୟର

**ପରପାନକ** - *ସଂ:* (ବି.) : ପଣା

**ପରପଁଚିଆ** - *ସୁ:* (ବିଂ.) : ଖଳମତି

**ପରଫଚ୍** - *ମା:* (ବି.) : କୁଟୀଳତା

**ପରବାଏ** - *କେ:* (ବି.) : ଭୟ, ଚିନ୍ତା, ଖାତିର୍

**ପରବାଦ** - *ନ:* (ବି.) : ପ୍ରବାଦ

**ପରବାନା** - *ସଂ:* (ବି.) : ହୁକୁମନାମା, ପରୁଆନା

**ପରବୋଲିଆ** - *ପୁ:* (ବିଂ.) : ପର କଥାରେ ପରିଚାଳିତ

**ପରଭଲେଇ** - *ପୁ:* (ବି°.) ସ୍ତ୍ରୀ ଲୋକଙ୍କଦ୍ୱାରା ବ୍ୟବହୃତ ନିନ୍ଦା ସୂଚକ ଶବ୍ଦ। ନିଜ ଲୋକଙ୍କୁ ହତାଦର କରି ବାହାର ଲୋକଙ୍କୁ ଆପଣାର କରୁଥିବା ସ୍ତ୍ରୀ ଲୋକ

**ପରଭା** - *ନ:ଗଦ୍ୟ:କ:* (ବି.) : ଏକପ୍ରକାର ନୃତ୍ୟ(କାଳୀ ମୂର୍ତ୍ତିଧରି ପଛରେ ଜ୍ୟୋତି ପକ୍ଷ ବାନ୍ଧି ନୃତ୍ୟ କରିବା (ଦଣ୍ଡନାଚ), ମେଢ, ପ୍ରଭା

**ପରମ୍ଚା** - *ମା:* (ବି°.) : ଦୁଷ୍ଟ

**ପରମା** - *ପୁ:କ:ନ:ଦେ:* (ବି°.) : ଦୁଷ୍ଟ, ଧୂର୍ତ୍ତ, ଦୁଷ୍ଟଲୋକ, ଠକ, ସ୍ୱାର୍ଥପର, ନାମ

**ପରମାଣ** - *ଗୌ:ମ:ଗଦ୍ୟ:* (ବି.) : ସତ୍ୟ ସାବ୍ୟସ୍ତ ସୂଚକ, ପ୍ରମାଣ

**ପରମାର୍ଥିଆ** - *ଖୋ:* (ବି°.) : ଧାର୍ମିକ

**ପରମେଶ୍ୱରୀ** - *ସୁନ:* (ବି.) : ପଶ୍ଚିମ ଓଡ଼ିଶାରେ ଢୁମାଳ ସଂପ୍ରଦାୟ ଦ୍ୱାରା ପୂଜିତା ବୃକ୍ଷ ସ୍ତମ୍ଭାକୃତିର ଦେବୀ

**ପରର୍ଚ୍ଛା** - *ନବ:* (ବି°.) : ସଫା, ନିର୍ମଳ

**ପରଲ** - *ନବ:* (ବି.) : ପ୍ରସ୍ତ

**ପରଲା** - *ସୁ:* (ବି.) : ଓସାରିଆ ଚାଙ୍ଗୁଡ଼ି

**ପରଳ** - *ଦେ:ନ:ସଂ:* (ବି.) : ଆଖିରେ ଢାଳି ମାଡ଼ିଯିବା, ଆଖିରେ ଆବରଣ ମାଡିବା ରୋଗ

**ପରଶନ, ପରସନ** - *କ:* (ବି°.) : ପ୍ରସନ୍ନ, ସନ୍ତୋଷ

**ପରଶଳ** - *କେନ୍ଦୁ:ଖୋ:* (ବି.) କୁଆଳିର ଦୁଇପଟେ ଲାଗେ

**ପରଶାପରଶି** - *ନ:* (ବି.) ପରିବେଷଣ (ଖାଦ୍ୟ)

**ପରଶୁ** - *ଦେ:* (ବି.) : ଟାଙ୍ଗି, କୁଠାର, କୁରାଢୀ

**ପରଶୁ କେଦାର** - *ଦେ:* (ବି.) : ସାପ ବିଷର ଗଦ

**ପରଶୁଣି** - *କ:* (ବି.) : କଂସାରେ ତିଆରି ପତଳା ଖାଲୁଆ ପାତ୍ର; ଯେଉଁଥିରେ ଭାତ ବଢାଯାଏ

**ପରସଲା** - *ନବ:* (ବି.) : ପରିସ୍ରା

**ପରସା** - *ସଂ:* (ବି.) : ଏକ କଂସାପାତ୍ର

**ପରସାଦି** - *ଛ:* (ବି.) : ପ୍ରସାଦ, ଭୋଗ

**ପରସାବ** - *କ:* (ବି.) : ପ୍ରସାବ, ପରିସ୍ରା

**ପରସୁ** - *ରା:* (ବି.) : ପରିସ୍ରା ବେଗ

**ପରସ୍ତ** - *ଗା:* (ବି.) : ଖଞ୍ଜା, ଭଙ୍ଗ, ସ୍ତର

**ପରହ** - *ରା:* (ବି.) : ଅସରପା

**ପରହାତ ଚଢିବା** - *ସଂ:* (କ୍ରି.) : ଅନ୍ୟ ବ୍ୟକ୍ତିର ହାତକୁ ଆସିବା

**ପରହୁର** - *ଚ:ନୂ:* (ବି.) : ପୂର୍ବବର୍ଷ, ଗତବର୍ଷ

**ପରା** - *ଅନେ:* (ବି.) : ଗ୍ରାମ, ପଡ଼ା ବା ସହରର ଏକ ଏକ ସ୍ୱତନ୍ତ୍ର ଜନବସତି, ଅହଙ୍କାର, ପ୍ରାଧାନ୍ୟ ଦେଇ ପ୍ରଶ୍ନ କରିବା

**ପରାଣି** - *କ:* (ବି.) : ପ୍ରାଣୀ

**ପରାତ** - *ବୌ:ନୂ:* (ବି.) : ପିତ୍ତଳ ନିର୍ମିତ ବଡ଼ ପାତ୍ର, ପିତ୍ତଳର ବଡ଼ ଥାଳିଆ

**ପରାଧି** - *ଦେ:* (ବି.) : ଦୁରାରୋଗ୍ୟ ବ୍ୟାଧି

**ପରାନୀ** - *ସ:* (ବି.) : ପ୍ରାଣୀ

**ପରାପତ** - *ରା:* (ବି.) : ପାଇବା

**ପରାପତି** - *କ:* (ବି.) : ପ୍ରାପ୍ତି

**ପରାପାଟ୍** - *ଝା:* (ବି.) : ପଡ଼ା ପଡ଼ୋଶୀ

**ପରାପାଟ୍‌କେ** - *ସ:* (ବି.) : ନିଜ ସାହି, ପଡ଼ା

**ପରାଭବ** - *ଦେ:ନ:* (ବି.) ପରାଜୟ, ତିରସ୍କାର, ଅଭିଶାପ, ଗାଳି

**ପରାମାସ୍** - *କୋ:* (ବି.) : ଭାଦ୍ରବ ମାସ

**ପରାୟ** - *ଦେ:* (ଅ.) : ପ୍ରାୟ, ପରାଏ

**ପରାରି** - *ବୌ:* (ଅ.) : ବିଗତ ବର୍ଷ

**ପରାରୁ** - *କୋ:* (ଅ.) : ବିଗତ ବର୍ଷ

**ପରାସ** - *ଢ:ନ:* (ବି.) କ୍ଲେଶ, ପୀଡ଼ା, ଯନ୍ତ୍ରଣା, ବ୍ୟଥା, ବ୍ୟଥାଯୁକ୍ତ, ଦରଜ

**ପରି** - *ନ:ଗ:ଦେ:* (ଅ.) : ଭଳି, ତୁଲ୍ୟ, ସମଅର୍ଥକ, ଲକ୍ଷଣ

**ପରିଆ** - *ନୂ:* (ବି.) : ପଡ଼ିଆ ଭୂଇଁ

**ପରିଆଏର** - *ଝୁ:* (ବି.) : ଦୁଇବର୍ଷ ପୂର୍ବ

**ପରିଆଙ୍ଗୁଠି** - *ନ:* (ବି.) : କାଣିଆଙ୍ଗୁଠି ପାଖ, ମୁଦ୍ରିକାଙ୍ଗୁଳି

**ପରିଆଲ୍** - *କଲା:* (ବିଂ.) : ବିଗତ ବର୍ଷ

**ପରିକକ୍ଷ** - *କ:* (ବି.) : ସମକକ୍ଷ

**ପରିଖା, ଖାଇ** - *ସଂ:* (ବି.) : ଗଡ଼ଖାଇ, ଦୁର୍ଗ, କିଲା

**ପରିଛିବା** - *ଗଦ୍ୟ:* (ବି.) : ବିବାହପରେ ବର କନ୍ୟାକୁ ବନ୍ଦାପନା

**ପରିଛା** - *ଢ:ଗ:* (ବି.) : ଉପାଧି ବିଶେଷ, (ପରିଛା ପଟ୍ଟନାୟକ), ରାଜାଙ୍କ ମଠ ମନ୍ଦିର ତଦାରଖକାରୀ

**ପରିଛି** - *କ:* (କ୍ରି.) : ପରୀକ୍ଷାକରି ନେବା

**ପରିଡ଼ା** - *ଦେ:କଅ:ଗ:* (ବି.) : ଶୁଦ୍ରଜାତି ବିଶେଷର ଉପାଧି, ଚାଳ, ରାଜାଙ୍କ ଅଶ୍ୱ ପରିପାଳକ

**ପରିଟାଜ** - *ଦେ:* (ବି.) : ଦୁଇବସ୍ତୁ ପରସ୍ପର ସହିତ ବାଜିବା

**ପରିପରା** - *ଦେ:* (ବି.) : ଆପଣାର ପ୍ରଶଂସା ଶୁଣିବାକୁ ଇଚ୍ଛୁକ

**ପରିପାଟ** - *ଗ:କୋ:* (ବି.) : ଭୁଲ

**ପରିବା** - *କଲା:ଦେ:* (ବି.) : ପନିପରିବା, କଞ୍ଚା ତରକାରୀ, ତିଅଣ ଯୋଗ୍ୟ ଫଳମୂଳ

**ପରିବାଦ** - *ରା:* (ବି.) : ନିନ୍ଦା

**ପରିସୁଆ** - *ଢେ:* (ବି.) : ବିଛଣା

**ପରିହତ** - *ଦେ:* (ବି.) : ଲଙ୍ଗଳକଣ୍ଡି

**ପରୀ** - *ନ:* (ବି.) : ଅପସରୀ

**ପରୁଆ** - *ଅନେ:* (ବି.) : ଭୟ, ଚିନ୍ତା, ପରବାୟ, ପାରା, ଖାତିରି, ଭ୍ରାନ୍ତି, ଆବଶ୍ୟକ

**ପରୁଆନା** - *ଦେ:ନ:* (ବି.) : ସମନ, ନୋଟିସ, ଅଦାଲତର ଆଦେଶନାମା

**ପରୁଆସ** - *ଯା:* (ବିଂ.) : ବିଦେଶ, ପ୍ରବାସ

**ପରୁ,ପଉରୁ** - *କୋ:* (ଅ.) : ଗତ ବର୍ଷ

**ପରୁର୍** - *ସ:* (ବି.) : ଗଲାବର୍ଷ

**ପରୁହାଁ** - *ଝା:ଗୌ:* (ବିଂ.ବି.) : ପ୍ରଥମ, ବଡ଼ ପୁଅ, ଝିଅଙ୍କ ଅଷ୍ଟମୀ ଦିନ ପର୍ବ

**ପରେ** - *ଦେ:ନ:* (ଅ.) : ଭବିଷ୍ୟତରେ, ଶେଷରେ

**ପରେଭ ଶାଗ** - *କେନ୍ଦୁ:* (ବି.) : ଏହି ଶାଗ ଜଙ୍ଗଲରେ ହୁଏ

**ପରଂପୋକ** - *ଗଜ:* (ବି.) : ସରକାରୀ ଜମି

**ପର୍ଜଣା** - *କୋ:* (ବି.) : ଫୁଟଣ

**ପର୍ଦ୍ଦା** - *ଦେ:* (ବି.) : ଯବନିକା, ଗୋପନ, ଘରର ପରଦା

**ପର୍ବତକାଳିଆ** - *ଖୋ:ନ:* (ବି.) : ଏକପ୍ରକାର ଧାନ

**ପର୍ବତିଆ ଖଡ଼ା** - *କ:* (ବି.) : ବଡ଼ଖଡ଼ା ଗଛ

**ପର୍‌ଖାନ୍** - *ସ:* (ବି.) ବେଶୀକାମ କରିପାରିବା

**ପର୍‌ଘାବାର** - *ସୁବ:* (କ୍ରି.) : ଟେକା ଲକ୍ଷ୍ୟ କରି ମାରିବା

**ପର୍‌ଘେଭବା** - *ଝା:କଳା:ନୂ:* (କ୍ରି.ବିଂ.) : ସସମ୍ମାନ ବରଣ କରି ଆଣିବା, ପିଟିବା (ଆଳଙ୍କାରିକ ଅର୍ଥ), ଦେଖିବା, ଦୃଷ୍ଟିପାତ କରିବା

**ପର୍‌ଛଲ୍** - *କଳା:କୋ:* (ବିଂ.) : ନିର୍ମଳ, ସଫା, ପରିଷ୍କାର, ପ୍ରଫୁଲ୍ଲିତ, ଆନନ୍ଦିତ

**ପର୍‌ଛା** - *ଅନେ:* (ବିଂ.) : ଏକଦମ ସଫା, ନିର୍ମଳ, ପରିଷ୍କାର, ଫରଚା, ଚାଟି ଚୁଟି, ପୂରାପୂରି

**ପର୍‌ଛି** - *ଅନେ:* (ବି.) : ବାରଣ୍ଡା, ପିଣ୍ଡା, ଘର ସାମ୍ନାରେ ବା ପଛରେ ଥିବା ଜାଗା, ମେଲା, ମେଲାବାରଣ୍ଡା

**ପର୍‌ଜୁରୀ** - *ସଂ:* (ବିଂ.) : ମିଥ୍ୟାସାକ୍ଷୀ

**ପର୍‌ଝନା** - *କଳା:ସୁ:ସୁବ:* (ବି.ବିଂ.କ୍ରି.) ଫୁଟଣ, ଜୁଙ୍କ ଦିଆ, ତିଅଣର ଜୁଙ୍କ

**ପର୍‌ତା** - *ନବ:* (ବି.) : ବାଉଁଶ ନିର୍ମିତ ଡାଙ୍ଗରା

**ପର୍‌ନ** - *ସୁ:* (ବି.) : ଅଧିଆ

**ପର୍‌ପଞ୍ଚ** - *ସୁ:ଗୌ:* (ବି.) : ମାୟା, ପ୍ରପଞ୍ଚ

**ପର୍‌ବ** - *ମା:* (ବି.) : ଉତ୍ସବ

**ପର୍‌ବା** - *କଳା:ନୂ:* (କ୍ରି.) : ପଡ଼ିବ, ନିମ୍ନକୁ ଖସିବ

**ପର୍‌ରା** - *ସୁବ:* (ବିଂ.) : ଯେଉଁ ଲୋକ ଦୁର୍ଗନ୍ଧବାୟୁ ଛାଡ଼େ

**ପର୍‌ଲା** - *କଳା:* (ବି.କ୍ରି.) : ବାଉଁଶ ପାତିଆରେ ନିର୍ମିତ ବଡ ଚାଂଗୁଡି, ପଡିଲା, ପତିତ ହେଲା, ପସରା

**ପର୍ ସନିଆ** - *ସ:* (ବିଂ.) : ଯିଏ ଭାତ ବାଢେ

**ପର୍‌ହା** - *କନ:* (ବି.) : ପିଢା

**ପର୍‌ହୁ** - *ଗୌ:* (ବି.) : ପୂର୍ବ ବର୍ଷ, ଗତ ବର୍ଷ

**ପଲ** - *ଗ:* (ବି.) : ସମୂହ ଦଳ

**ପଲ୍‌କା** - *ମା:* (ବିଂ.) : ଗାଢ

**ପଲ୍କିବା** - *ନବ:* (କ୍ରି.) : କଅଁଳିବା

**ପଲ୍ଟିବା** - *ଚୌ:* (କ୍ରି.) : ଓଲଟିବା

**ପଲ୍ଟେନ୍** - *କଳା:* (ବିଂ.) : ରୂପାନ୍ତରଣ, ରୂପାନ୍ତରିତ

**ପଲ୍ସା** - *ଗଦ୍ୟ:କଣ୍ଡ:କଳା:* (ବି.) : ଏକ ପ୍ରକାର ଖଡ଼ାଗଛ, ପଳା ବା ଫୁଲ, ପଳାସ

**ପଲ୍ସାମୁଢ଼ି** - *କଳା:* (ବିଂ.) : ଇଛାକରୀ, ଆଦିବାସୀ ସମାଜରେ କନ୍ୟା ସ୍ୱଇଚ୍ଛାରେ କୌଣସି ପୁରୁଷ ସହିତ ଘରକରି ରହିବା ପାଇଁ ଚାଲିଯିବା

**ପଲ୍ହା ମାର୍‌ବା** - *ଧୁବ:* (କ୍ରି.) : ଧାନ ଗଛ ରୋପଣ କରିବା

**ପଲଉ** - *ଅନେ:* (ବି.) : ମାଂସମିଶା ଖେଚଡ଼ି, ପଲାଉ, ଶସ୍ୟ ମିଶା ଅନ୍ନ, ମିଠାଭାତ

**ପଲକା** - *ନବ:* (ବିଂ.) : ଫାଙ୍କା

**ପଲଟନ** - *ଗ:* (ବି.) : ସୈନ୍ୟଦଳ

**ପଲଣ** - *ରା:* (ବି.) : ଅସ୍ତ୍ର ଧରି ନାଚ

**ପଲତପଟା** - *କ:* (ବି.) : ଡଙ୍ଗାର ମଝିପଟା

**ପଲପ** - *ନ:* (ବି.) : ଶଗଡ଼, ଲଙ୍ଗଳରେ ଚାଷବେଳେ ଝୁରାଡିହ ବା ଜୁଆଳିରେ ଲାଗିଥିବା ଦଉଡ଼ି, ତଳପ

**ପଲପଲି** - *ଅ:ଡେ:* (ବି.) : ଓଠ

**ପଲମ** - *ଅନେ:* (ବି.) : ପିଠା ଘୋଡାଇ ରଖିବା ମାଟିର ବୃତ୍ତାକାର ପାତ୍ର, ପିଠା କରିବା ପାତ୍ର, ମାଟିତାଓା

**ପଲମ ପିଠା** - *କେନ୍ଦୁ:* (ବି.) : ଚିତଉ ପିଠା

**ପଲମ ପେଟା** - *ସ:* (ବିଂ.) : ବଡ଼ପେଟିଆ

**ପଲସା ଗଂଙ୍ଗା** - *ନୁ:* (ବି.) : ଆକାରରେ ବଡ଼ ଅଣ୍ଡିରା କୁକୁଡ଼ା

**ପଲଷ୍ଟି** - *ଗଜ:* (ବି.) : ମଲମ

**ପଲା** - *ଅନେ:* (ବି.) : ଛୋଟ କୁଡ଼ିଆଘର, ନିକିତିର ଗୋଟିଏ ପାଖ, ହାତର ସ୍ୱର୍ଣ୍ଣଅଳଙ୍କାର, ତଳି, ଚାରା, ପଳା, ଚାଲିଯିବାକୁ ନିର୍ଦ୍ଦେଶ ଦେବା, ଚାରା, ତଳି

**ପଲାଘର** - *ନ:* (ବି.) : ଆଟୁ ନଥିବା ଘର

**ପଲାଘାରି** - *କୋ:* (ବି.) : ଯେଉଁ ସ୍ଥାନରେ ବିହନ ବପନ କରାଯାଏ, ତଳି ପଡ଼ିବା ବା ବୀଜ ବୁଣିବା ଜାଗା

**ପଲାଣ** - *ଅନେ:* (ବି.) : ଥୋଡ଼ି ବଳଦ ପିଠିରେ ଦିଆଯାଉଥିବା ଅଖା ଗଦି, ପଶୁରୋଗ, ଅଶ୍ୱ ପୃଷ୍ଠର ଆସନ

**ପଲାଣ୍ଡି** - *ଦେ:* (ବି.) : ଘର ଛାଉଣି କରିବାର ତାଳପତ୍ର

**ପଲାନ** - *ଧୁ:ସ:* (କ୍ରି.ବି.) : ପ୍ଲାନ୍, ଯୋଜନା

**ପଲାନ୍ ଟେସନ୍** - *କଳା:* (ବି.) : ପ୍ଲାଣ୍ଟେସନ୍, ବୃକ୍ଷରୋପଣ

**ପଲା, ପାଲା** - *କୋ:* (ବି.) : ରୋପଣ ପୂର୍ବର ଛୋଟ ଚାରା, ତଳି

**ପଲାବା** - *କଳା:ଚୌ:ନୁ:* (କ୍ରି.) : ପଳାଇବା, ପଳାୟନ କରିବା

**ପଲା ମାରିବା** - *କଳା:* (କ୍ରି.) : ତଳି ଓପାଡିବା
**ପଲାଣିବା** - *ନ:* (କ୍ରି.) : ଜୋର୍‌ରେ ଚାଲିବା
**ପଲିଆ** - *କଳା:* (ବି.) : ପାଳିଆ, ପାଳିଆ ଧରିବା
**ପଲିଆ ଗୀତ** - *କଳା:* (ବି.) : ଆଦିବାସୀ କନ୍ଧମାନଙ୍କ ବିବାହାଦିରେ ଧାଂଡ଼ାଧାଂଡ଼ୀମାନଙ୍କ ନାଚ ସହ ରାତି ରାତି ଯେଉଁ ଗୀତ ଗାନ କରାଯାଏ
**ପଲିସ** - *ନୂ:* (ବିଂ.) : ଚିକ୍କଣ
**ପଲୁରି** - *ଯା:* (ବି.) : ମାଛପାଇଁ ଓଜନଦଣ୍ଡି
**ପଲେ** - *ନ:ଦେ:* (ବିଂ.ବି.) : ଦଳେ
**ପଲେଇବା** - *କଳା:* (କ୍ରି.) : ପଳେଇବା, ପଳାୟନ କରିବା
**ପଲେଇସନ୍** - *କଳା:* (କ୍ରି.) ପଳାନ୍ତି, ଚାଲିଯାଆନ୍ତି
**ପଲୋପାଲୋ** - *ବର:* (କ୍ରି.ବିଂ.) : ଶୀଘ୍ର ଖାଇବା ଅର୍ଥରେ
**ପଲିଁକ୍** - *ନୂ:* (ବି.) : ଗଛରେ ମଂଜ ନଥିବା ଅଂଶ
**ପଲ୍ଲବଦ୍ରୁ** - *ଗଦ୍ୟ:* (ବି.) : ଅଶୋକ ବୃକ୍ଷ
**ପଲ୍ଲୀସଭା** - *ସଂ:* (ବି.) : ଗ୍ରାମ୍ୟ ଉନ୍ନତି ବ୍ୟବସ୍ଥାପକ ସଂସ୍ଥା, ଗ୍ରାମ ସଭା
**ପଲ୍ଲାଣ** - *କେ:* (ବି.) : ବଳଦ ପିଠିରେ ଧାନବୁହା, ପିଠିଆ ବଳଦ ଉପରେ ପଡୁଥିବା ଗଦି
**ପଲ୍ଲି** - *ଦେ:* (ବି.) : ଛୋଟ ଗ୍ରାମ, ପଡ଼ା

**ପଳ** - *ନ:ଗ:ଦେ:* (ବି.) : ଓଜନ ବିଶିଷ୍ଟ, ତରଳ ପଦାର୍ଥ ଓଜନ, ମାଂସ, ଆମିଷ, ତୂଳାଯନ୍ତ୍ର
**ପଳ କସିବା** - *ଗ:* (କ୍ରି.) : ଓଜନ କରିବା
**ପଳକିଛି** - *ଅ:* (କ୍ରି.) : ଅଭ୍ୟସ୍ତ ହୋଇଛି
**ପଳଖ** - *ଗ:ନ:* (ବି.) : କଡ଼ି କାଠର ଦୁଇପାର୍ଶ୍ୱ, ପଲୁଖ, ମଞ୍ଜକାଠରୁ ବାହାରିଥିବା ଅସାର କାଠ
**ପଳଗଣ୍ଡ** - *ସଂ:* (ବି.) : ରାଜମିସ୍ତ୍ରୀ
**ପଳପଳ କରି** - *ସଂ:* (କ୍ରି.ବିଂ.) : ଟିକ୍ ଟିକ୍ କରି
**ପଳଶା ଫୁଲ** - *କେନ୍ଦୁ:* (ବି.) : ପଲାଶ ଫୁଲ
**ପଳସ୍ତରା** - *ଦେ:* (ବି.) : କାନ୍ଥ ଉପରେ ସିମାଣ୍ଟ ଆଦି ଚୂନ ଲେପ
**ପଳହା ମାରିବା** - *ଅ:* (କ୍ରି.) : ଧାନ ତଳି ଉପାଡ଼ିବା
**ପଳା** - *କ:ଦେ:କେ:ନ:* (ବି.କ୍ରି.) : ପଳାଇବା, ପଳାଇ ଯା, ତେଲ ମାପିବା ଡଙ୍କି
**ପଳାଇବା** - *ଦେ:* (କ୍ରି.) : ପଳାୟନ କରିବା
**ପଳାଣି** - *ଗଦ୍ୟ:* (ବି.) : ପଳାଶ
**ପଳାତକ** - *ସଂ:* (ବିଂ.) : ବିଦ୍ରୋହୀ ଘୋଷିତ ଅସାମାଜିକ, ପଳାଇ ଯାଇଥିବା ଦୋଷୀ
**ପଳାଣିବା** - *ଦେ:* (କ୍ରି.) ଦ୍ରୁତଗତିରେ ଚାଲିବା
**ପଳି** - *ଦେ:ଗ:* (ବି.) : ପଟୁମାଟି

**ପଳେଇ** - *ଅ:* (ବିଂ.) : ସ୍ୱାମୀକୁ ଛାଡ଼ି ଯାଇଥିବା ସ୍ତ୍ରୀ

**ପଳେଇ ପଶି** - *କ:* (ବିଂ.) : ଯେଉଁ ଝିଅ ବାପାମାଙ୍କ ବିନାନୁମତିରେ ଘରୁ ପଳେଇଯାଇ ଅନ୍ୟଘରେ ପଶିଥାଏ

**ପଳେପଳେ** - *ଅ:* (ଅ.) : ଟିକେଟିକେ

**ପଶନ୍ତୁ** - *କଳା:* (କ୍ରି.) : ପଶନ୍ତୁ, ପ୍ରବେଶ କରନ୍ତୁ

**ପଶ୍‌ବା** - *ନୂ:* (କ୍ରି.) : ପ୍ରବେଶ କରିବା

**ପଶ୍‌ମିନା ଶାଲ୍** - *ଗଦ୍ୟ:* (ବି.) : ଏକପ୍ରକାର ଚାଦର

**ପଷନ୍** - *ସ:* (କ୍ରି.) : ସୁନ୍ଦର ଦିଶିବା

**ପଶା** - *ଅନେ:* (ବି.ଅ.କ୍ରି.) : ଦ୍ୟୁତକ୍ରୀଡାର ପଶାକାଠି, ଛୁଞ୍ଚି ବା କୋଡ଼ି କୋଦାଳର କଣା, ପାଲି, ପଶା ପାଲି ଖେଳ, କୋଡ଼ି, କୁରାଢ଼ିର ବେଣ୍ଟର ଅଗ୍ରଭାଗ, ପଶିବା (ଗଳି ବିଶେଷ)

**ପଶାଏଦ୍** - *କଳା:* (ବି.) : ଭଣ୍ଡାରି ଜାତିର କୌଳିକ ଉପନାମ

**ପଶାକାଠି** - *ଗ:* (ବି.) : ପଶା ଖେଳର କାଠି

**ପଶାପଶି** - *ଦେ:* (କ୍ରି.) : ପଶାଇବା କ୍ରିୟାମାନ

**ପଶାରୀହେବା, ପସାରୀହେବା** - *ନ:* (କ୍ରି.) : ବହୁସ୍ଥାନ ଅଧିକାର କରିବସିବା

**ପଶି** - *ଦେ:ଯା:* (ବି.) : ମଫସଲ, ଶିକ୍ଷା ଓ ଗମନା ଗମନ ନଥିବା ଅସଭ୍ୟ ଅଞ୍ଚଳ

**ପଶିବିଲ** - *ଅ:* (ବି.) : ଘର ପାଖରେ ଥିବାବିଲ

**ପସ୍‌ତାବା** - *ଫା:* (କ୍ରି.) : ଅନୁତାପ କରିବା

**ପସ୍‌ନା** - *ନବ:କୋ:* (ବି.) : ଝାଳ

**ପସ୍‌ରା** - *ଫା:ନୂ:* (ବି.କ୍ରି.) : ବିକ୍ରି କରିବା ପାଇଁ ପେଶା କରି ନେଉଥିବା ବିଷୟ, ପସରା, ପ୍ରସାରଣ କରିବା, ଜିନିଷ ଭର୍ତ୍ତି ଟୋକୋଇ

**ପସନ** - *ହୁବ:ହୁ:* (ବି.) : ସୁନ୍ଦର, ପସନ୍ଦ

**ପସର** - *ଛ:* (ବି.) : ଭୋଗଦ୍ରବ୍ୟ ପସର, ଟୋକେଇ

**ପସରି** - *ହୁ:* (ବି.) : ପୁରୁଣା ଓଜନ ଦଣ୍ଡ

**ପସଲା** - *ଦେ:* (ବି.) : ଉତ୍ତମ ରୂପେ ବର୍ଷଣ

**ପସାରି** - *କଳା:ହୁ:* (କ୍ରି.ବି.) : ବାଲୁଙ୍ଗା ଧାନ, ମେଲାଇ, ପ୍ରସାରଣ କରି, ଆଠସେର ଚାଉଳ

**ପସାରି ଚାଉଳ** - *ବୌ:* (ବି.) : ପୋଖରୀର ଶୈବାଳରୁ ଝାରି (ଝାଡ଼ି) ଅମଳ କରା ଚାଉଳ-ବ୍ରତ ଉପାସରେ ଖିଆଯାଏ

**ପସାରୁଣୀ** - *ଦେ:କେ:* (ବି.) : ଏକ ପ୍ରକାର ଔଷଧ ଲତା

**ପସିଆ** - *ହୁ:* (ବି.) : ତୋରାଣି

**ପସୁରି** - *ଖୋ:* (ବିଂ.) : ପାଞ୍ଚସେରରେ ଏକ ପସୁରି ହୁଏ

**ପସେ** - *ହୁ:ବୌ:* (ବିଂ.) : ଅଳ୍ପ ପରିମାଣ ସୂଚକ

**ପସେତ** - *ସୁ:* (ବି.) : ନାପିତ, ଭଣ୍ଡାରୀ

**ପସେର୍** - *କଳା:* (ବି.) : ବାଲୁଂଗାଧାନ

**ପସ୍ତାବ** - *ନ:* (ବି.) : ମୃତ

**ପହକୁଲ** - *ନୂ:* (ଅ.) : ଯଥେଷ୍ଟ

**ପହଞ୍ଚ** - *ନ:* (ବି.) : ପିଣ୍ଡା

**ପହଞ୍ଚା** - *ଦେ:ଗଢ:* (ବି.) : ପହଞ୍ଚିବା କର୍ମ, ଘରର କୋଠରୀ

**ପହଞ୍ଚାଣ** - *ଖୋ:* (କ୍ରି.) : ପହଞ୍ଚାଇବାକୁ କୁହାଯାଏ

**ପହଟମେଲା** - *ଦେ:* (ବି.) : ମୁକୁଳା

**ପହଟାଇବା** - *ଚୌ:* (କ୍ରି.) : ନିଆଁ ଧରେଇବା

**ପହଟିବା** - *ସ:ଝା:ଦେ:ଅ:* (କ୍ରି.) : ନିଆଁ ଲଗେଇବା, ଅଭ୍ୟାସରେ ପଡ଼ିବା, ଅଭ୍ୟସ୍ତ ହେବା

**ପହଡ଼** - *ଅନେ:* (ବି.) : ପହୁଡ଼, ଭଲ ନିଦ, ଠାକୁରଙ୍କ ଶୟନ ବିରତି, ନିଦ୍ରା, ବନ୍ଦଦ୍ୱାର, ରାଜା ଓ ଦେବତାଙ୍କ ବିଶ୍ରାମ

**ପହଣି** - *ଖୋ:ନ:ଦେ:* (ବି.) : ନାଳ, ନାଳୀ, ଛୋଟ(ପାଣିଯିବା) ନାଳ

**ପହଣ୍ଡ** - *ଗ:* (ବି.) : ପାଦ

**ପହଣ୍ଡି** - *ଖୋ:ଦେ:* (ବି.) : ବିଲମାନଙ୍କରେ ଥିବା ନାଳ, ପହଣ୍ଡି କରିବା, ଶ୍ରୀଜଗନ୍ନାଥଙ୍କ ପରିକ୍ରମା, ଏକ ପ୍ରକାର ଖେଳ

**ପହନା** - *ବର:କଳା:* (ବି.) : ଛୋଟ କୁଆ, ଅତିଥି, ବନ୍ଧୁ

**ପହପଟ** - *ଦେ:* (ବି.) : ଅନାବୃତ୍ତ

**ପହପହ** - *ଅନେ:* (ବି.ଅ.) : ପ୍ରାତଃ କାଳ ସକାଳ, ବଡ଼ି ସକାଳ, ଉଷାକାଳ, ଭୋର୍ ସମୟ

**ପହରା** - *ଢ:ଝା:ନ:ଯା:* (ବି.) : ଜଗୁଆଳି, ଜଗି ରହି ଦେଖୁଥିବା, ଜଗିବା, ଯନ୍ତ ବା ଶେଣିରେ ପାଣି ବୋହିବା ପାଇ ଥିବା ଖାଲ

**ପହରିଆ** - *କଳା:* (ବି.) : ଆଦିବାସୀ ଜାତି ବିଶେଷ

**ପହରିଏନ୍** - *କଳା:* (ବି.) : ପହରିଆ ଜାତିର ସ୍ତ୍ରୀ ଲୋକ

**ପହରୀ** - *ଦେ:* (ବି.) : ପ୍ରହରୀ, ଚୌକିଦାର

**ପହଲ** - *ସୁ:* (ବି.) : ଟିଣ, ଆଲ୍‌ବେଷ୍ଟସର ତରଙ୍ଗାୟିତ ଅଂଶ

**ପହଲିବା** - *ଦେ:* (କ୍ରି.) : ଗର୍ବ ସହକାରେ ହାତକୁ ହଲାଇ ଚାଲିବା

**ପହଳି** - *ନ:କଳ:ଦେ:* (ବି.) : ଢଗଢମାଳି, ପ୍ରବଚନ

**ପହିଆ** - *ଗ:* (ବି.) : ଶଗଡ଼ ଚକ

**ପହିଚ** - *ଢ:ଗଦ୍ୟ:ନ:* (ବି.) : ଗର୍ବ, ବଦମାସୀ କରିବା, ତାମସା, ପାଇକମାନଙ୍କ ପାଦପକା ଶୈଳୀ, ଗୋଳମାଳ, ଗର୍ବ ପ୍ରକାଶ, ବିବାଦ, କ୍ରୋଧ, ଫୁଟାଣି

**ପହିଞ୍ଚ** - *ନ:* (ବି.) : ଦାଣ୍ଡପିଣ୍ଡା

**ପହିଲ୍ ଇକୁନ** - *ନୂ:* (ବିଂ.) : ପ୍ରଥମ ପର୍ଯ୍ୟାୟ

**ପହିଲାବରଦଳ** - *ସଂ* (ବି.) : ସଂକୀର୍ତ୍ତନ ଦଳଙ୍କ ଗାଁ, ପଥର କଟାଳୀଙ୍କ ବାସସ୍ଥାନ

**ପହିଲି ବିଆଣ** - *ଅ:କ:* (ବି.) : ପ୍ରଥମ ପ୍ରସବ, ପ୍ରଥମ ଫଳର (ଗାଈ)

**ପହିଲିସଜ** - *ନ:* (ବି.) : ପୌଷ ମାସରେ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଅନୁଷ୍ଠିତ ଭୋରରୁ ଭୋଗ

**ପହିଲୁ** - *ଦେ:* (ବି.) : ପ୍ରଥମ

**ପହିଁ ହେବା** - *ଅ:* (କ୍ରି.) : ସେକି ହେବା

**ପହୁର୍** - *ନୂ:* (ବି.) : ପ୍ରଥମଥର ପାଇଁ ଝିଅ ପୁତ୍ର ସନ୍ତାନ ସହ ଆଗମନ ଉଦ୍ଦେଶ୍ୟରେ ଆୟୋଜିତ ଭୋଜି

**ପହୁଁଚ୍‌ବା** - *ନୂ:* (କ୍ରି.) : ପହଞ୍ଚିବା

**ପହେଚାନ** - *ସୁ:* (ବି.) : ଚିହ୍ନା

**ପହେଲା** - *ସୁବ:ସ:କଳା:* (ବି.) : ପହିଲି, ପ୍ରଥମରୁ, ଆଗ

**ପହେଲା ବେତ୍** - *ସ:* (ବି.) : ଗାଈର ପ୍ରଥମ ଛୁଆ

**ପହଁଟାବା** - *ସୁ:କଳା:* (କ୍ରି.) : ନିଆଁ ପୁଏଁଇବା, ବିଡ଼ିରେ ନିଆଁ ଲଗେଇବା

**ପହଁଟିଆ** - *ଦେ:* (ବି.) : ପାହାନ୍ତିଆ

**ପହଁଟିଯିବା** - *କଳା:* (କ୍ରି.) : ନିଆଁ ଲାଗିଯିବା

**ପହଁପହଁ** - *କଳା:* (ବିଂ.) : ପଙ୍ଗପଙ୍ଗ, ପ୍ରଭାତ କାଳ

**ପହଁରିଆନେ** - *ରା:* (କ୍ରି.) : ପହଁରିବା

**ପହଁରୀ** - *ନୂ:* (ବି.) ପାଂଜଳ(ଗୋଡ଼ର ଅଳଂକାର) (ନୁପୂର)

**ପହଁଲା** - *କଳା:ସୁବ:* (ବି.) : ପୋହଳା, ପ୍ରବାଳ

**ପହ୍ନା** - *ଅନେ:* (ବି.) : ଗୋ ସ୍ତନ, ଗାଈର କ୍ଷୀର ସ୍ରବିବା ସ୍ଥାନ

**ପହ୍ଲା** - *ଟା:ଯା:* (ବି.) : କୁଡ଼ିଆ ଘର, ପଲା

**ପାଅଲ୍** - *କନ୍ଧ:* (ବି.) : ପାଇଲ୍

**ପାଆ** - *କ:* (ବି.) : ଏକ ଚତୁର୍ଥାଂଶ, ପାଦ

**ପାଆକିଆ** - *ଦେ:* (ବିଂ.) : ଏକ ପାଆ ପରିମାଣ ବା ଓଜନ ବିଶିଷ୍ଟ

**ପାଆଟା** - *କୋ:* (ବି.) : ନିଲାମ୍

**ପାଆଟି** - *ଗ:* (ବି.) : ନାରୀଙ୍କ ଗୋଡ଼ର ରୂପା ଅଳଂକାର

**ପାଆଢୁ** - *ରା:ଗ:ଗଜ:* (କ୍ରି.) : ନଷ୍ଟ କରିବା, ପାଉଢୁ

**ପାଆଧୁଆ** - *କ:* (ବିଂ.) : ପାଦଧୂଆ

**ପାଆଫିଟା** - *ଗ:* (ବି.) : ବିବାହ ବେଳେ ନାପିତ ବରକନ୍ୟାଙ୍କ ପାଦର ଅଳତା ଦେବା

**ପାଆଲାଗି** - *କ:* (ବି.) : ଦଣ୍ଡବତ

**ପାଆଲୁ** - *ଗ:* (ବି.) : ତରଳ, ଖୀର

**ପାଆଁପଡ଼ିବା** - *ଅ:ଦେ:* (କ୍ରି.) : ଗୋଡ଼ତଳେ ପଡ଼ିବା

**ପାଉ** - *ଅନେ:* (ବି.) : ୨ମାଣିଆ, ୩ମାଣିଆ, ୪ମାଣିଆ ମାପମାନକ, ସେର, ଖଟର

ଗୋଡ଼, ପାଇଁ, ନିମନ୍ତେ, କୋଳ କରିବା, କାଖେଇବା

**ପାଇକ** - *ନ:ଗ:ମା:* (ବି.) : ଯୋଦ୍ଧା, ସୌନ୍ୟ ବିଶେଷ, ପୁଲିସ୍

**ପାଇକଛା** - *କ:ଖୋ:* (ବି.) : ପାଇକ ପରି (ସ୍ତ୍ରୀ ଲୋକମାନଙ୍କର) କଛା ମାରି ଲୁଗା ପିନ୍ଧିବା, ଫରିକଛା

**ପାଇ କରିବା** - *ବୌ:ଦେ:ଅ:* (କ୍ରି.) : କାଖେଇବା

**ପାଇକା** - *ଗ:* (ବି.) : ଶସ୍ୟ ମାପକର ପରିମାଣ

**ପାଇକାରି** - *କେ:* (ବିଂ.) : ମୋଟ ଦରରେ ବିକ୍ରି

**ପାଇକାଳି ଜମି** - *ବ୍:* (ବି.) : ପାଇକମାନଙ୍କୁ ଚାଷକରିବାକୁ ଦିଆଯାଉଥିବା ଜମି

**ପାଇକୁଟି ଗଛ** - *ଖୋ:କେନ୍ଦୁ:* (ବି.) : ଏକ ପ୍ରକାର ଫୁଲ ଗଛ କୃଷ୍ଣଚୂଡା ଫୁଲ ପରି ଫୁଲ

**ପାଇଛ** - *ଯା:* (ବି.) : ପାହାଚ

**ପାଇଛା** - *ଗ:ରା:ଗଞ:* (ବି.) : ବାଦଶାହ, ପାଦସା, ରାଜା, ବଡ଼ ରାଜା, ରାଜାଙ୍କ ଭଉଣୀ, ଗଂଜପା ତାସର ବାର ସଂଖ୍ୟକ ତାସ, ଭିଣୋଇ, ଜୋଇଁ, ଶଳା ଭିଣୋଇକୁ ସମ୍ବୋଧନ କରିଥାନ୍ତି

**ପାଇଟାଙ୍କ** - *ବା:* (ବିଂ.) : କାମୁକ

**ପାଇଟି** - *ଅନେ:* (ବି.) : କାର୍ଯ୍ୟ, କାମ କରିବା, ଦୈନନ୍ଦିନ କାର୍ଯ୍ୟ, ଧନ୍ଦା, , କ୍ଷୌର କର୍ମ, ଖ୍ୱଅର, ଛୋଟ ଚାକିରୀ, ହଳିଆ କାର୍ଯ୍ୟ

**ପାଇଟିଆଣୀ** - *ଗଞ:* (ବି.) : କାମବାଲି

**ପାଇଟିଆଳ** - *ନ:ଖୋ:* (ବି.ବିଂ.ବି.) : ମୂଲିଆ, ଶ୍ରମିକ, କର୍ମଠ

**ପାଇଟି କବାଡ଼ି** - *କୋ:* (ବି.) : କାମଧନ୍ଦା

**ପାଇଟି ହେବା** - *କୋ:* (କ୍ରି) : ବାଳ କାଟିବା

**ପାଇଡ଼ାକା** - *କଝ:* (ବି.) : ପାଦର ଅଳଙ୍କାର

**ପାଇଣ୍ଟୁ କାଢିବା** - *ଗ:* (କ୍ରି.) : ଆଇନ ସୂତ୍ର ବ୍ୟାଖ୍ୟା କରିବା

**ପାଇଣ୍ଡା** - *ଗଞ:* (ବି.) : ଜାତିବିଶେଷ

**ପାଇନ** - *ଦେ:କଝ:* (ବି.) : ପାଣି

**ପାଇଯୁଡ଼ୀ** - *କେ:* (ବି.) : ପାଦ ଅଳଙ୍କାର

**ପାଇରିଆ** - *ସଂ:* (ବି.) : ଏହି ରୋଗରେ ପାଟିରୁ ଦୁର୍ଗନ୍ଧ ବାହାରେ, ଦନ୍ତ ରୋଗ

**ପାଇଲ** - *ଢେ:* (ବି.) : ସେର

**ପାଇଲା** - *କୋ:* (କ୍ରି.) : ବାଜିଲା

**ପାଇଲହୁଆ** - *ପଦ୍ୟ:* (ବି.) : ଚିତ୍ର ଅଙ୍କନ ପଦ୍ଧତି

**ପାଇଁକି** - *ନ:* (ଅ.) : ଲାଗି

**ପାଇଁଝଲ** - *ସୁ:* (ବି.) : ପାଉଁଝ, ପାଉଁଜି

**ପାଇଛ** - *ବା:ଅ:ଗ:* (ଅ.ବି.) : ପାହାଚ, ପାବଚ୍ଛ, ସୋପାନ

**ପାଉଜିଲି** - *କଝ:* (ବି.) : ପାଉଁଜି

**ପାଉଡ଼** - *କଝ:* (ବି.) : ପାହୁଡ଼

**ପାଉଡ଼ିଆ** - *ଦେ:* (ବି.) : ଭୂୟାଁ ନାମକ ଆଦିମ ପାର୍ବତ୍ୟ ଜାତି

**ପାଉଢୁ** - *ନବ:* (ବି.) : ସଂପୂର୍ଣ୍ଣ ରୂପେ ଧ୍ୱଂସ ହେବା

**ପାଉଣା** - *ସଂ:ଦେ:* (ବି.) : ଦକ୍ଷିଣା, ପ୍ରାପ୍ୟ

**ପାଉତି** - *ଖୋ:ଗ:ଦେ:* (ବି.) : ଖଜଣାର ରସିଦ୍, ପ୍ରାପ୍ତି ସ୍ୱୀକାର ପତ୍ର ରସିଦ୍, ନିକଟରେ, ପାଖରେ

**ପାଉଦାନୀ** - *ଛେ:* (ବି.) : ପାଦପୋଛା

**ପାଉରାଣି** - *ରା:* (ବି.) : ଧାନ କୁଟୁଣି

**ପାଉରିବା** - *ଗ:* (କ୍ରି.) : ଘୋଡ଼ିହେବା, ଆବୃତ ହେବା, ପାହୁରିବା

**ପାଉଲା** - *ଖୋ:* (ବି.) : ପାହୁଲା, ମୁଦ୍ରା

**ପାଉଁଚ** - *ଗୌ:ସୁ:ସ:* (ବି.) : ପାହାଚ

**ପାଉଁଝଲ** - *ଗଦ୍ୟ:* (ବି.) : ପାଉଁଜି

**ପାଉଁଟୁଲ** - *ଅ:* (ବି.) : ପାଉଁଜି

**ପାଏଁଝଲ୍** - *ନୂ:ସ:* (ବି.) : ପାଂଜଳ(ନୁପୂର), ପାଉଁଜି

**ପାଏଡ଼ା** - *ଗ:* (ବି.) : ଦେବତା ଓ ରାଜାଙ୍କ ଗମନ ପଥ

**ପାଏଣ୍ଟୁ** - *ଗଢ:* (ବି.) : ଠିକ୍ ନିୟମଟି

**ପାଏନ** - *ଅନେ:* (ବି.) ଲକ୍ଷଣ, ପାଣି, ବଂଶଗତ, ଗୁଣରୂପ ଲକ୍ଷଣ, ଜଳ

**ପାଏନ୍ ଉତୁରିଯିବା** - *ବ:* (କ୍ରି.) (ମୁହଁ) ମଳୀନ ପଡ଼ିଯିବା

**ପାଏନ୍ କୁଆଲି** - *ସ:ବର:* (ବି.) : ପାଣିକୁଆ

**ପାଏନ୍ କୁଟିବା** - *ବ:* (ବି.) : ମୂଷଳ ଧାରା ବର୍ଷା

**ପାଏନ୍ ଖଡ଼ି** - *କଳା:* (ବି.) ଗଣ୍ଡ ସଂପ୍ରଦାୟର ପ୍ରଚଳିତ ବିବାହ ମେଳକ

**ପାଏନ୍ ଛଟଲା** - *ନୂ:* (ବି.) : ସର୍ପ ବିଶେଷ

**ପାଏନ୍ ଡବ୍‌କିବା** - *ସ:* (କ୍ରି.) : ପାଣି ଫୁଟୁଥିବା

**ପାଏନ୍ ନିମାଗିବା** - *ବ:* (କ୍ରି.) : ସଂଗେସଂଗେ ମୃତ୍ୟୁ ଲଭିବା

**ପାଏନ୍ ପଏଟ୍** - *ବ:* (ବି.) : (ପାଠ)ସଂପୂର୍ଣ ମୁଖସ୍ଥ କରିବା

**ପାଏନ୍ ପବନ୍** - *ନୂ:* (ବି.) : ଜଳବାୟୁ

**ପାଏନ୍ ପାଇବା** - *ବ:* (କ୍ରି.) : ସମାନ ଗୁଣର ଅଧିକାରୀ ହେବା

**ପାଏନ୍ ପାଏନ୍ ହେବା** - *ବ:* (କ୍ରି.) : (ଆଖି) ଛଳଛଳ ହେବା

**ପାଏନ୍ ପାଲ୍‌ଟା** - *ବ:* (କ୍ରି.) : ବିବାହର ପୂର୍ବଦିନ ପୋଖରୀରୁ ଅଣାଯିବା ପବିତ୍ର ଜଳ

**ପାଏନ୍ ପିଟିବା** - *ବ:* (କ୍ରି.) : ବୃଥା ପରିଶ୍ରମ କରିବା

**ପାଏନ୍ ମାରିବା** - *ବ:* (ବି.) : ବର୍ଷା ଆରମ୍ଭ ହେବା

**ପାଏନ୍ ଲାଗିବା** - *ବ:* (କ୍ରି.) : ସ୍ୱାସ୍ଥ୍ୟାବସ୍ଥାରେ ଉନ୍ନତି ହେବା

**ପାଏନ କୁଆଲି** - *ସୁବ:* (ବି.) : ପାଣିରେ ରହୁଥିବା ଛୋଟ ହଂସ ଜାତୀୟ ପକ୍ଷୀ

**ପାଏନଘଞ୍ଚି** - *ସୁ:* (ବି.) : ପାନି ରଖିବା ମଞ୍ଚ

**ପାଏନଚୋ** - *ନୂ:* (ବିଂ.) : ପାଣିଚିଆ

**ପାଏନଛଡ଼ା** - *ସ:* (ବି.) : ମହାପ୍ରଭୁଙ୍କ ପ୍ରସାଦ

**ପାଏନଡେନ୍** - *ବ:* (ବି.) : ଘରେ ଜଳ ଯୋଗାଉଥିବା ସ୍ତ୍ରୀଲୋକ

**ପାଏନ ବାଗିର ଖଏରଚା** - *ନୂ:* (ବିଂ.) : ଅଜସ୍ର ଖର୍ଚ୍ଚ

**ପାଏନବୁଡ଼ି** - *ସୁ:* (ବି.) : ପାଣିକୁଆ

**ପାଏନ୍ ଆନବାର** - *ସୁବ:* (କ୍ରି.) : ରୂପ, ଗୁଣ ଓ ଲକ୍ଷଣ ଉତ୍ତରାଧିକାର ସୂତ୍ରରେ ଆଣିବା

**ପାଏନ୍ କଁଠ୍** - *କଳା:* (ବି.) : ପାଣିକଣ୍ଠ, ମିତ୍ର ବା ସଂଗାତ ଭଳି

**ପାଏନ୍ ପାଇବା** - *ବ:* (କ୍ରି.) : ପୈତୃକ ଗୁଣ, ସ୍ୱଭାବ ଆହରଣ କରିବା

**ପାଏନ୍ ସେନ୍ହା** - *ସୁବ:* (ବି.) : ଜଳ ମାର୍ଜ୍ଜାର, ଓଧ

**ପାଏରି ଆକା** - *କନ୍ଧ:* (ବି.) : ଶିଆଳି ପତ୍ର

**ପାଏର୍ଛା** - *ସ:* (ବି.) : ପୁରାପୁରି

**ପାଏଲା** - *କଳା:* (କ୍ରି.) : ପାହିଲା, ହେଲା, ପାଇଲା, ଲାଭ କଲା

**ପାଏଁ** - *ବର:* (ବି.) : ପ୍ରଣାମ

**ପାକ୍କା** - *କନ୍ଧ:* (ବି.) : ଚକ

**ପାକ୍ନା** - *ମା:* (ବି.) : ପଥର

**ପାକ୍ଲା** - *କନ୍ଧ:* (ବିଂ.) : ପାଚ୍ଲା

**ପାକଡ଼ା** - *ଗଜ:* (ବି.) : ଶେଯ, ଶୋଇବା

**ପାକଲ୍ଲୁ** - *ରା:* (ବି.) : ପାଚିଲା ଫଳ

**ପାକଳା ଗାମୁଛା** - *ସୁ:* (ବି.) : ମହୁ ଇତ୍ୟାଦି ସୁଗନ୍ଧ ଦ୍ରବ୍ୟରେ ପଚା ଯାଇଥିବା ଗାମୁଛା

**ପାକଳିଆ** - *ଦେ:* (ବିଂ.) : ଅର୍ଦ୍ଧପକ୍ୱ

**ପାକଳେଇବା** - *ନ:ଯା:* (କ୍ରି.) କଥାକୁ ଜୋର୍‌କରି ଧରିବା, ସୂତା ଟାଣ କରିବା (ବଳିବଳି), ସୂତା ବଳିବା, ଦଉଡ଼ିକୁ ବଳି ଶକ୍ତ କରିବା

**ପାକାଘର** - *ବ୍ୟ:* (ବି.) : ପକ୍କା ଘର

**ପାକାଟ** - *ମା:* (ବି.) : ବଦ୍‌ମାସ

**ପାକିଟି** - *ଯା:* (ବି.) : ପକେଟ

**ପାକିବା** - *ଗ:* (କ୍ରି.) : ପକ୍ୱ ହେବା

**ପାକିଲି** - *କେ:* (ବି.) : ଏକ ଖେଳ ବିଶେଷ

**ପାକୀ** - *ଗଜ:* (ବିଂ.) : ଦାନ୍ତ ନଥିବା ଝିଅ

**ପାକୁଆ** - *ଖୋ:* (ବିଂ.) : ଦାନ୍ତ ନଥିବା ଲୋକ

**ପାକୁଡ଼ି** - *କନ୍ଧ:ଗଜ:ଗ:* (ବି.) : ବେସନ ନିର୍ମିତ ପକଡ଼ି, ବେସନ ପିଆଜ କଂଚା ମରିଚର ପିଠା

**ପାକୁଣ୍ଡିଆ** - *ବ୍ୟ:* (ବିଂ.) : ପାଚିଲା, ପରିଣତ

**ପାକୁଲ** - *ସୁ:* (ବି.) : ପାକୁଳି

**ପାକୁଳି** - *ଜ:* (ବି.) : ଗୋରୁ ଖାଦ୍ୟ ପାକୁଳି କରିବା, ରୋମନ୍ଥନ

**ପାକୁଳିଆ** - *ନ:* (ବିଂ.) ବୃଦ୍ଧପ୍ରାୟ, ବୟସ୍କଭଳି ଦୃଶ୍ୟମାନ

**ପାକେଇ** - *ଖୋ:* (ବି.) : ଦାନ୍ତ ନଥିବା ସ୍ତ୍ରୀ ଲୋକ

**ପାକେଲେଇବା** - *ଛ:* (କ୍ରି.) : ମନେଇବା, ରସି ପାକଲେଇବା, ବଳିବା

**ପାଖ୍ ପନ୍‌ତି** - *ଝା:* (ବି.) : ଆଖ ପାଖ ଲୋକ

**ପାଖ୍‌ପରସା** - *କନ୍ଧ:* (ବି.) : ପାଖପଡ଼ିଆ

**ପାଖପକେଇବା** - *କ:* (ବି.) : ବେଉଷଣ ସମୟରେ ହିଡ଼କୁକାଟି ସିଧା, ସୁନ୍ଦର କରିବା, କଡି କରିବା

**ପାଖର୍** - *କଳା:* (ବିଂ.) : ନିକଟର, ପାଖର

**ପାଖାଣ୍ଡି** - *ଦେ:* (ବିଂ.) : ଦୁଷ୍ଟ

**ପାଖିଆ** - *ଗ:* (ବି.) : ଏକ ପାର୍ଶ୍ୱ

**ପାଖିବା** - *କନ୍ଧ:* (କ୍ରି.) : କାଖକରିବା

**ପାଖୁଡ଼ା** - *ନ:* (ବି.) : ଛୋଟ ଡାଳ

**ପାଗ** - *ଅନେ:* (ବି.) : ଉଖୁଡ଼ା ପାଗ, ଜଳବାୟୁ, ଖଇ ଓ ଗୁଡ଼ର ମିଶ୍ରିତ(ଉତ୍ତମ) ରୂପର ପୂର୍ବବର୍ତ୍ତୀ ଅବସ୍ଥା, ପାକ, ସ୍ୱାଦିଷ୍ଟ ପ୍ରସ୍ତୁତି ପ୍ରଣାଳୀ, ପଗଡ଼ି, ମୁଣ୍ଡର ଠେକା, ଲଙ୍କା ମରିଚ, ଲୁଣ, ପିଆଜ, ରସୁଣ

**ପାଗ୍‌ବା** - *ସୁ:* (କ୍ରି.) : ପାଗ କରିବା

**ପାଗଡ଼୍** - *ଚ:* (ବି.) : ଜାହାଜବନ୍ଧା ଦଉଡି

**ପାଗଡା** - *ରା:କେନ୍ଦୁ:ଗ:* (ବି.) : ପୋହଳା, ଏକ ପ୍ରକାର ଗଛ, ଶକଟା ଖେଳର ଏକ ପଡ଼ିବା ଦାନା

**ପାଗନ୍** - *ଅ:* (ବି.) : ଘରଠାରୁ ପ୍ରାୟ ଦୁଇ ମାଇଲ ଉଚ୍ଚରେ ପର୍ବତ ଉପରେ ସ୍ଥାନ

**ପାଗପାଣି** *ପୁ:* (ବି;) : ଲଙ୍କା, ଲୁଣ, ପିଆଜ, ରସୁଣ, ପୋଡ଼ାଆଳୁ ଆଦିକୁ ନେଇ ଖାଦ୍ୟ ପ୍ରସ୍ତୁତ

**ପାଗା** - *ଗ:ନୂ:* (ବି.) ଘୋଡ଼ାଶାଳ, ହାତୀଶାଳ, ପଗଡ଼ି

**ପାଗାଙ୍ଗା** - *କନ୍ଧ:* (ବି.) : ପଘା(କୁଇ ଶବ୍ଦ)

**ପାଗିବା** - *ବୌ:* (କ୍ରି.) : ପାଗ କରିବା

**ପାଗୁଲି** - *ଛ:* (ବି.) : ପାଗଳାମି

**ପାଘଲା** - *ରା:* (ବିଂ.) : ବାତୁଳ

**ପାଘିବା** - *ରା:* (କ୍ରି.) : ଗୁଣି କରିବା

**ପାଙ୍କୁଡ଼ି** - *ନବ:* (ବି.) : ପୋକଟି

**ପାଙ୍ଗନିଆ** - *ମା:* (ବି.) : ଗୁଣିଆ

**ପାଙ୍ଗର୍** - *ଅ:* (ବି.) : ପାର୍ବତ୍ୟ ଗଛ

**ପାଙ୍ଗା** - *ଗଞ୍ଜ:* (ବି.) : ଫସଲ

**ପାଙ୍ଗିବା** - *ଅନେ:* (କ୍ରି.) : ଅଶୁଭ ପାଞ୍ଚିବା, ଗୁଣି କରିବା, ତନ୍ତ୍ର ପ୍ରୟୋଗ କରିବା

**ପାଙ୍ଗୁଆ** - *ଅନେ:* (ବିଂ.ବି.) : ବିନା ପଇସାରେ ଜିନିଷ ବା ଖାଦ୍ୟଗ୍ରହଣ, ମାହାଳିଆ, ଅକର୍ମଣ୍ୟ, ଭିକ୍ଷକମ

**ପାଙ୍ଗୁଣିଆ** - *ଗ:* (ବି.) : ଗୁଣିଆ, ତାନ୍ତ୍ରିକ

**ପାଚ** - *ସୁବ:ଗ:* (ବି.) : ବଳନ, ଦଉଡ଼ିର ବଳିବା କ୍ରିୟା, କୃଷିରୁ ଆଦାୟ

**ପାଚ୍‌ନ ବାଡ଼ି** - *ବୌ:* (ବି.) : ପାଞ୍ଚଣ ବାଡ଼ି

**ପାଚ୍‌ଲି** - *ବୌ:* (ବି.) : ଦୁଧ ସିଝା ମାଟିପାତ୍ର

**ପାଚକ** - *ପୁ:* (ବି.) : ଭାଗ

**ପାଚନ** - *ଗ:ସ:* (ବି.) : ଚେରମୂଳୀ ଔଷଧର ସିଝା ପାଣି, ପାଞ୍ଚପ୍ରକାର ଫଳମୂଳରେ ତିଆରି ରସ

**ପାଚଲ** - *ଗଦ୍ୟ:ଗ:* (ବି.) ଆମ୍ବିଳ ତରକାରୀ, ବିହନ

**ପାଚିଗୁଡ଼ି** - *ଗଜ:* (ବି.) : ଫସଲ ଭଲ କିମ୍ବା ମରୁଡ଼ି ପଡୁ, ତା'ର କିଛି ଯାଏଆସେ ନାହିଁ

**ପାଚିଡ଼ି** - *ନବ:ରା:ଗଜ:* (ବି.) : ଚଟଣି

**ପାଚିରୀ** - *ଦେ:ଗ:* (ବି.) : ବେଡା, କାନ୍ଥ, ଚଟଣି

**ପାଚୁ** - *ରା:* (ବି.) : ଶସ୍ୟ ଉତ୍ପାଦନ

**ପାଚୁଡ଼ି** - *ରା:* (ବି.) : ମାଠ, ପାରୁଡ଼ି

**ପାଚେନ** - *ନୁ:କଳା:* (ବି.) : ରଜ୍ଜୁ ତିଆରି ପାଇଁ ବ୍ୟବହୃତ ଲୁହାର ଯନ୍ତ୍ର, ଦଉଡି ବଟିବା ଯନ୍ତ୍ର

**ପାଛରି** - *କନ୍ଧ:* (ବି.) : ଚଦର

**ପାଛରିବା** - *ଗୌ:ସୁବ:* (କ୍ରି.) : ପାଛୋଡ଼ିବା (କୁଲା ସାହାଯ୍ୟରେ ଗୋଡି ମାଟି ସଫା କରିବା )

**ପାଛରିବା** - *ସୁ:* (କ୍ରି.) : ପାଛୁଡ଼ିବା

**ପାଛି** - *କନ୍ଧ:* (ବି.) : ଗାମୁଛା

**ପାଛୁଡ଼ା** - *ଅନେ:* (ବି.) : ଶୀତବସ୍ତ୍ର, ଉତ୍ତରୀୟ ବସ୍ତ୍ର, ଚାଦର, ଗାମୁଛା

**ପାଛୋଣି** - *ଦେ:* (ବି.) : ଏକ ପ୍ରକାର ବାସନ

**ପାଜାକାନା** - *କନ୍ଧ:* (ଅ.) : ଠିକ୍‌ଭାବେ

**ପାଜି** - *କନ୍ଧ:ଯା:ନ:ଦେ:* (ବି.ବିଂ.) : ବଦମାସ, ଅଧମ, ପାମର

**ପାଜିନି** - *ବର:* (କ୍ରି.) : ସୂତା ମାଜିବା

**ପାଜିମିଢ଼ା** - *କନ୍ଧ:* (ବି.) : ଘୁଷୁରିଛୁଆ

**ପାଜୁର୍** - *କୋ:* (ବି.) : ମୋଟା ପାଳ ଦଉଡ଼ି

**ପାଜେନ୍** - *ସୁ:ବ:* (ବିଂ.ବି.) : ପଜାଯୋଗ୍ୟ, ପଜା ହୋଇଥିବା ବା ଶାଣ ଦିଆ ସାରିଥିବା

**ପାଞ୍ଚକାଠି** - *କନ୍ଧ:* (ବି.) କୁଆଳିର ଦୁଇପାଖର କାଠି

**ପାଞ୍ଚଣ** - *ଅନେ:* (ବି.ବିଂ.) : ଗୃହପାଳିତ ପଶୁଙ୍କୁ ଅଡ଼ାଇବା ଛାଟିଆ, ହାତ ମାପରେ ପାଞ୍ଚପା ଲମ୍ବ ଛାଟ, ଛୋଟ କଣି ବାଉଁଶ ବା କେନ୍ଦୁ ବାଡ଼ି, ପଶୁ ତାଡ଼ନ ଦଣ୍ଡ

**ପାଞ୍ଚପଚିଶ** - *ଦେ:* (ବି.) : ସର୍ବସାଧାରଣ, ବହୁ

**ପାଞ୍ଚଫଳି** - *ନ:* (ବି.) : ପାଞ୍ଚୋଟି କାଠ ଫାଳ ଲଗାଲଗି ହୋଇ ଶଗଡ଼ ଦଣ୍ଡାର ସମ୍ମୁଖ ଭାଗରେ ଲାଗିଥାଏ, ଯେଉଁଠି ଶଗଡ଼ିଆ ବସିଥାଏ

**ପାଞ୍ଚି** - *ଅନେ:* (ବି.) : ବିବାହ ବେଦୀରେ ବର ପିନ୍ଧିବା ବସ୍ତ୍ରଯୁଗ୍ମ, ବ୍ରତବେଦୀରେ ବ୍ରହ୍ମଚରୀ ପିନ୍ଧିବା ବସ୍ତ୍ରଯୁଗ୍ମ, ଛୋଟ କାନ୍ଧଧରା ଗାମୁଛା, ଲୁଗା ଓ ଚଦର ମିଶା

**ପାଛିଆ** - *କୋ:* (ବି.) : ଛୋଟ ଗାମୁଛା, ଉତ୍ତରୀୟ

**ପାଛିଆରି** - *ଗ:* (ବି.) : ଛିଦ୍ରଦ୍ୱାରା ବର୍ହିଗମନ, ସାଇକଲ ଟ୍ୟୁବ୍‌ରୁ ପମ୍ପ ଚାଲିଯିବା

**ପାଛି ପଟୁଆର** - *ଗ:* (ବି.) ବେଶ ପୋଷାକର ଆଡ଼ମ୍ବର

**ପାଛିବା** - *ଦେ:* (କ୍ରି.) : ଇଚ୍ଛା କରିବା, ବାଞ୍ଛା, ଭାବିବା

**ପାଛେଇବା** - *ଚା:ଯା:* (କ୍ରି.) ପ୍ରକ୍ଷାଳନ କରିବା, ଝାଡାବସି ଶୌଚ ହେବା କାର୍ଯ୍ୟ ସଛେଇବା, ଶୌଚହେବା

**ପାଛି** - *ଗଜ:* (ବି.) : ଗାମୁଛା

**ପାଞ୍ଜିଆ** - *କୋ:ଗ:ଦେ:* (ବି.) : ଯେ ହିସାବ ଲେଖେ, ରାଜାଙ୍କ ହିସାବ ରକ୍ଷକ, ନାହାକ ଜ୍ୟୋତିଷ

**ପାଞ୍ଜିକାଢିଆ** - *ଗ:* (କ୍ରି.) : ପୁରୁଣ ନଥିପତ୍ର ବାହାର କରିବା

**ପାଞ୍ଜୁ** - *କନ୍ଧ:* (ବି.) : ଦୁଆର ଉପରେ ଥିବା କାଠପଟା ବା ଥାକ

**ପାଞ୍ଜୋଗୁଲିଆ** - *ସ:* (ବିଂ.) : ଦି ପକ୍ଷର କଥାକୁ ନେଇ ଗୋଳମାଳ କରିବା, ଦ୍ୱିପାକ୍ଷିକ ମତଦେବା

**ପାଟ** - *ଅନେ:* (ବି.) : ପାଟଲୁଗା, ବିଲପାଟ, ନିର୍ଜନ ବିଲ, ଜଳାଶୟ, ଭେଡ଼ା, ଜଳପ୍ରପାତ, ଅଖା, ଝୋଟ ତିଆରି ଲୁଗା, ପିଢି, ପ୍ରଧାନ

**ପାଟ୍ ଅଲ୍‌ସିଆ** - *କନ୍ଧ:* (ବି.) : ପରମ ଅଳସୁଆ

**ପାଟ୍‌କିରା** - *କଳା:ନୂ:* (ବି.) : ପାଟପୋକ, ସାଧବବୋହୂ ପୋକ

**ପାଟ୍‌କେ ପାଟ୍** - *ସ:* (ବି.) : ବଂଶାନୁକ୍ରମେ

**ପାଟ୍‌ଜୋଷୀ** - *କଳା:* (ଅ.) : ବ୍ରାହ୍ମଣମାନଙ୍କୁ ରାଜଦତ୍ତ ଉପାଧି ବିଶେଷ

**ପାଟ୍‌ପନିଆଁ** - *ସୁବ:ବୌ:* (ବି.) : କଙ୍କି

**ପାଟ୍ ପୁରଷା** - *ନୂ:* (ବି.) : ପୂର୍ବ ପୁରୁଷ

**ପାଟ୍‌ବା** - *ନୂ:ସୁବ:* (କ୍ରି.) : ପୋତିବା

**ପାଟ୍ ବେନ୍ଦ୍ରା** - *ନୂ:* (ବି.) ଫୁଲ ବିଶେଷ(ଭାଦ୍ରବ ମାସରେ ଫୁଟେ) ହରଗୌରା

**ପାଟ ଉପାଡ଼ିବା** - *ଦେ:* (କ୍ରି.) : ଦର୍ପହାନି କରିବା

**ପାଟକ** - *ଖୋ:ଗଦ୍ୟ:ଗ:* (ବି.) : ଜାତି, ନଈ କୂଳ, ପଶାର ଗୋଟି ଚାଳନା, ପାଣି ନିକଟକୁ ଯିବାପାଇଁ ଗଢା ପାହାଚମାଳ, ବଂଶ ପରଂପରା

**ପାଟକପୁରା** - *ଦେ:ଭ:* (ବି.) : କାଠିକଦଳୀ ବିଶେଷ

**ପାଟକାଣ୍ଡିଆ** - *ଗ:* (ବି.) : ପାଟବସ୍ତ୍ର

**ପାଟକି** - *ଦେ:ସୁ:* (ବି.) : ଜାତିଭାଇ, ପାଟକ ସମ୍ବନ୍ଧୀୟ

**ପାଟଖଣ୍ଡା** - *ଗ:ସ:* (ବି.) : ରାଜା ଧାରଣ କରୁଥିବା ଖଣ୍ଡା

**ପାଟଖୋଷା** - *ଦେ:* (ବି.) : ରେଶମ ପୋକଙ୍କ ଖୋଳ, ଗୋଟି

**ପାଟଚଉଁରି** - *ଗ:* (ବି.) : ରାଜାଙ୍କ ବିଶ୍ରାମ ଅଗଣା

**ପାଟ ଚିକସ** - *ସୁବ:* (ବିଂ.) : ବହୁତ ଚିକ୍କଣ

**ପାଟଛତା** - *ସଂ:* (ବି.) : ସୁଖ ସମୃଦ୍ଧି

**ପାଟଛଡି** - *ଦେ:* (ବି.) : ରାଜା ବା ଦେବତାଙ୍କ ଉପରେ ଟେକଯାଉଥିବା ରେଶମ କନାର ଛତା

**ପାଟଣା** - *ନ:ଦେ:* (ବି.) : ଛୋଟ ଗାଁଆ, ନଗର, ସହର

**ପାଟଦେଉ** - *ଗ:* (ବି.) : ରାଜାଙ୍କ ଜ୍ୟେଷ୍ଠ ପୁତ୍ର

**ପାଟନ** - *ଦେ:* (ବି.) : ବିଦାରଣ

**ପାଟ ପନିଆଁ** - *ସ:* (ବି.) : କଙ୍କି

**ପାଟବଂଶୀ** - *ଦେ:* (ବି.) : ପାଟରାଣୀ

**ପାଟଭୁଆସୁଣୀ** - *ଗଜ:* (ବି.) : ପାଟପୋକ, ସାଧବବୋହୁ

**ପାଟମୂଷା** - *ଗ:* (ବି.) : ନେପାଳି ମୂଷା

**ପାଟଯଥା କରିବା** - *ଗ:* (କ୍ରି.) : ସମ୍ମାନିତ କରିବା, ଉପଢୌକନ ପ୍ରଦାନ କରିବା

**ପାଟରା** - *ଖୋ:ଗ:କେ:* (ବି.) : ଗାଁ କୁ ଗାଁ ବୁଲି ଯେଉଁମାନେ ମନୋହାରି ଜିନିଷ ବିକ୍ରି କରନ୍ତି, ପାଟ ବୁଣୁଥିବା କାରିଗର, ଜାତିବିଶେଷ

**ପାଟଶାଳିଆ** - *ଗଜ:* (ବି.) ପାଟ ପ୍ରସ୍ତୁତ କରୁଥିବା ଜାତି

**ପାଟା** - *ଅନେ:* (ବି.) : ଭିତର କବାଟ, ଚନ୍ଦାମୁଣ୍ଡ, ବେଦାର ବୁଣାଯାଇଥିବା ମଝିଭାଗ, ଟାଙ୍ଗରାମୁଣ୍ଡ, କେଶହୀନ

**ପାଟାଲ୍ ପାଟାଲ୍** - *ଗ:* (ଅ.) : ଶୀଘ୍ର

**ପାଟି** - *ଅନେ:* (ବି.) : ପାଁଝୁଲୁ (ଗୋଡ଼ରେ ପିନ୍ଧିବା ଅଳଙ୍କାର), ଛାତ ତଳରେ ବ୍ୟବହୃତ ଲମ୍ବା ମୋଟା କାଠ ଖଣ୍ଡି, ପାଉଁଶି, ହୋ ହାଲ୍ଲା, ଉଚ୍ଚସ୍ୱରରେ କଥା ହେବା, ଘର ଛାତରେ ବ୍ୟବହାର କରାଯାଉଥିବା ଶକ୍ତ ତଥା ଲମ୍ବ କାଠ

**ପାଟିଅର** - *ପୁ:* (ବି.) ନାଟ ଦଳର ଅଭିନେତା, ଅଭିନେତ୍ରୀ

**ପାଟିଆ** - *ଯା:କୋ:ଗ:* (ବି.ବିଂ.) : ବନ୍ଦୋବସ୍ତର ସୂଚନା ଶବ୍ଦ, ନଡ଼ା ଛପର ଛାତ ତଳ ଲମ୍ବା କାଠ ବା ବାଉଁଶ, ଠକ

**ପାଟିଗୁଡ଼** - *ବ:* (ବି.) : ଖଜୁରୀ ରସରୁ ପ୍ରସ୍ତୁତ ସଢେଇ ଆକୃତିର ଗୁଡ଼

**ପାଟି ଛଡିଆ** - *ଗ:* (ବିଂ.) : ନିର୍ଲଜ୍ଜ ଭାବ

**ପାଟି ଢାଡୁ ମାରିବା** - *ଗ:* (କ୍ରି.) : ଅସ୍ପଷ୍ଟ କଥା

**ପାଟିପଡ଼ିବା** - *ନ:* (କ୍ରି.) : ଚେତାନଥିବା, ପାଟିନଫିଟିବା, ମୃତ୍ୟୁର ପୂର୍ବ ଅବସ୍ଥା

**ପାଟିଫିଟିବା** - *ଦେ:* (ବି.) : ବାକ୍ୟ ସ୍ଫୁରିବା

**ପାଟିବା** - *କଳା:ସୁ:ବା:* (କ୍ରି.) : ପୋତିବା, ପିଟିବା, ମାଡ଼ମାରିବା

**ପାଟିବୁଜିବା** - *ଦେ:* (କ୍ରି.) : ଚୁପ୍ ରହିବା

**ପାଟିସିକୁ ହେବା** - *ନ:* (ବି.) : କଥାବାର୍ତ୍ତା ବନ୍ଦ କରିବା

**ପାଟୁ** - *ଅନେ:* (ବି.) : ଛୋଟ ବିଡ଼ା, ବଡ଼ ପୋଖରୀ, ଅଳନ୍ଧୁ, ବଥ କିମ୍ବା କ୍ଷତ ଉପରେ ପଟି ବାନ୍ଧିବା

**ପାଟୁଆ** - *ଖୋ:ଦେ:ନ:* (ବି.) : ଯେଉଁମାନେ ପାଟୁଆନୃତ୍ୟ କରନ୍ତି, ଘଣ୍ଟାପାଟୁଆ, ଦଣ୍ଡ ଯାତ୍ରାର ନୃତ୍ୟକାରୀ ଭକ୍ତ

**ପାଟୁଉଠା** - *ଗ:* (ବି.) : ସମୁଦାୟ ଦ୍ରବ୍ୟ

**ପାଟୁଳ ପଡ଼ିବା** - *ଗଜ:* (କ୍ରି.) : ପରଚର୍ଚ୍ଚା କରିବା

**ପାଟୁଳା** - *କ:* (ବିଂ.) : ଯେ ଜିଭ ବୁଲଉଥାଏ

**ପାଟୁଳି** - *ନ:* (ବି.) : ଏକ ବୃକ୍ଷର ନାମ

**ପାଟେ** - *ସୁ:* (ବି.) : ଗୋଟିଏ ପୁରୁଷ

**ପାଟେକ୍** - *ଚର:* (ବି.) : ସାଙ୍ଗରେ ରହୁଥିବା ବ୍ୟକ୍ତି

**ପାଟେନ୍** - *ଚର:ସୁ:* (ବି.) : ଛାତ, ଆଟୁଘର

**ପାଟୋଲ** - *ପଦ୍ୟ:* (ବି.) : ମନ୍ଦିର

**ପାଠା** - *ଚର:* (ବି.) : ଝିଟିପିଟି

**ପାଢ଼ରା** - *ଅ:* (ବିଂ.) : ଡରୁଆ

**ପାଢ଼ରା ପଣ୍ଡା** - *ଗ:* (ବି.) : ଶଠ ବ୍ରାହ୍ମଣ

**ପାଢ଼ରାପୋକ** - *ଦେ:* (ବି.) : ଦୁର୍ଗନ୍ଧୀଯୁକ୍ତ ପୋକ

**ପାଢ଼ିଆ** - *ଦେ:* (ବି.) : ଘରର ଓଳି ପାଖରେ ଥିବା ଶେଣୀ ଓ ସେହି ଶେଣୀ ଖୁଣ୍ଟରେ ରହେ

**ପାଢୁ** - *ଦେ:ବା:* (ବିଂ.ବି.) : ଋଣଗ୍ରସ୍ତ, ଲଢେଇରେ ପରାସ୍ତ ହୋଇଥିବା ଜୀବିତ ଗଞ୍ଜା

**ପାଢୁଆ** - *ନ:ଗ:ମ:ଖୋ:* (ବିଂ.ବି.) : ବାକିରେ କ୍ରୟକରି ଦେବିଦେବି ବୋଲି କହି ଯିଏ ଟଙ୍କା ଶୁଝିନଥାଏ, ଠକ, ଶଠ, ଅଳସୁଆ, କରଜ ସୁଝୁନଥିବା ଲୋକ

**ପାଣ** - *ଦେ:କୋ:ନ:* (ବି.) : ନୀଚ ଅସ୍ପୃଶ୍ୟ ଜାତି ବିଶେଷ, ଦଳିତ ଜାତି ବିଶେଷ

**ପାଣଫରିପି** - *ଗ:* (ବି.) : ପାଣର ଠକ ବୃତ୍ତି

**ପାଣସା** - *ରା:* (ବି.) : ପଣସ

**ପାଣିଆଖିଆ** - *ଖୋ:ପଦ୍ୟ:* (ବି.) : ଏକ ପ୍ରକାର ମାଛ

**ପାଣିଓଦରି** - *ନ:* (ବି.) : ଦେହ ଫୁଲା ରୋଗ

**ପାଣିଓସଦ** - *ଖୋ:* (ବି.) : ଟନିକ୍

**ପାଣି କଖାରୁ** - *ଖୋ:କେ:ଦେ:* (ବି.) : ଏକ ପ୍ରକାର କଖାରୁ, କଖାରୁ ଜାତୀୟ ଖାଦ୍ୟ ଫଳ, ଜଳର ଗଭୀରତାକୁ ମାପିବା

**ପାଣିକଣ୍ଡ** - *ଗ:* (ବି.) : ପାଣି ମାଠିଆ

**ପାଣି କଦଳୀ** - *ନ:* (ବି.) : ପୋଖରିରେ ଥିବା ଏକ ଫଳ, ତା'ର ଫୁଲ ନେଳି ରଙ୍ଗ।

**ପାଣିକଳ** - *ଦେ:* (ବି.) : ଦମକଳ

**ପାଣିକାଚ** - *ଗ:* (ବି.) : ସ୍ତ୍ରୀଙ୍କ ଚୂଡ଼ି

**ପାଣିକି ପକାଇବା** - *ଦେ:* (କ୍ରି.) : ବୃଥାବ୍ୟୟ କରିବା, ଅପାତ୍ରରେ ଧନ ଦେବା

**ପାଣିକୁଆ** - *କ:ଜ:ଖୋ:* (ବି.) : ପାଣିରେ ବୁଡ଼ି ମାଛ ଧରୁଥିବା କୁଆ, ଏପଟ କଥା ସେପଟେ କହୁଥିବା ଲୋକ,

ପାଣିପକ୍ଷୀ, ପାଣିରେ ବୁଡ଼ି ମାଛ ଖାଉଥିବା ଏକ ପ୍ରକାର ପକ୍ଷୀ

**ପାଣିକେନ୍ଦୁଳି** - *ପଦ୍ୟ:* (ବି.) ପାଣି କିଆରିରେ ଜନ୍ମୁଥିବା ଗଛ ବିଶେଷ

**ପାଣିଖମ୍ବ** - *ଗ:* (ବି.) : ଚାଳ ଘରର ମୁଖ୍ୟ ଖମ୍ବ, ପାଣିଖୁଣ୍ଟି

**ପାଣିଖରା** - *ଗ:ପଦ୍ୟ:* (ବି.) : ବର୍ଷା ପରର ଟାଣଖରା

**ପାଣିଖିଆ** - *ଗ:* (ବି.) : ଚର୍ମରୋଗ

**ପାଣି ଗଡ଼ିବା** - *ଗ:* (କ୍ରି.) : ଗର୍ଭବାସ ହେବା

**ପାଣିଘାଟିଆ** - *ସଂ:* (ବିଂ.) : ଉଭୟ ଦଳ ସହ ସଂପୃକ୍ତ

**ପାଣିଚା** - *ନବ:* (ବିଂ.) : ଚାପରା, ପାଣିଚିଆ

**ପାଣିଚାର** - *ଭ:* (ବି.) : ଚାଳ ଘର ଉପରର ତଳ ଅଂଶ

**ପାଣିଛତର** - *ଦେ:* (ବି.) : ଜଳଛତ୍ର

**ପାଣିଛାଆ** - *ଗା:* (ବି.) : ବାଡୁଅ ସ୍ଥାନ

**ପାଣିଛୁଙ୍କ** - *ଗଦ୍ୟ:* (ବି.) : ସିଝା

**ପାଣି ଟେକିବା** - *ଗ:* (କ୍ରି.) : ଜଳ ତର୍ପଣ, ଠାକୁରଙ୍କୁ ଜଳ ପ୍ରଦାନ, ଅଭିଶାପ

**ପାଣିପଖା** - *କୋ:* (ବି.) : ପେଟର ପାର୍ଶ୍ୱବର୍ତ୍ତୀ ସ୍ଥାନ

**ପାଣି ପାଟୀ ଖୁଣ୍ଟ** - *ଦୌ:* (ବି.) : ଛାଉଣୀ ତଳଭାଗରେ ବ୍ୟବହୃତ ଖୁଣ୍ଟ

**ପାଣିପାତି** - *ନ:* (ବି.) : ଚାଳଛପରର ସଂପୂର୍ଣ୍ଣ ତଳ ବାଉଁଶ ଫାଳର ପାତ, ପାଣିପାତିଆ

**ପାଣିପାତ୍ରୀ** - *ଗ:* (ବି.) : ପିଣ୍ଡଦାନ ପ୍ରସଙ୍ଗ

**ପାଣିଫାଟ** - *ସୁ:* (ବିଂ.) : ବ୍ୟକ୍ତିତ୍ୱ ବିହୀନ, ଯେଉଁ ବ୍ୟକ୍ତିର ଉପସ୍ଥିତି ଓ ମତାମତ ଗୁରୁତ୍ୱହୀନ

**ପାଣିବାଟ** - *ଗଞ୍ଜ:ଦେ:କୋ:* (ବି.) : ଅଭ୍ୟସ୍ତ ପଥ, ନଦୀ ଓ ପୋଖରୀର ଗାଧୁଆଘାଟ ନିକଟକୁ ଯିବାର ରାସ୍ତା, ଅଭ୍ୟସ୍ତ ରାସ୍ତା

**ପାଣିବିରାଡ଼ି** - *ଦେ:* (ବି.) : ଓଧ

**ପାଣିମଣ୍ଡା** - *ଦୌ:* (ବି.) : କଞ୍ଚା ତିଆରି ମଣ୍ଡା

**ପାଣିମିଲା** - *ଦେ:* (ବି.) : ପଶାଦି କାର୍ଯ୍ୟକୁ ଲୁଗାଦି ବେଭାର ନେଇଯିବା

**ପାଣିଶାଗ** - *କଣ:* (ବି.) : ସୁନୁସୁନିଆ ଶାଗ

**ପାଣିସବୁଳା** - *ଛ:* (ବି.) : ପାଣିପରିବା ତରକାରି

**ପାଣିସାଜ** - *ମା:* (ବି.) : ଅର୍ଜ୍ଜୁନ ଗଛ

**ପାଣୁଆ ଗୁଣ୍ଡି** - *ଭ:* (ବି.) : ଏକ ପ୍ରକାର ନିଶାଦ୍ରବ୍ୟ

**ପାଣ୍ଡା** - *ଗଞ୍ଜ:ଗ:* (ବି.) ଫସଲ, କୌଶଳରେ, ଜାଲରେ ପକାଇବା

**ପାଣ୍ଠି** - *ନ:ଯା:ବା:* (ବି.) : ଗଦାକରିବା, ଜମା କରିବା; ମୂଳଧନ, ପୁଞ୍ଜି, ଦଉଡି ନିର୍ମିତ ଜିନିଷ, ପାଣ୍ଠିରେ ଧାନ ବିଡାକୁ କଷି କରି ବାନ୍ଧିବା

**ପାଣ୍ଡକା** - *ମା:* (ବି.) : ପଥର

**ପାଣ୍ଡରା** - *ଅ:କୋ:ନବ:* (ବିଂ.) : କହରା, ଧୂସରିଆ, ଗୋରା, ପାଣ୍ଡୁର ବର୍ଣ୍ଣ, ପାଉଁଶିଆ

**ପାଣ୍ଡରି** - *ମା:* (ବି.) : ଧୂସର, ଧଳା

**ପାଣ୍ଡା** - *ଦେ:ମା:* (ବି.ବିଂ.) ବିଫଳ ମନୋରଥ୍, ପାଉଁଶିଆ, ବୋକା

**ପାଣ୍ଡି** - *ଗଦ୍ୟ:* (କ୍ରି.) : ଚାଲ

**ପାଣ୍ଡିଆ** - *ଦେ:କଳା:ନ:* (ବି.) : ଜଂଘ, ଏକ ପ୍ରକାର ଜଳଚର ପକ୍ଷୀ, ଆରଣ୍ୟକ ବ୍ରାହ୍ମଣଂକ କୌଳିକ ଉପନାମ, ପାଣ୍ଡୁର ବର୍ଣ୍ଣର ଗାଈ, ବଳଦ

**ପାଣ୍ଡୁ** - *ଗଦ୍ୟ:ଗଜ:କୋ:ଅ:* (ବି.) : ପର୍ବ, ମକର ସଂକ୍ରାନ୍ତି, ଭାଲିଆ ଗଛର ଦୋରୁଅଯୁକ୍ତ ଫଳ, ପୌଷମାସର ପର୍ବ

**ପାଣ୍ଡୁଗୁ** - *କୋ:* (ବି.) : ମକର ସଂକ୍ରାନ୍ତି ପର୍ବ

**ପାଣ୍ଡୁସିରି** - *ରା:* (ବି.) : ନଦୀର ବାଲିଗରଡ଼ା ମାଛ

**ପାଣ୍ଡେ** - *କଳା:ଦେ:* (ବି.) ବ୍ରାହ୍ମଣ ଓ କେଉଟମାନଙ୍କ କୌଳିକ ଉପନାମ

**ପାଣ୍ଡୋଇ** - *ଗଦ୍ୟ:* (ବି.) : କୋତା

**ପାତ** - *ଅ:* (ବି.) : ବ୍ଲେଡ ଜାତୀୟ ପତଳା ଲୁହା ପାତିଆ

**ପାତ୍‌ନି** - *ଚ୍ୱ:* (ବି.) : ଦରି, ସପ ଇତ୍ୟାଦି, ଯାହା ଯାତ୍ରା ସମୟରେ ଲୋକେ ବସିବା ପାଇଁ ବ୍ୟବହାର କରନ୍ତି

**ପାତ୍‌ଲି** - *ନବ:ବ:ସ:ସୁବ:* (ବି.ବିଂ.) : ଛୋଟ ମାଟିହାଣ୍ଡି, ବଡ଼ ସରା

**ପାତ୍‌ଲିଆ** - *କଳା:* (ବିଂ.) : ପତଲା ଭାବରେ

**ପାତନା** - *ଚ୍ୱ:* (ବି.) : ଧାନକୁ ପାଣିରେ ଭିଜାଇବା ପାଇଁ ମାଟି ନିର୍ମିତ ପାତନା କୁମ୍ଭାର ଦ୍ୱାରା ପ୍ରସ୍ତୁତ ହୁଏ

**ପାତଲ୍‌ଘଟା** - *ଅନେ:* (ବି.) : ଟମାଟୋ

**ପାତଳା** - *ନ:* (ବିଂ.) : ସରୁ

**ପାତାଳଗରୁଡ଼** - *ଜ:କେ:* (ବି.) ଔଷଧୀୟଗୁଳ୍ମ, ବିଷ ନାଶକ ବୃକ୍ଷ

**ପାତି** - *ଅନେ:* (ବି.) : ନିରର୍ଥକ, ନାଲିମୁହାଁ ମାଙ୍କଡ଼, ବାଉଁଶର ସରୁ ଚୋପା, ନଡିଆର ସରୁ ଖଣ୍ଡ, ଲାଲମୁହଁ ଓ ଛୋଟ ଲାଂଜ ବିଶିଷ୍ଟ ମାଂକଡ, ପାତ

**ପାତିଆ** - *ଅନେ:* (ବିଂ.ବି.) ସଂପୃକ୍ତ କାର୍ଯ୍ୟରେ ବ୍ୟବହୃତ ଯନ୍ତ୍ର, ବାଉଁଶ ପାତିଆ, ଅତିପାତଳ, ପାତ, ପତଳା, ମୁନିଆ ଏବଂ ଅଣଓସାରିଆ ଦ୍ରବ୍ୟ

**ପାତିଗଢ଼ି** - *ମ:* (ବି.) : ଶିଳପୁତା

**ପାତିଚୋର** - *ଦେ:* (ବି.) : ଠାଉକାଚୋର

**ପାତି ପତ୍ର** - *ପଦ୍ୟ:* (ବି.) : ବିବାହ ଦିନ ସ୍ଥିର କରିବା ପାଇଁ ମଙ୍ଗଳ ଅନୁଷ୍ଠାନ

**ପାତିବା** - *ପଦ୍ୟ:ଇ:ନ:କଳା:* (କ୍ରି.) : ଡେରିବା, ହାତପାତିବା, ଶେଯ ପାତିବା, ବିଛେଇବା, ବାଉଁଶ ପାତିକୁ ପତଳାକରି ବୁଣିବା(ଟାଞ୍ଚରା ଇତ୍ୟାଦି)

**ପାତିରା** - *ଗଦ୍ୟ:* (ବି.) : ଅଟା,ଘିଅ,ଚିନିରେ ତିଆରି ବଡ଼ ଚକି ପରି ଖାଦ୍ୟ

**ପାତିଶ** - *ଜ:* (କ୍ରି.) : ହାତପାତିବା

**ପାତୁ** - *ଗ:* (ବିଂ.) : ଠକ

**ପାତୁଲ** - *ବଉ:* (ବି.) : ମାଟିପାତ୍ର ବିଶେଷ, ଘଲମ

**ପାତେଳୀ** - *କେ:* (ବିଂ.) : ପତଳୀ

**ପାତ୍ତା** - *ଗ:* (ବି.) : ଜମିର ପଟା

**ପାଦ୍‌ଭାରି** - *ସୁବ:* (ବି.) : ଗର୍ଭିଣୀ ହେବା

**ପାଦ୍‌ରାମାଛ** - *ଗ:* (ବି.) : ବାଲେଶ୍ୱରରେ ଏହାକୁ ପାଣିଆଁଖିଆ ମାଛ କୁହାଯାଏ।ଏହା ଏକ ସାମୁଦ୍ରିକ ମାଛ।ମଧୁର ଜଳରେ ବି ଏକପ୍ରକାର ପାଣିଆଁଖିଆ ରହନ୍ତି, ସେମାନଙ୍କୁ ପାଦ୍‌ରା କୁହାଯାଏ ନାହିଁ

**ପାଦାଡ଼ି** - *ସୁବ:* (ବି.) : ବେଶୀ ଦିନ ହଳ କରିବା କାରଣରୁବଳଦ ପାଦ ଘୋରି ହେବା କାରଣରୁ ଚାଲି ନ ପାରି ଛୋଟେଇବା

**ପାଦୁକ** - *ଜ:ନ:ମ:କ:* (ବି.) : ଚରଣାମୃତ, ଦେବତାଙ୍କ ପାଦଜଳ, ଶିବମନ୍ଦିରର ପାଦୋଦକ

**ପାଦ୍ରୀ** - *ଗଜ:* (ବି.) : ଖ୍ରୀଷ୍ଟିୟାନ୍

**ପାଧା** - *ଗ:* (ବି.) : ମୂର୍ଖ, ଅଳସୁଆ, ଅଧିଆ ପଡ଼ିବା, ବିବାହରେ ଶଳା ପାଦ ଧୋଇବା ବିଧି

**ପାନ** - *ଦେ:କଳା:ସୁ:* (ବି.ବିଂ.) : ଗଛର ପତ୍ର, ଜଳ, ପାଣି, ପାନ, ତାମ୍ବୁଳ

**ପାନ୍‌ଚିଆ** - *ବୌ:* (ବିଂ.) : ପାଣିଚିଆ

**ପାନ୍‌ନର୍** - *କଳା:* (ବି.) : ପାର୍ଟନର୍, ସାଂଗ୍, ସହଭାଗୀ

**ପାନ୍‌ପତ୍‌ରୀ** - *କଳା:ବୌ:* (ବି.) : ପାନପତ୍ର ଆକାରର ରୂପା ଅଳଙ୍କାର, ରୂପାର ପାନ ପତ୍ରାକାର ଖୋଷା ଅଳଙ୍କାର, ସୁନା କଣ୍ଠିଲଗା ପୋହଳାର ମାଳି

**ପାନ୍‌ପେଡ଼ି** - *ସ:* (ବି.) : ପାନ୍ ବଟୁଆ

**ପାନ୍‌ବା** - *କଳା:* (କ୍ରି.) : ପାନିବା, ସଂପ୍ରସାରିତ ହେବା, ଅଧିକ ଲମ୍ବ ହେବା

**ପାନକଣ୍ଠା** - *ଗ:* (ବି.) : ନାରୀ ମସ୍ତକର ଅଳଙ୍କାର ବିଶେଷ

**ପାନକା** - *ଗଜ:* (ବି.) : ଧାନଢ଼ୋଲି

**ପାନଖିଲ** - *ପଦ୍ୟ:* (ବି.) : ମଙ୍ଗଳ ଗୀତ, ଭଙ୍ଗାପାନ

**ପାନ ଚୁପା** - *ପଦ୍ୟ:* (ବି.) : ବେତବୁଣା ଛୋଟ ଟୋକେଇ

**ପାନତୁଆ** - *ଗଦ୍ୟ:ଦେ:* (ବି.) ଲାଲ ମୋହନ, ଗୋଲାପ ଜାମୁ ନାମକ ମିଷ୍ଟାନ୍ନ

**ପାନଥୁକ** - *ବୌ:* (ବି.) : ପାନପିକ

**ପାନପତର** - *ଗଜ:* (ବି.) : ମଥାମଣି

**ପାନପତରି** - *କେ:* (ବି.) : ନାକ ଫୁଲ

**ପାନପତ୍ର** - *କେନ୍ଦୁ:* (ବି.) : ରୂପାର ଅଳଙ୍କାର, ସୂତାରେ ଗୁନ୍ଥି ବେକରେ ପିନ୍ଧାଯାଏ

**ପାନପୁହା** - *ଚ୍ଚା:* (ବି.) : ଦୁଇଟି ପାନ ପତ୍ରଥାଇ ଯେଉଁ ପାନଗଛକୁ ପୋତାଯାଏ, ପାନପାହି

**ପାନବରଜ** - *ସଂ:* (ବି.) : ପାନଚାଷ କ୍ଷେତ

**ପାନଭାଟି** - *ଚ୍ଚା:* (ବି.) : 'ପାନଭାଟି' ରେ ନିର୍ଦ୍ଦିଷ୍ଟ ଉତ୍ତାପରେ ପାନ ଗୁଡ଼ିକୁ ରଖାଯାଏ

**ପାନରା** - *ସୁବ:ଦେ:ସଂ:ନ:* (ବି.) : ପାନଚାଷ କରୁଥିବା ଜାତି ବିଶେଷ, ପାନ ବ୍ୟବସାୟୀ

**ପାନସି** - *ଚ୍ଚା:* (ବି.) : ଏକ ପ୍ରକାର ପାଲଟଣା ଡଂଗା

**ପାନା** - *ସୁ:ସୁବ:କଣ:* (ବି.) : ନଟ୍ କଷିବା ଉପକରଣ, ଖୁଅର ହେବା ବ୍ଲେଡ୍, ଖଲିପତ୍ର, ଏକ ଗ୍ରହରତ୍ନ

**ପାନିଆ** - *ଖୋ:ନୂ:ଦେ:ଗ:* (ବି.) ମୁଣ୍ଡ ବାଳକୁ ସଜାଇବା ପାଇଁ ବ୍ୟବହାର କରାଯାଉଥିବା ଯନ୍ତ୍ର, ଏକ ପ୍ରକାର ମାଛ(ବୁଦ୍ଧିହୀନ ମାଛ), କଙ୍କତିକା, ଚିରିଣୀ, ହାତବୁଣା ତନ୍ତର ଅଂଶବିଶେଷ

**ପାନିଆଳି** - *ଯା:* (ବି.) : ଏକପ୍ରକାର କବାଟ

**ପାନିକୀ** - *କ:* (ବି.) : ବର ଯିବାପାଇଁ ସୁସଜ୍ଜିତ ବିମାନ

**ପାନି ବଢ଼ିଲା** - *ମା:* (ବି.) : ବନ୍ୟା

**ପାନିବା** - *କଳା:* (କ୍ରି.) : ପାନବା, ସଂପ୍ରସାରିତ ହେବା, ଅଧିକ ଲମ୍ବ ହେବା

**ପାନିଶାଗ** - *କଣ:* (ବି.) : ସୁନୁସୁନିଆ ଶାଗ

**ପାନୁ** - *ଅନେ:* (ବି.) : ଟିକସ, କର, ସରକାରୀ ଦେୟ, ଖଜଣା, ଏକ ପ୍ରଜାତିର ଚିଙ୍ଗୁଡ଼ି

**ପାନେ** - *ଗ:* (ବି.) : ଏକ ପାନ ପରିମିତ ଔଷଧ, ଔଷଧର ଅନୁପାନ

**ପାନେ ଦେବା** - *ନୂ:ଯା:କେ:* (କ୍ରି.) ମାଡ଼ଦେବା, ପ୍ରତିଶୋଧ ନେବା, ଉଚିତ୍ ଶାସ୍ତିଦେବା

**ପାନ୍ଦାଳ** - *ମ:ଚ୍ଚା:* (ବି.) : ଘର ପଛପଟ ବାଡ଼ି, ଘରଚାଳର ତଳ ଅଂଶ

**ପାପ୍‌ଦସିଆ** - *ବୌ:* (ବି.) : ହୀନ କପାଳିଆ

**ପାପ୍‌ପୁନ୍** - *କଣ:* (ବି.) : ପାପପୁଣ୍ୟ

**ପାପ୍‌ଲିବା** - *କଳା:ସୁ:* (କ୍ରି.) : ଦରାଣ୍ଡିବା, ଖୋଜିବା, ପାକୁଳ ମାରିବା

**ପାପକାରିଆ** - *ଗଜ:* (ବି.) : ବୁଲାନ୍ତି ବଳଦ

**ପାପଛ** - *ନ:* (ବି.) : ପାଦ ପୋଛିବା ସପ, ଦ୍ରବ୍ୟ, ପାପୋଛ

**ପାପରା** - *ଅ:* (ବିଂ.) : ଜୀର୍ଣ୍ଣ

**ପାପଳହାଡିଆ କରିବା** - *କୋ:* (କ୍ରି.) ଫୁସୁଲେଇବା, ମନେଇବା, ହାତ କରିବା

**ପାପିଆ** - *ଗଦ୍ୟ:* (ବି.) : ଏକ ଚଢେଇ

**ପାପୁସରିଆ** - *ଗ:* (ବି.) : କ୍ରମଶଃ ଗଡ଼ାଣିଆ

**ପାପେଡ଼ଣ୍ଡେ** - *କଣ:* (ଅ.) : ବହୁତ କଷ୍ଟରେ

**ପାବ୍ଲି** - *ବୌ:* (ବିଂ.) : ଲଣ୍ଡା ପାହାଡ଼

**ପାବାର** - *କନ୍ଧ:* (ବି.) : ପାୱାର, କ୍ଷମତା

**ପାବିଲି** - *ଅ:* (ବି.) : ଛୋଟ ପାହାଡ଼

**ପା'ଭାଗ** - *ଗ:* (ବି.) : ଘରର ବାରଣ୍ଡା, ଘର ବାରଣ୍ଡା ତଳର ଛୋଟପିଣ୍ଡା, ଚଉଠ

**ପାମନ** - *ଦେ:* (ବି.) : କାଛୁରୋଗ

**ପାମ୍ପଡ଼** - *ନ:* (ବି.) : ଏକ ଖାଦ୍ୟଦ୍ରବ୍ୟ, ବିରିଚୁନାରେ ପ୍ରସ୍ତୁତ କୁଡୁମୁଡ଼ିଆ ଛଣା ଖାଦ୍ୟ

**ପାମ୍ପଲେଟ୍** - *ଖୋ:* (ବି.) : ଚାନ୍ଦିମାଛ

**ପାମ୍ପଲେଇବା** - *ଅ:* (ବି.) : ତେଲେଇକରି କଥା କହିବା

**ପାମ୍ପୁନକା** - *ନବ:* (ବି.) : ପବନ ଦେବା ଯନ୍ତ୍ର

**ପାୟକାଙ୍କୀ** - *ଚ:* (ବିଂ.) : ପାଇକମାନଙ୍କ ପାଇଁ ଉଦ୍ଦିଷ୍ଟ

**ପାୟସ** - *ଖୋ:* (ବି.) : ଖିରି

**ପାୟା** - *ଗଦ୍ୟ:ଦେ:* (ବି.) : ଖମ୍ବ, ଖୁଣ୍ଟି, ଚୌକି ଆଦିର ଗୋଡ଼, ପଦବୀ

**ପାର** - *ଅନେ:* (ବି.) : ବିଛାଅ, ନାମବିଶେଷ, ବାଦ୍ୟର ତାଳ, ବେଦାର ମାଛ ବାହାର କରିବା ରାସ୍ତାକୁ ଖୋଳିବା ଛୁ, ପଳାୟିତ, ପରିତ୍ରାଣ

**ପାରକା** - *ଗଜ:ନବ:ରା:* (ବି.) : ଅଣାର ଅଧା, ପୁରୁଣା ଦି ପଇସା, ପଇସା

**ପାରଖାଉ** - *ସୁବ:* (ବିଂ.) ସ୍ୱାବଲମ୍ବୀ, ଗାଳିବାଚକ ଭାବେ ବ୍ୟବହୃତ

**ପାରଚ** - *ଚ:* (ବି.) : ପକ୍ଷେ

**ପାରନ୍** - *ଚୌ:* (ବି.) : ବିଛଣା ଚାଦର

**ପାର ପାଇବା** - *ଦେ:* (କ୍ରି.) : ପରିତ୍ରାଣ ପାଇବା

**ପାରମିନି** - *ମ:* (ବି.) : ପାରିବି ନାହିଁ

**ପାରଯିବା** - *ଦେ:* (କ୍ରି.) ଜୀର୍ଣ୍ଣହେବା, ସହ୍ୟହେବା

**ପାରରୀଚନା** - *କଳା:* (ବି.) : ଝିରେଲ୍ ବା ଝିଲେର ଚଣା, ତିଆସି ଚଣା ସହିତ ହେଉଥିବା ସୋରିଷ ଆକାରର କଳା ଗୋଲା କାର ଚଣା

**ପାରସୁଆ** - *ଅ:* (ବି.) : ବାସିଶେଯ

**ପାରା** - *ଅନେ:* (ବି.) : କପୋତ ଜାତୀୟ ପକ୍ଷୀ, ପାରଦ, ପାରା ଚଢ଼େଇ

**ପାରାନେସୀ** - *ନ:* (ବି.) : ଏକ ଅଙ୍ଗବାତ

**ପାରାପତ** - *ଦେ:* (ବି.) : ଗୃହକପୋତ

**ପାରାବତମ୍** - *ସ:* (ବି.) : ଫଳସେଓ

**ପାରିଆ** - *ଚୌ:ବା:ମ:* (ବି.) : ଚାଳଘର (ଛାଉଣୀ)ର ମଝିଭାଗ, ପାରା, କାଛରୁ ଖୁଣ୍ଟକୁ ସଂଯୋଗ ପାଇଁ ଯେଉଁ କାଠ ଲାଗେ, ଜଳେଶ୍ୱର ଅଞ୍ଚଳରେ ତାହାକୁ ଭରା କହନ୍ତି

**ପାରିଖୀ** - *ନ:* (ବିଂ.) : ଯେଉଁ ସ୍ତ୍ରୀ ବେଶୀ ଧୂର୍ତ୍ତା, ଚତୁରୀ

**ପାରିଜାତ** - *ନୁ:* (ବି.) : ଏକ ପ୍ରକାର ଧାନ, ସ୍ୱର୍ଗର ଫୁଲ

**ପାରିବା** - *ଅନେ:* (କ୍ରି.) ବିଛାଇବା, ପକାଇବା, ପ୍ରସବ କରିବା,

ଅଣ୍ଟାଦେବା, ସମର୍ଥ ହେବା, ତୋଳିବା, ଶେଯ, ଡିମ୍ବପାରିବା, ତୋଳିବା, କ୍ଷମ ହେବା, ଜୟକରିବା

**ପାରିବାର** - *ନ:ନବ:* (ବିଂ.) : ସମର୍ଥ, କାର୍ଯ୍ୟ କରିବାର ଦକ୍ଷତା, ବଳୁଆ (ବ୍ୟକ୍ତି)

**ପାରୁ** - *ବର:କୋ:ଦେ:ନ:* (ବି.ବିଂ.) : ବାଉଁଶ କାଠିକୁ ଗୋଲାକାର ଓ ଚିକ୍‌କଣ କରିବା ପାଇଁ ଘସିଲେ ଯାହା ଅଲଗା ହୋଇଥାଏ, ନିର୍ଯ୍ୟାସ ଶୂନ୍ୟ, ଅନ୍ତଃସାର ଶୂନ୍ୟ, ଶକ୍ତି, ସାମର୍ଥ୍ୟ, ଚେଷ୍ଟା, ଅସାର ଅଂଶ

**ପାରୁଅ** - *ଦେ:ନବ:* (ବି.) : ପାରାବତ, ପାରା

**ପାରୁଆଁ** - *ନ:* (ବିଂ.) : ପୁରୁଣା ହୋଇଯିବା

**ପାରୁଉଠିବା** - *ନ:* (କ୍ରି.) କତାଳିଆ, ଖଦଡ଼ିଆହେବା, ଶେଷାଂଶ ରହିବା

**ପାରୁକା** - *ଚା:* (ବିଂ.) : ପାରଗ

**ପାରୁଗୁ** - *ଅ:ଗଜ:* (ବି.) : ମର୍ଯ୍ୟାଦା, ମହତ୍ତ୍ୱ

**ପାରୁପର୍ଯ୍ୟନ୍ତ** - *ନ:ଦେ:ଗଜ:ଖୋ:* (ଅ.କ୍ରି.ବିଂ.): ଶେଷ ପର୍ଯ୍ୟନ୍ତ, ସମସ୍ତ ଶକ୍ତିଦେଇ, ଶକ୍ତିଥିବା ପର୍ଯ୍ୟନ୍ତ

**ପାରୁଶ** - *ଗଜ:ଢ:* (ବି.) ମନ୍ଦିରରେ ଅଭ୍ୟାଗତ ନିମିତ୍ତ ଭୋଜନ, ଭାଗ, ପାର୍ଶ୍ୱ

**ପାରୁସୁଆ** - *ନ:* (ବି.) : ରାତ୍ରିରେ ଶୋଇଥିବା ବସ୍ତ୍ର, ଶେଯ, ବାସିଶେଯ

**ପାରେ** - *କଳା:ନୂ:ବୌ:* (ଅ.ବିଂ.) : ପାଇଁ

**ପାରେଇଚାଳି** - *ଖୋ:* (ବି.) : ଏକ ପ୍ରକାର ମାଛ

**ପାରେଖୀ** - *ନ:ବ:* (ବିଂ.) : ସ୍ୱାର୍ଥସର୍ବସ୍ୱା, ଈର୍ଷା ପରାୟଣା ନାରୀ, ଚତୁରୀ, ଧୂର୍ତ୍ତା

**ପାରେଣା** - *ଖୋ:* (କ୍ରି.) : ଓପାସ କରିବା

**ପାରେଧି** - *କଳା:* (ବି.) : ମୃଗୟା, ପଶୁ ଶିକାର

**ପାର୍ଜା** - *ଚା:* (ବି.) : ପତଙ୍ଗ ପରି ପାନ ଖାଉଥିବା ପୋକ

**ପାର୍ଟା** - *ଗ:* (ବି.) : ଜମିର ପଟ୍ଟା ପାଉତି

**ପାର୍** - *ମା:କଳା:ପଦ୍ୟ:* (ବି.) : ବୁଦୁବୁଦୁକିଆ ଜଙ୍ଗଲ, ତାଳ, ପାହାର, ଥର

**ପାର୍‌କା** - *କୋ:* (ବି.) : ନିମ୍ନ ମୂଲ୍ୟ ସୂଚକ ମୁଦ୍ରା, ପୁରୁଣା ଦି'ପଇସା

**ପାର୍‌ଖା** - *ବୌ:ବ:* (ବି.) : ସମର୍ଥ ଲୋକ, ଯେ କରିପାରେ

**ପାର୍ ଛିଡ଼ାଇବା** - *ବ:* (କ୍ରି.) : ବାଦ୍ୟଯଂତ୍ରରେ ତାଳ ପଡ଼ିବା, ବାଦ୍ୟର ସମାପ୍ତି କରିବା

**ପାର୍‌ବାର୍** - *ସ:* (ବି.) : ପାରଗ ପଣିଆଁ

**ପାର୍ ରିଁ** - *ନୂ:* (ବିଂ.) : ବେଶୀ ଗୋରୀ

**ପାଲ** - *କୋ:ମ:ଦେ:ସୁବ:* (ବି.) : ବାଉଁଶ ନିର୍ମିତ ଶସ୍ୟ ରଖିବା ଆଧାର, ଫାଳ, ଅଖାରେ ତିଆରି ପରଦା, ଚାଷ ଜମି, ନଦୀ ପଠାର ଉର୍ବର ଜମି

**ପାଲ୍‌କା** - *କଣ:* (ବି.) : ଦାନ୍ତ

**ପାଲ୍‌ଗାଡ଼ି** - *କଳା:* (ବି.) : ଗୁଡ୍ର ଲାଗିଥିବା ଶଗଡ ଗାଡି

**ପାଲ୍‌ଟା** - *ଦେଶୀ* (ବିଂ.) : ପକ୍ଷ, ବଦଳ

**ପାଲ୍‌ଟି** - *ଗ.* (ବି.) : ବ୍ୟାୟାମର କ୍ରିୟା

**ପାଲ୍‌ଟିବା** - *କୋ.କଳା.ଗ.ନ.* (କ୍ରି.) : ଲୁଗା ବଦଳାଇବା, ଶରୀରକୁ ବଦଳେଇବା

**ପାଲ୍‌ପଡବା** - *କଳା.* (କ୍ରି.) : ଅଧିଆ ପଡ଼ିବା

**ପାଲ୍‌ବା** - *କଳା.* (କ୍ରି.) : ପାଳନ କରିବା, ପାଳିବା

**ପାଲକା** - *ଗଞ୍ଜ.ଅ.* (ବି.) : ଭାଗ

**ପାଲକାଇଲୁ** - *ଗଞ୍ଜ.* (ବି.) : ଚାଉଳ ଚୁନାରେ ନିର୍ମିତ ଏକପ୍ରକାର ପିଠା

**ପାଲଟକନ୍ୟା** - *ନ.* (ବି.) : ଉଭୟ ପକ୍ଷର ବରକନ୍ୟା ବଦଳହୋଇ ବିବାହ କରାଯିବା ବିଧି

**ପାଲଟା** - *ଦେ.ନ.ନବ.* (ବି.ବିଂ.) : ବଦଳ ହୋଇଥିବା, ପିନ୍ଧାସରିଥିବା ଲୁଗା (ବାସିଲୁଗା), ରାତି ବ୍ୟବହୃତ ଲୁଗା

**ପାଲଟା ବାଘ** - *ଗ.* (ବି.) : ତନ୍ତ୍ରଦ୍ୱାରା ମଣିଷ ବାଘରୂପ ନେବା

**ପାଲପୁ** - *କୋ.* (ବି.) : ଯୋତ ବା ବଳଦର ବେକକୁ ଶଗଡ଼ର ଜୁଆଳିରେ ବନ୍ଧାଯିବା ଦଉଡ଼ି

**ପାଲା** - *ଅନେ.* (ବି.) ସତ୍ୟପୀର ପୂଜା, ଉଚ୍ଚସ୍ୱରରେ କଳିକଜିଆ, ଗହଳି, ନିକିତି, ଓଜନ ଯନ୍ତ୍ର, ପାଲା ନାମକ ଲୋକ ନୃତ୍ୟ, ସତ୍ୟ ନାରାୟଣ ପୂଜା

**ପାଲାଗି** - *ଦେ.* (ବି.) : ଦଣ୍ଡବତ

**ପାଲାପାଲି** - *ନ.* (ବି.) କୁଶିକ୍ଷାଦେଇ, ବତାବତିକରି, ସଲାସୁତୁରାକରି, କୌଶଳ ସହକାରେ

**ପାଲାବ** - *ମ.* (କ୍ରି.) : ପଳାଇବି

**ପାଲା ଲଗେଇବା** - *କୋ.* (କ୍ରି.) : ପ୍ରଦର୍ଶନ କରିବା, କୌଣସି ସାଧାରଣ କାମରେ ସମୟ କାଟିବା, ଅନିଚ୍ଛାକୃତ କର୍ମରେ ଲିପ୍ତ ହେବା

**ପାଲି** - *ଅନେ.* (ବି.) : କୂଳ (ନଈକୂଳ), କଡ଼, ପାଖ, ପାଳି, ପର୍ଯ୍ୟାୟ, ଗାଁର ଉପନାମ ବିଶେଷ, ପଲ୍ଲୀ, ପଶା ଖେଳର ଛକ

**ପାଲିଆ** - *ଗ.ଗଞ୍ଜ.* (ବି.) : ଗଂଜାମରେ ବାସ କରୁଥିବା ଜାତିବିଶେଷ, ଜାତିବିଶେଷ

**ପାଲିଙ୍କେ** - *ଗଦ୍ୟ.* (ବି.) : କ୍ଷେତ

**ପାଲିସି** - *ଗ.ନ.* (ବି.) : ସୂତ୍ର, ଉପାୟ, ପଲିସ୍, ଚିକ୍କଣ କରିବା

**ପାଲୀ** - *ସୁବ.* (ବି.) ପଲ୍ଲୀ.ଚାଷଜମି ପାଖରେ ଗଢି ଉଠିଥିବା ବସତି

**ପାଲୁ** - *ଗଞ୍ଜ.ଗ.କୋ.ନବ.* (ବି.) କାଠକାମରେ ଆବଶ୍ୟକ ଯନ୍ତ୍ର, କାଠ ଚିକ୍କଣ କରିବା ଅସ୍ତ୍ର, ପାଳଗୁଣ୍ଡି, ପାଳୁଅ

**ପାଲୁମ୍ ପରମ୍** - *ଗଦ୍ୟ.* (ବି.) କ୍ଷୀର ଓ କଦଳୀର ମିଶ୍ରଣରୁ କଦଳୀ ବାଛି କନ୍ୟାକୁ ବର ଖୁଆଇ ଦେବା ବିଧି

**ପାଲେ** - *କଳା.* (ବି.) : ବଳରେ, ଆୟତ୍ତରେ

**ପାଲେରା** - *କ.* (ବି.) : କଣ୍ଟାମାଛ

**ପାଲେଁ ପଡ଼ିବା** - *ନୂ:* (କ୍ରି.) : ଅକ୍ତିଆର କରିବା, ପାଲରେ ପଡ଼ିବା

**ପାଲୋ** - *କଳା:* (ବି.) : ପାଲୁଅ

**ପାଳ** - *କେ:ଖୋ:ମ:ନ:* (ବି.) : ପରିବା ବିଲ, କୁଟା, ନଡ଼ା, ପାଲୁଅ, ବେଙ୍ଗଳାରେ ଧାନ ଝଡ଼ିବା ପରେ ଯେଉଁ ଅଂଶ ରହିଥାଏ

**ପାଳକ** - *ରା:ଗ:* (ବି.) : ଉତ୍ପାଦନ, ରକ୍ଷକ, ଶସ୍ୟର ପରିମାଣ

**ପାଳଗଦା** - *କ:* (ବି.) : ପାଳରେ ଗଦା

**ପାଳତୀ** - *ଗ:ଅ:* (ବି.ବିଂ.) : ରାଜାଙ୍କ ଦାସୀ ପୋଇଲୀ

**ପାଳଧୁଆ** - *କ:ଦେ:ନ:* (ବି.) କଣ୍ଟାଯୁକ୍ତ ହାଲକା କାଠଗଛ, ଏକପ୍ରକାର ଗଛ

**ପାଳନ୍ଦା** - *କ:* (ବି.) : ମାଟି ଆଧାର

**ପାଳବର** - *ନ:* (ବି.) : ପାଳ ଦଉଡ଼ି

**ପାଳଭୂତ** - *ଗ:* (ବି.) : କୃତ୍ରିମ ଭୂତ, ଫସଲ ଖେତରେ ଟଙ୍ଗାଯାଏ

**ପାଳି** - *ଗଜ:* (ବି.) : କଲମର ନିବ୍

**ପାଳିଆ** - *ନ:* (ବି.) : ପାଳି ଅନୁଯାୟୀ ଗାଁ ଜଗିବା, କାର୍ଯ୍ୟକରିବା, ପାଲାର ଗାୟକର ଗୀତକୁ ଯେ ଆବୃତ୍ତିକରେ

**ପାଳୁଅ** - *ଅନେ:* (ବି.ବିଂ.) : ପାଳୁ ନାମକ ଗଛର କନ୍ଦା, ଏକ ଜଂଗଲୀ ଚାଷରୁ ଉତ୍ପନ୍ନ

**ପାଶ କତୁରୀ** - *ଖୋ:* (ବି.) : ନଗି ପରି ପତଳା ବାଉଁଶରେ ବନ୍ଧା

**ପାଶା** - *ବା:ଦେ:* (ବି.) : କର୍ଣ୍ଣ ଅଳଙ୍କାର ବିଶେଷ, ନିକଟରେ

**ପାସଙ୍ଗ** - *ବା:ବୌ:ସୁବ:* (ବି.) : ତରାଜୁର କମ୍ ବେଶୀ ଥିଲେ, ଜାଲ, ପାଲ, ତୁଳାଦଣ୍ଡର ଦୁଇ ପାଖର ଆଧାର ପାତ୍ର

**ପାସଯିବା** - *ଢେ:* (କ୍ରି.) : ପରିଶ୍ରା ଯିବା

**ପାସହେବା** - *ଗ:* (କ୍ରି.) : ଉତ୍ତୀର୍ଣ୍ଣ ହେବା, ଅତିକ୍ରମ, ଅତିବାହିତ

**ପାସୁରା** - *ଅ:କ:* (ବିଂ.) ବିସ୍ମରଣ, ପାଶୋରିବା

**ପାହା** - *ଦେ:ବୌ:ସ:* (ବି.) : ପାହୁଣ୍ଡ, ପାଦ ଚିହ୍ନ, ପାଦ, ତଳିପାଦ

**ପାହାଚି** - *ଗଜ:* (ବି.) : ଜାତିବିଶେଷ

**ପାହାଡ଼ା** - *ଗ:* (କ୍ରି.) : ଦେବତାଙ୍କ ନିକଟରେ ଅଧିଆ ପଡ଼ିବା

**ପାହାଡିଆ ଗରାଖ** - *ଗ:* (ବି.) : ଶେଷ ଗରାଖ, ଲମ୍ପଟ, ଡେରିରେ ଆସିବା ଲୋକ

**ପାହା ପକାଇବା** - *ବୌ:* (କ୍ରି.) : ପାଦ ପକାଇବା

**ପାହାଭାରି** - *ସୁବ:* (ବି.) : ଗର୍ଭିଣୀ ହେବା

**ପାହାର** - *ଅନେ:* (କ୍ରି.) : ପିଟିବା, ମାଡ଼, ଆଘାତ, ଢିଙ୍କିମାଡ଼

**ପାହାରା** - *କଳା:* (କ୍ରି.) : ଜଗିବା

**ପାହାରେନ୍** - *କଳା:* (ବି.) : ପାହାରୁଣୀ, ପାହୁରାଣୀ

**ପାହାଲବା** - *ସୁ:* (ବି.) : କଡି ଧରିବା

**ପାହାଁ** - *କଳା:* (ବି.) : ପାହୁଣ୍ଡ, ପାଦ

**ପାହି** - *ବା:ଯା:ପୁ:ଭ:* (ବି.) : ସମୁଦ୍ରକୂଳବର୍ତ୍ତୀ ଅଞ୍ଚଳ, ଖେଳର ଅଞ୍ଚଳରେ ସୂଚିତ ମଧ୍ୟରେଖା, ଡୁଡୁ କବାଡ଼ି ଆଦି ଖେଳରେ ବିଭାଜିତ ରେଖା, କଟା ଧାନର ଧାଡ଼ି

**ପାହିଆ** - *ବା:ନ:କେନ୍ଦୁ:ବା:* (ବି.) : ପକକା ଘର ଖୁଣ୍ଟ, ଗୋଟିଏ ଧାଡ଼ି ଇଟା ମିସ୍ତ୍ରୀ ମସଲା ଦେଇ କାନ୍ଥରେ ସ୍ଥାପନ କରିବା, ମାଟିତିଆରି ଖୁଣ୍ଟ

**ପାହି ପାଞ୍ଜିଲି** - *ଗଦ୍ୟ:* (ବି.) : ସାଇ ପଡ଼ିଶା

**ପାହୁଆ** - *ଖୋ:* (ବିଂ.) : ଠକ

**ପାହୁଡ ପରା** - *ସଂ:* (କ୍ରି.) : ମାନସିକ କରି ଦେବୀଙ୍କ ସାମ୍ନାରେ ଶାଢୀପାରି ମୁଣ୍ଡିଆ ମାରିବା

**ପାହୁଡ଼** - *କେ:ଦେ:ନ:* (ବି.) : ଅଳଙ୍କାର ବିଶେଷ ପାଦରେ ପିନ୍ଧାଯାଏ, ପାଦର ଅଳଙ୍କାର

**ପାହୁରେଇବା** - *ଦେ:* (କ୍ରି.) : ଧୀରେଧୀରେ ଢିଙ୍କିରେ କୁଟିବା

**ପାହୁଲ** - *ପୁ:ଭ:ସଂ:କେ:* (ବି.) : ପାଦ, ଜନ୍ତୁ ମାନଙ୍କର ପଦଚିହ୍ନ

**ପାହୁଲା** - *ନ:ସଂ:ଗ:ଦେ:* (ବି.ବିଂ.) : ପାଦତଳ, ପୂର୍ବ କାଳରେ ଚଳୁଥିବା ପଇସା, ବାଘର ପାଦଚିହ୍ନ

**ପାହୁଁ** - *କେ:* (ବିଂ.) : ଚାଲାଖ, ଧୂର୍ତ୍ତ

**ପାହେରି** - *ଜଙ୍:* (ବି.) : ଚଲାବାଟ

**ପାହେଁ ପଡ଼ିବା** - *ସ:* (କ୍ରି.) : ଦଣ୍ଡବତ

**ପାହ୍ନିଆଁ** - *ବା:* (ବି.) : ପାନିଆଁ

**ପାହ୍ୟା** - *ନ:* (ବି.) : ସ୍ତର

**ପାଁକେଲ** - *ସୁବ:* (ବି.) : ପର୍ବତୀ ବୃକ୍ଷ, ବଙ୍ଗଳା-ପାଁକୁଡ଼

**ପାଁଖୁଲ** - *ମ:* (ବି.) : ପର

**ପାଁରୁଟି** - *ଦେ:କଳା:* (ବି.) : ପାଉଁରୁଟି

**ପାଁର୍ରୀ** - *ସୁବ:* (ବି.) : ପାଣ୍ଡୁର ଦେଖାଯିବା

**ପାଁହାଲ୍‌ବା** - *ନୁ:* (କ୍ରି.) : କଅଁଳିବା

**ପାଂଖୁ** - *ମ:* (ବି.) : ପର

**ପାଂଘୁଡ଼ି ହେବା** - *ଅ:* (କ୍ରି.) ଘୋଡ଼େଇହେବା

**ପା'ଞ୍ଜୁ** - *କୋ:* (ବି.) : ପାଉଞ୍ଜି

**ପା'ଟି** - *କୋ:* (ବି.) : ସରୁ ପାଉଞ୍ଜି

**ପିଅ** - *ଜଙ୍:* (ବି.) : ହଳଦୀବସନ୍ତ

**ପିଅନ** - *ଖୋ:* (ବି.) : ପିଆଦା

**ପିଆ ଛଡ଼େଇବା** - *ଗ:* (କ୍ରି.) : ବାଛୁରୀ ମା ଠାରୁ ଦୁଧ ପିଇବା ବନ୍ଦ କରିବା

**ପିଆଜି** - *ବୌ:* (ବି.) : ବେଶି ପିଆଜ ଦିଆ ବରା ଜାତୀୟ ଖାଦ୍ୟ

**ପିଆଣ** - *ଅ:ପା:ଭ:* (ବି.) : ମାଟି ତିଆରି ହାଣ୍ଡିର ଢାଙ୍କୁଣୀ, ମାଟିନିର୍ମିତ ପାତ୍ରବିଶେଷ, ମାଟି ତିଆରି ହାଣ୍ଡିର ଢାଙ୍କୁଣୀ

**ପିଆଦା** - *ପା:କେ:ସଂ:* (ବି.) : ଜମିଦାରଙ୍କ ଖବର ଦେବା ଲୋକ, ଚପରାସୀ, ପିଅନ

**ପିଆପାଇଟି** - *ଗ:* (ବି.) : ତରଳ ଧାତୁରେ ମୂର୍ତ୍ତି ଗଢିବା

**ପିଆରା** - *କେ:ଢ:ଦେ:* (ବି.ବିଂ.) : ପ୍ରିୟ, ପିଲୁଳି, ଆଦର

**ପିଆଳ** - *ଦେ:* (ବି.) : ପିଆଶାଳ

**ପିଆଁଲ୍** - *କଳା:* (ବି.) : ପାଳ

**ପିଇମା** - *କଳା:* (କ୍ରି.) : ପିଇବା

**ପିଇଶାଶୁ** - *ଦେ:* (ବି.) : ଶ୍ୱଶୁରଙ୍କ ଭଉଣୀ

**ପିଇସା** - *ଦେ:* (ବି.) : ପିତାଙ୍କର ଭିଣୋଇ

**ପିକ** - *ଗଜ:କଣ:* (ବି.) : କଉଡି ଖେଳରେ ବ୍ୟବହୃତ, କଅଁଳୁଥିବା ପତ୍ର, କୋଇଲି

**ପିକଦାନୀ** - *କ:* (ବି.) ପାନ ପିକ ପକାଇବାପାଇଁ ବ୍ୟବହୃତ ଧାତୁପାତ୍ର

**ପିକା** - *ଅନେ:* (ବି.) : ଶାଳପତ୍ରରେ ଧୂଆଁପତ୍ର ଭର୍ତ୍ତି କରାଯାଇଥିବା ବିଡ଼ି, କାହାଳୀ, ଧୂମ ପାନବିଶେଷ

**ପିକାବା** - *ସ:* (କ୍ରି.) : ପତ୍ର ପୁଣି କଅଁଳିବା

**ପିଗଣ୍ଡ** - *ଗ:* (ବି.) ବହୁ ପରିମାଣ, ଅପର୍ଯ୍ୟାପ୍ତ

**ପିଙ୍କା** - *କେ:ରା:* (ବି.) : ଧୂଆଁ ପତ୍ରରେ ନିର୍ମିତ ମୋଟା ବିଡ଼ି, ଧୂଆପତ୍ରର ବିଡ଼ି

**ପିଙ୍ଗନଳି** - *ବୌ:* (ବି.) : ବାଉଁଶ ତିଆରି ନଳି

**ପିଙ୍ଗୁଆ** - *କେନ୍ଦୁ:* (ବି.) : କହରା ରଙ୍ଗ

**ପିଚ୍‌କାରୀ** - *ନ:* (ବି.) ଦୂରକୁ ଜଳ ପକାଇବା (ଛିଦ୍ରଥିବା ଯନ୍ତ୍ରରେ)

**ପିଚ୍‌କିବା** - *ସୁ:କଳା:* (କ୍ରି.) : ସ୍ୱଭାବିକରୁ ଫୁଲିବା, ତରଳ ପଦାର୍ଥ ଛିଦ୍ର ଦେଇ ଜୋର୍‌ରେ ବାହାରିବା, କୌଣସି ଚାପଦ୍ୱାରା ଭିତରର ଜିନିଷ ପଦାକୁ ବାହାରି ଆସିବା

**ପିଚ୍‌ଣ୍ଡୁ** - *ବୌ:* (ବି.) : ପଳାତକ, ଯେ ଖସି ପଳାଏ

**ପିଚକିଳା** - *କ:* (ବି.) : ଇଷ ଓ ଲଙ୍ଗଳକୁ ଯାହା ଶକ୍ତକରି ଭିଡ଼ିଧରିବା ଖିଲ

**ପିଚକୁ** - *ସୁ:* (ବି.) : ଦଳଚ୍ୟୁତ

**ପିଚ ଚଢେଇ** - *କେନ୍ଦୁ:* (ବି.) : ହଳଦିଆ ରଙ୍ଗର ଚଢେଇ

**ପିଚରା** - *ସୁ:* (ବି.) : ଆଖି ଲେଞ୍ଜରା

**ପିଚା** - *ଗଜ:ଅ:ଗ:ନ:* (ବି.) : ନିତମ୍ବ, ଅଣ୍ଟା ତଳର ମାଂଶାଳ ଅଂଶ

**ପିଚିକା** - *ରା:* (ବି.) : ଅତିଛୋଟ ପିଲା

**ପିଚିରି ପିଚା** - *କଣ:* (ବି.) : ପାଣିବର୍ଷା

**ପିଚୋ** - *ସୁ:* (ବିଂ.) : ସାନ

**ପିଛୁଲିବା** - *ବର:ସୁବ:* (କ୍ରି.) ଚିକ୍‌ଣ କାରଣରୁ ହାତରୁ ଖସିଯିବା

**ପିଛୁଲିଯିବା** - *ସ:* (କ୍ରି.) : ପାଦ ଖସିଯିବା

**ପିଛଡ଼ା** - *ମ:* (ବି.) : ଲେନ୍ଦରା

**ପିଛାଡ଼ା** - *ଦେ:* (ବି.) : ନିମିଷେମାତ୍ର ସମୟ

**ପିଛାର** - *କଣ:* (ବି.) : ବାଡ଼ିପଟ ଅଗଣା

**ପିଛିଲା** - *ନ:* (ବିଂ.) : ପଛକାମ, ପଛୁଆ, ପଡ଼ିରହିଥିବା

**ପିଛୁଳାପିଛୁଳି** - *ନ:* (ବି.) : ଧୁଆଧୋଇ, ପାଣି ଦେଇ ସଫା କରିବା

**ପିଛୋଡ୍** - *ଅ:* (ବି.) : ଉତ୍ତରୀୟ

**ପିଜାସ** - *ଦେ:* (ବି.) : କାନଗଣ

**ପିଜୁ** - *କନ୍ଧ:* (ବି.) : ଖରା

**ପିଝଲି** - *ବର:* (କ୍ରି.) : ତରଳିଯିବା

**ପିଞ୍ଚିନି** - *ରା:ଗ:କୋ:* (ବି.) : ଅବସରକାଳୀନ ଭତ୍ତା, ଅବସର ଭତ୍ତା, ପେନ୍‌ସନ୍

**ପିଞ୍ଛୁଳା** - *ଗ:କୋ:* (ବି.) : ଅଇଁଠା ପାତ୍ର ଧୋଇବା

**ପିଠ** - *ନ:କ:ଖୋ:କୋ:* (ବି.) : ପିଠାକରିବା ବାଉଁଶପାତ୍ର, ଖଜୁରୀ ପତ୍ରର ଖଣ୍ଡ, ପୂର୍ବେ ଭାତ ରାନ୍ଧୁଥିବା ଝାଟି, ଭାତହାଣ୍ଡିର ଘୋଡ଼ଣି ଯାହା ବାଉଂଶ ପାତିଆରା ପ୍ରସ୍ତୁତ ହୋଇ, ପଖାଳ ଖାଇବା ପାଇଁ ମଧମ ଧରଣର ଖାଲୁଆ ପାତ୍ର, ମୟୂର ପୁଚ୍ଛ

**ପିଞ୍ଜରା** - *ସ:ଖୋ:* (ବି.) : ଶୁଆ ରହିବା ସ୍ଥାନ ପଞ୍ଜୁରୀ, ପକ୍ଷୀମାନଙ୍କୁ ରଖିବାପାଇଁ ଛୋଟଘର ଭଳି ଏକ ବସ୍ତୁ

**ପିଟ୍** - *କଳା:* (କ୍ରି.) : ପିଟିବା, ପିଟିବାକୁ କହିବା, ତାସ୍ ଖେଳର ଗଣ୍ଡା

**ପିଟ୍‌ନା** - *ନୂ:* (ବି.) : ଲମ୍ବା ଖୋଟର ରଜ୍ଜୁ

**ପିଟ୍‌ମି (ବି)** - *କଳା:* (କ୍ରି.) : ମାରିବି, ବାଡ଼େଇବି

**ପିଟଣା** - *ଗ:ବା:କେ:* (ବି.) : କମାରଙ୍କ ଅସ୍ତ୍ର, ଏକ କାଷ୍ଠନିର୍ମିତ ସାମଗ୍ରୀ, ଯେଉଁଥିରେ ମାଟିକୁ ପିଟି ସମତୁଲ କରାଯାଏ, ମୁଗୁର, କଷ୍ଟ ସହୁଥିବା ଲୋକ

**ପିଟନା** - *ସୁ:* (ବି.) : ଖପର, ହାଣ୍ଡିକୁ ପିଟିବା ବାଡ଼ି

**ପିଟା** - *ଗଦ୍ୟ:କଳା:ମା:* (ବି.କ୍ରି.) ମୋଟାରୁଟି, ପଡିଆ, ଢିପଢ଼ମି, ପିଟିବା, ବାଡେଇବା, ପିଠା

**ପିଠ୍‌ଗୁନା** - *ବର:* (କ୍ରି.) : ପିଠିରେ ବୋହିବା

**ପିଠ୍‌ଲୀ** - *ବୌ:* (ବି.) : ଖାଲି ଗୁଡ଼ର ପିଠା (ଗୁଡ଼ ପିଠା)

**ପିଠଉ** - *ଅନେ:* (ବି.କ୍ରି.) : ଚାଉଳ ଚୂନା, ଆଣ, ବିରିଚାଉଳ ବଟା, ଚାଉଳ ବତୁରାଇ ବାଟିଲେ ପିଠୋଉ ହୁଏ

**ପିଠାଗୁଣ୍ଡା** - *କନ୍ଧ:* (ବି.) : ପିପିଚୂନା

**ପିଠାଚୋରି** - *ବା:* (ବି.) : ବିବାହର ଛିଅ ଦିନରେ ପିଠାଚୋରି ଖେଳ ଅନୁଷ୍ଠିତ ହୁଏ

**ପିଠାପନା** - *ସ:* (ବି.) : ପିଠାପଣା

**ପିଠିଆ** - *ସୁ:* (ବି.) : ନିଜ ପର ଭାଇ

**ପିଠିଆଉଠିଆ** - *ନ:* (ବିଂ.) : ତଳଉପର ଜନ୍ମନେଇଥିବା ପିଲା ଦୁଇଟି

**ପିଠିଭାଇ** - *ବୌ:* (ବି.) : ସାନଭାଇ, ଅନୁଜ

**ପିଠିର** - *ନବ:* (ବିଂ.) : ସାନ, ପରର

**ପିଠେଇନେବା** - *ଯା:ପଦ୍ୟ:* (କ୍ରି.) ଚଳାଇନେବା, ସହିନେବା

**ପିଠେଇବା** - *ଢେ:* (କ୍ରି.) : ନଶୁଣିବା

**ପିଠୋଳ** - *ଗ:* (ବି.) : ଏକ ପ୍ରକାର ଖାଦ୍ୟ କନ୍ଦା

**ପିଡିପାଡିଆ** - *ରା:* (ବି.) : ପିଠା ବାହାର କରିବା ଚଟୁ, ପିଠାପାତିଆ

**ପିଢ଼ିଆ** - *ଗ:ନ:* (ବି.) : ଜମିରେ ଦେବା ସାର, ଖତସାର

**ପିଢ଼ିଆ ବଢ଼ି** - *କୋ:* (ବି.) ପିଢ଼ିଆରୁ ନିର୍ଗମିତ ଗୋଲାକାର ବା ଇସତ୍ ଚେପ୍‌ଟା ବଢ଼ି

**ପିଢ୍‌ଡ଼ା** - *ସୁବ:* (ବି.) : ଘର ଛାତ

**ପିଢୁ** - *କନ୍ଧ:* (ବି.) : ଓକିଲ

**ପିଢ଼ା** - *ଛ:କ:ନ:* (ବି.) : କାଠରେ ତିଆରି ଆସନ, ଚାଳପିଢ଼ା

**ପିଢ୍‌ହୀ** - *ସୁବ:* (ବି.) : ଫୁସ୍‌ଫୁସ୍

**ପିଣ୍ହା** - *ନୂ:ଝା:* (ବି.) : ପିଣ୍ଡା, ମାଟିର ବଡ଼ ବାରଣ୍ଡା, କାଠରେ ତିଆରି ପିଣ୍ଢା

**ପିଣି** - *କୋ:* (ଅ.) : ବୋଧହୁଏ, କୁଆଡ଼େ

**ପିଣ୍ଡ** - *ଛ:କେ:ସ:* (ବି.) ଶ୍ରାଦ୍ଧକର୍ମ, ତଣ୍ଡୁଳାଦି ତର୍ପଣ, ବିହନ, ଶରୀର, ଜୀବନ, ଶ୍ରାଦ୍ଧ, ତର୍ପଣ

**ପିଣ୍ଡରି** - *କଳା:* (ବି.) : ଆଣ୍ଠୁତଳକୁ ପେଣ୍ଡାର ପଛ ଭାଗରେ ଥିବା ମାଂସପେଶୀ

**ପିଣ୍ଡା** - *ଅନେ:* (ବି.) : ବାରଣ୍ଡା, ବସିବାପାଇଁ ନିର୍ମିତ ଉଚ୍ଚା ସ୍ଥାନ

**ପିଣ୍ଡା ଓଲୁ** - *ଯା:* (ବି.) : ନିର୍ବୋଧ

**ପିଣ୍ଡାଳୁ** - *ଅ:* (ବି.) : ଖମ୍ବଆଳୁ

**ପିଣ୍ଡି** - *ଗ:କୋ:ଢେ:ଗଦ୍ୟ:* (ବି.) : କ୍ଷୁଦ୍ର ବାରଣ୍ଡା, ଅଣଓସାରିଆ ପିଣ୍ଡା, ବସିବା ସ୍ଥାନ, ଉଚ୍ଚ ଜାଗା, ଏକ ପ୍ରକାର ଶାଗ

**ପିଣ୍ଡୀର** - *ପଦ୍ୟ:* (ବି.) : ଡାଳିମ୍ବ

**ପିତ୍‌କୁରା** - *ସ:ବୌ:* (ବି.) : ଏକ ପ୍ରକାର ଚର୍ମ ରୋଗ, ପିତ୍ତଜନିତ ଛୋଟ ଛୋଟ ଫୁଲ ଦାଗ

**ପିତ୍‌କୁରିଆ** - *ସୁ:ସ:* (ବିଂ.ବି.) : ପିତା ସ୍ୱାଦ, ପିତାଳିଆ ଲାଗିବା

**ପିତ୍‌ବାଲା** - *ସୁ:* (ବି.) : ଆଖିଝଲସାଇବା, ପିତ୍ତଳ ପରି ସ୍ୱାଦ

**ପିତ ଚଢିବା** - *ଗ:* (କ୍ରି.) : ମୁଣ୍ଡକୁ ରାଗ ଚଢ଼ିବା

**ପିତଲ୍** - *କଳା:* (ବି.) : ପିତ୍ତଳ

**ପିତଳକନ୍ଦା** - *ଗ:* (ବି.) : ଏକ ପ୍ରକାର ଖାଦ୍ୟ କନ୍ଦା

**ପିତଳ ଗରା** - *ଖୋ:* (ବି.) : ପିତଳ ଧାତୁରେ ନିର୍ମିତ ପାଣିପାତ୍ର

**ପିତାଗମା** - *ଗଦ୍ୟ:* (ବି.) : ପିତାଶାଗ

**ପିତାତରଢ଼ି** - *କ:* (ବି.) : ଜହ୍ନି ପରି ଦିଶୁଥିବା ପିତା ଫଳ

**ପିତାବଳୀ** - *ବୌ:* (ବି.) : ଗାଁଦେବତୀ

**ପିତାବଳୀପୂଜା** - *କନ୍ଧ:* (ବି.) : ଏକ ପ୍ରକାର ପୂଜା

**ପିତା ବୋଦକା** - *ଗଡ:* (ବି.) : ଲତା ବିଶେଷ

**ପିତାମାଛ** - *କଣ୍ଠ:* (ବି.) : କେରାଣ୍ଡିମାଛ

**ପିତାମାରୀ** - *ଗଦ୍ୟ:* (ବି.) ସମୁଦ୍ର ମୁହାଣରେ ଉଠୁଥିବା ଏକ ଗଛ

**ପିତାଶୁଣି** - *ଅ:କେ:ବୌ:* (ବି.) : ପିଚାଶୁଣି, ଡାହାଣୀ, ପିଲା ଜନ୍ମ ପରେ ମରିଥିବା-ପ୍ରେତାତ୍ମା, ଗ୍ରାମଦେବତୀ

**ପିତାହାଣ୍ଡି** - *ନ:* (ବି.) : ମୃତ୍ୟୁଖିଆ ୨ୟ ଦିବସରେ ପରିବାର ବର୍ଗ ଖାଇବା ତିକ୍ତାନ୍ନ

**ପିତୁକୁଳା** - *ଅ:* (ବିଂ.) : ପିତ୍ତଚଢ଼ି ଦେହ କୁଣ୍ଡେଇ ହେଇ ଫଳିଯିବା

**ପିତୁରୁଳି** - *ଛ:* (ବି.) : ପିତାଶାଗ

**ପିତୃପକ୍ଷ** - *ଗ:* (ବି.) : ଆଶ୍ୱିନ କୃଷ୍ଣପକ୍ଷ

**ପିତ୍ରପାଗୁଳିଆ** - *ନ:* (ବିଂ.) : ବିକୃତ ମସ୍ତିଷ୍କ, କଥା ଏପଟସେପଟ କରି କହୁଥିବା

**ପିଥୁ** - *ନୂ:କଳା:* (ବି.) : ଲୁପ୍ତପ୍ରାୟ ଏକଖେଳ, ପିଥୁ ନାମକ ଲୋକ ଖେଳ, ସାତ୍ ଖପ୍ରି ଖେଳ

**ପିଦେରି** - *କଣ୍ଠ:* (ବି.) : ପିତୃପୁରୁଷ

**ପିନ୍‌ଚିନି** - *କଳା:* (ବି.) : ପେନସନ୍, ଅବସର କାଳୀନ ଭତ୍ତା

**ପିନ୍‌ପିନି** - *ସ:* (ବିଂ.) : ପତଳା

**ପିନ୍ ମାରିବା** - *ସଂ:* (ବି.) : କଷ୍ଟକଥା କହିବା, ଉଷୁକେଇବା

**ପିନଛ** - *ବ:* (ବି.) : ନଡିଆ ପତ୍ରର ଶିରା

**ପିନା** - *କଳା:* (କ୍ରି.) : ପିଇବା

**ପିନାସ** - *ଗ:* (ବି.) : ନାସିକା ରନ୍ଧ୍ରର ଘା

**ପିନି** - *ବ:* (ଅ.) : ପରି, ସଦୃଶ

**ପିନ୍ଧନା** - *ସୁବ:* (ବି.) : ପିନ୍ଧିବା ବସ୍ତ୍ର, ଧୋତି ଶାଢ଼ୀ

**ପିନ୍ଧା** - *ନ:ଭା:* (ବିଂ.ବି.) : ପିନ୍ଧିବା (ବସ୍ତ୍ର), ପରିଧାନ, ଋଣପାଇଁ ଗଚ୍ଛିତ ସଂପତ୍ତି

**ପିନ୍ଧାଣ** - *ଗ:* (ବି.) : ପରିଧାନ

**ପିନ୍ଧାନି** - *ସ:ବର:ସୁବ:ଗଦ୍ୟ:* (ବି.) : ପିନ୍ଧାଣି, ନିର୍ବନ୍ଧ, ବିବାହ ପୂର୍ବରୁ କନ୍ୟା ପାତ୍ରୀକୁ ବରପାତ୍ର ପକ୍ଷରୁ ବସ୍ତ୍ର ଅଳଙ୍କାର ପ୍ରଦାନର ଆନୁଷ୍ଠାନିକ ପର୍ବ, ପରିଧାନ

**ପିନ୍ନିଆମ୍ମା** - *ଗଞ୍ଜ:* (ବି.) : ଖୁଡ଼ୀ ବା ମାଉସୀ

**ପିପ୍‌ରେମେଣ୍ଟ** - *ବୌ:* (ବି.) : ପାନ ମସଲା

**ପିପଲ୍** - *ସୁବ:ବର:କଳା:ସ:* (ବି.) : ଅଶ୍ୱତ୍ଥ ବୃକ୍ଷ, ପିପ୍‌ପଳ, ଓସ୍ତ

**ପିପି** - *ସୁବ:ନୂ:* (ବି.) : ପେଁକାଳି, ମୁହୁରୀ

**ପିପୁଲୁମାଝୁ** - *ନବ:* (ବି.) : ଚକଲେଟ

**ପିପେଇ** - *ଅ:* (ବି.) : କାଉଁରିଆ କାଠି

**ପିପେଲ୍‌ବାସ** - *ନୂ:* (ବି.) : ଏକ ପ୍ରକାର ଧାନ, ପିମ୍ପୁଡ଼ି ବାସ

**ପିମ୍ପ** - *ପଦ୍ୟ:* (ବି.) : ବେଶ୍ୟା ଚାଲାଣ କରୁଥିବା ଦଲାଲ୍, ଭାଡୁଆ

**ପିମ୍ପଳ** - *ମ:* (ବି.) : ପିମ୍ପୁଡ଼ି

**ପିମ୍ପା** - *ବ:ଅ:* (ବି.) ଡିବିରି, ଲ୍ୟାମ୍ପ, ସରୁନଳ, ବଡ଼ ଟିଣପାତ୍ର

**ପିମ୍ପୁରି** - *ଛ:* (ବି.) : ପିମ୍ପୁଡ଼ି, ଛୋଟ ନାଲି କୀଟ ବା ଚାଣ୍ଟି, ପିପୀଲିକା

**ପିମ୍ପେଇ** - *କେ:* (ବି.) : ନଳିତା କାଠି

**ପିୟୁ** - *ଗଦ୍ୟ:* (ବି.) : ମେଘ, ସୂର୍ଯ୍ୟ, ସମୟ

**ପିରି** - *ଅନେ:* (ଅ.ବି.) : ନଡ଼ା, ଭଳି, ପାଳ, ଧାନ ଗଛର ଅମଳ ପରେ ରହିଥିବା ଅଂଶ, ଏହା ଗୋଖାଦ୍ୟ ରୂପେ ବ୍ୟବହୃତ, ପରି, ପ୍ରାୟ ସମାନ, ନଡ଼ା, ସେହିପରି

**ପିରିକା** - *କେ:ଗ:* (ଅ.) : ସଦୃଶ, ପରିକା, ସେହିରୂପେ

**ପିରିଘର** - *ମା:* (ବି.) : ଚାଳଘର

**ପିରିଡା** - *କଣ:* (ବି.) ଚାଳଘରର ଉପରିଭାଗ

**ପିରିପିରା ଖାଇଯିବା** - *କେନ୍ଦୁ:* (ବି.) : କିଛିଦିନ ଲୁଗା ରହିବା ପରେ ଲୁଗାରେ ଟିକିଟିକି ହୋଇ କଣା ହେବା

**ପିରୁ** - *କଳା:* (ବି.) : ଭୂଲତା

**ପିରୁଆ** - *ସୁବ:* (ବି.) : ପିଡିଆ

**ପିରୁଇ୍** - *କଳା:ନୂ:ଅ:* (ବି.) : ଶହ ଶହ ସଂଖ୍ୟାରେ ଦଳବଦ୍ଧ ଭାବରେ ରହୁଥିବା ଚଟିଆ ଭଳି ପକ୍ଷୀ, ଫୁଲରୁ ରସ ଶୋଷଣ କରୁଥିବା ପକ୍ଷୀ, ଝାଉଁ ଗଛର ପତ୍ରର ଅଗରେ ଥିବା ସରୁସରୁ ଛୁଞ୍ଚିପରି ଅଂଶ

**ପିରେଣ୍** - *ମା:* (ବି.) : ସଢ

**ପିର୍‌ପିର୍** - *କଳା:* (ବିଂ.) : ଅନାବଶ୍ୟକ ଝଂଝାଳ, ପ୍ରପଞ୍ଚ

**ପିଲ** - *ସୁ:ବର:ସ:କଳା:* (ବି.ବିଂ.) : ଗଜା, ଛୋଟ ଛୁଆ, ଶାବକ, ମୂଳଗଛରୁ ସୃଷ୍ଟ ଅନ୍ୟ ଚାରାଗଛ

**ପିଲ୍‌କିବା** - *କଳା:* (କ୍ରି.) : କଅଁଳିବା

**ପିଲ୍‌ଖୁଟି** - *କଳା:* (ବି.) : ପଟୁଆରେ ଡେଣ୍ଡା ପାଟିକୁ ସଂଲଗ୍ନ କରୁଥିବା ଛୋଟ ବାଉଁଶ ବା କାଠର ଖୁଣ୍ଟି

**ପିଲ୍‌ବୁଠି** - *କଳା:* (ବିଂ.) : ବାଂଗରା, ବୁଟି, ଗେଡ଼ା

**ପିଲଟ୍** - *କଳା:* (ବି.) : ପ୍ଲେଟ, ଥାଳି, ଥାଳିଆ

**ପିଲବାଡ଼ି** - *ଗଞ:* (ବି.) : ଶିଶୁଙ୍କ ଖେଳ, କ୍ରିକେଟ୍ ପରି ଖେଳ

**ପିଲଣ ହାର୍‌ନି** - *କୋ:* (ବିଂ.) : ପ୍ରସୂତି, ପ୍ରସବ କରିଥିବା ସ୍ତ୍ରୀ

**ପିଲା** - *ନୂ:କଣ:କଳା:* (ବିଂ.ବି.) : ଶିଶୁ, ପୁଅ, ପୁତ୍ର, ବାଳକ,

**ପିଲା ଡୁଙ୍ଗୁରୀ**- *ନୂ:* (ବି.) : ଛୋଟ ଜଙ୍ଗଲ

**ପିଲାଣ୍ଡିଆ** - *କୋ:ଗ:* (ବିଂ.ବି.) : କମ ବୟସ୍କ, ବାଲ୍ୟସ୍ୱଭାବ

**ପିଲାଡି** - *ସୁ:ବ:ବୌ:ଗଦ୍ୟ:* (ବି.ବିଂ.) : ପ୍ରସୂତି, ସଦ୍ୟ ଶିଶୁ ଜନ୍ମ କରିଥିବା ସ୍ତ୍ରୀ

**ପିଲାପଞ୍ଝା** - *ଗଦ୍ୟ:* (ବି.) : ପିଲାମାନେ

**ପିଲା ପାଇବା** - *ନବ:ଗଞ:* (କ୍ରି.) : ପିଲା ଜନ୍ମ କରିବା, ସନ୍ତାନ ପ୍ରସବ କରିବା

**ପିଲାପିଚ୍‌କା** - *ସୁ:* (ବି.) : ପିଲାଝିଲା

**ପିଲାପିଠା** - *ଗଦ୍ୟ:* (ବି.) : ଏକ ପ୍ରକାର ପିଠା

**ପିଲା ବସାଣି** - *ଗଞ୍ଜ:* (ବି.) : ପ୍ରଥମ ରଜୋସ୍ୱଳା କନ୍ୟାକୁ ୭ ଦିନ ଘରେ ବସାଇବା

**ପିଲାବା** - *ସୁ:* (କ୍ରି.) : ପିଆଇବା

**ପିଲା ସମିଆ** - *ସ:* (ବି.) : ଶୈଶବ

**ପିଲି** - *ନବ:* (ବି°.) : ଛୋଟ

**ପିଲିଆ** - *ପଦ୍ୟ:* (ବି.) : ବାନ୍ଧେଣି କଳାପୂର୍ଣ୍ଣ ଗାଢରଙ୍ଗର ଓଢଣୀ

**ପିଲିକା** - *ଗଞ୍ଜ:ନବ:* (ବି.) : ଚୁଟି, ଢାତ ହେବା, ଗଜେଇବା

**ପିଲିସଜ** - *କ:ଅ:ନ:* (ବି.) ସୁଦୃଶ୍ୟ ଉଚ୍ଚଦୀପ, ଉଚ୍ଚଦୀପରୁଖା, ପିତ୍ତଳର ଦୀପରୂଖା

**ପିଲେଇତି** - *ନ:ଗଦ୍ୟ:* (ବି°.ବି.) : ପ୍ରସୂତିନାରୀ, ପୁଆତି, ପିଲାଛୁଆର ମାଆ

**ପିଲୋ** - *ବର:* (ବି.) : ୩ଟି ଖେଳର ଛୋଟ ବାଟି ଧରୁଥିବା ବ୍ୟକ୍ତି

**ପିଲ୍ ପରୁଆ** - *କଳା:* (ବି.) : ଛୋଟ ପାରା, ପାରା ଶାବକ

**ପିଳାପଞ୍ଝା** - *ଗଦ୍ୟ:* (ବି.) : ପିଲାମାନେ

**ପିଳେହି** - *ନ:ଛ:* (ବି.) : ପ୍ଲୀହା, ପିଲେଇ

**ପିଳେହିପାଣି** - *ନ:* (ବି.) : ଭୟରେ ଥରି ଉଠିବା

**ପିଲ୍ ପିଚ୍ଚା** - *ବ:* (ବି.) : ବାୟୁମଣ୍ଡଳରେ ଆର୍ଦ୍ରତା ଥାଇ ଗରମ ହେଲେ ଯେଉଁ ଅସ୍ୱସ୍ତି ଅନୁଭୂତ ହୁଏ, ଗୁଳୁଗୁଳୁ

**ପିଶା** - *ଦେ:* (କ୍ରି.) : ପେଷା (ଦେହରେ ଘଷିବା)

**ପିଶେ** - *ଯା:* (ବି°.) : ଦଶ ସଂଖ୍ୟା

**ପିସ୍‌ବା** - *କଳା:ନୂ:* (କ୍ରି.) : ଘସିବା, ମାଲିସ୍ କରିବା

**ପିସାପ୍** - *କଳା:* (ବି.) : ପରିସ୍ରା

**ପିସ୍ତା** - *ଗଦ୍ୟ:* (ବି°.) : ନିକମା, ଅଳସୁଆ

**ପିହଲ (ପଡିବା)** - *ସୁ:* (କ୍ରି.ବି.) : ସୁବିଧା (ହେବା)

**ପିହୁଳାଣ୍ଡ** - *ନ:* (ବି.) : ପିହୁଳା ରୋଗ

**ପିଁକ** - *ସୁବ:* (ବି.) : ଗଛର ପିଲ

**ପିଁକା** - *ସୁବ:* (ବି.) : ତେଲ ଭରିବା ପାଇଁ ବ୍ୟବହୃତ କାହାଳୀ

**ପିଁକାବାର** - *ସୁବ:* (କ୍ରି.) : ପିଲ ମାରିବା, ପତ୍ର କଅଁଳିବା

**ପିଁଚୁ** - *ସୁବ:* (ବି.) : ଛୋଟ, ଅତି ଛୋଟ

**ପିଁଢା** - *ସ:ସୁବ:* (ବି.) : ପିଣ୍ଢା, କାଠର ପିଢା, ବାରଣ୍ଡା ପିଣ୍ଡା

**ପିଁପା** - *ବା:ମ:* (ବି.) : ଅମୃତଭଣ୍ଡା

**ପି'ସୁ** - *ଗଞ୍ଜ:* (ବି.) : କୃପଣ, ଲୋଭୀ

**ପୀଟ୍‌ଠ** - *ଅ:* (ବି.) : ଝୁଲା ମୁଣି, ବ୍ୟାଗ୍

**ପୀତ୍** - *କଳା:* (ବି.) : ପୀତ, ହଳଦିଆ, ପୀତକୋଷ

**ପୀତ ଜାମୁ** - *ନ:* (ବି.) : ଏକ ବୃକ୍ଷର ନାମ

**ପୀର୍‌ହ** - *ଦେ:* (ବି.) : ପୀଠ

**ପୁଅ ଜିଉଁତିଆ** - *ସ:* (ବି.) : ମା' ନିଜର ପୁଅର ଭବିଷ୍ୟତ ମଙ୍ଗଳ କାମନା ତଥା ଦୀର୍ଘାୟୁ କାମନା କରି ଏ ବ୍ରତ ପାଳନ କରନ୍ତି

**ପୁଅରଗଡ଼ି** - *ଗ:* (ବି.) : ପୁଅ ମରିବା ଗାଳି

**ପୁଆ** - *ଅନେ:* (ବି.) : ଛୋଟ ଗଛ, ଚାରା, ସାରୁ, ବୃକ୍ଷଡ଼ାଳ, କଦଳୀ ପିଲ, ଶିଳରେ ବଟାବଟି କରିବାର ବର୍ତ୍ତୁଳ ପ୍ରସ୍ତର ଖଣ୍ଡ, କଦଳୀ, ବାଉଁଶ ଗଛର ଛୋଟ ଗଜା

**ପୁଆଗୀ** - *କଳା:* (ବି.) : ଧଳାରଙ୍ଗର ସରୁ ଦେଶୀ ଧାନ ବିଶେଷ

**ପୁଆଣି** - *ଅନେ:* (ବି.) : ଚଉଠି ରାତି, ବର୍ଷ ପୁଆଣି, ନବବଧୂ ଶଶୁରାଳୟ ଆସିବା ପ୍ରଥମ ଦିନ, ବିବାହ ପରେ ଯୌତୁକସଙ୍ଗ ସହ ବରଘରକୁ ଯିବା, ପ୍ରଥମ ପୁଷ୍ପବତୀ ଯୁବତୀ ଶାଶୂଘରକୁ ଯିବା ବିଧି

**ପୁଆତିଘର** - *ନ:* (ବି.) : ଏନ୍ତୁଡ଼ିଶାଳ

**ପୁଆରି** - *ଖୋ:* (ବି.) : ଉପକରଣ

**ପୁଆଲ** - *ସୁ:ଝା:* (ବି.) : ପାଲ, ଧାନ ନଡ଼ା

**ପୁଆଲଭାଡ଼ି** - *ସୁ:* (ବି.) : ପାଲଗଦା

**ପୁଆଳ ଦଉଡ଼ି** - *ଖୋ:* (ବି.) : ପାଳ ଧଉଡ଼ି

**ପୁଆଳି** - *ନ:* (ବି.) : ଛୋଟ ନିହାଣ

**ପୁଆଳିଆ** - *ଦେ:* (ବି.) : ବଡ଼ ଉକୁଣୀ

**ପୁଆଁଇବା** - *ନ:* (କ୍ରି.) : ନିଆଁପାଖରେ ରହି ଉତ୍ତାପ ଗ୍ରହଣ କରିବା

**ପୁଇ** - *ଅନେ:* (ବି.) : ମାଈ ଛୋଟ କୁକୁଡ଼ା, ମାଟିରେ ପଡ଼ିଥିବା ଚକ ଚିହ୍ନ, ଶାଗ ବିଶେଷ ପୋଇ, ରାସ୍ତା, ଶଗଡ଼ ରାସ୍ତାର ଚିହ୍ନ

**ପୁଇଖୁଣ୍ଡିଆ** - *ବୌ:* (ବି.) : ସବୁଥିରେ ଅସନ୍ତୁଷ୍ଟ ବ୍ୟକ୍ତି, ବାଛବିଚାରରେ ଥିବା ଲୋକ

**ପୁଇଦ୍** - *କଳା:* (ବି.) ଯୋନି, ସ୍ତ୍ରୀ ଜନନେନ୍ଦ୍ରୀୟ

**ପୁଇନ୍** - *ସ:କଳା:* (ବିଂ.ବି.) : ପୁଣ୍ୟ

**ପୁଇ ଶାଗ** - *ସ:* (ବି.) : ପୋଇ ଶାଗ

**ପୁଇଁ** - *ଦେ:ନୂ:* (ବି.) : ପଚା, ସଢା, ଅଣ୍ଡା ଦେଇନଥିବା ଛୋଟ କୁକୁଡ଼ା

**ପୁଇଁଆ** - *କଝ:* (ବିଂ.) : ଲୋଭୀ

**ପୁଇଁଆହବା** - *କଝ:* (କ୍ରି.) : ଈର୍ଷା କରିବା

**ପୁଏଲ୍** - *କଳା:* (ବି.) : ପାଳ, ପୁଆଲ, ପିଆଁଲ୍, କଳାହାଣ୍ଡିର ପହିଲପାଟ୍ ଅଞ୍ଚଳ

**ପୁଏଁଖ୍** - *କଳା:* (ବି.) : ପକ୍ଷୀ, ପର

**ପୁଓ** - *ସ:ସୁବ:* (ବି.) : ପୁଅ

**ପୁକ** - *ଅନେ:* (ବି.) : ପୋକ, କୀଟ

**ପୁକ୍‌ତି** - *କୋ:* (ବି.) : ପ୍ରସବ

**ପୁକଆଖି** - *ଭା:* (ବି.) : ଫଳର ପୋକଡା ବିନ୍ଧ

**ପୁକଲା** - *ଗଦ୍ୟ:* (ବି.) : ନଡ଼ିଆର ଧଳାଫୁଲ

ପୁକା - *ଗ:* (ବି.) : ବଦମାସିଆ ଲୋକ

ପୁକାଗାଣ୍ଡିଆ - *ଚ଼ା:* (ବିଂ.) : ଯେଉଁ ଫଳରେ ପୋକ ଲାଗିଥାଏ

ପୁକାତୁଣ୍ଡା - *ଚ଼ା:* (ବି.) : ଜିଭରେ ଭିଟାମିନ୍ ('ବି') ଅଭାବରୁ ହେଉଥିବା ଘାଆ, ପାଟି ଘା, ତୁଣ୍ଡ ଘାଆ

ପୁକାର - *ଢ଼:* (ବି.) : ଡାକ

ପୁକି - *କନ୍ଧ:* (ବି.) : ମହୁ(କୁଇ)

ପୁକୁଡ଼ା - *ମା:ରା:* (ବିଂ.) ପୋକରା, ପୋକଖିଆ

ପୁକୁତି - *କେ:* (ବିଂ.) : ପିଲା ଜନ୍ମ କରିଥିବା ସ୍ତ୍ରୀ

ପୁକୁତିମାରୁ - *ଗ:* (ବି.) : ଜନ୍ମ ଅଶୌଚ

ପୁଖରା - *ସ:ବୌ:ସୁବ:* (ବିଂ.) : ପୋକଲାଗିବା, ପୋକ ଲଗା, ପୋକଡ଼ା

ପୁଖରୀ - *ସୁବ:ଚ଼ା:* (ବିଂ.ବି.) : ପୋଖରୀ ବା ପୁଷ୍କରିଣୀ

ପୁଖୁରାଢ଼େ - *ରା:* (କ୍ରି.) ଝାଡ଼ାଯିବା (ପୋଖରୀଆଢ଼େ)

ପୁଖୁରିପାଣି - *ଢ଼:* (ବି.) : ମଳତ୍ୟାଗ

ପୁଙ୍କନଳା - *ରା:* (ବି.) : ଚୁଲି ଫୁଙ୍କିବା ପାଇପ

ପୁଙ୍ଗା - *ଗଦ୍ୟ:* (ବିଂ.) : ମେଳା, ପୁଙ୍ଗୁଳା

ପୁଙ୍ଗି - *ଚ଼ା:* (ବି.) : ବିଡି

ପୁଚ୍କି - *ସୁବ:* (ବି.) : ପେଞ୍ଚା

ପୁଚ୍ପୁଚିଆ - *ସୁ:* (ବିଂ.) : ବାରବାର ବକୁଥିବା ଲୋକ

ପୁଚଖିର - *କୋ:* (ବି.) : ଗାଈର ପ୍ରସବ ପରବର୍ତ୍ତୀ ଦୁଗ୍ଧ

ପୁଚା - *କୋ:ରା:* (ବି.ବିଂ.) : ସବୁଜ ରଂଗ

ପୁଚି - *ଗଞ:ନବ:ନୂ:* (ବି.) : ଦାୟିତ୍ୱ, ଦାୟୀ, ଛୋଟ, ଝିଅଙ୍କ ଖେଳ

ପୁଚିଖାତ - *ଗ:ଗଞ:* (ବି.) : ସମାଧାନ, ନିଷ୍ପତ୍ତି, କଚେରି କାଠଗଡ଼ା

ପୁଚୁ - *ଦେ:* (ବି.) : ସାମାନ୍ୟ କଥାରେ ପ୍ରଶ୍ନକରି ଉତ୍ତର ଦାତାଙ୍କୁ ବିରକ୍ତ କରୁଥିବା ବ୍ୟକ୍ତି।

ପୁଚୁକା - *ରା:କନ୍ଧ:* (ବିଂ.) : ପଚମାନ, ପଚିଯାଇଥିବା, ପଚା

ପୁଚୁକାଏ - *ବୌ:* (ବିଂ.) : ଅଳ୍ପ

ପୁଚୁକି ଜହ୍ନି - *ସୁବ:* (ବି.) : ପେଞ୍ଚା ପେଞ୍ଚା ହୋଇ ଫଳୁଥିବା ଛୋଟ ଜହ୍ନି

ପୁଚୁକୁଣ୍ଡା - *ଗ:* (ବି.) : ପଚାସଢ଼ା ମଇଳା ପାଣି ରହୁଥିବା କୁଣ୍ଡ

ପୁଚୁଢ଼ି - *ବ:* (ବି.) : ବାଦାମ ପରି କୌଣସି ଦାନା ଭିତରେ ମଂଜି ନ ବାହାରି ଅପରିଷ୍କାର ପଦାର୍ଥ ବାହାରିବା, ଫମ୍ପା

ପୁଚୁର୍ ପାଚୁର୍ - *ସ:* (ବିଂ.) : ଟିକେ ଟିକେ କରି

ପୁଚେଡ୍ - *କଳା:* (ବି.) : ଘୁଆଳିର ଦୁଇ ପଟରେ ଲାଗିଥିବା ନିମ୍ନମୁଖା ତଥା

ଛିଦ୍ରଯୁକ୍ତ କାଠ ବା ଲୁହା । ଏଥିରେ ଦଉଡ଼ି ଗଳାଇ ବଳଦ ଯୋଚାଯାଏ

**ପୁକ୍ସପାକ୍** - *ଦେ଼ୌ:* (କ୍ରି.) : ପଚରା ଉଚୁରା

**ପୁଜ** - *ଗ:* (ବି.) : ଘା'ରୁ ନିର୍ଗତ ଲସା

**ପୁଜାରୀ** - *ନ:* (ବି.) : ରୋଷେଇୟା, ପୂଜକ, ପୂଝାରୀ

**ପୁଜୁ** - *କଣ:* (ବି.) : ଫୁଲ

**ପୁଝି** - *ଦେ଼ୌ:* (ବି.) : ପୁଅ, ଝିଅ

**ପୁଞ୍ଜା** - *ରା:ଗ:* (ବି.) : ଚାରୋଟି, ଦଳ, ସମୂହ

**ପୁଞ୍ଜାଏ** - *ନ:* (ବିଂ.) : ଆଞ୍ଜୁଳାଏ, ଗଣ୍ଡାଏ

**ପୁଞ୍ଜାପୁଞ୍ଜା** - *ନ:* (ବିଂ.) : ଦଳଦଳ

**ପୁଞ୍ଜି** - *ସଂ:* (ବି.) : ମୂଳସମ୍ପତ୍ତି, ପାଣ୍ଠି

**ପୁଞ୍ଜିପସ୍‌ରା** - *ସ:* (ବି.) : ନିଜସ୍ୱ ସମ୍ବଳ

**ପୁଟ** - *ଦେ଼ୌ:ରା:ମା:* (ବି.) : ଅଙ୍କିତ, ବର୍ଣ୍ଣିତ, ପୁଣିଥରେ, ବଡ଼ ଗାଁ

**ପୁଟ୍‌କା** - *ନବ:* (ବି.) : ଫୋଟକା

**ପୁଟ୍‌କି** - *ଦେ଼ୌ:ସୁବ:ସ:ସୁ:* (ବିଂ.) : ବାଙ୍ଗିରୀ, ଗେଡ଼ି ସ୍ତ୍ରୀ, ଅଳ୍ପ ଉଚ୍ଚତାର ସ୍ତ୍ରୀ ଲୋକ, ନାକଚଣା

**ପୁଟ୍‌କି ରାଶି** - *କଣ:* (ବି.) : ମାଘରାଶି

**ପୁଟ୍‌ପୁଟ୍** - *କଣ:* (ବିଂ.) : ଗୋପନରେ କଥାବାର୍ତ୍ତା, ଫୁସଫୁସ୍

**ପୁଟ୍ ପୁଟାବା** - *ସ:ସୁବ:* (କ୍ରି.) : ଗୁଣୁ ଗୁଣୁ କଥା କହିବା

**ପୁଟ୍‌ଲା ପୁଟ୍‌ଲି** - *କଳା:* (ବି.) : କୁଣ୍ଢାକୁଣ୍ଢି, ପାରସ୍ପରିକ ଆଲିଙ୍ଗନ

**ପୁଟ୍‌ଲା** - *ମା:* (ବି.) : ଗଣ୍ଠିଲି

**ପୁଟଦେବା** - *ଗ:* (କ୍ରି.) : ଔଷଧକୁ ପୋଡି ଶୋଧନ କରିବା

**ପୁଟପୁଟି** - *ସୁ:* (ବି.) : ଘୋଡ଼ାର ପୋଖରୀ ଜାତ ଖାଦ୍ୟ ଘାସ

**ପୁଟବାଏଲ** - *ସୁବ:ସ:* (ବି.) : ପଟୁବାଲି, ସରୁବାଲି

**ପୁଟଲ** - *ସୁ:ସୁବ:ନୂ:* (ବି.ବିଂ.) : ପୋଟଲ

**ପୁଟଲେଇବା** - *ନବ:* (କ୍ରି.) : କୁଣ୍ଡେଇବା

**ପୁଟା** - *ଅନେ:* (ବି.) : ପାକସ୍ଥଳୀ ଭିତରେ ଥିବା ପୁଣ୍ଡି, ଖାଦ୍ୟନଳୀ, ଗଣ୍ଡ ସଂପ୍ରଦାୟର କୌଳିକ ଉପନାମ

**ପୁଟି** - *ଅନେ:* (ବି.) : ଶଗଡ ଚକର ପରିଧି ଭାବରେ ବ୍ୟବହାର କରାଯାଉଥିବା ବକ୍ର କାଠ, 20 ମାଣ ପରିମାଣ, 1 ମାଣ = 4 ଅଡା, 1 ଅଡା = 2 ଶୋଳା, 1 ଶୋଳା = 2 ଗିଧା, 1 ଗିଧା = 2 ବୁଡ଼ନି, ଶସ୍ୟାଦି ମାପ କରିବା ଏକକ, ଶଗଡ଼ ଚକାର ଗୋଲାକାର କାଷ୍ଠଖଣ୍ଡ

**ପୁଟିଆ** - *ଦେ଼ୌ:ବ:ନ:* (ବି.) : ପିତା ଛୋଟ ମାଛ, କେରାଣ୍ଡି, ଆଣ୍ଠୁତଳ ମାଂସଳ ସ୍ଥାନ

**ପୁଟିମାଛ** - *ଗ:* (ବି.) : କେରାଣ୍ଡି ମାଛ

**ପୁଟିସିରା** - *କଣ:* (ବି.) : ମଝିକପାଳ

ପୁଚୁ - *ସୁ:ଗା:* (ବି.) : ନରମ ଛତୁ, ରୁଗୁଡ଼ି, ଦୋକାନ ବଜାର ଥିବା ଗାଁ

ପୁଚୁକା - *ଗା:* (ବି.) : ବାହୁଙ୍ଗା

ପୁଚୁଣି - *ସୁ:* (ବି.) କାଠର ଫାଟକୁ ବୁଜିବାପାଇଁ ବ୍ୟବହାର କରାଯାଉଥିବା ଏକ ପଦାର୍ଥ

ପୁଚୁସ - *କେନ୍ଦୁ:ସୁ:* (ବି.) : ଏକ ପ୍ରକାର କଣ୍ଟା ଜାତୀୟ ଗଛ, ବାଡ଼ ଯୁକ୍ତ କଣ୍ଟା

ପୁଚେଲ - *କଳା:* (ବି.) ମାଳିଜାତିର କୌଳିକ ଉପନାମ

ପୁଚ୍ଚା - *କଣ:* (ବି.) : ଅଣ୍ଡିରା ମହିଷି ଛୁଆ

ପୁଚ୍ଚି - *କଣ:* (ବିଂ.) : ମାଈ

ପୁଠ - *ବୌ:* (ଅ.) : ହେଃ, ଧିକ୍କାର ସୂଚକ

ପୁଠି - *ଗଦ୍ୟ:* (ବି.) : କେରାଣ୍ଡି

ପୁଡ୍ - *କଳା:* (ବି.) : ପୋଢ, ମହିଷ

ପୁଡ୍‌ବା - *ବୌ:* (କ୍ରି.) : ପୋଡ଼ିବା

ପୁଡ୍‌ରା - *କଳା:କୋ:* (ବି.) : ଛୋଟ ପୋଢ, ମଇଁଷୀର ଛୁଆ

ପୁଡା - *କଳା:* (ବି.) : ପାଳ, ବେଣ୍ଟ ଓ ଦଉଡି ସାହାଯ୍ୟରେ ଧାନ୍ୟାଦି ଶସ୍ୟର ସଂରକ୍ଷଣ ବ୍ୟବସ୍ଥା, ଓଳିଆ, ଧାନ ମାପିବାର ଏକକ

ପୁଡା ପିଟେନ୍ - *କଳା:* (ବି.) : ପୁଡା ପଟିବା ନିମନ୍ତେ ନିର୍ମିତ କାଠ ଦଣ୍ଡ

ପୁଡି - *ବୌ:* (ବି.) : ଯିଏ ପୋଡା ଯାଇଥାଏ

ପୁଡୁକା - *ଗ:* (ବି.) : ଦ୍ରବ୍ୟକୁ ପୋଡ଼ି ଔଷଧ ପ୍ରସ୍ତୁତ କରିବା

ପୁଡୁଗ - *ଅନେ:* (ବି.) ଧାନ ଓଳିଆ, ନଡାରେ ତିଆରି ଶସ୍ୟ ସଂରକ୍ଷକ, ୨୦ ଖଣ୍ଡି

ପୁଡୁଗା - *ଗଜ:କୋ:* (ବି.) : ପୋଡ଼ିବା ଫଳ, ଏକ ପ୍ରକାର ପନିପରିବା ତରକାରୀ

ପୁଡେଇବା - *ଦ୍:* (କ୍ରି.) : ରୋଗ ଭୋଗ କରିବା

ପୁଡ୍‌ଡ଼ା - *ସୁବ:* (ବି.) : ଛଚିନ୍ଦ୍ରା, ସାପୁଆ, ପୋଟଳ

ପୁଡ଼ା - *ଅନେ:* (ବି.) : ପୁଡ଼ିଆ, ନାକ ପୁଡ଼ା (ନାକର ୨ଟି ରନ୍ଧ୍ରର ନାମ), କାଗଜପତ୍ରରେ ବାନ୍ଧିଥିବା କ୍ଷୁଦ୍ର ପୁଟୁଳା

ପୁଡ଼ାଝୁରି - *କଳା:* (ବି.) : ପୋଡା ଯାଇଥିବା ସାନସାନ ମାଛ

ପୁଡ଼ାଲା ପିଠା - *ସ:* (ବି.) : ପୋଡ଼ପିଠା

ପୁଡ଼ି - *ଭ:* (ବି.) : ଗୌଣୀ

ପୁଡ଼ିଆ - *ସୁବ:* (ବି.) : ପୁଡ଼ା, ପାନମସଲାର ପୁଡ଼ା

ପୁଡ଼ିମାରିବା - *ଦ୍:* (କ୍ରି.) : ପୋଡ଼ିମାରିବା, ହଇରାଣ କରିବା

ପୁଡୁଙ୍ଗା - *ନବ:* (ବି.) : ମୁନ୍ଦା ତରକାରୀ, ମୁଦା ତରକାରୀ

ପୁଡ୍ରେନ୍ - *କଳା:* (ବି.) : ପୋଡ଼ିବା ପ୍ରକ୍ରିୟା

ପୁଡ୍ରା - *କଣ:* (ବି.) : ପାଣିକଖାରୁ

ପୁଢ - *ଅନେ:* (ବି.) : ପୋଢ, ଅଣ୍ଡିରା ମଇଁଷି, ଅଣ୍ଡିରା ପଣ୍ଡା

**ପୁଙ୍ଗରା** - *ଗୌ* (ବି.) : ମଇଁଷି ଛୁଆ

**ପୁଙ୍ଗାତୁନ୍** - *ସ* (ବି.) : ପୋଡ଼ା ତିଅଣ

**ପୁଣ୍ଡି** - *କେନ୍ଦୁ:ଯା:ମ:* (ବି.) : ନାହି, ମଣିଷ ବା ପଶୁ ପେଟରେ ଥିବା ନରମ ମାଂସର ଅଂଶ, ଅନ୍ତ, କରାଣ୍ଡି ମାଛ

**ପୁଣ୍ଡୀ** - *ଡେ* (ବିଂ.) : ମୋଟା

**ପୁଣ୍ଡୁକା** - *କେ:ଭ:* (ବିଂ.) : ମୋଟା, ଅସୁନ୍ଦର

**ପୁତ୍କାପୁତକି** - *କଳା* (କ୍ରି.) : ଟଣାଓଟରା, ଝିଙ୍କାଝିଙ୍କି

**ପୁତ୍କିବା** - *କଳା* (କ୍ରି.) : ଓପାଡିବା, ଝିକିବା, ଟାମିବା

**ପୁତ୍ଖାଇ** - *ବା:ଭ:* (ବିଂ.ବି.) : ଯେଉଁ ସ୍ତ୍ରୀ ଲୋକର ସନ୍ତାନ ମରିଯାଏ, ତାକୁ ଏଇ ଗାଳି ଶୁଣିବାକୁ ପଡ଼େ, ପୁଅ ମରିଯାଇଥିବା ସ୍ତ୍ରୀ

**ପୁତ୍ନା ପତ୍ର୍** - *ସ* (ବି.) : ପୋଦିନା ପତ୍ର

**ପୁତ୍ବା** - *ନୁ* (କ୍ରି.) : ପୋତିବା

**ପୁତ୍ରା** - *ବର:ସ:ଗୌ:ନୁ:* (ବି.) : ବଡ଼ଭାଇର ପୁଅ, ପୁତୁରା

**ପୁତ୍ରା ଟୁକିଲ** - *ନୁ* (ବି.) : ପୁତ୍ରୀ

**ପୁତ୍ରି** - *ନୁ* (ବି.) : ସ୍ୱାମୀଙ୍କ ବଡ଼ ଭାଇଙ୍କ ଝିଅ

**ପୁତ୍ଲି** - *ନୁ:ଗୌ* (ବି.) : କଣ୍ଢେଇ, ଖେଳଣା

**ପୁତରା ପୋ** - *କଳା* (ବି.) : ପୁତୁରା

**ପୁତା** - *ଅନେ* (ବି.କ୍ରି.) : ପୁତ୍ର, ଆଦରାର୍ଥକ ସମ୍ବୋଧନ, ନାତି, ପଣସର ଖୋସା, ପୁଅ, ପୂରଣ, ସ୍ନେହ ମିଶା ଶବଦ

**ପୁତି** - *କଳା* (ବି.) : ପଣନାତିର ନାତି, ନିଜଠାରୁ ଷଷ୍ଠ ପୁରୁଷ

**ପୁଥି ପୁରାନ** - *ନୁ:ସ:* (ବି.) : ପୋଥି ପୁରାଣ

**ପୁଥିବସା** - *କେନ୍ଦୁ:ବା:* (ବି.) : ଘରେ ପୋଥି ବସାଇ ମାସେ ଯାଏ ପୂଜା କରିବା ପର୍ବ, ପୋଥିପୂଜା

**ପୁଦି** - *ଅନେ* (ବି.) : ନାରୀ ଯୌନାଙ୍ଗ

**ପୁନ୍ଗ** - *ଗୌ* (ବି.) : ଶସ୍ୟ ମାପର ଏକକ, ପୁନୁଗ

**ପୁନ୍ଗୁରା** - *କୋ* (ବିଂ.) : ମିଛୁଆ, ଟାଣପଣ ଦେଖାଇବା (ବ୍ୟକ୍ତି)

**ପୁନନା ଚାଉଳ** - *ବା* (ବି.) : ପୁରୁଣା ଚାଉଳ

**ପୁନବାସୀ** - *ଗ* (ବି.) : ପୌର୍ଣ୍ଣମାସୀ

**ପୁନମୀ** - *ନବ* (ବି.) : ପୂର୍ଣ୍ଣମୀ

**ପୁନାଙ୍ଗ** - *ଗ* (ବି.) : ପୁଷ୍ପବୃକ୍ଷ ବିଶେଷ

**ପୁନାଦି** - *ଗ:ନବ:ଗଜ:* (ବି.) : ଘର ନିର୍ମାଣର ମୂଳଭିତ୍ତି, ନିଅ, ଘରର ମୂଳଦୁଆ

**ପୁନିଅ** - *ଜ:ନ:* (ବି.) : ପୂର୍ଣ୍ଣିମା, ପୁଣ୍ୟକାମ

**ପୁନିଅପରବ** - *ଜ* (ବି.) : ପର୍ବପର୍ବାଣି

**ପୁନିଆଁ** - *କଣ* (ବି.) : ପ୍ୟାଣ୍ଡେଲ୍

**ପୁନିଜନ୍** - *ସ* (ବି.) : ପୂର୍ଣ୍ଣମୀ ଚାନ୍ଦ

**ପୁନୁଗୁରା** - *ଅ* (ବି.) : ପୋକ

**ପୁନେଇ** - *ନ:କେ:କୋ:ଯା:* (ବି.) : ପୂର୍ଣ୍ଣମୀ

**ପୁବା** - *ଖୋ* (ବି.) : ଏକ ପ୍ରକାର ମାଛ

**ପୁର** - *ସୁବ:ରା:ନ:ଗୌ:* (ବି.) : ମଣ୍ଡାପିଠା ଭିତରେ ଦିଆଯାଉଥିବା ନଡ଼ିଆ ଗୁଡ଼

ଆଦି ଦ୍ରବ୍ୟ, ପିଠାର ମିଠା ଅଂଶ, ପଡ଼ା, ଗାଁ, ପଲ୍ଲୀ

**ପୁରକିବା** - *ସୁ:* (କ୍ରି.) : ପାଣିକୁ ମୁହଁରେ ଫୁଙ୍କିବା

**ପୁରକୁ** - *ବ:* (ବି.) : ପରବର୍ଷ

**ପୁରଡ** - *ରା:* (ବିଂ.) : ଗରମ

**ପୁରଥି** - *ନବ:* (ବି.) : ପୃଥିବୀ

**ପୁରନି ପତ୍ର** - *ସୁ:* (ବି.) : ପଦ୍ମ ପତ୍ର

**ପୁରପିଠା** - *ଅ:* (ବିଂ.) : ମଣ୍ଡାପିଠା

**ପୁରପୁର** - *ସୁ:* (ବି.) : ବାରଂବାର

**ପୁରପୁ** - *ରା:* (ବି.) : ସାକ୍ଷ୍ୟ

**ପୁରସ୍ତମ** - *ଢ:* (ବି.) : ପୁରୁଷୋତ୍ତମକ୍ଷେତ୍ର, ପୁରୀ

**ପୁରା** - *ସ:* (ବି.) : ଧାନକୁ ସାଇତି ରଖିବା

**ପୁରା** - *ସୁବ:ବ:ନୁ:କଳା:* (ବି.) ଧାନ ସଂରକ୍ଷଣ କରି ବାରପାଳ ଓ ପାଳ ଦଉଡ଼ିର ଓଳିଆ, ପାଳରେ ତିଆରି ଶସ୍ୟ ରଖିବା ଏକ ପ୍ରକାରର ପୁଡ଼ା, ଓଳିଆ, ବେଣ୍ଟକୁ ଗୋଡ଼ାଇ ରଖାଯାଉଥିବା ଶସ୍ୟାଧାର, ପୁଡା ଦେଖ

**ପୁରାଖେଳ** - *ନୁ:* (ବି.) ଲୁପ୍ତ ପ୍ରାୟ ଏକପ୍ରକାର ଖେଳ

**ପୁରାଣୀ** - *ନବ:* (ବି.) : ବଳକା

**ପୁରାନ୍** - *କଳା:* (ବି.) : ପୁରାଣ

**ପୁରାନା କଥା** - *ନୁ:* (ବିଂ) : ପୁରୁଣା କଥା

**ପୁରାପୁରା** - *ନୁ:* (ବିଂ) : ସଂପୂର୍ଣ୍ଣ

**ପୁରାପେଣ୍ଠା** - *କଣ:* (ବି.) : ଫୁଲପ୍ୟାଣ୍ଟ

**ପୁରି** - *ନ:* (ବି.) : ଘିଅ, ତେଲରେ ଛଣା ରୁଟି

**ପୁରିଆ** - *ଯା:* (ବି.) : ଅତି ପୁରାତନ

**ପୁରିତ** - *ସ:* (ବି.) : ପୁରୋହିତ

**ପୁରୁ** - *କୋ:* (ବି.) : ପରସ୍ତ

**ପୁରୁଗ** - *ସୁ:ଅ:ନ:* (ବି.) : ପୁଡୁଗ ଧାନ ବାନ୍ଧି ରଖାଯାଏ, ପାଳବରରେ ବୃତ୍ତାକାରରେ ବାନ୍ଧି ଶସ୍ୟରଖିବା

**ପୁରୁଗା** - *ସୁ:* (ବି.) : ପତ୍ରରେ ପୋଡ଼ା ଖାଦ୍ୟ

**ପୁରୁଡିବା** - *ରା:ଗ:ନବ:କୋ:* (ବି.କ୍ରି.) : ଖଣା ଭର୍ତ୍ତିକରିବା, ପୋତିବା, ଶୂନ୍ୟସ୍ଥାନକୁ ପୋତିବା

**ପୁରୁଣା ଗୁରୁ** - *ଗୋ:* (ବି.) : ଗୁରୁଙ୍କ ଗୁରୁ

**ପୁରୁଣି** - *ରା:ଜ:* (ବିଂ.ବି.) : ଓଜନିଆ, ମୋଟା ପତ୍ରଯୁକ୍ତ ଶାଗ

**ପୁରୁଣିଆ** - *ନ:* (ବିଂ.) ବହୁଦିନ ଧରିରହିଥିବା, ପୁରୁଣା ହୋଇଥିବା

**ପୁରୁନ୍ କଂଦା** - *ନୁ:* (ବି.) : ପଦ୍ମ ଫୁଲର ମୂଳ(ଯେଉଁଥିରୁ ନାଡ଼ ବାହାରିଥାଏ)

**ପୁରେ** - *ସ:* (ବିଂ.) : ପରସ୍ତେ, ବୁଲେ

**ପୁର୍ଣ୍ଣହେବା** - *ନୁ:* (କ୍ରି.) : ପୂର୍ଣ୍ଣ ହେବା ଅର୍ଥରେ

**ପୁର୍** - *ନବ:* (ବି.) : ବଢି

**ପୁର୍ଗା** - *ସ:କନା:* (ବି.) : ତେଲ ହଳଦୀ ଆଦି ଦେଇ ପତ୍ରରେ ପୋଡ଼ିବା

**ପୁର୍ତ** - *ଗେ:* (ବି.) : ପୁରୋହିତ

**ପୁର୍ତୀ** - *ମା:* (ବି.) : ପୃଥ୍ୱୀ, ପୃଥିବୀ

**ପୁର୍ଥି** - *ସୁ:ସୁବ:କଳା:* (ବି.) : ପୃଥିବୀ, ମହୀ, ଧରା

**ପୁର୍ନା** - *କନ୍ଦ:କଳା:* (ବିଂ.) ପୁରୁଣା, ପୁରାତନ

**ପୁର୍ନା ଜୁର୍ନା** - *କନ୍ଦ:* (ବିଂ.) : ପୁରୁଣା

**ପୁର୍ସେ** - *ସ:ସୁ:* (ବିଂ.ବି.) : ଜଣେ ପୁରୁଷର ଲମ୍ବ, ପାଦରୁ ହାତଉଁଚା ମାପର ପାଣି

**ପୁଲ** - *ଗ:କୋ:ସୁବ:* (ବି.ବିଂ.) : ପୋଲା, ଅନ୍ତଃସାରଶୂନ୍ୟ, ଅଗାଡ଼ି, ବଡ଼ କଣା, ଅଗାଡ଼ି ଧାନ

**ପୁଲ୍କି ଉଠିବା** - *ଗେ:* (କ୍ରି.) ପୁଲକିତ ହେବା

**ପୁଲ୍ଚି** - *ସ:ସୁବ:* (ବିଂ.) : ପୋଲା, ଫମ୍ପା ଧାନ, ବାଦାମ, ଅଗାଡ଼ି ଧାନ

**ପୁଲ୍ ପୁଲିଆ** - *ଗେ:* (ବି.ବିଂ.) କଥା ପ୍ରଘଟକାରୀ, ଖୋଲା, ଫୁଲା ଫାଙ୍କିଆ

**ପୁଲ ଭଶାସ୍** - *ସ:* (ବିଂ.) : ଅଳ୍ପ ଓଜନ

**ପୁଲଗା** - *ରା:* (ବି.) : ଆମ୍ବିଳ ତରକାରୀ

**ପୁଲପୁଲାବାର** - *ସୁବ:* (କ୍ରି.) : ବିଲ ଆଡ଼ିରେ ପୋଲ ହୋଇ ବେଶି ପାଣି ତଳ ବିଲକୁ ବୋହିଯିବା

**ପୁଲପୁଲି** - *ବଉ:ସୁ:* (ବିଂ.) : ଝାଡାକୁ ନିୟନ୍ତ୍ରଣ ନ ପାରିବା, ସାଧାରଣ କୁହାଲିଆ

**ପୁଲସ୍ତରା** - *ଗ:* (ବି.) : ପ୍ଲାଷ୍ଟର୍(plaster), ପଲସ୍ତରା

**ପୁଲା** - *ଅନେ:* (ବିଂ.) : ପୋଲା, ଫମ୍ପା, ମାଗଣା, ଗଛର କୋରଡ଼ ଅନ୍ତଃସାର ଶୂନ୍ୟ

**ପୁଲାଙ୍ଗ** - *ଗ:କେ:* (ବି.) : ପୋଲାଙ୍ଗ ଲତା, ପୁନ୍ନାଗ

**ପୁଲାଚି** - *ରା:* (ବି.) : ଖଟା

**ପୁଲି** - *ଗ:* (ବି.) : ଜହ୍ନି ପରି ଏକ ଫଳ ପାଚି କରି ଶୁଖିଗଲେ ତାର ଜାଲିକୁ ନେଇ ଦେହଘଷା କାର୍ଯ୍ୟରେ ବ୍ୟବହାର କରାଯାଏ

**ପୁଲିଆ** - *ଅନେ:* (ବିଂ.ବି.) : ମାହାଲିଆ, ବିନା ଅର୍ଥବ୍ୟୟରେ ଲବ୍‌ଧ, ପୋଲ, ବ୍ରିଜ୍

**ପୁଲିଆଖିଆ** - *ଗ:* (ବିଂ.) : ମାଗଣାରେ ଖାଇବା

**ପୁଲି ଖାଇଦେବା** - *ଗେ:* (କ୍ରି.) : କୌଶଳ କରି ଖାଇଯିବା

**ପୁଲିନ୍ଦା** - *ଢେ:ଗଦ୍ୟ:* (ବି.) : ଲଫାପା, ବଡ଼ ଖୋଳ

**ପୁଲିହାରମ୍** - *ଗଞ:ଗ:* (ବି.) : ଖଟାଭାତ, ଆମ୍ବିଳି ମିଶା ବ୍ୟଞ୍ଜନ, ତିନ୍ତୁଳି ପାଣି ମିଶା ଭାତ

**ପୁଲୁକା** - *ଗା:* (ବି.) : ଗର୍ଭିଣୀ ସ୍ତ୍ରୀ
**ପୁଲୁସୁ** - *ଗା:* (ବି.) : ଡାଲି
**ପୁଳା** - *ଦେ:କେନ୍ଦୁ:* (ବି.) : ମେଞ୍ଚା, ମେଞ୍ଚେ, ଫମ୍ପା, ଧାନ ଓଳିଆ, ନଡ଼ାରେ ବେତା ଭଳିଆ କରାଯାଏ
**ପୁଳାଏ** - *କେ:ନ:* (କ୍ରି.ବିଂ.) : ଅଧିକ, ବହୁତ, ମେଞ୍ଚାଏ, ପୁଳେ
**ପୁଳି** - *ଅନେ:* (ବି.) : କନ୍ଦମୂଳରେ ତିଆରି ପିଠା, ମୁଗ ପିଠା, ଘିଅତିଆରି ପିଠା(ମନ୍ଦିରରେ ପୂଜା ହୁଏ)
**ପୁଷ** - *ଅନେ:* (ବି.) : ପୌଷ ମାସ
**ପୁଷ୍ ପୁତ୍ର** - *ବୌ:* (ବି.) : ପୁସିଆଁ ପୁଅ
**ପୁଷକରା** - *କେନ୍ଦୁ:* (ବି.) : ମଣିଷ ମରିଗଲେ ଏକ ଦୋଷ ଲାଗେ, ଯାହା ପାଇଁ ସ୍ୱତନ୍ତ୍ର କ୍ରିୟା କରାଯାଏ
**ପୁଷ କାଉଳିଆ** - *ଗ:* (ବି.) : ପୌଷ ମାସର ଅଚ୍ଛ ମେଘୁଆ ପାଗ
**ପୁଷଣ** - *ଦେ:ଗା:* (ବି.) : ଭରଣ, ପାଳନ
**ପୁଷପୁନି** - *କଳା:* (ବି.) : ପୌଷ ପୂର୍ଣ୍ଣିମା
**ପୁଷା** - *ଦେ:* (ବି.) : ପାଳିବା, ପୋଷା
**ପୁଷାବାର୍** - *ସୁବ:* (କ୍ରି.) : ଲାଭ ହେବା, ପରିଶ୍ରମ ଅନୁସାରେ ଫଳ ପାଇବା
**ପୁଷି** - *ବା:କନ୍ଧ:* (କ୍ରି.ବି.) : ପୋଷି, ପୋଷଣ କରିବା, ପୌଷ
**ପୁଷିଆଁ** - *ଝା:* (ବିଂ.) : ପୋଷା ହୋଇ ରହିଥିବା ଜୀବ
**ପୁଷ୍କୁରା** - *ଯା:* (ବି.) : ପୁଷର, ମୃତ୍ୟୁ ପରେ ଲାଗୁଥିବା ଦୋଷ
**ପୁଷେଇବା** - *କେ:* (କ୍ରି.) : ସୁହାଇବା
**ପୁଷର ଲାଗିବା** - *ସଂ:* (ବି.) : ମରିଯାଇଥିବା ଲୋକ ପ୍ରତି ଏକ ଦୋଷ ଲାଗିବା
**ପୁଷାଳକ** - *ବୌ:* (ବି.) : ରଥକାଠ ପୂଜା
**ପୁସଲାବା** - *ସୁ:* (କ୍ରି.) ଠକିବା, ରାଜିକରାଇବା
**ପୁସାବା** - *ସୁ:* (ବି.) : ଉପଯୋଗୀ ହେବା
**ପୁସି** - *ନବ:ନ:* (ବି.) : ବୀର୍ଯ୍ୟ, ବିରାଡ଼ି
**ପୁସିଆ** - *ସୁ:* (ବିଂ.) : ପୋଷା
**ପୁସିଦା** - *ଗଦ୍ୟ:* (ବିଂ.) : ଗୋପନୀୟ
**ପୁସେ** - *କୋ:* (ବିଂ.) : ପୋଷେ ପରିମାଣ
**ପୁସ୍ତ** - *ବା:* (ବି.) : ଛୋଟ ଦାନା ବିଶିଷ୍ଟ ସ୍ୱାଦିଷ୍ଟ ମସଲା
**ପୁସ୍ତଖୁଳା** - *ବା:* (ବି.) : ପୋସ୍ତଖୋଳା
**ପୁସ୍ତେ** - *ମା:* (ବି.) : ଏକ ପ୍ରକାର ଅଳଙ୍କାର
**ପୁହା** - *ସୁ:* (ବି.) : ଖଟର ବାହୁ
**ପୁହାଇବା** - *ନ:* (କ୍ରି.) : ବିଳମ୍ବ କରିବା
**ପୁହାଲ** - *କନ୍ଧ:* (ବି.) : ପାଳକୁଟା
**ପୁହାଁଣ** - *ଦେ:* (ବି.) : ପାଳ, ଖଣ୍ଡାୟତଙ୍କ ବଂଶୋପାଧି
**ପୁହୁଞ୍ଚଲା** - *ବୌ:* (କ୍ରି.) : ଅଣ୍ଟିଲା, ପାଇଲା
**ପୁହୁଡା** - *ବା:* (ବି) : ପୋହଳା ମାଛ
**ପୁହୁଣ୍ଡେଇବା** - *କନ୍ଧ:* (କ୍ରି.) : ନିଆଁଧରାଇବା

**ପୁହୁରା** - *ଅନେ:* (ବିଂ.ବି.) : ଫୋଇରା, ଅପରିଷ୍କାର, ମଳିନ, ମଇଳା ପୂର୍ଣ୍ଣ, ଯେଉଁ ବ୍ୟକ୍ତି ନିଜର ଯତ୍ନ ନିଏ ନାହିଁ

**ପୁହୁରି** - *ଦେ:ନୂ:* (ବି.) : ଅନିଚ୍ଛୁକା (ସ୍ତ୍ରୀ), ଯେଉଁ ବ୍ୟକ୍ତି ନିଜର ଯତ୍ନ ନିଏ ନାହିଁ (ସ୍ତ୍ରୀ ଅର୍ଥରେ)

**ପୁହୁରିଆ** - *ବୌ:ସୁ:* (ବିଂ.) : ଅପରିଷ୍କାରିଆ

**ପୁହୁଳ** - *ଗ:* (ବି.) : ପୋହଳ

**ପୁହୁଂଚିବା** - *କଳା:* (କ୍ରି.) ପହଂଚିବା, ଉପନୀତ ହେବା

**ପୁହ୍ନେଇ** - *ମା:* (ବି.) : ପୂର୍ଣ୍ଣମୀ

**ପୁଁର୍‌ରାବାର୍** - *ସୁବ:* (କ୍ରି.) : ଧାନଗଛ ଗର୍ଭିଣୀ ହେବାକୁ ପାଣ୍ଡୁର ବର୍ଣ୍ଣ ଧାରଣ କରିବା ଅବସ୍ଥା

**ପୁଂଗ୍‌ଲାଂ** - *ଗଦ୍ୟ:* (ବିଂ.) : ଚେପା, ଚେପ୍‌ଟା

**ପୁଂଜି** - *କଳା:* (ବି.) : ସଂପଦ, ଟଙ୍କା

**ପୂଚି** - *କୋ:* (ଅ.) : ଦାୟୀ

**ପୂଜ୍‌ବାର** - *ସୁବ:* (କ୍ରି.) : ହାଣିବା, ବଳିଦେବା

**ପୂଜାଯିଆ** - *ସୁବ:* (ବି.) : ଗାଳିବାଚକ, ଦେବୀଙ୍କ ପାଇଁ ବଳିପଡି ମରିଯିବାର ଅଭିଶାପ

**ପୂରା** - *କଳା:ଖୋ:* (ବିଂ.) : ସଂପୂର୍ଣ୍ଣ, ଭର୍ତ୍ତିକର

**ପୂରାପୂରି** - *କଳା:* (ବିଂ.) : ସଂପୂର୍ଣ୍ଣ ଭାବରେ ନିଶ୍ଚିତ ଭାବରେ

**ପୂରାହା** - *କଳା:* (କ୍ରି.) : ପୂରଣ କର

**ପୂରିଷ୍ଟ** - *ଗ:* (ବିଂ.) : ବୃଦ୍ଧି, ପୂରିପୁଷ୍ଟ

**ପୂରୁନ୍** - *କଳା:* (ବିଂ.) : ପୂର୍ଣ୍ଣ, ଭର୍ତ୍ତି

**ପୂର୍ଣ୍ଣାତି** - *ନ:* (ବି.) : ମୂଳଦୁଆ, ମେଢିଆ

**ପେଇଁକି** - *ନ:* (ଅ.) : ପାଇଁକି

**ପେଏଜ୍** - *କଡ:* (ବି.) : ପଖାଳ ଭାତ

**ପେଏନ୍** - *କଳା:* (ବି.) : ପାଣି, ଜଳ, ପାନ୍

**ପେଏବା** - *କଳା:* (କ୍ରି.) : ପାଇବା, ଲଭିବା, ପ୍ରାପ୍ତହେବା, ବାଜିବା, ଆଘାତ ହେବା

**ପେଏଁକାଳି** - *ଦେ:* (ବି.) : ମହୁରୀ, କାହାଳୀ

**ପେକ** - *ଅ:* (ବି.) : ସଂପୁର୍ଣ୍ଣ ଭାବରେ ପୁର୍ଣ୍ଣ, ପ୍ୟାକେଟ୍

**ପେକା** - *ଗଡ:* (ବି.) : ତାସ୍

**ପେକାପେକ୍** - *କୋ:* (ବିଂ.) : ଭୀଷଣ ଭିଡ଼

**ପେଖନା** - *ପୁ:ଅ:* (କ୍ରି.ବି.ବିଂ.) : ଛଳନା, ମିଛ ଅଭିନୟ

**ପେଖାଣ୍ଡି** - *ଦେ:* (ବି.) : ଛଳନା

**ପେଙ୍କି** - *କୋ:ଗ:ବୌ:* (ବିଂ.ବି.) : ଛଟା, କୌଣସି କାର୍ଯ୍ୟ ନକରିବା ପାଇଁ ଆଳ, କୌଶଳ

**ପେଙ୍ଗା** - *ଅନେ:* (ବିଂ.) : ଛୋଟା, ପଙ୍ଗୁ, ଛୋଟେଇ ଚାଲିବା, ପେଙ୍ଗେଇପେଙ୍ଗେଇ ଯିଏ ଚାଲେ

**ପେଙ୍ଗୁ** - *ଦେ:* (ବି.) : ବନ୍ୟ ଗୁଳ୍ମବିଶେଷ

**ପେଙ୍ଗୁଇବା** - *ନବ:ଗ:କୋ:* (କ୍ରି.) : ଛୋଟେଇ ଚାଲିବା

**ପେଙ୍ଗୁନଳୀ** - *ନ:ଗଞ:* (ବି.) : ବାଉଁଶ ନଳୀରେ ଏକପ୍ରକାର ମଞ୍ଜିପୂରାଇ ଅପରପାର୍ଶ୍ୱରେ ଅନ୍ୟକୁ ମାରିବା, ପିଲାଙ୍କ ବାଉଁଶ ନଳୀର ଖେଳନା

**ପେଚ୍‌କା** - *ଚୌ:କଳା:ସୁ:* (ବି.ବିଂ.) : ଚୋପା, ଗୋଜିଆ, ଚେପା

**ପେଚ୍‌କା ପେଚ୍‌କି** - *ଚୌ:* (ବି.) : ଫଟାଫଟି

**ପେଚ୍‌କି** - *ସୁ:* (ବି.) : ସାରୁ

**ପେଚକଷ୍** - *ସୁ:* (ବି.) : ସ୍କ୍ରୁ ଡ୍ରାଇଭର, ପେଚ କଣ୍ଟା ଲଗାଇବା ଓ ଖୋଲିବା ପାଇଁ ବ୍ୟବହୃତ ଲୁହା ଉପକରଣ

**ପେଚକାବା** - *କଳା:* (କ୍ରି.) ଗୋଜିଆ କରିବା, ଉତ୍ତେଜିତ କରାଇବା, ଅଧିକ କହିବା ପାଇଁ ଉତ୍ସାହ ଦେବା

**ପେଚା** - *ସ:କଳା:* (ବି.) : ପେଚା, ଉଲ୍ଲୁକ ପକ୍ଷୀ

**ପେଚି** - *କୋ:ଯା:* (ବି.) : ଛଣା ଭଜା ବା ବରା ଜାତୀୟ ବ୍ୟଞ୍ଜନ ବିଶେଷ, ପେଚି ଛୋଟବଡା ଖଣ୍ଡ

**ପେଚୁଆ** - *ଗ:* (ବି.) : ବଙ୍କା

**ପେଜ** - *ଅନେ:* (ବି.) : ତୋରାଣି, ପଖାଳ, ପେଜ

**ପେଜ ବହଳ ହେବା** - *ଗ:* (କ୍ରି.) : ଆର୍ଥିକ ଅବସ୍ଥା ଉନ୍ନତ ହେବା

**ପେଜୁଣି** - *ଉ:* (ବି.) : ଭୂତ ପ୍ରେତ ଝାଡିବା ନାରୀ

**ପେଜୁରା** - *ଗ:* (ବି.) : ପିଜୁଳି

**ପେଞ୍ଚ** - *କଳ:ଗ:ଦେ:* (ବି.କ୍ରି.) : ଅସୁବିଧା, କଥାରେ ଦୋଷ ବାହାର କରିବା, ପ୍ରପଞ୍ଚ, ଗୂଢ ଉପାୟ, ଏକ ପ୍ରକାର ଲୁହା କଣ୍ଟା

**ପେଞ୍ଚକୁଲୁ** - *ଗ:* (କ୍ରି.) : କଥାରେ ଦୋଷ ବାହାର କରିବା, ପ୍ରପଞ୍ଚ

**ପେଞ୍ଚୁଆ** - *ଚୌ:* (ବିଂ.) : ଅଦୃଶ୍ୟରେ ବିଘ୍ନ ଘଟାଇବା ଲୋକ

**ପେଞ୍ଜାମ୍** - *ମ:* (ବି.) : ପାଉଁଜି

**ପେଟ୍ କପ୍‌ଟିଆ** - *ନୂ:* (ବିଂ.) କପଟ ଆଚରଣ କରୁଥିବା ବ୍ୟକ୍ତି

**ପେଟ୍‌ଗୁନା କରିବା** - *ନୂ:* (ବି.) : ପିଠିରେ ନାଉ କରିବା

**ପେଟ୍‌ରୀ** - *ନବ:* (ବିଂ.) : ଗର୍ଭବତୀ

**ପେଟ୍‌ଲାବାର** - *ସୁବ:* (କ୍ରି.) : ନିଜ ପଟକୁ ଆଣିବା ପକ୍ଷ ଭୁକ୍ତ କରିବା

**ପେଟ୍‌ଲି** - *ସ:* (ବି.) : ପୁତୁଳୀ

**ପେଟକ୍** - *ପଦ୍ୟ:* (ବିଂ.) : ଗେଡ଼ା

**ପେଟ କାବ୍‌ରି** - *ସ:ଗଦ୍ୟ:* (ବିଂ.) : ଯେଉଁ ସ୍ତ୍ରୀ ପ୍ରଥମେ ନିଜେ ଖାଇଥାଏ,

**ପେଟଦୁଖା** - *କଳା:* (ବି.) : ପେଟ ବ୍ୟଥା, ପେଟରେ ଯନ୍ତ୍ରଣା

**ପେଟ ଧୂଆ** - *ଚୌ:* (ବି.) : ଗର୍ଭପାତ

**ପେଟପେଟୁ** - *ବଲ:* (ବି.) : ପେଟ ବଡ଼ ଅଥଚ ଶରୀର ପତଳା ଥିବା ବ୍ୟକ୍ତି

**ପେଟଫଳିବା** - *ଗ:* (ବି.) : ଗର୍ଭବାସ ହେବା

**ପେଟଭାଙ୍ଗିବା** - *ଗ:* (କ୍ରି.) : ଗର୍ଭନଷ୍ଟ

**ପେଟଭାତ** - *ନ:* (ବି.) : ସାହୁକାର ଘରେ ମାଗଣା କାମ କରିବା

**ପେଟର** - *କୋ:* (ବିଂ.) : ସହୋଦର, ନିଜର

**ପେଟରଣ୍ଡା** - *ଗଦ୍ୟ:* (ବିଂ.) ଜନ୍ମ ହେବାପୂର୍ବରୁ ଯାହାର ବାପା ମରିଥାଏ, ଅଣବାପୁଅ

**ପେଟରା** - *ଅନେ:* (ବି.) : ବେତରେ ତିଆରି ବଡ଼ ପେଡ଼ି, ତିଆସିଲ ଖୋଳ, ବେତ ତିଆରି ଏକ ବିଶେଷ ଧରଣର ବାକ୍ସ ବା ପେଟିକା

**ପେଟରାଣ୍ଡିଆ** - *ଯା:* (ବି.) ପିତା ମୃତ୍ୟୁ ପରେ ଜନ୍ମିତ ସନ୍ତାନ

**ପେଟରି** - *ସୁ:ମ:ଅ:ଦେ:* (ବି.ବିଂ.) : ଗର୍ଭବତୀ

**ପେଟରୀ** - *ବୌ:* (ବି.) : ସ୍ତ୍ରୀ ମାନଙ୍କର ଜିନିଷ ରଖିବା ପାତ୍ର

**ପେଟହେବା** - *କୋ:ନବ:* (କ୍ରି.) ଗର୍ଭବାସ ହେବା, ଗର୍ଭାବସ୍ଥା

**ପେଟା** - *ବ:ଦେ:ବୌ:* (ବି.) କ୍ଷେତରେ କଟାହୋଇଥିବା ଧାନ ଗୁଛ, ମୁଗ ବିରି ଆଦି ଝିଙ୍କାହେଲାବେଳେ କ୍ଷେତରେ ସ୍ଥାନେ ସ୍ଥାନେ ରଖାଯିବା, ଧାନ କଟା ପରେ ବିଲରେ ବିଛେଇ ରଖାଯାଇଥିବା ଧାନ

**ପେଟାବା** - *ସୁ:* (କ୍ରି.) : ପେଟରେ ଭାରା ଦେଇ ଗୁରୁଣ୍ଡିବା

**ପେଟାରି** - *କ:* (ବି.) : ବେତବାକ୍ସ

**ପେଟି** - *ଅନେ:* (ବି.ବିଂ.) : ପେଟିକା, ବାକ୍ସ, ମାଈଛେଳି, ଗର୍ଭବତୀ ସ୍ତ୍ରୀ, ଗୋବରା ଚଢେଇ ପେଟରେ ବନ୍ଧାଯାଇଥିବା ସୂତା, କାର୍ଟୁନ୍, ବଡ଼ କାଗଜ ଡବା

**ପେଟୁଆ** - *ଢେ:* (ବିଂ.) : ଯେ ବହୁତ ଖାଏ, ପେଟୁ

**ପେଟେରା** - *ଗଦ୍ୟ:* (ବି.) : ପାର୍ଶଲ

**ପେଟ୍ ଲୀ** - *ଅ:* (ବି.) : ପେଟରେ ପିଲା ଅଛି

**ପେଠ୍‌ରା** - *ବୌ:* (ବି.) : ପେଟୁ

**ପେଠା** - *ନୂ:ଅ:ସୁ:* (ବିଂ) : ମନା କଲେବି ନମାନିବା, ବାଙ୍ଗରା ପୁରୁଷ, ଅଧିକା ଖାଉଥିବା ବ୍ୟକ୍ତି

**ପେଠାଳି** - *ମ:* (ବି.) : ଅଣ୍ଡା

**ପେଠା ଶୁଆଇବା** - *କନ:* (ବି.) : ଅବିବାହିତ ଯୁବକ

**ପେଠି** - *ସ:ବ:କଳା:* (ବି.) ଛୁଆ ଜନ୍ମ ଦେଇନଥିବା ମାଈ ଛେଳି, ଛୁଆ ଦେଇନଥିବା ମାଈ କୁକୁଡା

**ପେଠେଇ** - *ସ:* (ବିଂ.) : ଯିଏ ବେଶୀ ଭାତ ଖାଏ(ସ୍ତ୍ରୀ)

**ପେଢ଼ା** - *ମ:ଗ:ନବ:କଳା:* (ବି.) : ପିଜୁଳି, ପେଶିବା, ଛେନା ତିଆରି ମିଠା, ବାକ୍ସ, ପେଡ଼ି, ବାଉଁଶ ଖଡ଼ିକାରେ ନିର୍ମିତ ଗୋଲାକାର ଘୋଡ଼ଣି ଥିବା ଥଳି

**ପେଡ଼ି** - *ଅନେ:* (ବି.) : ବେତ ମଞ୍ଜୁସା, ଚନ୍ଦନ ଘୋରିବା ପଥର, ବାଉଁଶ ପାତ ଓ ବେତରେ ନିର୍ମିତ ବାକ୍ସ, ତାଳପତ୍ର, ବେତ ବା ବାଉଁଶରେ ତିଆରି ପାତ୍ର

**ପେଡ଼ିପେଟରା** - *ନ:* (ବି.) : ବେତନିର୍ମିତ ବାକ୍ସ

**ପେଢ଼ିବା** - *ନ:ପୁ:* (କ୍ରି.) : ଆଖୁକୁ କଳରେ ପେଷିବା, ଗହମ ପେଷିବା, କସରତ କରିବା, ତେଲ ଘଣାରେ ପେଢ଼ିବା

**ପେଢାପୁଟି** - *ଗ:* (ବି.) : ପେଟିକା, ସିନ୍ଧୁକ

**ପେଢି** - *କୋ:ଗଞ:* (ବି.) : ବାକ୍ସ, ସିନ୍ଦୁକ

**ପେଣ୍ଠ** - *ଅନେ:* (ବି.) ଛୋଟ ସହର, ବହୁଲୋକ ଏକାଠି ହୋଇ କିଣାବିକା କରିବା ସ୍ଥାନ, ବଜାର ସ୍ଥଳ, ବାଣିଜ୍ୟ ସ୍ଥଳ, ବିକ୍ରିସ୍ଥାନ, କାଠପେଣ୍ଠ, ହାଟ

**ପେଣ୍ଠା** - *ଦେ:କେ:* (ବିଂ.ବି.) ପେଟୁ, ବାଙ୍ଗରା, ଗେଡା

**ପେଣ୍ଠାମାଂସ** - *ଯା:* (ବି.) ଅଣ୍ଡିରା ଛେଳିମାଂସ

**ପେଣ୍ଠିଆ** - *ଗ:* (ବି.) : ବଜାର ଅଞ୍ଚଳର ଲୋକ, ବ୍ୟବସାୟୀ

**ପେଣ୍ଠିପାଣ୍ଠି** - *ଗଦ୍ୟ:* (ବିଂ.) : ମୋଟାସୋଟା

**ପେଣ୍ଠୀ** - *ସଂ:ଅ:ଦେ:* (ବି.ବିଂ.) : ଗେଡ଼ୀ ସ୍ତ୍ରୀ, ମାଈ କୁକୁଡ଼ା, ଛେଳୀ, ବାଙ୍ଗରା ସ୍ତ୍ରୀ, ଅଣ୍ଡିରା, ମୋଟି

**ପେଣ୍ଡମ୍** - *ମା:କୋ:* (ବି.) : ଭାତରୁ ପ୍ରସ୍ତୁତ ମଦ, ମଦ୍ୟ ବିଶେଷ

**ପେଣ୍ଡରା** - *ଦୌ:* (ବି.) ଚିତାବାଘ, ହେଟାବାଘ

**ପେଣ୍ଡା** - *ଅନେ:* (ବି.) ଆଣ୍ଠୁତଳ ମାଂସପେଶୀ, ପେଣ୍ଡା, କାନ୍ଦି, ଗୁଚ୍ଛ, ଛୋଟ ବିଡ଼ା, ଆଣ୍ଠୁ ଠାରୁ ବଳାଗଣ୍ଠି ପର୍ଯ୍ୟନ୍ତ ଗୋଡ଼ର ଭାଗ, କଦଳୀ କାନ୍ଧିର ଅଂଶ, ପ୍ରାଥମିକ ଫୁଲ ବାହାରିଥିବା ଅବସ୍ଥା, ଜଙ୍ଘ

**ପେଣ୍ଡାବାଳ** - *ଗ:* (ବି.) : କେଶଗୁଚ୍ଛ

**ପେଣ୍ଡି** - *ଖୋ:ଦେ:ଗ:* (ବି.ବିଂ.) : କାନରେ ପିନ୍ଧିବା ପାଇଁ ପ୍ରସ୍ତୁତ ଏକ ଅଳଙ୍କାର, ଛୋଟ ଗୁଚ୍ଛ, କାନ୍ଦି

**ପେଣ୍ଡିଫୁଲ** - *ନ:* (ବି.) କାନର ସ୍ୱର୍ଣ୍ଣଅଳଙ୍କାର

**ପେଣ୍ଡି ବାଇଗଣ** - *ଗ:* (ବି.) ଛୋଟ ପ୍ରଜାତିର କାନ୍ଧି ବାଇଗଣ

**ପେଣ୍ଡୁ** - *କେ:ଗଦ୍ୟ:ନ:ଖୋ:* (ବି.) : ବଲ୍, କନ୍ଦୁକ, ଗୋଲାକୃତି ଖେଳନା

**ପେଣ୍ଡେରା** - *ନ:କଞ* (ବି.) : ଗଧିଆ

**ପେତ୍ନି** - *କନ୍ଧ:ବୌ:* (ବି.) : ମୃତା ଗର୍ଭବତୀ ସ୍ତ୍ରୀର ପ୍ରେତାତ୍ମା, ପ୍ରେତ

**ପେତେନ** - *ସୁ:କଲା:ଝା:ସ:* (ବି.) : ପ୍ରେତନୀ, ଭୂତୁଣୀ, ସ୍ତ୍ରୀ ପ୍ରେତ, ମୃତ ଅତୃପ୍ତ ଆତ୍ମା, ପେତୁଣୀ

**ପେତ୍ ପେତା** - *ଅ:* (ବିଂ.) : ନରମ

**ପେଦା** - *ମା:* (ବି.) : ଗ୍ରାମ ମୁଖ୍ୟ

**ପେଦ୍ଧାମା** - *ଗଦ୍ୟ:* (ବି.) : ବଡ଼ଝିଅ

**ପେଧେଇବା** - *କେନ୍ଦୁ:* (କ୍ରି.) : ବାରମ୍ବାର କହିବା

**ପେନ୍** - *ନୂ:ଡେ:* (ବି.) : କଲ, କଲମ

**ପେନ୍‌ବୁଡ୍ଡ** - *କଳା:* (ବି.) : ପାଣିରେ ବୁଡ଼ି ପାରୁଥିବା ବ୍ୟକ୍ତି, ପାଣିରେ ବୁଡ଼ି ଖାଦ୍ୟ ଅନ୍ୱେଷଣ କରୁଥିବା ଚଢେଇ

**ପେନ କାଁଖେର** - *ନୂ:* (ବି.) : ପାଣି କାକୁଡ଼ି

**ପେନ ଡେଣୋ** - *ନୂ:* (ବି.) : ଢୁଣ୍ଡୁଭ ସର୍ପ

**ପେନି** - *ଅ:* (ବି.) : ଖଡ଼ି

**ପେନିକଟା, ପେନ୍‌କଟା** - *କଳା:* (ବି.) : ସେଫ୍‌ଟିପିନ୍

**ପେନିଢ଼େଲି** - *କନ୍ଧ:* (ବି.) : ଶୀତଋତୁ

**ପେନୁ** - *କୋ:* (ବି.) : ଦେବତା

**ପେଣ୍ଟିଆ** - *ଗଞ୍ଜ:* (ବି.) : ଜାତିବିଶେଷ

**ପେଣ୍ଡିପେଣ୍ଡି** - *ଗ:* (ବିଂ.) : ପେଣ୍ଡା

**ପେଣ୍ଡା** - *ନ:ଗ:* (ବିଂ.ବି.) : ଗୁଚ୍ଛ, ମେଞ୍ଚାଏ, ସ୍ତବକ

**ପେଣ୍ଡିବା** - *ନ:* (କ୍ରି.) : ଗୁଚ୍ଛିବା

**ପେନ୍ଦ** - *ଅନେ:* (ବି.) : ସ୍ତ୍ରୀର ଗର୍ଭାଶୟ ବାହାରକୁ ବାହାରିପଡ଼ିବା, ଯୋନି ଦେଇ ବାହାରକୁ ବାହାରିଥିବା ବର୍ଦ୍ଧିତ ମାଂସ ପିଣ୍ଡୁଳା

**ପେନ୍ଦା** - *କଳା:* (ବିଂ.) : ଅଚତୁର, ବୋକା, ମାନ୍ଦା

**ପେନ୍ଦି** - *କଳା:ସୁ:ସ:* (ବି.) : ବାଲଟିର ଚକି, ବାସନ ତଳ, ପୁଡୁଗ ତଳ, ତଳ ଭାଗ

**ପେମା** - *ଦେ:* (ବି.) : ପ୍ରେମିକ

**ପେମେଇ** - *କେନ୍ଦୁ:* (ବିଂ.) ସକେଇ ହେଉଥିବା

**ପେମ୍ପଲ** - *ଖୋ:କେନ୍ଦୁ:* (ବି.) : ଛୋଟ ଧାନପୋକ

**ପେୟାଁଜ** - *ମ:* (ବି.) : ପିଆଜ

**ପେରଙ୍ଗ ଜାଲି** - *କନ୍ଧ:* (ବିଂ.) : ଅତି ପତଳା

**ପେରା** - *ମା:ବୌ:ଗଦ୍ୟ:କୋ:* (ବି.ବିଂ.) : ପିକୁଳି, ବଡ, ଉତ୍ତମ, ପେଜ, ତୋଡ଼ାଣି, ଜାଉ

**ପେରିବୁହା** - *ବୌ:* (ବି.) : ପେଡ଼ି ବୋହିବା ଲୋକ

**ପେରୁ** - *ଦେ:* (ବି.) : ଅଗ୍ନି, ସୂର୍ଯ୍ୟ

**ପେରୁଆ** - *ସୁ:ଦେ:* (ବି.) : ପାରା

**ପେରୁକାଢିବା** - *ଗ:* (ବି.) : ନିସ୍ତେଜ କରିବା

**ପେରେଛା** - *ବ:* (ବି.) : ଜାହାଜର ବାଡ଼

**ପେରେଣ୍ଡାଲୁ** - *ଗଞ:* (ବି.) : ସମସ୍ତେ ଜଣକ ଛିଦ୍ର ଖୋଜି ଆଲୋଚନା କରିବା

**ପେର୍‌ପେଚା** - *କଳା:* (ବିଂ.) : ଙ୍ଗଂଜାଳିଆ କାମ, ବାରମ୍ବାର କରୁଥିବା କାମ

**ପେର୍‌ପେରି** - *ସ:* (ବି.) : ଅସୁସ୍ଥ ଶରୀର

**ପେର୍‌ବାର** - *ସୁବ:* (କ୍ରି.) : ଆଖୁ, ତୈଳବୀଜ ଆଦି ପେଡିବା

**ପେର୍‌ମା** - *ଡୌ:* (କ୍ରି.) : ପେଡ଼ିବା

**ପେର୍‌ରା** - *ସୁ:ସୁବ:ସ:* (ବିଂ.) : ପେଟୁ, ପେଟା ଲୋକ

**ପେର୍‌ରାପେଟୀ** - *କଳା:* (ବିଂ.) : ପେଟ ବଡ଼ଥିବା ସ୍ତ୍ରୀଲୋକ

**ପେର୍‌ରି** - *ବଞ:ସୁବ:* (ବି.ବିଂ.) : ଆଣ୍ଠୁ ତଳ, ଗୋଡ଼ର ପେଣ୍ଡା, ପେର୍‌ରାର ସ୍ତ୍ରୀଲିଙ୍ଗ

**ପେର୍‌ରେଇବା** - *ବ:* (ବି.) ମୁମୂର୍ଷୁ ଅବସ୍ଥାରେ ଡୋଳା ଦୁଇଟି ଓଲଟାଇଦେବା

**ପେଲ** - *ସୁବ:* (ବି.) : ପୁରୁଷ ଅଣ୍ଡକୋଷ

**ପେଲ୍‌କେଇବା** - *କୋ:* (କ୍ରି.) : ଠେଲିଦେବା,ପେଲିଦେବା

**ପେଲ୍‌ଘାବା** - *ଝା:* (କ୍ରି.) ପଛପଟୁ ଠେଲିଦେବା

**ପେଲ୍‌ବା** - *ଦେ:ସୁ:* (କ୍ରି.) : ଅମାନ୍ୟ କରିବା, ଖାଇବା, ଠେଲିବା

**ପେଲଣା** - *କେ:ଯା:* (ବି.) : ତିନି କୋଣିଆ ମାଛ ଧରିବା ପେଲା ଯନ୍ତ୍ର, ଜାଲରେ ଲାଗେ, ତିନିକୋଣ ବିଶିଷ୍ଟ କାଠ

**ପେଲା** - *କ:ଦେ:* (ବି.ବିଂ.) ଯାହା ପେଲିରଖେ, ଯେ ହର୍‌ଦମ୍ ପେଲେ

**ପେଲାଗୁଂଜା** - *ନବ:* (ବି.) : ଯେମିତି ହେଲେ ଚଳେଇ ନେବା

**ପେଲେଇ ପୁଅ** - *ଗ:ପୁ:* (ବି.) : ଅସତ୍ ଚରିତ୍ରା ନାରୀର ପୁତ୍ର, ଦାସୀ ପୁତ୍ର

**ପେଶକାର** - *ସୁ:* (ବି.) : ଦାଖଲକାରୀ

**ପେଷଣ** - *ଗ:ଡୌ:* (କ୍ରି.ବି.) : ପ୍ରେରଣ, ତନ୍ତ୍ର ପ୍ରୟୋଗ କରିବା

**ପେଷଣା** - *ଖୋ:ନ:* (କ୍ରି.ବିଂ.ବି.) : ପଥରକୁ ଗୋଲାକୃତି କରି ତିଆରି ହୋଇଥିବା ଏକ ଯନ୍ତ୍ର, ଘୋରଣା

**ପେଷୁ** - *ନ:* (ବି.) : ରାଶିଭଳି ଏକ ତୈଳବୀଜ (ରଙ୍ଗ ଲାଲ୍)

**ପେସ୍‌ରେଇ** - *ସ:* (ବି.) : ପ୍ରସାରିତ

**ପେସରାଟୁ** - *ରା:* (ବି.) : ମୁଗ ଚକୁଳି

**ପେସା** - *ସୁ:ବା:ମ:* (ବି.) : ବେପାର, ପିଉସା

**ପେସାଦିଆ** - *ଡୌ:* (ବି.) : ଆତ୍ମସାତ୍

**ପେସାବ** - *ବା:* (ବି.) : ପରିସ୍ରା

**ପେସି** - *ବା:* (ବି.) : ପିଉସୀ

**ପେହେଡ଼ା** - *ଭ:* (ବି.) : ପିକ୍ଚୁଳି

**ପେହେଁକା** - *ଗ:* (ବି.) : ହାତୀର ସ୍ୱର

**ପେହେଁରେଇବା** - *କନ୍ଧ* (କ୍ରି.) : ବିଛେଇ ଦେବା, ଖେଳେଇ ଦେବା

**ପେହ୍ଲେଇ ଦେବା** - *ଦେ.* (କ୍ରି.) : ଠେଲି ଦେବା

**ପେଁର୍‌ରା** - *ଦେ.* (ବି.) : ଚିତାବାଘ

**ପେଁର୍‌ରି** - *ସ.* (ବି.) : ଗୋଇଠି

**ପୈଠ** - *କେ.* (ବି.) : ଜମା

**ପୋଇଲୀ** - *କେ.* (ବି.) ଦାସୀ, ବିବାହ ସମୟରେ ବଧୂ ସହିତ ବାପ ଘରୁ ଆସିଥିବା ସହଚରୀ

**ପୋଏ** - *ଅ.* (ଅ.) : ମୁଅମାନେ

**ପୋକରି** - *ଗଞ୍ଜ.* (ବି.) : ବୋକା, ଅଯୋଗ୍ୟ

**ପୋକଶୁଙ୍ଗା** - *ନ.ଜ.* (ବି.) : ଏକପ୍ରକାର ଦୁର୍ଗନ୍ଧ ପତ୍ରଯୁକ୍ତ ଗୁଳ୍ମ

**ପୋଖତ** - *ନ.କେ.* (ବିଂ.) ପାରଙ୍ଗମ, ଅନୁଭୂତି ସିଦ୍ଧ, ପାରିବାର, ପୁରୁଣା, ଅଭିଜ୍ଞ, ଯୋଗ୍ୟ ବ୍ୟକ୍ତି

**ପୋଖତାନି** - *ଅ.* (ବିଂ.) : ପ୍ରାଚୀନ ଓ ଭଦ୍ର ପରିବାର, ସମ୍ଭ୍ରାନ୍ତ

**ପୋଖତି** - *ଜ.* (ବିଂ.) : ସନ୍ତାନବତୀ

**ପୋଖତିଆଳି** - *ଅ.* (ବି.) : ଧାଇ

**ପୋଖତି ଛାଲି** - *ଗଞ୍ଜ.* (ବି.) : ଭେରୁ ଗଛ

**ପୋଖରୀ ପାଣି** - *ଅ.* (କ୍ରି.) : ଝାଡ଼ାଯିବା

**ପୋଖୁଆ** - *ସୁ.* (ବିଂ.) : ପୁଅ ହଂତା

**ପୋଖୁରାଡ଼** - *ଗ.* (କ୍ରି.) : ଝାଡ଼ାଯିବା

**ପୋଚ** - *ଅ.* (ବି.) : ଦୁର୍ଗନ୍ଧ ନାଳ

**ପୋଚ** - *ନ.ପୁ.* (ବି.) : ଚୂନଦେବା ବାଡ଼ି, ଅପରିଷ୍କାର, ଚୂନ ଧଉଳାପାଇଁ ଝୋଟ ତିଆରି ବ୍ରସ୍

**ପୋଛା** - *ଅ.* (ବି.) : ଗାମୁଛା

**ପୋଛେ** - *ଯା.* (ବି.) : ଛଅ ସଂଖ୍ୟା

**ପୋଟ୍‌ଲେଇ** - *କନ୍ଧ* (କ୍ରି.) : ଆଲିଙ୍ଗନ କରି

**ପୋଟିଏ** - *କେନ୍ଦୁ.* (ବିଂ.) : ୧୦ କିଲୋ

**ପୋଟୋ** - *ସୁ.* (ବି.) : ହଠାତ୍

**ପୋଡ୍** - *କନ୍ଧ* (ବି.) : ଗଉଡ ଜାତିର ଏକ କୌଳିକ ଉପନାମ, ପୋଢ, ମହିଷ

**ପୋଡ୍‌ମରା** - *କନ୍ଧ* (ବି.) : ଆଦିବାସୀ କନ୍ଧମାନଙ୍କର ପର୍ବବିଶେଷ ଏଥିରେ ଧରଣୀ ନିକଟରେ ପୋଢବଳି ଦିଆଯାଇଥାଏ

**ପୋଡ଼ପାଡ଼** - *ପୁ.* (ବି.) : ହାଲୁକା ଭାଙ୍ଗପାଣି

**ପୋଡ଼ାମୁହାଁ** - *ନ.* (ବିଂ.) : ଭାଗ୍ୟହୀନ, ଗାଳି

**ପୋଡ଼ିଙ୍ଗା** - *ବା.* (ବି.) : ଖିଆଯିବାପାଇଁ ପୋଡ଼ାଯାଇଥିବା ଫଳମୂଳ

**ପୋଡୁ ଚାଷ** - *ସଂ.* (ବି.) : ଜଙ୍ଗଲ ପୋଡ଼ି ଯେଉଁଚାଷ କରାଯାଏ

**ପୋଢ଼** - *ଅନେ.* (ବି.) : ଅଣ୍ଡିରା ମଇଁଷି ଯାହାର ପୁରୁଷାଙ୍ଗକୁ ଅପରେସନ୍ କରି କଟାଯାଇଥାଏ, ମହିଷ, ବଡ଼ ମଇଁଷି

**ପୋତୁଅ** - *ଗଦ୍ୟ:* (ବି.) : ମାଛମରା ଡଙ୍ଗା ଓ ସାଧନ

**ପୋତକ** - *ଭ:* (ବି.) : ଖୁବ୍ ଜୋରରେ ଦଂଶନ କରୁଥିବା ପତଙ୍ଗ

**ପୋତା ମୁହାଁ** - *ଅ:* (ବିଂ.) : ବଦମାସ୍(ଗାଳି)

**ପୋଥି** - *ନ:* (ବି.) : ତାଳପତ୍ର ବିଡ଼ା, ପୁରୁଣା ପୁସ୍ତକ ରୂପ

**ପୋପଲା** - *ସ:* (ବିଂ.) : ପାକୁଆ

**ପୋବତା** - *ଖୋ:* (ବି.) : ଏକ ପ୍ରକାର ମାଛ

**ପୋରଦିନ** - *ଗା:* (ବି.) : ଦୁଇଦିନ ପୂର୍ବେ (ବା) ଦୁଇଦିନ ପରେ

**ପୋରାଉଆଁସ୍** - *କଳା:* (ବି.) : ପୂରାଉଆଁସ୍, ସପ୍ତପୁରୀ ଅମାବାସ୍ୟା

**ପୋରାଧାନ୍** - *କଳା:* (ବି.) ପୁଡ଼ାରେ ରଖିଥିବା ଧାନ

**ପୋରିଆ** - *ସଂନ:* (ବିଂ.) ଅଚଡ଼ା, ଚିରିଯିବା, ପୁରୁଣିଆ

**ପୋଲ୍** - *କଳା:* (ବି.) : ଅଗାଡି, ରସ ନଥିବା ଫଂପା ଧାନ୍

**ପୋଲଙ୍ଗା** - *ଗା:* (ବିଂ.) ଯେଉଁ ଫଳ ବା ମୂଳର ଭିତର ଅଂଶ ଶୂନ୍ୟ

**ପୋଲଡୁଂଗୁ** - *କଳା:* (ବି.) ଗଛ କୋରଡରେ ରହୁଥିବା ସରୁ ଲମ୍ବ ସାପ ବିଶେଷ

**ପୋଲପଟି** - *ସୁ:* (ବି.) : ଫାଙ୍କା

**ପୋଲା** - *ଦେ.ନ:* (ବି.ବିଂ.) : ମାଗଣା, ଫମ୍ପା

**ପୋଲାଖିଆ** - *ଅ:* (ବିଂ.) : ମାଗଣା ଖିଆ

**ପୋଲାଧନ** - *ନ:* (ବି.) ଉପୁରିଧନ, ମାଗଣାଧନ

**ପୋଲା ପଇଠ** - *ସ:* (ବି.) : ଅସୁଲ୍ ନ ଦେଇ ଲେଖିଦେବା

**ପୋଲାଫାଙ୍କିଆ** - *ଦେ:* (ବିଂ.) : ନିଷ୍କର୍ମା

**ପୋଲୁ** - *ଗା:* (ବି.) : ବ୍ରିଜ୍

**ପୋଲେଙ୍ଗା** - *କଳା:* (ବିଂ.) : ପୋଲା

**ପୋଷିଆଁ** - *କଳା:* (ବିଂ.) : ପୋଷ୍ୟ

**ପୋଷେ** - *ନ:* (ବିଂ.) : ଆଞ୍ଜୁଳାଏ

**ପୋସିଆଁ** - *ସୁ:* (ବିଂ.) : ପୋଷ୍ୟ

**ପୋହିବା** - *ଗଦ୍ୟ:* (ବି.) ପୁହାଇବା, କଟାଇବା, ବିତାଇବା

**ପୌରବନ୍ଧା** - *କଳା:* (କ୍ରି.) : ପୁତ୍ର ବା କନ୍ୟାର ବିବାହ ପୂର୍ବରୁ ବିବାହର ଆୟୋଜନ ପାଇଁ ଦେବତାଙ୍କ ନିକଟରେ ସମର୍ପିତ ସ୍ୱତନ୍ତ୍ର ଭୋଗରାଗ ପ୍ରଥା ବିଶେଷ

**ପଁଏଖ୍** - *ସ:* (ବି.) : ପକ୍ଷୀର ପର

**ପଁଖି** - *ସୁବ:* (ବି.) : ପକ୍ଷୀର ପର

**ପଁଚାଇବା** - *ଗ:* (କ୍ରି.) : ଦୋଳି ହଲାଇବା

**ପଁଚେଲ** - *ବ:* (ବି.) ଯୁଆଳିରେ ବଳଦ କାଂଧ ପାଖରେ ଲାଗୁଥିବା ଦୁଇଖଣ୍ଡ କାଠ

ପଁହ୍ରା - *କଳା:* (ବିଂ.) : ପାଣ୍ଡୁର ବର୍ଣ୍ଣ, ଧୂସର ବର୍ଣ୍ଣ

ପଁଡାବାର - *ସୁବ:* (ବି.) : ଆତ ପାଚିବା ଆଗରୁ ପାଣ୍ଡୁର ଦିଶିବା

ପଁଡୁକା - *ସ:ସୁବ:* (ବି.) : କପୋତ ପକ୍ଷୀ

ପଁଡ଼ରା - *ସୁ:* (ବିଂ.) : ଧଳା, ସଫା

ପଁଢେଇ - *ସ:ସୁ:* (ବି.) : ଯୋତା, ଚମଡ଼ା ଜୋତା

ପଁର୍‌ରାଚନା - *ସୁବ:* (ବି.) : ଧଳାବୁଟ

ପଁର୍‌ରା, ଧୋବ୍ - *ସ:* (ବି.) : ଧଳା

ପଁଲ୍ଲା - *ସ:* (ବି.) : ପୋହଳା

ପଁସାରୀ - *ସଂ:* (ବି.) : ଡ଼ାଲିଚାଉଳ ବିକ୍ରେତା, ତେଲରାତି, ଦୋକାନୀ

ପଁହର୍ - *କଳା:* (ବି.) : ପ୍ରହର

ପଂକଡ଼ - *ରା:* (ବିଂ.) : ହିତାହିତ ଜ୍ଞାନଶୂନ୍ୟ

ପ୍ଲେକରୀ - *କନ୍ଧ:* (ବି.) : ଚୋର

ପ୍ଲେକା - *କନ୍ଧ:* (ବି.) : ଉକୁଣି

ପ୍ୟରୁହାଁ - *କେ:* (ବିଂ.) : ବଡ଼ ପୁଅ, ଝିଅ, ପଢୁଆଁ

ପ୍ରସ୍ତାପ - *କ:* (ବି.) : ପ୍ରସ୍ତାବ

ପ୍ରାଙ୍ଗା - *କନ୍ଧ:* (ବି.) : ଚାଉଳ

ପ୍ରାପା - *କନ୍ଧ:* (ବି.) : ବିକ୍ରି

ପ୍ରାସ - *ଗ:ଭା:ନ:ନ:* (ବି.) : ଦରଦ, ବେଦନା, ଯନ୍ତ୍ରଣା, ପିଠିରେ ଜଣକୁ ବୋହିନେବା, ପରାସ, ଦରଜ, ପୀଡ଼ା

ପ୍ରାସ୍କା - *ଗଦ୍ୟ:* (ବି.) : ହନୁମାଙ୍କଡ଼

ପ୍ରିପ୍‌କା - *କନ୍ଧ:* (କ୍ରି.) : ଖୋଜିବା

ପ୍ରେତପକ୍ଷ - *ନ:* (ବି.) : ଆଶ୍ୱିନ କୃଷ୍ଣପକ୍ଷର ୧୫ଦିନ ଧରି ନିଶ ଦାଢି ନକାଟି ପାଳନ କରିବା, ପିତୃପକ୍ଷ, ଅପରପକ୍ଷ

ପ୍ରେତପଣା - *ନ:* (ବି.) ଶୁଦ୍ଧିକ୍ରିୟା, ଅନ୍ତେଷ୍ଟିକ୍ରିୟାରେ ଦିଆଯିବା ପଣା

ପ୍ଲେଣ୍ଡ - *ଗଜ:* (ବି.) : ଅଦାଲତରେ ବାଦୀ ପକ୍ଷରୁ ଦାଖଲ କରିବା

# ଫ

**ଫଅଟ** - *କେ.* (ବି.) : ଛବି, ଫଟୋ

**ଫଇକା** - *କେ.* (ବିଂ.) : ନିରସ

**ଫଇମା** - *ଗା.ଭ.* (ବି.) ବାରବୁଲା, ଅନ୍ତସାରଶୂନ୍ୟ

**ଫଇଲ୍ ଜାଗା** - *ସ.* (ବିଂ.) : ଓସାରିଆ ଖାଲି ଜାଗା

**ଫଇସଲା** - *ସଂ.ଦେ.* (ବି.) : ସମାଧାନ, ନିଷ୍ପତ୍ତି, ମୀମାଂସା

**ଫଉ** - *ସ.* (ବି.) : ବାହାନା

**ଫଉଡ଼ା** - *ରା.* (ବି.) : କାଠ ବା ବାଉଁଶ ଖଣ୍ଡ, ଫଳଝଡାଇବା ବାଡି

**ଫଉତି** - *ଗା.* (ବି.) : ତୋଫାନ

**ଫଉଲି** - *ରା.* (ବି.) : କଣ୍ଟା ଅଥଚ ମିଠାମାଛ

**ଫଏଦଲ** - *ସୁବ.* (ବି.) : ମେଲାଜାଗା

**ଫଏଲ** - *ସୁ.* (ବି.) : ବିସ୍ତାରିତ, ଏକ ପ୍ରକାର ମାଛ

**ଫକଡ଼** - *ଅନେ.* (ବି.ବିଂ.) : ତୁଚ୍ଛା, ହୀନ, ଦୁଷ୍ଟ, ସର୍ବସ୍ୱାନ୍ତ, ବିନା ପରିଶ୍ରମରେ ମୂଲ୍ୟ, ଖାଲି, ନିର୍ଧନ, ଧନହୀନ, ଛତରା, ଫୁଲାଫାଙ୍କିଆ, ମୁଦ୍ରାଶୂନ୍ୟ, କିଛି ହିଁ ନଥିବା ବ୍ୟକ୍ତି, ପକେଟ୍‌ଖାଲି, ପାଖରେ ଆଦୌ ଅର୍ଥନଥିବା

**ଫକଡ଼ରାମ** - *ସୁ.ନବ.ନ.* (ବି.ବିଂ.) ମାଫିଦାର, ବଜ୍ଜାତ ଲୋକ, ଅର୍ଥହୀନ (ବ୍ୟକ୍ତି)

**ଫକଲ୍ ପେଣ୍ଠି** - *ଗୌ.* (ବିଂ.) : କୌଣସି କାମକୁ ନୁହେଁ

**ଫକା** - *ସୁବ.ଗ.ଗୌ.* (ବି.ବିଂ.) : ଫିକା, ପାଣ୍ଡୁର ବର୍ଣ୍ଣ, ଚର୍ମର ସାମୟିକ ବ୍ରଣ, ଅଳ୍ପ ପରିମାଣ

**ଫକାଖଇ** - *ଦେ.* (ବି.) : ଗୁଡ଼ ବା ଚିନିରେ ପଗା ହୋଇ ନ ଥିବା

**ଫକାଣି** - *ଗଜ.ଗ.* (ବି.) : ଚେତା, ହୋସ

**ଫକୁ** - *ଦେ.* (ବି.) : ଫିମ୍ପି

**ଫଖ୍** - *ନବ.* (ବିଂ.) : ପର

**ଫଗାଡିବା** - *ନବ.ଗ.* (କ୍ରି.) : ଫିଗିବା

**ଫଗୁନ** - *ଅନେ.* (ବି.) : ଫଗୁଣ, ଫାଲଗୁନ,

**ଫଗେନ** - *ସୁ.* (କ୍ରି.) : ଗୁଣି କରିବା

**ଫଚକ୍କା ବାଏଲ୍** - *ଝା.* (ବି.) : ଅତି ପାଲିସି ବାଲି

**ଫଜଲ** - *ସୁ.* (ବି.) : ପାହାନ୍ତିଆ

**ଫଜଲି** - *ଦେ.* (ବି.) : ବଡ଼ ଆମ୍ବ

**ଫଜ୍ଜିତ** - *ଗ.* (ବି.) : ତିରସ୍କାର, ଅପମାନିତ, କଳି, ଗାଳି

**ଫଟ୍‌କା** - *ଢେ:ଜଅ:* (ବି.) : ତାଳପତ୍ରି, ବାଣ, ଫୋଟକା

**ଫଟ୍‌କାର** - *ମା:* (ବି.) : ଦଲାଲ୍

**ଫଟ୍‌କାରିବା** - *କଳା:* (କ୍ରି.) ନିର୍ଭୟରେ ପିଟିବା

**ଫଟ୍‌କୁରା** - *ଗୌ:* (ବି.) : ଫୋଟକା, ବାଣ

**ଫଟ୍‌ଫଟି** - *କଳା:ମ:ଗୌ:ବର:* (ବି.) : ମୋଟର ସାଇକଲ

**ଫଟକରା** - *ସୁବ:* (ବି.) : ବାଣ ଫୋଟକା

**ଫଟକାବା** - *ବ:ସୁ:* (କ୍ରି.ବି.) ମେଘ ଅପସରିଯିବା, ଆକାଶ ନିର୍ମଳ ଦେଖାଯିବା

**ଫଟକାର** - *ନବ:ଢେ:* (ବି.) : ବଦମାସ, ଡାକି ଶବ୍ଦ

**ଫଟକୀ** - *ଢେ:* (ବି.) : ନିର୍ମଳ, ଫିଟିକିରୀ

**ଫଟକୋ** - *ସୁ:* (ବି.) : ଆବୁ

**ଫଟଫଟ** - *ସୁବ:* (ଅ.) : ଅଯଥା ବକବକ ପାଟିତୁଣ୍ଡ, ଅଯଥା ଜଞ୍ଜାଳ

**ଫଟା** - *ଢେ:କଳା:ଗଞ:* (ବି.ବିଂ.) : ଚିରା, ଦଦରା, ଚିରାଲୁଗା

**ଫଟାଇବା** - *ନ:* (କ୍ରି.) : ଭାଙ୍ଗିବା

**ଫଟା କଉଡ଼ି** - *ଗ:* (ବି.) : ଏକ ପଇସା ମାତ୍ର

**ଫଟାକପାଳ** - *ଖୋ:ସଂ:* (ବିଂ.) : ହୀନକପାଳ, ସର୍ବନାଶ ଉପସ୍ଥିତ ହେବା

**ଫଟାଙ୍କହରୀ** - *ଜ:* (ବି.) : ଙ୍ଗଙ୍ଘ

**ଫଟାଙ୍ଗି** - *ଗଞ:* (ବି.) : ବାଣ

**ଫଟାଟୁଟା** - *ସୁ:* (ବିଂ.) : ଫଟାଫଟି

**ଫଟାଟୁଣ୍ଡାଁ** - *ବ:* (ବିଂ.) : ନଭାବି ନଚିନ୍ତି କହିବା

**ଫଟାଟୁଲି** - *ଗ:* (ବି.) : ସାମାନ୍ୟ ପଇସା ମାତ୍ର

**ଫଟାଦିଅଣି** - *ଗ:* (ବି.) : ମୂଲ୍ୟହୀନ ବ୍ୟକ୍ତି

**ଫଟାପାହୁଲା** - *ଢେ:* (ବି.) : କାଣି କଉଡ଼ିଟିଏ, ଅଳପଧନ

**ଫଟାଫଟ** - *ସୁ:* (ବିଂ.) : ଯଥାଶୀଘ୍ର, ଜଲଦି

**ଫଟାଫଟି** - *ଅ:ଗଞ:ଗୌ:* (କ୍ରି.ବିଂ.ବି.) ଅପଡ଼ କରିବା, ଭାଙ୍ଗିବା, ମନୋମାଳିନ୍ୟ

**ଫଟାବାଇଦ** - *ନ:* (ବି.) : ତୁଚ୍ଛାଟାରେ ଗର୍ବ

**ଫଟାବେ** - *କଳା:* (କ୍ରି.) : ଫଟାଇବେ, ଫାଳ କରିବେ

**ଫଟା ରସିକ** - *ସଂ:* (ବିଂ.) : ବେହିଆ

**ଫଟିକ** - *ଅନେ:* (ବି.ବିଂ.) : ଫିଟିକିରି, ସଫା, ଗୋରା, ସ୍ୱଚ୍ଛ, ନିର୍ମଳ, ସ୍ପଷ୍ଟ ଭାବରେ ଦେଖାଯିବା, ସ୍ଫଟିକ

**ଫଟିକନବାତ** - *ଗଞ:ନବ:* (ବି.) : ମିଶ୍ରି

**ଫଟୁ** - *ଅନେ:* (ବି.) : ଫଟୋ, ଛବି, ଚିତ୍ର, ଫଟୋଗ୍ରାଫ୍

**ଫଟେଇ ହେବା** - *ସଂ:ନ:ଢେ:* (କ୍ରି.) : ପୁନଃ ପୁନଃ କଥା କହି ବିରକ୍ତି କରିବା, ବାରମ୍ବାର (ବାରଣ ଥିବା ସତ୍ତ୍ୱେ) କହିବା, ଫୁଲେଇହେବା, ଅତିରଂଜିତ କରିବା

**ଫଡ଼ି** - *ଅ:* (ବିଂ.) : ପାଇକଙ୍କ ଢାଲ

**ଫଢ଼େ** - *ଗ୍ୱା:* (ବିଂ.) : ଖଣ୍ଡିଏ

**ଫଢ୍‌କି** - *ଗୌ:* (ବି.) : ଆଲୁମିନିୟମ୍ ପାତ୍ର

**ଫଡିକି** - *ଢେ:* (ବି.) : ଭୋଗ ଥାଳିଆ

**ଫଡିଙ୍ଗ** - *ଗ୍ୱା:* (ବି.) : ଝିଣ୍ଟିକା

**ଫଡ଼ା** - *କୋ:ଦେ:ନବ:ଗ:* (ବି.) : ଫାଳ, ଫାଳେ, ଖଣ୍ଡେ, କାଠ ଦୁଇଫାଳ ହେବା

**ଫଡ଼ି** - *ସୁ:* (ବି.) : ଜଙ୍ଗଲଜାତ ଦ୍ରବ୍ୟର ଗୋଦାମ

**ଫଡ଼ିଆ** - *ଅନେ:* (ବି.) : ପିଚା, ପଶୁର କଟିଠାରୁ ଗୋଡ଼ଶେଷ ପର୍ଯ୍ୟନ୍ତ ଅଂଶ, ନିତମ୍ବ, ଅଣ୍ଟା ଠାରୁ ଗୋଡ଼ ଯାଏଁ ଅଂଶ

**ଫଢୁଆ** - *ରା:ଗଦ୍ୟ:* (ବି.) ଢଙ୍ଗା, ଗୋଲମୁଖୀ କଣ୍ଟାଯୁକ୍ତ ପୋଷାକ

**ଫଢୁଆ ଲୋକ** - *ସ:* (ବିଂ.) : ଅପଦସ୍ତ ଲୋକ, ବ୍ୟର୍ଥ ମନୋରଥ

**ଫଣକେଇ** - *ଗଦ୍ୟ:* (କ୍ରି.) : ଟେକିବା

**ଫଣଫଣ** - *ଗଜ:ବ୍ୱା:* (ବିଂ.) : ରାଗ, କ୍ରୋଧ, ରାଗରେ ଫଣଫଣ ହବା

**ଫଣଫଣା** - *କେ:* (ଅ.) : ବୃକ୍ଷବିଶେଷ

**ଫଣସ** - *କେନ୍ଦୁ:ଖୋ:* (ବି.) : ପଣସ

**ଫଣ୍ଟେ** - *ଗ୍ୱା:* (ବିଂ.) : ଟୋପାଏ

**ଫତ୍‌ଫତା** - *କନ୍ଧ:* (ବିଂ.) : ବହଳିଆ(ଡାଲି ଅର୍ଥରେ)

**ଫତା** - *ଗ୍ୱା:* (ବି.) : ମୋଞ୍ଚାଏ ସୂତା

**ଫତୁଆ** - *ଅନେ:* (ବିଂ.କ୍ରି.ବି.) : ଅପମାନିତ, ଅପଦସ୍ତ, କଥା ଦେଇ ପାଳନ ନକରିବା, ଲଜ୍ଜିତ, ଉପହାସ, ନିନ୍ଦା, ନିନ୍ଦିତ ହୋଇଯିବା, ହଟହଟା, ଭାଣ୍ଡିଆ,

**ଫତେ** - *ସୁ:ଭ:ଅ:ଦେ:* (ବି.) : ସମାପ୍ତି, ଶେଷ, କୃତକାର୍ଯ୍ୟ, ଜୟଲାଭ

**ଫତେଇ** - *ଅନେ:* (ବିଂ.ବି.) : ହାତ ନଥିବା କୁରୁତା, ହାତକଟା ସାର୍ଟ

**ଫଦଫଦାବା** - *ସୁ:* (କ୍ରି.) : ବକିହେବା

**ଫନ୍‌ଫନାବାର** - *ସୁବ:* (କ୍ରି.) : ତରଳ ଖାଦ୍ୟ ଦ୍ରବ୍ୟ ବାସି ହୋଇ ଦୁର୍ଗନ୍ଧ ହେବ

**ଫନ୍‌ଫନେଇ** - *ବ:* (କ୍ରି.ବି.) : ଫୁଲି ଉଠିବା

**ଫନଫନା** - *ସୁ:* (ବିଂ.) : ମଇଳାପୂର୍ଣ୍ଣ

**ଫନସ୍** - *କଳା:କନ୍ଧ:* (ବି.) : ପଣସ

**ଫନ୍ଦ, ଫନ୍ଦୀ** - *ନ:* (ବି.) : କୌଶଳ

**ଫନ୍ଦ ଫିକର** - *ଗ:* (ବି.) : ଉପାୟ

**ଫନ୍ଦା** - *ଅନେ:* (ବିଂ.ବି.) : କପଟ ଆଚରଣ, ରୋଜଗାର ବାଟ, ଅବଲମ୍ବନ, ଫସଲ, ଜୀବିକାପାଇଁ ଯେଉଁ ଧନ୍ଦା କରାଯାଏ, କୌଳିକ ବୃତ୍ତିରେ ବ୍ୟବହୃତ ସାମଗ୍ରୀ, ଫିକର, ଆଶ୍ରୟ

**ଫନ୍ଦାଇ** - *ରା:* (ବି.) : ଭୁଲାଇ

**ଫନ୍ଦାଇବା** - *ଗ:* (କ୍ରି.) : ଯୁକ୍ତିଯୁକ୍ତ, ଯୋଡ଼ିବା, ଘଟାଇବା, ମିଶାଇବା

**ଫନ୍ଦାଫିକର** - *ଭ:ଅ:* (ବି.) : କାମଧନ୍ଦା

**ଫନ୍ଦିବା** - *ଗ:କୋ:* (କ୍ରି.) : ଦୁଇଟି ବସ୍ତୁକୁ ଯୋଡ଼ାଇବା, ସଂଲଗ୍ନ କରିବା, ଲାଗି ରହିଥିବା, ଲାଖି ରହିଥିବା, ବନ୍ଦ କରିବା

**ଫଦ୍ଦିଲଦ୍ଦି** - *ଜଃ* (ବିଂ.) : ମିଛ

**ଫପ୍‌ସା** - *ଖୋ:* (ବିଂ.) : ପୋଲା, ଫମ୍ପା

**ଫପସ୍** - *କଳା:* (ବି.) : ଫୁସ୍‌ଫୁସ୍

**ଫପାଣିଆ** - *ଗଞ:* (ବି.) : ଫଣଫଣା ଗଛ

**ଫପୋ** - *ସୁ:* (ବି.) : ପାକୁଳି ମୁହଁ

**ଫବେଇ ହେବା** - *ନ:* (କ୍ରି.) : ଫୁଲେଇ ହୋଇ କହିବା, ଗର୍ବ ଅନୁଭବ କରିବା

**ଫମ୍ପ, ଫମ୍ପି** - *ଗଞ:* (ବି.) : ଆଖୁର ନିରସ ଚୋପା

**ଫମ୍ପା** - *ଟ୍ରା:ଦେ:* (ବିଂ.ବି.) : ପୋଲା, ଶୂନ୍ୟ

**ଫରକ** - *ଦେ:କେ:ନ:ସ:* (ବି.ଅ.) : ତଫାତ୍, ପାର୍ଥକ୍ୟ, ପ୍ରଭେଦ

**ଫରକଟା** - *ଖୋ:ଯା:ଭ:ଟ୍ରା:* (ବିଂ.ବି.) : ବିକୃତିଭାବରେ ବଂକା, ମେଲା, ଓସାର, ଅଶାଳୀନ ଭାବରେ ଠିଆହେବା

**ଫରକି** - *ନବ:* (ବି.) : ଛଳନା

**ଫରକେଇ** - *ସୁ:* (ବି.) : ମେଲେଇ

**ଫରଚା** - *ଅନେ:* (କ୍ରି.ବି.) : ରାତି ପାହିବା, ସକାଳ ହେବା, ଓସାର; ପ୍ରଶସ୍ତ, ନିର୍ମଳ, ସଫା ସୁତୁରା, ଉଷାକାଳ ହେବା

**ଫରଫରା** - *ଗ:* (ବି.) : ଅଳ୍ପବର୍ଷା

**ଫରଫାସି** - *ଗ:* (ବି.) : ସୂତା କିମ୍ବା ଦଉଡ଼ିର ଛନ୍ଦ

**ଫରମ୍** - *ଗଞ:* (ବି.) : ଶ୍ରେଣୀ

**ଫରମାଇସ** - *କେ:* (ବି.) : ବରାଦ, ଫରମାସ

**ଫରମାସିକ** - *ଗ:* (କ୍ରି.) : ଆଜ୍ଞାଦେବା, ଆଦେଶିବା

**ଫରସାମାଟି** - *ଅ:* (ବି.) : ଉର୍ବର ମାଟି

**ଫରା** - *ସୁବ:* (ବି.) : ଫଡ଼ା ଆଳୁ, ଖଣ୍ଡ, କଖାରୁ ଖଣ୍ଡ

**ଫରାଳ** - *ଟ୍ରା:* (ବି.) : ମୃତାହ କ୍ରିୟାରେ ଅନୁଷ୍ଠିତ ବ୍ରାହ୍ମଣ ଓ ବୈଷ୍ଣବ ଭୋଜନ, ପଙ୍ଗତ

**ଫରି** - *ଅନେ:* (ବି.) : ମହୁଘରା, ଯୁଦ୍ଧାସ୍ତ୍ର, ଏକ ପ୍ରଜାତିର ମାଛ, ଖଣ୍ଡା, ପାଇକମାନେ ଖେଳିବାର କାଠ ଖଣ୍ଡା, ଢାଲ, କର୍ପୂର, ଚନ୍ଦନ ପାନଖିଲ ଆଦି ସଜ୍ଜିତ ଥିବା ଥାଳି, ତାନ୍ତ୍ରିକ ତନ୍ତ୍ରରେ ବ୍ୟବହୃତ ନଟେଇ

**ଫରିକଚ୍ଛା** - *ନ:* (ବି.) : ଭିଡ଼ିକି ଆଣ୍ଠୁ ଉପରକୁ ଲୁଗା ପିନ୍ଧିବା ଓ କୁଞ୍ଚକୁ କଚ୍ଛା କରି ପଛ ପାଖ କାଛରେ ଖୋସି ରଖିବା

**ଫରିକନା** - *ଗ:* (ବି.) : ଯୁଦ୍ଧାସ୍ତ୍ର ବିଶେଷ

**ଫରିକାର** - *ଗ:* (ବି.) : ପାଇକ ସେନା

**ଫରିବି, ଫରିପି** - *ଗ:* (ବି.) : ଶଠ, ଠକ, ଅଯଥା କଥା କହିବା

**ଫରୁଆ** - *ଅନେ:* (ବି.) : ସିନ୍ଦୂର ରଖିବା ପାତ୍ର, ଟଙ୍କା ପଇସା ରଖିବା ପାତ୍ର, କାଠଡିବା

**ଫରେବି** - *ଟ୍ରା:* (ବି.) : ଫାଜଲାମି

**ଫର୍ଚ୍ଚା** - *ରା:ଅ:ଯା:ଖୋ:* (ବିଂ.ବି.) : ଓସାରିଆ, ଆଲୁଅ, ଆଲୋକିତ ହେବା, ଉଜ୍ଜ୍ୱଳତା, ଧୀରେଧୀରେ ଅନ୍ଧାର ଅପସାରିତ ହେବା

**ଫର୍କ** - *ସୁ:* (ବି.) : ତଫାତ

**ଫର୍‌ଚଟେଇବା** - *ନ:* (କ୍ରି.) : ବାରମ୍ବାର (ଜାଣିଶୁଣି) ପଚାରିବା

**ଫଲ୍‌ନି** - *କଳା:* (ବି.) : ନାମ ବଦଳରେ ବ୍ୟବହୃତ ଶବ୍ଦ, ଶଗଡ଼ ଦଣ୍ଡାରେ ପ୍ରସ୍ଥଭାବରେ ଲାଗୁଥିବା କାଠ

**ଫଲ୍‌ସା** - *କଳା:କନ୍ଧ:* (ବି.) ପଳାସ, କିଂଶୁକ, ପଳା ବା ଫୁଲ

**ଫଲ୍‌ସା ମୁଡିଯିବା** - *କଳା:* (କ୍ରି.) : କୁଆଁରୀ କନ୍ୟା ସ୍ୱଇଚ୍ଛାରେ ବର ନିକଟକୁ ଚାଲିଯିବା

**ଫଲକାବା** - *ସୁ:* (କ୍ରି.) : ସାନଖଣ୍ଡ କରିବା

**ଫଲଣା** - *ଗଦ୍ୟ:ଦେ:* (ବିଂ.ବି.) : ଅଳସୁଆ, ଅମୁକ

**ଫଲଫଲି** - *ସୁ:* (ବିଂ.) : ଉଦାର ହୃଦୟ ଭାବ

**ଫଲସିଆ** - *ସୁ:* (ବି.) : ଫାରସା

**ଫଲହା** - *ସୁ:* (ବି.) : ପଳା

**ଫଲିଆ** - *କଳା:ସୁ:* (ବି.) : ଫାଳ, କାଠଖଣ୍ଡ, କାଠଫାଳିଆ

**ଫଳ** - *ଅନେ:* (ବି.) : କୌଣସି କ୍ରିୟାର ପରିଣାମ, ମଞ୍ଜିଯୁକ୍ତ ଫସଲ ଶସ୍ୟ, ଫଳ

**ଫଳଆଳୁ** - *ନ:* (ବି.) : ପଦରୀଆଳୁ ଯାହା ଲତାର ସ୍ଥାନେସ୍ଥାନେ ଫଳିଥାଏ

**ଫଳକାଠି** - *ଯା:* (ବି.) : ବାଉଁଶ କାଠିରେ ତିଆରି ଜାଲ ବା ଫାସ ବୁଣିବା ଯନ୍ତ୍ର

**ଫଳପୁଷ୍ପେ** - *ସ:* (ବିଂ.) : ସୁଖେଦୁଃଖେ, ଅନ୍ଧ ବନ୍ଧୁତେ

**ଫଳ ଫଳାରୀ** - *ଚୌ:* (ବି.) : ଫଳମୂଳ

**ଫଳ ଫୁଲୁରି** - *ଅ:* (ବି.) : ପରିବାପତ୍ର

**ଫଳି** - *ଅନେ:* (ବି.) : ମଇର ବାଉଁଶ ଦ୍ୱୟକୁ ଯୋଡ଼ିବା ବତା, ସିଡ଼ିର ଦଣ୍ଡାକୁ ଯୋଡ଼ିଥିବା ବାଉଁଶ, ମାଛ ବିଶେଷ, ଶଗଡ଼ର ଦୁଇ ଦଣ୍ଡା (ବାହୁ)କୁ ସଂଯୋଗ କରୁଥିବା ପତଳା କାଠ ଖଣ୍ଡ, ଥରେ ଚଷ କରିବା

**ଫଳିବା** - *ଦେ:ନ:ଚୌ:ସୁ:* (କ୍ରି.) : ଫଳ ଧରିବା, ଗର୍ଭବତୀ ହେବା, ଗଛରେ ଫଳ ଆସିବା, ଘଟିବା, ଦେହରେ ଫୁଲା ଦାଗ ବାହାରିବା

**ଫଳେନ୍ଦ୍ର** - *ଗଦ୍ୟ:* (ବି.) : ଜାମୁ

**ଫସ୍‌କା** - *ଅନେ:* (ବି.ବିଂ.କ୍ରି.) : ହାଲୁକା, ଗୁଣ ନଥିବା, ଅସୁଆଦିଆ, ନରମା, ମୂଲ୍ୟହୀନ, ନିରସ, ଢିଲା, ଫମ୍ପା

**ଫସ୍‌ଫସା** - *କଳା:ମା:ନୂ:* (ବିଂ.) : ହାଲୁକା, ନରମ, ଢିଲା

**ଫସର ଫାଟିବା** - *ଦେ:* (ବି.) : ସକାଳ ହେବା, ଅକୃତ କାର୍ଯ୍ୟହେବା

**ଫସଲ୍‌ଲା, ଫସଲ୍‌ଲୀ** - *ସୁବ:* (ବିଂ.) ସତମିଛ କହୁଥିବା ସ୍ତ୍ରୀ, ମିଛେଇ

**ଫସଲି** - *ଗ:* (ବି.) : ବର୍ଷ

**ଫସା** - *ସୁ:ଦେ:ଖୋ:* (ବି.) : କୁରାଢିଆଦିର ମୁଣ୍ଡ ଅଂଶ, ଚୋଟ ମାରିବା, ଫାଉଡ଼ା ବା କୋଦାଳରେ ଧରୁଥିବା ମାଟି

**ଫସାବାର** - *ସୁବ:* (କ୍ରି.) : ଅନ୍ୟକୁ ବିପଦେ ପକାଇବା, ପାଲରେ ପକାଇବା

**ଫସିଆ** - *ସୁବ:ବ:କଳା:* (ବି.) ସୁନାର କୁଣ୍ଡଳ, କର୍ଣ୍ଣାଳଙ୍କାର ବିଶେଷ, ଫାସିଆ

**ଫସିଯିବା** - *ସୁ:ସଂ:* (କ୍ରି.) ପାଲରେ ପଡ଼ିଯିବା, ଠକାମିରେ ପଡ଼ିବା

**ଫାଇଦା** - *ଦେ:ନ:ଗ:* (ବି.) : ଲାଭ, ଉପକାର

**ଫାଉ** - *ଅନେ:* (ବି.ବିଂ.) ମନଗଢା କହିପାରୁଥିବା, ଲାଭ, ଟାଉଟରି, ଠକ, ମୂଲ୍ୟହୀନ ମିଛକଥା କହୁଥିବା ଲୋକ

**ଫାଉଲ୍** - *ଗ:ଦେ:* (ବି.) : ଖେଳରୁ ବାହାର ହେବା, ଦୁଷ୍ଟ ବୁଦ୍ଧି

**ଫାଏଁ କରିବା** - *କଳା:* (କ୍ରି.) : ଝାଇଁମାରି ନେବା

**ଫାକବାର** - *ସୁବ:* (କ୍ରି.) : ନିଶା ଲାଗିଥିଲେ କମିଯିବା, ଠକିବା

**ଫାକା** - *ନବ:* (ବିଂ.) : ଖୋଲା

**ଫାକାଲିକିନା** - *ଗ:* (ବି.) : ଚଞ୍ଚଳ

**ଫାକାଣି** - *ଟା:* (ବି.) : ଚେତାଶୂନ୍ୟ ବା ବୁଦ୍ଧି ଲୋପ ହେବା, ଦମ୍, ନିଃଶ୍ୱାସ, ପ୍ରାଣବାୟୁ

**ଫାକିଯିବା** - *ନୂ:* (କ୍ରି.) : ଫିକା ପଡ଼ିବା

**ଫାକୁଣ୍ଡିଆ** - *କୋ:* (ବିଂ.) ରଙ୍ଗ ଛାଡ଼ିଯାଇଥିବା

**ଫାକେ** - *ସୁ:* (ବି.) : ସାମାନ୍ୟ ପରିମାଣ

**ଫାଗାଳିବା** - *ଢେ:* (କ୍ରି.) : ଧଳେଇବା

**ଫାଙ୍କା** - *ନ:ଦେ:* (ବିଂ.) : ଖାଲି, ଶୂନ୍ୟ, ଅସାର

**ଫାଙ୍କିବାଜ୍** - *ଭ:* (ବିଂ.) : ଅବାଧ

**ଫାଙ୍ଗୁଳି** - *ଗଦ୍ୟ:* (ବିଂ.) : ହୁଣ୍ଡୀ, ସ୍ନେହପୂର୍ଣ୍ଣ ଭକ୍ତି, ଅସ୍ଥିରମନା

**ଫାଚ୍ଲା** - *କୋ:* (ବିଂ.) : ଚିରା

**ଫାଟକ** - *ସଂ:ଦେ:* (ବି.) : କଏଦୀ ହେବା, ଦରଜା, ତୋରଣ

**ଫାଟାଫଟ୍** - *ମା:* (ବିଂ.) : ଶୀଘ୍ର

**ଫାଟି, ଫାଟେଇ** - *କୋ:* (ବି.) : ଶାଢୀ

**ଫାଟୁଆ** - *ଭ:ନ:ଅ:ଦେ:* (ବି.) : ଗୋରୁ ଗାଈଙ୍କ ରୋଗବିଶେଷ, ଗୋରୁଙ୍କ ଖୁରା ଫାଟି ବସନ୍ତ ରୋଗ, ଗାଈମାନଙ୍କର ଖୁରାରେରୋଗ,

**ଫାଡ୍କା** - *କଳା:* (ବି.) : ଓସାରିଆ, ଓସାର

**ଫାଡ଼ା** - *ସୁବ:ପୁ:* (ବିଂ.) : ମୂଲ୍ୟହୀନ ଲୋକ, ଦେଖାଇହେବା ମନୋବୃତ୍ତି

**ଫାଢୁ** - *ମ:* (କ୍ରି.) : ହାରିଥିବା, ମରିଥିବା (କୁକୁଡ଼ା ଲଢ଼େଇରେ)

**ଫାଣ୍ଡି** - *ନ:ଦେ:ଢ:* (ବି.) : ଛୋଟିଆ ଥାନା, ବାଂଝ

**ଫାଦ୍‌ବା** - *ନୂ:* (କ୍ରି.) : ଫାନ୍ଦିବା(ହଳ କରିବା) ପାଇଁ ହଳକୁ ଯୁଆଡ଼ିରେ ସଂଯୋଗ କରିବା

**ଫାଦ୍ରୀ** - *କଳା:* (ବିଂ.) : ନାରୀମାନଙ୍କ ପ୍ରତି ଗାଳିବିଶେଷ, ବହୁ ପୁରୁଷ ଆସକ୍ତା ନାରୀ

**ଫାନା** - *ଗଜ:କଣ:* (ବି.) : ଚପଳ

**ଫାନିଆ** - *ବ:ମ:* (ବି.) : ପାନିଆ

**ଫାନ୍ଦିବା** - *କଳା:ଦେ:* (କ୍ରି.) : ହଳ ଯୋଚିବା, ମନଗଢା କଥା କହିବା

**ଫାପ୍** - *କଳା:* (ବି.) : ବାଷ୍ପ, ଗ୍ୟାସ୍

**ଫାପଡ଼ିବା** - *କଳା:* (କ୍ରି.) : ଝାଡ଼ିବା

**ଫାପୁଲା** - *ବ:ଭ:* (ବିଂ.) : ମୋଟା

**ଫାଫଡ** - *ସୁ:* (ବିଂ.) : ମୂର୍ଖ, ଅଦରକାରୀ

**ଫାବ୍‌ତି** - *କଳା:* (ବି.) : ଅବସର, କର୍ମଶୂନ୍ୟ ସମୟ

**ଫାବ୍‌ବାର୍** - *ସ:* (କ୍ରି.) : ଉଶ୍ୱାସ ହେବା

**ଫାବ୍‌ସି** - *ନୂ:* (ବି.) : ଏକ ପ୍ରକାର ମାଛ

**ଫାବଡ଼ିଦବା** - *ମ:* (ବି.) : ଫିଙ୍ଗିଦେବା

**ଫାବିବା** - *ବୌ:* (କ୍ରି.) : ଉଦ୍ଧାର ପାଇବା, ମୁକୁଳିବା

**ଫାମ୍ପିବା** - *ଅ:ଦେ:ଗ:ନ:* (କ୍ରି.) : ଫୁଲିଉଠିବା, ଫୁଲିବା, ଫୁଲାଇବା, ପେଟର ବାୟୁ ଦୋଷ

**ଫାର** - *ନୂ:* (ବି.) ଜମିର ହିଡ଼ରେ ଆବଶ୍ୟକତା ଠାରୁ ଅଧିକ ପାଣି ବୋହିବା ପାଇଁ ଯେଉଁ ନାଳ ଥାଏ

**ଫାର ଚଉଠ** - *ନ:* (ବି.) : ମୁହଁ ମୁକାବିଲା

**ଫାରତୁଙ୍ଗା** - *ବ:* (ବିଂ.) : ଖଣ୍ଡି ଉଡା ଦବା- ଚଢେଇ ଛୁଆଟି ଭଡା ଫାରତୁଙ୍ଗା ଦଉଚି

**ଫାରବାର** - *ସୁବ:* (କ୍ରି.) : କାଟିବା, ଓଳିଆ ଫାଡ଼ିବା

**ଫାରମ** - *ସୁ:* (ବି.) : ଫର୍ମ, ଗୋଦାମ

**ଫାରଶା** - *ମା:ନ:* (ବି.) : ଟାଙ୍ଗିଆ, ପର୍ଶୁରାମ ଫାର୍ଶା ଏବଂ ସାଧାଫାର୍ଶା ହଣା ଯନ୍ତ୍ର

**ଫାରି** - *ନ:* (ବି.) : ସଫେଇଦେବା

**ଫାରିବା** - *କଳା:ସୁ:* (କ୍ରି.) : ବନ୍ଧା ହୋଇଥିବା ପାଣିକୁ ମାଟି ଖୋଳି ଛାଡ଼ିଦେବା, ଫାଳକରିବା

**ଫାରି ହେବା** - *ନ:ଯା:* (କ୍ରି.) : ଓସାରି ହେବା, ଦୁଇ ବିପରୀତ ଦିଗକୁ ଗୋଡ ରଖିବା, ଜଙ୍ଘ ଖୋଲିବା ଅବସ୍ଥା

**ଫାରୀ** - *ନ:* (ବି.) : ଅଶାଳୀନ ଗାଳି

**ଫାର୍ଦା** - *କୋ:* (ବି.) : ପରଦା

**ଫାର୍ସୀଡ଼ିଙ୍ଗା** - *ବ:* (ବି.) : ଫରାସୀ ଡ଼ିଙ୍ଗା, ଫରାସୀ ଲୋକଙ୍କ ବାଣିଜ୍ୟ ସ୍ଥଳୀ

**ଫାର୍** - *କଳା:* (ବି.) : ବିଲ ହୁଡ଼ାର ଘାଇ

**ଫାର୍‌ଲା** - *କଳା:* (କ୍ରି.) : ଅଟକା ଯାଇଥିବା ପାଣି କୌଣସି ପ୍ରକାରେ ନିମ୍ନଗାମୀ ହେବା

**ଫାର୍‌ସା** - *ବୌ:* (ବି.) : ବେଣ୍ଟ ଲାଗିଥିବା ଧାରୁଆ ହତିଆର

**ଫାଲ** - *ସ:ନୂ:କଳା:ନୂ:* (ବି°.ବି.) : ଅଧା, ଲଙ୍ଗଳରେ ଲାଗିଥିବା ଲୁହା ଅଂଶ, ଅଂଚଳ, ସ୍ଥାନ, ଫାଳ, ଏରିଆ

**ଫାଲ୍‌ଟା** - *ସୁ:* (ବି.) : କଛା ନମାରି ଲୁଗା ପିନ୍ଧିବା

**ଫାଲ୍‌ତୁ** - *ଅନେ:* (ବି°.ବି.) : ବୃଥା, ନିରର୍ଥକ, ଅଲୋଡା, ଖରାପ ପ୍ରକୃତିର ଲୋକ, ମୂଲ୍ୟହୀନ, ଅଯଥା, ବାଜେ, ଅର୍ଥହୀନ

**ଫାଲୁଆ** - *ଜେ:* (ବି°.) : ବଡ଼, ମୋଟା, ସ୍ଥୂଳକାୟ

**ଫାଳ** - *ଅନେ:* (ବି) : ଲଙ୍ଗଳରେ ମାଟି ତାଡ଼ିବାକୁ ଥିବା ଲୁହାଖଣ୍ଡ, ଖଣ୍ଡ କରିବା

**ଫାଳଙ୍ଗା** - *ଚା:* (ବି.) : ଦାନ୍ତ ମଧ୍ୟରେ ଥିବା ଫାଙ୍କ

**ଫାଳେ** - *ସୁ:ଦେ:* (ବି.) : ଅର୍ଦ୍ଧାଂଶ, ଅଧେ

**ଫାଶ** - *ବର:ଦେ:ଖୋ:* (ବି.) : ମାଉର ଲୁଟନ୍ ଦ୍ୱାରା ଗୁନ୍ଥା ଯାଇଥିବା ଶେଉଳ ମାଛ ଧରିବାର ସାମଗ୍ରୀ, ଏକ ପ୍ରକାର ଗଣ୍ଠି, ନାଗଫାଶ

**ଫାଶି** - *ନ:ଦେ:ଖୋ:* (ବି.) : କାଠ ଗଛର ନାମ (ରଥ ତିଆରିରେ ଲାଗେ), ମୃତ୍ୟୁଦଣ୍ଡ, ଏକ ପ୍ରକାର ମାଛ

**ଫାଶିଆ** - *ନବ:କୋ:ଦେ:* (ବି.) : ଅଳଙ୍କାର ବିଶେଷ, କାନ ଓ ନାକର ଅଳଙ୍କାର

**ଫାଶିଜାଲ** - *ଖୋ:* (ବି.) : ଯେଉଁଥିରେ ମାଛଧରା ଯାଏ

**ଫାସ** - *ବର:ନୂ:* (ବି.) : ଫାନ୍ଦ, ଗଣ୍ଠି

**ଫାସାଣ୍ଡ** - *ଗଜ:ଗ:* (ବି.) : ବ୍ୟର୍ଥ, ପଣ୍ଡ କରିଦେବା

**ଫାସିଆ** - *ଅନେ:* (ବି.) : ନାଶାଳଙ୍କାର, କାନ ଅଳଙ୍କାର

**ଫାଁକ** - *ସୁବ:କଳା:* (ବି.) : ଫାଙ୍କ ଦାଗ, ଶୃଙ୍ଖଳା ଗୁଣ୍ଡ ଦ୍ରବ୍ୟର ଅଳ୍ପ ପରିମାଣ, ବ୍ୟବଧାନ

**ଫାଁକ୍‌ବାର୍** - *ସ:* (କ୍ରି.) : ଠକିବା

**ଫିକ୍‌ନା** - *ସୁ:* (ବି.) : ବର୍ଜ୍ୟ ଯାଗ୍ୟ

**ଫିକ୍‌ବା** - *ନୂ:ସ:କଳା:* (କ୍ରି.ବି.) : ଫିଙ୍ଗିବା, ଫୋପାଡ଼ି ଦେବା

**ଫିକର** - *ଦେ:ଭ:ନ:* (ବି.) : ଭାବନା, ଚିନ୍ତା, କୌଶଳ

**ଫିକଳ** - *ଦେ:* (ବି.) : ଚମ୍ପା ଚଢେଇ

**ଫିକା** - *ଦେ:ନ:* (ବି°.) : ବିରସ, ମଳିନ, ପାଣ୍ଡୁର(ରଙ୍ଗ)

**ଫିକାନି** - *କଳା:* (କ୍ରି.) : ଫିଙ୍ଗିବା ପ୍ରକ୍ରିୟା

**ଫିକାପଡ଼ିବା** - *ନ:* (କ୍ରି.) : ହଠାତ୍ ବନ୍ଦ ହୋଇଯିବ(ଉତ୍କୃଷ୍ଟ ନହେବା), ଭୁଲ ଜାଣିବାରୁ ମୌନ ହେବା

**ଫିକାଫୁକି** - *କଳା:* (କ୍ରି.) : ଫିଙ୍ଗାଫୁଙ୍ଗି, ଫୋପଡା-ଫୋପଡ଼ି

**ଫିଙ୍ଗା ଫପଡ଼ା** - *ଗ:ବୌ:ନ:* (କ୍ରି.ବି.) : ଫପାଡ଼ିବା, ନିକ୍ଷେପ କରିବା, ପାଟିରୁ ଯାହା ବାହାରିଲା କହିଲା

**ଫିଟ୍‌କେଇବା** - *ଚୌ* (କ୍ରି.) : ଅଲଗା କରିବା, ଖୋଲି ଦେବା

**ଫିଟାଇବା** - *ନ* (କ୍ରି.) : ବନ୍ଧନରୁ ମୁକ୍ତ କରିବା

**ଫିଟାଟୁଟା** - *ଗ* (ବି.) ମୁକ୍ତ, ବନ୍ଧନମୁକ୍ତ, ବିରଳ ଖୋଲା, କେବଳ ଗୋଟିଏ

**ଫିଟାଫିଟି** - *ଦେ* (ବି.) : ମନୋମାଳିନୀ

**ଫିଟିକିରି** - *ନ* (ବି.) : ଏକ ଧାତବ ପଦାର୍ଥ, କ୍ଷୌର ବେଳେ ଭଣ୍ଡାରୀ ବ୍ୟବହାର କରେ

**ଫିଟୁ** - *ଖା* (ବି.) : ଠିକ୍, ଫିଟ୍

**ଫିଡ୍‌ଫିଡ଼ା** - *କୋ* (ବି.) : ପତଳା ବ୍ୟକ୍ତି

**ଫିଡ଼କିବା** - *ସୁ* (କ୍ରି.) : ଛିଟିରିବା

**ଫିତା** - *କେନ୍ଦୁ:ନ:ଦେ* (ବି.) : ଅଳ୍ପ ଚଉଡ଼ା କିନ୍ତୁ ଦୀର୍ଘ କନାପଟି, କନା ଦଉଡ଼ି, ରିବନ ଫିତା, ଫାଇଲ ବନ୍ଧା ଫିତା, ଲଣ୍ଡନ ଫିତା, ମାପ ଫିତା

**ଫିତୁରି** - *ଗଜ* (ବି.) : ପ୍ରଜାଙ୍କ ମେଳି

**ଫିନ** - *ସୁ:କଳା* (ଅ.) : ପୁଣି, ଆଉଥରେ, ଏବଂ

**ଫିନ୍‌ଫିନ୍** - *ନ:ପୁ* (ବିଂ.) : ଚକାଚକ୍, ସଫାଥିବା, ଭଲଭାବେ ପରିଷ୍କାର ହୋଇଥିବା, ସଫା

**ଫିବଛର୍** - *ନୁ* (ଅ.) : ପ୍ରତିବର୍ଷ, ଫିବର୍ଷ

**ଫିମ** - *ଦେ* (ବି.) : ଆଖୁ କତା

**ଫିମା** - *ଗ* (ବି.) : ଟିଣର ବଡ଼ପାତ୍ର

**ଫିମ୍ପି** - *ଢ:ଗ* (ବି.) : ଛତିଆ, ପଚାଖାଦ୍ୟର ଉପୁନ ଫିମ୍ପି

**ଫିରିକି** - *ଗଜ:ଗ* (ବି.) : ପତଙ୍ଗ ବିଶେଷ, କଙ୍କି ନାମକ ପତଙ୍ଗ

**ଫିରିକିବା** - *କେ* (କ୍ରି.) : ଚିଡ଼ିଯିବା

**ଫିରିଙ୍ଗି** - *ନ:ଗ* (ବି.) : କଙ୍କି, ବିଦେଶୀ

**ଫିରିପକାବା** - *କଳା* (କ୍ରି.) : ଫେରେଇଦେବା

**ଫିରିଫିରି** - *ସ:ଦେ:ସୁ* (ବି.ବିଂ.) କଙ୍କି, ଝିପିଝିପି, ଚମକିବା, ପାଟପନିଆ, କଙ୍କି

**ଫିରେଇ** - *ଯା* (ବି.) : ଟେରି, କେଶ ସଜାଡ଼ିବା

**ଫିର୍କା** - *ଗ* (ବି.) : ଅଞ୍ଚଳ, ନିର୍ଦ୍ଦିଷ୍ଟ ରାଜସ୍ୱ ଅଞ୍ଚଳ, କବାଟ ପଛର ଗେଡ଼ା

**ଫିର୍‌ଢ଼ି** - *ଚୌ* (ବି.) : ଧାନଖିଆ ଚଢେଇ (ଚଟିଆ ଜାତୀୟ)

**ଫିର୍‌ଫିରି** - *ସୁବ:ଚୌ* (ବି.) କଙ୍କି, ତାଳବରଡ଼ା ବା କାଗଜ ଚକଡିର ଖେଳନା-ଏହା ପବନରେ ଘୂରେ

**ଫିର୍‌ଫିର୍** - *ବ* (ବି.) : କର୍ଣ୍ଣ ଅଳଙ୍କାର ବିଶେଷ

**ଫିର୍‌ବା** - *କଳା* (କ୍ରି.) ଫେରିବା, ପୁନଃଆସିବା

**ଫିସ୍‌ଲିବା** - *କଳା* (କ୍ରି.) : ହାତରୁ ଖସିଯିବା

**ଫିସନ** - *ବ* (ବି.) : ପ୍ରତିବର୍ଷ

**ଫିସାଦ** - *ନ* (ବି.) : ମିଛ

**ଫୁଆ** - *ବର* (ବି.) : ବାପାଙ୍କ ଭଉଣୀ, ପିଉସୀ

**ଫୁଇ** - *ବ:ସୁ:* (ବି.) : ଆଖୁର ଗଣ୍ଠି ନଥିବା ପବ, ବଂଶୀ କଣ୍ଡାକୁ ଭସେଇ ରଖିବା ଚଟରଣ୍ଡା

**ଫୁଏଇ** - *ସୁ:* (ବି.) : ବଂଶୀ କଣ୍ଡାର ଫୁଲ

**ଫୁକ୍‌ବାର** - *ସୁବ:* (କ୍ରି.) : ଫୁଙ୍କିବା, ମନ୍ତ୍ର ଫୁଙ୍କିବା

**ଫୁକ୍‌ରାବା** - *ସ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ଫୁକ୍‌ଲା** - *ସୁ:ସ:* (ବି.ବିଂ.) : ଖଇ, ପାକୁଆ

**ଫୁକଟ** - *ସ:ସୁବ:* (ବି.) ମାଗଣା, ମାହାଳିଆ, ନଷ୍ଟ ହୋଇଯିବା

**ଫୁକଟ୍‌ରାମ** - *ସୁବ:* (ବି.) : ପଇସାପତ୍ର ନ ଥିବା ଲୋକ

**ଫୁକା** - *ଅନେ:* (ବି.) : ଛୋଟ ବ୍ରଣ, ଠକ, କୁହାଳିଆ, ବେଲୁନ୍

**ଫୁକାଝଡା** - *ସୁ:ସ:* (ବି.କ୍ରି.) : ଗୁଣି ଗାରେଡ଼ି, ଫୁଙ୍କା ଝଡ଼ା କରିବା

**ଫୁକାନଲି** - *ସୁବ:* (ବି.) : ଚୁଲି ଫୁଙ୍କିବା ନଳ

**ଫୁକାର** - *ପୁ:ନ:* (ବି.) : ପୋଲର ଦୁଇଟି ଖମ୍ବର ମଝି ଅଂଶ, ପୋଲର ପାଣିଯିବା ବାଟ

**ଫୁକାରି ଫୁକାରି** - *କଳା:ବୌ:* (ଅ.ବିଂ.) : ନିଘୋଡ ନିଦରେ, ଘୁଂଗୁଡି ମାରି ମାରି, ଆରାମରେ

**ଫୁକି** - *କଳା:* (ଅ.) : ଦୋରୁଅକୁ ରାନ୍ଧି ଗୁଡ଼ ତିଆରି କରିବା ବେଳେ ଗୁଡ଼ ହୋଇଆସିବା ସମୟକୁ ସେଥିରେ ସୃଷ୍ଟି ହେଉଥିବା ଫୋଟକା ଓ ଫୁଟିବାର ଶବ୍ଦ

**ଫୁକିଆ** - *ଦେ:ଅ:ଅ:* (ବି.) ତାରା, ପାହାନ୍ତିଆତାରା

**ଫୁକୁଚେ** - *କଳା:* (କ୍ରି.) : ଫୁଙ୍କୁଅଛି

**ଫୁଗ୍‌ଲିଆ** - *କଳା:* (ବି.) : ଏକଦମ୍ ବ୍ୟକ୍ତିଗତ ଆୟ, ନିଜର ଆୟ

**ଫୁଙ୍କାଣି** - *ଗ:* (ବି.) : ଚୁଲିରେ ଭାତ ଫୁଟିବା ବେଳର ପେଜଯୁକ୍ତ ପାଣି

**ଫୁଙ୍କାନଳ** - *ନ:* (ବି.) : ଚୁଲୀର ନିଆଁକୁ ଅଧିକ ପ୍ରଜ୍ୱଳିତ କରିବାର ଧାତବ ବା ବାଉଁଶ ନଳ, ଫୁଙ୍କୁନଳା

**ଫୁଙ୍ଗା** - *ଭ:* (ବିଂ.) : ଲଙ୍ଗଳା

**ଫୁଙ୍ଗୁଡ଼ା** - *ରା:* (ବି.) : ଫଳ ଝଡେଇବା ପଥର ବା ବାଡି

**ଫୁଙ୍ଗୁଳା** - *ପୁ:କେ:ଢ:ଦେ:* (ବିଂ.ବି.) : କଟି ବସ୍ତ୍ର ଥାଇ ଦେହର ଉପର ଅଂଶ ଉନ୍ମୁକ୍ତ ରହିବା ଲଙ୍ଗଳା, ଖୋଲା

**ଫୁଙ୍ଗୁଳୁ** - *ମ:* (ବି.) : ଘୁଙ୍ଗୁଡ଼ି

**ଫୁଚକା** - *ମ:* (ବି.) : ଗୁପ୍‌ଚୁପ୍

**ଫୁଟ** - *ସୁବ:ଦେ:କଳା:* (ବି.) : ମହୁଲ ଫୁଲ, ପଣସ, ଫୁଟ୍‌ଫୁଟ୍, ମାଂସର ଖଣ୍ଡ, ଏକଫୁଟ ପରିମିତ

**ଫୁଟ୍‌କି** - *ଖୋ:ବା:* (ବିଂ.ବି.) : ସହଜ, ପାନପତ୍ରରେ ତିଳ ଚିହ୍ନପରି କଳା ଦାଗ ହେଲେ

**ପୁଟ୍‌ନା** - *ନୂ:* (ବି.) : ଶୋରିଷ
**ପୁଟ୍‌ନା ଶାଗ** - *ନୂ:* (ବି.) : ଶୋରିଷ ଶାଗ
**ପୁଟ୍‌ରେଇବା** - *କୌ:* (କ୍ରି.) ଧାନ ପେଟେଇବା
**ପୁଟ୍‌ଲା** - *କଳା:* (କ୍ରି.) ଭାଂଗିଗଲା, ସିଝିଗଲା, ରାନ୍ଧିଲା
**ପୁଟକା** - *ଦେ:* (ବି.) : ଫୋଟକା, ଫୁଲିବା
**ପୁଟକେଲ୍** - *ସୁବ:* (ବି.) : ଛୋଟଛୋଟ ଆଳୁ ଆକାରର ଧଳା ଛତୁ
**ପୁଟଣ** - *ଦେ:ଗ:* (ବି.) : ଲଙ୍କା, ସୋରିଷ, ପାନମଧୁରୀ, କଳାଜୀରା, ତରକାରୀ ବଘାରିବା ସୋରିଷ ଜିରା ପ୍ରଭୃତି
**ପୁଟବଡା** - *ଗ:* (ବି.) : ମାପକ ସ୍କେଲ୍
**ପୁଟା** - *ଦେ:କଳା:* (ବି.ବିଂ.) : ଫୁଲ ଫୁଟିବା, ଭଂଗା, ସିଝା ୩-ରାନ୍ଧିବା
**ପୁଟାଇବା** - *ଦେ:* (କ୍ରି.) : ବୁଝାଇବା
**ପୁଟାଟା** - *କଳା:* (କ୍ରି.) : ଭାଂଗିଯାଇଥିବା
**ପୁଟାଣି** - *ଅନେ:* (ବି.) : ଅହଙ୍କାର, ଆତ୍ମଗର୍ବ, ଅଯଥା ଗର୍ବ, ବୃଥାବାକ୍ୟ
**ପୁଟାନି ମାରିବା** - *ନୂ:* (କ୍ରି.) : ଆତ୍ମ ଗର୍ବ ପ୍ରକାଶ କରିବା
**ପୁଟାବା** - *ସ:* (କ୍ରି.) : ପୁଟାଇବା
**ପୁଟାମାନ୍** - *କଳା:* (ବି.) : ଭଙ୍ଗାମାଣ ବା ଗଉଣି
**ପୁଟାଲିମା** - *ଗଜ:* (ବି.) : କରୁଣା ଫଳ
**ପୁଟାଲୁଗା** - *ଅ:ଗ:ଦେ:* (ବି.) : ବିଧବାଙ୍କ ଲୁଗା, ବିଧବା ସ୍ତ୍ରୀଙ୍କର ଧଳାରଙ୍ଗର ବସ୍ତ୍ର
**ପୁଟି** - *ବା:ମ:* (ବି.) : ପାଚି ଯାଇଥିବା ପରିବା (ପୁଟି କାକୁଡ଼ି ପାଚିଲା), କାକୁଡ଼ି ଜାତୀୟ ଫଳ
**ପୁଟିଆଣି** - *ଛ:* (ବିଂ.) : ଭାରତର ପୁଟୁଥିବା ପାଣି
**ପୁଟିକି** - *ଚେ:* (ବି.) : ନାକପିନ୍ଧା ଗହଣା
**ପୁଟିକି ମାରିବା** - *ସଂ:* (କ୍ରି.) : ନା'ପସନ୍ଦ କରିବା
**ପୁଟୁକି** - *ଗ:ଦେ:* (ବି.) : ହାତ ଆଙ୍ଗୁଳିରେ ଶବ୍ଦ ସୃଷ୍ଟି କରିବା, ଆଙ୍ଗୁଠି ଟିପର ଶବ୍ଦ
**ପୁଟୁଣ** - *କୌ:* (ବି.) : ଡାଲି ତରକାରି ବଘାରିବା ପାଇଁ ବ୍ୟବହୃତ ଜିରା ପ୍ରଭୃତି ମସଲା
**ପୁଟେକ୍** - *କଳା:* (ବିଂ.) : ମୁନ୍ଦାଏ, ଟିକିଏ
**ପୁଟ୍ କୁଡି** - *ବ:* (ବି.) : ଏକ ଲତାର ଫୁଲ, ଯାହାକୁ ତରକାରୀ ରୂପେ ରନ୍ଧାଯାଇଥାଏ
**ପୁଡା** - *ବ:* (ବି.) : ବଥ
**ପୁଡୁକି** - *ନ:* (ବି.) : ମୁହଁ ଫୁଟାଣି, ମୁହଁଟାଣ
**ପୁଡୁଫାଡ୍** - *କୌ:* (ବି.) : ହଠାତ୍ ମୃତ୍ୟୁ
**ପୁଡ଼ା** - *ନୂ:* (ବି.) : ବଥ
**ପୁଣେଇ୍** - *ନୂ:* (ବି.) : ଅରଖ ଗଛ
**ପୁଣ୍ଟାଏ** - *କୋ:* (ବିଂ.) : ଅଳ୍ପ, ଟିକିଏ

**ପୁଣ୍ଡିବା** - *କୋ:* (କ୍ରି.) : ବିଶ୍ରାମ ନେବା, ଆରାମ କରିବା, ନିଃଶ୍ୱାସ ମାରିବା

**ପୁତ୍‌କା** - *ବୌ:ନୁ:ସ:* (ବି.) : ମୋଟା, ଛୋଟ ସାପ, ମୁଣ୍ଡ ଲାଞ୍ଜ ବିହୀନ ପରି ଦେଖାଯାଉଥିବା ଏକ ପ୍ରକାର ସର୍ପ ବିଶେଷ

**ପୁତ୍‌କାରରେ ଉଡାଇବା** - *ସଂ* (କ୍ରି.) : କାହାକୁ ଖାତର ପସନ୍ଦ ନ କରିବା

**ପୁଦା ଖେଳ** - *ନୁ:* (କ୍ରି.) : ଖେଳବିଶେଷ

**ପୁନ୍‌ବା** - *କଳା:* (କ୍ରି.) : ପାଛୁଡ଼ିବା

**ପୁନାଲା** - *କଳା:* (କ୍ରି.) : ପାଛୁଡ଼େଇଲା

**ପୁନି** - *ନୁ:କଳା:* (ଅ.ବି.) : ମଧ୍ୟ, ପୁଣି

**ପୁନିବା** - *କନ୍ଧ:* (କ୍ରି.) : ଚାଉଳ ପାଛୁଡ଼ିବା

**ପୁପ୍‌ଢ଼ା** - *ବୌ:କଳା:* (ବିଂ.କ୍ରି.) : ଫସଫସିଆ, ହାଲୁକା, ସିଠା, ପଚିଯାଇଥିବା

**ପୁପ୍‌ଢ଼ା ଲିଆ** - *ବୌ:* (ବିଂ.) : ଗୁଡ ଲାଗି ନଥିବା ଲିଆ

**ପୁପ୍‌ଲା** - *କଳା:ସ:* (ବିଂ.) : କାପ୍‌ଲା, ଦନ୍ତହୀନ ତୁଣ୍ଡ, ପାକୁଆ ପାଟି

**ପୁପା** - *କେନ୍ଦୁ:* (ବି.) : ପିଉସା

**ପୁପ୍‌ଢ଼େଇ** - *ଝା:* (କ୍ରି.) : ଫିମ୍ପି ଯୁକ୍ତ ହେବା

**ପୁଫଲ** - *ଦେ:* (ବି.) : ପାକୁଆ

**ପୁଫା** - *ବର:* (ବି.) : ପିଉସା

**ପୁଫୀ** - *କେ:* (ବି.) : ପିଉସୀ

**ପୁରକୁଟିଆ** - *ଦେ:* (ବି.) : ମୁର୍ଦ୍ଧାର, କେଶ ପୋଡ଼ିବାର ଗନ୍ଧ

**ପୁରଲା** - *ଅ:* (ବି.) : ଛଚିନ୍ଦ୍ରା

**ପୁରସା** - *ଅ:* (ବି.) : ଫାରସାକୋଲି

**ପୁରସାଇବା** - *ଦେ:* (କ୍ରି.) : ଚମଡ଼ାକୁ ନିଆଁରେ ପକାଇ ଲୋମକୁ ପୋଡ଼ିବା

**ପୁରସିବା** - *ଦେ:* (କ୍ରି.) : ଫୁଲ କସି ଝରିଯିବା

**ପୁରା** - *ବା:ପଦ୍ମ:* (ବିଂ.ବି.) : ପୋକଖାଇ ଫାମ୍ପ କରିଦିଏ, ଲାଞ୍ଜ

**ପୁରୁସି ଯିବା** - *ବା:* (କ୍ରି.) : ସଫଳ ନହେବା, ହାଲ୍‌କା ହେବା

**ପୁର୍‌ପୁରା** - *କଳା:* (ବିଂ.) : ଜମିଚାଷ ବେଳେ ମାଟି ସଂପୂର୍ଣ୍ଣ ଗୁଣ୍ଡ ହୋଇଯିବା ଅବସ୍ଥା

**ପୁଲ୍‌କା** - *ସ:କୋ:ସୁବ:ବୌ:* (ବି.) : ଫୁଲା, ଖଇ ଗୁଣ୍ଡର ଲଡୁ, ବଡ଼, ଏକ ପିଠା ବିଶେଷ

**ପୁଲ୍‌କି** - *ସୁବ:* (ବି.) : ପିତୃ ଶ୍ରାଦ୍ଧରେ ଲାଗୁଥିବା ଛୋଟ ପିଠା

**ପୁଲଗୁନା** - *କଳା:ନୁ:* (ବି.) : ନାକଗୁଣା, ଫୁଲ ଲାଗିଥିବା ନାସାଳଂକାର, ନାକର ଗୁନା(ନାକର ଅଳଙ୍କାର)

**ପୁଲ୍‌ଘର ବାତ** - *ବା:* (ବି.) : ଜରାୟୁ ରୋଗ

**ପୁଲ୍‌ଚୁହି** - *ସୁବ:ନୁ:କଳା:* (ବିଂ.ବି.) : ଫୁଲରୁ ରସ ଶୋଷୁଥିବା ଛୋଟ ଚଢେଇ, ଫୁଲ ଚୁଇଁ

**ପୁଲ୍‌ଫଲାରି** - *ବୌ:* (ବି.) ଫଳମୂଳ, ପନିପରିବା

**ଫୁଲ୍‌ଫୁଟି** - *ଅ:* (ବି.) : ଫୁଟାଣି ଦେଖାଇବା ଝିଅ, ମୀନମାଛ

**ଫୁଲ୍ ଫୁଲିଆ** - *ଚୌ:* (କ୍ରି.ବି.) : ଫୁଲିଲା ଫୁଲିଲା

**ଫୁଲ୍ ବରି** - *ସ:* (ବି.) : ବଡ଼ି

**ଫୁଲ୍‌ବସା** - *କଳା:* (ବି.) : ମାଛି ମଳତ୍ୟାଗ କରି ଘା' ସୃଷ୍ଟି କରିବା

**ଫୁଲ୍‌ବା** - *କଳା:* (କ୍ରି.) : ଫୁଲିବା

**ଫୁଲ୍ ବାହୁନ୍** - *କଳା:* (ବି.) : ଫୁଲ ଛାଂଚୁଣି

**ଫୁଲ୍‌ମାଲା** - *ମା:* (ବି.) : ଫୁଲମାଳ

**ଫୁଲ୍‌ହା** - *ସୁବ:କଣ:* (ବିଂ.) : ଗର୍ବୀ ଲୋକ, ଫୁଲିଯାଇଥିବା

**ଫୁଲକଣ୍ଠା** - *କୋ:* (ବି.) : ଗଳାରେ ପିନ୍ଧିବା ଅଳଙ୍କାର ବିଶେଷ

**ଫୁଲକଫି** - *ଗ:* (ବି.) : ଫୁଲକୋବି

**ଫୁଲକା** - *ସୁ:ଦେ:* (ବି.) : ଫୁଲିଥିବା ଅବସ୍ଥା, ପିଠା, ମହୁଲ, ବିରି, ଗୁଡ ଓ ଚାଉଳ ଚୂନାରେ ତିଆରି

**ଫୁଲକୋବି** - *ଦେ:ଖୋ:* (ବି.) : ଏକ ପ୍ରକାର କୋବି, ଏକ ପ୍ରକାର ପରିବା ଯାହାର ଫୁଲକୁ ପରିବା ରୂପେ ବ୍ୟବହାର କରାଯାଏ

**ଫୁଲଖଡ଼ି** - *ଅ:ଦେ:ଗ:ଦେ:* (ବି.) : ଚକ୍ ଖଡ଼ି, ଧଳାଖଡ଼ି, ଦୁଧକଡ଼ି

**ଫୁଲ ଗମ୍ଭାରି** - *କେନ୍ଦୁ:* (ବି.) : ଏକ ପ୍ରକାର କାଠ ଗଛ

**ଫୁଲ ଚଙ୍ଗା** - *କଣ:* (ବି.) : ଫୁଲ ଚାଙ୍ଗୁଡ଼ି

**ଫୁଲ ଚାଙ୍ଗୁଡ଼ା** - *ନ:* (ବି.) : ବେତ, ବାଉଁଶ ବା ପିଉଳରେ ନିର୍ମିତ ପାତ୍ର

**ଫୁଲଚୁହି** - *ସୁ:* (କ୍ରି.) : ଫୁଲଚୁହିବା

**ଫୁଲଛଉ** - *ଦେ:* (ବି.) : ଯୁବା ବୟସରେ ଦେହରେ ଛଉ ମାଡ଼େ

**ଫୁଲ ଛାଞ୍ଚୁଣୀ** - *ଗ:* (ବି.) : ଏକ ପ୍ରକାର ଝାଡୁ

**ଫୁଲଝରା** - *ଗ:* (ବି.) : ନାରୀ ମସ୍ତକର ଅଳଙ୍କାର ବିଶେଷ

**ଫୁଲଠାର** - *ଦେ:* (ବି.) : ଫୁଲଟିଏ ନାମରୁ ମନକଥା କହିବା, ବୁଝିବା

**ଫୁଲଣା** - *ଗ:* (ବି.) : ଫନେଲ୍

**ଫୁଲତେଲ** - *ବର:* (କ୍ରି.) : ଫୁଲିଯିବା ପର୍ଯ୍ୟନ୍ତ

**ଫୁଲ ପଡ଼ିବା** - *ଦେ:* (ବି.) : ଶିଶୁ ଜନ୍ମ ହେବା ପରେ ଫୁଲ ପଡ଼ିବା

**ଫୁଲଫୁଟି** - *ଯା:* (ବି.) : ଛୋଟ ମାଛ ବିଶେଷ

**ଫୁଲବାହା** - *ଦେ:* (ବି.) : ଫୁଲରେ ବନ୍ଦନା କରି ପତି ବରଣ କରିବା

**ଫୁଲ ବାହ୍ନି** - *ଚୌ:* (ବି.) : ଏକପ୍ରକାର ଫୁଲରେ ତିଆରି ଝାଡୁ

**ଫୁଲମାଳି** - *ନୂ:* (ବି.) : ବେକର ଅଳଙ୍କାର

**ଫୁଲରା** - *ଦେ:* (ବି.) : ମାଳି ଜାତି

**ଫୁଲରି ଅମାବାସ୍ୟା** - *ଦେ:* (ବି.) : ମହାଳୟା

**ଫୁଲ ଶଯ୍ୟା** - *ଦେ:* (ବି.) : ମଧୁଶଯ୍ୟା, ଚଉଠି ରାତି

**ଫୁଲ ଶାଗୁଣା** - *କ:* (ବି.) : ବଡ଼ ଶାଗୁଣା, ମୁଣ୍ଡରେ ଫୁଲଥାଏ

**ଫୁଲ ଶୁଙ୍ଘାଇବା** - *ଗ:* (କ୍ରି.) : ମନ୍ତ୍ର ମୋହନ କରିବା

**ଫୁଲସଜ୍ଜା** - *ଢେ:* (ବି.) : ପାଣି ଗ୍ରହଣ ପୂର୍ବରୁ ବୈଦିକ ରୀତିରେ ଆଶୀର୍ବାଦ, ମଙ୍ଗଳାଚରଣ ସଭା

**ଫୁଲହେଲ** - *ସୁବ:* (ବିଂ.) : ଫୁଲ୍‌ହାର ସ୍ତ୍ରୀଲିଙ୍ଗ

**ଫୁଲା** - *ଅନେ:* (ବିଂ.) : ଫୁଲା, ଗର୍ବୀ, ଫୁଲବା ରୋଗ

**ଫୁଲା ଡୁମରା** - *ସ:* (ବିଂ.) : ଅହଂକାରୀ

**ଫୁଲାଣ** - *କ:* (ବି.) : ମନଫୁଲଣ, ଖୁସିଭାବ

**ଫୁଲା ଫାଙ୍କିଆ** - *ଅନେ:* (ବିଂ.) : ଦାୟିତ୍ୱହୀନ, ବଡ଼କୁହା, ଅଯଥା ଗର୍ବ, ଗୁରୁତ୍ୱ ଦେଉନଥିବା (ବ୍ୟକ୍ତି)

**ଫୁଲାଲିଆ** - *କୋ:ଗଦ୍ୟ:କଳା:* (ବି.ବିଂ.) : ଲିଆ, ଖଇ ଲିଆ

**ଫୁଲାସୁଜା** - *କଣ:* (ବି.) : ରୋଗଯୋଗୁ ଫୁଲିବା

**ଫୁଲି** - *ଅନେ:* (ବି.) : କାଛରେ ଖୋପ ବା ଖୋଳ, ଛଟକୀ ଝିଅ, ନାକରେ ପିନ୍ଧିବା ଅଳଙ୍କାର, କାଛଖୁରା, ଦେଶୀମଦ, ସୂତା ନିର୍ମିତ ହାତ ଅଳଙ୍କାର

**ଫୁଲୀମାରିବା** - *ବ:* (କ୍ରି.) : ବିଲରେ ଭୂମି ଚିହ୍ନଟ ପାଇଁ ନାଲି କନାର ପତାକା ବାନ୍ଧିବା

**ଫୁଲୁକା** - *ନ:* (ବିଂ.) : ଫୁଲିଫୁଲି ମୋଟା ହୋଇଥିବା

**ଫୁଲୁଫିତା** - *କ:* (ବି.) : ବିବାହ ପରେ ଝିଅର ଫେରନ୍ତା ବ୍ୟବସ୍ଥା

**ଫୁଲୁରି** - *ଗ:କେ:ଯା:* (ବି.) : ସୁବାସିତ ତୈଳ, ନଳି ବେକିଆ ପାତ୍ରରେ ସହଜରେ ତରଳ ପଦାର୍ଥ ଭରିବା ସାମଗ୍ରୀ, ଫନେଲ, କାହାଳୀ

**ଫୁଲେର** - *ସୁ:* (ବି.) : ଅତର

**ଫୁସ୍‌କି ହୋଇଛି** - *କଣ:* (କ୍ରି.) : ସିପିଯାଇଛି

**ଫୁସକାବା** - *ସୁ:* (କ୍ରି.) : ଗୁହ୍ୟବାୟୁ ଛାଡ଼ିବା

**ଫୁସକିଯିବା** - *ଅ:* (କ୍ରି.) : ବ୍ୟର୍ଥ ହୋଇଯିବା

**ଫୁସା** - *କଳା:* (ବି.) : ପିଲାମାନଂକୁ ଚୋରାଇ ନେଉଥିବା ବ୍ୟକ୍ତି, ଖଂଗାର

**ଫୁସି** - *ସୁ:ସୁବ:ଢେ:* (ବି.) : ଲିଙ୍ଗାଗ୍ର ମଇଲା, ସ୍ତ୍ରୀ ରଜ, ଗାଳିବାଚକ ଭାବରେ ବ୍ୟବହୃତ, ଦରିଦ୍ର, କୃପଣ

**ଫୁସୁ** - *ପଦ୍ୟ:* (ବି.) : ଉକୁଣି, ଟିଙ୍କ

**ଫୁସୁର, ଫୁସଳ** - *ବ:* (ବି.) : କଣା

**ଫୁସୁରି** - *ଯା:* (ବି.) : ମାଟିର କ୍ଷୁଦ୍ର ମାପପାତ୍ର ଘିଅ ମପାହୁଏ

**ଫୁଁକରାବାର** - *ସୁବ:* (କ୍ରି.) : ଘୁଙ୍ଗୁଡ଼ି ମାରିବା

**ଫୁଁଡ, ଫୁଁଡଗଲ** - *ସୁବ:* (ବି.) : କଣା

**ଫୁଂକା ଝଡ଼ା** - *ବୌ:* (କ୍ରି.) : ମନ୍ତ୍ର ଉଚାରି ପିଲାଙ୍କ ଉପରେ ପଡ଼ିଥିବା ଦୃଷ୍ଟି ଉତାରିବା

**ଫୁର୍ତ୍ତି** - *କେ:* (ବିଂ.) : ଶୀଘ୍ର

**ଫେଇ** - *ଛ:* (କ୍ରି.) : ଖୋଲିକରି

**ଫେଇବା** - *ଗଛ:* (ବି.) : ବାହାର କରିବା

**ଫେଏଣି** - *ଗଦ୍ୟ:* (ଅ.) : ପୁଣି

**ଫେକ୍‌ଟାମି** - *ନ:* (ବି.) : ଦୁଷ୍ଟାମୀ(ଚଗଲାମି)

**ଫେକାରୀ** - *ଦେ:* (ବି.) : କୋକିଶିଆଳୀ, କାଳ ଭେଣ୍ଡା

**ଫେଟ୍‌କା** - *ମ:ବା:* (ବି.) : ଚିଗୁଲେଇ କରି କହିବା, ଖଳବୁଦ୍ଧି ସଂପନ୍ନ

**ଫେଟ୍‌କାନିଆ** - *ଭ:* (ବିଂ.) : ବଦମାସ୍

**ଫେଇତ୍** - *ନ:* (ବି.) : ଗାଳି, ଫଜିତ୍

**ଫେଟାଶାଢୀ** - *ନ:* (ବି.) : ମୋଟା ତନ୍ତବୁଣା ଲୁଗା (ଶାଢୀ)

**ଫେଦ୍‌କା** - *କଳା:* (ବିଂ.) : ଓସାରିଆ, ଓସାର, ଫରଚା

**ଫେଣ** - *ନ:* (ବି.) : କ୍ଷୀର ଓ ପାଣିର ବୁଦ୍‌ବୁଦ୍ ଅଂଶ, ଧବଳ ବର୍ଣ୍ଣଯୁକ୍ତ ଜଳୀୟ ବୁଦ୍‌ବୁଦ୍ ପଦାର୍ଥ ବାହାରିବା

**ଫେଣ ବାହାରିବା** - *ନ:* (କ୍ରି.) : ହାଲିଆ କରାଇ ଦେବା

**ଫେଣା** - *ଢେ:ନ:ଦେ:* (ବି.) କାନ୍ଧି, ମହୁମାଛିର ମହୁ ଘର, ମହୁ, କଦଳୀ ଫେଣା

**ଫେଣାଖଜା** - *ଗ:* (ବି.) : ଚିନିରୁ ପ୍ରସ୍ତୁତ ମିଠେଇ

**ଫେଣି** - *ଗ:ନ:ଦେ:* (ବି.) : ଚିନିରୁ ପ୍ରସ୍ତୁତ ମିଠେଇ, ଏକପିଠା-ଘିଅ, ଚିନିରେ ପ୍ରସ୍ତୁତ ପିଠା, ଖଜା

**ଫେଣେ** - *ଗଦ୍ୟ:* (ଅ.) : ପୁଣି

**ଫେଣ୍ଡିବା** - *କେ:* (କ୍ରି.) : ଗୋଳାଇବା

**ଫେଣ୍ଡରାମୁହାଁ** - *ଭ:* (ବିଂ.ବି) : ଅସୁନ୍ଦରୀ

**ଫେତ୍‌ରି** - *ଗୈ:* (ବି.) : ଥଟ୍ଟାପରିହାସ

**ଫେତି** - *ଖୋ:* (ବି.) : ବାତୁଳି ଖଡ଼ା

**ଫେଦ** - *ନବ:* (ବି.) ବୃଦ୍ଧାବସ୍ଥାରେ ସ୍ତ୍ରୀଯୋନିରେ ଉତ୍ପତ୍ତି ମାଂସ ପିଣ୍ଡୁଳା

**ଫେନିବା** - *ନୂ:* (କ୍ରି.) : ଫେଣେଇବା, ବଡ଼ି ତିଆରି କରିବା ପାଇଁ ବଟା ଚାଉଳକୁ ଉପଯୁକ୍ତ ଭାବରେ ହାତରେ ମଳିବା

**ଫେନ୍ ଘାଏ** - *ସ:* (ଅ.) : ପୁଣିଥରେ

**ଫେପଲ୍** - *ସ:କଳା:ବୌ:ସୁ:* (ବି.) : ଫେଣ, ଫେମର, ଲାଳ

**ଫେମରମାରିଷ** - *ଗ:* (ବି.) : ଟଭା ଜାତୀୟ ଆମ୍ଳିକ ଫଳ

**ଫେର** - *ଅନେ:* (ବି.) : ଚାଲାକି, କୌଶଳ, ରାଜନୀତି ଇତ୍ୟାଦି, ଛୋଟ ଜଳଧାର, ଲୁଗାର କୁଞ୍ଚ, ପୁଣି

**ଫେରକା** - *ସୁ:* (ବିଂ.) : ଓସାର

**ଫେରଣ୍ଡ** - *କେ:* (ବି.) : ବିଲୁଆ

**ଫେରଫାର୍** - *ଦେ:* (ବି.) : ହେର୍‌ଫର୍, ଓଲଟପାଲଟ

**ଫେରାଏ** - *ଗଦ୍ୟ:* (ବିଂ.) : ଥରେ, ଘେରାଏ

**ଫେରାଦ** - *ଦେ:* (ବି.) : ଗୁହାରି, ଅଭିଯୋଗ

**ଫେରାଦ୍ ହେବା** - *ସଂ:* (କ୍ରି.) : ଜଣାଇବା, ଆପତ୍ତି କରିବା

**ଫେରାର୍** - *କେ:ଦେ:* (ବିଂ.ବି.) : ପଳାତକ, ଚମ୍ପଟ୍, ପଳାୟନ

**ଫେରିବାଲା** - *ନ:* (ବିଂ.) : ବୁଲାବିକାଳି

**ଫେରୁଆ** - *ବୌ:* (ବି.) : ଅଦୃଶ୍ୟରୁ କୌଶଳ କରି ବିଘ୍ନ ଘଟାଇବା କର୍ମ

**ଫେର୍** - *ଅନେ:* (ବି.) : ପୁଣି, ଆଉଥରେ

**ଫେର୍କା** - *ସୁ:କଳା:କୋ:* (ବିଂ.) : ଓସାର, ଓସାରିଆ, ଛତିଆ

**ଫେର୍କା କାନିଆ** - *ବୌ:* (ବି.) : ଫେରକା କାନ ଯାହାର

**ଫେଲାଟ** - *ଯା:* (ବି.) : ନକ୍ସା ପାଇଁ ବ୍ୟବହୃତ ଯନ୍ତ୍ର

**ଫେସ୍କା** - *ବ:* (ବିଂ.) : ମୁହଁରୁ ପାଣି ଉତୁରି ଯିବା

**ଫେଁକାରୀ** - *ସୁବ:* (ବି.) : ବୁଢା ବିଲୁଆ

**ଫେଁଦ୍ରି** - *ସୁବ:* (କ୍ରି.) : ମିଛକଥା କହି ଟାପରା କରିବା, ଚିଡେଇବା

**ଫେଂଚ** - *ବୌ:* (ବିଂ.) : ଅଦୃଶ୍ୟରେ ବିଘ୍ନ ଘଟାଇବା

**ଫୋକଟ୍** - *ଦେ:* (ବିଂ.) : ମୋଫତ୍, ମାଗଣା

**ଫୋଙ୍ଗଲ୍** - *କଳା:* (ବି.) : କଣା, ରନ୍ଧ୍ର, ସୁଡଙ୍ଗ

**ଫୋଟୁ** - *ରା:ଗଜ:* (ବି.) : ଫଟୋ, ଚିତ୍ର

**ଫୋଡ଼ଣୀ** - *ନ:ବୌ:ଗ:* (ବି.) : ଡାମ୍ଫଣ, କଣା କରିବାର ବଡ଼ ଛୁଞ୍ଚି, ଗୋଜିଆ ଲୁହା, ଫୋଡ଼ିବା ଅସ୍ତ୍ର

**ଫୋଡ଼ା** - *ସୁ:* (ବି.) : କଣା

**ଫୋପରା** - *ଗ:ଗଦ୍ୟ:* (ବିଂ.) : ଖତୁଆ, ଖତରା, ପାମ୍ପରା

**ଫୋଫା** - *ଅ:* (ବି.) : ମଉସା

**ଫୋସ୍କୋ ପାଲା** - *ସ:* (ବିଂ.) : ମିଛ କଥା

**ଫୋଁଡୋ** - *କଳା:* (ବି.) : ଛିଦ୍ର, ରନ୍ଧ୍ର, କଣା

**ଫଁଢ** - *ନବ:* (ବିଂ.) : ଠକ, ମିଛୁଆ ଦଲାଲ

**ଫଁଫା** - *ସୁ:* (ବି.) : ଫାଙ୍କା

**ଫଁସିଆ** - *ନୁ:* (ବି.) କାନର ଫାସିଆ(ଅଳଙ୍କାର)

# ବ

**ବ** - *ଗା:* (ବି.) : ପାନ ଚେରକୁ 'ବ' କହନ୍ତି

**ବଅ** - *ଯା:ଦେ:କଣ:ଖୋ:* (କ୍ରି.ବି.) : ବସିବାକୁ ନିର୍ଦ୍ଦେଶ, ତନ୍ତର ପାନିଆ, ଭରଣ ସୂତା

**ବଅଚିରା** - *ସ:* (ବି.) : ଲୁଗାର ଏକାଧିକ ବୁଣାସୂତା ଫାଶ ମୁକ୍ତଥିବା ଅବସ୍ଥା

**ବଅଛଡ଼ା** - *ଭ:* (ବି.) : ତିଆରି ବେଳେ ଲୁଗାରେ ଥିବା ଫାଙ୍କ ସ୍ଥାନ

**ବଅଣା** - *ନବ:* (ବି.) : ଅଗ୍ରିମ ଟଙ୍କା

**ବଅଣ୍ଡା** - *ଗ:* (ବି.) : ଆଳୁଚପ୍

**ବଅପଡ଼ିଆ** - *ଗ:* (ବି.) : ଠିକ୍ ଭାବେ ବୁଣା ହୋଇନଥିବା ଲୁଗା

**ବଅର କରିବା** - *ଭ:* (ବିଂ.) : ଅଟକାଇବା

**ବଅରା** - *କଳା:* (ବିଂ.) : ପାଗଳ, ବିକୃତ ମତି, ବାୟା

**ବଅରିଆ** - *ଗଦ୍ୟ:* (ବିଂ.) : ଏକ ବାଗିଆ, ଜିଦିଆ

**ବଅଲ** - *ଗ:ଢ:* (ବି.) : ବଳଦ

**ବଅସ** - *ଯା:ନ:* (ବି.) : ବୟସ

**ବଅଁଶ, ବଂଶ** - *ନ:* (ବି.) : କୁଳ

**ବଅଁସା** - *ବ:କଣ:* (ବି.) : ଛାତ ମଝିରୁ ଗଡ଼ି ଆସିଥିବା ଖୁଣ୍ଟ ତବା ବା ଗାତ ଇତ୍ୟାଦିକୁ, ମେଢା

**ବଓୋପୁର** - *ବ:* (କ୍ରି.) ସଅଁଳ, ଶୀଘ୍ର, ସମୟ ପୂର୍ବରୁ, ଭୋର ସମୟ

**ବଇ** - *ଅନେ:* (ବି.) : ମାଟିଝାଟି ଘରର କାନ୍ଥ, ବନ୍ଧି, ବାଡ଼

**ବଇକୁଲ୍ୟ** - *ଢ:* (ବି.) : ବିକଳ, କଲବଲ

**ବଇଙ୍ଗା** - *ଗଦ୍ୟ:* (ବି.) : ଏକପ୍ରକାର ମୂଳ

**ବଇଚି** - *ନବ:ନ:* (କ୍ରି.) : ବସିଲା, ବସିଛି

**ବଇଠା** - *ଅନେ:* (ବି.) : ଦୀପ, ଢାଗର, ଦୀପରୁଆ, ବସିବା ଆସନ

**ବଇଠାରୁ** - *ଗଢ:* (ବି.) : ବଣିଆମାନଙ୍କ ଉପାଧି

**ବଇଠି** - *ଅନେ:* (ବି.) : ପିଣ୍ଡି ଲାଗିଥିବା କଂସା ପାତ୍ର, ଛୋଟ ଗିନା, ଦୀପରୁଖା

**ବଇଠି ଖୁରୀ** - *ବୌ:* (ବି.) : ପାତ୍ରବିଶେଷ

**ବଇତନ** - *ଗଦ୍ୟ:* (ବି.) : ବେତନ, ଦରମା

**ବଇତର୍** - *ବୌ:* (କ୍ରି.ବି.) : ଦୀର୍ଘସ୍ଥାୟୀ, ଦୀର୍ଘ

**ବଇଥା** - *ନ:* (କ୍ରି.) : ବସିଥାଅ

**ବଇ ଥାଇଚି** - *ଗଦ୍ୟ:* (କ୍ରି.) : ରହିଛି

**ବଇଦ** - *ସୁବ:ନ:ସ:* (ବି.) : ବୈଦ୍ୟ, ଡାକ୍ତର, ଠୁଣିଠୁଣିକା ଔଷଧ ଦେବା ବ୍ୟକ୍ତି

**ବଇଦି** - *ସୁବ:* (ବି.) : ବୈଦ୍ୟ କର୍ମର ବ୍ୟବସାୟ

**ବଇନି** - *ଅନେ.* (ବି.) : ପ୍ରଥମ ବିକ୍ରି ଅର୍ଥ, ବିକ୍ରୟ ଆରମ୍ଭ, ଅଗ୍ରୀମ ବରାଦ

**ବଇତି** - *ଗ.* (ବି.) : ଅଗଣା

**ବଇତିରି ଯିବା** - *ଭ.* (ବି.) : ବେଶିଦିନ ରହିବା

**ବଇଭୋଗ** - *ଢ.* (ବି.) : ବିଳାସ

**ବଇରଖ** - *ଯା.* (ବି.) : ପତାକା

**ବଇରଷ** - *ଗ.ନବ.* (ବି.) : ଶତ୍ରୁତା, ବିଦ୍ୱେଷ

**ବଇରା** - *ଅନେ.* (ବିଂ.ବି.) : କାଲା, ବଧିର, ଲଙ୍ଗଳର ଲୁହାଫାଳ ସହିତ ଯେଉଁ ଛୋଟ କାଠ ଲାଗିଥାଏ

**ବଇରାଗ** - *ଜ.ଗ.* (ବି.) : ବେମାରି, ବିରକ୍ତି, ଆସକ୍ତିହୀନ, ରୋଗବ୍ୟାଧି

**ବଇରାଗି** - *ସୁ.* (ବିଂ.) : ସଂସାରତ୍ୟାଗୀ

**ବଇଲ** - *ଢ.* (କ୍ରି.) : କହିଲ

**ବଇଲା** - *ଗଢ.ସୁ.ମା.* (ବି.) : ବଳଦ, କହିଲା, ବହିଲା

**ବଇଲେ** - *ବୌ.କୋ.* (କ୍ରି.ଅ.) : ବୋଇଲେ, ଅର୍ଥାତ୍, ମାନେ, ବସିଲେ

**ବଇଷମ** - *ଢ.ଗ.ରା.* (ବି.) ବୈଷ୍ଣବ, ସନ୍ୟାସୀ

**ବଇହା** - *ସୁ.* (ବିଂ.) : ବାଇୟା, ପାଗଳ

**ବଇଁଙ୍ଗା** - *କଝ.* (ବି.) : ବାହୁଙ୍ଗା

**ବଇଁଚ** - *କେନ୍ଦୁ.* (ବି.) : ଏକ ପ୍ରକାର କୋଳି ଗଛ

**ବଇଁଠି** - *ଅ.* (ବି.) : ପନିକି

**ବଇଁତି** - *କୋ.* (ବି.) : ଅଣଓସାରିଆ ପିଣ୍ଡା

**ବଇଁରା** - *କଝ.ବୌ.* (ବି.) : ଏକ ପ୍ରକାର ମାଛ, ଡୁରୀ(ମାଛ)

**ବଉ** - *ବା.ନବ.କଳା.* (ବି.) : ଭାଉଜ, ବୋହୂ, ମାଆ

**ବଉଣି** - *ଗଢ.* (ବି.) : ଅଗ୍ରୀମ, ଆଗତୁରା

**ବଉନା ବିହ୍ନା** - *ବୌ.* (କ୍ରି.ବି.) : ବଛାବଛି

**ବଉଭାତ** - *ବା.* (ବି.) ବିଭାଘର ଚତୁର୍ଥୀଭୋଜି

**ବଉମା** - *ଗ.ରା.* (ବି.) : ଦେଠେଇ, ଜେଠେଇ

**ବଉରା** - *ବୌ.ସୁବ.* (ବିଂ.ବି.) : ପାଗଳ, ବାୟା

**ବଉଲ** - *ସ.କଳା.ସ.* (ବି.) : ଆମ୍ବ ବଉଳ, ଏକପ୍ରକାର ଗଛ

**ବଉଲି ଗୀତ** - *ସ.* (ବି.) : ଲୋକ ଗୀତ

**ବଉଳ** - *ଅନେ.* (ବି.) : ବାନ୍ଧବୀ, ଏକ ଗଛ ବିଶେଷ, ସାଙ୍ଗକୁ ସମ୍ବୋଧନ କରୁଥିବା ପଦ, ସଙ୍ଗାତ ଭଳି ବଉଳ ବସିବା ପରଂପରା, ଆମ୍ବକଷି ଫୁଲ, ଏକ ବୃକ୍ଷର ନାମ

**ବଉଳଝଳା** - *ଗ.* (ବି.) : ରାଜ ଉଆସର କାରୁକାର୍ଯ୍ୟ

**ବଉଳ ପାଟ** - *ଦେ.* (ବି.) : ବିବାହବେଳେ କନ୍ୟା ପିନ୍ଧିବା ପାଞ୍ଚି

**ବଉଳା** - *ଢ.* (ବି.ବିଂ.) : ଏକ ପ୍ରକାର ଧାନକିସମ, ଧାନର ନାଁ, ବଉଳିଥିବା

**ବଉଳାଙ୍ଗି** - *ଗ:* (ବି.) : ବଳକା, ଅଧିକା

**ବଉଳି** - *ଗ:* (ବି.) କର୍ଣ୍ଣାଳଙ୍କାର ଓ ଲଗାଇବା ସ୍ଥାନ

**ବଉଳିବା** - *ନ:ଗଦ୍ୟ:* (କ୍ରି.ବି.) : ଗଛରେ ବଉଳ ଆସିବା, ଅଳ୍ପ ପାଣିରେ ମାଛମାନେ ବଉଳିଲେ, ଫଳିବା

**ବଉଁଶ** - *କଳା:ମା:* (ବି.) : ବାଉଁଶ, ବଂଶ

**ବଉଁଶା** - *ବୌ:ନୂ:* (ବି.) : ରୁଅ (ବାଉଁଶ ବା କାଠର)

**ବଏଠା** - *ସୁବ:ସ:କଳା:* (ବି.) : ଦୀପ, ମାଟିର ଦୀପ, ଡିବିରି, ଢାଗର

**ବଏଢ଼, ବଏଢ୍** - *ସ:* (ବି.) : ବନ୍ୟା, ବଢି

**ବଏତର** - *ସୁବ:ସ:ବ:* (ବି.କ୍ରି.) : ବେଶୀଦିନ ଯିବା, ସ୍ଥାୟୀ, ବେଶୀଦିନ ବ୍ୟବହାର ଉପଯୋଗୀ

**ବଏଦ** - *ସୁ:* (ବି.) : ବୈଦ୍ୟ

**ବଏଦାର** - *ସୁବ:* (ବି.) : ପଶ୍ଚିମ ଓଡ଼ିଶାର କରଣ ଜାତିର ସାଙ୍ଗିଆ ଯେଉଁମାନେ ବହିଃଦ୍ୱାରରେ ରାଜସେବା କରନ୍ତି

**ବଏନା** - *ସ:ବ:* (ବି.) : ଅଗ୍ରିମ ଦେୟ (ଟଙ୍କା ବା ଅନ୍ୟ କିଛି)

**ବଏମାନ୍** - *ନୂ:* (ବି.) : ବଇମାନ

**ବଏର** - *ଢେ:* (ବି.) : କୋଳି

**ବଏରୀ** - *ସ:* (ବି.) : ଶତ୍ରୁ

**ବଏର୍‌ଛା** - *ସୁବ:ସ:* (ବି.) : ବାରିସା, ପରିବା ଚାଷ ଉପଯୋଗୀ ଢିପ ଜମି

**ବଏଲ** - *ସୁ:କନ୍ଧ:* (ବି.) : ବଳିଉଷବ, ବଳଦ

**ବଏଲୁ** - *କଳା:* (କ୍ରି.) : କହିଲୁ, ବୋଲି, କହିବାକୁ ଗଲେ

**ବଏସ୍** - *ସ:* (ବି.) : ବୟସ

**ବଏସରା** - *କଳା:ସ:* (ବିଂ.ବି.) : ଅଭ୍ୟସ୍ତ, ଅଭ୍ୟାସ

**ବଏସିଆ** - *କଳା:* (ବିଂ.) : ବୟସ୍କ, ପ୍ରୌଢ

**ବଏହା** - *ସୁବ:* (ବିଂ.) : ବାୟା, ପାଗଳ

**ବଏଁରି** - *ଗଦ୍ୟ:ବ:* (ବିଂ.ବି.) : କାଲୁଣୀ, ତୋଡ଼ିମାଛ

**ବକ** - *ଜ:କନ୍ଧ:* (ବି.) : ବଗ

**ବକ୍‌ତା** - *ଢେ:* (ବି.) : ମୁଣ୍ଡ

**ବକ୍‌ତିବା** - *ବୌ:ସ:* (ବି.କ୍ରି.) : ମାଡ଼ଖାଇ ସ୍ୱୀକାର କରିବା, ଫିଟାଇ କହିବା

**ବକ୍‌ତେ** - *ମ:ନ:* (ବି.) : ଥରେ, ଖାଇବା ଅର୍ଥରେ

**ବକ୍‌ବକ୍** - *ମା:ନ:ଦେ:ସୁ:* (କ୍ରି.ବିଂ.ବି.ଅ.) ମୂଲ୍ୟହୀନ କଥା, ଅଯଥା କଥା କହିବା

**ବକ୍‌ବକାବା** - *ସ:* (କ୍ରି.) : ବହୁତ କଥା ହେବା

**ବକ୍‌ରିବା** - *କଳା:ନବ:* (କ୍ରି.) : ଫୁଲିବା, ଔଦ୍ଧତ୍ୟ ପ୍ରକାଶ କରିବା, ଖେଳିବା

**ବକ୍‌ଲା** - *ମା:ସୁ:* (ବି.) : ବକ୍କଳ, ଚିରା କାଠଫାଳ, କାଠଛାଲି

**ବକ୍‌ଳିବା** - *କଳା:* (କ୍ରି.) : ପରିପୁଷ୍ଟ ନହୋଇ ଝଡ଼ିଯିବା

**ବକ୍‌ସି** - *ସୁ:* (ବି.) : ସେନାପତି

**ବକଟେ** - *ନ:କେ:* (ବିଂ.) : ଅତିଅଳ୍ପ, ଟିକିଏ, ସାମାନ୍ୟ, ଛୋଟ

**ବକଡ଼** - *ରା:* (ବିଂ.) : ଓଲା

**ବକଡ଼ା** - *ଗଜ:ବା:ରା:* (ବି.) : ଛେଲି, ଗଛର ଛାଲି, ନାକର ମଇଳା

**ବକଣା** - *ରା:କୋ:* (ବି.) : ଗାଳି, ଶୋଧା

**ବକଣା ଚୁକଣା** - *ଗ:* (କ୍ରି.) : ଗାଳିଗୁଲଜ

**ବକତ** - *ଅନେ:* (ବି.) : ଭାତ, ଥରେ ଖାଇବା, ସମୟ, ସମୟ, ବାକ୍ୟନ୍ତ

**ବକ ଧ୍ୟାନ** - *ସ:* (ବି.) : ଏକାଗ୍ରତା

**ବକନା** - *ଗ:* (ବି.) : ମାଖିର, ମାତୃସ୍ତନ

**ବକନା ଗୁରସ୍** - *ସ:* (ବି.) : ବାଛୁରୀ ବଡ଼ ହେଲାପରେ ଗାଈ ଦେଉଥିବା କ୍ଷୀର

**ବକବାଜି** - *ଯା:* (ବି.) : ପାଟିତୁଣ୍ଡ, ଅଯଥା କଥା

**ବକରଛୁଡ଼ିଆ** - *ଗ:* (ବିଂ.) : ଏଣୁ ତେଣୁ ଗୁଡ଼ାଏ କହିବା

**ବକରଣୀ** - *ଦେ:* (ବି.) : କେନ୍ଦୁଗଛ

**ବକରା ଫଳ** - *ଗ:* (ବି.) : କପା ଗଛର ମଂଜି

**ବକଲମ୍** - *ଦେ:* (ବି.) : ଅନ୍ୟପାଇଁ ସାକ୍ଷର କରିବା

**ବକସ୍ ବକସ୍** - *କଳା:* (ବିଂ.) : ଶାରୀରିକ ଦୁର୍ଗନ୍ଧ ବିଶେଷ, ଭକ୍‌ଭକ୍

**ବକି** - *ଢେ:* (ବି.) : ରକ୍ତ

**ବକିଆ** - *କନ:* (ବିଂ.) : ବଙ୍କା

**ବକିରୀ** - *କେନ୍ଦୁ:* (ବି.) କଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ବକୁ** - *ସୁ:* (ବିଂ.) : ବକିବାବାଲା

**ବକୁଲ** - *କଳା:ନୂ:* (ବି.) : ବଗ

**ବକେୟା, ବାକିଆ** - *ନ:* (ବି.) : କାଳିଖାଇବା, ବାକିରେ ଜିନିଷ ନେବା

**ବକୋ** - *ସୁ:* (ବି.) : ବୋକା

**ବକ୍ତେ** - *ସ:ଗଦ୍ୟ:କେ:* (ବି.) : ଗୋଟିଏ ଓଳି, ଥରେ ଖାଦ୍ୟ ଗ୍ରହଣ, ଗୋଟିଏ ଓଳି

**ବକ୍ତେ ଆସବା** - *ନୂ:* (କ୍ରି.) : ଠିକ୍ ସମୟରେ କାମରେ ଆସିବା

**ବକ୍ଲା ଛାଡ଼ିବା** - *ସ:* (କ୍ରି.) : ଛାଲି ଛାଡ଼ିବା ଘା'ଟା ଶୁଖିଗଲା ପରେ ବକଲା ଛାଡ଼ିବା

**ବକ୍ଲି ଯିବା** - *ସ:* (କ୍ରି.) : ନଷ୍ଟ ହୋଇଯିବା

**ବଖ୍‌ନା ବଖ୍‌ନି** - *କଳା:* (କ୍ରି.) : ନାପସନ୍ଦ କରିବା

**ବଖ୍‌ରି** - *ଝା:* (ବି.) : ବଂଶ ଅର୍ଥରେ ବ୍ୟବହୃତ

**ବଖିଲିବା** - *ବୌ:* (କ୍ରି.) : ପାକଳ ପୂର୍ବରୁ ଝଡ଼ିବା

**ବଖେଡ଼** - *ଗ:ଗଦ୍ୟ:* (ବି.) କଳହା, ଗୋଳମାଳ, ତ୍ରୁଟି

**ବଖେନି** - *ସୁ:* (ବି.) : ଲୋକବଚନ

**ବଖରା** - *ଅନେ:* (ବି.) : ଘର କୋଠରୀ, ଭାଗ, ଘର, ରୁମ୍, ଭାଗଚାଷ, ପରିବାର ସମୂହ, ବଂଶ

**ବଖରିଆ** - *ସୁ:* (ବିଂ.) : ଘର ସଫା କରିବା ଲୋକ

**ବଖଲିଯିବା** - *ସୁ:* (କ୍ରି.) : ଫୁଲ, ଫଳ ଶୁଖିଯିବା

**ବଖାନି** - *ଦ:କଳା:ଚୌ:* (ବି.) : ବିସ୍ତାରିତ ବର୍ଣ୍ଣନା କରିବା, କୌଣସି ତଥ୍ୟ ଅନୁମୋଦିତ ଲୋକ ବଚନ, ନାଁଦିଆ, ବିଶେଷ ବକ୍ତବ୍ୟ

**ବଗ୍‌ଚା** - *ସ:* (ବି.) : ବଗିଚା

**ବଗ୍‌ନିଆ** - *ସୁ:* (ବି.) : ବଗିଚା କର୍ମୀ

**ବଗ୍‌ବଗାନୁ** - *ସୁ:* (ବିଂ.) : ଆଶାତିରିକ୍ତ ଫୁଟିବା

**ବଗ୍‌ବଗାବା** - *ସୁ:* (କ୍ରି.) : ପ୍ରସ୍ଫୁଟିତ ହେବା

**ବଗ୍‌ରାଉଲ୍** - *ଚୌ:* (ବି.) : ସାରୁ ଜାତୀୟ ଖାଦ୍ୟ ବିଶେଷ

**ବଗ୍‌ଲା** - *ମ:ବା:* (ବି.) : ବଗ

**ବଗଚରା** - *ଗ:ଗଦ୍ୟ:* (ବି.) : କ୍ଷୁଦ୍ର ଗାଡ଼ିଆ, ଜଳାଶୟ, ଖାଲୁଆ ସ୍ଥାନ

**ବଗଟା** - *ଗଜ:* (ବି.) ଜାତିବିଶେଷ (ପ୍ରାଚୀନ)

**ବଗଡ଼ା** - *ଅ:ରା:ନି:ମା:* (ବିଂ.ବି.) : ମୋଟା ଚାଉଳ

**ବଗଡ଼** - *ଗ:ଅ:ଗଜ:ଗଦ୍ୟ:* (ବି.) : ପାହାଡ଼ ପର୍ବତର କୃଷି ଜମି, ଗୋଠ, ପୋଡୁଚାଷ ନିମିତ୍ତ ପାହାଡ଼ରେ ନିଆଁ ଲଗାଇବା, ଦୁଷ୍ଟ ଦୋମିଶା ଜୀବ

**ବଗଡ଼ପୋଡ଼ି** - *ଗ:* (ବି.) : ପାହାଡ଼ ପର୍ବତରେ ଅଗ୍ନି ସଂଯୋଗ କରି ଜମି ପ୍ରସ୍ତୁତ କରିବା

**ବଗଡ଼ାଲୁ** - *ଗଜ:* (ବି.) : କର୍ଣ୍ଣାଳଙ୍କାର, ମଲ୍ଲିକଢ଼ି

**ବଗରିବା** - *ସୁ:* (କ୍ରି.) : କାମ କରି କହିବା

**ବଗଲ** - *ସୁ:* (ବି.) : ପାର୍ଶ୍ୱ

**ବଗା** - *ଅନେ:* (ବିଂ.) : ଓଲୁ, ବଗୁଲିଆ, ନିର୍ବୁଦ୍ଧିଆ, ମୂର୍ଖ, ବୋକା

**ବଗାଏତ** - *ନ:ପୁ:* (ବି.) : ବଗିଚା, ତୋଟା

**ବଗାଢ** - *ରା:* (ବିଂ.) : ଟିକିଏ

**ବଗାଣ** - *ଗ:* (ବି.) : ସମ୍ମୋହନ ବିଦ୍ୟା

**ବଗାତ** - *କେ:ଦେ:* (ବି.) : ବଗିଚା

**ବଗାର୍** - *ଚୌ:* (ବି.) : ଛୁଆ ଜନ୍ମ କରି ନଥିବା ମାଈ ପୋଢ ଛୁଆ

**ବଗାଳ** - *କେନ୍ଦୁ:ବା:ଗଦ୍ୟ:ମ:* (ବି.) ଚାଷକାମପାଇଁ ରଖାଯାଇଥିବା ଲୋକ, କୋଠିଆ, ଗୋପାଳକ, ଗଉଡ଼, ଗାଈ, ଛେଳି ଜଗୁଥିବା ଲୋକ

**ବଗି** - *ଖୋ:ଦେ:ପଦ୍ୟ:* (ବି.) ରେଳ କମ୍ପାର୍ଟମେଣ୍ଟ, ଘୋଡ଼ାଗାଡ଼ି

**ବଗିବା** - *କଳା:* (କ୍ରି.) : ଚଢିବା, ଆରୋହଣ କରିବା

**ବଗୁ** - *ରା:* (ବି.) : କାଠକୋଇଲା

**ବଗୁଲିଆ** - *ଅନେ:* (ବିଂ.) : ଦୁଷ୍ଟ, ଚଗଲା (ପିଲା), ମିଥ୍ୟାବାଦୀ, ଚପଳମତି

**ବଗୁଳ** - *ଗ:* (ବି.) : ଏକ ପ୍ରକାର ପକ୍ଷୀ

**ବଘ୍‌ବାର** - *ସୁବ:* (କ୍ରି.) : ଘୋଡ଼ା, ମୋଟର ସାଇକେଲ ଇତ୍ୟାଦି ଚଢ଼ିବି

**ବଘ୍‌ରେଇବା** - *ଚୌ:* (କ୍ରି.) : ଛୁଙ୍କ ଦେବା

**ବଘବା** - *ସୁ:ବ:ସ:* (କ୍ରି.) : ଯାନ ଚଢିବା, ଉପରକୁ ଚଢିବା

**ବଘରାବାର** - *ସୁବ:* (କ୍ରି.) : ଡିଅଣରେ ଛୁଙ୍କ ଦେବା

**ବଘାରିବା** - *ସଂ:କେ:ଇ:* (କ୍ରି.) : ଗାଳିଦେବା, ତାସଲ୍ୟ କରି କହିବା, ଛୁଙ୍କ କରିବା

**ବଘାଳିବା** - *ନ:* (କ୍ରି.) : ପିଆଜ, ରସୁଣ, ଲଙ୍କା, ତେଲ ଦେଇ ତରକାରୀକୁ ଛୁଙ୍କ ଦେବା

**ବଘିଆ** - *ସୁବ:* (ବି.) : ଏକ ପ୍ରକାର ମାଛି, ଗାଈଗୋରୁ ମାନଙ୍କ ନାକରେ ପଶି ବହୁତ ହଇରାଣ କରେ

**ବଙ୍କୁଲୀ** - *ଯା:* (ବିଂ.) : ବଙ୍କା

**ବଙ୍ଗାଳିଆଳୁ** - *ଗଞ:* (ବି.) : ବିଲାତିଆଳୁ

**ବଙ୍ଗି** - *ବ:ନୂ:ନ:କ:* (ବି.) : ଏକ ପ୍ରକାର ରୋଗ (ଶସ୍ୟମାନଙ୍କରେ ଲାଗେ), ଗଛର ଗଣ୍ଠି, ଗଛ ଖଣ୍ଡ, ଧାନର ନାମ

**ବଚ** - *ଦେ:ନ:* (ବି.) : ଔଷଧ, ସ୍ୱର ପରିଷ୍କାରକ; ତଣ୍ଡିରୁ କଥା ନବାହାରିଲେ ଏ ଦ୍ରବ୍ୟକୁ ଖାଇଲେ ସ୍ୱର ବାହାରେ

**ବଚସା** - *ନ:* (ବି.) : ବାକ୍‌ଯୁଦ୍ଧ

**ବଚା** - *ନ:ଦେ:* (ବି.) : ଛୋଟପିଲା, ଶିଶୁ, ଛୁଆ, ମାଛ

**ବଚାଡିଜାଲ** - *ଚ୍।:* (ବି.) : ବଡମାଛ ଧରିବା ପାଇଁ ଏକ ପ୍ରକାର ଫିଙ୍ଗା ଜାଲ

**ବଚୁଆ** - *ସଂ:* (ବି.) : ଏକପ୍ରକାର ମାଛ

**ବଚ୍ଛରା** - *ଚୌ:* (ବି.) : ଛୋଟ ଛୁଆଙ୍କ ତରଳ ଝାଡ଼ା

**ବଚ୍ଛାବଚ୍ଛି** - *ନ:* (ବି.) : ନିର୍ଦ୍ଦିଷ୍ଟ (ସ୍ଥାନରେ), ସଫାକରିବା, ମନୋନୟନ

**ବଛର** - *ସ:ସୁ:* (ବି.) : ବର୍ଷ

**ବଛରକିଆ** - *ସୁବ:ସ:* (ବି.) : ବାର୍ଷିକ ଶ୍ରାଦ୍ଧ

**ବଛା** - *ଅନେ:* (ବି.ବିଂ.) : ମାଈ ବାଛୁରୀ, ପଶୁ ଶାବକ, ଯୁବାବସ୍ଥାରେ ବଳଦ, ଖେତରୁ ଘାସ ଓ ଅନାବନା ଗଛ ଉପାଡ଼ି ବାହାର କରିବା, ବାଛିକରି, ନିର୍ବାଚିତ

**ବଜ୍‌ନିଆ** - *କଳା:ଚୌ:ସୁ:* (ବି.) : ବାଦକ, ବାଦ୍ୟକାର, ବାଜାବାଲା

**ବଜ୍‌ରି** - *କଳା:ଗ:* (ବି.) : ଅତି ଛୋଟ ଛୋଟ ଗୁଣ୍ଡ ପଥର ବଜୁରି

**ବଜନ୍ତିରି** - *ଗ:* (ବି.) : ବାଦ୍ୟ ବଜାଇବା ଜାତି, ବାଦକ, ବଜ୍‌ନିଆ

**ବଜର୍** - *କଳା:ସୁ:ନୂ:* (ବିଂ.) : କଠିନ, ଟାଣ

**ବଜର ଛୁଞ୍ଚି** - *ନ:* (ବି.) : ଏକ ଧାନର ନାମ

**ବଜରା** - *ଗଦ୍ୟ:* (ବି.) : ପ୍ରକୋଷ୍ଠ ଥିବା ଡଙ୍ଗା

**ବଜରିବା** - *ସୁ:* (କ୍ରି.) : ଟାଣହେବା

**ବଜା** - *ଅନେ:* (ବି.କ୍ରି.) ଶସ୍ୟାଦିର ମାଲିକାନା ସତ୍ତ୍ୱ, ରାଜଭାଗ, ବାଉଁଶ ପାତିଆ ଓ ଖଡ଼ିକାରେ ତିଆରି ଏକପ୍ରକାର ମାଛଧରା ଯନ୍ତ, ଶିଙ୍ଗ ଲାଗିଥିବା ବୀର ବାଜା ଏହାକୁ ଦୁଇ ବାଡ଼ି ବା କାଠିରେ ବଜାଯାଏ, ଛୋଟଛୋଟ ଇଟା ଖଣ୍ଡ, ଭଙ୍ଗାଘର ବା କାନ୍ଥରୁ ବାହାରିଥିବା ଖଣ୍ଡଖଣ୍ଡ ଅଂଶ, ମାଛଧରା ଯନ୍ତ (ବାଉଁଶ ପାତରେ ନିର୍ମିତ, ଥରେ ମାଛ ପଶିଲେ ବାହାରି ପାରେ ନାହିଁ)

**ବଜାତ୍** - *କେ:* (ବିଂ.) : ବଦମାସ୍, ଦୁଷ୍ଟ, ବର୍ଣ୍ଣ ସଙ୍କର

**ବଜାତୁଣୀ** - *ନ:* (ଅ.) : (ସ୍ତ୍ରୀ) ଗାଳି

**ବଜାବଜି** - *ନ:* (ବି.) ମୁଥ ମରାମରି, ଗଣ୍ଡଗୋଳରେ ମୁଷ୍ଟି ଯୁଦ୍ଧ, ବାଡ଼ିଆପିଟା

**ବଜାରଦାରି** - *ଗ:* (ବି.) : ଚରିତ୍ରହୀନା

**ବଜାରପାନୁ** - *ଗ:* (ବି.) : ବଜାର କର ଟିକସ

**ବଜାରି ଛତରା** - *ଗ:* (ବିଂ.) ଛତରା, ସମ୍ମାନହୀନ ବ୍ୟକ୍ତି, ଲଫଙ୍ଗା

**ବଜାଶାଲ୍** - *କନ୍ଧ:* (ବି.) : ଆଦିବାସୀମାନଙ୍କ ବିବାହାଦିରେ ଆୟୋଜିତ ବାଦ୍ୟଶାଳା

**ବଜେ** - *ନୁ:* (କ୍ରି.ବିଂ.) ସମୟରେ, ବାଜିବେଳେ

**ବଜ୍ଜାତ୍** - *ଖୋ:ଦେ:* (ବିଂ.) : ବାଜେ(ଗାଳି), ଖେଜଡ଼, ଦୁଷ୍ଟ

**ବଜ୍ରମୂଳୀ** - *ଦେ:* (ବି.) : ଔଷଧୀୟ ଗୁଳ୍ମ

**ବଝା** - *ସୁବ:ସ:* (ବି.ବିଂ.) : ବାୟା, ପାଗଳ

**ବଝାରୀ** - *ଢେ:* (ବି.) : ବାଉରୀ

**ବଝୁ** - *ଅ:* (ବି.) : ଚିତା ଚୈତନ୍ୟ

**ବଞ୍ଚ** - *ଗ:* (ବି.) : ସକଟା ଖେଳର ଏକଦାନ

**ବଞ୍ଜିଆ** - *ସ:* (ବି.) : ବଳଦ ବ୍ୟବସାୟୀ

**ବଞ୍ଜୁଳ** - *ଗଦ୍ୟ:* (ବି.) : ଅଶୋକ ଗଛ

**ବଟ୍‌କି** - *ବର:ସୁ:ଜଝ:* (ବି.) : ଖାଇବା ପାଇଁ ବ୍ୟବହୃତ କଂସାପାତ୍ର, ଖୁରୀ

**ବଟ୍ ବଟା** - *ସ:* (ବି.) : ବହଲିଆ ହେବା

**ବଟ୍‌ବା** - *କନ୍ଧ:* (କ୍ରି.) : ବଳିବା, ଦଉଡ଼ିଆଦି ତିଆରି କରିବା, ପାକଳ କରିବା

**ବଟକରା** - *ନ:ଦେ:ଗ:ସୁ:* (ବି.) : ଓଜନ ବସ୍ତୁ ଓ ମାପ, ଓଜନ କରିବା ସାମଗ୍ରୀ

**ବଟକି** - *ସ:ଅ:* (ବି.) : ଏକ ପ୍ରକାର କଂସା ବାସନ, ଥାଳିଆ

**ବଟନିଆ** - *ସୁ:* (ବି.) : ବାଣ୍ଟିବା ବାଲା

**ବଟଫଳ** - *କେ:ନ:* (ବି.) : ସ୍ତ୍ରୀ ଲୋକଙ୍କ ଅଳଙ୍କାର, ବରଗଛର ଫଳ, ହାତର ରୂପା ଅଳଙ୍କାର

**ବଟବଟି** - *ଢ:* (ବି.) : ଝୁଡ଼ଙ୍ଗଜାତୀୟ ପରିବା

**ବଟବାରଟା** - *ନୁ:* (କ୍ରି.) : ଜଙ୍ଘରେ ଘସି ରଜ୍ଜୁ ତିଆରି କରିବା, ବଳିବା ଓ ପାକଳ କରିବା

**ବଟମ** - *ଗଦ୍ୟ:ନବ:* (ବିଂ.ବି.) : ଅଗ୍ରିମ, ଗୁଣ୍ଡି, ବୋତାମ

**ବଟଲି (ବଟ୍‌ଲି)** - *କୋ:* (ବି.) : ଛୋଟ ସରୁ ମୁହଁ ବିଶିଷ୍ଟ ପିତ୍ତଳ ମାଠିଆ

**ବଟା** - *ଦେ:ଛ:କଳା:ଗ:* (ବି.କ୍ରି.) : ବାଟିବା, ଅପବାଦ, କଳଙ୍କ, ବେସରବଟା, ବଟାଯାଇଥିବା, ବାଟଣା, ପଠାଣି, ପଠେଇବା, ପାନପତ୍ର ରଖିବା ପାତ୍ର, ପାନଥାଳି

**ବଟାଣି** - *କୋ:* (ବି.) : ଶୁଖିଲା ମଟର

**ବଟାବଟି** - *ଅନେ:* (ବି.) : ଭାଗ ବଟାଯିବା କାର୍ଯ୍ୟ, ବାଟିବା କର୍ମ

**ବଟାବା** - *ସ:କଳା:* (କ୍ରି.) : ଝିଅ ବାହା କରିବା, ଅନ୍ୟଦ୍ୱାରା ବାଟିବା କାମ କରିବା, ବାଟେଇଦେବା

**ବଟାଳି** - *ଅନେ:* (ବି.) : ନିହଣ, ବଢେଇ କାଠ ଖୋଳିବା ପାଇଁ ବ୍ୟବହୃତ ଧାରୁଆ ଯନ୍ତ୍ର, କାଠ ହାଣିବା ପାଇଁ ବ୍ୟବହାର କରୁଥିବା ଏକ ସାଧନ

**ବଟାସରଢ** - *ଗ:କୋ:* (ବିଂ.) : ତରକାରୀ ପାଇଁ ବଟା ମସଲା

**ବଟି** - *ଅନେ:* (ବି.କ୍ରି.) : ସୁଧ, ମାସୁଲ, ଲାଞ୍ଚ, ଟିକସ, ଉପୁରି, ଅତିରିକ୍ତ ଦେୟ, ଔଷଧ ଗୁଳି, ଚାନ୍ଦା, ଜୁଲମ କରି ଯାହା ଆଦାୟ କରାଯାଏ

**ବଟିକା** - *ସୁ:କଝ:ଦେ:ଗ:* (ବି.) : ବଡ଼ି, ଗୁଳା, ଔଷଧ ଗୁଳା, ଟାବ୍‌ଲେଟ୍

**ବଟିବା** - *ସୁ:ବୌ:ବ:* (କ୍ରି.) : ସୂତ୍ର ବଳିବା, ବୋଳିବା, ବଳିବା ସହ ପାକଳ କରିବା

**ବଟିହେବା** - *ବ:* (ବିଂ.) : ଘାସରୁ ଦଉଡ଼ି ପ୍ରସ୍ତୁତ କରିବା, ଘିଅ ବା ସର ଇତ୍ୟାଦି ହାତରେ ଘୋଳି ହୋଇଯିବା

**ବଟୁ** - *ଅନେ:* (ବି.) : ଟିପ, ବ୍ରାହ୍ମଣ କୁମାର, ନିର୍ବୋଧ ବ୍ୟକ୍ତି, କୁଶବଟୁ, ଚିତା ଚୈତନ୍ୟ, କୁଶର ଛନ୍ଦ ଯାହା ଅଙ୍ଗୁଳିରେ ଧାରଣ କରାଯାଏ

**ବଟୁଆ** - *ଅନେ:* (ବି.) : ଥଳି, ଛୋଟ କନାବାକ୍ସ, ପାନ ମସଲା ପ୍ରଭୃତି ରଖିବା ମୁଣି

**ବଟୁଲି** - *ଦେ:* (ବି.) : ପିତ୍ତଳ ନିର୍ମିତ ରନ୍ଧା ହାଣ୍ଡି, ଛୋଟ ହଣ୍ଡା, ଟୋକଣା

**ବଟେଇବା** - *କଳା:ଗଦ୍ୟ:* (କ୍ରି.) : ଅନ୍ୟଦ୍ୱାରା ବାଟିବା କାମ କରିବା, ବିଦାୟ ଦେବା

**ବଠକରା** - *କେନ୍ଦୁ:* (ବି.) : ଆତ

**ବଠର** - *ଦେ:* (ବି.) : ମୂର୍ଖ, ଶଠ

**ବଠଳ** - *ଖୋ:କେନ୍ଦୁ:* (ବି.) : ଆତ, ବଢିଆଳ

**ବଠା** - *କଳା:* (ବିଂ.) : ଅପରିଷ୍କାର

**ବଠିନ୍** - *ମ:* (ବି.) : ପନ୍‌କି

**ବଠେଇ** - *କଳା:* (ବିଂ.) : ଅପରିଚ୍ଛନ୍ନ

**ବଡୁରୋଗୀଆ** - *ଅ:* (ବି.) : କୁଷ୍ଠରୋଗୀ

**ବଡ୍** - *ପଦ୍ୟ:* (ବି.) : ବରଗଛ

ବଡ଼୍ଖା - *ସ.* (ବିଂ.) : ବଡ଼

ବଡ଼୍ଖୋର୍କୋଲ୍ - *କଳା.* (ବି.) : ଦଶହରା ଶେଷ ବେଳକୁ ପାଚିଥିବା ସାନ ଧାନ

ବଡ଼୍ଗା - *କୋ.* (ବି.) : ଠେଙ୍ଗା

ବଡ଼୍ଗାଛ - *ମ.* (ବି.) : ବରଗଛ

ବଡ଼୍ଘାଏଁ - *ମ.* (ବି.) ବଡ଼ରୋଗ, ବେଶୀଜ୍ୱର

ବଡ଼୍ପନ - *କନ୍ଧ.* (ବି.) : ବଡ଼ପଣ

ବଡ଼୍ବୁଡ଼ା - *କଳା.* (ବିଂ.) ବିରାଟ, ବୃହଦାକାର, ଅତିବଡ଼

ବଡ଼୍ବେଲ୍ ନାଇଁ - *ଚୌ.* (ବିଂ.) : ଅସମ୍ଭବ ନୁହେଁ, ସମ୍ଭବ

ବଡ଼୍ମା - *କଳା.* (ବି.) : ବଡ ବାପାଙ୍କ ପତ୍ନୀ, ମାଆଙ୍କ ବଡଭଉଣୀ

ବଡ଼୍ଲଟି - *ନୁ.* (ବି.) : ଜବରଦସ୍ତି

ବଡ଼୍ଲି - *କନ୍ଧ.* (ବି.) : ବଡ଼ ସ୍ତ୍ରୀ

ବଡ଼୍ଲୀ - *କଳା.* (ବି.) : ପ୍ରଥମ ପତ୍ନୀ

ବଡ଼ଆଠ - *ଗ.* (ବି.) : ଏକ ପ୍ରକାର କଉଡ଼ି ଖେଳ

ବଡ଼ଆଳୁ - *ଖୋ.* (ବି.) : ଏକ ପ୍ରକାର ଆଳୁ ଏହାକୁ ମାଟି ଆଳୁ, ଖମ୍ବ ଆଳୁ ଇତ୍ୟାଦି ମଧ୍ୟ କୁହାଯାଏ

ବଡ଼ଓଷା - *ନ.ଢେ.* (ବି.) : ଏକ ଧାନର ନାମ, ଧବଳେଶ୍ୱର ପୂଜନ ଓଷା

ବଡ଼କନିଆ - *ଗ.* (ବି.) : ବଢିଲା ଝିଅ, ରଜୋବତୀ ହେବା

ବଡ଼କହୁ - *କଳା.* (ବିଂ.) : ବଡ ବଡ କଥା କହୁଥିବା (ବ୍ୟକ୍ତି), କୁହାଳିଆ

ବଡ଼କା - *ସୁ.* (ବିଂ.) : ବଡ଼

ବଡ଼କାଠ ବାଇଦ - *ନ.* (ବି.) : ଏକବାଦ୍ୟ

ବଡ଼ କାହ୍ନୁଲ - *ଗଞ୍ଜ.* (ବି.) : ବଡ଼ ହରଡ଼ଡ଼ାଲି

ବଡ଼କୁଆ - *କନ୍ଧ.* (ବିଂ.) : ବଡ଼କୁହା

ବଡ଼ଖା - *ସୁବ.ଝା.* (ବିଂ.) : ବୟସରେ ବଡ଼

ବଡ଼ ଖାଇଁ - *କୋ.* (କ୍ରି.ବିଂ.) : ଜୋରକରି

ବଡ଼ଖାନା - *ସୁ.* (ବି.) : ବଡ଼ଦିନ

ବଡ଼ଗଡ଼ିଆ - *ନ.* (ବି.) ଦୀପାବଳୀ ଅମାବାସ୍ୟା(କାର୍ତ୍ତିକ), ବଡ଼ବଡ଼ିଆ

ବଡ଼ଙ୍ଗା - *ରା.* (ବି.) : କଦଳୀ ଗଛର ଅଂଶ

ବଡ଼ତାଡ଼ିଆ - *ଗ.* (ବିଂ.) : ବଡ଼ଲୋକି ପଣିଆ

ବଡ଼ତି - *ପୁ.ରା.* (ବି.) : ସାଧୁସନ୍ଥଙ୍କ ପ୍ରତିଷ୍ଠିତ ଜାଗାଘର, ବଢିବା ରୂପ

ବଡ଼ ତୋଡ଼ିପ - *ଖୋ.* (ବି.) : ଶଗଡ଼ ତୁମ୍ବରେ ଥିବା ଲୁହାପାତ

ବଡ଼ଦା - *ନୁ.* (ବି.) : ବଡ଼ ଭାଇ

ବଡ଼ପା - *ଗ.* (ବି.) : ବଡ଼ବାପା

ବଡ଼ପୁନିଆଁ - *କନ୍ଧ.* (ବି.) : ଏକପ୍ରକାରର ବଡ଼ ଧାନ

ବଡ଼ବହୁଆ - *ଅନେ.* (ବି.ବିଂ.) : ପୂର୍ବପୁରୁଷ, ଉଚ୍ଚ ଶ୍ରେଣୀର ବ୍ୟକ୍ତି, ବଡ଼ଲୋକ, ସୁନାମ ଥିବା ଲୋକ

ବଡ଼ବହୁଆ - *ନ.* (ବି.) ପିତୃପୁରୁଷ; ଦୀପାବଳୀ ଅମାବାସ୍ୟା

**ବଡ଼ ବହପ** - *ସଂ* (ବିଂ.) : ବଡ଼ ସାହସ

**ବଡ଼ବା** - *କୋ:* (ସ.) : ଦଦେଇ, ବଡ଼ବାପା

**ବଡ଼ବୋଉ** - *ଗ:* (ବି.) : ବଡ଼ମା, ବଡ଼ ଭାଉଜ

**ବଡ଼ଭାଜି** - *କଣ:* (ବି.) : ବଡ଼ଖଡ଼ା

**ବଡ଼ମଟା** - *ସୁବ:* (ବି.) : କୃଷ୍ଣ କାର୍ପାସ ମୃତ୍ତିକା

**ବଡ଼ମାଟ୍** - *କଳା:* (ବି.) : କଳାରଂଗର ଖଳି ମାଟି

**ବଡ଼ମୁହାଁ** - *ସୁବ:* (ବିଂ.) ଯେ ବହୁତ ଖର୍ଚ୍ଚକରେ, ବଡ଼ମୁହାଁର ସ୍ତ୍ରୀ ଲିଙ୍ଗ

**ବଡ଼ରା** - *ଚ୍:* (ବି.) : ବରଡ଼ା

**ବଡ଼ ଲୁକିଆ** - *ଦେ:* (ବିଂ.) : ବଡ଼ ଲୋକର ରଙ୍ଗଢଙ୍ଗ, ପ୍ରତିଷ୍ଠିତ

**ବଡ଼ଶାଶୁ** - *ଚ୍:* (ବି.) : ସାବତ ଶାଶୁ

**ବଡ଼ସାଙ୍ଗ** - *ପୁ:* (ବି.) ଜାଗାର ବରିଷ୍ଠ ସଦସ୍ୟ

**ବଡ଼ସିଆନ୍** - *କୋ:* (ବି.) : ଗାଁ ମୁଖିଆ

**ବଡ଼ହାଣ୍ଡି** - *କଣ:* (ବି.) : ଏକୋଇଶା ପାଳନ

**ବଡ଼ ହେବା** - *କେନ୍ଦୁ:* (କ୍ରି.) : ଝିଅ ଜ୍ଞାନ ପାଇବା

**ବଡ଼ା** - *ଅନେ:* (ବି.ବିଂ.) : ଶ୍ରାବଣ ମାସର ଛତୁ, ଛୁଆମାନଙ୍କ ମୁଣ୍ଡରେ ହେବା ଘା, ପାତ୍ରବିଶେଷ, ଗୋଲ ବିରି ବରା, ବେଶୀ, ଅତିଶୟ, ଅଧିକ

**ବଡ଼ାଇ** - *ଢ:ଦେ:ଗ:ନବ:* (ବି.) : ବଡ଼ିମା, ବଡ଼ପଣ, ପ୍ରାଧାନ୍ୟ, ଗର୍ବ

**ବଡ଼ାଇ** - *ନ:* (ବି.) : ଅହଂକାର

**ବଡ଼ାକ୍** - *ଗଦ୍ୟ:* (ବି.) : ଝର

**ବଡ଼ାଛତୁ** - *କଣ:* (ବି.) : ଏକ ପ୍ରକାର ଛତୁ

**ବଡ଼ାତାଲ୍** - *ଦେ:* (ବିଂ.) ଯଥେଷ୍ଟ, ସବୁବେଳେ

**ବଡ଼ାଭାଜା** - *ଚ୍:* (ବି.) : ପକୁଡି, ବରା

**ବଡ଼ାମ୍** - *ଚ୍:* (ବି.) : ଭୈରବ

**ବଡ଼ାମ୍** - *ଦେ:* (ବି.) : ଆଦିବାସୀମାନଙ୍କ ଠାକୁରାଣୀ ଦେବୀ

**ବଡ଼ାଲି** - *କଣ:* (ବି.) : ଆତ

**ବଡ଼ି** - *ନ:* (ବି.) : ବିରିରୁ ପ୍ରସ୍ତୁତ ଏକ ଖାଦ୍ୟ

**ବଡ଼ି** - *ଅନେ:* (ବି.) : ବଡ଼ବାପାଙ୍କ ସ୍ତ୍ରୀ, ବଡ଼ମା, ଶସ୍ୟ ପିଠଉରୁ ପ୍ରସ୍ତୁତ ଖାଦ୍ୟପଦାର୍ଥ ବିଶେଷ, ବଟିକା, ବାପାଙ୍କ ବଡ଼ ଭଉଣୀ

**ବଡ଼ିଫୁଲ** - *ଗଞ:* (ବି.) : ଛୋଟ ଛୋଟ ବିରି ବଡି, ଫୁଲବଡ଼ି

**ବଡ଼ିମା** - *ନ:* (ବି.) : ଅହଂକାର

**ବଢୁ** - *କଳା:ଗ:* (ବି.) : ବଡ଼ବାପା, ଦଦେଇ, ବ୍ରତ ଉପନୟନ

**ବଢୁ** - *ଅନେ:* (ବି.) : ବଡ଼ବାପା, ସାନଭାଇର ପୁଅ, ମଉସା, ପି'ସା, ଦଦେଇ, ବ୍ରାହ୍ମଣଙ୍କ ଉପବୀତ ଧାରଣ ଉତ୍ସବ, ବ୍ରତ, ସେବକ ସଂପ୍ରଦାୟ

**ବଢୁଘର** - *ଖୋ:* (ବି.) ବ୍ରତଘର, ମୁସଲମାନ ମାନଙ୍କର ଏକ ସାମାଜିକ କ୍ରିୟାନୁଷ୍ଠାନ

**ବଢୁ ପୁଅ** - *ବୌ:* (ବି.) : ସାନଭାଇର ପୁଅ

**ବଢୁଭିକ୍ଷ** - *ଗ:* (ବି.) : ବ୍ରତ ଭିକ୍ଷା

**ବଢ଼େଇ** - *ଅନେ:* (ବି.ବିଂ.) : ବଡ଼ବାପାଙ୍କ ପତ୍ନୀ, ବଡ଼ମା, ବଡ଼ପଣ, ବଡ଼ିମା, ଟାଣପଣ, ଫୁଟାଣି, ଅହଂକାର, ମାଆର ବଡ଼ ଭଉଣୀ, ସାନଭାଇର ଝିଅ

**ବଢ଼େଇ ଝିଅ** - *ବୌ:* (ବି.) : ସାନ ଭାଇର ଝିଅ

**ବଢ଼ୁଲା** - *ନୂ:* (ବି.) : ପ୍ରଥମ ରଜୋବତୀ

**ବଢ଼ନା ମୁଠା** - *କ:* (ବି.) : ଛାଞ୍ଚୁଣୀ

**ବଢ଼ିଆଳ** - *ଅ:* (ବି.) : ଆତ

**ବଢଲ** - *ସ:ବର:କଳା:* (ବି.) : ଆତ ଫଳ, ସୀତାଫଳ

**ବଢା** - *ଦେ:ନ:ଖୋ:ଗଦ୍ୟ:* (ବି.) : ମାଟି ପାତ୍ର, ଦହି ବଢା, ମୁଣ୍ଡରେ ହେବା ବଢ଼ା

**ବଢାଜବର** - *ସ:* (ବିଂ.) : ବହୁତ ଶକ୍ତିଶାଳୀ

**ବଢା ଜର୍** - *ସ:* (ବି.) : ଅଧିକ ଜ୍ୱର

**ବଢାଣିକି** - *ଗ:* (କ୍ରି.ବିଂ.) : ଅତି ଯୋରରେ, ଅଧିକ ମାତ୍ରାରେ

**ବଢାଦିନୁଁ** - *ସ:* (ବି.) : ବହୁଦିନ ପରେ

**ବଢାବା** - *ସ:* (କ୍ରି.) : ବଢେଇବା, ଉଦ୍‌ଯାପନ କରିବା

**ବଢା ଭାତ** - *ଗଦ୍ୟ:* (ବି.) : ପେଜ ଗଳା ନହେବା ଭାତ, କଣ୍ଡଭାତ

**ବଢିଆ** - *ସ:ନ:କଳା:* (ବି.ବିଂ.) : ବଢେଇ, ଉତ୍କୃଷ୍ଟ ଅତି ଭଲ, କାଠ ଶିଳ୍ପୀ, କମାର

**ବଢିଆଳ** - *ଅନେ:* (ବି.) : ଆତ, ସୀତାଫଳ, ସ୍ୱାଦୁ ଯୁକ୍ତ ଫଳ, ପିଙ୍କୁଳି

**ବଢିଆଁ** - *କଳା:ନୂ:* (ବିଂ.) : ସୁନ୍ଦର, ଭଲ, ଉତ୍ତମ

**ବଢିକି କହିବା** - *ନ:* (କ୍ରି.) : ବଡ଼କରିବା, ଅଧିକ କରି କହିବା

**ବଢିଣା** - *ସ:* (ବି.) : ଖଡିକା ଝାଡୁ

**ବଢୁ** - *ରା:ଗ:* (ବି.) : ଡାଲ, ମୁଗ, ଚଣା, କୋଳଥ ଆଦିର ଚୋପା, ଗୋଖାଦ୍ୟ

**ବଢେ** - *ସୁବ:ବୌ:ସ:* (କ୍ରି.ବିଂ.) : ବଡ଼କରି, ବେଶୀକରି

**ବଢେପୁରୁ** - *ସ:ବୌ:* (କ୍ରି.ବିଂ.) : ଜଲଦି, ସମୟ ଆଗରୁ, ବେଗାବେଗି

**ବଣକି** - *ନୂ:* (ବି.) : ନାଭି

**ବଣଗଦ** - *ଭ:* (ବି.) : ଗଛ ବିଶେଷ

**ବଣବାରିଆ** - *ଗଜ:* (ବି.) ବଣଘୁଷୁରି, ବାରହା

**ବଣଭୁଆ** - *ଗ:ଦେ:* (ବି.) : ବଣରେ ଥିବା ହିଂସ୍ର ବିରାଡ଼ି, କଟାସ

**ବଣା** - *ଅନେ:* (ବି.ବିଂ.) : ବାଟ ଭୁଲିଯିବା, ବଡ଼ ମାଠିଆ, ଗୁଡ଼ମାଠିଆ, ପଥହରା, ପଥଚ୍ୟୁତ

**ବଣି** - *ଖୋ:ଦେ:କ:* (ବି.) : ଏକ ପ୍ରକାର ପକ୍ଷୀ ଯାହାକୁ ପୋଷା ବନାଇ ରଖା ଯାଏ

**ବଣିଆଢ଼ିପ** - *ଖୋ:* (ବି.) : ଅତିଛୋଟ ବିଲ, ଚକଡାଏ ବିଲ

**ବଣିଆଡି** - *ଦେ:* (ବି.) : ପୁଟୁଳି ବଣିଆମାନେ ବିକ୍ରୀ କରିବା ମସଲା

**ବଣିଆ ମରିଚ** - *ନବ:* (ବି.) : ଗୋଲ ମରିଚ

**ବଣିଜ** - *ନ:* (ବି.) : ବେପାର, ବ୍ୟବସାୟ

**ବଣ୍ଟୁଆ** - *ଗଦ୍ୟ:* (ବି.) : ଏକ ପ୍ରକାର ମାଛ

**ବଣ୍ଟୁଆରା** - *ନ:* (ବି.) : ଭାଗବାଣ୍ଟିବା

**ବଣ୍ଡ** - *ଗ:* (ବି.) : ବାଙ୍ଗରା, ଗେଡ଼ା

**ବଣ୍ଡକୁ** - *କଳା:* (ବିଂ.) : ଉନ୍ନତ ନାଭି ଯାହାର

**ବଣ୍ଡା** - *ଅନେ:* (ବିଂ.ବି.) : ଖାଲି, ଶୂନ୍ୟ, ଲାଞ୍ଜ କଟା କୁକୁର, ବଳଦ, ବଣରେ ବାସ କରୁଥିବା ଜାତି, ଟାଙ୍ଗରା, ବୋକା, ଆଲୁଚପ୍, ଏକ ଆଦିବାସୀ ସଂପ୍ରଦାୟ, ବଣ୍ଡା ଜାତିର ଲୋକ

**ବଣ୍ଡି** - *ଦେ:* (ବି.) : ଫଟେଇ, ଅବିବାହିତ କନ୍ୟା

**ବଣ୍ଡେଇବା** - *କଳା:ବର:* (କ୍ରି.) : ଝାଡୁକରିବା

**ବଦ୍‌ରା** - *ସୁ:* (ବିଂ.) : ଜଳସିକ୍ତ, ଭିଜା, ବଦୁରା

**ବଦ୍‌ରିକିରା** - *କଳା:* (ବି.) : ଝଡ଼ିପୋକ, ବର୍ଷାକାଳରେ ବାହାରୁଥିବା ପକ୍ଷଯୁକ୍ତଉଇ

**ବଦ୍‌ରୀରାଣ୍ଡି** - *ବୌ:* (ବି.) : ଯୁବାବସ୍ଥାରେ ରାଣ୍ଡୀ, ଯୁବା ବିଧବା

**ବଦ୍‌ରେଇବା** - *କଳା:* (କ୍ରି.) : ବଦୁରେଇବା, କୌଣସି ଜିନିଷକୁ ପାଣିରେ ଭିଜେଇ ରଖିବା

**ବଦ୍‌ରେ ବଦ୍‌ରେ** - *ବୌ:* (କ୍ରି.ବିଂ.) : ଠିକ୍ ଭାଗମାପରେ

**ବତକ** - *ଖୋ:* (ବି.) : ଖାଦ୍ୟୋପଯୋଗୀ ଏକ ପ୍ରକାର ପକ୍ଷୀ, କୁଜିହଂସ

**ବତକିବା** - *ସୁ:* (କ୍ରି.) : ଦଉଡ଼ିବା, ଧପାଳିବା

**ବତର** - *ଅନେ:* (ବି.ବିଂ.ଅ.) : ଓଦା ପାଗ, ମାଟିର ଚାଷ ପାଇଁ ଉପଯୁକ୍ତ, ଧାନ ଉଷୁମେଇବା, ଋତୁମତୀ ହେବା, ଏକ ଛୋଟ ଚଢେଇ, ପାଚି ଆସୁଥିବା ଫଳ, ଅନୁକୂଳ, ଉପଯୁକ୍ତ, ଉପଯୋଗୀ, ସୁସମୟ

**ବତର ଛାଡ଼ିବା** - *ଗ:* (କ୍ରି.) : ଭୂମିରୁ ଜଳୀୟ ଅଂଶ କମିବା

**ବତରିଆ** - *ଝ:* (ବିଂ.) : ପ୍ରସଂଗକୁ ଅନୁକୂଳ

**ବତରି କିରା** - *ନୂ:* (ବି.) : ଝଡ଼ିପୋକ

**ବତର୍ ହେବା** - *ମା:* (କ୍ରି.) : ପ୍ରସବ କରିବା

**ବତା** - *ଅନେ:* (ବି.) : ବାଉଁଶଫାଳ, ଦୁଇଟି ଖୁଣ୍ଟକୁ ଧରି ରଖିବା ପାଇଁ ବଂଧା ହୋଇଥିବା ଅଧାର

**ବତାକିଲି** - *ସୁ:* (ବି.) : ଝଡ଼ିପୋକ

**ବତାବା** - *ସ:କଳା:* (କ୍ରି.) : ଶିଖେଇବା

**ବତାଲି** - *ଚା:* (ବି.) : ଜୀବନ ତରୀ

**ବତାଶିଖା** - *ନ:ଗ:* (ବି.କ୍ରି.) : କୁଶିକ୍ଷା ଦେବା, ଅନ୍ୟକୁ ପ୍ରବର୍ତ୍ତାଇବା, ପ୍ରରୋଚନା

**ବତାସ ସୁଆଡି** - *ଗ:* (ବି.) : ପ୍ରବଳ ପବନ, ଝଡ଼ତୋଫାନ

**ବଡି** - *ନୂ:ନ:ଖୋ:ଦେ:* (ବି.) ଜାଗର, ଆଲୋକ ଉସ୍ତ, ସଳିତା, ବଡ଼ର ସ୍ତ୍ରୀ ଲିଙ୍ଗ

**ବଡିନିଆ, ବର୍ତନିଆ** - *ବୌ:* (ବି.) : ବର୍ଷିକିଆ ଶ୍ରମିକ, ବର୍ଷକୁ ଥରେ ପାରିଶ୍ରମିକ ନେଉଥିବା କର୍ମଚାରୀ

**ବଡିପେଲା** - *ଗ:* (ବି.) : ଚାଟୁକାର, ତେଲିଆ

**ବଡିଣା** - *ଗ:ଦେ:ସୁ:* (ବି.ବିଂ.) : ଗଂଜାମର ସୁରଙ୍ଗି ଅଞ୍ଚଳର ଜମିମାପିବା ପ୍ରଣାଳୀ, ୩୨ ନଉତି ପରିମାଣର ଓଜନ, ମାପ ଓଜନ ବିଶେଷ, କାଠିଆ କଦଳୀ

**ବଡୁ** - *ଗଜ:* (ବି.) : ଚୋପା

**ବଡେଇ** - *ଗ:କଳା:* (ବି.କ୍ରି.) : ମିଠା କମଳା, ଶିଖେଇ

**ବଡ୍ରିପୁକ** - *ବୌ:* (ବି.) : ଝଡ଼ିପୋକ

**ବଥ** - *ଦେ:ନ:କଳା:* (ବି.) : ଘା, ବ୍ରଣ, ନାଶ, ବଥ, ବଡ଼ ଫୋଡ଼ା

**ବଥା** - *ସୁବ:ନ:ଦେ:ଜ:* (ବିଂ.ବି.) : ବାତ ହୋଇଥିବା ଲୋକ, ବ୍ୟଥା, ପୀଡ଼ା

**ବଥୁଆ** - *ଅନେ:* (ବି.) : ଏକପ୍ରକାର ଶାଗ, ପିତ୍ତ ରୋଗୀ

**ବଦ୍‌ନି** - *କଳା:* (ବି.ବିଂ.) : ମାନସିକ

**ବଦ୍‌ମାସ** - *ଦେ:* (ବି.) : ଦୁଷ୍ଟ, ନଷ୍ଟ ଚରିତ୍ର

**ବଦ୍‌ଲା ଉଦ୍‌ଲା** - *ବୌ:* (ବିଂ.) : ଅଦଳ ବଦଳ

**ବଦ୍‌ଲି** - *ଗଦ୍ୟ:* (ବି.) : ପଲାସ ଗଛ

**ବଦଡ଼ିବା** - *ଗ:* (ବି.) : ଗଛଲତା ଝଙ୍କା ହେବା

**ବଦଲାମ** - *ଚ:* (ବି) : ବଦନାମ

**ବଦଳା** - *ଜ:ଦେ:* (ବିଂ.ବି.) : ପାଲଟା, ଜଣକ ସ୍ଥାନରେ ଆଉ ଜଣେ, ପରିବର୍ତ୍ତିତ, ଅଧିକ ପାଣିରେ ହେଉଥିବା ଧାନ, ବଦଳି କରିବା

**ବଦଶଗୁନା** - *ଭ:* (ବି.) : ଅନୁକୂଳ ବିଗାଡ଼ିବା ଲୋକ, ଅଶୁଭମୁହାଁ

**ବଦସ୍ତ** - *ଅ:* (ବିଂ.) : ହାତେ ହାତେ, ନଗଦ

**ବଦା** - *ଚଇ:* (କ୍ରି.) : ବାଟି ଖେଳରେ ବାଟି ମାରିବା କ୍ରିୟା

**ବଦାଡ଼** - *ଅ:* (ବି.) : ଜଙ୍ଗଲ

**ବଦାଡି** - *ଯା:ଗଦ୍ୟ:ଭ:* (ବି.) : ଧାନ ଗଦା, ଗଦା, ଭାଡ଼ି

**ବଦାମ** - *କେନ୍ଦୁ:ବା:* (ବି.) ପିଜୁଳି, ଚିନାବାଦାମ, ବାଦାମ୍

**ବଦୁ** - *ଗଜ:* (ବି.) : ଚୋପା

**ବଦେ** - *କୋ:* (ବି.) : ଡାଲି ଜାତୀୟ ଶସ୍ୟ ବିଶେଷ

**ବଧି** - *ବୌ:ଦେ:ଗ:ନ:* (ବି.) ତାଳ ବାହୁଙ୍ଗାର ରସି, ମୃଦଙ୍ଗ ଏବଂ ଧନୁ ଉପରେ ଭିଡ଼ାଯାଇଥିବା ଚମ ଦଉଡ଼ି, ମୃଦଙ୍ଗର ଚମଡ଼ା, ଘୁଷୁରି, ଲଣ୍ଠନର ବତୀ, ଫିତା, ମୋଟା ଚର୍ବି

**ବଧିଆ** - *ଗ:କଳା:କୋ:ନ:* (ବିଂ.) : ମୋଟା, ବେଧ ଅଧିକ, ସହବାସ ପାଇଁ ଅକ୍ଷମ

କରାଯାଇଥିବା, ମୋଟା, ଟାଣ ପଡ଼ିଯିବା, ବଧିରା

**ବଧିବା** - *ନ:* (କ୍ରି.) : ଶିକାର କରିବା

**ବଧିରା** - *ନ:ସ:* (ବି.ବିଂ.) : ବେଣ୍ଟିପଡ଼ିବା, କାଲ, ତାବ୍‌ଦା, ସ୍ପର୍ଶକାତରଶୂନ୍ୟ

**ବଧୁଲି** - *ନ:ଦେ:* (ବି.) : ଏକ ପ୍ରକାର ଫୁଲ, ରଙ୍ଗଣୀ ଫୁଲ

**ବଧେଇ** - *ଢ:* (ବି.) : ଅଭିନନ୍ଦନ, ସ୍ୱାଗତ

**ବନ୍‌ଇର** - *ଝ:* (ବି.) : ଗାଁ ବନ୍ଧ ହିଡ଼

**ବନ୍‌ଜିଆ** - *କଳା:ସୁବ:* (ବି.ବିଂ.) : ବେପାରୀ, ବାଣିଜ୍ୟକାରୀ, ବଳଦ ବେପାର କରୁଥିବା ଲୋକ

**ବନ୍‌ଝା** - *ସୁବ:* (ବିଂ.) ଯେଉଁ ପୁରୁଷର ଔରସରୁ ସନ୍ତାନ ଜନ୍ମି ନଥାଏ, ବାଞ୍ଝ

**ବନ୍‌ଶୋଲା** - *କଳା:* (ବି.) : ଏକ ଜଙ୍ଗଲୀ କୋଳି

**ବନ୍‌ସି ଖଡ଼ା** - *ଚ:* (ବି.) : ବନ୍‌ଶୀ

**ବନ୍‌ହାବାର** - *ସୁବ:ସ:* (କ୍ରି.) : ଝାଡୁ କରିବା

**ବନଉତି** - *ସୁ:* (ବି.) : ମନଗଢା

**ବନକ** - *ଗ:ନୂ:* (ବି.) : ରଂଗବିଶେଷ, କାକୁଡ଼ି ଜାତୀୟ ଫଳ, ଫୁଟି, ରଙ୍ଗଲାଗି

**ବନମାଟି** - *ଭ:* (ବି.) : ପଟୁମାଟି, ରଙ୍ଗୀନ ମାଟି

**ବନରାଜ** - *କଣ:* (ବି.) : ଏକ ଜାତୀୟ କୁକୁଡ଼ା

**ବନହେଇବା** - *ନୂ:* (କ୍ରି.) : ଝାଡୁ କରିବା

**ବନା** - *ଅନେ:* (ବି.) : ଝୋଟି, ବାଟବଣା, ବିବେକଶୂନ୍ୟ, ବର୍ଣ୍ଣନା, ରଚନା, ବଣା, ଦେହରେ କାଟୁଥିବା ଚିତା

**ବନାଇବା** - *ନ:ସୁ:* (କ୍ରି.) : ତରକାରୀପାଇଁ ପରିବା କାଟିବା, ରୋଷେଇ କରିବା, ତିଆରିବା

**ବନାଟି** - *ନ:ପୁ:* (ବି.) : ବାଡ଼ିର ଉଭୟ ପାର୍ଶ୍ୱରେ ନିଆଁ ହୁଳା ରଖି ବୃତ୍ତାକାରରେ ବୁଲାଇବା

**ବନାତ** - *ଗଦ୍ୟ:* (ବି.) : ଲୋମଶ ବସ୍ତ୍ରବିଶେଷ

**ବନାବାଡ଼ି** - *କଳା:* (ବି.) : ଗଉଡ଼ ବାଡ଼ି ନାଚ

**ବନାଲହ** - *ଚୌ:ନୂ:ସ:* (ବି.) : ଜଂଗଲୀ ଲତା ବିଶେଷ, ଏକ ପ୍ରକାର ଲହ

**ବନାଲୁଗା** - *କଳା:* (ବି.) : ଆଦିବାସୀ (କନ୍ଧ) ସମାଜରେ ବିବାହ ବେଳେ ସ୍ୱାମୀଘର ତରଫରୁ ବଧୂକୁ ପ୍ରଦାନ କରାଯାଉଥିବା ଛିଟ ବସ୍ତ୍ର

**ବନି** - *ଅନେ:* (ବି.) : ରକ୍ତ, ଲହୁ, ବଣି

**ବନିଆଁ ପସରା** - *ସୁବ:* (ବି.) : ଔଷଧୀୟ ଚେରମୂଳର ପସରା

**ବନିଜ୍‌** - *କଳା:* (ବି.) : ବାଣିଜ୍ୟ, ବେପାର ବଣିଜ

**ବନିବନିକା** - *କୋ:* (ଅ.) : ବିଭିନ୍ନ ପ୍ରକାରର

**ବନିବା** - *ଢ:ନ:* (କ୍ରି.) : ଅନ୍ୟରୂପ ଧାରଣ କରିବା, ରୂପାନ୍ତରିତ ହେବା

**ବନିଯିବା** - *ନୂ:ସଂ:* (କ୍ରି.) ଧନଶାଳୀ ହୋଇଯିବା, ପାଚିଯିବା, ହୋଇଯିବା

**ବନିହା** - *ସୁ:* (ବିଂ.) : ଠିକ୍, ଖାଣ୍ଟି

**ବନିହାନ୍** - *ସୁବ:ବ:* (ବିଂ.) : ବହୁତ

**ବନିହାଁ** - *ନୂ:ସ:* (ବିଂ.) : ବହୁତ ପରିମାଣ

**ବନୁଆ** - *କଳା:* (ବିଂ.) : ବଣୁଆ, ଜଂଗଲୀ

**ବନୁବନା** - *ଦୌ:* (ବି.) ଅଚଳା ଚଳ, ଯାହାକୁ ଯେତେ

**ବନେ** - *ଅନେ:* (କ୍ରି.ବିଂ.) : ଭଲରେ, ଭଲ, କୁଶଳ, ସୁନ୍ଦର

**ବନେଟା** - *କଳା:* (ବିଂ.) : ଭଲ ଜିନିଷ, ଭଲଲୋକ

**ବନେ ବନେ** - *କଳା:* (କ୍ରି.ବିଂ.) : କୁଶଳରେ, ଭଲରେ

**ବନେ ଲାଗିବା** - *ନୂ:* (କ୍ରି.) : ଭଲ ଲାଗିବା

**ବନ୍ତ** - *କେ:ଦେ:* (ବି.) : ସମୁଦ୍ର କୂଳ ଖୋଳି ପାଣି ଆଣିବା କ୍ଷେତ୍ର, ବାଲିକୁଦ

**ବନ୍ତାଲୁ** - *ଗଞ:ଅ:* (ବି.) : ସମୁଦ୍ର ମାଛ

**ବନ୍ଦୁଙ୍କା** - *ଜ:* (ବି.) : ନଳିତା କାଟି ତାକୁ ଗୋଟିଏ ସ୍ଥାନରେ ଗଦା କରିବା

**ବନ୍ଦ** - *ଗ:ଗଞ:* (ବି.) : ମାଛ ଧରିବା ପାଇଁ ବାଉଁଶ କାଠିର ଜାଲ, ମାଛ ଧରିବା ପାଇଁ ବାଉଁଶ କାଠିରେ ହେବା ଜାଲବାଡ଼

**ବନ୍ଦ** - *ନ:ନବ:* (ବି.) : ଖୋଲାର ବିପରୀତ, ଛୁଟି, ପୋଖରୀ

**ବନ୍ଦ କରିବା** - *ନ:* (କ୍ରି.) : ଅଟକ ରଖିବା

**ବନ୍ଦଣା** - *କେନ୍ଦୁ:* (ବି.) : କାଳୀପୂଜା ୩ଦିନ, ୩ରାତି ପାଳନ କରାଯାଉଥିବା ପୂଜାକର୍ମ

**ବନ୍ଦଣାଫୁଲ** - *କେନ୍ଦୁ:* (ବି.) : ଗେଣ୍ଡୁଫୁଲ

**ବନ୍ଦରିଆ** - *ସୁବ:କଳା:ବୌ:* (ବି.) : ହାତରେ ପିନ୍ଧା ଯାଉଥିବା ରୂପା ଅଳଙ୍କାର

**ବନ୍ଦାଇବା** - *ବୌ:ନ:* (କ୍ରି.) ବିବାହ ବେଦୀରେ ଉପହାର ଦେବା, ଘିଅ, ଦୀପ, ଚାଉଳ, ବରକୋଳି ପତ୍ର ଓ ହଳଦୀରେ ଅର୍ଘ୍ୟ ଦେବା, ସ୍ୱାଗତ ପୂଜା

**ବନ୍ଦାଡ୍ (ଲ)** - *କଳା:* (ବି.) ଝାଡା, ମଳତ୍ୟାଗ

**ବନ୍ଦାଣ** - *ରା:ଦେ:ଗ:କୋ:* (ବି.ବିଂ.) : ଶୁଭ କାର୍ଯ୍ୟରେ ଦିଆଯାଉଥିବା ଅର୍ଘ୍ୟ, ବନ୍ଦାପନା, ବିବାହ ବ୍ରତ ବେଳର ଉପହାର

**ବନ୍ଦାନି କନିଆଁ** - *ସ:* (ବି.) : ଦ୍ୱିତୀୟ ସ୍ତ୍ରୀ ଗ୍ରହଣ

**ବନ୍ଦିଆ** - *ଦେ:* (ବି.) : ମଥାମଣି

**ବନ୍ଦିରା** - *କେନ୍ଦୁ:* (ବି.) : ଛୁଆଧରା ଲୋକ

**ବନ୍ଧୁ** - *ନବ:* (ବି.) : କବାଟରେ ବ୍ୟବହୃତ ଲୁହାଖଣ୍ଡ

**ବନ୍ଧୁକ** - *ନ:* (ବି.) : ବନ୍ଧୁକ

**ବନ୍ଧୁରି** - *ଜ:* (ବି.) : ଜାହାଜି ଗଛ

**ବନ୍ଦେନ୍ ମାଏଝି** - *ସୁବ:* (ବି.) ସ୍ତ୍ରୀ ମଲାପରେ, ବିବାହ ଅନୁଷ୍ଠାନ ନ କରି ସଂକ୍ଷିପ୍ତ ଲୋକାଚାର ଅନୁସାରେ ଯେଉଁ ସ୍ତ୍ରୀ କୁ ଗ୍ରହଣ କରାଯାଏ

**ବନ୍ଧ** - *ଅନେ:* (ବି.) : ସେତୁ, ପୋଖରୀ, ବଡ଼ ହିଡ଼, ଜଳାଶୟ, ପାଣିଜାଗା, କବାଟ ଲାଗିବା କାଠ ଫ୍ରେମ୍

**ବନ୍ଧଆଡ଼େ** - *କୋ:ଗଦ:* (କ୍ରି.) : ଝାଡ଼ାଯିବା, ଝାଡ଼ା ଲାଗିବା

**ବନ୍ଧକ** - *ନ:ଦେ:* (ବି.) : ଋଣ ପାଇଁ କିଛିବସ୍ତୁ ଋଣଦାତାଙ୍କୁ ଦେବା, ଋଣପାଇଁ ମହାଜନ ପାଖରେ ବନ୍ଧାଦେବା

**ବନ୍ଧକୀ** - *ଦେ:* (ବି.) : ବନ୍ଧକ ଦେଇଥିବା ଜିନିଷ

**ବନ୍ଧନୀ** - *ଦେ:* (ବି.) : ନିଗଡ଼, ଅଙ୍କ ଚିହ୍ନ

**ବନ୍ଧପାଣି** - *ଗଦ୍ୟ:* (ବି.) : ଝାଡ଼ାଯିବା

**ବନ୍ଧଯିବା** - *ଅ:* (କ୍ରି.) : ପୋଖରୀ ପାଣି ଯିବା

**ବନ୍ଧଲି** - *ଦୌ:ସ:ଦେ:କଳା:* (ବି.) : ଛୋଟ ପୋଖରୀ, ସୁରୁ ପୋଖରୀ, ଛୋଟ ଜଳାଶୟ, ଗାଡ଼ିଆ

**ବନ୍ଧା** - *କଳା:ସୁବ:ନ:ଦେ:* (ବି.) : ବନ୍ଧକ, ବାନ୍ଧିବା, ନଦୀର ବନ୍ଧ, ଜାମିନ୍

**ବନ୍ଧା ଗହନା** - *ଦୌ:* (ବି.) : ସୁଧ ଲଗାଣ

**ବନ୍ଧାଛନ୍ଦା** - *ନ:ଦେ:* (ବି.) ବନ୍ଧକ ରଖିବା(ସୁନା, ରୂପା), ଜମି ବା ଜିନିଷ ବନ୍ଧା ଦେଇ ଋଣ ଗ୍ରହଣ କରିବା

**ବନ୍ଧାଟୋକା** - *ସୁ:* (ବି.) : କୁସ୍ତିମିହନ୍ତ କରି ସଂଯମର ସହ ସ୍ୱାସ୍ଥ୍ୟରକ୍ଷା କରିଥିବା ଯୁବକ

**ବନ୍ଧାଡ୍** - *ମା:* (ବି.) : ବନ୍ଧହୁଡ଼ା

**ବନ୍ଧାଡ଼ ଘର** - *କୋ:* (ବି.) : ପାଇଖାନା

**ବନ୍ଧାନି** - *କଳା:* (ବି.) : ବାନ୍ଧିବା କ୍ରିୟା ବାନ୍ଧିବା କୌଶଳ ବା ପଦ୍ଧତି

**ବନ୍ଧା ପକାଇବା** - *ଦୌ:କେନ୍ଦୁ:* (ବି.କ୍ରି.) : ବନ୍ଧକ ଦେବା, କିଛି ବସ୍ତୁ ଦେଇ ତା ବଦଳରେ ଟଙ୍କା ଆଣିବା

**ବନ୍ଧୁ** - *କୋ:ଦେ:କଳା:* (ବି.) : ଦୁଆରବନ୍ଧ, ଚଉକାଠ ଏବଂ କବାଟକୁ ଯୋଡ଼ ରଖିବା ପାଇଁ ଲୌହ ନିର୍ମିତ ପାତିଆ କବଜା, ସଂପର୍କୀୟ, ସାଙ୍ଗ, ମିତ୍ର, ବାନ୍ଧବ, ସଂପର୍କୀୟ

**ବନ୍ଧୁଆ** - *ଝା:* (ବି.) : ଦଉଡ଼ିଆ ଖଟର ଦଉଡ଼ି ଯହିଁରୁ ତିଆରି ହୁଏ

**ବନ୍ଧୁବାନ୍ଧବ** - *ଢ:* (ବି.) : ସାଙ୍ଗସାଥି

**ବନ୍ଧୁବାସିଆ** - *ଗଦ୍ୟ:* (ବି.) : କୁଣିଆ, ଅତିଥି

**ବନ୍ଧେଇବା** - *ଗ:କନ୍ଧ:ନ:* (କ୍ରି.) : ସଂଗାତ ବସିବା, ସାଙ୍ଗ ହେବା, ବିବାହ କରିବା, ହିଡ଼ କିମ୍ବା ମାଟିରେ ପାଣିକୁ ବନ୍ଧ କରିବା

**ବପୁଡ଼ା** - *କଳା:* (ବିଂ.) : ବିଚରା, ବାପୁଡ଼ା

**ବପା** - *ଦେ:ସୁ:ନୂ:* (ବି.) : ମାଂସ, ଚର୍ବି, ବାପା, ବାପାଙ୍କ ବଡ଼ଭାଇ

**ବପୁ** - *ଦେ:ସୁବ:* (ବି.) : ବଳ, ଶକ୍ତି, ଶରୀର

**ବପୁଡିଆ** - *ବୌ:* (ବି.) : ଠିକ୍ ଭାବରେ ବୁଣା ହୋଇନଥିବା ଅଂଶ, ବ'ପଡ଼ିଆ

**ବପ୍ପା** - *ମା:* (ବି.) : ବାପା

**ବଫା** - *କଳା:* (ବି.) : ବାପା, ପିତା

**ବପ୍ପୁ** - *ସ:ଝା:* (ବି.) : ବଳ, ଶକ୍ତି

**ବଫେ** - *ସ:* (କ୍ରି.ବିଂ.) : ନିଜେ ପରସି ଖାଇବା ଭୋଜି, ବୁଫେ

**ବବ୍‌ସିଂ** - *ଗଦ୍ୟ:* (ବି.) : କୁକୁଡ଼ା ମୁଣ୍ଡ

**ବବକା** - *ଗ:* (ବି.) : ଓଲା, ମୂର୍ଖ

**ବବା** - *ଅନେ:* (ବି.) : ବାବାର ବଡ଼ ଭାଇ, ବଡ଼ ବାପା, ଦଦେଇ, ବାବାଜୀ, ସନ୍ଥ, ସନ୍ନ୍ୟାସୀ, ବୋବା

**ବବୁର୍ଚ୍ଚି** - *କେ:* (ବି.) ରୋଷେଇଆ, ଖାନ୍‌ସାମା

**ବବୁଲ** - *କ:* (ବି.) : ଏକ ଗଛ

**ବମଡ୍** - *କଳା:* (ବି.) : ଭମ୍ବର ଗଛ

**ବମା** - *ନୂ:ସୁ:ଦେ:ସ:* (ବିଂ.ବି.) : ବେଶୀ ପାଟିକରୁଥିବା ବ୍ୟକ୍ତି, ବିହୁଡ଼ା ପରେ ଧାନରେ ଲାଗୁଥିବା ପୋକ, ଧାନରୁ ବାହାରିବା ଧଳା ରଙ୍ଗର ପୋକ

**ବମାଇଯିବା** - *ସୁ:* (କ୍ରି.) : ଘବଡ଼େଇଯିବା

**ବମାଳ୍ପିକରଣ** - *ଗଙ୍କ:* (ବି.) : ଶ୍ରେଷ୍ଠ କରଣ

**ବମି କରିବା** - *ବା:* (କ୍ରି.) : ବାନ୍ତି କରିବା

**ବମିତୋଡ଼ି** - *ଖୋ:* (ବି.) : ପଙ୍କରେ ରହୁଥିବା ଏକପ୍ରକାର ଲମ୍ବା ତୋଡ଼ି ମାଛ

**ବମିଶିରା** - *ଭ:* (ବି.) : ବେକଷଣ୍ଢା

**ବମ୍ବୁର୍** - *କଳା:ସ:ନୂ:* (ବି.) : ଉମ୍ବର ଗଛ, ବମଡ୍, ବମ୍ବୁଡ୍, ଗଛ

**ବମ୍ବେଇ ତୋଡ଼ି** - *ନ:* (ବି.) : କୋଚିଆ (ଲମ୍ବା ତୋଡ଼ି ମାଛ)

**ବମ୍ବୋଳି** - *ଯା:* (ବି.) : ବିଧି ମୁତାବକ ବିଭାଘର

**ବମ୍ବାଇବା** - *ନୂ:* (କ୍ରି.) : ଭୟଭୀତ ହୋଇଯିବା

**ବମ୍ବା** - *ସୁ:ଗ:* (ବି.) : ଡାମଣ ଭଳି ଏକ ପଦାର୍ଥ, ଯାହା ସାହାଯ୍ୟରେ ବସ୍ତାରୁ କିଛି ଜିନିଷ କାଢ଼ି ପରଖ କରାଯାଏ, ଏକ ପ୍ରକାର ମାଛ, ମୂର୍ଖ

**ବମ୍ବାଟିଆ** - *ଗ:* (ବି.) : ଜଳଦସ୍ୟୁ

**ବଯାତୁଣୀ** - *ଖୋ:* (ବିଂ.) : ଗାଳି

**ବୟ** - *ନ:ଗ:* (ବି.) : ଗର୍ଭଧାରଣ କରିବା, ଗାଈର ଋତୁକାଳୀନ ସଙ୍ଗମ, ଖର୍ଚ୍ଚ, କରଜ, ବ୍ୟୟ

**ବୟୁହା** - *ଝା:* (ବି.) : ଯାହାର ମୁଣ୍ଡ ଠିକ୍ ନଥାଏ, ବାୟା

**ବୟା** - *କଳା:* (ବିଂ.) : ପାଗଳ, ବିକୃତ ମସ୍ତିଷ୍କ

**ବୟାଙ୍ଗ** - *ଛ:* (ବି.) : ଅଧ୍ୟାୟ

**ବୟାଣ** - *ଛ:* (ବି.) : ବ୍ୟାଖ୍ୟା, ବୟାନ

**ବୟାର** - *ଗଦ୍ୟ:ମ:ବା:* (ବି.) : ବତାସ, ପବନ, ଝଡ଼–ତୋଫାନ

**ବର** - *ଗ:ଦେ:କେନ୍ଦୁ:ଗଦ୍ୟ:* (ବି.) : ବରଗଛ, ସ୍ୱାମୀ, ଗିରସ୍ତ, କୁଟାରେ ବଳା ହୋଇଥିବା ବେଣ୍ଟି, ପାଳ ଦଉଡ଼ି

**ବରକଣ** - *ଘୁବ:ଘୁ:* (ବି.ବିଂ.) : ଶକ୍ତିଶାଳୀ, ବଳଶାଳୀ

**ବରକିବା** - *ଚୀ:* (କ୍ରି.) : ପାଚିବା ପାଇଁ ରଖିବା

**ବରଖା** - *ଦେ:* (ବି.) : କଡ଼ି

**ବରଗ** - *ଗଦ୍ୟ:କଳା:* (ବି.) : ବର୍ଗ, ବାଗ, ରୀତି, ପଦ୍ଧତି, ଶୃଙ୍ଖଳା, ପ୍ରକାର, ରକମ, ବଂଶ, ବର୍ଗ, ଗୋତ୍ର

**ବରଗଡ଼ା** - *କ:ଗଦ୍ୟ:* (ବି.) : ଡାଲି ଜାତୀୟ ଗଛ, ମୋଟା ଚାଉଳ, ଅକଣ୍ଡା ଚାଉଳର ଭାତ, ଏକ ପରିବା

**ବରଗଡ଼ି** - *ଚୌ:* (ବି.) : ଝୁଡୁଙ୍ଗ

**ବରଗା** - *ଗ:ନ:* (ବି.) : ଛାତ ତଳର ଭାର ସମ୍ଭାଳିବା କାଠ, କାଠକଡ଼ିରୁ କଡ଼ିକୁ ଆଡ଼ିଭାବେ ପଡ଼ିଥିବା ଛୋଟ ଛୋଟ କାଠଦଣ୍ଡ

**ବରଗିବା** - *ଢ:ଗ:ନ:* (କ୍ରି.) : ଖବରନେବା, ପ୍ରଶ୍ନ କରିବା, ଆଦେଶ ଦେବା, ପଠାଇବା, ତଲବ କରିବା

**ବରଗୁଡ଼ି** - *ଗ:ଖୋ:* (ବି.) : ଶିମ୍ବ ଜାତୀୟ ଚଣା, ଏକ ଲଟା ଜାତୀୟ ପରିବା

**ବରଗୁଣ୍ଡି ଧାନ** - *କେନ୍ଦୁ:* (ବି.) : ଏକ ପ୍ରକାର ଧାନ

**ବରଜ** - *ନ:ଖୋ:ଗ:* (ବି.) : ପାନକ୍ଷେତ, ପାନ ବଗିଚା, ପାନ ଗଛର ତୋଟା

**ବରଜପଡ଼ା** - *ଚୀ:* (ବି.) : ପୂର୍ବର ପରିତ୍ୟକ୍ତ ବରଜ, ଯାହା ଉଚ୍ଚ ହୋଇଥାଏ

**ବରଜମୁଠା** - *ଚୀ:* (ବି.) : ପାନ ବରଜ ଭିତରେ ଦୋକାଠିଆ ଦବା

**ବରଜିଆ** - *ଖୋ:* (ବିଂ.) : ପାନ ବରଜର ମାଲିକ

**ବରଞ୍ଚ** - *କ:* (ଅ.) : ବରଂ

**ବରଟ୍** - *ସ:* (ବି.) : ବ୍ରଣ

**ବରଡିଆ** - *ଘୁବ:* (ବି.) : ବରଯାତ୍ରୀ

**ବରଡ଼ା** - *ନ:ଗଦ୍ୟ:ଦେ:* (ବି.) : ତାଳ ବାହୁଙ୍ଗା, ଏକ ଶାଗ

**ବରଡ଼ିଆ** - *କ:ଦେ:* (ବିଂ.ବି.) ଦୁଧ ଦେଉନଥିବା ଗାଈ, ପଡ଼ିଆ ଗାଈ

**ବରଡ଼ିବା** - *ନ:* (କ୍ରି.) : ଗାଈ, ମଇଁଷି ଗୁଡ଼ିକ ଋତୁକାଳୀନ ଋତୁସ୍ରାବ ଦିନ ଗର୍ଭଧାରଣ କରିବା, ସଙ୍ଗମ କରିବା

**ବରଣି** - *ଦେ:ଢ:* (ବି.) : ନିମନ୍ତ୍ରଣ, ଜୋଇଁ ବରଣି, ଠାକୁର ବରଣି, ବରଣ ନିମନ୍ତେ ଉଦ୍ଦିଷ୍ଟ

**ବରତନ** - *ଅନେ:* (ବି.) : ବାର୍ଷିକ ପ୍ରାପ୍ୟ, ମୂଲ, ବେତନ, ଧୋବା, ଭଣ୍ଡାରୀ, ବାସନ କୁସନ

**ବରତପେଡ଼ି** - *ନ:* (ବି.) : ଲକ୍ଷ୍ମୀବ୍ରତକରି ସ୍ତ୍ରୀମାନେ ହାତରେ ବାନ୍ଧିଥିବା ସୂତା

**ବରତିବା** - *ଘୁ:* (କ୍ରି.) : ବଂଚିଯିବା

**ବରଦା** - *ଦେ:* (ବି.) : ଭୂଇଁ କଖାରୁ, ଅଣସୋରିଷିଆ ଗଛ

**ବରଦୁଆ** - *ଅ:* (କ୍ରି.ବି.) : ଅଭିଶାପ

**ବରଧରା** - *ଅନେ.* (ବି.) : ବିବାହ ପାଇଁ କନ୍ୟା ପକ୍ଷରୁ ନିମନ୍ତ୍ରଣ, ବିବାହ ପୂର୍ବର ଏକ କାର୍ଯ୍ୟକ୍ରମ

**ବରନ୍** - *ନୂ.କଳା.ସ.* (ବି.) : ବର୍ଣ୍ଣ, ରଂଗ

**ବରନ୍ କରିବା** - *ନୂ.* (କ୍ରି.) : ବରଣ କରିବା

**ବରନି** - *ସୁ.* (ବି.) : ଗୁଆଦି ନିମନ୍ତ୍ରଣ

**ବରଫି** - *ଦେ.* (ବି.) : ଖୁଆରୁ ପ୍ରସ୍ତୁତ ଏକ ମିଠା

**ବରବଟି** - *ଅନେ.* (ବି.) : ଝୁଡୁଙ୍ଗ, ବରଗୁଡ଼ି

**ବରବରାବା** - *ସୁ.* (କ୍ରି.) : ବିରକ୍ତ ହେବା

**ବରବାଦ୍** - *ବୌ.ଖୋ.ଦେ.* (କ୍ରି.ବି.) : ନଷ୍ଟହେବା, ନଷ୍ଟଭ୍ରଷ୍ଟ, ଅପଚୟ, ଅପବ୍ୟୟ

**ବରମସ** - *ଷୁବ.ସୁ.* (ବି.) : ଅନେକ ଦିନ ଧରି ଶୁଝଟ ହୋଇନଥିବା ଋଣ, ଧାରୀ, ଅନାଦେୟ ଋଣ

**ବରମସିଆ** - *ଷୁବ.* (ବିଂ.) ଋଣ ଫେରାଇପାରି ନଥିବା ଲୋକ

**ବରଲାବା** - *ସୁ.* (କ୍ରି.) : ବଢିବା, ଧନାଦି ବେଶି ବଢିଯିବା

**ବରଷାତି** - *ଦେ.* (ବି.) ବର୍ଷାରୁ ରକ୍ଷା ପାଇଁବା ପାଇଁ ବ୍ୟବହୃତ ପୋଷାକ

**ବରଷିକିଆ** - *ଗ.* (ବିଂ.) : ବାର୍ଷିକ ଶ୍ରାଦ୍ଧ

**ବରାଡି** - *ବା.* (ବି.) : ବିରୁଡି

**ବରାତ** - *ଅନେ.* (ବି.କ୍ରି.) : ଗଞ୍ଜପା ତାସ୍‌ର ଏକ ବର୍ଣ୍ଣ ତାସ୍, ବରଯାତ୍ରୀ, ବରାଦ ଦେବା, ଭାଗ୍ୟ

**ବରାତି** - *ସୁ.ଦେ.କଳା.ବୌ.* (ବି.) ବରଯାତ୍ରୀ, ଯାହା ଦରକାରୀ, ବରାଦ୍

**ବରାଦ** - *ଖୋ.* (କ୍ରି.) : ପ୍ରସ୍ତାବ ଦେବା, ବରାଦ କରିବା

**ବରାନ୍ଧ** - *ଭ.* (ବି.) : କବାଟ ବନ୍ଧର ତଳ ଅଂଶ, ଚଉକାଠର ନିମ୍ନଭାଗ

**ବରାବର** - *କେ.ଦେ.ଛ.* (ଅ.ବି.) : ସମାନ, ସବୁ ସମୟରେ, ଠିକ୍ ଠିକ୍, ସିଧାସିଧା, ଏକଦମ୍, ନିୟତ, ସବୁବେଳେ

**ବରାଲ** - *ସ.* (ବି.) : ଚାନ୍ଦା

**ବରି** - *ଅନେ.* (ବି.କ୍ରି.) : ବଡ଼ି, ବରଣ କରି, ବିରି କଖାରୁ ଓ ଚାଉଳର ବଡ଼ି

**ବରିଆ** - *ଗଦ୍ୟ.ନବ.ଗ.ଦେ.* (ବି.) ବଳିକର୍ତ୍ତା, ବାର୍‌ହା, ଘୁଷୁରି, ନିଆଁଅଟା, ନିଆଁ ବରିଆ, ପାଳରେ ତିଆରି ବିଣ୍ଡା

**ବରିହା** - *ଦେ.ଭ.ବୌ.* (ବି.) ଉପାସି, ଛଣରେ ତିଆରି ନିଆଁହୁଳା, ଚାକର

**ବରୀ** - *ଗଦ୍ୟ.ଦେ.* (ବି.) : ବର ଘରୁ କନ୍ୟା ପାଇଁ ଆସିଥିବା ସଜ, ତ୍ରିଫଳା, ହରିଡ଼ା, ବାହାଡ଼ା, ଅଁଳା

**ବରୁ** - *ସୁ.ଝା.* (ବି.) ବ୍ରତୋପନୟନ, ବ୍ରତଘର, ବଟୁ

**ବରୁଆ** - *ସ.ସୁ.* (ବି.) : ଯାହାର ଦେହରେ ଦେବୀ ଆସେ, କାଳିସୀବାଲା

**ବରୁଡ଼ି** - *ଗଦ୍ୟ.* (ବି.) : ଏକ ଫୁଲ

**ବରୁବର୍** - *ବୌ.* (ଅ.) : ଠିକ୍ ସଂଖ୍ୟକ, କେବଳ ସେତିକି

**ବରେ** - *ଗଦ୍ୟ:* (ବି.) : ଭାଇ
**ବରେଇ** - *ମ:* (ବି.) : ଦଉଡ଼ି
**ବରେକାଙ୍ଗା** - *କଝ:* (ବି.) : ବରକୋଳି
**ବରୋ, ବଙ୍କୁର** - *ସୁ:* (ବି.) : ବରକୋଳି
**ବର୍ଗିବା** - *ନୁ:* (କ୍ରି.) : କହିବା
**ବର୍ତ୍ତନ** - *ଅନେ:* (ବି.) : ମାସିକ ଦରମା, ପାଉଣା, ପାରିଶ୍ରମିକ, ଆସବାବ ପତ୍ର, ବାସନକୁସନ
**ବର୍ତ୍ତନୀ** - *କେ:* (ବି.) : ବର୍ଷସାରା ଅନ୍ୟ ପାଇଁ ମାଗଣାରେ କାମ କରି ଫସଲ ଅମଳ ସମୟରେ ସଂପୃକ୍ତ ବ୍ୟକ୍ତିଙ୍କ ଠାରୁ ମିଳୁଥିବା ଧାନ
**ବର୍ତ୍ତମାନ ହେବା** - *ଗ:କୋ:* (କ୍ରି.) : ରଜୋବତୀ ହେବା, ରଜସ୍ୱଳା ହେବା
**ବର୍ଦ୍ଦୀ** - *ସଂ:* (ବି.) : ପୋଷାକ
**ବର୍ଦ୍ଧୁତି** - *ଢ:* (ବି.) : ବର୍ଦ୍ଧନ, ବଢୁଥିବା ଅବସ୍ଥା
**ବର୍କଷିଆ** - *ଦେ:* (ବିଂ.) : ବଳୁଆ
**ବର୍କସ** - *ସ:କଳା:* (ବିଂ.) : ମଜବୁତ, କଠିନ, ଟାଣ
**ବର୍କସି** - *ସ:ଝା:* (କ୍ରି.ବିଂ.) : ଜବରଦସ୍ତି, ଯୋର୍‌କରି
**ବର୍କି ଯିବା** - *କଳା:* (କ୍ରି.) ଗଣ୍ଡ ସଂପ୍ରଦାୟରେ ବରପିଲାକୁ ତେଲ ଓ ହଳଦୀରେ ଦିନେ ଦୁଇଦିନ ଘସିଲା ପରେ, ବରକୁ ବାଦ୍‌ଦେଇ ବରର ବନ୍ଧୁ ବାନ୍ଧବ, କନ୍ୟାଘରକୁ କନ୍ୟା ଆଣିବା ପାଇଁ ଯିବା
**ବର୍‌ଗିବା** - *ଦେ:କଳା:ସ:* (କ୍ରି.) : ଆଦେଶ ଦେବା, କହିବା, କାମ ବତାଇବା, ତିଆରି କରିବା ପାଇଁ କହିବା ବା ଆଦେଶ ଦେବା, କର୍ମରେ ନିଯୁକ୍ତ କରିବା
**ବର୍‌ଛା** - *ସୁ:ଝା:* (ବି.) : ପରିବା ବାଡ଼ି, ବାରିସା, ଯେଉଁଠାରେ ପନିପରିବା ଆଦି ଆଦି ଚାଷ କରାଯାଏ
**ବର୍‌ଡ଼ା** - *କଳା:ସ:ଦେ:* (ବି.) : ବରଡା, କୁଲେର୍, ତାଳ ଗଛର ବାହୁଙ୍ଗା, ଶୁଖିଲା ତାଳ ପତ୍ର
**ବର୍‌ଣ୍ଡା** - *କଳା:* (ବି.) : ବାରଣ୍ଡା, ପିଣ୍ଡା
**ବର୍‌ତନ୍** - *ସଂ:ନୂ:* (ବି.) : ବାସନ କୁଶନ
**ବର୍‌ବରା** - *ସୁବ:* (ବି.) : ବରବରଣ କ୍ରିୟା
**ବର୍‌ମସ୍** - *କଳା:କୋ:* (ବି.) : ରଣ, ଅଶ୍ଳୀଳ ଗାଳି ବିଶେଷ
**ବର୍‌ମସିଆ** - *କଳା:ବ:ଝା:* (ବିଂ.ବି.) : ଅନ୍ୟର ସଂପତ୍ତି ଆତ୍ମସାତ୍ କରିଥିବା ବ୍ୟକ୍ତି, ରଣ କରିବା ବ୍ୟକ୍ତି, ଯେ ଲୋକଙ୍କ ଟଙ୍କା ନେଇ ଫାଙ୍କିଦିଏ
**ବର୍‌ହା** - *କଳା:ଦେ:ସୁ:ଦେ:* (ବି.) : ବରାହ, ବାର୍‌ହା
**ବର୍‌ହାନି** - *ଦେ:* (ବି.) : ଚାକରାଣୀ
**ବର୍‌ହାପୁକ୍** - *ଦେ:* (ବି.) : ସମ୍ବାଳୁଆ
**ବଲ** - *କେ:ଢେ:କଳା:ଦେ:* (ବି.) : ବଳଦ, ପେଣ୍ଡୁ, ବଳ, ଶକ୍ତି, ପ୍ରକାଶ କର, ଆଲୁଅ

ବଲ୍‌କରା - *ମା:* (ବି.) : ବୋଲକରା ଲୋକ
ବଲ୍‌କିବା - *ଚୌ:* (କ୍ରି.) : ବଳିବା
ବଲ୍‌ଚୁ - *କନ୍ଦ:* (କ୍ରି.) : କହୁଛୁ
ବଲ୍‌ଜବର୍ - *କଳା:* (ବିଂ.) ଜୋର ଜବରଦସ୍ତି
ବଲ୍‌ଦିଆ - *ଚୌ:* (ବି.) : ଯେ ବଳଦ ଚରାଏ
ବଲ୍‌ଦିଆ ଫୁଲ - *ସୁବ:* (ବି.) : ଗୋଟିଏ ହଳଦିଆ ଓ ନାଲି ରଙ୍ଗ ମିଶା ଫୁଲ, ଲଙ୍ଗ ଲଙ୍ଗଳିଆ ଫୁଲ
ବଲ୍‌ବ - *କଳା:* (କ୍ରି.) : ବୋଲିବ, କହିବ
ବଲ୍ ବପୁ - *ସ:* (ବି.) : ବଳଶକ୍ତି
ବଲ୍‌ବଲିଆ - *ଦେ:* (ବିଂ.) : ଯେ ପେଟରେ କଥା ରଖି ପାରେ ନାହିଁ
ବଲ୍‌ବାକେ - *କଳା:* (ବି.) : ବୋଲିବାରୁ, କହିବା ଫଳରେ, କହିବାରୁ, କହିବାକୁ
ବଲ୍‌ଲଟି - *ନୂ:* (ବି.) : ଜବରଦସ୍ତି
ବଲ୍‌ହ - *ଚୌ:* (ବି.) : ଆତ
ବଲଅ - *ନ:* (ବି.) : ପ୍ରଗଲ୍‌ଭ ଭଳି ଗପିବା, ବହୁତ କଥା କହିବା
ବଲକରା - *ନବ:* (ବିଂ.) : ଆଜ୍ଞାକାରୀ
ବଲନ୍ - *କଳା:* (କ୍ରି.) : ବୋଲନ୍ତୁ, କହନ୍ତୁ
ବଲମ - *ଗ:* (ବି.) : ବର୍ଚ୍ଛା
ବଲା - *ସୁବ:କୋ:ନବ:* (ବି.) : ହାତରେ ପିନ୍ଧା ଯାଉଥିବା ବଳା, ଲମ୍ବା କାଷ୍ଠ ବା ବାଉଁଶ ଦଣ୍ଡ ବିଶେଷ, ହାତଖଡୁ
ବଲାନି - *ସୁବ:* (ବି.) ଭୂତ, ପ୍ରେତ ଅପଦେବତା ଆଦି ଘରୁ କାଢିବାର ଘରଠାରୁ ଦୂର ବାଟରେ କରାଯାଉ ଥିବା ପୂଜାନୁଷ୍ଠାନ
ବଲାବଲି - *କୋ:* (ବି.) : ବଚସା, ଝଗଡ଼ା, ଉତ୍ତର-ପ୍ରତ୍ୟୁତ୍ତର, କଳି
ବଲିଆ - *ସ:କଳା:ସୁବ:ସୁ:* (ବି.) : ବାଲ୍‌ହିଆ ମାଛ, ନିଶ ଥିବା କାତି ନଥିବା ବଡ଼ ମାଛ
ବଲିଏନ - *ସୁବ:* (ବି.) ଭୂତ, ପ୍ରେତ ଅପଦେବତା ଆଦି ଘରୁ କଢିବାର ଘରଠାରୁ ଦୂର ବାଟରେ କରାଯାଉ ଥିବା ପୂଜାନୁଷ୍ଠାନ
ବଲିଖୁଟା - *କଳା:* (ବି.) : ଫଲ୍‌ସ୍‌କୁ ଧରି ରଖିବା ପାଇଁ ଆବଶ୍ୟକ ହେଉଥିବା କାଠ ଖମ୍ବ
ବଲୁକ୍ ତର୍ - *ଗଦ୍ୟ:* (ବି.) : କାଙ୍ଗୁପିଠା
ବଲୁକ୍ ଶାମ୍ - *ଗଦ୍ୟ:* (ବି.) : ମାଣ୍ଡିଆ ପିଠା
ବଲୁଚନ୍ - *କଳା:* (କ୍ରି.) : ବୋଲୁଛନ୍ତି
ବଲୁରି - *ଇ:* (ବି.) : ବିରୁଡ଼ି
ବଲେଇ - *ଚା:ଗଦ୍ୟ:* (ବି.) : ସାନକିଆରୀ, ଅଦୁଆ
ବଲେନ୍ - *ଝା:ସୁ:କଳା:* (ବି.) : ଠାକୁରାଣୀ ଆଦିକୁ ତୋଷ କରାଇବାପାଇଁ ଦିଆଯାଇଥିବା ଖଂଜା, ଗ୍ରହ ଟାଳିବା, ବିସର୍ଜନ

**ବଲ୍ଲବ** - *ଜ:* (ବି.) : ରାନ୍ଧୁଆ, ରୋଷେଇଆ

**ବଲ୍ଲଭ** - *ଜ:* (ବି.) : ସ୍ୱାମୀ, ପ୍ରେମିକ, ଭଲପାଇବା ଯୋଗ୍ୟ ବ୍ୟକ୍ତି

**ବଲ୍କିଯିବା** - *ମ:* (କ୍ରି.) : ଅଧିକ ହେବା, ବଳେଇଯିବା

**ବଳକିବା** - *ନବ:* (କ୍ରି.) : ବଳିବା

**ବଳଙ୍ଗେଇ** - *ଖୋ:* (ବି.) : ଏକ ପ୍ରକାରର ମାଛ

**ବଳଣ** - *ଦେ:* (ବି.) : ପାଣି ନେବାପାଇଁ ନାଳ

**ବଳତୋପଡ଼** - *ଗଜ:* (ବି.) : ଶଗଡ଼ ତୁମ୍ବରେ ଥିବା ଲୁହାର ବଳା

**ବଳସ** - *ଦେ:ବୌ:ଅ:* (ବି.) : ଧାନ କୋଠି, ଅମାର, ଖମାର, ଭଣ୍ଡାର

**ବଳା** - *ଅନେ:* (ବି.) ପାଦ ଅଳଙ୍କାର, କଂକଣ, ଅଜଗର ସାପ, ଅସ୍ତ୍ର, ହାତର କଡ଼ା, ବଳୟ

**ବଳାଗଣ୍ଠି** - *ଅନେ:* (ବି.) : ଗୋଡ଼ର ପାଦ ପାଖର ବଡ଼ ଗଣ୍ଠି

**ବଳାଦେବା** - *କେନ୍ଦୁ:* (କ୍ରି.) : ବିଧବାଟିକୁ ଚୁଡ଼ି ପିନ୍ଧେଇ ବାହାହେବା

**ବଳାବଳି** - *ବୌ:* (ବି.) : ବଳକା

**ବଳି** - *ଦେ:* (ବି.) : ପଶୁ ବଧ

**ବଳିଆ** - *ନ:* (ବି.) : ଏକ ଶିକାରପ୍ରିୟ କୁକୁର, ବଳଭଦ୍ରଙ୍କ ଲୋକ କଥିତ ନାମ

**ବଳେଇକି** - *ଅନେ:* (କ୍ରି.ବିଂ.) : ବାଧକରି, ଅଧିକ କରି

**ବଳେଇଦେବା** - *ନ:* (କ୍ରି.) : ଗାଁ ମୁଣ୍ଡଯାଏଁ ଛାଡ଼ିଦେଇ ଆସିବା, ସାଥିରେ ଯାଇ ସୌଜନ୍ୟମୂଳକ ଭାବେ ବାଟ ଦେଖାଇଦେବା

**ବଶଣି** - *ଦେ:* (ବି.) : ନାକର ଅଳଙ୍କାର

**ବଶ୍ୟ** - *ଜ:* (ବି.) : ବଶିଭୂତ

**ବଷ୍ଣମ** - *ଚା:* (ବି.) : ବୈଷ୍ଣବ

**ବସ** - *ଅନେ:* (ବି.) : ଛେଳି ପଠ୍ଠାର ମାଂସ, ମାଂସର ଚର୍ବି, ବସିବାପାଇଁ ଅନୁରୋଧ, ଆଠ ସଂଖ୍ୟା, ବୃକ୍ଷ, ଶିବ, ଚକି, ଚର୍ବି, ବସ୍‌ଯାନ

**ବସ୍‌ଉଠ୍** - *ନ:* (ବି.) : କାନଧରି ବସିବା ଉଠିବା (ଏକ ପ୍ରକାର ଦଣ୍ଡ)

**ବସ୍‌ତେ** - *ମ:* (ବି.) : ବସିବା ପାଇଁ

**ବସ୍‌ନି** - *ସ:କଳା:* (ବି.) : ବସିବା ଆସନ, ପାଳରେ ନିର୍ମିତ ବସିବା ଆସନ

**ବସ୍‌ମାଁ** - *ବୌ:* (କ୍ରି.) : ବସିବା

**ବସ୍‌ଲି** - *ନବ:* (ବି.) : ନାଭି

**ବସତରା** - *କେନ୍ଦୁ:* (ବି.) : ବୈଶାଖ ମାସରେ ତୁଳସୀ ଚଉଁରାରେ ବନ୍ଧା ହୋଇଥିବା ଠେକି, ବସନ୍ତରା

**ବସା** - *ଅନେ:* (ବି.) : ପକ୍ଷୀବସା, ଘର, ବସାଇବା, ଅସ୍ଥାୟୀ ବାସ

**ବସାଇବା** - *ଦେ:ନ:* (କ୍ରି.) : ଠାକୁର, ମୂର୍ତ୍ତି, ବସ୍ତି, ଚୂଳ ସ୍ଥାପନ କରିବା, ବସିବାକୁ

କହିବା, କ୍ଷୀରରେ ମହି ଦେଇ ଦହି ବସାଇବା, ପ୍ରସ୍ତୁତ କରିବା

**ବସାବା** - *ନୂ:* (କ୍ରି.) : ଥୋଇବା

**ବସାର** - *ଦେ:* (ବି.) : ଅଭିପ୍ରାୟ

**ବସିଛନ୍** - *ମ:* (କ୍ରି.) : ବସିଛନ୍ତି

**ବସିମି** - *ଯା.କେ.ମ:* (କ୍ରି.) : ବସିବି

**ବସୁନ୍** - *କଳା:* (କ୍ରି.) : ବସନ୍ତୁ, ଆସନଗ୍ରହଣ କରନ୍ତୁ

**ବସ୍ତାନି** - *ଅନେ:* (ବି.) : ସ୍କୁଲବ୍ୟାଗ, ପାଠ ପଢୁଥିବା ପିଲାଙ୍କ ବହିବ୍ୟାଗ୍, ବହି କପଡ଼ାରେ ବାନ୍ଧି ରଖିବା ପୁଟୁଳା

**ବହକ** - *ଦେ:* (ବି.) : ଅନ୍ୟାୟ

**ବହକା** - *ସୁ:ଦେ:* (ବି.ବିଂ.) ବଡ଼କୁହା, ବଳକା, ଅଧିକ

**ବହକାଲିଆ** - *ଖୋ:* (ବିଂ.) : କଥା ନମାନି ଚପଳାମି କରୁଥିବା ଲୋକ

**ବହଙ୍ଗର** - *ସୁ:ସ:ଖ:* (ବିଂ.ବି.) : ଆତ୍ମଗର୍ବୀ, ପାରିବା ପଣ, ବାହାଦୂର, ଦେଖେଇ ହେବା

**ବହଣା** - *ଗ:* (ବି.) : ଅଗ୍ରୀମ ଦେୟ

**ବହଣ୍ଡିବା** - *କଳା:* (କ୍ରି.) : ବାଟ ବଣାହେବା, ଦଉଡ଼ି ଆଦି ବୁଣାକାମରେ ତ୍ରୁଟି କରିବା

**ବହନା** - *କଳା:* (ବି.) : କାଟିଲା ଧାନକୁ ବୋହିବା ଭାର

**ବହନି** - *ଅନେ:* (ବି.କ୍ରି.) : ବଇନି, ଭଉଣୀ, ବିକ୍ରି ଆରମ୍ଭ କରିବା, ପ୍ରଥମ ବିକ୍ରି, ପ୍ରଥମେ ଅନୁକୂଳକରି ବିକ୍ରୟ କରିବା

**ବହପ** - *ଢ:ନ:ଦେ:କ:* (ବି.) : ସାହସ, ଶକ୍ତି

**ବହରିଆ** - *ସୁ:* (ବି.) : ବୋହୂ, ବାହାର ଲୋକ

**ବହଲ** - *ଗଦ୍ୟ:ବୌ:କଳା:ନୂ:* (ବି.ବିଂ.) : ଏକ ଶାଗ, ମୋଟା, ଘଞ୍ଚ, ବହଳ, ମୋଟା, ବହଳ ନାମକ ଗଛ, ତା'ର ପତ୍ରକୁ ଶାଗ କରି ରନ୍ଧାଯାଏ

**ବହଲି** - *ମା:* (ବି.) : ପଳାଶ ଗଛ

**ବହଲେଇବା** - *କଳା:ଯା:ଖୋ:* (କ୍ରି.) ଶିଆରରେ ପାଣି ମଡ଼େଇବା, ବିସର୍ଜନ କରିବା, ଭୁଲେଇବା, ବୁଝାଇବା

**ବହଳ** - *ନ:ଦେ:ଢ:କୋ:* (ବିଂ.) : ଗହଳ, ଗହଳିଆ, ମୋଟା, ଗାଢ଼ା, ବହୁଳ, ଅନେକ, ଘଞ୍ଚ

**ବହା** - *ଦେ:* (ବି.) : ନଈ, ଧାର

**ବହିଣା** - *ନ:* (ବି.) : କୌଣସି ଜିନିଷ, କାର୍ଯ୍ୟପାଇଁ କିଣିବା ପୂର୍ବରୁ ଅଗ୍ରୀମ ଦେବା, ବଇନା

**ବହିଦା** - *ଖୋ:କେନ୍ଦୁ:* (ବି.) : ଧାନ ବୋହିବା ପାଇଁ ଦୁଇପଟେ ଗୋଜିଆ ହୋଇଥିବା ବାହାଙ୍ଗୀ

**ବହିଦାର** - *ଦେ:ସୁବ:* (ବି.) ଖମାରୀ, ଭଣ୍ଡାର ରକ୍ଷକ, ଏକ ଉପାଧି, ପଶ୍ଚିମ

ଓଡ଼ିଶାର କରଣ ଜାତିର ସାଙ୍ଗିଆ ବିଶେଷ

**ବହିନ** - *ସୁ.ମ.* (ବି.) : ଭଉଣୀ

**ବହିବା** - *ଅ.* (ବି.) ନୂଆ ବଳଦକୁ ମଣାକରିବା

**ବହୁ** - *ସୁ.ଦେ.ବୌ.* (ବିଂ.) : ଅନେକ, ବେଶୀ

**ବହୁମାନ** - *ପୁ.* (ବିଂ.) ବଦାନ୍ୟ, ଧର୍ମପରାୟଣ ବ୍ୟକ୍ତିଙ୍କ ଦାନରେ ଗଠିତ ଜାଗାଘର

**ବହୁରୁଚି** - *ପୁ.* (ବିଂ.) : ଏକପ୍ରକାରର ଭାଙ୍ଗ

**ବହୂ** - *ସୁବ.* (ବି.) : ବଧୂ, ବୋହୂ, ପୁଅର ସ୍ତ୍ରୀ

**ବହେ** - *ଯା.ନ.* (ବିଂ.) : ବହୁତ, ବେଜାଏ, ଯଥେଷ୍ଟ ପ୍ରକାରେ

**ବହେନ୍** - *ଅନେ.* (ବି.) : ଛୋଟ ଭଉଣୀ, ସହୋଦରା

**ବହଁକି** - *ଝା.* (କ୍ରି.) : ଆଗକୁ ଆଗେଇ

**ବହଁଟି** - *ବର.* (ବି.) : ବାହୁଟି, ବାହୁରେ ପିନ୍ଧୁଥିବା ଅଳଙ୍କାର

**ବହଁର କମାଣି** - *ପୁ.* (ବି.) : କାଠରେ ବୁଲେଇବୁଲେଇ ଛିଦ୍ର କରିବା ପାଇଁ ଏକ ସାଧନ ଏଥିରେ ଧନୁଭଳି ବ୍ୟବହୃତ ଯନ୍ତ୍ରାଂଶର ନାମ କମାଣି

**ବହଂଗର** - *ଝା.* (ବିଂ.) : ବେଶୀ ବୁଦ୍ଧିଆ

**ବହ୍ନେଇବା** - *ବୌ.* (କ୍ରି.) : ଝାଡୁ କରିବା

**ବହ୍ଲା** - *ପୁ.* (ବି.) : କାଠର ଅପେକ୍ଷାକୃତ କମ୍ ମୋଟା ଖମ୍ବ

**ବାଆଗି** - *ଅ.* (ବି.) : ଭଲ

**ବାଆଣିଆ** - *ଗଦ୍ୟ.* (ବି.) : ବାଦକ

**ବାଆଣ୍ଡା** - *ଭ.* (ବିଂ.) : ଅନୈତିକ

**ବାଆନିବା** - *ସ.* (କ୍ରି.) : ପସନ୍ଦ ନକରିବା

**ବାଆଲିପୂଜା** - *ଗଦ୍ୟ.* (ବି.) : ଅକ୍ଷୟ ତୃତୀୟା ପରି କନ୍ଧ ସଂପ୍ରଦାୟର ଏକ ପୂଜା

**ବାଆଁଖାଡ଼ି** - *ପୁ.* (ବି.) : କୁସ୍ତିରେ ବାମପଟୁ ଅଣ୍ଟାପାଖରୁ ଧରି ବୁଲେଇ ଫୋପାଡ଼ି ଦେବା

**ବାଆଁଚାଳିଆ** - *ପୁ.* (ବିଂ.) : ଅସଂଲଗ୍ନ କଥା, ବାଚାଳ

**ବାଆଁର** - *ଗ.* (ବି.) : ଏକ ପ୍ରକାର ମାଛ

**ବାଆଁରା** - *ଦେ.* (ବି.) : ବାରଣ କରିବା

**ବାଆଁରେଇବା** - *ଦେ.ଭ.* (କ୍ରି.) : ଛଳନା କରିବା, ଆଳ କରିବା, ବଦଳେଇ କହିବା, ଏଡ଼େଇ ଦେବା

**ବାଆଁଶ** - *ମ.ଭ.ଯା.* (ବି.) : ବାଉଁଶ

**ବାଇ** - *ଅନେ.* (କ୍ରି.ବି.) : ପାଗଳି, ବେଶ୍ୟା, ସ୍ତ୍ରୀଙ୍କ ଉପାଧି, ବାପାର ମା', ବାତୁଳ, ବାଡ଼ି, ବଦହଜମି,ବାୟୁ

**ବାଇଆ** - *ଦେ.* (ବି.) : ପାଗଳା

**ବାଇଆରି** - *କଳା.* (ବି.) : କାଠ କାଟିବା ପାଇଁ ବ୍ୟବହୃତ ଛୋଟ କରତ

**ବାଇକୁଣ୍ଡିଆଣି** - *କୋ.* (ବି.) : ଦେହରେ ଲାଗିଲେ କୁଣ୍ଡିଆ ହେଉଥିବା ଫଳ, ବାଇଡଙ୍କ

**ବାଇଖୁଜାଣି** - *କଳ:* (ବି.) : ବାଇଡଙ୍କ

**ବାଇଗବା** - *ସଂ:* (ବି.) : ଏକ ଛୋଟ ଗଛ, ଯାହାର ଛୋଟ ଅଂଶ ଦାନ୍ତକାଠି ହୁଏ

**ବାଇଗିଡ଼ିଆ** - *କ:* (ବି.) : ବାଡ଼ରେ ବ୍ୟବହୃତ ହେଉଥିବା ଛୋଟ ଗଛ

**ବାଇଗିଣୀ** - *ନ:* (ବି.) : ବାଇଗଣ କାଟି ବେସନରେ ବୁଡ଼ାଇ ତେଲଛଣା ଖାଦ୍ୟ, ଏକ ରଙ୍ଗ

**ବାଇଗିନି** - *ସୁବ:* (ବି.) : ବାଇଗଣର ବରା

**ବାଇଗୋଡ଼ାଇବା** - *ଗ:* (କ୍ରି.) : ପାଗଳର ପ୍ରବୃତ୍ତି, ପ୍ରଳାପ, ବାତୁଳପ୍ରାୟ ହେବା

**ବାଇଚଟିଆ** - *ଗ:* (ବି.) : ବାୟା ଚଢେଇ

**ବାଇଛ** - *ଚୌ:* (ବି.) ବାଛବିଚାର, ଛୁଆଁଅଛୁଆଁ ଭାବ

**ବାଇଜଡ଼ା** - *ଦେ:* (ବି.) : ବାଇଗବ

**ବାଇଜହାଣ୍ଡି** - *ଖୋ:କେନ୍ଦୁ:* (ବି.) : ଲୋକ ମରିଗଲା ପରେ ପକାଯାଉଥିବା ମାଟିହାଣ୍ଡି

**ବାଇଝାଲି** - *ଖୋ:ଗ:* (ବି.) : ଏକପ୍ରକାର ମାଛ, ଚୁଲୁବୁଲି

**ବାଇଟାଙ୍ଗିରି** - *ଗ:* (ବି.) : ଏକ ପ୍ରକାର ପକ୍ଷୀ

**ବାଇଟୁଙ୍ଗୁରି** - *ବ:* (ବିଂ.) : ଅସ୍ଥିରମନା

**ବାଇଡଙ୍କ** - *ସଂ:କେ:* (ବିଂ.ବି.) : ଅତି ଦୁଷ୍ଟ, କଣ୍ଟୁ ଲତା ବିଶେଷ

**ବାଇଡ଼ା** - *ଯା:* (ବି.) : ବାହାଡ଼ା, ଔଷଧୀୟ କଷା ଫଳ

**ବାଇଢୁଙ୍ଗୁରିଆ** - *ଭ:* (ବି.) : ଉଦ୍ଦେଶ୍ୟହୀନ ଭାବରେ ବୁଲୁଥିବା ଯୁବକ

**ବାଇଣ୍ଡ** - *କେନ୍ଦୁ:* (ଅ.) : ଅଡୁଆତଡୁଆ

**ବାଇଣ୍ଡା** - *ଗ:* (ବି.) : ଛଟରା, କୁମତି ବାଳକ, ଦୁଷ୍ଟମି

**ବାଇଦ** - *ଅନେ:* (ବି.) : ବାଜା, ବାଦ୍ୟ

**ବାଇଦା** - *ଅନେ:* (ବି.) ମକଦ୍ଦମାର ନିର୍ଦ୍ଧାରିତ ଦିନ, ମିଆଦ, କଣ୍ଟ, ନିର୍ଦ୍ଦିଷ୍ଟ ତାରିଖକୁ ଜବାବ ଦେବା, ପୁନଃ ନିର୍ଦ୍ଧାରିତ ଦିନ

**ବାଇଦାରୁ** - *ଯା:* (ବି.) : ବରଗଛ

**ବାଇଧନ** - *ଦେ:* (ବି.) : ପୋତାମାଲ, ଦଣ୍ଡ ନାଚର ନାଟୁଆ

**ବାଇନି** - *କଳା:* (ବି.) : ସ୍ତ୍ରୀଲୋକମାନେ ମୁଣ୍ଡରେ ବୋଝ ବୋହିବା ବେଳେ, ଗୋଲାକାର କରି ମୁଣ୍ଡ ଉପରେ ବ୍ୟବହାର କରୁଥିବା କପଡା

**ବାଇବିଛି** - *ଭ:* (ବି.) : ଛାଟିପିଟି

**ବାଇବିଢ଼ଙ୍ଗ** - *ଦେ:* (ବି.) : କୃମିନାଶକ ଏକ ଔଷଧ

**ବାଇରି** - *କଳା:* (ବିଂ.) : ଦକ୍ଷିଣ, ଡାହାଣ

**ବାଇଲ** - *କୋ:ସଂ:ନବ:ଗ:* (ବି.) : ଗୁଳ୍ମରେ ଫଳୁଥିବା ଶିମ୍ବ ଜାତୀୟ ଶସ୍ୟ ବିଶେଷ, ଝଟା, ବାଲି ଉପବିଧି

**ବାଇଲି** - *ଗ:* (ବି.) : ଦାୟିତ୍ୱହୀନ ସ୍ତ୍ରୀ, ବାଳିକା

**ବାଇଲିହେବା** - *ପୁ:* (କ୍ରି.) : ଲୁଚି ହୋଇଯିବା

**ବାଇଲେ** - *କୋ:* (ବି.) : ଭୁଆଷୁଣୀ

**ବାଇଶ** - *ଦେ:ଯା:* (ବିଂ.ବି.) : ନିୟମ, ସ୍ଥିରତା, ଢଙ୍ଗ, ସଂଖ୍ୟା

**ବାଇଶକଲ୍** - *ସୁବ:* (ବି.) : ବାଇସାଇକଲ

**ବାଇଶିଆଳି** - *ନ:* (ବି.) : ଧାନର ନାମ

**ବାଇଶିପାଣିଆ** - *ଗଦ୍ୟ:* (ବିଂ.) : ହୃଷ୍ଟପୁଷ୍ଟ, ବଳିଷ୍ଠ, ଉତ୍କୃଷ୍ଟ

**ବାଇସା** - *ଯା:* (ବିଂ.) : ବାଇଶିଟି

**ବାଇସିପୋଇଲି** - *ଗଞ:* (ବି.) : ଗାଳିବିଶେଷ

**ବାଇଁଆ** - *ଗ:* (ବିଂ.) : ବାମ ହାତରେ ଯେ କାମ କରେ, ବାଉଁଆ

**ବାଇଁବା** - *ନବ:କୋ:* (କ୍ରି.) : ବାନ୍ଧିବା

**ବାଉଘାଟ** - *ଗ:* (ବି.) : ନଦୀ ସମୁଦ୍ର ଘାଟ

**ବାଉଙ୍ଗି** - *ଅନେ:* (ବି.) ଧାନ ବୁହା ଫାଳିକିଆ ବତା ବାଉଁଶ, ଭାର ବୋହିବା ଦଣ୍ଡ

**ବାଉଚୁରି** - *କୋ:* (ବି.) : ବୋହୂଚୋରୀ ଖେଳ

**ବାଉଛେଇବା** - *ଦେ:* (ବି.) : ଚାଉଳ ପାଇଁ ଧାନ ପାଗ କରିବା, ଧାନ ଶୁଖାଇ ୨ୟ, ୩ୟଥର ଓଲଟେଇବା

**ବାଉଟିଆ** - *ଗ:* (ବି.) : ହରିଣ, କୃଷ୍ଣସାର ମୃଗ

**ବାଉଡ଼ଙ୍ଗରିଆ** - *ଯା:* (ବିଂ.) : କିଛି ଦାୟିତ୍ୱ ନଥିବା ଲୋକ

**ବାଉଡ଼ି** - *କୋ:ମା:* (ବିଂ.ବି.) : ପାଗଳୀ, ବାୟାଣୀ

**ବାଉଣୀ** - *ମା:* (ବି.) : ଚୁମୁଳା ବା ମୁଚୁଳା

**ବାଉତି** - *କେନ୍ଦୁ:ସୁବ:ବୌ:* (ବି.) : ରାତିରେ ପୋଖରୀରେ ଦିଶୁଥିବା ନିଆଁହୁଳା, ଗ୍ରାମଦେବତୀ

**ବାଉନିବା** - *ନବ:* (କ୍ରି.) : ଖୁଣ ବାହାର କରିବା

**ବାଉରବାର** - *ସୁବ:* (କ୍ରି.) : ବ୍ୟବହାର କରିବା

**ବାଉରି** - *ଅନେ:* (ବି.ବିଂ.) : ଗଂଜାମର ଏକ ଅନୁସୂଚିତ ଜାତି

**ବାଉରିଫୁଲା** - *ଗ:* (ବିଂ.) : ଅଯଥା ଗର୍ବ କରୁଥିବା ବ୍ୟକ୍ତି

**ବାଉଲି** - *ବର:* (ବି.) : ପକ୍କା ପଥର, କୂଅ

**ବାଉଳା** - *ନ:ଦେ:ଯା:ଢ:* (ବିଂ.ବି.) ପାଗଳାପଣ, ବୁଦ୍ଧିଶୂନ୍ୟ, ଇଆଡୁ ସିଆଡୁ କହିବା, ଅସ୍ଥିର

**ବାଉଳି** - *ନ:ପୁ:କେ:* (କ୍ରି.ବି.) : ନିଦରୁ ହଠାତ୍ ଉଠି ପ୍ରଳାପକରିବା, ବାତୁଳ, କାନରେ ବ୍ୟବହୃତ ଅଳଙ୍କାର

**ବାଉଳିବାନ୍ତୁଳି** - *କୋ:* (ବି.) : ପ୍ରଳାପ

**ବାଉଁଆ** - *ଅନେ:* (ବିଂ.ବି.) : ବାମ ହସ୍ତରେ କାମ କରିବା ଲୋକ

**ବାଉଁରୀ** - *ବୌ:* (ବି.) : ଚକ୍କର୍

**ବାଉଁରେଇବା** - *ଗ:* (କ୍ରି.) : କଥା ବଦଳାଇବା

**ବାଉଁଶ କୁମ୍ଭ** - *ଗ:* (ବି.) : ବାଉଁଶ ବୁଦା

**ବାଉଁଶପତ୍ରି** - *ଗଦ୍ୟ:କେନ୍ଦୁ:କଳା:ଗ:* (ବି.) : ବାଉଁଶପତ୍ର ପରି ସରୁ ଧଳା ମାଛ

**ବାଉଁଶରାଣୀ** - *ଗ:* (ବି.) : କେଳା ନାଚର ଖେଳ, ଝିଅଙ୍କ ଦ୍ୱାରା ବାଉଁଶ ଉପରେ ପ୍ରଦର୍ଶିତ ଖେଳ

**ବାଉଁଶିଆ** - *ଢ:ନ:କ:କେନ୍ଦୁ:* (ବି.) : ବାଉଁଶ ବେତର ଛୋଟ ଆଧାର, ବାଉଁଶ ପାତିରୁ ନିର୍ମିତ ପାତ୍ର, ଡାଲା

**ବାଉଁସୁଣୀ** - *ଗ:* (ବି.) : ବାଉଁଶ ଗଛର ଧାନଭଳି ଫଳ

**ବାଏଖୁଙ୍କେନ୍** - *ସୁବ:ସ:* (ବି.) : ବିଛୁଆଡି ପତ୍ର

**ବାଏଟ୍କର୍ବା** - *ସ:* (କ୍ରି.) : ବାରଣ କରିବା

**ବାଏଚେରେଷ୍ଟିଆ** - *ସୁବ:* (ବିଂ.) : ଖରାପ ଦିଗରେ ଗତି କରୁଥିବା ଲୋକ

**ବାଏଚୈଁଚିଆ** - *ସ:* (ବି.) : ଚଞ୍ଚଳ ମନ ହେବା, ଚଞ୍ଚଳ ହେବା

**ବାଏଡ଼ଙ୍କ୍** - *ସୁବ:* (ବି.) : ବାଇଡଙ୍କ

**ବାଏବି** - *ସୁ:* (ବି.) : ଅଯଥା, ଅନାବଶ୍ୟକ

**ବାଏବେ** - *କଳା:* (ବିଂ.) : ଉପର ଠାଉରିଆ ଭାବରେ

**ବାଏରୀ** - *ଗଦ୍ୟ:* (ବିଂ.) : ପାଗଳୀ

**ବାଏର୍** - *ଝା:ସୁବ:ସ:ବୌ:* (ବି.) : ପନିପରିବା ଚାଷ ହେଉଥିବା ଚାରିପଟେ ବାଡ଼ଥିବା ଜମି, ବାଡ଼ି ବଗିଚା

**ବାଏଲ୍** - *ନୁ:କଳା:* (ବି.) : ବାଲି

**ବାଏଲ୍ଛତି** - *ସ:କଳା:* (ବି.) : ଛତୁ ବିଶେଷ, ବାଲିଛତୁ

**ବାଏଁବାଏଁ** - *ନ:ବା:ଦେ:ସୁ:* (କ୍ରି.ବିଂ.) ଶୂନ୍ୟେଶୂନ୍ୟେ, ଅତି ସହଜରେ ଠକିବା

**ବାଓ୍ୱା** - *ଭ:* (ବି.) : ଭିଣୋଇ

**ବାକ୍ନା** - *ମା:* (ବି.) : ପହେଲି, ଢଗଢମାଳି

**ବାକ୍ଲା** - *ଗଦ୍ୟ:* (ବି.) : ବଲ୍କଳ,ପଟା

**ବାକଟ-କୁଳିଆ** - *ଗ:* (ବି.) : ଜାତିଭ୍ରଷ୍ଟ, ଜାରଜ

**ବାକନ୍** - *ମା:* (କ୍ରି.) : ଚିଡ଼େଇବା

**ବାକସ** - *ନ:କଳା:ସୁ:* (ବି.) : ବାକ୍ସ, ସିନ୍ଧୁକ, ପେଡ଼ି

**ବାକାରା** - *ଯା:* (ବି.) : ବରକୋଳିଗଛ

**ବାକି** - *କୋ:ନ:ଦେ:* (ବି.) : ବଳକା, ଧାର, ଭବିଷ୍ୟତରେ ପରିଶୋଧ କରିବା, ବକେୟା, ବଳକା ଉଧାର

**ବାକିଟି** - *ଗଢ:* (ବି.) : ମାଛ ଧରିବା ସ୍ୱତନ୍ତ୍ର ଜାତି

**ବାକୁଲାଉଠିବା** - *ଖୋ:* (କ୍ରି.) : ଗୋଡ଼ହାତ ଘୋଳିହେବା, ବିନ୍ଧିବା

**ବାକୁଲା ପଶିବା** - *ଜ:* (ବି.) : ଶରୀରରେ ବାୟୁ ସଂଚାଳିତ ହେବାରେ ବାଧା

**ବାକୁଲି** - *ଅନେ:* (ବି.) : ଶଗଡ଼ରେ ଲାଗୁଥିବା ଏକ ଛୋଟ କାଠ ଦଣ୍ଡ

**ବାଖ୍ନୀ** - *ବୌ:* (ବି.) : ବଡ଼ କଥା, ଫୁଟାଣି, ବଡ଼ିମା

**ବାଖ୍ଳୀ** - *ଦେଶୀ* (ବି.) ଯୁଆଳିର ଅଂଶବିଶେଷ

**ବାଖର** - *ଖୋ:ଗ:* (ବି.) : ହାଣ୍ଡିଆରେ ପଡୁଥିବା ଏକ ପ୍ରକାର ନିଶାଦ୍ରବ୍ୟ ଘୋଡ଼ା ପିଠିର ଆସନ

**ବାଖରା** - *ଖୋ:ବା:* (ବିଂ.ବି.) : ଦୁଷ୍ଟ, ବଖରା, ଜମି ଭାଗଦେବା

**ବାଖାଳି** - *ବା:* (ବି.) : ବଡ଼ ପରିବାର

**ବାଖୁଲି** - *ବା:* (ବି.) : ସହିପଡ଼ିଶା

**ବାଗ** - *ଅନେ:* (ବି.) : ଢଙ୍ଗ, ଘୋଡ଼ାକୁ ଆୟତ୍ତ କରିବା ରଜ୍ଜୁ, ଶୈଳୀ, ପ୍ରକାର, ନିୟମ, ଧାରା, ଭଲ, ଗଉଡ଼ ଓ ହରିଜନଙ୍କ କୌଳିକ ସାଙ୍ଗିଆ

**ବାଗ୍‌ଧରା** - *ସ:କଳା:* (ବିଂ.ଅ.) : ପୁରୁଷମାନଙ୍କ ପାଇଁ ପ୍ରୟୋଗ ହେଉଥିବା ଗାଳି

**ବାଗ୍‌ଲି** - *ଦେଶୀ* (ବିଂ.) : କାନମୂଳଠାରୁ କପାଳ ଯାଏ ଲମ୍ବିଥିବା କେଶଧାରୀ

**ବାଗ୍‌ଲିଆ** - *ଦେଶୀ* (ବି.) : ବାଳଧରା ଲୋକ

**ବାଗଡ଼ି** - *ସୁ:* (ବି.) : ତିନିକୋଣି କାଠର ଖେଳ

**ବାଗଧରିବା** - *ଗ:* (କ୍ରି.) : ସ୍ଥିତି ସୁଧାରିବା

**ବାଗନା** - *ଭ:* (ବି.) : ବଗିଚା

**ବାଗବରଗ** - *ଦେ:ଗ:* (ବି.) : ନୀତି, ନିୟମ, ରୀତି, ସୁନ୍ଦର, ସୁଗଠ ଠାଣି

**ବାଗର** - *ନ:* (ବିଂ.) : ଭଲ, ସୁଧାର

**ବାଗି** - *ନ:ଦେ:* (ବି.) : କୋଳସନ୍ଧି ଜଙ୍ଘ ସନ୍ଧିରେ ବ୍ରଣ ବାହାରିବା

**ବାଗିଆ** - *ଦେ:* (ବିଂ.) : ସୁଧାର, ଭଲ

**ବାଗିର** - *ଅନେ:* (ଅ.ସ.ବିଂ.) : ପରି, ବାଗର, ସଦୃଶ, ଭଳିଆ, ଭଳି, ଉପମାବାଚକ ଶବ୍ଦ

**ବାଗୁଡ଼ି** - *ଅନେ:* (ବି.) : କବାଡ଼ି ଖେଳ ପରି ଏକ ଖେଳ, ଡୁଡୁଖେଳ, କିତି କିତି ଖେଳ

**ବାଗୁରା** - *କେ:ସଂ:* (ବି.) : ଜାଲ, ଫାଶ

**ବାଗୁଲି** - *ନ:* (ବି.) : ଏକ ଘାସ ଏବଂ ସେଥିରେ ନିର୍ମିତ ଦଉଡ଼ି

**ବାଗେଇକି** - *ନ:* (କ୍ରି.ବିଂ.) : ଭଲକରି, ବୁଝାଇକରି

**ବାଗେଇବା** - *ନ:* (କ୍ରି.) : ଭଲକରି ସଜାଡ଼ିବା, ମଣେଇବା

**ବାଘ** - *ଦେ:କଳା:* (ବି.) : ହିଂସ୍ରଜନ୍ତୁ ବିଶେଷ, ଉପାଧି

**ବାଘ୍‌ଟେଣ୍ଟେକୋ** - *କଳା:* (ବି.) : ସବୁଜରଂଗର ଅପେକ୍ଷାକୃତ ବଡ଼ ବଣୁଆ ଏଣ୍ଡୁଅ

**ବାଘ୍‌ଧରା** - *ନୂ:* (ଅ.) : ଗାଳିଦେବା ଅର୍ଥରେ

**ବାଘଛେଳି** - *ଗ:* (ବି.) : ଏକ ପ୍ରକାର ଖେଳ

**ବାଘନାଟ** - *ଗ:* (ବି.) : ବାଘ ବେଶରେ ଏକ ପ୍ରକାର ଲୋକନୃତ୍ୟ

**ବାଘ ପଞ୍ଜରିଆ** - *ଗ:* (ବି.) : ଶକ୍ତ

**ବାଘମହୁ** - *ଦେ:* (ବି.) : ବାଘଆମାଛି ଦ୍ୱାରା ସଂଗୃହୀତ ମହୁ

**ବାଘରା** - *ରା:* (ବିଂ.) : ଗେଡ଼ା, ବାଙ୍ଗରା

**ବାଘେନ୍** - *କଳା:* (ବି.) : ବାଘୁଣୀ, ମାଈବାଘ

**ବାଙ୍କ** - *ଦେ:କେ:ନ:* (ବି.ବିଂ.) : ବୁଲାଣି, ମୋଡ଼, ବକ୍ରଥିବା ରାସ୍ତା, ସ୍ତ୍ରୀ ଲୋକଙ୍କ ବାହୁରେ ପିନ୍ଧା ଅଳଂକାର

**ବାଙ୍କଡ଼ା ଟାଙ୍କଡା** - *କୋ:* (ବିଂ.) : ଅଙ୍କାବଙ୍କା

**ବାଙ୍କି** - *ଚ୍ୟ:* (ବି.) : ନାରୀ ପାଦର ଅଳଂକାର ବିଶେଷ

**ବାଙ୍କୁଲୀ** - *କେ:* (ବି.ବିଂ.) ବେଙ୍ଗଳା ପକାଇବା ସମୟରେ ବ୍ୟବହୃତ ବାକୁଲି, ବଙ୍କା ଅଂଶଥିବା (ବାଡ଼ି)

**ବାଙ୍କୋଇ** - *ଖୋ:* (ବି.) : ଏକପ୍ରକାର ଧାନ

**ବାଙ୍ଗଟି ଘୁଲି** - *ନୂ:* (ବି.) : ଛୋଟ ବଙ୍କା ଗେଣ୍ଡା

**ବାଙ୍ଗରମାଦି** - *କେନ୍ଦୁ:* (ବି.) : ଧଳାରଙ୍ଗର ଦୀର୍ଘମିଆଦି ଧାନ

**ବାଙ୍ଗରମାଧେଇ** - *ଢ:* (ବି.) : ଧାନକିସମ, ଏକ ପ୍ରକାର ଧାନର ନାଁ

**ବାଙ୍ଗରା** - *ଅନେ:* (ବିଂ.ବି.) ଗେଡ଼ା, ଖର୍ବକାୟ, ଠୁବୁରୁ

**ବାଙ୍ଗା** - *ନ:କୋ:* (ବିଂ.ବି.) : ଗେଡ଼ା, ବାଇଗଣ

**ବାଙ୍ଗାରାମ** - *ଗଜ:* (ବି.) : ସୁନା

**ବାଙ୍ଗିଆ** - *ନବ:* (ବି.) : ବାହୁଣା

**ବାଙ୍ଗିତା** - *ମା:* (ବି.) : ବାଇଗଣ

**ବାଙ୍ଗୁଆ** - *କୋ:* (ବି.) : ନଡ଼ିଆ ବା ଖଜୁରୀ ଗଛର ଲମ୍ବା ଡାଳ ବା ବାଉଁଶ

**ବାଙ୍ଗୁରୁ** - *ଢ:* (ବିଂ.) : ଅଳ୍ପଉଚ୍ଚତା ବିଶିଷ୍ଟ

**ବାଘେଣି** - *କନ୍ଧ:* (ବି.) : ବାଇଗଣ

**ବାଚା** - *ସୁ:ଦେ:ଗ:* (ବି.) : ଆଦିବାସୀ ନାଚ, ଛୁଆ, ବଚାମାଛ, ପିଲା, ପୁତ୍ର

**ବାଚୁ** - *ଦେ:* (ବି.) : ଦାଢ଼ି

**ବାଛ କରିବା** - *ସୁବ:* (କ୍ରି.) : ଜାତି ଧରିବା

**ବାଛି** - *ଅନେ:* (ବି.) : ମାଈ ବାଛୁରୀ

**ବାଛୁଆରି** - *ଢ:* (ବିଂ.) : ବଛା ପରେ ବଳକା

**ବାଛୁରା** - *ଢ:* (ବି.) : ଗୋ-ରୋଗ ବିଶେଷ ବାଛୁରୀ-ଗାଈର ପିଲା

**ବାଜ** - *ନ:ଦେ:ସ:* (ବି.) : ଗାଈଗୋରୁଙ୍କର ମୁହଁରୁ ବାହାରୁଥିବା କର୍ମକ୍ଳାନ୍ତ ଫେଣ, ଛଞ୍ଚାଣ

**ବାଜ୍ନା** - *ଚୌ:* (ବି.) : ବାଦ୍ୟ

**ବାଜ୍‌ରେଣ୍ଡ୍ କଁଟା** - *ସ:* (ବି.) : ସପ୍ତଫେଣୀ

**ବାଜବନ୍ଧ** - *ଗ:* (ବି.) : ବାହୁ ଅଳଙ୍କାର

**ବାଜରା** - *ଦେ:ଗ:ଢ:* (ବି.) : ମକାପରି ଏକ ପ୍ରକାର ଶସ୍ୟ

**ବାଜି** - *ଦେ:ଖୋ:ମା:ଢ:* (ବି.) ପ୍ରତିଯୋଗିତା, ପଣ

**ବାଜିଣୀ** - *ଅନେ:* (ବିଂ.) ପତଳା ଚେହେରାର ଝିଅ, ଚରିତ୍ରହୀନା

**ବାଜିମାତ୍** - *ଖୋ:ସଂ:ଦେ:* (କ୍ରି.ବିଂ.ବି.) ଜିଣିବା, ଲାଭରେ ରହିବା, ବିବାଦରେ ଜିତିବା, ଖେଳରେ ଜୟଲାଭ କରିବା

**ବାଜିରି** - *ଯା:* (ବି.) : ବାଦୁଡ଼ି

**ବାଜୀକରିଆ** - *ଗଦ୍ୟ:* (ବି.) : କେଳାଙ୍କାତି, ଐନ୍ଦ୍ରଜାଲିକ, ଯାଦୁଗର

**ବାଙ୍କୁ** - *କେ:ବେ:* (ବି.) : ବାହୁ ଅଳଙ୍କାର, ମୁହଁରୁ ବାହାରୁଥିବା ଲାଳ

**ବାଙ୍କେଣି** - *ଖୋ:ଗ:ପୁ:* (ବିଂ.ବି.) : ଅଭିଜ୍ଞଲୋକ, ବାଙ୍କୁଥିବା ପାକଳ ନଡ଼ିଆ, ବହୁଶଯ୍ୟା ସଙ୍ଗିନୀ, ଚରିତ୍ରହୀନା, ଅଳଙ୍କାର ବିଶେଷ

**ବାଞ୍ଚଣ, ବାନ୍ଧଣ** - *ନ:* (ବି.) : ଏକ ବୃକ୍ଷର ନାମ, ଯେଉଁ କାଠରେ ଶଗଡ଼ ନିର୍ମାଣ କରାଯାଏ, ବାନ୍ଧଣ

**ବାଞ୍ଜି** - *କଥ:* (ବି.) : ବାଉଁଶବୁଦା

**ବାଞ୍ଜିକୁସୁମ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ବାଞ୍ଝମୁଣ୍ଡା** - *ସଂ:* (ବିଂ.) : ସ୍ତ୍ରୀଲୋକଙ୍କ ପିଲା ନହେବା, ବନ୍ଧ୍ୟା

**ବାଟ୍‌କଡଭ** - *କଳା:* (ବିଂ.) : ପଥ ପ୍ରଦର୍ଶକ, ଉପଦେଷ୍ଟା

**ବାଟ୍‌ଦୁଆର୍** - *କଳା:* (ବି.) : ମୁଖ୍ୟଦ୍ୱାର

**ବାଟଓଷା** - *ଅନେ:* (ବି.) : ଗାଁର ତିନିଛକ ବାଟରେ ପିଠାକରି ପୌଷକୃଷ୍ଣ ଦ୍ୱିତୀୟାରେ ଯେଉଁ ବ୍ରତ ନାରୀମାନେ କରିଥାନ୍ତି, ଗାଁ ମଝିରେ ରାସ୍ତାରେ ଯମରାଜାଙ୍କ ପାଇଁ ହେଉଥିବା ପୂଜା

**ବାଟ-ଘଷ** - *ପୁ:* (ବି.) : ବିବାହ ଓ ବ୍ରତୋପନୟନର ଦୁଇଦିନ ପୂର୍ବ। ଏହି ଦିନ ବିରି ବଟାବଟି ହୁଏ, ପିଠଉ, ତେଲ, ହଳଦୀ ସାହିଭାଇ ବା ଆତ୍ମୀୟ ସ୍ୱଜନଙ୍କ ଘରେ ବଣ୍ଟାଯାଏ

**ବାଟଣ** - *ଅନେ:* (ବି.) ବେସର, ବଟାମସଲା

**ବାଟବରଣ** - *ଅନେ:* (ବି.) : ବରକୁ ବାଟରୁ ବରଣ କରିବା

**ବାଟି** - *ଅନେ:* (ବି.) : ବଣି ପକ୍ଷୀ, ୨୦ ମାଣ, ପିଲାଙ୍କ ଏକ ଖେଳ ଉପକରଣ, କାଚ ବା ପଥରଗୁଳି, ଏକପ୍ରକାର ଛୋଟ ବାସନ

**ବାଟିଆ** - *ଅନେ:* (ବି.) : ଛୋଟନାଳ, ବିଲ ବେଉଷଣ କରିବାବେଳେ ଲଙ୍ଗଳରେ ଲାଗିଥିବା ଘାସ ମିଶ୍ରିତ କାଦୁଅ, ବିଲକୁ ପାଣିଯିବା ରାସ୍ତା, ବାଟୋଇ, ଅଢୁଆ, ଦୁର୍ନାମ

**ବାଟିଆ ଛଡ଼ାଇବା** - *ଦେ:* (କ୍ରି.) : ଦୋଷମୁକ୍ତ ହେବା

**ବାଟିଗିନା** - *ଗ:* (ବି.) : ଛୋଟ ପାତ୍ର

**ବାଟୁନ୍** - *କଳା:* (କ୍ରି.) : ବାଟରୁ, ବାଟନ୍ତୁ

**ବାଟୁଳା** - *ଗ:* (ବି.) : କଞ୍ଚା ମଟର ଚଣା, ବଟାଯାଇଥିବା ବସ୍ତୁର ଛୋଟ ଗୁଳା

**ବାଟୁଳା ମାଛ** - *ଚ:* (ବି.) : ପୋହଳା ମାଛ

**ବାଟୁଳି** - *ଦେ:ସଂ:ଯା:* (ବି.) : ମାଟି ବା ଲୁହାରେ ତିଆରି ଗୁଳି, ଦୁଇକେନା କାଠିରେ ରବର ବାନ୍ଧି ଗୁଳି ମାରିବା ଯନ୍ତ୍ର, ଏକ ପ୍ରକାର ଛୋଟ ମାଛ

**ବାଟୁଳିଖେଢ଼ା** - *ଅନେ:* (ବି.) : ତ୍ରିଭୁଜାକାର କାଠ ଖଣ୍ଡରେ ରବର ଲାଗି ମାଟି ପିଣ୍ଡୁଳା ନିକ୍ଷେପ ସାଧନ

**ବାଟେଇ** - *ନ:* (ବି.) : କାଠର ଚକ୍ରାକାର ଯନ୍ତ୍ରକୁ ଜଙ୍ଘରେ ରଖି ସୂତୁଲି ପ୍ରସ୍ତୁତ କରିବା ଉପକରଣ

**ବାଟେଇଦେବା** - *ଅନେ:* (କ୍ରି.ବି.) : ବଳେଇ ଦେଇ ଆସିବା, ଗାଁ ମୁଣ୍ଡଯାଏଁ ଛାଡ଼ିଦେଇ ଆସିବା, ଜଣକ ପଛରେ କିଛି ବାଟ ଯାଇ ବିଦାୟଦେବା, ଅତିଥିକୁ ଛାଡ଼ିଆସିବା

**ବାଟେନେ** - *କଳା:* (ବି.) ବାଟରେ, ରାସ୍ତାରେ

**ବାଡତା** - *ରା:* (ବି.) : ଅଭିବୃଦ୍ଧି

**ବାଡୁନ୍** - *କଳା:* (ବି.) : ବାଡୁଣି, ଝାଡୁ

**ବାଡ଼** - *ଅନେ:* (ବି.) ସୁରକ୍ଷା ପାଇଁ ପ୍ରତିବନ୍ଧକ ସୃଷ୍ଟି କରିବା, ଝାଟି, ଡାଳ ପୋତି ନିର୍ଦ୍ଦିଷ୍ଟ ସ୍ଥାନକୁ ସୁରକ୍ଷା ବ୍ୟବସ୍ଥା

**ବାଡ଼ଦା** - *ରା:* (ବି.) : ବଳଦ

**ବାଡ଼ପାଣି** - *ଗଞ:* (ବି.) : ମଙ୍ଗୁଳା କନ୍ୟା, ବାଢୁଅପାଣି

**ବାଡ଼ବଢା** - *ଦେ:* (ବି.) : ପ୍ରତିବନ୍ଧକ

**ବାଡ଼ବତା** - *ବୌ:ଯା:* (କ୍ରି.ବିଂ.) : ସଠିକତା, ଠିକ୍ ଠିକଣା, ପ୍ରତିବନ୍ଧକ, ବାଧାବନ୍ଧନ

**ବାଡ଼ାବନ୍ଧୀ** - *ବୌ:* (ବି.) : ଘେର, ସୁରକ୍ଷା ବ୍ୟବସ୍ଥା

**ବାଡ଼ାବାଡ଼ି** - *ନ:* (ବି.) : ପରସ୍ପର ବାଡ଼ିରେ ମାଡ଼ଗୋଳ

**ବାଡ଼ି** - *ଅନେ:* (ବି.) : ବିସୂଚିକା ରୋଗ, ହଇଜା, ଠେଙ୍ଗା, ବାଉଁଶବାଡ଼ି, ଘର ସଂଲଗ୍ନ ଜମି, ଘରପଛ କାରବାର ସ୍ଥାନ, ବାନିୟନ, ଗଞ୍ଜି, ବ୍ଲାଉଜ୍

**ବାଡ଼ି ଅଅଁଳା** - *ଦେ:* (ବି.) : ଏକ ପ୍ରକାର ଚେରମୂଳ ଔଷଧଗୁଳ୍ମ

**ବାଡ଼ିଆବାଣ** - *ଅନେ:* (ବି.) : ପିଟାବାଣ, ଏକପ୍ରକାର ବାରୁଦ ଓ ଗୋଡ଼ି ମିଶ୍ରିତ ବାଣ

**ବାଡ଼ିକା, ୱାଡ଼ିକା** - *କୋ:* (ବି.) : ପ୍ରତିଦିନ ନିୟମିତ ଅଣାଯାଉଥିବା

**ବାଡ଼ିଖିଆ** - *ନ:ଖୋ:ସଂ:* (ବି.ବିଂ.) ହଇଜାରେ ମରଣ ହେବାକୁ ଅଭିଶାପ, ଏକ ପ୍ରକାର ଗାଳି

**ବାଡ଼ିଙ୍ଗା** - *କନ୍ଧ:* (ବି.) : ପଥର

**ବାଡ଼ି-ଡେଙ୍ଗାନି** - *ନୁ:* (ବି.) : ବାଡ଼ି ଡ଼ିଆଁ ଖେଳ

**ବାଡ଼ିଚାଟି** - *ଗ:* (ବି.) : ପାଇଖାନା

**ବାଡ଼ିପକେଇବା** - *ଜ:* (କ୍ରି.) : ପଥ ଅବରୋଧ କରିବା, ବାଧା ସୃଷ୍ଟିକରିବା

**ବାଡ଼ିବୁଟଲ** - *ଗଦ୍ୟ:* (ବି.) : ଏକ ପ୍ରକାର ପଲ୍ଲୀଗୀତ ଓ ନୃତ୍ୟ

**ବାଡ଼ିମଙ୍ଗଳ** - *ସୁ:* (ବିଂ.) : ଦୁଷ୍ଟ

**ବାହୁଅ** - *ସଂ:କ:ଦେ:ନ:* (ବି.ବିଂ.) : ବିବାହ କରିନଥିବା ପୁଅ ବା ଝିଅ, ଅବିବାହିତ, ମନ୍ତ୍ରସିକ୍ତ ପାଣି ପଡ଼ିଥିବା

**ବାଢ଼େଇଛାଟି** - *ଭ:* (ବିଂ.) : ବ୍ୟସ୍ତ

**ବାଢ଼େଇହେବା** - *ନ:* (କ୍ରି.) : ମାଡ଼ହେବା, ଉପରେ ପଡ଼ିବା

**ବାଢ଼ୋ** - *ସୁ:ସୁବ:* (ବି.ବିଂ.) ଅବିଆଡ଼ୀ, ଅବିବାହିତା ଯୁବତୀ

**ବାଢ୍‌ନି** - *କଣ:* (ବି.) : ଝାଡୁ

**ବାଢନ୍, ବାଢୁଣ୍** - *ମ:ଝ:* (ବି.) : ଝାଡୁ

**ବାଣଖମାଣ** - *ଭ:* (ବି.) : ଫୁଟାଇବା ସାମଗ୍ରୀ

**ବାଣ-ବୁଡଲ୍** - *ନୂ:* (ବି.) : ଯାହାର ଲାଞ୍ଜ ନଥାଏ, ଦଣ୍ଡ ନାଟର ଏକ ଚରିତ୍ର

**ବାଣସା** - *ଗଦ୍ୟ:* (ବି.) : ଫେଣୀ(ମିଷ୍ଟାନ୍ନ), ଖଜୁରୀଗୁଡ଼ରେ ତିଆରି ହଳଦିଆ ଗୋଲ ମିଠା

**ବାଣାବାଡ଼ି** - *ଗଜ:ଗ:* (ବି.) : ବାଡ଼ିଖେଳ ପ୍ରଦର୍ଶନ, ପାଇକ ଆଖଡ଼ାର ଠେଙ୍ଗା

**ବାଣାୟତ** - *ଗ:* (ବି.) : ପାଇକ ଜାତିର ଲୋକ, ଗଂଜାମର ବାଣାୟତ ଓଡ଼ିଆ ନାମକ ଜାତି

**ବାଣି** - *ଅନେ:* (ବି.ବିଂ.) : ମଶିଣାବୁଣାପାଇଁ କଟାଯାଉଥିବା ସୂତୁଲି ବାଟେଇ ସାହାଯ୍ୟରେ ଝୋଟ ତିଆରି ସୂତା

**ବାଣୁଆ** - *ଦେ:ନ:* (ବି.) : ଶିକାରୀ

**ବାଣ୍ଟକୁଣ୍ଡ** - *ଚୌ:* (କ୍ରି.) : ଭାଗକରିବା

**ବାଣ୍ଟିଆ** - *ବା:ନ:* (ବି.ବିଂ.) : ଗେଡ଼ା, ଅଳ୍ପ ଉଚ୍ଚତା ବିଶିଷ୍ଟ

**ବାଣ୍ଟୁ** - *ଅନେ:* (ବିଂ.) ବାଙ୍ଗରା, ଗେଡ଼ାମଣିଷ

**ବାଣ୍ଡି** - *ଅନେ:* (ବି.ବିଂ.) : ଖଣ୍ଡିଆ, ଫୁଙ୍ଗୁଳା, ଗାଡ଼ି, ଖଣ୍ଡିଆ ଲାଙ୍ଗୁଡ଼, ଲାଂଜ ନ ଥିବା, ଶଗଡ଼ଗାଡ଼ି

**ବାତ୍‌ଫୁର୍‌ସି** - *ବା:* (ବି.) ଟାଉଟରୀ, ମୂଲ୍ୟହୀନ କଥା

**ବାତଜର** - *ଅନେ:* (ବି.) ବାତଜ୍ୱର-ଫାଇଲେରିଆ, ଗୋଦରାଗୋଡ଼ ଯୋଗୁଁ ହେବା ଜ୍ୱର, ରୋଗ ବିଶେଷ

**ବାତପିଙ୍ଗୁଳିଆ** - *ନ:* (ବିଂ.) : କଥାବାର୍ତ୍ତାରେ ତାଳମେଳ ନରହିବା

**ବାତପିତିଆ** - *ନ:* (ବିଂ.) : ବାତୁଳ ପରାୟ ହେବା, କଥାକଥାରେ ସଙ୍ଗତ ନରହିବା

**ବାତପୁରୁସି** - *ଭ:* (ବି.) : କାମ ନକରିବା ପାଇଁ ଅଭିନୟ

**ବାତବିକାର** - *ଗ:* (ବି.) : ଗଣ୍ଠି ମଜ୍ଜା ମାଂସପେଶୀ ଯନ୍ତ୍ରଣା ରୋଗ

**ବାତରା** - *ନ:ଯା:ଗ:କେ:* (ବିଂ.) : ଲଗାମହୀନ (ବ୍ୟକ୍ତି), ବିଶୃଙ୍ଖଳିତ ବ୍ୟକ୍ତି, ଛତରା, ବାରବୁଲା, ଦିଗହୀନ, କୁବୁଦ୍ଧି, ଦୁଷ୍ଟ, ଖଳ

**ବାତସା** - *ବା:* (ବି.) : ଚିନି ଓ ଚାଉଳ ଚୂନାରେ ତିଆରି ମିଷ୍ଟାନ୍ନ ଦ୍ରବ୍ୟ

**ବାତାଖାନି** - *କୋ:ଗଜ:ରା:* (ବି.) : ଅର୍ଥହୀନ ବା ଉଦ୍ଦେଶ୍ୟହୀନ ବାର୍ତ୍ତାଳାପ, ଅଯଥା ଆଲୋଚନା, ମୂଲ୍ୟହୀନ ଆଲୋଚନା

**ବାତାପି** - *ଢ଼.ଢ଼.ସଂ.ଖୋ.* (ବି.) : କମଳା ଜାତୀୟ ବଡ଼ ଫଳବିଶେଷ

**ବାତିନି** - *ଢ଼.* (ବି.) : କଥା, ଖବର, ସନ୍ଦେଶ, ଫୁଟାଣି, ଗର୍ବପ୍ରକାଶ

**ବାତିଲ୍** - *ଦେ.ସଂ.* (ବିଂ.ବି.) : ରଦ୍ଦ, ଅସିଦ୍ଧ, ସ୍ଥଗିତ ରହିବା

**ବାତିଶ** - *ଯା.* (ବି.) : କାଠ ଖୋଳା ଯନ୍ତ୍ର

**ବାତିହାଣ୍ଡି** - *ଗ.* (ବି.) : ମୃତ୍ୟୁପରେ ମୃତ ବ୍ୟକ୍ତିର ନାତି, ପଣନାତି, ଅଣନାତି ଇତ୍ୟାଦି ଶ୍ମଶାନରେ ଦେଉଥିବା ବତୀ ହାଣ୍ଡି

**ବାତୁ** - *ଗ.* (ବି.) : ହଂସ

**ବାତୁଆ** - *ସୁବ.* (ବିଂ.) : ବାତ ହୋଇଥିବା ଲୋକ

**ବାତୁରା** - *ଢ଼.* (ବିଂ.) : ଯାଯାବର, ଅସ୍ଥିର

**ବାତୁଳ** - *ଢ଼.ଦେ.* (ବିଂ.ବି.) : ପାଗଳ

**ବାତୁଳିଆ** - *ଖୋ.* (ବିଂ.) : ଅସନ୍ତୁଳିତ ମାନସିକତା

**ବାତେଣ୍ଡି** - *ନ.* (ବି.) : ଯୁକ୍ତି ତର୍କ

**ବାତେନି** - *ଖୋ.ଅ.* (ବି.) : ବାର୍ତ୍ତା, ଖବର, ବାତିନି, ଫୁଟାଣି

**ବାଦ** - *ଦେ.* (ବି.) କଳି, ଝଗଡ଼ା, ପ୍ରତିଯୋଗିତା, ଦ୍ୱନ୍ଦ୍ୱ

**ବାଦ୍‌ଲିଆ** - *ସ.ଗୌ.* (ବିଂ.ବି.) : ମେଘୁଆ ପାଗ

**ବାଦ୍‌ହେବା** - *କୋ.* (କ୍ରି.) : ମରିଯିବା, ଅଲଗା ହେବା

**ବାଦକ** - *ଦେ.* (ବି.) : ଯେ ବଜାଏ

**ବାଦକମ୍** - *ଗଞ.* (ଅ.) : ଆଳସ୍ୟ

**ବାଦଡ଼ା** - *ଗ.କୋ.* (ବି.) ରାତ୍ରିଚର ସ୍ତନ୍ୟପାୟୀ ପକ୍ଷୀ, ବାଦୁଡ଼ି

**ବାଦନା** - *ଗଞ.* (ବି.) କଚେରୀରେ ସାକ୍ଷୀମାନଙ୍କ ପ୍ରଶ୍ନୋତ୍ତର

**ବାଦବୁଦିଆ** - *ଗ.* (ବି.) : ବିବାଦ, ପ୍ରତିଦ୍ୱନ୍ଦିତା

**ବାଦ ମାରିବା** - *କୋ.* (କ୍ରି.) : ବାଜି ମାରିବା

**ବାଦରା** - *ନ.* (ବି.) : ବାଦୁଡ଼ି; ନିଜ ମୁହଁରେ ମଳତ୍ୟାଗ କରୁଥିବା ପକ୍ଷୀ

**ବାଦଲିଆ** - *ସୁ.* (ବିଂ.) : ମେଘୁଆ

**ବାଦଳି** - *ସୁ.* (ବି.) : ବାଦୁଡ଼ି

**ବାଦାକାମ୍** - *ଗଞ.* (ବି.) : କଷ୍ଟ, ଅମଙ୍ଗ

**ବାଦାହୁ** - *ମ.* (ବି.) : ଡାଳରେ ଛାଉଣୀ ବାଡ଼ି

**ବାଦାମ୍ବ** - *ଢ଼.* (ବି.) : କାଜୁଫଳ, ବାଦାମ

**ବାଦାଲ୍** - *ମ.* (ବି.) : ବାଡ଼

**ବାଦି** - *ଦେ.କଳା.ଖୋ.* (ବି.ବିଂ.) : ମୃଦଙ୍ଗର ଚମ ଦଉଡ଼ି, ଯେଉଁପକ୍ଷ ପ୍ରଥମେ ଅଭିଯୋଗ ଦାଏର କରିଥାଏ, ସଙ୍ଗୀତର ଏକ ଅଙ୍ଗ

**ବାଦୁ** - *କନ.* (କ୍ରି.) : ଆସ

**ବାଦୁଆ** - *ଅନେ.* (ବିଂ.) : ଈର୍ଷାଳୁ, କଳିଆ

**ବାଧକର** - *ନ.* (ବିଂ.) : ସମ୍ବେଦନଶୀଳ, ଦୁଃଖରେ ପଡ଼ିଥିଲେ ଯେ ସାହାଯ୍ୟ କରେ

**ବାଧା** - *ଭା:ଦେ:ଗଞ:* (ବି.) : ଶାରୀରିକ ଓ ମାନସିକ ପୀଡ଼ା, ପ୍ରତିବନ୍ଧକ, ବ୍ୟଥା, କଷ୍ଟ

**ବାଧିକି** - *ଅନେ:* (ବି.) : ରୋଗଗ୍ରସ୍ତ

**ବାଧିବା** - *ଅନେ:* (କ୍ରି.) : କାଟିବା, ଦୁଃଖ ଦେବା, କଷ୍ଟହେବା

**ବାଧେ** - *କେନ୍ଦୁ:* (ଅ.) : ହେୟ ଜ୍ଞାନ

**ବାନ** - *ଦେ:* (ବି.) : ଶୁଖାଫଳ, ଗତି, ଗମନ

**ବାନ୍ହିଁ** - *ସ:ସୁବ:* (ବି.) : ଝାଡୁ

**ବାନା** - *ଅନେ:* (ବି.ବିଂ.) ବାଲୁଙ୍ଗା, ଲୋଫର୍(ଗାଳି), ଶାଢ଼ିର ଧଡ଼ି, ପତାକା, ଧ୍ୱଜ, ନାମ, ଧ୍ୱଜା, ଯାଯାବର, ଛତରା

**ବାନାଖାଉଡ଼ିଆ** - *ପୁ:* (ବିଂ.) ବାତରା, ଛତରା, ଦାୟିତ୍ୱହୀନ

**ବାନି** - *ଗଦ୍ୟ:କଳା:ନୂ:* (ବିଂ.ବି.) ଭଲ, ପ୍ରକାର

**ବାନ୍ତୁ** - *ଗଞ:ଗ:କୋ:ନବ:* (ବି.) : ପେଣ୍ଡୁ, ବଲ୍

**ବାନ୍ତୁଳିବା** - *ନବ:* (କ୍ରି.) : ଖନି ମାରିବା

**ବାନ୍ଦ** - *ରଘ:* (ବି.) : ବନ୍ଧ, ଜଳଜ ଉଦ୍ଭିଦ ଦ୍ୱାରା ପ୍ରସ୍ତୁତ ବନ୍ଧ

**ବାନ୍ଦର** - *ଦେ:ମ:* (ବି.) : ପାତି ମାଙ୍କଡ଼

**ବାନ୍ଦୁ** - *ସୁବ:ସ:* (ବି.ବିଂ.) : ବଡ଼ ପେଟା, ମୂର୍ଖ, ଓଲା

**ବାନ୍ଦେନ** - *ସୁବ:* (ବି.) : ଏକ ଜଙ୍ଗଲୀ ବୃକ୍ଷର ନାମ

**ବାନ୍ଧନ୍** - *କଳା:* (ବି.କ୍ରି.) : ସରୁ ଛାଲି ଥିବା ଧଳାରଂଗର ଶକ୍ତ ଜଂଗଲି ବୃକ୍ଷ, ବାନ୍ଧିବା, ବନ୍ଧନ

**ବାନ୍ଧଲା ବୁକା** - *କଳା:* (ବିଂ.) : ଆଜ୍ଞାଧୀନ, ଆୟତ୍ତାଧୀନ

**ବାନ୍ଧା** - *ମା:* (ବି.) : ବନ୍ଧକ

**ବାନ୍ଧିବା** - *ଅନେ:* (କ୍ରି.) : ଏକାଠି କରି ସୂତା ବା ଦଉଡ଼ିରେ ଗଣ୍ଠି ପକାଇବା, ଟଙ୍କା ଜମା କରିବା, ଜମାକରିବା, ଅଟକେଇବା, ସଂପର୍କ ସ୍ଥାପନ କରିବା

**ବାପୁଡ଼ା** - *ମା:* (ବି.) : ଲୋକ

**ବାପଛେଉଣ୍ଡ** - *ଅନେ:* (ବିଂ.) : ଯାହାର ବାପ ମରିଛି

**ବାପତିପିର** - *ତା:* (ବି.) : ପୈତୃକ ସମ୍ପତ୍ତି

**ବାପା** - *ଜ:* (ବି.) ବୁଢ଼ାବାପା, ଜେଜେବାପା(ବ୍ରାହ୍ମଣମାନଙ୍କର), ପିତା

**ବାପୁରା** - *ଚୌ:ଅ:* (ବିଂ.ବି.) : ବାପୁଡ଼ା, ବିକ୍ରି କରିବାବାଲା

**ବାପୁରିଆ** - *ଢେ:* (ବିଂ.) ସରଳ ଓ ସାଧାସିଧା

**ବାପୁରୁ ଫିଟିବା** - *ଗ:* (କ୍ରି.) : ନିଜ ଅଧିକାରରୁ ଚାଲିଯିବା

**ବାସ୍ତା** - *ସୁବ:* (ବି.) : ମଠା ଲୁଗା

**ବାବଦ୍** - *ଦେ:* (ବି.) : ସମ୍ପର୍କ, ହିସାବ, ବାବଦ

**ବାବନାଭୂତ** - *ଗ:ଦେ:* (ବି.) : ଭୂତ ପରି ଏଣେ ତେଣେ ବୁଲୁଥିବା ଲୋକ

ବିଶେଷ, ପୁରୀ ଗୁଣ୍ଡିଚା ଘରେ ଥିବା ଅଦୃଶ୍ୟ ଭୂତ

**ବାବରା** - *ଦେ:* (ବି.) : ବାରବୁଲା, ଯାଯାବର

**ବାବା** - *ଅନେ:* (ବି.) : ବଡ଼ବାପା, ସାଧୁ, ସନ୍ୟାସୀ, ବାବାଜୀ

**ବାବାସ୍** - *ଦେ:* (ବି.) : କାଠ ପେଡ଼ି

**ବାବୁଗିରି** - *ସଂ:* (ବି.) : ବଡ଼ଲୋକୀପଣ

**ବାବୁରବୁଆ** - *ସୁ:* (ବି.) : ପୁଅରବାପ, ସ୍ୱାମୀ

**ବାବୁରି** - *ନ:ଢେ:* (ବିଂ.) : ଅଳ୍ପକେଶ ରଖିବା, କୁଞ୍ଚିତ କେଶ

**ବାବେଇ** - *ମ:* (ବି.) : ସବାଇ ଘାସ

**ବାଭ୍‌ନି** - *ନୁ:* (ବି.) : ଆଷାଢ଼ ମାସରେ ଦେଖାଯାଉଥିବା କଳା ହଳଦିଆ ରଙ୍ଗର ଚିତ୍ରିତ ବିଷହୀନ ସର୍ପ ବିଶେଷ

**ବାଭୁଣ** - *ଚ:* (ବି.) : ବ୍ରାହ୍ମଣ

**ବାଭେ** - *ଢେ:* (ବି.) : ପୂଜ୍ୟଲୋକ

**ବାମ୍‌ନେନ୍** - *କଳା:* (ବିଂ.) : ବ୍ରାହ୍ମଣ ଜାତିର ସ୍ତ୍ରୀ ଲୋକ, ବ୍ରାହ୍ମଣୀ

**ବାମନ** - *ଅନେ:* (ବିଂ.ବି.) : ବାଙ୍ଗର, ଗେଡ଼ା, ଅତିଛୋଟ, ବ୍ରାହ୍ମଣ

**ବାମରା** - *ଗଦ୍ୟ:* (ବି.) : ମଶାଲ, ଦିହୁଡ଼ି

**ବାମହନ୍** - *ସୁବ:* (ବି.) : ବ୍ରାହ୍ମଣ

**ବାମହିନୀ ବୁଇ** - *ସୁବ:* (ବି.) : ଏକ ପ୍ରକାର ବିଷହୀନ ସର୍ପ, ବାମ୍‌ହିନୀ ସାଁପ-(ସମ୍ବଲପୁର)

**ବାମି** - *ଗଜ:କୋ:* (ବି.) : ତୋଡ଼ିମାଛ, କାତି ବିହୀନ ମାଛ ବିଶେଷ

**ବାମୁଣ** - *ଗ:ଭା:ନବ:* (ବି.) : ବ୍ରାହ୍ମଣ

**ବାମ୍ଫି** - *ଅନେ:* (ବି.) : ବଡ ଗଭୀର କୂଅ, କ୍ଷୁଦ୍ର ପୁଷ୍କରିଣୀ

**ବାମ୍ଫୁଆଣି** - *ଭ:* (ବି.) : ଜଳୀୟ ଔଷଧାଂଶ, ବାମ୍ଫ ଦେବା ପଦ୍ଧତି

**ବାମ୍ବା** - *ଭା:* (ବିଂ.) : ମୂର୍ଖ

**ବାମ୍ବଦେଈ** - *କଳା:* (ବି.) : ଗ୍ରାମ୍ୟଶିଶୁ ଖେଳର କାଳ୍ପନିକ ଦେବୀ

**ବାୟକ** - *ଅନେ:* (ବି.) : ବାଦକ, ବାଦ୍ୟକାର

**ବାୟା** - *ଅନେ:* (ବି.ବିଂ.) : ପାଗଳ, ବିକୃତ ମସ୍ତିଷ୍କ ବ୍ୟକ୍ତି

**ବାୟାବୀ** - *ଛ:* (ବି.) : ବ୍ୟାଖ୍ୟାନ

**ବାୟାହଣ୍ଡା** - *ନ:* (ବି.) : ଏକ ଧାନ (ଶସ୍ୟର ନାମ)

**ବାୟାହୁଣ୍ଡାଲ୍** - *କଳା:* (ବି.) ସାମାନ୍ୟ ଲାଲ୍‌ରଂଗର ଦେଶୀ ବଡ଼ଧାନ

**ବାୟାଁ** - *ସୁବ:* (ବି.) : ମୃଦଙ୍ଗର ବାମପଟ, ବାଇଁଆ

**ବାୟେଁଶ** - *ଛ:* (ବି.) : ବାଉଁଶ

**ବାରକନ୍ଧା** - *ଗଦ୍ୟ:* (ବି.) : ବରଘର କନ୍ୟା ଘରକୁ ଦେଉଥିବା ସମସ୍ତ ଜିନିଷ

**ବାରଗୁଲିଆ** - *ସୁ:* (ବିଂ.) : ବାରମିଶା

**ବାରଘଇଡାକରି** - *ବୌ:* (ବିଂ.) : ଦାରୀ, ଚରିତ୍ରହୀନା

**ବାରଙ୍ଗ** - *ଯା:* (ବି.) : କତା ବେଣ୍ଟରେ ପଶୁଥିବା ଲୌହ ଅଂଶ

**ବାରଙ୍ଗା** - *କେନ୍ଦୁ:ଜଙ୍ଗ:* (ବି.) : ଏକ ପ୍ରକାର ଗଛ, ବାହାଙ୍ଗି

**ବାରଚାଉଳିଆ** - *ପୁ:* (ବିଂ.) : କଥା ଠିକ୍ ନରହିବା, ବାଚାଳ

**ବାରଜବାରଜ** - *ଗଡ଼୍ୟ:* (କ୍ରି.ବିଂ.) : ଅଲଗା ଅଲଗା

**ବାରଢ଼ାଙ୍ଗୁଆ** - *ଗ:* (ବି.) : ପ୍ରେତାତ୍ମା ଯାହାର ଉଚ୍ଚତା ନଡ଼ିଆ ଗଛ ଠାରୁ ଅଧିକ

**ବାରଣାଦିକଢ଼ା** - *ଗ:* (ବି.) : ହଇରାଣ ପରିସ୍ଥିତି, ଅତିଖରାପ ଅବସ୍ଥା

**ବାରଣାମସ୍ତର** - *ଖୋ:* (ବିଂ.) : ଭଲଜିନିଷ, ଉତ୍କୃଷ୍ଟତାକୁ ସୂଚାଉଛି

**ବାରଣି** - *ଦେ:* (ବି.) : ମନ୍ତ୍ରଦ୍ୱାରା ବାଘ, ଭାଲୁ, ହାତୀ ପ୍ରେତକୁ ବାନ୍ଧିବା

**ବାରଣ୍ଡା** - *ଅନେ:* (ବି.) : ଘରର ପ୍ରଶସ୍ତ ପିଣ୍ଡା

**ବାରତା** - *ନ:ଗ:* (ବି.) : ଖବର, ବାର୍ତ୍ତା, ସମ୍ବାଦ

**ବାରଦାଣ୍ଡି** - *ଗ:* (ବି.) ଏକ ପ୍ରକାର ଶାରୀରିକ ଖେଳ

**ବାରନ୍** - *ନୂ:* (ବି.) : ବାରଣ

**ବାରନ୍ଦା** - *ଅ:* (ବି.) : ବାରଣ୍ଡା

**ବାରପତ୍ରି** - *ବୌ:* (ବି.) : ଦ୍ୱାଦଶ ଦିନର ଶୁଦ୍ଧିକାମ, ବାରପତ୍ର ପକାଇବା

**ବାରପେଁଚଳିଆ** - *ସୁ:* (ବିଂ.) : ଛଳନାକାରୀ

**ବାର ବାଜିଯିବା** - *ନୂ:* (କ୍ରି.) : କାର୍ଯ୍ୟ ହାସଲ କରି ନପାରିବା, ଅବସ୍ଥା ଶୋଚନୀୟ ହେବା

**ବାରବାଟ** - *ଦେ:* (ବି.) : ବହୁ ଉପାୟ

**ବାରବାଣୀ** - *କଙ୍ଘ:* (ବିଂ.) : ବହୁପୁରୁଷ ଭୋଗ୍ୟା ନାରୀ

**ବାରବିଟ୍‌ଲିଆ** - *ସ:* (ବିଂ.) : ଜାତି କୁଳ ଛଡ଼ା ବ୍ୟକ୍ତି, ଜାତି କୂଳ ଗୋତ୍ର ଯା'ର କିଛି ନାହିଁ

**ବାରମଜା** - *ଅ:* (ବି.) : ମିକ୍ସଚର, ଅନେକପ୍ରକାର ଖାଦ୍ୟ ମିଶ୍ରିତ ସାମଗ୍ରୀ

**ବାରମାସୀ** - *ସ:ବୌ:ନୂ:କେନ୍ଦୁ:* (ବି.ବିଂ.) : ସଦା ବିହାରୀ ଗଛବିଶେଷ, ବର୍ଷସାରା

**ବାରଶବୟାଳିଶି** - *ନ:* (ବି.) : ଏକ ଧାନ (ଶସ୍ୟର ନାମ )

**ବାରଷ୍ଟ** - *ମ:* (କ୍ରି.) : ଫଟେଇବା, ବ୍ଲାଷ୍ଟ, ସାଇକେଲ ବା ମୋଟରଗାଡ଼ି ଟାୟାର ଫାଟିବା

**ବାରସି** - *ଅନେ:* (ବି.) : କାଠ କାଟିବା ଅସ୍ତ୍ରବିଶେଷ

**ବାରା** - *ସୁବ:ସୁ:* (ବିଂ.ବି.) : ବାୟା, ପାଗଳ, ବିରି ପକୁଡ଼ି

**ବାରାଦ୍** - *ବୌ:* (ବି.) : ବରର ଥାଟ ରୋଷଣି

**ବାରି** - *ସୁ:ଦେ:କେ:* (ବି.) : ବାଡ଼ି, ଘରପାଖ ବଗିଚା ବା ନିତ୍ୟ ବ୍ୟବହୃତ ସ୍ଥାନ

**ବାରିଆ** - *କ:* (ବି.) : ଏକପ୍ରକାର ବାଉଁଶ, ବାଡ଼ିଆ ବାଉଁଶ

**ବାରିକ** - *ଅନେ:* (ବି.କ୍ରି.) : ଭଣ୍ଡାରୀ, ନାପିତ, କୋଳଥିଆ ଓ ଭଣ୍ଡାରି ଜାତିର କୌଳିକ ଉପନାମ

**ବାରିକାନି** - *କଳ:* (ବି.) : ବାଡ଼ିପଟ

**ବାରିବା** - *ଦେ:କଳା:ଗ:ନ:* (କ୍ରି.) : ବାଛିବା, ପୃଥକ୍ କରିବା, ଅଲଗା କରିବା, ନିବାରଣ କରିବା, ଚିହ୍ନିବା

**ବାରିହା** - *ଗ:କୋ:* (ବି.) : ବରାହ, ବନ୍ୟ ଘୁଷୁରି, ବନ୍ୟ ଶୂକର, ବରାହ, ବାର୍ହା

**ବାରୁଆରି ଯାତ୍ରା** - *ଦ୍ୱ:* (ବି.) : ବିବିଧ ସାମଗ୍ରୀ କିଣା ବିକା ହେଉଥିବା ମେଳା

**ବାରୁଆଳି** - *ଦ୍ୱ:* (ବି.) : ବାରଘର ବୁଲୁଥିବା ସ୍ତ୍ରୀ ଲୋକ

**ବାରୁବିଚାର** - *ଭ:* (ବି.) : ଚିନ୍ତାକରି ସ୍ଥିର କରିବା

**ବାରୁମ୍‌ବାରୁମ୍** - *କଳା:* (ବିଂ.) : ବାରମ୍ବାର, ପୁନଃପୁନଃ

**ବାରେକ୍** - *ସ:* (ବି.) ସୈନ୍ୟମାନେ ରହିବାର ସ୍ଥାନ, ବାରାକ୍

**ବାରେହି** - *ମ:* (ବି.) : ଦଉଡ଼ି

**ବାର୍ଛା** - *ନୁ:* (ବି.) : ବର୍ଚ୍ଛା

**ବାଲ** - *ଅନେ:* (ବି.) ଯନ୍ତ୍ରରେ ପାଣି ବୋହିଲା ବେଳେ ଭାର ଉତ୍ତୋଳନ ପାଇଁ ଅଡ଼ଶିଳା ମୂଳରେ ଦିଆଯିବା ମାଟି ବା ଓଜନ, ଚୂଟି, ବାଲି

**ବାଲ୍‌ଟିନ୍** - *କଳା:* (ବି.) : ବାଲ୍‌ଟି, ଟିଣି

**ବାଲଙ୍ଗା** - *କେନ୍ଦୁ:ଖୋ:* (ବି.) : ଏକ ପ୍ରକାର ଡାଲି, ମୁଗ ପରି ଶସ୍ୟବିଶେଷ

**ବାଲଟି** - *ନ:* (ବି.) : ବାଲ୍‌ଟି

**ବାଲବୁଣ୍ଡ** - *ସୁବ:* (ବି.) : ବାଳମୂଳିଆ ବଥ

**ବାଲମୁନିଆଁ** - *ସୁ:* (ବି.) : ବଥ, ବାଳମୂଳରେ ହୋଇଥିବା

**ବାଲା** - *ଅନେ:* (ବି.) : ହାତର ସ୍ୱର୍ଣ୍ଣ ଅଳଙ୍କାର, ସ୍ତ୍ରୀମାନଙ୍କ ଅଳଙ୍କାର, କଂକଣ, ମାଲିକ, ଅଧିକାରୀ

**ବାଲାଙ୍ଗା** - *କଳ:* (ବି.) : ସୁନାବଳା, ରୂପାବଳା

**ବାଲାଙ୍ଗି** - *କେନ୍ଦୁ:* (ବି.) : ବଦମାସି

**ବାଲାବାଲା** - *ସୁ:ସ:* (ବି.ବିଂ.) : ମୁଫତ, ଦାୟିତ୍ୱହୀନ

**ବାଲାମୀ** - *କ:* (ବି.) : ଧାନର ନାମ, ଲଘୁ ଶୁକ୍ଳ ଧାନବିଶେଷ

**ବାଲିଆ** - *ଗଦ୍ୟ:* (ବିଂ.) : ନିର୍ବୋଧ

**ବାଲିଆଡ଼ିଆ** - *ଦ୍ୱ:* (ବି.) : ବାଲିସ୍ତୂପ

**ବାଲିଆ ପଟା** - *ଗ:* (ବି.) : ନଈପଠା

**ବାଲିକସିଆ** - *ଗ:* (ବି.) : ଅଧିକ ବାଲିଯୁକ୍ତ ମାଟି

**ବାଲିକାଣ୍ଡି** - *ଭ:* (ବି.) : ବାଲିଗଦା

**ବାଲିକିରିଡ଼ା** - *ଗ:* (ବି.) : ମତ୍ସ୍ୟ ବିଶେଷ, ବାଲିଗରଡ଼ା

**ବାଲି ଖୁରୁସ୍** - *ନୁ:* (ବି.) : ଏକ ପ୍ରକାର ମାଛ

**ବାଲିଗରଡ଼ା** - *ଗଙ୍:* (ବି.) : ମାଛବିଶେଷ

**ବାଲିଗିରା** - *କେ:* (ବି.) ଏକ ମାଛ, ବାଲିକିରା

**ବାଲି ଗୁଣ୍ଡରୀ** - *ଦେ:* (ବି.) : କୀଟଜାତୀୟ ଜୀବବିଶେଷ

**ବାଲିଙ୍ଗି** - *ବା:ଦେ:ଭ:ଗଦ୍ୟ:* (ବି) : ଢଙ୍ଗ, ବାହାଦୂରୀ, ଫୁଟାଣି, ପେଖନା, ଗର୍ବ

**ବାଲିବୁରହୁ** - *ନୂ:* (ବି.) : ଏକ ପ୍ରକାର ମାଛ

**ବାଲିସ୍** - *ବା:ମା:* (ବି.) : ତକିଆ

**ବାଲିସରା** - *ବା:* (ବି.) : ବାଲିତଳର ପାଣି

**ବାଲିସେକ** - *ଦେ:* (କ୍ରି.) : ବଥା ହେଉଥିବା ସ୍ଥାନରେ ବାଲି ଭାଜି ସେକ ଦେବା

**ବାଲୁ** - *ଗଜ:ନବ:କଳା:* (ବି.) : ବଲ୍, ଭାଲୁ, ବାଲି

**ବାଲୁକୀ** - *ଅ:* (ବି.) : ଫୁଟି କାକୁଡ଼ି

**ବାଲୁରି** - *ଜ:ଗ:ଭ:* (ବି.ବିଂ.) : ବିରୁଡ଼ିବସା, ଅସନା, ଅସଣା, ଅଯଥା ଗପିବା ସ୍ତ୍ରୀଲୋକ, କେଶ ବିନ୍ୟାସ କରି ନଥିବା ସ୍ତ୍ରୀ

**ବାଲେଶ୍ୱରୀ** - *ଭ:* (ବି.) ଏକ ପ୍ରକାର ମିଠାଇ

**ବାଲ୍ଲା** - *ଗଜ:* (ବି.) : ପ୍ଳିହାରୋଗ

**ବାଳକେନ୍ଦଜା** - *ଭ:* (ବି.) : ପିଲାମାନଙ୍କ ପାଇଁ ଭୋଜି, ବାଳଭୋଜି

**ବାଳଛପା** - *କୋ:* (ବି.) : କେଶ ବିନ୍ୟାସରେ ବ୍ୟବହୃତ ଦୁଇଫାଳିଆ କଣ୍ଟା

**ବାଳଭୋଗ** - *ଅନେ:* (ବି.) ନିସଙ୍ଖୁଡ଼ି ଭୋଗ, ଦୋଭଜା, ଠାକୁରଙ୍କୁ ପ୍ରଥମ ଭୋଗ

**ବାଳମୂଳିଆ** - *ଅନେ:* (ବି.) : ଏକ ପ୍ରକାର ବ୍ରଣ

**ବାଳା** - *ଅନେ:* (ବି.) : ଝିଅ, ମାଈ, ସ୍ତ୍ରୀଲୋକ

**ବାଳାମି** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ବାଳି** - *ଗ:* (ବି.) : କଉଡ଼ି ଖେଳର ମୁଖ୍ୟ କଉଡ଼ି

**ବାଳିଆ** - *ଅନେ:* (ବି.) : ମାଛ ବିଶେଷ

**ବାଳିଆପତା** - *ଅନେ:* (ବି.) : ବାଳିଆ ଭଳି ଛୋଟ ମାଛ

**ବାଳିଫୁଟିବା** - *ଗ:ରା:* (କ୍ରି.) : ଖେଳରେ ଜିତା ହେବା, ଭାଗ୍ୟ ଉଦୟହେବା

**ବାଳୁଙ୍ଗା** - *ଅନେ:* (ବିଂ.ବି.) : ଦୁଷ୍ଟ, ବଦମାସ୍, ଧାନ ଗଛ ଭଳି ଏକପ୍ରକାର ଘାସ, ଝରାଧାନ, କୁଳାଙ୍ଗାର, ଅପଦାର୍ଥ, ଦୁଷ୍ଟପ୍ରକୃତିର

**ବାଳୁଚେଇବା** - *ଭ:* (କ୍ରି.) : ବକିବା, ବକ୍‌ବକ୍ ହେବା

**ବାଳୁତ** - *ଅନେ:* (ବି.) : ଛୋଟ ଶିଶୁ

**ବାଳେଦାରୁ** - *ମ:* (ବି.) : ବରଗଛ

**ବାସଙ୍ଗ** - *ଭ:କ:କେ:ଦେ:* (ବି.) ବୃକ୍ଷ ବିଶେଷ, ଏକ ପ୍ରକାର ଗଛ ଏହାର ପତ୍ର ଓ ମୂଳ ଔଷଧ ହୁଏ, ଗୁଳ୍ମ ବିଶେଷ

**ବାସଠାବ** - *ଭ:* (ବି.) : ସ୍ଥାୟୀ ଭାବରେ ରହିବା

**ବାସନ** - *ଅନେ:* (ବି.) : ଆଧାର, ପାତ୍ର

**ବାସନା** - *ଅନେ:* (ବିଂ.ବି.) : ସୁଗନ୍ଧ, କାମନା, ଲାଳସା

**ବାସନାଛାଲି** - *ରା:* (ବି.) : ଡାଲିଚିନି

**ବାସନ୍ଦ** - *ଅନେ:* (ବି.ବିଂ.) : ବାରଣ, ଅଜାତି, ଏକଘରକିଆ, ଅଟକ ରହିବା

**ବାସପତ୍ରି** - *ସ:* (ବି.) : ବାସ୍ନାଧାନ ବିଶେଷ

**ବାସର** - *ଅନେ:* (ବି.) : ଦିନ, ମଧୁଶଯ୍ୟା

**ବାସରାତ କଣ୍ଟା** - *ସୁବ:* (ବି.) : କାକଟସ, କଣ୍ଟା ବାଡର ଗଛ

**ବାସାଗିନା** - *କଣ:* (କ୍ରି.) : ଶୁଆଇବା

**ବାସି** - *ଅନେ:* (ବି.ବିଂ.) : ଶୁଦ୍ଧକ୍ରିୟା, ଟଟକା ନୁହଁ, ପୁରୁଣା, ଇସ୍ତ୍ରୀଦିଆ (ବସ୍ତ୍ର)

**ବାସିପାଇଟି** - *ଗ.ନ:* (ବି.) ପାହାନ୍ତା ପହରରେ ଝାଡୁ ହୋଇ ନଥିବା ଘର, ବାସିକାମ, ସକାଳର ଦୈନିକ କାମ

**ବାସିମଡ୍** - *କଳା:* (ବି.) : ଗତ ଦିନର ତୋରାଣି

**ବାସିୟାମ୍** - *କେନ୍ଦୁ:* (ବି.) : ସକାଳଖିଆ

**ବାସିୟଁଶା** - *ଜ:* (ବି.) : ବାଉଁସିଆ

**ବାସୁ** - *ରା:ଗଜ:* (ବି.) : ବସ୍

**ବାସୁଳି ପୂଜା** - *ଖୋ:କେନ୍ଦୁ:* (ବି.) : ଗ୍ରାମ ଶାଳରେ ପୂଜା

**ବାସେଡ଼ା ପର୍ବ** - *ଖୋ:* (ବି.) : ଚଇତ୍ର ପ୍ରଥମ ସୋମବାରର ଏକ ପର୍ବ

**ବାସ୍ତରିଆ** - *ନ:ଖୋ:* (ବିଂ.) : କଥାରେ ଠିକ୍ ନଥିବା ଲୋକ, ଯାହାର କଥା ଓ କାର୍ଯ୍ୟରେ ସାମଞ୍ଜସ୍ୟ ନଥାଏ

**ବାସ୍ତା** - *ମା:ରା:କୋ:* (ବି.) : ଅଖା

**ବାହକ** - *କେ:କଣ:* (ବି.) : ମୃଦଙ୍ଗ ବାଦ୍ୟ ବଜାଉଥିବା ପାଲା ପରିବେଷଣର କଳାକାର, ବାୟକ, ପରିବହନକାରୀ, ବାହାକ, ଯେ ପୂଜାକାମରେରେ ସାହାଯ୍ୟ କରେ

**ବାହଞ୍ଚ** - *ଗଦ୍ୟ:* (ବିଂ.) : ଗାଳି ବିଶେଷ

**ବାହା** - *ଅନେ:* (ବି.) : ବାହୁ, ବିବାହ

**ବାହାଟାଡ୍** - *କଳା:* (ବି.) : ସ୍ତ୍ରୀଲୋକମାନେ ବାହୁରେ ପିନ୍ଧୁଥିବା ଏକ ଅଳଙ୍କାର, ତାଡ଼

**ବାହାଡ଼ା** - *ଅନେ:* (ବି.) : ଫଳବିଶେଷ, ଯାତ୍ରା, ଡେଢା

**ବାହାଣି** - *କେ:* (ବି.) : ଗୁଡ଼ ମାଠିଆ

**ବାହାଣିଆ** - *ଅ:ଭ:* (ବି.ବିଂ.) : ନାଉରୀ, ପାରଗ

**ବାହାଦି** - *ବ:* (ବି.) : ମୁଂଡରେ ଗରା ଇତ୍ୟାଦି ରଖିବା ପାଇଁ କନାରେ ତିଆରି ଗୋଲେଇ ବେଣ୍ଟ

**ବାହାଦୁରି** - *ନୂ:ଦେ:* (ବି.) : ପ୍ରଶଂସା ନେବା, ଫୁଟାଣି

**ବାହାନିବା** - *ବ:ସ:* (କ୍ରି.) : ନାପସନ୍ଦ କରିବା

**ବାହାପିଆ** - *ଅନେ:* (ବିଂ.ବି.) : ମିଛ କହୁଥିବା, କୁହାଳିଆ, କାମରେ ନୁହେଁ, ଫୁଟାଣିଆ, ମିଥ୍ୟା ସାହସୀ

**ବାହା ବପୁ** - *ସ:* (ବି.) : ବାହୁବଳ

**ବାହାବଲ୍** - *ବର:* (ବି.) : କବାଟ ବନ୍ଦ କରିବା ପାଇଁ ବ୍ୟବହୃତ ବାଡ଼ି

**ବାହାବା** - *ଦେ:ନ:* (ବି.) ପ୍ରଶଂସା, ଧନ୍ୟବାଦ

**ବାହାରନିଆ** - *କଳା:ସୁ:* (ବିଂ.ବି.) : ବାହାରେ ବାହାରେ, ପଦାରେ ପଦାରେ, ବାହାର ଲୋକ

**ବାହାରପାଣି** - *ଗ:* (ବି.) : ମଳତ୍ୟାଗ ପ୍ରସଙ୍ଗ, ଝାଡ଼ା

**ବାହାରହାଣ୍ଡି** - *ନ:* (ବି.) : ଘରର ଅଇଁଠା ବାସନ ଧୋଇବା ପାଇଁଥିବା ପାଣିପାତ୍ର

**ବାହାରାତ୍ର** - *ଅନେ:* (ବି.) : ବିବାହ ଲଗ୍ନ

**ବାହାଲ୍‌ମେଂଢୋ** - *କଳା:* (ବି.) : ସାମାନ୍ୟ ଲାଲ୍‌ରଂଗର ଦେଶୀ ବଡ଼ ଧାନ

**ବାହାଳଖୁଣ୍ଟ** - *କ:* (ବି.) : ପାଣିମଡ଼ା କୁମ୍ଭି ବା ଖୁଣ୍ଟିର ଅଂଶ

**ବାହାଳଘୁଲି** - *ନୂ:* (ବି.) : ମଧ୍ୟମ ଧରଣର ଗୋଣ୍ଡା

**ବାହାଳା** - *ଚ଼ା:* (ବି.) : ପତ୍ରବିଶେଷ

**ବାହାଳି** - *ଗ:* (ବି.) : କଉଡ଼ି ଖେଳ

**ବାହାଲିଆ** - *କେ:* (ବିଂ.) : ବାହାରିଆ

**ବାହାଳି** - *ଭ:ଚା:* (ବି.) : ଗାଁ ତଳ ଜମି, ଚାଷଜମି ଚାରିପାଖରେ ଥିବା ବୃକ୍ଷାବଳି

**ବାହାସୂତା** - *ସୁ:ସଂ:କଳା:* (ବି.) : ସ୍ତ୍ରୀଲୋକମାନେ ବାହୁରେ ପିନ୍ଧୁଥିବା ସୂତ୍ର ବା ବ୍ରତ

**ବାହାଁ** - *କଳା:ବର:* (ବି.) : ବାହୁ, ବାହା, ଡ଼େଣା

**ବାହି** - *ଅନେ:* (ବି.କ୍ରି.) : ଖଟର ଖୁରାଗୁଡ଼ିକୁ ସଂଯୋଗ କରୁଥିବା ଲମ୍ବା କାଠ, ଶଙ୍ଖା ବା କାଚର ମୁଠା, ଡଙ୍ଗା ଚଳେଇବା, ବଳଦକୁ ମଣ କରିବା, ଗଛର ଶାଖା

**ବାହିଏ** - *ନ:* (ବିଂ.) : ଗୋଟିଏ ହାତରେ ଲଗାଇଥିବାକାଚ

**ବାହିମା** - *ନ:* (କ୍ରି.) : ବାନ୍ଧିବା

**ବାହିରି** - *ଗଦ୍ୟ:* (ବିଂ.) : ଉପାନ୍ତ

**ବାହିଲି** - *ଦେ:କଳା:* (ବି.) : ବ୍ୟାୟାମ କରିବା, ଅପେକ୍ଷାକୃତ କମ୍ ଗହୀର ଜମି

**ବାହୁଟି** - *ଅନେ:* (ବି.) : ଗହଣା ବିଶେଷ

**ବାହୁଟିଆ କୁନ୍ଦା** - *ଚ଼ା:* (ବି.) : ଜାହାଜର ପଶ୍ଚାତ୍ ଭାଗରେ ପତାକା ଉଡ଼ିବାର ସ୍ତମ୍ଭ

**ବାହୁଡ଼ିବା** - *ନ:* (କ୍ରି.) : ଫେରିବା

**ବାହୁଣି** - *ଚ଼ା:* (ବି.) : ପତଳାଗୁଡ଼ ରଖାଯାଉଥିବା ହାଣ୍ଡି, ଗୁଡ କଳସୀ

**ବାହୁସୂତା** - *ଗୌ:* (ବି.) : ରୂପା ନିର୍ମିତ ହାତ ଅଳଙ୍କାର

**ବାହେବାର** - *ସୁବ:* (କ୍ରି) : ଡଙ୍ଗା ବାହିବା, ପ୍ରଥମ କରି ବଳଦକୁ ହଳ କରିବା ଶିଖାଇବା

**ବାହେଇ** - *ଗଦ୍ୟ:* (ବି.) : ଧର୍ମକାର୍ଯ୍ୟ କରିବାପାଇଁ ଯେଉଁ ଜମି ଠାକୁର ଓ ପୁରୋହିତଙ୍କୁ ଦିଆଯାଏ, ଏହା ନିଷ୍କର

**ବାହ୍ୟବସିବା** - *ଚ଼ା:* (କ୍ରି.) : ଝାଡା ବସିବା

ବାଁକ - *ସୁ:ନୂ:* (ବିଂ.ବି.) : ଟେଡା, ବଙ୍କା
ବାଁକ୍ଡ଼ି - *ନୂ:* (ବିଂ.) : ବଙ୍କା ମୁହଁ ଥିବା ସ୍ତ୍ରୀ ଲୋକ, ବଙ୍କାମୁହାଁ
ବାଁକଟି ଘୁଲି - *ନୂ:* (ବିଂ.) : ଛୋଟ ଗେଣ୍ଡା
ବାଁଖାଡ଼ିଆ - *ଜ:* (ବିଂ.) : ଅବାଗିଆ
ବାଁଚ୍ବ - *ମ:* (କ୍ରି.) : ବଞ୍ଚିବ
ବାଁଝାଡି - *ଚ/:* (ବି.) : ବାଉଁଶବୁଦା
ବାଁଟବା - *ସୁ:* (କ୍ରି.) : ଭାଗକରିବା, ବାଣ୍ଟିବା
ବାଁଡ଼ି - *ସୁବ:ସ:* (ବି.ବିଂ.) : ଲୋକ ନାଟକ ଦଣ୍ଡର ଚରିତ୍ର, ଛୋଟ, ଲାଞ୍ଜହୀନ
ବାଁଡ଼ି ବୁତଲ୍ - *ସୁବ:* (ବି.) : ଲୋକନୃତ୍ୟବିଶେଷ
ବାଁଡ଼ିହାତ - *ସୁବ:* (ବିଂ.) : ବିଧବାର ଫୁଙ୍ଗୁଳା ହାତ
ବାଁଶଘିଡି - *ଚ/:* (ବି.) : ବାଉଁଶ ବଣ
ବାଁଶି - *ବର:* (ବି.) : ବୁଣିବାର ଧାଡ଼ି
ବାଁହା - *ସ:* (ବି.) : ବାହୁ
ବାଁ'ପଡ଼ା - *ନ:* (ବି.) : ଶଗଡ଼ର ବାମପାର୍ଶ୍ୱ ଚକ ଖାଲରେ ପଡ଼ିବାକୁ ଥିଲେ ଶଗଡ଼ିଆ ପଛ ଲୋକକୁ ଧରିବାକୁ ନିର୍ଦ୍ଦେଶ ଦିଏ
ବାଂକ୍ଟା - *କନ୍ଧ:* (ବିଂ.) : ବାଂକଟାଂକ, ଅଂକାବଂକା
ବାଂଜନ୍ - *ଗୌ:* (ବି.) : ଏକ ଶକ୍ତ ଗଛ
ବାଂଜି - *କନ୍ଧ:* (ବି.) : ବାଉଁଶ, ଶାଖା ଚଞ୍ଛାଯାଇନଥିବା ବାଉଁଶ
ବାଂଜିଧାନ - *କନ୍ଧ:* (ବି.) : ବାଉଁଶର ମଂଜି
ବାଂଝ ଏଣ୍ଡୁରି - *ଘୁ:* (ବିଂ.) : ପୁର ନଥିବା ସାଦା ଏଣ୍ଡୁରି
ବାଂଝି - *ବ:* (ବି.) : କଣ୍ଟା ଥିବା ବାଉଁଶ
ବାଂଝେନ - *ସୁ:କନ୍ଧ:* (ବିଂ.) : ବନ୍ଧ୍ୟାନାରୀ
ବାଂଦୁ - *ସୁ:* (ବି.) : ପେଚା
ବାଂଧନ - *ସୁ:* (ବି.) : ଗଛ ବିଶେଷ
ବା'ଡ଼ି - *ଗଜ:* (ବି.) : ବ୍ରା, ଜାକେଟ
ବା'ତୁ - *କୋ:ଗଜ:* (ବି.) : ବତକ, ହଂସ ଜାତୀୟ ପକ୍ଷୀବିଶେଷ
ବା'ବନ - *କୋ:* (ବି.) : ବାମନ, ଖର୍ବକାୟ ବ୍ୟକ୍ତି
ବା' - *ଅନେ:* (ବି.) : ପିତା, ବାପା
ବା' - *ସ:ଗୌ:ସୁବ:* (ବି.) : ବାପା
ବିଅନ - *କେ:କନ୍ଧ:* (ବି.) : ବୀଜ, ବିହନ
ବିଅଁ - *କେ:ଗ:* (ବି.) : ହେଁସବୁଣା କାଠ, ଦୁଇବାହୁ ପରିମିତ, ବେକ, ପଶୁଙ୍କ ବେକ
ବିଅଁର - *କନ୍ଧ:* (ବି.) : ଜଂଗଲର ଅଧିବାସୀ ଜଂଗଲର ଯେଉଁ ଅଂଶକୁ ସଫା କରି ଚାଷ କରେ
ବିଆଜ - *ନୂ:* (ବି.) : ସୁଧ
ବିଆଣ - *ଅନେ:* (ବି.ବିଂ.) ଜନ୍ମକରିବା(ଗ୍ରାମ୍ୟପ୍ରୟୋଗ), ପିଲାପିଲିହେବା, ଗାଈର ପ୍ରସବ
ବିଆଣୀ - *ସ:* (ବିଂ.) : ଯେ ଜନ୍ମକରେ

**ବିଆଳି** - *କ:* (ବି.) : ଷାଠିଏ ଦିନରେ ଅମଳ ହେଉଥିବା ଭୋଦେଇ ଧାନ

**ବିଉଛି** - *ଅନେ:* (ବି.) : ଏକପ୍ରକାର ଚର୍ମ କୁଣ୍ଡିଆ, ବିରବିଛି, ନିର୍ଦ୍ଦିଷ୍ଟ ଅଞ୍ଚଳରେ ଘାଆ ହୋଇ ଶୃଙ୍ଖଳା କୁଣ୍ଡିଆ ହେବା

**ବିଉଣା** - *କଝ:* (ବି.) : କୁକୁଡ଼ା ରହିବା ବାଉଁଶ ଝୁଡ଼ି

**ବିଏ** - *କଝ:* (ଅ.) : ଆସନ୍ତା କାଲି

**ବିକ୍‌ବା** - *କଳା:* (କ୍ରି ) : ବିକ୍ରୟ କରିବା

**ବିକଉନି** - *ନ:* (କ୍ରି.) : ଅସହ୍ୟ ହେବା

**ବିକଟାଳିଆ** - *ଅନେ:* (ବିଂ.) : ଭୟଂକର, ଅସୁନ୍ଦର, ବିଭତ୍ସ

**ବିକନ୍ଧି** - *ଗ:* (ବି.) : ଦୁଇ ଘରର ମଧ୍ୟବର୍ତ୍ତୀ ସ୍ଥାନ

**ବିକଳ** - *ଅନେ:* (ବି.ବିଂ.) : ବ୍ୟାକୁଳ, କରୁଣ

**ବିକାଭିଁଜା** - *ଝା:* (କ୍ରି.ବିଂ.) : ବିକାବିକି କରିବା

**ବିକାର** - *ଅନେ:* (ବି.) : ରୋଗ, ମନରେ ଘୃଣାଭାବ

**ବିକାଲ୍** - *ସୁ:* (ବି.) : ଅସମୟ

**ବିକିନି** - *ବୌ:* (ବି.) : ମାଇପିଙ୍କ ଅନ୍ତର୍ବାସ

**ବିକିଭାଞ୍ଜି** - *ସ:* (କ୍ରି.ବିଂ.) : ବିକ୍ରିବଟା କରି ଚଳିବା

**ବିଖନେଇ ହେବା** - *କେନ୍ଦୁ:* (କ୍ରି.) : ବାରମ୍ବାର କହିବା

**ବିଖୁଣିଆଁ** - *ଦେ:* (ବି) : ଖୁବ୍ ଅଭିମାନୀ, ଯେ ସାମାନ୍ୟ କଥାରେ ବିରକ୍ତ ହୁଏ

**ବିଗିଡ଼ିବା** - *ଅନେ:* (କ୍ରି.) : ରାଗିବା, ବିରକ୍ତ ହେବା, ଖରାପ ହେବା

**ବିଗୁ** - *ଦେ:* (ବି.) : କଣ୍ଟିଆ ବିଛା

**ବିଗୁଳିଆ** - *ଗ:* (ବିଂ.) : ହସକୁରା, ବଗୁଲିଆ

**ବିଘା** - *ଅନେ:* (ବି.) : ଭୂମିର ପରିମାଣ

**ବିଘାତ** - *କ:* (ବି.) : ପ୍ରତିଘାତ, ବିଘ୍ନ, ଆଘାତ

**ବିଙ୍ଗିଟଣ** - *ଗଦ୍ୟ:* (ବିଂ.) ଅଘଟଣ, ବିଡ଼ମ୍ବନା, ଅମଙ୍ଗଳ, ବ୍ୟାଘାତ, ଆଶ୍ଚର୍ଯ୍ୟ ଘଟଣା

**ବିଚ୍‌କୁଟିଆ** - *ଅନେ:* (ବି.ବିଂ.) : ଅଶ୍ଳୀଳ, ଅତିଦୁଷ୍ଟ, ଅପରିଚ୍ଛନ୍ନ

**ବିଚ୍‌ରା** - *କଳା:* (ବିଂ.) : ନିରୀହ, ବିଚରା

**ବିଚଣା** - *ଦେ:ନ:କ:* (ବି.) ବିଛଣା, ତାଳପଙ୍ଖା, ହାତପଙ୍ଖା

**ବିଚା** - *ବା:ଗଜ:ଗ:* (ବି.) : ଅଣ୍ଡକୋଷ, ମୂଳ

**ବିଚାର୍‌ଣା** - *ମା:* (ବି.) : ରାୟ, ବିଚାରସିଦ୍ଧାନ୍ତ

**ବିଚିଲି** - *ଭ:ଦେ:ଯା:* (ବି.) : ଛଣର କଟା ଅଂଶ, ଗୋରୁଙ୍କୁ ଦିଆଯିବା କଟା ନଡ଼ା

**ବିଛା** - *ଖୋ:ନ:* (ବି.) : ଅଣ୍ଟାର ରୁପା ଅଳଙ୍କାର; ଏକ ବହୁପଦୀ ଛୋଟ ସରୀସୃପ

**ବିଛୁଡ଼ିବା** - *କଳା:* (କ୍ରି.) : ଖସିଯିବା, ବୁଣିହେବା, ବିଛାଡ଼ି ହୋଇଯିବା

**ବିଛଣା** - *ଅନେ:* (ବି.) : ଶୋଇବା ପାଇଁ ପ୍ରସ୍ତୁତ, ଶଯ୍ୟା, ଶେଜ

**ବିଛଲ** - *ସୁ:କଳା:* (ବିଂ.) : ପିଛିଳ, ଖସଡ଼ିଆ

**ବିଛିଦେବା** - *ସ:* (କ୍ରି.) : ବିଞ୍ଚିଦେବା

**ବିଛୁ** - *କଳା:ସୁ:* (ବି.) : ବିଛାପୋକ, ବିଛା

**ବିଛୁକାକ୍ଡ଼ା** - *ମା:* (ବି.) : କଙ୍କଡ଼ା ବିଛା

**ବିଛେଇବା** - *ଅନେ:* (କ୍ରି.) : ଖେଳେଇବା, ତୋଳି ଆଣିବା

**ବିଛୋ** - *ସୁ:* (ବି.) : ବିଛାପୋକ

**ବିଛୋଲାଗ୍‌ବାର** - *ସୁବ:* (କ୍ରି.) ବିରକ୍ତ ଲାଗିବା

**ବିଜ୍** - *ନୁ:* (ବି.) : ମେଘ ବିଜୁଳି

**ବିଜ୍‌ଲି** - *ସୁ:କଳା:ମ:* (ବି.) : ବିଜୁଳି, ଚପଳା

**ବିଜା** - *ଅନେ:* (ବି.) : ଗେଣ୍ଡୁଫୁଲ, ପିଆଶାଳ, ମଞ୍ଜି, ବିଜାଗଛ

**ବିଜାର** - *ଅନେ:* (ବି.ଅ.) : ଯୁବାବସ୍ଥାର ଅଣିରା ମଇଁଷି, ବିରକ୍ତ, ମନସ୍ତାପ

**ବିଜିକମିନା** - *ପୁ:* (ବିଂ.) : ଦୁଷ୍ଟ, ଖୁଜୁବୁଜିଆ

**ବିଜୁ** - *ସୁବ:କନ:ଦେ:ବା:* (ବି.) : ବିଜୁଳି, ବଜ୍ର, ଯେ ପକ୍ଷୀ ବା ଚଢେଇ ପାଳେ

**ବିଜେ** - *ଅନେ:* (କ୍ରି.) : ଦିଅଁ ଆସ୍ଥାନିତ ହେବା, ପ୍ରବେଶ କରିବା

**ବିଞ୍ଚଣା** - *ଅନେ:* (ବି.) ହାତପଙ୍ଖା, ଏକପ୍ରକାର ମହୁ

**ବିଞ୍ଚିବା** - *ଅନେ:* (କ୍ରି.) : ବୁଣିବା, ବ୍ୟଜନ କରିବା, ଛିନ୍ନଛତ୍ର କରିବା, ପବନ କରିବା, ଏଣେତେଣେ ଫିଙ୍ଗିବା, ବିଛାଡ଼ିବା, ବିଞ୍ଚଣାରେ ପବନ କରିବା

**ବିଟ** - *ଅନେ:* (ବି.) : କାମୁକ, ଲମ୍ପଟ, କାଠରେ ଦିଆଯାଇଥିବା ସରୁ କାଠପଟି

**ବିଟ୍** - *ଅନେ:* (ବି.) : ଏକ ପରିବା

**ବିଟ୍‌ବିଟା** - *କଳା:ଚୌ:* (ବିଂ.) : ଅତିଶୟ, ଅଧିକ, ଗାଢ

**ବିଟ୍‌ଲାବାର** - *ସୁବ:* (କ୍ରି.) ଜାତିଗତ ଅସ୍ପୃଶ୍ୟତା ବା ଅପବିତ୍ରତା ସତ୍ତ୍ୱେ ଛୁଇଁବା

**ବିଟ୍‌ଲେଇବା** - *ଚୌ:* (କ୍ରି.) : ଲଗାଯୁଟା କରିବା, ଯା'କଥା ତାକୁ କହିବା, ଗୋଳିଆ କରିବା

**ବିଟାକାଣ୍ଡ** - *ଗଦ୍ୟ:* (ବି.) : ଏକ ପ୍ରକାର ଆଦିବାସୀ ଅସ୍ତ୍ର (କାଣ୍ଡ)

**ବିଟାଙ୍ଗି** - *ଚର:* (ବି.) : ଗାଳି ବିଶେଷ

**ବିଟାଳ** - *ଗ:* (ବିଂ.) : ଅଜାତିଆ

**ବିଟି** - *ବା:ମ:* (ବି.) : ପଠାହେବା ପୂର୍ବରୁ ପାନଝୁଡ଼ିକୁ ସିଲ୍‌କରିବା ବା ସିଲେଇ କରିବା, ଝିଅ

**ବିଠଲିଆ** - *ସୁ:* (ବିଂ.) : ବିଟୋଳ, ସର୍ବତ୍ର ଭୋଜନ ପ୍ରିୟ

**ବିଡ଼ିଆ** - *ଅନେ:* (ବି.) : ମିଠା ପାନଖିଲ

**ବିଡ୍‌ରେଇବା** - *କୋ:* (କ୍ରି.) : ଧମକ ଦେବା

**ବିଡାକାତେ** - *ବା:* (ବିଂ.) : ଗୋଛାଏ

**ବିଡ଼ଙ୍ଗ** - *ଦେ:* (ବି.) : ଏକ ପ୍ରକାର ଔଷଧୀୟ ବୃକ୍ଷ, କୃମି ନାଶକ ଔଷଧ

**ବିଢ଼ରାଣି** - *ନବ:* (ବି.) : ଡରାଇବା

**ବିଢ଼ା** - *ଅନେ:* (ବି.) : ଏକତ୍ର ବନ୍ଧାଯାଇଥିବା ବସ୍ତୁ, ଧାନ, ପାନ, ଖିଲ ପରୀକ୍ଷା କରିବା

**ବିଢ଼ି** - *ଅନେ:* (ବି.) : ଧୂଆଁପତ୍ର ଓ କେନ୍ଦୁପତ୍ରରେ ତିଆରି ମାଦକଦ୍ରବ୍ୟ, ପାଣି ରଖିବା ହାଣ୍ଡି, ପିକା

**ବିଢ଼ିବା** - *ଅନେ:* (କ୍ରି.) : ହୃଦୟଙ୍ଗମ କରିବା, ପରୀକ୍ଷା କରିବା, ପରଖିବା

**ବିଣ୍ଡା** - *ଅନେ:* (ବି.) : କୁଟା ନିର୍ମିତ ମଳା, ପରିଷ୍କାର ପାଇଁ ଲିପିବା ଉଦ୍ଦେଶ୍ୟରେ କନା, ଚୂଣ୍ଡା, ପାଳ ପ୍ରଭୃତିର ଗୁଳା, ମୋଞ୍ଚା, ମୁହଁ ବନ୍ଦ ନିମନ୍ତେ ମୁଦ, ଠିପି

**ବିଣ୍ଡି** - *ଗଦ୍ୟ:ବୌ:ଦେ:ଖୋ:* (ବି.କ୍ରି.) : ଛୋଟ ବିଡ଼ା, ହାତ ପାପୁଲି ଓ ତଳି ପାଦର କାମ କରି ଟାଣ ହୋଇଥିବା ଅଂଶ, ଅହିରା, ମଳା ଚିମୁଳା,

**ବିତ୍** - *ନୂ:* (ବି.) : ଢ଼େଉଁରିଆ

**ବିତ୍କିତା** - *ନବ:* (ବି.) : ବିରକ୍ତିବୋଧ

**ବିତ୍ପାତ** - *ଅନେ:* (ବି.) : ବିପଦ, ବ୍ୟୁତ୍ପାତ

**ବିତ୍ପାତିଆ** - *ବ୍:* (ବିଂ.) : ଦୁଷ୍ଟ

**ବିତ୍ବତା** - *ମା:* (କ୍ରି.ବିଂ.) : ବେଦମ୍‌କରିବା

**ବିତଣ୍ଡା** - *ଅନେ:* (ବି.ବିଂ.) : ଗାଲୁଆ, ଭିତ୍ତିହୀନ, ଯୁକ୍ତିହୀନ ବା ବାଜେ ତର୍କ, ଅନୁଚିତ, ଆଖାଡୁଆ, ତର୍କକରିବା, ବିତର୍କ

**ବିତାପରିଆ** - *ନ:* (ବିଂ.) : ବ୍ୟତିବ୍ୟସ୍ତ

**ବିତିଢ଼ିବା** - *ଗ:* (କ୍ରି.) : ରୋଗ ବିଷମ ହେବା

**ବିତେ** - *ସୁ:* (ବି.) : ଚାଖଣ୍ଡେ

**ବିଥେଇ ହେବା** - *ବୌ:* (କ୍ରି.) : ପଡ୍ଡେଇ ହେବା

**ବିଦ** - *ଗଦ୍ୟ:କଳା:* (ବି.) : ସ୍ତ୍ରୀଲୋକଙ୍କ ବାମ ବାହୁର ଅଳଙ୍କାର ବିଶେଷ, ଢ଼େଉଁରିଆ

**ବିଦ୍ନା** - *ମା:* (ବି.) : ନିହଣ

**ବିଦ୍ରା** - *ସୁ:* (ବିଂ.) : ଫାଟିଯିବା, ବିଦାରି ହୋଇଯିବା

**ବିଦ୍ରାବା** - *ଝା:* (କ୍ରି.) : ଭାଂଗିବା

**ବିଦ୍ରି** - *ସ:* (ବି.) : ଦଳିହେବା, ବିଦୀର୍ଣ୍ଣ

**ବିଦା** - *ଅନେ:* (ବି.) : ବହୁ କଣ୍ଟାଯୁକ୍ତ ଏକ ତୃଣନିବାରକ ଯନ୍ତ୍ର, ବିଦାୟ, ମେଲାଣି

**ବିଦାକାଠିଆ** - *ଗଦ୍ୟ:* (ବିଂ.) : ଅତିପତଳା, କ୍ଷୁଣ୍ଣ

**ବିଦାକି** - *ଅନେ:* (ବି.) : ପାଉଣା, କାର୍ଯ୍ୟ ସମାପନ ପରେ ଭଣ୍ଡାରୀ, ପୁରୋହିତଙ୍କ ବିଦାୟ କାଳୀନ ପାଉଣା, କାମ ସରିଲେ ପ୍ରାପ୍ୟ ପ୍ରଦାନ କରିବା

**ବିଦାରଣ** - *ସଂ:* (ବି.) : ଚିରିବା, କ୍ଷତାକ୍ତ କରିବା

**ବିଦିକା ମାରିବା** - *ଗଡ:* (କ୍ରି.) : ଓଲଟିବା

**ବିଧ** - *ଦେ:* (ବି.) : ଫୋଡ଼ିବା, ବିନ୍ଧ କଣା

**ବିଧିଲି** - *ସ:* (ବି.) : ବାଦୁଡ଼ି

ବିଧା - *ଅନେ:* (ବି.) : ମୁଷ୍ଟିପ୍ରହାର, ମୁଠାକରି ମାଡ଼ ମାରିବା

ବିଧି - *ଅନେ:* (ବି.) : ନୀତିନିୟମ, ଆଚରଣ

ବିଧିଁନ - *ସୁ:* (ବି.) : ନିହାଣ

ବିନ୍ - *ଅନେ:* (ବି.ଅ.) : ଏକ ପରିବା, ବିନା

ବିନ୍‌କି - *କଳା:* (ବି.) : ଆଦିବାସୀ (କନ୍ଧ) ସମାଜରେ ବିବାହ ବେଳେ ଧାନରେ ମୁଠି ମାରିବା କ୍ରିୟା, କନ୍ୟା ଆଣିବା ସମୟରେ କାଳେ କେଉଁଠାରେ କୌଣସି ଭୂତପ୍ରେତାଦିଙ୍କ ଦୃଷ୍ଟିପାତ ହୋଇଥାଇପାରେ ଏହା କଲେ କନ୍ୟାଟି ସୁସ୍ଥ ରହେ

ବିନ୍‌ଝାଲ - *ସ:* (ବି.) : ଏକପ୍ରକାର ଜାତି

ବିନ୍‌ବାପିଆ - *ବୌ:* (ବି.) : ଅଣବାପୁଆ ପୁଅ

ବିନ୍‌ମହିଡିଏନ୍ - *ସ:* (ବିଂ.) : ଇଜ୍ଜତହୀନା

ବିନ୍‌ସୁରିଆ - *ସ:* (ବିଂ.) : ସ୍ମରଣ ଶକ୍ତି ହ୍ରାସ ପାଇବା

ବିନ୍‌ହାକେ - *ସ:* (ବି.) ଅଯଥାରେ, ତୁଚ୍ଛାଟାରେ

ବିନଭ - *କନ୍ଧ:* (ବି.) : ହୁଙ୍କା

ବିନଛତି - *କଳା:* (ବି.) : ବିଳାରେ ଉଠିଥିବା ଛତୁ, ଶ୍ରାବଣ କଢ

ବିନଜୁଲି (ସଂଖ୍ୟା) - *ସୁବ:* (ବିଂ.) : ବିଯୋଡ଼ ( ସଂଖ୍ୟା ) ୩, ୫, ୭ ଇତ୍ୟାଦି

ବିନଝା - *ବ:* (ବି.) : ଅଦା, ଓଲୁଅ, ସାରୁ, ହଳଦୀର ମୂଳ

ବିନମୁଡି - *କଳା:* (ବି.) ଉଇହୁଂକାର ଅଗ୍ରଭାଗ

ବିନରୁବଏ - *ଅନେ:* (ବିଂ.) : ଅପବ୍ୟୟ

ବିନସୁତ୍ - *ଭ:* (ଅ.) : ଆଦୌ

ବିନୁଆଁ - *ବୌ:ସୁବ:ସ:* (ବି.) : ଉଇହୁଙ୍କା

ବିନେଇ - *ଜ:* (ବି.) : ବିନୟହୋଇ

ବିନ୍ଦାରି - *କନ୍ଧ:* (ବିଂ.) : ଅସୁନ୍ଦର

ବିନ୍ଧ - *ଅନେ:* (ବି.) : କଣା, ବିଶେଷ କରି କାଠ, ପଥରରେ କରାଯାଉଥିବା ଛିଦ୍ର

ବିନ୍ଧଣା - *କୋ:* (ବି.) : ନିହଣ, କାଠକାମ ପାଇଁ ବ୍ୟବହୃତ ଯନ୍ତ୍ର ବିଶେଷ

ବିନ୍ଧନ୍ - *କଳା:* (ବି.) ବିନ୍ଧଣ, କାଠଶିଳ୍ପୀମାନଙ୍କର ଲୌହଅସ୍ତ୍ର ବିଶେଷ

ବିନ୍ଧନୀ - *ବୌ:* (ବି.) : କାଠରେ ଯହିଁରେ ଫୋଡ଼ (ଗାତ) କରାଯାଏ

ବିନ୍ଧାକୋଡ଼ା - *ଗ:* (କ୍ରି.) କାଠରେ କାରୁକାର୍ଯ୍ୟ କରିବା

ବିନ୍ଧାଣି - *ଅନେ:* (ବି.) : ବଢେଇ, କାରିଗର

ବିନ୍ଧି - *କୋ:ଯା:* (ବି.) : ଛିଦ୍ର, ଅମୃତଭଣ୍ଡା

ବିନ୍ଧିଦେବା - *କେନ୍ଦୁ:* (କ୍ରି.) : କାମୁଡ଼ି ଦେବା, ଫୋଡ଼ିଦେବା, ତୀରମାରିବା

ବିନ୍ଧିବା - *ଅନେ:* (କ୍ରି.) : କାଠ ଉଅଁରରେ କାଟି ଭିତରେ କଣା କରିଦେବା

ବିନ୍ୟାସ - *ସଂ:* (ବି.) : ସଜ୍ଜିତ

ବିବରନ - *ସୁ:* (ବିଂ.) : ମଳିନ, ବିବର୍ଣ୍ଣ

**ବିବର୍ଣ୍ଣିଆ** - *ସ:* (ବିଂ.) : କଦାକାର ଦିଶିବା

**ବିବାନ** - *ଛ:* (ବି.) : ବିମାନ

**ବିବି** - *ଅନେ:* (ବି.) : ସାହେବାଣୀ, ପତ୍ନୀ, ସ୍ତ୍ରୀ

**ବିଭାର୍** - *କଳା:* (ବି.) : ହରିଜନ ଜାତିର କୌଳିକ ଉପନାମ

**ବିଭୋଲ୍** - *କଳା:* (ବିଂ.) : ବିଭୋର, ମଗ୍ନ, ତଲ୍ଲୀନ, ଅତିଭୋଳ

**ବିମ୍ବର** - *ନ:* (ବି.) : କଣା, ଛିଦ୍ର, ଗାତ, ବିବର

**ବିମ୍ବଲି** - *କନ୍ଧ:* (ବି.) : କଙ୍କି

**ବିରଝୁ** - *ସୁ:* (ବିଂ.) : ଚିଡ଼ା (ବ୍ୟକ୍ତି)

**ବିରଡ଼େଇବା** - *ନବ:* (କ୍ରି.) : ଧମକାଇବା, ଡରାଇବା

**ବିରତିଆ** - *ସୁବ:* (ବି.) : ରାଜଦତ୍ତ ଉପାଧି ଓ ସୁଖ ସୁବିଧା ଭୋଗ କରୁଥିବା ଲୋକ

**ବିରବିରାବା** - *ସୁ:* (କ୍ରି.) : ଏଣୁତେଣୁ ବକିବା, ବିଳିବିଳେଇ ହେବା

**ବିରସ** - *ଅନେ:* (ବି.ବିଂ.) : ନୀରସ, ବିଷାଦ

**ବିରହି** - *ନୂ:ସୁ:* (ବି.) : ବିରିଶସ୍ୟ

**ବିରା** - *କନ୍ଧ:* (ବି.) : ମାଟି

**ବିରାଣିଆ** - *କୋ:* (ବିଂ.) : ଅତି ମାତ୍ରାରେ ଦୁଷ୍ଟ

**ବିରିଅନି** - *ସୁ:* (ବି.) : ମାଂସପଲଉ, ବିରିଆନି

**ବିରିକଡି** - *ନବ:* (ବି.) : ବିରକ୍ତି

**ବିରିଙ୍ଗି** - *ଦେ:* (ବି.) : ପୋଡୁଚାଷ

**ବିରିଙ୍ଗିବା** - *କେନ୍ଦୁ:* (କ୍ରି.) : ବିଗିଡ଼ିଯିବା

**ବିରିବିରି** - *ଗଙ୍ଗ:ଦେ:* (କ୍ରି.) : ଘିମିରି ପରି ବିସିରିପା, ବିରକ୍ତି ଭାବ

**ବିରୁଆ** - *ଗ:ନବ:ଗଞ୍ଜ:* (ବି.) : ଆଲମାରୀ

**ବିରୁଖୁଟି** - *କଳା:* (ବି.) : ଚେଣ୍ଡା ବାଉଁଶରେ ବାଲ୍‌ଟିର ଦଉଡ଼ି ଲାଗିବା ପାଇଁ କଣାକରି ଲାଗୁଥିବା କାଠି

**ବିରୁଡ଼ି** - *ଗ:* (ବି.) : ବିଷାକ୍ତ ମାଛିବିଶେଷ

**ବିରୁଡ଼ି-ଅଣ୍ଡା** - *କ:ଖୋ:* (ବି.) : ସରୁଅଣ୍ଡା

**ବିରୁଲାଠ୍** - *କଳା:* (ବି.) : କୂଅରୁ ପାଣି ଉତ୍ତୋଳନ ପାଇଁ ଟେଣ୍ଡା ଯନ୍ତ୍ରରେ ଲାଗିଥିବା ଲମ୍ବ ବାଉଁଶ

**ବିରେନ** - *ସୁ:* (ବି.) : ବେଣାଚେର

**ବିରୋଳ** - *ଛ:* (ବି.) : ବିରଳ, କ୍ୱଚିତ

**ବିର୍ଜିବା** - *ଚୌ:* (କ୍ରି.) : ବିରକ୍ତ ହେବା, ରାଗିବା

**ବିର୍‌କତ** - *ମ:ବା:* (ବି.) : ବିରକ୍ତ

**ବିର୍‌ଝାବା** - *ସ:* (କ୍ରି.) : ଚିଡ଼େଇବା, ବିରକ୍ତ ହେବା

**ବିର୍‌ଟିବା** - *ବ:* (କ୍ରି.) : ବିରକ୍ତ ହେବା

**ବିର୍‌ନୀ** - *ବର:* (ବି.) : ଭ୍ରୂଲତା

**ବିର୍‌ବାଇ** - *କୋ:* (ବି.) : ବିରକ୍ତ

**ବିଲ୍‌ବା** - *ଚୌ:କଳା:* (କ୍ରି.) ଘାଣ୍ଟିବା, ମିଳେଇ ଯିବା, ଦ୍ରବୀଭୂତ ହେବା, ଗୁଣ୍ଡହେବା

**ବିଲ୍‌ବାର** - *ସୁବ:* (କ୍ରି.) : ଦହିରୁ ମନ୍ଥନ ଦଣ୍ଡ ସାହାଯ୍ୟରେ ଘୋଳ ଦହି ପ୍ରସ୍ତୁତ କରିବା

**ବିଲ୍‌ବିଟା** - *ଚୌ:* (ବି.) : ଅତ୍ୟନ୍ତ କଳା

**ବିଲ୍‌ବିଲା** - *କେ:* (କ୍ରି.ବିଂ.): ଅତି ଅସଢଙ୍ଗ, ଅଳିଆ ଅକଟା, ମେଞ୍ଚାମେଞ୍ଚା

**ବିଲ୍‌ଭୁଜା** - *ଚୌ:* (ବି.) ବିଲରେ ମୂଲିଆମାନେ ସ୍ୱତନ୍ତ୍ର ଭାବରେ ପାଗକରି ଖାଉଥିବା ମୁଢି

**ବିଲ୍‌ଲା** - *ସୁବ:* (ବି.) : ଘୋଳ ଦହି

**ବିଲଉ** - *କେନ୍ଦୁ:* (ବି.) : ବିଲେଇ

**ବିଲଉଜ** - *ସୁ:* (ବି.) : ବ୍ଲାଉଜ

**ବିଲକୁଲ** - *ଯା:ସ:ସୁବ:ସୁ:* (ବିଂ.ଅ.) : ଆଦୌ, ସମ୍ପୂର୍ଣ୍ଣ, ସୁନିଶ୍ଚିତ, ପୁରାପୁରି, ମୋଟେ

**ବିଲଗାଚୁ** - *ଗଜ:* (ବି.) : ଜମିର ବାଡ଼

**ବିଲବୁଡ଼ା** - *ଗ:* (ବି.) : ବିଲୁଆ

**ବିଲମ** - *ସୁ:ନୂ:କଳା:* (ବି.ବିଂ.) : ଡ଼େରି, ବିଳମ୍ବ, ଉଛୁର

**ବିଲା** - *ଗଜ:ପଦ୍ୟ:* (ଅ.ବି.) : ମୋହର, ପରିଚୟ ଫଳକ

**ବିଲାଇ** - *ନବ:କଅ:* (ବି.) : ବିରାଡ଼ି, ବିଲେଇ

**ବିଲାଙ୍କିକରିବା** - *ଗଦ୍ୟ:* (ବି.) : ସୁସଜ୍ଜିତ ପଦାର୍ଥକୁ ଅଲଗା କରିବା, ନଷ୍ଟକରିବା

**ବିଲାଡିଆ** - *ଚୌ:* (ବି.ବିଂ.) : ଅରଣା ପ୍ରକୃତିର ଲୋକ, ବିଶୃଙ୍ଖଳ ପ୍ରକୃତିର ଲୋକ

**ବିଲାଣ୍ଡିବା** - *ଗ:* (କ୍ରି.) : ବିରକ୍ତ କରିବା, ରଖିବା ଦ୍ରବ୍ୟ ଏଣେ ତେଣେ ଘାଣ୍ଟିବା

**ବିଲାତିକଇଁଆ** - *ଅନେ:* (ବି.) : ଏକ ଫଳ, (କଇଁଆ ଭଳି)

**ବିଲାତିବାଇଗଣ** - *ଅନେ:* (ବି.) ପାତଳଘଣ୍ଟା, ଟମାଟୋ

**ବିଲାପଟି** - *କଳା:* (ବି.) : ବେଲ୍‌ଟ୍

**ବିଲିକମଳ** - *କେ:* (ବି.) : ହେଁସ

**ବିଲିବା, ବିଲ୍‌ବା** - *ସ:* (କ୍ରି.) ମନ୍ଥିବା, ଘୋଳେଇବା

**ବିଲୁ** - *କଅ:ଚେ:* (ବି.) : ପବନ, ବେଲ

**ବିଲୁଆଁ** - *ସୁ:* (ବି.) : ଉଈହୁଙ୍କା

**ବିଲୁରି** - *କ:* (ବି.) : ବିରୁଡ଼ି

**ବିଲେଇ** - *ଗ:ସ:ଖୋ:* (ବି.) : କୂଅରୁ ମାଠିଆ ବାଲ୍‌ଟି କାଢିବା କଣ୍ଟା, ବିରାଡ଼ି

**ବିଲେଇଖିଆଳି** - *କ:* (ବି.) : ଧାନକିସମ, ଏକ ପ୍ରକାର ଧାନର ନାଁ

**ବିଲେଇବା** - *କଳା:* (କ୍ରି.) : ବିଳେଇ ଦେବା, ଚୂର୍ଣ୍ଣ କରିଦେବା

**ବିଲେଟ୍** - *ବା:ମା:* (ବି.) : ବ୍ଲେଡ୍

**ବିଙ୍କା** - *କୋ:* (ବି.) : ହୁଙ୍କା

**ବିଶା** - *ଗ:ନ:ରା:ଦେ:* (ବି.) : ଓଜନ କରିବା ଗ୍ରାମ୍ୟ ନିକିତି, ଅଢେଇ କିଗ୍ରା ଓଜନ ସହ ସମାନ, ୨କେ.ଜି.ଓଜନ ବିଶିଷ୍ଟ, ଓଜନ ଦଣ୍ଡି, ମାପ ଓଜନ କରିବା ତୁଳା ଦଣ୍ଡ

**ବିଶାକାଠି** - *ଯା:* (ବି.) : ଓଜନ ଦଣ୍ଡ, ଯାହାର ଗୋଟିଏ ପାଖେ ପଲା ଥାଏ

**ବିଶାବା** - *କଳା:* (କ୍ରି.) : ବିଶ୍ରାମ କରିବା

**ବିଶାଳନ** - *ସଂ:* (ବି.) ଅଭିବର୍ଦ୍ଧନ, ଅତିରଞ୍ଜନ

**ବିଶାଣଏ** - *କ:* (ବିଂ.) : ଶହେକୋଡ଼ିଏ

**ବିଶାସ୍** - *କଳା:* (ବି.) : ବିଶ୍ୱାସ, ଆସ୍ଥା

**ବିଶି** - *କଳା:* (ବି.) : ଗଉଡ଼, ଆରଣ୍ୟକ ବ୍ରାହ୍ମଣ ଓ ପାଇକ ଜାତିର କୌଳିକ ଉପନାମ

**ବିଶିଆଙ୍ଗୁଠି** - *ଗ:ଖୋ:ଦେ:* (ବି.) : ୨ୟ ଆଙ୍ଗୁଠି, ତର୍ଜନୀ

**ବିଶିରି** - *ଅ:* (ବିଂ.) : ଅସୁନ୍ଦର

**ବିଶିରିପାଣିଆ** - *ପୁ:ଗ:* (ବିଂ.) ଯାହା ଶରୀରରେ ଘା' ଘଉଡ଼ ସହଜରେ ଶୁଖେ ନାହିଁ

**ବିଶୋଇ** - *ଗ:* (ବି.) ରାଜଦତ୍ତ ଉପାଧି ବିଶେଷ, ଗ୍ରାମ ମୁଖିଆ

**ବିଶ୍ରୀ** - *ଦେ:ବା:* (ବି.ବିଂ.) : ଓଡ଼ିଆ ଗଉଡ଼, ଭୂୟାଁମାନଙ୍କ ଦେବୀ, ଅସୁନ୍ଦର

**ବିଶ୍ୱା** - *ଗ:* (ବି.) : ଭୂମିର ପରିମାଣ

**ବିଷ୍‌ଟେଙ୍କା** - *ମା:* (ବି.) : ଝିଟିପିଟି

**ବିଷଘନୀ** - *ଗଦ୍ୟ:* (ବି.) : ବିଷନାଶକ ବୃକ୍ଷ

**ବିଷମ** - *ଅନେ:* (ବିଂ.ବି.) : ଦୁର୍ଗମ, ରାଗି; କ୍ରୋଧ, ଅସମାନ, କଷ୍ଟସାଧ

**ବିଷରପଣିଆ** - *ରା:* (କ୍ରି.) : ପଚିଯିବା

**ବିଷା** - *ଦେ:* (ବି.) ଲହଲାଙ୍ଗଳିଆ, ପିତାତରଡ଼ା, କୁଆମଇତା

**ବିଷିମୁଖା** - *ଭ:* (ବି.) : ଖରାପକଥା କହୁଥିବା ବ୍ୟକ୍ତି

**ବିଷିର୍ପିବା** - *ଅନେ:* (କ୍ରି.) : ଘା' ପଚିଯିବା

**ବିଷେଇ ଯିବା** - *ବୌ:* (କ୍ରି.) : ବିଷ ଚରିଯିବା

**ବିଷ୍ଟ** - *ଗଦ୍ୟ:ଅ:* (ବି.) : କ୍ଷତ୍ରିୟ ଜାତିବିଶେଷ

**ବିଷ୍ଟୁହେବା** - *ସ:* (କ୍ରି.) : ହଠାତ୍ ଗୋଡ଼ ବାଜିଗଲେ, ଭୁଲ୍ ସ୍ୱୀକାର କରିବା

**ବିସ୍‌ତର** - *ସୁ:* (ବିଂ.) : ବହୁତ, ପ୍ରଚୁର

**ବିସ୍‌ପିତାଲାଗିବା** - *କୋ:ଯା:* (କ୍ରି.) : ବିଷବତ୍ ବୋଧ ହେବା, ଖରାପ ଲାଗିବା, ବିମୁଖ

**ବିସ୍‌ରିବା** - *ମ:* (ବି.) : ଭୁଲିଯିବା

**ବିସର** - *ନବ:ସୁବ:କୋ:ସ:* (ବି.) : ମାଛ ଧରିବାପାଇଁ ବାଉଁଶରେ ତିଆରି ଯନ୍ତ୍ର

**ବିସରି ପୂଜା** - *ବା:* (ବି.) : ମନସା ପୂଜା

**ବିସରେନ୍** - *ସୁ:* (ବି.) : ଆଇଁଷ ଗନ୍ଧ

**ବିସିନି** - *ବା:* (ବି.) : ଛଟକ

**ବିସୁଆ** - *ଖୋ:* (ବି.) ଏକ ନିର୍ଦ୍ଦିଷ୍ଟ ପରିମାଣକୁ ସୂଚାଏ

**ବିସୁକୁ** - *କୋ:* (ବି.) : ବିମର୍ଷ

**ବିସୁଖିଆ** - *ଗ:* (ବିଂ.) : ମନାନ୍ତର, ଅସନ୍ତୋଷ

**ବିସୋରିବା** - *ନ:* (କ୍ରି.) : ପାଶୋରିବା, ବିସ୍ମରଣହେବା

**ବିସ୍ତାପ** - *ଗ:* (ବି.) : ବିରକ୍ତ ମନସ୍ତାପ

**ବିସ୍ତାର** - *ଅନେ:* (ବି.) : ବେଶୀ, ବିଶାଳ, ବଡ଼, ଓସାର

**ବିସ୍କି** - *ନୂ:* (ବି.) : ମାଛ ବିଶେଷ

**ବିହନ** - *ଅନେ:* (ବି.) : ମଂଜି, ମୂଳ, ଉତ୍ପତ୍ତି, ବିହନ, ଚାଷୋପଯୋଗୀ ମଂଜି, ହାତ, ଗୋଡ଼ ପ୍ରଭୃତିରେ ଫୋଟକା ହେବା

**ବିହାଚୁରା** - *ସୁବ:ବୌ:* (କ୍ରି.) ବାହାଘର ଇତ୍ୟାଦି

**ବିହାବର୍‌ପନ୍‌** - *ସ:* (ବି.) : ବିବାହ କାର୍ଯ୍ୟ

**ବିହାବୁହି** - *ସ:* (ବି.) : ବିବାହ ସମୟରେ

**ବିହାରି** - *ବର:ଖୋ:* (ବି.ବିଂ.) : ବିବାହିତ, ଧୂର୍ତ୍ତ, ଅଧିକ ଚତୁର

**ବିହାରୀଗୋସାଇଁ** - *ଭ:* (ବି.) : ମାନ୍ୟତାପ୍ରାପ୍ତ କର୍ମବୀର

**ବିହାହାରି** - *ସୁବ:* (ବିଂ.) : ବିବାହ ଉତ୍ସବ କରୁଥିବା ଲୋକ

**ବିହି** - *ଭ:ଦେ:ନ:କଳା:* (ବି.) : ବିଧାତା, ଜାମୁ, ପିଜୁଳି

**ବିହିଡେନ ଛତି** - *ସୁବ:* (ବି.) : ଶ୍ରାବଣ, ଭାଦ୍ରବ ମାସର ଲମ୍ବନାଡ଼ ଥାଇ ଫୁଟୁଥିବା ଛତୁ

**ବିହିଡ଼ା** - *ବ:କଳା:ନୂ:* (କ୍ରି.ବି.) : ବିହୁଡ଼େଇବା (ଧାନ ଇତ୍ୟାଦି ଶସ୍ୟକୁ ହଳ କରି ଆଉଥରେ ମାଟିକୁ ହାଲୁକା କରିବା) ବେଉଷଣ କାର୍ଯ୍ୟ

**ବିହିଲେଇବା** - *ବୌ:* (କ୍ରି.) : ଖେଳେଇବା

**ବିହୁଡ଼ଣୀ** - *ଗଦ୍ୟ:* (ବି.) : ଜଙ୍ଗଲୀ ଛତୁ

**ବିହୁଡ଼ା** - *ବୌ:* (ବି.) : ଧାନଗଛ ହେଲାପରେ ହଳଚାଷ, ବେଉଷଣ

**ବିଁଡିଆ** - *ବର:* (ବି.) : ଭାତ, ଧାନକୁଣ୍ଡା, ପିଡ଼ିଆ ପ୍ରଭୃତି ମିଶାଇ ପ୍ରସ୍ତୁତ ମାଛ ପାଇଁ ଖାଦ୍ୟ

**ବିଂଝାଲ୍‌** - *କଳା:* (ବି.) : ଅନୁସୂଚିତ ଜନଜାତି ବିଶେଷ

**ବୀଜାର** - *ସୁବ:* (ବିଂ.) : ଯୁବାବସ୍ଥାର ଅଣ୍ଡିରା ମଇଁଷି

**ବୀନାକାର** - *କଳା:* (ବି.) ଦଣ୍ଡନାଟର ବୀଣାକାର

**ବୀରପେଷଣ** - *ଗ:* (ବି.) : ତନ୍ତ୍ର ବିଦ୍ୟାରେ ଅପଶକ୍ତି ପ୍ରୟୋଗ

**ବୀରବଲ୍ଲୀ** - *କେ:* (ବି.) : କାନ ଅଳଙ୍କାର, ମକର କୁଣ୍ଡଳ, ପୁରୁଷଙ୍କ କର୍ଣ୍ଣାଳଙ୍କାର

**ବୀରମଣି** - *ନୂ:* (ବି.) : ଏକ ପ୍ରକାର ଧାନ

**ବୁଆ** - *ଅନେ:* (ବି.) : ବାପା, ବାପାଙ୍କ ଭଉଣୀ, ବୁଢ଼ା, ବେଉଷଣ, ମାଗଣାଭୋଜନ, ଛୋଟପିଲାଙ୍କୁ ସମ୍ବୋଧନ

**ବୁଆଖାଇବା** - *ସଂ:ଭ:* (କ୍ରି.ବି.) ଗୋରୁମାନେ ଛୋଟ ଧାନଗଛ ଚରିଯିବା

**ବୁଆଡଳି** - *ସଂ:* (ବି.) : ଛୋଟ ଧାନଗଛ

**ବୁଆ ମା** - *ବୌ:* (ବି.) : ବାପ ମା'

**ବୁଆରି** - *କୋ:ନବ:* (ବି.) : ବଧୂ, ବୋହୂ

**ବୁଆଳି** - *ସଂ:ଦେ:* (ବିଂ.) : ଧାନକଟାଳି, ବଢ଼ିଥିବା ଧାନଗଛ

**ବୁଇ** - *ଦେ:ବୌ:ସୁବ:ଅ:* (ବି.) : ସାନ ଝିଅ, ଘାଆ, ଛୋଟପୋକ

**ବୁଇତାଲୁ** - *କୋ:ବା:ନବ:ଅ:* (ବି.) : ବୋଇତି କଖାରୁ, କଖାରୁ, ବୋଇତାଲୁ

ବୁଇଲ୍ - *କଳା:କୋ:କନ୍ଧ:* (ବି.) : ବଳଦ
ବୁଉ - *କଳା:* (ବି.) : ଝିଅ, କନ୍ୟା, ନନୀ
ବୁଉ - *ଗ:* (ବି.) : ମାତୃସ୍ତନ, କ୍ଷୀର, ଦୁଗ୍ଧ
ବୁଏଡ୍ - *ନୂ:କଳା:* (ବି.) : ବନ୍ୟା, ବଢ଼ି
ବୁଏଦ୍ - *ନୂ:* (ବି.) : ବନ୍ୟା
ବୁଏର - *ନୂ:କଳା:* (ବି.) : ବରକୋଳି
ବୁକ - *ଅନେ:* (ବି.) : ଚୁମା, ଛାତି, ବକ୍ଷ, ବହି
ବୁକ୍‌ଚାଭୁଆଁ - *କୋ:* (ବି.) ଚାକର, ବୋଲକରା
ବୁକପୋଡ଼ା - *ଗ:* (ବି.) : ଅମ୍ଳ ହାକୁଟି
ବୁକା - *ଅନେ:* (ବି.ବିଂ.) : ଅଣ୍ଡିରା ଛେଳି, ବୁଦ୍ଧିହୀନ, ବୋକା
ବୁକୁ - *ଅନେ:* (ବି.) : ଛାତି, ହୃଦୟ
ବୁକୁଚା - *ଅନେ:* (ବି.) : ଗଣ୍ଠିଲି, ପୁଟୁଳି, ବୁଜୁଲା
ବୁକେଇବା - *ଭ:* (ବି.) : ବଳକାହେବା
ବୁଗିବା - *କଳା:* (କ୍ରି.) : ଚଢ଼ିବା, ଆରୋହଣ କରିବା
ବୁଗେଇବା - *ବା:* (କ୍ରି.) : ବୋବେଇବା
ବୁ-ଗ୍ୟାଲ୍ - *ଅ:* (ବି.) : ପାହାଡ଼ ଉପରେ ସ୍ଥାନ
ବୁଘିବା - *ନୂ:* (କ୍ରି.) : ଚଢ଼ିବା
ବୁଙ୍ଗାବୁଙ୍ଗା - *ବୌ:* (ବିଂ.) : ଗୁଣ୍ଡାଗୁଣ୍ଡା
ବୁଙ୍ଗି - *ଦେ:* (ବି.) : ଗଣ୍ଡି
ବୁଙ୍ଗେ - *ଗଦ୍ୟ:ବା:* (ବିଂ.) : ପାଟିଭର୍ତ୍ତି
ବୁଚ୍‌କା - *ଝା:କଳା:ସୁବ:* (ବି.) : ବୋକଚା, ଗଣ୍ଠିଲି, ବୁଜୁଲା, ବୁଜୁଳି, ବୋଚକା, ଲୁଗାଗଣ୍ଠିଲି
ବୁଚ୍‌କାଗଣ୍ଡରା - *ବୌ:* (ବି.) : ପେଡ଼ିପୁଟୁଳି
ବୁଚ୍‌ଡ଼ିବା - *ଝା:* (କ୍ରି.) : ମୁକୁଳିବା, ଲଗଣକର କବଳରୁ ଖସି ଆସିବା
ବୁଚ୍‌ଡ଼ି ଯିବା - *ସ:* (ବି.) : ଛାଡ଼ି ହୋଇଯିବା
ବୁଚକିବା - *ସୁ:* (କ୍ରି.) : ଖସିଯିବା
ବୁଚା - *କଳା:* (ବି.) : ପକ୍ଷୀମାନଙ୍କର କଣ୍ଠ ନିକଟସ୍ଥ ଖାଦ୍ୟସ୍ଥଳୀ
ବୁଚି - *ସୁ:* (ବିଂ.) : ସାନ, ବଚା
ବୁଚିକାନି - *ବୌ:* (ବି.) : ସାନ କାନ ଯାହାର, ଚେପ୍‌ଟା କାନିଆ
ବୁଛୁରା - *କଳା:ନୂ:* (ବି.) : ବାଛୁରୀ
ବୁଜ୍‌କା - *କଳା:* (ବି.) : ବୁଜୁଲା, ବୋକଚା
ବୁଜ୍‌ବୁଜିମାରବା - *ସ:* (କ୍ରି.) : ପାଣି ଫୋଟକା ହେବା
ବୁଝଣ - *ଗ:* (ବି.) : ଯାହା ସମସ୍ତେ ବୁଝି ପାରିବେ
ବୁଟ୍‌ବୁଟା - *କୋ:ମା:କଳା:* (ବିଂ.ବି.) ଲଟପଟ, ତରଳ ପଦାର୍ଥରେ ଲୁତୁବୁତୁ ଅପରିଷ୍କାର, ସର୍ବାଙ୍ଗରେ ଲାଗିଯିବା
ବୁଟ୍‌ବୁଟେଇଯିବା - *ସ:* (କ୍ରି.) : ବିପଦରେ ପଡ଼ିବା
ବୁଟରାଚଣା - *ସୁ:* (ବି.) : ଛୋଟଚଣା
ବୁଟରାଚନା - *କଳା:* (ବି.) : ଗୋଲାକୃତିର ଶାଗୁଆ ଚଣା
ବୁଟଲୁ - *ନୂ:* (ବି.) : ଉଚ୍ଚତାରେ ଅତି ଛୋଟ ବ୍ୟକ୍ତି, ବାମନ

**ବୁଟା** - *ଅନେ:* (ବି.) : ବୁଦା, ଶାଢ଼ୀରେ ପଡୁଥିବା ଛୋଟ ବିନ୍ଦୁପରି କାରୁକାର୍ଯ୍ୟ, ଗୁଚ୍ଛ, ଗୋଛା, ଗୁଚ୍ଛ, ଛୋଟିଆଗଛର ଏକତ୍ର ସମାହାର, ବୁଞ୍ଜୁଳି, ପନିପରିବାକୁ ଗଣ୍ଡିଲିରେ ବାନ୍ଧିବା

**ବୁଟି** - *ଅନେ:* (ବି.ବିଂ.) : ଶାଢ଼ିରେ ଥିବା ଏକପ୍ରକାର ଡିଜାଇନ୍, ବାଙ୍ଗରା, ଚେରମୂଳୀ ଔଷଧ, କିରୋସିନ୍, ଛୋଟଦୀପ, ଖୋରାକ

**ବୁଟିଆ** - *ଦେ:* (ବିଂ.) : ବାଙ୍ଗରା

**ବୁଟୀ** - *ନବ:* (ବି.) : ଲୌହ ନିର୍ମିତ ଦୀପ

**ବୁଟୁକି** - *ଗ:* (ବି.) : ଗେଡ଼ା, ସ୍ତ୍ରୀଲୋକ

**ବୁଟୁଙ୍ଗିଆ** - *ସୁ:* (ବିଂ.) : ବାଙ୍ଗରା

**ବୁଠା** - *କଳା:* (ବିଂ.) ଅପରିଚ୍ଛନ୍ନ, ଅପରିଷ୍କାର

**ବୁଠି** - *ସୁବ:* (ବି.) : ବାଣ୍ଟୁ, ବାଣ୍ଟିଆ, ଗେଡ଼ା

**ବୁଡ଼ିଆ** - *ଚା:* (ବି.) : ଟାଙ୍ଗିଆ

**ବୁଡ୍‌ନି** - *କଳା:* (ବି.) : ଶସ୍ୟାଦି ମାପର ସର୍ବନିମ୍ନ ଏକକ

**ବୁଡ୍‌ନେକ୍** - *କଳା:* (ବିଂ.) : ଏକ ବୁଡ୍‌ନି

**ବୁଡ୍‌ବକ୍** - *ଦେ:* (ବି.ବିଂ.) : ଓଲ, ମୂର୍ଖ

**ବୁଡ୍‌ବୁଡିଆଣି** - *କୋ:* (ବି.) : ବୁଢିଆଣୀ, ମାକଡ଼ସା

**ବୁଡ୍‌ବୁଢ଼େନ୍** - *କଳା:* (ବି.) : ବୁଢ଼ିଆଣୀ, ଊର୍ଣ୍ଣନାଭ

**ବୁଡବୁଡ଼ି (ହେବା)** - *ଚ:* (ବିଂ.) : ଜବରଦସ୍ତି ଭିଡ଼ରେ ବା ଦଳରେ ଯାଇ ମିଶିବା

**ବୁଢା** - *ଅନେ:* (ବି.) : ବୋଡ଼ା (୧, ୨ କି.ଗ୍ରା), ଅଣ୍ଡିରା ବିଲୁଆ

**ବୁଢିଆଳିଚି** - *କେ:* (ବି.) : ମୁଣ୍ଡ ଧୋଇବା, ମୁଣ୍ଡଧୁଆ ଗାଧୁଆ

**ବୁଢ଼ୁଗାଳିବା** - *ଗ:* (କ୍ରି.) : ଗାଧୋଇବା

**ବୁଡେଚାନ୍ଦ** - *ସଂ:* (ବି.) : କୁମାର ପୂର୍ଣ୍ଣିମାରେ ଉଦିତ ଚାନ୍ଦ

**ବୁଡ଼** - *ଗ.ନ:* (ବି.) : ସ୍ନାନ, ପାଣିରେ ବୁଡ଼ିବା

**ବୁଡ଼୍‌ଗା** - *କୋ:* (ବି.) : ହଡ଼ା ବଳଦ, ବୁଢ଼ା ବଳଦ

**ବୁଡ଼୍‌ବୁଡ଼ି** - *ଝା:* (କ୍ରି.) : ଏଠିସେଠି ଅନଧିକାର ପ୍ରବେଶ

**ବୁଡ଼ବୁଡ଼ାବା** - *ସୁ:* (କ୍ରି.) : ଗେଞ୍ଜିବା

**ବୁଡ଼ା** - *ଅନେ:* (ବି.ବିଂ.) : ପରିମାଣ ମାପକ, ସର୍ପ ବିଶେଷ, ବୋଡ଼ା ସାପ, ବଡ଼ ମୋଟା ବେଣ୍ଟ, ବୁଢ଼ା, ବୃଦ୍ଧ

**ବୁଡ଼ାବୁଡ଼ି** - *ନ:* (ବିଂ.) : ଅଧିକ

**ବୁଡ଼ାଶେଉଳ** - *ଭ:* (ବି.) : ନୀରବ ରହି କାର୍ଯ୍ୟ ହାସଲ କରିବା ଲୋକ

**ବୁଡ଼ାହେବାର** - *ସୁବ:* (କ୍ରି.) : ଦେବାଳିଆ ହେବା

**ବୁଡ଼ିଆ** - *ଅନେ:* (ବି.) : ଟାଙ୍ଗିଆ, ଶସ୍ୟ କ୍ଷେତ୍ରରେ ପଶୁପକ୍ଷୀଙ୍କୁ ଡରେଇବା ପାଇଁ ପାଳ, ବାଉଁଶ, କପଡ଼ା ଆଦିରେ ନିର୍ମିତ କୃତ୍ରିମ ମଣିଷ, କୁରାଢ଼ି

**ବୁହୁକା** - *ଗଜ:* (ବି.) : ଫୋଟକା, ବେଲୁନ୍

**ବୁଢ଼ାଗେଧ** - *ଖୋ:* (ବି.) : ଯେଉଁ ବୁଢ଼ା ଲୋକ ସବୁବେଳେ ଚିଡ଼ଚିଡ଼୍ ହେଉଥାଏ, ତା'ପ୍ରତି ବିରକ୍ତି ବଶତଃଏପରି ଉକ୍ତି ପ୍ରୟୋଗ କରାଯାଇଥାଏ

**ବୁଢ଼ାଡଙ୍ଗର** - *ସୁ:* (ବି.) : ନଣ୍ଡାପାହାଡ଼, ଟୁଙ୍ଗୁରି

**ବୁଢ଼ାପୁକ** - *ଚୌ:* (ବି.) : ସମ୍ବାଲୁଆ

**ବୁଢ଼ାସାରିଆ** - *କଝ:* (ବି.) : ଏକ ପ୍ରକାର ଧାନ

**ବୁଢ଼ିଆଣୀ** - *ଦେ:* (ବି.) : ମାକଡ଼ସା ଜାତୀୟ ଜୀବ

**ବୁଣହେବା** - *କଝ:* (କ୍ରି.) : ଗୋଟିଏ ଜାଗାରେ ଜଣେ ବା ଏକାଠି ବସି କାନ୍ଦିବା

**ବୁଣିବା** - *ଅନେ:* (କ୍ରି.) : କ୍ଷେତରେ ବିହନ ବିଞ୍ଚିବା କାମ, ଲୁଗା ତିଆରି କରିବା କାମ

**ବୁଣ୍ଠା** - *ଚୌ:* (ବିଂ.) : ଧାର ନଷ୍ଟହେବା, ଦନ୍ତଡ଼ା

**ବୁଣ୍ଡି** - *ଚୌ:* (ବିଂ.) : ଗେଡ଼ା

**ବୁତ୍‌ଲ** - *ଅନେ:* (ବି.) : ବୋତଲ

**ବୁତା** - *ଅନେ:* (ବି.) : କାମ, ପାଚିଲା ପଣସର ଚୋପା, କତା ବା ଚୋପା

**ବୁତାମ** - *ଅ:କେ:* (ବି.) : ବୋତାମ

**ବୁତ୍ରୁ** - *ଗ:* (ଅ.) : ଆଦୌ

**ବୁଥିବାର** - *ସୁବ:* (କ୍ରି.) : ପଖାଳ, ତିଅଣ ବା କୌଣସି ତରଳ ବପଦାର୍ଥରେ ହାତ ବୁଡ଼ାଇବା

**ବୁଥିରା, ବୁଥିଡ଼ା** - *ଚୌ:* (ବି.ବିଂ) : ଥୁଣ୍ଟା, ଦାଢ଼ିବିହୀନ

**ବୁଥିଲୁ** - *ଚୌ:* (ବିଂ.) : ବାଙ୍ଗରା

**ବୁଥବୁଥା** - *ସୁ:* (ବିଂ.) : ପାଣି ବା ତେଲ ସରସର

**ବୁଥା** - *ବ:କଝ:ସୁବ:* (ବି.ବିଂ.) ଧାରହୀନ(ଚାକୁ,ପନକି ଆଦି), ପଣସ କଠା, ଧାରମରିଯାଇଥିବା, ମୁଣ୍ଡା, ମାଖୁନା

**ବୁଦ୍‌ବାଦ୍** - *ଚୌ:* (ବିଂ.) : ଗୋଟାକ ପରେ ଗୋଟାଏ

**ବୁଦବୁଦିକିଆ** - *ଅନେ:* (ବିଂ.) : ସ୍ଥାନେ ସ୍ଥାନେ ଉଠିଥିବା ଗଛ

**ବୁଦଲା** - *ସୁ:* (ବି.) : ବର୍ଷାଦିନିଆ ଫଳ

**ବୁଦା** - *ଅନେ:* (ବି.) : ଅଣ୍ଡିରା ଛେଳି, ଗୁଳ୍ମ, ବୋଦା, ଅଣ୍ଡିରା, ମେଞ୍ଚା ହୋଇ ଉଠିଥିବା ଛୋଟ ଗଛ

**ବୁଦିଆ** - *ସ:ଦେ:* (ବି.) : ଏକ ପ୍ରକାର ମାଛ

**ବୁଦୁ** - *କେ:ଯା:* (ବିଂ.ବି.) : ବୋକା

**ବୁଦୁକା** - *ଗ:* (ବିଂ.) : ମୋଟା, ପୃଥୁଳ

**ବୁନ** - *ସ:* (ବି.) : ମୂଳ

**ବୁନ୍‌କର** - *ଚଇ:* (ବି.) : ବୁଣାକାର ସଂପ୍ରଦାୟ

ବୁନ୍‌ବା - *ସ.କଳା.* (କ୍ରି.) : ବୁଣିବା, ବପନ କରିବା

ବୁନି, ବିନି - *ନୂ.* (ବି.) : ଅତି କ୍ଷୁଦ୍ର ଧରଣର ଏକ ପ୍ରକାର ମାଛ

ବୁନ୍ଦ - *ସୁ.କୋ.କଳା.* (ବି.) : ମୂଳ

ବୁନ୍ଧ - *ବୌ.ସ.* (ବି.) : ଗଛର ମୂଳଭାଗ

ବୁନ୍ଧୁଆ - *ସ.* (ବି.) : ସରୁ ଦଉଡ଼ି

ବୁପ୍‌ରା - *ସୁ.ସୁବ.ସ.କଳା.* (ବି.ବିଂ.) : ବିଚରା, ବାପୁଡ଼ା, ବୋପ୍‌ଡ଼ା

ବୁବରା - *ନୂ.* (ବି.) : ପିଠା ତିଆରି କରିବା ପାଇଁ ପ୍ରସ୍ତୁତ ଚାଉଳ ଗୁଣ୍ଡ

ବୁବା - *କେନ୍ଦୁ.କନ୍ଧ.* (ବି.) : ବାପା, ବଡ଼ବାପା

ବୁବେଇ - *ମ.ଗଦ୍ୟ.* (ବି.) : ଏକ ପ୍ରକାର ଘାସ ଗଛ

ବୁବେଇବା - *ବୌ.* (କ୍ରି.) : ବୋବାଇବା, ରଡ଼ିବା, କାନ୍ଦିବା

ବୁବେଇମେଣ୍ଢା - *କେନ୍ଦୁ.* (ବି.) : ଧଳା, ଲାଲ୍ ମିଶ୍ରିତ ଦୀର୍ଘ ମିଆଦି ଧାନ

ବୁର - *ସୁ.ବୌ.* (ବି.) : ଯୌନାଙ୍ଗ କେଶ, ବରକୋଳି

ବୁରଡି - *ନୂ.* (ବି.) : ବୃତ୍ତି

ବୁରବୁଡିବା - *ଦେ.* (କ୍ରି.) : ଲୁଚେଇବା

ବୁରବୁଡ଼ା - *ସୁ.* (କ୍ରି.) : ଜବରଦସ୍ତ ମିଶେଇବା

ବୁରବୁଡ଼ି - *ସୁବ.* (ବି.) : ବରଗୁଡି ଝୁଡ଼ଙ୍ଗ ମଂଜି

ବୁରା - *ମ.ବା.ଦେ.* (ବି.) : ବସ୍ତା ବା ଅଖା

ବୁରି - *ଦେ.କନ୍ଧ.* (ବି.) : ଆମ୍ବ ତୋଟା, ମହୁଲି ମଦ

ବୁରିଆ - *ଗ.* (ବି.) : ଏକ ପ୍ରକାର ମାଛ

ବୁରିବା - *କଳା.* (କ୍ରି.) ବେଢ଼ିବା, ଘେରେଇବା, ବୁଜିବା

ବୁରିହେବା - *ବୌ.କଳା.* (କ୍ରି.) : ଏକାଠି ଠୁଳ ହେବା, ଜମା ହେବା, ବେଢ଼ି ହୋଇ ରହିବା

ବୁରୀ - *ବୌ.* (ବି.) : ତୋଟା

ବୁରୁଜ - *ଗ.* (ବି.) : ଦୁର୍ଗର ପ୍ରାଚୀର, ତୋପ ରଖିବା ସ୍ଥାନ

ବୁରୁଜାଡ଼ିଯିବା - *ଅ.* (କ୍ରି.) : ଠେଲିକି ପଶିବା

ବୁରୁଝାଞ୍ଜି - *ଗ.* (ବି.) : ପୋଖରୀର ଏକ ପ୍ରକାର ଶୈବାଳ ଦଳ

ବୁରୁବଙ୍ଗା - *ଗଦ୍ୟ.* (ବି.) : ପାହାଡ଼ ଦେବତା

ବୁରୁବୁରା - *ଗ.ଦେ.* (ବି.) : ଜଳର ଭୁଡୁଭୁଡୁ, ପାଣି ଫୋଟକା, ଅପମାନ, ଗାଳି

ବୁରୁଶ୍ - *ମା.ମ.ସ.ବା.* (ବି.) : ବ୍ରସ

ବୁରେଇ - *ଦେ.* (କ୍ରି.ବି.) : ଅଧିକ ପାଇବା ଆଶାରେ ପ୍ରକାଶ କରିବା, ତୋଟା, ବଗିଚା, ଫଳବଗିଚା

ବୁରେଣ୍ - *ଗଦ୍ୟ.* (ବି.) : ନୂଆ କରି ଆମ୍ବ ଟାକୁଆ ଖାଇବା ପର୍ବ

ବୁର୍ଛାଳ - *କୋ.* (ବିଂ.) : ବଢ଼ିଆଳ, ସ୍ୱାସ୍ଥ୍ୟବାନ୍

ବୁର୍ଷାଳିଆ - *ଅ.* (ବିଂ.) : ମୋଟାସୋଟା

ବୁର୍‌କା - *ମା.* (ବି.) : ଲାଭ

**ବୁର୍‌ଘିଚିବା** - *କଳା:* (କ୍ରି.) : ବେଖାତିର୍ କରିବା, ଗୁରୁତ୍ୱନଦେବା

**ବୁର୍‌ଜାଳି** - *ଅ:* (କ୍ରି.) : ଉଜାଡ଼ି ଦେବା

**ବୁର୍‌ଜି** - *କଝ:* (ବି.) : କୁକୁଡ଼ା ରହିବା ବାଉଁଶ ଝୁଡ଼ି

**ବୁର୍‌ବୁଚି** - *ସୁବ:* (ବି.) : ଗେଡୀ ସ୍ତ୍ରୀ

**ବୁର୍‌ବୁଟି** - *କଳା:* (ବି.) : ଲଇନି, ଝୁଡଙ୍ଗ ଜାତୀୟ ପରିବା

**ବୁର୍‌ବୁଡ୍‌ବାର** - *ସୁବ:* (କ୍ରି.) : କେଞ୍ଚାକେଞ୍ଚି କରି ପୂରେଇବା

**ବୁଲ** - *କୋ:ମ:* (ବି.) : ବୋଲ, କଥା ମାନିବା

**ବୁଲ୍‌ମାଁ** - *ଦେୌ:* (କ୍ରି.) : ବୁଲିବା

**ବୁଲ୍‌ସି** - *କଳା:* (କ୍ରି.) : ବୁଲୁଥାଏ

**ବୁଲହାକ** - *ଦେୌ:* (ବି.) : ନିର୍ଦ୍ଦେଶ, ଆଦେଶ

**ବୁଲାକ୍** - *ଅ:* (ବି.) : ଦଣ୍ଡୀ, ଗୁଣା

**ବୁଲାକି** - *ନୂ:* (ବି.) : ଯାଯାବର

**ବୁଲାଣି** - *ଗ:* (ବି.) : ଚକ୍ରଗତି

**ବୁଲାସିନ୍ଥୁ** - *ଗଜ:* (ବି.) : ଗଛବିଶେଷ

**ବୁଲି** - *ନୂ:ସୁ:କଝ:* (ବି.ଅ.) : ଗୀତର ସ୍ୱର, ବୋଲି, ଦୋଳି

**ବୁଲିକିନ୍ଦିରି** - *ସ:* (କ୍ରି.) ବୁଲିଆସିବା, ଏଣେତେଣେ ବୁଲିବା

**ବୁଲେଇବା** - *ଗ:* (କ୍ରି.) ଡେରିକରିବା, ଠିକଣା ସମୟରେ ପରିଶୋଧ ନ କରିବା

**ବୁଲେପାନି** - *କଝ:* (ବି.) : ବିଦେଶୀମଦ

**ବୁଳ** - *କଝ:କୋ:* (ବି.) : ବୋଳ, ପ୍ରଲେପ

**ବୁଳିବା** - *କୋ:* (କ୍ରି.) : ଲେସିବା, ବୋଳିବା

**ବୁହାଟେହେଲା** - *ନ:* (କ୍ରି.ବିଂ.) : କିଛି ସମୟ ହେଲା

**ବୁହାବୁହି** - *ଦେୌ:* (ବିଂ.) : ଟେକାରଖା

**ବୁହାରି** - *କଝ:ସୁବ:* (ବି.) : ବୋହୂ, ପୁଅର ସ୍ତ୍ରୀ, ବଧୂ

**ବୁହିନ୍** - *ମ:* (ବି.) : ଭଉଣୀ

**ବୁହେ** - *ନ:* (ବିଂ.) : ଯଥେଷ୍ଟ ସମୟ, ବହୁତ

**ବୁହେନ** - *ସ:* (ବି.) : ଭଉଣୀ

**ବୁହେବାଟ** - *ନ:* (ବି.) : ଅଧିକ ବାଟ

**ବୁଂଧ** - *ବ:* (ବି.) : ମୂଳ

**ବୁ'ଧକରିବା** - *କୋ:* (କ୍ରି.) : ବୋଧ ଦେବା, ସାନ୍ତ୍ୱନା ଦେବା

**ବୃତ୍ତିବାଡ଼ି** - *ଯା:* (ବି.) : ଜମିବାଡ଼ି, ପେଟ ପୋଷିବା ସାଧନ

**ବୃନ୍ଦାବତୀ** - *ଅନେ:* (ବି.) : ତୁଳସୀ ଚଉରା

**ବେଆଡ଼ା** - *ବା:ଦେ:* (ବିଂ.ବି.) : ଅମାନିଆ, ବେନିୟମ

**ବେଆଦବୀ** - *ଗଦ୍ୟ:* (ବିଂ.) : ଅଶିଷ୍ଟ

**ବେଇକି** - *ଗଜ:ଗଦ୍ୟ:* (ଅ.କ୍ରି.ବିଂ.) : ଶୀଘ୍ର, ବେଗି

**ବେଇବା** - *ବା:* (କ୍ରି.) : ଜନ୍ମ କରିବା

**ବେଇମାନୀ** - *ଖୋ:* (ବିଂ.) : କୃତଘ୍ନ

**ବେଇଶ୍** - *ନୂ:* (ବିଂ.) : ବାଇଶି(୨୨)

**ବେଈ** - *କଳା:* (ବି.) ବଡ଼ଭଉଣୀ, ଜେଜେମା', ଆଈ

**ବେଉନ୍ତ** - *ଗ:* (ବି.) : ବାଣ୍ଟିବା

**ବେଉରା** - *ଭ.କେ.ଗ:* (ବି.) ଖବର, ବ୍ୟବସାୟ

**ବେଉଷଣ** - *ଗ.ଦେ:* (ବି.) : କୃଷି କ୍ଷେତ୍ରରୁ ଘାସ ନିର୍ମୂଳ କରିବା, ବିହୁଡ଼ା

**ବେଉସା** - *ଅନେ:* (ବି.) : ବ୍ୟବସାୟ, କର୍ମ, ବିଭିନ୍ନ ଶସ୍ୟ ଜାତୀୟ ଜିନିଷ ଚାଷ କରିବା, ଫସଲ, କୌଳିକ କର୍ମ, ବୃତ୍ତି, କୃଷି କ୍ଷେତ୍ରରୁ ଘାସ ନିର୍ମୂଳ କରିବା, ମାଟି ହାଲୁକା କରିବା

**ବେଉଁତ** - *ଝା.ସ:* (କ୍ରି.ବିଂ.) : ସଯତ୍ନରେ

**ବେଏଞ୍ଜିଆ** - *ଗ:* (ବିଂ.) : ନଷ୍ଟଚରିତ୍ର, ଛତରା

**ବେଏଣ୍ଡା** - *ନ:* (ବି.) : ଏକ ବୃକ୍ଷର ନାମ

**ବେଓ୍ୱା** - *ଖୋ:* (ବିଂ.) : ବିଧବାର ନାମ ପରେ ଏପରି ଲେଖାଯାଏ, ବେଓ୍ୱାରିସ୍

**ବେକ** - *ନ.ଦେ:* (ବି.) : ଗଳା, ଶଙ୍ଖି

**ବେକଚାପ** - *କେ:* (ବି.) : ମଙ୍ଗଳସୂତ୍ର, ବେକରେ ପିନ୍ଧୁଥିବା ରୁପା ଅଳଙ୍କାର

**ବେକଡ଼ା** - *ଚୀ:* (କ୍ରି.) : କାଳିସୀ ଲାଗିବା

**ବେକଡ଼ି** - *ନବ:* (ବି.) : ବ୍ୟାଣ୍ଡ

**ବେକରେ ବନ୍ଧା** - *ସଂ:* (ବି.) : ଆଶ୍ରିତ ଲୋକ

**ବେକଳନ** - *ସଂ:* (ବି.) : ଅକଳନ

**ବେକସ** - *ସଂ:* (ବିଂ.) : ଢିଲା, ହୁଗୁଳା

**ବେକସୁର** - *ଭ.ପା:* (ବି.କ୍ରି.ବିଂ.) : ବିନାଭୁଲ୍, ବିନା ଦୋଷ

**ବେକା** - *ଗ.ବା.ପା:* (ବି.) : ଧାନହୁଳା, କେଣ୍ଡା ସମୂହ, ଛୋଟ ମାଟି ପାତ୍ର

**ବେକାଏ** - *ଗଦ୍ୟ:* (ବି.) : ହାତ ପାପୁଲିରେ ଧରି ହେଉଥିବା ପରିମାଣ

**ବେକାନି** - *କଳା:* (ବି.) : ନାଁଦିଆ

**ବେକାର** - *ଅନେ:* (ବିଂ.) : କାମ ନଥିବା ଲୋକ

**ବେକିଆ ମାରିବା** - *ଚୌ:* (କ୍ରି.) : ତଣ୍ଡିଆ ମାରିବା

**ବେକୁବ୍** - *ଭ:* (ବିଂ.) : ବୋକା

**ବେକେ** - *ଅନେ:* (ବି.) : ବେକ ପର୍ଯ୍ୟନ୍ତ

**ବେଖଡ଼** - *ଗଦ୍ୟ:* (ବିଂ.) : ରାଗି, ଅଖାଡୁଆ

**ବେଖୁଙ୍କେନ୍** - *ନୁ:* (ବି.) : ବାଇଡ଼ଙ୍କ

**ବେଗ୍** - *ଅନେ:* (ବି.) : ବ୍ୟାଗ, ମୁଣା

**ବେଗଡ଼ା** - *ଗଦ୍ୟ:* (ବିଂ.) : ଦୁଷ୍ଟ, ଅମାନିଆ

**ବେଗର** - *ସଂ:* (ଅ.) : ବିନା

**ବେଗରଭାଡିଆ** - *ସଂ:* (ବିଂ.) : ରାଜାଙ୍କ ରକ୍ଷିତା ସ୍ତ୍ରୀ ଗର୍ଭୋତ୍ପନ୍ନ, ବିନା ମୂଲ୍ୟ ବା ମଜୁରି

**ବେଗର୍ଗିଆ** - *ଚୀ:* (ବିଂ.) : ବିଶୃଙ୍ଖଳା

**ବେଗା** - *ମ:* (ବି.) : ଶୀଘ୍ର

**ବେଗାର୍(ର)** - *କଳା:* (ବି.) ବିନା ପାରିଶ୍ରମିକରେ ସେବାମୂଳକ କାର୍ଯ୍ୟ ପାଇଁ ବାଧ କରାଯାଉଥିବା ଶ୍ରମିକ

**ବେଗାଡ଼ି** - *ସଂ.* (ବି.) : ବେଠିଆ, ବେଠି

**ବେଗାଳି** - *ଖୋ.* (କ୍ରି.ବିଂ) : ଚଞ୍ଚଳ

**ବେଗି** - *ଅନେ.* (କ୍ରି.ବିଂ.ଅ.) : ଶୀଘ୍ର, ଚଞ୍ଚଳ, ସତ୍ୱର, ଜଲ୍‌ଦି

**ବେଗୁନିଆଁ** - *ଦେ.* (ବି.) : ନିର୍ଗୁଣ

**ବେଡ଼୍‌ଗଡ଼େଙ୍ଗାନି** - *ନୂ.* (ବି.) : ଏକ ପ୍ରକାର ଖେଳ

**ବେଡ଼୍‌ଗପୁଟି** - *ସ.* (ବି.) : ବେଙ୍ଗଲାର୍ଭା

**ବେଙ୍ଗଚାଉଳିଆ** - *ଗ.* (ବି.) : ଚାଲ ବୁଲ ଭଳି ସାମାନ୍ୟ ସକ୍ଷମ ଶିଶୁ, ବ୍ୟଙ୍ଗ କରୁଥିବା ବ୍ୟକ୍ତି

**ବେଙ୍ଗଦଳା** - *ଗ.* (ବି.) : ବେଙ୍ଗଅଣ୍ଡା

**ବେଙ୍ଗନାଟ** - *ଗ.* (ବି.) : ବର୍ଷା ଆବାହନୀ ପାଇଁ ଗ୍ରାମ୍ୟପିଲାଙ୍କ ବେଙ୍ଗନାଟ ଏକ ପ୍ରଥା

**ବେଙ୍ଗଲି** - *କେନ୍ଦୁ.* (ବି.) : ମଞ୍ଜୁଆଡି

**ବେଙ୍ଗଲିପୂଜା** - *ସ.* (ବି.) : ଇନ୍ଦ୍ରପୂଜା ପାଇଁ ବେଙ୍ଗ ବାହାଘର

**ବେଙ୍ଗଲୁକାନି** - *ନୂ.* (ବି.) : ଏକ ପ୍ରକାର ଖେଳ

**ବେଙ୍ଗଳା** - *ଅନେ.* (ବି.) : ଧାନ ଅମଳ କରିବା ପାଇଁ ଏକ ପ୍ରକ୍ରିୟା

**ବେଙ୍ଗା** - *ଦେ.* (ବି.ବିଂ.) : ଗୋରୁମାନଙ୍କ ରୋଗ, ଗୋଡ଼ ପେଣ୍ଡାରେ ଉଠୁଥିବା ବାକୁଳି, ବାଇଗଣ, କାର୍ଯ୍ୟ ବିଗିଡ଼ିଯିବା

**ବେଙ୍ଗାଲ୍** - *ମ.* (ବି.) : ବାଇଗଣ

**ବେଙ୍ଗେଇ** - *ଗ.* (ବି.) : ଚାବି

**ବେଚ୍‌ବା** - *ସ.* (କ୍ରି.) : ବିକ୍ରିକରିବା

**ବେଛପୁରି** - *କ.* (ବିଂ.) : ନିଛାଟିଆ, ନିକାଞ୍ଚନ, ତ୍ୟକ୍ତ

**ବେଜ** - *ରା.* (ବି.) : ଆଦିବାସୀଙ୍କ ଭଣ୍ଡାରି

**ବେଜରି** - *ନବ.* (ବି.) : ଟମାଟୋ

**ବେଜଡା** - *ବା.* (ବିଂ.) : ଦୁଷ୍ଟ

**ବେଜମାନ** - *ଭ.* (ବି.) : ଅପଦସ୍ତ

**ବେଜାଏ** - *ଅନେ.* (ବିଂ.ବି.) : ବହୁତ, ମେଞ୍ଚାଏ

**ବେଜାଁୟ** - *ବା.* (ବିଂ.) : ପ୍ରଚୁର

**ବେଜି** - *ସୁବ.* (ବି.) : କାଳିସି ଲାଗୁଥିବା ଲୋକ

**ବେଜିତ୍ କରିବା** - *ସଂ.* (କ୍ରି.) : ଅପମାନ ଦେବା, ଅନ୍ୟ ଆଗରେ ଲଜ୍ଜିତ କରିବା

**ବେଜୁ** - *ଅନେ.* (ବି.ବିଂ) ନପୁଂସକ, ମାଇଚିଆ, ଶବରମାନଙ୍କ ଠାକୁରାଣୀ

**ବେଜୁଣା** - *ବା.* (ବି.) : ଅକଣ୍ଡା, ବିଡା ପିଟା ହୋଇଥିବା ଧାନବିଡା

**ବେଜେଣି** - *କନ୍ଧ.* (ବି.) : କାଳିଶି

**ବେଜେଣି ବାର** - *କନ୍ଧ.* (ବି.) : ମାର୍ଗଶିରର ଶେଷ ଗୁରୁବାର

**ବେଝଯିବା** - *ମା.* (କ୍ରି.) : ଶିକାର କରିବା

**ବେଞ୍ଚି** - *ଗଞ.* (ବି.) : କାଠ ତିଆରି ବେଞ୍ଚ

**ବେଞ୍ଚାଟି** - *ଗଦ୍ୟ.ସୁ.ସ.* (ବି.) : କାଠ, ମଂଜୁଆଡି ଗଛ

**ବେଟ୍** - *ବର.* (କ୍ରି.) : ତଳୁ ଉଠାଇବା

**ବେଟ୍‌ଖାଇ** - *ବୌ:* (ବି.) : ତଳୁ ଗୋଟାଇ ଖାଉଥିବା ମାଇପି

**ବେଟ୍‌ସନ୍** - *କଳା:* (କ୍ରି.) ଗୋଟାଇବା, ଗୋଟାଇ ପାରିବା

**ବେଟମାଁ** - *ମା:* (କ୍ରି.) ସାଉଁଟି ରଖିବା, ଗୋଟାଇବା, ସଂଗ୍ରହ କରିବା

**ବେଟା** - *ଅନେ:* (ବି.) : ପୁଅ, ବଚା

**ବେଟାନି** - *କଳା:* (ବି.) : ଗୋଟାଇବା ପ୍ରକ୍ରିୟା

**ବେଟୁଲି** - *ଡ:* (ବି.) : ବେତ ତିଆରି ଆଧାର

**ବେଟେନ** - *ଗୁ:* (ବି.) : ଛୋଟ ପଟା

**ବେଠି** - *ଅନେ:* (ବି.) : ପାରିଶ୍ରମିକ ନନେଇ କରୁଥିବା କାମ, ତେଲ ଘଣା, ପୂର୍ବରୁ ସ୍ୱଳ୍ପ ମୂଲ ଦେଇ କରାଯିବା କର୍ମ

**ବେଠିଆଗିରି** - *ଖୋ:* (ବିଂ.) : ମାଗଣା କାମ କରିବା ପ୍ରକୃତି

**ବେଠି କୀର୍ତ୍ତନ** - *ଗ:* (କ୍ରି.) : ବିନା ମଜୁରିରେ ବାଧ୍ୟ ଶ୍ରମଦାନ

**ବେଠି ବଗାରି** - *ନ:ଗ:* (ବି.କ୍ରି.) : ମାଗଣା କରିବା କାମ, ବିନା ମୂଲ୍ୟରେ ଶ୍ରମଦାନ

**ବେଡ଼ାମି** - *ଅ:* (ବିଂ.) : ନିର୍ବୋଧତା

**ବେଢ଼ା** - *ଅନେ:* (ବିଂ.ବି.) : ବୋକା, ବାୟା, ପାଗଲ୍, ମୂକ, ନିର୍ବୁଦ୍ଧିଆ

**ବେଢ଼ାକେନ୍ଦା** - *ବୌ:* (ବିଂ.) : ମୂକ, ବୋକା

**ବେଢ଼ି** - *ଅନେ:* (ବିଂ.ବି.) : ବୋକା (ସ୍ତ୍ରୀ), ଗୋଡକଡି, ବେଢ଼ାର ସ୍ତ୍ରୀଲିଙ୍ଗ, ହାତକଡ଼ି, ଘୁଂଗି

**ବେଢୁ** - *ଅ:* (ବି.) : ଏକ ଫଳବିଶେଷ

**ବେଢ଼େ** - *ମ:* (ବିଂ.) : ବହୁତ

**ବେଢ଼ଙ୍ଗିଣା** - *ଭ:* (ବିଂ.) : ଅସୁନ୍ଦର, ରୁଚିହୀନ

**ବେଢ଼ା** - *ଅନେ:* (ବି.) ଘେର, ବିଲ, ପାଚେରୀ, ଘେରା ଅଞ୍ଚଳ, ଜମି, ମନ୍ଦିର ବାହାର ପାର୍ଶ୍ୱ

**ବେଢ଼ାଣ** - *ଯା:ଗ:ନ:* (ବି.) : ଶାଢ଼ି, ଆବରଣ, ଘୋଡ଼ଣ ବସ୍ତ୍ର, ଶାଲ୍, ଗାମୁଛା, ଉତ୍ତରୀୟ

**ବେଢୁଆଁ** - *କ:* (ବି.) : ଏକ ପ୍ରକାରଘାସ, ବରୁହାଁ

**ବେଣା** - *ଯା:କେ:ନ:ଦେ:* (ବି.) : ଏକ ପ୍ରକାର ମୁନିଆ ଯନ୍ତ୍ର, ବୁଦାବୁଦା ହେଉଥିବା ଏକପ୍ରକାର ଘାସ, ପାଟରେ ଥିବା ଛୋଟ ଗୁଳ୍ମ, ହେଁସ ମସିଣା ବୁଣାଯିବା, ଘାସ ବିଶେଷ

**ବେଣା ପୁଚୁକି** - *ଗଦ୍ୟ:* (ବି.) : ବେଣା ଗହୀରର ଏକ ଛୋଟ ଚଢେଇ

**ବେଣିଆ** - *ବା:* (ବି.) : ନିଆଁଲୁଣ୍ଡି, ନିଆଁବରିଆ

**ବେଣିଆଶିଙ୍ଗା** - *କ:* (ବିଂ.) : ବାଙ୍କ ଶିଙ୍ଗଥିବା ବଳଦ ବା ମଇଁଷି

**ବେଣୀ** - *ଗ:ନ:ଦେ:* (ବି.) : ବାଳକୁ ସଜାଡ଼ି ବାନ୍ଧିବା, ସୁବିନ୍ୟସ୍ତ କେଶଗୁଚ୍ଛ, ଧାନ ଉଡ଼େଇବା ପାଇଁ ଲମ୍ବା ଭାବରେ ଧାନ ପକେଇ କୁଲାରେ ଉଡ଼େଇବା

**ବେଣୀବାନ୍ଧିବା** - *ନ:* (କ୍ରି.) : ଧାନ ସଫା କରିସାରିବା ପରେ କୁଲାରେ ନିର୍ଦ୍ଦିଷ୍ଟ ନିୟମରେ ସଜାଇବା

**ବେଣୁସୁ** - *କେ.ବ୍ର:* (ବିଂ.) : ସହଜ, ଶୀଘ୍ର

**ବେଣ୍ଟ** - *ଅନେ:* (ବି.) : ଟାଙ୍ଗିଆ, କଟୁରି ମୁଠି, ଯନ୍ତ୍ରପାତିକୁ ବ୍ୟବହାର କରିବା ପାଇଁ ଲାଗିଥିବା କାଠ, ପାଳ ଦଉଡ଼ି, ପାରିଧି

**ବେଣ୍ଟକାର** - *ଗ:* (ବି.) : ଶିକାରୀ

**ବେଣ୍ଟମାରିବା** - *କଳା:* (କ୍ରି.) : ପାଳ ଦଉଡ଼ି ତିଆରି କରିବା

**ବେଣ୍ଟ ମୁଆଁ** - *ଗଦ୍ୟ:* (ବି.) : କଇଁ ଫୁଲର ବୀଜକୋଷ ମଧରେ ଥିବା ସୋରିଷପରି ଶସ୍ୟକୁ ଭାଜି ତିଆରି ହୋଇ ଥିବା ମୁଆଁ

**ବେଣ୍ଟ ଯାତ୍ରା** - *ମା:* (ବି.) : ଚୈତ୍ର ମାସର ଶିକାର ପର୍ବ

**ବେଣ୍ଟି** - *ଢ଼:ବୌ:ଦେ:* (ବି.) : ଛୋଟଚୁଟି, ପାଳରେ ତିଆରି ଦଉଡ଼ି

**ବେଣ୍ଡି** - *ନ:* (ବି.) : କାମକରି ହାତ ବା ଗୋଡ଼ର ଚମଡ଼ା ଖଣ୍ଡେ ବଧିଆ, ଟାଣ ପଡ଼ିଯିବା

**ବେତ** - *ସୁ:ଦେ:ସୁବ:* (ବି.) : ପ୍ରସବ ସଂଖ୍ୟା, ଗୌରୀ ବେତ, ଗୃହପାଳିତ ପଶୁ ବାଛୁରୀ ଆଦି ଜନ୍ମ କରିବାର ସଂଖ୍ୟା, ଥର, ବେତବାଡ଼ି

**ବେତ୍‌ଡ଼ା** - *ବ୍ର:* (ବି.) : ଚାଳରେ ବତା ପକାଇବା କାମ

**ବେତ୍‌ରା** - *ଦେ:* (ବି.) : ଧାନ ଡୋଲି

**ବେତନାରିଆ** - *ଢ଼:* (ବି.) : ଧାନକିସମ, ଏକ ପ୍ରକାର ଧାନର ନାଁ

**ବେତା** - *ଢେ:ଢ଼:କ:* (ବି.) : ଟୋକେଇ, ବେତ ତିଆରି ବଡ଼ ଟୋକେଇ, ବେତ ପାତର ଛୋଟ ଆଧାର,

**ବେତାଡ଼** - *ବ୍ର:* (କ୍ରି.ବି.) : ଘର ଛପରବେଳେ ବାଉଁଶର ବତା ବାନ୍ଧିବା, ଚାଳରେ ବତା ପକାଇବା କାମ

**ବେତିକ୍ରମ** - *ବ୍ର:* (ବି.) : ବ୍ୟତିକ୍ରମ

**ବେତିବା** - *ନବ:* (କ୍ରି.) : ଘେରିବା

**ବେତିବେସ୍ତ** - *ନ:* (ବିଂ.) : ବିକଳ ବିବ୍ରତ, ହଇରାଣ, ହରକତ

**ବେତୁଲି** - *ଢ଼:ଯା:କେ:ଗ:* (ବି.) : ବେତ ପାତର ଛୋଟ ଆଧାର, ବେତ ନିର୍ମିତ ପେଟିକା

**ବେତେରା କାମଡ଼ା** - *ପୁ:* (ବି.) : ଚାଳତଳେ ଦିଆଯାଉଥିବା ବାଉଁଶର ଜାଲି ଓ କାମଡ଼ା ବନ୍ଧାବନ୍ଧି କାର୍ଯ୍ୟ

**ବେତ୍ରା** - *ସ:* (ବି.) : ବେତ୍ରା, ବାଉଁଶ ପାତିରେ ଘରକରଣା ଜିନିଷ ବୁଣୁଥିବା ଜାତି

**ବେଦ୍‌ନା** - *ସୁ:ମ:* (ବି.) : ବେଦାନା ଘା, କଷ୍ଟଦାୟକ ଘା', ଡାଳିମ୍ବ

**ବେଦ୍‌ବେଦି** - *ସ:* (ବିଂ.) : ଗପୁଡ଼ି

ବେଦ୍‌ରେ - *ଗୌ:* (ବିଂ.) : ମୋଟାଏ

ବେଦଡ଼ା - *ଯା:* (ବିଂ.) : ବଦମାସ୍, ଅଭଦ୍ର

ବେଦରା - *ସୁନ:* (ବି.) : ଛେପ ପକାଇବାର ଏକକ ମାପ, ଲଣ୍ଡା, ଏକ ଲଣ୍ଡା

ବେଦାଙ୍ଗାଗିରି - *କେନ୍ଦୁ:* (ବି.) : କଳାରଙ୍ଗର ସ୍ୱଚ୍ଛମିଆଦି ଧାନ

ବେଦୁଲ୍ - *ଭ:* (ବିଂ.) : ବ୍ୟସ୍ତ

ବେଦୁଲା - *ଅ:* (ବିଂ.) : ମୋଟା

ବେଦେନ୍ - *ଝା:* (ବି.) : ପିଟାରେ ଉଠିଥିବା ବଥ

ବେଦେବେଦେ - *ଗ:* (କ୍ରି.ବିଂ.) : ଅଧିକ ପରିମାଣରେ, ବହୁ ପରିମାଣ ବିଶିଷ୍ଟ

ବେଦ୍ରିବା - *ଗଜ:* (କ୍ରି.) : ଚମକିବା(ପଶୁ)

ବେଧ - *ଅନେ:* (ବିଂ.ବି.) : ବେହିଆ, (ଗାଳି) ବେଶ୍ୟା, ପରପୁରୁଷକୁ ଦେହଦାନ କରିବା, ଅବୈଧ କର୍ମ

ବେଧାଳ - *କେନ୍ଦୁ:* (ବିଂ.) : ଅସମାନ

ବେଧୁଆ - *ଅନେ:* (ବିଂ.) : ଅଭଦ୍ର, ଅଶାଳୀନ କାମ କରୁଥିବା, କୁକାର୍ଯ୍ୟରେ ନିଯୁକ୍ତ ରହିଥିବା, ସ୍ନେହ ଗାଳି, ପିତୃମାତୃ ଅଜଣା

ବେଧେଇ - *ଅନେ:* (ବିଂ.) : ବେଶ୍ୟାଭଳି, ଗାଳିସୂଚକ ଶବ୍ଦ (ସ୍ତ୍ରୀଲୋକଙ୍କ ପାଇଁ), ଦାରୀ, ବ୍ୟଭିଚାରିଣୀ, ପରପୁରୁଷ ଗାମିନୀ

ବେନଙ୍ଗାଟି - *ସୁନ:* (ବି.) : ମଂକୁଆତି, ହିନା

ବେନା - *ଗଦ୍ୟ:ସୁନ:* (ବି.) : ଏକ ପ୍ରକାର ବାଦ୍ୟଯନ୍ତ୍ର, (ସମ୍ବଲପୁର) ବେଣା, ସୁଗନ୍ଧ ଯୁକ୍ତ ତୃଣ

ବେନାଚି - *ସୁନ:* (ବି.) : ତନ୍ତୀମାନଙ୍କ ଦ୍ୱାରା ବେଣା ଚେରରେ ତିଆରି ସୂତା ମାଜିବାର ବ୍ରଶ୍

ବେନାବାର - *ସୁନ:* (କ୍ରି.) : ତାଳ ପତ୍ରକୁ ବେଣୀ ପରି ହାତରେ ବଳିବା (ଏହାଦ୍ୱାରା ଏହା ବେଶି ସମୟ ଚଳେ)

ବେନି - *ଅନେ:* (ବି.) : ଧାନଗଦା, ବେଣୀ, ଧାନ ଉଡ଼ାଇବା ପରେ ଅର୍ଦ୍ଧ ଚନ୍ଦ୍ରାକୃତିର ଧାନଗଦା, କଙ୍କି ପତଙ୍ଗ

ବେନିୟମ୍ - *କଳା:* (ବିଂ.) : ଅନିୟମ, ଦୁର୍ନୀତି

ବେନୀ - *କଳା:* (ବି.) : ଧାନବେଣୀ, ଗୁଣ୍ଡଧାନ ଉଡ଼େଇବା ବେଳେ କୁଲାରେ ଲମ୍ବାକରି ପକାଯାଉଥିବା ପଦ୍ଧତି, ବେଣୀ, କେଶ ବିନ୍ୟାସ ବିଶେଷ

ବେନୁଆଁ - *କଳା:* (ବି.) : ଫିର୍‌କି, କଙ୍କି

ବେଣ୍ଟାଳ - *ଯା:ଭ:* (ବି.ବିଂ.) : ଦୁଷ୍ଟାମି, ଅଝଟ

ବେନ୍ଦଲା - *ଗୌ:* (ବି.) : ମଂକୁଆତି

ବେନ୍ଧା - *ଅନେ:* (ବି.ବିଂ.) ମାଛଧରା ଉପକରଣ, ଖଣ୍ଡ, ଠୁସା, ଗଡ଼

ବେନ୍ନା - *ଚ:* (ବି.) : ମାଲୁଆ ଚାଷଜମି

ବେପରୁଆ - *ଜ:* (ବିଂ.) : ପରୁଆ ନକରିବା

ବେପାରେନ - *ସୁ:* (ବି.) : ମହିଳା ବେପାରୀ

ବେବପୁ - *ଗଦ୍ୟ:* (ବିଂ.) : ମୁର୍ଖ, ବେକୁବ୍

**ବେବର୍ଣ୍ଣା** - *ଗ:* (ବି.) : ରାଜଦତ୍ତ ଉପାଧି, ରାଜାଙ୍କ ହିସାବ ରକ୍ଷକ

**ବେବସ୍ଥା** - *ଜ:ଚ:* (ବି.) : ବ୍ୟବସ୍ଥା

**ବେବାଗିଆ** - *ଜ:* (ବିଂ.) : ଅବାଗିଆ

**ବେଭଳ** - *ଜ:* (ବିଂ.) : ବିହ୍ୱଳ

**ବେଭାର** - *ଅନେ:* (ବି.) ବ୍ୟବହାର, ଯୌତୁକ, ବନ୍ଧୁଙ୍କୁ ଉତ୍ସବରେ ଟଙ୍କା ବା ଜିନିଷ ଉପହାର, ବନ୍ଧୁଘର ପାଇଁ ଉପହାର, କାମକାର୍ଯ୍ୟରେ ଦିଆଯାଇଥିବା ଆର୍ଥିକ ସହଯୋଗ, ବ୍ୟବହାର ଆଚରଣ, ଅତିଥିଙ୍କୁ ଦିଆଯିବା ସମ୍ମାନ

**ବେଭାରି** - *ପୁ:ଭା:* (ବି.ବିଂ.) : ମାମଲତକାର, ଅନାହୂତ ମୁରବିପଣିଆ କରୁଥିବା ବ୍ୟକ୍ତି, ବ୍ୟବସାୟୀ

**ବେମ୍‌ଜାନ** - *ଗଦ୍ୟ:* (ବି.) : ସୁଖ, ଲାଭ

**ବେମ୍‌ରିଆ** - *କଳା:* (ବିଂ.) : ବେମାରିଆ, ରୋଗିଣା ପୁରୁଷ

**ବେମ୍‌ରେନ୍** - *କଳା:* (ବିଂ.) : ରୋଗିଣା ସ୍ତ୍ରୀ

**ବେମାର** - *କଳା:ସ:* (ବି.) : ରୋଗ, ଅସୁସ୍ଥତା

**ବେମୁରଗା** - *ଚା:* (ବିଂ.) : ମୁରବୀ ବିହୀନ

**ବେମିରୀ** - *ଗଜ:ଗ:* (ବି.) : ବ୍ୟସ୍ତ, ବିରକ୍ତି

**ବେଯାଏ** - *ଖୋ:* (ବିଂ.) : ଅଧିକ, ପ୍ରଚୁର

**ବେଯୋଡ଼** - *ଖୋ:* (ବିଂ.) : ଅଯୁଗ୍ମ

**ବେୟ** - *ନ:* (ବି.) : ବ୍ୟୟ, ଖରଚ

**ବେରଣ୍ଡ** - *ଗ:* (ବି.) : ମୁଖବ୍ରଣ,ଭରଣ ଘା

**ବେରନା** - *ସୁ:* (ବି.) : ମଧ୍ୟମ ଶ୍ରେଣୀୟ ଚାଷଜମି

**ବେରଲା ପିଢ଼ା** - *ନୂ:* (ବି.) : ରୋଟି ତିଆରି ପାଇଁ ବ୍ୟବହୃତ କାଠର ପିଢ଼ା ବା ପେଡ଼ି

**ବେରି** - *କେ:* (ବି.) : ବଡ଼ହାଣ୍ଡି (ମାଟି ତିଆରି)

**ବେରିଆ** - *କଳା:* (ବି.) : କୈବର୍ତ୍ତ ଜାତିର କୌଳିକ ଉପନାମ ବିଶେଷ

**ବେରିଙ୍ଗ** - *ଭ:ଅ:* (ବି.ବିଂ.) ଟିକଟ ଲାଗିନଥିବା ଚିଠି

**ବେରିଂ ମାରବା** - *ମା:* (ବି.) : ଚୋରି କରିବା

**ବେରୁନ୍** - *କଳା:* (ବି.) : ବେଣା ଗଛ

**ବେରୁଲ୍** - *କଳା:* (ବିଂ.) : ନିୟମ ବହିର୍ଭୂତ, ଅନ୍ୟାୟ, ଅଯୌକ୍ତିକ

**ବେରେଣା** - *କଣ:ଗ:* (ବି.) : ଗହୀର,ବିଲ

**ବେର୍‌ନା** - *କଳା:ସ:ବୌ:ଝା:* (ବି.) : ବାହିଲି, ଅପେକ୍ଷାକୃତ କମ୍ ଗହିରିଆ ଜମି, ସାମାନ୍ୟ ଟାଙ୍ଗରା ମାଟି, ବେଣା ଘାସ ସମ୍ପର୍କିତ ଜମି, ଢିପ ଜମି ଅଞ୍ଚଳ

**ବେର୍, ବାଏର୍** - *ନୂ:* (ବି.) : ବାଡ଼ି, ବଗିଚା

**ବେର୍‌ବେରା** - *ସ:କୋ:* (ବି.) : ନଖରେ ହେଉଥିବା ଏକ ପ୍ରକାର ଘା, କ୍ଷତ ହୋଇ ପଚିଯିବା

**ବେର୍‌ହା** - *ସୁବ:* (ବି.) : ବେଢ଼ା

**ବେର୍‌ହାଡିକେ** - *ନୂ:* (ବିଂ.) : ଚାରିଆଡେ

ବେଲ - *ଅନେ:* (ବି.) : ସମୟ, ସୂର୍ଯ୍ୟ, ବେଲଫଳ, ବିଲ୍ୱ, ଶ୍ରୀଫଳ, ବେଳ

ବେଲ୍‌ଭଦା - *କଳା:* (ବି.) : ସୂର୍ଯ୍ୟୋଦୟ, ସକାଳ, ଭୋର ସମୟ

ବେଲ୍‌କାଲ୍ - *କଝ:* (ବି.) : ବେଳକାଳ

ବେଲ୍‌କିଆ - *ଚୌ:* (ବି.) : ଗୋଟେବେଳା

ବେଲ୍‌କେ - *କଳା:* (ବି.) ବେଳକୁ, ସମୟରେ

ବେଲ୍‌ଚା - *ନ:* (ବି.) : ଲୁହା କୋଦାଳ; ଯେଉଁଥିରେ ମାଟି, ବାଲି ଦୂରକୁ ପକାଯାଏ।

ବେଲ୍‌ବୁରୁହୁ - *ନୂ:* (ବି.) : ଏକ ପ୍ରକାର ମାଛ

ବେଲ୍‌ବେଲି - *ସ:* (ବିଂ.) : ବେଶୀ କଥା କହୁଥିବା ନାରୀ

ବେଲ୍‌ବେଲିଆ - *ଚୌ:* (ବିଂ.) : କୁହାଳିଆ

ବେଲ୍‌ସୁରୁ - *ଚୌ:* (ବିଂ.) : ମୂଳରୁ, ପ୍ରଥମରୁ

ବେଲ୍‌ସୁଁ - *ସ:* (କ୍ରି.ବିଂ.) : ଆରମ୍ଭରୁ

ବେଲଆମ୍ବ - *କେନ୍ଦୁ:* (ବି.) : ଏକପ୍ରକାର ଆମ୍ବ

ବେଲଭଦା - *ସ:ସୁ:ସୁବ:* (ବି.) : ସୂର୍ଯ୍ୟୋଦୟ, ସକାଳ ସମୟ

ବେଲ ଉବେଲ୍ - *ସ:* (ବି.) : ସମୟ ଅସମୟ, ବେଳ ଅବେଳ

ବେଲଜିଆ - *ଚୌ:* (ବିଂ.) : ଲଜ୍ଜାହୀନ

ବେଲମ - *ଯା:ରା:* (ବି.) : ଗୁଡ଼ିଆ, ଗୁଡ଼

ବେଲମା - *ଗଜ:କୋ:* (ବି.) : ଜାତିବିଶେଷ

ବେଲାଙ୍ଗା - *କଝ:* (ବି.) : ବେଲ

ବେଲାରେ - *କଝ:* (ବି.) : ଦିନବେଳା

ବେଲି - *ଗ:କୋ:* (ବି.) : ଭଙ୍ଗୀ, ଢଙ୍ଗ, ଅଭିନୟ, ଛଳନା

ବେଲୁରି - *କୋ:* (ବି.) : ଫିତା, ବେଲ୍ଟ

ବେଲ୍ ବଅଁରୀ - *ନୂ:* (ବି.) : ଏକ ପ୍ରକାର ମାଛ

ବେଳଭଳି - *ମ:* (ବି.) : ଉପରଓଳି

ବେଳାବେଳି - *କୋ:* (ବିଂ.) : ଶୀଘ୍ର, ଜଲ୍‌ଦି

ବେଶମୁଡ଼ା - *କଳା:* (ବି.) : ଉପକଣ୍ଠ

ବେସର - *ଅନେ:* (ବି.) : ମାଛ, ଗୁଆଁର, ଚୂନାମାଛକୁ ସୋରିଷ ବଟାଦେଇ ପ୍ରସ୍ତୁତ କରୁଥିବା ଖାଦ୍ୟ, ବଟାସୋରିଷ, ନାଶା ଅଳଙ୍କାର

ବେସରମିଆ - *ସୁ:ସ:ଖୋ:* (ବିଂ.) : ଲାଜ ସରମ ନଥିବା (ଲୋକ)

ବେସାରପଖଣ - *କଝ:* (ବି.) : ଶିଳପଥର

ବେସିନ୍ - *ଖୋ:* (ବି.) : ପାଣିକଳ ପାଖରେ ବ୍ୟବହୃତ ଏକ ପାତ୍ର ବିଶେଷ

ବେସୁରିଆ - *ଝା:* (ବିଂ.) : ସ୍ମରଣ ଶକ୍ତିର ଅଭାବ ଥିବା (ବ୍ୟକ୍ତି), ବେଢଙ୍ଗିଆ

ବେସେଲ୍ - *ନୂ:* (ବି.) : ମଧ୍ୟମ ଧରଣର ହାଣ୍ଡି

ବେସ୍କା - *କଝ:* (ବି.) : କାଠ

ବେସ୍ତାତେ - *କଝ:* (କ୍ରି.) : କହିବା

ବେହରଣ - *ଢ:ଗ:କୋ:ଗଦ୍ୟ:* (ବି.) : ବୁଲି ବାହାରିବା, ପୋଷାକ, ସଭା, ଚଦର

ବେହରବାନୀ - *ଭ:* (ବି.) : ଆତିଥ୍ୟ ଦେବା

**ବେହା** - *ମ.ଢ.* (ବିଂ.ବି.) : ବେହିଆ, ବିଭା

**ବେହାଗ** - *ଗଦ୍ୟ.* (ବି.) : ସଙ୍ଗୀତର ଏକ ରାଗ

**ବେହାଲ** - *କେ.କଳା.ବା.ଭ.* (ବିଂ.) : ବିପନ୍ନ, ଟକାଣିଆ, ଖରାପ, ଦୁର୍ବଳ, ରୁଗ୍ଣ, ହାଲିଆ, ଖରାପ

**ବେହିଆ** - *ଅନେ.* (ବିଂ.) : ନିର୍ଲଜ, ଲଜ୍ଜାହୀନ, ଅଭଦ୍ର, ପରସ୍ତ୍ରୀ ଆସକ୍ତ ବ୍ୟକ୍ତି, ଅଲାଜୁକ

**ବେହୁରି** - *ଗ.* (ବି.) : କ୍ଷୁଦ୍ରମାଟି ପାତ୍ର

**ବେହେକି ଯିବା** - *ସ.* (କ୍ରି.) : ପର କଥାରେ ପଡ଼ିବା, ଅନ୍ୟ କଥାରେ ଭାସିଯିବା

**ବେହେଡା** - *କଳା.ଗଦ୍ୟ.* (ବି.ବିଂ.) : ବାହାଡ଼ା ଫଳ, ଅଶ୍ଳୀଳ, କଟୁ ମନ୍ତବ୍ୟ

**ବେହେଣ୍ଡିବା** - *ବୌ.* (କ୍ରି.) : ବାଟବଣା ହେବା, ଭୁଲିବା

**ବେହେରା** - *ଅନେ.* (ବି.) ଅନୁସୂଚୀତ ଜାତିର ସାଙ୍ଗା, ଜାତିମୁଖିଆଙ୍କ ଉପାଧି, ବାହାଡ଼ା ଫଳ, ହଳିଆମାନଙ୍କର ମୁଖ୍ୟ, ଆରଣ୍ୟକ ବ୍ରାହ୍ମଣଙ୍କ କୌଳିକ ଉପନାମ, ଗୋପାଳ ଜାତିର ସଂଜ୍ଞା, ଜାତିର ମୁଖ୍ୟ

**ବେହେରାଣି ପୁଅ** - *ଗ.* (ବି.) : ରକ୍ଷିତା ସ୍ତ୍ରୀର ପୁତ୍ର

**ବେହେରି** - *ଯା.କେ.* (ବି.) : ଛୋଟ ବେଙ୍କା, ଛୋଟ ମାଟିପାତ୍ର, ଦହି ବୁଲାଇବା ଭାଣ୍ଡ

**ବେହେଲା** - *ନ.* (ବି.) : ଏକ ବାଦ୍ୟ

**ବେହେଲି** - *ନୂ.* (ବି.) : ବର୍ଷାଧାର ବଡ଼ ଜମି

**ବେହେଁକା** - *କଳା.* (ବି.) : ଆଶା କରୁନଥିବା ଆଚରଣ, କଥାଭାଷା

**ବୈଁକିଆ** - *ସୁବ.* (ବି.) : ଗଳା ଧକ୍କା

**ବୈଁଛାଲ** - *ଗ.* (ବି.) : ବ୍ରତ ସମୟରେ ବ୍ରହ୍ମଚାରୀ ଧାରଣ କରୁଥିବା ଚର୍ମ ଉପବୀତ

**ବୈଁଟ** - *ଅନେ.* (ବି.) : ପାଳରେ ନିର୍ମିତ ଦଉଡ଼ି, ବେଣ୍ଟ, ଲୁହା ଉପକରଣ କାଠବେଣ୍ଟ

**ବୈଁଟ୍‌ଲା** - *ନୂ.ସୁ.* (ବି.) କର୍ଣ୍ଣଭୂଷଣ, କାନଫୁଲ

**ବୈଁଟା** - *ଗଜ.* (ବି.) : ଗଛବିଶେଷ

**ବୈଁଟିଆ** - *କଳା.ସୁ.ସୁବ.* (ବି.) : ପାଳରେ ନିର୍ମିତ ମୋଟା ଦଉଡ଼ି, ବୈଁଟୁଣା, ଧାନ ପୁଡୁଗ ବାନ୍ଧିବା ପାଳ ଦଉଡ଼ି

**ବୈଁଟି ନେବା** - *ନୂ.* (କ୍ରି.) : ବୋହି ନେବା

**ବୈଁଶିରା ହାଡ** - *ସଂ.* (ବି.) : ମେରୁ ହାଡ଼, ମେରୁଦଣ୍ଡ

**ବୈଇତାଳ ପକ୍ଷିଆ** - *କେନ୍ଦୁ.* (ବି.) କଳାରଙ୍ଗର ଦୀର୍ଘମିଆଦି ଏକ ଧାନ

**ବୈଲେ** - *କଝ.* (ଅ.) : ମାନେ

**ବୈଶ୍ୟ** - *ଗ.* (ବି.) : ବ୍ୟବସାୟୀ, ବେପାରି

**ବୈଷମ** - *ଢ଼:କୋ:* (ବି.) : ବୈଷ୍ଣବ, ବ୍ରାହ୍ମଣ ବୈଷ୍ଣବ

**ବୋଅଁରୀ** - *ନୂ:* (ବି.) : ଲମ୍ବାଲିଆ ଏକ ପ୍ରକାର ମାଛ

**ବୋଇତାଲ୍** - *କଖ:* (ବି.) : ବୋଇତାଳୁ

**ବୋଇତାଳୁ** - *ଗ:କଖ:* (ବି.) : କଖାରୁ

**ବୋଇଲ** - *ଢ଼:* (ବି.) : ସାପ ବିଶେଷ

**ବୋଉ** - *ଅନେ:* (ବି.) : ଜନ୍ମ କଲା ମାତା, ଭାଉଜ

**ବୋଏଡ଼** - *ସୁ:* (ବିଂ.) : ନଦୀବଢ଼ି

**ବୋକଡ଼** - *ଗଦ୍ୟ:* (ବିଂ.) : ମୂଢ଼, ନିର୍ବୋଧ

**ବୋଟୋ** - *ନୂ:* (ବି.) : ଏକ ପ୍ରକାର ମାଛ

**ବୋଡ଼** - *ଗଜ:* (ବି.) : ଜାତିବିଶେଷ

**ବୋଡ଼ଛିବା** - *ନ:* (କ୍ରି.) : ଧାନବିଲରେ ଧାନ ଶସ୍ୟବତୀ ନହୋଇ ମୁଣ୍ଡା ମାରିଯିବା

**ବୋଡ଼ା** - *ଅନେ:* (ବି.) ବୃହଦାକାୟ ଜଂଗଲିଆ ସାପ, ପାଳର ସୁରକ୍ଷାପାଇଁ ପାଳରେ ତିଆରି ନାତିଦୀର୍ଘ ଅତିକାୟ ବେଣ୍ଟ, ପରିମାପକ, ଛତୁ ବିଶେଷ, ଅଡ଼ାର ଅଧାମାପ

**ବୋଡ଼ା ଧାନ** - *ଗଦ୍ୟ:* (ବି.) : ରୁଆ ଧାନ

**ବୋଡ଼ି** - *ନ:ଗ:* (ବି.) : ୫ଟି ନଡ଼ା ବିଡ଼ାକୁ ବୋଡ଼ିଏ ସଂଖ୍ୟାରେ ଗଣାଯାଏ, କୋଡ଼ିଏ ପଇସା ମୂଲ୍ୟ

**ବୋଡ଼ିଏ** - *ଢ଼:* (ବି.) : କୋଡ଼ିଏ କଡ଼ା ବା ପାଞ୍ଚ ଗଣ୍ଡା

**ବୋଦ** - *ଗଜ:* (ବି.) : ଗୋଠ କାକୁଡ଼ି

**ବୋଦକି** - *ନ:* (ବି.) : ଘାସ

**ବୋଦସି** - *ଯା:* (ବି.) : ଏକ ପ୍ରକାର ମାଛ

**ବୋଦୁଅ** - *ନ:* (ବି.) : ଶେଉଳ ମାଛ

**ବୋବାଲ୍** - *ଦ୍ୱ:* (କ୍ରି.) : ଗାଳି ବା କୁହାଳିଆ ଲୋକର କଥା

**ବୋବାଳି** - *ନ:ଢ଼:ଘା:ଗ:* (ବି.କ୍ରି.) : ଚିତ୍କାର କରିବା, କାନ୍ଦ

**ବୋବି** - *ଢ଼:* (ବି.) : ରଡ଼ିଛାଡ଼ିବା

**ବୋମୋର** - *ଝା:* (ବି.) : ଏକ ପ୍ରକାର କଣ୍ଟା ଉଦ୍ଭିଦ

**ବୋମ୍ବାଟିଆ** - *ଦ୍ୱ:* (ବି.) : ଜଳଦସ୍ୟୁ

**ବୋର** - *ଗଦ୍ୟ:ଖୋ:* (ବି.) ଛିଦ୍ର ବନ୍ଦହୋଇଯିବା (କାନ ଓ ନାକର ଯେଉଁ ଛିଦ୍ରରେ ଅଳଙ୍କାର ପିନ୍ଧାଯାଏ)

**ବୋରବୁଟି** - *ନୂ:* (ବି.) : ଝୁଡ଼ଙ୍ଗ, ବରଗୁଡ଼ି

**ବୋରା** - *କଳା:ସୁ:ଯା:* (ବି.) : ଅଖା, ବସ୍ତା

**ବୋରାବୋରି** - *ନ:* (ବି.) : ବରାବର

**ବୋରିଆ** - *ଗଜ:ଗ:କଳା:* (ବି.) ପୋହଳାମାଛ, ଢାଳ, ନଡ଼ିଆ ବଣ, ପଲ୍ଲୀ କୁମାରୀମାନଂକର ଲୋକଖେଳ ବିଶେଷ

**ବୋରେଇ** - *କେ:* (ବି.) : ବନ୍ୟାପାଣିରେ ଭାସୁଥିବା କାଠିକୁଟା

**ବୋଇଣା** - *ଗ:ନ:ଖୋ:* (ବି.) : ଅପବାଦ, ନିନ୍ଦା,ଗାଳି, କଥାନମାନିବା ଲୋକ, ମୂଲ୍ୟହୀନ ଖରାପ କାମ

ବୋଲି - *ବ୍ର:* (ବି) : ଛଟା, ପହେଳି, ପ୍ରବଚନ

ବୋଲୁଅ - *ନ:* (ବି.) : ମାଟିମୁଣ୍ଡା, ଢେଲା

ବୋଳଧରିବା - *ଗ:* (କ୍ରି.) : ତରଳ ପଦାର୍ଥ ବହଳା ହେବା

ବୋହୂ - *ଅ:ବୌ:* (ବି.) : ପୁଅର ସ୍ତ୍ରୀ, ବଡ଼ ଭାଇର ସ୍ତ୍ରୀ

ବୋହୂଚୋରୀ - *ଖୋ:* (ବି.) : ପିଲାମାନଙ୍କ ଏକପ୍ରକାର ଖେଳ

ବୋହୂଡୋଇ - *ପୁ:* (ବିଂ.) : ବୋହୂକୁ କଷ୍ଟ ଦେଉଥିବା ଶାଶୁ

ବୋହୂଭାତ - *ପଦ୍ମ:* (ବି.) : ବିବାହ ପରେ କନ୍ୟାଘରେ ହେଉଥିବା ଭୋଜି

ବଁକ - *ଅନେ:* (ବି.) : ବଗପକ୍ଷୀ

ବଁକା - *ସୁ:* (ବିଂ.) : ଡେଙ୍ଗା, ବକ୍ର

ବଁକି - *ଝା:ସୁ:* (ବି.) : ଧାନ ପତ୍ର ଧଳାଧଳା ହୋଇ ଛିଣ୍ଡିବା ରୋଗବିଶେଷ

ବଁଡ଼ା - *ସୁ:ସୁବ:ସ:* (ବିଂ.) : ଲାଙ୍ଗୁଳ ବିହୀନ, ଲାଂଜ ଛିଣ୍ଡିଯାଇଥିବା ପଶୁ

ବଁଧ - *ସୁ:* (ବି.) : ବନ୍ଧ, ପୋଖରୀ

ବଁନା ବିଛନା - *ସ:* (ବି.) : ଭୁଲ୍ ଠିକ୍ ବିଚାର କରିବା, ଭଲମନ୍ଦ ବାଛିବା

ବଂଗି - *କଳା:ସ:* (ବି.) : ବଡ କାଠ ଗଣ୍ଡି

ବଂଚ୍‌ବା - *କଳା:* (କ୍ରି.) : ବଳକା ହେବା, ଅଗ୍‌ଳିବା, ଜୀବନ ଧାରଣ କରିବା

ବଂଝା - *କଳା:ନୂ:ସ:* (ବିଂ.) : ଅପୁତ୍ରକ

ବଂଦରିଅ - *ସୁ:ବ:* (ବି.) ବାହୁସୂତା, ମାଙ୍କଡ଼ିଆ, ଅଳଙ୍କାର ବିଶେଷ

ବଂଧା - *ନୂ:* (ବି.) : ବନ୍ଧକ, ଋଣ

ବଂଶିରା - *ବ୍ର:* (ବି.) : ମେରୁଦଣ୍ଡ

ବ୍ୟାସଗାଦି - *ସ:* (ବି.) : କାଠରେ ତିଆରି ଉପକରଣ, ଯାହା ଉପରେ ପୁରାଣ ଭାଗବତ ରଖାଯାଏ

ବ୍ୟାସାସନ - *ଅନେ:* (ବି.) : ଯାହା ଉପରେ ପୁରାଣ ଥୁଆଯାଇ ପଢ଼ାଯାଏ

ବ୍ରତକରିବା - *ସୁବ:* (କ୍ରି.) : ବ୍ରତ ହେବା, ଛେଳି ବା ବାଛୁରୀଙ୍କୁ ଖାସୁ କରିବା

ବ୍ରାହ୍ମା - *କଣ:* (ବି.) : ବାର୍‌ହା

ବ୍ଲାକ୍ସୁ - *ଗଞ:* (ବିଂ.) : କଳାରଙ୍ଗ, କଳାବଜାରୀ

ବ'ଣି ପକାଇବା - *କୋ:* (କ୍ରି.) : ପ୍ରଥମ ଗ୍ରାହକଠାରୁ ବିକ୍ରି ଲବ୍‌ଧ ଅର୍ଥ ମିଳିବା

ବ'ଢ଼ହେବା - *ଅନେ:* (ବିଂ.) : ରଜସ୍ୱଳା ହେବା, ଗୃହ ଯୋଗ୍ୟ ହେବା

ବ'ଣ୍ଡା - *କୋ:* (ବି.) : ଜଳଖିଆ ବିଶେଷ (ଆଳୁ ଚପ୍)



**ଭଅଁକା** - *କଳା:* (ବି.) : ବଣଭୁଆ

**ଭଅଁତା** - *କଳା:* (ବି.) ଧାନ ଜମିରେ ଉଠୁଥିବା ଏକ ପ୍ରକାର ଘାସ

**ଭଅଁର** - *ସୁ:ନ:ଦେ:* (ବି.) : ଭ୍ରମର, କାଠ ଫୋଡ଼ କରିବାର ଯନ୍ତ୍ର, କଳା ଭଅଁର, ବଢେଇର ଛିଦ୍ର କରିବା ଅଗର ଭଅଁର

**ଭଅଁରମାରୀ** - *ଦେ:* (ବି.) : ଏକ ପ୍ରକାର ବନୌଷଧି ଗୁଳ୍ମ

**ଭଅଁରି** - *କଳା:* (ବି.) : ଜଳ ଭଉଁରି, ଭଉଁରି

**ଭଅଁରିବା** - *ମା:ନବ:* (କ୍ରି.) : କାଠରେ ଭଅଁର ପରି କଣା କରିବା, କୁନ୍ଦିବା

**ଭଇଅ କୋଳି** - *ଖୋ:* (ବି.) : ଜଙ୍ଗଲରେ ଫଳୁଥିବା ଏକ ପ୍ରକାର ବଣୁଆ କୋଳି

**ଭଇନି** - *ନବ:* (ବି.) : ଭଉଣୀ

**ଭଇର ଗୁଡି** - *ବୌ:* (ବି.) : ଭୈରବୀ ମନ୍ଦିର

**ଭଇରା** - *କୋ:ଅ:କନ୍ଧ:ଗଜ:* (ବିଂ.ବି.) : ବଧିର, ଶ୍ରବଣ ଦୋଷଯୁକ୍ତ ବ୍ୟକ୍ତି, କାଲା

**ଭଇରୀ** - *କୋ:* (ବିଂ.) : କାଲୁଣୀ, ଶୁଭ ନଥିବା (ନାରୀ)

**ଭଇରୋବ** - *ଢ:* (ବିଂ.) : ଭୈରବ

**ଭଇଁଚ ଫଳ** - *ସ:* (ବି.) : ଏକ ମିଠା କୋଳି

**ଭଇଁରା** - *ମା:ବୌ:* (ବି.ବିଂ.) : କାଲ, ବଧିର

**ଭଇଁଲା** - *ସୁ:* (ବିଂ.) : କାଲା

**ଭଇଁଷି** - *ମା:ନବ:* (ବି.) : ମଇଁଷି, ମହିଷି

**ଭଉଗୁହ୍ମ** - *କଳା:* (ବି.) : ବହୂଚୋରୀ ଖେଳ

**ଭଉତ** - *ନବ:ବା:* (ବିଂ.) : ବହୁତ

**ଭଉତୁ** - *ଅନେ:* (ବିଂ.) : ବହୁତ, ବେଶି

**ଭଉବିଲେଇ** - *କଳା:* (ବି.) : ବଣଭୁଆ, ଭଅଁକା

**ଭଉଁର** - *ଝା:ସୁ:* (କ୍ରି.ବି.) : ଚାରିପଟେ ବୁଲିବା, କାଠ କଣାକରିବା ଯନ୍ତ୍ର, ଭଉଁରା, ବୁଲିବା

**ଭଉଁରା** - *ସୁ:* (ବି.) : ଲଟୁ ଖେଳଣା

**ଭଉଁରି** - *ଅନେ:* (ବି.) : ଚକା ଭଉଁରୀ

**ଭଉଁରିଖେଳ** - *ଗ:* (ବି.) : ପିଲାଙ୍କ ଚକ୍ରଗତିର ଖେଳ

**ଭଉଁରୀ** - *ସୁବ:ନ:ଗଜ:* (ବି.) : ବଢେଇର କାଠ କଣା କରିବା ଯନ୍ତ୍ର, ଜଳଚକ୍ର, ନଟୁ, ଅଳଙ୍କାର ବିଶେଷ, ଏକଯାତ୍ରା ଉତ୍ସବ

**ଭଏନ୍** - *ସୁ:* (ବି.) : ଭଉଣୀ

**ଭଏନା** - *ସୁବ:* (ବି.) : ଏକ ଆଦିବାସୀ ଜାତି

**ଭଏର୍** - *କଳା:* (ବିଂ.) : ସମଗ୍ର, ସବୁ, ସକଳ

**ଭଏଣାଲ୍** - *କଳା:* (ବି.) : ବଡ଼ କରତ

**ଭଏଁରା** - *ସୁ:ସୁବ:ସୁବ:* (ବିଂ.) କାଲା, ବଧିର, ଭଏଁରୀ (ସ୍ତ୍ରୀ)

**ଭଏଁଷ** - *ଗୌ:କଳା:ସୁବ:ସୁ:* (ବି.) : ଭଇଁଷି, ମଇଁଷି

**ଭଏଁସା ଡେଁଡୁଁ** - *ସୁବ:* (ବିଂ.) : କଳା ରଙ୍ଗର ବଡ଼ ଆକୃତିର ଧଣ୍ଡସାପ

**ଭକ୍ କର୍‌ବା** - *ସ:ବ:* (କ୍ରି.ବିଂ.) : ଆମିଷ ବାସ୍ନା, ପାଚିରୁ କଡ଼ା ଗନ୍ଧ ବାହାରିବା, ବାନ୍ତି ଉଠେଇବା

**ଭକ୍ ଭକା** - *ଝା:* (ବିଂ.) : ଭୟ ଓ ଆଶଙ୍କାରେ ଆଉଟି ପାଉଟି ହେବା

**ଭକ୍‌ଭକିବା** - *କଣ୍ଠା:* (କ୍ରି.) ଶବ୍ଦ କରି ବାରମ୍ବାର ଲଣ୍ଠନର ବତୀ ଜଳିବା ଓ ଲିଭିବା

**ଭକଡ** - *ଯା:ସ:* (ବି.ବିଂ.) : ଗୋଚୁଗାଇ, ବୋକା

**ଭକତ** - *ଅନେ:* (ବି.) : ଭକ୍ତ, ଭଗତ

**ଭକରବା** - *ସୁ:* (କ୍ରି.) : ବକିବା

**ଭକଲୋ** - *ସୁ:* (ବିଂ.) : ଭକୁଆ

**ଭକାଚିଆ** - *ପଦ୍ୟ:* (ବିଂ.) : ବିଷାଦଗ୍ରସ୍ତ

**ଭକା ଛାହୁନୁ** - *ସ:* (ବି.) : ବୋକାଙ୍କ ପରି ଅନେଇବା

**ଭକୁଆ** - *ଅନେ:* (ବିଂ.) : ଓଲୁ, ବୋକା, ପ୍ରତାରିତ, ଅଚତୁର, ନିର୍ବୁଦ୍ଧିଆ, ମୂର୍ଖ

**ଭକୁଆ ଭାଣ୍ଡ** - *ସଂ:* (ବି.) : ବୋକା ମଣିଷ

**ଭକୋଭକୋ** - *ଚ:* (ବି.) : ଆଶ୍ଚର୍ଯ୍ୟ

**ଭକଣ୍ଠ** - *ସୁ:* (ବିଂ.) : ଅନବୁଝା, ମୂର୍ଖ

**ଭକ୍ତା** - *ଗ୍ର:* (ବି.) : ପାଟୁଆ ଯାତ୍ରାରେ ମାନସିକ ରଖିଥିବା ଭକ୍ତ

**ଭଖୁଣୀ** - *କେ:* (ବି.) : ବେଙ୍ଗଳା ବ୍ୟବହୃତ କୁଚା ଖେଳେଇବା ବାଉଁଶ, ଉଖୁଣି

**ଭଗ** - *ଦେ:* (ବି.) : ଯୋନି

**ଭଗତ** - *କ:ଗଜ:* (ବି.) : ଭକ୍ତ

**ଭଗତଛତ୍ର** - *ସଂ:* (ବି.) : ଭକ୍ତଙ୍କ ସମ୍ମିଳନୀ, ସତ୍‌ସଙ୍ଗ

**ଭଗତିଆ** - *କ:* (ବି.) : ଭକ୍ତ

**ଭଗନସ୍** - *ସ:* (କ୍ରି.) : ସବୁ ନଷ୍ଟ କରିବା

**ଭଗନ୍ଦର** - *ସଂ:ଦେ:* (ବି.) : ମଳକଣ୍ଟକ ରୋଗ

**ଭଗବନ୍ତ** - *କ:* (ବି.) : ଭଗବାନ

**ଭଗଲ** - *ଅ:* (ବି.) : ଶାଗବିଶେଷ

**ଭଗା** - *ଗ:* (ବି.) : ଭଙ୍ଗା

**ଭଗାଢ଼ିବା** - *କୋ:* (କ୍ରି.) : ଖୋଲିବା

**ଭଗାଫଟା** - *କନ୍ଧ:* (ବି.) : ଚିରାଲୁଗା

**ଭଗାରି** - *ଅନେ:* (ବି.) : ଶତ୍ରୁ, ବୈରୀ, ଭାୟା-ଶତ୍ରୁ, ଭାଇ ହେଲେ ମଧ୍ୟ ଶତ୍ରୁ

**ଭଗୁଆ** - *କଳା:* (ବି.) : କଚ୍ଛା

**ଭଗେଇବା** - *ମା:* (କ୍ରି.) : ବିତାଡ଼ିତ କରିବା

**ଭଗ୍ନସ୍ୱାସ୍ଥ୍ୟ** - *ସଂ* (ବି.) : ରୋଗିଣା

**ଭଙ୍ଗ** - *ଦେ:ସୁବ:* (ବି.) : ଗଞ୍ଜେଇ, ଗଞ୍ଜେଇ ପତ୍ର ବଟା ପଣା

**ଭଙ୍ଗନଷ୍ଟିଆ** - *ଜ:* (ବି.) : ଅନୁକୂଳ ବିଗାଡ଼ିବା ଲୋକ, ଅଶୁଭମୁହାଁ ଲୋକ

**ଭଙ୍ଗା** - *କନ୍ଧ:* (ବି.) : ମାଂସ

**ଭଙ୍ଗାକୁସା** - *କନ୍ଧ:* (ବି.) : ମାଂସ ତରକାରି

**ଭଙ୍ଗାଥାଟ** - *ଗ:* (ବି.) : ପଳାତକ ଦଳ

**ଭଙ୍ଗି** - *ଦୌ:* (ବି.) : ହାବଭାବ

**ଭଙ୍ଗୁ** - *ଅ:* (ବି.) : କ୍ଷୀର

**ଭଙ୍ଗେଇବା** - *କେ:ମ:* (କ୍ରି.) : ଖୁଚୁରା କରିବା, ଗର୍ଭ ନଷ୍ଟ କରିବା

**ଭଚ** - *ରା:* (ବି.) : କଫ ନାଶକାରୀ ଜଡିବୁଟି ଔଷଧ, ବଚ

**ଭଜନ୍‌ବା** - *ନୂ:* (କ୍ରି.) : ତଳ ଉପରେ କରିବା

**ଭଜନା** - *ଖୋ:* (ବି.) : ଏକପ୍ରକାର ଧାନ

**ଭଜା** - *ଦେ:ନ:* (ବି.) : ଭାଜିବା, ପରିବା କାଟି ତେଲରେ ଶୁଖିଲା ଭାଜିବା

**ଭଜାହାଣ୍ଡି** - *ନ:* (ବି.) : ବାଲି ପକାଇ ଲିଆ, ମୁଢ଼ି, ହୁଡୁମ ଭାଜିବା ହାଣ୍ଡି

**ଭଜି** - *ଗଜ:* (ବି.) : ପଶାଖେଳର ଜଣେ ଖେଳାଳୀ

**ଭଞ୍ଜାବା** - *ସ:ସୁ:* (କ୍ରି.) : ଖୁଚୁରା କରିବା, ଚିଲର କରିବା, ଭଙ୍ଗେଇବା

**ଭଟ** - *ଢେ:କଳା:ସୁ:* (ବି.ଅ.) ଘାସ, ପଡିଯିବାର ଶବ୍ଦ, ଠପ, ବନ୍ଦ, ଚୁପ

**ଭଟ୍‌କା** - *ଅନେ:* (ବିଂ.ବି.) : ସିଙ୍ଘାଣିନାକା, ସିଙ୍ଘାଣି, ଭୁଲ

**ଭଟ୍‌ଭଟ** - *ନବ:ସ:କଳା:ନୂ:* (ଅ.ବିଂ.) କୋଳାହଳ, ପାଟିତୁଣ୍ଡ, ସର୍ବଦା କହିବା, ବକର ବକର ହେବା, ପଡ଼ିବାର ଧ୍ୱନି

**ଭଟ୍‌ଭଟା** - *କଳା:ସୁ:* (କ୍ରି.ବିଂ.) : ସର୍ବାଙ୍ଗରେ ବୋଳିହେବା, ମଇଳାପୂର୍ଣ୍ଣ

**ଭଟ୍‌ଭଟି** - *ମ:* (କ୍ରି.) : ମଟର ସାଇକଲ୍

**ଭଟଅମଳ** - *ଦେ:* (ବି.) : ପୁରୁଣା କାଳ

**ଭଟମରା** - *ସୁ:* (ବିଂ.) : ବନ୍ଦକରା

**ଭଟରା** - *ଗ:* (ବି.) : ଅଯଥା ଅଧିକ କଥା କହିବା ଲୋକ

**ଭଟର୍‌ଭଟର୍** - *କଳା:* (ଅ.) ସର୍ବଦା କହୁଥିବା, ଭଡ଼ଭଡ଼

**ଭଟା** - *ଅନେ:* (ବି.ବିଂ.) : ଉଚ୍ଚା ପଡ଼ିଆ ଜାଗା, ଘର ବାହାରପଟ ଖୋଲାଜାଗା, କୁଆର ଛାଡ଼ିବା, ଢିପଜମି, ପଦର

**ଭଟା ଟିକ୍ରା** - *ସ:* (ବି.) : ଢିପାଜାଗା, ଶୁଖିଲା ଜାଗା

**ଭଟାଭଟ** - *ସୁ:* (ଅ.) : ଶୀଘ୍ର, ଚଂଚଳ, ଚଟାପଟ୍

**ଭଟା ଭଠା** - *ସୁ:* (ବି.) : ଇଟାଭାଟି

**ଭଟାଯିବା** - *ନୂ:* (କ୍ରି.) : ପରିସ୍ରା କରିବାକୁ ଯିବା

**ଭଟାରେ ଫିଙ୍ଗିବା** - *ଦୌ:* (କ୍ରି.) : ପଦାକୁ ଫିଙ୍ଗିବା

**ଭଟାଲ୍** - *ଚୌ:* (ବିଂ.) : ଖାଲି

**ଭଟୁଆ** - *କଳା:* (ବି.) : ଭିଣୋଇ, ଭଗ୍ନୀ ପତି

**ଭଟେ** - *ଚୌ:* (ବି.) : ମାସିକିଆ

**ଭଟୋଇ** - *ସୁବ:* (ବିଂ.) : ଶୁଖା ପଡ଼ିଯିବା

**ଭଟ୍ଟ** - *ଗ:* (ବି.) : ପଣ୍ଡିତ ବ୍ରାହ୍ମଣ

**ଭଟ୍ଟା** - *ନବ:* (ବି.) : ପଡ଼ିଆ ଜମି

**ଭଠା** - *ସୁ:* (ବି.) : ଇଟାଭାଟି

**ଭଠାଟିକ୍ରା** - *ସୁ:* (ବି.) : ଖୋଲା ପଡ଼ିଆ

**ଭଡ୍‌କିନା** - *ନ:* (ଅ.) : ଛିଣ୍ଡିବା, ଭାଙ୍ଗିବା ଶବ୍ଦ

**ଭଡୁଆ** - *ବା:କଳା:* (ବିଂ.ବି.) : ବେହିଆ, ବେଶ୍ୟାଳୟ ପରିଚାଳକ

**ଭଡୁଅକି** - *ନ:* (ଅ.) : ଭଡ୍‌କରି, ଜୋର୍‌କରି ମାଡ଼ଦେବା

**ଭଡୁଭଡୁ** - *କଣ:* (ବିଂ.) : ଶୀଘ୍ରଶୀଘ୍ର

**ଭଡ଼କାବା** - *ସ:* (କ୍ରି.) ଡରାଇବା, ଚିଡ଼େଇବା

**ଭଡ଼କିବା** - *ସୁ:* (କ୍ରି.) : ଅଯଥା ବକିବା

**ଭଡ଼ଙ୍ଗ** - *ସଂ:* (ବିଂ.) : ଗାଲୁ

**ଭଡ଼ଙ୍ଗିଆ** - *ଖୋ:* (ବି.) : ବୃଥା ବାହାସ୍ଫୋଟ ମାରୁଥିବା ଲୋକ, ବାହାପିଆ

**ଭଡ଼ଭଡ଼ିଆ** - *ଅନେ:* (ବିଂ.ବି.) : ଅଧିକ କଥା କହୁଥିବା ଲୋକ, ବୃଥା ଗପ କରୁଥିବା ଲୋକ, ବକର ବକର ହେଉଥିବା ବ୍ୟକ୍ତି

**ଭଡ଼ା** - *ଅନେ:* (ବି.) ଶୁଳ୍କ, ମାସୁଲ, ସାମୟିକ ବ୍ୟବହାର ପାଇଁ ପାଉଣା

**ଭଡ଼ାଖିଆ** - *ସୁବ:* (ବିଂ.) : ନିଜ ସ୍ତ୍ରୀକୁ ବିକୁଥିବା ଲୋକ (ଗାଳିବାଚକ ଶବ୍ଦ)

**ଭଡ଼ାଘର** - *ନ:* (ବି.) : ମାସିକ ଟଙ୍କା ଦେଇ ଅନ୍ୟର ବ୍ୟବହାର କରିବା ଘର

**ଭଡ଼ାଟିଆ** - *ନ:* (ବି.) : ଯିଏ ଭଡ଼ାରେ ଘର ନିଏ, ଭଡ଼ାଘରେ ଯେ ରହେ

**ଭଡ଼ାର କନ** - *ସୁବ:* (ବି.) ଉତ୍ତର ପଶ୍ଚିମଦିଗ

**ଭଡ଼ୋ ଭଡ଼ୋ** - *ଚୌ:* (କ୍ରି.ବିଂ.) : ଜଲ୍‌ଦି ଜଲ୍‌ଦି

**ଭଣ** - *ସ:କଳା:* (ବି.ବିଂ.) : ଖାଇବା ଖର୍ଚ୍ଚ, ଭଣ୍ଡିବା, ଠକ, ଭଣ୍ଡ, ପ୍ରତାରକ

**ଭଣ୍‌ବା** - *ବର:* (କ୍ରି.) : ଠକିବା

**ଭଣ୍‌ଭଣ୍** - *ଅନେ:* (ଅ.) : ମାଛିର ଶବ୍ଦ, ସଢ଼ାଗନ୍ଧ

**ଭଣଜା** - *ଅନେ:* (ବି.) : ଭଉଣୀର ପୁଅ

**ଭଣତି** - *ଅନେ:* (ବି.) : ବର୍ଣ୍ଣନା ନାମ ଉଲ୍ଲେଖ

**ଭଣବା** - *ନୂ:* (କ୍ରି.) : ଅଯଥା କଥା କହି ଲୋକଙ୍କୁ ଶୁଣାଇବା

**ଭଣା** - *କଳା:ନୂ:* (ବି.) : ଭାଣ୍ଡ, ହାଣ୍ଡି, ମାଠିଆ, ବଣା

**ଭଣା ପାରରିଁ** - *ନୂ:* (ବିଂ.) : ବଡ଼ ଠକ

**ଭଣାର କୁନ** - *ନୂ:ସୁ:* (ବି.) : ପଶ୍ଚିମ ଓ ଉତ୍ତର ଦିଗର ମଧ୍ୟସ୍ଥ କୋଣ, ଈଶାନ, ଉତ୍ତର ପଶ୍ଚିମ କୋଣ

**ଭଣାରି** - *ବର:କଳା:* (ବି.) : ଭଣ୍ଡାରି

**ଭଣାର୍** - *କଳା:* (ବି.) : ଭଣ୍ଡାର

**ଭଣାଁରି** - *ସ:* (ବି.) : ଭଣ୍ଡାରି, ନାପିତ

**ଭଣିବା** - *ଅନେ:* (କ୍ରି.) : ବର୍ଣ୍ଣନା କରିବା, ଗପିବା, ବୋଲିବା, କହିବା

**ଭଣୀ** - *ଗ:* (ବି.) : ଦୁର୍ଗର ଚୋରାଦ୍ୱାର, ଚୋରା କବାଟ, ଗୁପ୍ତ ପଥ

**ଭଣୁ** - *ନୂ:ସୁ:* (ବିଂ.କ୍ରି.) : ବେଶୀ ମିଛୁଆ କଥା କହୁଥିବା ବ୍ୟକ୍ତି, କହୁ

**ଭଣ୍ଡ** - *କ:ଦେ:* (ବି.) ଠକଲୋକ, ମନ୍ଦଲୋକ, ଖରାପଲୋକ, ଶଠ

**ଭଣ୍ଡପଣ** - *କ:* (ବି.) : ଠକାମି

**ଭଣ୍ଡ ବକର** - *କୋ:ବା:ଗ:* (ବି.) : ଅଭଦ୍ର ଭାଷା, ଲାଜ କଥା, ଅଶ୍ଳୀଳ ଭାଷା

**ଭଣ୍ଡରା** - *ଗ:* (ବିଂ.) : ଭଣ୍ଡିବା ଲୋକ

**ଭଣ୍ଡା** - *ଅନେ:* (ବି.) ଅମୃତଭଣ୍ଡା, କଦଳୀପେଣ୍ଡା, ଭଣ୍ଡିବା, କଦଳୀ ଫୁଲ

**ଭଣ୍ଡାଇବା** - *ଦେ:ନ:* (କ୍ରି.) : ଠକିବା

**ଭଣ୍ଡାର** - *କେନ୍ଦୁ:ଦେ:* (ବି.) : ବଡ଼ ଓଷା ଭୋଗ(ଖିରି ଭୋଗ), ସରଘର

**ଭଣ୍ଡାରଘର** - *ଅନେ:* (ବି.) : ଗୋଦାମଘର, ସରଘର

**ଭଣ୍ଡାରଘରିଏନ** - *ସୁ:* (ବି.) : ଭଣ୍ଡାର ରକ୍ଷିକା

**ଭଣ୍ଡାରି ବର୍ତ୍ତନ** - *ସଂ:* (ବି.) : ଘର ମାଲିକଙ୍କ ଠାରୁ ଭଣ୍ଡାରି ପାଉଥିବା ବାର୍ଷିକ ପାଉଣା

**ଭଣ୍ଡାରୀ** - *ଅନେ:* (ବି.) ବାରିକ, କୋଷାଧକ୍ଷ, ଭଣ୍ଡାର ରକ୍ଷକ

**ଭଣ୍ଡାରୁନି** - *ଅନେ:* (ବି.) : ବାରିକର ସ୍ତ୍ରୀ, ବାରିକ ଜାତୀୟା ସ୍ତ୍ରୀ, ଭଣ୍ଡାରୁଣୀ

**ଭଣ୍ଡିମୋଡ଼ିବା** - *ନ:* (କ୍ରି.) : ସମ୍ପୂର୍ଣ୍ଣ ଅକର୍ମଣ୍ୟ କରାଇବା, କାର୍ଯ୍ୟ କରିବାକୁ ସକ୍ଷମ ନହେବା, ଶକ୍ତିହୀନ କରିବା

**ଭଣ୍ଡୁ** - *ବା:* (ବି.) : ଭେଣ୍ଡି

**ଭଣ୍ଡୁଆ** - *ନବ:ସ:କୋ:* (ବି.ବିଂ.) : ବଡ଼ ଡେକଚି, ଠକ, ବଡ଼ ପିତଳ ବା ରସ ନିର୍ମିତ ପାତ୍ର

**ଭଣ୍ଡୁର** - *ନ:ଦେ:* (ବି.) : ଫସର ଫାଟିଯିବା, ବିଗିଡ଼ିଯିବା, ଫତୁର

**ଭଣ୍ଡେଇଦେବା** - *ବୌ:* (କ୍ରି.) : ଭୁଟେଇବା

**ଭଡା କଂଦା** - *ନୂ:* (ବି.) : ସନ୍ତସନ୍ତିଆ ସ୍ଥାନରେ ହେଉଥିବା ଏକ କନ୍ଦମୂଳ ବିଶେଷ

**ଭତାନି** - *ଅ:* (ବିଂ.) : ନୂତନ

**ଭତୁଆ** - *କ:ସୁ:* (ବିଂ.ବି.) : ଭାଣ୍ଡ, ବେହିଆ, ଶାଗବିଶେଷ

**ଭତୁଆ ଶାଗ** - *ନୂ:* (ବି.) : ବଥୁଆ ଶାଗ

**ଭତ୍ରୀ** - *ପଦ୍ୟ:* (ବି.) : ଛତିଶୀଗଡ଼ୀ ପ୍ରଭାବିତ ଓଡ଼ିଆ ଉପଭାଷା

**ଭଦ୍‌ଭଦ୍‌କିଆ** - *ଅନେ:* (ବି.) : ପିଙ୍ଗୁଫଳ, ଏକ ଗଛ, ପକ୍ଷୀବିଶେଷ

**ଭଦ୍‌ରା** - *ବୌ:* (ବି.) : କଉ ମାଛ

**ଭଦ୍‌ରି** - *ସ:କୋ:ସ:ଝା:* (ବି.) : ବଡ଼ଧାନ ଗଦା, କେବଳ ଗୁଚ୍ଛ ଥିବା ଜାଗା

ବୁଦ୍‌ବୁଦ୍‌କିଆ ଜଙ୍ଗଲ, ଧାନ ରଖିବା ଜାଗା

**ଭଦର** - *ସୁ:ଦେ:ସୁବ:ସ:* (ବି.କ୍ରି.) : କ୍ଷୁର ହେବା, ବାଳ କାଟିବା, ଖିଅରହେବା

**ଭଦରା** - *ସୁ:* (ବିଂ.) : ସଂରକ୍ଷଣ ଡାଲା

**ଭଦରି** - *ସୁ:* (ବି.) : ବଡ଼ ଧାନକୋଠି

**ଭଦଳିଆ** - *ନ:* (ବି.) : ଭଦଭଦଳିଆ ପକ୍ଷୀ

**ଭଦଳିଆ ବିଭା** - *ପଦ୍ୟ:* (ବି.) : ଗୋପନରେ ପଳାୟନ କରି ସମ୍ପନ୍ନ ହେବା ବିବାହ

**ଭଦୁଅ** - *କେନ୍ଦୁ:* (ବି.) : ଭାଦ୍ରବ

**ଭଦେଇ** - *ସ:* (ବି.) : କଳା ରଙ୍ଗର ଝୁଡ଼ଙ୍ଗ

**ଭଦୋ** - *ଝା:* (ବି.) : ମାସର ନାମ, ଭାଦ୍ରବ

**ଭଦ୍ରି** - *ଗ:* (ବି.) : ଗଞ୍ଜାମରେ ବାସ କରୁଥିବା ଏକ ବ୍ରାହ୍ମଣ ଜାତି

**ଭନ୍‌ଜା** - *ଅନେ:* (ବି.) : ଭଉଣୀର ପୁଅ, ଭଣଜା

**ଭନ୍‌ଜାର କନିଆଁ** - *କଳା:* (ବି.) : ଭଣଜାର ପତ୍ନୀ, ଭଣଜାବୋହୂ

**ଭନ୍‌ଜି** - *କଝ:* (ବି.) : ଭାଣେଜି

**ଭନ୍‌ଭନା** - *ବୌ:* (ବି.) : ଭଣଭଣ

**ଭନ୍‌ଭନିବା** - *କଳା:* (ଅ.) : ଅପରିଷ୍କାର ହେବା, ଅନେକ ମାଛି ଏକତ୍ର ବସି ଭଣଭଣ କରିବା

**ଭବ** - *ଦେ:* (ବି.) : ଓଉଫଳ, ସଂସାର

**ଭବାର୍ଣ୍ଣ** - *ନ:* (ବି.) : ସଂସାର

**ଭବିଷ** - *ଦେ:* (ବିଂ.) : ଭବିଷ୍ୟତ, କୁତ୍ସିତ

**ଭମ** - *ନ:* (ବି.) : ଭ୍ରମ

**ଭମ୍‌କିବା** - *ସ:* (କ୍ରି.) : ନିଦ୍ରାବସ୍ଥାରେ ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରିବା

**ଭମ୍‌ର** - *ବୌ:* (ବି.) : ଭଅଁର

**ଭମ୍‌ରା** - *କଳା:* (ବି.କ୍ରି.) : ଭ୍ରମର, ଭଅଁର, ପ୍ରେମିକ, ବିଟ, ବୁଣା ହୋଇଥିବା ଗହଳିଆ ଧାନଗଛରୁ ତଳି ଓପାଡ଼ିବା

**ଭମରା, ଭମର** - *ସୁବ:* (ବି.) : ଭଁଅର

**ଭମା** - *ଗଛ:କୋ:ଅ:ସୁ:* (ବି.) : ଛବି, ଚିତ୍ର ଏବଂ ଧାନର ପୋକ, ଧାନ୍ୟାଦି ଶସ୍ୟ ପାଖରେ ଥିବା ଉଡ଼ନ୍ତା କୀଟ, ବମାପୋକ, ଧାନପୋକ

**ଭମାଗାତ** - *ବ:* (ବି.) : ବଡ଼ ଧରଣ ଗାତ, ମୂଷାଗାତ

**ଭମାପୋକ** - *ନ:* (ବି.) : ଶସ୍ୟର ମଞ୍ଜିକୁ ଖାଉଥିବା ପୋକ, ବମାପୋକ

**ଭମ୍ବର** - *କୋ:* (ବି.) : ଭ୍ରମର

**ଭୟ ଭଡ଼କ** - *ଗଦ୍ୟ:* (ବି.) : ଛନକା

**ଭୟା** - *ସୁ:* (ବି.) : ଭାଇ

**ଭର** - *ଦେ:* (ବି.) : ପୂରଣ

**ଭରକୋ ଭରକୋ** - *ବଠ:* (କ୍ରି.ବିଂ.) ତରତର ହୋଇ ଖାଇବା ଅର୍ଥରେ

**ଭରଜା** - *ଅ:* (ବି.) : ମୁକାବିଲା

**ଭରଜିବା** - *ଦେ:* (ବି.) : ଅତଡ଼ା ଖାଇ ଭୁଷୁଡ଼ି ଯିବା, ଅଶକ୍ତ ହୋଇ ଆଉଜିପଡ଼ିବା

**ଭରଢ଼** - *କେନ୍ଦୁ:* (ବି.) : ଆତ

**ଭରଣ** - *ଅନେ:* (ବି.ବିଂ.) : ୮୦ ନଉତି, ୨୪୦ ତୁମ୍ବ, ଏକ ଗାଡ଼ି ପରିମାଣ, ଭରଣପୋଷଣ, ଖୋରାକି, ଏକ ପ୍ରକାର ଜମିର ପଞ୍ଚମାଂଶ, ୨୦ ଡ଼ି.ମି ଜମିବିଶେଷ, ଦୁଇ ପୁଡୁଗ୍‌ଧାନ

**ଭରଣକାରୀ** - *ସଂ:* (ବିଂ.) : ବୋଝେଇ କରାଇବା ବ୍ୟକ୍ତି, ଭରଣା କରୁଥିବା ବ୍ୟକ୍ତି

**ଭରଣ ପୋଷଣ** - *ସଂ:ଦେ:* (ବି.) : ଖାଇବା ପିଇବା, ଲାଳନ ପାଳନ

**ଭରଣା** - *କେ:ମ:ଦେ:* (କ୍ରି.) : ପୂର୍ଣ୍ଣକରିବା, ମଜୁରା କରିବା, ଗରା, କ୍ଷତିପୂରଣ

**ଭରଣୀ** - *ଗ:* (ବି.) : ଫରୁଆ

**ଭରଣ୍ଡ** - *ରା:ନବ:କୋ:ଗ:* (ବି.) : ମୁହଁର ଘା, ବଥ, ବ୍ରଣ, ଏକ ପ୍ରକାର ଘା'

**ଭରଣ୍ଡି** - *ଗ:* (ବି.) : ଢିଙ୍କି ପାହାର ପଡ଼ିବା ଗର୍ତ୍ତ

**ଭରତ୍** - *ଚା:* (ବିଂ.) : ବହୁତ

**ଭରତା** - *ଜ:ନ:ଅ:* (ବି.) : କାଦୁଅ ଚକଟା, ଚୂଡ଼ା ଚକଟା, ବାଇଗଣ ଚକଟା ହୋଇ ଫୁଟଣ କରିବା, ଚଟଣି

**ଭରତି** - *କେ:ଦେ:* (ବି.) : ପୂର୍ଣ୍ଣ ଭରିବା, ପୂରେଇବା

**ଭରତିଆ** - *ଅ:ନ:ଦେ:* (ବି.) : ଭଦଭଦଳିଆ

**ଭରତିବା** - *ସ:* (କ୍ରି.) : ପୁରେଇବା

**ଭରଦର** - *ସୁ:* (ବିଂ.) : ଠିକ୍‌ବେଳେ, ବହୁଳ

**ଭରନ୍** - *ଚୌ:କଳା:* (ବି.) : ଲୋଦର, ପରିମାଣ ମାପ, ଏକ ଭରଣ ପରିମାଣ, ୪ପଉଟି

**ଭରନା** - *ସୁ:ନୂ:* (ବି.) : କ୍ଷତିପୂରଣ, ଭରଣା

**ଭରନୀ** - *ସୁ:* (ବି.) : ଦେବ ନିମନ୍ତ୍ରଣ ବାଦ୍ୟ, କ୍ଷତିପୂରଣ

**ଭରଭଙ୍ଗ** - *ସୁ:* (ବିଂ.) : ମେଳା

**ଭରଭରା** - *ସୁ:* (ବିଂ.) : ବେଶି ଗପୁଡ଼ି

**ଭରମ୍** - *ସ:* (ବି.) : ସ୍ୱପ୍ନରେ ଉଚ୍ଚସ୍ୱରରେ ପାଟି କରିବା

**ଭରମିବା** - *ଚୌ:ଗ:* (କ୍ରି.) : ବିଳିବିଳେଇବା, ଭ୍ରମରେ ପଡ଼ିବା, ନିଦରେ ବାଉଳି ହେବା, ମୂର୍ଚ୍ଛାପ୍ରାୟ ହେବା

**ଭରଲିବା** - *ସୁ:* (କ୍ରି.) : ବକିବା

**ଭରସା** - *ଦେ:* (ବି.) : ଆଶା, ଆସ୍ଥା

**ଭରସିବା** - *ସୁ:ନ:* (କ୍ରି.) : ସାହସ କରିବା, ଭରସା କରିବା

**ଭରା** - *ଅନେ:* (ବି.ବିଂ.) : କଟା ଧାନକୁ ବିଡ଼ା ବାନ୍ଧିବା, ଠେସ, ଢିରା, ଚାପ, ପୂର୍ଣ୍ଣ, ବୋଝେଇ, ଭରପୂର, ଓରା

**ଭରାଣ୍ଡି** - *ଅନେ:* (ବି.) : ଢିଙ୍କିର ଖାଲ ଯେଉଁଠି ଧାନରହେ, ଢିଙ୍କିର ମୂଷଳ ପଡ଼ିବା ଗାତ, ଢିଙ୍କି ଗାତ

**ଭରାବାନ୍ଧିବା** - *ଗ:* (କ୍ରି.) : କାଠ ବାଉଁଶରେ ଭାର ସହାୟକ ସଜାଡ଼ିବା

**ଭରି** - *ଗ଼:ଖୋ:ଦେ:* (ବି.) : ଓଜନ ବିଶେଷ, ୧୦ ଗ୍ରାମ ସଙ୍ଗେସମାନ, ଏକ ନିର୍ଦ୍ଦିଷ୍ଟ ପରିମାଣକୁ ସୂଚାଏ, ଏକ ତୋଳା

**ଭରିଆ** - *ଦେ଼ୌ:* (ବିଂ.) : ପ୍ରଚୁର

**ଭରିବା** - *ନ:* (କ୍ରି.) : ପୂରଣ କରିବା

**ଭରୁନ୍** - *କଳା:* (କ୍ରି.) : ପୂରାନ୍ତୁ, ଭର୍ତ୍ତିକରନ୍ତୁ

**ଭରେ** - *ଢେ:* (କ୍ରି.) : ପିଇବା

**ଭରୋ ଭରୋ** - *ଦେ଼ୌ:* (କ୍ରି.ବି.) : ବାରମ୍ବାର

**ଭର୍ନେ** - *ସ:* (ବି.) : ଅକଳନୀୟ, ମାପର ପରିମାଣ, ଭରଣେ

**ଭର୍ବାକଥା** - *ଗଜ:* (ବି.) : ମିଛକଥା

**ଭର୍** - *କଳା:* (କ୍ରି.) : ଭର୍ତ୍ତି କରିବା, ପୂରାଇବା, ଚିରିବା ଶବ୍ଦ

**ଭର୍କା** - *ସୁବ:* (ବିଂ.) : ଖଟା, ବଡ଼ପାଟିଆ

**ଭର୍କୋ (କରି)** - *ବ:* (କ୍ରି.ବିଂ.) : ସଂଗେସଂଗେ, ଖୁବ୍ ଶୀଘ୍ର

**ଭର୍ତି** - *କୋ:* (ବିଂ.) : ପୂର୍ଣ୍ଣ

**ଭର୍ଦର** - *ବ:ଦେ଼ୌ:ସ:* (ବି.ବିଂ.) : ଉପଯୁକ୍ତ ସମୟ, ପ୍ରଚୁର, ଭରପୂର, ଭଦ୍ର

**ଭର୍ନ ଦେବା** - *ସ:* (କ୍ରି.) : କ୍ଷତି ପୂରଣ କରିବା

**ଭର୍ନା** - *ସୁବ:ସ:କଳା:* (ବି.କ୍ରି.) : ବିଶେଷ କ୍ଷତିପୂରଣ, ପୂରଣ କରିବା, ଭରଣା କରିବା

**ଭର୍ନି** - *ସୁବ:* (ବି.) : ଦେବତା, ବାଦ୍ୟର ତାଳ

**ଭର୍ବା** - *ସ:* (କ୍ରି.) : ପୁରେଇବା, ଭର୍ତ୍ତିକରିବା

**ଭର୍ଭରାଇବା** - *ଦେ଼ୌ:* (କ୍ରି.) : ମାଡ଼ିଯିବା, ବଢିଯିବା

**ଭର୍ମିବା** - *ସ:* (କ୍ରି.) : ସ୍ୱପ୍ନ ଦେଖିବା, ଭ୍ରମିତହେବା

**ଭର୍ମିଯିବା** - *କୋ:* (କ୍ରି.) ଭ୍ରମିଯିବା, ବାଉଳା ହେବା

**ଭର୍ମୁଛେ** - *ଦେ଼ୌ:* (ବି.କ୍ରି.) : ଶୋଇ ବିଲ୍‌ବିଲ ହେବା, ବାଉଳିଚାଉଳି

**ଭର୍ଯିବା** - *ଦେ଼ୌ:* (ବି.) : ମୁଢି

**ଭର୍ଲେଇ** - *ନୁ:* (କ୍ରି.) : କଥାକୁ ଗୁରୁତ୍ୱ ନ ଦେଇ ଅଯଥା କଥା କହି ଚାଲିଯିବା, ଭୁଲେଇଦେବା

**ଭର୍ସିବା** - *ସ:* (କ୍ରି.) : ସାହସ କରିବା

**ଭଲ** - *କଝ:କୋ:ନ:* (ବି.ବିଂ.) : ମୁଣ୍ଡର ସିନ୍ଥା, ଉତ୍ତମ, ଭାଲ, କପାଳ

**ଭଲ୍ତିକନ୍** - *କୋ:* (ବି.) : ଖାଇବା ତେଲ

**ଭଲ୍ଟୁବମ୍** - *ସୁବ:* (ବି.) ଯନ୍ତ୍ରଣା ଉପଶମକାରୀ ମାଲିସ୍ କରା ମଲମ

**ଭଲ୍ନୁକ** - *ବ୍:* (ବି.) : ଭଲ ଲୋକ, ଭଦ୍ରଲୋକ

**ଭଲ୍ଲ** - *ବ୍:* (ବିଂ.) : ଭଲ, ଉତ୍ତମ

**ଭଲ୍ଲୁକି** - *ସ:* (ବି.) : ଭଲ ବୋଲି ଦେଖାଇ ହେବା, ଭଦ୍ରଲୋକି

**ଭଲ ଅନଭଲ୍** - *ସ:* (ବିଂ.) : ଭଲ ଖରାପ

**ଭଲକି** - *ନ:ଭ:ଚା:* (ବିଂ.) ଭଲକରି, ସୁନ୍ଦରକରି, ନିର୍ମଳରେ

**ଭଲ ତେଲ** - *ଅନେ:* (ବି.) : ସୋରିଷ ତେଲ, ବାଦାମ ତେଲ

**ଭଲଭଦିରିଆ ଶାଗ୍** - *ସ:* (ବି.) : ଏକ ପ୍ରକାର ଶାଗ

**ଭଲଭାଇଆ** - *ଦେ:* (ବି.) : ଜାତିର ମୁଖିଆ ଲୋକ

**ଭଲଲୋକ** - *ଗଦ୍ୟ:* (ବି.) : ନ୍ୟାୟ, ନିଶାପ, ଭଦ୍ରଲୋକ

**ଭଲଲୋକି** - *ଅନେ:* (ବି.) : ମଧ୍ୟସ୍ଥପଣିଆ

**ଭଲା** - *ଅନେ:* (ଅ.କ୍ରି.ବିଂ.) : ବେଶ୍, ଆଚ୍ଛା

**ଭଲିଆ** - *କଳା:ବୌ:* (ଅ.ବି.) : ଭାଲିଆ, ଭଳି, ପରି, ଭଳିଆ

**ଭଲୁଭଲା** - *ସ:* (ବିଂ.) : କେବେ କେମିତି

**ଭଲେ** - *ଦେ:ସୁ:* (ବି.ବିଂ.) : ସହଜେ, ଭଲରେ

**ଭଲେଇ** - *ବ:* (କ୍ରି.) : ଝୁଲାଇ

**ଭଲେଇକି** - *ନବ:* (ବି.) : ଭଲକରି

**ଭଲେଇ ହବା** - *କଳା:ନ:* (କ୍ରି.) : ନିଜକୁ ଭଲବୋଲି ପରିଚିତ କରେଇବା, ନିଜକୁ ନିର୍ଦ୍ଦୋଷ ସାବ୍ୟସ୍ତ କରିବା

**ଭଲେ କରିଦେଲୁ** - *ବୌ:* (ବି.) : କାର୍ଯ୍ୟଟିଏ ସହଜରେ କରିଦେବା

**ଭଲେଥା** - *ସ:କଳା:* (କ୍ରି.) : କୁଶଳରେ ରହିବାକୁ ଏହା ଆଶୀର୍ବାଦ, ଭଲରେ ରହିବା

**ଭଲୁକିଆ** - *ନୂ:* (ବିଂ.) : ଭଦ୍ର (ଭଲ୍‌ଲୁକିଆ, ଭଲ୍ ଲୋକିଆ)

**ଭଳକା** - *ଗ:* (ବି.) : ବାନ୍ତିର ଧାରା, ବାନ୍ତି ଦଲକା

**ଭଳକିବା** - *କୋ:* (କ୍ରି.) : ଶିଶୁ ବାନ୍ତି କରିବା

**ଭଳି** - *ଦେ:ନ:* (ବି.ଅ.) : ପ୍ରକାର, ସଦୃଶ

**ଭଳିଆ** - *ରା:ଗ:* (ଅ.ବିଂ.) : ସେହିପରି, ମଳ

**ଭଳିଭଳି** - *ଦେ:* (ବିଂ.) : ନାନା ପ୍ରକାରର

**ଭଶାଶ** - *ନୂ:* (ବି.) : ହାଲୁଆ

**ଭଶୁଣ୍ଡା** - *ଦେ:* (ଅ.) : ଅସୁନ୍ଦର

**ଭସ୍‌କିଯିବା** - *ମ:* (କ୍ରି.) : ଭୁଶୁଡ଼ି ପଡ଼ିବା

**ଭସ୍‌କୋ** - *ସୁ:* (ବିଂ.) : ମୋଟା

**ଭସ୍‌ଭସ୍** - *ବ:ଦେ:ସୁ:* (ଅ.) : ଏକାବେଳକେ ଗୁଡ଼ାଏ ପାଣି ବା ଧୂଆଁ ବାହାରିବା, ଧୂଆଁନିର୍ଗତ ଧ୍ୱନି, ଜଳଦି

**ଭସଭସୋ** - *ସୁ:* (ବି.) : ଫୁଲା, ହାଲୁକା

**ଭସମ** - *ସୁ:* (ବି.) : ଭସ୍ମ, ଭସ୍ମ, ପାଉଁଶ

**ଭସଲବା** - *ସୁ:* (ବି.) : ଓଦାକାନ୍ଥ ପଡ଼ିଯିବା

**ଭସା** - *ଦେ:* (ବି.) : ଜଳରେ ଭସାଇବା

**ଭସାଣି** - *ଦେ:ଖୋ:* (ବି.) : ବିସର୍ଜନ

**ଭସୁଆଁ** - *ଭ:* (ବିଂ.) : ଅନାବଶ୍ୟକ ବ୍ୟକ୍ତି

**ଭସେଇଦେବା** - *ନ:* (କ୍ରି.) : ସର୍ବନାଶ କରିଦେବା

**ଭଷ୍ଠି** - *କନ୍ଧ:* (ବି.) : ଚୁଲି ପାଖରେ ଥିବାମାଟିର ପିଣ୍ଡି

**ଭାଆଇ** - *ଚ:* (ବି.) : ଖଇରା

**ଭାଆର** - *ବ୍ରା:* (ବି.) : ବାହାର

**ଭାଆରୀ** - *ରା:* (ବିଂ.) : ଭାରି

**ଭାଇଆ** - *ରା:* (ବି.) : ବଂଶର ଭାଇ, ଜ୍ଞାତି

**ଭାଇଆଳି** - *ଖୋ:* (ବି.) : କୁଟୁମ୍ବ, ଭାଇପଣ

**ଭାଇଖାଇ** - *କଳା:ବୌ:* (ଅ.ବି.) : ଗାଳିବିଶେଷ, ଯେଉଁ ସ୍ତ୍ରୀଲୋକର ଭାଇ ମରିଯାଇଥାଏ, ଗାଳିବିଶେଷ

**ଭାଇଜିଉଁତିଆ** - *ସ:* (ବି.) ଏହି ଓଷା ଭଉଣୀମାନଙ୍କ ଦ୍ୱାରା ଭାଇମାନଙ୍କର ମଂଗଳ ଉଦ୍ଦେଶ୍ୟରେ ପାଳିତ ଓଷା

**ଭାଇଡା** - *ବ୍ରା:* (ବି.) : ଏକ ଔଷଧୀୟ ଗଛ

**ଭାଇବିରାଦର** - *ଅନେ:* (ବି.) କୁଟୁମ୍ବ ଭାଇମାନେ, ଭାଇବନ୍ଧୁ

**ଭାଇ ବୁହାରି** - *ବୌ:* (ବି.) : ସାନ ଭାଇର ସ୍ତ୍ରୀ

**ଭାଇ ଭଗାରୀ** - *ଅନେ:* (ବି.) : ପୈତୃକ ସମ୍ପତ୍ତିର ଭାଗୀଦାର

**ଭାଇମନ୍** - *ମା:* (ବି.) : ଭାଇମାନେ

**ଭାଇଲା** - *ସୁ:* (କ୍ରି.) : ବାହାରିଲା

**ଭାଇଁଚେତୁ** - *ଗ:* (ବି.) ବହନଚୋଦ୍, ଗାଳିବିଶେଷ

**ଭାଉ** - *ଅନେ:* (ବି.ବିଂ.) : ଦର, ମୂଲ୍ୟ, ଗୁରୁତ୍ୱ , ଫୁଟାଣି, ଦାମ୍ ବଢିଯିବା, ଗର୍ବ,

**ଭାଉଆ** - *ଯା:* (ବିଂ.) : ଯିଏ ଦେଖାଇ ହୁଏ, ଫୁଟାଣିଆ

**ଭାଉଜ** - *ଦେ:* (ବି.) : ବଡ଼ଭାଇଙ୍କ ସ୍ତ୍ରୀ

**ଭାଉ ମାର୍‌ବାର** - *ସୁବ:* (କ୍ରି.) : ନିଜକୁ ବଡ଼ ବୋଲି ଦେଖେଇ ହେବା, ଭାଉ ଦେଖେଇବା

**ଭାଉଁଭାଉଁ** - *ଯା:* (କ୍ରି.ବିଂ.) : ପ୍ରଚଣ୍ଡ ଶବ୍ଦରେ କାନ ଭାଉଁ ଭାଉଁ ହୋଇଯିବା

**ଭାଉଁର** - *ସୁବ:ନୂ:* (ବି.) : ବେଢା, ଭଉଁରୀ

**ଭାଏ** - *ନୂ:ସ:ସୁ:କଳା:* (ବି.) : ଛୋଟ ଭାଇ, ଭାଇ, ସହୋଦର

**ଭାଏକି** - *ନୂ:* (ବି.) : ଭାଇର ରାଣ ପକାଇବା

**ଭାଏଡ଼** - *ସୁ:* (ବି.) : ଭାଡ଼ି, ଗଦା

**ଭାଏବହ** - *ସୁ:ନୂ:* (ବି.) : ଛୋଟ ଭାଇର ସ୍ତ୍ରୀ, ଭାଇବୋହୂ

**ଭାଏ ବହେନ୍** - *ନୂ:* (ବି.) : ଭାଇ ଭଉଣୀ

**ଭାଏ ଭଗାରୀ** - *ସ:* (ବି.) : ଭାଇ ସହ ଶତ୍ରୁତା

**ଭାଏଲ** - *ସ:ସୁ:* (ଅ.) : ସମ୍ଭାବ୍ୟ, ବୋଧହୁଏ, କାଳେ, ଯଦି

**ଭାଏଁ** - *କଳା:* (କ୍ରି.) : ମୁଣ୍ଡ ବୁଲେଇ ହେବା

**ଭାକା** - *ଅନେ:* (ବି.) : କଥା, ଭାଷା

**ଭାକିବା** - *ଦେ:* (ବି.) : କହିବା

**ଭାକୁଡ଼ା** - *ଅନେ:* (ବି.ବିଂ.) : ବେଶ୍ୟାପୁତ୍ର, ଭାକୁଡ଼ ପରି ଶରୀର, ନିଦାଶରୀର, ସୁସ୍ଥ ସବଳ, ଭାରଦା, ମାଇଚିଆ, ସ୍ତ୍ରୀ ବୋଲକରା, ଗାଳିବିଶେଷ, ନିର୍ଲଜ, ଉପହସିତ ବ୍ୟକ୍ତି, ଅପଦାର୍ଥ

**ଭାକୁଡ଼ିଆ** - *ତ୍ୟ:* (ବିଂ.) : ଭାକୁଡମାଛ ପରି

**ଭାକୁର** - *ଦେ:ନ:ଗ:* (ବି.) : ଏକପ୍ରକାର ମାଛର ନାମ, ଭାକୁଡ଼

**ଭାକୁରିଆ** - *କେ:* (ବିଂ.) : ଖାଇ ଖାଇ ମୋଟା ହେଇଥିବା ବ୍ୟକ୍ତି, ଭାକୁଡ଼ ପରି ମୋଟା

**ଭାଗ** - *ଅନେ:* (ବି.ଅ.କ୍ରି.) : ଅଂଶ, ଖଣ୍ଡ, ପଳାଅ, ଯାଅ

**ଭାଗ୍‌ଡି** - *ନ:* (କ୍ରି.) : ସମୂହ ପଳାୟନ କରିବା

**ଭାଗ୍‌ବା** - *ସୁ:* (କ୍ରି.) : ପଳାଇବା

**ଭାଗ୍‌ମା** - *କଳା:* (କ୍ରି.) : ପଳେଇଯିବା

**ଭାଗ୍‌ଲା** - *କଳା:* (କ୍ରି.) : ପଳାଇଲା, ଗଲା

**ଭାଗ କରିବା** - *ନ:* (କ୍ରି.) : ସମାନ ଭାବେ ବାଣ୍ଟିବା

**ଭାଗଡ଼ା** - *କୋ:* (ବି.) : ପତଳା ବା ଦୁର୍ବଳ ଶରୀର

**ଭାଗତି** - *ସ:* (ବି.) : ଜମି କର ଦେବା

**ଭାଗଦାର** - *ସଂ:* (ବି.) : ବିଭାଗୀକରଣ, ଅଂଶୀଦାର

**ଭାଗବଂଟା** - *ସ:* (ବି.) ଭାଗବଣ୍ଟା, ଅଂଶବଣ୍ଟନ

**ଭାଗା** - *ଦେ:* (ବି.) : ପଳାୟନ

**ଭାଗାଲି** - *ଦୌ:* (ବି.) : ଭାଗୁଆଳି

**ଭାଗିଆ** - *କଳା:* (କ୍ରି.) : ପଳେଇଆ, ଚାଲିଆ

**ଭାଗିନା** - *ମ:* (ବି.) : ଭଣଜା

**ଭାଗିବା** - *କଳା:ଗ:ମ:ନ:* (କ୍ରି.) : ପଳାଇବା, ଯିବା, ପଳାୟନ କରିବା, ଧାଇଁ ପଳାଇବା, ଖସିପଳାଇବା

**ଭାଗି ମୁଢ଼େଇବା** - *ଗଦ୍ୟ:* (କ୍ରି.) : ଦୌଡ଼ିବା

**ଭାଗୁଆ** - *ଦେ:* (ବିଂ.) : ଯେ ଭାଗ ନିଏ

**ଭାଗୁନ୍** - *କଳା:ଦୌ:* (କ୍ରି.) : ପଳାନ୍ତୁ, ଯାଆନ୍ତୁ

**ଭାଗ୍ୟବିଧାତା** - *ସଂ:* (ବି.) : ବିଧାତା, ଯାହା ଉପରେ ମନୁଷ୍ୟର ସୁଖଦୁଃଖ ନିର୍ଭର କରେ

**ଭାଙ୍ଗ** - *ଅନେ:* (କ୍ରି.ବି.) : ଭାଙ୍ଗିବାକୁ ନିର୍ଦ୍ଦେଶ ଦେବା, ପାନ ପ୍ରସ୍ତୁତ କରିବା, ଗଞ୍ଜେଇ ବଟା, ଦୁକୁତା, ଧୁଆଁପତ୍ର, ଗଞ୍ଜେଇପଣା, ଲୁଗାକୁ ଚଉତିବା, ଭଗ୍ନ କରିବା

**ଭାଙ୍ଗ କରିବା** - *ମା:* (କ୍ରି.) : ଆଇରନ୍ କରିବା

**ଭାଙ୍ଗା** - *ରା:* (ବି.) : ମାଂସ

**ଭାଙ୍ଗାବିଡ଼ା** - *ସଂ:* (ବି.) (ଗୋରୁ ବ୍ୟବସାୟୀ)-୫୦ ଟଙ୍କା

**ଭାଙ୍ଗିଣ** - *ରା:* (ବି.) : ବାଇଗଣ

**ଭାଙ୍ଗିବା** - *ତ୍ୟ:* (କ୍ରି.) ସଜାଡ଼ିବା, ବିଡ଼ା ବାନ୍ଧିବା, ଖଣ୍ଡ ଖଣ୍ଡ କରିବା

**ଭାଙ୍ଗୁଣି** - *ଗ:ରା:* (ବି.) : ନିଶା ଏବଂ ଔଷଧର କ୍ଷିପ୍ରତା ଯେଉଁ ଉପଚାରରେ କମେ, ରୋଗର ଉପଶମ ପାଇଁ ପ୍ରାକୃତିକ ପ୍ରୟୋଗ

**ଭାଙ୍ଗୁରୁ** - *ରା:* (ବି.) : ଗଞ୍ଜା

**ଭାଙ୍ଗୋଡ଼** - *ଗଦ୍ୟ:* (ବି.) : ଭାଙ୍ଗ ନିଶାଖୋର ବ୍ୟକ୍ତି

**ଭାଙ୍ଗ୍ ପକାନି** - *ବଡ଼:* (ବି.) : ନିର୍ବନ୍ଧ

**ଭାଜାତାଳି** - *ଚୀ:* (ବି.) ଏକ ପ୍ରକାର ପୋଖରୀ ମାଛ

**ଭାଜି** - *ସୁବ:ନବ:କୋ:କେ:* (ବି.) : ଶାଗ, ଭଜାହୋଇଥିବା ବ୍ୟଂଜନ

**ଭାଜିଆ ପିଠା** - *ଅ:* (ବିଂ.) : ଛଣାପିଠା, କାକରା

**ଭାଜିବା** - *ଜ:* (କ୍ରି.) : ଭାଙ୍ଗି ପଡ଼ିବା

**ଭାଜିଶାଗ** - *ସୁ:ଦେ:* (ବି.) କୋଶଳା, ଲେଉଟିଆ ଶାଗ

**ଭାଜୁର କୁଜୁର** - *ସୁ:ଝା:* (ବି.କ୍ରି.) : ଗୁପ୍ତ ମନ୍ତ୍ରଣା, ଛୋଟ ଛୋଟ କଥାକୁ ଲାଗିବା ବିଶେଷତଃ କମ ସ୍ୱରରେ

**ଭାଞ୍ଜ** - *ଢେ:* (ବିଂ.) : ପରାସ୍ତ

**ଭାଟ** - *ଅନେ:* (ବି.) : ଭିଣୋଇ, ସଙ୍ଗାତ, ଚାର, ସ୍ତାବକ, ମଣ୍ଡପ, ଟିକସ, ସ୍ତବକାର

**ଭାଟି** - *ଅନେ:* (ବି.) : ଇଟାଭାଟି, ମଦଭାଟି, ମଦ ତିଆରି ସ୍ଥାନ, ମଦ ପ୍ରଭୃତି ରାନ୍ଧିବା ଚୂଲା

**ଭାଟୁ** - *ମ:* (ବି.) : ଭିଣେଇଁ

**ଭାଟୁଆ** - *ଗଦ୍ୟ:ରା:* (ବି.) : ଏକ ପ୍ରକାର ସଙ୍କର ଜାତି, ଅର୍ଥହୀନ କଥାବାର୍ତ୍ତା, ଭାଡୁଆ

**ଭାଟୋ** - *ସୁବ:କଳା:ନୂ:ସୁ:* (ବି.) : ଭିଣୋଇ, ଭଗିନୀର ପତି

**ଭାଟୌଁ** - *ବର:* (ବି.) : ଭିଣୋଇ

**ଭାଠି** - *ସୁ:* (ବି.) : ମଦ ତିଆରି ସ୍ଥାନ

**ଭାଡୁ** - *ରା:* (ବି.) : ବତକ

**ଭାଡ଼ା** - *ରା:* (ବି.) : କୁଲି

**ଭାଡ଼ି** - *ଅନେ:* (ବି.) : ଜିନିଷରଖା ପଟାଭାଡ଼ି, ଚାରିଖମ୍ବ ବିଶିଷ୍ଟ କ୍ଷୁଦ୍ର ଚାଳଘର, ଫସଲ ଜଗିବା ମଞ୍ଚା, ମାଟିଠାରୁ ଉଚ୍ଚରେ ଥିବା ଆଧାର, ଯାହା ଉପରେ ଖାଦ୍ୟଶସ୍ୟ ଅଥବା ଜାଳେଣି କାଠ ରଖାଯାଏ, ସ୍ତର, ଥର, ଘର ଭିତରର ମଞ୍ଚା, ଗୁମୁଟି, ପକ୍ଷୀବସା, କ୍ୟାବିନ୍

**ଭାଡ଼ି କରିବା** - *ଗଞ୍ଜ:* (କ୍ରି.) : ଥାକ କରିବା

**ଭାଡ଼ିକିଳା** - *ଗ:* (ବି.) : ଗଞ୍ଜାମର ଭାରତଲୀଳା ନାମକ ଲୋକନୃତ୍ୟ

**ଭାଡ଼ି ଋଁଚିବା** - *ସ:* (କ୍ରି.) : ବସ୍ତ୍ର ଇତ୍ୟାଦିର କଳାକଳା ଦାଗ

**ଭାଡୁଆ** - *ଖୋ:ମା:ଗ:* (ବିଂ.ବି.) : ଯେ ମୂଲ୍ୟହୀନ ଗପ କରୁଥାଏ, ନିର୍ଲ୍ଲଜ, ବେଶ୍ୟାସକ୍ତ ପୁରୁଷ

**ଭାଣ** - *ଦେ:* (ବି.) : ଛଳ

**ଭାଣମ** - *ଗଞ୍ଜ:* (ବି.) : ଗିନାଭଳି ଛୋଟପାତ୍ର

**ଭାଣା** - *ରା:* (ବି.) : ଶସ୍ୟ ନଷ୍ଟ କରୁଥିବା ପୋକ

**ଭାଣ୍ଡା** - *ଗ:* (ବି.) : ଛୋଟପାତ୍ର, ଗିନା

**ଭାଣ୍ଡ** - *ଅନେ:* (ବିଂ.ବି.) : ବେହିଆ, ଠକ, ଠଗ, ବଡ଼ପାତ୍ର, ପାତ୍ର, ମାଟିହାଣ୍ଡି, ବାଇଦ, ଢୋଲ, ଦେହ, ନଦୀ ଶଯ୍ୟା, ଉପସ୍ଥିତ ବୁଦ୍ଧି ସଂପନ୍ନ, ଚାଲାକ୍ ବ୍ୟକ୍ତି

**ଭାଣ୍ଡାନ୍** - *ଗଦ୍ୟ:* (ବି.) : ଶ୍ରାଦ୍ଧ

**ଭାଣ୍ଡାଫୋଡ଼** - *ସଂ:* (ବିଂ.) : ଗୁପ୍ତ ରହସ୍ୟ ଖୋଲିଦେବା

**ଭାଣ୍ଡି** - *ଗଦ୍ୟ:ବା:* (ବି.) : ବାହାରରୁ ତୋପନିକ୍ଷେପ ପାଇଁ ପ୍ରାଚୀର ଦେହରେ ହୋଇଥିବା ବକ୍ରାକାର ଗର୍ତ୍ତ

**ଭାଣ୍ଡିଆ** - *ପୁ:* (କ୍ରି.ବିଂ.) : ଲଜ୍ଜିତ, ଉପହସିତ

**ଭାଣ୍ଡିର** - *ଢ:* (ବି.) : ବେଲଗଛ

**ଭାଣ୍ଡୁଆ** - *ଅନେ:* (ବିଂ.) : ଠକ, ହିନସ୍ତା, ଶଠ, ଭଣ୍ଡ, ଅଶ୍ଳୀଳ କଥା କହୁଥିବା ଲୋକ

**ଭାତ** - *ଦେ:କଳା:* (ବି.) : ଖାଦ୍ୟ, ଦାନା, ଭାତ, ଅନ୍ନ

**ଭାତ୍‌କୁରି** - *ସୁ:* (ବି.) : ଭାତୁଡ଼ି

**ଭାତ୍‌ଖୁଆନି** - *ବୌ:* (ବି.) : ଅନ୍ନ ପ୍ରାସନ

**ଭାତ୍‌ଖୁରି** - *କନ୍ଧ:ବୌ:* (ବି.) : ଭାତୁଡ଼ି

**ଭାତ୍‌ନାୟକ** - *ମା:* (ବି.) : ଜାତିର ମୁଖ୍ୟ

**ଭାତକନ୍ଦା** - *କନ୍ଧ:* (ବି.) : ଏକ ପ୍ରକାରର କନ୍ଦା

**ଭାତ କେନ୍ଦୁ** - *ବୌ:* (ବି.) : କଞ୍ଚା କେନ୍ଦୁ

**ଭାତ-ଖଡ଼ି** - *ଗଦ୍ୟ:* (ବି.) : ପଥରଖଡ଼ି

**ଭାତଖିଆ** - *ବୌ:* (ବି.) : ଅନ୍ନ ପ୍ରାସନ

**ଭାତଖିଆ ଛୁଟି** - *ବା:* (ବି.) : ବିଦ୍ୟାଳୟର ମଧ୍ୟାହ୍ନ ବିରତି, ଖାଇବା ଛୁଟି

**ଭାତଖୁଡ଼ି** - *ବା:* (ବି.) : ଭାତୁଡ଼ି, ଚର୍ମକିଳ

**ଭାତ ଗୋଡ଼ି** - *ଭ:* (ବି.) : ଭାତୁଡ଼ି

**ଭାତନିଦ** - *ଗଦ୍ୟ:* (ବି.) : ଗାଢନିଦ, ଖାଇବା ପରନିଦ

**ଭାତହାଣ୍ଡି** - *କ:ପଦ୍ୟ:* (ବି.) : ବଞ୍ଚିବାର ଉପାଦାନ, ପ୍ରଧାନ ଅମଳକ୍ଷମ ସ୍ଥାନ

**ଭାତିଆ** - *ଅନେ:* (ବିଂ.ବି.) : ମଜୁରୀ, ମୂଲ, ଦରମା, ଖୋରାକି, ରୋଷେଇ କରି ଖାଇବା ପାଇଁ ଦିଆଯାଉଥିବା ଡ଼ାଲି ଓ ପରିବା ପ୍ରଭୃତି ସାମଗ୍ରୀ, ଭୋଜନ, ଖାଦ୍ୟ, ଭତ୍ତା

**ଭାତିକା ହାତ** - *କେନ୍ଦୁ:* (ବି.) : ଡାହାଣ ହାତ

**ଭାତୁଆ** - *ମ:ଦେ:ଗଢ:* (ବି.) : ବର୍ଷଯାକ ଘରର କାମ କରୁଥିବା ଚାକର, ବାରମାସିଆ, ପରଭାତରେ ଯେ ବଞ୍ଚେ, ଖାଇବା ପାଇଁ ଯେଉଁ ବ୍ୟକ୍ତି ଅତ୍ୟନ୍ତ ବ୍ୟାକୁଳ

**ଭାତୁଆ ପିଲା** - *ନ:* (ବିଂ.) : ଭାତଯା'ର ପ୍ରିୟ, ଭାତ ଖାଇ ଜଣକ ଘରେ ମାଗଣା କାମ କରୁଥିବା, ଭାତଖାଇ ଶ୍ରମଦାନ କରିବା

**ଭାତୁଡ଼ି** - *ଅନେ:* (ବି.) : ଦେହରେ ଉଠିବା ମାଂସଗଣ୍ଠି, ଶରୀରର ବଧିର ବ୍ରଣ, ଦେହରେ ବାହାରୁଥିବା ଅନାବଶ୍ୟକ ଛୋଟ ମାଂସ ପିଣ୍ଡୁଳା, ଶରୀରରେ ବିନ୍ଦୁ ବିନ୍ଦୁ ହୋଇ ବଢି ଯାଇଥିବା ମାଂସ

**ଭାଦ୍ରବାଣି** - *କନ୍ଧ:* (ବି.) : ଝଡ଼ିପୋକ

**ଭାନ୍‌ଜା** - *କଳା:* (ବି.) : ଭଣଜା,ଭଉଣୀର ପୁଅ

**ଭାନ୍‌ଜି** - *ନୂ:ବୌ:କଳା:* (ବି.) : ଭାଣିଜୀ, ଭଉଣୀର ଝିଅ

**ଭାନ ଭେସର** - *ସୁବ:* (ବି.) : ଅଶ୍ଳୀଳ ଗୀତ, ନାଚ ଅଭିନୟ ଇତ୍ୟାଦି
**ଭାନସ** - *ସୁ:* (ବି.) : ସାମୂହିକ ରନ୍ଧା
**ଭାନସଘର** - *ସୁ:* (ବି.) : ରନ୍ଧାଘର
**ଭାପ** - *ଦେ:ଚ୍ୟା:* (ବି.) : ବାମ୍ଫ, ବାଷ୍ପ, ଧାପ
**ଭାବ୍** - *ସୁ:* (ବି.) : ନଖରା, ଛଇଛଟକ
**ଭାବ୍‌ନା** - *ଜକ୍ଲା:* (ବି.) : ଛଇଛଟକ, ଚିନ୍ତା, ଭାବନା
**ଭାବ୍‌ବା** - *ନୂ:* (କ୍ରି.) ଭାବନା କରିବା, ଭାବିବା
**ଭାବ୍‌ବିଚାର** - *ଜକ୍ଲା:* (ବି.) : ବିଚାରାଲୋଚନା
**ଭାବ୍‌ରଂଗ** - *ଜକ୍ଲା:* (ବି.) : ଚଳିବାର ଶୈଳୀ, ଭାବଭଙ୍ଗୀ ଢଂଗ, ଠାଣି
**ଭାବ କରିବା** - *ଦେ:* (ବି.) : ସମ୍ପର୍କ ରଖିବା
**ଭାବନାଦେବା** - *ଦେ:* (କ୍ରି.) : ଔଷଧରେ ରସ ମିଶାଇବା
**ଭାବରୀ ବୁଖାର୍** - *ଗଦ୍ୟ:* (ବି.) : ମ୍ୟାଲେରିଆ ଜ୍ୱର
**ଭାବଷ ଦେଖେଇବା** - *ବୌ:* (କ୍ରି.) : ଛଡ଼ି ଦେଖେଇବା
**ଭାବେ** - *ନୂ:* (କ୍ରି.) : ଭାବରେ
**ଭାବେକର୍** - *ଜକ୍ଲା:* (ବିଂ.) : ଏକପ୍ରକାର, ଚଳନୀୟ
**ଭାଭ** - *ଦେ:* (ବି.) : ବଜାରର ଦର
**ଭାମୁଣା** - *ରା:* (ବି.) : ପୁରୋହିତ
**ଭାୟାରା** - *ଭ:* (ବି.) : ଭାଇ କୁଟୁମ୍ବ
**ଭାର** - *ଅନେ:* (ବି.) : ବୋଝ, ଭାରବୁହା ଦଣ୍ଡ, ଜିନିଷ, ଦ୍ରବ୍ୟବିଶେଷ, ଓଜନ, ବାହୁଙ୍ଗି ଓ ଶିକାରେ ସମାନ ଓଜନର ପଦାର୍ଥ ବୋହିବା, ନିକିତି
**ଭାରଥୋର** - *ଗଞ୍ଜ:ଗ:ଭ:ଖୋ:* (ବି.) ଯୌତୁକ ସମ୍ଭାର, ଉପହାର, ଉପହାର ସାମଗ୍ରୀ, ଉପଢୌକନ ଆକାରରେ ଦିଆଯାଉଥିବା ସମ୍ଭାର
**ଭାରଦା** - *ଗ:ଗଞ୍ଜ:ଖୋ:ଜ:* (ବି.ବିଂ.) : ନିଜ ସ୍ତ୍ରୀକୁ ଯେ ଅନ୍ୟ ପୁରୁଷକୁ ଅର୍ପଣ କରେ, ଭାରିଯା ବା ସ୍ତ୍ରୀ କଥାରେ ଯେ ଉଠ୍‌ବସ୍ ହୁଏ, ଭାଣ୍ଡ, ସ୍ତ୍ରୈଣ
**ଭାରା** - *ନ:କୋ:ନବ:* (ବି.) : ଅସ୍ଥାୟୀ ମଞ୍ଚା, ଓଜନ, ସନ୍ତୁଳନ, ବୋଝ, ଦାୟିତ୍ୱ
**ଭାରାଦବା** - *ଚ୍ୟ:* (କ୍ରି.) : ସବାର ହେବା, ଲଦିଦେବା, ଠେସ ଦେବା
**ଭାରାମୁଣ୍ଡେଇବା** - *ଗ:* (କ୍ରି.) : ଦାୟିତ୍ୱ ନେବା, ଭାର ବୋହିବା
**ଭାରି** - *ମା:ଯା:ନ:* (କ୍ରି.ବିଂ.) ବାହାରି, ଅତ୍ୟଧିକ, ଓଜନିଆ
**ଭାରିଆ** - *ରା:* (ବି.) : ଭାର୍ଯ୍ୟା
**ଭାରିକେ** - *ଗଦ୍ୟ:* (କ୍ରି.ବିଂ.) : ଥରକେ
**ଭାରିବା** - *କୋ:* (କ୍ରି.) : ବାହାରିବା
**ଭାରିଯା** - *ନ:ଦେ:ଖୋ:* (ବି.) : ସ୍ତ୍ରୀ, ମାଇପ
**ଭାରୀ** - *ଜ:* (ବିଂ.) : ଓଜନିଆ
**ଭାରୀ ଜାନ୍‌ବାର୍** - *ବୌ:* (ବି.) : ବେଶୀ ଜାଣିବା ଲୋକ

**ଭାରୁଆ** - *ସୁ:ନ:ସ:* (ବି.ବିଂ.) : ଭାରବୁହା, ଭାର ବାହକ, ଭାର ବୋହିବା ଲୋକ

**ଭାରେଦା** - *ନ:* (ବିଂ.) : ଯିଏ ନିଜସ୍ତ୍ରୀକୁ ପରପୁରୁଷକୁ ଭୋଗ କରିବାକୁ ଦିଏ, ମାଇଚିଆ

**ଭାରୋତୋଳନ** - *ସଂ:* (ବି.) : ଓଜନ ଜିନିଷ ଉଠାଇବା

**ଭାର୍** - *କଳା:* (ବି.) : ବୋଝକୁ କାନ୍ଧେଇ ନେବା ପାଇଁ ଆବଶ୍ୟକ ଦଣ୍ଡ, ବୋଝ, ଦଣ୍ଡ ସାହାଯ୍ୟରେ କାନ୍ଧେଇଥିବା ବୋଝ

**ଭାର୍ଜନ** - *ଜ:ଜ:* (ବି.) : ଉପଯୁକ୍ତ, ସକ୍ଷମ

**ଭାର୍‌ଚି** - *କଙ:* (କ୍ରି.) : ବାହାରିଚି

**ଭାଲ୍** - *କଳା:* (କ୍ରି.) : ସମ୍ଭବତଃ, ବୋଧୁଏ, ସିନା, ଭାଳ, ଚିନ୍ତାକର

**ଭାଲ୍‌ନି** - *ଗୌ:ନୁ:* (ବି.) : ଭାଳେଣୀ, ଦୁଶ୍ଚିନ୍ତା

**ଭାଲକୁଣୀ** - *ଭ:* (ବି.) ମା'ମଙ୍ଗଳା, ଖୁଦୁରୁକୁଣୀ

**ଭାଲା** - *ସୁ:* (ଅ.) : ଆଚ୍ଛା, ଭଲା

**ଭାଲି** - *ମ:ନ:କଳା:* (କ୍ରି.ବି.) : ଭାବିବା, ଲମ୍ବାକାଠ, ବାଉଁଶରେ ଲୌହ ଅସ୍ତ୍ର ଲାଗିଥିବା ହତିଆର, ଭାଳି, ଚିନ୍ତାକରି

**ଭାଲିଆ** - *ଅନେ:* (ବି.) : ଏକ ବୃକ୍ଷର ଫଳ, ଯାହା କୁଣ୍ଡାଇ ହୁଏ, ଲଙ୍କା ଆମ୍ବ, ବଣଫଳ,

**ଭାଲିଆଖାଇ** - *ଦେ:* (ବି.) : ଶୁଆ

**ଭାଲିଆଚାଉଳ** - *ଗ:* (ବି.) : କାଜୁବାଦାମ

**ଭାଲିଆ ପାଣ୍ଡୁ** - *କୋ:* (ବି.) : ଲଙ୍କା ଆମ୍ବ

**ଭାଲିଆ ପାପୁ** - *ଗଜ:ଗ:* (ବି.) : କାଜୁବାଦାମ

**ଭାଲିଆ ମଞ୍ଜି** - *ମା:* (ବି.) : କାଜୁ

**ଭାଲି ଭାଲି** - *କଳା:* (କ୍ରି.) : ଭାଳି ଭାଳି, ଚିନ୍ତା କରି କରି

**ଭାଲୁ** - *ଦେ:କଳା:* (ବି.) : ହିଂସ୍ର ଜନ୍ତୁ, ଭଲ୍ଲୁକ, ଭାଲୁ

**ଭାଲୁଆ** - *କେ:* (ବିଂ.) : ମୋଟା ଲୋକ

**ଭାଲୁକୁଣୀ** - *ଖୋ:ନ:ଦେ:କେନ୍ଦୁ:* (ବି.) ଝିଅମାନେ କରୁଥିବା ଏକପ୍ରକାର ଓଷା, ଖୁଦୁରୁକୁଣୀ ଓଷା

**ଭାଲୁଛଟା** - *କେନ୍ଦୁ:* (ବି.) : କଳା ରଙ୍ଗର ସ୍ୱଳ୍ପମିଆଦି ଧାନ

**ଭାଲୁ ଧରାଇବା** - *ଗୌ:* (କ୍ରି.) : କ୍ଷତି କାରକ କିଛି ଧରାଇଦେବା

**ଭାଲୁପାଁଚ** - *ସ:* (ବି.) : କଥାବାର୍ତ୍ତା

**ଭାଲୁ ପୋକ** - *ସୁ:* (ବି.) : ସାଂବାଲୁଆ

**ଭାଲେନ** - *ସୁ:* (ବିଂ.) : ଭାଳେଣି, ଚିନ୍ତା

**ଭାଲେନ୍‌ଟାଇନ୍ ଡ଼େ** - *ସଂ:* (ବି.) : ପ୍ରେମ ଦିବସ

**ଭାଲେର୍ ମିଟୁ** - *ନୁ:* (ବି.) : ଆକାରରେ ଛୋଟ ଶୁଆ, ଶାରୀ

**ଭାଳଣା** - *ନ:* (ବି.) : ଚିନ୍ତା କରିବା, ଦୁଃଶ୍ଚିନ୍ତା, ଭାଳେଣି

**ଭାଳା** - *ମ:* (ବି.) : ଭଡ଼ା

**ଭାଳିବା** - *ଦେ:ଢ:ବୌ:କେନ୍ଦୁ:* (ବି.କ୍ରି.) : ଚିନ୍ତା କରିବା, ଭାବିବା, ମନେପକାଇବା, ଅନୁତାପ କରିବା

**ଭାଳେଇ ହୁଣ୍ଡେ** - *ଢେ:* (କ୍ରି.) : ଝାଡାଯିବା

**ଭାଳେଣି** - *ଢ:ନ:ଦେ:* (ବି.) : ଚିନ୍ତା, ଦୁଃଶ୍ଚିନ୍ତା

**ଭାଷ୍‌ବା** - *ବୌ:* (କ୍ରି.) : ଭାଷିବା, କହିବା

**ଭାଷିବା** - *ନ:* (କ୍ରି.) : କହିବା

**ଭାସ୍‌କୁଟି** - *ଅନେ:* (ବି.ବିଂ.) ନିରର୍ଥକ, ଆଲୋଚନା, ଗୁପ୍ତ ଆଲୋଚନା, କୁସ୍ଥାରଚନା କରିବା, ଆଲୋଚନା କରିବା, ବାଛକୁଟି, ପ୍ରହସନ, ହାସ୍ୟ ଆଚରଣ, ପରଚର୍ଚ୍ଚା, ଚଷୁକୁଟା

**ଭାସନ୍** - *ବୌ:* (ବି.) : ଭାଷଣ

**ଭାସ୍କୁଟି** - *ଗଢ:* (ବି.) : ପରିଛିଦ୍ର ନେଇ ଚର୍ଚ୍ଚା

**ଭାଁ** - *ବ୍:* (ବିଂ.) : ଖୋଲା, ମେଲା

**ଭାଁଟା** - *ବର:* (ବି.) : ବାଇଗଣ

**ଭାଁଣ** - *ନୂ:* (ବିଂ.) : ନିନ୍ଦିତ ହୋଇ ଫେରିଯିବା

**ଭାଁଣ୍ଡ** - *ସୁ:* (ବିଂ.) : ନାଗର, ଠକ, ଭଣ୍ଡ

**ଭାଂଗ୍** - *କଳା:* (ବି.) : ଭାଂଗ, ଧୁଂଗିଆ, ଧୂଆଁପତ୍ର

**ଭାଂଗ ପତର** - *ସୁ:* (ବି.) : ଧୂଆଁପତ୍ର

**ଭାଂଗି** - *ସୁ:* (କ୍ରି.) : ବିକି

**ଭାଂଗୁଆ** - *ସୁ:* (ବିଂ.) : ଦୁଷ୍ଟାବାଲା, ଭାଙ୍ଗ ଖାଉଥିବା ବ୍ୟକ୍ତି

**ଭାଂଗେନ** - *ସୁ:ସ:* (ବି.) : ମୋଡ଼, ରାସ୍ତାର ମୋଡ଼ଛକି, ଏକ ପ୍ରକାର ମାଛ

**ଭାଂଙ୍କ୍** - *ନୂ:* (ବି.) : ଚିଲର(change), ଖୁଚୁରା ପଇସା

**ଭାଂଡ଼ବି** - *ସୁ:* (ବି.) : ଖଇନିଡ଼ିବା

**ଭି** - *ଦେ:ସ:* (ଅ.) : ଆହୁରୀ, ମଧ୍ୟ, ବି

**ଭିଆ** - *ଗ:ସୁ:ଗଦ୍ୟ:* (ବି.) ବିବାହ, ଘଟେଇବା, ବାହା

**ଭିଆଣ** - *ଅନେ:* (ବି.) : ସର୍ଜନ, ନିର୍ମାଣ, ରଚନା, ମନଗଢା, ଜନ୍ମକରିବା, ସୃଷ୍ଟି, କୂଟ ଚିନ୍ତା, ଉପାୟ, ଚକ୍ରାନ୍ତ କରିବା

**ଭିଆଭୀତ** - *ଗଦ୍ୟ:* (ବି.) : ଭୟସୃଷ୍ଟି କରିବା

**ଭିକ** - *ଦେ:* (ବି.) : ଭିକ୍ଷା

**ଭିକରିବା** - *ସୁ:* (କ୍ରି.) : ଭୀତହେବା, ଡରିଯିବା

**ଭିକାରୀ** - *ଦେ:ସ:* (ବି.ବିଂ.) : ଯେ ମାଗି ଖାଏ, ଭିକ୍ଷୁକ

**ଭିକିନି କୁଡି** - *ବ୍:* (ବିଂ.) : ଏକପ୍ରକାର ଗାଳି, କୁକୁର ପରି ଲୋଭୀ

**ଭିକ୍ୟା** - *କଳା:* (ବି.) : ଭିକ୍ଷା

**ଭିଖ** - *ଢ:* (ବି.) : ଭିକ

**ଭିଖାରେନ୍** - *ସୁ:* (ବି.) : ଭିକାରୁଣୀ

**ଭିଗିଲି** - *ବ୍:* (ବି.) : ଛଳନା, ଛଟକ

**ଭିଙ୍ଗାର୍** - *ବ୍:* (ବି.) : ଗଡୁ

**ଭିଙ୍ଗିଚି** - *ଖୋ:* (କ୍ରି.) : ତାମସା କରିବା

**ଭିଜ୍‌ଲା** - *ଝା:* (ବିଂ.) : ପାଣିରେ ଭିଜିଥିବା

**ଭିଜା** - *ଦେ:* (ବିଂ.) : ଓଦା

**ଭିଜା ମାଠିର ବାସ୍ନା** - *ସଂ:* (ବି.) : ସ୍ୱଦେଶୀ ଜିନିଷ

**ଭିଟା** - *ଦେ:* (ବି.) : ଡିହ ଜମି, ଘରବାଡ଼ି

**ଭିଟାମାଟି** - *କେ.ସଂ:* (ବି.) : ପିତୃ ପୁରୁଷଙ୍କ ସମ୍ପତ୍ତି, ବାସସ୍ଥାନ ଭୂସଂପତ୍ତି, ଜନ୍ମସ୍ଥାନ, ପୂର୍ବପୁରୁଷ ରହି ଆସିଥିବା ସ୍ଥାନ

**ଭିଟିଯିବା** - *ଟ୍ରା:* (କ୍ରି.) : ବାଜିଯିବା

**ଭିଟୁରା** - *ରା:* (ବିଂ.) : ମିଛୁଆ

**ଭିଡ** - *ଅନେ:* (ବି.) : ଲୋକ, ଗହଳୀ, ଜନଗହଳି

**ଭିଡାଭିଡି** - *ଦେ:* (ବି.) : ଟଣାଟଣି

**ଭିଡ଼୍କେଇଦବା** - *ମ:* (କ୍ରି.) : ଡରକେଇଦେବା

**ଭିଡ଼୍ନା** - *ନୂ:* (ବି.) : ଲମ୍ବା ଝୋଟର ରଜ୍ଜୁ

**ଭିଡ଼କର** - *କୋ:* (ବିଂ.) : ଶକ୍ତକର, କଷ୍ଟକର

**ଭିଡ଼ାଜାଲ** - *ଖୋ:* (ବି.) : ଯେଉଁଥିରେ ମାଛ ଧରାଯାଏ, କରାସିଜାଲ

**ଭିଡ଼ି ଆଣିବା** - *କେ:* (କ୍ରି.) : ଟାଣି ଟାଣି ଆଣିବା

**ଭିଡ଼ିକି ଚାଲ** - *ଖୋ:* (ବିଂ.) : ବେଗରେ ଚାଲିବା

**ଭିଡ଼ିଭିଡ଼ି** - *ସ:* (କ୍ରି.) : ଚେଷ୍ଟା କରି

**ଭିଡ଼େନ** - *ସୁ:* (କ୍ରି.ବି.) : ଭିଡ଼ିବା ସାମଗ୍ରୀ, ଟାଣିବା

**ଭିଣାଭିଣି କରିବା** - *ନ:* (କ୍ରି.) : ନଖରେ ରାମ୍ପୁଡ଼ିଦେବା, ଛଡ଼ାଛଡ଼ି କରି ଖାଇଯିବା

**ଭିଣିଆ** - *କଳା:* (ବି.) : ଭେଣ୍ଡିଆ, ଯୁବକ

**ଭିଣେଇ** - *ନ:* (ବି.) : ଭଉଣୀର ସ୍ୱାମୀ, ଭିଣୋଇ

**ଭିତ୍‌ରିଆ** - *ସୁ:* (ବିଂ.) : ଭିତର ପଟୁଆ, ଯୋଗସୂତ୍ରକାରୀ, ଗୋପନୀୟ

**ଭିତ୍‌ରୀ** - *କଳା:* (ବିଂ.) : ବାମପଟ, ଗୋପନ, ଗୋପନୀୟ, ଭିତିରି

**ଭିତ୍‌ରେଁ** - *ନୂ:* (ଅ.) : ଭିତରେ, ମଧ୍ୟରେ

**ଭିତରଆଡ଼** - *କୋ:* (ବି.) : ରନ୍ଧାଘର, ରୋଷେଇ ହେଉଥିବା ସ୍ଥାନ

**ଭିତର୍** - *କଳା:* (ବି.) : ଅଭ୍ୟନ୍ତର, ଭିତର

**ଭିତର୍‌କାଟୁ** - *ଗୌ:* (ବି.) : କଥା ଗୁପ୍ତ ରଖିବା ଲୋକ

**ଭିତା** - *କଳା:* (ବିଂ.) : ଏକ ଚାଖଣ୍ଡ

**ଭିତିରି** - *ନ:* (ବିଂ.) : ଗୋପନୀୟ, ଲୁଚାଛପା

**ଭିତିରି କଥା** - *ସଂ:* (ବିଂ.) : ଗୁପ୍ତକଥା

**ଭିତୁରୁନ୍** - *କଳା:* (ବି.) : ଭିତରୁ

**ଭିତେକ୍** - *କଳା:* (ବିଂ.) : ଚାଖଣ୍ଡେ ପରିମାଣ

**ଭିତେରେଇକି** - *ନ:* (କ୍ରି.ବିଂ.) : ଗଭୀର କରି, ଭିତରେ ପ୍ରବେଶ କରି

**ଭିନି** - *ସୁ:* (ବି.) : ଭିନ, ପୃଥକ

**ଭିନେହେବା** - *ସ.ନୂ:* (କ୍ରି.) : ଭାଗଭାଗ ହେବା, ପରସ୍ପର ଅଲଗା ହୋଇଯିବା

**ଭିନ୍ତ** - *ଟ୍ରା:* (ବି.) : ପାନ ବରଜର ଭିତର ପାଖ

**ଭିତ୍ତିରିବାଡି** - *ଟ୍ରା:* (ବି.) : ବରଜର ଭିତର ବାଡି

**ଭିବା** - *ଠା:* (ବି.) : ବିବାହ, ବିଭା

**ଭିମରଳ** - *ଗ:* (ବି.) : ବଡ ଭଅଁର

**ଭିମା** - *କୋ:* (ବି.) : ଦେବତା ବିଶେଷ

**ଭିରଉ** - *କଳା:* (ବିଂ.) ଯେ ମିଶାଏ, ମିଶ୍ରଣକାରୀ

**ଭିରାଭିରି** - *କଳା:* (ବି.) : ମିଶାମିଶି

**ଭିରିବା** - *କଳା:* (କ୍ରି.) : ମିଶିବା

**ଭିରିଭୁଡ଼ା** - *ନୁ:* (କ୍ରି.) : ଭିଡ଼ିହୋଇ

**ଭିରିମିଣି** - *କଳା:* (କ୍ରି.ବିଂ.) ମିଳିମିଶି, ପାରସ୍ପରିକ ସହଯୋଗରେ, ଏକାଠି

**ଭିରେଇବା** - *କଳା:* (କ୍ରି.) ମିଶେଇବା, ମିଶ୍ରଣ କରିବା

**ଭିର୍** - *କଳା:* (କ୍ରି.ବି.) : ମିଶ, ଏକତ୍ର ହୁଅ

**ଭିର୍‌କିବା** - *ଝା:ସ:* (କ୍ରି.) ଚମ୍‌କିବା, ଡ଼ରିଯିବା, ସଙ୍କିଯିବା

**ଭିର୍‌କେଇବା** - *ଦେଶୀ:* (କ୍ରି.) : ହୁରୁଡ଼େଇବା

**ଭିର୍‌ନା** - *କଳା:* (ବି.) : ପ୍ରାୟ ୨୫-୩୦ ହାତ ଲମ୍ବର ସାମାନ୍ୟ ମୋଟା ଦଉଡ଼ି

**ଭିର୍‌ବା** - *ନୁ:କଳା:ସ:* (କ୍ରି.) : ଅଧିନକୁ ଆସିବା, ମିଶିବା, ମିଶିଯିବା, ମାନିବା, ସାଜିବା

**ଭିର୍‌ବାର** - *ସୁବ:* (କ୍ରି.) : ପୋଷାକ ଦେହକୁ ମାନିବା

**ଭିଲ୍** - *ଝା:* (ଅ.) : ମଧ୍ୟ

**ଭିଲି** - *ସୁବ:* (ବି.) : ଦଳ, ଗୋଷ୍ଠୀ

**ଭିଲିକି** - *ଗ:* (ବି.) : ବାଗଦେଖାଇବା, ଭେଳିକି, ଛଳନା

**ଭିଲ୍ଲା** - *ଗଢ଼:ଗ:* (ବିଂ ବି.) : ପରିହାସ

**ଭିଳ୍** - *ମ:* (ବି.) : ଭିଡ଼, ଗହଳି, ଲୋକସମୂହ

**ଭୀଣି ଭିଣା** - *ଠା:* (ବି.) : ଖୋଳତାଡ଼

**ଭୀମଏକାଦଶୀ** - *ଅନେ:* (ବି.) : ମାଘ ମାସ ଶୁକ୍ଳ ଏକାଦଶୀ

**ଭୀମା** - *କଳା:* (ବି.) : ଆଦିବାସୀ (କନ୍ଧ) ଦେବତା ସେମାନଙ୍କର ବିଶ୍ୱାସ ଅନୁସାରେ ଏମାନେ ବାର ଭାଇ ଅଟନ୍ତି

**ଭୀମାଖୁଣ୍ଟି** - *କୋ:* (ବି.) : କାଷ୍ଠ ଭୈରବ ମୂର୍ତ୍ତି

**ଭୀରକାବାର୍** - *ସୁବ:* (କ୍ରି.) : ପଶୁମାନଙ୍କୁ କୌଶଳ କରି ଡରାଇବା

**ଭୀଷଣ** - *ଅନେ:* (ବିଂ.) : ଭୟଙ୍କର

**ଭୁଆ** - *ଅନେ:* (ବିଂ.ବି.) : କଳା, କାନଗଇ, ଅଣ୍ଡିରା ବିରାଡ଼ି

**ଭୁଆଖିଆ ନଡିଆ** - *ଗ:* (ବିଂ.) : ଯେଉଁ ନଡିଆ ଭିତରଟା କଳା ପଡିଯାଇଥାଏ, ଭୂତଖିଆ

**ଭୁଆଷେନ୍** - *କଳା:* (ବି.) : ଭୁଆଷୁଣୀ, ନବବଧୂ, ବଧୂ

**ଭୁଆସିକ** - *ପୁ:* (ବି.) : ସାହିଯାତ୍ରାକୁ ମଣ୍ଡନ କରୁଥିବା ନାଗା , ସଟରା, କେଳାକେଳୁଣୀ

**ଭୁଆସୁଣୀ** - *କେ:ସଂ:ଢ:* (ବି.ବିଂ.) : ନୂଆ ବୋହୂ, ନବବଧୂ, ଡିଙ୍ଗା, କୁଳବଧୂ, ସୁହାସିନୀ, କୂଳଯୁବତୀ

**ଭୁଆସୁଣୀ ମାଛ** - *ଗଦ୍ୟ:ଗ:* (ବି.) : ଡ଼ଲ୍‌ଫିନ୍ ମାଛ

**ଭୁଆସେନ** - *ଅନେ:* (ବି.ବିଂ.) : ଭୁଆସୁଣୀ, ନବ ବିବାହିତା ସ୍ତ୍ରୀ,

**ଭୁଆସେନ୍‌ଗଧା** - *ସୁ:* (ବି.) ପାହାନ୍ତା ଗାଧୁଆ

**ଭୁଆଁ** - *କେ:ଦେ:ଯା:କେ:* (ବି.ବିଂ.) : ବାଟ ଭୁଲି ବୁଲିବା, ଭୁଆ ବିରାଡ଼ି, ଅଣ୍ଡିରା ବିରାଡ଼ି, ଫମ୍ପା, ମିଛୁଆ, କାନରେ ଥିବା ଅଠା ଭଳି ମଳି ପଦାର୍ଥ

**ଭୁଆଁକଖାରୁ** - *ଗ:* (ବି.) : ଔଷଧୀୟ କନ୍ଦା, ଭୂଇଁ କଖାରୁ

**ଭୁଆଁବୁଲାଇବା** - *ସଂ:* (କ୍ରି.) : ଠକିବା, ବିଭ୍ରାନ୍ତ ହେବା

**ଭୁଇ** - *ଗଦ୍ୟ:* (ବି.) : ପୃଥିବୀ, ମାଟି, ଭୂମି

**ଭୁଇଲ୍‌ତା** - *ସ:* (ବି.) : ଭୁଲତା

**ଭୁଇଁଚଣା** - *କୋ:* (ବି.) : ଚିନାବାଦାମ

**ଭୁଇଁଲ୍** - *ଗଦ୍ୟ:* (ବି.) : ଏକ ଫଳ

**ଭୁଏ** - *ବ:କଳା:* (ବି.) : ଭୋଇ, କନ୍ଧ, ଗଉଡ଼ ଓ ଗଣ୍ଡ ପ୍ରଭୃତି ଜାତି ବିଶେଷର କୌଳିକ ଉପନାମ

**ଭୁଏର୍** - *କଳା:* (ବିଂ.) : ସମଗ୍ର, ସବୁ, ସକଳ

**ଭୁକ** - *ଦେ:ବା:ଛ:* (ବି.) : କ୍ଷୁଧା, ଭୋକ

**ଭୁକ୍‌ବା** - *କଳା:* (କ୍ରି.) : କୁକୁର ବୋବେଇବା, ଭୁକିବା

**ଭୁକ୍ ଭୁକାବା** - *ଝା:* (କ୍ରି.) : ଭକଭକ ହେବା

**ଭୁକା** - *ଗୌ:ଦେ:ବା:* (ବିଂ.ବି.) : ଭୋକିଲା, ଭୁଖା, ଭୁକିବା, ଖଣ୍ଡ ଖଣ୍ଡ କଟାମାଛ

**ଭୁକାଦୁଃଖା** - *ସ:* (ବିଂ.) : ଭୋକ ଏବଂ ଦୁଃଖରେ ଥିବା ବ୍ୟକ୍ତି

**ଭୁ କାର** - *ନ:* (ବି.) : ତାଚ୍ଛଲ୍ୟଭାବ, ସମସ୍ତଙ୍କୁ 'ଭୁ' 'ଭଁ' କରି ସମ୍ବୋଧନ କରିବା, ହେୟ ଜ୍ଞାନ କରିବା

**ଭୁକୁତା** - *ଗ:* (ବି.) : ଗ୍ରାମ ମୁଖିଆ, ଭୁଗୁତା

**ଭୁଖା** - *ସୁବ:ଗୌ:ସୁ:ସ:* (କ୍ରି.ବିଂ.) : ଭୋକିଲା, ଦରିଦ୍ର, କ୍ଷୁଧିତ, ଭୋକା, ଭୋକରେ ଥିବା ବ୍ୟକ୍ତି

**ଭୁଖେଇ** - *ସ:* (ବିଂ.) : ସବୁବେଳେ ଭୋକ ହେଉଥିବା ନାରୀ

**ଭୁଖେଁ** - *ନୂ:* (ବି.) : ଭୋକରେ

**ଭୁଗ** - *କୋ:ରା:* (ବି.) : ଭୋଗ, ପ୍ରସାଦ, ଆରାମ, ବିଳାସବ୍ୟସନ

**ଭୁଗ୍‌ଲି** - *ଅନେ:* (ବି.) : ଛୋଟ ଭୋଗେଇ, ବାଉଁଶରେ ତିଆରି ଟୋକେଇ, ବାଉଁଶିଆ, ବାଉଁଶରେ ତିଆରି ପାଛିଆ

**ଭୁଗତ** - *ଛ:* (ବି.) : ଭୋଗିବାକୁ ହେବ

**ଭୁଗା** - *ଅନେ:* (ବି.) : ବାଉଁଶିଆ, ବାଉଁଶ ପାତିଆରେ ନିର୍ମିତ ଛୋଟ ପାତ୍ର, ବୋଝ, ଭୁଗା ଜାତୀୟ ସାନ ପାତ୍ର, ଭୋଗେଇ

**ଭୁଗା ଚୁପା** - *ଝା:* (ବି.) : ଧାନ ଆଦି ରଖିବାପାଇଁ ବାଉଁଶର ସାନବଡ଼ ପାଛିଆ

**ଭୁଗୁଲି** - *ସୁ:ଅ:* (ବି.) : ବାଉଁଶ ତାଟି, ଛୋଟ ଗଉଣୀ, ଟୋକେଇ

**ଭୁଗେଇ** - *ବା:ଗ:କଳ:* (ବି.) : ଭୋଗେଇ, ବାଉଁଶ ନିର୍ମିତ ଛୋଟ ଚାଙ୍ଗୁଡ଼ା, ଛୋଟ ପାଛିଆ

**ଭୁଙ୍ଗର** - *ପଦ୍ୟ:* (ବି.) : ବାନ୍ଧେନି କାମରେ ରଙ୍ଗ ଦେଲାବେଳେ ନକଲି ନଖ

**ଭୁଙ୍ଗିବା** - *ବୌ:* (କ୍ରି.) : ଉହୁଙ୍କି ଦେଖିବା

**ଭୁଚୁକା ମାରିବା** - *ଗଦ୍ୟ:* (ବି.) : ଭଣ୍ଡାଇବା, ଧପାମାରିବା

**ଭୁଜ** - *କେନ୍ଦୁ:ଅ:ବୌ:ମା:* (ବି.) : ଧାନ, ବୋଝ

**ଭୁଜ୍‌ନି** - *ସ:ବୌ:* (ବି.) : ଡାହାଣ, ଦକ୍ଷିଣହାତ

**ଭୁଜକ** - *ବୌ:* (ବି.) : ଡାହାଣ

**ଭୁଜଣୀ** - *ନବ:* (ବି.) : ପହାଣ

**ଭୁଜନ** - *ମା:* (ବି.) : ଭୋଜନ

**ଭୁଜନି** - *ସୁ:ଝା:* (ବି.) : ଡାହାଣ, ଭୋଜନ ପାଇଁ ପ୍ରସ୍ତୁତ ଖାଦ୍ୟ।

**ଭୁଜବ** - *ଅ:* (ବି.) : ଡାହାଣ

**ଭୁଜା** - *ଅନେ:* (ବି.) : ଚାଉଳରୁ ପ୍ରସ୍ତୁତ ଖାଦ୍ୟବିଶେଷ, ମୁଢ଼ି, ଜଳଖିଆ, ଚୁଡ଼ା, ମୁଢ଼ି ଇତ୍ୟାଦି ବାହୁ, ସର୍ପର କୁଣ୍ଡଳ

**ଭୁଜାଖିଆ** - *ଅ:* (ବି.) : ପିଲା ଓ ଭୃତ୍ୟଙ୍କୁ ଦିଆଯାଉଥିବା ପଇସା

**ଭୁଜାଖିଆ ବେଳ** - *ବା:* (ବି.) : ଜଳଖିଆ ସମୟ

**ଭୁଜାଲି** - *କଳା:* (ବି.) : ଏକ ପଟେ ଧାର ଥିବା ଲୌହ ଅସ୍ତ୍ର, କଟୁରି

**ଭୁଜି** - *କଳା:ବୌ:ଝା:* (ବି.) : ଭୋଜି, ସ୍ୱତନ୍ତ୍ର ପ୍ରକାର ଭୋଜନ ବ୍ୟବସ୍ଥା

**ଭୁଜିଭାତ** - *ସ:* (ବି.) : ଭୋଜିଭାତ

**ଭୁଜୁଣୀ** - *ଅ:ଗଦ୍ୟ:* (ବି.) : ଧାର, କୂଳ

**ଭୁଞ୍ଜା** - *ଅ:* (ବି.) : ଭୋଜନ

**ଭୁଞ୍ଜାଇବା** - *ନ:* (କ୍ରି.) : ନିର୍ଦ୍ଦିଷ୍ଟ ସ୍ଥାନରେ ପୂରେଇବା, ଭର୍ତ୍ତି କରିବାକୁ ନିର୍ଦ୍ଦେଶ

**ଭୁଞ୍ଜିକାଢ଼** - *ସୁ:* (ବି.) : ଖାଇବା ଘର

**ଭୁଞ୍ଜୁକ** - *କୋ:* (ବି.) : ଉପପତି

**ଭୁଟ୍‌ଭୁଟି** - *ଅନେ:* (ଅ.ବି.) : ପାଣି ତଳୁ ଫୋଟକା ଉଠିବା ଶବ୍ଦ, ବୁଦ୍‌ବୁଦ୍, ପାଣିଫୋଟକା, ମେସିନ୍‌ଚାଳିତ ନୌକା

**ଭୁଟପିଟିବା** - *ଗ:* (ବି.) : ଭୋଟ ଦେବା ପ୍ରସଙ୍ଗ

**ଭୁଟା** - *ସୁ:ଗଦ୍ୟ:* (ବି.) : ଗୁଛା, ମକାଦାନା

**ଭୁଟୁ ଭୁଟୁ** - *ବା:* (ବିଂ.) : ଅନୁଚ୍ଚ କଥା ବାର୍ତ୍ତା

**ଭୁଟୁରା** - *ଗ:* (ବିଂ.) : ବେଶୀକଥା କହୁଥିବା ଲୋକ, ବହୁଭାଷୀ

**ଭୁଟ୍ କମ୍ବଳ** - *ଗଦ୍ୟ:* (ବି.) : ସୂତା କମ୍ବଳ

**ଭୁଡୁକା** - *ଗ:ବା:* (ବି.) : ବେଲୁନ, ଫୋଟକା

**ଭୁଡ଼ି** - *ଗଦ୍ୟ:* (ବି.) : ପାଣି ଫୋଟକା

**ଭୁହୁଙ୍ଗ** - *ଗ:* (ବି.) : ତୁରୀବାଦ୍ୟ

**ଭୁହୁଙ୍ଗା** - *ଗ:ରା:* (ବି.) : ମଞ୍ଜି ବା ଶଶ ନଥିବା ଫଳ, ଅଖାଦ୍ୟ ପରିବା

**ଭୁଣ୍ଡଲିବା** - *ସୁ.* (କ୍ରି.) : ଭୂଇଁରେ ଗଡ଼ିବା

**ଭୁଣ୍ଡା** - *ମ.ଦେ.ଭ.* (ବିଂ.ବି.) : ମୋଟା

**ଭୁଣ୍ଡି** - *ନ.ମ.ଗଦ୍ୟ.* (ବି.) : ସ୍ତନର ଅଗ୍ରଭାଗ, ଭଣ୍ଡି, ଭେଣ୍ଡୀ

**ଭୁତ୍ ଭୁତିଆ** - *ନୂ.* (ବି.) : ମାଛି ଅଂଧାର

**ଭୁତ ଚେରେଷ୍ଟା** - *ଗ.* (ବି.) : ପ୍ରେତାତ୍ମା ପ୍ରବେଶ ଜନିତ ପ୍ରଳାପ

**ଭୁତ ଢ଼େଣ୍ଣୁଆ** - *ଗ.* (ବି.) : ମଣ୍ଡାପିଠା

**ଭୁତଭୁତିଆ ଅନ୍ଧାର** - *ସ.* (ବି.) : ଗୋଧୂଳିର ପରବର୍ତ୍ତି ସମୟ

**ଭୁତାଣ୍ଡି** - *ବ.* (ବିଂ.) : ଓଲା

**ଭୁତାର** - *ଦେ.* (ବି.) : ମୂଲିଆ

**ଭୁତି** - *ଅନେ.* (ବି.) : କୁଲି, ମଜୁରୀ, ଭାଡିଆ, ମୂଲିଆର ଦିନକର ମୂଲ୍ୟ, ପାରିଶ୍ରମିକ, ମୂଲ

**ଭୁତିଆ** - *ଖୋ.* (ବି.) : ଏକ ପ୍ରକାର ଧାନ

**ଭୁତିଆର** - *ସୁବ.* (ବିଂ.) : ମଜୁରିଆ

**ଭୁତି କରିବା** - *ନୂ.* (କ୍ରି.) : ମଜୁରୀ ଖଟିବା

**ଭୁତୁଭୁତୁ** - *ନ.* (ଅ.) : ହୁତୁହୁତୁ ହୋଇ ଜଳିବା

**ଭୁତୁରା** - *ଗଦ୍ୟ.* (ବିଂ.) : ଫୁରୁଫୁରୁ, ଅଲରା

**ଭୁତେଇବା** - *ଗ.* (କ୍ରି.) : ମିଥ୍ୟା ପ୍ରଲୋଭନ, ଠକିବା

**ଭୁତେକ୍** - *କୋ.* (ବିଂ.) : ଅଧିକ, ବହୁତ ବେଶୀ

**ଭୁଦ** - *ଅନେ.* (ବି.) : ଭାଦ୍ରବ ମାସ

**ଭୁଦ୍‌ରି ଫଳ** - *ବ.* (ବି.) : ଭାଦ୍ରବ ମାସର ଫଳ

**ଭୁଦୋ** - *ନୂ.ସ.ବର.ସୁ.* (ବି.) : ଭାଦ୍ରବ, ଭୋଦୁଅ,

**ଭୁଦୋ ଉଆଁସ୍** - *ସ.* (ବି.) ଚିତାଲାଗି ଅମାବାସ୍ୟା

**ଭୁଦୋମହେଲେନ୍ ଛତି** - *ସ.* (ବି.) : ଛତୁ ବିଶେଷ

**ଭୁନ୍ଦ** - *ଗଦ୍ୟ.* (ବିଂ.) : ଓଲୁ, ବୋକା, ନିର୍ବୋଧ

**ଭୁବରା** - *ସୁ.* (ବି.) : କମ ଦହନଶୀଳ ନିଆଁ, ଗରମପାଉଁଶ

**ଭୁବିଷ୍** - *କଳା.* (ବି.) : ବାହାନା

**ଭୁରକୁଟିଆ** - *ସୁ.* (ବିଂ.) : କୌତୁକିଆ

**ଭୁରକୁଣ୍ଡା** - *କେନ୍ଦୁ.* (ବି.) : ଗଛପତ୍ରରେ ହେଉଥିବା ରୋଗବିଶେଷ

**ଭୁରଢ଼େଇବା** - *କଳା.* (କ୍ରି.) : ଭୁଲେଇବା

**ଭୁରତ** - *ଝା.* (କ୍ରି.) : ମନ ଭୁଲାଇବା

**ଭୁରତାବା** - *ସ.* (କ୍ରି.) : ମନ ଭୁଲାଇବା

**ଭୁରଭଙ୍ଗ** - *ସୁ.* (ବି.) : ଖାଲି, କମଜୋର, ଭୁଜଭଙ୍ଗ

**ଭୁରଭୁସ୍** - *ସ.* (ବି.) : ଆଦାୟ ଶୂନ୍ୟ ହେବା, ସର୍ବସ୍ୱାନ୍ତ

**ଭୁରଭୁଷା** - *ସୁ.* (ବି.) : ବିନାତେଲର କେଶ, ନୁଖୁରା

**ଭୁରଲି** - *ସୁ.* (ବି.) : ବାଜେଗପ

**ଭୁରସଣ୍ଡ** - *ସୁ.* (ବିଂ.) : ପ୍ରଚଣ୍ଡ

**ଭୁରସା** - *ସୁ.* (ବିଂ.) : ଝିଟିରା, ଶଂବାଲୁଆ ପୋକ

**ଭୁର ସାକିଡ଼ା** - *ନବ:* (ବି.) : ସମ୍ବାଲୁଆ

**ଭୁରସିମୁଡ଼ି** - *ସୁ:* (ବିଂ.) : ଅବିନ୍ୟସ୍ତ ମୁଣ୍ଡି, ଅଲରୀମୁଣ୍ଡି

**ଭୁରା** - *ବୌ:ରା:ଅ:ଗ:* (ବି.) : ସାମାନ୍ୟ ବର୍ଷା, ଅବୁଝାଣ, ମେଘ ଅସରା, ଅଳ୍ପଅଳ୍ପ ବର୍ଷା

**ଭୁରାପକାଇବା** - *ଗଞ:* (କ୍ରି.) ଝିଟିଝିପି ବର୍ଷାହେବା

**ଭୁରାବା** - *ସୁ:* (କ୍ରି.) : ମନେଇବା

**ଭୁରାବାର** - *ସୁବ:* (କ୍ରି.) : ଗୁଣ୍ଡ ଲୁଣ, ମସଲା ଆଦି ଅଳ୍ପ ଅଳ୍ପ ଝାଡ଼ିବା

**ଭୁରି** - *ସୁ:କଳା:* (ବି.) : କ୍ଷୁଦ୍ର, ଭୁରିଭୋଜନ, ସ୍ୱଳ୍ପ ବର୍ଷା

**ଭୁରିଭୁରି** - *ସ:* (ବି.) : ବିନ୍ଦୁ ବିନ୍ଦୁ

**ଭୁରୁ** - *ରା:* (ବି.) : ଆଖି

**ଭୁରୁକୁଣ୍ଡା** - *ଅ:* (ବିଂ.) : ମଳିନ ମୁହାଁ

**ଭୁରୁକୁଣ୍ଡିଆ, ଭୁରୁସୁଣ୍ଡା** - *ଗ:* (ବିଂ.) : ପୃଥୁଳକାୟ ବ୍ୟକ୍ତି

**ଭୁରୁଙ୍ଗା** - *ରା:ଭ:* (ବିଂ.ବି.) : ସାମର୍ଥ୍ୟହୀନ, କୁସୁଣ୍ଡା

**ଭୁରୁଝଟା** - *ରା:* (ବି.) : ଗୋବର୍ଦ୍ଧନଝଟା

**ଭୁରୁଡ଼ାଇବା** - *ଗଦ୍ୟ:* (କ୍ରି.) : ଠକିବା, ଭଣ୍ଡିବା

**ଭୁରୁଡ଼ାବା** - *ସୁ:* (କ୍ରି.) ଘଉଡ଼ାଇବା, ହୁରୁଡ଼େଇବା

**ଭୁରୁଡ଼ି** - *ମା:କେ:* (ବି.) : ଫୁଟାଣି, ଗାଳି

**ଭୁରୁଡ଼ି ମାରିବା** - *ଭ:* (ବି.) : ଫାଙ୍କିବା

**ଭୁରୁଢୁ** - *କୋ:ରା:ନବ:ଗ:* (ବି.) : ଫୁଟାଣି, କଥା ବାଆଁରେଇବା ପାଇଁ ଏଣୁତେଣୁ କହିବା, ଗାଲୁଆ ଯୁକ୍ତି, ବହପ, ମିଥ୍ୟାଦମ୍ଭ

**ଭୁରୁତ** - *ରା:* (ବି.) : ଚାକର

**ଭୁରୁଭଙ୍ଗ** - *ଦେ:* (ବି.) : ଖାତିର

**ଭୁରୁଭୁରା** - *ଦେ:* (ବି.) : କେଞ୍ଚୁଆଦ୍ୱାରା ମାଟି ଖୋଳା

**ଭୁରୁସୁଙ୍ଗା** - *ଦେ:* (ବି.) : ବଘାରିବା ଅଥବା ଚଟଣିରେ ବ୍ୟବହୃତ ପତ୍ର ଛୁଙ୍କ

**ଭୁରେଇବା** - *ଗ:* (କ୍ରି.) : ଜଳସିଞ୍ଚନ

**ଭୁର୍କୁଟି** - *ସ:* (ବି.) : ମୂଲ୍ୟହୀନ

**ଭୁର୍କୁଟିଆ** - *ଖୋ:* (ବିଂ.) : କଦର୍ଯ୍ୟ

**ଭୁର୍କୁଣ୍ଡି** - *ଭ:* (ବି.) : କୁତ୍ସିତ

**ଭୁର୍ଗାଭୁର୍ଗି** - *କଳା:* (କ୍ରି.) : ଫୁସ୍‌ଲା ଫୁସ୍‌ଲି

**ଭୁର୍ଷବ** - *କଳା:* (ବି.) : ବୃଷଭ

**ଭୁର୍‌କା** - *ବୌ:* (ବିଂ.) : ଅବାଗିଆ

**ଭୁର୍‌କି** - *କନ୍ଧ:କଳା:* (ବି.) : ବାଉଁଶ ପାତିରେ ତିଆରି ଛୋଟପାତ୍ର,

**ଭୁର୍‌କୁଟି** - *ସୁବ:ନୂ:କଳା:* (ବି.ଅ.) : ରହସ୍ୟ କରିବା, ମଜା କରିବା, କୌତୁକ

**ଭୁର୍‌କୁଟିଆ** - *ସ:କଳା:* (ବିଂ.) : ମଜାଳିଆ ଲୋକ, କୌତୁକିଆ

**ଭୁର୍ କୁଟୀ** - *ବୌ:* (ବି.) : ନାହିଁ ନଥିବା ଦୃଶ୍ୟ, ଉଧାର ସୁଝିବା ବେଳର ଆଳ

**ଭୁର୍‌ଡେଇ** - *ବ:* (କ୍ରି.) : ପ୍ରବୋଧନା ଦେଇ, ପ୍ରବର୍ତ୍ତାଇବା

**ଭୁର୍‌ତେଇବା** - *ଦୈ.ନୂ.* (କ୍ରି.) : ଭୂତେଇବା, ଭଣ୍ଡିବା, ଭୁଲେଇବା

**ଭୁର୍‌ତେନ୍** - *କଳା.* (ବିଂ.) : ଭୁଲାଣିଆ

**ଭୁର୍‌ଥାବା** - *ସୁ.* (ବି.) : ମନବୋଧ କରିବା

**ଭୁର୍‌ଥାବାର** - *ସୁବ.* (କ୍ରି.) : ପିଲାକୁ ଭଣ୍ଡେଇ ଚୁପ୍ କରିବା, ମିଛ ଲୋଭ ଦେଖାଇ ଅଝଟିଆ ପିଲାକୁ କ୍ଷଣ କରିବା, ବହଲେଇବା

**ଭୁର୍‌ଭୁରି** - *ଦୈ.* (ବି.) : କୁଣ୍ଡା ଝଡ଼ି ବର୍ଷା

**ଭୁର୍‌ଭୁରି ଯିବା** - *ନୂ.* (କ୍ରି.) : ରୋମାଞ୍ଚିତ ହୋଇଯିବା

**ଭୁର୍‌ରୁ ଉଡ଼ାବା** - *ସ.* (ବି.) : କଥାକୁ ଗୁରୁତ୍ୱ ନଦେବା

**ଭୁର୍‌ର୍ ତାତା** - *ସୁବ.* (ଅ.) : ଛୁଆଟିଏ କଙ୍କି ଧରିବା ବେଳେ ଆଉଜଣେ କଙ୍କିଟିକୁ ହୁରୁଡାଇବା ପାଇଁ ବ୍ୟବହାର କରୁଥିବା ବାଚକ ଶବ୍ଦ

**ଭୁର୍‌ଲେଇବା** - *ନୂ.* (ବି.) : ଚାଟୁ ବାକ୍ୟରେ ନିଜର କରିବା

**ଭୁର୍‌ଷା କିର୍‌ହା** - *ଦୈ.ସ.* (ବି.) : ସମ୍ବାଳୁଆ

**ଭୁର୍‌ସାଲ** - *ଝା.* (ବିଂ.) ବିରାଟକାୟ, ଘନବଦ୍ଧ

**ଭୁର୍‌ସି** - *କଳା.* (ବିଂ.) : ମୁକୁଳିତ, ଅସ୍ତବ୍ୟସ୍ତ

**ଭୁର୍‌ସି ବୁଡ଼ିବା** - *କଳା.* (କ୍ରି.) : ସବୁନାଶ ହେବା, ବିପଦ ଆସିବା

**ଭୁର୍‌ସୀ ମୁଡ଼ି** - *ବ.* (ବି.) : ଯେଉଁ ସ୍ତ୍ରୀଲୋକ କେଶର ଯତ୍ନ ନିଏନାହିଁ

**ଭୁର୍‌ସୁଙ୍ଗ** - *ନୂ.* (ବି.) : ମଶା

**ଭୁର୍‌ସେଇବା** - *କଳା.* (କ୍ରି.) ଲୋମଟାଂକୁରେଇବା

**ଭୁଲ୍** - *ସୁବ.* (ବି.) : ବିଲ ଆଡ଼ିର କଣା ଯେଉଁବାଟେ ପାଣି ଚାଲିଯାଏ

**ଭୁଲ୍‌ଚୁକା** - *ଭ.* (ବି.) ଅନାବଶ୍ୟକ ନୀରବତା

**ଭୁଲତା** - *ସୁ.* (ବି.) : ଭୁଲତା

**ଭୁଲଭଟକା** - *ନ.* (ବି.) : ଦୋଷାଦୋଷ

**ଭୁଲାଇବା** - *ନ.* (କ୍ରି.) : ଭ୍ରମରେ ପକାଇବା

**ଭୁଲାସୁରିଆ** - *ଦୈ.* (ବି.) : କଥା ଭୁଲୁଥିବା ଲୋକ

**ଭୁଲିଆ** - *ଦୈ.ସ.ସୁ.ସୁବ.* (ବି.) : ଜାତି ବିଶେଷ, ତନ୍ତୀ, ତନ୍ତୁବାୟ ଶ୍ରେଣୀ, ବୁଣାକାର ଜାତିବିଶେଷ, ମେହେର ସମ୍ପ୍ରଦାୟ

**ଭୁଲି ନାଇଁ ହବାର୍** - *ଦୈ.* (ବି.) : ଭୁଲି ହେଉ ନାହିଁ

**ଭୁଲୁ** - *ବ.* (ବି.) : ହିଡ଼ରେ ଥିବା ସୁଡ଼ଂଗ ବା କଣା

**ଭୁଳ** - *ରା.* (ବି.) : ଭୋଳ ହେବା

**ଭୁଶାମାଟି** - *ଅ.* (ବିଂ) : ଶିଥିଳ ମୃତ୍ତିକା

**ଭୁଶୁଣ୍ଡା** - *କେ.* (ବିଂ.) : ମୋଟା ଓ ଅସୁନ୍ଦର, ବଳିଷ୍ଠ ବ୍ୟକ୍ତି

**ଭୁଷ୍‌କା** - *କଳା.* (ବିଂ.) : ମୋଟା (ପୁଂ)

**ଭୁଷ୍‌କିବର୍‌ହା** - *ଦୈ.* (ବିଂ.) : ଅଧିକ ମୋଟୀ

**ଭୁଷକୁଣ୍ଡା** - *ମ.* (ବି.) : ମୋଟା
**ଭୁଷଲିବା** - *ସ.* (କ୍ରି.) : ଭୁଷୁଡ଼ି ପଡ଼ିବା
**ଭୁଷା** - *କୋ.ଗ.ନବ.* (ବି.) : ଚଷୁ, ଧାନ ଖୋଳପା, ଅସ୍ତ୍ରବିଶେଷ, କରତ ଗୁଣ୍ଡ
**ଭୁଷାଣ** - *ଗଦ୍ୟ.* (ବି.) : ଭୂଷିବା ଅସ୍ତ୍ର
**ଭୁଷାମାଲ** - *ଯା.* (ବି.) : ତେଜରାତି
**ଭୁଷାଳ** - *ଗ.* (ବି.) : କାଠ କିଳିକି
**ଭୁଷୁଡ଼ିଗିହା** - *ନ.* (ବି.) : ଅଶାଳୀନ ଗାଳି
**ଭୁଷୁଣ୍ଡା** - *ଖୋ.* (ବିଂ.) : ମୋଟା
**ଭୁଷୁଣ୍ଡା, ଭୁଡୁଙ୍ଗା** - *ଅ.* (ବିଂ.) : ମୋଟା
**ଭୁସ୍କା** - *ସ.ସୁବ.ନୂ.ବୌ.* (ବିଂ.) : ମୋଟା ଲୋକ
**ଭୁସ୍କାପ୍** - *ଯା.* (ବି.) : ଭିଡା ଯନ୍ତ୍ର
**ଭୁସ୍କି** - *ସ.ସୁବ.* (ବିଂ.) : ବେଶୀ ମୋଟା ସ୍ତ୍ରୀ ଲୋକ, ଭୁସ୍କାର ସ୍ତ୍ରୀଲିଙ୍ଗ
**ଭୁସ୍ବାର** - *ସୁବ.* (କ୍ରି.) : ବିନ୍ଧିବା, ତୀକ୍ଷ୍ଣ ଅସ୍ତ୍ର ଦ୍ୱାରା ଆକ୍ରମଣ କରିବା
**ଭୁସ୍ ଭୁସ୍** - *କେ.* (ଅ.) : ଶବ୍ଦ କରି ଆସିବା
**ଭୁସ୍ଲିଯିବା** - *ସ.* (କ୍ରି.) : ଭାଙ୍ଗିଯିବା
**ଭୁସକୀ** - *ସୁ.* (ବିଂ.) : ମୋଟୀ
**ଭୁସଲିବା** - *ନବ.ସୁ.* (କ୍ରି.) : ଭାଙ୍ଗିଯିବା, ଭୁସୁଡ଼ିବା
**ଭୁସା** - *ସୁ.ପୁ.କେନ୍ଦୁ.* (ବିଂ.ବି.) : ଅସାର, ଶସ୍ୟ ଚୋପା, କୁଅରେ ମୂଷାଗାଳି ପଶୁଥିବା ମାଟି, ଧାନ କୁଣ୍ଡା
**ଭୁସି** - *ବୌ.* (ବି.) : ଚୋକଡ଼
**ଭୁସିବା** - *କେ.* (କ୍ରି.) : କେଞ୍ଚିବା
**ଭୁସୁକା** - *ଗ.ଦେ.* (ବି.) : ପୃଥଳ ଅସୁନ୍ଦର ଲୋକ, ମୋଟା
**ଭୁସୁଡ଼ି** - *ସ.* (ବି.) : ଏକ ପ୍ରକାର ଗାଳି, ଯାହା ସ୍ତ୍ରୀମାନଙ୍କୁ ଦିଆଯାଏ
**ଭୁସୁଡ଼ିବା** - *ନୂ.* (କ୍ରି.) : ଭାଙ୍ଗିଯିବା, ଭୁସୁଡିବା
**ଭୁସୁଣ୍ଡା** - *ନ.* (ବିଂ.) : ଅତିମୋଟା
**ଭୁସୁଳିବା** - *କୋ.* (କ୍ରି.) ଭୁସୁଡ଼ିବା, ଧରାଶାୟୀ ହେବା
**ଭୁସ୍କା** - *ନବ.* (ବିଂ.) : ମୋଟା
**ଭୁସ୍କୁଟିଆ** - *ଗ.* (ବିଂ.) : ଅବାଗ, ଅବ୍ୟବସ୍ଥିତ ବସ୍ତୁ
**ଭୁଁସଳି** - *ଅ.* (ବି.) : ମଶା
**ଭୁଂଜ** - *ବୌ.* (ବି.) : ମାଛଧରା ବାଉଁଶ ପାତ୍ର
**ଭୁଂଜନି** - *କଳା.* (ବିଂ.) : ଡ଼ାହାଣ, ଦକ୍ଷିଣ
**ଭୁଂଜା** - *କଳା.* (ବିଂ.) : ଡାହାଣ, ଦକ୍ଷିଣ
**ଭୁଂଜାଫାଲ୍** - *କଳା.* (ବି.) : ଡାହାଣ ପଟରେ
**ଭୁଂଜୁକ** - *ଗଜ.* (ବି.) : ଉପପତି
**ଭୁ'ଜ** - *କୋ.* (ବି.) : ବୋଝ
**ଭୂଅ** - *ଜ.* (କ୍ରି.) : ବୋହିବା
**ଭୂଆସୁଣୀ** - *ଅନେ.* (ବି.) ଯୁବତୀ, ନୂଆବୋହୂ
**ଭୂଆସେନ୍** - *ବୌ.* (ବି.) : ଭୂଆସୁଣୀ
**ଭୂଆଁବୁଲାଇବା** - *ନ.* (କ୍ରି.) : ଠକିବା, ଭ୍ରମରେ ପକାଇବା
**ଭୂଇଁ** - *ଅନେ.* (ବି.) : ଭୂମି, ମାଟି, ଜମି

**ଭୂଇଁ ଅଅଁଳା** - *ସଂ* (ବି.) : ଏକ ଛୋଟ ଗୁଳ୍ମ

**ଭୂଇଁଆ** - *ଦେ* (ବି.) : ବନବାସୀ

**ଭୂଇଁକଖାରୁ** - *ଜ.କେ.ଦେ* (ବି.) : ପାଣିକଖାରୁ, କନ୍ଦ ବିଶେଷ, ଲତାକନ୍ଦ ବିଶେଷ

**ଭୂଇଁ କଦମ୍ବ** - *କେ.ଦେ* (ବି.) : କ୍ଷୁପ ବିଶେଷ, ଏକ ଗଛ

**ଭୂଇଁକାକୁଡ଼ି** - *ଜ* (ବି.) : ପିତାକାକୁଡ଼ି

**ଭୂଇଁକାମୁଡ଼ି** - *ନ* (ବି.) : ଶାଗର ନାମ

**ଭୂଇଁକିରା** - *କଳା* (ବି.) : କଳିକତୁରା ପୋକ, ଘୁଇ

**ଭୂଇଁ କୁକୁଡ଼ା** - *ଗଦ୍ୟ* (ବି.) : ଜଙ୍ଗଲୀ କୁକୁଡ଼ା

**ଭୂଇଁ କୋରୁଆ** - *ଦେ* (ବି.) : କୁଦ୍ରୁଚି ଗଛ

**ଭୂଇଁଖଜୁରୀ** - *ନ.ଖୋ.ଖୋ* (ବି.) : ଏକ ଛୋଟଗଛ(ଖଜୁରୀ ଫଳେ)ଗୁଳ୍ମଜାତୀୟ, ବାମନ ଜାତୀୟ ଖଜୁରୀ କୋଳି

**ଭୂଇଁ ଚନା** - *ଦୌ* (ବି.) : ଚିନାବାଦାମ୍

**ଭୂଇଁଡଣ** - *କେନ୍ଦୁ* (ବି.) : ଶେଷ ରଜରେ ଭୂମିଦୋହନ ପୂଜା

**ଭୂଇଁତେଲ** - *ଅ.ବା* (ବି.) : କାରାସିନି

**ଭୂଇଁ ନଅଣ** - *ଭ* (ବି.) : ଭୂମିପୂଜା ଉତ୍ସବ

**ଭୂଇଁ ନାଦ୍‌କା** - *ବା* (ବି.) ଭୂଇଁରେ ଲାଗୁଥିବା

**ଭୂଇଁନିମା** - *ବା* (ବି.) : ଚିରେଇତା ଗଛ

**ଭୂଇଁନିମ୍ବ** - *ସଂ.ଖୋ.ଦେ.ଜ* (ବି.) ଏକପ୍ରକାର ଛୋଟ ନିମ୍ବଗଛ, ପିତାଶାଗ, ଚିରେଇତା

**ଭୂଇଁ ପଣସ୍** - *ମ* (ବି.) : ସପୁରି ପଣସ

**ଭୂଇଁପଦ୍ମ** - *ସଂ* (ବି.) : ସ୍ଥଳପଦ୍ମ

**ଭୂଇଁପିତା** - *ଜ* (ବି.) : ପିତାଶାଗ

**ଭୂଇଁ ବରକୋଳି** - *ସଂ* (ବି.) : ଏକପ୍ରକାର ଛୋଟ ବରକୋଳି

**ଭୂଗଳ** - *ବା* (ବି.) : ଭୂଗୋଳ

**ଭୂଜଙ୍ଗ ନିର୍ମୋକ** - *ସଂ* (ବିଂ.) : କାତି ଛଡାଉ ଥିବା ସର୍ପ, ବାରମ୍ବାର ମତ ପରିବର୍ତ୍ତନ କରୁଥିବା ମଣିଷ

**ଭୂଜନ** - *ଯା* (ବି.) : ଚଉଦ ସଂଖ୍ୟା

**ଭୂଜପତ୍ର** - *ନ* (ବି.) : ଭୂର୍ଜପତ୍ର(ଭୂର୍ଜଗଛର ଛେଲି)

**ଭୂଜା** - *ଖୋ* (ବି.) : ମୁଢି

**ଭୂତ୍** - *ଜଞ* (ବି.) : ଭୂତ

**ଭୂତକେଶ** - *ଦେ* (ବି.) : ଜଟା ମାଂସୀ, ଶ୍ୱେତ ତୁଳସୀ

**ଭୂତକେଶୀ** - *ଦେ* (ବି.) : ନୀଳ ବେଗୁନିଆ

**ଭୂତଖାଇବା** - *ସଂ* (କ୍ରି.) : ଅର୍ଜିତ ସଂପତ୍ତି ଅନ୍ୟମାନେ ଖାଇଯିବା

**ଭୂତଖାନା** - *ଦେ* (ବି.) : ଯେଉଁଠି ଅନେକ ଦୁଷ୍ଟଲୋକ ଜମା ହୋଇଥାନ୍ତି, ଥାନା ଫାଣ୍ଡି

**ଭୂତନି** - *ଦୌ* (ବି.) : ଭୂତ

**ଭୂତପତ୍ରୀ** - *ଦେ.* (ବି.) : ତୁଳସୀ

**ଭୂତପୁଷ୍ପ** - *ଦେ.* (ବି.) : ଫଣଫଣା ଗଛ

**ଭୂତଭୂତି** - *ଦେ.* (ବି.) : ଅଶରୀରୀ ଅବସ୍ଥା

**ଭୂତମାରି** - *ଦେ.* (ବି.) : ଗନ୍ଧଦ୍ରବ୍ୟ ବିଶେଷ

**ଭୂତମୁଁଡ଼ୀ** - *ସ.* (ବିଂ.) : ଅସୁନ୍ଦର ମୁହଁ (ସ୍ତ୍ରୀ)

**ଭୂତଯଜ୍ଞ** - *ଦେ.* (ବି.) : ଜୀବମାନଙ୍କୁ ଖାଦ୍ୟ ଦାନ

**ଭୂତାଇବା** - *ଦେ.* (କ୍ରି.) ଧପାଇବା, ଭଣ୍ଡାଇବା

**ଭୂତି** - *ଦେ.କଳା.* (ବି.) : ମୂଲ୍ୟ, ଦାନ, ମୂଲ ଲାଗିବା, କାମର ମୂଲ, ମଜୁରୀ

**ଭୂତିଆ** - *ଅନେ.* (ବି.) : ଚୌକିଦାର, ଏକ ଧାନର ନାମ, ଏକ ପ୍ରକାର କଳା ଧାନର ନାମ, ଏକପ୍ରକାର ପୁରୁଣା ଧାନ, ଠକାମି, ସାଙ୍ଗିଆ

**ଭୂତେଇ** - *ପୁ.* (ବି.) : ଠକି

**ଭୂତେଇବା** - *ପୁ.* (କ୍ରି.) : ସତମିଛ କହି ଭୁଆଁ ବୁଲାଇବା, ଠକିବା

**ଭୂଦାନ** - *ସଂ.* (ବି.) : ଜମିଦାନ, ବିନୋବାଙ୍କ ଗରୀବଙ୍କୁ ଜମିଦେବା ପାଇଁ ଏକ ଆନ୍ଦୋଳନ

**ଭୂମିଆ** - *ରା.ଗଞ୍ଜ.* (ବି.) : ଗାଁ ଜମିଦାର, ଏକପ୍ରକାର ଆଦିବାସୀ ଘାଟକ ବିଶେଷ

**ଭୂମିଜ** - *କେନ୍ଦୁ.* (ବି.) : ଏକ ଜାତି

**ଭୂମିବାଡ଼ି** - *ଦେ.* (ବି.) : ଅଚଳନ୍ତି ଭୂସଂପତ୍ତି

**ଭୂମିଲତା** - *ଦେ.* (ବି.) : କେଞ୍ଚୁଆ, ଜିଆ

**ଭୂମିସାଭଣ୍ଡା** - *ଦେ.* (ବି.) : ଭୂମିରେ ଲୁଣ୍ଠନ

**ଭୂୟା** - *ସଂ.* (ବି.) : ମୟୁରଭଞ୍ଜ, ସୁନ୍ଦରଗଡ଼, କେନ୍ଦୁଝରର ଆଦିବାସୀ

**ଭୂରି** - *ଦେ.* (ବି.) : ପ୍ରଚୁର, ଭୂରିଭୋଜନ

**ଭୂରୁ** - *ଦେ.* (ବି.) : ଭୂଲତା

**ଭୂରୁଣ୍ଡୀ** - *ଦେ.* (ବି.) : ହାତୀଶୁଣ୍ଢା ଗଛ

**ଭୂର୍ତାନି** - *ଦୌ.* (ବି.) : ମୂଲିଆଣୀ

**ଭୂର୍‌ଭାର୍** - *ଦେ.* (ବି.) : ଭୁରୁଡ଼ି, ଦାମ୍ଭିକପଣ

**ଭୂଲତା** - *କଳା.ଦେ.* (ବି.) : ଭୁଲତା, କେଞ୍ଚୁଆ

**ଭୂଲିଆ** - *ଗଞ୍ଜ.* (ବି.) ଏକପ୍ରକାର ଆଦିବାସୀ ଘାଟକ ବିଶେଷ, ତନ୍ତୀବିଶେଷ

**ଭୂଲିଙ୍ଗଶକୁନି** - *ଦେ.* (ବି.) : ବିଲଶାୟୀ ପକ୍ଷୀ

**ଭୂଲୁଣ୍ଠିତ** - *ଦେ.* (ବିଂ.) : ଭୂପତିତ

**ଭୂଷ୍‌କିନା** - *ନ.* (ଅ.) : ହଠାତ୍ କରି

**ଭୂଷନ୍** - *କଳା.* (ବି.) : ଭୂଷଣ, ଅଳଙ୍କାର

**ଭୂଷା** - *ଅ.ନ.ଖୋ.* (କ୍ରି.) : ଆଘାତ, ବାଉଁଶ ବାଡ଼ିର ମୁଣ୍ଡରେ ଲାଗିଥିବା ଗୋଜିଆ, ମୁନିଆ ଲୌହପାତ୍ର, ହିଂସ୍ରଜନ୍ତୁ, ସର୍ପ ଇତ୍ୟାଦିକୁ ମାରିବା ଉଦ୍ଦେଶ୍ୟରେ ନିର୍ମାଣ, ତେଣ୍ଟା

**ଭୂଷାବଳ କଦଳୀ** - *ଦୌ.* (ବି.) : ଭୂଷାବଳରୁ ଆସୁଥିବା କଦଳୀ

**ଭୂଷାମାଲ** - *ଭ.* (ବି.) : ତେଜରାତି ଜିନିଷ

**ଭୂଷାମାଲ ଦୁକାନ** - *ବ୍।* (ବି.) : ସୁଭଦାପତ୍ର ବିକ୍ରୀ ହେଉଥିବା ଦୋକାନ ବା ତେଜରାତି ଦୋକାନ

**ଭୂଷି** - *ଭ.* (ବି.) : ଧାନ ବା ଅନ୍ୟ ଶସ୍ୟର ଚୋପା

**ଭୂଷିନି ଚାଲିବା** - *ବ୍।* (ବିଂ.) : ଶୀଘ୍ର ଚାଲିବା

**ଭୂଷିବା** - *ଦେ.* (ବି.) : କେଞ୍ଚିବା, ମଣ୍ଡିବା

**ଭୂସି** - *ରା।* (ବି.) : ଶୀତଳତା ପାଇଁ ବ୍ୟବହୃତ ଏକ ମଞ୍ଜି

**ଭୂକୁତା** - *ଗଞ୍ଜ.* (ବି.) : ନାୟକ, ଗ୍ରାମର ମୁଖ୍ୟ

**ଭୂଙ୍ଗଟ** - *ଦେ.* (ବି.) : ବୈରାଗୀଙ୍କ ପରିଧାନ

**ଭୂଙ୍ଗାରି** - *ଦେ.* (ବି.) : ଝିଙ୍କାରି ପୋକ

**ଭେଇ** - *କଳା.* (ବି.) : ଭାଇ, ସହୋଦର

**ଭେଇବା** - *ଢ଼.ଗ.ଦେ.ଅ.* (କ୍ରି.) : ଭିଆଇବା, ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଉଠାଇ ଲୋକଙ୍କୁ ଏକତ୍ରିତ କରିବା

**ଭେଉ** - *ନବ.କୋ.ଦେ.* (ବି.) : ଢଙ୍ଗ, ମର୍ମ, ରହସ୍ୟ

**ଭେଓଳା** - *ଢ଼.* (ବି.) : ଭେବଳା

**ଭେକ** - *ଗ.ଦେ.ନ.* (ବି.) : ଭରସା, ବେଙ୍ଗ, ବେଶ ପରିଚ୍ଛେଦ, ବେଶ, ଭାବ-ଭଙ୍ଗୀ

**ଭେକ୍‌ଛେକ୍** - *ଦୌ.* (କ୍ରି.ବି.) : ଦୈବାତ୍

**ଭେକ୍‌ଟି** - *ଖୋ.* (ବି.) : ଏକ ପ୍ରଜାତିର ମାଛ, ଭାକୁର ମାଛ

**ଭେକ୍‌ଡ଼ି, ଭେକଡି** - *ଦୌ.* (ବିଂ.) : ବାହନ

**ଭେକ୍‌ଲା** - *ନୂ.ସୁବ.* (ବିଂ.) : ବୋକା, ଜଳକା, ଭକୁଆ ହୋଇ ଏକ ଲୟରେ ଅନାଉଁଥିବା

**ଭେକ୍‌ଲାବା** - *ସୁ.* (ବିଂ.) : ବିହ୍ୱଳ

**ଭେକନି** - *ଦେ.* (ବି.) : ଖଡ଼ିଙ୍ଗା ମାଛ

**ଭେକରିଯିବା** - *ନବ.* (କ୍ରି.) : ବିବ୍ରତ ହେବା

**ଭେକଲା** - *ଅ.ସୁ.ଗଦ୍ୟ.* (ବିଂ.ବି.) : ହୁଣ୍ଡା, ଭକୁଆ, ହତବୁଦ୍ଧି

**ଭେକା** - *ଦେ.* (ବିଂ.) : ଅବାକ୍, ଓଲୁ

**ଭେକାନି** - *ସୁବ.* (ବି.) : ନାଁଦିଆ

**ଭେକାନିଆ** - *ନ.* (ବିଂ.) : ଦରିଦ୍ର, ନିଃସ୍ୱ; ଅତି ଦୟନୀୟ ଅବସ୍ଥାରେ

**ଭେକାଳିଆ** - *ନ.* (ବିଂ.) : ଭେକ ନଥିବା (ପୁରୁଷ)

**ଭେଖାନି** - *ଘୁ.* (ବିଂ.) : ଦରିଦ୍ର, ନିଃସ୍ୱ, ମଳିନ ରୁଚିହୀନ ପୋଷାକ ପରିହିତ (ବ୍ୟକ୍ତି)

**ଭେଗା** - *ମ.* (ବି.) : ଛତରା

**ଭେଙ୍ଗରାଜ୍** - *ସୁବ.* (ବି.) : କଥା ଶିଖୁଥିବା ଏକ ପକ୍ଷୀବିଶେଷ

**ଭେଙ୍ଗରି** - *ଦେ.* (କ୍ରି.) : ଛଇ, ଭଙ୍ଗୀ, ମୁଖାବୟନାଦିର ବିକୃତି କରଣ

**ଭେଜ** - *ବ୍।* (ବି.) : ପାନ ବରଜରେ ପାଣି ଦେବାର ବ୍ୟବଧାନକୁ 'ଭେଜ' କୁହାଯାଏ

**ଭେଜ୍ରା** - *କଳା.* (ବି.) : ପାତଳଘଣ୍ଟା, ଟମାଟୋ

**ଭେଙ୍କରି** - *କଳା* (ବି.) : ଅଙ୍କରାନ୍ତି, ଭେଜି ବାଇଗଣ

**ଭେଙ୍କରି କଟା** - *କଳା* (ବି.) : ଅଂକରାନ୍ତି ଗଛର କଣ୍ଟା

**ଭେଙ୍କରିବାଏଗନ୍** - *କଳା* (ବି.) : ଅଂକରାନ୍ତିର ଫଳ, ଭେଜିବାଇଗଣ

**ଭେଙ୍ଗରି** - *ଅନେ* (ବି.) ଟମାଟୋ, ବାଇଗଣ, ଅଙ୍କରାନ୍ତି, ବନ୍ୟ କଣ୍ଟାକିଆ ଲତା ଜାତୀୟ ବାଇଗଣ

**ଭେଜା** - *ଚୌ.ମ.ନୂ.ଦେ* (ବି.) : ଅକଲ, ବୁଦ୍ଧି, ବିଲାତି ବାଇଗଣ, ଅନ୍ୟଦ୍ୱାରା ପଠାଯିବା

**ଭେଜାବୁଦ୍‌ବାର** - *ସୁବ* (କ୍ରି.) ଭେଳା ବୁଡିବାର ଅର୍ଥବହନ କରେ

**ଭେଜାଲ୍** - *କଳା* (ବିଂ.) : ନକଲି

**ଭେଜାଲ୍ ମଣିଷ** - *ସଂ* (ବି.) : ଖରାପ ମଣିଷ, ଅବିଶ୍ୱାସୀ

**ଭେଜି** - *ଅନେ* (ବି.) : ଏକ ଗୁଳ୍ମ, ଭେଜି ବାଇଗଣ

**ଭେଜିବା** - *ଦେ* (କ୍ରି.) : ପଠାଇବା

**ଭେଜି ବାଇଗଣ** - *ଦେ.ଇ.ନ.ଭା* (ବି.) : ପାକଳ ମଞ୍ଜିପୂର୍ଣ୍ଣ ଛୋଟ ବାଇଗଣ, କଣ୍ଟାଗୁଳ୍ମ, ଏକଗୁଳ୍ମର ଫଳ

**ଭେଜୁଆପାନ** - *ଚ* (ବି.) : ପୁରୁଣା ପାନ

**ଭେଜେରୀ** - *ଝ* (ବି.) : ଏକ ପ୍ରକାର ଗୁଳ୍ମ, କଁଟା ଭେଜେରୀ, ଅଙ୍କରାନ୍ତି

**ଭେଟ** - *ଅନେ* (ବି.) : ପରସ୍ପର ସନ୍ଦର୍ଶନ, ଦେଖା ସାକ୍ଷାତ, ସାକ୍ଷାତକାର

**ଭେଟ୍‌ଘାଟ** - *ସୁ* (ବି.) : ଦେଖାସାକ୍ଷାତ, ବନ୍ଧୁମିଳନ

**ଭେଟ୍‌ନା** - *କଳା* (କ୍ରି.) : ଭୂତପ୍ରେତାଦିଙ୍କ ମୁହଁରେ ପଡିବା

**ଭେଟ୍‌ଭେଟ୍** - *କଳା* (କ୍ରି.) : ସର୍ବଦା କହିବା

**ଭେଟ୍‌ମା** - *କଳା* (କ୍ରି.) : ସାକ୍ଷାତ ହେବା, ଭେଟ ହେବା

**ଭେଟ୍‌ସି** - *କଳା* (କ୍ରି.) : ଭେଟହୁଏ, ସାକ୍ଷାତ ହୁଏ

**ଭେଟଣ** - *ଦେ* (ବି.) : ହଠାତ୍ ସାକ୍ଷାତ ହେବା

**ଭେଟଣା** - *ଅନେ* (ବି.) : ହଠାତ୍ ଭେଟରେ ମୁର୍ଚ୍ଛା ଯିବା, ଭୂତ ପିଶାଚାଦିଙ୍କର ଭୟପ୍ରାପ୍ତ, ମୁଁହାମୁଁହିଁ ମନ୍ଦ ଦୈବୀଶକ୍ତି ସହ ଭେଟ ହୋଇ ରୋଗାକ୍ରାନ୍ତ ହେବା, ଅବାକ୍ ହେବା, ଆଶ୍ଚର୍ଯ୍ୟ

**ଭେଟଭାଟ** - *ଦେ.ଚୌ* (ବି.) : ମିଳନ, ଦର୍ଶନ, ଦେଖା ସାକ୍ଷାତ

**ଭେଟ ଭେଟେଇ ଯିବା** - *ବର* (କ୍ରି.) : କାର୍ଯ୍ୟ ସାଧ କରି ନପାରିବା

**ଭେଟସଲାମୀ** - *ଦେ* (ବି.) : ଭେଟି

**ଭେଟହେବା** - *ଦେ* (ବି.) : ଭେଟିବା

**ଭେଟା** - *ଅ* (ବି.) : ଘରକଥା ନବୁଝି ଯିଏ ବୁଲୁଥାଏ

**ଭେଟାଭଦ୍ରା** - *କଳା:* (ବି.) : ସାକ୍ଷାତରେ ପଚରାପଚରି, ମୁକାବିଲା

**ଭେଟାବା** - *କଳା:* (କ୍ରି.) : ସାକ୍ଷାତ କରାଇବା

**ଭେଟାଭେଟି** - *ଦେ:କଳା:* (ବି.) : ପରସ୍ପର ମିଳନ, ପାରସ୍ପରିକ ପରିଚୟ

**ଭେଟି** - *ଦେ:ପଦ୍ୟ:ଛ:* (ବି.) : ଉପଢୌକନ, ଦର୍ଶନୀ, ଲାଞ୍ଚ, ଉପହାର, ଉପାୟନ, ସାକ୍ଷାତକରି

**ଭେଟିଆ** - *ସୁ:ସ:ବୌ:* (ବି.ବିଂ.) : ବେଠିଖଟିବା ଭୃତ୍ୟ, ବିନାମୂଲ୍ୟରେ ଖଟିବା, ବେଠିଆ, ବିନା ପାଉଣାରେ କାମକରା ଲୋକ

**ଭେଟିଆ କବାର** - *ସ:* (ବି.) : ସମସ୍ତଙ୍କ ସଙ୍ଗେ ମିଶି କଳିଗୋଳ କରିବା

**ଭେଟେ** - *ଦେ:* (ଅ.) : ଜମାରୁ, ଥରେସୁଦ୍ଧା, ଆଦୌ

**ଭେଡ଼ାଏ** - *ଅ:* (ଅ.) : ଥରେ, ପାହୁଣ୍ଡେ

**ଭେଡିବା** - *ଚ୍ୟ:* (କ୍ରି.) : ଭର୍ତ୍ତି କରିବା

**ଭେଡ଼** - *ଦେ:* (ବି.) : ମେଣ୍ଢା

**ଭେଡ଼ା** - *ମ:ଗ:ଭ:ଦେ:* (ବି.) : ମେଣ୍ଢା, ଶସ୍ୟ କ୍ଷେତ୍ରର ମଧ୍ୟବର୍ତ୍ତୀ ପଡ଼ିଆ, ବିସ୍ତୃତ ଜଳପ୍ଲାବିତ ଅଞ୍ଚଳ, ବଡ଼ଡ଼ିହ, ଜଙ୍ଗଲମୟ, ଭୂମି ପଡ଼ିଆ

**ଭେଡ଼ାମି** - *ଦେ:* (ବିଂ.) ମେଣ୍ଢାପରି ନିର୍ବୋଧତା

**ଭେଡ଼ାସିଂ** - *ଗଦ୍ୟ:* (ବି.) : ଗଣଦେବତା

**ଭେଡ଼ି** - *ଦେ:* (ବି.) : ମେଣ୍ଢା, ଏକ ପ୍ରକାର ଛୋଟ ମାଛ

**ଭେଡ଼ିଆ** - *ଚ୍ୟ:* (ବି.) : ପାନ ବରଜରେ କାମକରୁଥିବା ଏକ ସ୍ୱତନ୍ତ୍ର ଗୋଷ୍ଠୀର ଲୋକଙ୍କୁ

**ଭେଡ଼ିଏନ** - *ସୁ:* (ବି.) : ଧାଙ୍ଗିଡ଼ି ଯୁବତୀ

**ଭେଡ଼ିବା** - *ଚ୍ୟ:* (କ୍ରି.) ଭର୍ତ୍ତିକରିବା, ନଦିଦେବା

**ଭେଡ଼ୋ** - *ସୁ:* (ବି.) : ଗଧିଆ, ଭେଡ଼ା

**ଭେଣା** - *କଳା:* (ବିଂ.) : ଭେଣ୍ଡା, ଯୁବକ

**ଭେଣି** - *କଳା:ନୂ:ବା:* (ବି.) : ଭେଣ୍ଡି, ପରିବା ବିଶେଷ, ଭିଣୋଇ

**ଭେଣିଆ** - *ନୂ:କଳା:* (ବିଂ.ବି.) : ଭେଣ୍ଡିଆ, ଯୁବକ, ବଳବାନ ଯୁବକ

**ଭେଣିଏନ୍** - *ନୂ:* (ବି.) : ବ୍ୟକ୍ତି ବିଶେଷ(ସ୍ତ୍ରୀ ଲିଙ୍ଗରେ)

**ଭେଣେଇ** - *ନୂ:ଦେ:ବୌ:* (ବି.) : ଭିଣୋଇ, ଭଉଣୀ ଜୋଇଁ, ଭଗ୍ନିପତି

**ଭେଣ୍ଡର** - *ଖୋ:* (ବି.) : ସରକାରୀ କାଗଜ ରକ୍ଷକ ଟିକେଟ୍ ରକ୍ଷକ

**ଭେଣ୍ଡା** - *ଅନେ:* (ବି.) : ଯୁବକ, ଯୁବା ପୁରୁଷ

**ଭେଣ୍ଡାଦିଣ୍ଡା** - *ଗ:* (ବି.) : ଯୁବକ ଯୁବତୀ

**ଭେଣ୍ଡି** - *ଖୋ:* (ବି.) : ଏକ ପରିବା

**ଭେଣ୍ଡିଆ** - *ଅନେ:* (ବି.) : ଯୁବକ, କିଶୋର, ମରଦ, ଧାଙ୍ଗଡ଼ା

**ଭେଣ୍ଡିଆବୋଧ** - *ନ:* (ବି.) : ଆଶ୍ୱାସନା, ମିଥ୍ୟା ପ୍ରବୋଧନା, ଛଳନାତ୍ମକ ସାନ୍ତ୍ୱନା

**ଭେଣ୍ଡିଆମତା** - *ଦେ:* (ବିଂ.) ପ୍ରଥମ ଯୌବନରେ ଲୋକର ଦୁଷ୍ଟାମୀ ଆଦି

**ଭେଣ୍ଡିଆ ମର୍ଦ୍ଦନ** - *ନ:* (ବି.) : ଏକ ବୃକ୍ଷର ନାମ

**ଭେଣ୍ଡି ମୁଣ୍ଡି** - *ସଂ:* (ବି.) : ଚଉଁରୀ ଭୁଣ୍ଡୀ

**ଭେଣ୍ଡି ସୁନା** - *ସଂ:* (ବି.) : ନିରସା ସୁନା

**ଭେଣ୍ଡୀ** - *ଦେ:* (ବି.) : ଯୁବତୀ

**ଭେଣ୍ଡୁ** - *ଚ୍ଛ:* (ବି.) : ଭେଣ୍ଡି

**ଭେଦ** - *ଅନେ:* (ବି.) : ଅସଲ ତତ୍ତ୍ୱ, ତଫାତ, ସମ୍ବନ୍ଧ, ମର୍ମ, ଛିଦ୍ର, ରହସ୍ୟ, ଗୂଢତତ୍ତ୍ୱ, ଭେଦ, କାଠକୁ ବିନ୍ଧଣରେ କଣା କରିବା

**ଭେଦ୍‌ରି ଯିବା** - *ମା:* (କ୍ରି.) : ବିବ୍ରତ ହେବା

**ଭେଦ କରିବା** - *ଦେ:* (କ୍ରି.) : ଫୋଡ଼ିବା, ବିଦାରଣ କରିବା

**ଭେଦବାନ୍ତି** - *ଦେ:* (ବି.) : ଝାଡ଼ାବାନ୍ତି, ହଇଜା

**ଭେଦ ବେମାରି** - *ଗଦ୍ୟ:* (ବି.) : ପତଳା ଝାଡ଼ା

**ଭେଦଭାବ** - *ଦେ:* (ବି.) : କପଟ, ଛୋଟବଡ଼ ବିଚାର

**ଭେଦା** - *ଅନେ:* (ବି.ବିଂ.) : ଚାନ୍ଦା, ପାଣିରେ ଭିଜିଥିବା

**ଭେଦାନ୍ତ** - *ଦେ:* (ବି.) : ରହସ୍ୟ

**ଭେଦିଡିଯିବା** - *ଚ୍ଛ:* (କ୍ରି.) : ଚକଟିଯିବା

**ଭେଦିବା** - *ଦେ:ନ:* (କ୍ରି.) : ଉତ୍ତମ ରୂପେ ଢାଣିବା, ମୋହିବା, ଢାଣିବା

**ଭେଦିଯିବା** - *ଚ୍ଛ:* (କ୍ରି.) : ଭିଜିଯିବା

**ଭେଦୀ** - *ନ:* (ବି.) : ଝାଡ଼ା ହେବାପାଇଁ ଔଷଧ(ଆୟୁର୍ବେଦ)

**ଭେଦେଇବା** - *କେ:ଗ:* (କ୍ରି.) : ଓଦା କରିବା, ଚାନ୍ଦା କରିବା

**ଭେଦେଭେଦ** - *ନ:* (ବି.) : ପରାପର, ପରଆପଣା, ପ୍ରଭେଦ

**ଭେନେଇ** - *କଳା:ସୁବ:ସୁ:* (ବି.) : ଭିଣୋଇ, ଭଗିନୀର ପତି

**ଭେବଳ** - *କ:* (ବିଂ.) : ବିହ୍ୱଳ

**ଭେବଳା** - *ନ:* (ବିଂ.) : ଭୋଳା ପ୍ରକୃତିର, ସହଜରେ ଭୁଲିଯିବା ପ୍ରକୃତି

**ଭେବା** - *ବ:କଳା:* (ବିଂ.) : ଭକୁଆ, ନିର୍ବୋଧ, ବୋକା, ଅଚତୁର

**ଭେମ୍ବାରଡ଼ି** - *ଭ:* (ବି.) : ଖୁବ୍ ଜୋର ଶବ୍ଦ

**ଭେମ୍ବିଳି** - *କୋ:* (ଅ.) : ବାଉଳା

**ଭେମ୍ବିରି** - *ନବ:* (ବି.) : ବାଉଳା ହେବା

**ଭେରଣା** - *ଅ:* (ବିଂ.) : ଭେଷଡ଼ା, ନିର୍ଲଜ (ଗାଳି)

**ଭେରଣ୍ଡା** - *ଗ:ଦେ:ବା:* (ବି.) : ପୁରୁଷ ବିଲୁଆ, ଅଣ୍ଡିରା ବିଲୁଆ, ଗବ ଗଛ,

**ଭେରଷିଆ** - *କେ:* (ବିଂ.) : ଅଶ୍ଳୀଳ କଥା କହୁଥିବା ଦୁର୍ଜନ ବ୍ୟକ୍ତି, ନିର୍ଲଜ

**ଭେରସୁଙ୍ଗା** - *କ:ଭ:* (ବି.) : ଗଛ ବିଶେଷ, ସୁବାସିତ, ଜୀର୍ଣ୍ଣକାରୀ ପତ୍ର

**ଭେରା** - *ଦେ:* (ବି.) : ଘେରା, ଖଣ୍ଡେଦୂର

**ଭେରୀ** - *କେ:ଦେ:* (ବି.) : ଏକ ବାଦ୍ୟଯନ୍ତ୍ର, ବଡ଼ କାହାଳୀ

**ଭେରୁ** - *ସୁବ:ନ:ଦେ:* (ବି.) : ଏକ ଶକ୍ତ କାଠ, ଟାଙ୍ଗିଆ କୋଡ଼ିର ବେଣ୍ଟ ହୁଏ, ଏକ ବୃକ୍ଷର ନାମ, ନିମ୍ବାଦିବର୍ଗ, ମଧ୍ୟମାକୃତି ବନ୍ୟତରୁ

**ଭେରୁକୀଳ** - *ଗ:* (ବି.) : ଶକ୍ତିକୀଳକ, ଭେରୁ କାଠର କୀଳ

**ଭେରେଣ୍ଡା** - *ପୁ:ମା:ଦେ:* (ବି.) : ଅଣ୍ଡିରା ବିଲୁଆ, ଗବଗଛ, ଅଣ୍ଡିରା

**ଭେର୍‌ସିଆ** - *ଯା:* (ବିଂ.) : ବେହିଆ, ଅସୁନ୍ଦର

**ଭେଲ** - *ନ:* (ବିଂ.) : ଖରାପ, ମନ୍ଦ

**ଭେଲ୍‌କା** - *ଅନେ:* (ବିଂ.ବି.) : ବୋକା, ଆଶ୍ଚର୍ଯ୍ୟ, ତାଟଙ୍ଗା, ସ୍ତବ୍ଧ ଚକିତ ହୋଇ ରହିଯିବା, ବୋବା, ଇଳକା, ଭକୁଆ ହୋଇ ଏକ ଲୟରେ ଅନାଉଁଥିବା ଲୋକ

**ଭେଲ୍‌କି** - *ଦେ:ସ:* (ବି.) : କୁହୁକ, ଭେଳିକି, ଯେ ଅବାକ୍ ହୋଇ ଚାହିଁରହେ

**ଭେଲ୍‌ପୁରୀ** - *ଖୋ:* (ବି.) : ଏକପ୍ରକାର ପୁରୀ

**ଭେଳା** - *ଅନେ:* (ବି.ବିଂ.) ଗୋଟିଏ ଜାଗାରେ ଅନେକ ଥିବା, ମୁଣ୍ଡା, ଗୁଡ଼ ଆଦିର ମେଞ୍ଚା, ରେପ୍‌ଟା, ଅସୁନ୍ଦର, ଚେପଟା, ଚେଳା

**ଭେଳାଭେଳା** - *ବୌ:* (ବିଂ.) : ଗଦାଗଦା

**ଭେଳା ମାରିବା** - *ଗ:* (କ୍ରି.) ପାଇକ ଆଖଡ଼ାର କୌଶଳ, ଚିତ୍ ହୋଇ ଓଲଟିବା

**ଭେଳି** - *ଯା:ଖା:ବୌ:କଳା:* (ବି.) : ଛଳନା, ଛୋଟ ଭେଳା, ଗୁଡ଼, ଦଳ, ବଂଶ, ସମୂହ

**ଭେଳିଗୁଡ଼** - *ଅ:ଦେ:ସୁ:ସ:* (ବି.) କାଠୁଆଗୁଡ଼, ଭେଳା ଗୁଡ଼, ଟାଣଗୁଡ଼, ଆଖୁରସକୁ ମୁଣ୍ଡା କରିଦେଲେ ଭେଳିଗୁଡ଼ ହୁଏ

**ଭେଲୁଆଁ** - *ସୁବ:ଗ:* (ବି.) : ବଣୁଆଁ ଲଙ୍କା ଆମ୍ବ, ଏହାର ପାଚିଲା ଫଳ ପୋଡ଼ିକରି ଖିଆଯାଏ ମଞ୍ଜିର ରସ ଦେହରେ ଲାଗିଲେ ଘା ହୁଏ, ଖଟାଆମ୍ବ

**ଭେଲୁଆଁଖାଇ** - *ସୁବ:* (ବିଂ.) ଏକ ନାଲିମୁଣ୍ଡିଆ ଶୁଆର ପ୍ରଜାତି

**ଭେଲେ ଭେଲେ** - *ମ:ପୁ:* (କ୍ରି.ବିଂ.) : ବଡ଼ ବଡ଼, ଦରକାର ନଥାଇ ଏପଟସେପଟ

**ଭେଳକା** - *ସ:* (ବିଂ.) : ଭୟରେ ବୁଦ୍ଧିହୀନ

**ଭେଜା** - *ଦେ:* (ବି.) : ଗୋଛା, ଜୀବିକା

**ଭେଜା ବୁଡ଼ିବା** - *ଦେ:* (ବି.) : କାର୍ଯ୍ୟ ନାଶ ଘଟିବା

**ଭେଳାଭେଳା** - *ନ:* (ବି.) : ଦଳଦଳ

**ଭେଳି** - *ଦେ:ମ:* (ବି.) : ଦଳ, ପଲ, ମେଣ୍ଟା

**ଭେଳିଆ** - *ଗ:* (ବି.) : ସାମର୍ଥ୍ୟ

**ଭେଳିକି** - *ଗ:ମା:କୋ:ନ:* (ବି.ବିଂ.) : ଅଭିନୟ ପୂର୍ଣ୍ଣ ଭୟ ସୃଷ୍ଟି କରିବା, କୁହୁକ

**ଭେଲୁ** - *ମ:* (ବି.) : ଭେଣ୍ଡି

**ଭେଳେଇବା** - *ଗ:* (କ୍ରି.) ଲୋକଙ୍କୁ ମତାଇବା, ଏକାଠି କରିବା

**ଭେଶ** - *ସୁବ:ଦେ:କଳା:* (ବି.) ବେଶ ପ୍ରସାଧନ, ଚେହେରା, ବେଶ, ସାଜସଜ୍ଜା

**ଭେଶ୍‌ଡ଼ିଆ** - *ଦେ:* (ବିଂ.) : ନିର୍ଲ୍ଲଜ, ଅଶ୍ଳୀଳ

**ଭେଶ୍‌ବନ୍ଧା** - *କଳା:* (ବି.) : ବେଶ ବିନ୍ୟାସ

**ଭେଶକାଢ଼ିବା** - *ଗ:* (କ୍ରି.) : ମିଥ୍ୟା ଅଭିନୟ

**ଭେଷ** - *ନୂ:ଝା:* (ବି.) : ବେଶ

**ଭେଷିଡ଼ୀ** - *ଗ:* (ବି.) : ନିର୍ଲଜ୍ଜୀ

**ଭେଷେଡ଼ା** - *ସୁ:ବୌ:* (ବିଂ.) : ଅଲାଜୁକ, ଖରାପ

**ଭେସ୍‌ଡିଆ** - *ବ:* (ବିଂ.) : ଅଶ୍ଳୀଳ କଥାବାର୍ତ୍ତା କରିବା ବ୍ୟକ୍ତି

**ଭେସଡ଼** - *କୋ:* (ବି.) : ଅଭଦ୍ର କଥା, ଲାଜ କଥା

**ଭେସର** - *ସୁ:* (ବିଂ.) : ନିମ୍ନରୁଚି

**ଭେସରିଆ** - *ସୁ:* (ବିଂ.) ଅଶ୍ଳୀଳ ଆଚରଣକାରୀ

**ଭେସୁଣୀ ଫୁଲି** - *କେନ୍ଦୁ:* (ବି.) : ନାକର ଅଳଙ୍କାର ଯାହା ଆକାର ବଡ଼ ଓ ଲମ୍ବା, ଝରା ଲାଗିଥାଏ

**ଭେସେଡ଼ା ମୁହାଁ** - *ଖୋ:* (ବିଂ.) : ଅସୁନ୍ଦର ବିକୃତ ମୁହଁ ଯାହାର (ଭେସେଡ଼ି-ସ୍ତ୍ରୀ)

**ଭେଁଡାଗାଡ଼ଶୁଆ** - *ସୁବ:* (ବି.) : ସ୍ତ୍ରୀମାନଙ୍କ ଗାଳି

**ଭେଁଡ଼ି** - *ସୁ:ସ:ଦେ:ନୂ:* (ବି.) : ମେଣ୍ଢା, ଭେଣ୍ଡି

**ଭେଁଡ଼ିଆ** - *ସ:ସୁବ:* (ବିଂ.) : ଯୁବକ, କିଶୋର

**ଭେଁସୁର** - *ଅ:* (ସ.) : ଵେଢ଼ଶୁର

**ଭୈରା** - *ଗଜ:ଗ:* (ବି.) : ତୋଡ଼ିମାଛ

**ଭୋଇ** - *କଳା:* (ବି.) : କନ୍ଧ, ଗଉଡ଼ ଓ କୋଳଥିଆ ଗଉଡ଼ ଜାତିର କୌଳିକ ଉପନାମ ବିଶେଷ

**ଭୋଇଲା** - *ଢ:* (କ୍ରି.) : ବୋହିଲା

**ଭୋକ** - *ଢ:ଦେ:* (ବି.) : ବିହ୍ୱଳ, କ୍ଷୁଧା

**ଭୋକ୍‌ସୋଇ୍** - *ସ:* (ବି.) : ଦୁର୍ବଳତାରେ ପଡ଼ିଯିବା ଲୋକ

**ଭୋକଡ଼ୋ** - *ସୁ:* (ବିଂ.) : ଭକୁଆ, ବୋକା

**ଭୋକଶୋଷ** - *ଦେ:* (ବି.) : କ୍ଷୁଧା ଓ ତୃଷା

**ଭୋକାନିଆ** - *ନ:* (ବିଂ.) : ଭେକନଥିବା, ଭିକାରୀଭଳି ଚଳୁଥିବା

**ଭୋକା, ଭୋଖା** - *ଦେ:* (ବିଂ.) : କ୍ଷୁଧିତ

**ଭୋକିଲା** - *ନ:ଦେ:* (ବିଂ.) କ୍ଷୁଧାର୍ତ୍ତ, ଉପବାସିଆ

**ଭୋଖାଇବା** - *ଦେ:* (ବି.) : କ୍ଷୁଧାରେ ଆତୁର ହେବା

**ଭୋଗ** - *ଦେ:ନ:କଳା:* (ବି.) : ସୁଖବିଳାସ, ପାପପୁଣ୍ୟର ଫଳ, ଠାକୁରଙ୍କ ପୂଜାରେ ଲାଗିଥିବା ଖାଦ୍ୟ ପଦାର୍ଥ, ଭୋଗ, ପ୍ରସାଦ, ଅନୁଭବ

**ଭୋଗ ପାଇବା** - *ଖୋ:* (କ୍ରି.) : ଭୋଗଖାଇବା

**ଭୋଗବଟା** - *ଗ:* (ବି.) : ବୈଷୟିକ ବିବରଣ, ଜଣା

**ଭୋଗବନ୍ଧକ** - *ଦେ:* (ବି.) : ଦଖଲ ବନ୍ଧକ

**ଭୋଗବନ୍ଧା** - *ଗ:* (ବି.) : ଘର ବା ଜମି ବନ୍ଧକ ଦେଇ ସ୍ଥାନାନ୍ତର ହେବା, ସ୍ୱାଧୀନ ବନ୍ଧକ

**ଭୋଗବାଦୀ** - *ସଂ:* (ବି.) ବିଳାସ ବ୍ୟସନରେ ବଞ୍ଚିବାର ଲକ୍ଷ୍ୟ

**ଭୋଗବେଳା** - *ପୁ:* (ବି.) : ସନ୍ଧ୍ୟା ସମୟ, ସନ୍ଧ୍ୟା ସମୟରେ ଭାଙ୍ଗଖାଇବା ବେଳା

**ଭୋଗରାଗ** - *ଦେ:* (ବି.) ଠାକୁରଙ୍କୁ ନୈବେଦ୍ୟାଦିଦ୍ୱାରା ପୂଜନ

**ଭୋଗଲାଭ** - *ଦେ:* (ବି.) : ସୁଖ ଭୋଗାଦି ପ୍ରାପ୍ତି

**ଭୋଗା** - *ଅ:ଦେ:* (ବି.) : ଚାଉଳ ଧୂଆ ପାଛିଆ, ଧପ୍ପା, ପ୍ରତାରଣା

**ଭୋଗାଇ** - *ଅ:* (ବି.) : ଛୋଟ ବାଉଁଶିଆ

**ଭୋଗାଗୋଇ** - *ଦେ:* (ବି.) : ଟୋକେଇ, ଛୋଟ ବାଉଁଶିଆ

**ଭୋଗି** - *ଗଞ:* (ବି.) : ମକର ସଂକ୍ରାନ୍ତି ପୂର୍ବ ଦିନ ହେବା ମଘାପୋଡ଼ି

**ଭୋଗିବା** - *ନ:ଦେ:* (କ୍ରି.) : ଭୋଗକରିବା, ଦଣ୍ଡଭୋଗିବା, ଖାଇବା, ସୁଖଦୁଃଖ ଭୋଗ କରିବା

**ଭୋଗୀ** - *ଅନେ:* (ବିଂ.) : ସୁଖୀ, ବିଳାସୀ, ଭୋଗ ପାଉଥିବା ବ୍ୟକ୍ତି, ମକର ସଂକ୍ରାନ୍ତିର ପୂର୍ବ

**ଭୋଗୁଆ** - *ସୁ:ଦେ:* (ବି.ବିଂ.) ଭୁଗା, ଟୋକେଇ, କଚ୍ଛା, ଗେରୁମାଟିରେ ରଂଜିତ ବସ୍ତ୍ର

**ଭୋଗେଇ** - *ଗଦ୍ୟ:ସଂ:ନ:ଖୋ:* (ବି.) ଛୋଟ ପାଛିଆ, ଡାଲା, ବାଉଁଶପାତରେ ନିର୍ମିତ ଛୋଟ ଛୋଟ ପାତ୍ର,

**ଭୋଗେଇ ପିଠା** - *ନ:* (ବି.) : ଏଣ୍ଡୁରୀ

**ଭୋଛାରନୁ** - *ବୌ:* (ବିଂ.) : ଜୋର୍‌ରେ

**ଭୋଜନ** - *ଦେ:* (ବି.) : ଭକ୍ଷଣ, ଭୋଜି

**ଭୋଜନ ଦକ୍ଷିଣା** - *ସଂ:* (ବି.) : ବ୍ରାହ୍ମଣଙ୍କୁ ଭୋଜନ ଦିଆଯିବା ପରେ ଯେଉଁ ଆର୍ଥିକ ଉପଢୌକନ ଦିଆଯାଏ

**ଭୋଜନଶାଳା** - *ସଂ:* (ବି.) : ହୋଟେଲ, ଯେଉଁଘରେ ଖିଆଯାଏ

**ଭୋଜନୀ** - *ସଂ* (ବି.) : ଖାଦ୍ୟ ବାବଦରୁ ପ୍ରାପ୍ୟ

**ଭୋଜସୁଲି** - *ସୁ* (ବିଂ.) : କ୍ଷୁଧା ଜନିତ ବ୍ୟଥା

**ଭୋଜା** - *ଦେ* (ବି.) : ମୁଢି ଉଖୁଡ଼ା ଆଦି ଖାଦ୍ୟ

**ଭୋଜି** - *ଦେ* (ବି.) ବହୁ ଲୋକଙ୍କୁ ଦିଆଯିବା ଭୋଜନ

**ଭୋଜିବା** - *ଦେ* (କ୍ରି.) : ଖାଇବା (କ୍ରିୟା)

**ଭୋଜିଭାତ** - *ଦେ* (ବି.) : ଭୋଜି ନିମନ୍ତେ ପ୍ରସ୍ତୁତ ଅନ୍ନ

**ଭୋଟ** - *ଖୋ.ଦେ* (ବି.) : ନିର୍ବାଚନ ସପକ୍ଷରେ ମତଦେବା, ନିର୍ବାଚନ

**ଭୋଟ ବ୍ୟାଙ୍କ୍** - *ସଂ* (ବି.) : ଭୋଟଉତ୍ସ

**ଭୋଟା** - *ଅ* (ବିଂ.) : ମୋଟା

**ଭୋଟିଆ** - *ଗଦ୍ୟ* (ବି.) : ଯାଯାବର ଶ୍ରେଣୀ

**ଭୋଟୀ** - *ଅ* (ବିଂ.) : କ୍ଷୀର ଦେଉନଥିବା ଗାଈ

**ଭୋଡ଼ା** - *ଅ* (ବି.) : ଏକ ପାଦ, ପାହୁଣ୍ଡ

**ଭୋଢ଼୍‌ସୋ** - *କଳା* (ଅ.) : ତଳେ ବା ପାଣି ଭିତରେ ବା ଗର୍ତ୍ତରେ କୌଣସି ଜିନିଷ କଚାଡି ହୋଇ ପଡ଼ିବାର ଶବ୍ଦ

**ଭୋଡଙ୍ଗା** - *ଅନେ* (ବି.ବିଂ.) : ବଡ଼ ଚିଙ୍ଗୁଡ଼ି ମାଛ (କଣ୍ଟିଲୋ), ବଡ଼ ଓ ପୋଲା ଫମ୍ପା, ଶୂନ୍ୟଗର୍ଭା, ଧାନ ଶସ୍ୟବତୀ ନହୋଇ ମୁଣ୍ଡା ମାରିଯିବା, ପୋଲା, ଅତି ମାତ୍ରାରେ ବଢିଯାଇଥିବା (ଗଛ)

**ଭୋଡ଼ଙ୍ଗ** - *ଦେ* (ବି.) : ଭୁଡୁଙ୍ଗ, ରଣଶିଂଘା

**ଭୋଣୋ** - *ସୁ* (ବି.) : କଣା, ସୁଡୁଙ୍ଗ

**ଭୋଦ** - *ନବ.କନ୍ଧ* (ବି.) : ଭାଦ୍ରବ

**ଭୋଦଇବ** - *ଦେ* (ଅ.) : ହାୟରେ କପାଳ

**ଭୋଦସି** - *ଚମ୍* (ବି.) : କଳାରଂଗର ମାଛ

**ଭୋଦୁଅ** - *ଅନେ* (ବି.) : ଭାଦ୍ରମାସ

**ଭୋଦୁଅଭୋଦେଇ** - *ଦେ* (ବି.) ଭାଦ୍ରବମାସରେ ଅମଳ ହେବା (ରାଶି ଓ ମକା), ଭାଦ୍ରବ ମାସର ଚିଙ୍ଗୁଡ଼ି

**ଭୋଦେଇ** - *ଗଦ୍ୟ* (ବି.) : ଏକ ଫଳ

**ଭୋଦେଇଖରା** - *ଦେ* (ବି.) : ଭାଦ୍ରବମାସର ପ୍ରଚଣ୍ଡ ଖରା

**ଭୋଦେଇ ଚିଙ୍ଗୁଡ଼ି** - *ଢ* (ବି.) : ଛୋଟ ଚିଙ୍ଗୁଡ଼ି, ଭାଦ୍ରବ ମାସରେ ନଈରୁ ଧରୁଥିବା ଚିଙ୍ଗୁଡ଼ି

**ଭୋଦେବା** - *ଦେ* (କ୍ରି.ବିଂ.) : କେବେ, କେମିତି, ଅକାଳେ

**ଭୋଦୋ** - *କଳା.ସୁ* (ବି.) : ଭାଦ୍ରବ

**ଭୋପରା** - *ଭ* (ବି.) : କପର୍ଦ୍ଦକ ଶୂନ୍ୟ

**ଭୋପା** - *ସୁ.ଦେ* (ବିଂ.ବି.) : ମିଛୁଆ, ଡହରା, ଠକ, ଗପଡ଼ି

**ଭୋବ୍‌ରା** - *କଳା* (ବି.) : ଭୋଗରା, ରାଜୁଡ଼ା କାଳରେ ଜମିଦାର ଓ ଗଉନ୍ତିଆମାନଙ୍କ ଭୋଗ ନିମନ୍ତେ ରାଜାଂକ ଦ୍ୱାରା ପ୍ରଦତ୍ତ ଜମି

**ଭୋର** - *ଯା:ଭ:କ:କେ:* (ବି.) : ସକାଳ, ପ୍ରାତଃକାଳ

**ଭୋରୋ** - *କଳା:* (ବିଂ.) : ବହୁଭାଷୀ

**ଭୋର୍କୋ ଭୋର୍କୋ** - *ସ:* (ବିଂ.) : ସଅଳ ସଅଳ

**ଭୋର୍‌ଲୋ** - *କଳା:* (କ୍ରି.) : ଡାକିବା ବା କୁଢେଇବାର ଶବ୍ଦ

**ଭୋଲ** - *ସୁ:ସ:* (ବି.) : ବିଭୋର, କଣା, ରନ୍ଧ୍ର

**ଭୋଲ୍** - *କଳା:* (ବିଂ.) : ଭୋଳ୍, ପ୍ରେମାସକ୍ତ, ବିଭୋର

**ଭୋଲା-ଭାଲା** - *ସଂ:* (ବିଂ.) : ସିଧାସାଧା

**ଭୋଲୋ** - *କଳା:* (ବି.) : ବିଲ ହୁଡାରେ ହୋଇଥିବା ରନ୍ଧ୍ର ବା ଛୋଟ କଣା, ଏଥିରେ ଜମିର ପାଣି ତଳକୁ ଚାଲିଯାଏ

**ଭୋଳ** - *ଗଦ୍ୟ:ଦେ:* (ବି.) ଲୁଣିମାଟି, ଭୁଲିଯିବା, ଏକ ପ୍ରକାର କାଟିଆ ମାଛ

**ଭୋଳହେବା** - *ଦେ:* (କ୍ରି.) : ନିଶାରେ ଉନ୍ମତ୍ତ ହେବା, ଭୁଲିଯିବା

**ଭୋଳା** - *ଭ:ନ:* (ବି.ବିଂ.) : ବାଉଳା ଲୋକ, ଭୁଲିଯିବା ପ୍ରକୃତିର

**ଭୋଳି** - *ଦେ:ଭ:* (ବି.ବିଂ.) : ଓଟ, ବିଭୋଳ, ହସଖୁସିର ଲୋକ

**ଭୋଳିଆ** - *ଝୋ:* (ବି.) : ବିଲହିଡ଼ର ଗାତ

**ଭୋଷଡ଼ି** - *ସୁ:* (ବି.) : ଦୁଶ୍ଚରିତ୍ରା

**ଭୌଁକୋ** - *ନୂ:* (ବି.) : ଜଙ୍ଗଲରେ ରହୁଥିବା ବିରାଡ଼ି, କଟାସ

**ଭଁଇଁରା** - *ନବ:* (ବିଂ.) : ବଧିର, କାଲା

**ଭଁଏରା** - *ସ:ନୂ:* (ବିଂ.) : ବଧିର(ପୁ), କାଲା, କାଲା ବ୍ୟକ୍ତି

**ଭଁଏରୀ** - *ନୂ:ସ:* (ବିଂ.) : କାଲା ସ୍ତ୍ରୀ, ବଧିର (ସ୍ତ୍ରୀ), କାଲୁଣୀ

**ଭଁଏଷା** - *ସ:* (ବିଂ.) : ମଇଁଷି ପରି କଳା ଓ ବଡ଼

**ଭଁଏଁରୋ** - *ସୁବ:* (ବି.) : ଭୈରବ

**ଭଁକିନା** - *ନୂ:* (ବିଂ.) : ଶୀଘ୍ର

**ଭଁଟା** - *ସ:* (ବି.) : ବାହ୍ୟସ୍ଥାନ

**ଭଁଡ଼ାରି** - *ସ:ସୁ:* (ବି.) : ବାରିକ

**ଭଁଣ୍ଡ** - *ସୁ:* (ବିଂ.) : ଠକ

**ଭଁଣ୍ଡବା** - *ସ:* (କ୍ରି.) : ଠକିବା

**ଭଁ-ପୁଲା** - *ସୁବ:* (ବିଂ.) ବଡ଼ କଣା ହୋଇଥିବା

**ଭଁରାଟି** - *ସ:* (ବି.) : ଗର୍ବଭାବ

**ଭଁର୍‌ରୁ** - *ସ:* (ବିଂ.) : ମିଛୁଆ

**ଭଁଷଡି** - *ସୁବ:* (ବିଂ.) ଗାଳିବାଚକ ବିଶେଷଣ, ଭ୍ରଷ୍ଟା ସ୍ତ୍ରୀ

**ଭଂଗ** - *ସୁ:* (ବି.) : ଗଂଜେଇ ପତ୍ର

**ଭଂଗ୍‌ଭଂଗା** - *କଳା:* (ବିଂ.) : ସଂପୂର୍ଣ୍ଣ ମେଲା, ପୋଲା

**ଭଂଜା** - *ବୌ:* (ବି.) : ଭଣଜା (ଭଉଣୀର ପୁଅ)

**ଭଂଜାବାର** - *ସୁବ:* (କ୍ରି.) : ଖୁଚୁରା କରିବା, ଝିଅ ପାଇଁ ବରଘର ଠିକ୍ କରି ବାହାଦେବା

**ଭ୍ରଚନା** - *ଜ:* (ବି.) : ଭର୍ତ୍ସନା

**ଭ୍ରଚ୍ଛନା** - *ଜ:* (ବି.) : ଗାଳି, ଭର୍ତ୍ସନା, ତିରସ୍କାର

**ଭ୍ରଥ** - *ଜ:* (ବି.) : ଭରତ

**ଭ୍ରମର** - *ଦେ:* (ବି.) : କାମୁକ, ଭଅଁର, କାଠର ଫୋଡ଼ କରିବା ଯନ୍ତ୍ର

**ଭ୍ରମରକ** - *ପଦ୍ୟ:* (ବି.) : କପାଳ ଉପରେ ଖେଳେଇ ହୋଇ ପଡ଼ିଥିବା କେଶରାଜି

**ଭ୍ରମର କୀଟ** - *ଦେ:* (ବି.) : କୁମ୍ଭାର ପୋକ, ମାଛି ଭିରୁଡ଼ି

**ଭ୍ରମହେବା** - *ଦେ:* (କ୍ରି.) : ବୁଲାଇବା, ଭୁଲହେବା

**ଭ୍ରମି** - *ଦେ:* (ବି.କ୍ରି.) : ଭ୍ରମଣ

**ଭ୍ରମିବା** - *ଦେ:* (କ୍ରି.) : ବୁଲିବା

**ଭ୍ରମିହେବା** - *ଦେ:* (କ୍ରି.) : ବୃଥାରେ ବୁଲିବା

**ଭ୍ରଷ୍ଟ** - *ଦେ:* (ବିଂ.) : ନଷ୍ଟ, ଦୋଷଯୁକ୍ତ

**ଭ୍ରସନା** - *ଅ:* (ବି.) : ଗାଳି

**ଭ୍ରାନ୍ତଧାରଣା** - *ଦେ:* (ବି.) : ଭ୍ରମ ପୂର୍ଣ୍ଣ ବିଶ୍ୱାସ

**ଭ୍ରାନ୍ତି** - *ଦେ:* (ବି.) : ସନ୍ଦେହ, ମାୟା, ଭ୍ରମ

# ମ

**ମ** - *ସୁବ:* (ଅ.) ଜଣେ କହିବା, ଆଶ୍ଚର୍ଯ୍ୟଜନକ ଖବର ସମ୍ପର୍କରେ ଶ୍ରୋତା ଏହା ଉଚ୍ଚାରଣ କରିଥାଏ, ସତେ ନା କ'ଣ ଏହି ଭାବ ଏଥିରୁ ପ୍ରକାଶିତ

**ମଅଲେନ୍** - *କଳା:* (ବି.) : ମାଇଁ

**ମଅଳା ଶଶୁର୍** - *ନୂ:* (ବି.) : ସ୍ତ୍ରୀଙ୍କ ମାମୁଁ, ସ୍ୱାମୀଙ୍କ ମାମୁଁ, ମଳାଶୁର

**ମଅଳା ଶିରାଦ** - *ରା:* (ବି.) : ମହାଳୟା ଶ୍ରାଦ୍ଧ

**ମଅସା** - *ନୂ:କଳା:* (ବି.) : ମା'ଙ୍କ ସାନ ଭଉଣୀଙ୍କ ସ୍ୱାମୀ, ମଉସା

**ମଇ** - *ଅନେ:* (ବି.) : ମାଟି ସମାନ କରିବା (କାଠରେ ନିର୍ମିତ) ଯନ୍ତ୍ର, ଯାହା ଜମିକୁ ସମତଳ କରେ, ଏକ ବୃକ୍ଷର ନାମ,

**ମଇଆ** - *ଅ:* (ବି.) : ପିଜୁଳି, ଆତ

**ମଇତ୍ର** - *ଅନେ:* (ବିଂ.) : ମିତ୍ର, ବନ୍ଧୁ

**ମଇଦାନ** - *ଅନେ:* (ବି.) : ପଡ଼ିଆ

**ମଇଦିଆ** - *ଅନେ:* (କ୍ରି.) : ବୁଣା ବା ରୁଆ ପର୍ବର ଜମିକୁ ସମତଳ କରିବା

**ମଇଧାନ** - *ନୂ:* (ବି.) : ମଧ୍ୟାହ୍ନ

**ମଇନ** - *ସୁ:* (ବି.) : ମହୁଘରାର ମହମ, ମହୁଫେଣାର ମହମପରି ବହଳିଆ ବସ୍ତୁ

**ମଇନା** - *ଗଜ:କୋ:ସୁ:କନ୍ଧ:* (ବି.) : ଶାରୀ ପକ୍ଷୀ, ବଣି

**ମଇପାଜ** - *ଖୋ:* (ବି.) : ଏକପ୍ରକାର ଧାନ

**ମଇର** - *ନବ:କୋ:* (ବି.) : ମୟୂର

**ମଇରା** - *ମା:* (ବି.) : ମହୁରୀ ବାଦ୍ୟ

**ମଇରି** - *ନବ:* (ବି.) : ମୋହରିର୍

**ମଇଲମ** - *ରା:ଗ:ପୁ:* (ବି.) : ମଲମ, ଘାରେ ଲଗାଇବା ଔଷଧ, ଉଲାଗିହେବା, ବେଶ ଉତ୍ତାରିବା

**ମଇଲାଣ** - *ଅ:* (ବି.) : ପଦା, ପାଇଖାନା

**ମଇଲିଆ** - *ବୌ:* (ବିଂ.) : ମଇଳା

**ମଇଳା** - *ନ:* (ବି.) : ଅପରିଷ୍କାର, ଅପରିଚ୍ଛନ୍ନ

**ମଇଶିଣାପଟି** - *କନ୍ଧ:* (ବି.) : ସପ୍ତମଶିଣା

**ମଇହା ବଳଦ** - *ଖୋ:କେନ୍ଦୁ:* (ବି.) ବେଙ୍ଗେଳା ପକାଇଲା ବେଳେ ମେରି ଖୁଣ୍ଟ ଚାରିପଟେ ପ୍ରଥମେ ଯୋଚା ବଳଦ, ମେରିଆ ବଳଦ

**ମଇଁ** - *କଳା:* (ବି.) : ଚହ୍ଲା, ଦହିରୁ ପ୍ରସ୍ତୁତ ମହି

**ମଇଁଷିଆ** - *ଗ:* (ବି.) : ଗନ୍ଧନଥିବା ଭୃଙ୍ଗସୁଙ୍ଗା ପତ୍ର

**ମଉଁଷିଆଳ** - *ନ:* (ବି.) : ମଉଁଷି ରକ୍ଷକ, ମଉଁଷି ଜଗୁଥିବା ବ୍ୟକ୍ତି

**ମଉକା** - *ନ:ଯା:ନୂ:ସ:* (ବି.) ସୁବିଧା, ସୁଯୋଗ, ଅବସର,

**ମଉଛବ** - *ଅନେ:* (ବି.) : ମହୋତ୍ସବ

**ମଉଛା** - *ଅ:* (ବି.) : ମହୋତ୍ସବ

**ମଉଚ୍ଛୁକ** - *ଚା:କେ:* (ବି.) : ମହୋତ୍ସବ, ଦେବଦେବୀଙ୍କ ପାଖେ ଅନ୍ନପ୍ରସାଦ ଭୋଗ ଓ ବଣ୍ଟନ

**ମଉଜ ମଜଲିସ୍** - *ସ:* (ବି.) ଆନନ୍ଦ ଦାୟକ, ହସଖେଳ

**ମଉଜୁ** - *ଓ:* (ବିଂ.) : ହାସ୍ୟ ସୃଷ୍ଟିକାରୀ

**ମଉଡ଼** - *ଅନେ:* (ବିଂ.) : ମୁକୁଟ, ମସ୍ତକ, ଚାଳଘରର ଶୀର୍ଷ, ମୁଖ୍ୟ, ପ୍ରମୁଖ

**ମଉଡ଼ଘର** - *ଚ:* (ବି.) : ବିଭାଘର ସରିବା ପରେ ବରକନ୍ୟା ବସି କଉଡି ଖେଳ

**ମଉଡ଼ମଣି** - *ଅନେ:* (ବି.) : ରାଜା

**ମଉଡ଼ମରା** - *ନ:କେ:* (ବିଂ.) ଛପର କରିବାବେଳେ ଶୀର୍ଷ ଚାଳ ବନ୍ଦ କରିବା (ଘର)

**ମଉଦଧି** - *ଅନେ:* (ବି.) : ମହୋଦଧି, ସମୁଦ୍ର

**ମଉନ** - *ଅନେ:* (ବି.) : ଚୁପ୍ ପଡ଼ିଯିବା, ମୌନ

**ମଉନମୁହାଁ** - *ଅନେ:* (ବି.) : କଥା କହୁ ନଥିବା

**ମଉରସି** - *ଭ:ଗଦ୍ୟ:* (ବି.ବିଂ.) : ନିଜର ଗୌରବ, ବଂଶାନୁ କ୍ରମିକ

**ମଉଲ** - *ଜଣ:ମା:* (ବି.) : ମହୁଲ

**ମଉଳା** - *ଅନେ:* (ବି.) : ମାମୁଁ

**ମଉଳାକୂଳ** - *ନ:* (ବି.) : ମାମୁଘର

**ମଉଳାଣି** - *କ:* (ବି.) : ମାଇଁ

**ମଉଳାମାନ୍ୟ** - *ଚ:* (ବି.) : ମାମୁଘରକୁ ପଠାଯାଉଥିବା ନିମନ୍ତ୍ରଣ

**ମଉଳାଶ୍ବଶୁର** - *ଅନେ:* (ବି.) : ମାମୁ ଶ୍ବଶୁର

**ମଉଳା ଶ୍ରାଦ୍ଧ** - *ଅନେ:* (ବି.) : ମହାଳୟା

**ମଉଳି** - *କ:ପଦ:* (ବି.) : ଶିଖର, ଶୀର୍ଷ

**ମଉଳିବା** - *ଅନେ:* (କ୍ରି.) : ଝାଉଁଳିବା

**ମଉଷଦି** - *ନ:* (ବି.) : ମହୌଷଧି, ଔଷଧ

**ମଉସା** - *ଅନେ:* (ବି.) : ମାଆଙ୍କ ଭଉଣୀର ସ୍ବାମୀ

**ମଉସାଶ୍ବଶୁର** - *ଅନେ:* (ବି.) : ସ୍ତ୍ରୀ ବା ସ୍ବାମୀର ମଉସା

**ମଉଁଆ** - *ଜଣ:* (ବି.) : ପିକୁଳି

**ମଏ** - *ଯା:ସ:* (ଅ.ବିଂ.) : ଏକତ୍ର ମିଶାଇ, ମୋଟରେ, ମୟ

**ମଏତର** - *ସୁବ:ସୁ:ନୂ:* (ବି.) : ମିତ, ମଇତ୍ର

**ମଏଦା** - *କଳା:* (ବି.) : ମଇଦା

**ମଏଧାନ** - *ଝା:କଳା:* (ବି.) : ମଧ୍ୟାହ୍ନ

**ମଏଧେ ମଏଧେ** - *ସ:* (ବି.) : ମଝିରେ ମଝିରେ

ମଏନମନସା - *ସୁ:* (ବି.) : ଯେତେ ଚାହିଁବ ସେତେ, ମନଇଚ୍ଛା

ମଏନା - *ଅନେ:* (ବି.) : ବଣି ଚଢେଇ, ମଇନା, ଶାରୀ

ମଏରୀ - *କଳା:* (ବି.) : ମହୁରୀ

ମଏଲ୍ - *କଳା:* (ବିଂ.) : ମଇଳା, ଅପରିଷ୍କାର

ମଏଲ୍ଚା - *ସ:* (ବି.ବିଂ.) : ନିଷ୍ପ୍ରଭ, ମଇଳା

ମଏଲଚିଆ - *ସୁବ:* (ବିଂ.) : ମଳିଚିଆ

ମଏଲନ୍ - *କଳା:* (ବିଂ.) ମଇଳା, ଅପରିଷ୍କାର

ମଏସ୍ନା - *ସ:ସୁ:* (ବି.) : ମସିଣା

ମଏଁଜ୍ - *କଳା:* (ବି.) : ମଂଜ, ସାର

ମଏଁଧାନ - *ସ:* (ବି.) : ମଧ୍ୟାହ୍ନ

ମକ୍ଚା - *ଅନେ:* (ବି.) : ମୋଡ଼ିହୋଇଯିବା, ଦଳିହୋଇଯିବା

ମକ୍ଡ଼ା - *କନ୍ଧ:ଦେ:* (ବି.) : ବୁଢିଆଣୀ

ମକ୍ଦମା - *ଅନେ:* (ବି.) : ମାମଲା

ମକ୍ଦମାବାଜ୍ - *ଅନେ:* (ବିଂ.) : ମାମଲାପ୍ରିୟ

ମକ୍ଦଲ୍ - *ବୌ:* (ବି.) : ଗେଣ୍ଡୁ ଫୁଲ

ମକ୍ଦିବା - *ବୌ:* (କ୍ରି.) : ଘଷିବା

ମକ୍ମକ୍ - *ଦେ:ନ:* (ଅ.ବି.) : ବେଙ୍ଗରଡ଼ାକ, ଯୌବନ ସମୟରେ ଅତି ଶୃଙ୍ଗାରପ୍ରିୟତା, କାମାତୁର

ମକ୍ମଲି - *କନ୍ଧ:ଦେ:* (ବି.) : ମଣ୍ଡାଫୁଲ, ଗେଣ୍ଡୁଫୁଲ

ମକ୍ରା - *ଚର:କଳା:କନ୍ଧ:ନୂ:* (ବି.) ବୁଢିଆଣୀ

ମକ୍ରା ଜାଲ୍ - *କଳା:* (ବି.) : ବୁଢିଆଣୀ ଜାଲ

ମକ୍ରିଆ - *ସୁ:* (ବି.) : ମାଙ୍କଡ଼ ନଚାଇବା ଲୋକ

ମକଚା ମକଚି - *ଅନେ:* (ବି.) ଦଳାଦଳି(ପାଦରେ), ହାତରେ ମଚ୍ଛିଦେବା

ମକଚିହେବା - *ଅନେ:* (କ୍ରି.) : ଢଖମହେବା

ମକଟ - *ପା:* (ବି.) : ମୁକୁଟ

ମକଦଲ୍ଲୀ - *ନ:* (ବି.) : ଛୋଟ ଗେଣ୍ଡୁ ଫୁଲ

ମକଦଳ - *ଅ:* (ବି.) : ଆତ, ବଢ଼ିଆଳ

ମକମଲ୍ଲୀ ଫୁଲ - *ଗ:* (ବି.) : ଗେଣ୍ଡୁଫୁଲ

ମକର - *ଅନେ:* (ବି.) : ବାନ୍ଧବୀ, ମକର ମାସ, ସଂପର୍କ ଜନିତ ସମ୍ବୋଧନ, ସଙ୍ଗାତ (ଝିଅ), ମଇତ୍ର, କୁମ୍ଭୀର, ମଗର

ମକର କାଙ୍କୁଆ - *ଗଜ:* (ବି.) : ଯେଉଁ କାଠଦ୍ୱାରା ଶଗଡ଼ର ଜୁଆଳିର ମଧ୍ୟସ୍ଥଳର ନିମ୍ନରେ ସଂଯୁକ୍ତ

ମକରତା ମୁହାଁ - *ଚର:* (ବିଂ.) : ଗାଳି ବିଶେଷ

ମକରଝିଆ - *ଭ:* (ବି.) : ମଉଳିଆ

ମକରା - *ଗ:ସୁ:ଗଜ:* (ବି.) : ଘରର ଦୁଲା ଉପରେ ଥିବା କାଠଖଣ୍ଡ, ବୁଢିଆଣୀ, ଆଡୁ କରିବା ପାଇଁ ଘରର କାନ୍ଥ

ମକରିନ୍ - *ଦେ:* (ବି.) : ସନ୍ନିପାତ ଜ୍ୱର

**ମକର୍ଲ୍ଲା** - *ସ:ସୁବ:* (ବି.) : ବୁଢିଆଣୀ

**ମକସିଆ** - *ଅ:* (ବିଂ.) : ମଇଳା

**ମକା** - *ଅନେ:* (ବି.) : ଧାନ୍ୟାଦିବର୍ଗର ଶସ୍ୟ ବିଶେଷ, ଏକ ପ୍ରକାର ଶସ୍ୟ

**ମକାଛଡା** - *କଣ:* (ବି.) ମକାଗଛ ଶୁଖିଗଲେ ତାକୁ ଓପାଡ଼ି ଦେଇ ସାରିବା ପରେ

**ମକାନ୍, ମକାମ୍** - *ଦେ:* (ବି.) : ଘର

**ମକାପିଠା** - *ନ:* (ବି.) : ମକାରେ ପ୍ରସ୍ତୁତ କାକରା

**ମକାର** - *କଳା:ନୂ:* (ବି.) : ମରୁଡି, ଦୁର୍ଭିକ୍ଷ, ଅକାଳ

**ମକାରୀ** - *ଅ:* (ବିଂ.) : ଅଭାବ

**ମକାଲିଆ** - *ଗ:* (ବି.) : ମକା ମଞ୍ଜିକୁ ଭାଜି ପ୍ରସ୍ତୁତ ଖଇ

**ମକାଲୁ** - *ରା:* (ବିଂ.) : ମସଲାଭଜା

**ମକାଷଣ୍ଢା** - *ଲ:* (ବି.) : ସିଧାସିଧା

**ମକୁ** - *ରା:* (ବି.) : ରୋଜ

**ମକୁଜ** - *ରା:* (ବି.) : ଜଖମ ହେବା

**ମକୁଟ** - *ଅନେ:* (ବି.) : ମୁକୁଟ, ମଉଡ

**ମକୁର** - *ଦେ:* (ବି.) : ଦର୍ପଣ, ମୁକୁର

**ମକୁଳ** - *ଦେ:* (ବି.) : ଫୁଲରକଢି, ମୁକୁନ୍ଦ

**ମକେ** - *ଅନେ:* (ସ.) : ମୋତେ

**ମଖ୍ନା** - *ନୂ:ସୁ:* (ବି.) : କଖାରୁ, ମାଖନ

**ମଖଡ୍** - *ଦେ:* (ବିଂ.) : ଦୁଷ୍ଟ

**ମଖଣ୍ଡି** - *ଅନେ:* (ବି.) : ଥଟ୍ଟାକଥା, ମହାକଥା

**ମଖମଲ** - *ସଂ:କୋ:ନ:* (ବିଂ.ବି.) : ଚିକ୍କଣ, ମସୃଣ, ଚକ୍‌ମକ୍, ସାଉଁଳିଆ, ମୁଲାୟମ କପଡ଼ା

**ମଖମଲି ପୋକ** - *ଅ:* (ବି.) : ସାଧବ ବୋହୂ

**ମଖମଲ୍ଲୀ** - *ଗଞ:* (ବି.) : ଚିତ୍ରିତ ଗେଣ୍ଡୁଫୁଲ

**ମଖର** - *ସୁ:ସ:ଝା:* (ବି.) : ହାଲକା ଗଛ, ଡ଼ାଳ, ଯାହା ଭାଂଗିଯାଏ, ମସ୍କା

**ମଖର୍ଡ଼ା** - *ସୁ:* (ବି.) : ମାଙ୍କଡ଼ ପଥର

**ମଖସା** - *ଗଞ:ଗ:* (ବି.) ରାଜପ୍ରଦତ୍ତ ଜାଗିର, ପୁରସ୍କାର ସ୍ୱରୂପ ପାଇବା ଜମି

**ମଖା** - *ଦେ:ଛ:* (ବି.ବିଂ.) ଅନ୍ୟଦ୍ୱାରା ମାଖିବା କାମ କରିବା, ତେଲମଖା, ମଖାଯାଇଥିବା

**ମଖିଚୋଷ** - *ଅନେ:* (ବିଂ.) : ଶୁଖିଆ, ଅତିକୃପଣ

**ମଖିଣ୍ଡି କଥା** - *ଲ:* (ବି.) : ଅସଲ କଥା

**ମଖେ** - *ନୂ:* (ସ.) : ମତେ

**ମଗଡ଼ିରି** - *ସୁ:* (ବି.) : ମାଗିବା ଲୋକ, ମାଗିଖିଆ

**ମଗଧା** - *ସୁ:* (ବି.) : ଗଉଡ଼ ଜାତି

**ମଗ୍‌ନା** - *ସ:ସୁବ:* (ବି.ବିଂ.) : ମାଗଣା

**ମଗ୍‌ମଗାବା** - *ସୁ:ନୂ:* (କ୍ରି.) : ବାସ ଚହଟିବା

**ମଗ୍‌ଶିର୍** - *କଳା:ନୂ:ସୁ:* (ବି.) : ମାର୍ଗଶୀର, ମଗୁଶୁର

**ମଗଜ** - *ଅନେ:* (ବି.) : ବୁଦ୍ଧି, ମସ୍ତିଷ୍କ

**ମଗଜଲଡୁ** - *ନ:ପୁ:* (ବି.) : ସୁଜି, ଘିଅ, ଚିନିର ମିଶ୍ରିତ ଲଡୁ।

**ମଗଜିଆ** - *ଯା:* (ବିଂ) : ଗର୍ବୀ, ଜିଦ୍‌ଖୋର

**ମଗଚିରି** - *ସ:* (ବିଂ.) : ମାଗିବା ଲୋକ

**ମଗଦ** - *ରା:* (ବିଂ.) : ଟାଣୁଆ

**ମଗଦୁରଭରି** - *ଗଦ୍ୟ:* (କ୍ରି.ବିଂ.) : ପାରୁପର୍ଯ୍ୟନ୍ତ, ଯେତେଦୂର ସମ୍ଭବ

**ମଗଧା** - *ଗ:ଦେ:* (ବି.) : ଗଉଡ଼ ଜାତି

**ମଗନି** - *ବର:* (ବି.) : ତାସର ଏକ ଖେଳ

**ମଗର** - *ଅନେ:* (ବି.) : ଗୋଡ଼ର ରୁପା ଅଳଙ୍କାର, ଗଭୀର ଜଳରେ ରହୁଥିବା କୁମ୍ଭୀର

**ମଗରମୁହାଁ** - *ନ:* (ବି.) : ହାତର ଅଳଙ୍କାର

**ମଗରା** - *ଦେ:ବା:ଗଦ୍ୟ:ଢେ:* (ବି.ବିଂ.) : ଅଳସୁଆ, ମାଟିର ନଳା, ଅଯଥାଯୁକ୍ତି କରୁଥିବା ବ୍ୟକ୍ତି, ଘର ମଥାନରେ ଲାଗୁଥିବା ଖପରଲି, ଗାଲେଇବା

**ମଗା** - *ଅନେ:* (ବିଂ.) ମାଗିକରି ଅଣାଯାଇଥିବା

**ମଗାମଗି, ମଗାଯଚା** - *ଅନେ:* (କ୍ରି.ବିଂ.) : ଭିକ୍ଷାକରି, ଅନ୍ୟକୁ ଅନୁରୋଧ କରି ପାଇବା

**ମଗାର** - *ଯୁ:* (ବି.) : ମଜୁରି, ପାଉଣା

**ମଗୁଦୁ** - *ରା:* (ବି.) : ସ୍ୱାମୀ

**ମଗୁର୍ ମାଛ** - *ମ:* (ବି.) : ମାଗୁର ମାଛ

**ମଘା** - *ଯୁ:ଯା:ଦେ:* (ବି.) : ମାଘମାସିଆ, ମୃତାହକାମ, ନକ୍ଷତ୍ରବିଶେଷ

**ମଘାପୋଡ଼ି** - *ଗଞ:* (ବି.) : ଦୋଳଉତ୍ସବର ପୂର୍ବଦିନ ଅଗିଜଳା

**ମକୁର** - *ଦେ:* (ବି.) : ଦର୍ପଣ

**ମଙ୍ଗ** - *ଗ:ନ:କୋ:* (ବି.) : ପ୍ରାନ୍ତ, ଶେଷ ନାସି, ଡଙ୍ଗାର ଆଗ ଓ ପଛ ଭାଗ, ପାର୍ଶ୍ୱ

**ମଙ୍ଗନ** - *ଅନେ:* (ବି.) : ବିବାହର ପୂର୍ବଦିବସ

**ମଙ୍ଗନ ସଜ** - *ନ:* (ବି.) : ବିବାହର ପୂର୍ବଦିନ ମାଙ୍ଗଳିକ କାର୍ଯ୍ୟ ପାଇଁ ଦେବୀ ମନ୍ଦିରକୁ ଦେବା ଜିନିଷ

**ମଙ୍ଗନ ହାଣ୍ଡି** - *ଅନେ:* (ବି.) : ବିବାହର ପୂର୍ବଦିନ ଶୁଭକାର୍ଯ୍ୟ ମନାସି ରୋଷଘରେ ଥାପିବା ହାଣ୍ଡି, ମଙ୍ଗଳାହାଣ୍ଡି, ଶୁଭହାଣ୍ଡି

**ମଙ୍ଗନା** - *ବୌ:* (ବିଂ.) : ମାଗଣା

**ମଙ୍ଗନିଆ** - *ଦେ:* (ବି.) : ଭିକ୍ଷୁକ

**ମଙ୍ଗବା** - *ମ:* (କ୍ରି.) : ରାଜିହେବା, ମଙ୍ଗିବା

**ମଙ୍ଗ ମୋଡ଼ିବା** - *ସଂ:* (ବି.) : ନାହିଁ କରିବା, କଥା ନ ରଖିବା

**ମଙ୍ଗର** - *ନବ:ନୂ:* (ବି.) : କୁମ୍ଭୀର, ମଗର

**ମଙ୍ଗରା** - *ଦେ:* (ବି.) : ମଲ୍ଲିଫୁଲ

**ମଙ୍ଗଲ୍** - *ନୂ:* (ବି.) : ମେଘରୁ ଉତ୍ପନ୍ନ ବିଜୁଳି

**ମଙ୍ଗଲଚଲବା** - *ସ:* (କ୍ରି.) : ବିଜୁଳି ମାରିବା

**ମଙ୍ଗଲା କୁଠି** - *ସ:* (ବି.) : ଦେବୀ ମଙ୍ଗଳାଙ୍କୁ ପୂଜା କରୁଥିବା ସ୍ଥାନ

**ମଙ୍ଗଳା ଭାର୍** - *ନୂ:* (ବି.) : ବିବାହରେ ନିଆ ଯାଉଥିବା ଭାର

**ମଙ୍ଗଳଧ୍ୱନି** - *ଅନେ:* (ବି.) : ହୁଳହୁଳି

**ମଙ୍ଗଳନ** - *କେନ୍ଦୁ:* (ବି.) : ଝିଅର ମଙ୍ଗୁଳା ଗଲାପରେ ଗାଁ ଲୋକେ ଝିଅକୁ ଡାକିନେଇ ନୂଆ ଶାଢି ପିନ୍ଧାନ୍ତି, ମିଠା ଖାଇବାକୁ ଦେଇଥାନ୍ତି

**ମଙ୍ଗଳା ଖୁଣ୍ଟ** - *ଦେ:* (ବି.) : ମଙ୍ଗଳାଙ୍କୁ ପୂଜା କରିବା ପାଇଁ ସ୍ଥାପିତ ଖୁଣ୍ଟ

**ମଙ୍ଗା** - *ଦେ:* (ବି.) : ଜନ୍ତୁ ଶିକାର ପାଇଁ କରାଯାଇଥିବା ଭାଡ଼ି

**ମଙ୍ଗାଶାଗ୍** - *ନୂ:* (ବି.) : ପକ୍ୱ ପିଆଜ ଶାଗ

**ମଙ୍ଗିବା** - *ଅନେ:* (କ୍ରି.) ରାଜିହେବା, ମାନିବା, ସ୍ୱୀକାର କରିବା

**ମଙ୍ଗୁଆ** - *ନୂ:* (ବି.) : ମୁଗବରା

**ମଙ୍ଗୁଆଳ** - *ଅନେ:* (ବି.) : ଯେ ମଙ୍ଗ ଧରେ, ମୁରବୀ, ମଙ୍ଗଧରା

**ମଙ୍ଗୁର** - *ଦେ:* (ବି.) : ଦର୍ପଣ

**ମଙ୍ଗୁଳିବା** - *ଅନେ:* (କ୍ରି.) : ବିବାହ ପୂର୍ବ ଦିନ ବର, କନ୍ୟାଙ୍କୁ ବିଧିମତେ ସ୍ନାନ କରାଇବା

**ମଙ୍ଗେଇବା** - *ଗ:* (କ୍ରି.) : ସମ୍ମତି କରାଇବା, ରାଜି କରେଇବା

**ମଚ୍‌କିବା** - *ଅନେ:* (କ୍ରି.) : ରକା ହେବା, ମୋଡ଼ିହୋଇଯିବା

**ମଚ୍‌ମଚ୍** - *ଢ:ଦେ:* (ଅ.) : ଶବ୍ଦକରି ଚାଲିବା, କୋମଳବସ୍ତୁ ଚୋବାଇବାର ଶବ୍ଦ

**ମଚ୍ ମଚ୍‌କିଆ** - *ନୂ:* (ବି.) : ମଧ୍ୟମ ଧରଣର, ମଝି ମଝିକିଆ

**ମଚଳା** - *ଅନେ:* (ବି.) ଏକପ୍ରକାର ଚର୍ମରୋଗ

**ମଚା** - *ଅନେ:* (ବି.) : ମଞ୍ଚା, ଭାଡ଼ି, ଯାହା ଉପରେ ଧାନ ଚାଉଳ ଆଦି ରଖାଯାଏ, ଘର ଭିତରେ ବିଭିନ୍ନ ଦ୍ରବ୍ୟ ରଖିବା ପାଇଁ କରାଯାଉଥିବା ଭାଡ଼ି, ଚାଳଘର ଭିତରେ କରାଯିବା ଭାଡ଼ି

**ମଚାନ** - *ସୁ:ଦେ:* (ବି.) : ଚାଷ ଜମିର ଭାଡ଼ି, ମଞ୍ଚା

**ମଚି** - *ନବ:* (ବି.) : ମାଛି

**ମଚିଆଳ** - *ଗ:* (ବି.) : ମଇଳା ଲୁଗା

**ମଚୁଆ** - *ଖୋ:ଦେ:କଳା:* (ବି.) : ଏକ ପ୍ରଜାତିର ମାଛ, ଖଟର ଦଣ୍ଡା, ଖଟର ଖୁରା

**ମଛଡ୍** - *ନୂ:* (ବି.) : ମଶା

**ମଛଡ଼ଦାନି** - *ଦେ:* (ବି.) : ମଶାରି

**ମଛା** - *ଗଦ୍ୟ:ରା:ଗ:* (ବି.) : ମଶା

**ମଛାଖିଆ** - *ଗ:* (ବି.) : ପାଦର ମାଛ ଆଖିଆ ନାମକ ଚର୍ମ ରୋଗ

**ମଛୁ** - *ଗ:* (ବି.) : ସୁନା ରୂପାର ଅବିକଳ କ୍ଷୁଦ୍ରାଂଶ

**ମଜ୍ଜୁର** - *ଅନେ:* (ବି.) : ମୂଲିଆ

**ମଜ୍‌ବୁତ୍** - *ଅନେ:* (ବିଂ.ବି.) : ଟାଣ, ଶକ୍ତ, ମଜଭୁତ୍

**ମଜ୍‌ରୀ** - *ଯୁବ:* (ବି.) : ପାରିଶ୍ରମିକ, ମଜୁରି

**ମଜ୍‌ଲିସ୍** - *ଅନେ:* (ବି.) : ଆମୋଦପ୍ରମୋଦ

**ମଜଗୁଲ** - *ଅନେ:* (ବି.) : ବିହ୍ୱଳ, ବିଭୋର

**ମଜରାହେବା** - *ନ:* (କ୍ରି.) : ପରିଶ୍ରମ କରି ଦେହ ବିନ୍ଧାବିନ୍ଧି ହେବା

**ମଜା** - *ଅନେ:* (ବି.) : ମାଜିବା, ଥଟ୍ଟା, ମଧ୍ୟଭାଗ, ଆମୋଦ, କୌତୁକ

**ମଜାକ୍** - *ଅନେ:* (ବି.) : ପରିହାସ

**ମଜାକିଆ** - *ଅନେ:* (ବିଂ.) : ମଉଜିଆ, କୌତୁକିଆ

**ମଜାଦାର୍** - *ଅନେ:* (ବିଂ.) : କୌତୁକପ୍ରଦ

**ମଜାଦେଖିବା** - *ଅନେ:* (କ୍ରି.) : କୌଣସି ବ୍ୟକ୍ତିର ଦୁର୍ଦ୍ଦଶା ଦେଖିବା

**ମଜି** - *କଳା:* (ବି.) : ମଂଜି

**ମଜିବା** - *ଅନେ:* (କ୍ରି.) : ବୁଡ଼ିବା, ମୁଗ୍ଧ ହେବା

**ମଜୁମଦାର** - *ଗଜ:* (ବି.) ରାଜସ୍ୱ ହିସାବରକ୍ଷକ ଉପାଧି

**ମଜୁରା** - *ଗଦ୍ୟ:ସଂ:* (ବି.) ଭରଣା, ପରିଶୋଧ, ଅସୁଲ କାଏମ

**ମଜୁରି** - *ଅନେ:* (ବି.) : ଦୈନିକ ପାରିଶ୍ରମିକ, ମୂଲିଆର ମୂଲ

**ମଜୁରିଆ** - *ଅନେ:* (ବିଂ.) : ମୂଲିଆ

**ମଜୁର୍** - *ଅନେ:* (ବି.) : ସାମାନ୍ୟ ଶ୍ରମଜୀବୀ

**ମଜ୍ଜି** - *ଢ:* (କ୍ରି.ବିଂ.) : ମଗ୍ନରହି, ମୁଗ୍ଧ, ଆନନ୍ଦରେ ବୁଡ଼ିଯିବା

**ମଝଲ୍** - *ଦେ:* (ବି.) : ମଝିଆଁ

**ମଝଲି** - *ଯୁବ:କଳା:* (ବିଂ.) : ମଝିରେ ଥିବା, ତିନିଟି ସନ୍ତାନ ମଝିରେ ଜନ୍ମିଥିବା ଝିଅ, ମଝିଆ

**ମଝା** - *ଅନେ:* (ବି.ଅ.) : ମଧ୍ୟଭାଗ, ମଧ୍ୟରେ, ମଝିଆଁ, ମଝିଅଂଶ

**ମଝାମଝି** - *ଦେ:* (ବିଂ.) : ଠିକ୍ ଅଧା

**ମଝାଲ** - *ଗ:* (ବି.) : ମଧ୍ୟସ୍ଥଳ

**ମଝାଲିଆ** - *ଗଦ୍ୟ:ନ:* (ବିଂ.) : ହୃଷ୍ଟପୁଷ୍ଟ, ମଝିମଝିଆ, ମଧ୍ୟମସ୍ଥଳୀ

**ମଝି** - *ଅନେ:* (ବି.) : ମଧ୍ୟସ୍ଥଳ

**ମଝିଆ** - *ଝା:* (ବି.) : ଯେଉଁମାନେ ମାଛ ମାରନ୍ତି ଡଂଗା ନିଅନ୍ତି, ଡଙ୍ଗୀ ବାହକ ମାଝି, ନାଉରିଆ

**ମଝିଆଁ** - *ଅନେ:* (ବିଂ.) : ମଧ୍ୟମ, ତିନୋଟି ସନ୍ତାନ ମଝିରେ ଜନ୍ମିଥିବା ପୁଅ, ମଝିଲା

**ମଝିଭାର** - *ବା:* (ବି.) : ଅଗଣା

**ମଝିମଝିକା** - *ଅନେ:* (ବି.ବିଂ.) : ମଧ୍ୟସ୍ଥ, ପ୍ରାୟ ମଝିରେ ଥିବା

**ମଝିଲା** - *ଅନେ:* (ବିଂ.) : ତଳ ଉପରର ମଝିରେ ଜନ୍ମିଥିବା (ପିଲା)

**ମଞ୍ଜୁର** - *କେନ୍ଦୁ:ମ:* (ବି.) : ମୟୂର

**ମଞ୍ଜୁର ଝାଲ** - *କନ:* (ବି.) : ମୟୂର ପୁଚ୍ଛ

**ମଞ୍ଜା** - *ଅନେ:* (ବି.) : ଭାଡ଼ି, ଆଟୁ

**ମଞ୍ଜାଇବା** - *ଦେ:* (କ୍ରି.) : ଚିହ୍ନାଇବା

**ମଞ୍ଜାଳିବା** - *ଅନେ:* (କ୍ରି.) ଘଷିବା, ଖୋସାମତ କରିବା

**ମଞ୍ଜି** - *ଅନେ:* (ବି.) : ବୃକ୍ଷାଦିର ସାରଭାଗ୍ୟ

**ମଞ୍ଜା** - *ଅନେ:* (ବି.) : ମାଇଛେଳି, କଦଳୀ ଗଛର ମଞ୍ଜ

**ମଞ୍ଜାତି** - *ଗ:* (ବି.) : ମଞ୍ଜୁଆତି ନାମକ ଗଛ

**ମଞ୍ଜି** - *ଅନେ:* (ବି.) : ବିହନ, ମାଛଡ଼ିମ୍ବ,

**ମଞ୍ଜିଆ** - *ଅନେ:* (ବିଂ.) : ବୀଜଯୁକ୍ତ, ମଂଜି ହୋଇଥିବା (ଫଳ)

**ମଞ୍ଜୁଆତି** - *ଅନେ:* (ବି.) : ହାତ ରକ୍ତବର୍ଣ୍ଣ କରାଇବା ଛୋଟ ଗଛର ପତ୍ର

**ମଞ୍ଜୁର୍** - *କନ୍ଧ:* (ବି.) : ମୟୂର

**ମଟ୍‌ଲା** - *ବୌ:* (ବି.) : ବାଲିଗିରିଡ଼ା ମାଛ

**ମଟକା** - *ନ:ଗ:ଗଦ୍ୟ:ଛ:* (ବିଂ.) : ଭଙ୍ଗପ୍ରବଣ, ଯେଉଁ କାଠ ସହଜରେ ଭାଙ୍ଗିଯାଏ, ମଞ୍ଜନଥିବା ଗଛ, ମସ୍‌କା

**ମଟର** - *ଅନେ:* (ବି.) : ଯନ୍ତ୍ରଚାଳିତ ଯାନ, ମଟର ଚଣା, ଏକ ପ୍ରକାର ଡାଲି ଜାତୀୟ ପରିବା

**ମଟାମ** - *ଗ:* (ବି.) : ରାଜମିସ୍ତ୍ରୀ ବ୍ୟବହାର କରିବା ଯନ୍ତ୍ର, ଯହିଁରେ ସମତଳ ମାପ କରାଯାଏ

**ମଟାମୁ** - *ରା:* (ବି.) : ଅଞ୍ଚଳ; ସମତଳ

**ମଟାଳ** - *ଅନେ:* (ବିଂ.) : ଚିକିଟା ଓ ସାମାନ୍ୟ ଟାଣ (ମାଟି)

**ମଟିଆ** - *ସୁ:* (ବିଂ.) : ଅଳସୁଆ, ଡେରି, ବିଳମ୍ବ

**ମଟୁ** - *ନବ:ମା:* (ବିଂ.) : ମୋଟା

**ମଠ** - *ଅନେ:* (ବି.) : ସେବା ପୂଜା ପାଇଁ ପ୍ରତିଷ୍ଠିତ ସ୍ଥଳୀ, ଆଶ୍ରମ, ବିଳମ୍ବ, ଡେରି

**ମଠ କରିବା** - *ନ:ଦେ:* (କ୍ରି.) : ଡେରିକରିବା, ବିଳମ୍ବକରିବା

**ମଠା** - *ଗଞ:ଦେ:ନ:* (ବି.) : ପୂଜା ପାର୍ବଣରେ ବ୍ୟବହୃତ ବସ୍ତ୍ର ବିଶେଷ, ଟସର, ଏକପ୍ରକାର ରେଶମୀ ଲୁଗା

**ମଠାଯଥା** - *ସ:* (ବି.) : ପାଟ ଯୋଡ଼, ଧୋତି ଓ ଗାମୁଛା

**ମଠିଆ** - *ଦେ:କଳା:ନୂ:* (ବି.) : ମାଠିଆ, କଳସ, କୁମ୍ଭ

**ମଠୁଆ** - *ଅନେ:* (ବିଂ.) : ଅଳସୁଆ, ବିଳମ୍ବକାରୀ, ମନ୍ଥର ଗତି, ଯିଏ ମଠ କରେ

**ମଠେଇବା** - *ମ:* (କ୍ରି.) : ବିଳମ୍ବ କରିବା

**ମଡିଝାଳ** - *ବ:* (ବି.) : ଏକ ପ୍ରକାର ଲଙ୍କାମରିଚ

**ମଡୁଆ** - *କଳା:* (ବି.) : ଛାମୁଣ୍ଡିଆ, ଚାନ୍ଦୁଆ

**ମଡେ** - *ବ:* (ଅ.) : ବୋଧହୁଏ

**ମଡେଇବା** - *ଅନେ:* (କ୍ରି.) : କ୍ଷେତରେ ଜଳ ସେଚନ କରାଇବା, ଆଚ୍ଛାଦିତ କରିବା

ମଡ଼ - *ସୁବ:* (ବି.) : ଭାତର ମଣ୍ଡ, ପେଜ

ମଡ଼୍‌ଡ଼ି - *ସ:* (ବି.) : ମରୁଡ଼ି

ମଡ଼୍‌ମଡ଼ିଆ - *ଅନେ:* (ବିଂ.) : ଦୁର୍ବଳ

ମଡ଼କ - *ଅନେ:* (ବି.) : ମହାମାରୀ, ବହୁ ସଂଖ୍ୟାରେ ଆକ୍ରାନ୍ତ ହୋଇ ମରିଯିବା

ମଡ଼ଙ୍ଗ - *ରା:* (ବି.) : ଶହେ କେଜି

ମଡ଼ଛି - *ନ:* (ବିଂ.) : ବାଞ୍ଝ, ବନ୍ଧ୍ୟା

ମଡ଼ମା - *ରା:* (ବି.) : ଆଣ୍ଠୁ

ମଡ଼ା - *ଅନେ:* (ବି.) : ମଣ୍ଡାପିଠା, ବେଙ୍ଗଳା ପକାଇ ଅମଳ, ମୁର୍ଦ୍ଦାର, ଶବ

ମଡ଼ାଇ - *ବ:* (କ୍ରି.) : ବେଂଗଳା ପକାଇ ଧାନ ଅମଳ କରିବା

ମଡ଼ାକଢା - *ଦେ:* (ବି.) : ଶବବାହକ

ମଡ଼ାଘର୍ - *ମା:* (ବି.) : ଅନ୍ତ୍ୟେଷ୍ଟି

ମଡ଼ାଛତି - *କଳା:* (ବି.) : ମଣ୍ଡାଛତୁ

ମଡ଼ାଣ - *ଅନେ:* (ବି.) : ଅଭ୍ୟାସ, ଗୋଟିଏ କାର୍ଯ୍ୟ ଅବିରତ ଭାବେ କରିବା

ମଡ଼ା ପକାଇବା - *କେନ୍ଦୁ:* (କ୍ରି.) : ଧାନ ଅମଳ କରିବା

ମଡ଼ାବା - *ନୂ:* (କ୍ରି.) : ଥୋଇବା

ମଡ଼ାମଡ଼ି - *ଦେ:* (କ୍ରି.ବିଂ.) ଦଳାଦଳି, ଚକଟାଚକଟି

ମଡ଼ାର - *ବୌ:* (ବି.) : ମଢ, ପଶୁ ଆଦିଙ୍କ ମୃତ ଦେହ

ମଡ଼ାସାଙ୍ଗିଆ - *ଅନେ:* (ବି.) : କୁଟୁମ୍ବଙ୍କ ବ୍ୟତୀତ ମଡାସହିତ ଯାଉଥିବା ଅନ୍ୟଲୋକ

ମଡ଼ି - *ସୁବ:* (ବି.) : ଡାଲିର ମଣ୍ଡ, ପିଠା ପାଇଁ ପ୍ରସ୍ତୁତ ମଣ୍ଡ

ମଡ଼ିଆ - *ନୂ:କଳା:ସୁ:* (ବି.) : ମାଣ୍ଡିଆ

ମଡ଼ିଆ କଁକରା - *ନୂ:* (ବି.) ଜଳରେ ରହୁଥିବା ସାଧାରଣ କଙ୍କଡ଼ା

ମଡ଼ିଛି - *ଗ:* (ବି.) : ଯେଉଁ ସ୍ତ୍ରୀର ସନ୍ତାନ ଜୀବିତ ରହେ ନାହିଁ

ମଡୁଆ - *ସୁବ:* (ବି.) : ମାଣ୍ଡିଆ, ତାଳପତ୍ରର ଛାମୁଣ୍ଡିଆ

ମଡ଼େଇବା - *କଳା:* (କ୍ରି.) ବେଂଗଳା ପକେଇବା, କୁଦେଇବା

ମଡ଼େନ୍ - *କଳା:* (ବି.) : ମଡ଼ାଣି, ବେଙ୍ଗଳା

ମଡ଼ୋଡ଼ାହାଲି - *କଳା:* (ବି.) : ଗଣ୍ଡ ପ୍ରଜାତିର ଲୋକେ ବିବାହର ପୂର୍ବପ୍ରସ୍ତୁତି ଅନୁସାରେ ଶାଳ ଓ ମହୁଲ ଦୁଇଟି ଗଛକୁ ଆଣି ବିବାହ ବେଦୀରେ ସ୍ଥାପନ କରିବା ରୀତି

ମଢ - *ଅନେ:* (ବି.) : ପଶୁର ମଲାଦେହ, ଶବ, ପେଜ, ତୋରାଣି

ମଢ଼ିଆଳ - *ଅ:ଦେ:* (ବି.) : ଧୋବା

ମଢାସଙ୍ଗି - *ଗ:* (ବି.) : ମଢ ପୋଡ଼ିବାକୁ ମଶାଣିକୁ ଯାଉଥିବା ଲୋକ

ମଢି - *ଗ:* (ବି.) : କୃପଣ, ମଇଳା

ମଢିଆ - *ଦେ:ଜ:ନ:* (ବି.ବିଂ.) : ବ୍ୟକ୍ତି ମୃତ୍ୟୁ ପୂର୍ବରୁ ଦାନ ଗ୍ରହଣ କରୁଥିବା ବ୍ରାହ୍ମଣ, କୁଡ଼ିଆ, ଦୁର୍ବଳଶରୀର

**ମଢୁ** - *ଯା:* (ବି.) : ମଢିଆ ବ୍ରାହ୍ମଣ

**ମଢୁଆ** - *ଅ:* (ବି.) : ଭଙ୍ଗାଭଙ୍ଗି ଖଡ଼ିକା

**ମଣ** - *ତ:ସଂ:ଜ:* (ବିଂ.ବି.) : ତାଲିମ, ଆୟତ୍ତ, ଅଭ୍ୟାସ, ମହଣ (୪୦ସେର)

**ମଣଦା** - *କେନ୍ଦୁ:ଖୋ:* (ବି.) : ଏକ ପ୍ରକାର ଘାସ

**ମଣସ** - *କୋ:* (ବି.) : ମଣିଷ

**ମଣାଇବା** - *ଅନେ:* (କ୍ରି.) ମନେଇବା, ଅଭ୍ୟସ୍ତ କରାଇବା, ରାଜି କରାଇବା

**ମଣିକ** - *ଅନେ:* (ବି.) : ଆଖଣ୍ଡଳମଣିଙ୍କ ଲୋକପ୍ରଚଳିତ ନାମ

**ମଣିଖମ୍ବ** - *ଜ:* (ବି.) : ପୋଖରୀ ମଝିଖୁଣ୍ଟି

**ମଣିବନ୍ଧ** - *ନ:* (ବି.) ଅଣ୍ଟାର ରୁପା ଅଳଙ୍କାର, ହାତ ପାପୁଲିର ମୂଳଗଣ୍ଠି

**ମଣିମା** - *ଅନେ:* (ବି.) : ପ୍ରଭୁ ଓ ରାଜାଙ୍କୁ ସମ୍ବୋଧନ

**ମଣ୍ଡୁ** - *ଖୋ:* (ବି.) : ଏକ ପ୍ରକାର ବାଲିଗରଡ଼ା ମାଛ

**ମଣ୍ଡ** - *ଦେ:ନ:ଗ:* (ବି.) : ଭାତର ପେଜ, ମଇଦାର ଘୋଳ, ଅଳ୍ପ ପାଣିଆ ମିଶ୍ରଣ

**ମଣ୍ଡଣି** - *ଜ:* (ବି.) : ମଣ୍ଡନକାର୍ଯ୍ୟ

**ମଣ୍ଡପ** - *ଅନେ:* (ବି.) : ପୂଜା ବା ଉତ୍ସବ ପାଇଁ ପ୍ରସ୍ତୁତ ମଞ୍ଚ

**ମଣ୍ଡମଣ୍ଡିଆ** - *ଅନେ:* (ବିଂ.) : ଖଦଡ଼ିଆ, ଅସମତଳ

**ମଣ୍ଡରି** - *କେନ୍ଦୁ:* (ବି) : କାଳୀପୂଜାର ତୃତୀୟ ଦିନରେ ୯ଟି ଧାନ ଶିଷାକୁ ବଳଦର ସିଂଗରେ ବାନ୍ଧନ୍ତି।

**ମଣ୍ଡଲ୍** - *କଳା:* (ବି.) : ଗୋଲ, ମଣ୍ଡଳ

**ମଣ୍ଡଲିବା** - *ସୁ:* (କ୍ରି.) : ବେଢା ବୁଲିବା

**ମଣ୍ଡଳ** - *ଅନେ:* (ବି.) : ବଡ଼ ଅଞ୍ଚଳର ଏକ ଅଂଶ, ପ୍ରାର୍ଥନା ଓ ସଂକୀର୍ତ୍ତନ ପାଇଁ ଲୋକଙ୍କ ମିଳନ

**ମଣ୍ଡଳ କାଟିବା** - *ଅନେ:* (କ୍ରି.) : ସାଧକ, ପୂଜକ, ପୂଜାର୍ଚ୍ଚନା ପାଇଁ ବିଧିମତେ ମୁରୁଜରେ ସ୍ଥାନ ନିର୍ଦ୍ଦିଷ୍ଟ କରିବା

**ମଣ୍ଡା** - *ଅନେ:* (ବି) : ସୁଜି, ଚାଉଳ ଚୂନାରେ ପ୍ରସ୍ତୁତ ପିଠା ଯା' ଭିତରେ ପୁର ଦିଆଯାଏ, ଅମୃତଭଣ୍ଡା

**ମଣ୍ଡାଇବା** - *ଅନେ:* (କ୍ରି.) : ସୁସଜ୍ଜିତ କରିବା

**ମଣ୍ଡାକାଇଁଚ** - *ଗ:* (ବି.) : ବଡ଼ ଜାତିର କାଇଁଚ

**ମଣ୍ଡାଫୁଲ** - *ଅନେ:* (ବି.) : ଗେଣ୍ଡୁଫୁଲ

**ମଣ୍ଡି** - *ଦେ:କୋ:* (ବି.ବିଂ.) : ଖଦଡ଼ାଅଂଶ, ଅଳସୁଆ

**ମଣ୍ଡିଆ** - *ଦେ:ନବ:* (ବିଂ.ବି.) : ଖଦଡ଼ିଆ, ମାଣ୍ଡିଆ

**ମଣ୍ଡିଦେବା** - *ଅନେ:* (କ୍ରି.) : ସଜାଇଦେବା

**ମଣ୍ଡୁଅ** - *ଦେ:* (ବି.) : ମଣ୍ଡପ

**ମଣ୍ଡୁରା** - *ନବ:* (ବି.) : ଲଣ୍ଡାମୁଣ୍ଡ

**ମଣ୍ଡେଇ** - *ଗଦ୍ୟ:କୋ:* (ବି.) : ଏକ ପ୍ରକାର ଜଙ୍ଗଲୀ ମୂଳ, ଆଦିବାସୀଙ୍କ ଠାକୁରାଣୀ ପର୍ବ ବିଶେଷ

**ମତ୍‌ଲପ୍** - *ଅନେ:* (ବି.) : ଅଭିପ୍ରାୟ, ମତଲବ

**ମତ୍‌ଲପି** - *ଅନେ:* (ବିଂ.) ସ୍ୱାର୍ଥପର, ମତଲବୀ

**ମତଉ** - *କନ୍ଧ:* (ବିଂ.) : ଲୋକଂକୁ ଭୁଲାଣିଆ କଥା କହି ନିଜପକ୍ଷକୁ ଆକର୍ଷିତ କରୁଥିବା (ବ୍ୟକ୍ତି)

**ମତଙ୍ଗ** - *ଗଢ଼:* (ବି.) : ଶସ୍ୟାଦିର ଏକପ୍ରକାର ମାପ

**ମତପତ୍ର** - *ସଂ:* (ବି.) : ଭୋଟ କାଗଜ

**ମତଲୁ** - *ସୁ:* (ବିଂ.) ମତ୍‌ଲବୀ, ଉଦ୍ଦେଶ୍ୟମୂଳକ ଭାବେ କାର୍ଯ୍ୟ କରୁଥିବା

**ମତା** - *ଦେ:କନ୍ଧ:କ:* (ବି.କ୍ରି.) : ଉନ୍ମତ୍ତ ହେବା, ମତେଇବା ପାଇଁ ଆଦେଶଦେବା ବା କହିବା

**ମତାପାରା** - *ପୁ:* (ବି.) : ପୋଷା ମାନିଥିବା ଏକପ୍ରକାର ପାରା। ଏହି ପାରା ଅନ୍ୟ ପାରାଙ୍କୁ ଡାକି ଆଣେ

**ମତାମ୍** - *ଗଢ଼:* (ଅ.) : ସର୍ବମୋଟ

**ମତି** - *ଅନେ:* (ବି.) : ଏକ ପ୍ରକାର ଧାନ, ମନର କ୍ରିୟା

**ମତିଗତି** - *ଅନେ:* (ବି.) : ରଙ୍ଗଢଙ୍ଗ, ମନର ଉଦ୍ଦେଶ୍ୟ

**ମତିଭ୍ରମ** - *ଅନେ:* (କ୍ରି.) : କୁସଙ୍ଗରେ ପଡ଼ି ଖରାପ ବାଟରେ ଯିବା, ଭୁଲ୍ ନିଷ୍ପତ୍ତି ନେବା

**ମତୁଆଲ** - *ଅନେ:* (ବିଂ.ବି.) : ନିଶାଗ୍ରସ୍ତ, ନିଶାଖୋର, ମଦୁଆ

**ମତେଇବା** - *କନ୍ଧ:ନ:* (କ୍ରି.) : ଲୋକଂକୁ ନିଜପକ୍ଷକୁ ଆଣିବା ପାଇଁ ଅନୁପ୍ରାଣିତ କରିବା ଓ ବୁଝେଇବା, କୁଶିକ୍ଷାଦେବା

**ମତେଇ ହେବା** - *ସ:* (କ୍ରି.) : ଏକାଠି ଜମା ହେବା

**ମତ୍ତ** - *ମତୁଆଲା* (ବି.) : ଗର୍ବ, ଅମାନିଆ ଭାବ

**ମତ୍ତାଳ** - *କ:* (ବିଂ.) : ଉନ୍ମତ୍ତ

**ମଥା** - *ଅନେ:* (ବି.) ମସ୍ତକ, ମୁଣ୍ଡ, ଶେଷଭାଗ, ଅଗ୍ରଭାଗ, ବୁଦ୍ଧି

**ମଥାଚୂଲୀ** - *ଦେ୍ୟ:* (ବି.) : ଚାଳ ଘରର ଶିଖର

**ମଥାଡହି** - *ଅ:* (ବି.) : ତେଲ

**ମଥାନ** - *ଅନେ:* (ବି.) : ଘରଚାଳର ଶୀର୍ଷ ଭାଗ

**ମଥାନ ମାରିବା** - *ସଂ:* (କ୍ରି.) : ଚାଳଘରର ଶୀର୍ଷ ସ୍ଥାନକୁ ଲମ୍ବା ନଡା ଓ ବତା ବାନ୍ଧି ବନ୍ଦ କରିବା

**ମଥାପି** - *ଗଢ଼:* (ବି.) : ବାଣ

**ମଥାମଣି** - *ଅନେ:* (ବି.) ମଥାରେ ସ୍ତ୍ରୀଲୋକମାନେ ପିନ୍ଧୁଥିବା ଏକ ଅଳଙ୍କାର

**ମଥିବା** - *ସୁ:* (କ୍ରି.) : ମଛିବା, ଖୁସାମତ କରିବା

**ମଥେଇ** - *ନ:* (ବି.) : ତେଲ(ରାଶି ତେଲ)

**ମଦ** - *ଅନେ:* (ବି.) : ଚାଉଳ କିମ୍ବା ମହୁଲରୁ ଅବା ପୁରୁଣା ଗୁଡ଼ରୁ ପ୍ରସ୍ତୁତ ନିଶା, ନିଶାପାନୀୟ

**ମଦଖଟି** - *ଅନେ:* (ବି.) ଏକତ୍ର ମଦ ପିଉଥିବା ସ୍ଥାନ

**ମଦଦ୍** - *ଦେ:* (ବି.) : ସାହାଯ୍ୟ

**ମଦତି** - *ଯା:* (ବି.) : ମଦ ନିଶା ସକ୍ତ

**ମଦଥିପାଣି** - *କନ୍ଧ:* (ବି.) : ମଦ ଅର୍ପଣ

**ମଦରଙ୍ଗା** - *ଅନେ:* (ବି.) : ଶାଗ ବିଶେଷ

**ମଦାଙ୍ଗ** - *ଦେ:ଗ:ସ:ନୂ:* (ବି.) ମଲାଙ୍ଗ, ଗୋଟିଏ ଗଛ ଶାଖାରେ ଜନ୍ମିଥିବା ଅନ୍ୟଗଛ, ପରାଶୟୀ ଭାବେ ଉଠିଥିବା ଗଛ

**ମଦାନି** - *ବୌ:* (ବିଂ.) : ମଦ ପିଉଥିବା ମାଇପି

**ମଦୁକ** - *ଚ:* (ବି.) : ଆୟୁର୍ବେଦୀୟ ମୋଦକ

**ମଦେ** - *କଳା:* (ବି.) : ଅଠାକ୍ଷରଣ ହେଉଥିବା ଜଂଗଲି ବଡ଼ ବୃକ୍ଷ ବିଶେଷ

**ମଧାନିଆ** - *ଚ:* (ବି.) : ଉପର ଓଳି, ମଧ୍ୟାହ୍ନ

**ମଧୁ ଚନ୍ଦ୍ରିକା** - *ସଂ:* (ବି.) : ଉତ୍ତମ ସଂପର୍କ

**ମଧୁପୁରୀ** - *କେନ୍ଦୁ:* (ବି.) : ହଳଦିଆ ରଙ୍ଗର ସ୍ୱଳ୍ପମିଆଦି ଧାନ

**ମଧୁମତୀ** - *ଚ:* (ବି.) : ନାରୀ କଣ୍ଠର ଅଳଙ୍କାର ବିଶେଷ

**ମଧୁମେହ** - *ଅନେ:* (ବି.) ପ୍ରମେହ, ରୋଗବିଶେଷ

**ମଧୁରା** - *ଦେ:* (ବି.) : ଗୁଡ଼ପରି ମିଠା

**ମଧୁରି** - *ପୁ:* (ବି.) : ମାଇଚିଆ, ଏକପ୍ରକାର ମସଲା, ପାନମହୁରି

**ମଧୁରିଆ** - *ଅନେ:* (ବିଂ.) : ଈଷତ୍ ମିଠା

**ମଧୁରିମା** - *ଅନେ:* (ବି.) : ସୌନ୍ଦର୍ଯ୍ୟ

**ମଧୁରୁ** - *ନବ:କୋ:କଳା:* (ବି.ବିଂ.) : ମିଠା, ମଧୁର

**ମଧେଇବା** - *ପୁ:* (କ୍ରି.) : ଧୀମେଇବା

**ମଧ୍ୟସ୍ଥି** - *ଅନେ:* (ବି.) : ଉଭୟପକ୍ଷ ମଧ୍ୟରେ ସଂଯୋଗକାରୀ, ଯିଏ ଉଭୟ ପକ୍ଷରୁ ସୂତ୍ରଧର ଭଳି କାର୍ଯ୍ୟକରେ

**ମଧ୍ୟାହ୍ନ** - *ଅନେ:* (ବି.) : ଦିନର ମଝି ସମୟ

**ମନ୍‌କରିବା** - *କୋ:* (କ୍ରି.) : ଭଲପାଇବା, ଇଚ୍ଛା କରିବା

**ମନ୍ କର୍‌ବା** - *କଳା:* (କ୍ରି.) : ପସନ୍ଦ ହେବା

**ମନ୍‌କୁ** - *କୋ:* (ବି.) ଆପେଆପେ, ଆପଣାଛାଏଁ

**ମନ୍‌କେ ଆଏବା** - *ସ:* (କ୍ରି.) : ପସନ୍ଦ କରିବା

**ମନ୍‌ଘଚା** - *ସ:* (ବି.) : ଅନାଗ୍ରହ ଭାବ

**ମନ୍‌ଧରା** - *ଅ:ବୌ:ସୁ:* (କ୍ରି.) : ଅନ୍ୟକୁ ଧରି ସନ୍ତୋଷ କରିବା, ମନ ଧରିବା, ଖୋସାମତ୍

**ମନ୍ ପାଇ** - *ଚୌ.* (ବିଂ.) : ପସନ୍ଦ କରି

**ମନ୍‌ମର୍‌ଜି** - *ଅନେ.* (ବି.) : ସ୍ୱଇଚ୍ଛା, ମନମାନି

**ମନ୍‌ମାନି** - *ଚୌ.* (ବି.) : ମନ ଇଚ୍ଛା, ସ୍ୱେଚ୍ଛାଚାର

**ମନ୍‌ମାନିକ** - *ସୁ.* (ବି.) : ମନ ଅନୁସାରେ, ଇଚ୍ଛା ଅନୁସାରେ

**ମନ୍‌ମାଫିକ୍** - *ଦେ.ଚୌ.* (ବିଂ.) : ମନ୍‌କୁ ଚାହିଁ, ମନ ପସନ୍ଦ

**ମନ୍‌ମୁଟିଆ** - *ଚୌ.* (ବିଂ.) : ଅନାଗ୍ରହଭାବ

**ମନ୍‌ମୋଟିଆ** - *ଅନେ.* (ବିଂ.) : ସ୍ୱେଚ୍ଛାଚାରୀ

**ମନ୍‌ହରା** - *ସୁ.* (ବିଂ.) : ମନ ହରଣ କରିବା

**ମନଇଚ୍ଛା** - *ଅନେ.* (ବି.) : ମନମୁତାବକ

**ମନଉଡ଼ା** - *ଦେ.* (ବି.) : ଅସ୍ଥିରମନ

**ମନକଳିବା** - *ଦେ.* (କ୍ରି.) ଅନ୍ୟର ମନୋଭାବ ବୁଝିବା

**ମନକାଣ୍ଡି** - *କୋ.* (ବି.) : ନିଜ ଇଚ୍ଛା ହେଲେ ହିଁ କାର୍ଯ୍ୟ କରୁଥିବା ବ୍ୟକ୍ତି

**ମନକାଣ୍ଡିଆ** - *ଗ.* (ବିଂ.) : ମନୁଆ

**ମନକୁ** - *ଅନେ.* (କ୍ରି.ବିଂ.) : ଆପେଆପେ, ଆପଣାଛାଏଁ

**ମନକୁ ପାଇବା** - *ଅନେ.* (କ୍ରି.) : ପସନ୍ଦ ହେବା, ବିଶ୍ୱାସକୁ ଆଣିବା

**ମନକୁ ବାଧିବା** - *ଅନେ.* (କ୍ରି.) : ବ୍ୟଥାଘାତ ହେବା

**ମନକୁ ମନ** - *ଅନେ.* (କ୍ରି.ବିଂ.) : ନିଜ ଇଚ୍ଛାରେ

**ମନକେ ପାଏବାର୍‌ଟା** - *ନୂ.* (ବି.) : ମନକୁ ଛୁଇଁବା

**ମନକେ ମନ୍** - *ସ.* (ବି.) : ଇଚ୍ଛା ଅନୁସାରେ

**ମନଖଟ୍‌କା** - *ସଂ.* (ବି.) : ମନ ଖରାପ ହେବା

**ମନଖାଇ** - *ଚୌ.* (ବି.) : ଇଚ୍ଛାନୁସାରେ କାମ କରୁଥିବା ସ୍ତ୍ରୀଲୋକ

**ମନଗଢା** - *ଅନେ.* (ବିଂ.) : କାଳ୍ପନିକ, କଳ୍ପନା ପ୍ରସୂତ

**ମନଘେନିବା** - *ଅନେ.* (କ୍ରି.) ରାଜି କରାଇବା

**ମନତନ** - *ଚୌ.* (କ୍ରି.ବିଂ.) : ମାନସିକ ଓ ଶାରୀରିକ ଭାବେ

**ମନଧରା** - *କଳା.ସୁବ.* (ବି.) : ବାରଂବାର ଅନୁରୋଧ, କାମ ହାସଲ ପାଇଁ ଖୋସାମତ କରିବା

**ମନପୁଆପୁଇ** - *ଚୌ.* (ବିଂ.) : ଭଲ ପାଇ

**ମନବିଢ଼ିବା** - *ଦେ.* (କ୍ରି.) ଅନ୍ୟର ମନୋଭାବ ପରୀକ୍ଷା

**ମନଭଙ୍ଗା** - *ଚୌ.* (ବିଂ.) : ମନ୍‌କୁ କଷ୍ଟ ଦେବା

**ମନଭୋଗ** - *ନୂ.ଗ.* (ବି.) : ମହନ ଭୋଗ, ଅଟାରେ ତିଆରି ଲଡୁ, ସୁଜି ତିଆରି ହାଲୁଆ

**ମନମନ୍‌ସା** - *ସୁବ.* (ବିଂ.) : ମନଇଚ୍ଛା, ମନ ମୁତାବକ

**ମନମାନିକର୍‌ବା** - *ସ.* (କ୍ରି.) : ନିଜ ମନରେ ନିଜେ କରିବା

**ମନଶିଳା** - *ଗ:* (ବି.) ଗନ୍ଧକତୁଲ୍ୟ ବିସ୍ଫୋରକ ପଦାର୍ଥ

**ମନସଦ** - *କୋ:ଗ:ରା:* (ବି.) : ଏଣୁତେଣୁ ଟକଲା ଖାଦ୍ୟ, ସୁସ୍ୱାଦୁ ମନଖାଦ୍ୟ, ମନକୁ ଆନନ୍ଦ ଦେବାଭଳି ଖାଦ୍ୟ

**ମନସରି** - *ଢ:* (ବି.) : ମନଭରି

**ମନସ୍ଥ** - *ନ:* (ବିଂ.) : ମନରେ ଇଚ୍ଛା କରିଥିବା

**ମନହାରୀ** - *ଯା:* (ବି.) : ମନହରଣକାରୀ

**ମନା** - *ନ:* (ବି.) : ବାରଣ, ନିଷେଧ

**ମନାଇବା** - *ଦେ:ନ:* (କ୍ରି.) : ରାଜି କରାଇବା, ମନକୁ ପାଇବା ଭଳି କଥା କହି ନିଜ ଆଡକୁ ଆଣିବା

**ମନାକେ** - *ଦେ:* (ବି.) : ଥରେ

**ମନାଗୁନା** - *ନୂ:* (ବି.) : ସତ୍କାର କରିବା

**ମନାଘିନା** - *ସୁବ:* (କ୍ରି.) ଭାବରଖିବା, ମାନିବା ମିଳିମିଶି ଚଳିବା

**ମନାଣ** - *ଗଦ୍ୟ:* (ବିଂ.) : ମନକୁ ପାଇଲା ପରି

**ମନାନ୍ତର** - *ନ:* (ବି.) : କଳି, ମନ ଅମେଳ

**ମନାପଲି** - *ଦେ:* (ବି.) ଏକ୍‌ଚାଟିଆ ଅଧିକାର

**ମନାସ ଚମ୍ପା** - *ଗଜ:* (ବି.) : ଚିନିଚଂପା ଫୁଲ

**ମନାସିବା** - *ନ:ଦେ:* (କ୍ରି.) : ମନ ମଧ୍ୟରେ ଠାକୁରଙ୍କୁ ସମର୍ପଣ କରିବା, ଯାଚିବା, ଭାବିବା

**ମନିଷ** - *ଢ:ଦେ:* (ବି.) : ମନୁଷ୍ୟ, ଲୋକ

**ମନୁଆଁ** - *ନ:ଦେ:* (ବିଂ.) : ମନଇଚ୍ଛା କାମ କରୁଥିବା(ବ୍ୟକ୍ତି), ଏକ୍‌ବାଗିଆ

**ମନୁହରି** - *ଗୀ:* (ବି.) : ମନୋହରୀ

**ମନେଇବା** - *ଗୀ:ଢେ:ନ:* (କ୍ରି.) : ବୁଝେଇବା, କବାଟ ବା ଝରକାକୁ ବନ୍ଧରେ ଲଗାଇବା ପୂର୍ବରୁ କେତେ ଅଂଶ ବଳକା ହେଉଛି ତାହା ଜାଣିବାକୁ ଚେଷ୍ଟା କରିବା, ରାଜିକରେଇବା, ମନକୁ ପାଇବା ଭଳି କଥା କହି ନିଜ ଆଡକୁ ଆଣିବା

**ମନେକରିବା** - *ଦେ:* (କ୍ରି.) : ସ୍ମରଣ କରିବା, ଅନୁମାନ କରିବା

**ମନେମନ୍** - *ଦେ:* (କ୍ରି.ବିଂ.) : ମନେମନେ

**ମନେମନେ** - *ଅନେ:* (କ୍ରି.ବିଂ.) ଅପ୍ରକାଶ୍ୟରେ

**ମନୋହରା** - *କଳା:* (ବି.) : ସୁସ୍ୱାଦୁ ଓ ସୁବାସଯୁକ୍ତ ଦେଶୀ ଆମ୍ବ

**ମନୋହାରୀ** - *ଅନେ:* (ବିଂ.) : ମନକୁ ଆକର୍ଷଣ କରୁଥିବା, ମନକୁ ହରଣ କରୁଥିବା

**ମନ୍ତରସେନି** - *ଗଜ:* (ବି.) : ଧାଈ, ସେବିକା

**ମନ୍ତୁ** - *ଦେ:* (ବି.) : ଅପରାଧ

**ମନ୍ତୁରା** - *କୋ:ଦେ:* (ବିଂ.) ମନ୍ତ୍ରିତ ହୋଇଥିବା, ଅଭିମନ୍ତ୍ରିତ

**ମନ୍ତ୍ରଘିନିବା** - *କୋ:* (କ୍ରି.) : ଦୀକ୍ଷା ଗ୍ରହଣ କରିବା

**ମନ୍ତ୍ରସ୍ୟାଣି** - *ଗ:* (ବି.) : ଧାଇ

**ମନ୍ତ୍ରୀ** - *ଅନେ:* (ବି.) : ବାରିକ ସାଙ୍ଗା, ରାଜକର୍ମଚାରୀ, ସରକାରଙ୍କ ବିଭାଗ ଦାୟିତ୍ୱରେ ଥିବା ନେତା

**ମନ୍ଥା** - *ରା:* (ବି.) : ଅମଳ ପ୍ରକ୍ରିୟା, ଚକଟିବା

**ମନ୍ଥିବା** - *ଗୌ:ନବ:ଗ:* (କ୍ରି.) : ଖୋସାମତ କରିବା. ମଳିବା, ଅମଳ କରିବା

**ମନ୍ଦବୃଷ୍ଟି** - *[illegible]* (ବି.) : ସାମାନ୍ୟ ବର୍ଷା

**ମନ୍ଦରମୁଲି** - *ମ:* (ବି.) : ମନ୍ଦାର(ଫୁଲ)

**ମନ୍ଦରା** - *ଦେ:* (ବି.) : ଗିନି, କୁବୁଜି

**ମନ୍ଦା** - *ଅନେ:* (ବି.) : କଖାରୁ, ପୋଟଳ, ଜହ୍ନି, ଇତ୍ୟାଦି ଗଛଲତା ମୂଳରେ ବୃତ୍ତାକାର କରି ପାଣିକିଆ ଜାଗା, ଦଳ, ଗାତ ବା ପଟାଳି, ପଲ, ଗଛ ଲଗାଇବା ସ୍ଥାନ

**ମନ୍ଦାମନ୍ଦା** - *ନ:* (ବିଂ.) ମେଞ୍ଚାମେଞ୍ଚା, ଦଳଦଳ

**ମନ୍ଦାର** - *ମ:* (ବି.) : ଆତ

**ମନ୍ଦାରୁ** - *ଦେ:* (ବି.) : ମନ୍ଦାରଫୁଲ

**ମନ୍ଦି** - *କଳା:* (ବି.) : ମଧ୍ୟଭାଗ, ମଝି

**ମନ୍ଦିକ** - *ଦେ:* (ବି.) : ଅନ୍ଧ

**ମନ୍ଦିଣା** - *ନ:* (ବି.) : ମସିଣା (ବେଣା ଘାସରେ ନିର୍ମିତ)

**ମନ୍ଦିରା** - *କେ:* (ବି.) : ବାଦ୍ୟଯନ୍ତ୍ର, ଗିନି, କୁବୁଜି

**ମନ୍ଧେ** - *ଦେ:ରା:ନ:ଗ:* (ବି.ବିଂ.) : ଧୀରେ, ମୁନ୍ଦେ, ଆଞ୍ଜୁଳାଏ, ଅଳ୍ପପରିମାଣର, ଚୋପାଏ

**ମନ୍ଧୋଳ** - *କ:* (ବିଂ.) : ଚିନ୍ତିତ

**ମଫ** - *ଗୌ:ନବ:କୋ:* (ବିଂ.) : ମଫସଲିଆ, ଗାଉଁଲୀ,

**ମଫସଲ** - *ଅନେ:* (ବି.) . ଗାଁ ଅଞ୍ଚଳ

**ମଫସଲିଆ** - *ଅନେ:* (ବିଂ.) : ମଫସଲବାସୀ ଗାଁରେ ବାସକରୁଥିବା (ଲୋକ), ଗ୍ରାମ୍ୟ ଚିନ୍ତା ଚେତନାବିଶିଷ୍ଟ, ଗାଉଁଲିଆ, ଗାଉଁଲି ଲୋକ

**ମଫା** - *ସୁବ:* (ବି.) : ମାହାଳିଆ

**ମମ୍ବତି** - *ସୁ:ମା:* (ବି.) : ମହମବତୀ

**ମ, ମଅ** - *ଦେ:ସୁ:* (ଅ.) : ବିସ୍ମୟ ବା ଆଶ୍ଚର୍ଯ୍ୟ ବ୍ୟଂଜକ, ବିସ୍ମୟ ସୂଚକ

**ମମା** - *ଗଜ:* (ବି.) : ସ୍ତନ

**ମୟୁର** - *କ:କଳା:* (ବି.) : ମୟୁର

**ମୟା** - *ସୁ:ବର:* (ବି.) : ପିଜୁଳି

**ମୟୂରକଣ୍ଠା** - *ନ:ଖୋ:* (ବି.) : ଏକ ଧାନ (ଶସ୍ୟର ନାମ)

**ମୟୂରଗିରା** - *ଗ:* (ବି.ଗଜ:) ତୁତିଆ, ଚର୍ମରୋଗ ଔଷଧ ବିଶେଷ, ବଣିଆଙ୍କ ଦ୍ୱାରା ବ୍ୟବହୃତ ଏକ ପଦାର୍ଥ

**ମୟୂରପଙ୍ଖା** - *ଅନେ:* (ବି.) : ମୟୂରପୁଚ୍ଛ ନିର୍ମିତ ପଂଖା

**ମରକଖିଆ** - *ଗ:* (ବି.) : ଗାଳିବିଶେଷ

**ମରକଟ** - *ନଚ:ମା:* (ବି.) : ମର୍କଟ, ମାଙ୍କଡ଼

**ମରକଟିଆ** - *ସୁବ:* (ବିଂ.) : ମନ ମରା ଲୋକ, ଅପରିଷ୍କାର କିମ୍ବା କୁତ୍ସିତ ଚେହେରାର ଲୋକ

**ମରଘଟି** - *ସୁ:* (ବି.) : ଶବପୋତା ସ୍ଥାନ, ମଶାଣି

**ମରଜି** - *ସଂ:* (ବି.) : ରୁଚି, ଇଚ୍ଛା

**ମରଡ଼** - *ଗ:ଦେ:* (ବି.) : ଅମଳ ପୂର୍ବରୁ ମରିଥିବା ଧାନଗଛ, ମହାମାରୀ

**ମରଡ଼ା** - *ଖୋ:ଦେ:* (ବି.) : ଏକ ପ୍ରଜାତିର ଚିଙ୍ଗୁଡ଼ି, କ୍ଷୀଣ ଦେହ ବିଶିଷ୍ଟ

**ମରଣବାଡ଼ିଆ** - *ଗ:* (ବିଂ.) : ଏକପ୍ରକାର ଗାଳି, ହଇଜାରେ ମରଣ

**ମରତେଲ୍** - *ସ:* (ଅ.) : ବହୁତ ପରିଶ୍ରମ

**ମରଦ** - *ଅନେ:* (ବି.) : ପୁଅପିଲା, ପୁରୁଷ

**ମରଦିବା** - *ସୁ:* (କ୍ରି.) : ଚକଟିବା, ମର୍ଦ୍ଦ ନ କରିବା

**ମରନ୍** - *ବୌ:ସ:* (ବି.) : ମରଣ

**ମରନ ମୁଛନ୍** - *ସ:* (ବି.) : ମୁମୂର୍ଷୁ ଅବସ୍ଥା

**ମରନ୍ତା** - *ନୂ:* (ବି.) : ମଧ୍ୟମ ଧରଣର ହାଣ୍ଡି

**ମରମ** - *ଦେ:* (ବି.) : ତାତ୍ପର୍ଯ୍ୟ, ହୃଦୟ, ମର୍ମ

**ମରା** - *ନ:କନ୍ଧା:ନଚ:ଦେ:* (ବି.) : ମଡ଼ା, ଶବ, ମଢ, ମୁର୍ଦ୍ଦାର

**ମରାଖାଇ** - *ଅ:ନ:* (ବି.) : ଶ୍ମଶାନ

**ମରାଚଣ୍ଡିଆ** - *କେ:* (ବି.) : ଶବବାହକ, ମଡ଼ାଚଣ୍ଡିଆ

**ମରାଡ଼ି** - *ସୁ:* (ବି.) : ମାରୁଆଡ଼ି

**ମରାନି** - *କନ୍ଧା:* (ବି.) : ମାରିବା ପ୍ରକ୍ରିୟା, ଲୋକଖେଳରେ ଖେଳାଳିଙ୍କୁ ବା ଖେଳର ଉପାଦାନକୁ କୌଶଳ କ୍ରମେ ଅସିଦ୍ଧ କରିବା

**ମରାପୁଡ଼ା** - *କଣ:* (ବି.) : ମଶାଣି

**ମରାମତ** - *ଅନେ:* (ବି.) : ସଜାଡ଼ିବା

**ମରାମରା** - *ଅନେ:* (ବିଂ.) : ଦରମରା, ମୃତବତ୍ ଅବସ୍ଥା

**ମରାମରି** - *ଅନେ:* (ବି.ବିଂ.) : ପରସ୍ପରକୁ ମାଡ଼ ମାରିବା, ମାର୍‌ପିଟ୍

**ମରାର** - *ଦେ:* (ବି.) : ଖଳ

**ମରିଗା କୋଳି** - *ସଂ:* (ବି.) : ବଣର ଏକ ଆମ୍ବିଳା କୋଳି

**ମରିଚ** - *ଅନେ:* (ବି.) : ଲଙ୍କା, ଗୋଲମରିଚ, ଛୋଟ ନାକଫୁଲ

**ମରିଚା** - *ଦେ:* (ବି.) : କଳଙ୍କି

**ମରିଚି** - *କେନ୍ଦୁ:* (ବି.) : ଲଙ୍କା

**ମରିପଡ଼ି** - *ଗ:* (କ୍ରି.ବିଂ.) : ପ୍ରାଣାନ୍ତକ କଷ୍ଟ ପୂର୍ବକ

**ମରୁଅସ୍** - *ସୁ:* (ବି.) : ପାରୁପର୍ଯ୍ୟନ୍ତ

**ମରୁଆ** - *କ:ସୁ:* (ବି.) : ତୁଳସୀ ଜାତୀୟ ଫୁଲ, ମାରିପାରିବା ବ୍ୟକ୍ତି

**ମରୁଟା** - *ଦେ:* (ବି.) : ଉଚ୍ଛକପାଳୀ ସ୍ତ୍ରୀ

**ମରୁଡ଼ି** - *ଅନେ:* (ବି.) : ମଡ଼କ, ଅନାବୃଷ୍ଟି

**ମରୁଡ଼ିଆ** - *ଅନେ:* (ବିଂ.) : ମଡ଼କ ପ୍ରପୀଡ଼ିତ, କ୍ଷୀଣ ଦୁର୍ବଳ

**ମରୁଣ୍ଡା** - *ଦେ:* (ବି.) : ଉଚ୍ଛକପାଳୀ ସ୍ତ୍ରୀ

**ମରେଅସ୍** - *ନୂ:* (ବିଂ) : ବାଧ

**ମରେଇ** - *ଅନେ:* (ବି.) : ଧାନ ରଖିବା ଡ଼ୋଲି, ଧାନ ରଖିବା ଅମାର, ଏକ ପ୍ରକାର ଘାସର ଫଳ, ଭିତରେ ଧାନ ରଖିବା ପାଇଁ ପାଳରେ ତିଆରି ଗଦା, ହାତ ଉଚ୍ଚା ବାଉଁଶ ଡୋଲି,

**ମରେହି** - *କେନ୍ଦୁ:* (ବି.) : ମରେଇ, ଧାନ, ଚାଉଳ ରଖାଯାଏ, ଓଳିଆ

**ମର୍ଚ୍ଚ** - *ମ:* (ବି.) : ମରିଚ, ଲଙ୍କା

**ମର୍ଜ୍ଜତା** - *କୋ:* (ବି.) : ମର୍ଯ୍ୟାଦା

**ମର୍ଜ୍ଜି** - *ଅନେ:* (ବି.) : ଇଚ୍ଛା

**ମର୍ତ୍ତି** - *ଚୌ:* (ବିଂ.) : ମୃତ

**ମର୍ଦ୍ଦଳ** - *ଅନେ:* (ବି.) : ମୃଦଙ୍ଗ ପରି ବାଦ୍ୟଯନ୍ତ୍ର ବିଶେଷ

**ମର୍ଦ୍ଦ** - *ଅନେ:* (ବି.) : ପୁରୁଷ, ସ୍ୱାମୀ

**ମର୍ଦ୍ଦନିଆ** - *ଗ:* (ବିଂ.) : ତୈଳ ମର୍ଦ୍ଦନ କରୁଥିବା ଲୋକ

**ମର୍ଦ୍ଦଲ୍** - *ମା:* (ବି.) : ମାଦଳ ବାଦ୍ୟ ବିଶେଷ, ମର୍ଦ୍ଦଳ

**ମର୍ଦ୍ଦାନି** - *ବା:ପୁ:* (ବିଂ.) : ମରଦ ପଣିଆ

**ମର୍ମସ୍ଥଳ** - *ଗଦ୍ୟ:* (ବି.) : ଛାତି, ହୃଦୟ

**ମର୍‌କଖିଆ** - *ସୁବ:* (ବିଂ.) : ଗାଳିବାଚକ, ମଡ଼କରେ ପଡ଼ି ମରିବା

**ମର୍‌ଘଟି** - *ସ:* (ବି.) : ଶ୍ମଶାନ

**ମର୍‌ଚି** - *ନବ:* (ବି.) : ମରିଚ, ଲଙ୍କା

**ମର୍‌ଡ଼ି** - *କଳା:ଦେ:କୋ:* (ବି.) : ମରୁଡ଼ି, ଅକାଳ ମରଣ

**ମର୍‌ଢ଼େଲ୍** - *ଦେ:* (ବି.) : ମରିଯିବା ଭଳି ଅବସ୍ଥା

**ମର୍‌ତ** - *କଳ:* (ବି.) : ମର୍ତ୍ତ୍ୟ

**ମର୍‌ତି (ଥି)** - *କଳା:* (ବିଂ.) : ମରିବା ପର୍ଯ୍ୟନ୍ତ, ଅତ୍ୟନ୍ତ

**ମର୍‌ତେ** - *କୋ:* (ବି.) : ମଲା ପର୍ଯ୍ୟନ୍ତ

**ମର୍‌ଦପିଲା** - *ଅନେ:* (ବି.) : ସାହସୀ ବ୍ୟକ୍ତି

**ମର୍‌ନା** - *ସୁ:* (ବିଂ.) : ମରଣ ଯୋଗ

**ମର୍‌ନା ସରେଲ** - *ନୂ:* (ବି.) : ମୁଢି ଭଜା ଯାଉଥିବା ହାଣ୍ଡି

**ମର୍‌ନୁ, ମରତେଲ୍** - *ଚୌ:* (ବି.) : ମଲା ପର୍ଯ୍ୟନ୍ତ

**ମର୍‌ନେ** - *ଦେ:କଳା:* (ବି.କ୍ରି.) ମୋ ପାଖରେ, ମରିଯାଆ, ହଇରାଣ ହୁଅ, ମରୁନାହୁଁ ବୋଲି ଗାଳି

**ମର୍‌ରେ** - *ସୁବ:* (ଅ.) : ଅବଜ୍ଞାସୂଚକ ଶବ୍ଦ, ନିନ୍ଦାସୂଚକ

**ମର୍‌ସି** - *କଳା:* (କ୍ରି.) : ମରିଯାଏ, ମରେ, ମରିବାର ସମ୍ଭାବନା

**ମର୍‌ସିଙ୍ଗ** - *ମା:* (ବି.) : ଲଙ୍କା ମରିଚ

**ମର୍‌ସୁମ୍** - *ଦେ:* (ବି.) : ମୌସୁମୀ

**ମର୍‌ହା** - *ଅନେ:* (ବିଂ.ବି.) : ରୋଗିଣା, ମୁମୂର୍ଷୁ, ମଲାଭଳି, ଦୁର୍ବଳ

**ମର୍‌ହା ଖୁଜା** - *କଳା.* (ବି.) : କନ୍ୟାଘର ପକ୍ଷରୁ ବରଘର ଲୋକଙ୍କୁ ସଂଖୋଳିବା, ଆଦିବାସୀ ଓ ଅନ୍ୟ କେତେକ ସଂପ୍ରଦାୟରେ ବରଘରେ କନ୍ୟା ସମର୍ପଣ କରି କନ୍ୟା ପକ୍ଷୀୟ ଲୋକ ଫେରିଯିବା ପରେ, ଦିନେ ଦୁଇଦିନ ଉତ୍ତାରୁ ବରପକ୍ଷୀୟ ଲୋକେ ସେମାନେ କୁଶଳରେ ନାଇଛନ୍ତି ନା ନାହିଁ, ତାହା ଅନୁଧ୍ୟାନ କରିବା

**ମର୍‌ହେଇ** - *ସୁ.ବ.ସ.* (ବି.) ଏକ ପ୍ରକାର ଗାଳି

**ମଲ୍‌କା** - *ସୁ.କଳା.* (ବି.କ୍ରି.) : ଭିନ୍ନ ଭଙ୍ଗୀରେ ଅଙ୍ଗଚାଳନ, ବଙ୍କେଇବା

**ମଲ୍‌କିବାର** - *ସୁବ.* (କ୍ରି.) : ଆଗପଛ ନ ବିଚାରି ହଠାତ୍ ଅପରିପକ୍ୱ ମାନସିକତା ନେଇ କିଛିକରିବା

**ମଲ୍‌କେଇବା** - *ବ.* (କ୍ରି.) : ଆଖି ଛଟକା ମାରିବା, ମୁହଁ ବୁଲାଇ ଦେବା

**ମଲ୍‌ଖା** - *ନୂ.କଳା.* (ବି.) : ମଧ୍ୟମ ଧରଣର ମାଟିପାତ୍ର

**ମଲ୍‌ଖେଇବା** - *କଳା.* (କ୍ରି.) ଅଂଗ ସଂଚାଳନ କରିବା

**ମଲ୍‌ଦିବାର** - *ସୁବ.* (କ୍ରି.) : ହାତ ପାପୁଲିରେ ଦଳିବା

**ମଲ୍‌ମଲ୍** - *ବ.ଦେ.* (ଅ.ବି.) : ଦେଖାଇ ହେବା ଅର୍ଥରେ, ସୂକ୍ଷ୍ମସୂତା ଲୁଗା

**ମଲ୍‌ମଲ୍ ହେବା** - *କଳା.* (ବି.) : ଚାଞ୍ଚଲ୍ୟ, ଟଂଗଟଂଗିଆ ପଣ, ଦେଖେଇ ହେବା ପଣ

**ମଲ୍‌ମଲାବାର** - *ସୁବ.* (କ୍ରି.) ବିଜୁଳି ଚମକିବାର କ୍ରିୟା, ବାରଲାଇଟ ଜଳିବାର ଆରମ୍ଭରେ ଦେଖା ଯାଉଥିବା କ୍ରିୟା

**ମଲ୍‌ମଲି** - *ସୁ.ନବ.* (ବିଂ) : ସବୁବେଳେ ଟଙ୍ଗଟଙ୍ଗ ହେବା (ସ୍ତ୍ରୀ), ଅସ୍ଥିରମନା ସ୍ତ୍ରୀଲୋକ, ଚଞ୍ଚଳା

**ମଲ୍‌ମଲିଆ** - *ସ.ସୁ.ବୌ.କଳା.* (ବିଂ.) ଚଞ୍ଚଳ ସ୍ୱଭାବ ଯୁକ୍ତ(ପୁରୁଷ), ତରକା, ଛନ୍‌ଛନିଆ

**ମଲ୍‌ଲା** - *ସୁବ.* (ବି.) : ଗଛ ଚାରିପଟେ ପାଣି ଦବାପାଇଁ କରାଯାଇ ଥିବା ଗୋଲାକାର ଖାଇ, ଗାଣ୍ଡୁଆର ବଳୟ

**ମଲକିବା** - *ସୁ.* (କ୍ରି.) : ମକଚିଯିବା

**ମଲକେ(ଖ)ନ୍** - *କଳା.* (ବି.) : ମୋଡ଼, ବଂକେଇଥିବା ରାସ୍ତା

**ମଲଖୁ** - *ସୁ.ନବ.* (ବି.) : ଖୁଦଗୁଣ୍ଡ, ମଳୁଖ, ଚାଉଳର ଭଙ୍ଗା ମଇଳା ଅଂଶ

**ମଲମ** - *ଅନେ.* (ବି.ବିଂ.) : ପ୍ରଲେପ ଔଷଧ

**ମଲମଲାବା** - *ସୁ.* (କ୍ରି.) : ଅବାଂଛିତ ଆଗ୍ରହ

**ମଲର୍‌ମଟର୍** - *ବୌ.* (ବିଂ.) : ଦେଖାଇ ହେବା ଗୁଣ

**ମଲା** - *ଅନେ.* (ବିଂ.) : ମୃତ, ମୃତପ୍ରାୟ

**ମଲାଙ୍ଗ** - *ଅନେ:* (ବିଂ.) : ନିର୍ମୂଳି ଗଛ, ଅନ୍ୟ ଗଛରୁ ଖାଦ୍ୟ ନେଇ ବଞ୍ଚିବା ଲତା

**ମଲା ଚଢେଇ** - *ବୌ:* (ବି.) : ଉଲ୍ଲୁକ ଜାତୀୟ ପକ୍ଷୀ

**ମଲାଛତି** - *କଳା:* (ବି.) : ମଳାଛତୁ

**ମଲାଛୁଆଁଛି** - *କୋ:* (ବି.) : ମୃତକର ବଂଶର ଅଶୌଚ

**ମଲାଟ** - *ଅନେ:* (ବି.) : ବହିଖାତାର ଉପର ଫର୍ଦ୍ଦ

**ମଲାପଣା** - *ଗଞ:* (ବି.) ଶୁଦ୍ଧକ୍ରିୟାର ଶୀତଳସାମଗ୍ରୀ

**ମଲି** - *ଅନେ:* (ବି.) : ମଲ୍ଲୀ ଫୁଲ

**ମଲିଆ** - *ଦେ:ସୁବ:ସୁ:* (ବି.ବିଂ.) : ମଳିନ, ମଳିଚିଆ, ମଇଳା ବର୍ଣ୍ଣ

**ମଲେଇ** - *ଅନେ:* (ବି.) : ରାବିଡ଼ି, କ୍ଷୀରସର

**ମଲେଇ ଖୁରୀ** - *ବୌ:* (ବି.) : ଠେକ ନଥିବା ଖୁରି

**ମଲ୍ଲୀକଢି** - *ଅନେ:* (ବି.) : କର୍ଣ୍ଣ ଅଳଙ୍କାର ବିଶେଷ, ନାକ ଫୁଲ, ମଲ୍ଲୀ ଫୁଲର ସ୍ତବକ

**ମଳ** - *ଅନେ:* (ବି.) : ମଇଳା

**ମଳକ** - *ରା:* (ବି.) : ହଇଜା

**ମଳଖ** - *କୋ:ରା:* (ବି.) : ମଳୁଖ, ଶସ୍ୟ ପାଛୋଡ଼ିବା ପରେ ରହିଥିବା କ୍ଷୁଦ୍ର କ୍ଷୁଦ୍ର ଅଂଶ

**ମଳମଳ** - *ନ:ଦେ:* (ବି.) : ବିଳମ୍ବ, ଡେରି, ମଳିନତା ଛାଡ଼ିନଥିବା ଆଖି

**ମଳମାସ** - *ଜ:ନ:* (ବି.) ଅଧିମାସ, ସୌରମାସ ଓ ଚାନ୍ଦ୍ରମାସ ମଧ୍ୟରେ ଥିବା ବଳକା ମାସ

**ମଳା** - *ନ:* (ବି.) : ପାଳ ବା କନାରେ ବଳି ବୃତ୍ତାକାର ଭାବେ ରଖି ତା'ଉପରେ ହାଣ୍ଡି ଇତ୍ୟାଦି ରଖିବାର ଉପକରଣ, ବିଛାର ଲାଞ୍ଜର ଅଗ୍ରଭାଗ, ଧାନ ଅମଳ କରିବା, ଗଛ ମୂଳର ମଣ୍ଡଳାକାର କ୍ଷେତ୍ର, ମନ୍ଦା

**ମଳାମଳା** - *ଅନେ:* (ବି.) ଦଳଦଳ, ପୁଳାପୁଳା, ମେଞ୍ଚାମେଞ୍ଚା

**ମଳାମଳି** - *ଗ:କେ:* (କ୍ରି.ବି.) : ଶସ୍ୟ ଅମଳର ଏକ ପ୍ରକ୍ରିୟା, ଚକଟାଚକଟି

**ମଳାଶ୍ବଶୁର** - *ଦେ:ଢ଼:କ:ଖୋ:* (ବି.) ମାମୁଶ୍ୱଶୁର, ସ୍ୱାମୀ ବା ସ୍ତ୍ରୀର ମାମୁ

**ମଳି** - *ଅନେ:* (ବି.) : ମଇଳା, ଦେହରୁ ନିର୍ଗତ ବର୍ଜ୍ୟ ଜିନିଷ

**ମଳିଆ** - *ଅନେ:* (ବି.ବିଂ.) : ମଇଳା

**ମଳିକା** - *କେନ୍ଦୁ:* (ବି) : ହାଣ୍ଡିଆ ତିଆରି କଲାବେଳେ ପକାଯାଉଥିବା ଚେରିମୂଳି

**ମଳିଛିଆ** - *ଜ:ଦେ:କୋ:* (ବିଂ.) : ମଇଳାଯୁକ୍ତ

**ମଳିନ** - *ଅନେ:* (ବି.ବିଂ.) : ମଇଳା, ମ୍ଳାନ, ମଉଳିଯିବା

**ମଳିବା** - *ଅନେ:* (କ୍ରି.) : ବେଙ୍ଗଳା ପକାଇ ଫସଲ ଅମଳ କରିବା, ଘଷିବା

**ମଳିହା** - *ଜ:* (ବିଂ.) : ମଇଳା

**ମଲୁ** - *କେନ୍ଦୁଝରଦେ:* (ବିଂ.ବି.) : ରୋଗୀ

**ମଲୁଖ** - *ଢେ:ବା:* (ବି.) : ଚୂନା କରିବା ପରେ ଖଦଡ଼ାଂଶ, ଖଦଡା ଚାଉଳ ଚୂନାର ଅବଶେଷ, ଚାଉଳରୁ ବଛା ଖୁଦ

**ମଲେଇ** - *ଗ:ସ:* (ବି.) : ଗାଈର ବାଛୁରି ମରିବାପରେ ଗାଈଠାରୁ ଦୁଧ ଦୁହିଁବା, କୁଟାରେ ତିଆରି ଧାନ ରଖିବାର ଅମାର

**ମଲେଇକରିବା** - *ନ:* (କ୍ରି.) : ଗାଈର ବାଛୁରି ମରିଗଲେ ଅନ୍ୟ ପ୍ରକାରରେ ମାଆଗାଈର କ୍ଷୀର ଦୁହିଁବା

**ମଶ୍‌ମଶିଆ** - *ଅନେ:* (ବିଂ.) ନରମ, ସହଜରେ ଭାଙ୍ଗିହେଉଥିବା ବା ଚୂନା ହେଉଥିବା

**ମଶ୍‌ଲିବା** - *ଦେ:* (ବି.) : ମୋଡ଼ିବା

**ମଶନ୍** - *ମା:* (ବି.) : ମଶାଣି

**ମଶା** - *ଦେ:* (ବି.) ଏକ ଭରିର ଏକଦଶମାଂଶ, କୀଟ ବିଶେଷ

**ମଶାଣପଦା** - *ଦେ:* (ବି.) : ଶ୍ମଶାନଭୂମି

**ମଶାଣି** - *ଅନେ:* (ବି.) : ଶ୍ମଶାନ

**ମଶାନ** - *ସୁ:କଳା:ନୂ:* (ବି.) ମଶାଣି, ଶବଦାହ ସ୍ଥାନ

**ମଶାନ୍ ପଦା** - *ନୂ:ସ:* (ବି.) : ମଶାଣି ଭୂଇଁ

**ମଶାରି** - *ଅନେ:* (ବି.) : ମଶାନିବାରକ ଜାଲି କନାର ଘର

**ମଶାରିଚାଳ** - *ନ:* (ବି.) : ମଶାରୀ ବାନ୍ଧିବା ବାଡ଼ି (ଖଟରେ ଥାଏ )

**ମଶାଲ୍** - *ଅନେ:* (ବି.) : ଦିହୁଡ଼ି, ଆଲୋକ ପାଇଁ ପ୍ରସ୍ତୁତ ନିଆଁହୁଳା

**ମଶିଣା** - *ଅନେ:* (ବି.) : ଚଟେଇ, ଚିକ୍କଣ ବେଣା ତିଆରି ପଟି, ଏକପ୍ରକାର ଘାସତିଆରି ବିଛଣା

**ମଷ୍ଟିବା** - *ଅନେ:* (କ୍ରି.) : ଖୋସାମଦ କରିବା, ହାତରେ ଦଳିଦେବା, ମଛିବା

**ମଷ୍ଟେମଷ୍ଟେ** - *ବା:* (କ୍ରି.ବିଂ.) ସୁବିଧା ପାଞ୍ଚିକରି

**ମସ୍‌କରିଆ** - *ଅନେ:* (ବିଂ.) : ବ୍ୟଙ୍ଗକାରୀ, ଖୁସିବାସିଆ

**ମସ୍‌କା** - *କୋ:* (ବି.ବିଂ.) : ଧକ୍କା, ତୋଷାମଦ୍, ଚାଟୁବାକ୍ୟ, ନରମ, ସହଜରେ ଭାଙ୍ଗିଯାଉଥିବା

**ମସ୍‌କାମସକି** - *ସୁ:କେ:* (ବିଂ.) ଠେଲାପେଲା, ଖୋସାମତି

**ମସ୍‌କିବା** - *ମ:କଳା:ସୁ:* (କ୍ରି.) : ହାତରେ ଦଳିବା, ଯଥାଶୀଘ୍ର ଅଧିକ ଖାଇବା, ଫ୍ରାକ୍‌ଚର୍ ହେବା, ଅତ୍ୟଧିକ ଶକ୍ତି ପ୍ରୟୋଗ କରିବା

**ମସ୍‌କୁଲ** - *ସୁବ:* (ବି.) : ମୁସ୍କିଲ, ଅସୁବିଧା

**ମସ୍‌ମସ୍** - *ବ:ନ:ବୌ:* (କ୍ରି.ବିଂ.) : ତରତର ହୋଇ ଖାଇବା, ଏକପ୍ରକାର ଧୀର ଶବ୍ଦ, ଶୀଘ୍ର

**ମସ୍‌ମସା** - *ବୌ:ସ:* (ବିଂ.) : କଡ଼ା ଓ ଶୁଖିଲା ପାଗ, ତରକାରୀର ଝୋଳ ଶୁଖି ବସିଥିବା ଅବସ୍ଥା

**ମସ୍‌ରା** - *କଳା:ଅ:* (ବି.) : ଦାନ୍ତର ମାଢ଼ି, ଭଜା

**ମସ୍‌ରାବା** - *ସ:* (କ୍ରି.) : ଭାଜିବା

**ମସ୍‌ରେଇବା** - *କଳା:* (କ୍ରି.) ସାମାନ୍ୟ ଗରମ କରିବା

**ମସଡ଼** - *କୋ:ଗ:* (ବିଂ.ବି.) : ଅତି ହାଲକା, ଏକ ପ୍ରକାର ଚଣା

**ମସରି** - *ବ:* (ବି) : ମଶାରି

**ମସର୍** - *କଳା:* (ବିଂ.) : ସାମାନ୍ୟ ଗରମ

**ମସଲା** - *ଗ:ଗଜ:* (ବି.) : ତରକାରୀ ସ୍ୱାଦ ପାଇଁ ବ୍ୟବହୃତ ଦ୍ରବ୍ୟ, ବାଲି ସିମେଣ୍ଟ ପାଣିର ମିଶ୍ରଣ, ପାନର ସ୍ୱାଦ ପାଇଁ ବ୍ୟବହୃତ ଦ୍ରବ୍ୟ, ଗୁଣାତ୍ମକ ଉପାଦାନ

**ମସା** - *ସୁ:ନ:ସ:* (ବି.) ତିଳ ଚିହ୍ନ, ପକ୍ଷୀବସା; ପକ୍ଷୀଙ୍କର କାଠିକୁଟାର ଆଶ୍ରୟସ୍ଥଳୀ

**ମସିଆ** - *ଅନେ:* (ବିଂ.ବି.) ମଇଳା, ଅପରିଛନ୍ନ, ଆଳୁ ଲତାର ଡଙ୍କରେ ହେଉଥିବା ଛୋଟ ଛୋଟ ଫଳ

**ମସିଣା** - *ଖୋ:କେନ୍ଦୁ:* (ବି.) : ଶୋଇବା ପାଇଁ ପ୍ରସ୍ତୁତ ଏକ ବିଶେଷ ଧରଣର ଆସନ, ସପ, ସବାଇ ଘାସରେ ତିଆରି ବିଛଣା

**ମସିଣି** - *ଗ:* (ବି.) : ଚିକ୍କଣ, ମସୃଣ

**ମସିନ୍** - *କଳା:* (ବିଂ.) : ଚିକ୍‌କଣ, ମସୃଣ

**ମସୀ** - *ମ:* (ବି.) : ମାଉସୀ

**ମସୀପାତ୍ର** - *ଗଦ୍ୟ:* (ବି.) : କାଳି ଦୁଆତ

**ମସୁଢା** - *ସଂ:* (ବି.) : ଦାନ୍ତମାଢ଼ି

**ମସୁଧା** - *ଅନେ:* (ବି.) : ମନ୍ତ୍ରଣା, ବିମର୍ଶ

**ମସୁର** - *ଅନେ:* (ବି.) : ଏକପ୍ରକାର ଡାଲି, ମଶାରି

**ମସୁରି** - *ସୁ:ଖୋ:* (ବି.) : ମସୁର ଡ଼ାଲି, ଏକ ପ୍ରକାର ଧାନ

**ମସୁରେଇବା** - *କନ୍ଧ:* (କ୍ରି.) : ଡାଲି ଭାଜିବା

**ମସ୍କରା** - *ବ:* (ବିଂ.) : ରହସ୍ୟକାରୀ ଲୋକ

**ମସ୍କା** - *ମା:ବୌ:* (ବି.ବିଂ.) : ତେଲେଇବା, ଖୋସାମତି, ଖାଇବା ଲୋକ

**ମସ୍କାମସ୍କି** - *ଅନେ:* (ବି.) : ଧରାଧରି, ଖୋସାମତି

**ମସ୍କି** - *ବ:* (ବି.) : ମଚକି, ମୋଡ଼ି

**ମସ୍କିବା** - *ବ:* (କ୍ରି.) : ମୋଡ଼ିଦେବା

**ମସ୍କିଯିବା** - *କନ୍ଧ:* (କ୍ରି.) : ଜଖମ୍‌ହେବା

**ମସ୍କୁରା** - *ବୌ:* (ବି.) : ଦାନ୍ତ ମୂଳ ବଥ

**ମସ୍କୁଲ୍, ମସ୍କୁଲିଆ** - *ବୌ:* (ବିଂ.) : ମୁସ୍‌କିଲ୍, ଅଡୁଆ

**ମସ୍ତ ମସ୍ତ** - *ନ:* (ବିଂ.) : ବଡ଼ବଡ଼

**ମସ୍ତର** - *କୋ:ଗ:* (ଅ.ବି.) : ପ୍ରକାର, ଧରଣର

**ମସ୍ତାନି** - *ନ:* (ବି.) : ମସ୍ତି କରିବା

**ମସ୍ତି** - *ଅନେ:* (ବି.) : ଖୁସି

**ମହକନ୍** - *ଝ:* (ବି.) : ଫୁଲ ଆଦିର ବାସ୍ନା

**ମହକିବା** - *ଅନେ:* (କ୍ରି.) : ସୁଗନ୍ଧ ହେବା

**ମହକିଲ** - *ଅନେ:* (ବି.) : ମକଦ୍ଦମା ପାଇଁ ଓକିଲଙ୍କ ପକ୍ଷଭୁକ୍ତ ବ୍ୟକ୍ତି

**ମହଙ୍ଗା** - *ଅନେ:* (ବି.ବିଂ.) : ଚଢାମୂଲ୍ୟ, ଦର ବୃଦ୍ଧି, ଅଭାବ

**ମହଙ୍ଗିଆ** - *ଅନେ:* (ବିଂ.) : ମହରଗିଆ

**ମହଜୁଦ୍** - *ଅନେ:* (ବି.) : ସଞ୍ଚିତ

**ମହଣ** - *ଅନେ:* (ବି.) ଓଜନ ମାପର ପରିମାଣ, ବଳଦ ବା ପଣ୍ଡା ବା ପୋଢୁଅଙ୍କୁ କର୍ମ ଅଭ୍ୟାସ; ମଣ

**ମହଣବତି** - *ଅନେ:* (ବି.) : ମହମବତି

**ମହଣା** - *ଖୋ:* (ବି.) : ଏକପ୍ରକାର ମାଟିପାତ୍ର

**ମହତ** - *ଅନେ:* (ବି.) : ଇଜ୍ଜତ, ଉପହାର

**ମହତ ପଡ଼ିବା** - *ଗ:* (କ୍ରି.) : ସଂପର୍କ ତୁଟିବା

**ମହତିଆ** - *ହୁବ:* (ବି.) : ହାତୀର ମାହୁନ୍ତ

**ମହନ** - *ବ:* (ବି.) : ମଙ୍ଗଳନ, ମଙ୍ଗଳପାକ

**ମହନଭୋଗ** - *ଅନେ:* (ବି.) : ଏକପ୍ରକାର ସୁମିଷ୍ଟ ଖାଦ୍ୟ, ସୁଜିରେ ତିଆରି ମିଠା

**ମହନୀ** - *ବୌ:ଦେ:କଳା:କେନ୍ଦୁ:* (ବି.ବିଂ.) : ବଶୀକରଣ ବିଦ୍ୟା, ତନ୍ତ୍ରକରି ବିମୋହିତ କରିବା, ମୋହିନୀ, ଚେରମୂଳି ଔଷଧ

**ମହନ୍ତ** *ଅନେ:* (ବି.) : ମଠାଧୀଶ

**ମହନ୍ତର** - *ଗ:* (ବି.) : ବର୍ଷର ପ୍ରଥମ ଧାନବୁଣିବା କୃଷିପର୍ବ, ଅକ୍ଷିମୁଠି

**ମହମହ** - *ଅନେ:* (ଅ.ବିଂ.) ଚହଟ, ସୁଗନ୍ଧଯୁକ୍ତ, ଉଚ୍ଚାଟନ ସୁଗନ୍ଧ

**ମହରଗ** - *ଅନେ:* (ବିଂ.ବି.) : ଅନଟନ, ମହଙ୍ଗା, ଦୁର୍ମୂଲ୍ୟ

**ମହରଗିଆ** - *ଅନେ:* (ବିଂ.) : ଯେଚଢା ଦରରେ ବିକେ

**ମହରଡ଼ା** - *ଅ:* (ବି.) : ଶିମ୍ବ ଜାତୀୟ ଫଳ

**ମହରା** - *ଅନେ:* (ବି.) : ବିଷ, ଜହର

**ମହରି** - *ନୂ:* (ବି.) : ମହୁରି

**ମହରେଲ୍** - *ଦେ:* (ବି.) : ମହୁରାଳି ମାଛ

**ମହର୍** - *ମ:* (ସ.) : ମୋର

**ମହଲ** - *ଅନେ:* (ବି.) : ପ୍ରାସାଦ, ବାସସ୍ଥାନ, ଗୋଡ଼ ଅଳଙ୍କାର

**ମହଲତ୍** - *ଅନେ:* (ବି.) : ସମୟନେବା

**ମହଲରା** - *ଜ:* (ବି.) : ଶିମ୍ବଜାତୀୟ ପରିବା

**ମହଲା** - *ଅନେ:* (ବି.) : କୋଠାଘରର ତଳୁ ଉପରକୁ ଥିବା ବିଭିନ୍ନ ତଳ

**ମହଳ** - *ଅନେ:* (ବି.ବିଂ.) : ମଳିନ, ମଳଯୁକ୍ତ, ମଳିଆଲୁଗା

**ମହଳଣ** - *ଅନେ:* (ବି.) : ମଳିନ, ଶୁଖିଲା

**ମହା** - *ଖୋ:* (ବି.ବିଂ.) : ଆତ, ପାଣି ଆତ, ନେହୁଆ, ମହାନ୍, ବଡ଼

**ମହାକିଳା** - *ଗ:* (ବି.) : ଦୁର୍ଯୋଗ

**ମହାଖଳା** - *ଛ:* (ବି.) : ଶ୍ମଶାନ, ପ୍ରଶସ୍ତ ସ୍ଥାନ

**ମହାଘୋର୍** - *ନୂ:* (ବିଂ) : ବହୁତ, ଅତ୍ୟନ୍ତ, ପ୍ରଚଣ୍ଡ

**ମହାଙ୍କାଳ** - *ଗ:* (ବି.) : ଲତାବିଶେଷ, ପାଳ

**ମହାଜନ** - *ଅନେ:* (ବି.) : ବେପାରୀ, ବ୍ୟବସାୟୀ, ଋଣଦାତା, ମହାନ ବ୍ୟକ୍ତି

**ମହାଜନି** - *ନ:* (ବି.) : ଋଣକାରବାର; ଟଙ୍କା କରଜ ଲଗାଇବା

**ମହାଜର** - *ଗଛ:* (ବି.) : ଆବେଦନ ପତ୍ର

**ମହାଦେଈ** - *ଖୋ:* (ବି.) : ରାଣୀ, ବହୁପତ୍ନୀକ ରାଜାଙ୍କ ମୁଖ୍ୟ ପତ୍ନୀ

**ମହାପରମା** - *ଖୋ:* (ବିଂ.) : ଚୁପ୍ ସଇତାନ

**ମହାପାତକ** - *ଅନେ:* (ବି.) : ମହାପାପ

**ମହାପୁରୁ** - *ଅନେ:* (ବି.) : ମହାପ୍ରଭୁ

**ମହାପ୍ରସାଦ** - *ଅନେ:* (ବି.) : ଶ୍ରୀଜଗନ୍ନାଥଙ୍କ ପାଖରେ ଲାଗି ହୋଇଥିବା ପ୍ରସାଦ

**ମହାବାହୁ** - *ଅନେ:* (ବି.) : ଶ୍ରୀ ଜଗନ୍ନାଥଙ୍କ ଶ୍ରଦ୍ଧା ସମ୍ବୋଧନ

**ମହାବୀର** - *ଅନେ:* (ବି.) : ହନୁମାନ, ମହାନ ବୀର

**ମହାମଣ୍ଡଲ୍** - *ଅନେ:* (ବି.) : ବୋଡ଼ା ଭଳି ବିରାଟକାୟ ସର୍ପ ବିଶେଷ

**ମହାମେଣ୍ଟ** - *ଙ:* (ବି.) : ବଡଦଳ ଗଠନ, ଅନେକ ଦଳକୁ ନେଇ ବଡ଼ ସଙ୍ଗଠନ

**ମହାମେରୁ** - *କଳା:* (ବି.) : ବିଶାଳ ଦ୍ରୁମ

**ମହାଯୁଗ** - *ଙ:* (ବି.) : ନୂତନ ସମ୍ଭାବନାର ନୂଆ ସମୟ

**ମହାରଣା** - *ଅନେ:* (ବି.) : ବଢେଇ, କାଠ ବା ପଥରରେ ଦ୍ରବ୍ୟ ବା ମୂର୍ତ୍ତି ପ୍ରସ୍ତୁତକାରୀ

**ମହାର୍ଘ** - *ଗଦ୍ୟ:* (ବିଂ.) : ଦାମୀ, ସୁନ୍ଦର, ମୂଲ୍ୟବାନ

**ମହାର୍ଦ୍ଦ** - *ଅନେ:* (ବି.) ଜଗନ୍ନାଥଙ୍କ ମହାପ୍ରସାଦ

**ମହାଲ୍** - *ମ:* (ବି.) : ଆତ

**ମହାଲକ୍ଷ୍ମୀ** - *ଅନେ:* (ବି.) : ଏକ ଧାନର ନାମ, ଜଗତଜନନୀ ଲକ୍ଷ୍ମୀ ଠାକୁରାଣୀ

**ମହାଳିଆ** - *ଅନେ:* (ବି.) ନିରର୍ଥକ, ମୂଲ୍ୟହୀନ, ମାଗଣା

**ମହାଷ୍ଟମୀ** - *ଅନେ:* (ବି.) : ଆଶ୍ୱିନ ଶୁକ୍ଳ ଦୁର୍ଗା ଅଷ୍ଟମୀ

**ମହି** - *ଅନେ:* (ବି.) : ଚହ୍ଲା, ମୁହାଁ ଦହି, ଦହି କରିବାକୁ କ୍ଷୀରରେ ମିଶ୍ରିତ ଖଟାଳିଆ ଦହି, କୃଷି କର୍ମରେ ବ୍ୟବହୃତ କାଷ୍ଠ ଜମି ସମତଳ କରିବା ପାଇଁ ବ୍ୟବହୃତ କାଷ୍ଠ, ମଇ

**ମହିଆ** - *ବା:* (ବିଂ.) ମେରୁଖୁଣ୍ଟ ବା ମହୀଦାଣ୍ଡି ପାଖରେ ଚାଲୁଥିବା ଧୀର ବଳଦ

**ମହିନା** - *ଅନେ:* (ବି.) : ମାସିକ ଦରମା

**ମହିବିଲ୍‌ବା** - *ସୁବ:* (କ୍ରି.) : ଖୁଆ ଦଣ୍ଡ ସାହାଯ୍ୟରେ ଦହି ମନ୍ଥନ କରି ମଲି ବା ଘୋଳଦହି କରିବା

**ମହିବିଲା** - *ସୁ:ସ:* (ବି.) : ଦଧିମନ୍ଥନ ଦଣ୍ଡ, ପୋକ ବିଶେଷ

**ମହିରା** - *ଦେ:* (ବି.) : ଗୁଡ଼ିଆ

**ମହିରିଗିରା** - *ନ:* (ବି.) ଏକପ୍ରକାର ଉପଧାତୁ, ଔଷଧରେ ବ୍ୟବହୃତ ହୁଏ

**ମହୀଦାଣ୍ଡି** - *ବ୍ରା:* (ବି.) : ବେଙ୍ଗଳା ମଝିରେ ପେଟାଯାଇଥିବା ଖୁଣ୍ଟି, ମେରି

**ମହୀପାଲ୍** - *କଳା:* (ବି.) ଧଳାରଂଗର ଦେଶୀ ବଡ଼ଧାନ

**ମହୀପାଳ** - *ନ:* (ବି.) : ଏକ ଧାନର ନାମ, ଏକ ଭୂଖଣ୍ଡର ଅଧିକାରୀ ଓ ଶାସନକର୍ତ୍ତା

**ମହୁ** - *ଅନେ:* (ବି.) : ମଧୁ, ଫୁଲରସ

**ମହୁଆ** - *ଯା:ଦେ:* (ବି.) : ପୌରୁଷ ହୀନ କୋଚ, ମହୁଲ, ଆତ, ନେଉଆ

**ମହୁକାଙ୍କ** - *ଗ:* (ବି.) : ଶିମ୍ବଜାତୀୟ ଲତା

**ମହୁକିଆ** - *ଗ:* (ବିଂ.) : ଅତ୍ୟନ୍ତ ମିଠା

**ମହୁ ଘରା** - *କଳା:ଦେ:* (ବି.) : ମହୁଫେଣା, ମଧୁକୋଷ, ମଧୁଚକ୍ର

**ମହୁଡ଼** - *ସଂ:ଯା:* (ବି.) : ମୁକୁଟ, ଚାଳ ଘରର ସବା ଉପର, ମଉଡ଼

**ମହୁତୀ** - *ବ୍ରା:* (ବି.) : ଗୋରୁଙ୍କ ମୁହଁ ବାନ୍ଧି ରଖିବା ପାଇଁ ଏକପ୍ରକାର ଜାଲି

**ମହୁନାଡ଼** - *ନବ:* (ବି.) : ମୃଣାଳ, ପଦ୍ମନାଡ଼

**ମହୁର** - *ଅନେ:* (ବି.) : ଅଭଡ଼ାରେ ଖାଉଥିବା ତରକାରି, ପାନ ମଧୁରିଦିଆ ତରକାରି

**ମହୁରତ** - *ସଂ:* (ବି.) : ଶୁଭ ମୁହୂର୍ତ୍ତ

**ମହୁରା** - *ଦେ:ଗଦ୍ୟ:ଜ:* (ବି.) : ବିଷ

**ମହୁରାରୁପା** - *ଦେ:* (ବି.) : କଳାରୁପା

**ମହୁରାଳି** - *ଅନେ:* (ବି.) : ଏକ ପ୍ରଜାତିର ଛୋଟ ମାଛ

**ମହୁରି** - *ଅନେ:* (ବି.) : ଏକ ବାଦ୍ୟ ଯନ୍ତ୍ର, ପେଁକାଳି, ପାନ ମଧୁରି

**ମହୁରିଆ** - *ନ:* (ବି.) : ଯେ ମହୁରି ବାଦ୍ୟ ବଜାଏ

**ମହୁଲ** - *ନ:* (ବି.) : ଏକବୃକ୍ଷ ଓ ତା'ର ଫଳର ନାମ

**ମହୁଲତଳିଆ** - *ବର:* (ବି.) : ଗାଳି ବିଶେଷ

**ମହୁଲି** - *ଅନେ:* (ବି.) : ମହୁଲ ଫୁଲର ରସରୁ ପ୍ରସ୍ତୁତ ମଦ

**ମହେନୀ** - *କଳା:* (ବିଂ.) ମୋହିନୀ, ସମ୍ମୋହନୀ

**ମା** - *ଅନେ:* (ବି.) : ମାଆ, ଆଈ, ମାମା

**ମାଆ ଛେଉଣ୍ଡ** - *ଅନେ:* (ବିଂ.) : ମାଆ ନଥିବା ପିଲା

**ମାଆଁସ** - *ଯା:କେ:ମ:* (ବି.) : ମାଂସ

**ମାଇ** - *ବର:ଅ:* (ବି.ବିଂ.) : ଗୁଲି ଜାଲର ଫାଶ କ୍ରମଶଃ ବଢାଇବାର ଏକପ୍ରକାର ଫାଶ, ବିଲେଇ, ସ୍ତ୍ରୀଲିଙ୍ଗ ସୂଚକ

**ମାଇକି** - *ବୌ:ଦେ:* (ଅ.) : ରାଣ ଖାଇବା ପାଇଁ କୁହାଯିବା କଥା

**ମାଇକିଣା** - *ଅନେ:* (ବି.) : ସ୍ତ୍ରୀଲୋକ

**ମାଇକିନା** - *ଅନେ:* (ବି.) : ସ୍ତ୍ରୀଲୋକ, ପତ୍ନୀ, ନାରୀ

**ମାଇକିନା ଭୋଜି** - *ଗ:* (ବି.) : ଝିଅ ପ୍ରଥମ ରଜୋବତୀ ହେବା ସମୟର ଭୋଜି

**ମାଇକିନିଆ** - *ଦେ:ନୂ:ଢେ:ନ:* (ବି.ବିଂ.) : ମାଇକିନା, ସ୍ତ୍ରୀ ଲୋକ

**ମାଇକୁଟୁମ୍ବ** - *ଗ:* (ବି.) : ଯେଉଁ ଦମ୍ପତିଙ୍କର କେବଳ କନ୍ୟା ସଂତାନ ଅଛନ୍ତି

**ମାଇଗୁଲିଆ** - *ଗ:ନ:ଦେ:* (ବି.ବିଂ.) : ଯେ ସ୍ତ୍ରୀର ନିର୍ଦ୍ଦେଶରେ ଚଳେ, ମାଇଚିଆ

**ମାଇଗଁଡ଼ିଆ** - *ସୁବ:* (ବିଂ.) : ମାଇଚିଆ, ସ୍ତ୍ରୀ ଲକ୍ଷଣ ଥିବା ଲୋକ

**ମାଇଚାଣ୍ଡିଆ** - *ଗ:* (ବିଂ.) : ସ୍ତୈଣ ପ୍ରବୃତ୍ତିର ଲୋକ, ମାଇଚିଆ

**ମାଇଚି** - *ରା:* (ବି.) : ସ୍ତ୍ରୀ

**ମାଇଚିଆ** - *ଅନେ:* (ବି.) : ନାରୀ ସ୍ୱଭାବ ପୁରୁଷ

**ମାଇଜି** - *ନବ:କୋ:କନ୍ଧ:* (ବି.) : ପତ୍ନୀ, ସ୍ତ୍ରୀ

**ମାଇଝା** - *ଦେ:* (ବି.) : ସ୍ତ୍ରୀ ଜାତି

**ମାଇଝି** - *ମା:କନ୍ଧ:* (ବି.) : ସ୍ତ୍ରୀ

**ମାଇଟି** - *କନ୍ଧ:* (ବି.) : ମାଟି

**ମାଇତେଲିଆ** - *କୋ:ଗ:* (ବି.ବିଂ.) : ନଂପୁସକ, ମାଇଚିଆ

**ମାଇନା** - *ଦେ:* (ବି.) : ପରୀକ୍ଷା ନିରୀକ୍ଷା, ଡାକ୍ତରଙ୍କ ପୋଲିସ ଦ୍ୱାରା ଯାଞ୍ଚ

**ମାଇପ** - *ଅନେ:* (ବି.) : ସ୍ତ୍ରୀ, ଭାର୍ଯ୍ୟା, ପତ୍ନୀ

**ମାଇପଚଟା** - *ଦେ:* (ବି.) : ସ୍ତ୍ରୀପ୍ରତି ଅତି ଆସକ୍ତ

**ମାଇପରାଣ୍ଡିଆ** - *ଗ:* (ବି.) : ମୃତଦାର

**ମାଇପ ସୁଆଗି** - *ଚା:* (ବିଂ.) ସ୍ତ୍ରୀ ବୋଲକରା

**ମାଇପାଏନ** - *ସୁବ:* (ବି.) : ମାଇ ଲକ୍ଷଣ

**ମାଇପିଲା** - *କେ:* (ବି.) : ଝିଅ ପିଲା

**ମାଇପୀ** - *ନ:ଦେ:* (ବିଂ.) ସ୍ତ୍ରୀଲୋକ ସମ୍ବନ୍ଧୀୟ

**ମାଇମୁହାଁ** - *ଦେ:ଖୋ:* (ବି.ବିଂ.) : ଭୀରୁ, ଡରୁଆ

**ମାଇଲି** - *କନ୍ଧ:* (ବି.) : ଆଦିବାସୀ (କନ୍ଧ) ଦେବତା

**ମାଇଲିଆ** - *କନ୍ଧ:* (ବିଂ.) : ମାଗଣା, ତୁଚ୍ଛା, ମାହାଳିଆ

**ମାଇଳା** - *ମ:* (ବି.) : ମହିଳା, ସ୍ତ୍ରୀଲୋକ

**ମାଇସୀ** - *କନ୍ଧ:* (ବି.) : ମାଉସୀ, ମାତାଂକ ସାନଭଉଣୀ

**ମାଈଁଶାଶୁ** - *କ:* (ବି.) : ସ୍ତ୍ରୀ ଓ ସ୍ୱାମୀର ମାଈଁ

**ମାଈ** - *ଅନେ:* (ବିଂ.ବି.) : ସ୍ତ୍ରୀଲିଙ୍ଗ ବିଶେଷ, ପ୍ରଧାନ, ବଡ଼

**ମାଈଗୁଲିଆ** - *ଗଦ୍ୟ:* (ବିଂ.) : ସୁନ୍ଦର, ନାରୀ ସୁଲଭ ଚେହେରା ଥିବା ପୁଅ, ମାଇଚିଆ

**ମାଈ ଥାପିବା** - *ସ:* (ବି.) : ଶରୀର ଘା ବହୁଦିନ ଧରି ନଶୁଖିବା

**ମାଈଲଗା** - *ସୁ:* (ବିଂ.) : ବିବାହ ପରେ ସ୍ତ୍ରୀ ସଂସର୍ଗ ହେତୁ ନିର୍ବୀର୍ଯ୍ୟ

**ମାଈଶୀତ** - *ସୁ:* (ବି.) : ଶୀତ ଆସିବାର ଆଦ୍ୟାବସ୍ଥାରେ ପାହାନ୍ତା ପହରକୁ ପଡୁଥିବା ଶୀତ

**ମାଈଁ** - *ଅନେ:* (ବି.) : ମାମୁଙ୍କର ସ୍ତ୍ରୀ

**ମାଉ** - *ସୁବ:* (ବିଂ.) : ଅପାରଗ

**ମାଉଦିଆ** - *କୋ:* (ବି.) : ବଦହଜମ, ପେଟ ଓଜନିଆ ଲାଗିବା ଭାବ

**ମାଉନ୍ଦା** - *ଗ:* (ବିଂ.) : ମାନ୍ଦା

**ମାଉର୍** - *ବର:* (ବି.) : ତାଳ ଖରଙ୍ଗାରୁ ବାହାର କରାଯାଉଥିବା ଏବଂ ଜଳରେ ଶୀଘ୍ର ନଷ୍ଟ ହେଉନଥିବା ସାମଗ୍ରୀ ବିଶେଷ

**ମାଉଲି** - *କୋ:* (ବି.) : ଆଦିବାସୀଙ୍କ ପୂଜିତ ଏକ ଦେବୀ

**ମାଉସି** - *ପ:* (ବି.) : ପନିକିର କାଠରେ ପଶିଥିବା ଲୁହା ଅଂଶ

**ମାଉସୀଶାଶୁ** - *କ:* (ବି.) : ସ୍ତ୍ରୀ ବା ସ୍ୱାମୀର ମାଉସୀ

**ମାଉଁସ** - *ଅନେ:* (ବି.) : ମାଂସ

**ମାଉଁସିଆ** - *ଅନେ:* (ବିଂ.) ମାଂସଳ, କୋମଳ

**ମାଏକି** - *ସୁ:ସୁବ:ସ:ନୂ:* (ବି.ଅ.) ମା ନାମରେ ରାଣ

**ମାଏଗଣିଆ** - *ସ:* (ବି.) : ସ୍ତ୍ରୈଣ

**ମାଏଝି** - *ସ:ବର:ସୁ:* (ବି.) : ସ୍ତ୍ରୀଲୋକ

**ମାଏଟ** - *ଅନେ:* (ବି.) : ମାଟି, ବେକାର

**ମାଏତର୍** - *ସୁ:* (ବି.) : ମିତ୍ର

**ମାଏଧମ୍** - *କଳା:* (ବିଂ.) : ମାଧମ

**ମାଏନ୍** - *ଝା:କଳା:ସୁ:* (ବି.) : ମାନ୍ୟ, ସମ୍ମାନ ପ୍ରଦର୍ଶନ, ମାନ୍ୟ, ସଂପର୍କ

**ମାଏନ୍ତା** - *ନୂ:* (ବି.) : ମାନନୀୟ

**ମାଏନ୍ଧାଏନ** - *ସ:* (ବି.) : ମାନସମ୍ମାନ

**ମାଏନ୍‌ବିଭାର୍** - *ସ:* (ବି.) : ମାନସମ୍ମାନ

**ମାଏନ୍‌ମନ୍** - *ବ:* (ବିଂ.) : ମନଇଚ୍ଛା

**ମାଏନ୍‌ମନ୍‌ସା** - *ଝା:ସୁ:* (ବି.ବିଂ.) : ମନଇଚ୍ଛା, ଯାହାକୁ ଯେତେ

**ମାଏପୋ** - *ସୁ:ସୁବ:ସ:* (ବି.) : ମାଇପି, ମାଏଝି, ପତ୍ନୀ, ସ୍ତ୍ରୀ

**ମାଏସୀ** - *ସ:କଳା:* (ବି.) : ମାଉସୀ

**ମାଓବାଦୀ** - *ସଂ:* (ବି.) : ମାଓପନ୍ଥୀ, ମାଓ ଦର୍ଶନରେ ବିଶ୍ୱାସୀ

**ମାକ୍** - *ଗୌ:* (ବି.) : ସମତଳ ଜମି

**ମାକ୍‌ଡିଆ** - *ସୁବ:* (ବି.) : କନ୍ଧ ଜାତିର ଏକ ଶାଖା, ଏମାନେ ମାଙ୍କଡ଼ ଖାଆନ୍ତି

**ମାକ୍‌ଡ଼ା** - *ମା:* (ବି.) : ବୁଢିଆଣୀ

**ମାକ୍‌ଡ଼ା ପଥର** - *ଦେ:* (ବି.) : ଏକପ୍ରକାର ନାଲି ଛିଦ୍ର ବହୁଳ ପଥର

**ମାକ୍‌ଡ଼ି** - *ଦା:ସ:* (ବି.ବିଂ.) : କର୍ଣ୍ଣ ଅଳଙ୍କାର ବିଶେଷ, ମାଈ ମାଙ୍କଡ଼

**ମାକ୍ନା** - *ନବ:* (ବିଂ.) : ନିଶ ନଥିବା ମଣିଷ

**ମାକଡ୍** - *ଅନେ:* (ବି.) : ମାଙ୍କଡ଼

**ମାକଡ୍ଓଲିଆ** - *କଳା:* (ବିଂ.) : ବାହାର ଶୁଖିଯାଇ ମଂଜରେ ସାମାନ୍ୟ ଓଦାଥିବା ଅବସ୍ଥା

**ମାକଡ କେନ୍ଦୁ** - *ସୁବ:* (ବି.) : ଏକ ପ୍ରକାର ବଡ଼ ଆକୃତିର କେନ୍ଦୁ

**ମାକଡ ଫାଶ** - *ସୁବ:* (ବି.) : କୂଅରେ ଗରା, ବାଲଟିରେ ପାଣି କାଢିବା ପାଇଁ ରଶିର ଫାଶ

**ମାକଡି** - *ଚା:* (ବି.) : କର୍ଣ୍ଣାଳଙ୍କାର ବିଶେଷ

**ମାକଡ୍ମୁହାଁ** - *ଅନେ:* (ବି.) : ଅସୁନ୍ଦରମୁହାଁ

**ମାକଡ଼ବିହା** - *ଅନେ:* (ବି.) : ଦାବାଗ୍ନି, ଜଙ୍ଗଲ ପୋଡ଼ି

**ମାକଡ଼ିଆପାଟ** - *ଚା:* (ବି.) : ଟସର ସୂତାରୁ ଓଲମାରା ମାକଡ଼ିଆ ଅଞ୍ଚଳରେ ଏହି ପାଟ ବୁଣାଯାଏ, ଏହା ଖୁବ୍ ଲୋକପ୍ରିୟ

**ମାକଳ** - *କେନ୍ଦୁ:* (ବି.) : ମାଙ୍କଡ଼

**ମାକଳମୁଣ୍ଡା ଧାନ** - *ଖୋ:କେନ୍ଦୁ:* (ବି.) : ସ୍ୱଳ୍ପ ମିଆଦୀ, ଶୁଙ୍କଯୁକ୍ତ ଧଳା ଧାନ

**ମାକାଡ଼ାକା** - *କଣ:* (ବି.) : ମାଙ୍କଡ଼

**ମାକିଡ଼ି** - *କେ:ସୁ:* (ବି.) କାନ ଫୁଲ, ଘରପାଟି ତଳେ ରହିବା ଗଣ୍ଡକାଠ

**ମାକୁ** - *ଦେ:* (ବି.) : ଲୁଗାବୁଣା ଯନ୍ତ୍ର

**ମାକ୍ରୁ** - *କଣ:* (ବି.) : ମାଙ୍କଡ଼

**ମାଖିନ** - *ଅନେ:* (ବି.) : ବୋଇତି କଖାରୁ

**ମାଖିବା** - *ଦେ:* (କ୍ରି.) : ମାଖିବା

**ମାଖନ୍ ଘଷନ** - *ସୁବ:* (କ୍ରି.) : ଶରୀରର ଅତ୍ୟାବଶ୍ୟକ ପ୍ରସାଧନ କରିବା

**ମାଖନପୁରୀ** - *ନ:* (ବି.) : ଏକପିଠା-ମଇଦା, ନଡ଼ିଆପୂର, ଘିଅ, ଚିନିରେ ପ୍ରସ୍ତୁତ

**ମାଖରା** - *ଗ:ଖୋ:* (ବି.ବିଂ.) : ନୁଖୁରା, ତୈଳହୀନ, ସ୍ୱାଦହୀନ

**ମାଖା** - *ଗ:* (ବିଂ.) : ବୋଳିବା, ଲେପନ କରିବା, ମୋଟାଲୋକ, ବହୁତ ଭଲ

**ମାଖାତେଲ** - *ଚା:* (ବି.) : ସୋରିଷ ତେଲ

**ମାଖିବା** - *ଅନେ:* (କ୍ରି.) ବୋଳିବା, ଲଗେଇବା

**ମାଖୁ** - *ଗ:କୋ:ଗଜ:* (ବି.) କାଠ ଯୋଡ଼ିବାର ଅଠା, ମୁଦ୍ରାର ମୁଣ୍ଡଥିବା ପାର୍ଶ୍ୱର ବିପରୀତ ପାର୍ଶ୍ୱ, ମୁହଁମାଡ଼ି ପଡ଼ିଥିବା କଉଡ଼ି

**ମାଖୁଣ୍ଡା, ମାଖୁନ୍ଦା** - *ନ:* (ବିଂ.) : ମୁହଁ ଶୁଖେଇ ବସିଥିବା, ଗୁଁ ହୋଇ ବସିରହିବା

**ମାଖୁନା** - *ଅନେ:* (ବିଂ.ବି.) : ଖାଲି ଖାଲି, ହାତରେ କିଛି ପଇସା ନଥିବା, ମାଗଣା, ନିର୍ଲୋମ ମୁଖମଣ୍ଡଳ, ନିଶା ଦାଢି ନଥିବା ବ୍ୟକ୍ତି, ବୀରତ୍ୱ ବିହୀନ, ଦାଢ ନଥିବା ଅସ୍ତ୍ର, ତୁଚ୍ଛା, ଅକାରଣ

**ମାଗନି** - *ସୁ:* (ବି.) : କନ୍ୟାମଗା

**ମାଗଣ** - *ଅନେ:* (ବି.) : ଏକ ପ୍ରକାର ତାସ୍‌ଖେଳ, ମାଗି କରି ଯିଏ ଚଳେ, ଚାନ୍ଦା ବା ଭେଦାମାଗିବା, ମାଗିବା

**ମାଗଣା** - *ନ:ଦେ:* (ବିଂ.) : ବିନାମୂଲ୍ୟର

**ମାଗତା** - *ଗ:ଖୋ:ଗଞ୍ଜ:ରା:* (ବି.ବିଂ.) : ଯାଚକ, ଯେ ମାଗଇ, ମାଗିଖିଆ

**ମାଗତିଆ** - *ଖୋ:* (ବିଂ.) : ଭିକାରୀ

**ମାଗଯାଚ** - *ଗ:* (କ୍ରି.) : ମାଗିବା

**ମାଗାଡ଼ୀ** - *ରା:* (ବି.) : ଆଳୁ ଜମି

**ମାଗାର** - *ଗଦ୍ୟ:* (ବି.) : ଗୋରକ୍ଷନାଥଙ୍କ ଦୀକ୍ଷିତ ସଂପ୍ରଦାୟ

**ମାଗିଖିଆ** - *ଅନେ:* (ବିଂ.) : ଯେ ମାଗିଖାଏ, ଭିକାରୀ, ଭିକ୍ଷାକରି ପେଟ ପୋଷିବା

**ମାଗିଯାଚି** - *ସ:* (କ୍ରି.ବିଂ.) : ଏଠୁସେଠୁ ସଂଗ୍ରହ କରି, ମାଗିଯାଚି

**ମାଗୁ** - *ରା:ମା:* (ବି.) : ବେଣ୍ଟ ଲଗାପାତ୍ର, ମଗ୍

**ମାଗୁଣି** - *ନ:* (ବି.) : ଜଣାଣ, ନିବେଦନ

**ମାଗୁଣିଆ** - *ନ:ଗ:* (ବିଂ.ବି.) : ଯେ ମାଗେ

**ମାଗୁରମୁହାଁ** - *ଅନେ:* (ବିଂ.) : ଚେପ୍‌ଟାମୁହାଁ

**ମାଗୁରା** - *କଳା:ଦେ:* (ବି.) : ମଡ଼ାଣି ବେଳେ ଅପେକ୍ଷାକୃତ ବିଳମ୍ବରେ ଝଡୁଥିବା ଲାଲ୍‌ରଂଗର ଦେଶୀ ବଡ଼ଧାନ, ମାଗୁର ମାଛ

**ମାଗୁର୍** - *କଳା:* (ବି.) : କାଦୁଅରେ ରହୁଥିବା କଣ୍ଟା, ନିଶଥିବା ମାଛ

**ମାଗୁର୍ ଗୁରା** - *କଳା:ନୂ:* (ବିଂ.) : ଇଷତ ଗୋରା (ପୁଂ ଲିଙ୍ଗରେ), ସାବନା

**ମାଗୁର୍ ଗୁରୀ** - *କଳା:ନୂ:* (ବିଂ.) : ଶ୍ୟାମଳୀ, କଳା ବା ଗୋରା ହୋଇନଥିବା ସ୍ତ୍ରୀଲୋକ ସାବର୍ଣ୍ଣ ନାରୀ

**ମାଘୀ** - *ଦେ:ଗ:* (ବି.) : ମାଘମାସରେ ଅମଳ ହେଉଥିବା ରାଶି

**ମାଘୀରଥ** - *ଚ:* (ବି.) : ମାଘମାସରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରଥରେ ବସି ଯାତ୍ରା କରିବାର ଏକ ବିଶେଷ ଉତ୍ସବ ଓଡ଼ିଶାର ରାଇବଣିଆ ଅଞ୍ଚଳରେ ଓ ମେଦିନୀପୁରର ଚକସିମୂଳିଆ ଓ ଦାନ୍ତନ୍ ଅଞ୍ଚଳରେ ଅନୁଷ୍ଠିତ ହୁଏ

**ମାଙ୍କଡସା** - *ଅନେ:* (ବି.) : ବୁଢିଆଣୀ, ଜାତୀୟ ପ୍ରାଣୀବିଶେଷ

**ମାଙ୍କଡାମି** - *ଅନେ:* (କ୍ରି.ବିଂ.) : ସୁନ୍ଦରକୁ ଅସୁନ୍ଦର କରିବା, ଜିନିଷ ଭାଂଗି ଦେବା, ନଷ୍ଟଭ୍ରଷ୍ଟ କରିବା

**ମାଙ୍କଡ଼ଚିତ୍** - *ଅନେ:* (କ୍ରି.ବିଂ.) : ତଳେ ଚିତ୍‌ହୋଇ ପଡ଼ିଯିବା, ଓଦା ସ୍ଥାନରେ ଫିମ୍ପି ମାରିବା

**ମାଙ୍କଡ଼ ଦାନ୍ତି** - *ନ:* (ବି.) : ଏକ ପ୍ରକାର ବରଗୁଡ଼ି, ଝୁଡଙ୍ଗ ପରି ଛୁଇଁ

**ମାଙ୍କଡ଼ଫାଶ** - *ନ:* (ବି.) ଗାମୁଛାକୁ ଗୋଟାଏ ପଟର ଦୁଇ ମୁଣ୍ଡକୁ ଧରି ଗଣ୍ଠି ପକାଇବା

**ମାଙ୍କଡ଼ା** - *ନ:* (ବି.) ଏକ ପ୍ରକାର ଲାଲରଙ୍ଗର ପଥର

**ମାଙ୍କଡ଼ାସାରୁ** - *କ:* (ବି.) : ସାରୁବିଶେଷ

**ମାଙ୍କର** - *ଅ:* (ବି.) : ମାଙ୍କଡ଼

**ମାଙ୍କଲାସ୍** - *ମ:* (ବି.) : ବୁଦ୍ଧିଆଣି

**ମାଙ୍କିଡ଼ି** - *ଭ:* (ବି.) : କାନପିନ୍ଧା ଅଳଙ୍କାର ବିଶେଷ

**ମାଙ୍କୁଆ** - *କ:* (ବି.) : ମୁର୍ଦାରବାହୀ

**ମାଙ୍କେଡ଼ିଆ** - *କ:* (ବିଂ.) : ଏକପ୍ରକାର ସାରୁ

**ମାଙ୍ଗ** - *ଅନେ:* (ବି.) : ମୁଣ୍ଡକୁଣ୍ଡାଇ କେଶକୁ କୁଞ୍ଚକରି ଭାଙ୍ଗିବା

**ମାଙ୍ଗଟ** - *କୋ:ଗଞ:ଗ:* (ବି.କ୍ରି.ବିଂ.) : ପ୍ରତିକଥାରେ ବିରୋଧ କରୁଥିବା ବ୍ୟକ୍ତି, ମନା କରିବା, ଅଳସୁଆ

**ମାଙ୍ଗନ୍** - *କଳା:* (କ୍ରି.) : ମାଗିବା ଦ୍ରବ୍ୟ

**ମାଙ୍ଗଲି** - *ସ:* (ବି.) : ଝୋଟ କାମ କରୁଥିବା ଲୋକ

**ମାଙ୍ଗାପାତି** - *ଭା:* (ବି.) : ଜୁଆଖେଳ

**ମାଙ୍ଗିଖଇ** - *କନ୍ଧ:* (ବି.) : ମାଗିଖିଆ

**ମାଙ୍ଗୁର** - *ନୁ:* (ବି.) : ମାଗୁର ମାଛ

**ମାଚ୍** - *ମ:ନବ:* (ବି.) : ମାଛ

**ମାଚା** - *ମା:ଭା:* (ବି.) : କ୍ଷେତରେ ଥିବା ମଞ୍ଚା, ବିବର୍ଣ୍ଣ

**ମାଚିସ୍** - *ଅନେ:* (ବି.) : ଦିଆସିଲି

**ମାଛ** - *ଅନେ:* (ବି.) : ମୀନ, ମତ୍ସ୍ୟ

**ମାଛଆଖିଆ** - *ନ:ଦେ:* (ବି.) : ପାଦ ବା ହାତ ଯନ୍ତ୍ରଣାଯୁକ୍ତ ଘା, ତଳିପାରେ ହେଉଥିବା କଷ୍ଟପ୍ରଦ ରୋଗ

**ମାଛକଣ୍ଟା** - *ଗ:କ:* (ବି.) ଏକପ୍ରକାର ଧାନର ନାମ, ଧାନକିସମ

**ମାଛଡୁଙ୍ଗି** - *ଗ:* (ବି.) : ଛୋଟନୌକା

**ମାଛରଙ୍କା** - *ଅନେ:* (ବି.) : ମାଛ ଖାଉଥିବା ଏକ ପ୍ରକାର ପକ୍ଷୀ, ଏକ ଶିକାରୀପକ୍ଷୀ ଯିଏ ମାଛ ମାରେ

**ମାଛି** - *ଗଦ୍ୟ:ଦେ:* (ବି.) : ନାକରେ ପିନ୍ଧା ଅଳଙ୍କାର, ପତଙ୍ଗ ବିଶେଷ, ବନ୍ଧୁକ ନଳୀ ଥିବା କଣ୍ଟା

**ମାଛି ଅନ୍ଧାର୍** - *କଳା:* (ବି.) : ସୂର୍ଯ୍ୟାସ୍ତ ପରେ ରାତ୍ରିର ପୂର୍ବାବସ୍ଥା

**ମାଛିଆପାତକ** - *ନ:* (ବି.) : ଘାଆରେ ମାଛିବସି ପୋକ ସୃଷ୍ଟି ହେବା

**ମାଛି ଉଡ଼ିବା** - *ଅନେ:* (କ୍ରି.) : ନିଶବ୍ଦ ପରିବେଶ, ନିର୍ଜନ ହେବା

**ମାଛିଖଣ୍ଡ ହେବା** - *ଗ:* (କ୍ରି.) : ଅତ୍ୟନ୍ତ କଠିନ ପରିସ୍ଥିତି

**ମାଜଘସ** - *କେନ୍ଦୁ:* (ବି.) : ବାସନ କୁସନ

**ମାଜଣା** - *ଅନେ:* (ବି.) : ମାର୍ଜନା, ଠାକୁରଙ୍କୁ ଏକପ୍ରକାର ସେବା, ସ୍ନାନ କରାଇବା

**ମାଜା** - *ବର:* (ବି.) : ପିଜୁଳି

**ମାଜିଷ୍ଟର** - *ନ:* (ବି.) : ମାଜିଷ୍ଟ୍ରେଟ

**ମାଜୁ** - *କନ୍ଧ:* (ବି.) : ସମ୍ବର

**ମାଢେନ** - *ସୁ:* (ବି.) : କ୍ଷାର

**ମାଝଲି** - *ଭ:* (ବି.) : ମଧ୍ୟମ ଧରଣର

**ମାଝି** - *ଗଦ୍ୟ:ଦେ:ଗ:* (ବି.) : ଗାଁ ପ୍ରଧାନ, ନାଉରିଆ ନାବିକ, ପାଇକ

**ମାଝି ସାମନ୍ତ** - *ଗ:* (ବି.) : ନୌରକ୍ଷକ, ବନ୍ଦରାଧକ୍ଷ, ରାଜତନ୍ତ୍ରର ଉପାଧି ବିଶେଷ

**ମାଞ୍ଚି** - *ଗଜ:* (ବିଂ.ବି.) : ଉତ୍କୃଷ୍ଟ, ଭଲ, ଅଳ୍ପ ଉଚ୍ଚର କାଠତିଆରି ଆସନ

**ମାଞ୍ଚିଆ** - *ଅନେ:* (ବି.) : ଅଳ୍ପଉଚ୍ଚ ଚଉକି

**ମାଞ୍ଜାଦେବା** - *ଅନେ:* (କ୍ରି.) ଅଠା ଓ କାଚଗୁଣ୍ଡ ମିସାଇ ଗୁଡ଼ିର ସୂତାରେ ଲେପଦେବା

**ମାଟ୍** - *କଳା:* (ବି.) : ମାଟି

**ମାଟ୍‌ରୀ** - *ବୌ:* (ବି.) : କଣ୍ଟା ବିହୀନ ଗୋଲ ମାଛ

**ମାଟା** - *ଗଜ:* (ଅ.) : ପୁଣି

**ମାଟାକୁସା** - *କଉ:* (ବି.) : କୋଶଳା ଶାଗ ତରକାରି

**ମାଟିଆ** - *ନ:* (ବିଂ.ବି.) : ରଙ୍ଗ, ଖାକି, ଯେଉଁମାନେ ମାଟିଖୋଳା କାମ କରିନ୍ତି

**ମାଟିଆ ବୃକ୍ଷ** - *କେନ୍ଦୁ:* (ବି.) : କଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ମାଟିଆଳୁ** - *କ:* (ବି.) : ଦେଶୀ ଆଳୁ

**ମାଟିଆ ସେଲୁରୀ** - *କେନ୍ଦୁ:* (ବି.) : କଳା ରଙ୍ଗର ସ୍ୱଳ୍ପ ମିଆଦି ଧାନ

**ମାଟିକନ୍ଦା** - *ନବ:କୋ:* (ବି.) : ଖମ୍ବଆଳୁ

**ମାଟି କୁଷା କୁଡ଼ି** - *କଉ:* (ବି.) : ହାତକୋଡ଼ି

**ମାଟି ଚିକନ** - *କୋ:ନବ:* (ବି.) : କିରାସିନି

**ମାଟିତେଲ** - *ଅନେ:* (ବି.ବିଂ.) : କିରୋସିନି

**ମାଟିଦେବା** - *ସୁ:* (କ୍ରି.) : ଶବ ପୋତିବା

**ମାଟିବିରାଡ଼ି** - *ନ:ଖୋ:ଗଦ୍ୟ:* (ବି.) ବିଷହୀନ ସର୍ପ, ଏକ ବିଷହୀନ ସରୀସୃପ

**ମାଟିବୁରୁଣା ସାପ** - *ବ୍ୟ:* (ବି.) : ମାଟିବିରୁଡି ସାପ

**ମାଟିରୁଖା** - *ନ:* (ବି.) : ମାଟିରେ ତିଆରି ଦୀପ ରଖିବା ଦ୍ରବ୍ୟ

**ମାଟିହେବା** - *ଅନେ:* (କ୍ରି.) : ନଷ୍ଟହେବା

**ମାଟୁ** - *କଳା:ଭ:* (ବି.) : ଜନ୍ତୁ ଶିକାର ପାଇଁ ଗଛ ଉପରେ ନିର୍ମିତ ଭାଡ଼ି, ଚାଳତଳ ଛାତ

**ମାଟୁଲା** - *ସୁବ:* (ବି.) : କାତି ନ ଥିବା ଧଳା ପଙ୍କମାଛ, ଏହା ପାଣିରେ ବାଲି ଉପରେ ଗଡିକରେ

**ମାଠ** - *ଅନେ:* (ବି.) : ଟସରରୁ ତିଆରି ମୋଟାବସ୍ତ୍ର, ଶୀତ ଲୁଗା, ମଣିବନ୍ଧରେ ପିନ୍ଧୁଥିବା ପିତଳ ଖଡୁ, ପଡ଼ିଆ, ଘଷିପିଟି ଚିକ୍କଣ କରିବା

**ମାଠଗୁଣା** - *ଗ:* (ବି.) : ନାସିକା ଅଳଙ୍କାର ବିଶେଷ

**ମାଠଲି** - *ସୁବ:* (ବି.) : ଛୋଟ ମାଠିଆ

**ମାଠିଆ** - *ଦେ:ଛ:* (ବି.) : ମାଟିର କୁମ୍ଭ, ବଡ଼ ମାଟି ଆଧାର

**ମାଠିନି** - *ଭ:* (ବି.) : ସିମେଣ୍ଟ ଲେପ

**ମାଠିବା** - *ଅନେ:* (କ୍ରି.) : ଚିକ୍କଣ କରିବା, ପାଲିସ କରିବା, ଶୁଣ୍ଡକରିବା

**ମାଠୁଲ** - *ସୁ:କଳା:* (ବି.ବିଂ.) : ଛୋଟ ମାଠିଆ, ଅପେକ୍ଷାକୃତ ମୋଟା ବାଂଗ୍ରା

**ମାଠେଇବା** - *ନ:* (କ୍ରି.) : ମଠକରିବା, ଧୀରେଧୀରେ କାର୍ଯ୍ୟ କରିବା

**ମାଠେଣି** - *ଗଦ୍ୟ:* (ବି.) : ପରିପାଟି, ଚିକ୍କଣ କରିବା

**ମାଡ୍‌ପିଟ୍** - *ଅନେ:* (ବି.) : ପରସ୍ପର ମରାମରି ହେବା

**ମାଡଗଲ** - *ରା:ମା:* (ବି.) : ଗଣ୍ଡଗୋଳ, ମାଡ଼ଗୋଳ

**ମାଡଦଳି ସାପ** - *ଖୋ:କେନ୍ଦୁ:* (ବି.) : ଏହାର ଅନ୍ୟ ନାଁ ମାଟିବିରାଡି, କାନନଳ ସାପ

**ମାଡେନ୍** - *କଳା:* (ବି.) : କୁଦିବା କାଠ, ଛେଚିବା କାଠ

**ମାଡ୍ଖିଆ** - *ଦେ:* (ବିଂ.) : ମାଡୁଆ, ମାଡ଼ ଖାଇବାର ଯୋଗ୍ୟ

**ମାଡ୍ନଣି** - *କୋ:* (ବି.) ବେଙ୍ଗଲା, ଶସ୍ୟଅମଳର ଏକ ପ୍ରକ୍ରିୟା

**ମାଡ୍ବାଙ୍ଗା** - *କୋ:* (ବି.) : ସବୁଜ ପରିବା ବିଶେଷ

**ମାଡ଼ତା** - *ରା:* (ବି.) : ଭାଙ୍ଗ

**ମାଢ଼ବା** - *ସୁ:* (କ୍ରି.) : ମାଡ଼ିବା, ଦଳିବା

**ମାଢ଼ମରଦନ** - *ସୁ:ସ:* (ବି.) : ମାଡ଼ପିଟ୍ ହେବା

**ମାଢ଼ା** - *ମ:ଯା:କଣ:* (ବି.) : ବେଙ୍ଗଲା, ଆଦିବାସୀଙ୍କ ଦଶାହ

**ମାଢ଼ିଦଲି** - *ସ:* (ବି.) : ମନଇଛା ପିନ୍ଧିବା, ଦଳାଚକଟା

**ମାଢ଼ିବା** - *ଅନେ:* (କ୍ରି.) : କୁଦିବା, ବିନା ବାଧାରେ ବହିଯିବା, ଆଗେଇଯିବା

**ମାଢ଼ିଯିବା** - *କଳା:* (କ୍ରି.) : ଜରୁରୀ କାର୍ଯ୍ୟରେ ଯଥାଶୀଘ୍ର ଯିବା

**ମାଢ଼େ** - *ଚ:* (ଅ.) : ବୋଧହୁଏ

**ମାଢ଼େକାଲା** - *ପୁ:* (ବି.ବିଂ.) : ଶୁଣି ନ ଶୁଣିବା ପରି ରହୁଥିବା ବ୍ୟକ୍ତି

**ମାଢ଼େନ୍** - *ଖ:ସ:ଚ:* (ବି.) : ବେଙ୍ଗଲା, ଧାନ ମଡ଼ାଇବା ବେଙ୍ଗଲା, ଧାନ ଇତ୍ୟାଦି ଶସ୍ୟକୁ ବଳଦମାନଙ୍କ ସାହାଯ୍ୟରେ ମଡ଼ାଇବା, ଅମଳ କରିବା

**ମାଢ** - *ଛ:ଗ:ପୁ:* (ବି.) : ପରିମାଣ, ସୁନା ଓଜନର ଏକକ

**ମାଢି** - *ଅନେ:* (ବି.) : ଯେଉଁ ମାଂସ ଖଣ୍ଡ ଉପରେ ଦାନ୍ତ ଥାଏ, ପଦ୍ମ ଓ କଇଁର କନ୍ଦା

**ମାଢିଆ** - *ଯା:ଚା:* (ବି.) : ବଡ଼କୁଣ୍ଡ(ନହିଆ), ମାଣ୍ଡିଆ, ଗାମଲା, ପିତଳ ପାତ୍ର, ହଣ୍ଡା

**ମାଣ** - *ଅନେ:* (ବି.ବିଂ.) : କେତେକାଞ୍ଚଳରେ ୧/୪ ଏକର, ଅନ୍ୟ କେତେ ଅଞ୍ଚଳରେ ଏକ ଏକର, ସେରକଠା, ବେତ ତିଆରି ଛୋଟ ମାପିବା ଯନ୍ତ୍ର, ଚାରିଅଡ଼ା ପରିମାଣ ମାପକ

**ମାଣଖୁଣ୍ଟି** - *କ:* (ବି.) : ଚକି ମଝିରେ ଥିବା ଛୋଟ କାଠ

**ମାଣଗଭଣି** - *କୋ:* (ବିଂ.) : ମାର୍ଗଶୀର ଗୁରୁବାରରେ ଲକ୍ଷ୍ମୀ ପୂଜାରେ ବ୍ୟବହୃତ ସ୍ୱତନ୍ତ୍ର ଧରଣର ଟୋକେଇ

**ମାଣସାରୁ** - *ଛ:ନ:* (ବି.) : ଏକପ୍ରକାର ବଡ଼ ସାରୁ

**ମାଣା** - *ଗା:* (ବି.) : ୫କେଜିର ଚାଉଳ

**ମାଣିଆବନ୍ଧୀ** - *ନ:* (ବିଂ.) : କଟକ ଜିଲ୍ଲାର ଆଠଗଡ଼ ନିକଟବର୍ତ୍ତୀ ମାଣିଆବନ୍ଧ ଅଞ୍ଚଳରେ ତିଆରି ଶାଢି

**ମାଣୁଆ କଙ୍କଡ଼ା** - *ଛ:* (ବି.) : ଛୋଟ କଙ୍କଡ଼ା

**ମାଣ୍ଡୁ** - *କ:* (ବି.) : ଆଣ୍ଡୁ, ଚାଳଘର କାନ୍ଥ ଉପରେ ବାଉଁଶ ମାଟିର ଛାତ ଯାହା ଉପରେ ଆଉ ଏକ ଘର ଥାଏ

**ମାଣ୍ଡେଇବା** - *ଗଦ୍ୟ:* (କ୍ରି.) : ମଠ କରିବା, ଘଗିତ କରିବା, କୌଣସି କାର୍ଯ୍ୟ ଧୀରେ ଧୀରେ କରିବା

**ମାଣ୍ଡକିଲ୍ଲା** - *ଗ:* (ବି.) : ଶଗଡ଼ ଦଣ୍ଡା ଓ ମାଣ୍ଡୁକୁ ଯୋଡ଼ିବା କିଲା

**ମାଣ୍ଡବା** - *ମ:* (ବି.) : ମାଡ଼ିବା

**ମାଣ୍ଡରୁ** - *କୋ:* (ବିଂ.) : ଲାଲମୁହିଁ

**ମାଣ୍ଡା** - *ଗ:* (ବି.) : ହାତ ପାପୁଲିର ଉପର ଅଂଶ

**ମାଣ୍ଡି** - *ଅନେ:* (ବି.) : ତକିଆ, ପେଣ୍ଡା, ପିତଳର ଛୋଟ ହାଣ୍ଡିପାତ୍ର, ଗେଡ଼ି

**ମାଣ୍ଡିଆ** - *ଅନେ:* (ବି.) : ଶସ୍ୟ ବିଶେଷ, ତସଲା, ପିତଳ/ଆଲୁମୁନିୟମର ଗୋଲାକାର ତଳ ଅଳ୍ପ ଓସାର ଉପର ଚଉଡ଼ା ପାତ୍ର

**ମାଣ୍ଡିଆ କଙ୍କଡ଼ା** - *ସଂ:* (ବି.) : ବୁଢାକଙ୍କଡ଼ା

**ମାଣ୍ଡୁ** - *ଦେ:ଖୋ:ନ:କଳା:* (ବି.) : କଷିତାଳ, ପାକଳ ହୋଇଥିବା କଇଁ ବା ପଦ୍ମଫୁଲର ମଞ୍ଜି, ଶଗଡ଼ ଦଣ୍ଡାର ତଳ ଅଂଶରେ ଲାଗିଥିବା କାଠଖଣ୍ଡ

**ମାଣ୍ଡୁରି** - *ଗ:* (ବି.) ପୃଥୁଳ ଶରୀର, କମଉଚା ସ୍ତ୍ରୀ

**ମାଣ୍ଡୁଲୁ** - *ଗା:* (ବି.) : ପଖାଳ

**ମାତ୍** - *ନୂ:* (ବି.) : ନିଶା

**ମାତ୍‌କମ** - *ମ:* (ବି.) : ମହୁଲ

**ମାତ୍‌ପୁରୀ** - *ନ:* (ବି.) : ଉତ୍ପାତ

**ମାତ୍‌ବର** - *ଗୌ:* (ବି.) : ବଡ଼, ଧନୀ

**ମାତ୍‌ବା** - *ଦେ:* (ବି.) : ଭୋଳହେବା

**ମାତ୍‌ରା** - *କୋ:ନବ:* (ବି.) : ଔଷଧ ବଟିକା

**ମାତ୍‌ଲାମି** - *ଗଦ୍ୟ:* (ବି.) ପାଗଳାମି, ମାତାଲର କାର୍ଯ୍ୟକଳାପ

**ମାତବରିଆ** - *ଗଦ୍ୟ:* (ବିଂ.) : ମଜ୍ଜାଳିଆ

**ମାତରଙ୍ଗ** - *ଗଞ୍ଜା:ଗ:* (ବି.) : ନାରଙ୍ଗ, ଖଟା କମଳାପରି ଫଳ

**ମାତର୍** - *କଳା:ନୂ:* (ଅ.) : ମାତ୍ର, କିନ୍ତୁ

**ମାତର୍କର୍** - *କଳା:* (ଅ.) : ମାତ୍ରକ, ମାତ୍ର

**ମାତା** *ଅନେ:* (ବି.) : ମଠରେ ଦୀକ୍ଷା ଗ୍ରହଣ କରିଥିବା ମହିଳା

**ମାତାମ୍** - *ଗ:* (ବି.) : ସର୍ବମୋଟ

**ମାତିକରିଆ** - *ଗ:* (ବି.) : ମୋଟାଲୁଗା

**ମାତିବା** - *ଅନେ:* (କ୍ରି.) : ପାଗଳପ୍ରାୟ, ଉନ୍ମତ୍ତହେବା

**ମାତ୍ର** - *ଅନେ:* (ଅ.) ପରିମାଣର ସୀମାସୂଚକ, କିନ୍ତୁ

**ମାତ୍ରକେ** - *ଅନେ:* (ଅ.) : କ୍ଷଣି, ତତ୍କ୍ଷଣେ

**ମାତ୍ରା** - *ଅନେ:* (ବି.) : ଅନୁପାନ, ପରିମାଣ

**ମାଥିବର** - *କୌ:ଝା:* (ବି.) : ଥିଲାଘର, ଧନୀଘର

**ମାଦକ** - *ଅନେ:* (ବି.) : ନିଶା

**ମାଦନ୍** - *ଅ:* (ବି.) : ଏକ ପ୍ରକାର ଗଛ

**ମାଦଲ୍** - *କଳା:କୌ:* (ବି.) : ମାଦଳ, ବାଦ୍ୟ ବିଶେଷ

**ମାଦଳ** - *ଅନେ:* (ବିଂ.ବି.) : ଖୋଳ ବାଦ୍ୟ, ହସ୍ତପଦ ବିହୀନ ଲୋକ, ପଙ୍ଗୁ

**ମାଦଳା** - *ଗ:ନ:* (ବି.) : ହସ୍ତପଦ ବିହୀନ (ଲୋକ), ମାଦଳ ପରି

**ମାଦଳି** - *ଚ:* (ବି.) : ଡେଉଁରିଆ

**ମାଦାକାଲୁ** - *କନ୍ଧ:* (ବି.) : ସଲପମଦ

**ମାଦାଙ୍ଗି** - *କନ୍ଧ:* (ବି.) : ଦ୍ୱିପହର

**ମାଦାଲ** - *ମ:* (ବି.) : ଆତ

**ମାଦୁ** - *ଗା:* (ବି.) : ବାଳମୂଳିଆ, ବ୍ରଣ, ଶରୀରରେ ଫୁଲିଥିବା ମାଂସ ପିଣ୍ଡୁଳା, ଆବୁ

**ମାଧୂକି** - *ଦେ:* (ବି.) : ମହୁଲିମଦ

**ମାନ** - *ଅନେ:* (ବି.ଅ.କ୍ରି.) : ସମ୍ମାନ, ଅଧା କିଲୋ ମାପିବା ପାଇଁ ପାତ୍ର, ଶୁଳା, ମାଣ, ଚାରିଅଡ଼ା ପରିମାଣ, ତୁମ୍ବି, ବହୁବଚନ ପ୍ରତ୍ୟୟ, ସ୍ୱୀକାର କରିବା

**ମାନ୍ତା** - *କଳା:ନୂ:* (ବି.ବିଂ.) : ଆତିଥ୍ୟ, ଅତିଥିର ସତ୍କାର

**ମାନ୍ମହତ୍** - *ଅନେ:* (ବି.) : ସମ୍ମାନ, ଇଜତ୍

**ମାନ୍ସନ୍** - *କଳା:* (କ୍ରି.) : ମାନନ୍ତି, ପାଳନ କରନ୍ତି

**ମାନତି** - *କ:* (ବିଂ.) : ସମ୍ମାନ, ଗୁରୁଜନଙ୍କୁ ଭକ୍ତି

**ମାନନ** - *ଦେ:* (ବି.) : ମାନ୍ୟ କରିବା

**ମାନନା** - *ନ:ଛ:* (ବିଂ.) ସମ୍ମାନନୀୟ (ଲୋକ), ମାନ୍ୟ

**ମାନସିକ** - *ଅନେ:* (ବି.କ୍ରି.) : ଠାକୁରଙ୍କ ପାଖରେ ଯାଚନା କରିବା

**ମାନହାନି** - *ଅନେ:* (ବି.) : ମାନନାଶକ, ଅସମ୍ମାନଜନକ

**ମାନାଇ** - *ନବ:* (ବି.) : ମଣିଷ

**ମାନି** - *ଗ:ଦେ:* (ବି.) : ଜଣକ ପାଇଁ ଆଉ ଜଣେ ବନ୍ଧା ପଡ଼ିବା

**ମାନିତ** - *ଜ:* (ବି.) : ସମ୍ମାନିତ

**ମାନିବା** - *ନ:ନୁ:* (କ୍ରି.) : କଥା ରଖିବା, ସ୍ୱୀକାର କରିବା

**ମାନିଁଆ** - *ଗଦ୍ୟ:* (ଅ.) : ସମପରିମାଣ ସୂଚକ

**ମାନୀ** - *ଛେ:* (ବିଂ.) ସମ୍ମାନାସ୍ପଦ, ମାନଯୋଗ୍ୟ

**ମାନେ** - *ସୁ:ନୁ:ଜଳା:ନ:* (ଅ.ବି.) : ବହୁବଚନ ପ୍ରତ୍ୟୟ, ଅର୍ଥ, କଥାରଖିବା, ସ୍ୱୀକାର କରିବା

**ମାନେକ୍** - *ଜଳା:* (ବିଂ.) : ଏକମାଣ ପରିମିତ

**ମାନେପୁର** - *ଜଳା:* (ବି.) : ମର୍ତ୍ତ୍ୟପୁର

**ମାନ୍ଦଲ୍** - *ଜଳା:* (ବି.) ମାଦଲ, ଗଣ୍ଡମାନଙ୍କର ବାଦ୍ୟ ବିଶେଷ

**ମାନ୍ଦା** - *ଅନେ:* (ବିଂ.) ଅଳସୁଆ, ଧୀରଗାମୀ, ଯିଏ ଚଞ୍ଚଳ ନୁହେଁ

**ମାନ୍ଦିଲି ପେଡ଼ି** - *ଗ:* (ବି.) : କାରୁକାର୍ଯ୍ୟ ଖଚିତ ସିନ୍ଧୁକ

**ମାନ୍ଦୁ** - *ରା:ମା:* (ବି.) : ଔଷଧ, ମଦ

**ମାନ୍ଧାତା ଅମଳ** - *ଅନେ:* (ବି.) : ବହୁ ଅତୀତର ପ୍ରସଙ୍ଗ ବହୁପୁରୁଣା

**ମାନ୍ୟ** - *ଜ:* (ବିଂ.ବି.) : ସମ୍ମାନ, ସମ୍ମାନିତ, ସମ୍ମାନଯୋଗ୍ୟ

**ମାପ** - *ଗ:ନ:* (ବି.) : ପରିମାଣ, ଓଜନ, ତଉଲ

**ମାପିଜୁଝି** - *ସ:* (ବି.) : କଟକଣା କରିବା

**ମାପୁଣି** - *ଜ:ଗ:* (ବି.) : ଯେ ଧାନ ମାପେ, ମାପିବା

**ମାପ୍ରୁ** - *ମା:* (ବି.) : ମହାପ୍ରଭୁ

**ମାଫ** - *ଅନେ:* (ବି.) : କ୍ଷମା

**ମାଫ୍ଲାର୍** - *କୋ:* (ବି.) : ମଫଲର, ଥଣ୍ଡା ରୋଧକ ମୁଣ୍ଡ ଓ ବେକରେ ବ୍ୟବହୃତ ଲମ୍ବାଳିଆ ବସ୍ତ୍ର ବିଶେଷ

**ମାଫି** - *ଅନେ:* (ବି.ବିଂ.) : ମୁକ୍ତି, ଅବ୍ୟାହତି, ସ୍ୱାଧୀନତା ପୂର୍ବରୁ ରାଜା, ମହାରାଜା ବା ଜମିଦାରଙ୍କ ଦ୍ୱାରା ପ୍ରଦତ୍ତ ନିଷ୍କର ଜମି, ମାଫ, ମାଗଣା

**ମାଫିଆ** - *ସ:* (ବିଂ.) : ଦଲାଲ୍, ଅବୈଧ ଭାବେ ଅଧିକାର ସାବ୍ୟସ୍ତ କରିବା (ବ୍ୟକ୍ତି)

**ମାମ୍ଲ** - *ଦେ:* (ବି.) : ମାମଲା, ବ୍ୟାପାର

**ମାମ୍ଲି** - *ନୁ:* (ଅ.) : ମଧ୍ୟମ

**ମାମଲ** - *ଅ:ଗଦ୍ୟ:* (ବି.) : ଲମ୍ବ ଘାସ

**ମାମଲକ୍ଦାର** - *ଅନେ:* (ବି.) : ଲୋକଙ୍କ ମଧ୍ୟରେ ପ୍ରଭାବଶାଳୀ ବ୍ୟକ୍ତି

**ମାମଲା** - *ଅନେ:* (ବି.) : ମୋକଦ୍ଦମା

**ମାମା** - *ଅନେ:* (ବି.) : ମାଆଙ୍କ ଭାଇ, ମାମୁ, ବଡ଼ ମାଆ, ଜେଜେମା, ମାଁ

**ମାମୁ ବୁଢୀ** - *କେନ୍ଦୁ:* (ବି) : ଆଈ

**ମାମୁଲ୍** - *କୋ:ଗଦ୍ୟ:* (ବିଂ.ବି.) : ଅତି ସାଧାରଣ, ମାମୁଲି, ପାଉଣା, କାଟ, ମାହାସୁଲ

**ମାନି** - *ଗ:ଦେ:* (ବି.) : ଜଣକ ପାଇଁ ଆଉ ଜଣେ ବନ୍ଧା ପଡ଼ିବା

**ମାନିତ** - *ଛ:* (ବି.) : ସମ୍ମାନିତ

**ମାନିବା** - *ନ:ନୂ:* (କ୍ରି.) : କଥା ରଖିବା, ସ୍ୱୀକାର କରିବା

**ମାନିଁଆ** - *ଗଦ୍ୟ:* (ଅ.) : ସମପରିମାଣ ସୂଚକ

**ମାନୀ** - *ଢେ:* (ବିଂ.) ସମ୍ମାନାସ୍ପଦ, ମାନଯୋଗ୍ୟ

**ମାନେ** - *ଦୁ:ନୂ:କଳା:ନ:* (ଅ.ବି.) : ବହୁବଚନ ପ୍ରତ୍ୟୟ, ଅର୍ଥ, କଥାରଖିବା, ସ୍ୱୀକାର କରିବା

**ମାନେକ୍** - *କଳା:* (ବିଂ.) : ଏକମାଣ ପରିମିତ

**ମାନେପୁର** - *କଳା:* (ବି.) : ମର୍ତ୍ତ୍ୟପୁର

**ମାନ୍ଦଲ୍** - *କଳା:* (ବି.) ମାଦଲ, ଗଣ୍ଡମାନଙ୍କର ବାଦ୍ୟ ବିଶେଷ

**ମାନ୍ଦା** - *ଅନେ:* (ବିଂ.) ଅଳସୁଆ, ଧୀରଗାମୀ, ଯିଏ ଚଞ୍ଚଳ ନୁହେଁ

**ମାନ୍ଦିଲି ପେଡ଼ି** - *ଗ:* (ବି.) : କାରୁକାର୍ଯ୍ୟ ଖଚିତ ସିନ୍ଦୁକ

**ମାନ୍ଦୁ** - *ରା:ମା:* (ବି.) : ଔଷଧ, ମଦ

**ମାନ୍ଧାତା ଅମଳ** - *ଅନେ:* (ବି.) : ବହୁ ଅତୀତର ପ୍ରସଙ୍ଗ ବହୁପୁରୁଣା

**ମାନ୍ୟ** - *ଛ:* (ବିଂ.ବି.) : ସମ୍ମାନ, ସମ୍ମାନିତ, ସମ୍ମାନଯୋଗ୍ୟ

**ମାପ** - *ଗ:ନ:* (ବି.) : ପରିମାଣ, ଓଜନ, ତଉଲ

**ମାପିକୁଖି** - *ସ:* (ବି.) : କଟକଣା କରିବା

**ମାପୁଣି** - *ଛ:ଗ:* (ବି.) : ଯେ ଧାନ ମାପେ, ମାପିବା

**ମାପ୍ରୁ** - *ମା:* (ବି.) : ମହାପ୍ରଭୁ

**ମାଫ** - *ଅନେ:* (ବି.) : କ୍ଷମା

**ମାଫ୍‌ଲାର୍** - *କୋ:* (ବି.) : ମଫଲର, ଥଣ୍ଡା ରୋଧକ ମୁଣ୍ଡ ଓ ବେକରେ ବ୍ୟବହୃତ ଲମ୍ବାଳିଆ ବସ୍ତ୍ର ବିଶେଷ

**ମାଫି** - *ଅନେ:* (ବି.ବିଂ.) : ମୁକ୍ତି, ଅବ୍ୟାହତି, ସ୍ୱାଧୀନତା ପୂର୍ବରୁ ରାଜା, ମହାରାଜା ବା ଜମିଦାରଙ୍କ ଦ୍ୱାରା ପ୍ରଦତ୍ତ ନିଷ୍କର ଜମି, ମାଫ, ମାଗଣା

**ମାଫିଆ** - *ସ:* (ବିଂ.) : ଦଲାଲ୍, ଅବୈଧ ଭାବେ ଅଧିକାର ସାବ୍ୟସ୍ତ କରିବା (ବ୍ୟକ୍ତି)

**ମାମ୍‌ଲ** - *ଦେ:* (ବି.) : ମାମଲା, ବ୍ୟାପାର

**ମାମ୍‌ଲି** - *ନୂ:* (ଅ.) : ମଧ୍ୟମ

**ମାମଲ** - *ଅ:ଗଦ୍ୟ:* (ବି.) : ଲମ୍ବ ଘାସ

**ମାମଲକ୍ତାର** - *ଅନେ:* (ବି.) : ଲୋକଙ୍କ ମଧ୍ୟରେ ପ୍ରଭାବଶାଳୀ ବ୍ୟକ୍ତି

**ମାମଲା** - *ଅନେ:* (ବି.) : ମୋକଦ୍ଦମା

**ମାମା** - *ଅନେ:* (ବି.) : ମାଆଙ୍କ ଭାଇ, ମାମୁ, ବଡ଼ ମାଆ, ଜେଜେମା, ମାଁ

**ମାମୁ ବୁଢୀ** - *କେନ୍ଦୁ:* (ବି) : ଆଈ

**ମାମୁଲ୍** - *କୋ:ଗଦ୍ୟ:* (ବିଂ.ବି.) : ଅତି ସାଧାରଣ, ମାମୁଲି, ପାଉଣା, କାଟ, ମାହାସୁଲ

**ମାମୁଲି** - *ଗା:ନ:କେ:ଦେ:* (ବିଂ.ବି.) : ଗୁରୁତ୍ୱହୀନ, ସାଧାରଣ, ସହଜିଆ କଥା

**ମାମୁଲୁ** - *ଗ:ଗଜ:* (ବି.) : ଭେଟି, ଉପହାର, ଶ୍ରଦ୍ଧାରେ ଯାହା ଦିଆଯାଏ, ଚାନ୍ଦା ସଂଗ୍ରହ କରିବା

**ମାୟା** - *ସ:ବୌ:ସୁବ:* (ବି.) : ପିଲୁଳି

**ମାରଙ୍ଗୀ** - *ଗଦ୍ୟ:* (ବି.) : ବିଲ ରୁଆ ପରେ ପାଳିତ ହେଉଥିବା ପର୍ବ

**ମାରଣା** - *ଖୋ:ନ:ଗ:* (ବିଂ.ବି.) : ମାରୁଥିବା, ପ୍ରତାରକ, ଖଣ୍ଡ, ବିଶ୍ୱାସ ଘାତକ, ଯିଏ ମାରି ଗୋଡ଼ାଏ

**ମାରତୁଲ** - *ଅନେ:* (ବି.) : ଛୋଟ ହାତୁଡ଼ି

**ମାରଦା** - *ନବ:* (ବି.) : ଘର ଭିତରର ଭାଡ଼ି

**ମାରପେଞ୍ଚ** - *ଅନେ:* (ବିଂ.) : ଛନ୍ଦ କପଟ

**ମାରଫତ** - *ଅନେ:* (ବି.) : ଜରିଆରେ, ତତ୍ତ୍ୱାବଧାନରେ

**ମାରା** - *ଅନେ:* (ବି.ବିଂ.କ୍ରି.) : ଅପବିତ୍ର, ବ୍ୟବହାର ଅଯୋଗ୍ୟ, ଅଶୌଚ, ସ୍ତ୍ରୀଙ୍କ ଋତୁକାଳ, ସୁ

**ମାରାକରିବା** - *ନ:* (କ୍ରି.) : ଅଘଟଣ କରିଦେବା, କାର୍ଯ୍ୟହାନୀ ଘଟିବା

**ମାରାଙ୍ଗ** - *ମ:* (ବିଂ.) : ବଡ଼

**ମାରାତ୍** - *ବ:* (ବି.) : କହିବାର ସାହସ ବା ଶକ୍ତି

**ମାରିନେବା** - *କଳା:* (କ୍ରି.) : ଆତ୍ମସାତ୍ କରିବା, ଠକି ନେବା

**ମାରିଷ** - *ଦେ:ବା:ଗଦ୍ୟ:* (ବି.) : ଏକ ଶାଗର ନାମ

**ମାରୁ** - *ଅନେ:* (ବି.ବିଂ.) : ମଡ଼କ, ଦୋଷ, ଅଶୁଦ୍ଧ, ପ୍ରବଳ ଠକ

**ମାରୁଖଦି** - *ଗ:* (ବି.) ସ୍ତ୍ରୀଙ୍କ ରଜସ୍ରାବ କାଳୀନ ପରିଧାନ ବସ୍ତ୍ର

**ମାରୁଣିଆର** - *ନ:* (ବି.) : ବିଲଚାଷ ବେଳେ ଗୋଟିଏ ଅଚାର ଶେଷ ଲଙ୍ଗଳଗାର ଯାହା ଦ୍ୱାରା ସେହି ଅଂଶ ଚାଷ ସମାପ୍ତ ହୁଏ

**ମାରୁ ହେବା** - *ଯା:* (କ୍ରି.) : ନଷ୍ଟ ହେବା, ମାରାହେବା

**ମାର୍କଟ ବିଲେଇ** - *ପୁ:* (ବିଂ.) : ଲମ୍ପଟ

**ମାର୍କା** - *ଅନେ:* (ବି.) : ଚିହ୍ନ

**ମାର୍କାମରା** - *ଅନେ:* (ବି.ବିଂ.) : ଚିହ୍ନଟ ବ୍ୟକ୍ତି, ଧୂର୍ତ୍ତବ୍ୟକ୍ତି, ଚିହ୍ନା, ଠକ, ନାମଜାଦା, ବହୁପରିଚିତ, କୁଖ୍ୟାତ

**ମାର୍ଗେ** - *ଅ:ପୁ:* (ଅ.) : ପରି, ଭଳି

**ମାର୍ତୋଲି** - *ଗ:* (ବି.) : ହାତୁଡ଼ା

**ମାର୍ତ୍ତା** - *ଗଜ:ଗ:କୋ:* (କ୍ରି.ବି.) : ଚଉତିବା, ସଜାଇବା, ଚଉତିବା

**ମାର୍ଥା** - *ଗ:* (ବି.) : ମହାରଥା, ରାଜାଙ୍କ ସୈନ୍ୟ

**ମାର୍ଦା** - *ଗ:* (ବି.) : ନୁଆଣିଆ ଚାଳ, ନିବୁଜ ଛାତ

**ମାର୍ ଢଣ୍ଡିଆ** - *ଦୈ.ଗ.* (ବି.) : ଦାନ୍ତମୂଳ ବଥ, ବର ପିଲାର ଅନୁଢ, ଅଧାପନ୍ତୁରିଆ, ଅବ୍ୟବସ୍ଥା

**ମାର୍କଁଟିଆ** - *ଧୂବ.* (ବିଂ.) : ମାରଣା

**ମାର୍‌ଗେ** - *ନୂ.* (ଅ.) ଭାବେ, ବାଟେ, ଅନୁସାରେ

**ମାର୍‌ଧର୍** - *ଦେ.ଝ.* (କ୍ରି.ବିଂ.) : ଟଣାଓଟରା, ମାଡ଼, ବାଡ଼ିଆପିଟା

**ମାର୍‌ନା ମୂଷା** - *କଳା.* (ବି.) : କ୍ଷେତ ଓ ଜଂଗଲରେ ରହୁଥିବା ବଡ଼ ମୂଷା

**ମାର୍‌ପିଟ୍** - *ଦେ.ନ.* (ବି.) : ପ୍ରହାର, ପରସ୍ପର ମରାମରି

**ମାର୍‌ଫଡ୍** - *ଦେ.* (ଅ.) : ଢରିଏ

**ମାର୍‌ବଲ୍** - *ଦେ.* (ବି.) : ଶଂଖମର୍ମର ପ୍ରସ୍ତର

**ମାର୍‌ବା** - *କଳା.* (କ୍ରି.) : ବୃକ୍ଷାଦି କାଟିବା, ଢଳ ବର୍ଷିବା, ଅନ୍ୟକୁ ଆଘାତ କରିବା

**ମାର୍‌ବାଢ଼ି** - *ଦେ.* (ବି.) : ମାରୁଆଡ଼ି

**ମାର୍‌ମରଦନ୍** - *ସ.ନୂ.* (ବି.) : କଳିଗୋଳ, ମାଡ଼ପିଟ

**ମାଲ୍** - *ଅନେ.* (ବି.) : ଢିପ ଢମି, ମଲ୍ଲ, ସାଧାରଣ ଦ୍ରବ୍ୟ, ପହିଲିମାନ, ଯିଏ ମୁଷ୍ଟିଯୁଦ୍ଧ କରେ, କ୍ଷେତକୁ ପାଣିଯିବା ନାଳବାଟ, ଶବବାହକ, ଜିନିଷ ପତ୍ର, ଟଙ୍କା, ମଦ୍ୟ

**ମାଲ୍ କୁଟୁରୁ** - *ଦୈ.* (ବି.) : ସାପ

**ମାଲ୍‌କ୍ଷେଡ୍** - *କଳା.* (ବି.) : ବାହିଲି ଢମି

**ମାଲ୍‌ଖମ୍ବ** - *ନୂ.* (ବି.) : ଢେଙ୍କି ରଖିବା ଦୁଇକେନା ଖମ୍ବ, କସରତ ଖମ୍ବ

**ମାଲ୍‌ଖାନା** - *ନ.* (ବି.) : ଖଢଣାଖାନା, ଭଣ୍ଡାର ଘର

**ମାଲ୍‌ଖୁ** - *କଳା.* (ବି.) : କଂସା, ଖୁରି, ଖାଇବା ପାତ୍ର

**ମାଲ୍ ଖେକାରୀ** - *ଦୈ.କଳା.ଦେ.* (ବି.) : କୋକିଶିଆଳୀ

**ମାଲ୍‌ଗାଡ଼ି** - *ନ.* (ବି.) : ଜିନିଷ ବୋହିବା ଗାଡ଼ି

**ମାଲ୍‌ଗୁଢାରି** - *ନୂ.* (ବି.) : ରାଢସ୍ୱ

**ମାଲ୍‌ଟା** - *ମ.* (ବି.) : କମଳା

**ମାଲ୍‌ଟିକ୍‌ରା** - *ନୂ.* (ବି.) : ଉଚ୍ଚ ପଡ଼ିଆ ଭୂଇଁ

**ମାଲ୍‌ତୀ** - *କଳା.* (ବି.) : ତୈଳବୀଢ ବିଶେଷ, ଫୁଲ ବିଶେଷ

**ମାଲ୍‌ଦାର** - *ଦେ.ନୂ.କଳା.* (ବିଂ.) : ଅଧିକ ସ୍ୱଚ୍ଛଳ, ଧନୀ

**ମାଲ୍‌ଧତୋ** - *ବ.* (ବି.) : ବୋକା

**ମାଲ୍‌ନୀ** - *ଦୈ.* (ବି.) : ମାଲୁଣି

**ମାଲ୍‌ପା** - *ଦୈ.ଦେ.ସ.* (ବି.) : ତେଲ

**ମାଲ୍‌ପୁଆ** - *ଦେ.* (ବି.) : ଅମାଲୁ

**ମାଲ୍‌ସା** - *ଦେ.* (ବି.) : ଉମ୍ବେଇ

**ମାଲ୍ ହାଣ୍ଡି** - *ପଦ୍ୟ.* (ବି.) : ଶୁଦ୍ଧକ୍ରିୟାରେ ତୁଠରେ ରନ୍ଧା ହେଉଥିବା ହାଣ୍ଡି

**ମାଲଆଟିକା** - *ଯା.* (ବି.) ପ୍ରେତ ଉଦ୍ଦେଶ୍ୟରେ ଦଶଦିନ ରାତିରେ ଖାଦ୍ୟ ସହିତ ଦିଆ ହେଉଥିବା ଆଟିକା

**ମାଇକଛା** - *ରା:* (ବି.) : ଛୋଟ ଗାମୁଛାକୁ କଛାମାରି ପିନ୍ଧିବା

**ମାଇଖମ୍ବ** - *ନ:* (ବି.) : ପକ୍ଷିଆ ୨ଟି ଲାଗିଥିବା ଖମ୍ବ ଯାହା ଡିଙ୍ଗିରେ କୁଚିବାକୁ ସାହାଯ୍ୟ କରେ

**ମାଇପା** - *ଅନେ:* (ବି.) : ତୈଳ, ମିଷ୍ଟାନ୍ନ ବିଶେଷ, ମାଲପୁଆ

**ମାଇପା କୁଣ୍ଡ** - *ଗ:* (ବି.) : ତେଲଘଡ଼ି

**ମାଲ ପାଣି** - *ନ:* (ବି.) : ସ୍ଥାନୀୟ ପ୍ରସ୍ତୁତ ନିଶା

**ମାଲପା ତେଲ** - *ଅ:* (ବି.) : ରାଶିତେଲ

**ମାଲପିତା** - *ଗ:* (ବି.) : ମୃତ୍ୟୁର ପ୍ରଥମ ଦିବସର କାର୍ଯ୍ୟ

**ମାଲପୁଆ** - *ଖୋ:ସୁବ:ନ:* (ବି.) : ଘିଅତିଆରି ପିଠା

**ମାଲବିନ୍ଧା** - *ଗଦ୍‌ୟ:* (ବି.) : ମଲ୍ଲମାନଙ୍କର କସରତ

**ମାଲଭାଇ** - *ପଦ୍‌ୟ:ଦେ:ସ:* (ବି.ବିଂ.) : ଶବବାହକ

**ମାଲମତା** - *ଖୋ:* (ବି.) : ଜିନିଷ ପତ୍ର

**ମାଲ ମସଲା** - *ଗ:* (ବି.) : ସାମର୍ଥ୍ୟ, ଧନ, ମୂଳଧନ

**ମାଲସ୍** - *ନ:* (ବି.) ତେଲମାରିବା, ଔଷଧମାରିବା, ଘଷିବା

**ମାଲହାଣ୍ଡି** - *ବା:କେ:* (ବି.) : ବିସର୍ଜନ ହାଣ୍ଡି, ଦଶଦିନ ହାଣ୍ଡି

**ମାଲା** - *କନ:* (ବି.) : ଲତା

**ମାଲାମାଲ** - *ଖୋ:* (ବିଂ.) : ଧନୀ ହୋଇଯିବା

**ମାଲି** - *ଅନେ:* (ବି.) : ମାଳି, ମଲ୍ଲୀ (ଫୁଲ), କଂଠ ଅଳଙ୍କାର

**ମାଲିଆ** - *ଦେ:* (ବିଂ.) : ଜଙ୍ଗଲ ଅଧିବାସୀ

**ମାଲିକିଆଣୀ** - *ଖୋ:* (ବି.) : ସ୍ୱାମିନୀ, ମାଲିକର ସ୍ତ୍ରୀଲିଂଗ

**ମାଲିକେ** - *ପୁ:* (ବି.) : ଶିଷ୍ଟ ସମ୍ବୋଧନ (ପୁରୀ ସହରରେ ବିଶେଷ ପ୍ରଚଳିତ)

**ମାଲିମାମଲତ** - *ଯା:* (ବି.) : କୋର୍ଟ ଆଦିରେ ଥିବା କାମ

**ମାଲୁଆ** - *ଯା:* (ବି.) : ପିଠା ପୋଡା ହେବାପାଇଁ ଥିବା ମାଟି ପଲମ ପାତ୍ର

**ମାଲୁମ୍** - *ଦେ:ନ:* (ବି.) : ଜ୍ଞାତ, ଜାଣିବା

**ମାଲୁର** - *ଗଦ୍‌ୟ:* (ବି.) : ବେଲ

**ମାଲେ** - *ସ:* (ବି.) : ପେଣ୍ଡାଏ

**ମାଲେନ** - *ନୂ:କଳା:ଦେ:* (ବି.) : ମାଲ୍ୟାଣୀ, ମାଳିର ପତ୍ନୀ

**ମାଳ** - *ବୌ:ଗ:* (ବି.) : ପାର୍ବତ୍ୟ ଜମି, ଫୁଲମାଳା, ମାଳ ଜଙ୍ଗଲ ଅଞ୍ଚଳ

**ମାଳତକନ୍ଦା ଧାନ** - *ଖୋ:କେନ୍ଦୁ:* (ବି.) ସ୍ୱଳ୍ପଜମିଆଦୀ ଧାନ

**ମାଳମାଛ** - *ଯା:* (ବି.) : ଏକ ପ୍ରକାର ମାଛ

**ମାଳି** - *ଦେ:ସ:ନବ:ନ:* (ବି.) : ପୁଷ୍ପାଳକ, ବଗିଚା କାମରେ ନିଯୁକ୍ତ କର୍ମୀ, ଶିବ ପୂଜକ ଜାତି, ହାର, ବେକରେ ପିନ୍ଧା ଅଳଙ୍କାର, ଜପାମାଳି

**ମାଳିଆ ପସରା** - *ବା:ଗ:* (ବି.) : ମାଳି ବିକୁଥିବା ପସରା, ହରେକ କିସମର, ମନୋହାରୀ ଦୋକାନ

**ମାଳିକା** - *ଖୋ:* (ବି.) : ଭବିଷ୍ୟ ବଚନ ବିଷୟରେ ରଚିତ ଗ୍ରନ୍ଥ

**ମାଳୁ** - *ଦେ:* (ବି.) : ପତ୍ରମୟ ଲତା

**ମାଲୁଆ** - *ନ:ଗ:ବୌ:ଦେ:* (ବିଂ.ବି.) : ମାଳ ପ୍ରଦେଶର ବାସିନ୍ଦା, କନ୍ଧଜାତି

**ମାଶା** - *କଝ:* (ବି.) : ଶୁଦ୍ଧକ୍ରିୟା

**ମାଶୁରି** - *କଝ:ଯା:* (ବି.) : ମଶାରି, ମଶୁର ଡାଲି

**ମାଶ୍ରି** - *ମ:କଳା:* (ବି.) : ମସୁରି (ଡାଲି), ହଳିଆର ସପ୍ତାହାନ୍ତ ପାଉଣା

**ମାଷରା** - *ଦେ:* (ବି.) : ପେଢ

**ମାଷାଦ** - *ଦେ:* (ବି.) : କଇଁଛ

**ମାସ୍** - *ମ:* (ବିଂ.) : ମାଂସ

**ମାସ୍ଲି** - *ବୌ:* (ବି.) : ମାସିକ

**ମାସଗଢିବା** - *ନ:ଗ:* (କ୍ରି.) : ଗର୍ଭଧାରଣ ହେବା

**ମାସାଙ୍ଗା** - *କଝ:* (ବି.) : ବିରି

**ମାସାଦ୍** - *ନବ:* (ବି.) : ସଙ୍ଘାତ

**ମାସାନି** - *ଗଦ୍ୟ:* (ବି.) : ପୁରୋହିତ

**ମାସାନ୍ତ** - *ନ:* (ବି.) : ମାସର ଶେଷଦିନ ବା ସଂକ୍ରାନ୍ତିର ପୂର୍ବଦିବସ

**ମାସିଆରି** - *କଝ:ଗ:ବ:* (ବି.) : ମାସେ ପର୍ଯ୍ୟନ୍ତ, ମାସିକ, ସ୍ତ୍ରୀଙ୍କ ଋତୁକାଳ

**ମାସିକାୟା** - *ଗଢ:* (ବି.) : ଏକ ଔଷଧୀୟ ବୃକ୍ଷ

**ମାସିକିଆ** - *ଢ:କେ:ନୂ:* (ବି.) : ଋତୁସ୍ରାବ, ମାସକୁ ମାସ ହେବା ପ୍ରକ୍ରିୟା

**ମାସୁଲ** - *ଢ:* (ବି.) : ଶୁଳ୍କ

**ମାସ୍କା** - *କଝ:* (ବି.) : ପାଚିଲା ଆମ୍ବ

**ମାସ୍ତାନୀ** - *କ:* (ବି.) : ହଳୁଆ ବ୍ରାହ୍ମଣ

**ମାସ୍ତାମା** - *ଅ:କଳା:* (ବିଂ.) : ମହାତ୍ମା

**ମାହଲ** - *ମ:* (ବି.) : ଆତ

**ମାହା** - *ବୌ:କଝ:* (ବି.) : ରାଣ ଖାଇବା ପାଇଁ କୁହାଯିବା କଥା, ପାଚିଲା ଆମ୍ବ

**ମାହାଘୋର** - *ସୁବ:* (ବିଂ.) ଅତିଶୟ ଅର୍ଥରେ ବ୍ୟବହୃତ

**ମାହାଜନ୍** - *କଳା:* (ବି.) : ମାଲିକ, ପ୍ରଭୁ, ଧନୀଲୋକ

**ମାହାଜୋଟ** - *ସୁବ:* (ବି.) : ମହାସଭା

**ମାହାଡ଼ା** - *ମ:* (ବି.) : ମହିଳା

**ମାହାଦମୁଣ୍ଡ** - *ବା:* (ବି.) : ମହାଦେବଙ୍କ ଆସ୍ଥାନସ୍ଥଳୀ

**ମାହାନ୍ତିଆ** - *ଯା:* (ବି.ବିଂ.) : ବେପାରି

**ମାହାପୁରୁ** - *ଗଦ୍ୟ:କଳା:ନ:* (ବି.) : ମହାପ୍ରଭୁ, ବ୍ରାହ୍ମଣ, ବ୍ରାହ୍ମଣଂକ ପ୍ରତି ଅନ୍ୟଜାତିର ଲୋକଂକ ସମ୍ବୋଧନ

**ମାହାପୁରୁ ଗୁଡ଼ି** - *ନୂ:* (ବି.) : ମନ୍ଦିର

**ମାହାପୁରୁ ଘର** - *କୋ:* (ବି.) : ପୂଜାଘର, ଠାକୁର ଘର

**ମାହାପୁରୁ ହେବା** - *ନ:* (କ୍ରି.) : ବସନ୍ତ ହେବା

**ମାହାମସ୍‌କୁଲ୍** - *କଳା:* (ବିଂ.) : ଭାରି ଅଡୁଆ, ବଡ ଜଟିଳ

**ମାହାର** - *ଗ:ନ:* (ବି.) : ଗାଈ ରଖୁଆଳ, ହାଡ଼ି, ମେହେନ୍ତର, ପାଣି ଯିବାର ପହି, ନାଳ

**ମାହାରା** - *ଅନେ:* (ବି.) : ବଗାଳ, ପାଣି ବାଟ, ପାଣିଯିବାର ନାଳି

**ମାହାରୀ** - *ପଦ୍ୟ:* (ବି.) ଶ୍ରୀମନ୍ଦିରରେ ମର୍ଦ୍ଦଳ ଓ ବୀଣା ବାଦନକାରୀ, ନାରୀ, ଦେବଦାସୀ

**ମାହାର୍ଜେ** - *ସୁ:* (ବି.) : ମହାରାଜ, ଏକ ପ୍ରଶସ୍ତିମୂଳକ ସମ୍ବୋଧନ

**ମାହାର୍‌ସାଦ୍** - *ସ:* (ବି.) : ମଇତ୍ର, ମିତ୍ର

**ମାହାଲିଆ** - *କଳା:ସ:ନୂ:* (ବିଂ.) : ମାଗଣା, ତୁଚ୍ଛା, ବେକାର, ମୁଫତ୍

**ମାହାଳ** - *କ:* (ବି.) : ହାଲକା କାଠଯୁକ୍ତ ବିଶାଳ ଗଛ

**ମାହାଳିଆ** - *ଅନେ:* (ବିଂ.) : ମାଗଣା, ତୁଚ୍ଛା, ବିନାମୂଲ୍ୟ, ଅକାରଣ, ବୃଥା

**ମାହାଶୁଲ** - *ଖୋ:* (ବି.) : ଶୁଳ୍କ

**ମାହାସାଦ୍** - *ଗୌ:* (ବି.) : ମଇତ୍ର

**ମାହିଆ** - *ଢେ:ନ:ସଂ:* (ବିଂ.ବି.) : ମାଇଚିଆ, ହିଞ୍ଜିଡ଼ା

**ମାହିରା** - *ମ:* (ବି.) : କେନାଲ୍

**ମାହିଷ୍ୟ** - *ବା:ସଂ:* (ବି.) ଉତ୍ତର ବାଲେଶ୍ୱରର ଏକ ଜାତି, କେଉଟଜାତି

**ମାହିଁସାନ** - *ଗ:* (ବି.) : ଅତିକ୍ଷୁଦ୍ର

**ମାହେଜି** - *ସ:କଳା:* (ବି.) : ସ୍ତ୍ରୀଲୋକ, ସ୍ତ୍ରୀ, ପତ୍ନୀ

**ମାହେନ୍ଦ୍ର ବେଳା** - *ସଂ:* (ବି.) : ଶୁଭବେଳା

**ମାହ୍ରାଦ** - *ନ:* (ବି.) : ମହାପ୍ରସାଦ

ମାହ୍ଲା - *ଚା:* (ବି.) : ନଡିଆ ସଢେଇ

ମାଁଘ୍ - *କଳା:* (ବି.) : ମାଘ

ମାଁଜନ - *ନବ:* (ବି.) : ମହାଜନ

ମାଁଝି - [illegible] (ବିଂ.) : ଏକ ନିଶ୍ୱାସରେ

**ମାଁହାଁ** - *କଳା:* (ଅ.) : ମା'ରାଣ

**ମାଂଗ** - *ନୂ:କଳା:* (ବିଂ.ବି.) : ମାଘ, ସିଛା, ମାଂଗ

**ମାଂଗନ୍** - *ଅ:* (ବି.) : ମାଗିବା ଦ୍ରବ୍ୟ

**ମାଂଚି** - *ମ:ରା:* (ବି.) : ସବାଇ ଘାସର ଦଉଡ଼ିରେ ବୁଣାଯାଇଥିବା ଛୋଟ ଖଟୁଲି, ଖାଣ୍ଟି

ମା'ରନ୍ - *କଳା:* (ଅ.) : ମାଆଂକ ରାଣ

**ମିଅଁ** - *କଜ:* (ବି.) : ବିରାଡ଼ି

**ମିଆଁ** - *ଗ:ଢ:* (ବି.) : ମୁସଲମାନ ଲୋକ

**ମିଚେ** - *ନୂ:* (ବିଂ.) : ଟିକିଏ

**ମିଜାଜ୍** - *ଦେ:* (ବି.) : ମନୋଭାବ

**ମିଞଡ଼** - *ଅ:ଗ:* (ବିଂ.) : ଦୁଷ୍ଟ, ଛୋଟ ଛୁଆ

**ମିଞା** - *ନ:* (ବି.) : ଗଛରେ ଥିବା ଭାଡ଼ି (ଶିକାର ପାଇଁ ଉଦ୍ଦିଷ୍ଟ)

**ମିଞ୍ଜା** - *ନ:* (ବି.) : ଆଖିଯା'ର ଛୋଟ

**ମିଞ୍ଜିନି** - *ନ:* (କ୍ରି.) : ନ ଭିଜିବା

**ମିଞ୍ଜେଇବା** - *ଗଦ୍ୟ:* (ବିଂ.) : ବୋଳିବା, ମାଖିବା

**ମିଟ୍‌କା** - *କନ୍ଧ:* (ବି.) : ପଲକ, ଆଖିର ପତା ପଡ଼ିବା ଓ ଉଠିବା କ୍ରିୟା

**ମିଟ୍‌ଲିଙ୍ଗ** - *କୋ:* (ବି.) : ଘର ବା ରାସ୍ତା ତିଆରି ପାଇଁ ବ୍ୟବହୃତ ଛୋଟ ପଥର ଖଣ୍ଡ ସମୂହ, ମେଟାଲ୍

**ମିଟାଇବା** - *ଗ:* (କ୍ରି.) : ଦୂର କରିବା

**ମିଟିକାଛି** - *ଖୋ:* (ବି.) : ଏକ ପ୍ରକାର ଛୋଟ ମାଛ

**ମିଟି କିଣିଆଁ** - *ନ:* (ବି.) : ଏକ ବୃକ୍ଷର ନାମ

**ମିଟୁ** - *ଅନେ:* (ବି.) : ଶୂଆ, ରୂପ

**ମିଟୁଗୁଞ୍ଜା** - *ଗ:* (ବି.) : ଆଙ୍ଗୁଠି ଫୁଟାଇ ଶବ୍ଦ କରିବା

**ମିଟେଇବା** - *କନ୍ଧ:* (କ୍ରି.) ଲିଭାଇବା, ପୋଛିଦେବା

**ମିଠି** - *ସୁବ:ସ:* (ବି.) : ଶ୍ମଶାନରୁ ଶବ ସଂସ୍କାର ସାରି ଫେରିବା ପରେ ଜାତିଭାଇଙ୍କ ଘରୁ ମୃତାହ ପରିବାର ପାଇଁ ଆସି ଥିବା ଭାତ ପଖାଳ

**ମିଢ୍‌ତେଲ୍** - *କନ୍ଧ:* (ବି.) : ରାଶିତେଲ

**ମିଢୁମାଛ୍** - *ମ:* (ବି.) : ରୋହି ମାଛ

**ମିଢ** - *ଡ:* (ବି.) : ମିରକାଳି ମାଛ

**ମିଣିପ** - *ଅନେ:* (ବି.ବିଂ.) : ଅଣ୍ଡିରାଲୋକ, ପୁରୁଷ

**ମିଣ୍ଡାଣି** - *କୋ:* (ବି.) : ମଳିବା, ଅମଳ କରିବା

**ମିତ** - *ନ:ଜ:ସ:* (ବି.) : ସାଙ୍ଗ, ବନ୍ଧୁ, ସଙ୍ଗାତ, ସଂପର୍କ ଜନିତ ସମ୍ବୋଧନ

**ମିତ୍‌ବା** - *ଗୌ:ନୁ:* (ବି.) : ମଇତ୍ର ବାପା

**ମିତ୍‌ବୁଆ** - *କନ୍ଧ:* (ବି.) : ମିତବାପା, ବାପାଙ୍କ ମିତ, ମାଆଙ୍କ ମିତ ବା ସଂଗାତଙ୍କ ସ୍ୱାମୀ

**ମିତ୍ ମିତାନ୍** - *ଝ:* (ବି.) : ମିତ୍ର ସମ୍ପର୍କୀୟ

**ମିତାନ** - *ନୁ:ବ:କନ୍ଧ:* (ଅ.) : ଭଳି, ପରି, ଭଳି, ଉପମାବାଚକ ଶବ୍ଦ

**ମିତାଲ** - *ଝ:ନୁ:* (ଅ.) : ପରି, ସଦୃଶ

**ମିଥୁନିଆ** - *ଭ:* (ବି.) : ପାଣିଦୋଷରୁ ମାଟି ଖରାପ ହେବା

**ମିନ** - *କନ୍ଧ:* (ବି.) : ବିରାଡ଼ି

**ମିନ୍‌କା** - *କନ୍ଧ:* (ବି.) : ମାଛ

**ମିନା** - *ଯା:ନବ:* (ବିଂ.ବି.) : କରମୁକ୍ତ, ପୁଲିଙ୍ଗ

**ମିଭିରେ** - *ଛେ:* (କ୍ରି.) : ବୁଣିବା

**ମିମିଆଁ** - *ଗ:* (ବିଂ.) : ଭୟାତୁର

**ମିମିଶା** - *ଖୋ:* (ବି.) : ମିମାଂସା, ନିଷ୍ପତ୍ତି

**ମିରକାଳି** - *ଯା:* (ବି.) : ଏକ ପ୍ରକାର ଛୋଟ ମାଛ

**ମିରକିଟିଆ** - *ଗ:* (ବିଂ.) : କ୍ଷୀଣ, ପତଳା

**ମିରତେଲ୍** - *ସ:* (ବି.) : ବାଦାମ ତେଲ

**ମିରସିଙ୍ଗା ପତର** - *ନବ:ନ:ଗ:ଗଜ:* (ବି.) : ଭୃସୁଙ୍ଗ ପତର

**ମିରି** - *ଗଦ୍ୟ:ଦେ:କୋ:କନ୍ଧ:* (ବି.) ଆଦିବାସୀ ସଂପ୍ରଦାୟ, ଲଙ୍କାମରିଚ, ମରିଚ

**ମିରିଗ ପାଣି** - *କଳା:* (ବି.) : ମୃଗତୃଷ୍ଣା, ମରିଚିକା

**ମିରିଗାନ୍** - *ଗଞ୍ଜ:* (ବି.) : ଜାତିବିଶେଷ

**ମିରିଗି** - *ନୂ:ସୁ:* (ବି.ବିଂ.) : ଅପସ୍ମାର

**ମିରିଘ୍** - *କନ୍ଧ:* (ବି.) : ହରିଣ

**ମିରିଲିଆ** - *କଳା:* (ବି.) : ହୁରୁମ୍,ହୁଡୁମ୍

**ମିର୍କିଟିଆ** - *ନୂ:ସୁ:* (ବିଂ.) : ମରଣ ହେତୁ ଅଶୌଚ, ଅଶୁଦ୍ଧି

**ମିର୍କେଲ୍** - *କଳା:* (ବି.) : ମିରିକାଳି ମାଛ

**ମିର୍ଚା** - *ଅନେ:* (ବି.) : ମରିଚ, ଲଙ୍କା

**ମିର୍ତେଲ** - *ସୁବ:ବୌ:* (ବି.) : ବାଦାମ ତେଲ, ରାଶି ତେଲ

**ମିଲ୍କି ଦେବାର** - *ସୁବ:ସୁ:ନ:* (କ୍ରି.) : ହଠାତ୍ ବିଜୁଳି ପରି ଆଖି ପିଛୁଡାକେ ଚାଲିଯିବା

**ମିଲ୍ବା** - *ଦେ:କଳା:ସୁ:ନୂ:* (କ୍ରି.ବି.) : ମିଳିବା, ପାଇବା, ଲାଭ କରିବା

**ମିଲ୍ଲାଚେ** - *କଳା:* (କ୍ରି.) : ମିଳିଛି, ପ୍ରାପ୍ତ ହୋଇଛି

**ମିଲଭଚେ** - *କଳା:* (କ୍ରି.) : ପାଉଚି, ଲାଭ କରୁଛି, ମିଶ୍ରଣ କରୁଛି

**ମିଲନ୍ ମିଶନ୍** - *ସ:* (ବି.) : ମିଳାମିଶା

**ମିଲିକୁଲି** - *ମା:* (କ୍ରି.ବିଂ.) : ମିଳିମିଶି

**ମିଲିମିଲାପୁକ** - *କନ୍ଧ:* (ବି.) : ଜୁଳୁଜୁଳିଆ ପୋକ

**ମିଳିମିଳା** - *ନ:* (ବି.) : ଏକ ରୋଗ

**ମିଶାଣିଆ** - *ନ:* (ବିଂ.) : ସବୁଲୋକଙ୍କ ସହିତ ମିଶି ଚଳୁଥିବା (ବ୍ୟକ୍ତି)

**ମିଶାରୁ** - *ଗ:* (ଅ.) : ମଧ୍ୟ, ସହିତ

**ମିଶିନି** - *ବା:* (ବି.) : ମେସିନ୍, କଳ

**ମିଶିରି** - *ନ:ବୌ:* (ବି.ବିଂ.) : ମିଶ୍ରି-ଗୁଡ଼ରୁ ତିଆରି ପଦାର୍ଥ, ମିଶ୍ରିତ, ଭେଜାଲ୍

**ମିଶେ** - *ନୂ:* (କ୍ରି.) : ମିଳିତ ହୁଏ

**ମିଷ୍ଟ** - *ଢେ:* (ବିଂ.) : ମିଠା

**ମିସଲ** - *ଗଦ୍ୟ:* (ବି.) : ହାକିମଙ୍କ ବସିବାସ୍ଥାନ

**ମିସା** - *ଗଞ୍ଜ:* (ଅ.) : ମଧ

**ମିସିନି ପାତିଆ** - *ପୁ:* (ବି.) : ବ୍ଲେଡ୍

**ମିସେ** - *କନ୍ଧ:ଝା:* (ଅ.) : ମଧ

**ମିସ୍ତିରୀ** - *ମା:କଳା:* (ବି.) : ରାଜମିସ୍ତ୍ରୀ, ହୋଟେଲରେ ଜଳଖିଆ ଓ ମିଷ୍ଟାନ୍ନ ତିଆରି କରୁଥିବା ବ୍ୟକ୍ତି

**ମିଁଛାସ** - *ଖୋ:* (ବି.) : ମାନସିକ ଅବସ୍ଥା

**ମିଂଛାରି** - *କୋ:* (ବି.) : ପାଳଧୁଆ ବୃକ୍ଷ

**ମୀନକ ଧାରଣ** - *ଗ:* (ବି.) : ତେଲୁଗୁ ବିବାହ ସମୟରେ କନ୍ୟାର ଅଳଙ୍କାର ଧାରଣ

**ମୀନା** - *ନ:* (ବି.) : ସୁନାହାର ବା ମାଳିର ମଝିରେ ଥିବା ସୂକ୍ଷ୍ମ କାମ

**ମୀର** - *ନ:* (ବି.) : ଏକପ୍ରକାର ମାଛର ନାମ

**ମୁଆଣ୍ଡି** - *ଯା:* (ବି.) : ଆଟିକା ମୁହଁଚାରି ପାଖ ଟାଣ ଅଂଶ

**ମୁଆଳି** - *ଯା:ଅ:* (ବି.ବିଂ.) : ଖର ସ୍ରୋତରେ ବସୁ ଥିବା ଢାଲ ଅଟକାଇବା ଉଭୟ ପାଖ କିଳା, ଆଣ୍ଠୁକୁଡ଼ା ଧନ

**ମୁଆଁ** - *ଅନେ:* (ବି.) : ପିଜୁଳି, ଲିଆ, ଗୁଡ଼ର ଲଡୁ, ଚିନି ଓ ଖଇ ମିଶ୍ରିତ ମିଠାଇ, ଖଇ, ମୁଢି ମିଠେଇ

**ମୁଇଠ** - *ନୂ:ସୁ:* (ବି.) : ଅକ୍ଷି ମୁଠି, ଅନୁକୁଳ ଧାନ

**ମୁଇଁ** - *ଅନେ:* (ସ.) . ମୁଁ, ମୁହିଁ

**ମୁଏଲ୍** - [illegible] (ବିଂ.) ମଳି, ମଇଳା

[illegible] (ବି.) [illegible]

**ମୁକ୍ଲାବା** - *ନୂ:ସୁ:କଳା:* (କ୍ରି.) ବନ୍ଧନମୁକ୍ତ କରିବା, ମୁକୁଳିବା, ମୁକୁଳେଇବା

**ମୁକଲ୍** - *ଦେ:* (ବି.) : ସୁନାରିଗଛ

**ମୁକଶାଳି** - *ଦେ:* (ବି.) : ମୁଖଶାଳା

**ମୁକା** - *ନ:କୋ:ସୁବ:ନବ:* (ବି.) ଧାନ କଟାବେଳର ଗୋଟାଏ ଧାନ ମୂଳ, ଖଣ୍ଡ, ଅଂଶ, କାଦୁଅରେ ଧାନ ବୁଣିବା, ଅଛରା, ଖଣ୍ଡାଂଶ

**ମୁକାମ** - *ବା:ଖୋ:ଦେ:* (ବି.) : ବର୍ଷ ଶେଷ ପର୍ଯ୍ୟନ୍ତ, ସ୍ଥାନ, ବାସସ୍ଥାନ

**ମୁକାମୁ** - *ଗଞ:* (ବି.) ସତ୍ୟନାରାୟଣ ପୂଜାବେଳେ ଆସ୍ଥାନ ଉପରେ ଉତ୍ସର୍ଗୀକୃତ ଭୋଗ

**ମୁକାରିଆ** - *ଗ:* (ବିଂ.) : ଗର୍ବସ୍ୱଭାବ

**ମୁକୁଇ** - *ଯା:* (ବି.) : ଆଣ୍ଠୁ

**ମୁକୁନ୍ଦ** - *ଦେ:* (ବି.) : କୁନ୍ଦୁରୁ

**ମୁକୁମ୍** - *ଦେ:* (ବି.) : ପ୍ରେମ

**ମୁକୁଳ ଦେବା** - *ସଂ:* (କ୍ରି.) : ପାରିଶ୍ରମିକ ଦେବା, ମୂଲିଆଙ୍କୁ ଓପାଡୁଥିବା ବିରି କୋଳଥରୁ କିଛି ଦେବା

**ମୁକ୍ତିଆରୀ** - *ନ:* (ବି.) : ଓକିଲଙ୍କ କିରାଣୀ କାମ

**ମୁଖଡ଼ା** - *ନୂ:* (ବି.) : ଗୀତର ପ୍ରଥମ ପଦ

**ମୁଖଣ୍ଡ** - *ବୌ:ଚାଦ୍ୟ:* (ବିଂ.) : ମୁଖ୍ୟ, ମୁଖିଆ

ମୁଖବ[illegible] - [illegible] (ବି.) : ଯାଉଁଳି [illegible]ଟରେ ବ୍ୟବହୃତ କାଷ୍ଠଖଣ୍ଡ

**ମୁଖାଗ୍ନି** - *ନ:* (ବି.) : ଶବ ମୁହଁରେ ଶ୍ମଶାନରେ ନିଆଁ ଦେବା

**ମୁଖାରିବା** - *ସୁ:* (କ୍ରି.) : ଦାନ୍ତକାଠି କରିବା

**ମୁଖୁମ୍** - *ଗଦ୍ୟ:* (ବି.) : ଯୌତୁକ, ଝୋଲ ଟଙ୍କା

**ମୁଗକାନ୍ତି** - *ନ:* (ବି.) : ମୁଗରେ ପିଠା

**ମୁଗର ମୁହାଁ** - *ଅ:* (ବିଂ.) କେବେ ହସୁନଥିବା ଝିଅ

**ମୁଗି** - *ଯା:କଞ:* (ବି.) : ମୁଗ, ସାନଡ଼ୋଲି

**ମୁଗିଆ** - *ନ:* (ବି.) : ଏକପିଠା

**ମୁଗୁଚାଉଳ** - *ନ:* (ବି.) : ଅରୁଆଚାଉଳ ଓ ମୁଗଡାଲିର ଖେଚେଡ଼ି

**ମୁଗୁଡି** - *ବା:* (ବି.) : ଗୋରୁଙ୍କ ମୁହଁ ସହ ଯୋଡ଼ି ବାନ୍ଧିବା ପାଇଁ ଏକପ୍ରକାର ପଘା

**ମୁଗୁନା** - *ସଂ:* (ବିଂ.) : ମାଂସାଳ

**ମୁଗୁନି** - *ନ:ମ:* (ବି.) : ଏକ ପ୍ରକାର ପ୍ରସ୍ତର, ଛୋଟ ଜିଆ

**ମୁଗୁର** - *ନ:ଖୋ:ଢ:* (ବି.) : କାଠର ବଡ଼ ହାତୁଡ଼ି, ବଢେଇଙ୍କ କାମର ଯନ୍ତ୍ର, ପିଟଣା

**ମୁଗୁରା** - *ଦେ:ନ:ଗୌ:* (ବି.) : ମାଛଧରିବା ଯନ୍ତ୍ର

**ମୁଘୁନା** - *ଢେ:* (କ୍ରି.) : ଶୋଇବା

**ମୁଙ୍ଗ** - *ସଂ:ନବ:* (ବି.) : ମୁଗ, ମୁଖ

**ମୁଙ୍ଗେଲି** - *କନ୍ଧ:* (ବି.) : ନାକ

**ମୁଚ୍‌କି** - *ମ:* (ବି.) : ମୁରୁକି

**ମୁଚ୍‌ଲା** - *ନୂ:ଦେ:ବର:କଳା:* (ବି.) : ତକିଆ, ମାଣ୍ଡି, ଉପାଧାନ

**ମୁଚା** - *ଗ:* (କ୍ରି.) : ଚାପି ହୋଇଯିବା

**ମୁଚିଲକା** - *ସୁ:* (ବି.) : ରାଜିନାମା

**ମୁଚୁକୁନ୍ଦିଆ** - *ପୁ:ପା:* (ବିଂ.) : ହସ ଖୁସିଆ, ସ୍ମିତ

**ମୁଚୁରୁ ମିଠେଇ** - *ବା:* (ବି.) : ବୁନ୍ଦିଲଡୁ

**ମୁଚୁଲିକା** - *ଗ:* (ବି.) : ସମ୍ମତି ପତ୍ର

**ମୁଛ** - *ଅନେ:* (ବି.) : ନିଶ

**ମୁଛୁଡ଼ିବା** - *ଦେ:* (କ୍ରି.) : ଠକିବା

**ମୁଛେମୁଛେ** - *ବା:* (କ୍ରି.ବିଂ.) : ପାଖେପାଖେ

**ମୁଜ୍‌ବା** - *ସୁ:ନୂ:* (କ୍ରି.) : ମୁଜିବା, ବୁଜି ଦେବା, ବନ୍ଦ କରବା

**ମୁଞ୍ଜା** - *କେନ୍ଦୁ:* (ବି.) : ମଞ୍ଜି

**ମୁଟ** - *ବା:ନବ:ମା:* (ବି.) : ବୋଝ, ବୁକୁଳା, ମୋଟା ଗଣ୍ଠିଲି

**ମୁଟ୍‌କା** - *ନୂ:* (ବିଂ.) : ମୋଟା

**ମୁଟ୍‌ଲା** - *କଳା:* (ବି.) : ହାତୁଡ଼ି, ବୁଜୁଳି, ମୋଟ

**ମୁଟ୍‌ଲାବା** - *କଳା:* (କ୍ରି.) : ବୁଜୁଳା ବାନ୍ଧିବା

**ମୁଟାତେଲ** - *ବା:* (ବି.) : ଜଡାତେଲ

**ମୁଟା ମାଂସ** - *ବା:* (ବି.) : ଗୋମାଂସ

**ମୁଟିଆ** - *ବା:କେ:* (ବି.) : ବୋଝ କହୁଥିବା ଲୋକ, କୁଲି, ଭାରବାହକ

**ମୁଟିକାନି** - *ନୂ:* (ବି.) : ଶାଗ ବିଶେଷ

**ମୁଟୁରି** - *ଅ:* (ବି.) : ପୁଟୁଳି, ଗଣ୍ଠିଲି

**ମୁଟୁରୁ** - *ସୁବ:* (ବିଂ.) : ମୋଟାଲୋକ

**ମୁଟୁଲା** - *କନ୍ଧ:* (ବିଂ.) : ମୋଟ

**ମୁଟୁଳା** - *ଗଞ:ନବ:* (ବି.) : ବୁଜୁଳା, ହାତୁଡ଼ି, ଭାତୁଡ଼ି

**ମୁଠା** - *ଅନେ:* (ବି.) : ଛାଞ୍ଚୁଣି, ଲଙ୍ଗଳର ଉପର କଣ୍ଟି, ମୁଠାଏ, ୫ରୁ ୧୦ ଗାଁ ଥିବା ଅଞ୍ଚଳ, ବିଡ଼ା, ହାତମୁଠା

**ମୁଠାଦାର** - *ଗ:* (ବି.) : ଗ୍ରାମ ସମୂହର ମୁଖ୍ୟ

**ମୁଠାରୁ ଖସିବା** - *ସଂ:* (କ୍ରି.) : ଆୟତ୍ତରେ ନ ରହିବା

**ମୁଠି** - *ନୂ:ନ:ସ:କଳା:* (ବି.) : ନାପିତର ମୁଣି, ଭଣ୍ଡାରୀର କ୍ଷୌର ଥଳୀ, ମୁଷ୍ଟି, ବିହନ ବୁଣା ଆରମ୍ଭ କରିବା

**ମୁଠିବୁହା** - *ନ:* (ବି.) : ଅକ୍ଷୟତୃତୀୟାରେ ଧାନ ଅନୁକୂଳ କରିବା

**ମୁଠିମାରୀ କିଆରୀ** - *ଖୋ:* (ବି.) : ଖେବେଡା କିଆରି

**ମୁଠିଯୋଗ** - *କନ୍ଧ:* (ବି.) : ଅକ୍ଷୟ ତୃତୀୟା ମୁଠିବୁହା

**ମୁଠ୍ଣିଏ** - *ନ:ଖୋ:* (ବିଂ.) : କହୁଣୀଠାରୁ ହାତ ମୁଠା ପର୍ଯ୍ୟନ୍ତ ଦୀର୍ଘ(ଲମ୍ବ) ପରିମାଣ

**ମୁଡ୍** - *ଦେ:କଳା:* (ବି.) : ମୁଣ୍ଡ, ମସ୍ତକ

**ମୁଡ୍କା, ଗଣ୍ଡିଆ** - *ଦେ:* (ବି.) : ଯେଉଁ କାଠ ଅଂଶକୁ ସହଜରେ କଟାଯାଇ ପାରେ ନାହିଁ

**ମୁଡ୍ତୁପୁ** - *କଳା:* (ବି.) : ମୁଣ୍ଡପୋତା କେଳା

**ମୁଡ୍ସା** - *ଅ:କଳା:* (ବି.) ଉପକଣ୍ଠ, ଶେଷଭାଗ, ମୁଣ୍ଡ

**ମୁଡ୍ ସଅଁରା** - *କଳା:* (ବି.) : ଆଦିବାସୀ କନ୍ଧ ସଂପ୍ରଦାୟରେ ବିବାହର ପରବର୍ତ୍ତୀ ଦିନ ସକାଳେ ଉଭୟ ବର ଓ କନ୍ୟା ଉଭୟଙ୍କୁ ମୁଣ୍ଡ ଆଉଁସି ଆଶୀର୍ବାଦ କରିବା କାର୍ଯ୍ୟକ୍ରମ

**ମୁଡ୍ଖାଇବା** - *ନୂ:ସୁ:* (କ୍ରି.) : ନିଜ ନାଁରେ ରାଣ ଖାଇବା, ମୁଣ୍ଡ ଖାଇବା

**ମୁଡ୍ଗଡ଼ା** - *ନୂ:ସୁଦ:ସୁ:* (ବି.ବିଂ.) : ମୁଣ୍ଡପୋତା କେଳା, ସମ୍ମାନ ହାନୀ ହୋଇ ଥିବା ଲୋକ

**ମୁଡ୍ସା** - *ଝା:* (ବି.) ମୁଣ୍ଡରେ, ଶେଷଭାଗରେ

**ମୁଡ୍ସୁନି** - *ନୂ:* (ବି.) : ମୁଚଲା, ଉପାଧାନ

**ମୁଡ଼ବା** - *ସୁ:ନୂ:* (କ୍ରି.) : ପାତିବା, ମୋଡ଼ିବା

**ମୁଡ଼ସି** - *ନୂ:* (ବି.) : ତକିଆ (ମୁଡ୍ସା-ବିଶେଷ)

**ମୁଡ଼ା** - *ଅନେ:* (ବି.) : ଗୋଟିଏ ପାଖରେ ହିଡ଼ ଥାଇ ଏକ ଜଳାଶୟ, ଚାଷ ଉଦ୍ଦେଶ୍ୟରେ ବର୍ଷା ପାଣିକୁ ଆଡିବନ୍ଧ ଦେଇ ସୃଷ୍ଟି କରାଯାଇ ଥିବା ଜଳାଶୟ, ଅଧିକ ଗହୀର ଜମି

**ମୁଡ଼ା ପଡ଼ିବା** - *କୋ:* (କ୍ରି.) ଦେହର ମେଦବହୁଳ ସ୍ଥାନରେ ପଡ଼ିଥିବା ଭାଙ୍ଗ

**ମୁଡ଼ା ମୁଡ଼ା** - *କଳା:* (ବିଂ.) : ମୁଣ୍ଡା ମୁଣ୍ଡା, ଟେଳା ଟେଳା

**ମୁଡ଼ିଆ** - *ଅନେ:* (କ୍ରି.ବି.) : ପ୍ରଣାମ, ଚାଂଚକୁ ବାଉଁଶ ସାହାଯ୍ୟରେ ମୋଡ଼ି ବାନ୍ଧିବା ପ୍ରଣାଳୀ, ମୁଣ୍ଡିଆ, ସ୍ତ୍ରୀଙ୍କ ହାତରେ ଚୁଡ଼ିଭଳି ରୂପା ଅଳଙ୍କାର

**ମୁଡ଼ିହେବା** - *ଦ:* (କ୍ରି.) : ପେଟମୋଡ଼ି ହେବା

**ମୁଡୁକି** - *ଗ:* (ବି.) : ଏକ ପ୍ରକାର ବେସନରେ ପ୍ରସ୍ତୁତ ଦାନ୍ତକିଲି

**ମୁଡ଼େଙ୍ଗି** - *କନ୍ଧ:* (ବି.) : ମେଘ

**ମୁଡ୍ ଛଡ଼ାବା** - *ସ:ଗ:* (କ୍ରି.) : ମୁଣ୍ଡ ଧୋଇବା, ସଫା କରିବା

**ମୁଢାବା** - *ସ:* (କ୍ରି.) : ଦାୟିତ୍ୱ ନେବା

**ମୁଢି ଘାଣ୍ଟ** - *ଗ୍ରା:* (ବି.) : ମୁଢି ଗୁଣ୍ଡ ଓ ମାଛ ମୁଣ୍ଡ ପକାଇ ମାଛର ଏକ ଘାଣ୍ଟ ତରକାରୀ

**ମୁଣ୍ଡେଇବା** - *ସୁ:ଗ୍ରା:* (ବି.କ୍ରି.) : ମନଦେଇ କାମ କରିବା, କାମ ନିଜ ମୁଣ୍ଡ ଉପରକୁ ନେବା

**ମୁଣା** - *ଅନେ:* (ବି.) : ବ୍ୟାଗ, ଥଳି, ଅଖା, ପକେଟ

**ମୁଣିବା** - *ଯା:* (ବି.) : ଧଳା ଛୋଟ ମାଛ

**ମୁଣୁ** - *ଢେ:* (ବି.) : ମହୁଲ

**ମୁଣ୍ଡକେ** - *କୋ:* (ବି.) : ଜଣପିଛା, ମୁଣ୍ଡକୁ

**ମୁଣ୍ଡ ଘାଉଁରା** - *ନ:* (ବି.) : ମୁଣ୍ଡ ବୁଲାଇ ଗୋରୁ ପଡ଼ିଯିବା ରୋଗ

**ମୁଣ୍ଡଛଡ଼େଇବା** - *ଗ:* (କ୍ରି.) ମୁଣ୍ଡସଫା କରିବା

**ମୁଣ୍ଡ ଚଳିଆ** - *ସ:* (ବିଂ.) ଅନ୍ୟର ଅଧୀନରେ ରହିବା

**ମୁଣ୍ଡ ଥାପ୍‌ନା** - *ଗୌ:* (ବିଂ.) : କାମଚଳା, ଅସ୍ଥାୟୀ

**ମୁଣ୍ଡପୋତା** - *ନ:ଗ:* (ବି.) : ମାଟି ଖୋଳି ମୁଣ୍ଡପୋତି ଖେଳ ଦେଖାଉଥିବା ଏକ ଯାଯାବର ଶ୍ରେଣୀ

**ମୁଣ୍ଡବଥା** - *ଢେ:* (ବି.) : ଗଭୀର ଚିନ୍ତା, ଶିରପୀଡ଼ା

**ମୁଣ୍ଡ ବାନ୍ଧିବା** - *ନ:* (କ୍ରି.) : ଖୋସା ବାନ୍ଧିବା

**ମୁଣ୍ଡରା** - *କୋ:* (ବିଂ.) : ଲଣ୍ଡା, କେଶଶୂନ୍ୟ

**ମୁଣ୍ଡା** - *ଅନେ:* (ବି.ବିଂ.) : ହିଡ଼୍, କାଠର ଗଣ୍ଠିଯୁକ୍ତ ଗଣ୍ଡି, ଠେଲା, ଅଙ୍କରା, ଅଙ୍କଡା; ମୂନ ନଥିବା, ନିର୍ବୁଦ୍ଧିଆ ବଳଶାଳୀ ବ୍ୟକ୍ତି, ଅଧିକ ଗଭୀର ଜମି, ଆଦିବାସୀ ପ୍ରଜାତି ବିଶେଷ, କାକୁଡ଼ି

**ମୁଣ୍ଡାମୁଣ୍ଡି** - *ଗ:ନ:* (ବି.) : ମୋଟହିସାବ, ଶେଷଯାଏଁ

**ମୁଣ୍ଡି** - *ଅନେ:* (ବି.ବିଂ.) : ଡ଼େମ୍ପ, ମୁଖିଆ, ବିବେକ, ମଥା, ମୁଖ୍ୟ, ମାନ୍ୟଗଣ୍ୟ

**ମୁଣ୍ଡିଆମାଙ୍କ** - *ସ:* (ବି.) : ମୁଖିଆ

**ମୁଣ୍ଡି ଖାଡ଼ିଆ** - *ଯା:* (ବି.) : କ୍ଷୁଦ୍ର, ଚିଙ୍ଗୁଡ଼ି

**ମୁଣ୍ଡିପର୍ଯ୍ୟନ୍ତ** - *ନ:* (ବିଂ.) : ଶେଷପର୍ଯ୍ୟନ୍ତ, ଶୀର୍ଷଯାଏଁ

**ମୁଣ୍ଡୁରା** - *ନବ:* (ବିଂ.) : ଲଣ୍ଡା

**ମୁଣ୍ଡୁଳି** - *ଖୋ:* (ବି.) : ପୋଲୁହ ଢାଲରେ ବ୍ୟବହୃତ ଗୋଲେଇ

**ମୁଣ୍ଡୁଳିଢାଲ** - *ବା:ଯା:* (ବି.) : ଏକ ପ୍ରକାର ଗୋଲାକୃତି ଢାଲ

**ମୁଣ୍ଡେଇବା** - *ନ:* (କ୍ରି.) : ମୁଣ୍ଡରେ ଲଦି ବୋହିବା

**ମୁଣ୍ଡେ ଡେଙ୍ଗର୍** - *ଗୌ:* (ବିଂ.) : ମୁଣ୍ଡେ ଉଚ୍ଚର

**ମୁଣ୍ଡ୍ର** - *କନ:* (ବି.) : କାକୁଡ଼ି

**ମୁତ** - *ଯା:ଖୋ:ନୂ:ସ:* (ବି.) : ପରିସ୍ରା, ମୂତ୍ର

**ମୁତରୀ କାଠି** - *ସୁବ:* (ବି.) : ମୁତୁରୀ ଲତାର ଦାନ୍ତକାଠି

**ମୁତା** - *ଅନେ:* (ବି.) : ଢାଳ, ଲୋଟା

**ମୁଡିଏର** - *ସୁବ:* (ବି.) : କୁଲିମାନଙ୍କର ମୁଖ୍ୟ, ସରଦାର

**ମୁଡିବା** - *ନୂ:* (କ୍ରି.) : ପରିଶ୍ରା କରିବା

**ମୁଡ୍ରି ଲତା** - *ଗ:* (ବି.) : ଔଷଧୀୟ ଲତା ବିଶେଷ

**ମୁଡେଲ୍** - *ନବ:* (ବି.) : ମହୁ

**ମୁଡ୍ରିକା** - *କୋ:* (ବି.) ମୃତକ ବଂଶର ଅଶୌଚ

**ମୁଥ** - *ନ:* (ବି.) : ବିଧା

**ମୁଥା** - *ଅନେ:* (ବି.) : ଘାସମୂଳ, ମଥା ନାମକ ଘାସ, ଢାଳ(କୁଇ ଶବ୍ଦ)

**ମୁଥି** - *ଖୋ:* (ବି.) : ବିଧା

**ମୁଥିଡ଼ା** - *ଗ:କୋ:* (ବି.ବିଂ.) : ଧାରନଥିବା, ତୀକ୍ଷଣ ନଥିବା, ଶାଣ ଦିଆଯାଇ ନଥିବା

**ମୁଦ** - *ନ:ନବ:ଗଦ୍ୟ:* (ବି.) : ବନ୍ଦ କରିବା, ସମାଧିସ୍ଥ, ସିଲ୍

**ମୁଦ୍ଇଲ** - *କନ୍ଧ:* (ବିଂ.) : କାର୍ଯ୍ୟାରମ୍ଭ କରିବା ବ୍ୟକ୍ତି

**ମୁଦ୍ଲା** - *ଓ:* (କ୍ରି.) : ଆଖିବଂଦ କଲା

**ମୁଦ୍ଲିଆ** - *କନ୍ଧ:* (ବିଂ.) : କାର୍ଯ୍ୟାରମ୍ଭ କରିବା ବ୍ୟକ୍ତି

**ମୁଦକ** - *ରା:ଗ:* (ବି.) : ଏକ ପ୍ରକାର ପିଠା, ମୋଦକପିଠା

**ମୁଦଫେଲ** - *କ:* (କ୍ରି.) : ଚିଠିଖୋଲି

**ମୁଦଲ** - *କନ୍ଧ:* (ବି.) ମୂଳ, ଆରମ୍ଭ, ସୂତ୍ରାଦିର ଅଗ୍ର

**ମୁଦା** - *ଅନେ:* (ବି.କ୍ରି.ବିଂ.) : ଟାଣହେବା, ବହଳିଆ, ଦୁବ, ବରକୋଳିପତ୍ର ହଳଦୀ ପ୍ରଭୃତି ବନ୍ଧାଣ ସାମଗ୍ରୀ, ବନ୍ଦ ହୋଇଥିବା, ଲୁଚାଇ ରଖିବା, ବହଳ ପଦାର୍ଥ, ଗୁଳା

**ମୁଦା ବସାଇବା** - *ଓ:* (କ୍ରି.) : ନିଜର ଅଗତ ଭବିଷ୍ୟତ ଜାଣିବା ପାଇଁ ଠାକୁରଙ୍କ ପାଖରେ ମାନସିକ କରି ଗୁଆ ବସାଇବା

**ମୁଦାମୁଦି** - *ଗ:* (କ୍ରି.) : ଜାକିଜୁକି ରହିବା, ହସ୍ତପଦ ଶୃଙ୍ଖଳିତ କରି ରଖିବା

**ମୁଦାର** - *ସ:* (ବି.) : ବଂଶ

**ମୁଦାଲା** - *ନ:ଖୋ:* (ବି.) : ମକଦ୍ଦମାର ପ୍ରତିପକ୍ଷ, ଆସାମୀ, ଅଭିଯୁକ୍ତକାରୀ

**ମୁଦି** - *ନ:ଜ:ଗଦ୍ୟ:* (କ୍ରି.ବି.) : ବନ୍ଦ କରି, ଖୁଚୁରା ଡେକରାତି ଦୋକାନ କିରାଣି ଦୋକାନ, ଆଙ୍ଗୁଠିର ଅଳଙ୍କାର

**ମୁଦିଆ** - *ନ:ପୁ:* (ବି.) : ପାଦ ଆଙ୍ଗୁଳିରେ ପିନ୍ଧାଯିବା ବୃତ୍ତାକାର(ଲୌହ, ରୂପା) ବଳା, ଲୁହାର ମୁଦିଭଳି ଏକ ପଦାର୍ଥ, ଗୋଡ଼ ମୁଦି

**ମୁଦି ଆଙ୍ଗୁଠି** - *ସ:ଖୋ:* (ବିଂ.ବି.) : ଅନାମିକା ଆଙ୍ଗୁଠି

**ମୁଦିକାଠି** - *ଖୋ:* (ବି.) : ମୁଦିକୁ ଗୋଲାକୃତି କରିବା ପାଇଁ ବ୍ୟବହୃତ ଦଣ୍ଡ

**ମୁଦି ପିନ୍ଧେଇବା** - *ଗଡ଼:* (କ୍ରି.) : ନିର୍ବନ୍ଧ କରିବା

**ମୁଦିବା** - *ଦେ:ନ:କୋ:* (କ୍ରି.) : ବନ୍ଦ କରିବା

**ମୁଦୁକ** - *ଭ:* (ବି.) : ମୋଦକ

**ମୁଦୁରି** - *କନ୍ଧ:* (ବି.) : କନ୍ଧ ରମଣୀର କାନର ଅଳଙ୍କାର

**ମୁଦେଇ** - *ନ:ଗଞ୍ଜ:* (ବି.) ମକଦ୍ଦମାର ଅଭିଯୋଗକାରୀ, ଦାଗୀ(କଟିରିଆ ଭାଷା)

**ମୁଦ୍ରକ** - *ସଂ:* (ବି.) : ଛାପାକାର

**ମୁଦ୍ରଣ ପାଠ** - *ସଂ:* (ବି.) : ଟାଇପ୍ ସାମଗ୍ରୀ

**ମୁନ** - *ନବ:* (ବି.) : ଛୁଞ୍ଚିର ଅଗ୍ରଭାଗ

**ମୁନ୍ଗା ଛୁଇଁ** - *ବୌ:* (ବି.) : ସଜନା ଛୁଇଁ

**ମୁନ୍ଗା** - *ନୂ:* (ବି.) : ସଜନା

**ମୁନ୍ଶୀ** - *ସଂ:* (ବି.) : କିରାଣୀ

**ମୁନ୍ଷ ମରା** - *ବୌ:* (ବି.) : ମଣିଷ ମରା, ହତ୍ୟାକାରୀ

**ମୁନସିଫ୍** - *ଖୋ:* (ବି.) : ଏକ ସ୍ୱତନ୍ତ୍ର ବିଭାଗ (ନ୍ୟାୟାଳୟର) ବିଚାରପତି

**ମୁନା** - *ଅନେ:* (ବି.) : ମୁଣା, ପକେଟ୍, ବ୍ୟାଗ୍

**ମୁନି** - *ଗ:* (ବି.) : ଶିବ ପୂଜକ

**ମୁନିକା** - *ଗ:ଖୋ:* (ବି.) : ସଜନା ଗଛ, ମୁନିଗା

**ମୁନିଗା** - *ନବ:ମା:ଗଦ୍ୟ:* (ବି.) : ସଜନାଛୁଇଁ

**ମୁନିନ୍ଧା** - *ଭ:* (ବି.) : ଘାସ ବିଶେଷ

**ମୁନିମ** - *ସୁବ:ନୂ:* (ବି.) : ଗୁମାସ୍ତା, ହିସାବ ପତ୍ର, ତଥ୍ୟ, ମାଲିକାନା ବୁଝୁଥିବା କର୍ମଚାରି, ମୁନ୍ସୀ

**ମୁନିମୁହାଁ** - *ଖୋ:* (ବିଂ.) : କୁଟିଳ ପ୍ରକୃତିର ଲୋକ

**ମୁନୁଷ୍** - *ବର:କଳା:ନବ:* (ବି.) ସ୍ୱାମୀ, ପୁରୁଷ ଲୋକ, ମନୁଷ୍ୟ

**ମୁନୁଷ୍ ପିଲା** - *ନୂ:* (ବି.) : ପୁରୁଷ ବ୍ୟକ୍ତି

**ମୁନ୍ଦଲ** - *ବ:କଳା:* (ବି.) କୌଣସି ସମସ୍ୟାର ମୂଳ ବା ଖିଅ, ମୂଳ, ଆରମ୍ଭ, ସୂତ୍ର ଓ ଦଉଡ଼ି ଆଦିର ଅଗ୍ରଭାଗ

**ମୁନ୍ଦାଏ** - *ଦେ:* (ବିଂ.) : ଅଳ୍ପ ପରିମିତି

**ମୁଫଲିସ** - *ଗଦ୍ୟ:* (ବିଂ.) : ଅବିବାହିତ

**ମୁମାଛି** - *ମା:* (ବି.) : ମହୁମାଛି

**ମୁରଧୁନି** - *ବା:* (ବି.) : ଚାଳ ଘରର ଭିତର ପଟର ସର୍ବୋଚ୍ଚ ଅଂଶ

**ମୁରଧୁନିଆ** - *ସ:* (ବିଂ.) : ମୁରବୀ ସ୍ଥାନୀୟ

**ମୁରବାର** - *ସୁବ:* (କ୍ରି.) : ମୋଡ଼ିଦେବା

**ମୁରବି ପଣିଆ** - *ଖୋ:* (ବିଂ.) : ମୁରବି ବୋଲି ନିଜକୁ ସାବ୍ୟସ୍ତ କରିବା

**ମୁରଷମ୍** - *ବା:* (ବିଂ.) : ଧାନ ଅମଳ ସମୟ

**ମୁରହିହରା** - *ସୁବ:* (ବିଂ.) : ମୁଡିବିକୁଥିବା ଲୋକ

ମୁରା - *କଣ:* (ସ.) : ମୋର

ମୁରାଟ - *ପୁ:* (ବିଂ.) : ବୀରତ୍ୱ ବ୍ୟଞ୍ଜକ ଭଙ୍ଗୀ, ଉଦ୍ଧତ ଭଙ୍ଗୀ, କୁଟିଳ ଭ୍ରୂଭଙ୍ଗୀ

ମୁରି - *କଣ:* (ବି.) : ଭୁଜା, ମୁଢି

ମୁରିଆଁ - *କଳା:* (ବିଂ.) : ମୋଡ଼ିମୋଡ଼ି ହୋଇଥିବା

ମୁରିଛୁରି ହେବା - *ବୌ:* (କ୍ରି.) : ଅଳସ ଭାଙ୍ଗିବା

ମୁରୁକିହସ - *ନ:* (ବି.) : ଅଳ୍ପ ହସ, ସ୍ମିତ ହାସ୍ୟ

ମୁରୁକୁଟିଆ - *ନ:ଭ:ଯା:* (ବିଂ.) : ଦୁର୍ବଳିଆ, ମନ ଅନୁଯାୟୀ କାମିକା, ନିମ୍ନମାନର, ଉଧେଇନଥିବା

ମୁରୁଖ - *ଢ:* (ବିଂ.) : ମୂର୍ଖ

ମୁରୁଗା - *କେନ୍ଦୁ:* (ବି.) : ଏକ ପ୍ରକାର ଗୁଳ୍ମ

ମୁରୁଗୀ - *ନ:ଗ:* (ବି.) : କୁକୁଡ଼ା

ମୁରୁଚା - *ଗଦ୍ୟ:* (ବି.) ପ୍ରାଚୀରର ଚାରିକୋଣରେ ତିଆରି ସୈନ୍ୟ ଓ ଗୁଳିବାରୁଦ ରହିବାର ଉଚ୍ଚ ଗୃହ

ମୁରୁଛ - *ଢ:* (ବିଂ.) : ମୂର୍ଖ

ମୁରୁଛିବା - *ନବ:* (କ୍ରି.) : ଭୁଲିବା

ମୁରୁଜ - *ଖୋ:ନ:ସଂ:ଗ:* (ବି.) : ଝୋଟିଚିତା ଆଙ୍କିବାପାଇଁ ବ୍ୟବହୃତ ଗୁଣ୍ଡ ପଦାର୍ଥ, ରଙ୍ଗ ଗୁଣ୍ଡ

ମୁରୁଦୁଙ୍ଗ - *ନୂ:* (ବି.) : ମୃଦଙ୍ଗ

ମୁରୁଧୂନା ପାତ ହେବା - *ଗ:* (କ୍ରି.) : ବିପତ୍ତି ପଡ଼ିବା, ମସ୍ତକଚ୍ଛେଦ

ମୁରୁମ୍ - *କଳା:* (ବି.) : ରୁଗୁଡ଼ି, ଗୋଡ଼ିମିଶ୍ରିତ ମାଟି

ମୁରୁମୁରିଆ - *ଗ:* (ବିଂ.) : ସାମାନ୍ୟ ନିଆଁଥିବା ପାଉଁଶ, ଅଙ୍ଗାର

ମୁରୁମୁରୁ - *ଗଦ୍ୟ:* (କ୍ରି.ବିଂ.) : ଗୁଣୁଗୁଣୁ

ମୁରେଢୁ - *ଗଦ୍ୟ:* (ବି.) : ବେଲ

ମୁର୍ଗା - *ଦେ:ଗ:* (ବି.) : କୁକୁଡ଼ା, ଗୁଳ୍ମବିଶେଷ

ମୁର୍ଗାନାଡ଼ି - *ମ:* (ବି.) : ସଜନା ଛୁଇଁ

ମୁର୍ଚ୍ଛିଦେବା - *ସ:* (କ୍ରି.) : ସବୁ ସଂପର୍କ ତୁଟେଇବା

ମୁର୍ଚ୍ଛିବା - *ଗ:* (କ୍ରି.) : ତେଢ଼ିବା, ଝୁରିବା

ମୁର୍ତିକିଆ - *ଗ:* (ବି.) : ମୃତାଶୌଚ

ମୁର୍ଦଙ୍ଗ - *ଢ:* (ବି.) : ମୃଦଙ୍ଗ, ବାଦ୍ୟଯନ୍ତ୍ର

ମୁର୍ଦାର - *ନ:* (ବି.) : ଶବ, ମଢ, ମଡ଼ା

ମୁର୍ଦ୍ଧାର - *ଦେ:* (ବି.) : ଶବ

ମୁର୍ଦ୍ଧନା - *ନ:* (ବି.) : ଛାତି, ହୃଦୟ

ମୁର୍ଧଯ - *ଢ:* (ବି.) : ଛତି

ମୁର୍କୁଟି ଦେବା - *ସ:* (କ୍ରି.) : ମୋଡ଼ିଦେବା

ମୁର୍କୁଟିବା - *କଳା:ବୌ:ବ:* (କ୍ରି.ବି.) : ମୋଡ଼ିମାଡ଼ି ଦେବା, ମୋଡ଼ାମୋଡ଼ି କରିବା

ମୁର୍କୁଟି ହେବା - *ସ:* (କ୍ରି.) : ମୋଡ଼ିହେବା

ମୁର୍ଖିଆ - *ନୂ:* (କ୍ରି.) : ମୂର୍ଖ ହିସାବରେ

ମୁର୍ଗ - *ବର:* (ବି.) : ମୃଗ

ମୁର୍ଗା - *ସୁବ:* (ବି.) : ସିସାଲ ଜାତୀୟ କଣ୍ଟାବାଡ଼

**ମୁର୍‌ଗାଦି** - *ସୁବ:* (କ୍ରି.) : ମାଙ୍କଡ଼ଚିତ୍

**ମୁର୍‌ଚା** - *ଅନେ:* (ବି.ବିଂ.) : ଅଜ୍ଞାନ, ମୂର୍ଚ୍ଛା, କଳଙ୍କି

**ମୁର୍‌ଛା ହେବା** - *ନୂ:* (କ୍ରି.) : ବେହୋସ ହେବା

**ମୁର୍‌ଛିବା** - *ବ:* (କ୍ରି.) : ତ୍ୟାଗକରିବା

**ମୁର୍‌ଝିଯିବା** - *ବୌ:* (କ୍ରି.) : ମଉଳି ଯିବା

**ମୁର୍‌ତୁକିଆ** - *କଳା:* (ବି.) : ମୁର୍ତିକା ଶୌଚ

**ମୁର୍‌ମୁରା** - *ନବ:କୋ:ମା:ଗଜ:* (ବି.) : ବିମର୍ଷ, ବିଷାଦଭାବ, ମନମରା, ଶୁଖିଯାଇଥିବା

**ମୁର୍‌ରୁ** - *ନୂ:* (ବିଂ.) : ସିଙ୍ଗ ନଥିବା ପ୍ରାଣୀ

**ମୁର୍‌ହି** - *ବୌ:ସୁବ:ସ:* (ବି.) : ମୁଢି

**ମୁର୍‌ହୁପା** - *ବୌ:* (ବି.) : ମୁଣ୍ଡପୋତି ଯିଏ ଖେଳ ଦେଖାଏ

**ମୁଲ୍‌କରି** - *କଳା:* (ବିଂ.) : ସ୍ମିତ, ଶବ୍ଦହୀନ ଭାବରେ ଖୁବ୍‌ଅଳ୍ପ ହସିବା

**ମୁଲ୍ କରିବା** - *ନୂ:* (କ୍ରି.) : ଆରମ୍ଭ କରିବା, ମଜୁରୀ ଖଟିବା

**ମୁଲ୍‌କି ହଁସା** - *ସ:* (ବି.) : ସ୍ମିତ ହସ

**ମୁଲ୍‌ହୁଁ** - *ନୂ:ସ:* (ଅ.ବି.) : ଆଦୌ, ଆରମ୍ଭରୁ

**ମୁଲ୍ ହେବା** - *ସ:* (କ୍ରି.) : ଆରମ୍ଭ ହେବା

**ମୁଲକ** - *ସଂ:* (ବି.) : ଦେଶ, ଅଞ୍ଚଳ, ସ୍ଥାନ

**ମୁଲତବୀ** - *ସଂ:* (ବି.) : ସ୍ଥଗିତ ରହିବା

**ମୁଲହୁଁ** - *ଅ:* (ବିଂ.) : ପ୍ରଥମରୁ

**ମୁଲା ଆଙ୍ଗଠି** - *ବର:* (ବି.) : ବୁଢ଼ା ଆଙ୍ଗୁଠି

**ମୁଲାଇବା** - *ଗ:* (କ୍ରି.) : ମୂଲ୍ୟଠିକଣା କରିବା

**ମୁଲାଇମ୍** - *ଦେ:* (ବିଂ.) : କୋମଳ

**ମୁଲାକାତ୍** - *ଗଦ୍ୟ:* (ବି.) : ଭେଟ, ସାକ୍ଷାତ

**ମୁଲାଦା** - *ଗ:* (ବି.) : ଠିକ୍‌କଥା

**ମୁଲିଆର୍** - *ସ:* (ବିଂ.) : କୁଲି

**ମୁଲୁମୁଛିଆ** - *ଦେ:* (ବିଂ.) : ଅଳସୁଆ

**ମୁଲୁମୁଲୁ** - *ନବ:* (ବି.) : ବିଳମ୍ବ

**ମୁଶ୍‌କା** - *ଦେ:* (ବିଂ.) : ରଣକୁ ଭୁରୁଡ଼ାଇ ଦେବା ବ୍ୟକ୍ତି

**ମୁଶ୍‌କିଲ** - *ଦେ:* (ବି.ବିଂ.) : କଷ୍ଟକର

**ମୁଶ୍‌ମୁଶ୍** - *ଦେ:* (ଅ.) : ମୁଢ଼ି ଚୋବାଇବାର ଶବ୍ଦ

**ମୁଶାଣ୍ଡି ଯିବା** - *ନ:* (କ୍ରି.) : ଜୀବନ ବିକଳରେ ପଳାଇବା

**ମୁଷ୍‌ଡିବାର** - *ସୁବ:* (କ୍ରି.) : ମୂଷାପରି ଧରା ନ ଦେଇ ଖସିଯିବା

**ମୁଷଲ୍** - *ମା:* (ବି.) : ହାତଢିଙ୍କି

**ମୁଷଳିଆ** - *ନ:* (ବିଂ.) : ମୋଟାମୋଟା

**ମୁଷୁକ୍ ମାରା** - *ବ:* (ବିଂ.) : ମୁହଁ ଶୁଖେଇ ବସିବା

**ମୁସ୍‌କା (ପୁଂ)** - *କଳା:* (ବି.) : ପ୍ରାୟ ଘରେ ରହୁଥିବା ବ୍ୟକ୍ତି

**ମୁସ୍‌କିଆ** - *ସ:* (ବି.) : ଟଂକାନେଇ ଫେରସ୍ତ ନଦେବା, ଯେ ଅନ୍ୟର ସଂପତ୍ତି ଆତ୍ମସାତ କରେ

**ମୁସ୍‌କିବା** - *ସ:* (କ୍ରି.) : ଆତ୍ମସାତ କରିବା, ଖାଇଦେବା

**ମୁସ୍ରି** - *କଳା:ସୁବ:* (ବି.) ମସୁର, ଡାଲିଜାତୀୟ ଫସଲ

**ମୁସ୍ରେଇବା** - *ଚୌ:* (ବି.) : ଗଜୁରିବା

**ମୁସି** - *ଗ:* (ବି.) : ପତ୍ରର ଅଗ୍ରଭାଗ

**ମୁସିବା** - *କଳା:* (କ୍ରି.) : କ୍ଷତି ହେବା, ନଷ୍ଟ ହେବା

**ମୁସୁକାମୁହାଁ** - *ଗଛ:ଗ:ଚୌ:* (ବିଂ.) : ଅମୋଜିକିଆ, ନିରସିଆ ବ୍ୟକ୍ତି

**ମୁସୁକୁଣିଆ** - *ଠେଙ୍କୁ:* (ବିଂ.) : ଧୂପଡା

**ମୁସୁମୁସିଆ** - *ଗ:* (ବି.) : କଠିନ ହୋଇନଥିବା ଖାଦ୍ୟ

**ମୁସୁରୀ** - *ମ:* (ବି.) : ମଶାରି

**ମୁସୁରୁ** - *ଗଦ୍ୟ:* (ବି.) : ଝଡ଼

**ମୁସୁଳ** - *ଚୌ:* (ବି.) : ମୂଷଳ

**ମୁସ୍କାମାରା** - *ମା:* (ବିଂ) : ମନମରା

**ମୁସ୍କିବା** - *ଚୌ:* (କ୍ରି.) : ଖାଇବା

**ମୁସ୍କୁଲିଆ** - *ଚୌ:* (ବି.) : ଜଟିଳ

**ମୁସ୍ତରୀ** - *ନ:ଭ:* (ବି.) : ଜମିକିଣିବା ଲୋକ, କ୍ରେତା

**ମୁସ୍ତାଫା** - *ଗ:* (ବି.) : ବେଶ ଭୂଷାରେ ସଜ୍ଜିତ ହେବା

**ମୁସ୍ତୁରୁ** - *ଚୌ:* (ବି.) : ମାଷ୍ଟର

**ମୁହର** - *ଚୌ:* (ବି.) : ମୋହର

**ମୁହାଁଇବା** - *ଗ:ନ:* (କ୍ରି.) : ଯାତ୍ରାକରିବା, ଚୂଲିରେ କାଠ ଭରିବା, ଅଗ୍ରସର ହେବା

**ମୁହାଁଘା** - *କଳା:* (ବି.) : ଛେଳିମାନଂକ ମୁହଁରେ ହେଉଥିବା ଘା'ରୋଗ

**ମୁହାଁଚି** - *ଅ:* (ବି.) : ଘୋଡ଼ଣି, ଠିପି

**ମୁହାଁଣ** - *ନ:* (ବି.) : ବର୍ଷାଋତୁରେ ବିଲର ହୁଡ଼ା ଭାଙ୍ଗି ପାଣି ଯାଉଥିବା କ୍ଷୁଦ୍ର ନାଳ

**ମୁହାଁମୁହିଁ** - *ଖୋ:* (କ୍ରି.ବିଂ) : ସାମନା ସାମନି

**ମୁହାଁସ** - *ସ୍ୱବ:* (ବି.) : ସ୍ନେହ ପ୍ରେମ

**ମୁହିବା** - *ବ୍ର:ଚୌ:* (କ୍ରି.) ମୋହିବା, ମନ୍ଥନ କରିବା

**ମୁହୁଡ଼ା** - *ସୁବ:ବ:* (ବି.କ୍ରି.) : ମୁହଁ, ଗୀତର ଘୋଷା, ଭିନ୍ନ ଦିଗକୁ ଯିବା

**ମୁହୁରିଆ** - *ଅନେ:* (ବିଂ.) : ମହୁରୀ ବାଦକ

**ମୁହୁରୀ** - *ସ:ସୁବ:କଳା:* (ବି.) : ଆକୃତିରେ ଲମ୍ବା ଥିବା ବାଦ୍ୟ, ମହୁରୀ ବାଦ୍ୟ

**ମୁହୁଁ** - *ସୁ:ନୂ:ସ:* (ବି.) : ମୁହଁ

**ମୁହୁଁଜୋର୍** - *କଳା:* (ବିଂ.) : ମୁହଁଟାଣ, ହଠାତ୍ କାହାରିକୁ ଡ଼ରିନଯିବା ପ୍ରକୃତି

**ମୁହୁଁବଲା** - *କଳା:* (ବି.) : ଶଗଡ଼ର ମାଣର ମୁହଁରେ ଲାଗୁଥିବା ଲୁହା ବଳା

**ମୁହୁଁ ମଲ୍କା** - *ସ:* (ବି.) : ସୁଖଭଂଗ, ଚାଖୀ ଚାହାଣୀ

**ମୁହୁଁ ମୁଡ୍ବା** - *ସ:* (କ୍ରି.) : ମୁହଁକୁ ମୋଡ଼ିବା, ଅସ୍ୱୀକାର କରିବା

**ମୁହଁଅନ୍ଧାର** - *ଅନେ:* (ବି.) : ମାଛିଅନ୍ଧାର

**ମୁହଁ ଆଡ଼ିବା** - *ଚ:* (କ୍ରି.) : ମୁହଁ ମୋଡ଼ିହେବା

**ମୁହଁ ଓଲେଇବା** - *କେ:* (କ୍ରି.) : ମନ ଦୁଃଖ କରିବା

**ମୁହଁଖର** - *ନ:କେ:ଗ:* (ବିଂ.) : ମୁହେଁମୁହେଁ କଟୁକଥା କହୁଥିବା, ମୁଖରା

**ମୁହଁଖୋର** - *କେ:* (ବିଂ.) : ଦୁଷ୍ଟଲୋକ, କଟୂ କଥା କହିବାରେ ଅଭ୍ୟସ୍ତ ବ୍ୟକ୍ତି

**ମୁହଁଗାଲୁ** - *ଢେ:* (ବି.) ସତ୍ୟକଥାକୁ ନମାନିବା

**ମୁହଁଚାହାଁ** - *ନ:* (ବିଂ.ବି.) : ମୁହଁଦେଖି ଦେବା ନ୍ୟାୟ, ପ୍ରଥମ କରି ବୋହୂ ଦେଖା

**ମୁହଁଚୁଆଁ** - *ବ:* (ବି.) : ନୂଆ ବୋହୂର ମୁଖ ଦର୍ଶନ ବେଳେ ଦିଆଯାଉଥିବା ଭେଟି

**ମୁହଁଚୁଙ୍ଗାରିବା** - *ନ:* (କ୍ରି.) : ମୁହଁହଲାଇ ଆପ୍ତିସୂଚକ 'ହଁ' କହିବା

**ମୁହଁପୋଛା** - *ନ:* (ବି.) : ଛୋଟ ରୁମାଲ

**ମୁହଁଫୁଲେଇବା** - *ନ:ସ:* (କ୍ରି.) : ରାଗିକରି କଥା ନକହିବା, ଅଭିମାନ କରିବା

**ମୁହଁବଢା** - *ବୌ:* (ବି.) : ମୁହଁଖୋର୍

**ମୁହଁଭାଙ୍ଗିବା** - *ନ:* (କ୍ରି.) : ମାଡ଼ମାରି ପାଟି ବନ୍ଦ କରିଦେବା

**ମୁହଁଭୁଡୁକି** - *ନ:* (ବି.) : ମୁହଁ ଫୁଟାଣି, ଗର୍ବକଥା କହିବା, ଗାଲୁ ମାରିବା

**ମୁହଁଭୁରୁଡ଼ି** - *ବ:* (ବି.) : ମିଥ୍ୟାଦାମ୍ଭିକତା

**ମୁହଁ ମଡ଼ା** - *ପଦ୍ୟ:* (ବିଂ.) : ବ୍ୟବହୃତ ହୋଇଥିବା

**ମୁହଁମଡିଆ** - *ପୁ:* (ବିଂ.) : ଯେ କାହା କଥା ଭାଙ୍ଗିପାରେ ନାହିଁ

**ମୁହଁ ମାରିବା** - *ଯା:* (କ୍ରି.) : ଦେଖିଦେଇ ଯିବା, ଅଳ୍ପସମୟ ପାଇଁ ପହଞ୍ଚିବା

**ମୁହଁସଞ୍ଜ୍** - *ମ:* (ବି.) : ସଂଧ୍ୟା

**ମୁହଁ ସୁଣ୍ଡରେଇବା** - *କୋ:* (କ୍ରି.) : ମୁହଁ ଶୁଖାଇବା

**ମୁହାଇଜା** - *ଯା:* (ବିଂ.) : ଲାଜ ନଥିବା

**ମୁଁନା** - *ମା:* (ବି.) : ବ୍ୟାଗ

**ମୁଁହରେ ନିଆଁ** - *ଖୋ:* (ବିଂ.) : ଏକ ପ୍ରକାର ଗାଳି, ନିଅଁଣିଆ

**ମୁଁହାସ** - *ସ:* (ବି.) : ମୋହ

**ମୁଁହୁଁ** - *କଳା:* (ବି.) : ମୁହଁ, ମୁଖ

**ମୁଂଗ୍** - *କଳା:* (ବି.) : ମୁଗ

**ମୁଂଗ୍ନା** - *କଳା:* (ବି.) : ମୁନିଗା, ସଜନା

**ମୁଂଗ୍ଲି** - *କଳା:* (ବି.) : ମଂଗୁଳି

**ମୁଂଜି** - *ବୌ:* (ବି.) : ଶସ୍ୟ ବୀଜ, ମଂଜି

**ମୁଂଦି** - *ନୁ:* (ବି.) : ମୁଦି(ଅଙ୍ଗୁଳିର ଅଳଂକାର

**ମୁଖକ୍** - *ଢେ:* (ବି.) : ଦାନ୍ତ

**ମୁଖବାଟିକା** - *ଢେ:* (ବି.) : ଆମ୍ବଡ଼ା

**ମୁଢ** - *ଭ:* (ବିଂ.) : ମୁର୍ଖ

**ମୁତ** - *ଢେ:କଳା:* (ବି.) : ପରିସ୍ରା, ମୂତ୍ର, ପ୍ରସା

**ମୁରିଆ** - *ଗଜ:* (ବି.) : ଜାତିବିଶେଷ

**ମୂର୍ଖାଣ୍ଡି** - *ନବ:ବୌ:* (ବି.) : ମୂର୍ଖାମି

**ମୂର୍ଚ୍ଛାପାକ** - *ସ:* (ବି.) : କବିରାଜୀ ଔଷଧରେ (ତୈଳ) ପ୍ରୟୋଗ ଏକ ରସ

**ମୂର୍ଚ୍ଛାବାୟୁ** - *ସଂ* (ବି.) : ବାତରୋଗ

**ମୂର୍ଚ୍ଛାଭଙ୍ଗ** - *ସଂ* (ବି.) : ସଂଜ୍ଞାଲାଭ, ଚେତା ପାଇବା

**ମୂର୍ଚ୍ଛିବା** - *କୋ.* (କ୍ରି.) : ତ୍ୟାଗ କରିବା

**ମୂର୍ତ୍ତିକିଆ** - *ସଂ* (ବିଂ.) : ମୃତାହଶୌଚ

**ମୂର୍ତ୍ତିଖୋଳ** - *ସଂ* (ବି.) : ଝାମ୍ପୀ, ଛତା, ପଖିଆ

**ମୂର୍ଦ୍ଧନା ଫାଟିବା** - *ସଂ* (ବି.) : ମୁଣ୍ଡକାଟ, ମୃତ୍ୟୁ

**ମୂଲ୍** - *କଳା.ମ.* (ବି.) : ଗଛର ମୂଳ, ମୂଳଧନ

**ମୂଲ୍‌ଛିଡ଼ା** - *ସୁବ.* (କ୍ରି.) : ବିବାହ ପୂର୍ବରୁ ବଧୂର ଅଳଙ୍କାର ଧାରଣ ଅନୁଷ୍ଠାନ

**ମୂଲଭ** - *କଳା.* (ବିଂ.) : ଜିନିଷର ମୂଲ୍ୟ ସଂପର୍କରେ ବ୍ୟବସାୟୀ ସହିତ କଥା ହେଉଥିବା ବ୍ୟକ୍ତି

**ମୂଲଚାଲ** - *କେ.ଦେ.ଗ.ସଂ* (ବି.କ୍ରି.) : ଦର କରିବା, ମୁଲାଇବା, ମୂଲ୍ୟ ନିରୂପଣ ପାଇଁ ତର୍କ, ବାର୍ଗେନିଙ୍ଗ୍ କରିବା, ଦାମ୍ କମେଇବା

**ମୂଲପାତି** - *ସଂ* (ବି.) : ଦୈନିକ ମଜୁରି

**ମୂଲ ମାଏଟ୍** - *ସୁବ.* (ବି.) : ଜନ୍ମମାଟି

**ମୂଲା** - *କଳା.* (ବି.) : ମୂଳା

**ମୂଲାବାର** - *ସୁବ.* (କ୍ରି.) : ଦର କରିବା

**ମୂଳି** - *ଚୌ.* (ବି.) : ପୁରୁଣା ମୂଳରୁ ବଢ଼ିଲା ଗଛ

**ମୂଲିଆ** - *କ.* (ବି.) : ଯେ ମୂଲ ଲାଗେ, ଶ୍ରମିକ, ମଜୁରିଆ

**ମୂଳି କୁସାରୀ** - *ଚୌ.* (ବି.) : ପୁରୁଣା ମୂଳରୁ ବଢ଼ିଥିବା କୁସାରୀ

**ମୂଳି ବାର** - *ଚୌ.* (ବି.) : ଯେଉଁ ବାରରୁ ପୁରୁଣା ମୂଳରୁ ଗଛ ବଢ଼ିଥାଏ

**ମୂଲୀ** - *ଗଦ୍ୟ.କଳା.* (ବି.ବିଂ.) : ଗଙ୍ଗଶିଉଳି, ଦଳର ମୁଖ୍ୟ

**ମୂଲେନ୍** - *କଳା.* (କ୍ରି.) : ମୂଲେଇବା

**ମୂଳଦ୍ୱାର** - *ସଂ* (ବି.) : ସିଂହଦ୍ୱାର, ମୁଖ୍ୟ ଦ୍ୱାର

**ମୂଳପାଣ୍ଠି** - *ସଂ* (ବି.) : ମୂଳଧନ

**ମୂଳପୋଛ** - *ସଂ* (ବିଂ.) : ସମୂଳେ ବିନଷ୍ଟ

**ମୂଳ ବାଡ଼ିଆ** - *କ.* (ବିଂ.) : ଛଣ ପାଇବା ଆଶାରେ ଧାନ ବିଡ଼ାକୁ ମୂଳରୁ ଧରି ବାଡ଼ିଆଯାଏ

**ମୂଳମଞ୍ଜି** - *ସଂ* (ବି.) : କାରଣ, ମୂଳ ଉତ୍ସ, ଉତ୍ପତ୍ତି ସ୍ଥଳ

**ମୂଳା** - *ଖୋ.* (ବି.) : ମାଟିତଳ ପରିବା

**ମୂଳି** - *ଗଞ୍ଜ.ନ.* (ବି.) : ଜାତିବିଶେଷ, ବାଉଁଶ ଠେଙ୍ଗା, ଦ୍ୱିତୀୟ ବର୍ଷର ଆଖୁଚାଷ

**ମୂଳିଆଶିଙ୍ଗା** - *କ.* (ବିଂ.) : ମୋଟା ଶିଙ୍ଗଥିବା ବଳଦ

**ମୂଳେଇବା** - *କୋ.* (କ୍ରି.) : ଆରମ୍ଭ କରିବା

**ମୂଷଣ** - *ଢେ.* (ବି.) : ଚୋରୀ

**ମୂଷଲ୍** - *କଳା.* (ବି.) : ମୂଷଳ, ଘଣାର ମୂଷଳ

**ମୂଷାଣ୍ଡି ଯିବା** - *ଅ:* (କ୍ରି.) : ଆଗପଛ ନଦେଖି ମାଡ଼ିଯିବା

**ମୂଷା ଫେରିଘର** - *ଗ:* (ବି.) : ଷ୍ଟେସନ୍ ର ପ୍ରତୀକ୍ଷାଳୟ

**ମୂଷାଲେଂଢିଆ** - *କଳା:* (ବିଂ.) : କ୍ରମଶ ସରୁହେବା, କ୍ରମଶଃ ଦୁର୍ବଳ ହୋଇ ଆସିବା

**ମୂସୁ** - *କୋ:* (ବିଂ.) : ନୀରବ

**ମେଇଁ** - *ନୂ:ଗ:କଳା:* (ବି.) : ମାଆଙ୍କ ଭାଇର ସ୍ତ୍ରୀ, ମାଇଁ, ବିଲେଇ

**ମେଏଙ୍ଗୀ** - *କଳା:* (ବି.) : ମାଇଙ୍ଗୀ, ସ୍ତ୍ରୀ, ପତ୍ନୀ

**ମେଏଁମେଏଁ** - *ଦେ:* (ଅ.) : ଛେଳିର

**ମେକ୍ରା** - *ବଉ:* (ବି.) : ବୁଢ଼ିଆଣୀ

**ମେକା** - *ସ:କଳା:ସୁବ:ଗ:* (ବି.) : ମକା, ମେଣ୍ଢା

**ମେକାପ** - *ଗ:* (ବି.) : ଭଣ୍ଡାର ରକ୍ଷକ

**ମେଖ** - *ଅନେ:* (ବି.) : ଲୁହାକଣ୍ଟା, କଳି, କିଳା

**ମେଖଢ଼** - *ଗ:* (ବି.) : ଦୁଷ୍ଟ

**ମେଖଳ** - *ଦେ:* (ବି.) : ଅଣ୍ଟାସୂତା

**ମେଖଳି** - *ଦେ:* (ବି.) : କଟି

**ମେଖା** - *ଦେ:* (ବି.) : ବିପଦ

**ମେଖାସାଦାର** - *ଗଦ୍ୟ:* (ବି.) : ଦୁର୍ଦ୍ଦାନ୍ତ

**ମେଖିଡ଼ି** - *କୋ:ଗ:* (ବିଂ.) : କଥା ଦେଇଥିବା କାମ ନକରିବା, କଥା ନଶୁଣିବା

**ମେଗୁଆ** - *ଚୌ:ସୁବ:* (ବି.) : ପିଲ୍ଲୁକି

**ମେଘଡମ୍ବୁରୁ** - *ଜ:* (ବି.) : ଧାନକିସମ, ଏକ ପ୍ରକାର ଧାନର ନାଁ

**ମେଘଳ** - *ଗଦ୍ୟ:* (ବିଂ.) : ବାଦଲ ଆଚ୍ଛାଦିତ

**ମେଘହେବ** - *ଦେ:* (କ୍ରି.) : ବର୍ଷାହେବ

**ମେଘା** - *ଦେ:* (ବି.) : ମୁଥା

**ମେଘି** - *ଦେ:* (ବିଂ.) : ମେଘର ବର୍ଣ୍ଣବିଶିଷ୍ଟ

**ମେଘୁଆ** - *ଅନେ:* (ବି.ବିଂ) : ମେଘାଚ୍ଛନ୍ନ, ପିଲ୍ଲୁକି, ଆତ, ଗୋଲାକାର ବିଶିଷ୍ଟ ଦେଶୀ ଆମ୍ବ

**ମେଙ୍କ** - *ଗ:* (ବିଂ.) : କୀଳା

**ମେଙ୍ଗଟା** - *ସୁ:* (ବିଂ.) : ଅଙ୍କାବଙ୍କା

**ମେଚ୍କା** - *ଦେ:* (ବି.) : କପାସିଆଗଛ

**ମେଚଟା** - *ସ:* (ବି.) : ଚେମେଣିଆ

**ମେଛା** - *ଅନେ:* (ବି.) : ନିଶ

**ମେଛୁଆ** - *ଚୌ:* (ବି.) : ନିଶୁଆ

**ମେଛେଲ୍ଲୁ** - *ସୁବ:* (ବିଂ.) : ନିଶୁଆ ଲୋକ

**ମେଜ୍ରାବାର** - *ସୁବ:* (କ୍ରି.) : ମିଶାଇ ଦେବା, ଲିଭାଇ ଦେବା, ଧୂଳିଘର ଭାଙ୍ଗି ଦେବା

**ମେଜଆ** - *ଦେ:* (ବି.) : ଚଟାଣ

**ମେଜି** - *ଗଦ୍ୟ:* (ବି.) : ଦୀପ

**ମେଜିଆ** - *ସୁ:* (ବି.) : ଘରର ଚଟାଣ ବା ତଳଭାଗ

**ମେଞ୍ଜୁର** - *ସୁ:* (ବି.) : ମୟୂର

**ମେଝଲି** - *ମ:* (ବି.) : ମଝିଆଁ

**ମେଝୁର** - *ମ:* (ବି.) : ମୟୂର

**ମେଞ୍ଚଡ** - *ଅନେ:* (ବିଂ.ବି.) : ଅଳ୍ପ ବୟସ୍କ, ଅନଭିଜ୍ଞ, ଶିଶୁ, କ୍ଷୁଦ୍ର

**ମେଞ୍ଚାଏ** - *କେ:* (ବିଂ.) : ପୁଳାଏ

**ମେଞ୍ଚି** - *କ:ଗ:* (ବିଂ.ବି.) : ମେଞ୍ଚାଏ, ଗୁଳା

**ମେଞ୍ଜନ** - *କ:* (ବି.) : ଅତିସିଝିଯିବା

**ମେଞ୍ଜିଆ** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**ମେଟ୍** - *କଳା:* (ବି.) : ମାଟି, କୁଲିମାନଂକ ମୁଖ୍ୟ

**ମେଟବାର** - *ସୁବ:* (କ୍ରି.) : ଲିଭିଯିବା

**ମେଟ ଭାଜି** - *ନୂ:* (ବି.) : ଭାଜି ଶାଗ

**ମେଟା** - *ଗଛ:* (ବି.) : ଛୋଟ ଡ଼ଙ୍ଗର ପାହାଡ଼

**ମେଟାବା** - *କଳା:* (କ୍ରି.) ଲିଭେଇବା, ପୋଛିବା

**ମେଟାବାର** - *ସୁବ:* (କ୍ରି.) : ଲେଖା, ଝୋଟି ଦାଗ ଆଦି ଲିଭାଇବା

**ମେଟିବା** - *ସ:ବୌ:* (କ୍ରି.) : ଲିଭିଯିବା, ମିଳାଇ ଯିବା

**ମେଟୁକୁଳା ମାରିବା** - *କୋ:* (କ୍ରି.) : ବୃଦ୍ଧାଙ୍ଗୁଳି ସହ ଅନ୍ୟ ଅଂଗୁଳିରେ ଆଘାତ କରିବା

**ମେଟ୍ରୋଜୀବନ** - *ସଂ:* (ବି.) : ବ୍ୟସ୍ତଜୀବନ

**ମେଠା** - *ଢେ:* (ବି.) : ଆକାର

**ମେଡକୁ** - *ଓା:ଗଛ:ଗ:କନ୍ଧ:* (ବିଂ.) : ଅମାନିଆ, ଅବାଧ, ମୟୂର

**ମେଡ଼ା** - *ଗଦ୍ୟ:* (ବି.) : ଏକ ପ୍ରାଣୀ

**ମେଡ଼ାଡେଡ଼ା** - *ଗ:* (କ୍ରି.) : ବାକ୍ୟଲଙ୍ଘନ କରିବା

**ମେଡ଼ିକାଲ** - *ସୁବ:* (ବି.) : ଡାକ୍ତର ଖାନା

**ମେଡ଼ିବା** - *ଗଛ:* (କ୍ରି.) : କଥା ନ ରଖିବା

**ମେଡୁ ଗାଡୁ** - *ଗ:* (ବି.) : ଅମାନିଆ

**ମେଢ** - *ଅନେ:* (ବି.) : କୋଠା, ମହଲା, ମଣ୍ଡପ, ଅଟ୍ଟାଳିକା, ଦେବଦେବୀ ମୂର୍ତ୍ତିଙ୍କ ପଶ୍ଚାଦେଶରେ ତୋରଣାକୃତି ଜରିଜମ୍ଭ ରାରେ ସାଜ

**ମେଢ଼ା** - *କ:* (ବି.ବିଂ.) : ଖୋବା, ସରୁଖୁଣ୍ଟ, ଦୁର୍ବଳିଆ ଲୋକ

**ମେଢଘର** - *କୋ:* (ବି.) : ଦୁଇ ବା ତତୋଧିକ ମହଲା ବିଶିଷ୍ଟ ଗୃହ

**ମେଢମଣ୍ଡପ** - *ଗ:* (ବି.) : ଅଟ୍ଟାଳିକା

**ମେଢା** - *କ:* (ବି.ବିଂ.) : ସରୁ ଓ ଲମ୍ବା କାଠଖଣ୍ଡ, ଦୁର୍ବଳ, ଖୋବା, ସରୁଖୁଣ୍ଟ, ଦୁର୍ବଳିଆ ଲୋକ, ଖୋଳସା, ମେଣ୍ଢା

**ମେଢି** - *ଅନେ:* (ବି.) : ବେଙ୍ଗଳାଖୁଣ୍ଟି, ମାଇ ମେଣ୍ଢା

**ମେଢିଆ** - *ଢେ:* (ବି.) : ମେଢିଖୁଣ୍ଟ ପାଖେ ବୁଲୁଥିବା ବଳଦ, ମେହିଆ

**ମେଢିଖୁମ୍ବ** - *ନ:* (ବି.) : ଧାନ ବେଙ୍ଗଳାରେ ଥିବା ଖଳାବାଡ଼ିର ମଝି କାଠ ଖୁମ୍ବ

**ମେଢୁ** - *ନବ:* (ବିଂ.) : ଅବାଧ

**ମେଢେଇ ହେବା** - *ସ:ସୁବ:* (କ୍ରି.) : ଜମାହେବା, ମେଣ୍ଢା ଦଳ ପରି ଗୋଟିଏ ଜାଗାରେ ଅଯଥା ଭିଡ଼ କରିବା, ଘେରିଯିବା

**ମେଣ୍ଟି** - *କଝ.* (ବି.) : ମିଥ୍ୟାବାଦୀ

**ମେଣ୍ଟ** - *ଢ.ଛେ.* (ବି.) : ଏକତ୍ରିତ ମେଣ୍ଟିଯିବା, ସମାଧାନ ହୋଇଯିବା, ଦଳ

**ମେଣ୍ଟନ** - *ଗଦ୍ୟ.* (ବି.) : ଏଡ଼ିବା, ଅବଜ୍ଞା କରିବା

**ମେଣ୍ଟା** - *ଗ.ଯା.* (ବି.) : ଛୋଟା, କେନା ଥିବା ଦଣ୍ଡ ଯାହା ଉପରେ ଯନ୍ତ୍ର ଅଡ଼ିଶିଳା ରଖି ପାଣି କୁହାଯାଏ

**ମେଣ୍ଟାଇବା** - *ଗ.* (କ୍ରି.) : ନିର୍ବାହ କରିବା

**ମେଣ୍ଟାମେଣ୍ଟି** - *ଦେ.* (ବି.) : ଉଲଂଘନ

**ମେଣ୍ଟିବା** - *ନ.* (କ୍ରି.) : ମଳିବା(ମଛିବା)

**ମେଣ୍ଟିହେବା** - *ନ.* (କ୍ରି.) : ଗୋଡ଼ ଝୁଣ୍ଟିହୋଇ ଫୁଲିଯିବା

**ମେଣ୍ଟେଇ** - *ଢ.* (କ୍ରି.) : ପୂରଣ କରିବା

**ମେଣ୍ଟେଇବା** - *କେ.* (କ୍ରି.) : ସମାଧାନ କରି, ଅତିକ୍ରମ କରିବା, ସମାଧାନ କରିବା

**ମେଣ୍ଡରା** - *ଦେ.* (ବି.) : ଭଲୁଆ

**ମେଣ୍ଢାସିଙ୍ଗା** - *କେନ୍ଦୁ.ନ.* (ବି.) : ଭେଣ୍ଡି

**ମେଣ୍ଢାସିଂଘା** - *ଗଜ.ନ.* (ବି.) : ଖଜା

**ମେଣ୍ଡି** - *ମ.ଯା.* (ବି.) : ମେଣ୍ଢା

**ମେଣ୍ଡିଆ** - *ଯା.* (ବି.) : ଆଖିରେ ଥିବା ମଳି

**ମେଣ୍ଢା** - *ସ.କଝ.* (ବି.) : ମେଣ୍ଢା, ଆଣ୍ଟୁ

**ମେଣ୍ଢାଇ ହେବା** - *ବୌ.* (ବି.) : ଅନାବଶ୍ୟକ ଭାବରେ କୌଣସି ସ୍ଥାନରେ ଲଟକି ରହିବା

**ମେଣ୍ଢାଣ୍ଢାଳ** - *ସଂ.* (ବି.) : ବିଶୃଙ୍ଖଳା

**ମେଣ୍ଢି** - *ନବ.କେନ୍ଦୁ.କୋ.ବୌ.* (ବି.) : ମାଈ ମେଣ୍ଢା

**ମେଣ୍ଢେଇବା** - *ଗ.କୋ.* (କ୍ରି.) : ଦେବା, ପହଂଚାଇବା, ସମର୍ପିବା, ବଢାଇବା

**ମେତାନ୍** - *ସ.* (ଅ.) : ଭଳି, ପରି

**ମେତାର** - *ସୁ.* (ଅ.) : ପରି

**ମେତେ** - *କେ.କେ.* (ସ.) : ମୋତେ

**ମେଦ ବହୁଳତା** - *ସଂ.* (ବି.) : ଶରୀରର ଓଜନ ବଢିବା

**ମେଦବୃଦ୍ଧି** - *ସଂ.* (ବିଂ.) : ବେଶୀମୋଟା

**ମେଦା** - *ବା.* (ବି.) : ପଦା

**ମେଦିବା** - *ଦେ.ଗ.* (କ୍ରି.) : ଦଳଚକଟା, ଖାଦ୍ୟସାମଗ୍ରୀ ଥାଳିରେ ଗୋଳାଇ ରଖିବା

**ମେଦିରି** - *ଗ.* (ବି.) : ବାଉଁଶ ବୁଣିବା ଜାତି

**ମେଦୁଳ** - *ଗଦ୍ୟ.* (ବିଂ.) : ମେଦବହୁଳ

**ମେଦ୍ରା** - *କଳା.* (ବି.) : ବାଉଁଶ ପାତିଆରେ ଛପା, କୁଲା ପେଡ଼ି ଆଦି ଗୁନ୍ଥିବା କାର୍ଯ୍ୟକୁ କୌଳିକ ବୃତ୍ତିଭାବରେ ଗ୍ରହଣ କରି ନେଇଥିବା ଜାତି ବିଶେଷ

**ମେନ** - *ନୂ.କଳା.* (ବିଂ.ବି.) : ମାନ୍ୟ, ସଂପର୍କ

**ମେନାଭାଇ** - *କୋ.* (ବି.) : ମାତୃବଂଶର ଭାଇ, ମାମୁଁପୁଅ, ମାଉସୀ ପୁଅ ଭାଇ

**ମେନେଇ** - *ଢ.* (କ୍ରି.) : ମିଳାମିଶା

**ମେନ୍ଧାମୁନ୍ଦି** - *କଳା.* (ବି.) : ମଧଭାଗ, ମଝି, ମଝାମଝି

ମେପନ୍ - *ନୂ:* (ଅ.) : ପରି

ମେମ୍ରିକନ୍ଧା - *କଣ:* (ବି.) : ଏକ ପ୍ରକାରର କନ୍ଧା

ମେରକେଟା - *ନବ:ବଉ:* (ବିଂ.) : ଶୁଖିଲା, ଦୁର୍ବଳ (ବ୍ୟକ୍ତି)

ମେରଖୁଟିଆ - *ଯୁ:* (ବିଂ.) : ବେଙ୍ଗଳାର ପ୍ରଥମ (ବଳଦ), ମେରୁଖୁଣ୍ଟିଆ

ମେରଙ୍ଗାଇ - *ଗଦ୍ୟ:* (ବି.) : ଆଣ୍ଠୁତଳ ପର୍ଯ୍ୟନ୍ତ ଲମ୍ବା କୁର୍ତ୍ତା

ମେରଦା - *ଗଜ:ଗ:* (ବି.) : ଭାଡ଼ି, ଆଟୁ

ମେରଦା ପେଢି - *ଗ:* (ବି.) : କାରୁକାର୍ଯ୍ୟ ପୂର୍ଣ୍ଣ ସିନ୍ଦୁକ

ମେରଦା ରାସ୍ତା - *ଗଦ୍ୟ:* (ବି.) : କଚ୍ଚା ରାସ୍ତା

ମେରା - *ଅନେ:* (ବି.) : ପାଣିକଳ, କବାଟର ଲୌହକିଳିଣି, ହାଣ୍ଡିଆର ସିଝା ଭାତ, ଚାଞ୍ଚ ବା ବାଡ ବେଢିବା ପାଇଁ ପ୍ରାୟ ହାତେ ଲେଖାଏଁ ଦୂରତାରେ ପୋତା ଯାଉଥିବା କାଠ ବା ବାଉଁଶ, ପଶୁମାନଙ୍କ ଘଉଡ଼ାଇବା ପାଇଁ ବ୍ୟବହୃତ ଶୁଖିଲା ମୋଟା କାଠ, ମେଢା

ମେରି - *ଗ:ଇ:* (ବି.) ଧାନ ଅମଳ ସମୟରେ ଯୋଚା ବଳଦର ପ୍ରଥମ ବଳଦ, ଧାନ ଅମଳ ପାଇଁ ବେଙ୍ଗଳାର ମଝିଖୁଣ୍ଟ

ମେରିଆ - *ଅନେ:* (ବିଂ.ବି.) : ହାଣ ଖାଇବା, ମେରି ଖୁଣ୍ଟରେ ବନ୍ଧା ଯାଇଥିବା ବଳଦ, କନ୍ଧମାନେ ପୂର୍ବେ ହଳଦୀ କିଆରିରେ ଦେଉଥିବା ବଳି, ନରବଳି

ମେରିଖୁଣ୍ଟ - *ସ:ସୁବ:କେ:* (ବି.) : ବେଙ୍ଗଳା ପାଇଁ ପୋତା ଯାଇଥିବା ଖମ୍ବ, ମେଢିଖୁଣ୍ଟ

ମେରିମ୍ - *ଗଦ୍ୟ:* (ବି.) : ଛେଳି

ମେରୁ - *କଳା:ରା:ଦେ:ସୁବ:* (ବି.ବିଂ.) : ଧାନ ବେଂଗଳାର ମଧ୍ୟ ଭାଗରେ ପୋତା ଯାଉଥିବା ଖମ୍ବ, କାଳି ପୂଜା, ପ୍ରକାଣ୍ଡ, ମକର ସଂକ୍ରାନ୍ତି ଦିନ ଦଣ୍ଡୁଆ ମାନଙ୍କ ଏକପର୍ବ, ଶୁଆର ଏକ ବଡ଼ ପ୍ରଜାତି କଥା କହିଥାଏ

ମେରୁଆ - *କଳା:* (ବିଂ.) : ଧାନ ବେଙ୍ଗଳାରେ ମଧ୍ୟ ଭାଗରେ ରହୁଥିବା (ବଳଦ)

ମେରୁହାଡ଼ - *ସ:ଖୋ:* (ବି.) : ମେରୁଦଣ୍ଡ

ମେର୍ଦ୍ଦା - *ରା:* (ବି.) : ନିଆଁରୁ ରକ୍ଷା ପାଇଁ ଛାତ ତଳେଥିବା ମାଟି ଛାତ, ମାର୍ଦ୍ଦା

ମେର୍‌ଖମ - *ସ:* (ବି.) : ଖଳା ମଝିରେ ଥିବା ଖମ୍ବ

ମେର୍‌ସେଙ୍ଗା - *ବୌ:କଳା:* (ବି.) : ଭୁର୍‌ସୁଙ୍ଗା, ଭୁସଙ୍ଗ ପତ୍ର

ମେର୍‌ହା - *ଅନେ:* (ବି.) : ବାଉଁଶ, କାଠର ମୋଟା ବାଡି, ଠେଙ୍ଗା, ମେଢା

ମେର୍‌ହି - *ବୌ:* (ବି.) : ପ୍ରଥମ, ମୂଳ, ମୁଖ୍ୟ

ମେର୍‌ହି ପୁଅ - *ବୌ:* (ବି.) : ଗଡତିଆ, ଗଉନ୍ତିଆ

**ମେଲ୍ଛା** - *ସ:ଦୌ:ବ:* (ବି.) : ଖାସୁ କରା ହୋଇନଥିବା ଅଣ୍ଡିରା ଛେଳି

**ମେଲ୍ନି** - *କଳ:* (ବି.) : ନପୁଂସକ

**ମେଲା** - *ଅନେ:* (ବିଂ.ବି.) ଖୋଲା, ବୈଠକଖାନା, ବାହାରଘର, ଘର ଅଗଣା

**ମେଲାଘର** - *ଢେ:ଖୋ:ସଂ:ଗଜ:* (ବି.) : କାନ୍ଥନଥିବା ଘର, ଗାଁର ଆଖଡ଼ା ଘର

**ମେଲାଣ** - *କୋ:* (ବି.) : ଛାତ ଥିବା ଖୋଲାଘର

**ମେଲାଣି** - *ନ:* (ବି.) : ବିଦାୟ

**ମେଲା ଭୁତାର** - *ବୌ:* (ବି.) ବିନା ପାରିଶ୍ରମିକର ମୂଲିଆ

**ମେଲା ମୁକୁଳା** - *ସଂ:ଗ:* (ବିଂ.ବି.) : ଖୋଲା ଖୋଲି ଅବସ୍ଥାରେ ପଡିଥିବା ଘର

**ମେଲାମୁହାଁ** - *ସଂ:* (ବିଂ.) : ମେଲାପାଟିଆ, ଗପୁଡି

**ମେଲିଆ** - *ବୌ:* (ବି.) : ଦଳ, ମେଳ, ଗୋଷ୍ଠୀ

**ମେଲିଝାଟି** - *ବା:* (ବି.) : ପୋଖରୀ ପ୍ରତିଷ୍ଠା ସମୟରେ ମଝିରେ ପୋତା ହୋଇଥିବା କାଠ ଖଣ୍ଡ, ମଣିଖମ୍ବ

**ମେଲିବା** - *କେନ୍ଦୁ:ସ:ନ:* (କ୍ରି.) : ପଳାଇବା, ଯିବା, ଓସାରିବା, ପ୍ରସାରିତ କରିବା, ଭସାଇଦେବା

**ମେଲୁ** - *କଳ:* (ବି.) : ମୟୂର

**ମେଲେଇବା** - *ମ:* (କ୍ରି.) : ଖୋଲିବା, ବିସ୍ତାର କରିବା

**ମେଳ** - *ଢ:* (ବି.) ଏକାଠି, ଯୋଡ଼ି, ସମାନତା

**ମେଳକ** - *ଗ:* (ବିଂ.) : ଦୁଇ ଜାତକର ଗ୍ରହ ନକ୍ଷତ୍ରଙ୍କ ସ୍ଥିତି ଅନୁସାରେ ସଂପର୍କ ବିଚାର

**ମେଳଛ** - *ଗ:* (ବି.) : ମ୍ଲେଛ, ନୀଚଜାତି ବିଶେଷ

**ମେଳଛା** - *ବା:ନବ:* (ବିଂ.) : ମ୍ଲେଚ୍ଛା, ଅସନା ପ୍ରାକୃତିର

**ମେଳା** - *ଯା:ଢ:* (ବି.) ଏକ ପ୍ରକାର ଉପାସନା (ତ୍ରିନାଥ ମେଳା ବା ପଞ୍ଚାନନ ମେଳା), ଯାତ୍ରା, ଧାର୍ମିକ ସମାରୋହ

**ମେଳାପୀ** - *ଢ:* (ବିଂ.) : କଥାବାର୍ତ୍ତା ଓ ଚାଲିଚଳନରେ ଅନ୍ୟକୁ ଯେ କିଣିନିଏ

**ମେଳାପୂଜା** - *ନ:* (ବି.) : ତ୍ରିନାଥମେଳା, ଶନିମେଳା

**ମେଳା ମେଳା** - *ସଂ:* (ବିଂ.) : ଦଳ ଦଳ, ମନ୍ଦା ମନ୍ଦା, ହଳହଳ

**ମେଳି** - *ଖୋ:ନ:* (ବି.) : ବେଙ୍ଗଳାର ମଝି ଖୁଣ୍ଟ, ଏକାଠି ହେବା, ପ୍ରଚଳିତ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ

**ମେଳିଆ** - *ନ:* (ବି.) : ମେଳିର ନେତା

**ମେଳେଚ୍ଛା** - *ବା:* (ବିଂ.) : ମ୍ଲେଚ୍ଛ, କୁତ୍ସିତ

**ମେଶ୍କାଟିବା** - *ମା:* (ବି.) : ନିଶକାଟିବା, ମୁଛ କାଟିବା

**ମେଣ୍ଢ଼ରି** - *ସୁବ:* (ବିଂ.) : ମିଶ୍ରିତ

**ମେଣ୍ଢା** - *ନୂ:* (ବି.) : ମିଶ୍ରିତ

**ମେଣ୍ଢାନ୍** - *କଳା:* (ବି.) : ମୃତ ବ୍ୟକ୍ତିର ଆତ୍ମା, ଭୂତାଦି

**ମେଣ୍ଢିକରି** - *ନୂ:* (ବି.) : ମିଳିମିଶି

**ମେଷାଣ୍ଡ** - *ଢେ:* (ବି.) : ଇନ୍ଦ୍ର

**ମେସ୍** - *ନବ:ଗ:* (ବି.) : ନିଶ, ଛାତ୍ରାବାସ

**ମେସି** - *ନୂ:କଳା:* (ବି.) : ମା'ଙ୍କ ସାନ ଭଉଣୀ, ମାଉସୀ

**ମେସିଙ୍ଗା** - *ରା:* (ବି.) : ଭୁସୁଙ୍ଗା ପତ୍ର

**ମେହଖୁଣ୍ଟ** - *ବ:* (ବି.) : ମେରୁଖୁଣ୍ଟି

**ମେହପଡ଼ିବା** - *ଗ:* (ବି.) : ମୂତ୍ର ଓ ଶୁକ୍ର ରୋଗ

**ମେହପୋଡ଼ା** - *ନ:* (ବି.) : ଶ୍ୱେତ ପ୍ରଦର ରୋଗ

**ମେହା** - *ମ:* (ବି.) : ଆତ, ମେହୁଆ

**ମେହେଙ୍ଗା** - *ଢେ:ବ:* (ବିଂ.) : ଅତିଢ଼େଙ୍ଗା ଓ ଶୀର୍ଣ୍ଣ, ଢିଲା ପ୍ରକୃତିର, ଦାୟିତ୍ୱ ହୀନ

**ମେହେନତ** - *ସୁବ:* (ବି.) : ପରିଶ୍ରମ

**ମେହେନା** - *କନ୍ଧ:* (କ୍ରି.) : ଦେଖିବା

**ମେହେନ୍ତ** - *ଅ:* (କ୍ରି.) : ମେହେନତି

**ମେହେନ୍ତର** - *ନ:* (ବି.) : ଅଳିଆ ଆବର୍ଜନା ସଫା କରିବା କର୍ମୀ

**ମେହେନ୍ଦି** - *କେ:* (ବି.) : ଏକ ବୃକ୍ଷ, ଏହାର ପତ୍ର ବଟାରେ ନାରୀମାନେ ହାତ ରଙ୍ଗାନ୍ତି, ମଞ୍ଜୁଆତି

**ମେହେର** - *ସୁବ:* (ବି.) : ବୁଣାକାର ଜାତି ବିଶେଷ ଓ ସେମାନଙ୍କର ସାଙ୍ଗିଆ

**ମେହେରାବି** - *କ:* (ବି.) : ଦୁଆର ବନ୍ଧ ଉପରେ ଥିବା କାଠ

**ମେହେଲିଆ ହେବା** - *ନୂ:* (କ୍ରି.) : ଅକାରଣ ହୋଇଯିବା

**ମେହେଁ** - *ଗ:* (ବିଂ.) : ଅତିଶୟ

**ମେହ୍ଲା** - *କେ:* (ବି.) : ଦାଣ୍ଡଘର, ଅଳିନ୍ଦ

**ମେଁକା** - *ଗ:ଗଞ:* (ବି.) : ଛେଳି, ମେଣ୍ଢା

**ମେଁଚା** - *ବ:* (ବି.) : ପୁଳାଏ, ପରସ୍ପର ଲାଗିଥିବା ଗୁଚ୍ଛ

**ମେଂଗ୍** - *କଳା:* (ବି.) : ମେଘ

**ମୈନର** - *ଗଞ:* (ବି.) : ନାବାଳକ

**ମୈନର ଫିଟିବା** - *ଗ:* (କ୍ରି.) : ସାବାଳକ ହେବା

**ମୌତମ** - *ଗଦ୍ୟ:* (ବି.) : ବାଉଁଶ ଫୁଲ ଫୁଟିବା ଜନିତ ଦୁର୍ଭିକ୍ଷ

**ମୋଇରୀ** - *କଳା:* (ବି.) : ମହୁରୀ

**ମୋଉଲ୍** - *କଳା:* (ବି.) : ମହୁଲ

**ମୋକା** - *ଗ:* (ବି.) : ଗଛ ମୂଳର କୁଦା, ମୂଳକନ୍ଦ

**ମୋକାମ** - *ଗ:* (ବି.) : ନିବାସ, ମୁକାମ୍

**ମୋଚ** - *ଢ:ଯା:* (ବି.) : ମୋଚଡ଼ା, ତରଳ ସୁନା ରଖିବା କ୍ଷୁଦ୍ର ମାଟିପାତ୍ର

**ମୋଚକ** - *ଢେ:* (ବି.) : ଶିମୁଳିଗଛ

**ମୋଚା** - *ଢେ:* (ବିଂ.) : ଲୋଟା

**ମୋଚି** - *ନ:ଗ:* (ବି.) : ଚମଡ଼ାକାମ କରୁଥିବା ଏକ ଜାତି

**ମୋଚିବା** - *ଗ:* (କ୍ରି.) : ସଂକୁଚିତ ହେବା

**ମୋଟ୍** - *ଦେ:* (ବି.) : ଗାଏମୋଟ

**ମୋଟା** - *ନ:* (ବିଂ.) : ପୃଥୁଳ

**ମୋଟାଗଳା** - *ଦେ:* (ବି.) : କର୍କଶ ସ୍ୱର

**ମୋଟାଧାନ** - *ଦେ:* (ବି.) : ବଗଡ଼ାଧାନ

**ମୋଟାବୁଦ୍ଧି** - *ଦେ:* (ବିଂ.) : ନିର୍ବୁଦ୍ଧିଆ

**ମୋଟାମ** - *ନ:* (ବି.) : ମଟାମ, ମିସ୍ତ୍ରୀର ସମତଳ ଦେଖିବା ନିର୍ଣ୍ଣୟ କରିବା ଯନ୍ତ୍ର

**ମୋଟାମୋଟି** - *ଖୋ:* (ବିଂ.) : ହାରାହାରି

**ମୋଟା ରୁମିଆ** - *କ:* (ବିଂ.) : ମୋଟା ରୁମଯୁକ୍ତ (ବଳଦ)

**ମୋଟା ଲାଙ୍ଗୁଡ଼ିଆ** - *କ:* (ବିଂ.) : ଯାହାର ଲାଙ୍ଗୁଡ଼ ଖୁବ୍ ମୋଟା, ଖୋସାମଦ ଖୋର

**ମୋଟିଆ** - *ଗ:କଳା:ପଦ୍ୟ:* (ବି.) : ଯେ ବୋଝ ବୋହେ, ମିସ୍ତ୍ରୀମାନେ ବ୍ୟବହାର କରୁଥିବା କାଠ ପଟା, ଠେଲାବାଲା, କୁଲି

**ମୋଟୁଆ** - *ନ:* (ବିଂ.) : ମୋଟା, ପୃଥୁଳ ଶରୀର ବିଶିଷ୍ଟ

**ମୋଡୋଣାଲ୍** - *କଳା:* (ବି.) ବିବାହ ଛାମୁଣ୍ଡିଆ

**ମୋଡୋ** - *କଳା:* (ବି.) : ଛାମୁଣ୍ଡିଆ

**ମୋଡୋଝରା** - *କଳା:* (ବି.) : ଛାମୁଣ୍ଡିଆକୁ ଝାଡିବା ବା ଭାଂଗିବା, କନ୍ଧ ସଂପ୍ରଦାୟରେ ବିବାହ ପରବର୍ତ୍ତୀ ଦିବସରେ ବରଘରେ ବର ପକ୍ଷୀୟ ଲୋକଙ୍କ ଦ୍ୱାରା ବିବାହ ଛାମୁଣ୍ଡିଆ ଭଙ୍ଗା ପ୍ରଥା

**ମୋଡ଼** - *ନ:* (ବିଂ.) : ବାଙ୍କ

**ମୋଡ଼ା** - *ଗ:* (ବି.) : ବାଉଁଶ ଓ ବେତର ନିର୍ମିତ ଆସନ

**ମୋଡ଼ା କାକରା** - *ଭ:* (ବି.) : ଏକପ୍ରକାର କାକରା ପିଠା

**ମୋଡ଼ିଆ** - *ନ:ଗଦ୍ୟ:* (ବି.) : ମୋଡ଼ିମୋଡ଼ି ହୋଇଥିବା ସ୍ୱର୍ଣ୍ଣଅଳଙ୍କାର(କର୍ଣ୍ଣ ଓ ହାତର), ମୋତି ମାଳ

**ମୋଡ଼ିବା** - *ନ:* (କ୍ରି.) ବଙ୍କାକରିବା, ଘଷାଘଷି କରିବା

**ମୋଢ଼ୋ** - *ନୂ:* (ବି.) : ମଣ୍ଡପ

**ମୋତି** - *ଖୋ:କେନ୍ଦୁ:* (ବି.) : ଏକପ୍ରକାର ଧାନ

**ମୋତିଆ** - *ଦେ:* (ବି.) : ମଲ୍ଲୀଫୁଲ

**ମୋତିଆ ବିନ୍ଦୁ** - *ସଂ:* (ବି.) : ଡୋଳାରେ ମାଡ଼ିଯିବା ଆବରଣ, ଆଖିରୋଗ

**ମୋତି କାଗଜ** - *ସଂ:* (ବିଂ.) : ବହୁରଂଗ କାଗଜ

**ମୋଦ** - *ଦେ:* (ବି.) : ସୁବାସ

**ମୋଦକ** - *ଯା:ଗଦ୍ୟ:* (ବି.) : କବିରାଜଙ୍କ ଗୋଲାକାର ଔଷଧ ଟେଳା ବଟିକା

**ମୋଫତ** - *ସଂ:ଖୋ:ନ:ଦେ:* (ବି.ବିଂ.) ମାଗଣା

**ମୋରିହାଁ** - *ଦେ:* (ବି.) : ତିନିକେନା ଥିବା ପତ୍ର ବିଶିଷ୍ଟ ବଡ଼ ବନ୍ୟଗଛ

**ମୋର୍‌ଲୋ** - *କଳା:* (ବି.) : ସଂପୂର୍ଣ୍ଣଭାବେ ଶସ୍ୟାଦି ଶୁଖିଯିବା

**ମୋଲାଏମ୍** - *ଦେ:* (ବିଂ.) : କୋମଳ, ନରମ

**ମୋହ** - *ଗଦ୍ୟ:ଜ:* (ବି.) : ମୁର୍ଚ୍ଛା, ବେଚେତା, ଅନ୍ୟ ଦ୍ରବ୍ୟ ପ୍ରତି ଲୋଭ

**ମୋହନି** - *ସୁ:* (ବି.) : ବଶୀକରଣ ଉପଚାର

**ମୋହମତ୍** - *ପଦ୍ୟ:* (ବି.) : ଭଲପାଇବା, ଦୁର୍ବଳତା

**ମୋ'ଟା** - *ଗଜ:* (ବି.) ଆସବାବପତ୍ର, ବୁଜୁଳା

**ମୌଜା** - *କେ:ସଂ:* (ବି.) : ଗାଁ, ଗ୍ରାମ, ଛୋଟପଡ଼ା

**ମୌନ** - *ନ:* (ବି.) : ତୁନିରହିବା, ଚୁପ୍‌ରହିବା

**ମୌମଚୀ** - *ମା:* (ବି.) : ମହୁମାଛି

**ମୌଳାକୁଳ** - *ନ:* (ବି.) ମାମୁଘର, ମାତୁଳାଳୟ

**ମୌଳାଶ୍ରାଦ୍ଧ** - *ସଂ:* (ବି.) : ମାତୃ ପୂର୍ବ ପୁରୁଷଙ୍କ ଶ୍ରାଦ୍ଧ

**ମଁଗନିଆ** - *ଝା:* (ବିଂ.) : ଯାହା ମାଗିକରି ଅଣା ଯାଇଥାଏ

**ମଁଗଲ** - *ସ:* (ବି.) : ମଙ୍ଗଳ

**ମଁଜ** - *ନୂ:* (ବି.) : ମଞ୍ଜ

**ମଂଗ୍‌ନା** - *ବୌ:* (ବିଂ.) : ମାଗଣା

**ମଂଗ୍‌ନି** - *କଳା:* (କ୍ରି.) ମାଗିବା, କନ୍ୟାମାଗିବା

**ମଂଗ୍‌ନିଆ** - *କଳା:* (ବିଂ.) : ମାଗିଖିଆ, ଭିକାରୀ

**ମଂଗରାଜ୍** - *କଳା:* (ବି.) : କୌଳିକ ଉପନାମ ବିଶେଷ

**ମଂଗଲ୍** - *କଳା:* (ବି.) : ବିଜୁଳି, ମଂଗଳ, କଲ୍ୟାଣ

**ମଂଗଳଚଣ୍ଡିଆ** - *ବୌ:* (ବି.) : ଗାଁ ଗାଁ ବୁଲୁଥିବା ମଂଗଳା ସେବକ

**ମଂଜ** - *ଗଦ୍ୟ:ବୌ:* (ବି.) : କଦମ୍ବ, ନିଦା, ଗଛର ଭିତର ଅଂଶ

**ମଂଜରା** - *ସୁବ:* (ବି.) : ଛୋଟ କାଂସ୍ୟ, ଢାଳ, ଛୋଟଗିନି

**ମଂଜା** - *ବୌ:* (ବି.) : କଦଳୀ ଗଛର ମଂଜ

**ମଂଢୀ** - *ସଂ:* (ବି.) : ବଡବଜାର

# ଯ

**ଯ** - *ଗଦ୍ୟ:* (କ୍ରି.) : ଯାଅ

**ଯଅଁ** - *କନ୍ଧ:* (ବିଂ.) : ବେଶି

**ଯଅଁରା** - *କଳା:* (ବି.) : ଯମ, ଜନ୍ତୁପତି

**ଯଇଁ** - *ଦେ:ମା:* (ବି.) : ଜୋଇଁ, ଜାମାତା

**ଯଉଠ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ

**ଯଉଠି** - *କେ:* (ଅ.) : ଯେଉଁଠି

**ଯଉନ୍** - *କଳା:* (କ୍ରି.) : ଯାଆନ୍ତୁ

**ଯକର** - *ରା:* (ବି.) : ସନ୍ତସନ୍ତିଆ

**ଯକରା** - *କ:* (ବିଂ.) : ଆଗ୍ରହୀ

**ଯକ୍ଷ** - *ପୁ:ଅ:* (ବିଂ.) : କୃପଣ, ଧନରେ ଯାହାର ଲୋଭ

**ଯଖ୍‌ଣା** - *କନ୍ଧ:* (ବି.) : ତରକାରି

**ଯଖନ୍** - *ମ:* (ବି.) : ଯେତେବେଳେ

**ଯଜ୍ଞ** - *ନବ:କୋ:* (ବି.) : ଯଶ, ଗୌରବ

**ଯଜମାନିଆ** - *ଭ:* (ବିଂ.) : ବୃତ୍ତିଗତ ଧନ୍ଦା

**ଯଜ୍ଞ ପାଉଁଶ** - *ଢ:* (ବି.) : ଯଜ୍ଞ ଭସ୍ମ, ବିଭୂତି

**ଯଣା** - *ସୁ:* (ସ.) : ଯାହା

**ଯତ** - *ମ:ଦେ:* (ବି.ସ.) : ଯେତେ, ଯେଉଁ

**ଯତ୍‌କତ୍** - *ଦେ:ନୂ:* (କ୍ରି.ବିଂ.) : ଯହିଁତହିଁ

**ଯତ୍‌ନାଇବା** - *ଦେ:ନୂ:* (କ୍ରି.) : ସାଇତିବା

**ଯତ୍‌ନାବାର** - *ସୁବ:* (କ୍ରି.) : ପାଳିବା, ଯତ୍ନ କରିବା

**ଯତ୍‌ନି** - *ବୌ:ସ:ଦେ:* (ବି.) : ପିଠା ପାଇଁ ମଣ୍ଡ, ଚକଟଣି

**ଯତ୍‌ନିଆ** - *ଦେ:* (ବିଂ.) : ମାଗଣା

**ଯତ୍‌ରା** - *ନୂ:* (ବି.) : ଯାତ୍ରା

**ଯତନ୍** - *ନ:କଳା:ଦେ:* (ବି.ବିଂ.) : ଯତ୍ନ, ସତର୍କ, ଶୃଙ୍ଖଳା ସହିତ

**ଯତରକତର** - *ସୁ:ଦେ:* (ଅ.କ୍ରି.ବିଂ.) ଯାହାତାହା, ଯେକୌଣସି ପ୍ରକାରେ

**ଯତାତଥା** - *ଦେ:* (କ୍ରି.ବିଂ.) : ଯେମିତିହେଲେ

**ଯତି** - *ଢ:ଦେ:* (ବି.) : ମୁନି, ମେଳକ ଶେଷ ଅକ୍ଷର, ବାବାଜୀ

**ଯତିନୀ** - *ଦେ:* (ବି.) : ମାତାଜୀ

**ଯଥର** - *ସୁ:* (ଅ.) : ଯଥା

**ଯଥା** - *ଅନେ:* (ବି.) : ପୁରୁଷଙ୍କ ପିନ୍ଧାଲୁଗା, ଯେଉଁପ୍ରକାରରେ, ଧୋତି ଚାଦର ଯୋଡ଼ା

**ଯଥାକଥା** - *ସ:* (ବି.) : ଯେମିତି ସେମିତି

**ଯଥାକଥା** - *ସୁ:* (ବିଂ.) : ଯାହିତାହି

**ଯଥାବିଧି** - *ଦେ:* (କ୍ରି.ବିଂ.) : ନିୟମ ଅନୁଯାୟୀ

**ଯଥେଷ୍ଟ** - *ନ:* (ବିଂ.) : ବହୁତ

**ଯଦ୍‌ରି** - *ସୁବ:* (ଅ.) : ଯଦି

**ଯଦିଚ** - *ଦେ:* (ଅ.) : ଯେବେ

**ଯଦିବା** - *ଦେ:* (ଅ.) : ଅଥବା

**ଯଦିବିର** - *ନୂ:* (ଅ.) : ଯଦି

**ଯଧିରବି** - *ସ:* (ଅ.) : ଯଦିବି

**ଯନା** - *ରା:* (ବି.) : ଏକ ପ୍ରକାର ଶସ୍ୟ, ଜହ୍ନା

**ଯନ୍ତ** - *ଛ:ଜ:* (ବି.) : ପାଣିବୁହାଯନ୍ତ୍ର, କାଠ ବା ତାଳଗଛରେ ତିଆରି ଲମ୍ବା ପାଣିବୁହା ଉପକରଣ

**ଯନ୍ତର ମନ୍ତର** - *ଗଞ:ଗ:ଦେ:* (ବି.) : କୌଶଳ, ତନ୍ତ୍ର, ଗୁଣିଗାରେଡ଼ି

**ଯନ୍ତରି** - *କେନ୍ଦୁ:* (ବି.) : ମୁଗ, ବିରି ଫାଳ କରାଯାଉଥିବା ଘୋରଣା ଚକି

**ଯନ୍ତା** - *ଅନେ:* (ବି.) : ମୂଷା ଧରିବା ଯନ୍ତ୍ର, ଚକି, ଜନ୍ତଣି

**ଯନ୍ତାଳ** - *ଛ:* (ବି.) : ଗ୍ରାମଦେବୀଙ୍କ ପାଖରେ ମିଳିତ ଭୋଜି

**ଯନ୍ତିବା** - *ଦେ:* (କ୍ରି.) : ପେଶିବା, ଦଳିବା

**ଯନ୍ତୁଆଣି** - *ନ:* (ବି.) ଅଟା, ସୁଜି ଚାଉଳଚୂନା, ପାଣି ଗୁଡ଼ ଏକତ୍ର ଗରମ କରି ଚକଟିବା

**ଯନ୍ତ୍ରକଣ୍ଟକ** - *ଦେ:* (ବି.) : କ୍ଷେତପାପଡ଼, ଘରପୋଡ଼ିଆ

**ଯନ୍ତ୍ରସ୍ଥ** - *ସଂ:* (ବିଂ.) : ମୁଦ୍ରଣ ହେଉଥିବା

**ଯନ୍ଦା ଖାଏବା** - *ସ:* (କ୍ରି.) : କେତ୍‌ରା ଖାଇବା, ଅଂଗୁଳି ସନ୍ଧିର ଘା'

**ଯବ** - *ଦେ:ଛ:* (ବି.) : ଯବଧାନ, ଧଳାରାଶି

**ଯବ୍‌ବା** - *ଦେ:* (ବି.) : ଢୁଳହେବା

**ଯବକ** - *ଦେ:* (ବି.) : ଯବଧାନ

**ଯବକାଚ** - *ସଂ:* (ବି.) : ବିବର୍ଦ୍ଧକ କାଚ

**ଯବକ୍ଷାର** - *ନ:* (ବି.) : ସୋଡ଼ା

**ଯବଘାସ** - *ଗଦ୍ୟ:* (ବି.) : ଯବଗଛ ପରି ଏକ ପାହାଡ଼ୀ ଘାସ

**ଯବଜ** - *ଦେ:* (ବି.) : ୟୁଆଣି

**ଯବନିକା** - *ସଂ:* (ବି.) : ଶେଷଦୃଶ୍ୟ, ପରଦା

**ଯବଫଳ** - *ଦେ:* (ବି.) : ବାଉଁଶ

**ଯବର** - *ରା:* (ବିଂ.) : ବେଶି

**ଯମ୍‌ଝାଲ୍** - *କଳା:* (ବି.) : ଅତ୍ୟଧିକ ଝାଳ

**ଯମ ଅଇଁଠା** - *ଭ:* (ବି.) : ମୃତ୍ୟୁ ମୁଖରୁ ରକ୍ଷା ପାଇବା

**ଯମକୀଟ** - *ଦେ:* (ବି.) : କାଠକଟା ପୋକ

**ଯମଖିଆ** - *ନ:* (ଅ.) : ଏକ ଗାଳି

**ଯମଝାଳ** - *ସଂ:* (ବି.) : ଅତି ଭୟଭୀତ ହୋଇ ବୋହିବା ଝାଳ

**ଯମଦଣ୍ଡ** - *ସଂ:* (ବି.) : କଷ୍ଟ, ଯନ୍ତ୍ରଣା, ମରଣାନ୍ତକ କଷ୍ଟ

**ଯମେନ** - *ସୁ:* (ବି.) : ଜମାଟ

**ଯୟମାନି କର୍‌ବା** - *ସ:* (କ୍ରି.) : ପୁରୋହିତ କାମ କରିବା

**ଯଣ୍ଡା** - *ଗଦ୍ୟ:* (ବି.) : ଜନ୍ମବେଳେ ଗ୍ରହ ମାନଙ୍କର ଅବସ୍ଥାନ

**ଯସନ୍** - *ବର:* (ଅ.) : ଯେପରି

**ଯହ** - *କଳା:ଦେ:ନୂ:* (ବିଂ.) : ଅଧିକ, ବେଶୀ, ବହୁତ

**ଯହିଁକି** - *ଗ:* (ଅ.) : ଯାହା ନିମନ୍ତେ

**ଯହିଁକୁ** - *ଦେ:* (ସ.) : ଯେଉଁସ୍ଥାନକୁ

**ଯହିଁତକ୍** - *ଦେ:* (ଅ.) : ଯେପର୍ଯ୍ୟନ୍ତ

**ଯହିଁତହିଁ** - *ଦେ:* (ସ.) : ଯାହିଁତାହିଁ

**ଯହୁଁ** - *ଦେ:ଗ:* (ସ.ଅ.) : ଯେଉଁଠାରୁ, ଯହିଁରୁ

**ଯହୁଁଯହୁଁ** - *ଦେ:* (ଅ.) : ଯେମିତି ଯେମିତି

**ଯା** - *କ:ନୂ:ଦେ:* (ବି.) : ସ୍ୱାମୀର ସାନ ବା ବଡ଼ ଭାଇର ସ୍ତ୍ରୀ, ଯାଆ, ଯାଅ

**ଯାଆ** - *ଗ:* (ବି.) : ଯିବା, ଦେଢଶୁର ଓ ଦିଅରଙ୍କ ସ୍ତ୍ରୀ

**ଯାଆଡ଼େ** - *ବା:* (ସ.) : ଯୁଆଡ଼େ

**ଯାଆରି** - *ଭ:* (ବି.) : ମାଛଛୁଆ

**ଯାଆଁଲା ଛିଆଁ** - *ସୁବ:* (ବି.) : ଯାଆଁଳା ସନ୍ତାନ

**ଯାଆଁଲା ଭାଇ** - *ସ:* (ବି.) : ଯମଜ ଭାଇ

**ଯାଆଁଳ ମାଡହେବା** - *ସଂ:* (କ୍ରି.) : ବହୁତ ପୋକ ଦେଖାଯିବା, ପୋକ ଆଖିରେ ପଡ଼ିବା

**ଯାଆଁଳା** - *ଦେ:ଜ:* (ବି.ବିଂ.) : ଯମଜ ସନ୍ତାନ, ଦୁଇ, ଯୁଗ୍ମ, ଯୋଡ଼ି

**ଯାଇଛନ୍** - *କଳା:* (କ୍ରି.) : ଯାଇଛନ୍ତି

**ଯାଇଛାତା** - *ଯା:* (ସ.) : ଯାହା ଇଚ୍ଛା ତାହା, ଯାହା ପାରେ ତାହା

**ଯାଇତା** - *ଦେ:* (କ୍ରି.) : ଯାଆନ୍ତା

**ଯାଇତାଇ** - *ଦେ:* (କ୍ରି.ବିଂ.) : କଷ୍ଟେମଷ୍ଟେ

**ଯାଇଥିନି** - *ବା:* (କ୍ରି.) : ଯାଇଥିଲି

**ଯାଇଲ** - *ଯା:* (କ୍ରି.) : ଯାଇଥିଲା

**ଯାଇଁ ତାଇଁ** - *କଳା:* (ଅ.) : ଯାହିଁତାହିଁ, ଯେଉଁଠିସେଠି

**ଯାଇଁରେ** - *କୋ:* (ସ.) ଯାହାଦ୍ୱାରା, ଯେଉଁଥିରେ

**ଯାଉଚନ୍** - *କଳା:* (କ୍ରି.) : ଯାଉଛନ୍ତି

**ଯାଉନ୍ ଆସୁନ୍** - *ଦେ:* (କ୍ରି.) : ଗଲେ ଆସିଲେ

**ଯାଉଁଲୀ** - *ସୁବ:ଗ:* (ବି.) : ଯୋଡ଼ି

**ଯାଉଁଲୀ ବଦ୍‌ବାର** - *ସୁବ:* (କ୍ରି.) : ଦେବୀଙ୍କୁ ଦୁଇଟି ଛେଳି ବଳି ପାଇଁ ମନାସିବା

**ଯାଉଁଳା, ଯାଆଁଳା** - *ଅନେ:* (ବି.) : ଯମଜ ସଂତାନ

**ଯାଉଁଳି** - *ଅନେ:* (ବି.ବିଂ.) : ଯୋଡ଼ି, ଏକ ମାତ୍ର ବସ୍ତ୍ରର ଦୁଇ ମୁଣ୍ଡରେ ବନ୍ଧା ହୋଇଥିବା ଦୁଇଗୋଟି ବୁଜୁଳା

**ଯାଉଁଳି** - *ଦେ:ନ:* (ବି.ବିଂ.) : ଯୋଡ଼ି, ବୁଜୁଚା, ଦୁଇଯୋଡ଼ା, ଅଣ୍ଡକୋଷ

**ଯାଉଁଳିଆ** - *ଦେ:* (ବିଂ.) : ବୁଜୁଚା ବୋହି ବେପାର କରୁଥିବା ବ୍ୟକ୍ତି

**ଯାଉଁଳି କବାଟ** - *ଗ:* (ବି.) : ଦୁଇ ପାଖିଆ କବାଟ

**ଯାଏକ୍** - *ଦେ:* (ଅ.) : ପର୍ଯ୍ୟନ୍ତ

**ଯାଏକୁଗ** - *ସୁ:* (ବି.) : ଯୁଗଯୁଗ

**ଯାଏତା** - *କଳା:* (କ୍ରି.) : ଯାଆନ୍ତା, ପଳାନ୍ତା

**ଯାଏଥିଁ** - *ନୂ:* (ସ.) : ଯେଉଁଥିରେ

**ଯାଏଁଟା** - *କଳା:* (ଅ.) : ଯାହା, ଯେକୌଣସି ଜିନିଷ

**ଯାଏଁଯାଏଁଟା** - *କଳା:* (ଅ.) : ଯାହାଯାହା

**ଯାକ** - *ଅନେ:* (ବିଂ.ଅ.ବି.) : ସାରା, ବସ୍ତୁ, ସମସ୍ତ, ସମୂହ

**ଯାକ୍‌ପିଢା** - *କଳା:* (ବି.) ଜିନିଷପତ୍ର, ଦରକାରୀ ସାମଗ୍ରୀ

**ଯାକର** - *କେ:* (ଅ.) : ସମସ୍ତ

**ଯାକିଜୁକି** - *ଦେ:* (ବି.) : ଲଗାଲଗି

**ଯାକିଦେବା** - *କେନ୍ଦୁ:* (କ୍ରି.) : ମାଡ଼ିବସିବା, ଭିଡ଼ିନେବା, ସଙ୍କୋଚନ କରିବା

**ଯାକି ଧରିବା** - *ଗ:* (କ୍ରି.) : ଭିଡ଼ିଧରିବା

**ଯାକିମାକି** - *ଭ:* (କ୍ରି.) : ସଙ୍କୁଚିତ ହେବା

**ଯାକୁସି** - *ଦେ:* (ବି.) : ଜଂଘସନ୍ଧି

**ଯାଖଲା** - *ଗ:* (ବି.) : ଉଦାହରଣ, ବକ୍ରୋକ୍ତି, ବ୍ୟଙ୍ଗ

**ଯାଗ** - *ଢ:* (ବି.) : ଯଜ୍ଞ

**ଯାଙ୍କ** - *ଦେ:* (ସ.) : ଯେଉଁମାନଙ୍କର

**ଯାଚକ** - *ଦେ:* (ଅ.) : ପର୍ଯ୍ୟନ୍ତ

**ଯାଚିବା** - *ରା:* (କ୍ରି.) : ବିନା ମୂଲ୍ୟରେ ଦେବା

**ଯାଚିବା** - *ସ:* (କ୍ରି.) : ମାନସିକ କରିବା, ଉପରେ ପଡ଼ି ଦେବା

**ଯାଛା** - *ରା:* (କ୍ରି.ବିଂ.) : ମନଇଛା

**ଯାଞ୍ଚ ପଡ଼ତାଳ** - *ଖୋ:* (କ୍ରି.ବିଂ) : ନିରଖ ପରଖ କରିବା

**ଯାଞ୍ଚଫାଟକ** - *ସଂ:* (ବି.) : ତନଖି ଫାଟକ, ଚେକ୍‌ଗେଟ୍

**ଯାଞ୍ଚରିପୋର୍ଟ** - *ସଂ:* (ବି.) : ତଦାରଖ ମନ୍ତବ୍ୟ

**ଯାଟ** - *ରା:ଗ:* (ବିଂ.ବି.) ଏକଜୁଟ, ଲୋକଭିଡ଼

**ଯାଟି** - *ଗ:ଗଞ:* (ବି.ବିଂ.) : ଜଂଜାଳ

**ଯାତ** - *ନ:ଯା:* (ବି.) : ମେଳା, ଯାତରା, ଉତ୍ସବ

**ଯାତନା** - *କେ:* (ବି.) : କଷ୍ଟ

**ଯାତରା** - *କନ୍ଧ:ଦେ:ନ:* (ବି.କ୍ରି.) : ଦଶହରା, ଗଣ୍ଡଗୋଳ ଉପୁଜାଇବା, ଯାତ୍ରା, ମେଳା, ସାମୂହିକ ଉତ୍ସବ

**ଯାତ୍ରାକାଳି** - *ଢ:* (ବିଂ.) : ଯାତ୍ରୀ

**ଯାତ୍ରାଗୁରୁ** - *ଦେ:* (ବି.) : ନାଟ୍ୟଗୁରୁ

**ଯାଦା** - *ନବ:* (ବିଂ.) : ଅତ୍ୟଧିକ

**ଯାଦୁଘର** - *ଅନେ:* (ବି.) : ମିଉଜିୟମ, ବିଭିନ୍ନ ବିସ୍ମୟକର ପଦାର୍ଥ ରଖିବା କୋଠରୀ

**ଯାଦୁବିଦ୍ୟା** - *ଅନେ:* (ବି.) : ମାୟାଜାଲ, କୁହୁକ

**ଯାନି** - *ଦେ:କନ୍ଧ:* (ବି.) : କାଳିଶୀ, ପୂଜକ

**ଯାନି ଯଉତୁକ** - *ଭ:* (ବି.) : ବିବାହକାଳୀନ ଉପହାର

**ଯାପଟ** - *ଗ:* (ବି.) : ମୋହର, ଚିହ୍ନଦେବା

**ଯାପଟା** - *ଗ.* (ବି.) : ଦୃଢରେ ଭିଡ଼ିବା

**ଯାପଟି ଧରିବା** - *ଗ.* (କ୍ରି.) : ଭିଡ଼ିଧରିବା, ଜାବୁଡ଼ି

**ଯାବ** - *ଦେ.ଗ.* (ବି.) : ଲାଖ, ଲାଜ, ଦୃଢ ସ୍ଥିତି

**ଯାବଡ୍** - *ଦେ.* (ବି.) : ଦୃଢ

**ଯାବଡ଼ା** - *ନ.* (ବି.) : ଚାପଡ଼ା

**ଯାବତ** - *ଗଦ୍ୟ.ଢ.ଦେ.* (ବିଂ.ଅ.ବି.) : ନାନା ରକମର, ଚାପୁଡ଼ା, ଯେ ପର୍ଯ୍ୟନ୍ତ, ସମସ୍ତ

**ଯାବନାଳ** - *ଦେ.* (ବି.) : ମକା

**ଯାବନ୍ତ** - *ରା.* (ବିଂ.) : ସମସ୍ତ, ଯାବତୀୟ

**ଯାବର ଛାତିଆ** - *ସ.ବୌ.* (ବି.ବିଂ.) : ଯାହା ଇଚ୍ଛା ତାହା, ଯହିଁ ତହିଁ

**ଯାବା** - *ମ.ବା.* (କ୍ରି.) : ଯିବା

**ଯାବିଚ୍ଛ** - *ଗଦ୍ୟ.* (ବିଂ.) : ଅଶ୍ରାବ୍ୟ, ଯାହା ତାହା

**ଯାବିଚ୍ଛା** - *ଗଦ୍ୟ.* (ବିଂ.) : ଯେତେଇଚ୍ଛା ସେତେ

**ଯାମ** - *ଢ.* (ବି.) : ରାତ୍ରର ପ୍ରଥମ ପ୍ରହର

**ଯାମଚି** - *ବର.* (ବି.) : ଲତା ବିଶେଷ, ଚାଟାର ଚାନ୍ଦା ବୁଣାଯାଉଥିବା ଲତା ବିଶେଷ

**ଯାମା** - *ବା.* (କ୍ରି.) : ଯିବା

**ଯାମୁଆ** - *ରା.* (ବିଂ.) ଦେହର ଅଂଶ ଯେଉଁଠାରେ ରକ୍ତସଂଚାଳନ ହୁଏ ନାହିଁ

**ଯାସ୍ତି** - *କୋ.ରା.ଗ.* (ବିଂ.ବି.) : ଅଧିକ

**ଯାହାକେ** - *ନୁ.ସ.* (ସ.ଅ.) : ଯାହାକୁ

**ଯାହିଁତହିଁ** - *ଦେ.* (କ୍ରି.ବିଂ.) : ଯେକୌଣସି ପ୍ରକାରେ

**ଯାହିଁତାହିଁ** - *ଦେ.* (ସ.) : ଯେ କୌଣସି ସ୍ଥାନରେ, ମାମୁଲି ଭାବରେ

**ଯାଁଆଁଲା** - *କଳା.* (ବି.) : ଯମଜ, ଯାଆଁଳା, ଯୁଗ୍ମ

**ଯାଁଚ** - *ସ.ଦେ.* (କ୍ରି.) : ତନ୍ନ ତନ୍ନ କରି ଖୋଜିବା, ତଦାରଖ

**ଯା'ଆସ** - *ନ.* (ବି.) : ଯିବାଆସିବା

**ଯିଗର** - *ରା.* (ବି.) : ଦୃଢ ମନୋବୃତ୍ତି, ଜିଦି

**ଯିମା** - *ବୌ.କଳା.ଗଦ୍ୟ.* (କ୍ରି.) : ଯିବା

**ଯି'ନ୍ତି** - *କୋ.* (ସ.) : ଯେମିତି,ଯେଉଁଭଳି

**ଯୁ** - *ନ.ଗଦ୍ୟ.ଯା.ଦେ.* (ବି.ସ.) ଚାରା(ସାମର୍ଥ୍ୟ), ଯୋଉ, ଯେଉଁ, ବଳ, ଶକ୍ତି

**ଯୁ** - *ବୌ.ନ.କୋ.* (ବି.କ୍ରି.) : ଶକ୍ତି (ଯୁ ହୀନ- ଶକ୍ତିହୀନ), ଅନ୍ୟ ଗତି, ଚାଲ, ଯିବାଚାଲ

**ଯୁଅ** - *ବା.* (ବି.) : ସ୍ୱେଟର, ଟୋକେଇ ଆଦି ବୁଣିବାର ପ୍ରଥମ ଅବସ୍ଥା

**ଯୁଅକଉଡ଼ି** - *ଯା.* (ବି.) ବିଭାଘର ବରକନ୍ୟାଙ୍କ ଖେଳ

**ଯୁଆଡ୍** - *କଳା.ଦେ.* (ବି.ସ.) ଯୋଡ, ଯୁଏଡ୍, ଯୁଆଳି, ଯେଉଁଆଡ଼

**ଯୁଆଡ଼ି** - *ଦେ:ସୁବ:* (ବି.ବିଂ.) : ଲଙ୍ଗଳ ଯୋଗ୍, ଜୁଆଳି, ଜୁଆ ଖେଳୁଥିବା ଲୋକ

**ଯୁଆଣ ଚୁକା** - *ଟ୍ରା:* (ବି.) : ଯବାନ୍ ଟୋକା

**ଯୁଆଣତିଲ୍ଲା** - *ଟ୍ରା:* (ବି.) : ଶକ୍ତିମତୀ ନାରୀ

**ଯୁଆଣ ମର୍ଦ୍ଦ** - *ଟ୍ରା:* (ବି.) : ବଳୁଆ ପୁରୁଷ

**ଯୁଆନ** - *ଅନେ:* (ବି.ବିଂ.) : ଯୁବକ, ଯୌବନ ସମୟ, ଭେଣ୍ଡା

**ଯୁଆନ ଟୁକେଲ** - *ସୁବ:* (ବିଂ.) : ଯୁବତୀ ଝିଅ

**ଯୁଆଳି** - *ଅନେ:* (ବି.) ବଳଦ ୨ଟିର ବେକରେ ପଡୁଥିବା କାଠଖଣ୍ଡ ଯାହା ଲଙ୍ଗଳ ସହ ସଂଯୁକ୍ତ ହୁଏ

**ଯୁଆଁ କଦୀଳ** - *ଟ୍ରା:* (ବି.) : ଯାଆଁଳା କଦଳୀ

**ଯୁଆଁଛୁଆ** - *ଟ୍ରା:* (ବି.) : ଯାଆଁଳା ଛୁଆ

**ଯୁଆଁଛୁଆ** - *ଟ୍ରା:* (ବି.) : ଯାଆଁଳାପିଲା

**ଯୁଇଁ** - *ନବ:* (ବି.) : ଜାମାତା

**ଯୁଏଝୁଲା** - *ସ:* (ବି.) : ନିଆଁ ଝୁଲା

**ଯୁଏଡ୍** - *କଳା:* (ବି.) : ଯୁଆଳି

**ଯୁଏଲ** - *ସୁ:* (ବିଂ.) : ଯୋଡ଼ି

**ଯୁଏଁଡ୍** - *ବୌ:* (ବି.) : ଜୁଆଳି

**ଯୁକ୍ଲି** - *କଳା:* (ବି.) : ସାପକାତି

**ଯୁଖିବାର** - *ସୁବ:* (କ୍ରି.) : ଓଜନ କରିବା

**ଯୁଖା** - *ବା:କଳା:କନ୍ଧ:* (ବି.) : ପେଜ ବାହାର ନକରିବା ଭାତ, କ୍ଷୀରି, ପାୟସ, ଯୋଖା

**ଯୁଗ** - *କୋ:* (ବି.) : ସମୟ, ଯୋଗ

**ଯୁଗ୍ନି** - *ନୂ:* (ବି.) : ଯୋଗିନୀ

**ଯୁଗଚ** - *କ:* (ବିଂ.) : ଯୁକ୍ତିଯୁକ୍ତ

**ଯୁଗରା ସଂଗରା** - *ସ:* (ବି.) : ସବୁ ଜିନିଷ ସଜେଇବା

**ଯୁଗଳବନ୍ଧୀ** - *ସଂ:* (ବି.) : ଦଂପତ୍ତି, ସୁଖ ଦାମ୍ପତ୍ୟ ଜୀବନ, ଯୋଡ଼ି

**ଯୁଗାଡ** - *ଟ୍ରା:ବା:* (ବି.) : ପରିବାପତ୍ର, ଝିଅ ଶାଶୁଘରକୁ ଗଲାବେଳେ ଯାହା ଭାର ଦିଆଯାଏ

**ଯୁଗାଡ଼** - *ବା:ସ:* (ବି.) ଝିଅକୁ ଦିଆଯାଉଥିବା ଉପହାର, ବନ୍ଦୋବସ୍ତ, ଯୋଗାଡ଼

**ଯୁଗାଡ଼ଯନ୍ତ** - *ବୌ:* (ବି.) : ପ୍ରସ୍ତୁତି

**ଯୁଗାଡ଼ିବା** - *ଟ୍ରା:* (କ୍ରି.) : ବନ୍ଦୋବସ୍ତ କରିବା

**ଯୁଗାବାର** - *ସୁବ:* (କ୍ରି.) : ଯାହା ରୀତିସମ୍ମତ ନୁହେଁ, ଯାହା ନ କରିବା କଥା

**ଯୁଗାର** - *ବୌ:ସୁବ:* (କ୍ରି.ବି.) ଭର, ଭର୍ତ୍ତିକର, ମନ୍ଦିର ଆଲତିର ଗୁଡ଼ ଓ ଖଇର ମୁଆଁ ପୂଜା ଭୋଗ ଭାବେ ବ୍ୟବହୃତ

**ଯୁଗି** - *ଟ୍ରା:* (ବି.) : ଯୋଗୀ

**ଯୁଗୁଳି** - *ଯା:* (ବି.) : ଲଙ୍ଗଳ ଫାଳକୁ ଧରି ରଖୁଥିବା ବକ୍ର ଲୌହଖଣ୍ଡ

**ଯୁଚିବା** - *ବା:* (କ୍ରି.) : ସଜ କରିବା, ପ୍ରସ୍ତୁତ କରିବା

**ଯୁଝିବା** - *ନ:* (କ୍ରି.) : ଯୁଦ୍ଧକରିବା

**ଯୁଟା** - *କଳା:* (ବି.) : ଯୋଡ଼, ମିଶାଣ, ବ୍ୟବସ୍ଥା କର

**ଯୁଟିବା** - *ନ:* (କ୍ରି.) : ମିଳିବା

**ଯୁଟେଇବା** - *କଳା:* (କ୍ରି.) : ମିଶେଇବା, ଏକତ୍ର କରିବା

**ଯୁଡଣ** - *ଗ:* (ବି.) : ଯାତ୍ରାରମ୍ଭର ପ୍ରଥମ ଯନ୍ତ୍ର ସଂଗୀତ

**ଯୁଡାକୁଡି** - *ବୌ:* (ବିଂ.) ଲଗାଲଗି, ଯୋଡ଼ାଯୋଡ଼ି

**ଯୁଡି** - *ଦେ:* (ବି.) : ସାହଚର, ସାଙ୍ଗ, ଯୋଡ଼ି

**ଯୁଡେଇ** - *ରା:* (ବି.) : ଦୁଇଟି

**ଯୁଡ଼** - *ଗ:* (ବି.) : ସାପର ରତିକ୍ରୀଡ଼ା, ଯୋଡ଼

**ଯୁଡ଼ା** - *କଳା:ନୂ:* (ବି.ବିଂ.) : ନାରୀମାନଙ୍କର କେଶ ବିନ୍ୟାସର ଖୋଷା, ଦୁଇଟି ବସ୍ତୁକୁ ଯୋଡ଼ିବା, ଯୋଡ଼ିଏ

**ଯୁଡ଼ା ଖୁଣ୍ଟ** - *ପଦ୍ମ:* (ବି.) : ବଳି ଦିଆଯିବା ପାଇଁ ପୋତାଥିବା ଖୁଣ୍ଟଦ୍ୱୟ

**ଯୁଡ଼ାହାତ** - *ସ:* (ବି.କ୍ରି.) : ହାତଯୋଡ଼ିବା

**ଯୁଡୁକା**- *ରା:* (ବି.) : ଥରଥରିଆ ରୋଗ

**ଯୁଡ଼େ** - *ସ:* (ବିଂ.) : ଦୁଇଟି

**ଯୁଡ଼େ** - *ଅନେ:* (ବି.ବିଂ.) : ଦୁଇଜଣ, ଦୁଇ, ହଳେ, ଯୋଡ଼ିଏ

**ଯୁଡ଼େଇବା** - *କଳା:* (କ୍ରି.) : ଯୋଡ଼ିବା, ସଂଲଗ୍ନ କରିବା

**ଯୁଡ଼େନ୍** - *କଳା:* (ବି.) : ଯୋଡ଼ଣି, ଯୋଡ଼ିବା ସ୍ଥଳ

**ଯୁଣ** - *ଗ:* (ବି.) : ପାନ ଗଛକୁ ବାନ୍ଧିବା ପାଇଁ ଏକପ୍ରକାର ତୃଣ

**ଯୁତ** - *ଜ:ଢେ:* (ବି.) : ହଳବଳଦ ବାନ୍ଧିବା ଦଉଡ଼ି, ମିଳନ

**ଯୁତ୍‌ବା** - *ସ:* (କ୍ରି.) : ହଳ କରିବା, ଯୋଚିବା

**ଯୁତା** - *ସୁ:କଳା:* (ବି.) : ବଳଦବେକର ରସି, ପଘା, ହଳ ଦଉଡ଼ି

**ଯୁବ୍‌ରାଜ୍** - *କଳା:* (ବି.) : ରାଜାଙ୍କ ବଡ଼ପୁଅ

**ଯୁର** - *ରା:କନ୍ଧ:* (ବି.) : ବଳପୂର୍ବକ ନେବା, ଛୋଟ ପାଣି ନାଳ ଜୋର

**ଯୁରାଚ୍** - *କଳା:* (ବିଂ.) : ବୟସ୍କ

**ଯୁଲି** - *ସ:* (ବି.) : ହଳେ, ଦୁଇ

**ଯୁଲିବା** - *ରା:ଗ:* (କ୍ରି.) : ଗୋଡକୁ ଧରିଦେବା, ଛନ୍ଦିବା

**ଯେଉଟ** - *ଖୋ:* (ବି.) : ଏକ ପ୍ରକାର ଫଳ

**ଯେଜମାନି** - *କୋ:* (ବି.) : ଯଜମାନି

**ଯେତ୍‌ଲେ** - *ବୌ:* (ଅ.) : ଯେତେବେଳେ

**ଯେନ** - *ଅନେ:* (ଅ.ସ.ବିଂ.) : ଯେଉଁ, ଯିଏ

**ଯେନ୍‌କି** - *କନ୍ଧ:* (ଅ.) : ଯେଉଁଠିକି

**ଯେନ୍ କୁତି** - *ସ:* (ଅ.) : ଯେଉଁ ପାଖକୁ

**ଯେନ୍‌ଟା** - *ସ:* (ଅ.) : ଯେଉଁଟା

**ଯେନ୍‌ତା ସେନ୍‌ତା** - *କଳା:* (ଅ.) : ଯେପରି ସେପରି, ଯେମିତି ସେମିତି

**ଯେନ୍‌ତେନ୍** - *କଳା:* (ଅ.) : ଯିଏସିଏ, ଯେକେହି, କୌଣସି ପ୍ରକାରେ

**ଯେନସି** - *ନୂ:* (ସ.) : ଯେକୌଣସି

**ଯେତା** - *ଅନେ:* (ଅ.) : ଯେମିତି

**ଯେତି ସେତି** - *ଚୌ:* (ଅ.) : ଯେ କୌଣସି ମତେ

**ଯେବଟ୍** - *ବା:* (ବି.) : ଯେଉଁ ବାଟରେ

**ଯେମନ୍ତ** - *ଛ:* (ସ.) : ଯେଉଁ ପ୍ରକାରେ, ଯେପରି

**ଯେଁଟା** - *ନୂ:* (ଅ.) : ଯାହା

**ଯୋଇ** - *ପଦ୍ୟ:* (ସ.) : ଯେଉଁ

**ଯୋକ** - *ଖୋ:* (ବି.) : ପାଣିରେ ଥିବା ଏକ ରକ୍ତ ଶୋଷଣ କରୁଥିବା ଜୀବ

**ଯୋଖା** - *ଗ:କଳା.* (ବି.) : ଖେଚୁଡ଼ି, ଭାତରୁ ପେଜ ବାହାର ନକରିବା, ମନେ ମନେ ହିସାବ କରିବା ଗଣିତ, ପାୟସ, ଯୁଖା

**ଯୋଗ** - *ନୂ:ସୁବ:* (ବି.) : ଲଗ୍ନ, ସାପକାତି

**ଯୋଗଣ** - *ଗ:* (ବି.) : ମଣୋହି

**ଯୋଗଣିଆ** - *ଗ:* (ବି.) : ରାଜା ତଥା ଠାକୁରଙ୍କ ନିମିତ୍ତ ଯେ ଖାଦ୍ୟ ପ୍ରସ୍ତୁତକରେ

**ଯୋଗଣୀଖିଆ** - *କେ:ଖୋ:* (ଅ.ବିଂ.) : ଏକ ପ୍ରକାର ଗାଳି

**ଯୋଗ ଫିଟିବା** - *ଗ:ନୂ:* (କ୍ରି.) : ବିବାହ ସୁଯୋଗ ଆସିବା, ଭଲ ଦିନ ଆସିବା

**ଯୋଗଭାର** - *ନୂ:* (ବି.) : ବିବାହରେ ନିଆ ଯାଉଥିବା ଭାର

**ଯୋଗା** - *ଛ:* (ବିଂ.) : ଉପଯୁକ୍ତ, ଯୋଗ୍ୟ

**ଯୋଗାଡ଼** - *କେ:ନ:ସଂ:* (ବି.) : ବନ୍ଦୋବସ୍ତ, ଆୟୋଜନ, ସଂଗ୍ରହ

**ଯୋଗାଡ଼ିଆ** - *ଖୋ:ନ:କେ:* (ବିଂ.) କାର୍ଯ୍ୟକରୁଥିବା ସମୟରେ ଯେ ମୁଖ୍ୟ କାରିଗରକୁ ସାହାଯ୍ୟ କରେ, ପାରିବାର, ଯୋଗାଡ଼ କରିବାରେ ଯିଏ ପାରଙ୍ଗମ, କାମିକା ଲୋକ

**ଯୋଗାଡ଼ୁ ଜନ୍ତର** - *ଖୋ:* (ବି.) : ବ୍ୟବସ୍ଥା, ବନ୍ଦୋବସ୍ତ

**ଯୋଗାନ୍ତ** - *ଛ:* (ବି.) : ଯୋଗୀ ପୁରୁଷ

**ଯୋଗାଯୋଗ** - *ନ:* (ବି.) : ଦେଖାସାକ୍ଷାତ, ସମ୍ପର୍କ

**ଯୋଗିନୀ ଖାଇ** - *କେ:* (ଅ.) : ଏକ ଗାଳି (ସ୍ତ୍ରୀ)

**ଯୋଗିନୀଖିଆ** - *ଗଦ୍ୟ:କେନ୍ଦୁ:* (ବି.) : ମୃତ୍ୟୁ କାମନା କରି ପ୍ରୟୋଗ କରାଯାଉଥିବା ଗାଳି,

**ଯୋଗୀଜନ** - *ଖୋ:* (ବି.) : ସାଧୁଲୋକ

**ଯୋଗେଇଛି** - *ନ:* (କ୍ରି.) : ଶୁଝିଛି, ବିବାହର ମେଳକ ପଡ଼ିବା

**ଯୋଚା** - *ଛ:* (ବିଂ.) : ଯୁକ୍ତ

**ଯୋଚିବା** - *ଦେ:ଯା:* (କ୍ରି.) : ବଳଦକୁ ଯୁଆଳିରେ ସଂଯୋଜିତ କରିବା, ଏକାଠି କରିବା, ବାନ୍ଧିବା

**ଯୋଜନା** - *ନ:* (ବି.) : ଷଡ଼ଯନ୍ତ୍ର

**ଯୋଟକ** - *ଖୋ:* (ବି.) : ମେଳଖାଇବା

**ଯୋଟଯାତ୍** - *ଭ:* (ବି.) : ଯୋଗାଯୋଗ

**ଯୋଡଣ** - *ସଂ:* (ବି.) : ମନଗଢା କଥା, ଯୋଡି ଯୋଡି କହିବା

**ଯୋଢ଼** - *କେ:ଖୋ:* (ବି.) : ଧୋତି ଓ ଚଦର, ପଗଡ଼ି ମିଶି ପରିଧାନ ବସ୍ତ୍ର, ସମାସ୍କନ୍ଧ ହେବା

**ଯୋଢ଼ଦେବା** - *ଖୋ:* (କ୍ରି.) : ସମାନହେବା

**ଯୋଢ଼ଲୁଗା** - *ନ:* (ବି.) : ଧୋତି ଓ ଚଦର

**ଯୋଡ଼ି** - *ମା:* (ବିଂ.) : ମେଳକ, ଯୁଗ୍ମ

**ଯୋଡ଼ିଘର** - *ଦେ:* (ବି.) : କାଞ୍ଜିଆହୁଦା

**ଯୋଡ଼ିଯାଭଁଳି** - *ଗ:* (ବି.) ଦୁଇଜଣ, ଦୁଇବସ୍ତୁ ଏକାଠ ରହିବା

**ଯୋତ** - *ଖୋ:ନ:* (ବି.) : ଝୋଟ ଦଉଡ଼ି, ପଲପ, ବଳଦ ବେକ ସହିତ ଯୁଆଳି ବାନ୍ଧିବା ଦଉଡ଼ି

**ଯୋତଦାର** - *ଦେ:* (ବି.) : କୃଷକ

**ଯୋର୍** - *କଳା:* (ବି.) : ବଡ଼ନାଳ

**ଯଁତା** - *ସୁବ:ସ:* (ବି.) : ବିର୍‌ହୀ ଦଳିବା ପଥର ଚକି, ଚକି ପଥର ତିଆରି

**ୟାଙ୍କେ** - *ମା:କଣ:* (ସର୍ବ.) : ସେ, ଏହାଙ୍କ

**ୟାପ** - *ମା:* (ବି.) : ଗାଳିବିଶେଷ

**ୟାବି** - *ଯା:* (ଅ.) : ଏହାମଧ୍ୟ, ଏହା ବି

**ୟା'ଭୁ** - *ନ:* (ବି.) : ଏଇଦିଗରୁ

**ୟେକ** - *ଢ:* (ବିଂ.) : ଏକ

# ର

**ରଅଟ** - *ଭ.* (ବି.) : ଜିଦ୍, ରଟ

**ରଇକାଠ** - *ଦେ.* (ବି.) : ଚିତାଗ୍ନିରେ ବ୍ୟବହୃତ କାଠ

**ରଇଖିଆ** - *ନବ.ଦେ.ସୁବ.ସ.* (ବି.ବିଂ.) : ଗାଳି ବିଶେଷ

**ରଇଗାଡ** - *ସଂ.* (ବି.) : ଲୁଇଗାଡ଼

**ରଇଜଳା** - *ଅନେ.* (ବିଂ.ବି.) : ଏକ ଗାଳି

**ରଇତ** - *ନ.କଳା.* (ବି.) : ଭାଗ ଧରିଥିବା ପ୍ରଜା, କର ଦେଇ ଅନ୍ୟ ଜମି ଚାଷ କରୁଥିବା ବ୍ୟକ୍ତି

**ରଇଥା** - *ନ.* (କ୍ରି.) : ରୁହ, ଅପେକ୍ଷା କର

**ରଇବାର** - *ଅନେ.* (ବି.) : ରବିବାର

**ରଇଯିବା** - *ରା.* (କ୍ରି.) : ଯିବା ବନ୍ଦ କରିବା, ରହିଯିବା

**ରଇଣୀତଳ** - *ଦେ.* (ବି.) : ଶବଦାହ ପରବର୍ତ୍ତୀ ଅଗ୍ନିଶାନ୍ତି କର୍ମ

**ରଇଶୁଆ** - *ଗ.* (ବି.) : ଗାଳି ବିଶେଷ

**ରଇସ୍** - *ଗଦ୍ୟ.* (ବିଂ.) : ଅଭିଜାତପୂର୍ଣ୍ଣ

**ରଇଁସା** - *ଦେ.* (ବି.) : ଝୁଡ଼ଙ୍ଗ ଲୁଇଁ

**ରଏବାର** - *ନୂ.କଳା.* (ବି.) : ରବିବାର

**ରକ** - *ନବ.* (ଅ.) : ମକଚିବା

**ରକ୍କା** - *ଗଜ.* (ବି.) : ପବନ ରହି ବଥା ଅନୁଭବ କରିବା

**ରକ୍ଟା** - *ଦେ.* (ବି.) : ଅଇଁଠା ବାସନରେ ଲାଗିଥିବା ଅନ୍ନ

**ରକ୍ଟିବା** - *କଳା.* (କ୍ରି.) : ଚୋବାଇବା

**ରକ୍ପଡ଼** - *କୋ.ଗ.* (ବିଂ.) : ଈର୍ଷାପରାୟଣ, ପରଶ୍ରୀକାତର

**ରକ୍ରକ୍** - *ଦେ.* (ବି.) : କୌଣସି ପଦାର୍ଥ ଦେବାକୁ ଅନିଚ୍ଛା ପ୍ରକାଶ

**ରକଟା** - *କ.ଗ.* (ବିଂ.ବି.) : ଶୁଖିଲା ଖାଦ୍ୟାଂଶ, ରକଟା ବାସନ, ପାତ୍ରର କଳଙ୍କି

**ରକଟିବା** - *ଦେ.* (ବି.) : ଦାନ୍ତରେ ଛେଲେଇ କାମୁଡ଼ି ଖାଇବା

**ରକତ** - *ନ.କଳା.ଦେ.ସ.* (ବି.) : ରକ୍ତ, ରୁଧିର

**ରକତ୍ ଚନ୍ଦନ୍** - *କଳା.* (ବି.) : ଲାଲ୍ ରଙ୍ଗର ଚନ୍ଦନ

**ରକତଖିଆ** - *ଖୋ.* (ବିଂ.) : ଏକ ପ୍ରକାର ଗାଳି

**ରକତଗାର** - *ଖୋ.* (ବି.) : ଜବାବରେ ଅଟଳ

**ରକତ ଝାଡ଼ା** - *ନ.* (ବି.) : ନାଳ, ରକ୍ତ ଝାଡ଼ା ରୋଗ, ଆମାଶୟ

**ରକବକ** - *କୋ:* (ବିଂ.) : ଅନୁତପ୍ତ ଭାବ ପ୍ରଦର୍ଶନ, ଅସହିଷ୍ଣୁତା

**ରକମ** - *ଅନେ:* (ବି.) : ବିଭିନ୍ନ ପ୍ରକାର, କିସମ, ଢଙ୍ଗ

**ରକମ୍‌ବାରି** - *କୋ:* (ବିଂ.) : ବିଭିନ୍ନ ପ୍ରକାର, ଭିନ୍ନଭିନ୍ନ କିସମର

**ରକମ୍‌ରକମ୍** - *ଦେ:* (ବିଂ.) : ନାନାପ୍ରକାର

**ରକମାରି** - *ବା:* (ବି.) : ବିଭିନ୍ନ ପ୍ରକାର

**ରକା** - *ଅନେ:* (ବି.କ୍ରି.) : ଶରୀରସ୍ଥ କୁପିତ ବାୟୁ, ବେକ ଓ କଙ୍କାଳରେ ପବନ ଅଟକିବା

**ରକେଇବା** - *ନବ:* (କ୍ରି.) : ଢାଳିବା

**ରକ୍ତକୁସୁମ** - *ଦେ:* (ବି.) : ପାଳଧୁଆଗଛ

**ରକ୍ତପୁଷ୍ପୀ** - *ପଦ୍ୟ:ଦେ:* (ବି.) : ଶିମୁଳି ଗଛ, ଧାତକୀଫୁଲ

**ରକ୍ତରଂଜିତ** - *ସଂ:* (ବିଂ.) : ରକ୍ତ ବୁଡ଼ବୁଡ଼

**ରକ୍ତହଗା** - *ନ:* (ବି.) : ଗୋରୁଙ୍କ ରକ୍ତଝାଡ଼ା

**ରଖ୍‌ନିଆ** - *ଦେ:* (ବି.) : ଉପପତି

**ରଖଡ୍ଡୁ** - *ନୂ:ବୌ:* (ବିଂ.) : ଅଧିକ ବଳଶାଳୀ, ପହିଲମାନ୍

**ରଖନି** - *ବ:ଦେ:ସୁବ:* (ବି.) ରକ୍ଷିତା, ଉପପତ୍ନୀ

**ରଖା** - *ଦେ:ପଦ୍ୟ:* (ବି.) : ଜଗିବା, ଦୀପ ରଖିବାର କାଷ୍ଠ ନିର୍ମିତ ଉଚ୍ଚପାତ୍ରବିଶେଷ, ଡୁଖା

**ରଖାଇନଦେବା** - *ଦେ:* (ବି.) : ବ୍ୟତିବ୍ୟସ୍ତ କରିବା

**ରଖାଥୁଆ** - *ଦେ:* (ବି.) : ହେପାଜତ୍

**ରଖା, ରଖ୍‌ନୀ** - *ସ:* (ବି.) : ସାଇତା, ଗାଈ ବଳଦଙ୍କୁ ସାମୟିକ ଭାବେ ଗଉଡ଼ ଘରେ ଛାଡ଼ିଦେବା, ବିନା ବିବାହରେ ରଖିଥିବା ସ୍ତ୍ରୀ, ରକ୍ଷିତା

**ରଖାସାଜ** - *ପଦ୍ୟ:* (ବି.) ବିବାହାଦି ମାଙ୍ଗଳିକ ଦ୍ରବ୍ୟବିଶେଷ

**ରଖୁନି** - *ଗଦ୍ୟ:* (ବିଂ.) : ରକ୍ଷିତା

**ରଖୁଆ** - *ଦେ:* (ବିଂ.) : ରକ୍ଷିତ

**ରଖିବା** - *ନ:ଦେ:* (କ୍ରି.) : ସ୍ଥାପନ କରିବା, ରକ୍ଷାକରିବା, ପୋଷିବା, ପାଳିବା, ସଞ୍ଚୟ କରିବା

**ରଗ** - *ବା:ଦେ:କେନ୍ଦୁ:ଖୋ:* (ବିଂ.ବି.) : ରାଗ, ଛୋଟକମ୍ବଳ, ଗଉଁ

**ରଗ୍‌ଡ଼ାଘଷା** - *କଳା:* (ବିଂ.) : ଦେହକୁ ଆରାମ ଲାଗିବା ପରି ଚିପିବା ବା ଘଷିବା

**ରଗ୍‌ଡ଼ାରଗ୍‌ଡ଼ି** - *ଦେ:* (ବି.) : କଳିଆ

**ରଗ୍‌ଡ଼ିଆ** - *ଦେ:* (ବିଂ.) : କୌତୁକପ୍ରିୟ

**ରଗ୍‌ବଗା** - *ବ:* (ବିଂ.) : ଉଜ୍ଜ୍ୱଳ

**ରଗ୍‌ରଗ୍** - *ଦେ:* (ବି.) : କ୍ରୋଧରେ ଜର୍ଜରିତ

**ରଗ୍‌ରଗା** - *କଳା:* (ବିଂ.) : ଜଳୁଥିବା, ପ୍ରଜ୍ୱଳିତ

**ରଗ୍‌ରଗାବା** - *ସ:ସୁ:* (ବି.) ଜ୍ୱଳନ, ଖର୍‌ଖରେଇବା

**ରଗ୍‌ରଗିବା** - *କଳା:* (କ୍ରି.) : ପ୍ରଜ୍ୱଳିତ ହେବା, ଜଳିବା

**ରଗଡା ଖିଆ** - *ସୁବ:* (ବିଂ.) : ଗାଳିବାଚକ ଶବ୍ଦ

**ରଗଡ଼** - *ଅନେ:* (ବିଂ.ବି.) ପ୍ରତିହିଂସା ପରାୟଣ, ଛାଇରଗଡ଼, ପେଷଣ, କଡ଼ା ଆଦେଶ, ଗୋପାଳ ଜାତିର ଏକ ସଂଜ୍ଞା, ପରିଶ୍ରମ, ବେମାର, ଚିତ୍କାର

**ରଗଡ଼ରଖିବା** - *ଗ:* (କ୍ରି.) : ଅନ୍ୟ ଉପରେ ରାଗ ରଖିବା

**ରଗଡ଼ା** - *ଗଦ୍ୟ:ଦେ:* (ବି.) : ଅଭ୍ୟାସ, ଧମକ

**ରଗଡ଼ି** - *କଥ:* (ବିଂ.) : ଟାଣକରି

**ରଗଡ଼ିବା** - *ସ:ନ:* (କ୍ରି.) : ଘଷିବା, ମୁଗ, ବିରି, ଚଣାଦି ଶସ୍ୟକୁ ଭାଜି ଚକିରେ ଫାଳ କରିବା

**ରଗରଗ** - *ସୁବ:ଗ:* (ବିଂ.) : ରାଗରାଗ, କ୍ରୋଧନ୍ୱିତ

**ରଗରଗା କୁଏ** - *ସୁବ:* (ବିଂ.) : ରଡ଼ ନିଆଁ

**ରଗସି** - *କଥ:* (ବି.) : ଗତବର୍ଷ

**ରଗାବା** - *କଳା:* (କ୍ରି.) : ରଗେଇବା

**ରଗୁଆ** - *ଖୋ:* (ବିଂ.) : ରାଗୁଥିବା, ରାଗୀ

**ରଗୁଡ଼ି** - *ରା:* (ବି.) : ଦାନ୍ତରେ ଜୋରକରି ଧରିବା

**ରଘା** - *ବୌ:* (ବି.) : ରୋଗା

**ରଙ୍କ** - *ନ:ନବ:ଗଜ:* (ବିଂ.) : ଦରିଦ୍ର, ଭିକାରୀ, ବିକଳିଆ, ଲୋଭୀ

**ରଙ୍କଣା** - *କ:ସ:* (ବିଂ.) : କୃପଣ, କାହାକୁ କିଛି ନଦେବା, କଂଜୁସ, ରେଙ୍କେଣା

**ରଙ୍କା** - *ଖୋ:* (ବିଂ.) : ଲୋଭୀ

**ରଙ୍କାଳିଆ** - *ଗ:ଖୋ:* (ବିଂ.) ଦରିଦ୍ର, ଅତିଆଗ୍ରହ, ଲୋଭୀଲୋକ

**ରଙ୍କୁଣା** - *ଢେ:* (ବିଂ.) : ଲୋଭୀ

**ରଙ୍ଗ** - *ଗ:ବୌ:* (ବି.ବିଂ.) : ରଙ୍ଗ ଶବ୍ଦ ଗଞ୍ଜାମରେ ନାଲି ରଙ୍ଗକୁ ବୁଝାଏ, ମାଇଚିଆ (ସଂ.), ଯେ କୌଣସି ରଙ୍ଗ

**ରଙ୍ଗ କାଢ଼ିବା** - *ରା:* (କ୍ରି.) : ଦେଖେଇ ହେବା

**ରଙ୍ଗଚିତାପାରୁ** - *ଗ:* (ବି.) : ଔଷଧୀୟ ଗୁଳ୍ମ

**ରଙ୍ଗଢ଼ିଆ** - *ଗ:କୋ:* (ବିଂ.) : ନାଲିରଙ୍ଗ, ନାଲିଆ

**ରଙ୍ଗଢଙ୍ଗ** - *ଦେ:* (ବି.) : ଚାଲିଚଳନ

**ରଙ୍ଗଣୀ** - *ନ:* (ବି.) : ତନ୍ତୀ ଜାତି

**ରଙ୍ଗତା ରଙ୍ଗତା** - *ପୁ:* (ବି.) : ଉଗ୍ର, ଉତ୍ତେଜିତ, ଭାଙ୍ଗନିଶାରେ ଲାଲ ଆଖି

**ରଙ୍ଗ ଦଉଡ଼ିଆ** - *ଗ:* (ବି.) : ନାଲିରଙ୍ଗର ଥିବା ଘାସ

**ରଙ୍ଗଦେଖିବା** - *ଦେ:* (ବି.) ଅନ୍ୟର ଦୁଃଖରେ ଖୁସିହେବା

**ରଙ୍ଗପତର** - *ନ:* (ବି.) : ପାନ(ମସଲା ପାନ, ଖଇର, ଗୁଆ ଥାଇ)।

**ରଙ୍ଗପାଣି** - *ନ:* (ବି.) : ମଦ, ନାଲିପାଣି

**ରଙ୍ଗପିମ୍ପୁଡ଼ି** - *ଗ:* (ବି.) : ନାଲି ରଙ୍ଗର ଛୋଟ ପିମ୍ପୁଡ଼ି, ଅଳ୍ପକେ ରାଗୀ

**ରଙ୍ଗପୁନି** - *ବଉ:* (ବି.) : ଦୋଳପୂର୍ଣ୍ଣମୀ

**ରଙ୍ଗବତୀ** - *ଦେ:* (ବି.) : ରସିକା ନାଗରୀ

**ରଙ୍ଗବାଜି** - *ଭ:* (ବିଂ.) : ବାହାଦୂରୀ

**ରଙ୍ଗବାନା** - *ଗ:* (ବି.) : ନାଲି ରଙ୍ଗର ପତାକା ବିପଦ ବା ସତର୍କ ସୂଚନା

**ରଙ୍ଗବାର** - *ସୁନ:* (କ୍ରି.) : ପେଟ ବା ଆଣ୍ଠୁରେ ଭରାଦେଇ ଗୁରୁଣ୍ଡିବା

**ରଙ୍ଗମଟା** - *ଖୋ:ନ:* (ବି.) : ଏକପ୍ରକାର ଧାନ, ଧାନର ନାମ

**ରଙ୍ଗମିସ୍ତ୍ରୀ** - *ଗ:* (ବି.) : ଲୁଗାକଳରେ ଲୁଗାରଙ୍ଗାଉଥିବା ବୁଣାକାର, ଘର ରଙ୍ଗ କରିବା କାରିଗର

**ରଙ୍ଗ ରଙ୍ଗିଆ** - *ସ:* (ବିଂ.) : ବିଭିନ୍ନ ରଙ୍ଗର

**ରଙ୍ଗସାଜ** - *ସଂ:* (ବି.) : ଚିତ୍ରଶିଳ୍ପୀ, ରଙ୍ଗ ସରଞ୍ଜାମ

**ରଙ୍ଗାପଡ଼ିବା** - *ନ:* (କ୍ରି.) : ଲାଲ୍ ପଡ଼ିବା

**ରଙ୍ଗିଆ** - *ନବ:ବୌ:* (ବିଂ.) : କୌତୁକିଆ, ନାଲି ରଙ୍ଗଯୁକ୍ତ

**ରଙ୍ଗିଆଫଳ** - *ଅ:* (ବି.) : କମଳା

**ରଙ୍ଗିଆରାଇ** - *ଖୋ:* (ବି.) : ଏକପ୍ରକାର ଧାନ ନାମ

**ରଙ୍ଗିତଙ୍ଗିଆ** - *ଗ:* (ବିଂ.) : ରସିକିଆ

**ରଙ୍ଗିମାରିଯିବା** - *ଗ:* (କ୍ରି.) : ଧାନଗଛର ଏକ ପ୍ରକାର ରୋଗ

**ରଙ୍ଗିଲା** - *ଗ:* (ବିଂ.) : ରସିକିଆ, ରଙ୍ଗିଲିଆ

**ରଙ୍ଗବା** - *ସ:* (କ୍ରି.) : ହାତ ଗୋଡ଼ ଥାପିଥାପି ଯିବା, ଗୁରୁଣ୍ଡିବା

**ରଚ୍‌କରିବା** - *ସୁ:* (ବି.) : ମକ୍‌ଚିବା

**ରଚ୍‌କିବା** - *ଦେ:* (କ୍ରି.) : ମକଚିଯିବା

**ରଚ୍‌ରଚ୍** - *ଦେ:* (ଅ.) କାକୁଡ଼ିଆଦି ଚୋବାଇବାର ଶବ୍ଦ

**ରଚିବା** - *ନ:* (କ୍ରି.) : ତିଆରି କରିବା, ସୃଷ୍ଟି କରିବା

**ରଚେ** - *କଳା:* (ବିଂ.) : ସାନ, ଛୋଟ, କ୍ଷୁଦ୍ର

**ରଚେଇବା** - *କଳା:* (କ୍ରି.) : ରଂଗ ବୋଳିବା, ରଂଗ ଲଗେଇବା, ଅନ୍ୟଦ୍ୱାରା ଇଷ୍ଟକାଦି ଜିନିଷ ସଜାଡ଼ି କରି ରଖିବା

**ରଚେକ୍** - *କଳା:* (ବିଂ.) : ସାନ୍, ଛୋଟ, ଅତିଅଳ୍ପ

**ରଜ** - *ଦେ:* (ବି.) : ଋତୁସ୍ରାବ, ରଜଉତ୍ସବ

**ରଜ ଗୁଣିଆ** - *ଭ:* (ବି.) : ଖୁଣ ଯୁକ୍ତ

**ରଜଘସ** - *ନ:* (ବି.) : ଗୋଟିଏ କଥାକୁ ବାରମ୍ବାର ଘୋଷିହେବା

**ରଜଡ଼ିଯିବା** - *ଗ:* (ବି.) : କ୍ଷୀଣହେବା, ହୀନସତ୍ତ୍ୱ ହେବା

**ରଜନ** - *ଦେ:* (ବି.) : ବିଶୁଦ୍ଧ ଝୁଣା

**ରଜବସିବା** - *ଗ:* (କ୍ରି.) : ପନିପରିବାର ପରିଣତ ସମୟ ଆସିବା

**ରଜା** - *କଳା:କେନ୍ଦୁ:* (ବି.) : ରାଜା, ନରପତି

**ରଜାଆମ୍** - *କଳା:* (ବି.) : ସାମାନ୍ୟ ବଡ଼ ଧରଣର ଦେଶୀ ସୁସ୍ୱାଦୁ ଆମ୍ବ

**ରଜାପୁରିତ୍** - *କଳା:* (ବି.) : ରାଜପୁରୋହିତ

**ରଝକା** - *ନ:* (ବିଂ.) : ସମର୍ଥ, ପାରିବାର

**ରଝକିନା** - *ଗ:* (କ୍ରି.ବିଂ.) : ଅତିଯୋରରେ

**ରଝାରଝି ହେବା** - *ଗ:* (କ୍ରି.) : ପରସ୍ପରକୁ ଗାଳିକରିବା

**ରଝୋରଝୋ** - *ସୁ:ସ:ସୁବ:* (ବିଂ.) : ପ୍ରବଳ ମାତ୍ରାରେ

**ରଞ୍ଚନା** - *କ:* (ବି.) : ନିର୍ମାଣ

**ରଞ୍ଚରଞ୍ଚ୍** - *ଭ:* (ବି.) : ଟିକ୍ ଟିକ୍

**ରଞ୍ଚେ** - *ନ:ଗୌ:* (ବିଂ.) : ଟିକେ

**ରଞ୍ଜକ** - *ଗ:ଖୋ:* (ବି.) : ଦାରୁ, ବାରୁଦ

**ରଞ୍ଜାଘଷ କରିବା** - *ନ:* (କ୍ରି.) : [illegible] କରି ଆୟତ୍ତକୁ ଆଣିବା

**ରଞ୍ଜାହସ** - *ଗଙ୍:* (କ୍ରି.) : ପୁନରାବୃତ୍ତି

**ରଞ୍ଜା** - *ଅନେ:* (ବି.) : ଠେକରା ଦେବା, ଲତା ମଡ଼ାଇବାର ମଞ୍ଚା, ଲତାକୁ ଆଶ୍ରୟ ଦେବାପାଇଁ ଛୋଟ ଶୁଷ୍କ ଡାଳ, ବାଉଁଶର ଅଗ୍ରଭାଗ

**ରଞ୍ଜାବା** - *ସ:* (କ୍ରି.) : କାଠକୁ ଚିକ୍କଣ କରିବା

**ରଞ୍ଜାଳିଆ** - *ଗଦ୍ୟ:ଦେ:* (ବିଂ.) : ଚିକ୍ ଚିକ୍ ଟାଣୁଆ, ପତ୍ରବିହୀନ

**ରଞ୍ଜିତ** - *ଦେ:* (ବିଂ) : ମୁଗ୍ଧ

**ରଟ୍‌କରି** - *କଳା:* (କ୍ରି.ବିଂ.) : ତୀବ୍ର ଭାବରେ ଯନ୍ତ୍ରଣା ପ୍ରଦାନ କରି

**ରଟ୍‌କା** - *ଦେ:ଅ:* (ବି.) : ମକଚା, କୋଳଥ

**ରଟ୍‌ଘଟା** - *ଦେ:* (କ୍ରି.ବିଂ.) : ବଡ଼ବାଦୁଡ଼ି

**ରଟ୍‌ପଟାନୁ** - *ନୂ:* (କ୍ରି.) : ଜୋରରେ ଧରିବା

**ରଟ୍‌ପଟିଆ** - *ଗୌ:* (ବି.) : ଭିଡ଼ିକି ଜାବୁଡ଼ି ଧରିବା, ଜୋରରେ ଦଉଡ଼ିବା

**ରଟ୍‌ବା** - *ସୁ:* (କ୍ରି.) : ଉଚ୍ଚସ୍ୱରରେ ଘୋଷିବା

**ରଟ୍‌ମଟ୍** - *କଳା:ଦେ:କନ୍ଧ:* (ବିଂ.ବି.) : ରାଗରେ ଦେଖିବା, ଦାନ୍ତ କାମୁଡ଼ିବା ଶବ୍ଦ

**ରଟମଟ** - *ନ:ଜ:* (ବି.ବିଂ.) : ରାଗରେ ଆଖି ଲାଲ କରି ଦାନ୍ତ କାମୁଡ଼ିହେବା

**ରଟରଟେଇ** - *ସୁ:* (ବିଂ.) : ଜୋରକରି

**ରଟିବା** - *ଦେ:ସୁ:* (କ୍ରି.) ଉଚ୍ଚସ୍ୱରରେ ଘୋଷିବା, ବାରମ୍ବାର ଆବୃତ୍ତି କରିବା, ପ୍ରଚାର କରିବା

**ରଟେ ଖଟେ** - *କନ୍ଧ:* (ବିଂ.) : ବହୁତ କଷ୍ଟରେ

**ରଟୋ** - *ବ:* (ବି.) : ଠିକ୍

**ରଟୋ କରି** - *ନୂ:* (କ୍ରି.) : ହଠାତ୍

**ରଟୋକଲା** - *ସୁବ:* (ବିଂ.) : ହଠାତ୍ ବାଧିବା ଭଳି କିଛି କହିବା ଓ କରିବା

**ରଟୋରଟୋ** - *ସୁ:ବ:* (ଅ.କ୍ରି.ବି.) : ତୁହାତୁହା, ସିଧାସଳଖ, କର୍କଶ ଭାବରେ (କହିବା)

**ରଠ** - *ଗ:* (ବିଂ.) : ଯାହିତାହି

**ରଡ଼** - *ଖୋ:ନ:ଦେ:* (ବିଂ.ବି.) : ଉତ୍ତପ୍ତ, ପ୍ରଖର, ଜଳନ୍ତା ନିଆଁଖଣ୍ଡ

**ରଡ଼ନିଆଁ** - *ଦେ:* (ବି.) : ଜଳନ୍ତା ଅଙ୍ଗାର

**ରଡ଼ୁବାର** - *ସୁବ:* (କ୍ରି.) : ବଡ଼ ପାଟି କରିବା

**ରଡ଼ୁ ରଡ଼ା** - *ଝା:* (ବିଂ.) : ଅତି ପ୍ରଖର

**ରଡ଼ିବା** - *ସ:* (କ୍ରି.) : ଜୋର୍‌ରେ ପାଟି କରିବା, ରଡ଼ିବା

**ରଡ଼ା** - *ଯା:ଭ:* (ବି.) : ଜମି ଶୁଖିଯିବା ପାଗ, ଖରଡ଼ିପାଗ

**ରଡ଼ାକରିବା** - *ସୁ:* (କ୍ରି.) : ଚିଲ୍ଲାଇବା

**ରଡ଼ିବା** - *ଅନେ:* (କ୍ରି.) : ଚିତ୍କାର କରିବା, ପ୍ରଖର ହେବା, ବୋବାଳି, କାନ୍ଦିବା, ଗର୍ଜନ କରିବା, ଶୁଖିଯିବା

**ରଢ** - *ରା:* (ବିଂ.) : ଜଳୁଥିବା, ଜଳନ୍ତା, ରଡ଼

**ରଢା** - *ସ:ସୁବ:ସୁ:* (ବିଂ.) ଖାଇବାକୁ ବ୍ୟାକୁଳ ବ୍ୟକ୍ତି, ଯିଏ ବେଶୀ ଖାଏ, ଅଧିକ ଖାଇବା ପାଇଁ ବ୍ୟାକୁଳତା

**ରଣକୁହୁଡି** - *ଚ୍ୟା:* (ବି.) : ଅଙ୍କ କୁହୁଡି, ଅସହ୍ୟର କୁହୁଡ଼ି

**ରଣଘଣ୍ଟା** - *ଗଞ୍ଜ:* (ବି.) : ଦୋଳ ସମୟର ସ୍ୱତନ୍ତ୍ର ଉତ୍ସବ

**ରଣପା** - *ଗ:ନ:* (ବି.) : ଗଞ୍ଜାମର ଏକ ଲୋକନୃତ୍ୟ, ଉଚ୍ଚା ବାଉଁଶ ବା କାଠର ଗୋଡ଼ ଲଗାଇ ଚାଲିବା

**ରଣଭଣ** - *ଗ:ଢେ:* (ଅ.ବି.) : ଅସ୍ତବ୍ୟସ୍ତ, ହଟହଟା

**ରଣଶିଙ୍ଗା** - *ସଂ:* (ବି.) : ତୂରୀ, ରଣଭେରି

**ରଣା** - *ଗ:କ:ଖୋ:ନ:* (ବି.) : ଏକ ଶିବପୂଜକ ଜାତିର ଉପାଧି, ଚିତ୍ରଯୁକ୍ତ ବିଷାକ୍ତ ସାପ, ଏକ ପ୍ରଜାତିର ବିଷଧର ସର୍ପ

**ରଣି** - *ଗ:* (ବି.) : ଗ୍ରାମରେ ବିଚରଣ କରୁଥିବା ଚଢେଇ, ବଣି

**ରଣିଚଣା** - *ଗଞ୍ଜ:* (ବି.) : ମୁଗବିରି କ୍ଷେତରେ ଆପେଆପେ ଉଠିଥିବା ଚଣାଗଛ

**ରଣୀ** - *ରା:* (ବି.) : ବଣିଚଢେଇ

**ରଣ୍ଡି** - *ରା:* (ବି.) : ରାଗ

**ରଣ୍ଡଲା** - *କଝ:* (ବି.) : ଯାହାର ସ୍ତ୍ରୀ ମୃତ

**ରଣ୍ଡା** - *କୋ:* (ବି.) : ଅନାବନା ଘାସ

**ରଣ୍ଡି** - *ଢେ:ସଂ:* (ବି.) : ବେଶ୍ୟା, ବିଧବା

**ରତକରୁଡ଼ୀ** - *ନ:* (ବି.) : ଏକ ଧାନ

**ରତଡ଼ିଆ** - *ଚ୍ୟା:* (ବିଂ.) : ଈଷତ ଲାଲ୍

**ରତନ୍** - *କଳା:* (ବି.) : ରତ୍ନ, ବହୁମୂଲ୍ୟ ପଥର

**ରତନ୍‌ଚୁଡ଼ି** - *ନୂ:କଳା:ଖୋ:* (ବି.) : ଲାଲ୍ ରଂଗର ଦେଶୀ ବଡ଼ ଧାନ ବିଶେଷ

**ରତରତ** - *ନ:* (ବି.) : ବେଳବୁଡ଼ିବା ସମୟ

**ରତା** - *ରା:ଗ:ଖୋ:ଖୋ:* (ବିଂ.ବି.) : ନାଲି, ଫିକାନାଲି, ପଙ୍କୁଆ ମଧୁର ଜଳରେ ରହୁଥିବା ଏକ ପ୍ରଜାତିର କଣ୍ଟାଯୁକ୍ତ ମାଛ

**ରତାସିଆ** - *କ:* (ବିଂ.) : ଖୁବ୍ ଜୋର୍‌ରେ

**ରତାସିଙ୍ଗି** - *କ:* (ବିଂ.) : ଖୁବ୍ ରାଗୀ, ଏକପ୍ରକାର ମାଛ

**ରତି** - *ଢେ:* (ବି.) : ମିଳନ, ଓଜନ କରିବାର ଏକ ଏକକ

**ରତେ** - *ସୁ:* (ବି.) : ରତିଏ, ଟିକିଏ

**ରତ୍ନଚୁଡି** - *ଜେନ୍ଥ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ରଥଦୁତିଆ** - *ଗଦ୍ୟ:* (ବି.) : ରଥଯାତ୍ରା

**ରଦ୍‌କଦ୍** - *ଢେ:ଗଦ୍ୟ:* (ବି.) : ତର୍କବିତର୍କ, କଥା କଟାକଟି

**ରଦା** - *ଢେ:* (ବି.) : କାନ୍ଥର ଦୁଆ ବା ସ୍ତର

**ରଦ୍ଦି** - *ଖୋ:ଦେ:ସଂ:* (ବିଂ.) ନଷ୍ଟ, ବ୍ୟବହାରର ଅଯୋଗ୍ୟ, ନିକୃଷ୍ଟ, ରଦ୍ଦି

**ରଦ୍ଦିଆ ମଣିଷ** - *ସଂ:* (ବିଂ.) : ଅଯୋଗ୍ୟ

**ରଦ୍ଦୁ** - *ରା:* (ବି.) : ନଷ୍ଟ

**ରଦ** - *ଅନେ:* (ବି.) : ଲୋପ, ବାଜ୍ୟାପ୍ତ, ବାଜେ, ଖରାପ, ଅଦରକାରୀ, ନଷ୍ଟଦ୍ରବ୍ୟ, କୃଷ୍ଣ ଦ୍ରବ୍ୟ

**ରଦ୍ଦି ଜିନିଷ** - *ସଂ:* (ବି.) : ଖରାପ୍ ଜିନିଷ

**ରଦ୍ଦି ମଣିଷ** - *ସଂ:* (ବି.) : ନିଶାପାଣିରେ ସର୍ବସ୍ୱ ହରାଇଥିବା ଲୋକ, ରୋଗାକ୍ରାନ୍ତ

**ରନା ସାଁପ** - *ସ:* (ବି.) : ଏକ ପ୍ରକାର ବିଷାକ୍ତ ସାପ, ରଣାସାପ

**ରନ୍ଥା** - *ଗ:* (ବି.) : ଧାର ବିହୀନ ଯନ୍ତ୍ର ବିଶେଷ, କୁନ୍ଥା

**ରନ୍ଥିବା** - *କୋ:* (କ୍ରି.) : ମନ୍ଥନ କରିବା, ମନ୍ଥିବା

**ରନ୍ଧା** - *ଦେ:ନ:ଗ:ଢ:* (ବି.) : କାଠକୁ ଚିକ୍କଣ କରିବା ଯନ୍ତ୍ର, ସାଲୁ

**ରନ୍ଧାରନ୍ଧି** - *ଦେ:* (ବିଂ.) : ସଫାସୁତୁରା

**ରନ୍ଧନି ବେଳା** - *ସୁ:* (ବି.) : ରାନ୍ଧିବା ସମୟ

**ରନ୍ଧର** - *ରା:* (ବି.) : କଣା

**ରନ୍ଧାଘର** - *ଦେ:ଢ:* (ବି.) : ରୋଷେଇଘର

**ରନ୍ଧାବଢ଼ା** - *ସ:ଦେ:* (କ୍ରି.ବି.) : ରାନ୍ଧିବା ବାଢ଼ିବା, ରାନ୍ଧିବା ଓ ଖାଇବା କ୍ରିୟା

**ରନ୍ଧାରନ୍ଧି** - *ଦେ:* (ବି.) : ରୋଷେଇ କାମ

**ରନ୍ଧ୍ର** - *ଦେ:* (ବି.) : ଛିଦ୍ର

**ରପ୍ଟା** - *ବ:ସୁ:* (ବି.) : ଅଳ୍ପ ଉଚ୍ଚତାରେ ଥିବା ପୋଲ ଯାହା ଉପର ଦେଇ ବର୍ଷା ଦିନରେ ପାଣି ମଧ୍ୟ ଯାଇପାରେ

**ରପ୍ଟି ବସ୍‌ବା** - *ସ:* (କ୍ରି.) : ଦଉଡ଼ି ଯିବା

**ରପ୍ଟିବା** - *ବୌ:କଳା:ସୁ:* (କ୍ରି.) : ଦ୍ରୁତ ଚାଲିବା, ଦୌଡିବା, ଧାଇଁବା, ତଡ଼ିବା

**ରପ୍ଟେନ୍** - *କଳା:* (ବି.) କେତେକ ଲୋକଖେଳରେ ଦୌଡ଼େଇ ନେବା ପ୍ରକ୍ରିୟା

**ରପି** - *କଣ:* (ବି.) : କୋଡ଼ି

**ରପ୍** - *ସୁ:* (ବି.) : ଅଭ୍ୟାସ, ସାଧାରଣ

**ରଫା** - *ଅନେ:* (ବି.) : କୋଡ଼ି, ମିମାଂସା, ଆପୋଷ ନିଷ୍ପତ୍ତି

**ରଫୁ** - *ଦେ:* (ବି.) : ଏକପ୍ରକାର ସିଲାଇ କାମ, ତାଳିପକା

**ରବ** - *ଅନେ::* (ବି.) : ରାବ, ଧ୍ୱନି

**ରବ୍‌ରବା** - *ସୁ:* (ବି.) : ଆମ୍ବୁଡ଼ା ଦାଗ

**ରବଦ୍ ରାବଦ୍** - *ଝା:* (ବିଂ.) : ଜମି ଭଲ ଭାବରେ ଚାଷ ହେବାର ଅବସ୍ଥା

**ରବା** - *ଯା:* (ବି.) : ଚାରି ସଂଖ୍ୟା

**ରବାଗିନା** - *କଣ:* (କ୍ରି.) : ଅମଳ କରିବା

**ରବିଆ** - *ବଲ:ସୁବ:ସୁ:* (ବି.) : ଗାଳି ବିଶେଷ, ହଇଜା, ମହାମାରୀ, ମଡ଼କ

**ରବିଆଖିଆ** - *ସୁବ:ସୁ:ସ:* (ବି.ବିଂ.) ଗାଳିବାଚକ ଶବ୍ଦ, ପୁରୁଷ ପ୍ରତି ଗାଳି

**ରବେଇ ଖବେଇ** - *ଅନେ:* (ବି.କ୍ରି.) : ଈର୍ଷା, ଅନ୍ୟପ୍ରତି ଅସୁୟା

**ରମ୍‌ଦବା** - *ସୁ:କଳା:* (କ୍ରି.) : ଦଳିବା, ଯୋର୍‌ରେ ଘଷିବା, ଚୂର୍ଣ୍ଣ କରିବା

**ରମଙ୍ଗ** - *ଗଦ୍ୟ:* (ବି.) : ପ୍ରସଙ୍ଗ

**ରମଣୀ** - *କେନ୍ଦୁ:* (ବି.) : ରଙ୍ଗଣୀ ଫୁଲ, ଯୁବତୀ ସ୍ତ୍ରୀ

**ରମାରମି** - *ଦେ:ଗଦ୍ୟ:* (ବି.ବିଂ.) : ହାରାହାରି, ପାଖାପାଖି

**ରମି** - *ବର:* (ବି.) : ତାସର ଏକ ଖେଳ

**ରମିବା** - *ଅନେ:* (କ୍ରି.) : ସଂଭୋଗ କରିବା, ରମଣ କରିବା

**ରମୁଣୀ** - *ଗ:* (ବି.) : ଏକ ତନ୍ତୁବାୟ ଜାତି

**ରମ୍ପା** - *ନ:ଦେ:* (ବି.) : ଗୁଡ଼ ପୋଛିବାର ଛୋଟ ପତଳା କାଠଖଣ୍ଡ, ପଟାମଇ

**ରମ୍ପାରମ୍ପି** - *ଦେ:* (ବି.) : କାମୁଡ଼ାକାମୁଡ଼ି, ପରସ୍ପର କୁଣ୍ଡେଇହେବା

**ରର୍ଡା** - *କୋ:* (ବି.) : ଅନାବନା ଘାସ

**ରଲଦ୍** - *କେ:* (ବି.) : ଖରାପ ପିଲା

**ରଲି** - *ଦେ:* (ବି.) : ଆଖିବାଳ

**ରଶନ** - *ଦେ:* (ବି.) : ଅଣ୍ଟାସୂତା

**ରଶି** - *ଅନେ:* (ବି.) : ଦଉଡ଼ି

**ରଶିଆ** - *ଦେ:* (ବି.) : ଛୋଟଦଉଡ଼ି

**ରଶୁଣ** - *ଅନେ:* (ବି.) : ପଲାଣ୍ଡୁ

**ରଶୁଣି** - *ଯା:* (ବି.) : ରୋଷଣି, ବିଭାଘର ଶୋଭାଯାତ୍ରା, ଆଲୁଅ

**ରସ** - *ଅନେ:* (ବି.) : ଆଲ୍‌ମିନିୟମ, ହାସ୍ୟ କରୁଣାଦି ନବରସ, ପାରଦ ମିଶ୍ରିତ ଔଷଧ, ଫଳାଦିର ତରଳ ନିର୍ଯ୍ୟାସ, ଖଜୁରି ତାଡ଼ି, ଆଖୁ ରସ

**ରସ୍‌କଡ଼ା** - *ସୁ:* (ବି.) : ଗୁଡ଼ରାନ୍ଧିବା କଡେଇ

**ରସ୍‌କୋରା** - *କଳା:* (ବି.) : ମଧ୍ୟମ ଧରଣର ସଂପୂର୍ଣ୍ଣ ଗୋଲାକାର ଦେଶୀ ଆମ୍ବ

**ରସ୍‌ଖଡୁ** - *କଳା:* (ବି.) : ଆଲୁମିନିୟମ୍ ଖଡୁ

**ରସ୍‌ନାଗର** - *ସୁ:* (ବି.) : ରସିଆ ନାଗର

**ରସ୍‌ନା ତେଲ** - *ସୁ:* (ବି.) : କିରୋସିନି

**ରସ୍‌ମି** - *ସୁବ:* (ବି.) : ରାଗ, ରୋଷ

**ରସ୍‌ରସ୍** - *ବ:କଳା:* (ଅ.) : ଥଣ୍ଡାଜନିତ ଅସୁସ୍ଥତା ଅନୁଭବ

**ରସ୍‌ରସାଲା** - *ଝା:* (ବିଂ.) ରସରେ ଭେଦିଥିବା ରସାଳ

**ରସ୍‌ରସିଆ** - *ନ:ବୌ:କଳା:ସୁ:* (ବିଂ.ବି.) : ସରସ, ରସକିଆ, ମଉଜିଆ, ରସମୟ, ରସାଳ, ରସପୂର୍ଣ୍ଣ, ରସଯୁକ୍ତ

**ରସ୍‌ସି** - *ନବ:* (ବି.) : ଦଉଡି

**ରସକୋରା** - *ଗ:* (ବି.) : ଏକ ପ୍ରକାର ଖଜା

**ରସଗୁଲା** - *ଦେ:* (ବି.) : ଖୀରି ମୋହନ, ରସଗୋଲା

**ରସଜିନିଷ** - *ନ:* (ବି.) : ସିଲଭରର ବାସନ କୁସନ

**ରସଦ** - *ଗଦ୍ୟ:ସଂ:* (ବି.) : ଖାଦ୍ୟ କୋଟା, ସୈନ୍ୟଙ୍କ ଖାଦ୍ୟ

**ରସବତୀ** - *ଦେ:* (ବି.) : ସୁନ୍ଦରୀ, ରସିକା

**ରସର କେଲି** - *ପଦ୍ୟ:* (ବି.) ପ୍ରେମ ରସାତ୍ମକ ଗୀତ, ଏକ ଲୋକଗୀତ

**ରସା** - *ଦେ:ଭ:* (ବି.) : ଅକାନବିନ୍ଧି ଲତା, କୁଆମଇତା ଲତା, ତରକାରୀ ବିଶେଷ

**ରସାଇବା** - *ନବ:ଦେ:* (କ୍ରି.) ପ୍ରେମ ସମ୍ବନ୍ଧୀୟ ପୁଲକିତ କରିବା, ସନ୍ତୁଷ୍ଟ କରିବା

**ରସାଣ** - *ପୁ:* (ବି.) : ଏକ ସୁଖାଦ୍ୟ

**ରସାତଳ** - *ସଂ:* (ବି.) : ସପ୍ତତଳ ମଧ୍ୟରୁ ଏକତମ ତଳ, ତଳିତଳାନ୍ତ

**ରସାତଳ** - *କଃ:ନ:* (ବି.) : ସରାତଳ, ଖୁବ୍ ଗଭୀର

**ରସାଲି** - *ସୁ:ସୁବ:* (ବିଂ.) : ରସିକା, ରସବତୀ ନାୟିକା

**ରସିଆ** - *ଅନେ::* (ବିଂ.) : ରସ (ତାଡ଼ି) ବିକାଳି, ରସପ୍ରିୟ, ରସିକ, ପ୍ରେମିକ

**ରସିଦ୍** - *ଦେ:* (ବି.) : ପ୍ରାପ୍ତି ସ୍ୱୀକାରପତ୍ର

**ରସି ଦେବା** - *ଅନେ:* (କ୍ରି.) : ଦଉଡ଼ିରେ ଗଳାକୁବାନ୍ଧି ଆତ୍ମହତ୍ୟାକରିବା

**ରସିବା** - *ନବ:* (କ୍ରି.) : ଆକୃଷ୍ଟ ହେବା, ଅନୁରକ୍ତ ହେବା, ପସନ୍ଦ କରିବା, ଭଲପାଇବା

**ରସିଯିବା** - *ସୁ:* (ବି.) : ମଜ୍ଜିଯିବା, ଥକିଯିବା, ଆକୃଷ୍ଟହେବା

**ରସୁଆ** - *ସୁ:* (ବିଂ.) ରସ ପିଇବାରେ ଅଭ୍ୟସ୍ତ

**ରସୁଆଳିଆ** - *ନ:* (ବିଂ.) : ରସପୂର୍ଣ୍ଣ, ସ୍ୱାଦିଷ୍ଟ, ରସାଳ

**ରସୁଣ** - *ଖୋ:* (ବି.) : ମାଟିତଳେ ଫଳୁଥିବା ପିଆଜ ଜାତୀୟ ମସଲା

**ରସେନ** - *ସୁ:* (ବିଂ.) : ଖାରି ଢୁଲି ରସାଳ କ୍ଷେତ

**ରସେଲୀ** - *କଳା:* (ବିଂ.) : ରସିକା ନାରୀ, ପ୍ରେମିକ

**ରହଟି** - *ସୁ:* (ବି.) : କୂଅରୁ ପାଣି କାଢ଼ିବା ଚକ, ଅରଟ

**ରହଡ୍** - *ମ:* (ବି.) : ହରଡ଼

**ରହଣି** - *ପୁ:* (ବି.ବିଂ.) : ନଷ୍ଟ ନ ହୋଇ ଦୀର୍ଘ ସମୟ ରହିପାରୁଥିବା ଖାଦ୍ୟ ବା ଭୋଗ, ଅବସ୍ଥାନ

**ରହଣିଆ** - *ନ:କେ:* (ବି.ବିଂ.) : ବହୁଦିନଧରି ରହିଯାଇ ତୀବ୍ର ଗନ୍ଧ ନିର୍ଗତ ହେବା, ଫିମ୍ପି ମାରିବା

**ରହନ ସହନ** - *ସଂ:* (ବି.) : ଚାଲିଚଳନ

**ରହସିଆ ଲୋକ** - *ସଂ:* (ବି.) : କୌତୁକପ୍ରିୟ ଲୋକ, ରସିକ

**ରହିସି** - *ବୌ:* (କ୍ରି.) : ରହେ

**ରହୁମୀ** - *ଗଦ୍ୟ:* (ବି.) : ରେଶମରୁ ତିଆରି ଚାଦର, ରେଶମୀ

**ରହେଲ** - *ସୁ:* (ବି.) : ରାହାଡ଼ି

**ରାଆସ** - *ନବ:* (ବି.) : ରାସ, ରାହାସ

**ରାଆଁଡ଼ୀ** - *ଝ:* (ବି.) : ରାଣ୍ଡ

**ରାଇ** - *ଅନେ:* (ବି.) : ସୋରିଷ ବଟା, ଗୋରକ୍ଷନାଥଙ୍କ ଦୀକ୍ଷିତ ସଂପ୍ରଦାୟ, ସୋରିଷ, ଲୁଣା ଜୁଆର ପ୍ଲାବିତ ଜଳ ଭିତରେ ଦେଖାଯାଉଥିବା ଗଛ

**ରାଇଆ** - *ଜ:ଦେ:* (ବି.ବିଂ.) : ଭାଜିବା, ବଟା ସୋରିଷ

**ରାଇକା** - *ଅନେ:* (ବି.) : ବ୍ଲାଉଜ୍, ଶୁଆ

**ରାଇକାଞ୍ଜିଆ** - *ଗ:* (ବିଂ.) : ବ୍ୟତିବ୍ୟସ୍ତ

**ରାଇତା** - *ଅନେ:* (ବି.) : ଦହି, ଖଟା ଓ ମିଠାରେ ତିଆରି ଅମ୍ଳବ୍ୟଞ୍ଜନ, ବେସର ବଟା ତରକାରୀ, ସୋରିଷ ମିଶ୍ରିତ ଚଟଣୀ

**ରାଇତା ପିତା** - *ଦେ:* (ବି.) : ଖଟାରେ ସିତା ମିଶିଥିବା ଅମ୍ଳବ୍ୟଞ୍ଜନ

**ରାଇତେଲ** - *ଦେ:* (ବି.) : ସୋରିଷ ତେଲ

**ରାଇପିନ୍ ବଣ** - *ସଂ:* (ବି.) : ଅମରି ବଣ

**ରାଇବ୍ରତ** - *ଜ:* (ବି.) : ରାଇଦାମୋଦର ବ୍ରତ

**ରାଇୟା** - *ଭ:* (ବିଂ.) : ବେସରିଆ, ରାଗିଆ

**ରାଇରାମୁଡ଼ି** - *ଗ:* (ବିଂ.) : କ୍ରୋଧ ଜର୍ଜରିତ, କାମୁଡ଼ାକାମୁଡ଼ି

**ରାଇରିଂଝାଳ** - *କୋ:* (ବି.) : ଗୁଳଗୁଳି

**ରାଇଲ** - *ଗଜ:* (ବି.) : ଜାତିବିଶେଷ

**ରାଇଶ୍** - *କଣ:* (ବି.) : ରାଶି

**ରାଇସିରି** - *କଣ:* (ବି.) : ଏକ ପ୍ରକାରର ଲାଲଧାନ

**ରାଉ** - *ମା:* (ବି.) : କଟୁ ଚିତ୍କାର

**ରାଉଟି** - *ଗଦ୍ୟ:ବା:ଢେ:* (ବି.) : ଶିବିର, ତମ୍ବୁ

**ରାଉଡ଼ି** - *ଗ:କୋ:* (ବିଂ.) : ଦର୍ପୀ, ରୋଷଯୁକ୍ତ, ଗୁଣ୍ଡା

**ରାଉତ୍** - *କଳା:* (ବି.) : ପାଇକ ଜାତିର କୌଳିକ ସଂଜ୍ଞା, ଅଶ୍ୱାରୋହୀ ସୈନ୍ୟ

**ରାଉରାଉ** - *ଅନେ:* (ବିଂ.କ୍ରି.) ବୋବାଇବା(କାଉ), ରଡରଡ ହେବା, ଚିତ୍କାର କରିବା, ବକରବକର ହେବା, ବଡ଼ପାଟି କରିବା, ବିରକ୍ତ ହୋଇ ଏଣୁତେଣୁ କହିବା

**ରାଉଳ** - *ଗ:ଭା:ଗଦ୍ୟ:* (ବି.) : ପୂଜକ ଜାତିବିଶେଷ, ପ୍ରଧାନ ପୂଜକ

**ରାଉଳି** - *ଦେ:* (ବି.) : ଦେବୀ ପୂଜକ

**ରାଉଳିଆ** - *ଦେ:ପଦ୍ୟ:ଖୋ:* (ବି.ବିଂ.) ଗୁଣିଆ, ଦେବତା, ଉଭା ହେଉଥିବା ଲୋକ, ବଡ଼ ପାଟିଆ, ବାହାପିଆ

**ରାଏ** - *ବୌ:* (ବି.) : ରାୟ, ମକଦ୍ଦମାର ନିଷ୍ପତ୍ତି, ସଂଜ୍ଞାବିଶେଷ

**ରାଏଜ** - *ସୁ:ସ:କଳା:* (ବି.) : ରାଜ୍ୟ, ଦେଶ

**ରାଏତ୍** - *ଅନେ:* (ବି.) : ରାତି, ରାତ୍ରି

**ରାଏତ୍କଣା** - *ଦେ:ସୁ:* (ବି.) : ଅନ୍ଧାରକଣା, ରାତ୍ରିକଣା

**ରାଏରକମ** - *ସୁ:* (ବି.) : ଢଙ୍ଗ

**ରାଏଶ୍** - *ଅନେ:* (ବି.) : ରାଶି, ଡିଳ, ଗୋଠ, ମନ୍ଦା

**ରାକ୍ସେନ୍** - *ସୁବ:କଳା:ସୁ:* (ବିଂ.ବି.) ରାକ୍ଷାସୁଣୀ, ଗାଳିବାଚକ ଶବ୍ଦ, ରାକ୍ଷସୀ

**ରାକସ୍** - *ଝା:* (ବି.) : ଅତିକାୟ ମାନବେତର ଜନ୍ତୁ ପାଇଁ ଶବ୍ଦ, ରାକ୍ଷସ

**ରାକା** - *ଚୌ:* (ବି.) : ପ୍ରଚାର

**ରାଖଡ଼** - *ସୁବ:* (ବି.) : ଦୀର୍ଘ ଶରୀର ବ୍ୟକ୍ତି

**ରାଖି** - *ଦେ:ନୂ:* (ବି.) : ରକ୍ଷାବନ୍ଧନ, ରାକ୍ଷୀ, ନାଲିଫିତା

**ରାଗ** - *ଅନେ:* (ବି.କ୍ରି.) : ସ୍ୱର, (ବଣିଆ ବେପାରୀ)-ତମ୍ବା, କୋପ, କଡ଼ାମିର୍ଚ୍ଚା, କ୍ରୋଧ, ଦୁଇ ଗୋଡର ସନ୍ଧିସ୍ଥଳ

**ରାଗଚନା** - *ଗଞ୍ଜ:ଗ:ସୁ:ସୁବ:* (ବି.) : ଶୁଖିଲା ମଟରର ସୁସ୍ୱାଦୁ ବ୍ୟଞ୍ଜନ, ଘୁଘୁନି, ମଟର ଚଣା ତରକାରି

**ରାଗପାଣି** - *ପୁ:* (ବି.) : ଭାଙ୍ଗପାଣି

**ରାଗୁ** - *କୋ:ମା:ନବ:ଗ:* (ବି.) : ଗୋଟା କମଳ

**ରାଗୁଆ** - *ଦେ:* (ବିଂ.) : କଟୁସ୍ୱାଦଯୁକ୍ତ

**ରାଗୁପିଣ୍ଡି** - *ରା:* (ବି.) : ମାଣ୍ଡିଆ ଚୁନା

**ରାଘବ** - *ଖୋ:* (ବି.) : ବଡ଼ ବାଳିଆମାଛ, ରଘୁବଂଶୀ

**ରାଙ୍କାଳ** - *ପୁ:* (ବିଂ.) : ଦରିଦ୍ର, ଲୋଭୀ

**ରାଙ୍କାଳି** - *ନବ:କୋ:* (ବିଂ.) : କାଙ୍ଗାଳିଆ, ରଙ୍କି, ବିକଳିଆ

**ରାଙ୍ଗରସ** - *ଜ:* (ବି.) : ପ୍ରେମରସ, ନାଚ ତାମସା, ରଙ୍ଗରସ

**ରାଚ୍‌ବାଟୁ** - *କନ୍ଧ:* (ବି.) : ଦାଣ୍ଡପଟ

**ରାଚ୍ଛ** - *କନ୍ଧ:* (ବି.) : ଅଗଣା

**ରାଜ** - *ସୁ:* (ବି.) : ପ୍ରତିପତ୍ତି, ଶାସନ, ଅମଳ

**ରାଜ ଏଣ୍ଡୁଅ** - *ଖୋ:* (ବି.) : ଏକ ପ୍ରଜାତିର ଏଣ୍ଡୁଅ ଯିଏ ନିଜ ଶରୀରର ରଙ୍ଗ ବଦଳାଇ ପାରେ, ଚାମିଲିଅନ୍

**ରାଜଗୀ** - *ଗଦ୍ୟ:* (ବି.) : ରାଜାଙ୍କ ଅଧିକାର

**ରାଜତରୁ** - *ଦେ:* (ବି.) : କନିଅର ଗଛ

**ରାଜ ବଢିଆଳ** - *ନ:* (ବି.) : ସୀତାଫଳ

**ରାଜବଣୀ** - *ଖୋ:* (ବି.) : ବଣି ଚଢେଇ ପ୍ରଜାତିର ପକ୍ଷୀ

**ରାଜ ମଏନା** - *ସୁବ:* (ବି.) : ରାଜ ବଣି ଚଢ଼େଇ

**ରାଜିରୁଜା ହେବା** - *ଗ:* (କ୍ରି.) : ସ୍ୱୀକାର କରିବା, ମାନିବା, ସ୍ୱଇଚ୍ଛାରେ ବିବାହ କରିବା

**ରାଜୁ** - *ଚ:* (ବି.) : ରାଜ୍‌ପୁତ୍

**ରାଜୁଡ଼ା** - *ଦେ:* (ବି.) : ଗଡ଼ଜାତ, ରାଜା ସମ୍ପର୍କିତ

**ରାଝିବା** - *ଚୌ:* (କ୍ରି.) : ସାଂଘାତିକ ପ୍ରହାର କରିବା

**ରାଞ୍ଜିବା** - *ଦେ:* (କ୍ରି.) : ନଖଦ୍ୱାରା ରାମ୍ପିବା

**ରାଞ୍ଜୁଡ଼ା** - *ଦେ:ଗ:* (ବି.) : ରାମ୍ପୁଡ଼ା ଚିହ୍ନ, କଣ୍ଟାଦ୍ୱାରା ଦେହର କ୍ଷତ

**ରାଞ୍ଜ** - *କନ୍ଧ:ଦେ:* (ବି.) : ରଞ୍ଜା, ଲତାର ଆଶ୍ରୟ ଡାଳ

**ରାଞ୍ଜାରଞ୍ଜି** - *ଦେ:* (ବି.) : ପରସ୍ପର ପ୍ରତି କ୍ରୋଧାପନ୍ନ

**ରାଞ୍ଜି** - *ଦେ:* (ବି.) : ଛୋଟଡ଼ାଳ

**ରାଟି** - *ଦେ:* (ବି.) : ହାଡ଼ଗିଳା ପକ୍ଷୀ

**ରାଟିକା** - *ଦେ:* (ବି.) : ହରିଣର ଶବ୍ଦ

**ରାଟୁ** - *ଅନେ:* (ବି.କ୍ରି.) ପାଟିକରିବା, ପାଟିତୁଣ୍ଡ, ଗୋଳମାଳ, ଗହଳି କରିବା, ହୋହଲ୍ଲା, ଚିତ୍କାର କରି କଥାବାର୍ତ୍ତା କରିବା

**ରାଠ** - *ଦେ:* (ବି.ବିଂ.) : କୃପଣ

**ରାଡ଼ରାଢୁଆ** - *ଦେ:* (ବିଂ.) : ଚୋବାଇବାପାଇଁ କଠିନ ବସ୍ତୁ

**ରାଡ଼ି** - *ଦେ:* (ବି.) : ସରାଳପକ୍ଷୀ

**ରାଢ଼ି** - *କ:ସୁ:ଗଜ:* (ବି.ବିଂ.) : କେଉଟ, ନିଆରି ସଂପ୍ରଦାୟ, ଅଧିକ ଖାଇବାପାଇଁ ବ୍ୟାକୁଳତା, କୃପଣ, ନିଷ୍ଠୁର

**ରାଢେନ** - *ସୁବ:* (ବିଂ.) : ରଢାର ସ୍ତ୍ରୀ ଲିଙ୍ଗ

**ରାଢ଼** - *ଅନେ:* (ବିଂ.ବି.) : କୃପଣ, ମୂଢ଼, ଜିଦ୍‌ଖୋର, ନିଷ୍ଠୁର,

**ରାଢ଼ିଆ** - *ବୌ:* (ବି.) : ପେଟ ବିକଳିଆ

**ରାଢ଼ୀ** - *ଗଦ୍ୟ:ଗ:ନବ:* (ବି.ବିଂ.) : କେଉଟ, କୃପଣ, ନିଷ୍ଠୁର, ଚୁଡ଼ାକୁଟା ସମ୍ପ୍ରଦାୟ

**ରାଢୁଆ** - *ଖୋ:ଯା:* (ବିଂ.) : କୃପଣ, ଟାଣ, ଅଟଳ, ନିଶ୍ଚିତମନା

**ରାଢୁଣୀ** - *ଗ:* (ବି.) : ଦୁଷ୍ଟା ସ୍ତ୍ରୀ, ଜିଦ୍‌ଖୋର ସ୍ତ୍ରୀ

**ରାଣ** - *ଅନେ:* (ବି.) : ଶପଥ, ନିୟମ

**ରାଣିଚଣା** - *କଥ:* (ବି.) : ଅଣିଚଣା

**ରାଣିଫୁଲ** - *କୋ:* (ବି.) : ମଖମଲୀ ଗେଣ୍ଡୁ ଫୁଲ

**ରାଣୀବଗ** - *କ:* (ବି.) : ଧଳାବଗ

**ରାଣ୍ଡଳା** - *ଦେ:* (ବି.) : ଯାହାର ସ୍ତ୍ରୀ ନଷ୍ଟ ହୋଇଅଛି

**ରାଣ୍ଡହେବା** - *ନ:* (କ୍ରି.) : ବିଧବା ହେବା

**ରାଣ୍ଡି** - *ରା:ବୌ:* (ବି.) : ବିଧବା, ଯାହାର ସ୍ୱାମୀ ମୃତ, ବେଶ୍ୟା

**ରାଣ୍ଡିଆ** - *ଯା:* (ବି.) : ଯାହାର ସ୍ତ୍ରୀ ମୃତ

**ରାଣ୍ଡିପୁଅ** - *ସଂ:* (ବି.) : ମୁରବୀହୀନ ବାଳକ

**ରାଣ୍ଡୀଖଣ୍ଡି** - *ଯା:* (ବି.) : ନିମ୍ନ ମାନର ସ୍ତ୍ରୀ ଲୋକ

**ରାତ୍‌ସର୍‌ତା** - *କଳା:* (ବିଂ.) : ରାତିସାରା, ସମଗ୍ର ରାତି

**ରାତକଣା** - *ବୌ:* (ବିଂ.) : ଯାହାକୁ ରାତିରେ ଦିଶେନାହିଁ

**ରାତାରାତି** - *ଦେ:ନ:* (ବିଂ.କ୍ରି.) ରାତି ମଧରେ, ରାତିକ ଭିତରେ

**ରାତିଏ** - *ଦେ:* (ବିଂ.) : ମାତ୍ର ଏକରାତ୍ରି

**ରାତିକଣା** - *ଦେ:* (ବିଂ.) : ଅନ୍ଧାରକଣା

**ରାତିକୁଆ** - *ଖୋ:* (ବି.) : ଏକ ପ୍ରକାର ରାତ୍ରଚର ପକ୍ଷୀ

**ରାତି କୋକୁଆ** - *ପୁ:* (ବି.) : ସମୁଦ୍ରରୁ ମିଳୁଥିବା ଥଲଥଲ ଧଳା ପଦାର୍ଥ

**ରାତିଥାଉଁ** - *ଦେ:* (ବି.) : ଭୋର ନ ହେଉଣୁ

**ରାତିପାଇକ** - *ଗଜ:* (ବି.) : ଗ୍ରାମର ରାତ୍ର ଚୌକିଦାର

**ରାତି ବିକାଳି** - *ବୌ:ଦେ:* (ବି.) : ରାତି ସମୟ, ଅସମୟରେ

**ରାତ୍ର ପୁହାଇବା** - *କ:* (କ୍ରି.) : ରାତ୍ର କଟାଇବା

**ରାଧାକୁଣ୍ଡଳ** - *ଭ:* (ବି.) : ଫୁଲ ଗଛ ବିଶେଷ

**ରାଧାଚୂଡ଼ା** - *ଭ:* (ବି.) : ଫୁଲ ବିଶେଷ

**ରାଧାବାନ୍** - *ଦେ:* (ବିଂ.) : ଧନଯୁକ୍ତ

**ରାଧାଷ୍ଟମୀ** - *ସ:* (ବି.) : ଭାଦ୍ରବ ମାସ ଅଷ୍ଟମୀ

**ରାଧୀ** - *ଦେ:* (ବି.) : ବୈଶାଖପୂର୍ଣ୍ଣମୀ

**ରାନୁ** - *ସୁ:ଦେ:* (ବି.) : ଚେରମୂଳି କୁସୁନା ଔଷଧ, ହାଣ୍ଡିଆ ମଦରେ ବ୍ୟବହୃତ ଔଷଧ ବଟିକା

**ରାନ୍ଧାନୀ** - *ମା:* (ବି.) : ରାନ୍ଧୁଣିଆ, ରାନ୍ଧୁଣୀ

**ରାନ୍ଧୁଣିଆ** - *ନ:* (ବିଂ.) : ଯିଏ ରାନ୍ଧେ

**ରାପ୍‌ବା** - *କଳା:* (କ୍ରି.) : ଗୋଟେଇବା

**ରାପା** - *କଳା:* (ବି.) : ରଂପା

**ରାପିବା** - *ବ:ନୁ:* (କ୍ରି.) : ମୁଣ୍ଡ କୁଣ୍ଢେଇ ହେବା, ଆମ୍ପୁଡ଼ି ହେବା

**ରାଫାସ୍** - *ଗ:କଳା:* (କ୍ରି.) : ଶେଷ, ନଷ୍ଟ, ବଢ଼ିରେ ସବୁ ଧୋଇ ନେବା

**ରାପୁ** - *ଗଜ:* (ବି.) : ରପ୍, ରପୁ

**ରାବ** - *କ:* (ବି.) : କାନ୍ଦ, ଶବ୍ଦ

**ରାବଣ** - *କୋ:କଳା:* (ବି.) : ଶାଗୁଣା ପକ୍ଷୀ, ଲଂକାର ରାଜା

**ରାବଣା** - *ଅନେ:* (ବି.) : ଶାଗୁଣା, ଧାନର ନାମ

**ରାବନ** - *ସୁ:ସ:* (ବି.) : ଶାଗୁଣା

**ରାବା** - *କଳା:* (ବି.) : ପ୍ରଚାର, ଜନରବ

**ରାବାଡ଼ି** - *ଗ:କୋ:ରା:ନବ:* (ବି.) : ଆଦାୟ, ଆୟ, ଲାଭ

**ରାବା ହେବା** - *ବୌ:* (କ୍ରି.) : ପାଟିତୁଣ୍ଡ କରିବା, କୋଳାହଳ କରିବା

**ରାବିଡ଼ି** - *ନ:* (ବି.) : କ୍ଷୀର ମାରିମାରି ତାର ସାରାଂଶ

**ରାବେଣା** - *ପୁ:* (ବିଂ.) : ବଡ଼ ମୋଟା ନିଶ, ଧାରୁଆ ଚାହାଣି ଥିବା ବପୁବନ୍ତ ମଣିଷ

**ରାମ୍‌ଖଡ଼ି** - *ଦେ:* (ବି.) : ଧଳାଖଡ଼ି

**ରାମଗାଙ୍ଗ୍ରା** - *ଗଦ୍ୟ:* (ବି.) : ଯାଯାବର ପକ୍ଷୀ

**ରାମତାଲି** - *ସୁ:* (ବି.) : ଛୋଟ ଛୋଟ କାଠ ଝାଂଜ ବାଜଣା

**ରାମନା ସାଆନ୍ତ** - *ଗ:* (ବି.) : ପ୍ରମୁଖ ବ୍ୟକ୍ତି

**ରାମଫଳ** - *ଗ:* (ବି.) : ଆତ

**ରାମଶାଳୀ** - *କେନ୍ଦୁ:* (ବି.) : ଧଳାରଙ୍ଗର ଶୁଙ୍କ ନଥିବା ଦୀର୍ଘ ମିଆଦି ଧାନ

**ରାମଶିଆଳ** - *ପୁ:ଗ:* (ବି.) : ବିଲୁଆ ଜାତୀୟ ହିଂସ୍ର ଜନ୍ତୁ

**ରାମା** - *କଳା:* (ବି.) : ଡ଼ିଲି (ଦୋକାନିଆ କାଠ)ର ଦୁଇପାଖକୁ ବାହାରିଥିବା ଶାଖା

**ରାମି** - *ରା:* (ବିଂ.) : ଅପମିଶ୍ରଣ

**ରାମେ** - *ଯା:* (ବି.) : ଦୁଇସଂଖ୍ୟା

**ରାମ୍ପିହେବା** - *ନ:କେନ୍ଦୁ:* (କ୍ରି) : ଯାଦୁ, କାଛୁ କୁଣ୍ଡାଇବା, ଖିଅର ହେବା

**ରାମ୍ବଡ଼ା** - *ଗଦ୍ୟ:* (ବି.) : ବିରି

**ରାୟାନି** - *ପଦ୍ୟ:* (ବି.) : ଏକ ଗୀତମୟ ମନୋରଞ୍ଜନ

**ରାୟଁ ରାୟଁ** - *ମ:* (ବିଂ.) : ବାରଂବାର

**ରାଳ** - *ଖୋ:ନ:ଖୋ:କେନ୍ଦୁ:* (ବି.) : ଆଲକାତରା, ପିଚୁ

**ରାୱାଡ଼ି** - *ଗଜ:* (କ୍ରି.) : ଆଦାୟ, ରୋଜଗାର

**ରାଶ୍‌ଖଡ଼ା** - *କଳା:* (ବି.) : ଏକ ବିଶେଷ ଧରଣର ଖଡ଼ା

**ରାଶି** - *ଅନେ:* (ବି.) : ପରିମାଣ, ଗୋଷ୍ଠ, ସମୂହ, ଧାନଗଦା, ରାଶିଚକ୍ର, ଏକ ତୈଳବୀଜ

**ରାଶିତଳି** - *ଗ:* (ବି.) : ଧାନଗଦା ନିକଟର ଧୂଳିମାଟିଯୁକ୍ତ ଧାନ

**ରାଶି ଧାନ** - *କେନ୍ଦୁ:* (ବି.) : ନାଲିରଙ୍ଗର ଶୁଙ୍କଯୁକ୍ତ ସ୍ୱଳ୍ପ ମିଆଦି ଧାନ

**ରାଶିବଡ଼ି** - *ଦେ:* (ବି.) : ତିଳମିଶ୍ରିତ ବଡ଼ି

**ରାଶିରାଶି** - *ଦେ:* (ବିଂ.) : ଅସଂଖ୍ୟ

**ରାଷ୍ଟ୍ରହେବା** - *ଦେ:* (କ୍ରି.ବି.) : ଦେଶସାରା ପ୍ରଚାରିତ ହେବା, ବ୍ୟାପିଯିବା

**ରାସପୂର୍ଣ୍ଣମୀ** - *ଦେ:* (ବି.) : କାର୍ତ୍ତିକ ପୂର୍ଣ୍ଣମୀ

**ରାସାତଳ** - *ଗ:* (ବି.) : ଗଭୀର

**ରାସୁ** - *ଗଜ:* (କ୍ରି.) : ରସ୍, ଗହଳି, ଭାଗ୍ୟ

**ରାସୁନ୍** - *ମ:* (ବି.) : ରସୁଣ

**ରାସ୍ତାଖର୍ଚ୍ଚ** - *ସ:* (ବି.) : ରୋଷଣି ବାବଦ ଟଙ୍କା

**ରାହା** - *ଅନେ:* (ବି.କ୍ରି.) : ଖେଳବେଳେ ଏକ ଶବ୍ଦ ସହ ନିଃଶ୍ୱାସ ଛାଡ଼ିବା, ଦମ୍, ରାଗ୍, ରାସ୍ତା ବାଟ, ଆଶ୍ରୟ, ଏକ ନିଃଶ୍ୱାସରେ କାନ୍ଦି କାନ୍ଦି ତୁନି ହୋଇ ରହିଯିବା, ଭରସା

**ରାହାଜାନୀ** - *ସ:* (ବି.) : ଡ଼କାୟତି, ବାଟରେ ଜିନିଷ ପତ୍ର ଲୁଟି

**ରାହାଡ଼ି** - *ଦେ:* (ବି.) : ହରଡ଼

**ରାହାଡ଼ିଦାଲି** - *ସୁ:* (ବି.) : ହରଡ଼ ଡ଼ାଲି

**ରାହାଧରିବା** - *ନ:* (କ୍ରି.) : କ୍ରମାନ୍ୱୟରେ ଧକେଇ କାନ୍ଦିବା, ସ୍ୱର ଧରିବା

**ରାହାନ୍** - *ଝା:* (ବି.) : ବଳଦ ଗାଡ଼ି ଯାଇ ଯାଇ ଯେଉଁ ବାଟ ଫିଟିଥାଏ, ଶଗଡ଼ଗୁଳା

**ରାହାନେବା** - *ନ:* (କ୍ରି.) : ଡୁଡୁ, କବାଡ଼ି ଖେଳରେ ଏକ ସ୍ୱରରେ ଶବ୍ଦକୁ ବହୁ ସମୟଧରି କହିବା

**ରାହାବାଡ଼ି** - *ଗଜ:* (ବି.) : ଭୂସ୍ୱାମୀଙ୍କ ପ୍ରାପ୍ୟ ରାଜସ୍ୱ

**ରାହାବାଳି** - *ସୁ:* (ବିଂ.) : ଯୁକ୍ତି ଓ କଳହପ୍ରିୟ ସ୍ତ୍ରୀ

**ରାହାସ ମଣ୍ଡୁଆ** - *ସୁ:* (ବି.) : ରାସମଣ୍ଡପ

**ରାହୁଖିଆ** - *ଗ:* (ବି.) : ଅଧିକ ଖାଇବା ଲୋକ

**ରାହୁ ଗୋଡ଼ାଇବା** - *ଗ:* (କ୍ରି.) : ଦୁର୍ଯୋଗ ଉପସ୍ଥିତ ହେବା

**ରାହେଡ଼** - *ସ:* (ବି.) : ଏକ ଡାଳି

**ରାହେନ** - *ସୁ:ଗଦ୍ୟ:* (ବି.) : ଗାଁ, ଜଙ୍ଗଲକୁ ରାସ୍ତା, ହରଡ଼

**ରାଁପବା** - *ସୁ:* (କ୍ରି.) : ହାତରେ ସାଉଁଟି ନେବା

**ରାଁପି ଦେବା** - *ସ:* (କ୍ରି.) : କୁଣ୍ଡେଇବା

**ରାଂଜ୍** - *କଳା:* (ବି.) : ଶିମ୍ବଆଦି ଡଂକ ମଡେଇବା ପାଇଁ ବ୍ୟବହୃତ ଶାଖାଯୁକ୍ତ ବାଉଁଶ

**ରାଂଜା** - *ମ:* (ବି.) : ରଞ୍ଜା

**ରା'ମି** - *କୋ:* (ବି.) : ସୁନାରେ ମିଶିଥିବା ଅନ୍ୟ ଧାତୁ, ଖାଦ

**ରିଆ** - *ପ୍ରା:* (ବି.) : କ୍ଷୁଦ୍ର ପାଣିନାଳ

**ରିଆତି** - *ଦେ:* (ବି.) : ମୁକ୍ତି, ହ୍ରାସ

**ରିକଟ** - *ରା:* (ବି.) : ମଇଳା ଲୁଗା, କୁଚଟ

**ରିକାଇବା** - *ଗ:* (ବି.) ତାଳିଦେବା, ଶୂନ୍ୟକରିଦେବା

**ରିଗିଡ଼ା** - *ରା:* (ବିଂ.) : କନ୍ଦାଳିଆ

**ରିଘା** - *କଳା:* (ବି.) : ରାଗ, କ୍ରୋଧ, ରିସା

**ରିଙ୍ଗାଲ୍** - *ଗଦ୍ୟ:* (ବି.) : ବାଉଁଶ ଜାତୀୟ ଗଛ

**ରିଜେଇ** - *ମ:* (ବି.) : ରେଜେଇ

**ରିଝା** - *ବୌ:* (ବି.) : ସଂପୂର୍ଣ୍ଣ ଗଡ଼ାଣିଆ

**ରିଝାଇବା** - *ଗ:* (ବି.) : ରଞ୍ଜିତ କରିବା

**ରିଝୁଆଲ** - *ସୁ:* (ବିଂ.) : ରସିକ

**ରିଝେଇବା** - *ସୁ:* (କ୍ରି.) : ରସେଇଦେବା

**ରିଠାଫଳ** - *କ:ବୌ:* (ବି.) : ପାଟ ମଠାଆଦି ସଫା କରିବା ପାଇଁ ବ୍ୟବହୃତ ବର୍ଣ୍ୟଫଳ, ଯହିଁରେ ଲୁଗା ସଫା କରାଯାଏ, ଇଠାଫଳ

**ରିଢ** - *ଦେ:ସୁ:* (ବି.) : ପତ୍ରାଦିର ଟାଣୁଆ ଶିରା, ହିଡ଼ ଧାର

**ରିତାଇବା** - *ସୁ:* (ବି.) : ମନ ଲାଗିଯିବା

**ରିତୁ** - *ଦେ:ମ:* (ବି.) : ଋତୁସ୍ରାବ

**ରିତେଇ ଯିବା** - *ସ:* (କ୍ରି.) : ବହୁଦିନ ଧରି ରହିଯିବା

**ରିଥ୍ରୀ** - *କଳା:* (ବି.) : ଛୋଟ କନା

**ରିନ୍** - *କଳା:* (ବି.) : ଋଣ, କରଜ

**ରିପୁ** - *ନ:* (ବି.) : କ୍ରୋଧ, ରାଗ

**ରିଫୁ କରିବା** - *ପ୍ରା:* (କ୍ରି.) : ଛିଣ୍ଡା ଲୁଗାକୁ ସିଲାଇ କରିବା, ରଫୁ

**ରିବ୍** - *କଳା:* (ବି.) : ବତା, ଘର ଛାଉଣିର ସରୁ ବାଉଁଶ

**ରିବନ** - *ଢେ:* (ବି.) : ମୁଣ୍ଡରେ ବାନ୍ଧିବା ଫିତା

**ରିବିଟି** - *ଗ:* (କ୍ରି.) : କଣାହାଣ୍ଡି ମାଠିଆରେ ଖିଲ ମାରିବା, ଝାଳିବା, ରିପିଟି

**ରିବିନି** - *ନବ:* (ବି.) : ରାଜସ୍ୱ ନିରୀକ୍ଷକ

**ରିଭିନି** - *ଗଜ:* (ବି.) : ରେଭେନ୍ୟୁ(ରାଜସ୍ୱ)

**ରିମ୍** - *ଖୋ:ଦେ:* (ବି.) : ଧାତୁ ନିର୍ମିତ ସାଇକେଲ ଚକ, ୨୦ ଦିସ୍ତାକାଗଜ

**ରିମା** - *ରା:* (ବି.) : ରାଗ

**ରିମି** - *କଳା:* (ବି.) : ଗୋରୁଙ୍କ ମୃତ ଦେହ

ରିମିଜି - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ
ରିଶପତ୍ - *ଦେ:* (ବି.) : ଲାଞ୍ଚ
ରିଶା ମୁହାଁ - *ନୂ:* (ବିଂ.) : ଅଗ୍ନିଶର୍ମା, ପ୍ରଚଣ୍ଡ କ୍ରୋଧୀ, ରିଘା ମୁହାଁ
ରିଷ - *ଦେ:* (ବି.) : କ୍ଷତିକରଣ
ରିଷା - *ଅନେ:* (ବି.କ୍ରି.) : ରାଗିବା, ଈର୍ଷା
ରିଷେଇହେବା - *ଦେ:* (କ୍ରି.) : ଈର୍ଷାନ୍ୱିତ
ରିଷ୍ଟ - *ଅନେ:* (ବି.) : ଗ୍ରହଦୋଷ, ଅଶୁଭ, ରୋଷରଖିବା, ଦୋଷ, ବିପଦ
ରିସ୍‌ମି - *ବର:ସୁ:କଳା:ସ:* (ବି.) : କ୍ରୋଧ, ରୋଷ, ରିସା
ରିସ୍‌ମିଆ - *ବର:* (ବିଂ.) : କ୍ରୋଧୀ, ହିଂସୁକ
ରିସ୍‌ମି ଝୋଲ - *ନୂ:* (ବି.) : ମାଂସର ଝୋଲ
ରିସ୍‌ମିସ୍ - *କଣ:* (ବି.) : କ୍ରୋଧ
ରିସ୍‌ରିସା - *ନବ:* (ବି.) : ଜରଜର ଲାଗିବା, କସ୍‌ମସ୍
ରିସାବା - *ସୁ:* (ବି.) : ରୁଷିବା
ରିସାରାଗ - *ଗ:* (ବି.) : କ୍ରୋଧ, ରାଗରୁଷା
ରିସିପଟ - *ସୁ:* (ବି.) : ରସିଦ
ରିସିମି - *ସୁବ:* (ବି.) : ରାଗ, ରୋଷ
ରିହ - *ଖୋ:* (ବି.) : ରାଗ ରଖିବା
ରିହବାଜ - *ଖୋ:* (ବିଂ.) : ପ୍ରତିଶୋଧ ପରାୟଣ
ରିହାଡି - *ସଂ:ଦେ:* (ବିଂ.) : ଛାଡ଼, ମାଗଣା, ଶସ୍ତା
ରିଂଗ୍‌ରିଂଗା - *କଳା:* (ବିଂ.) : ନିର୍ମଳ, ସଫା
ରିଂଝୋଡ଼ି - *କୋ:* (ବି.) : ଆଦିବାସୀ ନୃତ୍ୟ କ୍ରୀଡ଼ା ବିଶେଷ
ରିଂଲିଡ଼ର - *ଖୋ:ଜ:* (ବି.) ଦଳପତି, ମୁଖିଆ, ନାଚର ଗୋବର୍ଦ୍ଧନ
ରୀତାବାର - *ସୁବ:* (କ୍ରି.) : ଖାଇ ଖୁଆଇବା, ଅଭ୍ୟସ୍ତ ହେବା
ରୁଅ - *ଅନେ:* (ବି.) : ଚାଳଘରର ବାଉଁଶ ଆଦି, ଘରଛପର ନିମନ୍ତେ ବାଉଁଶ, ଏକ ସ୍ୱତନ୍ତ୍ର ମାପ ବିଶିଷ୍ଟ ବାଉଁଶ ଖଣ୍ଡ, ଚାରାରୋପଣ
ରୁଆ - *ଅନେ:* (ବି.କ୍ରି.) : ତୁଳା, ଚଳିକୁ ଅନ୍ୟତ୍ର ପୋତିବା, ଶାଖା ପ୍ରଶାଖା
ରୁଆବିହୁଡ଼ା - *ଦେ:* (ବି.) : ରୋଇବା ଓ ବିହୁଡ଼ିବା
ରୁଆରୁଆ - *ଦେ:* (ବିଂ.) : କ୍ଷୁଦ୍ରକ୍ଷୁଦ୍ର ଅଂଶଯୁକ୍ତ
ରୁଆଳୀ - *ଦେ:* (ବି.) : ଯେଉଁମାନେ ଧାନ ରୁଅନ୍ତି
ରୁଆଁ - *ସ:ସୁ:ମ:* (ବି.) : ଲୋମ
ରୁଇ - *ଅନେ:* (ବି.) : ରୋହି ମାଛ, କର୍ଲାଗଛ, କର୍ଲାଡ଼ାଳ, ବାଡ଼ ଦେବାପାଇଁ ଡାଳ, ବାଡ଼ପାଇଁ ଛୋଟଡ଼ାଳ
ରୁଇବା - *ସ:ଦେ:ବା:ସୁ:* (କ୍ରି.) : ରୋପଣ କରିବା, ପୋତିବା, ମାଛ ଦଳବଦ୍ଧହୋଇ ପହଁରିବା
ରୁଇଶୀତଳା - *ବା:ଭ:ଯା:* (କ୍ରି.) : ଶବଦାହ ପରେ ଚିତାଗ୍ନିକୁ ଶୀତଳ କରିବା

**ରୁକ** - *ଦେ:* (ବି.) : ନିଗାଡ଼ିବା

**ରୁକ୍‌ବା** - *ସୁ:ବୌ:* (ବି.କ୍ରି.) : ଅଟକାଇବା, ଢାଳିବା, ରୋକିବା

**ରୁକଡ଼** - *ଭା:* (ବିଂ.) : ନଗଦ

**ରୁକା** - *କଳା:ସୁବ:* (କ୍ରି.ବି.) : କୁଢାଅ, ଢାଳ, ଇଡ଼, ନଗଦ ଦେଇ ଜିନିଷ କିଣିବା

**ରୁକାରୁକା** - *ନୂ:* (ବି.) : ନଗଦ

**ରୁକିବା** - *ଦେ:ବ:ନୂ:* (କ୍ରି.ବିଂ.) ଟାଳିବା, ଢାଳିବା, ଅପର୍ଯ୍ୟାପ୍ତ

**ରୁକୁଟି** - *ଯା:* (ବି.) : ପାଟ ଜମି କାଦୁଅ ଶୁଖି ଗଲେ ଅସମତଳ ଅବସ୍ଥା

**ରୁକୁଟିଆଣି** - *ଯା:* (ବି.) : ଦାଲୁଆ ଧାନରେ ଦିଆଯାଇଥିବା ପାଣି

**ରୁକୁମ୍** - *ଛେ:* (ବି.) : ଚାଉଳ

**ରୁକ୍ଷା** - *ନବ:* (ବି.) : ରଗା, କ୍ରୋଧ, ଅଭିମାନ

**ରୁଖା** - *ଅନେ:* (ବି.) : ବେଦୀରେ ବ୍ୟବହୃତ ସ୍ତମ୍ଭାକାର ମାଟିର ପାତ୍ର, ଯାହାର ଉପରେ ଦୀପ ଜଳାଯାଏ

**ରୁଖିବା** - *ସୁ:* (କ୍ରି.) : ଲୋମ ସଫା କରିବା

**ରୁଗ୍‌ଗ** - *ଗଞ୍ଜ:* (ବି.) : ରୋଗ

**ରୁଗ୍‌ଡି** - *ସୁବ:କନ୍ଧ:କଳା:* (ବି.) : ନାଲିଗୋଡ଼ି ଥିବା ମାଟି ମୋରମ, ଗୋଡ଼ିମିଶ୍ରିତ ମାଟି

**ରୁଗ୍‌ଡ଼ିଆ** - *କଳା:* (ବିଂ.) : ଗୋଡ଼ିପଥର ବହୁଳ (ମାଟି)

**ରୁଗ୍‌ଡ଼ିଆଛତି** - *ସ:* (ବି.) : ଏକ ପ୍ରକାର ଛତୁ

**ରୁଗ୍‌ରୁଗ୍** - *କଳା:ସ:* (ବି.ବିଂ.) : ସାଧାରଣ ଯନ୍ତ୍ରଣା, ଅଳ୍ପ ଅଳ୍ପ ଜ୍ୱଳନ

**ରୁଗ୍‌ଲା** - *କୋ:* (ବି.) : ଏକ ଚକଡ଼ା ଜମି

**ରୁଗ୍‌ଲିଆ** - *ବୌ:* (ବିଂ.) : ପଛକୁହା

**ରୁଗସ୍ତି** - *ଗ:* (ବି.) : କୁଷ୍ଟ ରୋଗୀ

**ରୁଗାବାର** - *ସୁବ:* (କ୍ରି.) : ଜଣକୁ ବାରମ୍ବାର ଜର ଆଣିବା, ରୋଗୀ କରିଦେବା

**ରୁଗିଆ** - *କୋ:* (ବିଂ.) : ରୁଗ୍ଣ

**ରୁଗୁଡ଼** - *ସୁ:* (ବି.) : କଂକର, ଛଡିରୁଗୁଡ଼ି

**ରୁଗୁଡ଼ାଇବା** - *ବୌ:* (କ୍ରି.) ଘୋଷାରି ଟାଣିବା

**ରୁଗୁଡ଼ିଆ** - *ସୁ:ଦେ:ଯା:* (ବିଂ.) : କଂକରିଆ, ପାହାଡ଼ିଆ, ନଛୋଡ଼ବନ୍ଧା, ରୁଗ୍ଣ

**ରୁଗୁଣା** - *ଗ:ଗଦ୍ୟ:* (ବି.) : ପେଷଣା, ପଥର ପେଶିବା ଯନ୍ତ୍ର, ଶିଳ

**ରୁଘା** - *ଅନେ:* (ବିଂ.ବି.) : ବେମାରିଆ, କୁଷ୍ଟରୋଗୀ, ଗାଳିବାଚକ ଶବ୍ଦ,

**ରୁଘେଇ** - *ସ:ସୁ:ସୁବ:* (ବିଂ.ବି.) : ରୋଗିଣା (ସ୍ତ୍ରୀ), ରୁଘାର ସ୍ତ୍ରୀଲିଙ୍ଗ

**ରୁଙ୍କୁମ୍** - *ଛେ:* (ବି.) : ଚାଉଳ

**ରୁଙ୍ଗବା** - *ସ:* (କ୍ରି.) : ବାରମ୍ବାର ମାଗିବା

**ରୁଙ୍ଗବାର** - *ସୁବ:* (କ୍ରି.) : ଗ୍ରାହକ ବେପାରୀ ସହିତ ବାରମ୍ବାର ମୂଲଚାଲ କରିବା

**ରୁଚ୍‌ବା** - *କଳା:ସ:* (କ୍ରି.) : ରୁଚିବା, ମନକୁ ଯିବା

**ରୁଚି** - *ଦେ:* (ବି.) : ଅନୁରାଗ

ରୁଚିବା - *ଯା:ନ:ଦେ:* (କ୍ରି.) : ଭଲ ଲାଗିବା, ଖାଇବାକୁ ଆଗ୍ରହ ହେବା

ରୁଚେଇବା - *କଳା:* (କ୍ରି.) : ପେଷେଇବା, ଚୂର୍ଣ୍ଣ କରିବା

ରୁଜା ପଇଟି - *କଝ:* (ବି.) : ଭାଦ୍ରବମାସର କୃଷିଭିତ୍ତିକ ପୂଜା

ରୁଜାମଣ୍ଡା - *କଝ:* (ବି.) : ଏକ ପ୍ରକାରର କୃଷି ସମ୍ପର୍କୀୟ ପୂଜା।

ରୁଜି - *ମା:ଦେ:* (ବି.) : ସାକ୍ଷୀ, ରାଜି

ରୁଜିରୁଟି - *ସୁ:* (ବି.) : ଦୈନିକ ଖାଦ୍ୟ

ରୁଜୁ - *ଗ:* (ବି.) : ସାକ୍ଷ୍ୟ, ଆରମ୍ଭ

ରୁଜୁ କରାଇବା - *କୋ:* (ବି.) : ଉଭୟ ପକ୍ଷକୁ ରାଜି କରେଇବା

ରୁଜୁଦେବା - *ଗଙ:* (କ୍ରି.) : ମୁକାବିଲା କରିବା

ରୁଜୁ ମଖମାଲ - *କୋ:* (ବି.) : ସମାଧାନ,ପରସ୍ପର ରାଜିହେବା

ରୁଝାଳିବା - *ଗ:* (କ୍ରି.) : କୂପରୁ ପଙ୍କ ଉଦ୍ଧାର କରିବା

ରୁଞ୍ଚ - *ମ:* (ବି.) : କାଇଁଚ

ରୁଞ୍ଜି - *ରା:ନବ:ନ:* (ବି.) : ମୁଣ୍ଡବାଳ ଉପୁଡା ରୋଗ, ରୂପି, ପୋହଳ

ରୁଟ - *ନବ:କୋ:ଦେ:ମା:* (ବି.ବିଂ.) : ରୋଡ଼, ମୋଟା

ରୁଟବାଟ - *ଗ:* (ବି.) : ରାସ୍ତା, ରୋଡ଼

ରୁଟରାଟ - *ଦେ:* (ବି.) : ରୋକ୍‌ଠୋକ

ରୁଟି - *ଦେ:* (ବି.) : ରୋଟି

ରୁଟିନ - *ସୁ:ଦେ:* (ବି.) କାର୍ଯ୍ୟକ୍ରମ, କାର୍ଯ୍ୟସୂଚୀ

ରୁଟିସେକା - *ନ:* (ବି.) : ସରୁତାରରେ ନିର୍ମିତ ଛାଲି

ରୁଟୁ - *ଦେ:* (ବି.) : କପଡ଼ାକୁ କାଟୁଥିବା ପୋକ, ରୁଖିଆ ପୋକ

ରୁଠା - *ସୁ:ଦେ:* (ବିଂ.) : ମୋଟା, ଅନୁର୍ବର

ରୁଠା ବଗଡ଼ା - *ସୁ:* (ବି.) : ମୋଟା ଚାଉଳ

ରୁଡ଼ - *ମା:* (ବି.) : ରୋଡ଼

ରୁଢ - *ଗ:ବୌ:ଦେ:* (ବି.) : ଅଳ୍ପଉଠିଥିବା ବାଳ, ବାଳ କଟା ସମୟରେ ଦେହରେ ପଡିଥିବା ଅଂଶ

ରୁଢିଆ - *ଦେ:* (ବି.ବିଂ.) : ଯା'ର ରୁଢ଼ ବଢ଼ିଥାଏ

ରୁଣ ପୁଣ - *ସ:* (କ୍ରି.) : ଏକାଠି ହେବା

ରୁଣାଇବା - *ସୁ:* (କ୍ରି.) : ଠୁଳ କରିବା

ରୁଣ୍ଡା - *ଭ:* (ବିଂ.) : କୁଣ୍ଠିତ, କୃପଣ

ରୁଣ୍ଡ - *ଅନେ:* (ବି.) : ଏକାଠି, ଲୋକ ଗହଳି

ରୁଣ୍ଡିକା - *ଦେ:* (ବି.) : ଚଉକାଠ

ରୁତରୁଡି - *ବ:* (ବି.) : ଛୋଟ ତୋଡିମାଛ

ରୁଥ୍‌ବାର - *ସୁବ:* (କ୍ରି.) : ଆକ୍ରମଣ କରିବା ପାଇଁ ଗୋଡ଼ାଇବା

ରୁଥିନେବା - *କଳା:* (କ୍ରି.) : ଖାଲ ଢେପ ନ ମାନି ଦ୍ରୁତ ଗତିରେ ଯାନକୁ ଚଳେଇ ନେବା

ରୁଧ୍ - *ବ:* (କ୍ରି.) : ଦ୍ରୁତ ଗତି

**ରୁଧିର** - *ଛ:କଳା:* (ବି.) : ରକ୍ତ, ରୁଧିର
**ରୁଛିବା** - *ବୌ:* (କ୍ରି.) : ଦଉଡ଼ାଇବା, ଦଉଡ଼ାଇ ନେବା
**ରୁନ୍ଧଫିଟିବା** - *ଗ:* (ବି.) : ହାଣ୍ଡି ମାଠିଆରେ ଛିଦ୍ରହେବା, ଜଳପତ୍ରର ଛିଦ୍ର
**ରୁନ୍ଧିବା** - *ଅନେ:* (କ୍ରି.) : ପ୍ରତିରୋଧ କରିବା, ଚାରିଆଡୁ ପ୍ରତିରୋଧକରି ରଖିବା, ଅଣନିଶ୍ୱାସୀ ହେବା, ଘାଣ୍ଟିବା
**ରୁନ୍ଧିବିନ୍ଧି** - *ଦେ:* (କ୍ରି.) : ବାତରୋଗଜନିତ ବ୍ୟଥା
**ରୁପ** - *ବର.ସୁ:* (ବି.) : ଶୁଆ
**ରୁପା** - *କଳା:* (ବି.) : ରୋପଣ, ରୋଇବା, ଧାତୁ ବିଶେଷ
**ରୁପା ଚୁରି** - *ନୂ:* (ବି.) : ରୂପାର ଚୁଡ଼ି
**ରୁପାପାଟିଆ** - *ବା:* (ବି.) : ଏକ ଧରଣର ସାମୁଦ୍ରିକ ମାଛ
**ରୁପି** - *ଯା:ବୌ:* (ବି.) : କେଶ ତଳର କ୍ଷୁଦ୍ର ମଇଳା ବିଶେଷ
**ରୁପିତ** - *ଛ:* (ବିଂ.) : ଗଛଲଗାଇବା
**ରୁପିବା** - *ସୁ:ବୌ:କଳା:* (ବି.କ୍ରି.) : ଟଙ୍କା, ରୂପା ଟଙ୍କା, ମାଟି ଖୋଳି ପୋତିବା, ରୋପଣ କରିବା, ରୋଇବା
**ରୁପୁ** - *ନବ:ମା:* (ବି.) : ଶୁଆ
**ରୁଫ୍‌ବା, ରୁଫିବା** - *ବୌ:* (କ୍ରି.) : ଚାଛିବା
**ରୁବ୍‌ରୁବା** - *ସୁ:ଦେ:* (ବିଂ.ବି.) : ଛେଚା ଛେଚା, ମନୋଦୁଃଖ
**ରୁବନା** - *ସୁ:* (ବି.) : ପଥର ଘୋରଣା
**ରୁବା** - *ଦେ:* (ବି.) : ଫୁଟାଣି
**ରୁବାବ୍** - *ସୁବ:* (ବି.) : କଡ଼ାକଥା, ଫୁଟାଣି
**ରୁବୁଣା** - *ରା:କୋ:* (ବି.) ପେଷଣା, ପେଷିବା ପଥର
**ରୁବେନ** - *ନୂ:କଳା:* (ବି.) : ବାଟିବାର ସିଲ୍(ଯେଉଁଥିରେ ଗର୍ତ୍ତ ଥାଏ), ରୁଗୁଣା
**ରୁମ** - *ଅନେ:* (ବି.) : ଲୋମ, ଯୌନକେଶ
**ରୁମରୁମିଆ** - *ବୌ:* (ବିଂ.) : ଲୋମପୂର୍ଣ୍ଣ
**ରୁମକା** - *ସୁ:* (ବି.) : ଛୋଟ ବାଲିଗଦା
**ରୁମା ଛୁଇଁ** - *କେନ୍ଦୁ:* (ବି.) : ଝୁଡ଼ଙ୍ଗ
**ରୁମାଞ୍ଚ** - *ଛ:* (ବିଂ.) : ପୁଲକିତ, ରୋମାଞ୍ଚ
**ରୁମାଲ୍ ଚୋରୀ** - *ସଂ:* (ବି.) : ଏକ ଖେଳ
**ରୁମିବା** - *ଗ:ଦେ:* (କ୍ରି.) : କୁକୁଡ଼ା ଲୋମ ସଫା କରିବା, ଚଢ଼େଇ ଦେହରୁ ରୋମ ଉପାଡ଼ିବା
**ରୁଲ୍** - *ଦେ:* (ବି.) : ନିୟମ
**ରୁଲ୍‌ବାଡ଼ି** - *ବୌ:ଦେ:* (ବି.) : ଗୋଲ, ଲମ୍ବା କାଗଜରେ ଗାର ଟାଣିବା ବାଡ଼ି, ଗାରଟଣା ଗୋଲାକାର ବାଡ଼ି
**ରୁଲି** - *ଭ:କେ:* (ବି.) : ରୂପାବଳା(ଗହଣା ବିଶେଷ, ହାତ ମଣିବନ୍ଧରେ ପିନ୍ଧା ଅଳଙ୍କାର
**ରୁଳା** - *ଦେ:* (ବି.) : ଲମ୍ବାଲମ୍ବା ବାଟ
**ରୁଷଣ** - *ଛ:* (ବି.) : ଅଭିମାନ
**ରୁଷା ଫୁଲା** - *ସ:* (ବିଂ.) : ମାନ ଅଭିମାନ

**ରୁଷାରୁଷି** - *ଦେ:* (ବି.) : ମୁହଁଫୁଲାଇବା

**ରୁଷିଆ** - *ନବ:* (ବି.) : ରାନ୍ଧୁଣିଆ

**ରୁଷିବା** - *ଦେ:ନ:* (କ୍ରି.) : ଅଭିମାନ କରିବା, ରାଗରେ ନଖାଇ ରହିବା

**ରୁସୁମୁ** - *ଗ:* (ବିଂ.) : ଲାଭାଂଶ

**ରୁହା** - *ଳ:* (ବି.) : ଧାର କରାଯାଇଥିବା ଅସ୍ତ୍ର

**ରୁହି** - *ସ:ତ:* (ବି.) : ଏକ ପ୍ରକାର ମାଛ

**ରୁହେନ୍** - *ସୁବ:* (ବି.) : ଏକ ଜଙ୍ଗଲୀ ବୃକ୍ଷ, ଅଧିକ ମାଗିବା, ଚାହିଁବା

**ରୁଂଜ** - *ଜେ:* (ବି.) : ଏକ ଲତାର ନାଲି ଓ ଧଳା ରଙ୍ଗର ଫଳ, ଶୁଖିଲେ ଶକ୍ତ ହୁଏ

**ରୁଂଧୀ** - *ରା:* (ବିଂ.) : ଅଣନିଶ୍ୱାସୀ

**ରୂଚେଇବା** - *କଳା:* (କ୍ରି.) : ଚୂର୍ଣ୍ଣ କରାଇବା, ଭଲ ଲାଗିବା

**ରୂଢ଼ିଆ** - *ସୁବ:* (ବିଂ.) : ରୂଢ ବା ଦାଢି ବଢିଯାଇଥିବା ଲୋକ

**ରୂଢ଼ କଣ୍ଟିକା** - *ତ:* (ବି.) : ଏକ ପ୍ରକାର ବଡ କଣ୍ଟିଆ ମାଛ

**ରୂଢିବାକ୍ୟ** - *ସଂ:* (ବି.) : ଲୋକଉକ୍ତି

**ରୂପ** - *ବୌ:କଳା:ଦେ:* (ବି.) ଶୁଆ, ପଶୁପକ୍ଷୀ, ଛବି

**ରୂପବାର** - *ସୁବ:* (କ୍ରି.) ଚାରା ଆଦି ରୋଇବା

**ରୂପସ୍** - *କଳା:* (ବି.) : ରୂପ, ସୌନ୍ଦର୍ଯ୍ୟ

**ରୂପାରୀ** - *ବୌ:* (ବି.) : ଜାତିବିଶେଷ

**ରୂପି** - *ଖୋ:* (ବି.) ମୁଣ୍ଡବାଳ ମୂଳରୁ ଛାଡୁଥିବା ଖୋଳପା

**ରୂପିଆ** - *ଢେ:* (ବି.) : ଟଙ୍କା

**ରୂପିବା** - *ଦେ:* (କ୍ରି.) : ବୁଣିବା

**ରୂପୁ** - *ଗଞ:* (ବି.) : ଶୁଆ

**ରେଏଦ୍** - *କଳା:* (ବି.) : ରାତ୍ରି, ନିଶି

**ରେଏସି** - *କଷ:* (ଅ.) : ଗତକାଲି

**ରେକ୍‌ଟିବା** - *ତ:* (କ୍ରି.) ବାରମ୍ବାର ଚୋବେଇବା

**ରେକ୍‌ଣି** - *ମ:* (ବି.) : ଖଡ଼ିକା

**ରେକ୍‌ସା** - *ନ:କଳା:* (ବି.) : ରିକ୍ସା, ପାଣ୍ଡୁର ବର୍ଣ୍ଣ ପକ୍ଷୀବିଶେଷ

**ରେକ୍‌ସା ଘିଚା** - *ସୁବ:* (ବିଂ.) : ରିକ୍‌ସାବାଲା

**ରେକଟା** - *ଗ:* (ବି.) : ବାସନର କଳଙ୍କି

**ରେକଟିବା** - *ନ:* (କ୍ରି.) : ଲଗାତର ଦାନ୍ତରେ ଚୋବାଇବା

**ରେକସା** - *ସୁବ:* (ବି.) : ରିକ୍‌ସା

**ରେକା** - *ନବ:କୋ:ଦେ:* (ବି.) : ରସ ବାଲଟି, ବେଙ୍ଗ

**ରେକାବୀ** - *ଭ:* (ବି.) : ପାନ ଭଙ୍ଗା ପାତ୍ର

**ରେକାଲ** - *ସୁବ:* (ବି.) : ଅଇଁଠା

**ରେକୁ** - *ଗ:ଗଞ:* (ବି.) : ଘରର ଛପର ଟିଣ

**ରେକୁଟିବା** - *କେନ୍ଦୁ:* (କ୍ରି.) : କାମୁଡ଼ିବା

**ରେକୁନ୍** - *ଗଦ୍ୟ:* (ବି.) : ଏକ ଜୀବ

**ରେକେ** - *ଭ:* (ବି.) : ଦୁଇ ଆଙ୍ଗୁଳି ଭିତରେ ଧରୁଥିବା ସାମଗ୍ରୀ

**ରେକ୍ ରେକାବା** - *ସ:* (କ୍ରି.) : ଧାର ନଥିବା କଟୁରୀରେ ଯବରଦସ୍ତି କାଟିବା

ରେଖ - *ଖୋ:* (ବି.) : ମୁଠା

ରେଖି - *ଯା:* (ବି.) : ବଢେଇର ଯନ୍ତ୍ରବିଶେଷ

ରେଖେ - *ଢ:* (ଅ.) : ଅଳ୍ପଟିକିଏ ହେଲେ, ରେଫେ

ରେଗଡ଼ା - *ଅ:ଦେ:* (ବିଂ.) : ଖଦଡ଼ା

ରେଗା - *ରା:* (ବି.) : ବାଉଁଶରେ ତିଆରି ବାଦ୍ୟଯନ୍ତ୍ର

ରେଗାଁଲ ଗଛ - *ସ:* (ବି.) : ଶାଳ ଗଛ

ରେଗେଡ଼ି ହେବା - *ସଂ:* (କ୍ରି.) ମାଡ଼ି ହୋଇଯିବା

ରେଙ୍ଗଟା - *କୋ:* (ବିଂ.) : ପତଳା (ବାଳକ)

ରେଙ୍ଗଟୁ - *ସୁ:ଦେ:* (ବିଂ.କ୍ରି.) : ପତଳା ବ୍ୟକ୍ତି, ଗୁରୁଣ୍ଡିବା

ରେଙ୍ଗଠା - *ନୁ:* (ବି.) : ନଦୀରେ ଥିବା ଛୋଟ ପଥର ଖଣ୍ଡ, ଉପଳ

ରେଙ୍ଗସିବା - *କୋ:* (କ୍ରି.) : ତଳେ ଘୋସାରି ହୋଇଯିବା

ରେଙ୍ଗା - *କନ:ସୁ:* (ବିଂ.ବି.) ପାଙ୍ଗ, ଚାଲିବାରେ ଅକ୍ଷମ

ରେଙ୍ଗାଇ - *ସୁ:ବୌ:* (ବି.) : ଶାଳକାଠ

ରେଙ୍ଗାଳ - *ଗ:* (ବି.) : ଗଣ୍ଠିଯୁକ୍ତ ଶୁଖିଲା କାଠ

ରେଙ୍ଗିବା - *ସ:* (କ୍ରି.) : ଗୁରୁଣ୍ଡିବା

ରେଙ୍ଗୁନୁ କୋଡ଼ି - *ନ:* (ବି.) : କୋଦାଳ

ରେଙ୍ଗୁବାର - *ସୁବ:* (କ୍ରି.) : ପେଟ ବା ଆଣ୍ଠୁରେ ଭରାଦେଇ ଗୁରୁଣ୍ଡିବା

ରେଜକି - *ମ:* (ବି.) : ଖୁଚୁରା ପଇସା

ରେଜା - *ଅନେ:* (ବି.) : କୁଲି, ଖୁଚୁରା, ଦିନ ମଜୁରିଆ ଭାବେ ଖଟୁଥିବା ଝିଅ/ସ୍ତ୍ରୀ ଲୋକ ମଜୁରିଆ

ରେଜିଆ - *ବୌ:* (ବିଂ.) : ଖୁଚୁରା

ରେଜିକି - *ଯା:* (ବି.) : ଖୁଚୁରା, ରେଜା

ରେଜେଇ - *ନ:* (ବି.) ତୁଳାର ଘୋଡ଼ାଇହେବା ଶେଯ

ରେଟଁ କରିବା - *ନବ:* (କ୍ରି.) : ପାଟି କରିବା

ରେଠା - *ସୁବ:* (ବିଂ.) : ଯିଏ ବେଶୀ ରେଟ ବା ଦର କଷେ, ମହଙ୍ଗିଆ ବେପାରୀ

ରେଡି, ରେଲି - *ଗଞ:* (ବି.) : ଶୁଦ୍ର ଜାତି

ରେଡ଼ଙ୍ଗା - *ଗ:* (ବି.) : ତରତରିଆ

ରେଡ଼ାବାର - *ସୁବ:* (କ୍ରି.) : ଗୋଇଠିରେ ଘସିବା

ରେଡ଼ି - *ଅନେ:* (ବି.) : ଗୋଇଠି, ପ୍ରସ୍ତୁତ, ଅଣ୍ଟା

ରେଡ଼ିକା - *ଗ:* (ବି.) : ତୈଲିଙ୍ଗ ଜାତି

ରେଡ଼ିତେଲ - *ଜ:* (ବି.) : ଜଡ଼ାତେଲ

ରେଡୁଅ - *ନ:* (ବି.) : ବେତାର ଯନ୍ତ୍ର

ରେଢା - *ଜ:* (ବି.) : ଦାନ୍ତ ମାଢି

ରେଢାବାର - *ସୁବ:* (କ୍ରି.) : ଗୋଇଠିରେ ଘଷିବା

ରେଢୁ - *ଦେ:* (ବିଂ.) : ଏକଜିଦିଆ

ରେଢେଇବା - *ବୌ:* (କ୍ରି.) : କହୁଣୀରେ ରଗଡ଼ିବା

ରେଣ୍ହା - *କେନ୍ଦୁ:* (ବିଂ.) : ଜିଦିଖୋର

**ରେଣ୍ହୁଛେ** - *ଦେ଼ୌ* (କ୍ରି.) : ମିଛକଥାକୁ ବାରମ୍ବାର ଦୋହରାଇବା

**ରେଣିବା** - *କଝ଼* (କ୍ରି.) କଥାକୁ ବାଆଁରେଇବା

**ରେଣୁ** - *ଦେ଼* (ବି.) : ପାଦ

**ରେଣ୍ଡି** - *ଖୋ଼* (ବି.) : ଜିଦ୍

**ରେଣ୍ଡିଆ** - *ଦେ଼ଅ଼* (ବିଂ.) : ଜିଦ୍‌ଖୋର

**ରେଣ୍ଡ** - *ଦେ଼ୌ* (ବି.) : ଧାର, ଜିଦ୍ ଧରିବା

**ରେଣ୍ଡିବା** - *ଗ଼* (ବି.) : ଚିମୁଟିବା

**ରେତ** - *କ଼ଢେ଼ନୁ଼* (ବି.) : ବୀର୍ଯ୍ୟ, ଶୁକ୍ର, ବାଲି, ରାତ୍ରି

**ରେଦ୍‌କା** - *ଦ଼* (କ୍ରି.) : ଘଷିବା

**ରେଦ୍‌କେରେତା** - *କଳା଼* (ବି.) : ଅଭ୍ୟାସ, ବାରଂବାର

**ରେତାଲୁ** - *ସୁବ଼* (ବିଂ.) : ବାଲିଆମାଟି

**ରେତି** - *କଳା଼* (ବି.) : ରାତିରେ

**ରେଥ୍** - *କଳା଼* (ବି.) : କରତର ଶାଣ ଦିଆ ଯନ୍ତ୍ର, କଳାହାଣ୍ଡିର ନଦୀବିଶେଷ

**ରେଥିବା** - *କଳା଼* (କ୍ରି.) : ଘୋରିବା, ଘଷିବା, ପଶୁମାନେ ଦେହ ଘଷିବା

**ରେଦାଙ୍ଗ** - *ଗଦ଼ୟ଼* (ବି.) : ଏକ ନୃତ୍ୟ

**ରେଦୋସି** - *ଗଦ଼ୟ଼* (ବି.) କନ୍ଧ ସଂପ୍ରଦାୟରେ ଏକ ପ୍ରକାର ଶୁଭଯୋଗ ବା ଶୁଭ ସମୟ

**ରେନ୍‌ହାଁ** - *ଦେ଼ୌ* (ବି.) : ବିତଣ୍ଡା ଯୁକ୍ତିକାରୀ, ଅମାନିଆଁ

**ରେନବାର** - *ସୁବ଼* (କ୍ରି.) : ନିଜ ଯୁକ୍ତିକୁ ବାରମ୍ବାର ଦୋହରାଇବା

**ରେନା (ଣା)** - *କଳା଼* (ବିଂ.) : ନିଜ ମତରେ ଅଟଳ ରହିବା

**ରେଛିବା** - *ଦେ଼ୌ* (କ୍ରି.) : ଘଷିବା

**ରେଫଣ୍** - *ଦେ଼* (ବି.) : ହମ୍ବାରାବ

**ରେବୁଲ୍** - *ସୁବ଼* (ବି.) : ସିମେଣ୍ଟ ମିସ୍ତ୍ରୀମାନଙ୍କ ଉପକରଣ

**ରେମ୍ଫେଲେଇ ହେବା** - *ଖୋ଼କେନ୍ଦୁ଼* (କ୍ରି.) : ବିଲେଇ ପରି ଘସି ହେବା

**ରେ ରକମ** - *ସ଼* (ବି.) : କାର୍ଯ୍ୟ କଳାପ

**ରେରେକାର** - *କ଼* (ଅ.) : ଗର୍ଜନକରି

**ରେଳପୁଇ** - *ଗଞ଼* (ବି.) : ରେଳଧାରଣା

**ରେଶ୍** - *ନୁ଼* (ବି.) : ରାଶି

**ରେଶ୍ ଲଡୁ** - *ନୁ଼* (ବି.) : ରାଶି ଲଡୁ

**ରେଷା** - *ବ଼ଗଦ଼ୟ଼* (ବି.) : ସଉଦା କରିବାରେ ମୂଲ୍ୟ ଓ ଓଜନରେ ଠକାଇବା, ପାଉଣା, କମିଶନ୍, ଅଂଶ, ରିଷପତ

**ରେଷୁଣିଆ ଆମ୍ବ** - *ଖୋ଼* (ବି.) : ବାସ୍ନା ଥିବା ଏକ ପ୍ରକାର ଆମ୍ବ, ରସୁଣ ଭଳି ବାସ୍ନା ଥିବା

**ରେଷ୍ଟି** - *ସୁବ଼ସ଼* (କ୍ରି.ବି.) : ରେଜେଷ୍ଟ୍ରି

**ରେସମ୍** - *ମ଼* (ବି.) : ଅଣ୍ଡାସୂତା

**ରେହେଣ୍ଡି** - *ନ଼ଦେ଼ୌ* (ବି.) : ଏକ ପ୍ରକାର ଦୋଳି ଖେଳ

**ରେହେପେଞ୍ଚ** - *ଦେ଼ୌ* (ବିଂ.) : ହଇରାଣ

**ରେହେଁଟି** - *ସୁବ:ସୁ:ଦେ:ବର:* (ବି.) : ଚକ୍ରୀ ଦୋଳି, ଅରଟ, ଚକ୍ରଦୋଳି, ରାହୁଟି

**ରେହେଁପେଁଚେ** - *ସ:* (ବି.) ଲାଗିପଡ଼ି କାମଟା ସାରିବା

**ରେଁକ୍‌ବା** - *ସ:* (କ୍ରି.) : ରାହାଧରି କାନ୍ଦିବା

**ରେଁକଟା** - *ନୂ:* (ବି.) : ଆତଫଳ

**ରେଁଙ୍ଗସି** - *ସ:* (କ୍ରି.) : ଘଷୁରି ଘୁଷୁରି ଯିବା

**ରେଁଙ୍କେଁ** - *ନୂ:ସ:* (କ୍ରି.) : ପାଟି ତୁଣ୍ଡ କରିବା

**ରେଁଟିବା** - *ସୁ:* (କ୍ରି.) ଗୋଟିଏ କଥା କହୁଥିବା

**ରେଁତବା** - *ସ:* (କ୍ରି.) : ଘସିବା

**ରେଁଥିବାର** - *ସୁବ:* (କ୍ରି.) : ବାଲିଦେଇ ବାସନ ମାଜିବା

**ରେଂଗାମ୍** - *ବା:* (ବି.) : ରେଙ୍ଗୁନ୍

**ରେଂଗାଲ୍** - *କଲା:* (ବି.) : ଶାଳଗଛ

**ରେଂଚି** - *ରା:* (ବି.) : ମରାମତି ଯନ୍ତ୍ର

**ରେଂଥିବା** - *ଦେ:* (କ୍ରି.) : ଘଷିବା, ରେଞ୍ଜୁ

**ରୋଇଥୋଇବା** - *ଭ:* (କ୍ରି.) : ମୁଣ୍ଡ ଲଗାଇବା

**ରୋକ୍‌କରିବା** - *ନ:* (କ୍ରି.) : ବାସନ୍ଦ କରିବା, ବନ୍ଦ କରିବା, ରୋକିବା

**ରୋକ୍ ଠୋକ୍** - *ସ:ଯା:ଦେ:ନ:* (ବିଂ.ବି.କ୍ରି.) : ସିଧା, ଅତ୍ୟନ୍ତ ସ୍ପଷ୍ଟ, ନଗଦାନଗଦି, ନିଷ୍ଠୁର ସତ୍ୟ,

**ରୋକଡ଼** - *ଭ:ଗ:ସଂ:* (ବି.ବିଂ.) : ନଗଦ, ଅଣ ଓସାରିଆ

**ରୋକଡ଼ିଆ** - *ସଂ:* (ବି.) : କ୍ୟାସିୟର

**ରୋଗ୍** - *କଳା:* (ବି.) : ରୋଗ, ବେମାର

**ରୋଗୀବ'ଲା** - *କଳା:* (ବି.) ଆଦିବାସୀମାନଙ୍କର ନୂଆଖାଇ ପୂର୍ବରୁ ହେଉଥିବା ରୋଗୀବହଳା ଯାତ୍ରା

**ରୋଜ୍** - *ଝା:* (ବି.) : ପ୍ରତିଦିନ

**ରୋଜଗାର** - *ଜ:* (ବି.) : ଉପାର୍ଜନ

**ରୋଜଗାରିଆ** - *ନ:* (ବିଂ.) : ଉପାର୍ଜନକ୍ଷମ

**ରୋଜନା ମଚା** - *ସଂ:* (ବି.) : ଦୈନିକ ଟିପା ଖାତା

**ରୋଜିନା** - *ଭ:ଗଦ୍ୟ:* (ବି.) : ନିତି, ସବୁଦିନ

**ରୋଝୋରୋଝୋ** - *କଳା:* (ବିଂ.) ଜୋରରେ, ଅସରାକୁ ଅସରା

**ରୋଟ** - *ଗ:ଜ:କଳା:* (ବିଂ.ବି.) : ମୋଟା, ସ୍ଥୂଳ

**ରୋଟି** - *ଦେ:* (ବି.) : ରୁଟି

**ରୋଦର** - *ନ:* (ବି.) : ଓଦର, ଖଡବୁହା ଡୋଲି

**ରୋଧିବା** - *ନ:* (କ୍ରି.) : ବନ୍ଦକରିବା

**ରୋପାବଳୀ** - *ଅ:* (ବି.) : ନର୍ସରୀ, ଚାରା

**ରୋପିବା** - *ନ:* (କ୍ରି.) : ରୋପଣ କରିବା, ଲଗାଇବା

**ରୋବଟିକ୍ ମ୍ୟୁଜିକ୍ ପ୍ଲେୟାର** - *ସଂ:* (ବିଂ.) : ନାଚଗୀତ ଦେଖାଇ ପାରୁଥିବା ମେସିନ୍

**ରୋଲି** - *ସଂ:* (ବି.) : ରୋବଟିକ୍ ମ୍ୟୁଜିକ୍ ପ୍ଲେୟାର, ଅଣ୍ଡାଆକୃତିର

**ରୋଳ** - *ଜ:* (ବି.) : ଗଣ୍ଡଗୋଳ

**ରୋଢା** - *ନ:ଖୋ:ଦେ:* (ବି.) : ପାଟିତୁଣ୍ଡ, ଗଣ୍ଡଗୋଳ, ଗର୍ଜନ, ନୋଳା

**ରୋଳି** - *ଖୋ:* (ବି.) : ଏକପ୍ରକାର କୋଳି

**ରୋଶନି, ରୋଶଣୀ** - *ନ:* (ବି.) : ବାଜା, ଆଲୁଅ

**ରୋଷ** - *ନ:ଇ:ଦେ:ଦେ:* (ବି.) କ୍ରୋଧ, କୋପ, ଭାଉ

**ରୋଷଣି** - *ଦେ:* (ବି.) : ଶୋଭାଯାତ୍ରା

**ରୋଷେଇ** - *ନ:* (ବି.) : ରାନ୍ଧିବା, ରାନ୍ଧଣା

**ରୋଷେଇୟା** - *ନ:* (ବି.) : ଯିଏ ରୋଷେଇ କରେ

**ରୋସମ** - *ସ:* (ବି.) : ବିଚାର ଶୁଳ୍କ

**ରୋହି** - *ନ:* (ବି.) : ଏକପ୍ରକାର ମାଛର ନାମ

**ରଁକାପଶିବା** - *ସ:* (କ୍ରି.) : ଅର୍‌କି ଯିବା, ପବନ ରହିଯିବା

**ରଁଚାବାର** - *ସୁବ:* (କ୍ରି.) : ମୁଣ୍ଡବାଳ ମାଟି ଦ୍ୱାରା ସଫାକରିବା

**ରଁଚିବା** - *ସୁ:* (ବି.) : ମନ ଲାଗିଯିବା, ରଙ୍ଗ ଲାଗିଯିବା

**ରଁଚେ** - *ଅନେ:* (ବିଂ.ବି.) : ଅତି ଅଳ୍ପ ପରିମାଣ

**ରଁଚେଥିପେ** - *ସୁ:* (ବିଂ.) : ବହୁ ଅଳ୍ପ, ବୁନ୍ଦାଏ

**ରଁଡ଼ା** - *ସୁବ:* (ବିଂ.) : ବିପତ୍ନୀକ, ବିଧୁର, ରାଣ୍ଡିଆ

**ରଁଫା** - *ସୁ:ସ:* (ବି.) : କୋଡ଼ି

**ରଂଗ** - *ସୁ:କଳା:* (ବିଂ.) ନପୁଂସକ, ମାଇଚିଆ

**ରଂଗ୍** - *କଳା:* (ବି.) : ରସ, ଆଲୁମିନିୟମ୍, ରକ୍ତ ବର୍ଣ୍ଣ, ରଂଗ

**ରଂଗ୍‌ରଂଗିଆ** - *କଳା:* (ବିଂ.) : ନାନାରଂଗର

**ରଂଗଢଂଗ** - *ସ:* (ବି.) : ରଙ୍ଗଢଙ୍ଗ

**ରଂଗଫଳ** - *ଦେ:* (ବି.) : ହରଡ଼

**ରଂଗ ଶାଳା** - *ସ:* (ବି.) : ବେଶ ଘର

**ରଂଗିଆ** - *ସୁ:* (ବିଂ.) : କଉତୁକିଆ

**ରଂଗିବା** - *ଦେ:କଳା:ସୁ:* (କ୍ରି.) : ଗୁରୁଣ୍ଡିବା, ହାମୁ ଡ଼ିବାଘେସରିବା

**ରଂଗେ** - *କଳା:* (ବିଂ.) : ଭଂଗୀରେ, ସ୍ୱତନ୍ତ୍ର ଶୈଳୀରେ

**ରଂଚନା** - *କଳା:* (ବି.) : ରଚନା, ସୃଜନା, କୃତି

**ରଂଚିଯିବା** - *ଦେ:* (କ୍ରି.) : ବେରଂଗ ହେବା

**ରଂଜହଂସ, ରଂଜଘସ** - *କୋ:* (ବି.) କୌଣସି ଏକ କଥାର ବିସ୍ତୃତ ଆଲୋଚନା

**ରଂଛା** - *ଗା:ସ:କଳା:ସୁ:* (ବି.କ୍ରି.) : ଲତା ଯହିଁରେ ମାଡ଼େ, କାଠକୁ ଚିକ୍କଣ କରିବା ଯନ୍ତ୍ର, ରଳା

**ରଂଛାଳିଆ** - *ଇ:* (ବି.) : ଖରାବେଳ, କ୍ଳାନ୍ତ ବିରକ୍ତି ଅବସ୍ଥା

**ରଂଝିବା** - *କେ:* (କ୍ରି.) : ମନକୁ ମୋହିବା

**ରଂଣ୍ଡା** - *ସୁ:* (ବି.) : ମୃତଦାର, ବିପତ୍ନୀକ, ରାଣ୍ଡିଆ

**ର'ର** - *କଳା:* (କ୍ରି.) : ରହ-ରହ



ଲ - *ଗ୍ରା:* (ବି.) : ପାନଲତାକୁ 'ଲ' କୁହାଯାଏ

ଲଅ - *ଦେ:* (ବି.) : ଲତା

ଲଅକ୍‌ଲକ୍ - *ଦେ:* (ଅ.) : ଲହଲହ

ଲଅର ପଅର - *ନବ:* (ବିଂ.) : ଏଣେତେଣେ ବୁଲୁଥିବା, ଲସର ପସର

ଲଅରି - *ନବ:* (ବି.) : ଟ୍ରକ, ଲରି

ଲଆ - *ଗଦ୍ୟ:* (ବି.) : ଡିମିରି ଫଳ

ଲଇ - *ଅନେ:* (ବି.) : ବୃକ୍ଷ ବକଳ ଏବଂ ଲତାରୁ ପ୍ରସ୍ତୁତ ରଜ୍ଜୁ, ଓହଳ, ଗଛ ଛାଲି, କଅଁଳା ବାଛୁରୀ, ଅଛିଣ୍ଡା

ଲଇକ୍ଷନ - *ସୁ:* (ବି.) : ଲକ୍ଷଣ

ଲଇନି - *କଳା:* (ବି.) ବୁର୍ବୁଚି, ଝୁଂଡ଼ଙ୍ଗ ଜାତୀୟ ଫଳ

ଲଇଲଡ଼ - *ଗ:* (ବିଂ.) : ଅଝଟିଆ

ଲଇଲୁଆ - *କୋ:* (ବି.) : ସାପ (ରାତିରେ ସାପ ନକହି ଲଇଲୁଆ କୁହାଯାଏ)

ଲଇଁ - *ଦେ:ଢ:* (ଅ.କ୍ରି.) : ନଇଁ, ମୁଣ୍ଡ ବା ଦେହକୁ ନୁଆଁଇ

ଲଈ - *ଖୋ:* (ବି.) : ଏକପ୍ରକାର ଲଟା, ନଦୀ

ଲଉ - *କଝ:ନୂ:କଳା:* (ବି.) : ଲାଉ, ଅଲାବୁ

ଲଉଡା - *ସୁବ:* (ବି.) : ପୁରୁଷ ଜନନେନ୍ଦ୍ରିୟ, ଗାଳିବାଚକ ଭାବେ ବ୍ୟବହୃତ

ଲଉଡ଼ିଖେଳ - *ଖୋ:* (ବି.) : ଗୋପାଳ ସମ୍ପ୍ରଦାୟର ଏକ ବିଶେଷ ଧରଣର ଖେଳ

ଲଏ - *ଦେ:କଳା:ସୁ:ସୁବ:* (ବି.) : ଲୟ, ଅଭ୍ୟାସ, ଧ୍ୟାନ, ଏକାଗ୍ରତା

ଲକ୍ - *ସୁ:ମ:* (ବି.) : ତାଲା ପଡ଼ିବା, ଲୋକ

ଲକ୍‌ଠକ - *ସୁ:ସୁବ:କଳା:ସ:* (ବି.ବିଂ.) ପୂରାଠିକ, ଠିକଣା, ସଂଯୋଗ, ସମାନ, ପୂର୍ଣ୍ଣ, କମ୍ ବା ବେଶୀ ନୁହେଁ, ବରକନ୍ୟା ଯୋଟକ, ଲୟ, ଠିକ୍‌ଠାକ୍

ଲକ୍‌ଠକାବାର - *ସୁବ:* (କ୍ରି.) : ସଂଯୋଗ ଘଟାଇବା, ଠିକଣା କରିବା

ଲକ୍‌ରଲକ୍‌ର - *ଦେ:* (ବିଂ.) : ଖୁବ୍‌ପତଳା ଓ ସରୁବସ୍ତୁ, ଦୁବୁଲା ପତଳା

ଲକ୍‌ଲକିବା - *କଳା:* (କ୍ରି.) : ନିଆଁ ଲେଲିହାନ ହୋଇ ଜଳିବା

ଲକ୍‌ସାନ - *ନବ:* (ବି.) : କ୍ଷତି, ଲୋକସାନ

ଲକଟ - *ସୁବ:* (ବି.) : ଛୋଟ ମହୁମାଛି

ଲକତିଆ - *ସ:* (ବିଂ.) : ଗଣ ଯେ ବେଶୀ କରିଥାଏ, ବହୁରଣୀ

ଲକରା - *ଦେ:* (ବି.) : ପେଣ୍ଡରା, ହେଟାବାଘ

**ଲକଲକାବାର** - *ସୁବ:* (ବିଂ.) : ଅତିଶୟ ଭୋକରେ ପେଟ ଖାଲି ହୋଇଯିବା

**ଲକଲକିଆ** - *ଗ:* (ବି.) : ପତଳା

**ଲକସ୍ତକସ୍** - *ସୁବ:* (ବି.) : ଭୋକରେ ଦୁର୍ବଳ ଲାଗିବା

**ଲକା** - *ବୌ:* (ବି.) : ଲଙ୍କା ମରିଚ

**ଲକି** - *ସୁ:ସୁବ:* (ବି.) : ପିଊଳ ବେଲା

**ଲକୁ** - *କଃ:* (ବି.) : ଲୋକ

**ଲକୁଆ** - *କୋ:* (ବି.) : ପକ୍ଷଘାତ ରୋଗ

**ଲକେଇ** - *କୋ:* (ବି.) : ଏକ ପ୍ରକାର ବ୍ୟଞ୍ଜନ

**ଲକେକ୍ୟା** - *ଗଜ:* (ବି.) : ସ୍ୱତନ୍ତ୍ର ତରକାରୀ

**ଲକେହେବାର** - *ସୁବ:* (କ୍ରି) : ଭାତ ଅତିଶୟ କଅଁଳ ହୋଇଯିବା

**ଲକ୍ଷ୍ମୀଟେରି** - *ବୌ:* (ବିଂ.) : ବାଁ ଆଖି ଟେରି ଥିବା ଭାଗ୍ୟଶାଳୀ ନାରୀ

**ଲଖ** - *ଜ:* (ବି.) : ନଖ

**ଲଖା** - *ସୁ:* (କ୍ରି.) : ଛିଦ୍ର ତୁନିବା, ଲାଖମାରିବା

**ଲଖାଇବା** - *ଗ:* (କ୍ରି.) : ଲକ୍ଷ୍ୟକରିବା

**ଲଗ୍** - *ମ:* (ବି.) : ଲୋକ, ଜଣ

**ଲଗ୍‌ଡ଼ିବା** - *କଳା:* (କ୍ରି.) : ରଗଡ଼ିବା, ଚିପିବା

**ଲଗ୍‌ନ** - *ଝା:* (ବି.) : ଶୁଭ କାମର ମୁହୂର୍ତ୍ତ, ଲଗ୍ନ

**ଲଗ୍‌ନିଆ** - *ସୁ:କଳା:* (ବିଂ.ବି.) : ଲଗ୍ନରେ ଥିବା ବ୍ୟକ୍ତି, ଲଗ୍ନ ନିରୂପଣ କାରୀ, ଜ୍ୟୋତିଷ

**ଲଗଡ଼** - *କୋ:ଗ:* (ବିଂ.) : ଠିକ୍, ସୁନ୍ଦର

**ଲଗଣ ଘସା** - *ବଉ:* (କ୍ରି.) : ଦେହ ଘଷିବା

**ଲଗଣ ଖିଗଣ** - *ଗ:* (ବି.) ସଂପର୍କ, ସଂପର୍କୀୟ

**ଲଗା** - *ଦେ:ନ:ଗ:* (ବି.ବିଂ.) : ସଂଯୋଗ କରିବା, ଜଡ଼ିତ, କାମିକା, ଦାୟୀ

**ଲଗାଜଟା** - *ନ:* (ବିଂ.) : ଲଗେଇ ଜୁଟେଇ

**ଲଗାଜୁଟ୍‌ରା** - *ବୌ:* (ବିଂ.) ଖଚମିଛ କହୁଥିବା ବ୍ୟକ୍ତି

**ଲଗାଣ** - *ନ:ଗ:* (ବିଂ.ବି.) ଲାଗିଲାଗି, କ୍ରମାଗତ ଭାବେ, ସଂଲଗ୍ନ କରିରଖିବା, ବହୁଦିନବ୍ୟାପୀ, ଝଡ଼ିବର୍ଷା

**ଲଗାଣି** - *ଦେ:* (ବି.) : ଖତ

**ଲଗାତାର** - *ସୁ:ନୂ:* (ବି.ବିଂ.) : ନିରନ୍ତର, ବାରମ୍ବାର

**ଲଗାଡୁଲିଆ** - *ସୁ:* (ବିଂ.) : କଳହ ସୃଷ୍ଟିକାରୀ, ସଂପର୍କିତ

**ଲଗାନାହିଁ** - *ନ:* (ବି.) ଭୟନଥିବା, ଲଗାମହୀନ

**ଲଗାନି** - *ସ:ସୁ:* (ବି.) : ଲାଗୁଆ ଗ୍ରାହକ, ଋଣଦେବା

**ଲଗାପଘା** - *ଗଜ:ଗ:ଦେ:* (ବି.) : ଦାୟିତ୍ୱ ନ ନେବା ବ୍ୟକ୍ତି, ସଂପର୍କ, ଦୂରସଂପର୍କ

**ଲଗାମଛଡ଼ା** - *ସଂ:* (ବିଂ.) : ନଛୋଡବନ୍ଧା, ନିୟମ ବିଚାର ନଥିବା ମଣିଷ

**ଲଗି** - *ନ:* (ବି.) : ଆଙ୍କୁଡ଼ି ବାଡ଼ି

**ଲଗିନ୍** - *କଳା:* (ବି.) : ଲଗ୍ନ, ଯୋଗ, ଶୁଭ ମୁହୂର୍ତ୍ତ

**ଲଗୁଡି** - *ଗ:* (ବି.) : କୃଷି କାର୍ଯ୍ୟପାଇଁ ଆଗତୁରା ଖର୍ଚ୍ଚ ଖତବିହନ ସାର

**ଲଗୁନ୍** - *କଳା:* (ବି.) : ପାଖରୁ, ନିକଟରୁ, ଠାରୁ

**ଲଘୁଚମ୍ପା** - *ଖୋ:* (ବି.) : ଏକପ୍ରକାର ସହଳ କିସମର ଧାନ

**ଲଙ୍କଗା, ଲାଙ୍ଗା** - *ନବ:* (ବି.) : ସାୟା

**ଲଙ୍କାଆମ୍ବ** - *ଖୋ:* (ବି.) : ଏକ ପ୍ରଜାତିର ଆମ୍ବ, କାଜୁଫଳ

**ଲଙ୍କାଗବ** - *କଝ:* (ବି.) : ବାଇଗବ

**ଲଙ୍କାପାଣ୍ଡୁ** - *ଗ:ନବ:ବୌ:* (ବି.) : ଲଙ୍କାଆମ୍ବ, କାଜୁଗଛର ଫଳ

**ଲଙ୍ଗ୍** - *ଝା:* (ବି.) : ବଳଦ, ଅମାନିଆହେଲେ ବେକରେ ଲାଗୁଥିବା କାଠବାଡ଼ି

**ଲଙ୍ଗଟି** - *ନବ:ମା:* (ବି.) : କୌପୁନୀ

**ଲଙ୍ଗପଙ୍ଗ** - *ଢେ:* (କ୍ରି.) : ଇତସ୍ତତଃ

**ଲଙ୍ଗରଖାନା** - *ଢେ:* (ବି.) : ଧର୍ମଶାଳା

**ଲଙ୍ଗଲ୍** - *ଅନେ:* (ବି.) ଜମି କାଦୁଅ କଲାବେଳେ ଦୁଇଟି ବଳଦକୁ ଯୋଚି ଲଙ୍ଗଳ ଦ୍ୱାରା କାଦୁଅ କରାଯାଇଥାଏ

**ଲଙ୍ଗଳା କାନ** - *ସଂ:* (ବି.) : ଖାଲିକାନ, ଅଳଙ୍କାର ନଥିବା କାନ

**ଲଙ୍ଗଳାମୁକୁଳା** - *ଢେ:* (ବିଂ.) : ଯେଉଁବ୍ୟକ୍ତିର ଦେହରୁ ଲୁଗା ଓ କେଶ ଫିଟି ପଡ଼ିଥାଏ

**ଲଙ୍ଗା** - *ମା:* (ବି.) : ସାୟା

**ଲଙ୍ଗି** - *କଝ:* (ବି.) : ଗୋରା

**ଲଘା** - *ପୁ:* (ବିଂ.) : ଜୋରଦାର

**ଲଚକମାଣି** - *ଖୋ:କ:* (ବି.) : ସୁନ୍ଦରୀ ଓ ଝଟକୀ

**ଲଚ୍ଛା** - *ଗଞ:* (କ୍ରି.) : ଶିଶୁଙ୍କ ପେଟରେ ଲାଛିବା

**ଲଛ୍ମା ପୂଜା** - *କଝ:* (ବି.) : ଏକପର୍ବ

**ଲଛ୍ମୀ** - *ବୌ:* (ବି.) : ଲକ୍ଷ୍ମୀ

**ଲଛମନ** - *ଗ:* (ବି.) : ଗ୍ରାମଠାକୁରଙ୍କ ଭୋଗି

**ଲଜରବଜର** - *ସ:* (ବି.) : ସବୁ ପରିବା ମିଶା ତରକାରୀ, ଘାଣ୍ଟ

**ଲଟ** - *ଗଦ୍ୟ:ଢେ:* (ବି.) : ସଂଘର୍ଷ, ବିବାଦ, ଅଡୁଆ, ଖଳବ୍ୟକ୍ତି

**ଲଟ୍‌କନା** - *ସ:* (ବି.) : ଏକ ପ୍ରକାର କଣ୍ଟା ଗଛ, ଅପାମାର୍ଗ

**ଲଟ୍‌କା** - *କଳା:ନୂ:ସୁ:* (ବିଂ.) : ଅଠାଳିଆ, ସଂଲଗ୍ନ କରିବା ବା ଛାପିବାକୁ କହିବା, ଅସଂପୂର୍ଣ୍ଣ, ଜଟ ଭଳି (ମୁଣ୍ଡର ବାଳ), ଅଇଁଠା

**ଲଟ୍‌ପଟ** - *ଝା:କଝ:କଳା:* (କ୍ରି.ବିଂ.ବି.) ଲଟପଟ ହେବା, ଗୁପ୍ତପ୍ରଣୟ, ସଂପୃକ୍ତ

**ଲଟକୋ** - *ସୁ:* (ବି.) : ଚୋପାକାଣ୍ଡିଆ

**ଲଟଘଟିଆ** - *ଢେ:* (ବିଂ.) : ଅବୈଧପ୍ରେମ

**ଲଟତା** - *ଛେ:* (ବି.) : ମାଟି

**ଲଟଲଟ** - *ସୁ:* (ବିଂ.) : ଅଠାଳିଆ

**ଲଟା** - *ଅନେ:* (ବି.) : ଘାସ, ଲତା, ବୁଦା

**ଲଟାଇବା** - *ସୁ:* (କ୍ରି.) : ଲତାକୁ ରଞ୍ଜାଦେବା

**ଲଟାଘିଚା** - *ସୁ:* (କ୍ରି.) : ଘାସସଫା, ଘାସ ବଛା

**ଲଟାଲଟି** - *ମା:ଦେ:ନବ:* (ବି.କ୍ରି.) : ସଙ୍ଗମ, ସହବାସ, ଭୂଲୁଣ୍ଠିତ, ସ୍ତ୍ରୀ ପୁରୁଷର ମିଳନ

**ଲଟି** - *ଅନେ:* (ବି.ବିଂ.) : ବୁଦା, ଗହଳିଆ ଜାଗା, ଲତା, ବୃକ୍ଷ, ଗୁଳ୍ମରେ ପରିପୂର୍ଣ୍ଣ ସ୍ଥାନ

**ଲଟିବୁରୋ** - *ସୁ:* (ବି.) : ଛୋଟ ଭୂଇଁକୋଳି, ଲତା ବରକୋଳି

**ଲଟୁ** - *ଗ:* (ବି.) : ଖେଳନା ବିଶେଷ

**ଲଠରିଯିବା** - *ସୁ:* (ବି.) : ଗେଲ ପ୍ରଣୟ, କଥାରେ ମାତିଯିବା

**ଲଠା** - *ଅନେ:* (ବି.) : ମହୁଲ, ତେନ୍ତୁଳି ଓ ଗୁଡ଼ରୁ ତିଆରି ଖାଦ୍ୟ, ଗଙ୍ଗାଇ, ଜଟଙ୍ଗି ମିଶାଢ଼ିଙ୍କିକୁଟା, ଅଠା, ଝାମଲା

**ଲଡ୍‌କଡିଆ** - *ବୌ:* (ବି.) : ଢିଲା, ଗୁରୁତ୍ୱହୀନ

**ଲଡ୍‌ବଡ୍** - *କଳା:* (ବି.ବିଂ.) : ସଂପୃକ୍ତ, ଢିଲା

**ଲଡଙ୍ଗଫସ୍** - *ବ:* (ବିଂ.) : କୌଣସି କାମକୁ ଆସୁନଥିବା ବ୍ୟକ୍ତି

**ଲଡା** - *ନବ:* (ବି.) : ପିରି, ଛଣ, ନଡ଼ା

**ଲଡ଼୍‌ବଡ଼ିଆ** - *କଳା:* (ବିଂ.) ଯାହାର କାର୍ଯ୍ୟରେ ଠିକ ଠିକଣା ନଥାଏ

**ଲଡ଼ରା** - *ସୁ:* (ବିଂ.) : ଗେହ୍ଲା

**ଲଣି** - *ନବ:* (ବି.) : ଲହୁଣୀ

**ଲଣ୍ଠନ** - *ଖୋ:* (ବି.) : ଧାତୁ ନିର୍ମିତ ଏକ ବସ୍ତୁ ଯେଉଁଥିରେ କିରୋସିନ୍ ଇନ୍ଧନ ରୂପେ ବ୍ୟବହାର କରାଯାଇ ବତୀ ରୂପେ ବ୍ୟବହାର କରାଯାଏ

**ଲଣ୍ଡ** - *ଖୋ:* (ବି.) : ବିଷ୍ଠାଖଣ୍ଡ, ଏକମାତ୍ର ପୁତ୍ର

**ଲଣ୍ଡଭଣ୍ଡ** - *ଦେ:* (ବି.) : ଅସ୍ଥିର

**ଲଣ୍ଡା** - *ଖୋ:* (ବିଂ.ବି.) ମୁଣ୍ଡରେ ବାଳନଥିବା, କେଶହୀନ

**ଲଣ୍ଡାବାବୁଲି** - *ଗ:* (ବି.) : ଭୁଷି

**ଲଣ୍ଡିବତା** - *ଗଞ:* (ବି.) : ଚାଳଘରର ପାଣି ପାଟିଆ

**ଲଣ୍ଡେଇବା** - *ଖୋ:* (କ୍ରି.) : ଏକ ଜାଗାରେ ଜମା କରିବା

**ଲଡ୍‌ପଡ୍** - *ମା:ବୌ:* (ବିଂ.ବି.) : ଅତି ନରମ, ବେଶି ପାଚି ଯାଇଥିବା, ପାଚିଲା

**ଲତାବନିତା** - *ଜ:* (ବି.) : ବଂଶ, କୁଟୁମ୍ବ

**ଲଥା** - *ଦେ:ଗ:ନ:* (ବି.କ୍ରି.ବିଂ.) : କଥାର ଲଥା, ଉପକଥା, ତାଳି ପକାଇବା

**ଲଦା** - *ଅନେ:* (ବି.) : ଲଦିବା, ଗୋଟାକ ପରେ ଗୋଟାଏ ରଖାଯିବା, ମିଶାଲ, ନିଆଁକୁ ବହୁ ସମୟ ପର୍ଯ୍ୟନ୍ତ ଧରି ରଖିବା ପାଇଁ ପାଳରେ ନିର୍ମିତ ଏକ ବିଶେଷ ବେଣ୍ଟ, ମଖନ, ଚାଉଳ ଗୁଣ୍ଡର ମୋଟା ପିଠା

**ଲଦାଣ** - *ଗ:* (ବି.) : ବୋଝ

**ଇଦାବାହୁନ୍** - *କଳା:* (ବି.) : ଫୁଲଝାଡୁ, ଫୁଲ ବାଡୁଣି

**ଇଦାମୁ** - *ଗ:* (ବି.) : ଘର ଛାତ ତଳେ ଦେବା କାଠ କଡ଼ି

**ଇଦି** - *କୋ:ଝା:* (ବି.ବି.) : କାଦୁଅ, ଭର୍ତ୍ତି ହୋଇଥିବା

**ଇଦିଆ** - *ନବ:* (ବି.) : ବୃହତକାୟ ବୃକ୍ଷ

**ଇଦିବା** - *ନ:ସ:ନୂ:ସୁ:* (କ୍ରି.) : ବୋଝେଇ କରିବା, ଭର୍ତ୍ତି କରିବା, ବୋଝ ରଖିବା

**ଇଦୋ** - *ବର:* (ବି.) : ତାସର ଏକ ଖେଳ

**ଇଦଂଗ୍** - *କଳା:* (ବି.) : ଲଦନ, ଭାର, ପଶୁ ପିଠିରେ ଲଦା ଯାଉଥିବା ଭାର

**ଇନ୍ଦଣି ଫନ୍ଦଣି** - *ଗ:* (ବି.) : ଯୋଗାଡ଼ ଯତ୍ନ

**ଇନ୍ଦଫନ୍ଦ** - *ଅନେ:* (ବିଂ.ବି.) : ମିଛ, ଛଳନା, ଏଠିର କଥା ସେଠିକହିବା, ଖଳ ପ୍ରକୃତି, କପଟ

**ଇନ୍ଦରା** - *ନବ:* (ବି.) : ଲେଞ୍ଜରା

**ଇନ୍ଦା** - *ମା:କୋ:* (ବି.) : ଦେଶୀମଦ

**ଇନ୍ଧା ଦଉଡ଼ି** - *ନ:* (ବି.) : ଦଣ୍ଡା ଓ ଝୁରାଡ଼ିହକୁ ମିଶାଇ ବାନ୍ଧୁଥିବା ଦଉଡ଼ି

**ଇପ୍‌କାବା** - *ସୁ:* (କ୍ରି.) : ଲଟକେଇବା, ଫୁସୁଲେଇବା

**ଇପ୍‌ଟିବା** - *ଦେ:ସୁ:* (କ୍ରି.ବି.) : ଛପିକରି ଯିବା, ଲାଟେଇବା

**ଇପଙ୍ଗି** - *ବର:* (ବିଂ.) : ଗାଳି ବିଶେଷ

**ଇପଟାଇବା** - *ଗ:* (କ୍ରି.) : ଜଡ଼ାଇବା, ଜଡ଼ିତ କରିବା

**ଇପଲିପିବା** - *କଳା:* (କ୍ରି.ବିଂ.) : ପଲ୍ଲବିତ ହେବା, କଅଁଳିଥିବା ପତ୍ରରେ ଛନ୍ ଛନିଆ ଅବସ୍ଥା

**ଇଫଙ୍ଗା** - *ଅନେ:* (ବିଂ.) : ଛତରା, ଚରିତ୍ର ହୀନ, ଖରାପ ପ୍ରକୃତିର ଲୋକ, ବ୍ୟଭିଚାରୀ ଓ ଦୁଶ୍ଚରିତ୍ରା, କୁଳଟା

**ଇଫଡା** - *କେ:ସୁବ:* (ବିଂ.) ଛତରା, ବାରବୁଲା ପରି ବୁଲୁଥିବା

**ଇଫା** - *ଗ:* (ବି.) : ଲାଭ

**ଇଫାପା** - *କୋ:* (ବି.) : ଯେଉଁଥିରେ ଚିଠି ବା ପତ୍ର ପ୍ରେରଣ କରାଯାଏ, କାଗଜଖୋଳ, ଖାମ୍

**ଇବ୍‌ଡାଇବା** - *ନୂ:* (କ୍ରି.) : ଫିଙ୍ଗିବା

**ଇବ୍‌ଡ଼ା** - *କଳା:* (ବି.) : ଠେଙ୍ଗା ଫିଙ୍ଗିବାକୁ ଆଦେଶ ଦେବା ବା କହିବା

**ଇବ୍‌ଡ଼େଇବା** - *କଳା:* (କ୍ରି.) ଫିଙ୍ଗିବା, ନିକ୍ଷେପ କରିବା

**ଇବ୍‌ଲିବିଆ (ପୁଂ)** - *କଳା:* (ବିଂ.) : ଡବ୍‌ଡବା, ଆଗତ କୁହା ବ୍ୟକ୍ତି, ଅନାବଶ୍ୟକ କଥା କହୁଥିବା ବ୍ୟକ୍ତି

**ଇବଙ୍ଗଲତା** - *ନ:* (ବି.) : ଏକପିଠା-ଲବଙ୍ଗ ଭରାହୋଇ ନିର୍ମିତ, ମିଠାଇ ବିଶେଷ

**ଇବଡ଼ା** - *ସୁ:* (ବି.) : ଜନନେନ୍ଦ୍ରିୟ

**ଇବଟେଇବା** - *ବ:* (କ୍ରି.) : ଲକ୍ଷ୍ୟକରି ଫିଙ୍ଗିବା

ଲବର - *ସୁବ:ଗା:* (ବି.) : ରବର
ଲବରା - *ଦେ:ଅ:* (ବିଂ.) : ଖେଚଡ଼
ଲବାର - *ଅନେ:* (ବିଂ.) ମିଥ୍ୟାବାଦୀ, ଦୁଷ୍ଟପିଲା, ଗପୁଡି ବ୍ୟକ୍ତି, ଦୁଷ୍ଟ ବ୍ୟକ୍ତି
ଲବାଲବ୍ - *ଦେ:* (ଅ.) : ଖାଦ୍ୟମୁହଁ ପର୍ଯ୍ୟନ୍ତ ଭର୍ତ୍ତି ହୋଇଥିବା
ଲବାଂଗ୍ - *କଳା:ସୁ:* (ବି.) : ବଂଜାରା ଜାତି, ଲଗାମ
ଲବିଆ - *ନବ:ଗଜ:* (ବି.) : କାଠି ଝୁଡୁଙ୍ଗ
ଲବିକା - *ଦେ:* (ବି.) : ଛେପ
ଲମ୍ - *ସୁ:ବୌ:* (ବିଂ.) : ଲମ୍ବ
ଲମ୍‌କଡ଼ି - *ମା:* (ବି.) ଲବଙ୍ଗ ପରି ନାସାଳଙ୍କାର
ଲମ୍‌ପେଟା - *କଳା:* (ବି.) : ଲମ୍ବୋଦର, ଗଣେଶ, ଯାହାର ଲମ୍ବପେଟ ଥାଏ
ଲମ୍‌ହତା - *ନ:କଳା:ବୌ:* (ବି.ବିଂ.) : ପ୍ରଭାବଶାଳୀ ଲୋକ, ଲମ୍ବାହାତ
ଲମ୍‌ହାନ - *ସୁବ:* (ବିଂ.) : ବହୁତ ଲମ୍ବ, ବଡ଼ ଗୁରୁତ୍ୱପୂର୍ଣ୍ଣ
ଲମକ୍ - *କଳା:* (ବିଂ.) : ଲମ୍ବା, ଦୀର୍ଘ
ଲମଟି - *ସୁ:* (ବିଂ.) : ଛୋଟ
ଲମତା - *ଗଜ:* (ବି.) : ଜାତିବିଶେଷ
ଲମରଦାର - *ସୁ:* (ବି.) : ମୁଖ୍ୟ, ଗୌନ୍ତ୍ୟା
ଲମରୁ - *ସୁ:* (ବିଂ.) : ଲମ୍ବାଳିଆ
ଲମା - *କଳା:* (ବିଂ.) : ଲମ୍ବା, ଦୀର୍ଘ
ଲମିବା - *କଳା:* (କ୍ରି.) : ଯିବା, ଗମନ କରିବା, ଲମ୍ବିବା
ଲମେଇବା - *କଳା:* (କ୍ରି.) ବଢେଇବା, ଜଣେ ଅନ୍ୟକୁ ଦେବା, ଲମ୍ବେଇ ଦବା
ଲମେଲମ୍ - *କଳା:* (ବିଂ.) : ସିଧାସିଧା, ସିଧା ଭାବରେ
ଲମ୍ପକ - *ଦେ:* (ବି.) : କାଗିଜି ଲେମ୍ବୁ
ଲମ୍ବର - *ଗା:* (ବି.) : ସଂଖ୍ୟା
ଲମ୍ବରା - *ବୌ:* (ବିଂ.) : ଲମ୍ବାଳିଆ, ଅଧିକ ଲମ୍ବ ବିଶିଷ୍ଟ
ଲୟ - *ଅନେ:* (ବି.) : ଲକ୍ଷ୍ୟ, ଅଭିନୟକରିବା, ମନଦେବା, ଧ୍ୟାନ
ଲରକା - *ଗା:* (ବିଂ.) : ଯାହା ସହଜରେ ଭାଙ୍ଗେନାହିଁ
ଲରଫରିଆ - *ଗ:* (ବି.) : ଇତଃସ୍ତତ ଚାଳିତ
ଲରିଆ - *ସୁ:* (ବି.) ଆଗ୍ରିଆ ଭାଷା, ଛତିଶଗଡ଼ି ଭାଷା
ଲରୋଥରୋ - *ସୁବ:ସୁ:* (ବିଂ.ବି.) : ଅତିଶୟ ବୃଦ୍ଧ, ଲୁଳିତ
ଲର୍‌ରା - *ସୁବ:ଝା:* (ବିଂ.) : ଗେଲବସର ପୁଅ, ଯେଉଁ ପିଲାକୁ ଅଧିକ ସ୍ନେହ ଦିଆଯାଏ, ଗେହ୍ଲା
ଲଲ୍‌ଚାବାର - *ସୁବ:* (କ୍ରି.) : ଲୋଭ କରିବା
ଲଲ୍‌ହା - *ସୁ:ସ:* (ବିଂ.) : ଲାଳସୀ ଲୋକ, ପାଟି ଟକଳା

**ଲଲାକୁଳୁ** - *କୋ:ଗ:* (ବି.) କର୍ଣ୍ଣର ନିମ୍ନଭାଗରୁ ତଳକୁ ଝୁଲି ରହୁଥିବା ଅଳଙ୍କାର ବିଶେଷ, କାନର ଅଳଙ୍କାର

**ଲଲାଗୁଲା** - *ଗୌ:ନ:* (ବିଂ.) : ଅସହାୟ ଅବସ୍ଥା, କାକୁତି ମିନତି

**ଲଲେଇ** - *ଅନେ:* (ବିଂ.) : ଲାଳସା ଗ୍ରସ୍ତ, ମାଇଚିଆ

**ଲଲୋଗେଲୋ** - *ନୂ:* (ବିଂ) : ଦୁର୍ବଳ

**ଲଲ୍ଲୋଇ** - *ସୁ:* (ବିଂ.) : ଅତି ଲାଳାୟିତ

**ଲଲ୍ଲୋଭ** - *ଭେ:* (ବି.) : ପିଠା

**ଲସ୍‌ମା** - *କନ୍ଧ:* (କ୍ରି.) : ଥଣ୍ଡାହେବା

**ଲସ୍‌ମିଆ** - *କୋ:* (ବିଂ.) : ଆର୍ଦ୍ର

**ଲସକର** - *ସୁ:* (ବି.) : ଫଉଜ

**ଲସଡ଼ିବା** - *ଦେ:* (କ୍ରି.) : ଦବିଯିବା

**ଲସମ** - *ଅନେ:* (ବି.କ୍ରି.) : କଫ, ସର୍ଦ୍ଦି, ଥଣ୍ଡା କାଶ

**ଲସରପସର** - *ଦେ:ମା:* (କ୍ରି.ବିଂ.) : ଚଞ୍ଚଳଚଞ୍ଚଳ ଚାଲିବା, ସୁଯୋଗ ଉଣ୍ଡିବା

**ଲସରା** - *ଗ:* (ବି.) : ଦ୍ରବଣ, ଧସେଇବା

**ଲସଲସାବା** - *ସୁ:* (ବି.) : ଫୁଲଫଳରେ ଭର୍ତ୍ତିହେବା

**ଲସା** - *ଅନେ:* (ବି.) : ଘା'ର ପୂଜପାଣି, ଅଠା, କ୍ଷତରୁ ହେଉଥିବା କ୍ଷରଣ, ପ୍ଲାଷ୍ଟିକ୍, ଗଛର ଘନିଭୂତ ନିର୍ଯ୍ୟାସ

**ଲସି** - *ଅନେ:* (ବି.) : ସ୍ତନାଗ୍ର, ସର୍ବତ ଦହି, କଞ୍ଚା ଆମ୍ବ ଛିଣ୍ଡେଇଲେ ବାହାରୁଥିବା ରସ

**ଲସିଆ** - *କଳା:* (ବି.) : ମଧ୍ୟମ ଧରଣର ଦେଶୀ ଆମ୍ବ

**ଲସୁନ୍** - *ନବ:* (ବି.) : ରସୁଣ

**ଲହ** - *ଅନେ:* (ବି.) : ଲତା, ଲୁହ, ଦୁର୍ବଳ ଲତା ଜାତୀୟ କାଂଡ଼, ଡଂକ

**ଲହ୍‌ରି** - *କନ୍ଧ:* (ବିଂ.) : ମୋଟା, ଟ୍ରକ୍, ଲରି

**ଲହକା** - *ଝା:ନ:* (ବିଂ.) : ଡେଂଗା, ସାମାନ୍ୟ ପବନରେ ହଲିଯାଉଥିବା, ନଇଁ ପଡୁଥିବା

**ଲହଡ଼ା** - *ଦେ:ଗ:* (ବି.) : ଢେଉ, ଲହରୀ

**ଲହପା** - *କନ୍ଧ:* (କ୍ରି.) : ରହିବା

**ଲହପିବା** - *ଗ:* (କ୍ରି.) : ହାତୀର ଚାଲି, ଗଜଗମନ

**ଲହରା** - *ନବ:* (ବି.) : କମାର

**ଲହରି** - *ଗ:* (ବି.) : ବୋଝ ବୁହା ଗାଡ଼ି, ଟ୍ରକ, ଲରି, ତରଙ୍ଗ, ଲହଡ଼ି

**ଲହର୍ ଝପର** - *ଗୌ:ନୂ:* (ବିଂ.) : ଅସଜଡ଼ା, ବିପର୍ଯ୍ୟସ୍ତ, ନାରୀଙ୍କ ଚାଲି ବିଶେଷ, ଲଣ୍ଡସଣ୍ଡ, ଲୁଗାପଟା

**ଲହସ** - *ଗଦ୍ୟ:* (ବି.) : ଝୁଙ୍କ, ଖିଆଲ

**ଲହସା** - *ଦେ:* (ବି.) : କଦଳୀଗଛର ରୋଗ ବିଶେଷ

**ଲହୁରୁଣି** - *ବା:ଦେ:ନ:* (ବି.) : ନହୁରୁଣୀ, ନଖାଗ୍ର ଛେଦନ ଯନ୍ତ୍ର

**ଲହୁର୍‌ନି** - *ନବ:* (ବି.) : କୋରଣା

**ଲହେବା** - *ସ:* (କ୍ରି.) : କାମ କରିବା

**ଲହଁକିବା** - *ସୁ:କଳା:ବ:* (କ୍ରି.) : ଚାଲି ନଦୀପାର ହେବା

**ଲହଁପିବା** - *ବ:* (କ୍ରି.) : ଅପହଂଚ ଡାଳକୁ ଧରିବା

**ଲହଁସିବା** - *କୌ:ସ:କଳା:* (କ୍ରି.) : ଲଇଁବା, ତଳକୁ ବଂକେଇବା

**ଲହଂଗ୍ ଲହଂଗ୍** - *କଳା:* (ବିଂ.) : ସିଧାସିଧା ପଳେଇବା

**ଲହ୍ଲାପୁଲା** - *କୌ:* (ବି.) : କାକୁତିମିନତି

**ଲା** - *ଯା:* (ବି.) : ପିଠା

**ଲାଇ** - *ଅ:ଗଦ୍ୟ:କଣ:* (ବି.) : ଶାଗ, ଲିଆ

**ଲାଇଅଲନ୍** - *ଗଦ୍ୟ:* (ବି.) : ସିଆଳି ପତ୍ର

**ଲାଇକ** - *ରା:ଗ:* (ବି.) : ଯୁକ୍ତିଯୁକ୍ତ, ଉପଯୁକ୍ତ ଲାଏକ

**ଲାଇକେରି** - *ସୁ:* (ବି.) ଏକରକମ ବାଇଗଣ

**ଲାଇନ୍ ମାରିବା** - *କୋ:* (କ୍ରି.) : ଟୋକା ବା ଟୋକି ପଛରେ ଗୋଡ଼ାଇବା

**ଲାଇନୁ ବେପାର** - *ଗ:* (ବି.) : ଗୋଟିକିଆ କାରବାର

**ଲାଇପେନୁ** - *ଗଦ୍ୟ:* (ବି.) : ଜଙ୍ଗଲ ଦେବତା

**ଲାଇବା** - *ରା:ଗ:ଗଜ:ଦେ:* (ବି.କ୍ରି.) : ଭର୍ତ୍ତିହେବା, ଭିତରେ ପୁରାଇବା, ସ୍ଥାପନ କରିବା, ପିନ୍ଧିବା

**ଲାଉ** - *ନ:* (ବି.) : ଲତା ଫଳବିଶେଷ

**ଲାଉଆ** - *ଦେ:ମ:* (ବିଂ.ବି.) : ଯେ କଷ୍ଟ ସହିନପାରେ, ଲାଉ, ନୌକା

**ଲାଉକରିବା** - *ସୁ:କୌ:* (କ୍ରି.) : ପିଠିରେ ଶିଶୁକୁ ପିଠେଇବା

**ଲାଉଡ଼** - *ଜ:ନ:* (ବି.) : ଲାଞ୍ଜ, ବିଛାର ବିଷାକ୍ତ ପୁଚ୍ଛ

**ଲାଏକ** - *ଅନେ:* (ବିଂ.ବି.) ଯୋଗ୍ୟ, ଉପଯୁକ୍ତ ସମର୍ଥ

**ଲାଏଜ୍** - *ସ:* (ବିଂ.) : ଲାଜ

**ଲାଏଜ୍‌କୁରୀ** - *ଝ:* (ବିଂ.) : ଲଜ୍ଜାଶୀଳା, ଲାଜକୁଳୀ

**ଲାଏଠ** - *ସୁ:ସ:କଳା:ସୁବ:* (ବି.) : ଲମ୍ବା ବାଡ଼ି, ବାଉଁଶ ଆଂକୁଡ଼ି, ଲାଠି

**ଲାଏବାନ** - *କଳା:* (ବି.) : ଲାବଣ୍ୟ

**ଲାଏର୍** - *ବ:* (ବି.) : ଚାଷ ଜମି ପାଖରେ ଥିବା ଆଶ୍ରୟସ୍ଥଳ, ଚାଷଘର, ଫାର୍ମହାଉସ

**ଲାଓ୍ବା** - *ପଦ୍ୟ:* (ବି.) : ଏକ ଜନଜାତି

**ଲାକ୍‌ଡ଼ି କୁମ୍‌ଡ଼ା** - *କୋ:* (ବି.) : ପାଣି କଖାରୁ

**ଲାକରା** - *ସୁ:* (ବି.) : ଛୋଟ ଚିତାବାଘ

**ଲାକା** - *କଣ:* (ବି.) : ଯାତ୍ରା, ପର୍ବ,ପୂଜା

**ଲାକୁସେକେ** - *ଡେ:* (ବି.) : ବୋଇତାଳୁ

**ଲାକୁସ୍ତି** - *କୋ:* (ବିଂ.) : ନେହୁରା ହେବା, ଅନୁରୋଧ କରିବା

**ଲାଖ** - *ଜ:କୌ:* (ବି.) : ଲକ୍ଷ, ଜଉ, ଏକ ଗଛର ଲସା

**ଲାଖ୍‌ହେବା** - *ଯା:* (କ୍ରି.) : ଝିଅ ବିବାହ ପାଇଁ ଉପଯୁକ୍ତ ହେବା, ଯୋଗ୍ୟ ହେବା

**ଲାଖରାଜ** - *ଗ.* (ବି.) : ନିଷ୍କର ଜମି

**ଲାଖାନ୍** - *କନ୍ଧ.* (ବି.) : ପରି

**ଲାଖିରହିବା** - *ଗ.* (କ୍ରି.) : ସଂଲଗ୍ନ ହୋଇ ରହିବା, ଲାଗି ରହିବା

**ଲାଗ** - *ଅନେ.* (ବି.) : ନାଗ, ଋଣ, କରଜ

**ଲାଗ୍‌ଖିଆ** - *ସୁ.* (ବି.) : ଋଣକର୍ତ୍ତା

**ଲାଗ୍‌ବା** - *ନ.ଦେ.* (କ୍ରି.) : କଳି କରିବା, ମାଡ଼ ଲାଗିବା

**ଲାଗ୍‌ଲଗ୍‌ତି** - *କଳା.* (ବି.) : ଋଣ-ବାଡ଼ି, ଭୂତି-କୁଟିଆ ପ୍ରଭୃତି

**ଲାଗ୍‌ସି** - *ଦେ.କଳା.କନ୍ଧ.* (କ୍ରି.) : ଲାଗେ, ମନେହୁଏ, ମନେହେବା, ଲାଗେ, ଲାଗୁଛି

**ଲାଗଣ** - *ନବ.* (ବିଂ.) : ସଂପର୍କୀୟ

**ଲାଗଣିକ** - *ଗ.* (ବି.) ବନ୍ଧୁସମନ୍ଧି, ସଂପର୍କୀୟ

**ଲାଗଣିସିଗଣି** - *କୋ.* (ବିଂ.) ଦୂର ସଂପର୍କୀୟ

**ଲାଗଡିଆ** - *ସୁ.* (ବିଂ.) : ଋଣଗ୍ରସ୍ତ

**ଲାଗପାଟ** - *ଗ.* (ବି.) : ନିକଟ, ସଂପର୍କୀୟ

**ଲାଗର୍ ଲେସର୍** - *ସ.ଦେ.ଝା.* (ବି.) : ସଂପର୍କୀୟ, ବନ୍ଧୁବାନ୍ଧବ

**ଲାଗିର** - *ସୁ.* (ଅ.) : ପାଇଁ

**ଲାଗୁଆ** - *ଅ.ବା.କୋ.* (ବିଂ.ବି.) : ନିୟମିତ ଯୋଗାଣକାରୀ, ଧାରସୂତ୍ରରେ ପାଇବା, ଭବିଷ୍ୟତରେ ପରିଶୋଧ କରିବା ଧାରା

**ଲାଗୁଆ ଗରାଖ** - *ଗ.* (ବି.) : ବକେୟା ଗ୍ରାହକ

**ଲାଗୁଆଣି** - *କୋ.ଗ.ନ.* (ବି.) : ଚୁଳି ଜାଳିବା ପାଇଁ ସରୁ କାଠି କୁଟା, ଛୁରି, ଚୁଲିରେ ନିଆଁ ଧରାଇବା ପାଇଁ ଦରକାରି ଝୁରି

**ଲାଗୁନ୍ ଶିଖୁନ୍** - *କନ୍ଧ.* (କ୍ରି.) : ଲେଖାଶିଖିବା

**ଲାଘ ହେବା** - *ଦେ.* (କ୍ରି.) : କାନ୍ଧେଇ ହେବା, ପିଠି ପାଖେ ଝୁଲିବା

**ଲାଙ୍କିଆ** - *ଗକ.ଗ.* (ବି.) : ଯୋଡ଼ି, ହଳ, ଡ଼ୋରା, ସଂପର୍କ

**ଲାଙ୍ଗ** - *ଦେ.* (ବି.) : ଶାଖାହୀନ ଲମ୍ବା କାଠଖଣ୍ଡ

**ଲାଙ୍ଗଡର** - *ଗକ.* (ବି.) : ଲଣ୍ଡନ

**ଲାଙ୍ଗା** - *ଅନେ.* (ବି.) : ଝିଅଙ୍କ ସାୟା, ବିବାହ ବେଦୀରେ କନ୍ୟାର ବସ୍ତ୍ର

**ଲାଙ୍ଗେ** - *ଦେ.ସୁ.* (ବି.) : କଟା ଖଣ୍ଡେ, ଆଖୁର ଗୋଟିଏ ଡାଙ୍ଗ

**ଲାଙ୍ଗେଲି** - *କନ୍ଧ.* (ବି.) : ଲଙ୍ଗଳ

**ଲାଙ୍ଗ୍ ଛାଟ୍** - *ଦେ.* (ବି.) : ସିଧାସଳଖ

**ଲାଙ୍ଗ** - *ଦେ.* (ବି.) : ଖଣ୍ଡ

**ଲାଛ** - *ଦେ.ଗ.* (ବି.) : ଶଗଡ଼ର ଦଣ୍ଡା, ଲୁହା ଦଣ୍ଡ ଉତପ୍ତ କରି ଦାଗ ଦେବା

**ଲାଜ୍** - *କଳା.ନୂ.* (ବି.) ଲାଜ, ଲଜ୍ଜା, ସଂକୋଚ

**ଲାଜକାରିକା** - *ଦେ.* (ବି.) : ଲାଜକୁଳୀ ଲତା

**ଲାଜୁ** - *ଗକ.* (ବି.) : ଲଜ୍

**ଲାଞ୍ଚୁ** - *ଗଜ:* (ବି.) : ଲଞ୍ଚ୍, ଡ଼ିଜେଲ୍ ଡ଼ଙ୍ଗା, ବାଷ୍ପୀୟ ନୌକା

**ଲାଞ୍ଚୁଆ ଦେହ** - *ଗ:* (ବି.) : ଯାହାର ଦେହକୁ ଭୂତପ୍ରେତ ସହଜରେ ପ୍ରବେଶ କରିପାରନ୍ତି

**ଲାଞ୍ଜି** - *ଗ:ନ:* (ବି.) : ବୃଥା ସମ୍ପର୍କ, ଢିଙ୍କିର ପଛଭାଗର ଶେଷ ଅଂଶ(ଯେଉଁଠି ପାଦ ଦେଇ କୁଟା ଯାଏ)

**ଲାଞ୍ଜିଆତରା** - *ଗ:* (ବି.) : ଧୂମ କେତୁ

**ଲାଞ୍ଜିଆ ଶବରା** - *ଗ:* (ବି.) ଏକ ଆଦିବାସୀ ଜାତି

**ଲାଟା** - *ପଦ୍ୟ:ମ:ମା:* (ବି.) : ବଣ ଜଙ୍ଗଲ, ଲଟି

**ଲାଟି** - *ଗ:* (ବି.) : ବୃଥାସଂପର୍କ

**ଲାଠି** - *ମା:କନ୍ଧ:ଖୋ:ନୂ:* (ବି.) : ବାଉଁଶ ବାଡ଼ି, ଲମ୍ବା ଦଣ୍ଡ

**ଲାଠେ** - *ସୁ:* (ବି.) : ଲାଠିଏ, ବାଡ଼ିଏ

**ଲାଡ୍** - *କଳା:ସୁବ:ଝା:ନୂ:* (ବି.) : ଆନନ୍ଦ, ଖୁସି, ଗେଲ, ବାପ ଆଦିଙ୍କର ସ୍ନେହ, ଆଦର

**ଲାଡ୍‌ଗେଲ** - *ସ:* (ବିଂ.) : ଗେହ୍ଲା, ଅଚ୍ଚାମଜା

**ଲାଡ୍‌ଲୀ** - *ଗୌ:* (ବି.) : ଗେଲ ବସର ଝିଅ, ଲାଡରୀ

**ଲାଡ଼ି** - *ମା:* (ବି.) : କ୍ଷେତରେ ଫସଲ ଜଗିବା ଘର

**ଲାଡ଼ିଆ** - *ବ:* (ବି.) : ନଡ଼ିଆ

**ଲାଡ଼ିବା** - *ଗ:* (କ୍ରି.) : ହଲାଇବା

**ଲାଣ୍** - *କଳା:* (ବି.) : ଜ୍ୟେଷ୍ଠମାସ

**ଲାଣ୍ଡିନ୍** - *ବୌ:ନ:* (ବି.) : ଲଣ୍ଡନ

**ଲାଣ୍ଡିଆ** - *ଗଜ:ଗ:* (ବି.) : ଖାଲିଖାଲି, ଅସୁନ୍ଦର, ଖୋଲାମେଲା

**ଲାଣ୍ଡି ଠୁକୁରି** - *ଗ:* (ବି.) : ମୁଣ୍ଡବାଳ ନଥିବା ସ୍ତ୍ରୀ

**ଲାଣ୍ଡୁ** - *ଗ:ଖୋ:ରା:* (ବିଂ.ବି.) : ଅଳସୁଆ, ନଣ୍ଡା, ଅମାନିଆ

**ଲାଣ୍ଡୁ କରିଦେବା** - *କନ୍ଧ:* (କ୍ରି.) : ସର୍ବସ୍ୱାନ୍ତ କରିବା

**ଲାତ୍** - *ଗଦ୍ୟ:ଝା:ବୌ:* (ବି.) : ପଦ୍ର, ପାଦ ଦ୍ୱାରା ଦିଆଯିବା ଆଘାତ, ଗୋଇଠା

**ଲାତି** - *ଦେ:* (ବି.) : ଗ୍ରହଣ କରିବା

**ଲାତେକ୍** - *ନୂ:* (ବିଂ.) : ଏକ ପାହାର

**ଲାଦାନ** - *ଦେ:* (ବିଂ.) : ଅଡିଗରିବ

**ଲାଦି** - *ଗଜ:* (ବି.) : ରନ୍ଧା ନଡ଼ିଆତେଲର ଖଦା, ଖଦଡ଼ା

**ଲାନ୍ତର** - *ନବ:* (ବି.) : ଲଣ୍ଠନ

**ଲାନ୍ତା** - *କନ୍ଧ:* (ବି.) : ଲଣ୍ଠନ

**ଲାନ୍ଥି** - *ଗ:* (ବି.) : ପେଛା

**ଲାନ୍ଦାଇ** - *ଗଦ୍ୟ:* (ବି.) : ଶୁଖିଲା ଦୁମ୍ବା ମାଂସ

**ଲାପଡ଼ା** - *କଳା:* (ବିଂ.) : ଅକର୍ମା

**ଲାପୁରି** - *ଗ:* (ବି.) : ଶାଗ ତରକାରି

**ଲାବଡ଼** - *ସୁ:ସୁବ:ବ:କଳା:* (ବି.) : ଗଛରୁ ଫଳ ଝାଡ଼ିବା ଛୋଟ ଦଣ୍ଡ, ଫଳ

ଝଡ଼େଇବା ପାଇଁ ଫୋପଡ଼ା ଯାଉଥିବା ବାଡ଼ି, ଯଷ୍ଟି,

**ଲାଭି** - *ଗ:* (କ୍ରି.) : ନାଭି, ତରୁଫଳ

**ଲାମ୍ବାସରୁ** - *କନ୍ଧ:* (ବି.) : ଲମ୍ବା ପର୍ବତ

**ଲାଲ** - *ସୁବ:କଳା:* (ବିଂ.ବି.) : ନାଲିରଙ୍ଗ, ପାଟିର ଲାଳ,

**ଲାଲ୍‌ଗୁଲଦି** - *କଳା:* (ବି.) : ଲାଲ୍‌ରଂଗର ଦେଶୀ ଧାନ ବିଶେଷ

**ଲାଲ୍‌ଚି** - *ନବ:ସୁବ:କୋ:* (ବି.) : କୁରୁତା, ଲୋଭ, ଲମ୍ବା ଅଙ୍ଗବସ୍ତ୍ର ବିଶେଷ, ଢିଲା ଜାମା

**ଲାଲ୍‌ଟିନ** - *ସ:ବର:ସୁବ:କଳା:* (ବି.) : ଲଣ୍ଠନ

**ଲାଲ୍‌ରୀ** - *କଳା:* (ବିଂ.) : ଗେନ୍ଥେଇ

**ଲାଲ୍‌ହିଆ** - *ନ:* (ବିଂ.) : ଲାଲୁଆ

**ଲାଲଠୁ** - *ଗଦ୍ୟ:* (ବି.) ଆଦିବାସୀ ସଂପ୍ରଦାୟ

**ଲାଲଭାଜି** - *ଦେ:* (ବି.) : କୋଶଳା ଶାଗ

**ଲାଳି** - *ଅନେ:* (ବି.) : କାମି, ଶଗଡ ଚକର ପରିଧିରେ ଲାଗୁଥିବା ଲୁହା ପାତ, ହାଲ, ସିନ୍ଦୂର

**ଲାଲିଆ** - *ସୁବ:* (ବିଂ.) : ନାଲି ରଙ୍ଗର

**ଲାଳି** - *ଦେ:* (ବି.) : ଅପାଛୋଡ଼ା ଧାନରେ ଥିବା କୁଟା ଅଗାଡ଼ି

**ଲାସଖାର** - *ଭ:* (ବି.) : ଶବ ସଂସ୍କାର

**ଲାହା** - *ଦେ:ରା:ବ:* (ବି.) : ରସ, ଲାଳ, ଅଠାଳିଆ ରସ

**ଲାହାଗଛ** - *କେନ୍ଦୁ:* (ବି.) : କୁସୁମ ଗଛ ମଞ୍ଜିର ତେଲ

**ଲାହାଥିପିଯିବା** - *ସ:* (କ୍ରି.) : ଖାଇବା ପାଇଁ ଲାଳସା

**ଲାହାନ୍ତା** - *ଗ:* (ବି.) : ଲଣ୍ଠନ

**ଲାହାବ** - *କଳା:* (ଅ.) : ଏକ, ପ୍ରଥମ, ଶସ୍ୟାଦି ମାପ କଲାବେଳେ ପ୍ରଥମେ ଏହି ଶବ୍ଦ ଉଚ୍ଚାରଣ କରାଯାଇଥାଏ

**ଲାହାରି** - *ଗଞ:ରା:* (ବି.) : ଟ୍ରକ୍

**ଲାହାଁସ୍** - *ନୂ:* (ବି.) : ଶବ, ଲାସ୍

**ଲାହି** - *ଟୌ:କୋ:ଦେ:ନ:* (ବି.) : ନାହି, ନାଭି

**ଲାହୀ** - *ରା:* (ବି.) : ଆମ୍ବ ଟାକୁଆରୁ ପ୍ରସ୍ତୁତ ଢାଉ

**ଲାଁଗଛାଟ** - *ଝା:* (ବି.) : ଲମ୍ବାହୋଇ ସାଷ୍ଟାଙ୍ଗ ପ୍ରଣାମ

**ଲାଁଡୁ** - *ସୁ:ଝା:* (ବିଂ.ବି.) : ଚୁଳବିହିନ, ଯାହା ମୁଣ୍ଡରେ ବାଳ ନଥାଏ, ଚନ୍ଦା

**ଲାଁଡ଼ି** - *ସ:* (ବିଂ.) : ଯେଉଁ ସ୍ତ୍ରୀର ମୁଣ୍ଡରେ ବାଳ ନାହିଁ

**ଲାଂଜିଆ** - *ଦେ:* (ବି.) : ବେଙ୍ଗଳାର ଶେଷ ମୁଣ୍ଡରେ ବନ୍ଧା ବଳଦ

**ଲାଂଜିକା** - *ଦେ:* (ବି.) : ଜୁଳୁଜୁଳିଆ ପୋକ

**ଲାଂଟର** - *ମା:* (ବି.) : ଲଣ୍ଠନ୍

**ଲିଆ** - *ଅନେ:* (ବି.) : ଖଇ, ଭୁଜା, ହୁଡୁମ୍ବ ପ୍ରଭୃତି

**ଲିଆଇବା** - *କନ୍ଧ:ନୂ:* (କ୍ରି.) : ଲିପିବା

ଲିଆଖିଆ - *ସୁ:* (ବି.) : କ୍ଷେତ ଶ୍ରମିକଙ୍କ ପ୍ରାତଃ ଭୋଜନ

ଲିଆରୀ - *ରା:ଗ:ଗଜ:* (ବି.) : ଯେ ଲିଆ ଭାଜେ ଓ ବିକେ, ଗଞ୍ଜାମର ଏକ ଜାତିବିଶେଷ

ଲିଉଆ - *ରା:* (ବି.) : ଯେ ଲିଆରେ ବିଭିନ୍ନ ଜିନିଷ ପ୍ରସ୍ତୁତ କରେ

ଲିଉଁଛିବା - *କୋ:* (କ୍ରି.) : ନିମୁଛାଇବା

ଲିଖ - *ଅନେ:* (ବି.ବିଂ.) : ଉକୁଣୀର ଅଣ୍ଡା, ନିଖି

ଲିଖନ୍ - *ସୁ:* (ବି.) : ବେଣ୍ଟ ବିହୀନ ବଟାଳି, ସ୍ଲେଟ୍

ଲିଗର - *ଚର:* (ବିଂ.) : ସରୁ ଅଥବା ପତଳା ଅର୍ଥରେ

ଲିଗା - *ଗଜ:* (ବି.) : ସୁବିଧା

ଲିଗାକରିବା - *ରା:* (କ୍ରି.) : ସତ୍ୟ କଥାର ଆଧାରରେ ଅସତ୍ୟ କାମ କରିବା

ଲିଗୁ - *ଦେ:* (ବି.) : ମୂର୍ଖବ୍ୟକ୍ତି

ଲିଙ୍ଗୁଣା - *ଅ:ଗଦ୍ୟ:* (ବି.) : ଏକପ୍ରକାର ଶାଗ

ଲିଚୁ - *ଦେ:ଖୋ:* (ବି.) : ଏକପ୍ରକାର ଫଳ, ଏକ କୋଳି

ଲିଜ୍ - *ସ:* (କ୍ରି.) : ଜମିପଟ୍ଟା, ସାମୟିକ ଅନୁମତି

ଲିଟି - *ଅନେ:* (ବିଂ.ବି.) : କ୍ଷୁଦ୍ର, କୋଇଲି, ଚଟିଆ ଭଳି କ୍ଷୁଦ୍ର ଚଢେଇ ବିଶେଷ, କେଶ ଗୁଚ୍ଛ, ଶିଖା

ଲିଡ୍‌ରି ପିଡ୍‌ରି - *କନ୍ଧ:* (ବି.) : ଚିରାଲୁଗା

ଲିତା - *ଗୌ:ଦେ:କଳା:* (ବି.) : ସଂକୁଡ଼ି, ଅଇଁଠା

ଲିତା ଲୁଣ୍ଡା - *ଗୌ:* (ବି.) : ଗୋବର ପାଣିରେ ଲିପା ପୋଛା

ଲିପ୍‌ଲିପା - *କଳା:* (ବିଂ.) : ଅତିପତଳା ଓ ନମନୀୟ

ଲିପନ୍ - *କନ୍ଧ:* (ବି.) : ଚିକ୍କଣ, ଲିପାପୋଛା

ଲିପନା - *ସୁ:* (ବି.) : ସଫା କରିବା କପଡ଼ା, ଲିପାକନା

ଲିପାପୁଛା - *ଝା:* (କ୍ରି.) : ମାଟି ଗୋବର ପାଣିରେ ଲିପିବା ସହ ପୋଛିବା

ଲିପି - *ମ:* (ବି.) : ପ୍ରଜାପତି, ବର୍ଣ୍ଣମାଳା

ଲିଫିଲିଫି - *ଗ:* (ବି.) : ଅଳ୍ପବୃଷ୍ଟି, ଝିପିଝିପି

ଲିମ - *ଗ:କୋ:କଳା:ସ:* (ବି.) : ନିମ୍ବ

ଲିମକଣ୍ଟା - *ଗ:* (ବି.) : କବାଟର ଦୁଇ ପଟାକୁ ଯୋଡ଼ିବା କଣ୍ଟା, କୁଗୁଳି କଣ୍ଟା

ଲିମିଯିବା - *କୋ:* (କ୍ରି.) : ବନ୍ଦ ହୋଇଯିବା, ଲିଭିଯିବା

ଲିସ୍‌ନି - *ଗୌ:* (ବି.) : ନିଶୁଣି, ଶିଡ଼ି

ଲିସା - *ଗଦ୍ୟ:ଅ:* (ବି.) : ଗଛର ରସ, ଲସା

ଲିହିତ - *ଦେ:* (ବି.) : ଲିଖିତ, ନିହିତ

ଲିଂଗା - *କଳା:* (ବି.) : ଗଣ୍ଡମାନଂକ ଦ୍ୱାରା ଉପାସିତ ଦେବତା ବିଶେଷ

ଲୁଅ - *ଜ:* (ବି.) : ଲୁହ, ଅଶ୍ରୁ

ଲୁଇ - *ଦେ:ବ:ସୁ:* (ବି.) : କଅଁଳାବାଛୁରୀ (ପ୍ରା), ଦାମୁଡ଼ି, ନବଜାତ ବାଛୁରୀ

**ଲୁଇଲ୍** - *ଚ:* (ବି.) : ଛଣରେ ତିଆରି ଦଉଡ଼ି
**ଲୁଇଁ ଯିବା** - *ସ:* (କ୍ରି.) : ନଇଁ ଯିବା
**ଲୁକ** - *କୋ:* (ବି.) : ଜଣ, ଲୋକ, କୁଲି
**ଲୁକ୍‌ନିଆ** - *କଳା:* (ବି.) : ଗୋପନ ଭାବରେ, ଲୁକ୍କାୟିତ ଭାବେ
**ଲୁକ୍‌ବା** - *ଦେ:ସ:* (କ୍ରି.) : ଲୁଚିବା
**ଲୁକ୍‌ମା** - *କଳା:* (କ୍ରି.) : ଲୁଚିବା
**ଲୁକ୍‌ଲୁକାନି** - *ଅନେ:* (ବି.) : ଲୁଚକାଳି ଖେଳ, ଏକ ପ୍ରକାର ଖେଳ
**ଲୁକ୍‌ଶାନ** - *ଅନେ:* (ବି.) : କ୍ଷତି, ନଷ୍ଟ
**ଲୁକାନୀ** - *କଳା:* (ବି.) : ଲୁଚେଇବା ପ୍ରକ୍ରିୟା, ଲୋକଖେଳର ପ୍ରଣାଳୀ ବିଶେଷ
**ଲୁକୁଡ଼ା** - *ଗଦ୍ୟ:* (ବି.) : ଛିଣ୍ଡାଲୁଗା
**ଲୁକୁଲୁକାଣି** - *ଗ:* (ବି.) : ପିଲାଙ୍କ ଲୁଚକାଳି ଖେଳ
**ଲୁକେଇ** - *କଳା:* (କ୍ରି.) : ଲୁଚାଇ, ଗୋପନ ଭାବରେ ରଖି
**ଲୁଗ୍, ଲୁକ୍** - *ମା:* (ବି.) : ଲୋକ
**ଲୁଗ୍‌ଳି** - *ମ:* (ବି.) : ଲୁଗା
**ଲୁଙ୍ଗା** - *ଗ:ରା:ଦେ:ନ:* (ବିଂ.ବି.) : ସ୍ତ୍ରୈଣ, କାମୁକ (ବ୍ୟକ୍ତି), ଲୁଙ୍ଗୁଡ଼ା
**ଲୁଙ୍ଗାମୁହାଁ** - *ନ:* (ବି.) : ଏକପ୍ରକାର ଗାଳି; ଭୁଲ କରି ଚୁପ୍‌ଚାପ୍ ରହିଥିବା, ପୋତାମୁହାଁ
**ଲୁଙ୍ଗି** - *ଅନେ:* (ବି.) : ପୁରୁଷଙ୍କ ପିନ୍ଧାବସ୍ତ୍ର
**ଲୁଚା** - *ମା:ଦେ:* (ବିଂ.ବି.) : ଲୋଚା, ଗୁପ୍ତ
**ଲୁଚାଛପା** - *ଦେ:* (ବି.) : ଗୋପନ, ଲୁଚିଛପି
**ଲୁଜ୍‌କି ମାରିବା** - *କଳା:* (କ୍ରି.) : ଓଜନିଆ ଭାର ବୋହିବାବେଳେ ଦ୍ରୁତ ଗତିରେ ପାଦ ପକାଇବା
**ଲୁଟ୍‌ନା** - *କନ୍ଧ:* (କ୍ରି.) : ଶୋଇଲା
**ଲୁଟା** - *ଅନେ:* (ବି.) : ଡାଳ, ଅନାବନା ଘାସ
**ଲୁଟିବା** - *ଅନେ:* (କ୍ରି.) : ବଳପୂର୍ବକ ଜିନିଷ ଛଡାଇନେବା, ଲୁଣ୍ଠନ
**ଲୁଟେରାମି** - *ସ:* (ବି.) : ଠକାମି
**ଲୁଡ୍‌କି** - *କଳା:* (ବି.) : ଅଜାଗଳ ସ୍ତନ
**ଲୁଡ୍‌ବୁଡ଼** - *ଦେ:* (ବି.) : ଏପାଖସେପାଖ ହେବା, ଦୋଦୋପାଞ୍ଚ
**ଲୁଡ଼ି ଆଣିବା** - *କୋ:* (କ୍ରି.) : ବରଣ କରିବା, ଡାକି ଆଣିବା, ଲୋଡ଼ି ଆଣିବା
**ଲୁଡ଼ିବା** - *କୋ:ନବ:* (କ୍ରି.) : ଖୋଜିବା, ଉତ୍ସବରେ ନିମନ୍ତ୍ରଣ କରିବା
**ଲୁଡୁ ଫଳ** - *ନୂ:* (ବି.) : କଣ୍ଟି କୋଇଲି ଜାତୀୟ ଏକ ଛୋଟ ଫଳ
**ଲୁଡା** - *ନୂ:* (ବି.) : ବାଟିବା ପାଇଁ ବ୍ୟବହୃତ ହେଉଥିବା ଛୋଟ ଗୋଲାକାର ପଥର ଖଣ୍ଡ, ଶିଳ
**ଲୁଣକାଠୁଆ** - *ସ:ଗ:* (ବି.) : ଲୁଣ ରଖା କାଠପାତ୍ର
**ଲୁଣକୁଣ୍ଡି** - *ନ:* (ବି.) : ଲୁଣ କାଠୁଆ
**ଲୁଣ ଲୁଣକା** - *କେ:* (ବି.) : ଏକ ପ୍ରକାର କୋଳି ଗଛ

**ଲୁଣା ଜଙ୍ଗଲ** - *ସଂ* (ବି.) : ସମୁଦ୍ର କୂଳସ୍ଥ କୃତ୍ରିମ ଜଙ୍ଗଲ

**ଲୁଣିପାଟ** - *ଲ* (ବିଂ.) ସମୁଦ୍ରପାଣି ମାଡ଼ିଯାଉଥିବା ଜମି

**ଲୁଣ୍ଡକିବା** - *ଗ* (କ୍ରି.) : ଧାନ ଅମଳ ପରେ ଜମିରୁ ଶଶ୍ୟ ବାଛିବା

**ଲୁଣ୍ଡା** - *ଅନେ* (ବି.କ୍ରି.) : ଲିପାପୋଛାର କନା, ପାଳ ଇତ୍ୟାଦିର ବିଡ଼ା, ଛୁଅଁକନା

**ଲୁଣ୍ଡାକିଆରି** - *ଗ* (ବି.) : ଗାଁ ପାଖ କିଆରି, ଜମି

**ଲୁଥିଲୁଥିଆ** - *ସ* (ବିଂ.) : ମୋଟା ଝୋଳ

**ଲୁଦୁ ବଏଁରା** - *ଚୌ* (ବି.) : ମାଛ ବିଶେଷ

**ଲୁଦୁବୁଦୁ** - *ଗ.ଝା* (ବି.) : ଅଗ୍ନିମାନ୍ଦ୍ୟ, ଅଜୀର୍ଣ୍ଣ ରୋଗ

**ଲୁଧା** - *ରା* (ବିଂ.) : ମୋଟା

**ଲୁନ୍ଦୁପନ୍ଦୁ** - *ରା* (ବି.) : ଠେଲାପେଲା

**ଲୁପ୍‌ଲୁପିବା** - *କଳା* (କ୍ରି.) : ସୁନ୍ଦର ଭାବରେ ପଲ୍ଲବିତ ହେବା, ଛନଛନିଆ ହେବା

**ଲୁବ** - *କନ୍ଧ* (ବି.) : ଲୋଭ

**ଲୁବ୍‌ଧିଆ** - *ସୁ* (ବିଂ.) : ଲୋଭୀ ଚୋର

**ଲୁଭ୍‌ନୀ** - *ଚୌ* (ବିଂ.) : ଲୋଭୁଣୀ

**ଲୁଲୁହା** - *କେନ୍ଦୁ* (ବି.) : ହାତ ପାପୁଲିର ଓଲଟିଆ ପଟ

**ଲୁଲେଟା** - *କଳା* (ବିଂ.) : ସ୍ତ୍ରୀ ସହବାସରେ ଅକ୍ଷମ

**ଲୁଳ** - *କୋ* (ବି.) : ଶସ୍ୟରେ ପୋକ ଲାଗି ବିଣ୍ଡା ହୋଇଥିବା ଅବସ୍ଥା

**ଲୁଳି** - *ଗ* (ବି.) : କର୍ଣ୍ଣ ଅଳଙ୍କାର, ନୋଳି

**ଲୁଳିବା** - *ଗ* (କ୍ରି.) : ଲମ୍ବିବା, ଦୋହଲିବା

**ଲୁଳିଯିବା** - *କୋ.ଗଜ* (କ୍ରି.) : ମଉଳିଯିବା

**ଲୁହାଗଡ୍** - *କଳା* (ବି.) : 'ଧରୁଆ' ଗଣ୍ଡ ସଂପ୍ରଦାୟର ବଂଶବିଶେଷ

**ଲୁହାଟିଆ** - *ସୁ* (ବିଂ.) : ଲୁହାଗୁଣ, ଲୁହାଳିଆ

**ଲୁହା ନତା** - *ଭ* (ବି.) : ଲୁହା ଜିନିଷ, ଲୁହାଲତା

**ଲୁହୁଙ୍ଗା** - *ସୁ* (ବି.) : ଅତି ଢିଲା

**ଲୁଂଘା** - *ଚୌ* (ବି.) : ନିର୍ଲଜ୍ଜ ଗୋଡ଼ାଣିଆ

**ଲେଉଆ** - *ଢେ* (ବି.) : ବଢିଆଳ, ଆତ, ନେଉଆ

**ଲେଉଟ** - *ନ* (ବି.) : ଫେରିବା

**ଲେଉଡ଼ା** - *ଅ* (ବିଂ.) : ଲୋଭୀ, ଲଂପଟ

**ଲେକ୍‌ନା** - *କନ୍ଧ* (କ୍ରି.) : ଭାଙ୍ଗିବା

**ଲେକ୍‌ରି** - *ସ* (ବିଂ.) : ଛିଣ୍ଡାଲୁଗା

**ଲେକଟ** - *ସୁ* (ବି.) : ସାନ ମହୁମାଛି

**ଲେକା** - *ଚୌ* (ବିଂ.) : ନରମ

**ଲେକା ଭାତ** - *ଚୌ* (ବି.) : ମଣ୍ଡ ଛାଡ଼ି ନଥିବା ଭାତ, ପେଜୁଆ ଭାତ

**ଲେକାର** - *ସୁ.ସ* (ବିଂ.) : ମଇଳା

**ଲେଖ୍‌ମାଁ** - *ଚୌ* (କ୍ରି.) : ଲେଖିବା

**ଲେଖାରି** - *କୋ* (ବିଂ.) ଲେଖୁଥିବା (ବ୍ୟକ୍ତି)

**ଲେଖେ** - *ସୁ* (ଅ.) : ପରି

**ଲେଖେନ୍** - *କଳା.କେନ୍ଦୁ* (ବି.ଅ.) : ପରି, ଭଳି

**ଲେଗା** - *ଦେ:* (ବିଂ.) : ଚେପ୍‌ଟା

**ଲେଗାବାର୍** - *ସୁବ:* (କ୍ରି.) : ଠିକଣା ଜବାବ, ଠିକଣା କାର୍ଯ୍ୟ ଆଦି କରିବା, କିମ୍ବା ଏପରି କରିବା ପାଇଁ ଅନ୍ୟକୁ ଉତ୍ସାହିତ କରିବା

**ଲେଙ୍କରା** - *ଗ:* (ବିଂ.) : ଚିରା, ଜୀର୍ଣ୍ଣଶୀର୍ଣ୍ଣ

**ଲେଙ୍ଗଡା** - *ବୌ:* (ବିଂ.) : ଛୋଟା

**ଲେଙ୍ଗିଡି ମେଣ୍ଡି** - *ପୁ:* (ବିଂ.) : ହୀନ, ତୁଚ୍ଛ ବ୍ୟକ୍ତି

**ଲେଚ୍‌କେଇବା** - *ନୂ:* (କ୍ରି.) : ବଙ୍କେଇ ଚାଲିବା

**ଲେଛା** - *କଳା:ବୌ:* (କ୍ରି.ବିଂ.) ଦଂଶନ କରିବା, ଅଶୌଚ

**ଲେଛା ମାରିବା** - *ବୌ:* (କ୍ରି.) : ପାଣିରେ ଶୌଚ ନହେବା

**ଲେଛିବା** - *ଦେ:ସୁ:ବ:* (କ୍ରି.) ଛାଡ଼ିବା, ପୋଛିବା, ଅବଜ୍ଞା କରିବା

**ଲେଛେଇ ଦେବା** - *ସ:* (କ୍ରି.) : ମାରିବା

**ଲେଛେଇବା** - *କଳା:ବ:* (କ୍ରି.) ନିଆଁ ଲଗାଇବା, ଛୁଇଁବା, ସ୍ପର୍ଶ କରିବା, ଗୁପ୍ତକଥା ବାହାରେ ପ୍ରକାଶ କରିଦେବା

**ଲେଜ୍** - *କନ୍ଧ:* (ବି.) : ଲାଜ

**ଲେଞ୍ଚ** - *କ:* (ବି.) : ସାଧାରଣ, ବିପଦଯୁକ୍ତ

**ଲେଞ୍ଚସା** - *ସ:* (ବି.) : ଚିତାବାଘ

**ଲେଞ୍ଜରା** - *ଅନେ:* (ବି.) : ଆଖିର ମଇଳା, ଜଞ୍ଜାଳ, ଚେଙ୍ଗ, ଛୁଆ

**ଲେଞ୍ଜରିଆ** - *ବୌ:* (କ୍ରି.) : ଶେଷ

**ଲେଞ୍ଜରୁ** - *ସୁ:* (ବି.) : ଡେରିରେ କରିବା ବ୍ୟକ୍ତି, ଦୀର୍ଘସୂତ୍ରୀ

**ଲେଞ୍ଜା** - *ଦେ:* (ବି.) : ହେଟାବାଘ

**ଲେଟ୍‌କୋଛା** - *ନୂ:* (ବି.) : ଲତା ଜାତୀୟ ଏକ ପରିବା ଫଳ, ଲତାର ପ୍ରତ୍ୟେକ ଗଣ୍ଠିରେ ଫଳିଥିବା ଫଳ

**ଲେଟ୍‌ଲେଟା** - *କନ୍ଧ:* (କ୍ରି.) : ସିଝି ଅଠାଳିଆ ହେବା

**ଲେଟି** - *ମା:* (ବି.) : ବିଳମ୍ବ, ଲେଟ୍

**ଲେଟୁମାରିବା** - *ଗ:* (କ୍ରି.) : ବସ୍ତାଗଦେଇ ରଖିବା

**ଲେଠରି** - *ସ:* (ବିଂ.) : ଯିଏ ଧୀରେଧୀରେ କାମକରେ, ମଠୁଆ

**ଲେଠରିଏନ୍** - *ସ:* (ବିଂ.) : କାମରେ ବିଳମ୍ବ କରୁଥିବା ନାରୀ

**ଲେଡିକିନି** - *ଭ:* (ବି.) : ମିଠାବିଶେଷ

**ଲେଡୁଆ** - *କଳା:* (ବି.) : ଲେଡି, ଗୋଇଠି

**ଲେଡ଼ାଗୁଡ୍** - *କଳା:* (ବି.) : ଜମାଣିଗୁଡ଼, ଭେଲା ହୋଇ ନ ପାରିବା ଗୁଡ଼

**ଲେଡ଼ି** - *ଅନେ:* (ବି.) : ପାପୁଲି, ନେଡ଼ି, ଗୋଇଠି, ଲେଡୁଆ

**ଲେଣି** - *କୋ:* (ବି.) : ଲାଞ୍ଜ

**ଲେଣ୍ଟ** - *କ:* (ବି.) : ଜଞ୍ଜାଳ

**ଲେଣ୍ଡି** - *ପୁ:ଗଦ୍ୟ:* (ବିଂ.) : ନେଣ୍ଡି, ଛୋଟ, ହୀନ, ତୁଚ୍ଛ, ଅକର୍ମା

**ଲେଣ୍ଡି** - *ଅନେ:* (ବି.) : ଛେଳି ପ୍ରଭୃତିଙ୍କ ମଳ

**ଲେଣ୍ଡିଆ** - *ଗୌ* (ବି.) : ପାଳ ଦଉଡ଼ି, ନେଣ୍ଡୁଆ, ନଡ଼ା ବା ପାଳର ନିଆଁ ବଇଠା

**ଲେଣ୍ଡୁ** - *ଦେ.ଅ.* (ବି.ବିଂ.) : ପୁଚ୍ଛବିହୀନ, ଅଳସୁଆ

**ଲେଣ୍ଡ୍ରେ ପେଣ୍ଡ୍ରେ** - *କଳ.* (ବି.) : ମାଳମାଳ

**ଲେତାଗୁତା** - *ନୂ.ସ.* (ବିଂ.ବି.) : ସଂପର୍କିୟ ବନ୍ଧୁ ବାନ୍ଧବ , ଲତାବିଲତା

**ଲେତି** - *ଅନେ.* (ବି.) : ଗଛରେ ପାଚି ତଳେ ପଡୁଥିବା ଆମ୍ବ

**ଲେଦ୍ରା** - *ନୂ.* (ବି.) : ମାଛ ବିଶେଷ

**ଲେଥା** - *ଅନେ.* (ବି.) : କାଂଜିଖଟା, ଶୁଖିଲା ବାଇଗଣରେ ପ୍ରସ୍ତୁତ ଏକ ଖାଦ୍ୟ, ଆମ୍ବିଳା ତରକାରି, ଆମ୍ବୁ ଲ ବାଇଗଣ ଆଦି ଦେଇ ରନ୍ଧାଯାଉଥିବା ଖଟା

**ଲେଥାତୁନ୍** - *ସ.* (ବି.) : ଆମ୍ବିଳ, ଏକ ପ୍ରକାର ଖଟା ତିଅଣ

**ଲେଦରା** - *ସୁ.* (ବି.) : ନଇଁ ଯାଇଥିବା ଛାତ ଆଦି

**ଲେଦା** - *ସ.ଦେ.କଳା.* (ବି.ବିଂ.) : ଯେଉଁ ବାଡ଼ିରେ ଆମ୍ବ ଜାମୁକୋଳି ଝଡ଼ାଯାଏ, ଅଳସୁଆ

**ଲେନ୍ଦୁ** - *ରା.* (ଅ.) : ନାହିଁ

**ଲେଧିକା** - *ଅ.* (ବିଂ.) : ମୋଟା

**ଲେନ୍‌ଝା** - *ଗୌ.* (ବି.) : କୋକିଶିଆଳି

**ଲେନ୍‌ଦେନ୍** - *ସୁବ.ନୂ.* (ବି.) : ଦେବାନେବା, ନେଣଦେଣ

**ଲେପ୍‌ସା** - *ସୁ.* (ବିଂ.) : ବଙ୍କା

**ଲେପ୍‌ସି** - *ଦ.* (କ୍ରି.) : ଭାରରେ ନଇଁ ପଡ଼ିବା

**ଲେପଟ** - *ସୁ.* (ବିଂ.) : ଅଳସୁଆ

**ଲେପଟି** - *ସୁ.* (ବିଂ.) : ଅଳ୍ପ ଉଚ୍ଚ

**ଲେପା** - *ଗୌ.ବର.* (ବିଂ.) : ଚେପା, ବଙ୍କା

**ଲେପାବାର** - *ସୁବ.* (ବି.) : ଆଲୁମିନିୟମ ବାସନ, ଟିଣ ତମ୍ବାପାତ ଆଦି ଯୋଡ଼ିବା

**ଲେପେର** - *ସୁ.* (ବି.) : ବର୍ଷାଦିନିଆ ଏକ ଶାଗ

**ଲେଫ୍‌ରା** - *ଗୌ.* (ବି.) : ଖୋଲା, ସୁବିଧା ଜନକ ଭାବେ ବସିବା

**ଲେଫଡ଼ା** - *ଅ.ଦେ.* (ବିଂ.ବି.) ଯେ ସବୁବେଳେ ଦାନ୍ତ ଦେଖାଇ ହସେ, ନେଫେଡ଼ା

**ଲେଫଡ଼ିହେବା** - *ଦେ.* (କ୍ରି.) : ଦୈନ୍ୟଭାବ ଦେଖାଇ ପ୍ରାର୍ଥନା କରିବା

**ଲେଫରା** - *ସୁ.* (ବିଂ.) : ଓସାରିଆ

**ଲେଫାବା** - *ସୁ.* (କ୍ରି.) : ବଙ୍କା କରିବା

**ଲେବ୍‌ଡ଼ୀ** - *କଳା.* (ବିଂ.) : ଛୋଟୀ

**ଲେବଡ଼ା** - *ଗ.* (ବିଂ.) : ଲମ୍ପଟ

**ଲେବେକେ** - *ଢେ.* (କ୍ରି.) : ଶୋଇବା

**ଲେମ୍ବର** - *ଗୌ.* (ବି.) : ଲେମ୍ବୁ

**ଲେମ୍ବହଭ** - *ସ.ସୁବ.* (ବି.) : ଲେମ୍ବୁ

**ଲେମ୍ବୁ କଣ୍ଟା** - *ଗ.* (ବି.) : ଦୁଇ ପଟାକୁ ଯୋଡ଼ିବା କଣ୍ଟା

ଲେରାଖାଇ - *ସ.* (ବିଂ.) : ଲୋଭୀ ପ୍ରକୃତିର ସ୍ତ୍ରୀ, କୃପଣ

ଲେଲେଇ - *ଢେ.* (ବି.) : ନିଆଁ

ଲେଲେଙ୍ଗରା - *ସ.* (ବି.) : ଘରରସବୁ କାମ

ଲେଲେର - *ସୁବ.* (ବିଂ.) : କାଶତଣ୍ଡୀ ଲତା

ଲେଲୋଟ୍ - *ନୂ.* (ବିଂ.) : ନିଶାଗ୍ରସ୍ତ

ଲେଲ୍ଲୁ - *ବ.* (ବିଂ.) : ଦୁର୍ବଳ, ଅପାରଗ ବ୍ୟକ୍ତି, ପଙ୍ଗୁ

ଲେଶମା - *ଅ.* (ବିଂ.) : ମାନ୍ଦା

ଲେଷିଡ଼ି - *ଅ.* (ବିଂ.) : ଅତ୍ୟନ୍ତ ଦୁର୍ବଳ

ଲେସ୍‌ଡିଆ - *ବ.* (ବିଂ.) ଅଳସୁଆ, ଦୁର୍ବଳିଆ, ଅନାଗ୍ରହୀ

ଲେସଢ଼ା - *କୋ.ଗୌ.ଗ.* (ବିଂ.) : କଂଜୁସ୍, ଖର୍ଚ୍ଚ କରିବାକୁ କୁଣ୍ଠିତ, ଘଷରା, ନିର୍ଲଜ୍ଜ

ଲେହି - *ସ.ଗଦ୍ୟ.ଦେ.* (ବିଂ.ବି.) : ସଂକୀର୍ଣ୍ଣମନା, ଲୋଭୀ ପ୍ରକୃତିର ଲୋକ, ଅଠା, ମଣ୍ଡ

ଲେହିଜେ - *ଢେ.* (କ୍ରି.) : ଗାଳିଦେବା

ଲେହିଁବା - *କୋ.ଗ.* (କ୍ରି.) ଚାଟିବା, ଜିଭଦ୍ୱାରା ଖାଇବା, ଲେହନ କରିବା

ଲେହୁ - *ଜଲା.ଗୌ.* (ବି.) : ମହୁ, ମଧୁ

ଲେହେଙ୍କା - *ଗୌ.ନ.* (ବିଂ.) : ପତଳା ଓ ଡେଙ୍ଗା

ଲେହେଙ୍ଗା - *ନ.* (ବି.) : କନ୍ୟା ବିବାହ ମଣ୍ଡପରେ ପିନ୍ଧିବା ବସ୍ତ୍ର ଯାହା ନାନା ସୂକ୍ଷ୍ମ କାରୁକାର୍ଯ୍ୟରେ ପରିପୂର୍ଣ୍ଣ

ଲେହେଟିଆ - *ସୁ.* (ବିଂ.) : ଲେଉଟିବା, ଲେହୁଟିବାଲା

ଲେହେଣ୍ଡି - *ଗୌ.* (ବି.) : ଏକ ପ୍ରକାର ଦୋଳି ଖେଳ

ଲେହେଁଟିବାର - *ସୁବ.* (କ୍ରି.) : ଓଲଟି ପଡ଼ିବା

ଲେହେଁଟେଇବା - *ନୂ.* (କ୍ରି.) : ଆଉଡ଼ାଇବା

ଲେହେଂଗା - *ଜଲା.* (ବି.) : ଉଚ୍ଚ ଓ ପତଳା ବ୍ୟକ୍ତି

ଲୈଁଢଟେକା - *ସୁ.* (ବିଂ.) : ଯିବା ପାଇଁ ପ୍ରସ୍ତୁତ

ଲୈଁଢରୁ - *ସୁ.* (ବି.) : ଭିଡ଼କାମ ପଡ଼ିରହିବା

ଲୈଁଝା - *ସୁ.ଝା.* (ବି.) : ଗଧିଆ

ଲୈଁଢ଼ଗିଁବା - *ସ.* (କ୍ରି.) : ଗୋଡ଼ାଇବା

ଲୈଂଢା - *ଜଲା.* (ବି.) : ଗଧିଆ, ବଣ୍ୟ ହିଂସ୍ର ଜନ୍ତୁ ବିଶେଷ

ଲୈଂଢି - *ଗୌ.କନ୍ଧ.* (ବି.) : ଆଡ଼ିବନ୍ଧର ଶେଷଭାଗ, ଲାଞ୍ଜ

ଲୈଂଢକି - *ସୁ.* (ବି.) : ସାନଶିଶୁ

ଲୈମ୍ବୁ - *ଜଲା.* (ବି.) : ଲେମ୍ବୁ

ଲୋଭରା - *ନବ.* (ବିଂ.) : ଲୋଭୀ

ଲୋଏ - *ଜଲା.* (ବି.) : ଲୟ

ଲୋକବାଗ୍ - *ସ.* (ବି.) : ବନ୍ଧୁବାନ୍ଧବ, ଲୋକବାକ

ଲୋକଲାଏଜ - *ସୁବ.* (ବି.) : ଲୋକ ଦେଖାଣିଆ

ଲୋଗେ - *ମା.* (ଅ.) : ନିକଟ, ପାଖ

ଲୋଚା - *ଢ.ଗଦ୍ୟ.ସୁ.ଢ.* (ବିଂ.) : ନଷ୍ଟଚରିତ୍ର, ଡ଼ରୁଆ, ମୋଡିମାଡ଼ି, ଲୋଚାକୋଚା

**ଲୋଟଭ** - *ଢେ:* (ବି.) : ମାଟି

**ଲୋଡ଼ାପରବ** - *ଗ:* (ବି.) : ପର୍ବପର୍ବାଣି

**ଲୋଡ଼ା ଶକୁଳା** - *ଯା:ଜ:* (ବି.) : ବରଘରୁ କନ୍ୟାଘରକୁ ପ୍ରଥମ ଭାର ବେଭାର

**ଲୋଡ଼ିବା** - *ଖୋ:ଗ:ଢ଼:ନ:* (କ୍ରି.) : ନିମନ୍ତ୍ରଣ କରିବା, ଖୋଜିବା

ଲୋଡ଼ୋଖୋଚୋ - *କଳା:* (ବିଂ.) : ଦୁର୍ବଳ (କାର୍ଯ୍ୟ), ଆନ୍ତରିକତା ନ ଥିବା (କାର୍ଯ୍ୟ)

**ଲୋତା** - *ଅ:* (ବିଂ.) : ପୋତାଧନ

**ଲୋଧା** - *ମ୍ୟ:* (ବି.) : ଉତ୍ତର ଓଡିଶା ଓ ପଶ୍ଚିମବଙ୍ଗ ସୀମାନ୍ତରେ ବାସ କରୁଥିବା ଏହି ଆରଣ୍ୟକ ଆଦିବାସୀ

**ଲୋରାହେବା** - *ସୁ:* (କ୍ରି.) : ଖୋଜିବା

**ଲୋରି** - *କଳା:ମା:* (ବି.) : ଶସ୍ୟ ଅମଳ ପର୍ବ, ନାନାବାୟା ଗୀତ, ବଡ଼ଚ୍ରକ, ଲରି

**ଲୋଳ** - *ଗ:* (ବି.) : ଚାଉଳର ପୋକ

**ଲୋଳମୁକୁଟ** - *ଗ:* (ବି.) : ବିବାହର ମୁକୁଟ

**ଲୋଳା** - *ନ:* (ବି.) : ଠେଙ୍ଗା, ବାଡ଼ିରେ ହୋଇଥିବା ମାଡ଼ ଚିହ୍ନ

**ଲୋହରା** - *ଅ:* (ବି.) : ଲୁହୁରା କମାର ଜାତି

**ଲୋହି** - *ଦେ:ଗ:ଦ୍ୟ:ଖୋ:* (ବି.) : ମୋଟାଶୀତ ଚଦର, ମୋଟା ଅଥଚ ନରମ ପଶମର ଚାଦର

ଲୋହୁ - *ସୁ:* (ବି.) : ଲାଭ

**ଲଂଘାଖାଉ** - *ସୁ:* (ବି.) : ଲାଂଚୁଆ

**ଲଂଘାଲଂଘି** - *ଦେ:* (ବିଂ.) : ଡିଆଁଡେ଼ଇଁ

**ଲଂଘିବା** - *ଦେ:* (ବିଂ.) : ରାଜି ନହେବା

**ଲଂଜିକା** - *ଦେ:* (ବିଂ.) : ବେଶ୍ୟା

**ଲଂବାଚଉଡ଼ା** - *ସୁ:* (ବିଂ.) : ଆଡ଼ମ୍ବର ପୂର୍ଣ୍ଣ, ଆଡ଼ଦୀର୍ଘ

**ଲହଁପିଆ** - *ସ:* (ବିଂ.) : ହାତ ପାଆନ୍ତା

# ଶ

**ଶଅଣା** - *ଯା:* (ବି.) : ତରଳ ପରେ ଗରମ ସୁନାକୁ ଉଠାଇବା ଯନ୍ତ୍ର

**ଶଅର** - *ନ:* (ବି.) : ଏକଜାତିର ନାମ, ଶବର

**ଶଅରୁଣୀ** - *କେ:* (ବି.) : କେଳାର ସ୍ତ୍ରୀ, ଶବରୁଣୀ

**ଶଇତମ୍ବା** - *ମ:* (ବି.) : ପିଜୁଳି, ସତ୍ୟାମ୍ବା

**ଶଇଳ** - *ଢ:ଦେ:ଭ:ଯା:* (ବି.) : ଶୈଳ, ପର୍ବତ

**ଶଉଚ** - *ଦେ:* (ବି.) : ଶୌଚ

**ଶଉଲ୍** - *କଳା:* (ବି.) : ଶେଉଳ ମାଛ

**ଶଏନ୍** - *କଳା:* (ବି.) : ଶନି, କଷ୍ଟ, ଜଂଜାଳ

**ଶଏନ୍‌ବାର୍** - *କଳା:ନୂ:* (ବି.) : ଶନିବାର

**ଶଏହେବାର** - *ସୁବ:* (କ୍ରି.) : ବେଶିହେବା

**ଶକତ୍** - *କଳା:* (ବି.) : ଶକ୍ତି, ବଳ, ତାକତ୍

**ଶକତି** - *ଅନେ:* (ବି.) : ବଳ, ଶକ୍ତି

**ଶକଶକା** - *ସୁବ:* (ବିଂ.) : ଅତି ଗେଲବସର, ସ୍ନେହର ପାତ୍ର

**ଶକାଦାନ** - *ପଦ୍ୟ:* (ବି.) : ଡାଳିମ୍ବ

**ଶକୁଆ** - *କଳା:* (ବି.) : ଶୁଖୁଆ, ଶୁଷ ମାଛ

**ଶକୁଡି** - *ଖୋ:* (ବି.) : ଅରଟ

**ଶକୁନିଖିଆ** - *ଅ:* (ଅ.) : ଗାଳିବିଶେଷ

**ଶକେତ୍** - *କଳା:* (ବି.) : ଶକ୍ତି, ବଳ, ତାକତ୍

**ଶଗଡ** - *କେନ୍ଦୁ:* (ବି.) : ଶକଟ, ବଳଦଗାଡ଼ି

**ଶଗଡ୍‌ପଟା** - *କଳା:* (ବି.) : ଲମ୍ବାକୃତି ବିଶିଷ୍ଟ ଆମ୍ବ

**ଶଗଡ଼ଧୂଳି** - *ନ:* (ବି.) : ଧାନର ନାମ

**ଶଗଡ଼ ପଟି** - *ଢ:* (ବି.) : ଶଗଡ଼ ମାଲବୁହା ଆଧାର

**ଶଗଡ଼ିଆ** - *ନ:* (ବି.) : ଶଗଡ଼ ଚାଳକ

**ଶଗଡ଼େ** - *ଗଦ୍ୟ:* (ବିଂ.) : ବହୁତ ଗୁଡ଼ାଏ, ଶଗଡ଼ ପରିମାଣରେ

**ଶଗାଳ** - *ମ:* (ବି.) : ଶଗଡ଼

**ଶଙ୍କ** - *ଗ:* (ବି.) : ଶଙ୍ଖ

**ଶଙ୍କର** - *ଖୋ:* (ବି.) : ଏକ ପ୍ରଜାତିର ମାଛ

**ଶଙ୍କରା** - *ଭ:* (ବିଂ.) : ଠକ

**ଶଙ୍କା** - *ଢ:* (ବି.) : ଭୟ, ଆଶଙ୍କା, ସଂଶୟ

**ଶଙ୍କାଏ** - *ଢେ:* (ବି.) : କୁକୁଡ଼ା

**ଶଙ୍କିତ** - *ଢ:* (ବିଂ.) : ଭୀତିପ୍ରଦ, ଭୟଭୀତ, ଆଶଙ୍କିତ

**ଶଙ୍କିନାଳି** - *ଗ:* (ବି.) : ତଣ୍ଟି

**ଶଙ୍କି ମାଛ** - *ଗ:* (ବି.) : ଛୋଟଡୁଡି ମାଛ

**ଶଙ୍କୁ** - *ଦେ:ଖୋ:ଗ:* (ବି.) ତେଣ୍ଟା, ଜମିମାପର ଚିହ୍ନ, ସନ୍ଧି

**ଶଙ୍କୁଡ଼ି** - *ଢ଼:ଦେ:ଗ:* (ବି.) : ଅଇଠା

**ଶଙ୍ଖ** - *ଗ:କୋ:ଗଦ୍ୟ:* (ବି.) ପୋଲ, କଲଭଟ, କମ୍ବୁ, ସାମୁଦ୍ରିକ ଜୀବ

**ଶଙ୍ଖଆଳୁ** - *ଭ:* (ବି.) : ଏକ ପ୍ରକାର ମାଟି ଆଳୁ, ମିଠାଆଳୁ

**ଶଙ୍ଖଚିଲ** - *ଖୋ:ଗ:କ:* (ବି.) : ଏକ ପ୍ରକାର ଚିଲ ପକ୍ଷୀ, ପେଟପାଖ ଧଳା ରଙ୍ଗଥିବା ଚିଲ

**ଶଙ୍ଖଛଉ** - *ଗ:* (ବି.) : ଧଳାଛଉ

**ଶଙ୍ଖ ମଲ୍ ମଲ୍** - *ସଂ:* (ବି.) : ମାର୍ବଲ

**ଶଙ୍ଖସାରୁ** - *ନ:ଢ଼:* (ବି.) : ମାଟି ତଳେ ଫଳୁଥିବା ବଡ଼ବଡ଼ ସାରୁ

**ଶଙ୍ଖା** - *ନ:* (ବି.) : ନାଲିକାଚ

**ଶଙ୍ଖାମୁଠିଆ** - *ଖୋ:* (ବି.) : ଏକ ପ୍ରଜାତିର ମାଛ, ଏକ ପ୍ରଜାତିର ସାପ

**ଶଙ୍ଖାରୀ** - *ଗ:* (ବି.) : ଶଙ୍ଖା ତିଆରି ଜାତି

**ଶଙ୍ଖି** - *ଗ:ନ:ନବ:* (ବି.) : ଗଳା, ତଣ୍ଟି

**ଶଙ୍ଖିକଟା** - *ନ:* (ବି.) : ରାଜାଙ୍କର ନିଷର ଭୂମିଖାଇ ରହିଥିବା ଏକଜାତି, ହତ୍ୟାକାରୀ, ତନ୍ତ୍ରସାଧନା ପାଇଁ ରକ୍ତ ସଂଗ୍ରହକାରୀ

**ଶଙ୍ଖିନଳୀ** - *କୋ:* (ବି.) : ଗଳକକ୍ଷ, ଗଳଭାଗ

**ଶଙ୍ଖି ବିରାଡ଼ି** - *ଗ:* (ବି.) : ଧଳା ରଙ୍ଗର ବିରାଡ଼ି

**ଶଙ୍ଖୁଆ** - *ନ:* (ବି.) : ଯିଏ ଶଙ୍ଖ ଫୁଙ୍କେ

**ଶଢ଼** - *ଗଦ୍ୟ:* (ବି.) : ଦୁଇଟି ମାସ୍ତୁଲଥିବା ଛୋଟ ଜାହାଜ

**ଶଢୁ** - *କ:* (ବି.) : ସ୍ତ୍ରୀର ସାନ ଓ ବଡ଼ ଭଉଣୀର ସ୍ୱାମୀ

**ଶଣ** - *ଗଦ୍ୟ:* (ବି.) : ଏକ ଶସ୍ୟ

**ଶଣୁଆସି** - *ଗ:* (ବି.) : ଚିମୁଟା

**ଶଣ୍ଢା** - *ନ:* (ବି.) : ପିଆଜର ପତ୍ର, ଶେଷ ଯର୍ଦ୍ଦିରୁ ଫୁଲବାହାରେ

**ଶତ୍‌ରା** - *କଳା:ମା:* (ବି.) : ଶ୍ୱଶୁର, ପତ୍ନୀ ବା ସ୍ୱାମୀଙ୍କ ବାପା

**ଶତରଞ୍ଜି** - *କେ:* (ବି.) : ମୋଟାଚାଦର, ଦରି

**ଶତାବରୀ** - *ନୁ:* (ବି.) : ଶତମୂଳୀ, ଔଷଧୀୟ ବୃକ୍ଷ

**ଶତାସ୍‌ତୋର** - *ନୁ:* (ବିଂ.) : ସତସ୍ତରି

**ଶତିଆ** - *ଦେ:* (ବି.) : ଝିଟିପିଟି, ସତସତିଆ

**ଶଧାଇା** - *ସ:* (କ୍ରି.) : ଇଚ୍ଛାକରିବା

**ଶନି** - *କଳା:ଦେ:* (ବି.) : ଶମି ବୃକ୍ଷ, ଶନି ଗ୍ରହ, ଦୁର୍ଭାଗ୍ୟ, ଦୁଷ୍ଟଲୋକ

**ଶନି ଗଛ** - *କେନ୍ଦୁ:* (ବି.) : ଏକ ପ୍ରକାର ଗଛ।

**ଶନିଚର** - *ସୁ:* (ବି.) : ଶନିବାର ଜନ୍ମିତ ପୁଅ

**ଶନିଦୃଷ୍ଟି** - *ବୌ:* (ବିଂ.) : ଅଶୁଭ ଦୃଷ୍ଟି

**ଶନି ପଡ଼ିବା** - *ଗ:* (କ୍ରି.) : ଖରାପ ସମୟ ଉପସ୍ଥିତ ହେବା

**ଶନିସପ୍ତା** - *ଖୋ:ଭ:* (ବି.) ବିପଦ, ଶନିଗ୍ରହର କୋପସମୟ

**ଶପ** - *ନ:ମା:* (ବି.) : ମଶିଣା

**ଶପତ** - *ଚ:* (ବି.) : ଶପଥ, ରାଣ

**ଶବ୍‌ରେନ୍** - *କଡା:* (ବି.) : ଶବର ଜାତିର ସ୍ତ୍ରୀ, ଶବରର ପତ୍ନୀ

**ଶବଦ୍** - *କଳା:* (ବି.) : ଶବ୍ଦ, ଧ୍ୱନି, କଥା, ବଚନ, ଉଚ୍ଚାରଣ

**ଶବର** - *ନ:କଳା:ସ:* (ବି.) : ଏକ ଜନଜାତିର ନାମ, ଶବରଜାତି

**ଶବଶିବିକା** - *ଗଦ୍ୟ:* (ବି.) : କୋକେଇ

**ଶମଡ଼ାଙ୍ଗ** - *ଗ:* (ବି.) : ଠାକୁରାଣୀ, ପ୍ରେତ ପିଶାଚ ରହିବା ସ୍ଥାନ

**ଶମର୍ ମରା** - *କଳା:* (ବି.) : ଆଦିବାସୀ ସଂପ୍ରଦାୟର ଏହା ଏକ ବିବାହ କାଳୀନ ସାମାଜିକ ବିଧି

**ଶମର୍** - *କଳା:* (ବି.) : ଶମ୍ବର

**ଶମଶାନ** - *ଅନେ:* (ବି.) : ଶ୍ମଶାନ, ଶବ ସଂସ୍କାର ସ୍ଥାନ

**ଶମା** - *ଅନେ:* (ବି.) : ଢିଙ୍କିରେ ଲାଗିବା ଲୁହା ସାମଗ୍ରୀ

**ଶମା** - *ଗ:ଦେ:* (ବି.) : ଢିଙ୍କିରି ଥୋରରେ ଲାଗିଥିବା ଲୌହ ବଳୟ, ଶଗଡ଼ ଜୁଆଳିର ବାବୁଲି

**ଶମ୍ବର** - *ଗ:* (ବି.) : ବୃହଦାକାର ମୃଗ ବିଶେଷ

**ଶୟାଁ** - *ନ:* (ବିଂ.) : ଶ୍ୱାସରୋଗୀ, ଧୟା)

**ଶରକଟ** - *ଗ:* (ବି.) : ସୁବିଧା, ସୁଢଙ୍ଗ

**ଶରଗିଫୁଲ** - *କେନ୍ଦୁ:* (ବି.) : ଧଳା ରଙ୍ଗର ଶୁଙ୍କ ନଥିବା ମଧ୍ୟମ କିସମର ଧାନ, ହଳଦୀ ରଙ୍ଗର ଫୁଲ

**ଶରଣ ସ୍ଥାନ** - *ସଂ:* (ବି.) : ବିପଦମୁକ୍ତ ସ୍ଥାନ

**ଶରଣାର୍ଥୀ** - *ସଂ:* (ବି.) : ଆଶ୍ରିତ ବ୍ୟକ୍ତି

**ଶରନ୍ ପସ୍‌ବା** - *ସ:* (କ୍ରି.) : ଶରଣ ପସିବା

**ଶରଫଳା** - *ଗଦ୍ୟ:* (ବି.) : ତୀର

**ଶରମ** - *ଅନେ:* (ବି.) : ଲଜ୍ଜା

ଶରା - *ଅନେ:* (ବି.) : ମାଟିର ଛୋଟ ପଲମ

**ଶରାଟି** - *ଦେ:* (ବି.) : ଶରାଳି ପକ୍ଷୀ

**ଶରାଧ୍** - *ସୁବ:* (ବି.) : ଶ୍ରାଦ୍ଧ

**ଶରାବନ** - *ନୂ:କଳା:* (ବି.) : ଶ୍ରାବଣ, ଶିରାବଣ

**ଶରାବନ୍ କଦ୍ର** - *କଳା:* (ବି.) : ଶ୍ରାବଣ କଦ୍ର ନାମକ ଛତୁ

**ଶରାବୀ** - *ସଂ:* (ବିଂ.) : ମାତାଲ, ଯେ ସରାବ ପାନକରେ

**ଶରାରି** - *ଦେ:* (ବି.) : ଟେଣ୍ଟେଇ ପକ୍ଷୀ

**ଶରାଳି** - *ଅଦେ:* (ବି.) : ଟେଣ୍ଟେଇ ପକ୍ଷୀ

**ଶର୍‌ଦା** - *କଳା:* (ବି.) : ଶ୍ରଦ୍ଧା, ଆନ୍ତରିକତା, ଅନୁରାଗ

**ଶର୍‌ଧା** - *କଳା:* (ବି.) : ଶ୍ରଦ୍ଧା, ଆଗ୍ରହ, ଅନୁରାଗ

**ଶଇ** - *ଯା:ଢ:* (ବି.) : ମୃତ ଲୋକର ଶରୀରର କ୍ଷୁଦ୍ରାଂଶ, ଖରାପ, ଶତ୍ରୁ

**ଶଲା** - *କଳା:ନୂ:* (ବି.) : ଶାଳକ, ପତ୍ନୀର ଭାଇ, ଗାଳି ବିଶେଷ, ଶଳା

**ଶଲାଇ** - *ଦେ.* (ବି.) : କାନକୁଣ୍ଡାଇବାରେ ବ୍ୟବହୃତ କାଠି

**ଶଲାବିଧା** - *ସ.* (ବି.) : ବିବାହ ସମୟରେ ସଲା(ଶାଳକ) ଜୋଇଁକୁ ପ୍ରେମରେ ଆଘାତ କରିବା

**ଶଳଗି** - *ଯା.* (ବି.) : ଜାଲ ବୁଣିବା ଯନ୍ତ୍ର

**ଶଳା** - *ଦେ.ନ.ଖୋ.* (ବି.) ଶାଳକ, ଅଶାଳୀନ ଶବ୍ଦ, ପତ୍ନୀର ଭାଇ

**ଶଶୁର୍** - *କଳା.ନୂ.* (ବି.) : ଶ୍ୱଶୁର, ଶଡ୍‌ରା, ପତ୍ନୀଂକ ପିତା, ସ୍ୱାମୀଙ୍କ ପିତା

**ଶଷ** - *ନବ.* (ବି.) : ଶୋଷ, ତୃଷ୍ଣା

**ଶସ** - *ଅନେ.* (ବି.) ମଂଜି ଭିତରର କୋମଳାଂଶ

**ଶସୁର୍** - *ସ.* (ବି.) : ଶ୍ୱଶୁର

**ଶସ୍ତା** - *ଅନେ.* (ବିଂ.) : ଅଳ୍ପଦାମ

**ଶସ୍ୟାଗାର** - *ଅନେ.* (ବି.) : ଶସ୍ୟ ରହିବାର ସ୍ଥାନ

**ଶହକେ** - *ଦେ.* (ବି.) : ଅନେକଙ୍କ ମଧ୍ୟରେ

**ଶହଲା** - *ସୁବ.* (ବି.) : ବାଡ଼ିବଗିଚା ଘେର ଦେବା ପାଇଁ ବ୍ୟବହୃତ ତାଳପତ୍ର

**ଶହି** - *ନ.* (ବି.) : କୋରଳ ଓ ଦାଢରେ ବ୍ୟବହୃତ ବାଉଁଶ ଫାଳ

**ଶହୁଲ୍** - *ସ.* (ବି.) : ଏକ ପ୍ରକାର ମାଛ

**ଶାଆଟା** - *ଗ.* (ଅ.) : ସଂପର୍କ ସାମଞ୍ଜସ୍ୟ

**ଶାଇଁ** - *ଦେ.* (ବି.) : ବୁଢ଼ାମୂଳାର ମଝିରେ ଥିବା ତନ୍ତୁ

**ଶାଉଳି** - *ମ.* (ବି.) : ଶାଶୁ

**ଶାଉଁଳା** - *ଦେ.* (ବିଂ.) : ଶ୍ୟାମଳ ବର୍ଣ୍ଣ

**ଶାଉଁଳିଦେବା** - *ନ.* (କ୍ରି.) : ଆଉଁଷିଦେବା, ଧାନ-ମୁଗରୁ ଅଳିଆ ବାହାର କରିବା

**ଶାଉଁଳେଇବା** - *ନ.* (କ୍ରି.) : ଖୁସାମତ କରିବା

**ଶାଏପ୍** - *କଳା.ସ.* (ବି.କ୍ରି.) : ଅଭିଶାପ, ଶାପ

**ଶାକ୍ରା** - *ଗୌ.* (ବି.) : ପାଣି କଖାରୁ ଗୁଡ଼ ତିଆରି ତରକାରି

**ଶାକ୍ସବଜି** - *ସଂ.* (ବି.) : ସବୁଜ ପନିପରିବା, ତରକାରୀ

**ଶାକମୃଗା** - *ଦେ.* (ବି.) : ଗୁଣ୍ଡୁଚିମୂଷା

**ଶାକର** - *ଅନେ.* (ବି.) : ଶର୍କରା, ଗୁଡ଼ମିଶ୍ରିତ ବ୍ୟଞ୍ଜନ

**ଶାକର** - *ନ.ଛ.* (ବି.) : ଚାଉଳଗୁଣ୍ଡ ଓ ଚିନିରସରେ ପ୍ରସ୍ତୁତ ମିଷ୍ଟାନ୍ନ, ଖଟାମିଠା

**ଶାକରକନ୍ଦା** - *ନ.* (ବି.) : ଏକ ମିଠା ଭୂଇଁ

**ଶାକର ପଟା** - *ଗ.* (ବି.) : ଦ୍ୱାରବନ୍ଧ ଉପରେ ଥିବା ଚିତ୍ରିତ ପଟା

**ଶାକରା** - *ନବ.ଗ.* (ବି.) : ଆମ୍ବିଳ (ମିଠା), ମିଠା ଦେଇ ପ୍ରସ୍ତୁତ ତରକାରି

**ଶାକା** - *ରା.* (ବି.) : ବୃକ୍ଷର ଅଂଶ

**ଶାକୁଳେଇବା** - *ନ.* (କ୍ରି.) : ଖୁସାମତ କରି କହିବା, ଆପଣେଇବା

**ଶାଗ** - *ଅନେ.* (ବି.) : ଶାଗ ବିଶେଷ, ସମସ୍ତ ପ୍ରକାର ବ୍ୟଂଜନ

**ଶାଗ୍ଡ଼ାଲ୍** - *କଳା.* (ବି.) : ପନିପରିବା

**ଶାଗଖରଡ଼ା** - *ଦେ:* (ବି.) : ଶାଗଭଜା

**ଶାଗଢ଼ାଳ** - *ସ:* (ବି.) : ଶାଗ, ପରିବା ପତ୍ର

**ଶାଗବଡ଼ି** - *ନ:* (ବି.) : ଶାଗ ବା କୋଶଳା, ଖଡ଼ାରେ ବଡ଼ି ପଡ଼ି ପ୍ରସ୍ତୁତ

**ଶାଗରସିଆ** - *ସୁବ:* (ବିଂ.) : ଫିକା ସବୁଜ ରଙ୍ଗର

**ଶାଗିଆ** - *ଗ:* (ବିଂ.) : ନରମିଯିବା

**ଶାଗୁ** - *ବୌ:* (ବି.) : ରୋଗୀର ପଥ୍ୟ ଘାଣ୍ଡ

**ଶାଗୁଆ** - *ଅନେ:* (ବି.ବିଂ.) : ସବୁଜବର୍ଣ୍ଣ

**ଶାଗୁଆତି** - *ଗଦ୍ୟ:ଢ:ଖୋ:ଭ:* (ବି.ବିଂ.) : ମାଂସ ତରକାରି, ଛେଳି ମାଂସ

**ଶାଗୁଣା** - *ଖୋ:* (ବି.) : ହେଡ଼ା ଖାଉଥିବା ପକ୍ଷୀ

**ଶାଙ୍କୁଳୀ** - *ଯା:* (ବି.) : ସ୍ୱାମୀ ମଲା ପରେ ସ୍ତ୍ରୀ ହାତ ଶଙ୍ଖା, ଗୋଡ଼ବେଡୀ

**ଶାଙ୍କୁସ** - *ନ:* (ବି.) : ଏକ ମାଛ, ଶାଙ୍କୁଚ

**ଶାଠ** - *ନ:ଭା:* (ବି.) : ସାଧାରଣ ଜାଣିବା କଥା, ଚତୁରତା

**ଶାଢ଼ିବନ୍ଧା** - *ପଦ୍ୟ:* (ବି.) : ପ୍ରଭୁଙ୍କ ସେବା କରିବା ପାଇଁ ଅନୁମତି, ଶିରିପାବନ୍ଧ

**ଶାଣ** - *ବୌ:ନ:* (ବି.) : କୁଣ୍ଠା ଅସ୍ତ୍ରକୁ ଦାଢ ବା ଧାର କରିବା

**ଶାଣି** - *ଦେ:* (ବି.) : ଛଣପଟ

**ଶାଣ୍ଡଣା** - *ବୌ:* (ବି.) : ବୋହୂକୁ ଶାଶୁର ଆକଟ, ନୀତି ନିୟମ

**ଶାଣ୍ଡା** - *ମ:* (ବି.) : କୁକୁଡା(ଅଣ୍ଡିରା), ଗଞ୍ଜା

**ଶାଣ୍ଡ** - *ମା:* (ବି.) : ଷଣ୍ଢ, ବୃଷଭ

**ଶାତ୍ତ୍ରୀ** - *ମା:* (ବି.) : ଶାଶୁ

**ଶାତୁ** - *ଗ:* (ବିଂ.) : ଅଭିଜ୍ଞ

**ଶାଦା, ଶିଧା** - *ନ:* (ବିଂ.) : ଅଲେଖା (କାଗଜ), ଧଳା, ଛଳନା ନଥିବା (ମଣିଷ)

**ଶାଧ** - *ଦେ:* (ବି.) : ଗର୍ଭିଣୀର ଇଚ୍ଛା ନିମନ୍ତେ ଖାଦ୍ୟ, ସାଜ

**ଶାନ୍** - *ଗଦ୍ୟ:* (ବି.) : ଏକ ଜାତି

**ଶାନ୍ତିଦୁକ** - *ବା:* (ବି.) : ଶାନ୍ତିବାରି, ଏକାଦଶ ଦିନରେ ଶୁଦ୍ଧି ପାଇଁ ଶାନ୍ତିପାଣି ଛିଞ୍ଚାଯାଏ

**ଶାନ୍ତିପୁରୀ ଧୋତି** - *ବା:* (ବି.) : ପଶ୍ଚିମ ବଙ୍ଗର "ଶାନ୍ତିପୁର" ଅଞ୍ଚଳର ଧୋତି

**ଶାପ୍ୟ** - *ଢ:* (ବି.) : ଅଭିଶାପ

**ଶାବ୍‌ଲା ଗଜା** - *ଜଙ୍ଗ:* (ବିଂ.) : ବଳବାନ୍

**ଶାବନୀ** - *ଭ:* (ବିଂ.) : ଶ୍ୟାମଳବର୍ଣ୍ଣା ସ୍ତ୍ରୀ

**ଶାବଲ୍** - *ସ:କଳା:* (ବି.) : ଶାବଳ, ମାଟି ଖୋଳା ଯାଉଥିବା ଲୌହ ଦଣ୍ଡ ବିଶେଷ

**ଶାବଲି** - *ନୂ:* (ବି.) : ଶାବଲ

**ଶାବଳ** - *ଗଞ୍ଜ:ଖୋ:ଦେ:* (ବି.) : ଲୁହାର ଖୋଳିବା ବସ୍ତୁ, ପାଖ, ଧାରୁଆ, ମୁନିଆଁ ଲୌହଦଣ୍ଡ

**ଶାବଳା** - *ଗ:* (ବି.) : ଏକ ପ୍ରକାର ମାଛ

**ଶାବୁଳ** - *ବା:* (ବି.) : ଶାବଳ

**ଶାମ** - *ଦେ:* (ବି.) : ବନ୍ଧୁତା

**ଶାମ୍ବଲବ** - *କଳା:* (ବି.) : ଶ୍ୟାମବଲ୍ଲଭ ନାମକ ଦେଶୀ ଆମ୍ବ

**ଶାମୁକା** - *ଗ:* (ବି.) : ଛୋଟଶିଶୁଙ୍କୁ ଖିର ଦେବା ବେଲା

**ଶାୟର** - *ସଂ:* (ବି.) : କବି

**ଶାୟା** - *ଅନେ::* (ବି.) : ନାରୀମାନଙ୍କ ଭିତର ବସ୍ତ୍ର, ଅନ୍ତର୍ବାସ

**ଶାରକା** - *ଚେ:* (ବି.) : ପହଁରା

**ଶାରଜମ୍** - *ଯା:* (ବି.) : ଶାଳଗଛ

**ଶାରଦ** - *ଅନେ:* (ବି.) : ବର୍ଷାଦିନିଆ ଧାନ

**ଶାରି** - *ଗ:ଦେ:* (ବି.) : କଳା ରଙ୍ଗର ପକ୍ଷୀ ଯାହା ଶୁଆଭଳି ପୋଷାଯାଏ

**ଶାର୍** - *ମ:* (ବି.) : ଶରାତୀର

**ଶାର୍ଦୁଲ୍ପଟା** - *କଳା:* (ବି.) : ଦୁଆର ବନ୍ଧ ଉପରେ ପଡୁଥିବା ପଟା

**ଶାର୍ଧା** - *ମା:* (ବି.) : ଶ୍ରଦ୍ଧା, ଖୁସି

**ଶାଲ** - *ଦେ:କଳା:* (ବି.) : ଶିଳ (ପ୍ରା.), ଗୁହାଳ, ଗୋଶାଳ

**ଶାଲ୍ଭଖଡ଼ା** - *କଳା:ନ:* (ବି.) : ନଡ଼ିଆ, କୁଆଣି, ଘିଅ ପ୍ରଭୃତି ପକାଇ ଗୁଡ଼ରେ ପଗାଯାଇଥିବା ଲିଆ

**ଶାଲପୁଆ** - *ଦେ:* (ବି.) : ଶିଳପୁଆ

**ଶାଲବିନ୍ଧ** - *ନ:* (ବି.) : ପାନିଆଲ୍ କବାଟ ପରସ୍ପରକୁ ଯୋଡ଼ିବାପାଇଁ କରୁଥିବା କଣା

**ଶାଲା** - *ଗ:ମ:ଦେ:* (ବି.) : ଘରର ବଖରା, ଯଜ୍ଞଶାଳା, ଶଳା

**ଶାଲୀ** - *କଳା:* (ବି.) : ଶାଳୀ, ପତ୍ନୀର ସାନଭଉଣୀ

**ଶାଲୁଆ** - *ଦେ:* (ବି.) : ବାଉଁଶ କାଠିରେ ନିର୍ମିତ ମାଛ ଧରିବା ଯନ୍ତ୍ର

**ଶାଲୁକ୍ ଫୁଲ୍** - *ମ:* (ବି.) : କଇଁ ଫୁଲ

**ଶାଳ** - *ଅନେ:* (ବି.) : ଏକ ବୃକ୍ଷର ନାମ, କମାରର ଲୁହ ତିଆରି ସ୍ଥାନ

**ଶାଳଘର** - *ଦେ:ନ:* (ବି.) ଆଖୁ ଓ ଗୁଡ଼ପେଢ଼ା ସ୍ଥାନ, ଗୁଡ଼ ତିଆରି ଘର

**ଶାଳ ପତନି** - *ଗଦ୍ୟ:* (ବି.) : ବଡ଼ ଗଣ୍ଠିଥିବା କାଠ, ବଣବିରାଡ଼ି

**ଶାଳଭଞ୍ଜିକା** - *ଗଦ୍ୟ:* (ବି.) : ଏକ ପ୍ରାଚୀନ କଳା-ସ୍ଥାପତ୍ୟ, ବୃକ୍ଷ-ସଂଯୁକ୍ତା ନାରୀରୂପ, ଅଳସୀକନ୍ୟା

**ଶାଳିଆ ବାଉଁଶ** - *ନ:* (ବି.) : ଏକପ୍ରକାର ଗଛ

**ଶାଳୀ** - *କ:ଦେ:* (ବି.) : ସ୍ତ୍ରୀର ସାନଭଉଣୀ

**ଶାଳୁ** - *ଦେ:* (ବି.) : କଷାୟଦ୍ରବ୍ୟ

**ଶାଳୁଆ** - *ଯା:କେନ୍ଦୁ:* (ବି.) ବାଉଁଶ ପାତିଆରେ ନିର୍ମିତ ଜିନିଷ ମାଛଧରା ଯନ୍ତ୍ର, ଶାଳ ଗଛ

**ଶାଶ୍** - *ନୂ:କଳା:ଦେ:* (ବି.ବିଂ.) : ସ୍ତ୍ରୀଙ୍କ ମା, ସ୍ୱାମୀଙ୍କ ମା, ଶାଶୁ

**ଶାଶୁଘର ଗଞ୍ଜଣା** - *ସଂ:* (ବି.) : ଶାଶୂଘରର ଗାଳିଗୁଲଜ

**ଶାସ** - *ମା:ସ:* (ବି.) : ଶ୍ୱାସ, ଶାଶୁ

**ଶାସ୍ତର୍** - *କଳା:* (ବି.) : ଶାସ୍ତ୍ର

**ଶାସନୀ** - *ଜ:* (ବିଂ.) : ଶାସନରେ ପ୍ରତିଷ୍ଠିତ ବ୍ରାହ୍ମଣ

**ଶିଅ** - *ଦେ:* (ବି.) : ଗଛର ଚେର

**ଶିଅଳ** - *ନ:* (ବି.) : ଏକ ଜାତି(ଖଜୁରୀ ତାଡ଼ିକାଢନ୍ତି)

**ଶିଆଣିଆ** - *ଅନେ:* (ବିଂ.) : ଚତୁର

**ଶିଆର** - *ଦେ:* (ବି.) : ଲଙ୍ଗଳ କର୍ଷିତ ରେଖା

**ଶିଆରି** - *ଦେ:କେ:* (ବି.) : ଲତାବିଶେଷ

**ଶିଆଳ** - *ଜ:ନ:* (ବି.) : ଶୃଗାଳ, ଏକ ଜାତିର ନାମ

**ଶିଆଳ ଭେରୁ** - *ଚ:* (ବି.) : ଗାଁର ଅଶୁଭ ଘଟନା ଘଟିବାର ଥିଲେ ବିଲୁଆମାନଙ୍କର ରାତିରେ ମୁହୁମୁହୁ ଅଶୁଭ ରଡ଼ି

**ଶିଉଳି** - *ଗଦ୍ୟ:* (ବି.) : ଗଙ୍ଗଶିଉଳି ଫୁଲ, ଜଳଜ ଉଦ୍ଭିଦ

**ଶିଉଳି ବାଟି** - *ଗଦ୍ୟ:* (ବି.) : ପଥୁରି

**ଶିକ** - *ଗଦ୍ୟ:* (ବି.) : ଅଗ୍ରଭାଗ

**ଶିକ୍‌ଇା** - *କନ୍ଧ:କଳା:ସ:* (ବି.) : କବାଟ ଶିକୁଳି

**ଶିକ୍‌ଲି** - *କଳା:ବର:* (ବି.) : ଶିକୁଳି, ଶିକାରୁ ଛୋଟ

**ଶିକଳ** - *ଚ:* (ବିଂ) : ସୁନ୍ଦର

**ଶିକା** - *ଅନେ:* (ବି.) : ହାଣ୍ଡି ଟଙ୍ଗେଇବା, ଦଉଡ଼ି ବା ଛନ୍ଦ

**ଶିକାର** - *ଗଦ୍ୟ:ଦେ:ସୁବ:* (ବି.) : ମାଂସ, ଜଙ୍ଗଲରେ ଜନ୍ତୁ ମାରିବା କର୍ମ

**ଶିକାର ସାଗ୍** - *କନ୍ଧ:* (ବି.) : ମାଂସ ତରକାରି

**ଶିକିଫୁଲା** - *ଭ:* (ବିଂ.) : ଅତିଅଲିଅଳ

**ଶିକିରି କାଞ୍ଚିଆ** - *ଗ:* (ବିଂ.) : ଖେଚଡ଼, ଦୁଷ୍ଟାମୀ, ବିତଣ୍ଡା

**ଶିକୁଳି** - *ଅନେ:* (ବି.) : ଗୋଡ଼ର ଅଳଙ୍କାର, ଜଂଜିର, ହାତ ଗୋଡ଼ ବେଢି

**ଶିକେ** - *ଯା:* (ବି.) : ଏକସଂଖ୍ୟା

**ଶିକେଇବା** - *କଳା:* (ବି.) : ଶସ୍ୟାଦି ଦ୍ରବ୍ୟ ବା ବାଲୁକାଦିକୁ ଶିଖକରି ଗଦେଇବା

**ଶିଖ** - *ଗଦ୍ୟ:ଗ:ବୌ:* (ବି.) : ଖୁଅ, ଗୁମର, ଶିଖର, ଶୀର୍ଷ

**ଶିଖା** - *ଗ:ପୁ:* (ବି.) : ଚୁଟି, ତେଜ

**ଶିଖାକଥା** - *ସ:* (ବି.) ଅନ୍ୟ ମାନଙ୍କ କହିଥିବା କଥା

**ଶିଖାଣିଆ** - *ବୌ:* (ବି.) : ଯିଏ ଅନ୍ୟକୁ ମନ୍ଦ ପରାମର୍ଶ ଦିଏ

**ଶିଖାବତ** - *ଗ:* (ବି.) : ଶିଖାଇବା, ମନାଇବା

**ଶିଖାଶିଖି** - *ଦେ:* (ବି.) : ଚୁଗୁଲି

**ଶିଗ୍** - *କଳା:* (ବି.) : ଶୃଂଗ, ଶିଖର, ପର୍ବତର ଶୀର୍ଷ

**ଶିଘ୍** - *ସୁବ:* (ବି.) : ଶିଖ

**ଶିଘା** - *ସ:* (ବି.) : ମୁଖ୍ୟ

**ଶିଙ୍କଲା** - *ବୌ:* (ବି.) : ଶିକୁଳି

**ଶିଙ୍ଗଟାଳିଆ** - *ଗଦ୍ୟ:* (ବିଂ.) : ଈର୍ଷୁକ, ଏକ ଢିଦିଆ, ଏକସିଙ୍ଗା

**ଶିଙ୍ଗଡ଼ା** - *ଦେ:* (ବି.) : ପାଣିଫଳ

**ଶିଙ୍ଗବାଡି** - *ସଂ:* (ବି.) : ବାଙ୍କୁଲି ବାଡ଼ି, ଶିଙ୍ଗରେ ତିଆରି ବାଡ଼ି

**ଶିଙ୍ଗରାହାର** - *ଯା:ଭ:କ:* (ବି.) : ଏକ ପ୍ରକାର ଫୁଲ (ଶୃଂଗାର ହାର ଶବ୍ଦ)ଶେଫାଳୀ

**ଶିଙ୍ଗା** - *ଦେ:ମା:* (ବି.) : ବାଦ୍ୟବିଶେଷ, ପଶୁ ଶିଙ୍ଗରୁ ତିଆରି ବାଦ୍ୟ

**ଶିଙ୍ଗିବୁଡ଼ା** - *ପୁ:* (କ୍ରି.ବିଂ.) : ତଣ୍ଟିଆ ଦେଇ ପାଣିରେ ବୁଡ଼ାଇବା

**ଶିଘାଳ** - *ଗଦ୍ୟ:* (ବି.) : ଅଣ୍ଡିରା ସମ୍ବର

**ଶିଜୁ** - *କ:ଯା:ଭ:* (ବି.) : ବାଡ଼ରେ ବ୍ୟବହୃତ ହେଉଥିବା କଣ୍ଟା ଓ କ୍ଷୀରଯୁକ୍ତ ଗଛ

**ଶିଠା** - *ଦେ:ବୌ:* (ବି.) : ଅସାର, ଆବଶ୍ୟକ ମସଲା ଅଭାବରେ ସ୍ୱାଦୁ ହାନି ସୂଚକ, ଶୁଷ୍କ

**ଶିଡ଼ି** - *କ:* (ବି.) : ନିଶୁଣି

**ଶିତଲ୍ ମାଉଁସ** - *ମା:* (ବି.) : ହରିଣ ମାଂସ

**ଶିତଳେଇବା** - *ନ:* (କ୍ରି.) : ଥଣ୍ଡାକରିବା, ଶବଦାହ ପରେ ଅସ୍ଥି ସତ୍କାର କରିବା

**ଶିତାଣ** - *ଅ:* (ବି.) : ତକିଆ, ମାଣ୍ଡି

**ଶିତାଫଳ** - *ଅ:* (ବି.) : ଆତ

**ଶିତୁଲିଆ** - *ଦେ:* (ବି.) ଥଣ୍ଡାଜନିତ ଦାନ୍ତମାଢ଼ି ଫୁଲି ପୀଡ଼ା ହେବାରୋଗ

**ଶିପ** - *ଦେ:ନ:ନୂ:* (ବି.) : ସମୁଦ୍ର, ଚୂନ, ଶାମୁକା, ଶିପି

**ଶିପଚୁନ** - *ସଂ:* (ବି.) : କଳିଚୂନ, ପାନଚୂନ

**ଶିପା** - *ଦେ:* (ବିଂ.) : କ୍ଷିଣ

**ଶିପି** - *ଦେ:* (ବି.) : ଚମଡ଼ା

**ଶିପୋ** - *କଳା:* (ବି.) : ଶିପଗଛ

**ଶିଫା** - *ଦେ:* (ବି.) : ବରଓହଳ

**ଶିବ୍ ରାତର୍** - *ନୂ:* (ବି.) : ଶିବରାତ୍ରି (ଶିବରେତ)

**ଶିବରାଏତ୍** - *କଳା:* (ବି.) : ମହାଶିବରାତ୍ରି, ଜାଗର ଉତ୍ସବ

**ଶିମ** - *କ:ନ:ଦେ:* (ବି.) : ଶିମ୍ବ

**ଶିମସ୍ଥାନ** - *ଗଞ:* (ବି.) ଶମସାନମ୍, ରାଜଧାନୀ(ପ୍ରାଚୀନ)

**ଶିମିଳି** - *ଗ:* (ବି.) : ବୁର ନାମକ ବୃକ୍ଷ

**ଶିମିଳିଆ** - *ନ:* (ବି.) ଗାଈଗୋରୁ, ବାଛୁରୀଙ୍କର ଝାଡ଼ାରେ କେଞ୍ଚୁଆ ପଡ଼ିବା ରୋଗ

**ଶିମିଳି କଣ୍ଟି ଧାନ** - *କେନ୍ଦୁ:* (ବି.) : ଜଳ ଜମିରେ ହୁଏ, ଦୀର୍ଘ ମିଆଦ, ଗୁରୁଧାନ

**ଶିମେଲ୍** - *କଳା:* (ବି.) : ଶିମୁଳି, ଶାଲ୍ମଳୀ

**ଶିମ୍ବ ପିଠା** - *ଚ:* (ବି.) : ଶିମ୍ବକୁ ସିଝାଇ ଖଳି ସାହାଯ୍ୟରେ ଗଢା ଯାଉଥିବା ପିଠା

**ଶିମ୍ବ** - *ଦେ:* (ବି.) : ଶିମ୍ବଛୁଇଁ

**ଶିରପା** - *ନ:* (ବି.) : ଜଢ଼ାତେଲ, ପୁରସ୍କାର ସ୍ୱରୂପ ମୁଣ୍ଡରେ ଶାଢୀ ବାନ୍ଧିବା

**ଶିରା** - *ଗ:ନ:ଗଞ:* (ବି.) : ଚିନି, ନବାତର ସାରାଂଶ, କାଳି, ପିଠାରେ ଦେବା ଚିନିର ଆସ୍ତରଣ

**ଶିରାଧ** - *ନ:* (ବି.) : ଶ୍ରାଦ୍ଧ

**ଶିରାନା** - *ଗଦ୍ୟ:* (ବି.) : ପଲଙ୍କର ମୁଣ୍ଡଆଡ଼େ ଲାଗିଥିବା ବାଡ଼

**ଶିରାବୁଢ଼ି** - *ଗ:* (ବି.) : କାଜି ରଖିବା ପାତ୍ର

**ଶିରାଳ** - *ଗଦ୍ୟ:* (ବିଂ.) : ଶିରାଯୁକ୍ତ

**ଶିରି** - *କୋ:ନବ:* (ବି.) କପାଳରେ ଦେଉଥିବା ଲମ୍ବାଳିଆ ତିଳକ, ଶ୍ରୀ, ଉନ୍ନତି, ସଂପତ୍ତି

**ଶିରିଙ୍ଗା** - *ବ୍ୟ:* (ବି.) : ବଳଦକୁ ହେଉଥିବା ରୋଗ

**ଶିରିଷ** - *ନ:* (ବି.) : ଏକ ବୃକ୍ଷର ନାମ

**ଶିରୀ** - *ଇ:* (ବି.) : ଶ୍ରେଷ୍ଠତା, ଶୋଭା, ସୁଖ, ସଂପଦ

**ଶିରୀ କାନ୍ଦୁଲ** - *ଗଞ:* (ବି.) ଛୋଟ ହରଡ଼ଡ଼ାଲି

**ଶିରୀଷ** - *ନ:* (ବି.) : ଶିଶୁବୃକ୍ଷ ସଦୃଶ ବୃକ୍ଷ, ଚାକୁଣ୍ଡା ଗଛ

**ଶିରେଇ** - *ଗଞ:* (ବି.) ଜଂଘିଆ, ଅଧାପାଇଜାମା

**ଶିରେଣି** - *ଜଷ:* (ବି.) : ପାନିଆଁ, ଚିରିଣି

**ଶିର୍ଶିର୍ ଲାଗିବା** - *ଖୋ:* (କ୍ରି.) : ଜରଜର ଲାଗିବା

**ଶିର୍ ଅଏଁଲା** - *ସ:* (ବି.) : ଛୋଟ ଅଁଳା

**ଶିର୍ନି** - *ବୌ:* (ବି.) ସତ୍ୟନାରାୟଣ ପୂଜାରେ ଲାଗିବା କଦଳୀ, ଅଟା, ଚିନି, କର୍ପୂର, ଭୋଗ

**ଶିର୍‌ପଟ୍** - *ନୂ:* (ବି.) : ଶିରା ପ୍ରଶିରା

**ଶିଲ** - *ଅନେ:* (ବି.) : ଛୁଟି, ଶିଳ, ପଥର, ଶିଳା

**ଶିଲ୍‌ପାଟା** - *ମ:* (ବି.) : ଶିଳପୁତା

**ଶିଳ** - *ଅନେ:* (ବି.) : ପଥରରେ ପ୍ରସ୍ତୁତ ଏକ ବସ୍ତୁ, ଯେଉଁଥିରେ ମସଲା ପ୍ରଭୃତି ଗୁଣ୍ଡ କରାଯାଏ, ବଟାଯାଏ, ବାଟିବା ପଥର ଘୋରଣି

**ଶିଳ୍ ପଥର** - *ବ୍ୟ:* (ବି.) : କୁଆ ପଥର

**ଶିଳପୁତା** - *ବ୍ୟ:* (ବି.) : ଶିଳପୁଆ

**ଶିଳାଇବା** - *ଅ:* (କ୍ରି.) : କ୍ଷୁର ଆଦିରେ ଦାଢ଼ କରିବା, ଶାଣଦେବା

**ଶିଳାନ୍ୟାସ** - *ସଂ:* (ବି.) : ଶୁଭାରମ୍ଭ (କାର୍ଯ୍ୟ)

**ଶିଳାପୁଷ୍ପ** - *ଦେ:* (ବି.) : ଶିଳାଜିତ୍

**ଶିଳି** - *ନବ:* (ବି.) : ଚକ

**ଶିଳୀନ୍ଧ୍ର** - *ଢେ:* (ବି.) : ଛତୁ

**ଶିଶ** - *ଢେ:* (ବି.) : ଶିମ୍ବ

**ଶିଶି** - *ଅନେ:* (ବି.) : ବୋତଲ୍, ଛୋଟ ବୋତଲ

**ଶିଶୁ** - *ବ୍ୟ:* (ବି.) : ଶିଶି, କାଠଗଛ

**ଶିଶୁଆ** - *କୋ:* (ବି.) : କଳାରଂଗର କାଠ ବିଶିଷ୍ଟ ବିଶାଳ ବୃକ୍ଷ ବିଶେଷ

**ଶିଶୁବାଟିକା** - *ସଂ:* (ବି.) : ଛୋଟ ପିଲାଙ୍କ ଉଦ୍ୟାନ ବା ପାର୍କ

**ଶିଶୋ** - *କଳ:* (ବି.) : ଶିଶୁଗଛ, ଶିଂଶପା

**ଶିଷ** - *ଇ:* (ବି.) : ଶିଷ୍ୟ

**ଶିହରଣ** - *କ* (ବି.) : ରୋମାଞ୍ଚ
**ଶିଂଗ୍ପନିଆ** - *କଳା* (ବି.) : ଶିଂଗରେ ନିର୍ମିତ ପାନିଆଁ
**ଶିଂଗ୍ବଜା** - *କଳା* (ବି.) : ଶିଙ୍ଗା, ଶିଂଗବାଦ୍ୟ
**ଶିଂଘାଣି** - *ଦେ* (ବି.) : ନାସାମଳ
**ଶିଂଜିକା** - *ଦେ* (ବି.) : ଅଣ୍ଡାସୂତା
**ଶିଂଷା** - *ନ.ଗ.* (ବି.) : ଧାନକେଣ୍ଡା, ଶସ୍ୟଗୁଚ୍ଛ
**ଶୀତ୍** - *କଳା* (ବି.) : ଶୀତ, ଥଣ୍ଡା, ଭାତ
**ଶୀତ୍ଲା** - *କଳା* (ବି.) : ଛାୟା
**ଶୀତ୍ଲାବା** - *କଳା* (କ୍ରି.) : ଥଣ୍ଡା କରିବା, ଶିତଳେଇବା
**ଶୀତ୍ଲିଆ** - *କଳା* (ବି.) : ଜିଭ ଘା'
**ଶୀତକଣ୍ଟା** - *ନବ.ଗ.* (ବି.) : ଥଣ୍ଡା ଯୋଗୁଁ କମ୍ପନ
**ଶୀତପାଛୁଡ଼ି** - *ଗ.* (ବି.) : ଶୀତବସ୍ତ୍ର
**ଶୀତମଂଜରୀ** - *ଦେ* (ବି.) : ଶେଫାଳିଫୁଲ
**ଶୀତଲ** - *ସୁ.କଳା* (ବିଂ.) : ଶୀତଳ, କାକର
**ଶୀତଳ** - *ଅନେ.* (ବିଂ.) : ଥଣ୍ଡା, କୋମଳ
**ଶୀତଳ ତୁଣ୍ଡି** - *ବା.ଭ.ଦେ.କ.* (ବି.) : ବିବାହ ପରେ ବରକନ୍ୟାଙ୍କ ଉପବାସ ଭଙ୍ଗ କରି ମିଷ୍ଟାନ୍ନ ଭୋଜନ
**ଶୀତଳ ମରିଚ** - *ଦେ* (ବି.) : କବାବ୍‌ଚିନି
**ଶୀତଳଷଷ୍ଠୀ** - *ସ.* (ବି.) : ଶିବ ପାର୍ବତୀଙ୍କ ବିବାହ ଉତ୍ସବ ରୂପେ ପାଳନ କରାଯାଏ ମୁଖ୍ୟତଃ ସମ୍ବଲପୁରରେ ଏହା ପ୍ରସିଦ୍ଧ
**ଶୀତଳ ସଂପର୍କ** - *ସଂ.ପଡ଼ି.* (ବି.) : ଧୀରେ ଧୀରେ ସଂପର୍କ, ଶତ୍ରୁତା
**ଶୀତଳା ମଙ୍ଗଳ** - *ବା.* (ବି.) : ଶୀତଳା ପୂଜା ଏହି ଅଞ୍ଚଳରେ ବିଖ୍ୟାତ ଦେବୀଙ୍କର ମହିମା ଏଥିରେ ଗାନ କରାଯାଏ
**ଶୀତଳେଇବା** - *ଅ.* (କ୍ରି.) : ସଧବାଙ୍କୁ ବିଧବା କରିବା ପାଇଁ ଅଳଙ୍କାର ଓହ୍ଲାଇବା
**ଶୀତାଳିବା** - *ବା.* (କ୍ରି.) : ଶବଦାହି ପରେ ଜ୍ୱଳନ୍ତ ପାଉଁଶରେ ପାଣି ପକାଇ ଶୀତଳ କରାଯାଏ
**ଶୀରଟ** - *ଯା.* (ବି.) : କଣ୍ଟାଯୁକ୍ତ ମାଛ ବିଶେଷ
**ଶୁଆତି** - *ଭ.* (ବି.) : ଝଡ଼ ତୋଫାନ
**ଶୁଆନଣ୍ଡ** - *କ.* (ବି.) : ଏକ ପ୍ରକାର ଲଟା
**ଶୁଆପକ୍ଷିଆ** - *ଦେ* (ବିଂ.) : ଶୁଆପକ୍ଷୀ ପରି ବର୍ଣ୍ଣ
**ଶୁଆବସା** - *ଦେ* (ବି.) : ସହବାସ
**ଶୁଆର** - *ନ.* (ବି.) : ରୋଷେଇୟା
**ଶୁଆସ** - *ନ.* (ବି.) : ଶ୍ୱାସରୋଗ
**ଶୁଆଁ** - *ଗ.* (ବି.) : ଗ୍ରାମ୍ୟ ଶଶ୍ୟ ବିଶେଷ
**ଶୁଆଁରି** - *ଯା.* (ବି.) : ଶୁଆଁଘାସର ଖିରି
**ଶୁଆଁଲି** - *ଦେ* (କ୍ରି.) : ସ୍ନେହରେ ଆଉଁସିବା
**ଶୁଇଚନ୍** - *ମ.* (ବି.) : ଶୋଇଛନ୍ତି
**ଶୁଇଠୁ** - *କଳା* (ବି.) : ଶୋଇବା ପ୍ରକ୍ରିୟା
**ଶୁଇନ୍ ଲାଗ୍‌ବା** - *ସ.* (କ୍ରି.) : ଶୂନ୍ୟ ମନେ ହେବା
**ଶୁଇବା** - *ନୂ.ଦେ.* (କ୍ରି.ବି.) : ଶୋଇବା

**ଶୁଇସ୍** - *କଳା:* (କ୍ରି.) : ଶୁଅ, ଶୋଇଥାଅ

**ଶୁଏଲ୍** - *ସ:* (ବି.) : କାଉଁରିଆ କାଠି, ଶୋଲ

**ଶୁକ୍ତି** - *ସୁବ:* (ବି.) : କଞ୍ଚାଧାନର ଆର୍ଦ୍ରତା ପରୀକ୍ଷଣ ପରେ ମଣ୍ଡିରେ କିଛି ଓଜନ ଧାନବସ୍ତାରୁ କାଟି ହିସାବ କରିବା

**ଶୁକ୍ନା** - *କଳା:* (ବି.) କଳା ବର୍ଣ୍ଣର ଶୁଂକଯୁକ୍ତ ଘାସ

**ଶୁକ୍ମ୍** - *ଦେ:* (ବିଂ.) : ଚଞ୍ଚଳ

**ଶୁକ୍ଲ୍ ତରା** - *କଅ:କଳା:* (ବି.) : କୁଆଁତାରା, ଶୁକ୍ରତାରା

**ଶୁକ୍ଲା** - *ଟା:* (ବିଂ.) : ଶୁଖିଲା

**ଶୁକ୍ଶୁକ୍** - *ଅନେ:* (ବିଂ.) : ମୁମୂର୍ଷ

**ଶୁକତାରା** - *ଦେ:* (ବି.) : ପାହାନ୍ତିତାରା

**ଶୁକନାସିକା** - *ଦେ:* (ବି.) : ଫଣଫଣାଗଛ

**ଶୁକଇ୍** - *କଳା:* (ବିଂ.) : ଶୁକ୍ଳ, ସଫେଦ, ସଫା, ଧଳା

**ଶୁକଲ୍ଲା** - *ଟା:* (ବିଂ.) : ଶୁଖିଲା

**ଶୁକଳକାରିଆ** - *ନବ:* (ବି.) : ଧୋବା, ରଜକ

**ଶୁକା** - *କଳା:ମ:ଦେ:* (ବିଂ.) : ଶୁଖିଲା, ନିର୍ଜଳ

**ଶୁକାଲ୍ଲ** - *ସୁବ:* (ବିଂ.) : ଶସ୍ତା

**ଶୁକୁଆ** - *କେ:* (ବି.) : ଶୁଖୁଆ

**ଶୁକୁଟା** - *ଅନେ:* (ବିଂ.) : ଦୁର୍ବଳ, ଶୀର୍ଣ୍ଣ ଶରୀର, କ୍ଷୀଣ

**ଶୁକୁଟୀ** - *ଗ:* (ବି.) : ପତଳା ସ୍ତ୍ରୀଲୋକ

**ଶୁକୁନଳି** - *ଟା:* (ବି.) : ଗୋଡ଼ର ହାଡ଼

**ଶୁକୁର୍‌ବାର୍** - *ଅନେ:* (ବି.) : ଶୁକ୍ରବାର

**ଶୁକୁଲା** - *ଟା:* (ବିଂ.) : ଶୁଖିଲା

**ଶୁକୁଳି** - *ନବ:* (ବି.) : ଶିକୁଳି

**ଶୁକୁଶୁକୁ** - *ଅନେ:* (ଅ.) : ମୁମୂର୍ଷୁ

**ଶୁକ୍ରା** - *ଦେ:* (ବି.) : ବାଉଁଶଫୁଣା

**ଶୁକ୍ଳଘର** - *ଗଞ:* (ବି.) : ଧୋବାଘର

**ଶୁଖଡ଼ି** - *ସ:* (ବିଂ.) : ଶୁଖା

**ଶୁଖ୍‌ଲା** - *କଳା:* (ବିଂ.) : ଶୁଖିଲା, ଶୁଷ୍କ

**ଶୁଖାଓ୍ଲି** - *ମ:* (କ୍ରି.) : ଶୁଖାଇଲି

**ଶୁଖା ଖଡ଼ଖଡ଼** - *ବୌ:* (ବି.) : କପର୍ଦ୍ଦକ ଶୂନ୍ୟ, ଶୂନ୍ୟ ହସ୍ତ

**ଶୁଖାବା** - *କଳା:* (କ୍ରି.) : ଶୁଖେଇବା

**ଶୁଖାରୁଖା** - *ବୌ:* (ବି.) : ତୁଚ୍ଛା, ଯାହା ମିଳିଲା

**ଶୁଖିଲା** - *ନ:* (ବିଂ.) : ଶୁଷ୍କ କରାଇବା

**ଶୁଖୁଆ** - *ନ:* (ବି.) : ଶୁଖିଲା ମଳାମାଛ

**ଶୁଖୁଆ** - *ଅନେ:* (ବି.) : ଶୁଖିଲା ଲୁଣିମାଛ, ଝଡ଼ିଯିବା

**ଶୁଖୁଆଭାତ** - *କ:* (ବି.) ବିବାହପରେ ମାଗିଥିବା ଭାତ

**ଶୁଖେଇବା** - *ଖୋ:* (କ୍ରି.) ଢିକିମୁହଁକୁ ଯୋଗାଇଦେବା, ଶୁଙ୍କେଇବା

**ଶୁଙ୍କ** - *ନ:ଗ:* (ବି.) : ସୂକ୍ଷ୍ମକଣ୍ଟା ଧାନ, କଣ୍ଟାର, ବାଲୁଙ୍ଗା, ସଁବାଲୁଆର ଟାଆସା ଲୋମ

**ଶୁଙ୍ଖାରିବା** - *ଗ:* (କ୍ରି.) : ଗର୍ଜନ କରିବା

**ଶୁଙ୍ଗା** - *ଗ:* (ବିଂ.) : ଗମ୍ଭୀର, କୃପଣ

**ଶୁଙ୍ଗାମୁହାଁ** - *ନ:* (ବିଂ.) : ଅସୁଖୀ, ମୁହଁ ଶୁଖାଇ ରହିଥିବା, ଶୁଖିଲାମୁହାଁ

**ଶୁଙ୍ଘା ଶୁଙ୍ଘି** - *ଗୌ:* (କ୍ରି.) : ଶୁଙ୍ଘିବା

**ଶୁଙ୍ଘିବା** - *ଅନେ:* (କ୍ରି.) : ଆଘ୍ରାଣ କରିବା

**ଶୁଙ୍ଘେଇବା** - *ନ:* (କ୍ରି.) : ନାକରେ କିଛି ଆଘ୍ରାଣ କରାଇବା

**ଶୁଜିବା** - *ନ:* (କ୍ରି.) : ବିବାହ ମେଳକ ପଡ଼ିବା, ଜାତକ ପଡ଼ିବା, ଋଣ ପରିଶୋଧ କରିବା

**ଶୁଝିବା** - *କଳା:* (କ୍ରି.) : ପରିଶୋଧ କରିବା

**ଶୁଝେଇବା** - *ନ:* (କ୍ରି.) : ରାଗ ପ୍ରତିଶୋଧ ନେବା

**ଶୁଣା** - *ଦେ:* (ବି.) ଲୋକମୁଖରେ ଶୁଣାଯିବା

**ଶୁଣାଶୁଣି** - *ଦେ:ନ:* (ବି.ବିଂ.) : ଜନରବ

**ଶୁଣ୍ଟେ** - *ଯା:* (ବି.) : ସାତ ସଂଖ୍ୟା

**ଶୁଷଣା** - *ଗ:* (ବି.) : ଗାଳି, ଶଷଣା, ଆଚାର

**ଶୁଷା** - *ଗ:ଖୋ:ପୁ:* (ବିଂ.) : କୃପଣ, ନିରସ ଓ ଶୁଷ୍କବ୍ୟକ୍ତି

**ଶୁଣ୍ଠି** - *ଅନେ:* (ବି.) : ଶୁଖିଲା ଅଦା

**ଶୁଣ୍ଠି** - *ଖୋ:* (ବି.) : ଅଦାରୁ ଏକ ମସଲା ପ୍ରସ୍ତୁତ କରାଯାଏ

**ଶୁଣ୍ଠିଆ** - *ନ:ଗୌ:* (ବିଂ.) : କୃପଣ

**ଶୁଣ୍ଡି** - *କେ:ଗୌ:ନ:* (ବି.) : ମଦବିକାଳି, ଜାତି ବିଶେଷ, ମଦ୍ୟରନ୍ଧା ଜାତି

**ଶୁଣ୍ଡିପିଣ୍ଡା** - *ସଂ:* (ବି.) : ଏଣେତେଣେ ଯିବା, ଯାଯାବର

**ଶୁଦ** - *ଦେ:* (ବି.) : କଳନ୍ତର, ସୁଧ

**ଶୁଦ୍‌ବୁଦ୍** - *ଗୌ:* (ବି.) : ଚୁପ୍‌ଚାପ

**ଶୁଦ୍ଧଘର** - *ନ:* (ବି.) : ଶୁଦ୍ଧିକ୍ରିୟା

**ଶୁଦ୍ଧି** - *ଦେ:* (ବି.) : ମୃତାହ ଶୁଦ୍ଧିକ୍ରିୟା

**ଶୁଧ** - *ଦେ:* (ବିଂ.) : ଖାଣ୍ଟି

**ଶୁଧାର** - *ଦେ:* (ବି.) : ନିର୍ଦ୍ଦୋଷ

**ଶୁଧିବା** - *ଗ:* (କ୍ରି.) : ଗାଳିଦେବା, ଶୋଧିବା

**ଶୁଧୁରିବା** - *ନ:* (କ୍ରି.) : ଭଲବାଟକୁ ଆସିବା

**ଶୁନ୍‌ତ** - *ଗୌ:* (ଅ.) : ଶୁଣ ତ

**ଶୁନ୍‌ବା** - *ସ:କଳା:ନୂ:* (କ୍ରି.) : ଶୁଣିବା

**ଶୁନ୍‌ଲ କାଏଁ** - *ଗୌ:* (ଅ.) : ଶୁଣିଲ କି

**ଶୁନ୍‌ଶାନ୍** - *ନୂ:* (ବିଂ.) : ନିରୋଳା, ବିଜନ

**ଶୁନପାମ୍ପୁଡ଼ି** - *ଅନେ:* (ବି.) : ମଇଦା ଚିନିରେ ପ୍ରସ୍ତୁତ ମିଷ୍ଟାନ୍ନ।

**ଶୁନା** - *କଳା:* (ବିଂ.) : ଶୁଣା, ଲୋକକଥିତ

**ଶୁନାପାଏବା** - *କଳା:* (କ୍ରି.) : ଶୁଣି ହେବ, ଶୁଣିବ, ଶୁଣିପାରିବା

**ଶୁନାବା** - *କଳା:* (କ୍ରି.) : ଶୁଣାଇବା

**ଶୁନୁନ୍** - *ନୂ:* (କ୍ରି.) : ଶୁଣିଲାରୁ

**ଶୁଭ** - *ଜ:* (ବି.) : ଆରମ୍ଭ, ଉଦଘାଟନ, ମଙ୍ଗଳ, ଘରଶୁଭ ଦିଆଯାଏ

**ଶୁଭ୍‌ଭାର୍** - *ନୂ:* (ବି.) : ବିବାହରେ ନିଆ ଯାଉଥିବା ଭାର

**ଶୁଭା** - *ମା:* (ବି.) : ଶୋଭା

**ଶୁଭା ରାଣ୍ଡୀ** - *ଗୌ:* (ବି.) : ଯୁବାବସ୍ଥାର ରାଣ୍ଡୀ, ଗାଳିବିଶେଷ

**ଶୁଭିବା** - *ନ:* (କ୍ରି.) : ଶୁଣାଯିବା

**ଶୁମ** - *ଚୌ:* (ବି.) : ପନାସୀ ଦଉଡ଼ି

**ଶୁରୁଢ଼ିବା** - *ଗ:* (କ୍ରି.) : ପାନୀୟ ପଦାର୍ଥକୁ ଶୋଷି ଖାଇବା

**ଶୁରୁଂଗ୍** - *କଳା:* (ବି.) : ଶୃଂଗ, ପର୍ବତ ଶିଖର

**ଶୁଲ** - *ଚୌ:* (ବି.) : ମାଛକଣ୍ଟା ଗୁନ୍ଥା ଶୋଲ

**ଶୁଲ୍‌ଖି** - *କଳା:* (ବି.) : ଓଳି, କୁଲ୍‌କୁଲି, ଦୁଇଟି ଘର ମଧ୍ୟରେ ଥିବା ସରୁ ଫାଙ୍କା ଜାଗା

**ଶୁଲି** - *ଚୌ:* (ବି.) : ଧାନ ବୁଝା ବୋହିବା କାଠ

**ଶୁଲେଇ** - *କଳା:* (ବି.) : ଜୁଆ ଭଳି କଉଡ଼ି ଖେଳ ବିଶେଷ

**ଶୁଲେକ୍** - *କଳା:* (ବିଂ.) : ଶୋଲାଏ, ଏକ ଶୋଲା ପରିମିତ, ଏକ ଅଡ଼ାର ଦୁଇ ଭାଗରୁ ଏକ ଭାଗ

**ଶୁଳକ** - *ଜ:* (ବି.) : ଶ୍ଳୋକ

**ଶୁଳିଆପଦା** - *ଦେ:* (ବି.) : ଶୂଳୀଦଣ୍ଡରେ ଦଣ୍ଡିତ ବ୍ୟକ୍ତିର ବଧ୍ୟଭୂମି

**ଶୁଷ** - *ଟ:ମା:* (ବି.) : ଶୋଷ

**ଶୁଷ୍‌ବା** - *ନୂ:* (କ୍ରି.) : ଶୋଷଣ କରିବା

**ଶୁଷ୍କବ୍ରଣ** - *ଦେ:* (ବି.) : ବିଣ୍ଡି

**ଶୁସିର** - *ନ:* (ବି.) : ପାଟିରେ ଏକ ଶବ୍ଦସୃଷ୍ଟି କରିବା

**ଶୁଁଚି** - *ସ:* (ବି.) : ମଦ ତିଆରି କରିବା ଲୋକ, ଶୁଣ୍ଡି

**ଶୂଇନ୍** - *କଳା:* (ବିଂ.) : ଶୂନ୍ୟ, ଖାଲି

**ଶୂଦର୍** - *କଳା:* (ବି.) : ଶୂଦ୍ର, ଆର୍ଯ୍ୟମାନଂକ ଚତୁର୍ବର୍ଣ୍ଣର ଶେଷ ବର୍ଣ୍ଣ, ଜାତିବିଶେଷ

**ଶୂନ୍** - *କଳା:* (ବି.) : ଶୂନ, ଖାଲି

**ଶୂନ୍‌ରଥ୍** - *କଳା:* (ବି.) : ଉଡ଼ାଜାହାଜ, ବ୍ୟୋମଯାନ

**ଶୂନ୍‌ସାନ୍** - *କଳା:* (ବିଂ.) : ଜନଶୂନ୍ୟ, ନିରବ, କୋଳାହଳ ଶୂନ୍ୟ

**ଶୂନଗାଡ଼ି** - *ଜ:* (ବି.) : ସାଇକେଲ

**ଶୂନଘଡ଼ି** - *ଜ:* (ବି.) : ଘଣ୍ଟା

**ଶୂନଡିଆଁ** - *ଟ:* (ବି.) : ଖେଳବିଶେଷ, କୌଶଳ ଗାଁ ଅଞ୍ଚଳର ଲୋକେ ପ୍ରଦର୍ଶନ କରିଥାଆନ୍ତି

**ଶୂନ୍ୟ କାଗଜ** - *ସ:* (ବି.) : ସାଦା କାଗଜ, ବ୍ଲାଙ୍କ୍ ପେପର ପରୀକ୍ଷାରେ କିଛି ଲେଖା ନଥିବା ଖାତା

**ଶୂନ୍ୟଦଣ୍ଡ** - *ନ:* (ବି.) : ଆକସ୍ମିକ ଦୁଃଖ, ହଠାତ୍ ବିପତ୍ତି ପଡ଼ିବା

**ଶୂଳିଆ** - *କଳା:* (ବି.) ଶୂଳଧାରୀ, ମହାଦେବ, ଲୋକ ଦେବତା ବିଶେଷ

**ଶୂଳ ଆସିବା** - *ନ:* (କ୍ରି.) : ପ୍ରସୂତୀର ପ୍ରସବକାଳୀନ ଯନ୍ତ୍ରଣା ହେବା

**ଶୂଳଧରିବା** - *ନ:* (କ୍ରି.) : ପ୍ରସୂତିର ଜନ୍ମ କାଳର କଷ୍ଟକୁ ଆଉ ଜଣେ ନାରୀ ସମ୍ଭାଳିବା

**ଶୂଜା** - *ନ:* (ବି.ବିଂ.) : ଚିଡ଼ା ବା ବଦ୍‌ରାଗି ଲୋକ, ବିଲର ହିଡ଼ଭାଙ୍ଗିଗଲେ ବନ୍ଧାଇବା ପୂର୍ବରୁ ଯେଉଁ ଗୋଜା କାଠର ସାହାଯ୍ୟ ନିଆଯାଏ

**ଶୂଳାଝାଡ଼ା** - *ନ:* (ବି.) : ନାଳରକ୍ତ ମିଶ୍ରିତ ବେଦନାଯୁକ୍ତ ଝାଡ଼ାରୋଗ

**ଶୂଳାହଗା** - *ଗ:* (ବି.) : ରକ୍ତଲାଳ ସହ ଝାଡ଼ା

**ଶୂଳିଆଣୀ** - *ଚ:* (ବି.) : ପ୍ରସବକାରିଣୀ

**ଶୂଳି ଆମ୍ବ** - *କେନ୍ଦୁ:* (ବି.) : ଏକ ପ୍ରକାର ଆମ୍ବ

**ଶୂଳୀ** - *ନ:* (ବି.) : ହତ୍ୟାଦଣ୍ଡ

**ଶୂଳେଇ** - *ଗ:* (ବି.) : ଏକ ପ୍ରକାର କଉଡ଼ି ଖେଳ

**ଶୂଳେଇ କେଖିହେବା** - *ନ:* (କ୍ରି.) : ସହି ନପାରିବା

**ଶେଅଁରା** - *କେନ୍ଦୁ:* (ବି.) : କଳାରଙ୍ଗର ସ୍ୱଳ୍ପମିଆଦି ଧାନ, ଲଘୁଧାନ

**ଶେଉଳ** - *ଖୋ:* (ବି.) : ଗଭୀର ଜଳରେ ରହୁଥିବା ଏକ ପ୍ରଜାତିର ମାଛ

**ଶେକିବା** - *ନ:* (କ୍ରି.) : ଉଷୁମ କରାଇବା

**ଶେଖରୀ** - *ଦେ:* (ବି.) : ମଲାଙ୍ଗ

**ଶେଜିଖାର** - *ସୁବ:ବୌ:* (ବି.) : ଲୁଗାଧୁଆ ସୋଡ଼ା

**ଶେଠ** - *ଅନେ:* (ବି.) : ଧନୀବ୍ୟକ୍ତି

**ଶେଠୁଆ** - *ଗ:* (ବି.) : ରକ୍ତହୀନତା, ଶେଥା

**ଶେଣି** - *ଅନେ:* (ବି.) : ଚାଳଘରର ଖୁଣ୍ଟ ଉପରେ ଦିଆଯିବା ଲମ୍ବକାଠ, ଘରକାମରେ ବ୍ୟବହୃତ କାଠ

**ଶେଣି ପାଟି** - *ବୌ:* (ବି.) : ଚାଳଘରର ଲମ୍ବା ଘଟା

**ଶେଣିବା** - *ଗ:* (କ୍ରି.) : ଜଳସିଞ୍ଚନ କରିବା

**ଶେତ** - *ଜ:* (ବି°.) : ଶ୍ୱେତ, ଧଳା

**ଶେତା** - *ନ:ଗ:* (ବି.) : ରକ୍ତହୀନତା ରୋଗ

**ଶେମାଜ୍ଞୀ** - *ଖ:* (ବି.) : ଝିଅଙ୍କ ପରିଧାନ

**ଶେମି** - *ମା:କଳା:ସୁବ:ଦେ:* (ବି.) : ଶିମ୍ବ, ଶିମ୍ବିକା, ଶେମ୍ବି

**ଶେମି ଯାତ୍ରା** - *କଳା:* (ବି.) : ଶିମ୍ବ ନୂଆ ଖାଇବା ପାଇଁ ଆୟୋଜିତ ଉତ୍ସବ

**ଶେମେଲ୍, ଶେମ୍ଲି** - *ସୁବ:* (ବି.) ଶିମୁଳିଗଛ

**ଶେଲ** - *ଢେ:* (ବି.) : କୁକୁର

**ଶେଲ୍ଶେମା, ଶିଶ୍ୱପା** - *ବୌ:* (ବି.) : ଶିଂଶପା

**ଶେଷକୃତ୍ୟ** - *ସ°:* (ବି.) ଶବଦାହର ଶେଷକାର୍ଯ୍ୟ

**ଶେଷଦଶା** - *ଦେ:* (ବି.) : ଶେଷକାଳ

**ଶେଷୁଆଁ** - *ସୁବ:* (ବି.) : ଶିରୀଷ ଗଛ

**ଶୋହୁଅ** - *ନ:* (ବି.) : ଏକପ୍ରକାର ହାଲ୍କା କାଠଗଡ଼ର ଖୋଳରେ ପାଣି ବୁହାଇବା ଯନ୍ତ୍ର

**ଶୋଢେ** - *ଯା:* (ବି.) : କୋଡ଼ିଏ ସଂଖ୍ୟା

**ଶୋଥ** - *ଗ:ନ:ଦେ:* (ବି.) : ରକ୍ତ ହୀନତା ରୋଗ

**ଶୋଧା** - *ଦେ:ଜ:* (ବି.) : ଗାଳିଦେବା

**ଶୋଧାଶୋଧି** - *ଦେ:ନ:* (ବି.) : ପରସ୍ପର ବକିବା, ଅଶାଳୀନ ଶବ୍ଦ ପ୍ରୟୋଗ

**ଶୋଧି** - *ଜ:* (କ୍ରି.) : ଶୋଧନ କରି

**ଶୋରିଷ** - *ଖୋ:* (ବି.) ଏକ ପ୍ରକାର ତୈଳବିଜ୍ଜ

**ଶୋରିଷିଆ ମାଛ** - *ଖୋ:* (ବି.) : ଏକପ୍ରକାର ଅଳଙ୍କାର

**ଶୋଲ** - *ଗ:ନ:* (ବି.) : ହାଲୁକା ତୃଣଜାତୀୟ ଜଳଜ ଉଦ୍ଭିଦ

**ଶୋଲଖଣ୍ଡିଆ** - *ଗ:* (ବି.) : ଗୌଡ଼ଜାତିର ଏକ ଶାଖା

**ଶୋଲା** - *ଗ:* (ବି.) : ଧାନଚାଉଳ ମାପିବା ଆଧାର

**ଶୋଲିଚଣା** - *ଗ:* (ବି.) : ଏକ ପ୍ରକାର ଚଣା, ଶୋଲିଚଣା

**ଶୋଷ୍** - *କଳା:* (ବି.) : ତୃଷା, ପାଣି ପିଇବାର ଇଚ୍ଛା

**ଶୋଷେଇବା** - *ନ:* (କ୍ରି.) ତୃଷାରେ ଆଉଟୁପାଉଟୁ ହେବା

**ଶୋହଇ** - *ଢ:* (କ୍ରି.) : ସୁନ୍ଦର ଦିଶଇ

**ଶୌକ** - *ଦେ:* (ବି.) : ଆଗ୍ରହ, ସଉକ

**ଶଁଖ୍** - *କଳା:* (ବି.) : ଶଂଖ, ବେକ

**ଶଁଖମଇମଲ** - *ସୁବ:* (ବି.) : ଶଙ୍ଖ ମର୍ମର ପଥର

**ଶଁଖା** - *ସୁବ:* (ବି.) : ବେକର ଶଂଖୁ, ଶଂଖରୁ କଟା ହେଉଥିବା ଚୂଡ଼ି

**ଶଂକୁଛା** - *ଗ:* (ବି.) : ମାନ୍ୟ ଜଣାଇବା

**ଶଂଖ** - *ଗଢ:* (ବି.) : ପୋଲ

**ଶଂଖ୍** - *କଳା:ମ:* (ବି.) : ଶଙ୍ଖ

**ଶଂଖ୍‌ନଲା** - *କଳା:* (ବି.) : ବେକ, ଗଳା, ତୋଟି

**ଶଂଖ୍‌ଲିବା** - *ସ:* (କ୍ରି.) : ସାଇତିବା, ଯତ୍ନ ନେବା, ଶଙ୍ଖୁଳିବା

**ଶଂଙ୍ଖି** - *ଦେ:* (ବି.) : ଶ୍ୱାସନାଳୀ

**ଶଂପିବା** - *ଦେ:* (କ୍ରି.) କୁ-ଭାଷାରେ ଗାଳିଦେବା

**ଶ୍ୟରୀର** - *ଢ:* (ବି.) : ଶରୀର

**ଶ୍ୟାନ୍ତି** - *ଢ:* (ବି.) : ଶାନ୍ତି

**ଶ୍ୟାମା** - *ଗଦ୍ୟ:* (ବି.) ସୁକଣ୍ଠୀ ପକ୍ଷୀ ବିଶେଷ

**ଶ୍ରର୍ମ** - *ଢ:* (ବି.) : ଶର୍ମ, ଲାଜ

**ଶ୍ରୀଫଳ** - *ଗଦ୍ୟ:* (ବି.) : ବେଲ, ନଡ଼ିଆ

**ଶ୍ରେଣୀ** - *ଦେ:* (ବି.) : କକ୍ଷ

**ଶ୍ୱାନଦାନ୍ତ** - *ଖୋ:* (ବି.) : ପାଟିର ସବୁଠାରୁ ଶକ୍ତିଶାଳୀ ଦାନ୍ତ

**ଶ୍ୱାନ ନିଦ୍ରା** - *ସଂ:* (ବିଂ.) : ପତଳା ନିଦ

**ଶ୍ୱେତକାୟ** - *ସଂ:* (ବିଂ.) : ଇଂରେଜ ଲୋକ (ଗୋରା), ଧଳାବର୍ଣ୍ଣର, ଗୌରବର୍ଣ୍ଣ

# ଷ

**ଷଠୀଉଷା** - *ଅନେ:* (ବି.) : ଷଷ୍ଠୀ ଓଷା

**ଷଠୀଘର** - *ଅନେ:* (ବି.) : ପିଲାଜନ୍ମର ଛ'ଦିନର କର୍ମ ସଂସ୍କାର ଓ ସେହି ଘରେ ମାଟିରେ ଘର ନକ୍ସା କରି କଉଡ଼ି ଲଗାଇବା ବିଧି

**ଷଠୀଦୁଶୀ** - *ସ:* (ବି.) : ଷଠୀଦେବୀ

**ଷଠୀଦୁଶେଇ** - *ଖୋ:* (ବି.) : ଭାଗ୍ୟଦେବୀ

**ଷଠୀଦେବୀ** - *ଅନେ:* (ବି.) : ଷଠୀଦୁଶୀ, ସଦ୍ୟଜାତ ସନ୍ତାନର ଶୁଭଦାୟୀ ଦେବୀ, ଷଠୀଦେବୀ

**ଷଠୀପୂଜା** - *ନ:* (ବି.) : ଶିଳ, ଶିଳପୁଆ ରଖି ଷଷ୍ଠଦିନରେ ଜନ୍ମ ଉତ୍ସବ ପାଳିବା

**ଷଠୀବୁଢ଼ୀ** - *ଗ:* (କ୍ରି.) : ଛୁଆ ଜନ୍ମ ଷଷ୍ଠ ଦିନର ପୂଜିତା ଦେବୀ, ଷଠୀବୁଢ଼ୀ

**ଷଡ଼ଙ୍ଗୀ** - *ଅନେ:* (ବି.): ବେଦର ଷଡ଼ଅଙ୍ଗ ସାଧନ କରିଥିବା ବ୍ରାହ୍ମଣ ସମ୍ପ୍ରଦାୟର ସଂଜ୍ଞା

**ଷଢ଼ଙ୍ଗୀ** - *ଗ:* (ବି.) : ଶାଳଗଛ

**ଷଣ୍** - *କଳା:* (ବି.) : ଷଣ୍ଢ, ବୃଷଭ

**ଷଣ୍ଢବଟି** - *ଖୋ:* (ବି.) : ଭୟ ଦେଖାଇ ଚାନ୍ଦା ଆଦାୟ କରିବା

**ଷଣ୍ଢମାର୍କା** - *ଖୋ:* (ବି.) : ଆଗପଛ ବିଚାର ନକରି କାମ କରିବାର ଶୈଳୀ, ସୁନ୍ଦର, ବଳିଷ୍ଠ

**ଷଣ୍ଢା** - *ଅନେ:* (ବି.) : କଂଟା ଉଲିର ପତ୍ର ବେଙ୍କମୂଳ

**ଷଣ୍ଢାମୂଳିଆ** - *ଭ:* (ବିଂ.) : ବେଙ୍କ ମୂଳରେ ମାଡ଼

**ଷଣ୍ଢିଆ** - *ବୌ:* (ବି.) : ବଳିଷ୍ଠ ଯୁବକ

**ଷଣ୍ଢୁଆସୀ** - *ଭ:* (ବି.) : ଦୁଇ ପାଖରୁ ଚାବୁଡ଼ି ଧରିବା ଯନ୍ତ୍ର ବିଶେଷ, ଚିମୁଟା

**ଷହୁଳ** - *କଳା:* (ବିଂ.) : ଷୋହଳ, ଷୋଡ଼ଶ

**ଷାଠିଆଧାନ** - *ଦେ:* (ବି.) : ଷାଠିଏ ଦିନରେ ପାଚିବା ଧାନ

**ଷୁଳଣାପାଟ** - *ଗ:* (ବି.) : ଷୋହଳକ୍ରୋଶ ବ୍ୟାପୀ ଗହୀର ବିଲ, ଯାହା ବାଲିଆପାଳ ଅଞ୍ଚଳରେ ଅବସ୍ଥିତ

**ଷେଣ୍ଡପେନୁ** - *କନ୍ଧ:* (ବି.) : ଆକାଶ ଦେବତା

**ଷେଣ୍ଢ** - *ଅନେ:* (ବି.) : ଷଣ୍ଢ

**ଷେଣ୍ଢିଆମତା** - *ବୌ:* (ବି.) : ଷଣ୍ଢ ମାତିବା ଅବସ୍ଥା

# ସ

ସଅକ - *ଢେ:* (ବି.) : ରୁଚି, ସଉକ

ସଅଣି - *ଅନେ:* (ବି.) : ଦେବତାଙ୍କ ଆଶୀର୍ବାଦ ପାଇଁ ମାନସିକ

ସଅଣିକ - *ଗଜ:* (ବି.) : ମାନସିକ

ସଅତନୀ - *କଳା:* (ବି.) : ସଉତୁଣୀ, ସପତ୍ନୀ

ସଅଳ - *ଅନେ:* (କ୍ରି.ବିଂ.) : ଶୀଘ୍ର

ସଅଳଦଉଡ଼ି - *କ:* (ବି.) : ବଳଦଙ୍କ ବେକକୁ ଜୁଆଳି ସହ ଗୁଛିବା ଦଉଡ଼ି

ସଅଁତା - *କଳା:* (ବିଂ.) : ଯାମଳ, ଯାଆଁଳା

ସଅଁପିବା - *ଅନେ:* (କ୍ରି.) : ସମର୍ପଣ କରିବା

ସଅଁବାର - *ଦେ:* (ବି.) : ସୋମବାର

ସଅଁରା - *କ:କଳା:* (ବି.) : ଧାନର ନାମ, ଧାନର କିସମ, ଶବର

ସଅଁରେଇବା - *କଳା:* (କ୍ରି.) : ଆଉଁସିବା, ସାଉଁଳିବା

ସଇ - *ଅନେ:* (ବି.) : ସହୀ, ସଖୀ, ବନ୍ଧୁ, ସଙ୍ଗାତ, ସମାନ, ଯୋଗ୍ୟ, ସ୍ୱୀକୃତି

ସଇକାତେ - *ଅ:* (ଅ.) : ଠିକ୍ ସେହିଭଳି

ସଇତଲିଆ - *ନ:* (ବିଂ.) : ଧୀରେସୁସ୍ଥେ

ସଇସ - *ସଂ:* (ବି.) : ଘୋଡ଼ା ପାଳକ

ସଇସଙ୍ଗାତ - *ନ:ଗ:* (ବି.) : ସହୀସଙ୍ଗାତ, ମହାପ୍ରସାଦ ସାକ୍ଷୀରଖି ବନ୍ଧୁବାନ୍ଧିବା

ସଉକ - *ଅନେ:* (ବି.) : ଅୟସ, ଆନନ୍ଦ କରିବାର ଇଚ୍ଛା

ସଉକିଆ - *ଅନେ:* (ବିଂ.) : ସର୍ବଦା ଆନନ୍ଦ, ବିଳାସ ବ୍ୟସନରେ ବଞ୍ଚୁଥିବା ବ୍ୟକ୍ତି

ସଉକିନ୍ - *ଅନେ:* (ବିଂ.) : ଆନନ୍ଦ, ଅୟସ କରିବାର ଉପକରଣ

ସଉତିଆ - *ସୁ:* (ବି.) : ସଉତୁଣୀଯୁକ୍ତ

ସଉତେନ୍ - *ସ:* (ବିଂ.) : ସଉତୁଣୀ

ସଉଦା - *ଅନେ:* (ବି.) : ବ୍ୟବସାୟ, ଘରର ଆବଶ୍ୟକ ଜିନିଷ କ୍ରୟ, ଡେଙ୍ଗରାତି

ସଉପ - *ଅନେ:* (ବି.) : କାଇଞ୍ଚ ବୁଣା ମଶିଣା, ଔଷଧ ଦ୍ରବ୍ୟ

ସଉରା - *ସଂ:* (ବି.) : ଏକ ଆଦିବାସୀ ସମ୍ପ୍ରଦାୟ

ସଏବ୍ - *ସ:* (ବି.) : ସୁବିଧା

ସଏରତା - *ନୂ:* (ଅ.) : ସାରା, ସମଗ୍ର

ସଏଲତା - *ସୁ:ସ:* (ବି.) : ସଳିତା, ସଳିତା

ସଏହେବା - *ସୁ:* (ବି.) : ବେଶିହେବା

ସଏଁଠ - *ସୁ:* (ବି.) : ଶୁଣ୍ଠି

ସଓ୍ୱାର - *ଅନେ:* (ବି.) : ସବାର୍, ଆରୋହଣ

ସକ୍‌ଲିବା - *ନୂ:* (କ୍ରି.) : ସାଉଁଟିବା

**ସକ୍‌ସକା** - *ଦେ:* (ବି.) : ସକାଇକାନ୍ଦିବାରେ ଅଭ୍ୟସ୍ତ

**ସକ୍‌ସା** - *ସ:* (ବିଂ.) : ପାରଙ୍ଗମ, ସକ୍ଷମ

**ସକର୍** - *କଅ:* (ବିଂ.) : ଅଣଓସାରିଆ

**ସକସ** - *ସୁ:ଦେ:ଗଦ୍ୟ:* (ବି.) : କାର୍ଯ୍ୟଦକ୍ଷ, ଶକ୍ତିଶାଳୀ ବ୍ୟକ୍ତି ଧର୍ଯ୍ୟବନ୍ତ ବ୍ୟକ୍ତି, ଦେବତା

**ସକସକିଆ** - *କେନ୍ଦୁ:* (ବିଂ.) : ଓଦା

**ସକାଲେଁ** - *ନୂ:* (ଅ.) : ସକାଳ ବେଳା, ସକାଳରେ

**ସକ୍ୟ** - *ଛ:* (କ୍ରି.ବିଂ.) : କାର୍ଯ୍ୟ ସମ୍ପନ୍ନର ଶକ୍ତି, ସକ୍ଷମତା

**ସଗ୍‌ସଗା** - *କଳା:* (ବିଂ.) : ଭର୍ତ୍ତି, ଭରପୂର

**ସଗନିବା** - *ସୁ:* (କ୍ରି.) ସାବୁନରେ ସଫାକରିବା

**ସଙ୍କିନାଳି** - *ଚ୍ୟ:* (ବି.) : ତଣ୍ଟି, ଶ୍ୱାସନଳୀର ଅଂଶ

**ସଙ୍କୁଚ** - *ଛ:* (ବି.) : ସଂକେତ

**ସଙ୍କୁଡ଼ି** - *ଛ:* (ବି.) : ଅଇଁଠା, ସଂଖୁଡ଼ି

**ସଙ୍କେଇବା** - *ଚ୍ୟ:* (କ୍ରି.) ସୁଙ୍କେଇବା, ଯୋଗାଣଦେବା, ଢିଙ୍କିରେଧାନ କୁଟିବାବେଳେ ଢିଙ୍କି ଗାତରେ ହାତ ପୂରାଇ କାର୍ଯ୍ୟ କରିବା

**ସଙ୍ଖୁଳିବା** - *ଅନେ:* (କ୍ରି.) : ନିମନ୍ତ୍ରଣ କରିବା, ଆଗତ ଅତିଥିଙ୍କ ଭଲ ମନ୍ଦ ପଚାରିବା, ଅଭ୍ୟର୍ଥନା କରିବା

**ସଙ୍ଗଡା** - *ଚ୍ୟ:* (ବି.) : କୋକେଇ

**ସଙ୍ଗା** - *ଅନେ:* (ବି.) : ଚାଳଘରେ ଜିନିଷ ରଖିବାପାଇଁ ଉଦ୍ଦିଷ୍ଟ ମଞ୍ଚା ବା ଭାଡ଼ି

**ସଙ୍ଗାଘର** - *ଚ୍ୟ:* (ବି.) : ଦ୍ୱିତୀୟ ବିବାହ

**ସଙ୍ଗାଡ଼ି** - *ଅନେ:* (ବିଂ.) : ଦୁଇଖଣ୍ଡ ବା ଦୁଇପଟକୁ ଏକତ୍ର କରି ବ୍ୟବହାର ଉପଯୋଗୀ ପଇତା

**ସଙ୍ଗାବଳଦ** - *ଗ:* (ବି.) : ଶଗଡ଼ ବୁହାବଳଦ

**ସଙ୍ଗିବା** - *ଅନେ:* (କ୍ରି.) : ବୃଷଭ ଗାଈକୁ ସଙ୍ଗମ କରିବା

**ସଙ୍ଗେଇବା** - *କୋ:ଦେ:* (କ୍ରି.) : ରଖିବା, ସାଇତିବା

**ସଚରାଚର** - *ଅନେ:* (ବି.) : ଜଗତରେ ସର୍ବତ୍ର, ସମଗ୍ର ପୃଥିବୀ, ସମଗ୍ର ବିଶ୍ୱ

**ସଚିନା** - *କେନ୍ଦୁ:* (ବି.) ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ସଚ୍ଚା** - *ଛ:* (ବିଂ.) : ସଚୋଟ

**ସଜ** - *ଅନେ:* (ବି.ବିଂ.) : ନୂଆ, ଟଟକା, ନଗଦ, ସରଞ୍ଜାମ, ଝିଅବିବାହ ସମୟରେ ଦେବା ବାସନକୁସନ, ପ୍ରସ୍ତୁତ, ଅମଳିନ, ତାଜା, ଟଟକା

**ସଜ୍‌ରିଆ** - *ସୁବ:* (ବିଂ.) : ମଧ୍ୟମ ଆକୃତିର

**ସଜ୍‌ରେସଜ୍‌ରେ** - *କଅ:* (ଅ.) : ଆସ୍ତେ ଆସ୍ତେ

**ସଜହେବା** - *ଅନେ:* (କ୍ରି.) : ପ୍ରସ୍ତୁତ ହେବା, ବେଶଭୂଷା ହେବା

**ସଜା** - *ସଂନ:ସୁବ:ଦେ:* (ବି.) : ବନ୍ଦୀ, ଦଣ୍ଡ, ଶାସ୍ତି

**ସଜାବା** - *ସୁ:* (କ୍ରି.) : ସଜେଇବା

**ସଜାରି** - *ଗ:* (ବି.) : କାର୍ଯ୍ୟକାରି ମାନଙ୍କ ଭାଗୁଆଳି

**ସଜିଲ୍** - *କେ:ଦେ:* (ବି.ବିଂ.) : ଯଥା ସ୍ଥାନରେ ପ୍ରସ୍ତୁତ, ସଜେଇ ହୋଇ ରହିବା, ପ୍ରସ୍ତୁତ

**ସଜିଲିକୁଣିଆଁ** - *ଗ:* (ବିଂ.) : ସୁବିଧାବାଦୀ, ସ୍ୱାର୍ଥପର

**ସଞ୍ଚା** - *ଅନେ:* (ବି.) : ସିଦା, ସିଧା, ରୋଷେଇ ସରଞ୍ଜାମ

**ସଞ୍ଝାପରନ୍** - *କନ୍ଧ:* (ବି.) : ସନ୍ଧ୍ୟାସମୟ

**ସଞ୍ଝା** - *ଦେ:ନ:ଗ:* (ବି.) : ଭାଗ ସୂତ୍ରରେ ଜମିଦାରଙ୍କ ଜମିକୁ ଚାଷକରିବା, ଅଗ୍ରୀମ ନେଇ ଜମି ଭାଗ ଦବା

**ସଟ୍‌କରି** - *ଅନେ:* (କ୍ରି.ବିଂ.) : ସନ୍ତର୍ପଣରେ, ଅବାଧରେ, ସହଜରେ, ଜଲ୍‌ଦି, ଶୀଘ୍ର

**ସଟ୍‌କା** - *ଦେ:* (ବି.) : ଲମ୍ବାନଳୀ

**ସଟ୍‌କି** - *ଝା:ଦେ:* (ବି.) : ଖାଇବା ବେଳେ ଖାଦ୍ୟ ନଳୀରେ କିଛି ରହିଯିବା, ଚଟ୍‌କରି

**ସଟପ** - *ବ:* (ବି.) : ଶଗଡ଼ ଅଖ ଓ ଡଁଣା ମଧ୍ୟରେ ଥିବା କାଠ ଖଣ୍ଡ

**ସଟବଟିଆ** - *ସୁ:* (ବିଂ.) ମିଳାମିଶା କରିପାରୁଥିବା (ବ୍ୟକ୍ତି)

**ସଟରବଟର** - *ଗ:* (ବି.) : କୁମନ୍ତ୍ରଣା

**ସଟରା** - *ପୁ:* (ବି.) : ପୁରୀର ସାହିଯାତ୍ରାରେ କାଠି ପିଟି ଗୀତ ବୋଲୁଥିବା ଶିଖ ସଜ୍ଜ ବେଶଧାରୀ କଳାକାର

**ସଟିବା** - *ଯା:* (କ୍ରି.) : ମିଶିଯିବା

**ସଟେଇବା** - *ବୌ:* (କ୍ରି.) : ମନେଇବା

**ସଠାଭରା** - *ଢେ:* (ବିଂ.) : ସାବନା

**ସଠାସଠି** - *ଅ:ଦେ:* (ବି.) : ଭଣ୍ଡାଭଣ୍ଡି, ଇଆଡୁସିଆଡୁ

**ସଡ଼ଗ** - *ଢ:* (ବି.) : ସଂଳାପ

**ସଡ଼ପ୍** - *ମ:* (ବି.) : ସଡ଼କ

**ସଡ଼ପ ଗଛ** - *ନ:* (ବି.) : ଏକ ବୃକ୍ଷର ନାମ, ସଲପ

**ସଡ଼ା** - *ଯା:ଦେ:ମା:* (ବିଂ.) : ଜମି ଓଦା ଥିବା ପାଗ, ପଚା

**ସଡ଼ାସୁତୁରା** - *ଗ:* (ବି.) : ନିର୍ମଳ

**ସଡ଼ି** - *କଳା:* (ବି.) : କଟା ହେବାପରେ କ୍ଷେତରେ ରହିଥିବା ଧାନର ନଡ଼ା

**ସଢୁ** - *ଅନେ:* (ବି.) : ସ୍ତ୍ରୀଙ୍କ ଭଉଣୀର ସ୍ୱାମୀ

**ସଢୁ** - *କନ୍ଧ:* (ବି.) : ଚୁଲି

**ସଢ୍ରୁ** - *କନ୍ଧ:* (ବି.) : ଜନ୍ଦା

**ସଢୁ** - *ବ:* (ବି.) : ସଢୁ, ସ୍ତ୍ରୀଙ୍କ ଭଉଣୀର ସ୍ୱାମୀ

**ସଢ଼ା** - *କେ:* (ବି.) : ଚୁଲିରୁ ପାଉଁଶ କଢ଼ା ମାଟିର ଡଂକା

**ସଢ଼େଇ** - *ଗ:ନ:* (ବି.) : ନଡ଼ିଆର ଭିତର ଖୋଳପା

**ସଣିଖମ୍ବ** - *ଖୋ:* (ବି.) : ଗଣ୍ଡି କାଠର ଘଣା

**ସଣ୍ଡ** - *ଅ:* (ବିଂ) : କୃପଣ

**ସଣ୍ଡେଇ** - *ମା:* (କ୍ରି.ବିଂ.) : ଢୋର୍

**ସଣ୍ଡା** - *ମ:* (ବି.) : ଗଞ୍ଜା

**ସଣ୍ଡୁଆସି** - *ଖୋ:କଣ:* (ବି.) : ଧାତୁଦ୍ରବ୍ୟ ଧରିବାପାଇଁ ଚିମୁଟା ଏକ ଉପକରଣ

**ସତ୍‌କିରିଆ** - *କଳା:* (ବି.) : ପ୍ରତିଜ୍ଞା, ଶପଥ, ସତ୍ୟ କରିବା

**ସତ୍‌କେସତ୍** - *କଳା:* (ଅ.) : ପ୍ରକୃତରେ, ସତକୁସତ

**ସତ୍‌ନେ** - *କଣ:* (ବି.) : ସତ୍ୟ

**ସତରଞ୍ଜ** - *ସଂ:* (ବି.) : ଚେସ୍‌ଖେଳ

**ସତରା** - *ନବ:* (ବି.) : ଶ୍ୱଶୁର

**ସତରି** - *ବର.କୋ:* (କ୍ରି.) : ଗାଳି ବିଶେଷ, ଶାଶୁ

**ସତାଇବା** - *ସୁ:* (କ୍ରି.) : କଷ୍ଟଦେବା, ହଇରାଣ କରିବା

**ସତାର** - *ବା:* (ବି) : ଅପେକ୍ଷା

**ସତୁଆ** - *ଦେ:ଗଦ୍ୟ:ଦୌ:* (ବିଂ.ବି.) : ସତ୍ୟବାଦୀ, ବଡ଼ କାଠ ଚଟୁ

**ସତେ** - *ନୂ:* (ଅ.) : ନିଶ୍ଚୟ, ସତରେ

**ସତେଇହେବା** - *ଦେ:ଅ:* (କ୍ରି.) : ଭଲେଇହେବା

**ସତେକେଁ** - *କଳା:* (ଅ.) : ସତେକି

**ସତ୍ୟପାଠ** - *ସଂ:* (ବି.) : ଶପଥ କରିବା

**ସତ୍ୟାନାଶ୍** - *ଅନେ:* (ଅ.) : ସର୍ବନାଶ

**ସଦ୍‌ସଦିବା** - *କଳା:* (ଅ.) : ଖୁସିରେ ଗଦ୍‌ଗଦ ହେବା

**ସଦଗୋପ** - *ବା:* (ବି.) : ଗୋଧନ ରକ୍ଷାକାରୀ ଏକ ଜାତି

**ସଦର-ଆନ୍ଦର** - *ଅ:* (ବି.) : ବାହାର ଭିତର

**ସଦଲଭକ୍ଷ** - *ଗ:କଣ:* (ବି.) : ଝୁଣା

**ସଦାଦିନ** - *ନ:* (ବି.) : ସବୁଦିନ, ସବୁବେଳେ, ନିତିଦିନ

**ସଦାବର୍ତ୍ତି** - *ନୂ:* (ବିଂ.) : ସର୍ବଦା

**ସଦେଇ** - *କୋ:* (ବି.) : ମାଗିବା ବ୍ୟକ୍ତି

**ସଧ** - *ଅ:ଢେ:* (ବି.) : ସାଦ, (ଗର୍ଭବତୀଙ୍କ ଅଭିଳଷିତ ଖାଦ୍ୟ, ଇଚ୍ଛା

**ସଧାବା** - *ସୁ:* (ବି.) ମନକରିବା, ଇଚ୍ଛାକରିବା

**ସନ** - *ଅନେ:* (ବି.) : ବର୍ଷ, ସମୟର ଏକକ

**ସନ୍‌ବିର୍‌ଲି** - *କଳା:* (ବି.) : ଆଖି ପତାରେ ବାହାରୁଥିବା ଆଲୁଅ ନାମକ ରୋଗ

**ସନ୍‌ସନା** - *କଣ:* (ବିଂ.) : ନିର୍ମଳ

**ସନ୍‌ସନାବାର** - *ସୁବ:* (କ୍ରି.) : ପୋକଢୋକ ସାଲୁବାଲୁ ହେବା

**ସନମତ** - *ଅନେ:* (ବି.) : ରାଜି, ସମ୍ମତି

**ସନା** - *ମ:* (ବି.) : ସୁନା

**ସନାଘଁଟା** - *ନୂ:* (କ୍ରି.ବିଂ.) : ମିଳାମିଶା

**ସନାମେସା** - *ସ:* (ବି.) : ସବୁ ମିଶାଇ ଦେବା, ଘାଣ୍ଟିଚକଟି ଦେବା

**ସନାସୁନି** - *ସୁ:* (ବି.) : ଗୋଳେଇ ମିଶେଇ

**ସନିପାତ** - *ନ:* (ବି.) : ସନ୍ନିପାତ ରୋଗ-ଦେହ ଶିଥିଳ ହୋଇଯିବା

**ସନେ** - *ନୂ:* (ଅ.) : ସଙ୍ଗେ, ସଙ୍ଗରେ

**ସନ୍ତକ** - *ଅନେ:* (ବି.କ୍ରି.) : ଚିହ୍ନ, ସଙ୍କେତ, ଦସ୍ତଖତ

**ସନ୍ତତରେ** - *ନ:* (କ୍ରି.ବିଂ.) : ଅବିରତ ଭାବରେ

**ସନ୍ତରା** - *ଅ:ନ:* (ବି.) : କମଳା, ହେଁସ

**ସନ୍ତାଇ** - *ଚ୍ଚ:* (କ୍ରି.) : ହନ୍ତସନ୍ତ କରିବା

**ସନ୍ତାପ** - *ଜ:* (ବି.) : ଅନୁତାପ, ଦୁଃଖ

**ସନ୍ତିଆ** - *ନ:ଦେ:* (ବିଂ.ବି.) ଅକର୍ମଣ୍ୟ, ସନ୍ତସନ୍ତିଆ

**ସନ୍ତୁଳକ** - *ଚୈ:* (ବି.) : ସମାନ୍ତର

**ସନ୍ତୁଳନ** - *ସଂ:* (ବି.) : ଭାରସାମ୍ୟରକ୍ଷା

**ସନ୍ତୁଳା** - *ନ:ଦେ:ଜ:* (ବି.) : ଏକ ପ୍ରକାର ସାଦା ତରକାରୀ, ଅଳ୍ପ ସମୟରେ ସିଝା ବ୍ୟଞ୍ଜନ

**ସନ୍ତାସନ୍ତି** - *ଚୈ:* (ବିଂ.) : ଭିଡ଼

**ସନ୍ଦାର** - *ଯା:* (ବି.) : କାଠରେ ତିଆରି ଉପକରଣ ଯେଉଁଥିରେ କାତୁଅ ଚଢ଼ାଯାଏ

**ସନ୍ଧି** - *କୋ:* (ବି.) : ସନ୍ଧି

**ସନ୍ଧିବା** - *ଗଦ୍ୟ:* (ବି.) : ମିଶାଇବା, ଫେଣ୍ଟିବା

**ସନ୍ଧିସ୍ଥଳ** - *ସଂ:* (ବି.) : ସଂକଟ ବେଳା, ଯୋଡ଼ଜାଗା

**ସପଟକରିବା** - *ଗ:* (କ୍ରି.) : ସପକ୍ଷ ହେବା

**ସପରକେତୁ** - *ଚ୍ଚ:* (ବି.) : ଏକଲଟାର ଚେର, ଯାହା ଖୁବ୍ ସୁବାସିତ ପାନରେ ବ୍ୟବହୃତ ହୁଏ

**ସପିତା** - *ଚ୍ଚ:* (ବି.) : ସେପେଟା ଫଳ

**ସପୁରୁ** - *କୋ:* (ବିଂ.) : ସରୁ, ସୂକ୍ଷ୍ମ, ସଂକୀର୍ଣ୍ଣ

**ସପୁର୍ଣ୍ଣିଆ** - *ଦେ:* (ବି.) : ଝଙ୍କାଳିଆ ବନ୍ୟଗୁଳ୍ମ ବିଶେଷ

**ସପ୍ତସୁରା** - *ସଂ:* (ବିଂ.) : ସପ୍ତସ୍ୱର ବିଶିଷ୍ଟ ବାଜା

**ସଫରିଆ** - *ସଂ:* (ବିଂ.) : ଭ୍ରମଣକାରୀ

**ସଫରିଦରୀ** - *ସଂ:* (ବି.) ଜାହାଜର ପତାକାସ୍ତମ୍ଭ

**ସଫା** - *ଅନେ:* (ବି.) : ନିର୍ମଳ, ପରିଷ୍କାର

**ସଫୁର** - *ଦେ:* (ବି.) : ସରୁ

**ସବ୍‌କା** - *କନ୍ଧ:* (ବି.) : ସାରୁ

**ସବ୍‌କିରର୍** - *ନୂ:* (ସ.) : ସମସ୍ତଙ୍କର

**ସବ୍‌କେ** - *କଳା:* (ସ.) : ସମସ୍ତଙ୍କୁ

**ସବ୍‌ଜି** - *ଗଦ୍ୟ:* (ବି.) : ଶାଗ, ପରିବା ସିଝା, ସାଧା ତରକାରି

**ସବ୍‌ନାବା** - *ସୁ:* (ବି.) : ସାବୁନ ମାରିବା

**ସବଜ୍** - *ମା:* (ବି.) : ପନିପରିବା

**ସବରାତ** - *ଗଦ୍ୟ:ଭ:* (କ୍ରି.) : ଅପେକ୍ଷା କରିବା

**ସବାଖାଇ** - *ଅନେ:* (ବି.ବିଂ.) : ଗାଳି ବିଶେଷ, ସବୁ ଖାଇ ଧ୍ୱଂସ କରୁଥିବା ସ୍ତ୍ରୀଲୋକ

**ସବାଖିଆ** - *ନ:ଚ୍ଚ:* (ବିଂ.ବି.) : ସର୍ବଗିଳା, ସବୁ ଖାଇ ଯାଉଥିବାବ୍ୟକ୍ତି)

**ସବାରି** - *କଳା:କ:* (ବି.) : କାଠରେ ତିଆରି ମଣିଷ କାନ୍ଧବୁହା ଯାନ, ଯେଉଁଥିରେ ସ୍ତ୍ରୀଲୋକ ଯିବାଆସିବା କରୁଥିଲେ, ଶବାରୀ

**ସବିଚା** - *ସୁ:* (ବି.) : ଛକିପଡ଼ିଥିବା ଶାଢ଼ି

**ସବୁକତି** - *ସୁ:* (ଅ.) : ସବୁଆଡ଼େ

**ସବୁକୁତି** - *ସ:* (ଅ.) : ସବୁଆଡ଼େ

**ସବୁନ୍ତି** - *ଅ:* (ସ.) : ସବୁରି, ସମସ୍ତଙ୍କର

**ସବୁର୍** - *ଅନେ:* (ବି.ଅ.) : ଧୈର୍ଯ୍ୟ, ଅପେକ୍ଷା

**ସବେ** - *ଦେ:କଳା:ଢେ:* (ସ.କ୍ରି.) : ସମସ୍ତେ

**ସବଖାକର** - *ବୌ:* (ବି.) : ସମସ୍ତଙ୍କର

**ସଭେ** - *ସୁ:ବୌ:ସୁବ:ସ:* (ବି.ସ.) : ସମସ୍ତେ

**ସମ୍‌କରିବା** - *ସୁ:* (କ୍ରି.) : ସମାନ କରିବା

**ସମ୍‌କର୍** - *ନୂ:* (ସ.) : ସମସ୍ତଙ୍କ

**ସମ୍‌କୁ** - *ସୁ:* (ସ.) : ସମସ୍ତଙ୍କୁ

**ସମ୍‌ଜିବା** - *ବୌ:କଳା:* (କ୍ରି.) : ବୁଝିପାରିବା

**ସମ୍‌ଦିନୀ** - *ବୌ:* (ବି.) : ସମୁଦିଆଣୀ

**ସମ୍‌ଦୀ** - *କଳା:* (ବି.) : ସମୁଦୀ

**ସମ୍‌ନା** - *ସ:କଳା:ନୂ:* (ବି.) : ଏହା ଏକ ପ୍ରକାର ଘାସ

**ସମ୍‌ବହେଲେ** - *ବୌ:* (ବି.) : ପ୍ରଚୁର

**ସମ୍‌ବା** - *ନୂ:* (କ୍ରି.) : ପଶିବା

**ସମ୍‌ରିବା** - *ସ:* (କ୍ରି.) : ଚେର ଧରିବା, ସମ୍ଭାଳିବା

**ସମ୍‌ଲାବା** - *ସ:* (କ୍ରି.) : ସମ୍ଭାଳିବା

**ସମ୍‌ସେଲବା** - *କଳା:* (କ୍ରି.) : ସମାନ କରିବା, ସଳଖ କରିବା

**ସମ୍‌ହାଲ୍‌ବା** - *ସ:* (କ୍ରି.) : ସମ୍ଭାଳିବା

**ସମକକ୍ଷ** - *ଅନେ:* (ବିଂ.) : ସମକକ୍ଷ

**ସମକଟା** - *କଳା:* (ବି.) : ମୈତ୍ର, ସଂଗାତ, ମକର ଭଳି ସମ୍ବୋଧନ

**ସମଙ୍ଗା** - *କେ:* (ବି.) : ଲତାବିଶେଷ

**ସମଟେଇବା** - *କେ:* (କ୍ରି.) : ସମାଧାନ କରିବା

**ସମଣା** - *ବୌ:* (ବି.) : ବଣିଆଁର ଏକ ଉପକରଣ

**ସମତ** - *ଦେ:* (ବି.) : ରାଣ

**ସମନାଁ** - *ବ:* (ବି.) : କ୍ଷେତକୁ ନଷ୍ଟ କରୁଥିବା ତୃଣ ବିଶେଷ

**ସମୟା** - *ଗଦ୍ୟ:* (ବି.) : ଅସମୟରେ ଦାଇଦ୍ଧ ତୁଲାଉଥିବା ମାହାରୀ

**ସମରଖାଇ** - *ସୁବ:* (ବି.) : ଏକ ଗୁଳ୍ମର ନାମ

**ସମରଶିଙ୍ଗା** - *କେନ୍ଦୁ:* (ବି.) : ଏକପ୍ରକାର ଗଛ

**ସମର୍ଥ** - *କ:* (ବିଂ.) : ଯୋଗ୍ୟ

**ସମଲା** - *ଗ:* (ବି.) : ମୂଳ ଅର୍କ

**ସମସରି** - *ଗ:* (ଅ.) : ତୁଲ୍ୟ

**ସମା** - *ଅନେ:* (ବି.) : ଢିଙ୍କିର କୁଟୁଥିବା ୧ ଫୁଟ ଲମ୍ବ ବିଶିଷ୍ଟ କାଠ, କାଠବେଣ୍ଟ, ଢିଙ୍କି ପାହାର ମୁଣ୍ଡରେ ଲାଗୁଥିବା ଲୁହାବଳା, ଗଂଜପା ସାର ପାଇଁ ଛାଞ୍ଚରେ କାଟିବା ବସ୍ତୁ, ଢିଙ୍କି ଗାତରେ ପିଟି ହେଉଥିବା କାଠରେ ଲଗାଥିବା ଲୌହ

**ସମାବାର** - *ସୁବ:* (କ୍ରି.) : ପଶାଇବା
**ସମାଳି** - *ମ:* (ବି.) : ସଂବାଳୁଆ
**ସମାସି** - *ଢ:* (ବି.) : ସମସ୍ୟା
**ସମିଆ** - *ସ:ସୁ:ଚୌ:* (ବି.ଅ.) : ସମୟ
**ସମୁ** - *କଳା:* (ବିଂ.) : ପ୍ରବେଶକାରୀ
**ସମ୍ପବା** - *ଅନେ:* (କ୍ରି.) : ଅଭିଶାପ ଦେବା, ଗାଳିକରିବା
**ସମ୍ପ, ସମ୍** - *ଚୌ:* (ବି.) : ପାନ ମଧୁରୀ
**ସମ୍ପାକଟା** - *ଦେ:* (ବି.) : ଗାଳିଦିଆ
**ସମ୍ପାଦି** - *ଢ:* (କ୍ରି.) : ସଂପନ୍ନକରି
**ସମ୍ପୁର, ସପୁରା** - *ଚୌ:* (ବିଂ.) : ସରୁ
**ସୟଳ** - *ଢ:* (ବି.) : ସକଳ
**ସୟା** - *ବା:ଦେ:ମ:ବା:* (ବି.) : ସଂଗାତ, ସଖୀର ସ୍ୱାମୀ, ବାପା ଓ ଧରମବାପା ପରସ୍ପରକୁ ସମ୍ବୋଧନ କରି ଡାକିବା, ପୁଅ କିମ୍ବା ଝିଅର ଧର୍ମ ବାପ
**ସୟାଁ** - *ଦେ:* (ବି.) : ଶ୍ୱାସରୋଗୀ
**ସରକ** - *ବା:ଗଦ୍ୟ:* (ବି.) : ପଣ୍ୟଦ୍ରବ୍ୟ
**ସରକ୍‌ବରକ୍** - *ଚୌ:* (ବିଂ.) : ଅସଜଡ଼ା
**ସରକଟା** - *ଇ:* (ବିଂ.) : ସରୁଆ
**ସରକଡ଼ା** - *କ:* (ବି.) : ଗାଈର କ୍ଷୀର ଚୋରିକରି ନେବା, ସାରାଂଶ ନେଇଯିବା, କ୍ଷୀରରୁ ସରନେଇଯିବା
**ସରକା** - *ଦେ:ସୁ:ସୁବ:* (ବି.) : ଲୁଣ୍ଠାଦେବା କନା, ଛକାଫାସ, ଛୁଞ୍ଚ କନା
**ସରକାଇବା** - *ଦେ:* (କ୍ରି.) : ଏକପାଖରୁ ଘୁଞ୍ଚାଇବା
**ସରକାତି** - *ଚୌ:* (ବି.) : ବଜ୍ରକାପ୍ତା
**ସରଗି** - *ଅନେ:* (ବି.) : ଶାଳଗଛ
**ସରଗିମୁଡ଼ି** - *ସୁ:* (ବି.) : ଶାଳଗଛ
**ସରଘର** - *ଅନେ:* (ବି.) : ଭଣ୍ଡାର ଘର, ବିବାହାଦିର ସାମଗ୍ରୀମାନ ଯେଉଁ ଘରେ ରହେ
**ସରଚକ୍ଷୁ** - *କଣ:* (ବି.) : ଚଷମା, ପରଚକ୍ଷୁ
**ସରଡ଼ିଆ** - *ସୁ:* (ବିଂ.) : ଖସଡ଼ିବା
**ସରତା** - *ଦେ:ସୁ:* (ବି.) : ଗୁଆକାତି, ସାରା
**ସରଦା** - *ନବ:* (ବି.) : ଖୁସି, ଶ୍ରଦ୍ଧା
**ସରପଖି** - *କେନ୍ଦୁ:* (ବି.) : ବାରଣ୍ଡା ଉପରେ ଯେଉଁ କାଠ ଲାଗିଥାଏ
**ସରପଟିବାର** - *ସୁବ:* (କ୍ରି.) : ଭୟରେ ଢାକିଜୁକି ହୋଇ ରହିବା
**ସରପଠା** - *ଦେ:* (ବି.) : ନଦୀଗର୍ଭସ୍ଥ କୁଦ
**ସରପଟର** - *ବ:* (ବିଂ.) : ଅଯଥା ଗୌରଚନ୍ଦ୍ରିକା, ଅଧିକ ଉପକ୍ରମଣିକା
**ସରପା** - *ଗ:ଦେ:* (ବି.) : ଶସ୍ତା
**ସରପିବା** - *ଗ:* (କ୍ରି.) : ସମର୍ପଣ କରିବା
**ସରପୁଳି** - *ଅନେ:* (ବି.) : ଏକ ଘିଅପିଠା, ସରରେ ତିଆରି ମିଠାଖାଦ୍ୟ
**ସରବ୍‌ଜାନ୍** - *ନୂ:* (ବିଂ.) : ସବୁ ଜାଣେ ଯିଏ, ସର୍ବଜ୍ଞାନତା
**ସରବୁଡ଼ିଆ** - *ଗ:* (ବି.) : ଜଳରେ ଭିଜିବା
**ସରମ** - *ଅନେ:* (ବି.) : ଲାଜ, ସଂକୋଚ ଭାବ

**ସରମଳି** - *ସୁ:* (ବି.) : ସରମି ଯିବା

**ସରଲେନ୍** - *କଳା:* (ବିଂ.) : ସରଳିଆ, ପିଚ୍ଛିଳ

**ସରସ୍** - *ଝା:* (ବିଂ.) : ଅତି ଉର୍ବର, ସରସ

**ସରସରାନୁ** - *ସୁ:* (ବି.) : ଅତିଶୀଘ୍ର

**ସରସା** - *ଅନେ:* (ବିଂ.) : ଉତ୍କୃଷ୍ଟ

**ସରସିଆ** - *ଅନେ:* (ବିଂ.) : ଖୁସିବାସିଆ, ଭଲ

**ସରା** - *ଅନେ:* (ବି.) : ପିତଳ ବା ମାଟିର ଛୋଟପାତ୍ର

ସରାଇ - *[illegible]ସଂ.ଦେ:* (ବି.) : [illegible]ଦଗଟି, ମାଟିପାତ୍ର, ସୁରେଇ, ପାନ୍ଥଶାଳା

**ସରାଉବୁଡା ପିଠା** - *ଗା:* (ବି.) : ଚିତୋଉ ପିଠା

**ସରାଗ** - *ନ:ଝା:* (ବି.) : ସୁହାଗ, ପ୍ରେମ ସ୍ନେହ ମିଶ୍ରିତ ଭାବ

**ସରାଗାଡ** - *ଅନେ:* (ବି.) : ପଇସା ସଞ୍ଚୟ କରିବା ପାଇଁ ମାଟି ନିର୍ମିତ ପାତ୍ର

**ସରାପ୍‌ବା** - *ନୁ:* (କ୍ରି.) : ଗାଳିଦେବା

**ସରାବନ୍** - *ନବ:ସ:* (ବି.) : ଶ୍ରାବଣ

**ସରାବିକା** - *ଦେ:* (ବି.) : ଛୋଟପାତ୍ର

**ସରାସରି** - *କନ୍ଧ:ଗଢ:* (ବି.) : ଶେଷରେ

**ସରି** - *ଅନେ:* (ବିଂ.ବି.ଅ.) : ତୁଲ୍ୟ, ସମାନ

**ସରିଅରି** - *ସୁ:* (ବି.) : ସମାନ

**ସରିକି** - *କନ୍ଧ:ଗଢ:* (ଅ.) ଶେଷରେ, ବେଳକୁ

**ସରିପାଦ୍** - *କଳା:* (ବି.) : ଡୁଡୁ ଖେଳରେ ବ୍ୟବହୃତ ଦଳ ବିଭାଜନକାରୀ ରେଖା

**ସରିବରି** - *କଳା:* (ବି.) : ପ୍ରାୟ ସମପରିମାଣ ମିଶିବା

**ସରିବା** - *ଅନେ:* (କ୍ରି.) : ଶେଷହେବା

**ସରିମା** - *ଗ:* (ଅ.) : ତୁଲ୍ୟ

**ସରିସା** - *ଜ:* (ବିଂ.) : ସମକକ୍ଷ, ସମାନ

**ସରୁ** - *କନ୍ଧ:* (ବି.) : ପାହାଡ଼

**ସରୁଚିନା** - *ଜ:* (ବି.) : ଧାନର ନାମ

**ସରୁଚିନାମାଳି** - *ନ:ଖୋ:* (ବି.) ଏକ ସ୍ୱର୍ଣ୍ଣଅଳଙ୍କାରର ଏକପ୍ରକାର ଧାନ

**ସରୁପେନୁ** - *କନ୍ଧ:* (ବି.) : ଏକ ପର୍ବର ଦେବତା

**ସରେଇ** - *ଗୌ:କଳା:ନୁ:ସୁ:* (ବି.) : ଦୁଧ ସିଝା ମାଟିପାତ୍ର, ସୁରେଇ, ଶିଶୁଙ୍କ ମାଟି ପାତ୍ରର ଖେଳଣା, ସାନମାଠିଆ

**ସର୍କ** - *ଗଢ:* (ବି.) : ମସଲା ଜିନିଷ

**ସର୍କଟିଆ** - *ଭ:* (ବିଂ.) : ଲମ୍ବା ସରୁଆ

**ସର୍କି** - *ଚର:* (ବି.) : ମସିଣା

**ସର୍ଗଛିଡ଼ା** - *ଗା:* (ବିଂ.) : ବିଶୃଙ୍ଖଳ

**ସର୍ଗିଫଳ** - *କନ୍ଧ:* (ବି.) : ଶାଳଫଳ

**ସର୍ଦ୍ଦଳ** - *ଗା:* (ବି.) : ଝରକା ଉପରେ ପଡୁଥିବା ପଟା

**ସର୍ବଜୟା ଫୁଲ** - *କେନ୍ଦୁ:* (ବି.) : ସଦାବିହାରୀ ଫୁଲ

**ସର୍ବଣା** - *ଗ:* (ବି.) : ବାରମ୍ବାର ଜିଭ ବାହାର କରୁଥିବା ପଶୁ, ଅଶୁଭ ଲକ୍ଷଣ

**ସର୍ବଣାଘାସ** - *ଖୋ:କେନ୍ଦୁ:* (ବି.) : ଏକ ପ୍ରକାର ବାଲୁଙ୍ଗା

**ସର୍ବରା** - *ଗ୍:* (ବି.) : ଅଣ୍ଟିବା

**ସର୍ଲିବା** - *ମା:* (କ୍ରି.) : ଖସିବା

**ସର୍** - *କଳା:* (ବି.) : ବଡ଼ ପୋଖରୀ

**ସର୍କା** - *ବୌ:କଳା:ସୁ:ବ:* (ବି.) : ଗୋବର ଲିପିବା କନା, ଲୁଣ୍ଡା, ଛିଂଚ କନା, ଲିପିବା ପାଇଁ ବ୍ୟବହାର କରାଯାଉଥିବା କପଡା, ଏକ ବନ୍ଧନ ଫାସ

**ସର୍କିସରା** - *କଳା:* (ବିଂ.) : ସମପରିମାଣ, ସରିକିସରି

**ସର୍ଗନା** - *ଢ:* (ବି.) : ଟଂଟି

**ସର୍ଚମ୍ପା ଧାନ** - *କେନ୍ଦୁ:* (ବି.) : ଧଳା ରଙ୍ଗର ସ୍ୱଚ୍ଛ ମିଆଦି ଧାନ

**ସର୍ଢେନ୍** - *କଳା:* (ବିଂ.) : ପିଚ୍ଛିଳ, ଖସଡ଼ିଆ

**ସର୍ଢେଇବା** - *ସ:* (କ୍ରି.) : ଗୋବର ପାଣି ଢାଳି ପୁଣି ଝାଡୁ କରିବା

**ସର୍ତି** - *କଳା:* (ଅ.) : ଶେଷ ପର୍ଯ୍ୟନ୍ତ

**ସର୍ଦିବା** - *ବୌ:* (କ୍ରି.) : ଗୋଡ଼ମୋଡ଼ିବା

**ସର୍ପଗା** - *କଳା:* (ବି.) : ଘଣା ବା ଶାଳରେ ଗୁଡ଼ର ସରରେ ପଗା ଯାଇଥିବା ମିଠା

**ସର୍ବନା** - *ସୁ:* (ବି.) : ଧାନ କ୍ଷେତରେ ଅନିଷ୍ଟକାରୀ ଘାସ

**ସର୍ଲଙ୍ଗା** - *କୋ:* (ବିଂ.) : ସିଧା, ସଳଖ

**ସର୍ଲା** - *କଳା:* (କ୍ରି.) : ଶେଷ ହେଲା, ସମାପ୍ତ ହେଲା, ସରିଲା

**ସର୍ଲି** - *ଝା:ବ:* (କ୍ରି.) : ପିଚ୍ଛିଳ, ଏକ ଚିକ୍କଣିଆ ସ୍ଥାନରେ ଜାଣିଜାଣି ଖସିବା

**ସର୍ଷ** - *କଣ୍ଠ:* (ବି.) : ସୋରିଷ

**ସର୍ଷୁ** - *ନବ:ମା:* (ବି.) : ସୋରିଷ

**ସର୍ସରିଆ** - *କଳା:* (ବିଂ.) : ପୂରାଭାବେ ଓଦାହୋଇ ଯିବା, ଗହଳିଆ, ବହଳିଆ

**ସର୍ସା** - *କଳା:* (ବି.ବିଂ.) : ସାଂଗ, ସଖା, ସବୁଠୁ ଭଲ

**ସର୍ସିଆ** - *କଳା:* (ବି.) : ଗୋରୁମାନଙ୍କ ତୁଣ୍ଡ ଭିତରେ ହେଉଥିବା ରୋଗ

**ସଲ** - *ଢ:କଳା:* (ବି.) : କ୍ଷତି, ଆତ୍ମୀୟଙ୍କ ଭଗ୍ନ, ରକ୍ତ

**ସଲ୍କ** - *କଣ୍ଠ:* (ବିଂ.) : ସଳଖ

**ସଲ୍ଖାବା** - *ସ:* (କ୍ରି.) : ସଳଖେଇବା

**ସଲ୍ଟେଇବା** - *ବୌ:* (କ୍ରି.) : ମନାଇବା

**ସଲ୍ତା** - *ବେ:କଳା:* (ବି.) : ସଳିତା

**ସଲଗ** - *ବେ:* (ବିଂ.) : ସଂଲଗ୍ନ

**ସଲଙ୍ଗବା** - *ସୁ:* (କ୍ରି.) ନିତମ୍ବରେ ଘେସରିହୋଇ ଚାଲିବା

**ସଲନ୍ତ** - *ଗ:* (ଅ.) : ଆର୍ଦ୍ର

**ସଲପ** - *ଗ:କୋ:* (ବି.) : ଜଙ୍ଗଲି ବୃକ୍ଷ, ସଲପ ଗଛର ରସ ମଦରୂପେ ବ୍ୟବହୃତ, ସଡ଼କ

**ସଲପ୍ ନିଶାନ୍** - *କଳା:* (ବି.) : ବୃହଦାକାର ନିଶାଣ ବାଦ୍ୟ

**ସଲରା** - *କେ:କେନ୍ଦୁ:* (ବି.) : ଛଚିନ୍ଦ୍ରା (ପରିବା), ଏକ ପ୍ରକାର ଲତା

**ସଲା** - *ବେ:ସୁ:କଣ୍ଠ:* (ବି.) : ଶାଳକ, ଘାସ, ସାଲିସ, ବୁଝାମଣା

**ସଲାମି** - *ଅନେ:* (ବି.) ଭେଟି, ଅମାନତଜମା

**ସଲାସୁତ୍ରା** - *ସ:ଦେ:* (ବିଂ.ବି.) : ସ୍ୱପକ୍ଷରେ ରଖିବା, ପରସ୍ପର ବୁଝାମଣା

**ସଲାହା** - *ଗ:* (ବି.) : ମନ୍ତ୍ରଣା, ଅନୁମତି

**ସଲି** - *ଗ୍ର:* (ବି.) : ଦିଆସିଲି

**ସଲିହେବା** - *ଗ:* (କ୍ରି.) : ଉକୁଣି ଯୋଗୁଁ ମୁଣ୍ଡ କୁଣ୍ଡାଇ ହେବା

**ସଲୁଆ** - *ଚୌ:* (ବି.) : ବାଉଁଶ ତିଆରି ମାଛ ଧରା ଉପକରଣ

**ସଲୁରୀ** - *କ:* (ବି.) : ପାଣିରେ ରହୁଥିବା ପକ୍ଷୀବିଶେଷ

**ସଲେରୀ** - *କନ୍ଧ:* (ବି.) : ତୋଡ଼ିମାଛ

**ସଲୋସଲୋ** - *ଅନେ:* (ଅ.ବିଂ.ବି.) : ଶୀଘ୍ରଶୀଘ୍ର

**ସଳ୍‌ଗିରି** - *ଦେ:* (ବି.) : ଅବାଧ ଗତିରେ

**ସଳଖ** - *ଅନେ:* (ବିଂ.) : ସିଧା

**ସଳିକା** - *ଗ୍ର:* (ବି.) : ସିଧା

**ସଳିତା** - *ଅନେ:* (ବି.) : ସୂତା, ତୁଳା, ବସ୍ତ୍ରାଦିର ପ୍ରସ୍ତୁତ ବତୀ

**ସହରେନ୍** - *ସୁ:* (ବି.) : ସହରବାସିନୀ

**ସହସି** - *ସୁ:* (ବି.) : ସହିବା, ବୀରଭାବ, ସାହସିକତା

**ସହି** - *ଅନେ:* (ବି.) : ଅବିକଳ ନକଲ, ଦସ୍ତଖତ

**ସହିଲହି** - *ସ:* (ବି.) : ସବୁ ଦୁଃଖକଷ୍ଟକୁ ସହିବା

**ସହୀ** - *ନ:ସ:* (ବି.ବିଂ.) : ସଖୀ, ସଂପର୍କ ଜନିତ ସମ୍ବୋଧନ, ସଖୀ

**ସହେଜି** - *ନୂ:* (ବିଂ.) : ବିନା ମୂଲ୍ୟରେ, ମାଗଣା

**ସହଁସିଆ** - *ସୁ:* (ବି.) : ଶ୍ୱାସରୋଗୀ

**ସହ୍ଲା** - *ଗ:* (ବି.) : ମନ୍ତ୍ରଣା

**ସାଆଣ** - *ଅ:* (ବି.) : ସମସ୍ତଙ୍କ ପାଇଁ ଖୋଲା ମେଲା

**ସାଆନ୍ତ** - *ଅନେ:* (ବି.) : ଅଜା, ଜେଜେ, ସାମନ୍ତ

**ସାଆନ୍ତବାପା** - *ନ:* (ବି.) : ବଡ଼ବାପା, ବାପାଙ୍କ ବାପା

**ସାଆନ୍ତରା** - *ଚୌ:* (ବି.) : ମିଠା କମଳା, ସନ୍ତରା

**ସାଆଁଟା** - *କନ୍ଧ:* (ବିଂ.) : ସାନ

**ସାଆଁଳା** - *କେନ୍ଦୁ:* (ବି.) : ଧଳାରଙ୍ଗର ସ୍ୱଳ୍ପମିଆଦି ଧାନ

**ସାଇ** - *ଅନେ:* (ବି.) : ପଡ଼ା, ଗାଁ, ବସ୍ତି, ଗାଁର ଏକପାର୍ଶ୍ୱ, ନଗରର ପଡ଼ା, ଝିଂକ

**ସାଇଙ୍ଗା** - *କନ୍ଧ:* (ବି.) : ସିମ୍ବ

**ସାଇଜି** - *କଳା:* (ବି.) : ଭାଗଚାଷ

**ସାଇତିଆ** - *ଗଦ୍ୟ:* (ବି.) : ସାଇତି ରଖିବା ଲୋକ

**ସାଇବ** - *ଦେ:କୋ:* (ବି.) : ସାହେବ, ଉଚ୍ଚ ଅଧିକାରୀ

**ସାଉବଚଣା** - *ଗଞ୍ଜ:କୋ:* (ବି.) : ମଟରଚଣା, ଶୁଖିଲା ଧଳା ମଟର, ଧଳା ଚଣା ଜାତୀୟ ଶସ୍ୟ

**ସାଉଁଇଡ଼ି** - *କୋ:* (ବି.) : ଜହ୍ନରାତିରେ ଆଦିବାସୀ ରମଣୀମାନଙ୍କ ଖେଳ ବିଶେଷ

**ସାଉ** - *ସୁ:* (ବି.) ମାଲିକ, ସାଉକାର

**ସାଉକାଡ଼ି** - *ବ୍ରୀ:* (ବି.) : ବାହାଦୂରୀ

**ସାଉସୁଆଗିଆ** - *ନି:* (ବିଂ.) [illegible], ମାଲିକ ସପକ୍ଷରେ କହୁଥିବା

**ସାଉଁନ୍ତା** - *ମା:* (ବି.) : ସାଆନ୍ତ, ମୁରବୀ

**ସାଉଁରା** - *ଢେ:* (ବିଂ.) : ଶ୍ୟାମଳ

**ସାଏତ୍** - *ସ:* (ବି.) : ଦମନ, ଆୟତ୍ତ

**ସାଏମୂଷା** - *ସୁ:ସୁବ:* (ବି.) : ଝିଙ୍କ

**ସାଏଁକଳା** - *ଦେ:* (କ୍ରି.ବିଂ.) : ଜଲଦି

**ସାକଡ଼** - *ନବ:* (ବିଂ.) : ଅଣ ଓସାରିଆ

**ସାକମା** - *ଭ:* (ବିଂ.) : ନମ୍ର

**ସାକରପଟ** - *ଦେ:* (ବି.) : ଉପରଦୁଆର ବନ୍ଧରେ ଲାଗିଥିବା ପଟା

**ସାକାରି** - *ନବ:* (ବି.) : ସାହୁକାର

**ସାକିନ୍** - *ଦେ:* (ବି.) : ଠିକଣା

**ସାକୁର** - *ସୁ:ନୂ:* (ବିଂ.) : ଅଣଓସାରିଆ

**ସାକୁଲା** - *ଦେ:* (ବି.) : କାକୁତିମିନତି

**ସାକୁଲାଇବା** - *ବ୍ରୀ:* (କ୍ରି.) : ପଟେଇବା

**ସାକ୍ରେଟିଆ** - *ସଂ:* (ବିଂ.) : ସନ୍ଦେହୀ

**ସାଖିନି** - *ଭ:* (ବି.) : ସ୍ଥାୟୀ ବାସସ୍ଥାନ

**ସାଗ** - *ନବ:ଦେ:କନ୍ଧ:ମା:* (ବି.) : ତରକାରି, ଶାଗ

**ସାଗି** - *ଦେ:* (ବି.) : ନଇଁଯାଇ

**ସାଗୁ** - *ଦେ:* (ବି.) : ଲଘୁପାକ ତରଳ ଖାଦ୍ୟ

**ସାଗୁଆ** - *ଯା:ଖୋ:ଦେ:* (ବିଂ.ବି.) : ସବୁଜ

**ସାଗୁଆତି** - *ସଂ:ଭ:* (ବି.) : ଖାସିମାଂସ

**ସାଗୁନ** - *ଅନେ:* (ବି.) : ସାବୁନ

**ସାଗୁବାଡ଼ି** - *ଦେ:* (ବି.) : ଉଠିଆଜମି

**ସାଙ୍କଳିବା** - *କୌ:ଦେ:* (କ୍ରି.ବି.) ଗୋଟେଇବା, ଉଣ୍ଟିବା

**ସାଙ୍କୁଚ, ସାଙ୍କୁଡ଼ି** - *ଦେ:* (ବି.) : ଯାକିଯୁକି ବସିଥିବା ବ୍ୟକ୍ତି

**ସାଙ୍କୁଡ଼ିଯିବା** - *କୋ:* (କ୍ରି.) ନରମ ହୋଇଯିବା, ସଙ୍କୁଚିତ ହେବା

**ସାଙ୍ଗଛଡ଼ା** - *ଝା:* (ବିଂ.କ୍ରି.) : ସାଙ୍ଗ ଛାଡ଼ି ଯିବାବେଳେ ହେଉଥିବା ବିଦାକୀ

**ସାଙ୍ଗଲା** - *କନ୍ଧ:କୋ:* (ବି.କ୍ରି.) : ଡାଲା

**ସାଙ୍ଗସରସା** - *କୌ:* (ବି.) : ସାଙ୍ଗସାଥୀ

**ସାଙ୍ଗା** - *ଦେ:* (ବି.) : ନୀଚଶ୍ରେଣୀ ମଧ୍ୟରେ ଦ୍ୱିତୀୟ ବିବାହ

**ସାଙ୍ଗି** - *ଦେ:* (ଅ.) : ଅଂଶୀଦାର

**ସାଙ୍ଗିବା** - *ଗଞ୍ଜ:ନବ:* (ବି.କ୍ରି.) : ପଠାଇବା, କଥାହେବା, ପଚାରିବା

**ସାଙ୍ଗିମାରି** - *କୌ:* (କ୍ରି.ବିଂ.) : ଦୁଇପଟେ ଦୁଇଜଣ ସାଙ୍ଗମାରି ଖଟିଆରେ ରୋଗୀକୁ ବୋହିନେବା

**ସାଙ୍ଗୁଆ** - *ଦେ:* (ବି.) : ଯିଏ ବାଉଁଶ ଭାର କାନ୍ଧରେ ବୁହାନ୍ତି

**ସାଚା** - *ନବ:ସୁବ:ସୁ:* (ବିଂ.) ସତିଆ, ଭଲଲୋକ, ଭଲ ଜିନିଷ, ସଚ୍ଚା

**ସାଜ୍‌ବା** - *ନୂ:ସୁ:* (କ୍ରି.) : ମରାମତି କରିବା, ସାଜିବା

**ସାଜିନ୍‌** - *ସଂ:* (ବି.) : ବାଦ୍ୟକାର

**ସାଜିଦାର** - *ଦେ:* (ବି.) : ଭାଗଦାର

**ସାଜୋ** - *ସୁବ:ସୁ:ନୂ:ସ:* (ବି.) : ଉପକରଣ, ବେଶ, ଅଳଙ୍କାର, ଯୌତୁକ, ସାମଗ୍ରୀ

**ସାଟା** - *ଗ:* (ବି.) ସଂପର୍କ, ଉଦାହରଣ,ସାମ୍ୟ

**ସାଟାପାଟା** - *ଗଡ:* (ଅ.) : ଏମିତି ସେମିତି ନୁହେଁ

**ସାଟାବାଟା** - *କୋ:* (ଅ.) : ସାମାନ୍ୟ, ଯେମିତି ସେମିତି

**ସାଟୁକି** - *କଲ:* (ବି.) : ଚଟୁ

**ସାଡ୍‌ଙ୍ଗା** - *ଗ:* (ବି.) : ବର୍ଷା ପାଣିରେ ଅଧିକ ଭିଜିବା

**ସାଢ଼ା ସାଢ଼ା** - *କଲ:* (କ୍ରି.ବି.) : ଚଞ୍ଚଳ ଚଞ୍ଚଳ

**ସାଢୁ** - *ଅନେ:* (ଅ.) : ସେହିଆଡୁ

**ସାଢ଼େ** - *ଅନେ:* (ବି.) : ସେ ଦିଗରେ

**ସାଢ଼େସାଢ଼େ** - *କଲ:* (ଅ.) : ହଠାତ୍

**ସାଣ** - *କଲ:ଦେ:* (ବି.) : ଛଣ, ଶାଣଦେବା

**ସାଣ୍ଟି** - *ଦେ:* (ବି.) : ସାଉଁଟି

**ସାଣ୍ଡ** - *ଦେ:* (ବି.) : ଷଣ୍ଡ

**ସାଣ୍ଡାଲ୍‌ଉଡ୍** - *ସଂ:* (ବି.) : ଚନ୍ଦନ କାଠ

**ସାଣ୍ଡେଇବା** - *ଦେ:* (କ୍ରି.) : ହଡ଼ବଡ଼େଇବା

**ସାଦ୍‌ପରଲିଆ** - *କନ୍ଧ:* (ବି.) ଭିତରେ ପରଳପରଳ ବା ପ୍ରସ୍ତପ୍ରସ୍ତ ହୋଇ ଗଠିତ ହୋଇଥିବା ଜଂଗଲି ବଡ଼ ବୃକ୍ଷ ବିଶେଷ

**ସାତଗାଦି** - *ବର:* (ବି.) : ଖେଳ ବିଶେଷ

**ସାତଛେଉକା** - *ଭ:* (ବିଂ.) : ସବୁଠାରୁ ହୀନ

**ସାତଫରି** - *କନ୍ଧ:* (ବିଂ.) : ସାତୋଟି ଫେଣା କରୁଥିବା (ମହୁମାଛି)

**ସାତିଆ** - *ଅ:* (ବି.) : ଅଭାବ

**ସାଥୁଆ** - *ଦେ:* (ବି.) : ବଣିଆ

**ସାଦ** - *ଭ:* (ବି.) : ଗର୍ଭବତୀ ମହିଳାଂକ ପାଇଁ ଅଣାଯିବା ମିଷ୍ଟାନ୍ନ ସାମଗ୍ରୀ

**ସାଦେଇବା** - *ବା:* (କ୍ରି.) : ଶୁଣିବା

**ସାଧ୍‌ବା** - *ନୂ:* (କ୍ରି.) : ହଇରାଣ କରିବା

**ସାଧା** - *ଅନେ:* (ବିଂ.ବି.) : ସରଳ, ପରିଷ୍କାର, ନିରାମିଷ

**ସାଧିବା** - *ଗଦ୍ୟ:ଯା:ଗ:* (କ୍ରି.) ଗଣନାକରିବା, ସାଧନକରିବା, ଅଭ୍ୟାସକରିବା, ହଇରାଣକରିବା

**ସାଧେଇବା** - *ବା:* (କ୍ରି.) : ପୋଷମନେଇବା, ମାଲିକର ନିର୍ଦ୍ଦେଶ ମୁତାବକ କାର୍ଯ୍ୟ କରିବାକୁ ପଶୁକୁ ତାଲିମ୍ ଦେବା, ମଣ କରିବା, ଶୃଙ୍ଖଳିତ କରିବା

**ସାଧ** - *ଛ:* (କ୍ରି.ବି.) : ଆୟତ୍ତକରିବା, ହାସଲ କରିବା, ଅକ୍ତିଆରକରିବା

**ହାତୁଡ଼ି** - *ଖୋ:ଢେ:* (ବି.) : ଏକ ମୁଣ୍ଡରେ ନିଦା ଲୁହା ରଖାଯାଇ ପ୍ରସ୍ତୁତ କରାଯାଇଥିବା ଏକ କଣ୍ଡା ବାଡ଼ିଆ ଯନ୍ତ୍ର, ଛୋଟ ହାତୁଡ଼ି

**ହାତୁରା** - *ନ:* (ବି.) : ଲୁହାର ପିଟୁଣୀ, ଲୁହା ମୁଦ୍‌ଗର

**ହାତେଇବା** - *ଯା:* (କ୍ରି.) : ନିଜ ସପକ୍ଷରେ ମନାଇବା

**ହାଦିରିଯିବା** - *କେନ୍ଦୁ:ଖୋ:* (କ୍ରି.) : ମନେ ପକାଇ ଶୁଖିଯିବା

**ହାଦେ** - *ଦେ:* (ଅ.) : ଶୀଘ୍ର, ନିଶ୍ଚୟ

**ହାନା** - *ଗଜ:* (କ୍ରି.) : ପିଟିବା

**ହାନେ** - *କଣ:* (ଅ.) : ସେଇଠି

**ହାନ୍ତାନା** - *ଗ:* (ବି.) : ମୂଲ୍ୟହୀନ

**ହାନ୍** - *କଳା:* (ଅ.) : ହେଇ, ସମ୍ବୋଧନମୂଳକ ଶବ୍ଦ

**ହାନ୍‌ଦ୍‌ରେ** - *କଳା:* (ଅ.) : ହେଇଟି, ହେଇ, ଅନ୍ୟପ୍ରତି ସମ୍ବୋଧନ ମୂଳକ ଶବ୍ଦ ବିଶେଷ

**ହାନ୍ଦୁଳା** - *ନ:* (ବି.) : ଦୋଳା(ବାଉଁଶ ନିର୍ମିତ ପାତ୍ର) ଦୁଇଜଣ ଧରି ଆଗପଛ ହୋଇ କାମ କରନ୍ତି

**ହାପ୍‌କିବା** - *ନୂ:* (କ୍ରି.) : ଟାଣିନେବା

**ହାପ୍‌ରିବା** - *କଳା:ସ:* (କ୍ରି.) : ତରଳ ଖାଦ୍ୟ ପଦାର୍ଥକୁ ହାପୁରି ଖାଇବା, ଚାରି ଆଙ୍ଗୁଠିରେ ଝୋଳ ଖାଇବା

**ହାପ୍‌ସି ଅଦାଲି** - *ବୌ:* (କ୍ରି.ବି.) : ପଡ଼ି ଉଠି

**ହାପ୍‌ସିବା** - *ଅନେ:* (କ୍ରି.) : ଝାଂପି ନେବା, ଛଡେଇନେବା, ଲୁରିଦେବା, କଚାଡ଼ିବା, ବଳ ପ୍ରୟୋଗ କରି ଜଣକୁ ତଳେ କଚାଡ଼ି ଦେବା

**ହାପରା** - *ଦେ:* (ବି.) : ଶସ୍ୟକ୍ଷେତ୍ରରୁ ବନ୍ୟଜନ୍ତୁ ଘୁରୁଡ଼େଇବାରେ ବ୍ୟବହୃତ ଦୁଇଫାଳିଆ ଲମ୍ବ ବାଉଁଶ

**ହାପର୍** - *ଦେ:କଳା:ବୌ:* (ବି.) : ଅପସ୍ମାର ରୋଗ, ମୂର୍ଚ୍ଛାରୋଗ

**ହାପର୍ ମାରିବା** - *କଣ:* (କ୍ରି.) : ରାଗରେ ବିଚଳିତ ହେବା

**ହାପାଲି** - *ଗଜ:* (କ୍ରି.) : (ଗାଡ଼ି) ରଖିବା ସଂକେତ

**ହାପାସି** - *ଭ:* (ବି.) : ଫାକାସି

**ହାପିଯିବା** - *ଭ:* (କ୍ରି.) : ଦବିଯିବା

**ହାପିରି ଯିବା** - *କେନ୍ଦୁ:* (କ୍ରି.) : ମନେ ପକାଇ ଶୁଖିଯିବା

**ହାପୁ** - *ଦେ:* (ବି.) : ଅଫିମ, ଆପୁ

**ହାପୁଆ** - *ଦେ:ଅ:* (ବିଂ.) : ଅଫିମ ଖୋର, ଅଫିମିଆ

**ହାପୁଲେ** - *ଭ:* (ବିଂ.) : ପୁଳାଏ

**ହାପୁହାପୁ** - *ଦେ:* (ବି.) : ବ୍ୟସ୍ତ ବିବ୍ରତ

**ହାଫାନି** - *ଯା:* (ବି.) : ଶ୍ୱାସ ଶୀଘ୍ର ଚାଲିବା

**ହାବ୍‌କା** - *କୋ:* (ବି.) : ପାଣିରେ ବୁଡ଼ ମାରି ଶୀଘ୍ର ଉପରକୁ ଉଠିବା ଅବସ୍ଥା

**ହାବ୍‌ଡ଼ିବା** - *କଳା:* (କ୍ରି.) ଭେଟହେବା, ସାକ୍ଷାତ ହେବା, ଦେଖିବା

**ହାବ୍‌ବା ଛାଡ଼ିବା** - *ବ୍ୟ:* (କ୍ରି.) : ଚିତ୍କାର କରି କାନ୍ଦିବା

**ହାବ୍‌ସିକଚଡ଼େଇ** - *ସ:* (କ୍ରି.) : ରାଗିବା, ରାଗ ତମତମ ହେବା

**ହାବଡ଼ିବା** - *ନବ:* (କ୍ରି.) : ସାକ୍ଷାତ ହେବା, ଭେଟହେବା

**ହାବା** - *ଦେ:ବା:ମ:* (ବି.) : ପବନ, ବୋକା, ଓଲୁ, ହାଓ୍ୱା

**ହାବାଉନ୍** - *ଗ:* (ବି.) : ସାଟି କାମିଜ୍, ଅଙ୍ଗବସ୍ତ୍ର

**ହାବୁଡ଼ ଖାଇବା** - *ଛ:* (କ୍ରି.ବି) : ସାମ୍ନାରେ ପଡ଼ିବା

**ହାବୁଡ଼ାବୁ** - *ଗ:* (ବି.) : ମିଛସତ

**ହାବୁଡ଼ିବା** - *ନ:ବୌ:* (କ୍ରି.) : ଭେଟିବା, ମୁହାଁମୁହିଁ ହେବା

**ହାବେଳୀ** - *ଛ:ନ:* (ବି.) : ଏକ ବାଣବିଶେଷ (ଆକାଶ ଉପରକୁ ଯାଉଥିବା)

**ହାବୋଡ଼** - *ଛ:* (ବି.) : ସାମନାସାମନି ଭେଟପଡ଼ିବା

**ହାମ୍‌ବଢ଼ା** - *ଛ:ସ:* (ବି.ବିଂ.) : ନିଜର ବଡପଣ, ନିଜକୁ ବଡ଼ ମନେ କରିବା

**ହାମତିରି** - *ଯା:* (ବି.) : ଆମ୍ଭେମାନେ

**ହାମର** - *ନ:ସୁ:ଖୋ:* (ବି.) : ଚିହ୍ନଟ, ଆମର, ବଡ଼ ହାତୁଡ଼ି

**ହାମରଙ୍ଗ** - *ଗଦ୍ୟ:* (ବି.) : ଗଞ୍ଜପା ଖେଳ

**ହାମଲା** - *ଛ:* (ବି.) : ଝାମେଲା, ଗଣ୍ଡଗୋଳ

**ହାମିପଡ଼ିବା** - *କୋ:* (କ୍ରି.) : ଆଗଭର ହେବା, ସ୍ୱେଚ୍ଛାକୃତ ଭାବେ ଆଗେଇ ଆସିବା

**ହାମିସ୍** - *ଯା:* (ବି.) : ପାଞ୍ଚସଂଖ୍ୟା

**ହାମୁ** - *ଗ:କୋ:* (ବି.) : ଅନ୍ନ, ପିଲାଙ୍କ ଖାଦ୍ୟ (ଶ୍ରଦ୍ଧାରେ କୁହାଯାଏ)

**ହାମୁଡ଼ିବା** - *ନବ:* (କ୍ରି.) : ଗୁରୁଣ୍ଡିବା

**ହାମୁଳିବା** - *ବ୍ୟ:* (କ୍ରି.) : ହମ୍ବାରଡ଼ି ଛାଡ଼ି ଡାକିବା

**ହାମେଇବା** - *ଗଦ୍ୟ:* (ବି.) : ଧଇଁସଇଁ ହେବା

**ହାମ୍ବା** - *ସ:* (ବି.) : ଗାଈ ବଳଦର ସ୍ୱର

**ହାମ୍ବାଲୁ** - *ଗ:* (ବି.) : ପିଲାଙ୍କ ଖେଳର ଅଟକିଥିବା ସୂଚନା

**ହାମ୍ବିଳିକି ଆସିବା** - *ବ୍ୟ:* (କ୍ରି.) : ଡାକି ଡାକି ଆସିବା

**ହାୟରା** - *ଗଦ୍ୟ:* (ବି.) : ନଜର, ଦୃଷ୍ଟି

**ହାରକିନ୍** - *ନ:ଯା:* (ବି.) : କୁଲମ୍, ଜୋରଜବରଦସ୍ତ, ଫୁଟାଣି

**ହାରମ୍‌ଜାଦା** - *ଯା:ବୌ:* (ବିଂ.) : ଦୁଷ୍ଟ, ଗାଳି ବିଶେଷ

**ହାରମିନି** - *ଗ:* (ବିଂ.) : ବିସୁଖ

**ହାରସୁରୁ, ହାରସୁଲୁ** - *ଗ:* (ବିଂ.) ମୋଟାମୋଟି

**ହାରା** - *ନବ:* (ବି.) : ପରାଜୟ

**ହାରାମ୍‌ଖୋର୍** - *ଦେ:* (ବିଂ.) : ଅଳସୁଆ

**ହାରାମି** - *ଅନେ:* (ବି.ବି°.) : ଦ୍ୱିତୀୟ ଥର ବିବାହିତ ସ୍ତ୍ରୀ, ଖଳ, ବଦ୍‌ମାସ୍, ଦୁଷ୍ଟ, ପାଜି, ଖରାପ ଲୋକ, ଅବୈଧ ସନ୍ତାନ, ବେଧଙ୍କୁଆ, ଜାରଜ, ବିଶ୍ୱାସଘାତକ

**ହାରାହାରି** - *ନ:* (ବି.) : ମୋଟାମୋଟି

**ହାରିକା** - *ଛେ:* (ବି.) : ଡାଲି, ତରକାରୀ

**ହାରିକେ ପାରିକେ** - *ଗ:* (ଅ.) : ଯାଉଣୁ ଆସୁଣୁ

**ହାରିଥାକିଯିବା** - *କଳା:* (କ୍ରି.) : ଶ୍ରମବଶତଃ ଅଧିକ କ୍ଳାନ୍ତ ହୋଇଯିବା

**ହାରି ଫେରାଦ୍** - *ଭ:* (ବି.) : ଆଗ ପଛ ବିଚାର

**ହାରୀ** - *କଳା:ବ:* (ବି.) : ଜନୈକା, ସ୍ତ୍ରୀଲୋକ, ସ୍ତ୍ରୀ, କିଛି ଜିନିଷ ବିକୁଥିବା ସ୍ତ୍ରୀଲୋକ

**ହାରୁ** - *ସୁ:ଦେ:* (ବି.) : ପରାଜିତକାରୀ, ଯେ ପରାଜିତ

**ହାରେକ୍** - *କଳା:* (ଅ.) : ଓ ଅନ୍ୟମାନେ, ହାରେ

**ହାର୍‌ପି** - *ଗ:* (ବି.) : ଠକ

**ହାଲ** - *ଅନେ:* (ବି.) : ଶଗଡ଼ ଚକ ଉପରେ ଲାଗିଥିବା ଲୁହା ପାତ, ଖବର, ସମାଚାର; ବର୍ତ୍ତମାନରେକର୍ଡ, ଜମିପଟ୍ଟାରେ ବର୍ତ୍ତମାନର ସ୍ଥିତି ସମ୍ପତ୍ତି, ନୌକାରକର୍ଣ୍ଣ, ଗାଡି ଚକର ଲୁହାର ବେଢ଼, ବର୍ତ୍ତମାନ ଖବର, ଘଟନାର ବିବରଣୀ, ରୀତି ଆଚରଣ

**ହାଲ୍‌କା** - *ନ:ଦେ:* (ବି.ବି°.) : ଅତିଅଳ୍ପରେ ଗ୍ରହଣ କରିବା, ହାଲୁକା, ଲଘୁ,

**ହାଲ୍‌କିବାର** - *ସୁବ:* (କ୍ରି.) : କୁକୁର ଆଦି ପଶୁ କାମୁଡ଼ି ଦେବା, ଉପମା ବାଚକ ଭାବରେ ମଧ୍ୟ ବ୍ୟବହୃତ ହୁଏ

**ହାଲ୍‌ପା** - *ସ°:* (ବି°.) : ଅତିଶୀତଳ

**ହାଲହୁଲି** - *ଗ:* (ବି.) : କୋଳାହଳ ପରିସ୍ଥିତି, କାଉଳି, ସ୍ଥିତି, ଘଟଣା

**ହାଲା** - *ମା:ଯା:କୋ:* (ବି.କ୍ରି.) : ପ୍ରଚାର କରିବା, ବଡ଼ପାଟି, ରାଷ୍ଟ୍ରକରିବା, ବଡ଼ପାଟିରେ କଥା ହେବା

**ହାଲି** - *ବା:ଯା:ଭ:ଦେ:* (ଅ.ବି.) : ଏବେ, ସାଂପ୍ରତିକ, ଏବେକା, ନୂତନ, ବର୍ତ୍ତମାନ ସମୟ,

**ହାଲିଆ** - *ଦେ:ନ:* (ବି°.ବି.) : ଛାନିଆ, କ୍ଳାନ୍ତ, ଦୁର୍ବଳ

**ହାଲିଯିବା** - *ବା:ମ:ବା:* (କ୍ରି.) : ସ୍ୱାସ୍ଥ୍ୟର ଅବନତି, ଝଡ଼ିଯିବା, ଶୁଖିଯିବା

**ହାଲୁ** - *ରା:* (ବି.) : ବଡ଼ଘର

**ହାଲୁଆ** - *ନ:ଭ:ଦେ:* (ବି.) : ସୁଜିରେ ନିର୍ମିତ ଖାଦ୍ୟ, ମହନ ଭୋଗ

**ହାଲୁଆଳୀ** - *ଖୋ:କେନ୍ଦୁ:* (ବି°.ବି.) : ଛୁଆ ଦେଇ ନଥିବା ଛୋଟ ମାଈ ଛେଳି

**ହାଲୁଏ** - *ଦେ:* (ବି.) : ପୁଳାଏ

**ହାଲୁକ ଶୁଖିବା** - *ପୁ:* (କ୍ରି.ବି.) : ଆତଙ୍କିତ ହେବା

**ହାଲୁହାଲୁ** - *ନ.ଭ.ଦେ.ଗୌ.* (ବି.ବିଂ.କ୍ରି.) : ଜିଭକାଢି ବାରମ୍ବାର ତଳ ଉପର କରିବା, ଚିନ୍ତିତ, ବ୍ରଣ କ୍ଷତାଦିର ବ୍ୟଥା

**ହାଲ୍ଲା ଗୁଲ୍ଲା** - *ଭ.* (ବିଂ.) : ହୋ ହା

**ହାଳଜମି** - *ଟ.* (ବି.) : ଗହୀର ଜମି

**ହାଳି** - *ଟ.ଭା.* (ବି.) : ସବୁଜ ବର୍ଣ୍ଣ, ବିନା ସୁଧ

**ହାସ୍‌ପତ୍ରୀ** - *ଗ.ଗଙ୍.* (ବି.) : ହସ୍‌ପିଟାଲ୍, ଡାକ୍ତରଖାନା, ଚିକିତ୍ସାଳୟ

**ହାସା** - *ଯା.* (ବି.) : ମାଟି

**ହାସାବଙ୍ଗା** - *ଗଦ୍ୟ.* (ବି.) : ମାଟି ଦେବତା

**ହାସିଆ** - *ଦେ.* (ବି.) : ଲୁଗା ଆଦିର ଧଡ଼ି

**ହାସିସ୍** - *ପଦ୍ୟ.* (ବି.) : ଗଞ୍ଜେଇ ଫୁଲର ରେଣୁ ଓ ଗଛର କଟା ଅଂଶରୁ ବାହାରୁଥିବା ଅଠାରୁ ପ୍ରସ୍ତୁତ ହୁଏ

**ହାସ୍ନୁ** - *ଗ.* (କ୍ରି.) : ସ୍ନାନ, ଗାଧୋଇବା

**ହାସୁଁଆ** - *ମ.* (ବି.) : ଦା

**ହାଁଏଣ ଖାଲ** - *ସ.* (ବି.) : ହାଣ୍ଡିଶାଳ

**ହାଁଏଣ ସରେଲ** - *ସ.* (ବି.) : ହାଣ୍ଡି ମାଠିଆ

**ହାଁକ** - *ଟ.* (ବି.) : ଡାକ

**ହାଁକୁଡିବା** - *ଟ.* (କ୍ରି.) : ଗୁରୁଣ୍ଡିବା

**ହାଁଚୁ** - *ମ.* (ବି.) : ଆଣ୍ଠୁ

**ହାଁଜୁଆ** - *ଦେ.* (ବି.) : ବାଉଁଶ କରଡ଼ି ଦ୍ଵାରା ପ୍ରସ୍ତୁତ ଆଚାର

**ହାଁତ** - *ସ.* (ବି.) : ହାତ, ହସ୍ତ

**ହାଁପୁଡ଼ି** - *ଭ.* (ବି.) : ଢୋକି

**ହାଁସି** - *କଳା.* (ବି.) : ହସ, ହାସ,

**ହା'ଭ** - *କୋ.* (ବି.) : ଆରାମ୍

**ହା'ଟା** - *ମ.* (ବି.) : ହେଇଟା

**ହା'ଦେ** - *କୋ.* (ଅ.) : ହେଇଟି

**ହା'ଇକୁ** - *କୋ.* (ବି.) : ବର୍ତ୍ତମାନ ପାଇଁ

**ହିଅ** - *କଳା.* (କ୍ରି.) : ହୁଅ

**ହିଆ** - *ଅନେ.* (ବି.) : ଅନ୍ତଃକରଣ, ଧୈର୍ଯ୍ୟ, ହୃଦୟ, ଛାତି

**ହିଆଡ଼େ** - *ଦେ.* (ସ.) : ସେହିଆଡ଼େ

**ହିଆଶୁଖା** - *ଗୌ.* (ବି.) : ସଂପୂର୍ଣ୍ଣ ଶୁଷ୍କ, ନୀରସ

**ହିଉଡ଼ି** - *ନ.* (ବି.) : ହାକୁଟି

**ହିଏ** - *କଳା.କେନ୍ଦୁ.* (କ୍ରି.) : ହୁଏ

**ହି କରି** - *ନୂ.କଳା.* (ଅ.) : ହୋଇ, ମଧ୍ୟଦେଇ, ହୋଇକରି

**ହିକୁଆ** - *ଗ.* (ବି.) : ଶ୍ଵାସରୋଗ

**ହିଗୁଡି** - *ପଦ୍ୟ.* (ବି.) : ଏକ ପ୍ରକାର ଖେଳ

**ହିଟକିଟାବା** - *ସୁ.* (କ୍ରି.) : ଓଟାରିବା

**ହିଟକିରା** - *ଟ.* (ବି.) : ବିରକ୍ତ କରିବା

**ହିଟା** - *ଢେ.* (ବି.) : ପିଟା

**ହିଛେ** - *କଳା.* (କ୍ରି.) : ହୋଇଛି

**ହିଜ୍‌ଡ଼ା** - *କୋ.* (ବିଂ.) : ବିକଳରେ ଟାକି ରହିଥିବା ଲୋକ, ରଙ୍କ

**ହିଞ୍ଜୁଡ଼** - *ଟ.* (ବି.) : ପାନ ବରଜର କୋଣ ଅଂଶ

**ହିଞ୍ଜରୀ ହେବା** - *ବ.* (କ୍ରି.) : ଝୁରି ଝୁରି କ୍ଷୀଣ ହେବା ଅବସ୍ଥା

**ହିଜଳ** - *ଗ:ଗଦ୍ୟ:* (ବି.) : ଜଳ ନିକଟସ୍ଥ ବୃକ୍ଷ ବିଶେଷ, ଜାମୁଗଛ ବର୍ଗର ଏକ ଗଛ

**ହିଞ୍ଜିରି ଯିବା** - *ଦେ:* (କ୍ରି.) : ଭାଳି ଭାଳି ଶୁଖିବା

**ହିଞ୍ଜିଳି** - *ନ:* (ବି.) : ଏକ ବୃକ୍ଷର ନାମ

**ହିଟ୍‌ଚି** - *କଳା:* (ଅ.) : ସରିବା ପର୍ଯ୍ୟନ୍ତ, ସଂପୂର୍ଣ୍ଣ ଭାବେ

**ହିଟ୍‌ପିଟିଆ** - *ଚା:* (ବିଂ.) : ଶୀଘ୍ର

**ହିଟ୍‌ବା** - *କଳା:ସ:* (କ୍ରି.) : ଖୋଲିବ, ଫିଟିବ

**ହିଟା** - *ଦେ:କଳା:* (ସ.କ୍ରି.) ସେହିଟା, ଖୋଲିବା, ଫିଟାଅ, ଖୋଲ, ବାହାର କର

**ହିଟି ପଡ଼ିବା** - *ସ:ବ:* (କ୍ରି.) : ପଡ଼ିଯିବା, ପାଦ ଖସିବା ହେତୁ ପଡ଼ିଯିବା, କଚାଡ଼ି ହୋଇ ପଡ଼ିବା

**ହିଟିପିଟିଆ** - *ଚା:* (ବିଂ.) : ତରବର ହୋଇ

**ହିଟିବା** - *ଚୌ:* (କ୍ରି.) : ଖସି ପଡ଼ିବା

**ହିଟେଇବା** - *କଳା:କୋ:* (କ୍ରି.) : ଖୋଲିବା, ଛଡେଇବା, ଫିଟେଇବା

**ହିଡ୍** - *ସ:* (ବି.) : ଜମି ଜମି ମଧ୍ୟରେ ବିଭାଜିତ ମାଟିହିଡ

**ହିଡହିଡା** - *ନବ:* (ବିଂ.) : ଭିକାରୀ, ମାଗିଖିଆ

**ହିଡ଼କଡି** - *କ:* (ବି.) : ହିଡ଼ର ପାଖ ଘାସ କାଟି ପରିଷ୍କାର କରିବା

**ହିଡ଼ମିଟିକା** - *କ:* (ବି.) : କଟୁରସଯୁକ୍ତ ଏକପ୍ରକାର ଗଛ

**ହିଡ଼ିମିରିଚି** - *ନ:* (ବି.) : ଏକପ୍ରକାର ଶାଗ

**ହିଣ୍ଡିବା** - *ଦେ:କୋ:ମା:* (କ୍ରି.) : ଘୂରି ବୁଲିବା, ଚାଲିବା

**ହିତେ** - *ପଦ୍ୟ:ଦେ:* (ଅ.) : ସକାଶେ, ପାଇଁ

**ହିତେଇ** - *ଗଦ୍ୟ:* (ବିଂ.) : ଆପଣା, ହିତୈଷୀ

**ହିନ୍‌କ୍ରି ଯିବା** - *ସ:* (କ୍ରି.) : ଦିନକୁ ଦିନ ଶୁଖିଯିବା

**ହିନ୍‌ତିନା** - *କଳା:* (ଅ.ସ.) : ସେମିତି ତ

**ହିନନଜରିଆ** - *ସୁ:* (ବିଂ.) : ନୀଚ ଦୃଷ୍ଟି, ଯୁକ୍ତ ମଣିଷ

**ହିନସ୍ତା** - *କଳା:ନ:ମ:* (ବି.) : ହଇରାଣ, ଅପଦସ୍ତ, ଦୁର୍ଦ୍ଦଶା, ଦୁଃଖପାଇବା, ଦୟନୀୟ ଅବସ୍ଥା

**ହିନିମାନିଆ** - *ନ:* (ବିଂ.) : ନିକୃଷ୍ଟ, ନିଚ ଦୃଷ୍ଟିରେ ଦେଖୁଥିବା

**ହିନ୍ତି** - *ଅ:* (ଅ.) : ସେମିତି

**ହିପାଜତ୍** - *କଳା:* (ବି.) : ଦାୟିତ୍ୱ, ଯତ୍ନ, ରକ୍ଷଣାବେକ୍ଷଣ, ହେପାଜତ୍, ଅଧିକାର

**ହିପାସ୍** - *କଳା:* (ବି.) : ହିସାବ

**ହିମତ** - *ଯା:ସଂ:* (ବି.) : ସାହାସ

**ହିର** - *କୋ:* (ବି.) : କୌଣସି ଜିନିଷର ଯଥା କାଷ୍ଠ ବାଉଁଶ ଶସ୍ୟ ଆଦିର ଲୋମାକୃତି ତୀକ୍ଷ୍ଣ ଅଂଶ

**ହିରଙ୍ଗୁ** - *ରା:* (ବି.) : ଶୁଣାଣି (ଅଦାଲତ)

**ହିରପିନ** - *ସୁ:କଳା:* (ବି.) : ମୁଣ୍ଡକଣ୍ଟା, ହେୟାରପିନ୍

**ହିସ** - *ସୁ:ବ:* (ବି.) : ଈର୍ଷା, ଲଙ୍ଗଳରୁ ଯୁଆଡିକୁ ଯୋଡୁଥିବା କାଠ

**ହିସ୍କୁଟିଆ** - *ନ:* (ବିଂ.) : ଈର୍ଷା, ହିଂସା ଆଚରଣ କରୁଥିବା (ବ୍ୟକ୍ତି)

**ହିସସୁ** - *ଚା:* (କ୍ରି.) : ମୂତ୍ରତ୍ୟାଗ

**ହିସାପ୍** - *ନୂ:* (ବି.) : ହିସାବ

**ହିସ୍ତାଦାର** - *ସଂ:* (ବି.) ଅଂଶୀଦାର, ଭାଗୁଆଳ

**ହିଁସା** - *ଅନେ:* (ବି.ବିଂ.) : ଭାଗ, ହିସା, ଅଂଶ, ଅନ୍ୟପ୍ରତି କ୍ରୋଧଭାବ

**ହିଁସେଇ** - *ଜ:* (ବିଂ.) : ଈର୍ଷା କରୁଥିବା ସ୍ତ୍ରୀ ଲୋକଙ୍କ ହିଁସା, ହଂସୁକୀ

**ହିଂଗୁ** - *ଚୌ:* (ବି.) : ହେଂଗୁ

**ହିଂଷ୍** - *କଳା:* (ବି.) : ଇଷ, ଲଂଗଳର ଇଷ

**ହିଂସ୍କୁଟିଆ** - *କୋ:ଭ:* (ବିଂ.) : ପରଶ୍ରୀକାତର, ହିଂସାପରାୟଣ

**ହିଂସ୍ଲିଆ** - *କଳା:* (ବିଂ.) : ଈର୍ଷା ପରାୟଣ

**ହି'ଗଲା** - *କଳା:* (କ୍ରି.) : ହୋଇଗଲା, ହେଲା

**ହି'ଚ** - *କଳା:* (କ୍ରି.) : ହୋଇଛ, ହୋଇଅଛ

**ହି'ଥିଲା** - *କଳା:* (କ୍ରି.) : ହୋଇଥିଲା

**ହୁଆଳ** - *ଢେ:* (ବି.) : ପାଳ

**ହୁଆ ହୁଟା** - *ସ:କଳା:* (ବି.) : ଚିତ୍କାର କରିବା, କୋଳାହଳ, ପାଟିତୁଣ୍ଡ, କଳକଳ ଶବ୍ଦ

**ହୁଆହୁରୁଡ଼ି** - *ପୁ:* (ବି.) : ହଇଚଇ

**ହୁଇଲିଆ** - *କଳା:* (କ୍ରି.) : ହେବ, ହୋଇଥିବ, ହୋଇପାରେ

**ହୁଏଇ** - *ପୁ:* (ବି.) : ହୋଲି ମାରିବା, ନିଆଁ ହୁଲା ଛାଳିବା

**ହୁକ** - *ନ:ଖୋ:* (ବି.) : କୋରଳ, ଲଙ୍ଗଳର ଏକ ଅଂଶବିଶେଷ, ଆଙ୍କୁଡ଼ା

**ହୁକରି** - *ପୁ:* (ବି.) : ଡାକି

**ହୁକା** - *କଳା:ନ:ଗ:* (ବି.) : ପିକା, ବୃହତ୍ ବିଡି, ପତ୍ରରେ ନିର୍ମିତ ବଡ ବିଡି

**ହୁକୁରୀ** - *ଢେ:* (ବି.) : ପୋଖରୀ

**ହୁଗୁଟି** - *ଗ:ଗଜ:* (ଅ.ସ.) : ଏଇ ନିକଟରେ, ଏଇଟି, ସେହି, ସେହିଟା

**ହୁଙ୍କାପିଟା** - *ଅନେ:* (ବିଂ.) : ଅତ୍ୟାଚାରୀ, ବିଚାର ନକରି କାମ କରିବା, ଏକବାଗିଆ, କାହା କଥା ନଶୁଣି କାର୍ଯ୍ୟ କରୁଥିବା

**ହୁଙ୍କିବା** - *ଭ:* (କ୍ରି.) : ହଲଚଲ ନହେବା

**ହୁଙ୍ଗବାର** - *ସୁବ:* (କ୍ରି.) : ମୁନିଆ ବାଡ଼ି ଛୁଞ୍ଚି ଇତ୍ୟାଦି ଦ୍ୱାରା ଖେଞ୍ଚିବା

**ହୁଚ୍କି** - *ସ:* (ବି.) : ହାକୁଟି ଆସିବା

**ହୁଚାଇ** - *ପୁ:* (କ୍ରି.) : ଡେ଼ଇଁବା

**ହୁଚୁକ୍** - *ସୁବ:* (ବି.) : ଡାଳ ମାଙ୍କୁଡି ଖେଳ

**ହୁଜା** - *ଚା:* (ବି.) : ଆଙ୍ଗୁଠିରେ ପାଣି ଲାଗି ଘା' ହେବା, ହୁଜା ଖାଇଯିବା

**ହୁଜୁଡି** - *ଯା:ଭ:* (କ୍ରି.ବି.) ଚଲାକି, କଳିଗୋଳ, ବଦମାସୀ

**ହୁଟ୍‌ପୁଟ୍** - *କଳା:* (ବିଂ.) : ଅଣନିଃଶ୍ୱାସୀ

**ହୁଟଣ୍ଣୁ** - *ଗ:* (ଅ.) : ଦୈବାତ

**ହୁଡ଼କ** - *ଅ:* (ବି.) : କବାଟ ବନ୍ଦ କରିବାକୁ ଲୁହାଦଣ୍ଡ

**ହୁଡାମାରା** - *ଗ:* (ବି.) : ଶାଳକ ଶୃଙ୍ଗାରେ ଭିଶୋଇକୁ ମିଠେଇ ମାଡ କରେ

**ହୁଡୁମ** - *କୋ:ଗ:* (ବି.) : ବିନା ଲୁଣରେ ଚାଉଳକୁ ଭାଜି ପ୍ରସ୍ତୁତ କରାଯାଇଥିବା ମୁଢି ଜାତୀୟ ଲଘୁ ଖାଦ୍ୟ, ଦୋଭଜା

**ହୁଡୁମା** - *ପଦ୍ୟ:ଭ:* (ବିଂ.) : ହୁରୁମା, ଅତିଦୁଷ୍ଟ, କାଣ୍ଡଜ୍ଞାନ ଶୂନ୍ୟ, ଅବୁଝା

**ହୁଡୁମ୍ବ** - *ନ:* (ବି.) : ଚୁଡାଭଜା

**ହୁଡ୍‌କା** - *ମ:ଦେ:* (ବି.) : ଭିତର ପଟୁ କବାଟ ବନ୍ଦ କରିବା କାଠ, ପତି ସଙ୍ଗମ ତ୍ୟାଗିନୀ ସ୍ତ୍ରୀ

**ହୁଡ଼ମୁରିଆ** - *ସୁ:* (ବିଂ.) : ବିଚାରହୀନ ଭାବେ କହିବା

**ହୁଡ଼ା** - *ଗଜ:ଖୋ:ନ:ଦେ:* (କ୍ରି.ବି.) : ପୋଖରୀ, ନଈ, ନାଳ ଇତ୍ୟାଦିର ବନ୍ଧକୁ କୁହାଯାଏ, ବିଲର ମାଟିବନ୍ଧ, ସୀମା, ଗାଳି, ଭର୍ତ୍ସନା

**ହୁଡ଼ାହୁଡ଼ି** - *ନ:ଦେ:ବୌ:* (ବି.) : ଅଶାଳୀନ ଶବ୍ଦରେ ପରସ୍ପର ଗାଳି, ସୀମା ନ ଲଙ୍ଘିବା, ପରସ୍ପର ମଧ୍ୟରେ ଗାଳି, ଗାଳିଗୁଲଜ୍

**ହୁଡ଼ିବା** - *ଅନେ:* (ବି.) : ପୁରୁଷ ଲୋକଙ୍କ ଗାଳି, ଠକିବା, ବଳାତ୍କାର କରିବା, ଭୁଲିଯିବା(ହୁଡ଼ିଯିବା), ଗାଳିଦେବା

**ହୁଡୁକ** - *ଯା:ଦେ:* (ବି.) : ବଢାଇର ଯନ୍ତ୍ର, କବାଟ କିଳିବାରେ ବ୍ୟବହୃତ କାଠ ବା ଲୌହଦଣ୍ଡ ବା ଅର୍ଗଳ

**ହୁଣ୍ଡରି ପଡ଼ିବା** - *ମ:* (କ୍ରି.) : ଝୁଣ୍ଟି ପଡ଼ିବା

**ହୁଣ୍ଡାଳ** - *କେନ୍ଦୁ:ମ:ଖୋ:* (ବି.) : ବଡ଼ବଡ଼ ମାଟିଖଣ୍ଡ, ଢେଲା (ମାଟି)

**ହୁଣ୍ଡୁହୁଣ୍ଡୁ** - *ଗ:* (କ୍ରି.ବିଂ.) : ଟିକକୁ, ଅଳ୍ପକେ

**ହୁଣ୍ଡର୍** - *ବୌ:* (ବି.) : ଯାଦୁବିଦ୍ୟା

**ହୁଣ୍ଡା** - *ପଦ୍ୟ:କ:ଦେ:ନ:* (ବି.ବିଂ.) : ମୂର୍ଖ, ଓଲୁ, ନିର୍ବୋଧ, ଧାନର ନାମ, ବୋକା

**ହୁଣ୍ଡାର** - *ଗ:କଳା:ବୌ:କନ୍ଧ:* (ବି.) : ଗଧିଆ ବାଘ, ହେଟା ବାଘ

**ହୁଣ୍ଡି** - *ବୌ:ପଦ୍ୟ:ସଂ:ଗଦ୍ୟ:* (ବି.) : ଦାନ ବାକ୍ସ, ବରାଦି ଚିଠି, ଟଙ୍କା ଥଳି ବା ପାତ୍ର

**ହୁଣ୍ଡୀ** - *ପଦ୍ୟ:ନ:* (ବିଂ.) : ହୁଣ୍ଡାର ସ୍ତ୍ରୀ ଲିଙ୍ଗ, ନିଷ୍କପଟ (ନାରୀ)

**ହୁଣ୍ଡୁରି ପଡିବା** - *ଗ:* (କ୍ରି.) : ଝୁଣ୍ଟି ପଡିବା

**ହୁତ** - *ପଦ୍ୟ:ଭ:* (ବିଂ.ଅ.ବି.) : ମନ୍ତ୍ରୋଚ୍ଚାରଣ ପୂର୍ବକ ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଗ୍ନିରେ ପ୍ରକ୍ଷିପ୍ତ (ଘୃତାଦି), ଧୂତ୍, କୌଣସି ବ୍ୟକ୍ତିକୁ ବା ଜୀବକୁ ଘଉଡିବା ବ୍ୟକ୍ତି ଦ୍ୱାରା ଉଚ୍ଚାରିତ ଧ୍ୱନି, ସାମାନ୍ୟ ଶବ୍ଦଟିଏ

**ହୁଦ୍‌ଲିବା** - *କଳା:* (କ୍ରି.) : ହାତପୂରାଇ କାଢି ଆଣିବା

**ହୁବ୍ ହୁତିଆ** - *ବୌ:* (ବି.) : ତରବରିଆ, ଉପରେ ପଡିବା ଲୋକ

**ହୁତା ଉଠାଇବା** - *ଭ:* (କ୍ରି.ବି) ଝୁଙ୍କ ଉଠାଇବା

**ହୁତୁତୁର୍ଲି** - *କଳା:* (ବିଂ.) : ତନ୍ଦରା, ବ୍ୟସ୍ତ, ଆତୁର

**ହୁତୁହତିଆ** - *ଦେ:* (ବି.) : ନ ବୁଝି ନ ସୁଝି

**ହୁଦହୁଦାବା** - *ସୁ:* (କ୍ରି.) : ପାଣିଗୋଳିଆ କରିବା

**ହୁଦା** - *ଅନେ:* (ବି.ବିଂ.) ଅଧିକାର, ଚପରାସୀମାନଙ୍କର ଚକତିଲଗା ପୋଷାକ, ଦଳ, ପଲ, ଗୋଠ, ପଶୁଦଳ

**ହୁଦେ** - *ଦେ:ସୁ:ସ:* (ବି.ବିଂ.) : ଅଧିକାର, ପରିଚୟ ଚିହ୍ନ ଦଳ, ଦଳେ

**ହୁନ** - *ଭ:ବା:ଭ:* (ବି.) : ବିଶେଷ ଗୁଣ, ନାସ୍ତିବାଚକ ଶବ୍ଦ, ମୂଲ୍ୟବାନ ଜିନିଷ

**ହୁନ୍ଦର** - *ଭ:ପଦ୍ୟ:ନ:ଜ:* (ବି.) ନୂତନ ଆକର୍ଷଣ, କୁଶଳତା, ଦକ୍ଷତା, କପଟ, ମାୟା, ହାତସଫେଇ, କୌଶଳ

**ହୁନ୍ଦରିଆ** - *ପଦ୍ୟ:କେ:ନ:* (ବିଂ.) : ସୁଆଙ୍ଗିଆ, କଳିଆ, ନାଟୁଆ, ବିସ୍ମୟକର ଦୃଶ୍ୟ ଦେଖାଇବାରେ ଦକ୍ଷ, ମାୟାକାରୀ, ତାମସାକାରୀ

**ହୁପା** - *ଗ:* (ବି.) : ତରଙ୍ଗ

**ହୁପାଇବା** - *ବୌ:* (ବି.) : ଅଧିକ କହି ଠକିବା

**ହୁବିହୁବି** - *କଳା:* (ବି.) : ହୁରି ପଡ଼ିବା, ବହୁଳ ଚର୍ଚ୍ଚା ହେବା

**ହୁମ** - *ଗ:ନବ:ବୌ:ନ:* (ବି.) : ହୋମ, ଯଜ୍ଞ

**ହୁମ୍ହା ହୁମ୍ହି** - *ସ:* (ବି.) : ଦେଖା ସାକ୍ଷାତ୍

**ହୁମ୍ପାତି** - *ମା:* (ବି.) : ହୋମିଓପାତି

**ହୁମ୍ ପେଲା** - *ଭ:* (ବି.) : ଏକ ବୁଝା

**ହୁମାଗୁଂଜୁ** - *କଳା:* (ବି.) ପେଚାଭଳି ରାତ୍ରିଚର

**ହୁମୁକି** - *ଗ:* (କ୍ରି.) : ଭୟ ପ୍ରଦର୍ଶନ କରିବା

**ହୁମୁହୁମୁ** - *ଭ:* (ବି.) : ବୁଲାବୁଲି କରିବା

**ହୁମୋଗୀତ** - *ସ:* (ବି.) : ଲୋକ ଗୀତ

**ହୁମୋନନ** - *ନୂ:* (ବି.) : ଶିଶୁ କନ୍ୟାଙ୍କ ଏକ ପ୍ରକାର ଖେଳ

**ହୁମ୍ମା** - *ଗ:* (ବି.) : ଶିଷ୍ଟାଚାର ହୀନ, ଭଦ୍ରତାର ଅଭାବ, ଅପରିଣାମ ଦର୍ଶୀ

**ହୁରକୁଣିବା** - *ସୁ:* (କ୍ରି.) : ଶିଙ୍ଗ ମାରିବା

**ହୁରଗୁନିଆ** - *ସୁ:* (ବିଂ.) : ମୁରୁଖିଆ

**ହୁରଲିଧିକା** - *ସୁ:* (ବି.) : ମଳୟ ପବନ

**ହୁରସୁଲିବା** - *ସୁ:* (କ୍ରି.) : ବଳରେ ଭୁସିବା

**ହୁରା** - *କଳା:ବୌ:* (ଅ.ବି.) : ଗାଳି, ଖୋଞ୍ଚା

**ହୁରି** - *ଅନେ:* (ବି.) : ପାଦ ଚଲା ସରୁ ରାସ୍ତା, ଶଗଡ଼ ଚକର ଗାର, ପାଟି, ହୋଲି, ପାଦଚଲା ରାସ୍ତା (ବିଂ) ବ୍ୟାପିଯିବା, ହୁଲସ୍ଥୁଲ, ଚହଲ, ବଡ଼ପାଟିରେ ଡାକିବା

**ହୁରିଆ** - *ଅନେ:* (ବି.ବିଂ.) : ଗେଲ, ଥଟ୍ଟା, ବ୍ୟଙ୍ଗ, ଗରମ ହୋଇଥିବା ଗାଈ ପଛରେ କାମପୀଡ଼ିତ ବୃଷଭ ଦୌଡ଼େଇନେବା ଓ ଶୃଙ୍ଗାର କ୍ରିୟା, ବ୍ୟଙ୍ଗ ବିଦ୍ରୁପ, ଅଶ୍ଳୀଳ ଟାପରା କଥା, ଯେ ବଡ଼ ପାଟିରେ ଡାକେ, ଥଟ୍ଟା, ପରିହାସ

**ହୁରିଆଜାରି** - *ନ:* (ବି.) : ହଜିଥିବା ଲୋକଙ୍କୁ ଖୋଜିବା, ତଥ୍ୟ ଦେବାପାଇଁ ପ୍ରଚାର

**ହୁରିହଟା** - *ନବ:ଦେ:* (ବି.) : ପାଟିତୁଣ୍ଡ, ଗୋଳମାଳ

**ହୁରୁକୁରୁ** - *ଗ:* (କ୍ରି.) : ନଷ୍ଟ କରିବା

**ହୁରୁଡେଇବା** - *ନ:ଗ:* (କ୍ରି.) ପଶୁକୁ ଡରାଇବା, ତାଳିମାରି ପକ୍ଷୀମାନଙ୍କୁ ତଡ଼ିବା

**ହୁରୁମ** - *ଅନେ:* (ବି.) : ହୁଡୁମ୍ବ ଚୁଡ଼ାଭଜା, ବାଲିରେ ଭଜା ଚୁଡ଼ା ଖାଦ୍ୟ

**ହୁରୁମା** - *ଜ:ଭ:* (ବିଂ.ବି.) ଜ୍ଞାନଶୂନ୍ୟ, ବିଚାରହୀନ, ତରକା

**ହୁରୁସିବା** - *ସୁ:* (କ୍ରି.) : ଭୁଷିବା

**ହୁରୁଂରିଆ** - *ସୁ:* (ବିଂ.) : ଚଞ୍ଚଳିଆ

**ହୁର୍‌ଗୁଣ ହେବା** - *ଦୌ:ଦେ:* (କ୍ରି.) : ବାରମ୍ବାର ମନେ ପକାଇବା

**ହୁର୍‌ଗୁନି** - *ବ:* (କ୍ରି.ବି.) : ବାହୁନିବା

**ହୁର୍‌କୁରୁ** - *ଗ:* (କ୍ରି.) : ନଷ୍ଟ କରିବା

**ହୁର୍‌ମୁଖିଆ** - *ସ:ଦେ:* (ବିଂ.) : ଆଗପଛ ବିଚାର ନକରି ଯିଏ କାର୍ଯ୍ୟ କରେ, ଏକ୍ ଜିଦିଆ, ଅଖାଡୁଆ

**ହୁର୍‌ଲିଆ** - *କଳା:* (କ୍ରି.) ଗାଳିଦିଏ, ଗାଳିଦେବ, ଗାଳି ଦେଇପାରେ

**ହୁଲ** - *ବୌ:* (ବି.) : ହୋଲି ପୂର୍ବ ସନ୍ଧ୍ୟାର ଉତ୍ସବ

**ହୁଲ୍‌କା** - *ଝା:ଝା:* (ବି.ବିଂ.) : ମଳୟ ପବନ, ଅଳ୍ପ ପରିମାଣ

**ହୁଲ୍‌ସୁଲ୍** - *ନ:* (ବି.) : ଭୟରେ ଥରାଇବା, ଚହଳ ପଡ଼ିବା

**ହୁଲ୍‌ହୁଲିଆ** - *ସୁବ:ଦେ:* (ବି.) : ଅଣସୋରିଷ ଗଛ, ଶିଥିଳ, ଢିଲା

**ହୁଲକୁଦା** - *ବୌ:* (ବି.) : ଭଣ୍ଡକୁହା କଥା

**ହୁଲା** - *ବୌ:ଝା:* (ବି.) : ହୁଳା, ନିଆଁ ହୁଳା

**ହୁଲାକି** - *ଗଦ୍ୟ:* (ବି.) : ଚହଳ, ଗୁଜବ

**ହୁଲାଜାରୀ** - *ବ:* (ବି.) : ପ୍ରଚାର

**ହୁଲା ଦାଣ୍ଡିଆ** - *ଭ:* (ବି.) : ଦଉଡ଼ି ପଳାଇବା

**ହୁଲିଆ** - *ଗ:* (ବି.) : ତାକତ, ଦମ୍ଭ

**ହୁଲିଆଜାରି** - *ସୁବ:ସ:* (ବିଂ.କ୍ରି.) : ପ୍ରଘଟ ହେବା, ପ୍ରଚାର ହୋଇଯିବା

**ହୁଲି କାଠୁଆ** - *ସ:* (ବି.) : ଛୋଟ ଡଙ୍ଗା, ହୁଲ ଡ଼ଙ୍ଗା, ଦୋହଲୁଥିବା ଡଙ୍ଗା

**ହୁଲିବା** - *କୋ:ରା:ଗ:* (କ୍ରି.) : ଓହ୍ଲାଇବା

**ହୁକ** - *ଅନେ:* (ବି.) : କୁଆପଥର, ଅଗ, ମୁନ, କୋରଳ ପଟାର ଉଭୟ ପାର୍ଶ୍ୱରେ ବାହାରିଥିବା କାଠଖଣ୍ଡ, ଲୁହାଖଣ୍ଡ

**ହୁଳପଥର** - *ଚା:* (ବି.) : କୁଆପଥର

**ହୁଳା** - *କୋ:ନ:ଛ:* (ବି.) : ପ୍ରଜ୍ୱଳିତ ଅଗ୍ନି, ନିଆଁବଡ଼ିଆ(ବଡ଼), ପାଳ ଦଉଡ଼ିରେ ନିଆଁ ରଖିବା (ଦଣ୍ଡନାଚ ଏବଂ ଶବ ଯାତ୍ରାବେଳେ), ବିହୁଡ଼ି

**ହୁହଲ୍ଲା** - *ନ:* (ବି.) : ପାଟିତୁଣ୍ଡ, ଗୋଳମାଳ

**ହୁଁଗ୍‌ବା** - *ଦେ:* (କ୍ରି.) : ତୀକ୍ଷ୍ଣବସ୍ତୁରେ ଅନ୍ୟକୁ ଫୋଡ଼ିଦେବା

**ହୁଂପା** - *ଭ:* (ବି.) : ଡିଆଁ

**ହୁ'ରାଚୁ** - *କୋ:* (ବି.) : ହୋହଲ୍ଲା, ପାଟିତୁଣ୍ଡ

**ହେଇଠାନେ** - *ସୁ:* (ଅ.) : ସେଠାରେ

**ହେଇଡି** - *କେ:ଦେ:* (ଅ.) : ସମ୍ବୋଧନ ପଦ, ସମ୍ମୁଖସ୍ଥ ବ୍ୟକ୍ତିକୁ ଦେଖାଇବାରେ ବ୍ୟବହୃତ ଶବ୍ଦ

**ହେଇନାଗେ** - *ଭ:* (ଅ.) : ସେକ୍ଷଣି

**ହେଇନିଗା** - *ଅ:* (ଅ.) : ହଠାତ୍

**ହେକା** - *ଭ:ଚା:* (ବି.ଅ.) : କଳେଇ, ହେରିକା, ପ୍ରଭୃତି

**ହେକେ** - *ଢେ:* (କ୍ରି.) : କାନ୍ଦିବା

**ହେକେଇ** - *ବ:* (କ୍ରି.ବି.) : ସକେଇ (କାଂଦିବା)

**ହେକେଇତି** - *ଭ:ଯା:* (କ୍ରି.ବି.) : ଜିଦ୍, ଜାଣିକରି ବେଖାତିର

**ହେଗୁଡ଼ାକ** - *ଦୌ:* (ଅ.) : ସେଗୁଡ଼ାକ

**ହେଙ୍କଚିବା** - *ମ:* (କ୍ରି.) : ଝିଙ୍କିବା

**ହେଙ୍କଡାମି** - *ଭ:* (କ୍ରି.) : ଫାଜିଲାମି

**ହେଙ୍କଡ଼** - *ଗ:* (ବି.) : ରାଗ

**ହେଙ୍କା** - *କୋ:* (ଅ.) : ହେରିକା, ଓ ଅନ୍ୟମାନେ ଇତ୍ୟାଦି

**ହେଙ୍କୁ** - *ଚା:* (ବିଂ.) : ନିଜକୁ ବିଶେଷ ବ୍ୟକ୍ତି ବୋଲି ମନେ କରୁଥିବା ବେକାରିଆ ଲୋକ

**ହେଙ୍ଗଳା** - *ଗ:ବା:ଚା:* (ବି.ବିଂ.) : ମୂର୍ଖ, ଢିଲା

**ହେଙ୍ଗା** - *ଦେ:* (ବି.) : ନିକମା ଶକ୍ତି

**ହେଙ୍ଗୁଳା** - *ଯା:* (ବି.) : ନିଆଁ

**ହେଜ** - *ଅନେ:* (କ୍ରି.ବି.) : ମନକୁ ନେ, ମନେ ପକା, ଭାବ, ସ୍ମରଣ, ଅନୁମାନ, ମନେପକାଇବା, ଚିନ୍ତା କର

**ହେଜ୍‌ହେଜିଆ** - *ଦେ:* (ବିଂ.) : ଅସ୍ଥିରମନା

**ହେଜା** - *ଅନେ:* (ବି.କ୍ରି.) : ଚେତନା, ସଂଜ୍ଞା, ଚିନ୍ତା, ହେଜ, ସ୍ମରଣ, ଜ୍ଞାନ

**ହେଜାପରଜା** - *ଗ:* (ବି.) : ରାନ୍ଧଣା ପ୍ରସ୍ତୁତ କରିବା ଅଟକଳ

**ହେଜାଲେଖା** - *ଦେ:* (ବି.) : ହିସାବ

**ହେଜିବା** - *କଣ:ନବ:କଳା:ନ:* (ବି.କ୍ରି.) : ଚିନ୍ତା କରିବା, ମନେ ପକାଇବା, ସ୍ମରଣ, ଚେତିବା, ଅନୁତାପ କରିବା

**ହେଞ୍ଚାକେଞ୍ଚା** - *ଚା:* (ବି) : ହଲଚଲ୍ ବା ହଇରାଣ

**ହେଞ୍ଜୋଡ଼ା** - *କ:* (ବି.) : ନପୁଂସକ, କିନ୍ନର

**ହେଟନଜର** - *ଭ:ଯା:* (ବି.) ଅବଜ୍ଞା, ଅବହେଳା, ନୀଚଦୃଷ୍ଟି

**ହେଟାକୁ** - *ଭ:* (ସଂ) : ତାକୁ

**ହେଟା କେଁ** - *କଳା:* (ସ.) : ତାହାକି

**ହେଟାଗାରିଆ** - *ସୁବ:* (ବିଂ.) : ଅସମତୁଲ

**ହେଟା ମୁଣ୍ଡିଆ** - *ଭ:* (ବି.ବିଂ.) : ଅବାଧ

**ହେଠ** - *ଜ:* (ବିଂ.) : ତଳମୁହାଁ

**ହେଠାନ୍‌କେ** - *ସ:* (ସ.) : ସେଇ ସ୍ଥାନକୁ

**ହେଠାନେ** - *କଳା:ସୁ:* (ସ.ଅ.) : ସେଠାରେ

**ହେଡାଖିଆ** - *ଖୋ:* (ବିଂ.) : ଗୋ'ମାଂସ ଖିଆ (ଏକପ୍ରକାର ଗାଳି)

**ହେଡୁ** - *ଗଜ:* (ବି.) : ହାବିଲଦାର

**ହେଡ଼ଙ୍ଗା** - *କୋ:* (କ୍ରି.) : ହାତ ଗୋଡ଼ ଲମ୍ବାଇ ଆରାମ କଲା ଭଳି ଆଉଜି ବସିବା

**ହେଡେଇ** - *ବ:* (କ୍ରି.ବି.) : ମନେପକାଇ

**ହେଣ୍ଡରିବା** - *ବ:* (କ୍ରି.) : ବାରମ୍ବାର ଗୋଟାଏ କାମ କରିବା ପାଇଁ ଚାପ ପକାଇବା

**ହେଣ୍ଡାରି ହେବା** - *ଚୌ:* (କ୍ରି.) : ଗର୍ଜନ କରିବା

**ହେଣ୍ଡିବା** - *ଗ:ନ:* (କ୍ରି.) ଠକିବା, କଥାନମାନିବା

**ହେଣ୍ଡରିଆ** - *ବ:* (ବିଂ.) : କଟୁକଥା

**ହେଣ୍ଡା** - *ଅନେ:* (ବିଂ.ବି.) : ହୁଣ୍ଡା(ଧ୍ୱନି ବୈଷମ୍ୟ ହେତୁ), କନ୍ଧବାଦ୍ୟ, ବୋକା, ହୁଣ୍ଡା

**ହେତ୍‌କି ବେଲେ** - *କଳା:* (ସ.) : ସେତେବେଳେ, ସେହି ସମୟରେ

**ହେତ୍‌କେ** - *କଳା:* (ସ.) : ତାହାପରେ, ତପ୍ରେ

**ହେତ୍‌ପଡ଼ିବା** - *କଳା:* (କ୍ରି.) : ମନେପଡ଼ିବା

**ହେତା** - *କ:କଳା:ଅ:ଗ:* (ବି.କ୍ରି.ଅ.) : ଜାଗିରି, ହୁଅନ୍ତା, ମନେପକା, ଚିନ୍ତାକର, ଏଇଟା, ରାଜାଙ୍କ ନିଜ ଚାଷଜମି, ଉତ୍କୃଷ୍ଟ ଜମି

**ହେତାବା** - *ସୁ:ସ:କଳା:* (କ୍ରି.) : ସ୍ମରଣ କରିବା, ମନେ ପକାଇବା

**ହେତାମୁଡ଼ିଆ** - *କଳା:* (ବିଂ.) : ତଳକୁ ମୁହଁ କରି ଚାଲୁଥିବା (ବ୍ୟକ୍ତି)

**ହେତିକାଜେ** - *କଳା:* (ଅ.) ତେଣୁ, ସେଥିପାଇଁ

**ହେତୁ** - *ଅନେ:* (ଅ.ବି.କ୍ରି.) : ଯୋଗୁଁ, ଜ୍ଞାନ ହେବା, ବୟଃପ୍ରାପ୍ତି, ବିବାହଯୋଗ୍ୟ, ମନେପକାଇବା, ସ୍ମରଣ

**ହେତୁପାଇବା** - *କ:ନ:* (କ୍ରି.) ଝିଅ ଋତୁମତିହେବା, ପ୍ରାପ୍ତ ବୟସ୍କ ହେବା, ଜାଣିବା ଦିନଠାରୁ

**ହେତେଇ** - *ବ:* (କ୍ରି.) : ହେତୁ କରିବା, ମନେ ପକାଇବା

**ହେଥିରଲାଗି** - *ସୁ:ଚୌ:* (ଅ.) : ତାରଲାଗି, ସେଥିପାଇଁ

**ହେଦେ** - *ଦେ:ସୁ:ଚୌ:କଳା:* (ସ.ଅ.) ଏଠାରେ, ଏହି ସ୍ଥାନରେ, ହେଇ, ହେଇଟି, ଏବେ

**ହେନ୍ତା** - *କଳା:ସୁ:* (ସ.ଅ.) : ସେପରି, ସେହିଭଳି, ସେମିତି

**ହେନ୍ତି** - *ଦୌ.* (ବିଂ.) : ମାଗଣା, ମାହାଳିଆ

**ହେନତେନ୍** - *ଚ.* (ଅ.) : ବିବିଧ ପ୍ରକାର, ଏଣୁତେଣୁ

**ହେନର** - *ସୁ.* (ସ.) : ସେଠାକାର

**ହେନି** - *ରା.* (ବି.) : ସହ

**ହେନେ** - *କଳା.* (ସ.) : ସେଠାରେ

**ହେନେକେ** - *କଳା.* (ସ.) : ସେଠାକୁ, ସେହି ସ୍ଥାନକୁ

**ହେନ୍ତା କେନ୍ତା** - *ଭ.* (ଅ.) : ଛିନ୍ନ ବିଚ୍ଛିନ୍ନ

**ହେନ୍ତି** - *କଣ.ଦୌ.ନୂ.* (ଅ.) ଏମିତି, ସେଭଳି, ସେମିତି

**ହେନ୍ତୁରୁ** - *ଚ.* (ସ.) : ସେଥିରୁ

**ହେପ୍‌କାବା** - *ସ.* (କ୍ରି.) : ଧକ୍‌କା ମାରିବା

**ହେପ୍‌ଲା** - *ସୁ.* (କ୍ରି.) : ଠେଲିବା

**ହେପତେ** - *ନୂ.* (ଅ.) : ସେ ପର୍ଯ୍ୟନ୍ତ

**ହେପଲାବାର** - *ସୁବ.* (କ୍ରି.) : ନିଜ ଦେହ ଲଗେଇ ଅନ୍ୟକୁ ଧକ୍କା ଦେବା

**ହେପା** - *ଗ.* (ବି.) : ସ୍ମରଣ ଜ୍ଞାନ

**ହେପାଜତ୍** - *କଳା.କେ.ଦେ.* (ବି.) : ଯତ୍ନ, ଦାୟିତ୍ୱ, ରକ୍ଷଣାବେକ୍ଷଣ, ସାଇତି

**ହେବ୍** - *ଜ.* (ବି.) : ହୋସ୍, ହେତୁ

**ହେବଳା** - *ନ.* (ବିଂ.) : ସହଜରେ ଭୁଲିଯିବା

**ହେବାର୍‌ଟା** - *ଦୌ.* (କ୍ରି.) : ହେବା କଥା

**ହେବେଲେ** - *ନୂ.* (ସ.) : ସେ ସମୟର

**ହେମ୍‌କେଦାର** - *ମ.* (ବି.) : ଅମର ପୋଇ

**ହେମ୍‌ଲଭ** - *କଳା.* (ବିଂ.) : ପେଲି ଦେଉଥିବା (ଲୋକ)

**ହେମତ** - *କ.ଗ.* (ବି.) : ସାହାସ, ହିମତ

**ହେମତିଆ** - *ଚ.ଭ.* (ବିଂ.) : ଯିଏ କାହାରି କଥା ଶୁଣେ ନାହିଁ, ସାହସୀ

**ହେମଲା** - *ଜ.* (ବି.) ସମୁଦ୍ରକୂଳବାଲି ଅଞ୍ଚଳରେ ମାଟିତଳେ ଫଳୁଥିବା ଏକଫଳ

**ହେମାକାଡିଆ** - *ଭ.* (ବିଂ.) : ବଦମାସିଆ

**ହେମାଜୋରି** - *ଭ.* (ବି.) ଜବରଦସ୍ତ ବ୍ୟବହାର

**ହେମାନେ** - *ଦେ.କଳା.ସ.* (ସ.) : ସେମାନେ

**ହେମାର ଘୋଟ** - *ଗ.* (ବି.) : ଅନାଗତ ଭବିଷ୍ୟତ

**ହେମାଲ** - *ସୁ.ନୂ.କଳା.* (ବି.ବିଂ.) : ଶୀତକାଳ, ମୂଲିଆ, ଥଣ୍ଡା, ଧାନକଳ ଗୁଡ଼ିକରେ ଧାନବସ୍ତା ବୋହୁଥିବା କୁଲି

**ହେମାଲି** - *ସ.* (ବିଂ.) : କୁଲି

**ହେମି** - *ସୁ.କଳା.ଭ.* (କ୍ରି.) : ହେବି

**ହେମିଫୁଟିବା** - *ଚ.* (କ୍ରି.) : ପେଟଗରମ ହୋଇ ପାଟି ଘା' ହେବା

**ହେମୁଡେଇ** - *ଭ.* (କ୍ରି.) : ଆଣ୍ଡୋଇ

**ହେମୈଇବା** - *ଚ.* (କ୍ରି.) : ବେଖାତିର କରିବା

**ହେରକେଣ୍ଡିଆ** - *ଦେ.* (ବିଂ.) : ଏକଜିଦିଆ

**ହେରଫେର** - *ଯା.ସଂ.* (ବି.) ଏପାଖ ସେପାଖ, ଆତ୍ମସାତ, କଳାବଜାରୀ କରିବା, ସବୁକ୍ଷେତ୍ରରେ ଏପଟସେପଟ କରିବା

**ହେରସା** - *କୋ:* (ବିଂ.) ସବୁବେଳେ ହସୁଥିବା, ହସକୁରା

**ହେରାଟେକା** - *ସୁବ:* (ବି.) : ଦ୍ୱନ୍ଦ

**ହେରିକା** - *ଅନେ:* (ଅ.ବି.ସ.) ସମୂହ, ପ୍ରଭୃତି, ଇତ୍ୟାଦି, ପ୍ରମୁଖ, ଦେଖିବା

**ହେରେସାମି** - *ଖୋ:* (ବିଂ.) ଅଯଥା ଥଟ୍ଟାମଜା କରିବା

**ହେର୍‌ତେରିଆ** - *ଦେ:* (ବିଂ.) : ଅସ୍ପଷ୍ଟ ବାକ୍ୟ

**ହେର୍‌ନା** - *ନୂ:କଳା:* (ବି.) : ହରିଣୀ, ମୃଗ

**ହେଲଗେ** - *କଳା:* (ସ.) : ସେଠାରେ, ତହିଁ

**ହେଲଡେଙ୍ଗିଆ** - *ନ:* (ବିଂ.) : ଫୁଲାଫାଙ୍କାଳିଆ

**ହେଲାଖୁଣୁ** - *ନ:* (ଅ.) : ହେଲାକ୍ଷଣି, କରିବା ହେତୁ, ହେବାରୁ

**ହେଲାନ** - *ଗୌ:* (କ୍ରି.) : ହେଲାଣି

**ହେଲିଗେଲି** - *ସୁବ:* (ବି.) : ଥଟ୍ଟାତାମସା

**ହେଲେମିସାରୁ** - *ଗ:* (ଅ.) : ହେଲେମଧ

**ହେଳମେଳିଆ** - *କ:* (ବିଂ.) : ଯେ ସମସ୍ତଙ୍କ ସହିତ ମିଶିଯାଏ

**ହେଳେ** - *କ:* (କ୍ରି.ବି.) ଅନାୟାସରେ, ସହଜରେ

**ହେସନ୍** - *କଳା:ସ:* (କ୍ରି.) ହୁଅନ୍ତି, ହୋଇଥାନ୍ତି

**ହେସେକ୍** - *ଗ:* (ବି.) : ପେଟ୍ରୋମାକ୍ସ ଲାଇଟ୍

**ହେଁ କାତିଆ** - *ଗ:* (ବିଂ) : ବାହାଦୁରୀପୂର୍ଣ୍ଣ କଥା, ବେଖାତିର ଭାବ

**ହେଁକାବା** - *ସ:* (କ୍ରି.) : ରାହାଧରି କାନ୍ଦିବା

**ହେଁ ଖାର** - *ସୁ:* (ବି.) : ଅଂହକାର

**ହୈକିହେ** - *ଦେ:ଗ:* (ଅ.) : ଗୁଣୀ ବ୍ୟକ୍ତିଙ୍କୁ ଡାକିବା ଲକ୍ଷ୍ୟରେ

**ହୋଇଗୋଟି** - *ଭ:* (ବି.) : ଆତସବାଜି ବିଶେଷ

**ହୋଇ ଥାଇତା** - *ଗୌ:* (କ୍ରି.) : ହୋଇ ଥା'ନ୍ତା

**ହୋଏ** - *ଦେ:କଳା:* (ଅ.) : ସ୍ୱୀକାର ସୂଚକ, ହଁ, ହଇ

**ହୋଚି** - *ଗ:* (ଅ.) : ହେଇଟି, ଏଇ ଜିନିଷ

**ହୋଦୟା** - *ଭ:* (ବି.) : ହେବା ନହେବା ଅବସ୍ଥା

**ହୋରେ ମାତିବା** - *କ:* (କ୍ରି.) ବୃଥା ଗଣ୍ଡଗୋଳରେ ଲିପ୍ତ ହେବା

**ହୋଲ** - *ସୁବ:ଦେ:* (ବି.) : ଅଶ୍ଳୀଳ କଥା, ସମୁଦାୟ

**ହୋଲ୍ କୁଦ୍‌ବାର** - *ସୁବ:* (କ୍ରି.) : ଅଶ୍ଳୀଳ ଭାଷାରେ ଗାଳିଦେବା

**ହଁକବାଜି** - *ସୁ:* (ବି.) : ପଣ

**ହଁକସ** - *ସୁ:* (ବି.) : ଥକ୍କା ଚାଲି

**ହଁଚଁ** - *ଦେ:* (ଅ.) : ଇତସ୍ତତ

**ହଁତ୍** - *ନୂ:* (ବି.) : ଅଭିମାନ

**ହଁସୁଲୀ** - *କ:* (ବିଂ.) : କୋମଳ

**ହଂକତ** - *ନବ:* (ବି.) : ଈର୍ଷା

**ହଂଦ୍ ମଂଦ୍‌ଲାବା** - *ନୂ:* (କ୍ରି.) : ପେଟରେ ଯନ୍ତ୍ରଣା ହେବା

**ହଂସ୍‌ରେଲ୍** - *କଳା:* (ବି.) : ହଂସରାଳୀ, ଜଳଚର ପକ୍ଷୀ ବିଶେଷ

**ହଂସା** - *ଦେ:କେ:* (ବି.) : ପ୍ରାଣବାୟୁ, ସାହସ, ହୋସ, ଶ୍ୱାସ ପ୍ରଶ୍ୱାସର ଗତି, ଅହଂସର ଭାବନା

**ହଂସା ଉଡ଼ିବା** - *ଦେ:ନ:* (କ୍ରି.) : ଅତ୍ୟନ୍ତ ଶୋଷ ହେବା, ଅତି ତୃଷାର୍ତ୍ତ ହେବା

**ହଂସିଆ** - *ଦେ:* (ବି.) : ଅର୍ଦ୍ଧଚନ୍ଦ୍ରାକାର ଦାନ୍ତୁଆ ଦାଆ

**ହ୍ୟାଳିପ**- *ଗଜ:*(ବି.):ପୁରୁଷଙ୍କୁ ଦିଆଯିବା ଗାଳି

OGP—MP—CTCP (T. & C.) 6—500 Bks.—19-2-2018

